ଅଲେଖବ୍ରହ୍ମ

ଷଡ଼୍ ବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣି

# ଅଲେଖ ପରଂବ୍ରହ୍ମ ଦର୍ଶନମ୍

(ମହିମାଧର୍ମ-ଦର୍ଶନମ୍)

## ପୂର୍ବାର୍ଦ୍ଧ

ମହିମା ଧର୍ମାଲୋଚନା ପରିଷଦ କର୍ତ୍ତୃକ ପ୍ରକାଶିତ
ଦ୍ୱିତୀୟ ସଂସ୍କରଣ ପରିମାର୍ଜିତ
ମହିମାବ୍ଦ- ୧୭୨ ଖ୍ରୀଷ୍ଟାବ୍ଦ - ୧୯୯୮

ବିଶ୍ୱନାଥ ବାବା

# ଅଲେଖବ୍ରହ୍ମ

## ଷଡ଼ବେଦବେଦାନ୍ତ ସାରତତ୍ତ୍ୱ ଗୀତାବଳୀ

# ଅଲେଖ ପରଂବ୍ରହ୍ମ ଦର୍ଶନମ୍

( ମହିମାଧର୍ମ-ଦର୍ଶନମ୍ )

## ପୂର୍ବାର୍ଦ୍ଧ




ମହିମା ଧର୍ମାଲୋଚନା ପରିଷଦ କର୍ତ୍ତୃକ ପ୍ରକାଶିତ,
ଦ୍ୱିତୀୟ ସଂସ୍କରଣ ପରିମାର୍ଜିତ
ମହିମାବ୍ଦ-୧୭୨ ଖ୍ରୀଷ୍ଟାବ୍ଦ-୧୯୯୮

## ଗ୍ରନ୍ଥ ପ୍ରାପ୍ତିସ୍ଥାନ

(୧)
ମହିମା ଧର୍ମାଲୋଚନା ପରିଷଦ
ମହିମାଶ୍ରମ ଅଲେଖ ଟୁଙ୍ଗୀ
ଚାନ୍ଦିନୀଚୌକ, କଟକ-୨

(୨)
ମହିମା ସମିତି ଗ୍ରନ୍ଥକୋଷ ଭବନ
ଗୁରୁମହିମା ଗାଦି
ପୋ: ଅ: ମହିମା ଗାଦି
ଜି: ଢେଙ୍କାନାଳ

ମୁଦ୍ରାକର :
ଶ୍ରୀ ଜାନକୀନାଥ ହାଲଦାର
ପାୟୋନିଅର ପ୍ରେସ୍, କଟକ-୮

ମୂଲ୍ୟ : ଟ ୧୦୦-୦୦ (ଏକଶତଟଙ୍କା)

ଅଲେଖ ବ୍ରହ୍ମ

# ଷଡ଼ ବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣି

# ଅଲେଖ ପରଂବ୍ରହ୍ମ-ଦର୍ଶନମ୍

( ମହିମାଧର୍ମ-ଦର୍ଶନମ୍ )

ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦଃ

ପ୍ରଣେତା
ବ୍ରହ୍ମାବଧୂତାଶ୍ରମୀ ପର ସନ୍ନ୍ୟାସୀ ବିଶ୍ୱନାଥ ବାବା

ଗ୍ରନ୍ଥ ଲିପିକରଣ ସହାୟକ ପର ସନ୍ନ୍ୟାସୀ ଅନନ୍ତଚରଣ ବାବା

ମହିମା ଧର୍ମାଲୋଚନା ପରିଷଦଦ୍ୱାରା ପ୍ରକାଶିତ

ସମ୍ପାଦକ :
ଭକ୍ତ ଶତ୍ରୁଘ୍ନ ନାଥ, ଏମ୍. ଏ. (ଲଣ୍ଡନ)

# ଆମୁଖ

**ଅଶାଶ୍ୱତାନି ଗାତ୍ରାଣି ବିଭବା ନୈବ ଶାଶ୍ୱତାଃ ।**
**ନିତ୍ୟଂ ସନ୍ନିହିତୋ ମୃତ୍ୟୁଃ କର୍ତ୍ତବ୍ୟୋ ଧର୍ମସଂଗ୍ରହଃ ।।**

ମହାମହିମା ଅଲେଖ ପ୍ରଭୁ ପରଂବ୍ରହ୍ମଙ୍କ ଅସୀମ ଅନୁକମ୍ପାରୁ ଏହି ସର୍ବବେଦ—ବେଦାନ୍ତସାରତତ୍ତ୍ୱ ଶିରୋମଣି "ଅଲେଖ ପରଂବ୍ରହ୍ମ ଦର୍ଶନ" ଗ୍ରନ୍ଥ ଅଦ୍ୟ ଲୋକଲୋଚନଗୋଚରକୁ ଆସିପାରିଛି । ପ୍ରବୁଦ୍ଧାବତାର ଶ୍ରୀମଦ୍ ଜଗଦ୍‌ଗୁରୁ ମହିମା ସ୍ୱାମୀଙ୍କ ପ୍ରଚାରିତ ମହିମା ଧର୍ମୋପଦେଶର ଲକ୍ଷ୍ୟ-ଉପଯୋଗୀ ଯେ ସମସ୍ତ ବିଷୟ ବେଦବେଦାନ୍ତାଦି ଶାସ୍ତ୍ରରେ ନିହିତ ଅଛି, ତାହା ସେହି ପ୍ରଭୁଙ୍କ ପ୍ରସାଦ ଓ ପ୍ରେରଣାବଳରେ ହିଁ ସମନ୍ୱୟ କରିବାଦ୍ୱାରା ଏ ଗ୍ରନ୍ଥର କଳେବର ପୁଷ୍ଟ ହୋଇଅଛି ।

ଆଦି-ପ୍ରାଗ୍‌ବୈଦିକ-ଯୁଗରେ ଆର୍ଯ୍ୟଋଷି ମୁନିମାନେ ଆଧ୍ୟାତ୍ମିକତା-ସାଧନ-ବଳରେ ଜଗତର କାରଣସ୍ୱରୂପ ଯେଉଁ ପ୍ରଭୁ ପରଂବ୍ରହ୍ମ ପରମାତ୍ମାଙ୍କର ସତ୍ତା ଉପଲବ୍ଧି କରିପାରିଥିଲେ, ତାହା ହିଁ ଉପନିଷଦମାନଙ୍କରେ ବିଷୟବସ୍ତୁ ସ୍ୱରୂପରେ ବର୍ଣ୍ଣିତ ହୋଇଅଛି । ସେହି ଉପନିଷଦମାନଙ୍କରେ ଯେଉଁ ବିଶୁଦ୍ଧାଦ୍ୱୈତ ବ୍ରହ୍ମଜ୍ଞାନସାଧନ ବିଘୋଷିତ ହୋଇ ମୋକ୍ଷ-ପଥ ସୂଚିତ ହୋଇଛି, ତାହାସବୁ ଗୁରୁମହିମା ସ୍ୱାମୀଙ୍କ ଉପଦେଶବାଣୀ ସହିତ ସମନ୍ୱୟ ଲାଭ କରିଅଛି । ସେହି ସମନ୍ୱୟର ଉତ୍କର୍ଷ ପ୍ରତିପାଦନ ନିମନ୍ତେ ବେଦବେଦାନ୍ତ-ବ୍ରହ୍ମସୂତ୍ରବ୍ୟାଖ୍ୟା ତଥା ଅନ୍ୟାନ୍ୟ ସ୍ମୃତି-ପୁରାଣାଦି ଭକ୍ତିମାର୍ଗବିଷୟକ ଗ୍ରନ୍ଥମାନଙ୍କର ତତ୍ତ୍ୱସବୁ ଗ୍ରହଣ କରି ଏହି ଗ୍ରନ୍ଥରେ ଏକାଧାରରେ ବିଶୁଦ୍ଧାଦ୍ୱୈତ ବ୍ରହ୍ମଜ୍ଞାନ ଭକ୍ତିଯୋଗ ପଲ୍ଲବିତ କରାଯାଇଅଛି ।

ଭାରତୀୟ ଦର୍ଶନମାନଙ୍କରେ ଯେଉଁସବୁ ସୃଷ୍ଟିତତ୍ତ୍ୱ ରହସ୍ୟ, ସୃଷ୍ଟିଲୀଳାର ବୈଚିତ୍ର୍ୟ, ଜଗତ ଓ ବ୍ରହ୍ମଙ୍କର ଭେଦାଭେଦ ଜ୍ଞାନ ତଥା ମାୟାବାଦ, ପ୍ରକୃତି-ପୁରୁଷବାଦ ଓ ପରମାଣୁବାଦ ପ୍ରଭୃତି ନେଇ ବହୁବିଧ ବୈମତ୍ୟ ଦୃଷ୍ଟିଗୋଚର ହୁଏ, ଏ ଗ୍ରନ୍ଥରେ ସେ ସବୁର ଯଥାଯଥ ପର୍ଯ୍ୟାଲୋଚନାଦ୍ୱାରା ଜିଜ୍ଞାସୁର ଭ୍ରାନ୍ତି ଅପନୋଦନପୂର୍ବକ ସାରବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ପ୍ରତିପାଦନ କରାହୋଇଅଛି । ଅଧିକନ୍ତୁ ଏହି ଗ୍ରନ୍ଥରେ ସୁଚିନ୍ତିତ ତଥା ଯୁକ୍ତିଯୁକ୍ତଭାବରେ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ସ୍ପଷ୍ଟାତିସ୍ପଷ୍ଟ ବର୍ଣ୍ଣନଦ୍ୱାରା ଅଦ୍ୱୈତ ସିଦ୍ଧାନ୍ତର ଅଦ୍ଭୁତ ମହିମା ବିକଶିତ ହୋଇଅଛି ଏବଂ ଜ୍ଞାନଭକ୍ତି ନିଷ୍କାମ କର୍ମଯୋଗର ଉତ୍କର୍ଷ ସଂସ୍ଥାପିତ ହୋଇଅଛି ।

ସଚ୍ଚିଦାନନ୍ଦମୟ ପ୍ରଭୁ ପରଂବ୍ରହ୍ମଙ୍କର ଅଭୟପଦପ୍ରସାଦରୁ ଶୁଦ୍ଧାଜ୍ଞାନ-ଭକ୍ତିର ସମ୍ପୂର୍ଣ୍ଣ ତତ୍ତ୍ୱର ପ୍ରତିଷ୍ଠା ଏହି ଗ୍ରନ୍ଥରେ ପ୍ରକାଶ କରାଯାଇ ମହିମାଧର୍ମର ବିଶୁଦ୍ଧାଗ୍ରର ଅବଲମ୍ବନଦ୍ୱାରା ଚିତ୍ତସଂଯମଯୋଗ-ସାଧନାରେ ଐକାନ୍ତିକ ବ୍ରହ୍ମନିଷ୍ଠାଭକ୍ତିର ତାତ୍ପର୍ଯ୍ୟ ପର୍ଯ୍ୟାୟକ୍ରମେ ସନ୍ନିବେଶିତ ହୋଇଅଛି ।

ଏହି ବିଶୁଦ୍ଧାଦ୍ୱୈତ ବ୍ରହ୍ମଜ୍ଞାନ-ଭକ୍ତିଯୋଗ-ସାଧନାଶ୍ରୟରେ ସନ୍ନ୍ୟାସୀ ଏବଂ ଗୃହସ୍ଥ ଉଭୟ ସମଭାବରେ ଅଲେଖ ପରଂବ୍ରହ୍ମଙ୍କ ଶରଣ ଦର୍ଶନ ତଥା ଉପାସନାପରାୟଣ ହୋଇ ଯେପରି ମାୟା-ମୋହରୁ ନିଷ୍କୃତି ଲାଭକରି ମୁକ୍ତିର ଚରମ ପଥରେ ଉପନୀତ ହେବେ, ଏ ବିଷୟ ଅସଂଦିଗ୍ଧଭାବରେ ଏହି ଗ୍ରନ୍ଥରେ ପ୍ରଦର୍ଶିତ ହୋଇଅଛି ।

ଏହି ବିଶୁଦ୍ଧାଦ୍ୱୈତ ବ୍ରହ୍ମଜ୍ଞାନ-ଭକ୍ତିଯୋଗସାଧନାବଳରେ ବିବେକୀ ମାନବ ନିଜ ସାଂସାରିକ ବାସନାଜନିତ ଅଜ୍ଞାନକୁ ଧ୍ୱସ୍ତକରି କର୍ମମୟ ଜୀବନରେ ମଧ୍ୟ ବେଦାନ୍ତବର୍ଣ୍ଣିତ ସତ୍ୟର ମହିମା ଉପଲବ୍ଧିପୂର୍ବକ କୈବଲ୍ୟ ସୁଖର ଅଧିକାରୀ ହେବ ଓ ସଦ୍‌ଜ୍ଞାନର ବିମଳ ପ୍ରଭାରେ ଆତ୍ମାକୁ ଆଲୋକିତ କରିବ । ଯଦି ନିତ୍ୟ, ସତ୍ୟ, ଅନନ୍ତ, ଅନାମ, ଅରୂପ, ଅବାଙ୍‌-ମନସଗୋଚର ଓ ମହାମହିମା ଅଲେଖ ପରଂବ୍ରହ୍ମଙ୍କ ଅଭୟ ପଦରେ ଆତ୍ମାକୁ ସଂଯୁକ୍ତ କରି ନିତ୍ୟ ସୁଖ ଓ ଆନନ୍ଦରୂପକ ଅମୃତପାନର ଆକାଙ୍‌କ୍ଷା ରଖ, ତେବେ ସେହି ପ୍ରଭୁଙ୍କ ଶରଣ, ସ୍ମରଣ, ଭଜନ ଓ ଦର୍ଶନର ସମବାୟରେ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, ହିଂସା, ଦ୍ୱେଷପ୍ରଭୃତି ଅସଦ୍‌ଗୁଣକୁ ସମୂଳେ ବିଧ୍ୱସ୍ତକରି ଶୁଭବାସନାର ଅନୁବର୍ତ୍ତୀ ହୋଇ ପ୍ରବୁଦ୍ଧଗୁରୁ ମହିମାସ୍ୱାମୀଙ୍କ ପ୍ରଶାନ୍ତ ଅଭୟବାଣୀରେ ଆସ୍ଥା ସ୍ଥାପନ କରି ଏହି ମହତ ଗ୍ରନ୍ଥର ଅନୁଶୀଳନରେ କୃତାର୍ଥ ହୁଅ ।

ଏହା ଉଲ୍ଲେଖଯୋଗ୍ୟ ଯେ, 'ମହିମାଧର୍ମ ପ୍ରତିପାଦକ' 'ମହିମାଧର୍ମ ଇତିହାସ' ପ୍ରଭୃତି ଗ୍ରନ୍ଥ ପ୍ରଣୟନ ପରେ ପୁନଶ୍ଚ ମହାମହିମାମୟ ପ୍ରଭୁଙ୍କ ଅନୁକମ୍ପାରେ ମହିମାଧର୍ମସମାଜର ପରମୋତ୍କୃଷ୍ଟ ପରମୋପାଦେୟ ସର୍ବଦର୍ଶନର ସାରସଂଗ୍ରହପୂର୍ବକ ସ୍ୱତନ୍ତ୍ର ମହିମାଧର୍ମର ଦର୍ଶନ ଗ୍ରନ୍ଥ ପ୍ରଣୟନରେ ଯତ୍ନବାନ୍ ହେଲୁ । ମହା:ମହିମାମୟ ପ୍ରଭୁ ପରଂବ୍ରହ୍ମ ପରମାତ୍ମା ତାହା ଏ ହୃଦୟରେ ପ୍ରବୋଧ କରାଇବାରୁ ଏ ବିଷୟରେ ସର୍ବବେଦ-ବେଦାନ୍ତାଦି ଶାସ୍ତ୍ରମାନଙ୍କର ସାରସଂଗ୍ରହରେ ଉଦ୍ୟମଶୀଳ ହୋଇ ଏହି ଗ୍ରନ୍ଥର ବିଷୟ ସଂଗ୍ରହପୂର୍ଣ୍ଣ ସମ୍ପାଦନ କରିବା ପରେ ପ୍ରିୟ ଅନନ୍ତଚରଣ ବାବା ମହୋଦୟ ବହୁ ପ୍ରୟାସ ସ୍ୱୀକାର କରି ଗ୍ରନ୍ଥ ଲିପିବଦ୍ଧ କରିବା କାର୍ଯ୍ୟରେ ସହଯୋଗ ପ୍ରଦାନପୂର୍ବକ ସ୍ୱୀୟ ସାଧୁତାର ଗୌରବ ବୃଦ୍ଧି ସଙ୍ଗେ ସଙ୍ଗେ ମହିମା-ଧର୍ମସମାଜର ଅଶେଷ ଉପକାର ସାଧନ କରିଅଛନ୍ତି ।

ପ୍ରବୁଦ୍ଧଗୁରୁ ମହିମାସ୍ୱାମୀଙ୍କ ଲୀଳାବସରରେ ଯେଉଁ ଚୌଷଠି ସିଦ୍ଧ ଅବଧୂତ ପରସନ୍ନ୍ୟାସୀ ହୋଇ ଜଗତରେ ବିଖ୍ୟାତ ହୋଇଥିଲେ, ସେହି ଅବଧୂତ ପରସନ୍ନ୍ୟାସୀ ସିଦ୍ଧ ପୁରୁଷ ଗୁରୁଜନଙ୍କ ମଧ୍ୟରୁ ଅପର୍ତ୍ତି ଦାସ ବାବା, କୃପାସିନ୍ଧୁ ଦାସ ବାବା, ମାଳାଦ୍ଧୁଁ ଦାସ ବାବା, ଅନାମ ଦାସ ବାବା, ସାନ କୃପାସିନ୍ଧୁ ଦାସ ବାବା, ନନ୍ଦ ଦାସ ବାବା, ଅନେଇଁ ଦାସ ବାବା ପ୍ରଭୃତି ବାବା ମହୋଦୟମାନଙ୍କଠାରୁ ମହିମାଧର୍ମର ଯେଉଁ ସବୁ ତତ୍ତ୍ୱ ଉପଦେଶ ଗ୍ରହଣ କରିଥିଲୁଁ, ତାହା ସବୁ ଗୁରୁଭ୍ରାତୃମହୋଦୟ ଶରଣପଞ୍ଜର ଦାସ ବାବା, ଦୀନବନ୍ଧୁ ଦାସ ବାବା ଚକ୍ରଧର ଦାସ ବାବା, ରାମାନନ୍ଦ ଦାସ ବାବା, ଅନିରୁଦ୍ଧ ଦାସ ବାବା, ପରମାନନ୍ଦ ଦାସ ବାବା, କରୁଣାକର ଦାସ ବାବା, ଗୋପାଳ ଦାସବାବା, ଗଣେଶ୍ୱର ଦାସ ବାବା, ବନମାଳୀ ଦାସ ବାବା, ଧୂଳିଆ ଅନନ୍ତ ଦାସ ବାବା, ନବୀନ ଦାସ ବାବା, ଯୋଗୀନ୍ଦ୍ର ଦାସ ବାବା, ଅନାଦି-ଚରଣ ଦାସ ବାବା, ଭଗବାନ ଦାସ ବାବା, ପଞ୍ଚୁ ଦାସ ବାବା ଓ ବାମନଚନ୍ଦ୍ର ଦାସ ବାବା, ପ୍ରଭୃତି ଗୁରୁଭ୍ରାତୃ ବାବା ମହୋଦୟମାନଙ୍କ ସହିତ ବହୁ ଆଲୋଚିତ ହୋଇଥିଲା ଓ ସେହି ସତ୍ୟ ତତ୍ତ୍ୱ ହୃଦୟରେ ଉଦ୍ଦୀପିତ ହୋଇ ମହିମାମୟଙ୍କ ଜ୍ଞାନାଲୋକ ଜାଗରିତ ହେଲା । ସେହି ଆଲୋକରେ ସମସ୍ତ ଜଗଦ୍‌ବାସୀଙ୍କୁ ଉଦ୍ଭାସିତ କରାଇବା ଉଦ୍ଦେଶ୍ୟରେ ଏହି ସୁମହତ୍ ଦର୍ଶନ-ଗ୍ରନ୍ଥର ପ୍ରଣୟନ କରାଗଲା ।

ଏକ ଗ୍ରାମରେ ଏକ ରାତ୍ର ଅବସ୍ଥାନ କରି ଆତିଥ୍ୟ ଧର୍ମପାଳନଦ୍ୱାରା ଦେଶ ପର୍ଯ୍ୟଟନ-ପୂର୍ବକ ଗ୍ରନ୍ଥ-ପ୍ରଣୟନ କାର୍ଯ୍ୟରେ ଲାଗିଥିବାରୁ କାଳ ବିଳମ୍ବ ହେବା ସ୍ୱାଭାବିକ; କିନ୍ତୁ ସେହି ମହିମାମୟ ମହାପ୍ରଭୁଙ୍କ ଅନୁକମ୍ପାରେ ଏ ଗ୍ରନ୍ଥ ସମ୍ପୂର୍ଣ୍ଣ ହେଲା । ତା'ପରେ ଆଉଥରେ ବିଶୁଦ୍ଧ-ଭାବେ ଲେଖାହେବା ଓ ଗ୍ରନ୍ଥ ମୁଦ୍ରଣାଦି କାର୍ଯ୍ୟରେ ମଧ୍ୟ ଅତ୍ୟଧିକ ସମୟ ଅତିବାହିତ ହୋଇ ଯାଇଅଛି ।

ମହିମା-ଧର୍ମ-ପ୍ରତିପାଦକ ଗ୍ରନ୍ଥର ପ୍ରକାଶ ପ୍ରାରମ୍ଭରୁ ଓ ଏହି ମହତ୍ ଗ୍ରନ୍ଥର ପ୍ରଣୟନ ସମ୍ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଯେଉଁ ସବୁ ଧର୍ମଗ୍ରନ୍ଥମାନ ପ୍ରକାଶ ପାଇଅଛି, ସେଥିରେ ମହିମା-ଧର୍ମସମାଜର ଯେ ସବୁ ସାଧୁ-ସନ୍ନ୍ୟାସୀ-ବୈରାଗୀମାନେ ଗୁରୁ-ଆଜ୍ଞାନୁବର୍ତ୍ତୀ ହୋଇ ଶ୍ରଦ୍ଧା-ସେବା ଭକ୍ତି ସହ ସବୁ ପ୍ରକାର ସାହାଯ୍ୟ ପ୍ରଦାନ କରି ଅଛନ୍ତି, ସେମାନଙ୍କର ସାଧୁଜୀବନ ମହତ୍ତ୍ୱଭାବରେ ସମ୍ପୂର୍ଣ୍ଣ ହୋଇ ପୂର୍ଣ୍ଣ ପରଂପଦ ପ୍ରାପ୍ତ ହେଉ, ଏଥିନିମିତ୍ତ ସୁକଲ୍ୟାଣ ପ୍ରଦାନ କରି ମହିମାମୟ ମହାପ୍ରଭୁ ପରଂବ୍ରହ୍ମଙ୍କୁ ପ୍ରାର୍ଥନା କରୁଅଛୁଁ ।

ଏହି ମହତ୍ ଗ୍ରନ୍ଥ ମହିମାଧର୍ମ-ସମାଜ-ଅଧ୍ୟକ୍ଷ ସଭାର ଅନୁମୋଦନ * ପରେ ଓଡ଼ିଶାର ସାହିତ୍ୟିକ ଧର୍ମପ୍ରାଣ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି (ପଦ୍ମଶ୍ରୀ), ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ (ପଦ୍ମଶ୍ରୀ), ବିଚ୍ଛନ୍ଦଚରଣ ପଟ୍ଟନାୟକ ବି.ଏ. ବି.ଏଲ୍, ଶତ୍ରୁଘ୍ନନାଥ ଏମ୍. ଏ. (ଲଣ୍ଡନ)

* ପରିଶିଷ୍ଟରେ ଅନୁମୋଦନଦ୍ରଷ୍ଟବ୍ୟ

ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ପ୍ରଭୃତି ଧର୍ମପ୍ରାଣ ବ୍ୟକ୍ତିମାନେ ଏ ଗ୍ରନ୍ଥ ଦେଖି ଏବଂ ଉକ୍ତ ମହତ୍ ଗ୍ରନ୍ଥର ସାର ମର୍ମ ଉପଲବ୍ଧି କରି ବହୁ ଉତ୍ସାହ ପ୍ରଦାନପୂର୍ବକ ଶୀଘ୍ର ଏହା ପ୍ରକାଶିତ ହେଉ ବୋଲି ମତ ଦେଲେ । ଓଡ଼ିଶାର ପ୍ରସିଦ୍ଧ ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ଏହି ଦର୍ଶନ ଗ୍ରନ୍ଥର ପ୍ରକାଶରେ ଉତ୍ସାହୀ ହୋଇଥିଲେ ।

ଅନନ୍ତର ଏ ଗ୍ରନ୍ଥର ପ୍ରକାଶ ସମ୍ବନ୍ଧରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଧର୍ମପ୍ରାଣ ଶ୍ରୀମାନ୍ ବାବୁ ନବକୃଷ୍ଣ ଚୌଧୁରୀଙ୍କ ସହିତ ପରାମର୍ଶ କରାଯାଇଥିଲା । ସେ ବାବୁ ଏ ଗ୍ରନ୍ଥ ଦେଖି ଅତୀବ ଆନନ୍ଦ ସହକାରେ ମତ ଦେଇ କହିଲେ ଯେ, ଏ ଗ୍ରନ୍ଥ ଶିକ୍ଷାମନ୍ତ୍ରୀଙ୍କୁ ଦିଆଯାଉ । ସେ ଯାହା ସ୍ଥିର କରି ଜଣାଇବେ । ତଦନୁଯାୟୀ ତତ୍କାଳୀନ ଶିକ୍ଷାମନ୍ତ୍ରୀ ଧର୍ମପ୍ରାଣ ଶ୍ରୀମାନ୍ ବାବୁ ରାଧାନାଥ ରଥଙ୍କ ସହିତ ପ୍ରକାଶ ନିମିତ୍ତ ପରାମର୍ଶ କରାଗଲା । ସେ ବାବୁ ଉକ୍ତ ଗ୍ରନ୍ଥ ଦେଖି ଅତୀବ ଆନନ୍ଦ ସହିତ ସୁପାରିଶ କରି ଉତ୍କଳ ବିଶ୍ୱବିଦ୍ୟାଳୟ-କର୍ତ୍ତୃପକ୍ଷଙ୍କ ନିକଟକୁ ପଠାଇଦେଲେ ।

ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷବୃନ୍ଦ ତାଙ୍କ ସିଣ୍ଡିକେଟ୍ ସଭାରେ ଏ ମହତ୍ ଗ୍ରନ୍ଥ ଦେଖି ଏହାର ସଂକ୍ଷିପ୍ତ ବିବରଣୀ ଚାହିଁଥିଲେ । ଉକ୍ତ ବିବରଣୀକୁ ଦେଖି ଏ ବିଦ୍ୱନ୍ମଣ୍ଡଳୀ ଏହି ମହତ୍ ଦର୍ଶନ ଗ୍ରନ୍ଥଟିର ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶନୋପଯୋଗୀ କି ନୁହେଁ, ଏ ବିଷୟରେ ଅବସରପ୍ରାପ୍ତ ଦର୍ଶନ ଅଧ୍ୟାପକ ଧର୍ମପ୍ରାଣ ଶ୍ରୀମାନ୍ ବାବୁ ରତ୍ନାକର ପତିଙ୍କ ନିକଟକୁ ପଠାଇଲେ । ସେ ବାବୁ ତାହା ଆମୂଳଚୂଳ ପାଠ କରି ଅଭିମତ ଦେଲେ ଯେ, ଏହି ବିଶାଳ ଦର୍ଶନ ଗ୍ରନ୍ଥ ଏକ ଅମୂଲ୍ୟ ସମ୍ପଦ, ସୁତରାଂ ବିଶ୍ୱବିଦ୍ୟାଳୟ ଏହା ପ୍ରକାଶ କରିବା ସମୁଚିତ; କିନ୍ତୁ ଲେଖାରେ ଅନେକ ଭାଷାଗତ ତ୍ରୁଟି ଥିବାରୁ ତାହାର ପରିବର୍ତ୍ତନ ଓ ପରିଶୋଧନ ହେବାର ଆବଶ୍ୟକତା ଅନୁଭବ କରାଯାଇଥିଲା । ଏହି ଅଭିମତ ବିଶ୍ୱବିଦ୍ୟାଳୟ-କର୍ତ୍ତୃପକ୍ଷବୃନ୍ଦ ଅବଗତ ହୋଇ ପୁନଶ୍ଚ ତାହା ଜଣାଇଲେ । ତେଣୁ ଆମେ ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କୁ ଏହାର ସଂଶୋଧନ ନିମିତ୍ତ ପ୍ରସ୍ତାବ ଦେବାରୁ ସେ ଗ୍ରନ୍ଥଟିକୁ ଦେଖି କେତେକ ସ୍ଥଳରେ ସଂଶୋଧନ କରିବା ନିର୍ଦ୍ଦେଶ ଦେଇ ବିଶ୍ୱବିଦ୍ୟାଳୟକୁ ପଠାଇଲେ ।

ଏହାପରେ ବିଶ୍ୱବିଦ୍ୟାଳୟ ପୁନଶ୍ଚ ଜଣାଇଲେ ଯେ, ଆପଣ ଆଉଥରେ ଉତ୍ତମ ସମୀକ୍ଷକଙ୍କଦ୍ୱାରା ଲେଖାଇ ବିଶ୍ୱବିଦ୍ୟାଳୟକୁ ଦେଲେ ତାହା ବିଶ୍ୱବିଦ୍ୟାଳୟରେ ପ୍ରକାଶ ଉପଯୋଗୀ ହେବ । ସେହି ଅନୁସାରେ ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଓ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଅନାମଚରଣ ସ୍ୱାଇଁଙ୍କ ସୁପରାମର୍ଶରେ ରେଭେନ୍ସା କଲେଜର ପୂର୍ବତନ ସଂସ୍କୃତ ଅଧ୍ୟାପକ ପଣ୍ଡିତ ଲିଙ୍ଗରାଜ ମିଶ୍ର ଉକ୍ତ ଗ୍ରନ୍ଥର ପୂର୍ବାର୍ଦ୍ଧ ସଂଶୋଧନ କରି ଲେଖି ଦେଇଅଛନ୍ତି । ଗ୍ରନ୍ଥର ଉତ୍ତରାର୍ଦ୍ଧର କେତେକ ଅଂଶ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ସଂଶୋଧନ

କର ଲେଖିଥିଲେ; ତା'ପରେ ଅବଶିଷ୍ଟାଂଶ ରେଭେନ୍‌ସା ସାହିତ୍ୟ କଲେଜର ଅଧ୍ୟାପକ ଗୋପାଳଗୋବିନ୍ଦ ଶାସ୍ତ୍ରୀ ଲେଖିଅଛନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ଶ୍ରୀମାନ୍ ବାବୁ ପ୍ରାଣକୃଷ୍ଣ ପରିଜା ପଦ୍ମଭୂଷଣ ଉକ୍ତ ମହତ୍ତ୍ୱଗ୍ରନ୍ଥ ତାଙ୍କ ଦୃଷ୍ଟି ପଥାରୂଢ଼ ହେବାଦିନଠାରୁ ପ୍ରକାଶିତ ହେବା ପର୍ଯ୍ୟନ୍ତ ଯେ ନିୟମିତ ଉଦ୍ୟମ କରିଆସୁଛନ୍ତି, ତାହା ତାଙ୍କର ସୁମହତ୍ ଧର୍ମପ୍ରାଣ ଜୀବନର ଆଦର୍ଶ ବୋଲି ବୁଝିବାକୁ ହେବ । ଏଥିନିମନ୍ତେ, ତାଙ୍କର ଐହିକ ଓ ପାରତ୍ରିକ ସର୍ବବିଧ ମଙ୍ଗଳ ନିମନ୍ତେ ମହିମାମୟ ମହାପ୍ରଭୁଙ୍କୁ ପ୍ରାର୍ଥନା କରୁଅଛୁଁ ।

ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ଶ୍ରୀମାନ୍ ବାବୁ ସଦାଶିବ ମିଶ୍ର ଗ୍ରନ୍ଥର ଗୁରୁତ୍ୱଦୃଷ୍ଟିରୁ ଏଥି ପ୍ରକାଶନପାଇଁ ବିଶ୍ୱବିଦ୍ୟାଳୟ ତରଫରୁ ଅକୁଣ୍ଠିତ ସାହାଯ୍ୟ କରିଛନ୍ତି । ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ଧର୍ମପ୍ରାଣ ଅଧ୍ୟାପକ ଶ୍ରୀମାନ୍ ବାବୁ ରତ୍ନାକର ପତି ଓ ଅଧ୍ୟାପକ ଶ୍ରୀ ଧନେଶ୍ୱର ମହାପାତ୍ର ମଧ୍ୟ ସାହାଯ୍ୟ କରିଅଛନ୍ତି । ପ୍ରଜାତନ୍ତ୍ର ପ୍ରେସର କର୍ମଚାରୀଗଣ ଏହି ଗୁରୁଦାୟିତ୍ୱ ବହନ କରି ଧନ୍ୟବାଦାର୍ହ ହୋଇଅଛନ୍ତି । ବିଶେଷକରି ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ଓ ସୁପରିଚିତ ଜନନାୟକ ଡକ୍ଟର ଶ୍ରୀମାନ୍ ବାବୁ ହରେକୃଷ୍ଣ ମହତାବ୍ ପ୍ରକାଶନ କାର୍ଯ୍ୟକୁ ଉତ୍ସାହିତ କରି ଓ ଗ୍ରନ୍ଥ ସମ୍ବନ୍ଧରେ ସ୍ୱମତ ପ୍ରକାଶ କରି ଧର୍ମପ୍ରାଣତାର ପରିଚୟ ଦେଇଅଛନ୍ତି । ଆଜି ମଧ୍ୟ ବିଶିଷ୍ଟ ସାହିତ୍ୟିକ ଧର୍ମପ୍ରାଣ ଡକ୍ଟର ବାବୁ ମାୟାଧର ମାନସିଂହ ଏ ଧର୍ମ ଦର୍ଶନ ଗ୍ରନ୍ଥ ଶୀଘ୍ର ପ୍ରକାଶ ହେଉ ବୋଲି ଶୁଭେଚ୍ଛା ଜଣାଇଥିଲେ । ଉପର୍ଯ୍ୟୁକ୍ତ ସୁଧୀଗଣ ଏହି ଗ୍ରନ୍ଥ ବିଷୟରେ ସାହାଯ୍ୟ ସହାନୁଭୂତି କରିଥିବାରୁ ସେମାନଙ୍କର ସୁମଙ୍ଗଳ ନିମିତ୍ତ ମହିମାମୟ ମହାପ୍ରଭୁଙ୍କୁ ପ୍ରାର୍ଥନା କରୁଅଛୁଁ ।

ଆଜି ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଅନୁରୋଧକ୍ରମେ ଧର୍ମପ୍ରାଣ ଅଧ୍ୟାପକ ଶ୍ରୀମାନ୍ ବାବୁ ରତ୍ନାକର ପତି ଏହି ବିରାଟ ଦର୍ଶନ ଗ୍ରନ୍ଥର 'ପ୍ରାକ୍-କଥନ' ଲେଖି ଦେଶବାସୀଙ୍କ ସମକ୍ଷରେ ଏହି ଦର୍ଶନର ସମ୍ୟକ୍ ପରିଚୟ ଦେଇ ଆମର ଅଶେଷ କଲ୍ୟାଣଭାଜନ ହୋଇଅଛନ୍ତି ।

ଏହାପରେ ଡକ୍ଟର ପ୍ରାଣକୃଷ୍ଣ ପରିଜା, ଡକ୍ଟର ସଦାଶିବ ମିଶ୍ର, ସମାଜ ସମ୍ପାଦକ ଶ୍ରୀ ରାଧାନାଥ ରଥ, ଶ୍ରୀ ଶତ୍ରୁଘ୍ନ ନାଥ ପ୍ରମୁଖ ସୁଧୀବୃନ୍ଦ ଏହି ମହତ୍ ଗ୍ରନ୍ଥର ପ୍ରକାଶନପାଇଁ ଅକୁଣ୍ଠିତ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଗ୍ରନ୍ଥ ଗୌରବ ଅନୁଭବ କରି ସ୍ୱ-ସ୍ୱ ମତ ପ୍ରକାଶ କରିଅଛନ୍ତି । ସେ ବାବୁମାନଙ୍କର ସର୍ବବିଧ ମଙ୍ଗଳପାଇଁ ମହାପ୍ରଭୁଙ୍କୁ ପ୍ରାର୍ଥନା କରୁଅଛୁଁ ।

ଉପସଂହାରରେ ବକ୍ତବ୍ୟ ଏହି ଯେ ଏହି ବିଶୁଦ୍ଧ ଦର୍ଶନ ଗ୍ରନ୍ଥ କେବଳ ମହାମହିମାମୟ ଅଦ୍ୱିତୀୟ ଅଲେଖ ପ୍ରଭୁ ପରଂବ୍ରହ୍ମଙ୍କ ସ୍ମରଣ ଚିନ୍ତନରେ ଆରବ୍ଧ ହୋଇ ସେହି ମହାପ୍ରଭୁଙ୍କ ମହିମା ବର୍ଣ୍ଣନରେ ପରିପୁଷ୍ଟ ଏବଂ ସମ୍ପୂର୍ଣ୍ଣ ହୋଇଥିବାରୁ ସେହି ମହାପ୍ରଭୁ ଅଲେଖପରଂବ୍ରହ୍ମଙ୍କ ଅଭୟ ପଦ-କମଳରେ ଅର୍ପିତ ହେଲା ।

ବିଭିନ୍ନ ମତବାଦ ଉପରେ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ମହିମା ଯେପରି ଉଦ୍ଦିଷ୍ଟ ହୋଇଅଛି ତାହା ଗ୍ରନ୍ଥରେ ସାରଭୂତ ଭାବେ ବର୍ଣ୍ଣିତ ।

ଅଲେଖ ବ୍ରହ୍ମାଶ୍ରିତ—

**ବିଶ୍ୱନାଥ ବାବା**

# ଅଲେଖ ପ୍ରଭୁ ପରଂବ୍ରହ୍ମପଦେ ଶରଣମ୍

ସର୍ବ ବେଦ ବେଦାନ୍ତ ସାରତତ୍ତ୍ୱ ଶିରୋମଣି ଅଲେଖ ପରଂବ୍ରହ୍ମ ଦର୍ଶନ (ପୂର୍ବାର୍ଦ୍ଧ) ଦ୍ୱିତୀୟ ସଂସ୍କରଣ "ମହିମାଧର୍ମାଲୋଚନା ପରିଷଦ" ଆନୁକୂଲ୍ୟରେ ପ୍ରକାଶିତ ହେବା ମହିମା-ଧର୍ମର ଗୌରବୋଜ୍ଜ୍ୱଳ ଭବିଷ୍ୟତର ସୂଚନା ଦିଏ । ଉକ୍ତ ଗ୍ରନ୍ଥ ଅଲଭ୍ୟ ହେବାରୁ ଜିଜ୍ଞାସୁ ପାଠକ ବର୍ଗ ପରିଷଦକୁ ଓ ଆମ୍ଭଙ୍କୁ ପୁନଃ ମୁଦ୍ରଣ ପାଇଁ ବାରମ୍ବାର ଅନୁରୋଧ କରିଥିଲେ ।

ଉକ୍ତ ଗ୍ରନ୍ଥର ରଚୟିତା ପରମ-ପୂଜ୍ୟ ବ୍ରହ୍ମାବଧୂତ ବିଶ୍ୱନାଥ ବାବା ମହୋଦୟ ମହିମାଧର୍ମ ପ୍ରଚାରର ପ୍ରସାରରେ ଆପ୍ରାଣ ଉଦ୍ୟମ କରି ଆସୁଥିଲେ । ମହିମାଧର୍ମରେ ଦର୍ଶନ ଗ୍ରନ୍ଥର ଅଭାବ ଅନୁଭବ କରି, ମହିମାଧର୍ମର 'ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ' ଦର୍ଶନକୁ ବେଦ ବେଦାନ୍ତାଦି ମତେ ପ୍ରମାଣିତ ତଥା ପ୍ରତିଷ୍ଠିତ କରାଇଛନ୍ତି । ଲବ୍ଧ ପ୍ରତିଷ୍ଠିତ ଦାର୍ଶନିକ ଅଧ୍ୟାପକ ରତ୍ନାକର ପତି ଉକ୍ତ ଗ୍ରନ୍ଥର 'ପ୍ରାକ୍ କଥନ'ରେ 'ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ'ର ବିଶ୍ଳେଷଣ କରି ସାବ୍ୟସ୍ତ କରିଛନ୍ତି । ବ୍ରହ୍ମାବଧୂତ ବିଶ୍ୱନାଥ ବାବା ମହୋଦୟ ମହିମାଧର୍ମ ଦର୍ଶନର ପ୍ରଖ୍ୟାତ ପ୍ରାମାଣିକ ବ୍ୟାଖ୍ୟାକାର । ତାଙ୍କର ଏହି ଗ୍ରନ୍ଥ, ଜ୍ଞାନ, ଭକ୍ତି ଓ କର୍ମର ଏକ ଆଲେଖ୍ୟ । ଏହା ମାନବ ସମାଜର ଐକ୍ୟ ସ୍ଥାପନ କରିବା ସଙ୍ଗେ ସଙ୍ଗେ ଅଶେଷ କଲ୍ୟାଣ ସାଧନ କରି ପାରିବ ।

ଉକ୍ତ ଦର୍ଶନ ଗ୍ରନ୍ଥର ପ୍ରଥମ ସଂସ୍କରଣ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃକ ପ୍ରକାଶିତ ହୋଇଥିଲା । ଅଧୁନା ଦ୍ୱିତୀୟ ସଂସ୍କରଣର ପ୍ରକାଶନ କାର୍ଯ୍ୟରେ "ମହିମା ଧର୍ମାଲୋଚନା ପରିଷଦ" ସଭ୍ୟବୃନ୍ଦ ସକ୍ରିୟ ଅଂଶ ଗ୍ରହଣ ପୂର୍ବକ ଧର୍ମାନୁଷ୍ଠାନ କାର୍ଯ୍ୟରେ ସହାୟତା ଓ ସହଯୋଗ କରିଥିବାରୁ, ମହିମାମୟ ମହାପ୍ରଭୁ ଅଲେଖ ପରଂବ୍ରହ୍ମ ସେମାନଙ୍କର ସର୍ବ ମଙ୍ଗଳପ୍ରଦ ହୁଅନ୍ତୁ ।

ଅଲେଖ ପରଂବ୍ରହ୍ମପଦେ ସମର୍ପିତ

**ଭରତ ବାବା**

# ପରିଶିଷ୍ଟ

## ମହିମା ଧର୍ମ ସମାଜ ଅଧ୍ୟକ୍ଷ
## ସଭାର ଅନୁମୋଦନ

ମହିମାଧର୍ମର ସଂସ୍ଥାପକ ବିଶ୍ୱବନ୍ଦନୀୟ ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ ମହିମାଧର୍ମର ଯେଉଁ ସତ୍ୟ ସଦୁପଦେଶ ପ୍ରଦାନ କରିଅଛନ୍ତି, ସେ ସବୁର କେତେକ ବିବରଣୀ ଓ ଗୁରୁ ମହିମା ସ୍ୱାମୀଙ୍କର ପରିଚୟ ଭକ୍ତକବି ଭୀମସେନ ଭୋଇ ଓ ଜୟକୃଷ୍ଣ ପ୍ରଭୃତି ସ୍ୱ-କୃତ କବିତାମାନଙ୍କରେ ପ୍ରକାଶ କରିଅଛନ୍ତି ।

ଗୁରୁ ମହିମାସ୍ୱାମୀଙ୍କ ଉପଦେଶ ଅନୁସାରେ ପ୍ରଥମେ ଯେଉଁ ଚୌଷଠି ସିଦ୍ଧ ଅବଧୂତ ପରିସନ୍ନ୍ୟାସପନ୍ଥା ଗ୍ରହଣ କରିଥିଲେ, ସେହି ଉପଦେଶ ଅନୁସାରେ ମହିମା ଧର୍ମ-ସମାଜ ପରମ୍ପରାକ୍ରମେ ପରିଚାଳିତ ହୋଇ ଆସୁଅଛି । ସେହି ଅଧ୍ୟକ୍ଷ ସିଦ୍ଧ ବାବାବୃନ୍ଦଙ୍କ ମହନୀୟ ଗୁରୁଆଜ୍ଞା ନିୟମ ପାଳନ କରି ଆମ୍ଭେମାନେ କ୍ରମାନ୍ୱୟେ ଅପର ସନ୍ନ୍ୟାସରୁ ଅବଧୂତ ପରିସନ୍ନ୍ୟାସପନ୍ଥା ଗ୍ରହଣ କରିଅଛୁଁ ।

ସେହି ଗୁରୁମହିମା ସ୍ୱାମୀଙ୍କ ଉପଦେଶାନୁସାରେ ଯେଉଁ "ମହିମାଧର୍ମ-ପ୍ରତିପାଦକ", "ମହିମାଧର୍ମଃଇତିହାସ" ପ୍ରଭୃତି ଗ୍ରନ୍ଥ ପ୍ରକାଶ କରାଯାଇଅଛି, ତଦନୁସାରେ ମହିମା-ଧର୍ମସମାଜର ପ୍ରକୃତ ସନ୍ନ୍ୟାସୀ ଓ ଗୃହସ୍ଥନିର୍ବିଶେଷରେ ସମସ୍ତେ ସେହି ନିୟମମାନ ପରିଚାଳିତ ହେଉ ଅଛନ୍ତି । ସେହି ନିୟମ ସ୍ଥିରତର ସିଦ୍ଧାନ୍ତରୂପେ ଚିରକାଳ ମହିମା ଧର୍ମ-ସମାଜର ଉପଜୀବ୍ୟ ହୋଇ ମଧ୍ୟ ରହିଅଛି ।

ଏହି ସର୍ବ ବେଦବେଦାନ୍ତ ସାରତତ୍ତ୍ୱଶିରୋମଣି "ମହିମାଧର୍ମ ଦର୍ଶନ" ନାମକ ବିରାଟ ଗ୍ରନ୍ଥ ପ୍ରଣୀତ ହୋଇ ଅଦ୍ୟ ଏହି ପ୍ରଭୁ ପୂର୍ଣ୍ଣିମା ଶୁଭ ଦିନରେ ଅଧ୍ୟକ୍ଷ ସଭାରେ ପଠିତ ହେଲା ଏବଂ ଏହାଦ୍ୱାରା ଆମ ମହିମାଧର୍ମ ସମାଜର ଚିର ଗୌରବ ଅଶେଷଭାବେ ସମୃଦ୍ଧ ହେବ ବୋଲି ଆଶା କରୁ । ଏହା ଜଗତର ବିଦ୍ୱନ୍ମଣ୍ଡଳୀକୁ ମଧ୍ୟ ଗୌରବାନ୍ୱିତ କରାଇ ସେମାନଙ୍କୁ ସତ୍ୟ ଧର୍ମରେ ଅନୁପ୍ରାଣିତ କରିବ । ଏହି ଦର୍ଶନ ଗ୍ରନ୍ଥ ମହିମା-ଧର୍ମସମାଜର ତଥା—ମୁମୁକ୍ଷୁ ମାନବ ସମାଜର ଏକମାତ୍ର ଆଦର୍ଶଭାବରେ ଚିରକାଳ ସୁପ୍ରତିଷ୍ଠିତ ହୋଇ ରହିବ । ମହାମହିମା ମହାପ୍ରଭୁ ଜଗଦ୍‌ବାସୀଙ୍କୁ ସଦ୍‌ଜ୍ଞାନ-ପ୍ରଦାନପୂର୍ବକ ଏହି ମହିମାଧର୍ମ ଦର୍ଶନରେ ଅନୁସ୍ୟୂତ କରାଇ ମହିମାଧର୍ମ ପଥରେ ଅନୁପ୍ରାଣିତ କରନ୍ତୁ । ଏହାହିଁ ମହିମାଧର୍ମସମାଜ ଅଧ୍ୟକ୍ଷବୃନ୍ଦଙ୍କର ଅଲେଖ ପ୍ରଭୁ ପରଂବ୍ରହ୍ମ ପରମାତ୍ମାଙ୍କ ପଦରେ ଚିର ନିବେଦନ ।

କଲ୍ୟାଣାର୍ଥଂ ପ୍ରଶାନ୍ତ୍ୟୈ ଜଗତ ନିବସତାଂ ପ୍ରାଣିନାଂ ପୋଷଣାୟ ।
ଜ୍ଞାନାୟାନାମୟାୟ ସ୍ଫୁଟ କଲୁଷବିଷୋଚ୍ଛୋଷଣାୟାଭୟାୟ
ଶୁଦ୍ଧଂ ସିଦ୍ଧଂ ବିବୋଧାତ୍ମକ ମଜମଜରଂ ବାଙ୍ମନୋଽତୀତ ମେକଂ
ନିତ୍ୟଂ ଯାମୋ ହ୍ୟଲେଖଂ ଶରଣ ମଭୟଦଂ ଭାସମାନଂ ମହିମ୍ନା ॥

ଅନୁବାଦ :—

ଜଗଦ୍ବାସୀ ପ୍ରାଣିମାନଙ୍କର କଲ୍ୟାଣ, ପ୍ରଶାନ୍ତି, ପୋଷଣ, ଜ୍ଞାନ, ଅନାମୟ, ପାପ-ରୂପକ ବିଷର ଶୋଷଣ ତଥା ଅଭୟ ପ୍ରାପ୍ତି ଉଦ୍ଦେଶ୍ୟରେ ଶୁଦ୍ଧ, ସିଦ୍ଧ, ବିବୋଧ (ଜ୍ଞାନ) ସ୍ୱରୂପ; ଜନ୍ମରହିତ, ଜରାବର୍ଜିତ, ବଚନ ଓ ମନର ଅଜ୍ଞାତ, ଅଦ୍ୱୟାତ୍ମକ ସେହି ନିତ୍ୟ ଅଭୟ-ଦାନକାରୀ ଓ ମହିମାରେ ଦୀପ୍ତ ଅଲେଖ (ପ୍ରଭୁ ପରଂବ୍ରହ୍ମ)ଙ୍କୁ ଆମ୍ଭେମାନେ ଶରଣ ଯାଉଅଛୁଁ ।

## ମହିମା-ଧର୍ମ ସମାଜର ଅଧ୍ୟକ୍ଷ :—

ବ୍ରହ୍ମ ଅବଧୂତାଶ୍ରମ ପର ସନ୍ନ୍ୟାସୀ ସିଦ୍ଧସାଧୁବୃନ୍ଦ :—

| | | | | | | | | |
|---|---|---|---|---|---|---|---|---|
| ଦୀନବନ୍ଧୁ | ଦାସ | ବାବା | ଏକାଦଶୀ | ଦାସ | ବାବା | ଅନାଦିଚରଣ | ଦାସ | ବାବା |
| ଅନିରୁଦ୍ଧ | ,, | ,, | ବିଶ୍ୱନାଥ | ,, | ,, | ରାମଚନ୍ଦ୍ର | ,, | ,, |
| ଗୋପାଳ | ,, | ,, | ବାମନଚନ୍ଦ୍ର | ,, | ,, | ଶ୍ୟାମ | ,, | ,, |
| ବିଜବ | ,, | ,, | ମୋତିରାମ | ,, | ,, | ଢେଙ୍ଗୁଳ | ,, | ,, |
| ରମାନନ୍ଦ | ,, | ,, | ଅନନ୍ତଚରଣ | ,, | ,, | କେଶବ | ,, | ,, |

ଆଶ୍ୱିନ ପ୍ରଭୁ ପୂର୍ଣ୍ଣିମା
ମହିମାବ୍ଦ—୧୨୬
ଖ୍ରୀଷ୍ଟାବ୍ଦ—୧୯୫୨

## ମହିମା

{ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଅବସରପ୍ରାପ୍ତ ରେଭେନ୍‌ସା କଲେଜର ଅଧ୍ୟାପକ ଓ ବିଶିଷ୍ଟ ଦାର୍ଶନିକ ଶ୍ରୀ ରତ୍ନାକର ପତି ଏମ୍. ଏ. ଲେଖିଅଛନ୍ତି }

# ପ୍ରାକ୍-କଥନ

ମହିମାଧର୍ମର ବରିଷ୍ଠାଚାର୍ଯ୍ୟ ଏବଂ ଢେଙ୍କାନାଳ ମହିମା-ଗାଦିର ପରସନ୍ନ୍ୟାସୀ ଅବଧୂତ ବିଶ୍ୱନାଥବାବାଙ୍କ ରଚିତ "ସର୍ବବେଦବେଦାନ୍ତ ସାରତତ୍ତ୍ୱଶିରୋମଣି "ମହିମାଧର୍ମ ଦର୍ଶନ" ନାମକ ଏହି ଗ୍ରନ୍ଥଟି ଉତ୍କଳର ସାହିତ୍ୟ-କ୍ଷେତ୍ରରେ ଧର୍ମଦର୍ଶନ-ତତ୍ତ୍ୱସମ୍ବଳିତ ଏକ ଉତ୍କୃଷ୍ଟ ଏବଂ ପ୍ରକାଣ୍ଡ ଗ୍ରନ୍ଥ । ଏଥିରେ ଯେଉଁସବୁ ତତ୍ତ୍ୱ ନିରୂପିତ ହୋଇଅଛି, ସେ ସମସ୍ତ ଭାରତର ବହୁ ପ୍ରାଚୀନ ବେଦ-ବେଦାନ୍ତର ସୂକ୍ତ ତଥା ସୂତ୍ରମାନଙ୍କ ଉପରେ ପ୍ରତିଷ୍ଠିତ । ବିବିଧ ବେଦ, ବେଦାନ୍ତ ବା ଉପନିଷଦ୍, ପୁରାଣ, ଧର୍ମଶାସ୍ତ୍ରପ୍ରଭୃତି ବିଭିନ୍ନ ଗ୍ରନ୍ଥର ଉକ୍ତିଦ୍ୱାରା ସମର୍ଥିତ, ଦାର୍ଶନିକ ତଥା ଧର୍ମମତର ପୁଙ୍ଖାନୁପୁଙ୍ଖ ଆଲୋଚନା ଓ ତନ୍ନିହିତ ସିଦ୍ଧାନ୍ତଗୁଡ଼ିକରେ ଗ୍ରନ୍ଥଟି ପରିପୂର୍ଣ୍ଣ । ଗ୍ରନ୍ଥକାର ବିଭିନ୍ନ ଶାସ୍ତ୍ରଭିତ୍ତିରେ ଜନସାଧାରଣଙ୍କର କଲ୍ୟାଣ ସାଧନ ନିମିତ୍ତ "ମହିମା ଧର୍ମ" ନାମକ ନିଜର ଧର୍ମ-ମତ ଉପସ୍ଥାପିତ କରିଅଛନ୍ତି । ଅବଶ୍ୟ ବିଭିନ୍ନ ଶାସ୍ତ୍ର ଓ ମୁନିଋଷିମାନଙ୍କର ଧର୍ମ-ତତ୍ତ୍ୱ ତଥା ଜୀବନତତ୍ତ୍ୱ ବିଭିନ୍ନ, ମାତ୍ର ଏ ଗୁଡ଼ିକର ସାର ଗ୍ରହଣ କରି ଏକ ଧର୍ମ-ଦର୍ଶନରେ ଉପନୀତ ହେବା, ସେମାନଙ୍କ ମଧ୍ୟରେ ଏକ ମହାସମନ୍ୱୟ ସ୍ଥାପନ କରିବା ସହଜସାଧ୍ୟ ନୁହେଁ । ତଥାପି ପ୍ରଣେତା (ନିଜର ପର୍ଯ୍ୟଟକ ଜୀବନଯାପନ ମଧ୍ୟରେ) ଏ ଦିଗରେ ଯେଉଁ ଆପ୍ରାଣ ଚେଷ୍ଟା କରି ଗ୍ରନ୍ଥଟି ଆମ ଆଗରେ ଉପସ୍ଥାପିତ କରିଅଛନ୍ତି, ତାହା ଏକ ଅଶେଷ ଆନନ୍ଦର ବିଷୟ । ଉତ୍କଳ ବିଶ୍ୱବିଦ୍ୟାଳୟ ଏହାର ମହତ୍ତ୍ୱ ତଥା ଉପାଦେୟତା ଉପଲବ୍ଧି କରି ମୁଦ୍ରଣଭାର ବହନପୂର୍ବକ ଏହାର ପ୍ରକାଶନରେ ସାହାଯ୍ୟ କରିବାଦ୍ୱାରା ବିଜ୍ଞତାର ପରିଚୟ ଦେଇଅଛନ୍ତି ବୋଲି କହିବାକୁ ହେବ ।

ଏହି ଗ୍ରନ୍ଥଟି ଚାରିଗୋଟି ପାଦରେ ବିଭକ୍ତ । ପ୍ରତ୍ୟେକ ପାଦରେ ଚାରିଗୋଟି ଅନୁପାଦ ରହିଅଛି । ପ୍ରତ୍ୟେକ ପାଦର ବିଷୟବସ୍ତୁ ଅନୁପାଦଗୁଡ଼ିକରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚିତ ହୋଇ ପ୍ରତିପାଦିତ ହୋଇଅଛି ଏବଂ ଏହି ଆଲୋଚନାଗୁଡ଼ିକର

ଭିତ୍ତିରେ ଲେଖକଙ୍କ ପ୍ରସ୍ତୁତ 'ମଧ୍ୱମାଧର୍ମ'ର ସାରବସ୍ତୁ ପ୍ରତିପାଦିତ ହୋଇଅଛି । ବର୍ତ୍ତମାନ ପୂର୍ବାର୍ଦ୍ଧ ନାମରେ ପ୍ରକାଶିତ ହୋଇଥିବା ପ୍ରଥମ ଦୁଇ ପାଦର ଆଲୋଚନା ଗତ ବିଷୟଗୁଡ଼ିକର ଏକ ସଂକ୍ଷିପ୍ତ ପରିଚୟ ଦେବା ଆବଶ୍ୟକ ମନେ କରୁଁ ।

ଏହି ମଧ୍ୱମାଧର୍ମ ଖ୍ରୀଷ୍ଟୀୟ ଊନବିଂଶ ଶତାବ୍ଦୀର ପ୍ରାୟ ପ୍ରଥମ ପାଦଶେଷ ଭାଗରେ ଅଭିଭୂତକର୍ମା ମଧ୍ୱମାସ୍ୱାମୀଙ୍କକର୍ତ୍ତୃକ ପ୍ରବର୍ତ୍ତିତ ହୋଇଥିଲା । ( ଏ ସମ୍ପର୍କରେ ବିଶେଷ ଆଲୋଚନା ନ କରି ଗ୍ରନ୍ଥକାରଙ୍କ 'ମଧ୍ୱମାଧର୍ମର ଇତିହାସ' ପୁସ୍ତକ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଅଛୁଁ ) ଉକ୍ତ ପୁସ୍ତକରେ ଦେଖିବାକୁ ମିଳିବ ଏହି ଧର୍ମମତ କିପରି ସର୍ବପ୍ରଥମେ ଉତ୍କଳରେ ଉତ୍ପତ୍ତି ଲାଭ କରି ଉତ୍କଳର ବିଭିନ୍ନ ଅଞ୍ଚଳ ଓ ଭାରତର ଅନ୍ୟାନ୍ୟ କେତେକ ପ୍ରଦେଶରେ ପ୍ରଚଳିତ ତଥା ପ୍ରତିଷ୍ଠିତ ହୋଇ ମଧ୍ୱମାସ୍ୱାମୀଙ୍କ ଶିଷ୍ୟ-ପ୍ରଶିଷ୍ୟମାନଙ୍କ-ଦ୍ୱାରା ପ୍ରସାରିତ ହେବାରେ ଲାଗିଅଛି ।

କହିବା ଅସମୀଚୀନ ହେବ ନାହିଁ ଯେ ପ୍ରାୟ ପ୍ରତ୍ୟେକ ଧର୍ମମତ କୌଣସି ନା କୌଣସି ଏକ ଦାର୍ଶନିକ ମତ ଉପରେ ପ୍ରତିଷ୍ଠିତ । ସୁତରାଂ ଧର୍ମବିଶେଷର ମର୍ଯ୍ୟାଦା ତଥା ଉପାଦେୟତା ତାହାର ଦାର୍ଶନିକ ଭିତ୍ତିର ବିଶ୍ଳେଷଣରୁ ନିରୂପିତ ହୋଇଥାଏ । ଗ୍ରନ୍ଥକାରଙ୍କର ଏହି ପୁସ୍ତକଟିରେ ପ୍ରତିପାଦିତ 'ମଧ୍ୱମାଧର୍ମ' ଏ ନିୟମର ବହିର୍ଭୂତ ନୁହେଁ । ତେଣୁ ଏହି ପ୍ରକାଣ୍ଡ ଗ୍ରନ୍ଥରେ ଦୁଇଟି ସାଧାରଣ ବିଭାଗ ପରିଦୃଷ୍ଟ ହୁଏ, ଯଥା—ଦର୍ଶନ ବିଭାଗ ଓ ତଦ୍‌ଭିତ୍ତିକ ଧର୍ମମତ । ଦାର୍ଶନିକ ବିଭାଗରେ ଗ୍ରନ୍ଥକାର ସର୍ବ ପ୍ରଥମେ ବେଦ ଶବ୍ଦର ଅର୍ଥ ଓ ତାହାର ବିଭାଗଗୁଡ଼ିକର ଆଲୋଚନା କରି ତତ୍ସମ୍ବନ୍ଧୀୟ ତତ୍ତ୍ୱଗୁଡ଼ିକର ବିଶଦ ଆଲୋଚନାରେ ପ୍ରବୃତ୍ତ ହୋଇଅଛନ୍ତି । ଯେଉଁ ଦାର୍ଶନିକ ମତ ଉପରେ 'ମଧ୍ୱମାଧର୍ମ' ପ୍ରତିଷ୍ଠିତ, ତାହାର ଏକ ତୁଳନାତ୍ମକ ବିଶଦ ଆଲୋଚନା କରି ବେଦ ଓ ତଦନ୍ତର୍ଗତ ଜ୍ଞାନକାଣ୍ଡ ବା ଉପନିଷଦମାନଙ୍କର ଭିତ୍ତିରେ ପ୍ରତିପାଦିତ କରିବାକୁ ଯାଇଅଛନ୍ତି । ଏ ସଂପର୍କରେ ସେ ଶଙ୍କରଙ୍କର ଅଦ୍ୱୈତବାଦ, ରାମାନୁଜଙ୍କର ବିଶିଷ୍ଟାଦ୍ୱୈତବାଦ, ମଧ୍ୱାଚାର୍ଯ୍ୟଙ୍କର ଦ୍ୱୈତବାଦ ଓ ବଲ୍ଲଭାଚାର୍ଯ୍ୟଙ୍କର ଶୁଦ୍ଧାଦ୍ୱୈତବାଦ ପ୍ରଭୃତି ଦାର୍ଶନିକ ମତଗୁଡ଼ିକ ଖଣ୍ଡନ କରି ବିଶୁଦ୍ଧାଦ୍ୱୈତ ମତବାଦକୁ ପ୍ରତିଷ୍ଠାପନ କରିଅଛନ୍ତି । ସେ ଏହି ମତକୁ 'ବିଶୁଦ୍ଧା-ଦ୍ୱୈତବାଦ' ବା 'ମଧ୍ୱମାଧର୍ମ ଦର୍ଶନ' ନାମ ଦେଇଅଛନ୍ତି । ଏହି ସମ୍ପର୍କରେ ଶଙ୍କରଙ୍କର ଅଦ୍ୱୈତବାଦ ଓ ରାମାନୁଜଙ୍କର ବିଶିଷ୍ଟାଦ୍ୱୈତବାଦଠାରୁ ଏ ମତଟି କିପରି ପୃଥକ୍, ତାହାର ସଂକ୍ଷିପ୍ତ ସୂଚନା ଦିଆଯାଉଅଛି । ସେ କହିଅଛନ୍ତି, ଶଙ୍କରାଚାର୍ଯ୍ୟ ଶ୍ରୁତିସକଳର ରହସ୍ୟ ଅନୁଭବ କରି 'ବ୍ରହ୍ମସୂତ୍ର'ର ବ୍ୟାଖ୍ୟାନାବସରରେ ବ୍ରହ୍ମ ଏକ ଓ ଅଦ୍ୱିତୀୟ ବୋଲି ପ୍ରମାଣିତ କରି ଅଦ୍ୱୈତାବାଦର ସିଦ୍ଧାନ୍ତ ପ୍ରତିପାଦନ କରିଅଛନ୍ତି । ଶଙ୍କରଙ୍କର ଅଦ୍ୱୈତବାଦକୁ ସେ ନିର୍ବିଶେଷାଦ୍ୱୈତବାଦ ବୋଲି କହିଅଛନ୍ତି । "ନିର୍ବିଶେଷାଦ୍ୱୈତବାଦର ସଂକ୍ଷିପ୍ତ ମର୍ମ ଏହି ଯେ ବ୍ରହ୍ମ ଏକରୂପ; ତାହାର ଅନ୍ୟ କୌଣସି ରୂପବିଶେଷ ଅର୍ଥାତ୍ ସଜାତୀୟ ବିଜାତୀୟ ଓ ସ୍ୱଗତ

ଭେଦ ନାହିଁ । ଏହି ସକଳ କେବଳ ପ୍ରତିଭାସ ମାତ୍ର । ବିଶ୍ୱ ମାୟିକ, ସୁତରାଂ ମିଥ୍ୟା ।" ଶଙ୍କର ଅବିଦ୍ୟା ବା ମାୟାକୁ ଏକ ଶକ୍ତିରୂପେ ଗ୍ରହଣ କରି ତତ୍‌କର୍ତ୍ତୃକ ଉପହିତ ବା ଉପାଧିଗ୍ରସ୍ତ ବ୍ରହ୍ମଙ୍କୁ ଈଶ୍ୱରରୂପେ କଳ୍ପନା କରି ଜଗତକୁ ବ୍ୟାଖ୍ୟା କରିବାକୁ ଯାଇଅଛନ୍ତି, ମାତ୍ର ଗ୍ରନ୍ଥକାର ଏହି ମାୟାବାଦକୁ ଖଣ୍ଡନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ, ଜଗତର ଉତ୍ପତ୍ତି ଓ ପ୍ରକ୍ରିୟାର ବ୍ୟାଖ୍ୟାରେ ମାୟାର ଆବଶ୍ୟକତା ନାହିଁ । କେବଳ ଏକ ଅଦ୍ୱିତୀୟ, ଅଲେଖ ବା ନିର୍ଗୁଣ ବ୍ରହ୍ମଙ୍କର ମହିମାରୁ ହିଁ ଜଗତର ଉତ୍ପତ୍ତି ଘଟିଅଛି ।

ରାମାନୁଜ ପୁଣି ତାଙ୍କ ବିଶିଷ୍ଟାଦ୍ୱୈତବାଦ ସ୍ଥାପନ କରିବାକୁ ଯାଇ କହନ୍ତି, ବ୍ରହ୍ମ ସଜାତୀୟ-ବିଜାତୀୟ-ଭେଦଶୂନ୍ୟ ହେଲେହେଁ ତାଙ୍କର ସ୍ୱଗତ ଭେଦ ରହିଅଛି । "ଯେପରି ବୃକ୍ଷ ଏକ ହେଲେ ମଧ୍ୟ କାଣ୍ଡ, ଶାଖା, ପତ୍ର, ପୁଷ୍ପ, ଫଳ ଆଦି ନାନା ଭେଦ ତା'ର ଦେଖାଯାଏ ଓ ତାହା ସବୁ ବୃକ୍ଷାତିରିକ୍ତ ନୁହେଁ, ସେପରି ବ୍ରହ୍ମ ଓ ଜଗତ୍ ଭିନ୍ନ ହେଲେ ମଧ୍ୟ ଜଗତ୍ ବ୍ରହ୍ମଠାରୁ ଭିନ୍ନ ନୁହେଁ ।"

କିନ୍ତୁ ଗ୍ରନ୍ଥକାରଙ୍କର ବିଶୁଦ୍ଧାଦ୍ୱୈତବାଦରେ ପ୍ରତିପାଦିତ ହୋଇଅଛି ଯେ, ବ୍ରହ୍ମଙ୍କର ସ୍ୱଗତ ଭେଦ ମଧ୍ୟ ନାହିଁ । ବ୍ରହ୍ମ ବିଶୁଦ୍ଧ, ନିର୍ଗୁଣ, ଅଦ୍ୱିତୀୟ ଓ ତାଙ୍କର ମହିମାରୁ ହିଁ ଜଗତର ଯାବତୀୟ ବିଭବ ଉଦ୍ଭୂତ ହୋଇଅଛି । ଶଙ୍କରଙ୍କ ପରି ସେ ବ୍ରହ୍ମଙ୍କର ଉପର୍ଯ୍ୟୁକ୍ତ ଭେଦତ୍ରୟ ( ସ୍ୱଗତ, ସଜାତୀୟ ଓ ବିଜାତୀୟ ) ସ୍ୱୀକାର କରନ୍ତି ନାହିଁ, ମାତ୍ର ଶଙ୍କରଙ୍କର ମାୟାବାଦ ଖଣ୍ଡନ କରି ନିଜର ବିଶୁଦ୍ଧାଦ୍ୱୈତବାଦ ପ୍ରତିପାଦନ କରିଅଛନ୍ତି । ପୁଣି ରାମାନୁଜଙ୍କଠାରୁ ତାଙ୍କର ମୌଳିକ ପାର୍ଥକ୍ୟ ଏହି ଯେ, ରାମାନୁଜ ଦୁଇଟିମାତ୍ର ଭେଦ ଅସ୍ୱୀକାର କରି କେବଳ ବ୍ରହ୍ମଙ୍କର ସ୍ୱଗତଭେଦ ଓ ସଗୁଣତା ସ୍ୱୀକାର କଲାବେଳେ ଗ୍ରନ୍ଥକାର ବ୍ରହ୍ମଙ୍କର କୌଣସି ଭେଦ ସ୍ୱୀକାର କରନ୍ତି ନାହିଁ । ଏହି ସବୁ ମତର ଖଣ୍ଡନ ଓ ତାଙ୍କର ନିଜମତର ପ୍ରତିପାଦନ ବହୁଶ୍ରୁତି, ସୂକ୍ତି, ସୂତ୍ର ତଥା ସ୍ମୃତି ଉପରେ ପ୍ରତିଷ୍ଠିତ । ( ପ୍ରଥମ ପାଦର ପ୍ରଥମ ଅନୁପାଦ ଦ୍ରଷ୍ଟବ୍ୟ )

ଗ୍ରନ୍ଥକାରଙ୍କ ମତରେ ବିଦ୍ୟା ଦ୍ୱିବିଧା—ଶବ୍ଦବିଦ୍ୟା ଓ ବ୍ରହ୍ମବିଦ୍ୟା । "ଶବ୍ଦବିଦ୍ୟା ଓ ବ୍ରହ୍ମବିଦ୍ୟା ଉଭୟ ଜ୍ଞାତବ୍ୟ ।" କାରଣ ଶବ୍ଦବିଦ୍ୟାରେ ନିପୁଣତା ଲାଭ ନ କଲେ, ବ୍ରହ୍ମବିଦ୍ୟା ବୋଧଗମ୍ୟ ହୁଏ ନାହିଁ । (ବ୍ରହ୍ମବିନ୍ଦୁ ଉପନିଷଦ୍ ୧୭-୧୯ ଦ୍ରଷ୍ଟବ୍ୟ) । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେବ ଯେ ଗ୍ରନ୍ଥକାରଙ୍କ ମତରେ ବ୍ରହ୍ମଜ୍ଞାନ ଲାଭ କରିବାକୁ ହେଲେ ତାହାର ଉପାୟସ୍ୱରୂପ ଶବ୍ଦବିଦ୍ୟା ଲାଭ କରିବା ଆବଶ୍ୟକ । ସେଥିପାଇଁ ଏହି ଗ୍ରନ୍ଥରେ ଶବ୍ଦାର୍ଥ ବିଷୟରେ ଏକ ସୁସମ୍ବଦ୍ଧ ବ୍ୟାଖ୍ୟା ଓ ପ୍ରମାଣସିଦ୍ଧ ଆଲୋଚନା ପ୍ରଦତ୍ତ ହୋଇଅଛି । ଗ୍ରନ୍ଥକାର ବିଶୁଦ୍ଧାଦ୍ୱୈତବାଦ ବୁଝାଇବାକୁ ଯାଇ ବହୁ ପ୍ରଧାନ ପ୍ରଧାନ ଶ୍ରୁତିପ୍ରମାଣଭିତ୍ତିରେ କହିଅଛନ୍ତି ବ୍ରହ୍ମ ସତ୍ୟ, ଜ୍ଞାନ, ଅନନ୍ତ ଓ ଆନନ୍ଦସ୍ୱରୂପ । ବ୍ରହ୍ମ ସତ୍ୟସ୍ୱରୂପ, ଆନନ୍ଦମୟ, ଅବାଙ୍ମନସ-

ଗୋଚର, ସର୍ବଗ, ସର୍ବାଗତ, ଚିଦେକରସ, ଦେଶ ଓ କାଳଦ୍ୱାରା ଅପରିଚ୍ଛିନ୍ନ, ଅପାଦ ଅଥଚ ଶୀଘ୍ରଗାମୀ, ଅପାଣି; କିନ୍ତୁ ସର୍ବଗ୍ରାହକ, ଅଚକ୍ଷୁ ତଥାପି ସକଳର ଦ୍ରଷ୍ଟା, ଅକର୍ଣ୍ଣ ହେଲେ ସୁଦ୍ଧା ସର୍ବଶ୍ରୋତା, ଅଚିନ୍ତ୍ୟ; କିନ୍ତୁ ସର୍ବଜ୍ଞ, ସର୍ବନିୟନ୍ତା, ସର୍ବଶକ୍ତିମାନ୍, ସର୍ବ-ସୃଷ୍ଟି-ସ୍ଥିତି-ଲୟକାରୀ ଓ ଅନନ୍ତଚିନ୍ମୟ । ଏହିପରି ବ୍ରହ୍ମଙ୍କର ନିର୍ବିଶେଷତ୍ୱ, ବା ନିର୍ଗୁଣତ୍ୱ ଓ ସଚ୍ଚିଦାନନ୍ଦତ୍ୱଭୁକ୍ତ ବହୁ ଲକ୍ଷଣ ଗ୍ରନ୍ଥଟିରେ ସନ୍ନିବେଶିତ ହୋଇଅଛି; କିନ୍ତୁ ଏ ସ୍ଥଳରେ ପ୍ରଶ୍ନ ଉଠିପାରେ— ଗ୍ରନ୍ଥକାର ତ ବ୍ରହ୍ମଙ୍କର ଏତେ ଲକ୍ଷଣ ଶ୍ରୁତିଶାସ୍ତ୍ର ପ୍ରମାଣଭିତ୍ତିରେ ପ୍ରଦର୍ଶନ କରିଅଛନ୍ତି, ତାହାହେଲେ ବ୍ରହ୍ମ ଅଲେଖ ହେଲେ କିପରି ? ଏହାର ଉତ୍ତରରେ ଏତିକି କହିବାକୁ ହେବ, ଗ୍ରନ୍ଥକାରଙ୍କ ମତରେ (ଏହା ମଧ୍ୟ ବେଦାନ୍ତର ମତ) ବ୍ରହ୍ମ ଦେଶକାଳଦ୍ୱାରା ସୀମିତ କୌଣସି ଗୁଣ ବା ଲକ୍ଷଣ ଧାରଣ କରନ୍ତି ନାହିଁ । ତାଙ୍କ ସମ୍ବନ୍ଧରେ ଏହି ଯେଉଁ ଲକ୍ଷଣମାନ ଉକ୍ତ ହୋଇଅଛି, ସେ ସବୁ ମାନବର ସୀମିତ ଇନ୍ଦ୍ରିୟ-ଲଭ୍ୟ ଗୁଣ ନୁହନ୍ତି । ଏହି ଅର୍ଥରେ ହିଁ ବ୍ରହ୍ମ ନିର୍ଗୁଣ, ନିର୍ବିଶେଷ, ଅଲେଖ; କାରଣ ତାଙ୍କର ଲେଖ ବା ଗୁଣବର୍ଣ୍ଣ ନାହିଁ, ଦେଶକାଳଭେଦ ନାହିଁ; କିନ୍ତୁ ତାଙ୍କର ଅବାଙ୍ମନସଗୋଚର ଶକ୍ତି ବା ମହିମାରୁ ହିଁ ସକଳ ସୃଷ୍ଟି, ସ୍ଥିତି ଓ ଲୟ ଘଟୁଅଛି । ଇଂରାଜୀରେ ପ୍ରକାଶ କଲେ ବ୍ରହ୍ମ ହେଉଛନ୍ତି Non Being (ଅସତ୍) କାରଣ ଆମ୍ଭେମାନେ ସସୀମ ଜୀବ । ତେଣୁ ଆମେ ଯେଉଁସବୁ ପଦାର୍ଥକୁ ସତ୍ ବୋଲି କହୁ, ତାହା ଆମ୍ଭମାନଙ୍କର ଦେଶକାଳାବଚ୍ଛିନ୍ନ ତଥା ଇନ୍ଦ୍ରିୟ-ଲଭ୍ୟ ସୀମିତ ପଦାର୍ଥ ଅଟନ୍ତି । ବ୍ରହ୍ମ କିନ୍ତୁ ଏହିପରି ପଦାର୍ଥ ହୋଇ ନ ଥିବାରୁ ଆମ ଦୃଷ୍ଟିକୋଣରୁ ସେ ପଦାର୍ଥ (Being) ନୁହନ୍ତି, କେବଳ Non-Being, କାରଣ ଏ ସବୁ ଲକ୍ଷଣମାନ ପରଂବ୍ରହ୍ମଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ । ସେ ତେଣୁ Non-Being ବା ଅସତ୍ । ଏ ସମ୍ପର୍କରେ ଆମ ଭାରତୀୟ ଦର୍ଶନରେ ନେତି ନେତି, ଏହି ନିଷେଧାତ୍ମକ ପଦ୍ଧତିରେ ମଧ୍ୟ ବ୍ରହ୍ମବିଷୟକ ଧାରଣା କରାଯାଇଥାଏ; କିନ୍ତୁ ପ୍ରକୃତରେ ସେ ଅନନ୍ତ ସତ୍ (Absolute Being) । ସେଥିପାଇଁ ସିନା ଉପନିଷଦ୍ କହେ—

ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନୋ ଯଦ୍
ବାଚୋ ହ ବାଚଂ ସ ଉ ପ୍ରାଣସ୍ୟ ପ୍ରାଣଃ ।।
ଚକ୍ଷୁଷଶ୍ଚକ୍ଷୁରତି ମୁଚ୍ୟ ଧୀରାଃ
ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି ।।
ଯଦ୍‌ବାଚାଽନଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।।
ଯନ୍ମନସା ନ ମନୁତେ ଯେନାହୁର୍ମନୋ ମତମ୍
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।।

ଯଚ୍ଚକ୍ଷୁଷା ନ ପଶ୍ୟତି ଯେନ ଚକ୍ଷୂଂଷି ପଶ୍ୟତି
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥
ଯତ୍ ପ୍ରାଣେନ ନ ପ୍ରାଣିତି ଯେନ ପ୍ରାଣଃ ପ୍ରଣୀୟତେ
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ॥

( କେନୋପନିଷତ୍ )

ଏହାର ତାତ୍ପର୍ଯ୍ୟ ଏହି—ଯେ ଶୁଣନ୍ତି ନାହିଁ, ମାତ୍ର ଯାହାଙ୍କ ହେତୁ ଶୁଣାଯାଏ, ଯେ କଥା କହନ୍ତି ନାହିଁ; କିନ୍ତୁ କଥା କୁହାଇବାର କାରଣ, ଯେ ଆମ ପରି ପ୍ରାଣଧାରଣ କରନ୍ତି ନାହିଁ; କିନ୍ତୁ ଯାହାଙ୍କ ହେତୁରୁ ଆମେ ପ୍ରାଣଧାରଣ କରିଅଛୁ, ଯାହାଙ୍କର କର୍ଣ୍ଣ ନାହିଁ, ଅଥଚ ଶୁଣନ୍ତି ଇତ୍ୟାଦି ଇତ୍ୟାଦି ସେହି ହିଁ ବ୍ରହ୍ମ । ତେଣୁ ସୀମାବଦ୍ଧ ଦେଶକାଳାବଚ୍ଛିନ୍ନ ଅପୂର୍ଣ୍ଣ ମାନବର ଇନ୍ଦ୍ରିୟମାନଙ୍କ ପରି ତାଙ୍କର ଇନ୍ଦ୍ରିୟ ନାହିଁ; କିନ୍ତୁ ସେ ସର୍ବଜ୍ଞ, ସର୍ବତ୍ର ବିଦ୍ୟମାନ ଓ ସର୍ବଶକ୍ତିମାନ୍ । ଏହିପରି ବେଦବେଦାନ୍ତରୁ ବହୁ ପ୍ରମାଣ ଦର୍ଶାଇ ଗ୍ରନ୍ଥକାର ନିର୍ଗୁଣ ବ୍ରହ୍ମ ବା ଅଲେଖଙ୍କର ସତ୍ତା ପ୍ରତିପାଦନ କରିବାକୁ ଯାଇଅଛନ୍ତି । ଏ ସମସ୍ତ ଆଲୋଚନା ପ୍ରଥମ ପାଦର ପ୍ରଥମାନୁପାଦରେ ପ୍ରଦତ୍ତ ହୋଇଅଛି ।

ପ୍ରଥମ ପାଦର ଦ୍ୱିତୀୟ ଅନୁପାଦରେ ଗ୍ରନ୍ଥକାର ସୃଷ୍ଟିତତ୍ତ୍ୱର ବ୍ୟାଖ୍ୟା କରିବାକୁ ଯାଇଅଛନ୍ତି । ତାଙ୍କ ମତରେ ସୃଷ୍ଟି ପୂର୍ବରୁ ଏକ ଅଦ୍ୱିତୀୟ ପରଂବ୍ରହ୍ମ ବିଦ୍ୟମାନ ଥିଲେ ଏବଂ ସେ କେବଳ ଏହି ସୃଷ୍ଟିର ଅଦ୍ୱିତୀୟ କାରଣ । କେବଳ ତାଙ୍କର ମହିମାରୁ ହିଁ ସୃଷ୍ଟି ସମ୍ଭବ ହୋଇଅଛି । ଗ୍ରନ୍ଥକାରଙ୍କର ଭାଷାରେ 'ପରଂବ୍ରହ୍ମଙ୍କ ସ୍ୱୟଂସିଦ୍ଧ ମହିମାରୁ ପରମାଣୁ ସଦୃଶ ଅସଂଖ୍ୟ ଅସଂଖ୍ୟ ବ୍ରହ୍ମାଣ୍ଡର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ସାଧିତ' ହୁଏ । ସେ ଉପନିଷଦ୍‌ର ପ୍ରମାଣମାନ ସଂଗ୍ରହ କରି ସେମାନଙ୍କର ଭିତ୍ତିରେ ସୃଷ୍ଟିପ୍ରକ୍ରିୟାର କ୍ରମବିକାଶ ପ୍ରଦର୍ଶନ କରିଅଛନ୍ତି । ଏହି ସୃଷ୍ଟିପ୍ରକ୍ରିୟା କୌଣସି ଅଚେତନ ବା ଚୈତନ୍ୟଶୂନ୍ୟ ଜଡ଼ ପଦାର୍ଥଦ୍ୱାରା ସଂଘଟିତ ହୋଇନାହିଁ । କେବଳ ଚୈତନ୍ୟବିଶିଷ୍ଟ ଆତ୍ମଶକ୍ତିସମ୍ପନ୍ନ ନିର୍ଗୁଣ ବ୍ରହ୍ମ ବା ପରମାତ୍ମାଙ୍କଠାରୁ ଉଦ୍ଭୂତ ହୋଇଅଛି । ଗ୍ରନ୍ଥକାର ବେଦାନ୍ତ ବା ଉପନିଷଦରୁ ପ୍ରମାଣମାନ ଉଲ୍ଲେଖ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ଜଗତର ଯାବତୀୟ ବସ୍ତୁର ସୃଷ୍ଟିପ୍ରକ୍ରିୟା ସମ୍ବନ୍ଧରେ ସେ ଯେଉଁ ମତ ଦେଇଅଛନ୍ତି, ସେ ବିଷୟରେ ଯେତେ ଯେତେ ଆଶଙ୍କା ଉପୁଜିଅଛି, ସେଗୁଡ଼ିକ ଶାସ୍ତ୍ରଭିତ୍ତିରେ ନିରାକରଣ କରି ଏକ ଅଦ୍ୱିତୀୟ ଅଲେଖ ବା ନିର୍ଗୁଣ ପରଂବ୍ରହ୍ମଙ୍କ ମହିମାରୁ ହିଁ ଏ ଜଗତର ସୃଷ୍ଟି ଓ ଲୟାଦି ପ୍ରକ୍ରିୟାସମ୍ଭୂତ ହୋଇଅଛି ବୋଲି ପ୍ରତିପାଦନ କରିଅଛନ୍ତି । ଗ୍ରନ୍ଥକାର ତୃତୀୟ ଅନୁପାଦରେ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଷଡ଼ଦର୍ଶନକାରଙ୍କ ସ୍ୱୀକୃତ ବିଭିନ୍ନ ତତ୍ତ୍ୱ ଓ ଦୁଃଖନିବାରଣର ଉପାୟମାନ ଆଲୋଚନା କରି ଶୁଦ୍ଧାଦ୍ୱୈତବାଦର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଯାଇଅଛନ୍ତି । ଭିନ୍ନ ଭିନ୍ନ ଦର୍ଶନରେ ଦୁଃଖନିବୃତ୍ତିର ଉପାୟ ବିଭିନ୍ନ । ଏହି ଉପାୟମାନଙ୍କର ଶାସ୍ତ୍ର ଓ ଯୁକ୍ତିର ସାହାଯ୍ୟରେ

ପ୍ରତ୍ୟାଖ୍ୟାନପୂର୍ବକ ପରମାତ୍ମାଙ୍କଠାରେ ଆତ୍ମସମର୍ପଣକୁ ହିଁ ଦୁଃଖନିବାରଣ ଓ ମୁକ୍ତିର ଏକମାତ୍ର ଉପାୟ ବୋଲି ଗ୍ରନ୍ଥକାର ପ୍ରତିପାଦନ କରିଅଛନ୍ତି । ଏହା ଛଡ଼ା ଏ ଗ୍ରନ୍ଥରେ ଷଡ଼୍‌ଦର୍ଶନର ଏକ ସାଧାରଣ ଆଲୋଚନା ଓ ସମୀକ୍ଷା ସୁନ୍ଦରଭାବରେ କରାଯାଇଅଛି । ଏହି ଆସ୍ତିକ ଷଡ଼୍‌ଦର୍ଶନମାନଙ୍କ ବ୍ୟତୀତ ନାସ୍ତିକ ଦର୍ଶନମାନଙ୍କର ତଥା ଶୈବ-ପାଶୁପତଆଦି ଦାର୍ଶନିକ ମତମାନଙ୍କର ସୁସଂବଦ୍ଧ ସମୀକ୍ଷା ପ୍ରଦତ୍ତ ହୋଇଅଛି । ଗ୍ରନ୍ଥକାରଙ୍କ ମତରେ ସୃଷ୍ଟି ସହିତ ପରମାତ୍ମାଙ୍କର ସମ୍ବନ୍ଧ ଏହି ଯେ "ପରଂବ୍ରହ୍ମ ବିଶ୍ୱଶରୀରଭାବରେ ପ୍ରବିଷ୍ଟ ହେଲେହେଁ ବିଶୁଦ୍ଧ ନିର୍ଗୁଣଭାବରେ ସର୍ବ ଊର୍ଦ୍ଧ୍ୱରେ ବିରାଜିତ ।" ଏହି ଏକ 'ପରଂବ୍ରହ୍ମ'ଙ୍କ ମହିମାରୁ ସର୍ବଦେବଗଣ ଉତ୍ପନ୍ନ ହୋଇଛନ୍ତି ।

ପ୍ରଥମ ପାଦର ଚତୁର୍ଥ ଅନୁପାଦରେ ବ୍ରହ୍ମଙ୍କର ସଗୁଣ ନିର୍ଗୁଣ ବିଭବ ବିଷୟ ଆଲୋଚିତ ହୋଇଅଛି । 'ବ୍ରହ୍ମ' ଶବ୍ଦ କିପରି 'ନିର୍ଗୁଣବ୍ରହ୍ମ' ଅର୍ଥରେ କ୍ଳୀବଲିଙ୍ଗ 'ତତ୍' ଶବ୍ଦ-ଦ୍ୱାରା ଏବଂ 'ସଗୁଣ ବ୍ରହ୍ମ' ଅର୍ଥରେ ପୁଂଲିଙ୍ଗ 'ସଃ' ଶବ୍ଦଦ୍ୱାରା ବିଭିନ୍ନ ଉପନିଷଦ୍‌ମାନଙ୍କରେ କଥିତ, ତାହା ବିଶଦଭାବରେ ବୁଝାଇ ଦିଆହୋଇଅଛି । ଜୀବ କେବଳ ବ୍ରହ୍ମଙ୍କର ଆଭାସ ମାତ୍ର ଓ ଏହି ଏକବ୍ରହ୍ମ ହିଁ ଯେ କ୍ଷରାକ୍ଷର, ପ୍ରକୃତିପୁରୁଷର ଆଶ୍ରୟ, ଏହା ପ୍ରଦର୍ଶିତ ହୋଇଅଛି ।

ଦ୍ୱିତୀୟ ପାଦରେ ଗ୍ରନ୍ଥକାର ମହାବାକ୍ୟାଦିତତ୍ତ୍ୱ ନିରୂପଣ କରିବାକୁ ଯାଇଅଛନ୍ତି । ସେ ବେଦାନ୍ତସାର ଭିତ୍ତିରେ ଅଧ୍ୟାରୋପ, ଅପବାଦ ପ୍ରଭୃତିର ଅର୍ଥଦେଇ ସେମାନଙ୍କର ସାହାଯ୍ୟରେ ବିଭିନ୍ନ ଆତ୍ମବାଦ ବା ଆତ୍ମାବିଷୟରେ ଭିନ୍ନ ଭିନ୍ନ ମତ ଉଦ୍ଧାର କରି ସେମାନଙ୍କ ଉପରେ ଏକ ସମୀକ୍ଷା ଦେଇଅଛନ୍ତି । ଆତ୍ମାବିଷୟରେ ଏହି ଭିନ୍ନ ଭିନ୍ନ ମତ ହେଉଛି—ପୁତ୍ରାତ୍ମବାଦ (ପୁତ୍ର ହିଁ ଆତ୍ମା) ଦେହାତ୍ମାବାଦ (ଦେହ ହିଁ ଆତ୍ମା), ଇନ୍ଦ୍ରିୟାତ୍ମବାଦ (ଇନ୍ଦ୍ରିୟ ହିଁ ଆତ୍ମା) ପ୍ରାଣାତ୍ମବାଦ (ପ୍ରାଣ ହିଁ ଆତ୍ମା), ମନ-ଆତ୍ମବାଦ (ମନ ହିଁ ଆତ୍ମା), ବୁଦ୍ଧି-ଆତ୍ମବାଦ (ବୁଦ୍ଧି ହିଁ ଆତ୍ମା), ଅଜ୍ଞାନାତ୍ମବାଦ (ଅଜ୍ଞାନ ହିଁ ଆତ୍ମା), ଜ୍ଞାନାତ୍ମବାଦ (ଜ୍ଞାନ ହିଁ ଆତ୍ମା), ଶୂନ୍ୟାତ୍ମବାଦ (ଶୂନ୍ୟ ହିଁ ଆତ୍ମା)—ଏହି ଭିନ୍ନ ଭିନ୍ନ ବାଦଗୁଡ଼ିକ ଯଥାକ୍ରମେ କିପରି ଆତ୍ମା-ହୋଇ ନ ପାରନ୍ତି, ତାହା ପ୍ରଦର୍ଶନ କରି, ଗ୍ରନ୍ଥକାର ଶେଷରେ ବେଦାନ୍ତବାଦୀଙ୍କ ସହିତ ଏକମତ ହୋଇ ଆତ୍ମା ନିତ୍ୟଶୁଦ୍ଧ, ବୁଦ୍ଧ, ମୁକ୍ତ, ସତ୍ୟସ୍ୱଭାବ, ପ୍ରତ୍ୟକ୍-ଚୈତନ୍ୟ ବୋଲି ସିଦ୍ଧାନ୍ତ କରିଅଛନ୍ତି । ଏହାପରେ ଜୀବାତ୍ମା ଓ ପରମାତ୍ମା, ଜୀବ ଓ ବ୍ରହ୍ମମଧ୍ୟରେ ତାଦାତ୍ମ୍ୟସମ୍ପର୍କ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ବେଦାନ୍ତୋକ୍ତ ମହାବାକ୍ୟଗୁଡ଼ିକ ପ୍ରମାଣରୂପେ ଗ୍ରହଣ କରିଅଛନ୍ତି । ସେହି ମହାବାକ୍ୟଗୁଡ଼ିକ ହେଉଛନ୍ତି—'ତତ୍ତ୍ୱମସି' (ତୁମ୍ଭେ ସେହି ବ୍ରହ୍ମ), 'ଅହଂ ବ୍ରହ୍ମାସ୍ମି' (ମୁଁ ବ୍ରହ୍ମ ଅଟେ), 'ଅୟମାତ୍ମା ବ୍ରହ୍ମ' (ଏହି ଜୀବାତ୍ମା ହିଁ ବ୍ରହ୍ମ), 'ପ୍ରଜ୍ଞାନଂ ବ୍ରହ୍ମ' (ବୁଦ୍ଧିରୂପ ଚୈତନ୍ୟ କେବଳ ବ୍ରହ୍ମ), 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' (ଏହି ଅଖିଳ ବିଶ୍ୱ ବ୍ରହ୍ମମୟ) । ଏହି ମହାବାକ୍ୟଗୁଡ଼ିକର ତାତ୍ପର୍ଯ୍ୟ ଆଲୋଚନା କରି ଗ୍ରନ୍ଥକାର ଏହି ସିଦ୍ଧାନ୍ତରେ ଉପନୀତ

ହୋଇଅଛନ୍ତି ଯେ, ଏକ ଅଖଣ୍ଡ, ନିର୍ଗୁଣ ବା ଅଲେଖ 'ପରଂବ୍ରହ୍ମ' ତାଙ୍କର ନିଜ ମହିମାରେ ବିଶ୍ୱଜଗତର ଯାବତୀୟ ପଦାର୍ଥରେ ଅନୁସ୍ୟୂତ ରହି ନିଜ ମହିମାରେ ବିଶ୍ୱଜଗତକୁ ଅତିକ୍ରମ କରି ବିଦ୍ୟମାନ ଅଛନ୍ତି । ଜୀବ, ଶ୍ରବଣ-ମନନ-ନିଦିଧ୍ୟାସନପ୍ରଭୃତି ପ୍ରକ୍ରିୟାର ଅବଲମ୍ବନରେ ସେହି ଅଲେଖ ଅଦ୍ୱିତୀୟ 'ପରଂବ୍ରହ୍ମ'ଙ୍କର ମହତ୍ତ୍ୱ ଉପଲବ୍ଧି କରି ନିଜକୁ ଭକ୍ତିର ସହିତ ତାହାଙ୍କଠାରେ ସମର୍ପଣ କରେ । ଏ ସମ୍ପର୍କରେ ଗ୍ରନ୍ଥକାରଙ୍କ ସିଦ୍ଧାନ୍ତ ଏହି ଯେ "ବିଶୁଦ୍ଧ ପରମାତ୍ମା 'ପରଂବ୍ରହ୍ମ' ଜୀବର ଉପାସ୍ୟ ।" ତାଙ୍କ ମତରେ ଏକ, ଅଦ୍ୱିତୀୟ, ନିର୍ବିଶେଷ, ଅଲେଖ ପରମାତ୍ମା ହିଁ ମାନବର ଏକମାତ୍ର ନିତ୍ୟଆରାଧ୍ୟ । ପ୍ରତିମାପ୍ରଭୃତି ଅନ୍ୟ କୌଣସି ଦେବଦେବୀ ସେବ୍ୟ ନୁହଁନ୍ତି । ଏ ସବୁ ଆଲୋଚନା ଭିତ୍ତିରେ 'ମହିମାଧର୍ମ ଦର୍ଶନ' ତତ୍ତ୍ୱ ପ୍ରତିଷ୍ଠିତ କରି ଗ୍ରନ୍ଥକାର ଉକ୍ତ ଦାର୍ଶନିକ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ମହିମା ଧର୍ମର ନୀତିନିୟମ-ଗୁଡ଼ିକ ସମ୍ବନ୍ଧରେ ଆଲୋକପାତ କରିଅଛନ୍ତି । ଏହି ଧର୍ମର ପ୍ରତିଷ୍ଠାତା ସ୍ୱବୁଦ୍ଧଗୁରୁ ମହିମାସ୍ୱାମୀଙ୍କ ପ୍ରବର୍ତ୍ତିତ ଉପଦେଶାବଳୀରୁ ଏହି ଧର୍ମର ନୀତିନିୟମଗୁଡ଼ିକ ନିର୍ଦ୍ଧାରିତ ହୋଇଅଛି । ୧ ।

ଦ୍ୱିତୀୟପାଦର ଦ୍ୱିତୀୟାନୁପାଦରେ ଗ୍ରନ୍ଥକାର ଏ ବିଷୟରେ ଏକ ସୁସଂବଦ୍ଧ ପରିଚୟ ଦେଇଅଛନ୍ତି । ଏହି ଧର୍ମ ଯେ ବିଶୁଦ୍ଧ ଅଦ୍ୱୈତବାଦ ଉପରେ ପ୍ରତିଷ୍ଠିତ ତାହା ଉକ୍ତ ଅନୁପାଦରେ ପ୍ରଦତ୍ତ ପ୍ରାର୍ଥନାରୁ ସ୍ପଷ୍ଟ ଅନୁମିତ ହେବ । ୨ । ଈଦୃଶ ପ୍ରାର୍ଥନାର ସମର୍ଥକ ବିଭିନ୍ନ ଶାସ୍ତ୍ରୋକ୍ତ ଯୁକ୍ତିପ୍ରମାଣଗୁଡ଼ିକ ମଧ୍ୟ ଏଥିରେ ଲିପିବଦ୍ଧ ହୋଇଅଛି । ପୁନଶ୍ଚ ଏହି ଅନୁପାଦରେ ଭକ୍ତିର ଲକ୍ଷଣ ଓ ମୁମୁକ୍ଷୁର ସ୍ମରଣ ଭଜନାଦି ବିଧି ଶାସ୍ତ୍ରପ୍ରମାଣଭିତ୍ତିରେ ବ୍ୟାଖ୍ୟାତ ହୋଇଅଛି । ମହିମାଧର୍ମର ଦାର୍ଶନିକ ତାତ୍ପର୍ଯ୍ୟ ଗ୍ରନ୍ଥକାରଙ୍କ ନିମ୍ନଲିଖିତ ଉକ୍ତିରୁ ସମ୍ୟକ୍ ଉପଲବ୍ଧ ହେବ ।

"ଏକ ଅଦ୍ୱିତୀୟ ସଚ୍ଚିନ୍ମୟ ଅଲେଖ ପରଂବ୍ରହ୍ମପଦରେ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗେ କାୟମନୋବାକ୍ୟ ସହ ସର୍ବତୋଭାବରେ ଯେଉଁ ଶରଣାପନ୍ନ ହେବାକୁ ହୁଏ, ତାହାର ନାମ ବ୍ରହ୍ମଜ୍ଞାନଭକ୍ତିଯୋଗ, ତାହା ହିଁ ମହିମାଧର୍ମର 'ଦର୍ଶନ' ।" ମାନବ ଜୀବନରେ ପ୍ରାର୍ଥନା ବା ଉପାସନାର ଯେ ଏକ ଗୁରୁତ୍ୱପୂର୍ଣ୍ଣ ଉପାଦେୟତା ରହିଅଛି, ତାହା ଏହି ଅନୁପାଦରେ ପ୍ରତିପାଦିତ ହୋଇଅଛି ।

ଦ୍ୱିତୀୟପାଦର ତୃତୀୟାନୁପାଦରେ ମହିମାଧର୍ମର ବିଶିଷ୍ଟାଙ୍ଗ ନୀତିଯୋଗର ବର୍ଣ୍ଣନା କରାଯାଇଅଛି । ପ୍ରଥମେ ଗ୍ରନ୍ଥକାର ମହିମାଧର୍ମର ଶବ୍ଦାର୍ଥ ଦେଇ ପରମଉପାସ୍ୟ

---

୧—ଏହି ସବୁ ନୀତି-ନିୟମଗୁଡ଼ିକ ସବିଶେଷ 'ମହିମାଧର୍ମର ଇତିହାସ' ଏବଂ 'ମହିମାଧର୍ମ ପ୍ରତିପାଦକ' ଗ୍ରନ୍ଥଦ୍ୱୟ ଦ୍ରଷ୍ଟବ୍ୟ ।

୨—ମୂଳର ପୃ. ୪୬୨–୪୬୭ ଦ୍ରଷ୍ଟବ୍ୟ ।

ବ୍ରହ୍ମଙ୍କ ସ୍ୱରୂପ ଓ ଏହି ଧର୍ମର ବିଶିଷ୍ଟାଙ୍ଗର ଭିତର ବର୍ଣ୍ଣନା କରିଅଛନ୍ତି । ଏହି ମହିମା-ଧର୍ମରେ ଗୁରୁଶିଷ୍ୟସମ୍ପର୍କ ପର୍ଯ୍ୟାଲୋଚିତ ହୋଇ ଉପଦେଶଗ୍ରହଣର ବିଧିବିଧାନସମ୍ପର୍କରେ ଶାସ୍ତ୍ରଭିତ୍ତିକ ଏକ ପରିଚୟ ଦିଆଯାଇଅଛି । ଆହୁରି ମଧ୍ୟ ପାପବୃଦ୍ଧି ନିଷିଦ୍ଧ କର୍ମମାନ ପରିହାର କରି ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟପ୍ରଭୃତିର ବିଧିବିଧାନ ଓ ସ୍ନାନ, ଶୌଚ, ଭୋଜନ, ବ୍ରହ୍ମସ୍ମରଣପ୍ରଭୃତି ନିୟମଗୁଡ଼ିକର ପାଳନସମ୍ବନ୍ଧରେ ଯଥାର୍ଥ ପ୍ରମାଣମାନ ଲିପିବଦ୍ଧ ହୋଇଅଛି । ଏହି ଧର୍ମର ଏକ ବିଶେଷତ୍ୱ ଏହି ଯେ ଏଥିରେ ଜାତିଗତ ଭେଦର କୌଣସି ସ୍ଥାନ ନାହିଁ ।

ଦ୍ୱିତୀୟପାଦର ଚତୁର୍ଥାନୁପାଦରେ ଗ୍ରନ୍ଥକାର ଚିତ୍ତସଂଯମର ଉପାଦେୟତା ପ୍ରଦର୍ଶନ କରିବାକୁ ଯାଇଅଛନ୍ତି । ସେ ଶାସ୍ତ୍ରପ୍ରମାଣସହକାରେ କହନ୍ତି "ଚିତ୍ତସଂଯମସାଧନ ସକଳସାଧନର ମୂଳଭିତ୍ତି ଏବଂ ତାହା ଅତି ଦୁଃସାଧ୍ୟ । ତେଣୁ ଏହାର ସାଧନା ଏକାନ୍ତ କର୍ତ୍ତବ୍ୟ । କୁ-ଚିନ୍ତା, କୁ-ସଙ୍ଗ, ବୃଥାଆଳାପ, ବୃଥାନିଦ୍ରା, ଅଶୁଭବାସନା ପ୍ରଭୃତିରୁ ଦୂରରେ ରହି କାମାଦି-ଷଡ଼୍‌ରିପୁମାନଙ୍କୁ ଦମନପୂର୍ବକ ସତ୍‌ଶାସ୍ତ୍ର ଅଧ୍ୟୟନ ଓ ସାଧୁସମାଗମ ତଥା ବ୍ରହ୍ମସ୍ମରଣଦ୍ୱାରା ଅଧ୍ୟାତ୍ମବିଦ୍ୟା ଅର୍ଜ୍ଜନ କରିବାକୁ ହେବ । ଏଗୁଡ଼ିକ ହିଁ ଚିତ୍ତସଂଯମର ପ୍ରକୃଷ୍ଟ ପନ୍ଥା ।

ସର୍ବଶେଷରେ ବକ୍ତବ୍ୟ ଏହି ଯେ, ଏହି ସୁବୃହତ୍ ଗ୍ରନ୍ଥଟି ପ୍ରତ୍ୟେକ ବ୍ୟକ୍ତିଙ୍କର ଅଧ୍ୟେତବ୍ୟ । ଏଥିରେ ମହିମାଧର୍ମର ସମ୍ୟକ୍ ପରିଚୟ ମିଳିବା ସଙ୍ଗେ ସଙ୍ଗେ ଭାରତୀୟ ଦର୍ଶନ ଓ ତତ୍‌ସଂକ୍ରାନ୍ତ ବିଭିନ୍ନ ଶାସ୍ତ୍ରୋକ୍ତିମାନଙ୍କର ଏକତ୍ର ସମାବେଶ ବିଦ୍ୟମାନ । ପାଠକବର୍ଗ ଏଥିରୁ ଭାରତୀୟ ଦର୍ଶନ ସମ୍ବନ୍ଧରେ ବିଭିନ୍ନମତର ପରିଚୟ ଓ ଅଦ୍ୱୈତବାଦର ଏକ ତୁଳନାତ୍ମକ ସମାଲୋଚନା ପାଇ ପାରିବେ । ବିଶେଷତଃ ଭୌତିକସଭ୍ୟତାସମ୍ପନ୍ନ ଆଧୁନିକ ଯୁଗରେ ଆଧ୍ୟାତ୍ମିକ ଚିନ୍ତାଧାରା ଏକାନ୍ତ ଆବଶ୍ୟକ ବୋଲି ମନେ କରୁ । ତେଣୁ ଗ୍ରନ୍ଥଟିର ଏ ଦିଗରେ ଯଥାର୍ଥ ଉପାଦେୟତା ରହିଅଛି । ଧର୍ମତତ୍ତ୍ୱାନ୍ୱେଷୀ ପଣ୍ଡିତଗଣ ଏହାର ଯଥାର୍ଥ ମାହାତ୍ମ୍ୟ ଉପଲବ୍ଧି କରିବେ ବୋଲି ଆମ୍ଭର ବିଶ୍ୱାସ । ୧ ।

---

୧—ପ୍ରକାଶ ଥାଉକି ଅଧ୍ୟାପକ ଡଃ କୁଞ୍ଜବିହାରୀ ତ୍ରିପାଠୀ ବହୁକାଳଧରି ମହିମାଧର୍ମ ସହିତ ଏବଂ ଗ୍ରନ୍ଥପ୍ରଣେତାଙ୍କ ସହିତ ଘନିଷ୍ଠଭାବରେ ପରିଚିତ ଥିବାରୁ ଏ 'ପ୍ରାକ୍-କଥନ' ଲେଖିବାବେଳେ ମୁଁ ତାଙ୍କ ସହିତ କେତେକ ବିଷୟରେ ପରାମର୍ଶ କରିଅଛି । ଇତି ।

**ରତ୍ନାକର ପତି**

ତା ୨୨ । ୧୦ । ୧୯୬୮

ଉତ୍କଳ ବିଶ୍ୱବିଦ୍ୟାଳୟର ଭୂତପୂର୍ବ ପ୍ରଥମ କୁଳପତି, ପଦ୍ମଭୂଷଣ ଡଃ ପ୍ରାଣକୃଷ୍ଣ ପରିଜା
M. A. (Cambridge) I. E. S. D. sc ଲେଖିଅଛନ୍ତି :—

# ମହିମା ଧର୍ମ ସମ୍ବନ୍ଧରେ କେତୋଟି କଥା

ମହିମାଧର୍ମର ମୁଖ୍ୟପ୍ରଚାରକ ପରିବ୍ରାଜକ ଶ୍ରୀମନ୍ତ ବିଶ୍ୱନାଥ ବାବାଙ୍କ ଅନୁଗ୍ରହରୁ ମୁଁ ଅଲେଖ ପରଂବ୍ରହ୍ମ ଦର୍ଶନମ୍" ଗ୍ରନ୍ଥର ପାଣ୍ଡୁଲିପି ପଢ଼ିବାକୁ ସୁବିଧା ପାଇଲି । ମହିମା-ଧର୍ମପନ୍ଥୀ ଓଡ଼ିଶା ଓ ଓଡ଼ିଶା ବାହାର ନାନା ସ୍ଥାନରେ ଅଛନ୍ତି । ସେମାନଙ୍କୁ ସାଧାରଣ ଲୋକେ କୁମ୍ଭୀପଟିଆ ବୋଲି ଜାଣନ୍ତି । କାରଣ ଉଚ୍ଚକୋଟୀର ମହିମାଧର୍ମୀ ସନ୍ନ୍ୟାସୀମାନେ କୁମ୍ଭୀଛେଲିର (Careya arborea) ବଲ୍‌କଲ କୌପୀନ ପିନ୍ଧନ୍ତି । ମହିମା-ଧର୍ମାବଲମ୍ବୀମାନେ ଜାତି-ଭେଦ ମାନନ୍ତି ନାହିଁ । ମହିମାଧର୍ମ ସନ୍ନ୍ୟାସୀମାନେ ସବୁଜାତିଙ୍କଠାରୁ ଅନ୍ନଭିକ୍ଷା ଗ୍ରହଣ କରନ୍ତି । ସେମାନେ କେବେହେଲେ ଟଙ୍କାପଇସା ଛୁଅନ୍ତି ନାହିଁ; କିନ୍ତୁ ତାଙ୍କ ମତରେ ଯେଉଁଜାତି ଅନୁଚିତ କାର୍ଯ୍ୟ କରନ୍ତି, ସେମାନଙ୍କଠାରୁ ଭିକ୍ଷା ଗ୍ରହଣ କରନ୍ତି ନାହିଁ । କିନ୍ତୁ ମହିମାଧର୍ମୀ ଗୃହସ୍ଥମାନେ ଲୋକାଚାରର ମାନ ଜାତିପ୍ରଥାର ପ୍ରକାଶ୍ୟ ଅବମାନନା କରନ୍ତି ନାହିଁ । ଯେଉଁ ଗ୍ରାମରେ ମହିମାଧର୍ମୀ ଉପଯୁକ୍ତ ସଂଖ୍ୟାରେ ଅଛନ୍ତି, ସେ ଗ୍ରାମରେ ମହିମାଧର୍ମର ଟୁଙ୍ଗୀ ଅଛି । ପ୍ରତିଦିନ ସନ୍ଧ୍ୟାରେ ଟୁଙ୍ଗୀରେ ଅଲେଖ ଭଜନ ହୁଏ । ଯଦି ଅଲେଖବାବା କେହି ଉପସ୍ଥିତ ଥାଆନ୍ତି, ସେ ଭକ୍ତମାନଙ୍କୁ ଭଜନ ଶୁଣାଇ ଉପଦେଶ ଦିଅନ୍ତି । ମହିମାପନ୍ଥୀମାନେ ସୂର୍ଯ୍ୟୋଦୟ ପୂର୍ବରୁ ପ୍ରାତଃ ସ୍ନାନ କରି, ପୂର୍ବାଭିମୁଖରେ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଅଲେଖ ପରଂବ୍ରହ୍ମଙ୍କୁ ଶରଣ କରନ୍ତି ଏବଂ ସୂର୍ଯ୍ୟ ଅସ୍ତର ଅବ୍ୟବହିତ ପରେ ମଧ୍ୟ ପଶ୍ଚିମକୁ ମୁଖକରି ସେହି ପ୍ରଭୁଙ୍କୁ ସ୍ମରଣପୂର୍ବକ ଭୂମିଷ୍ଠ ପ୍ରଣାମ କରି ପ୍ରାର୍ଥନା କରନ୍ତି । ସୂର୍ଯ୍ୟାସ୍ତ ପରେ ଭୋଜନପାନ ନିଷିଦ୍ଧ । ସନ୍ନ୍ୟାସୀମାନେ ପରିବ୍ରାଜକ, କୌଣସି ସ୍ଥାନରେ ଗୋଟିଏ ରାତିରୁ ଅଧିକ ରହନ୍ତି ନାହିଁ । ସେମାନେ ଛପର ତଳେ ଭୋଜନ କରନ୍ତି ନାହିଁ । ପ୍ରଥମ ସ୍ତରର ଡୋର-କୌପୀନଧାରୀ ସାଧୁମାନେ ଗେରୁଆବସ୍ତ୍ରର କୌପୀନ ଓ ତ୍ୟାଗୀ ଭକ୍ତ ସମସ୍ତେ ଗେରୁଆ ବସ୍ତ୍ର ପିନ୍ଧନ୍ତି । ମହିମାଧର୍ମୀମାନେ ପ୍ରତିମା ପୂଜା କରନ୍ତି ନାହିଁ ।

ଏହି ଧର୍ମର ଉତ୍ପତ୍ତି ଓ ଭିତ୍ତି ବିଷୟରେ ସାଧାରଣ ଲୋକଙ୍କର ସ୍ପଷ୍ଟଜ୍ଞାନ ନାହିଁ । କେହି କେହି ମନେ କରୁଥିଲେ ଏହା ବୌଦ୍ଧଧର୍ମର ଶାଖା । କେହି କେହି ଜୈନ ଧର୍ମର ଶାଖା

ବୋଲି ମନେ କରୁଥିଲେ । ଶ୍ରୀମନ୍ତ ବିଶ୍ୱନାଥ ବାବା ଏହି ଗ୍ରନ୍ଥରେ ପ୍ରମାଣ କରି ଅଛନ୍ତି ଯେ ଅଲେଖ ବା ମହିମାଧର୍ମର ଭିତ୍ତି ହେଉଛି ବିଶୁଦ୍ଧାଦ୍ୱୈତବାଦ । ଏହି ଗ୍ରନ୍ଥର ଦାର୍ଶନିକ ତତ୍ତ୍ୱ ବିଷୟରେ ଶ୍ରୀଯୁକ୍ତ ରତ୍ନାକର ପତି ଯେଉଁ ବିଶ୍ଳେଷକ ମୁଖବନ୍ଧ (ପ୍ରାକ୍-କଥନ) ଲେଖି ଅଛନ୍ତି ସେଥିରେ ମହିମାଧର୍ମର ଦାର୍ଶନିକ ଭିତ୍ତିକୁ ପ୍ରାଞ୍ଜଳଭାବରେ ବ୍ୟାଖ୍ୟା କରିଅଛନ୍ତି । ତାହା-ଉପରେ ଆଉ କିଛି କହିବା ଧୃଷ୍ଟତା ହେବ । ଦାର୍ଶନିକ ଭିତ୍ତିଦୃଷ୍ଟିରୁ ନିରାକାର ଅଲେଖ-ବ୍ରହ୍ମହିଁ ସତ୍ୟ ଏବଂ ଉପାସ୍ୟ । ତେଣୁ ସଚ୍ଚିଦାନନ୍ଦ ବ୍ରହ୍ମଙ୍କୁ ସ୍ମରଣ ଚିନ୍ତନ କରି ମହିମାପନ୍ଥୀମାନେ ଅନନ୍ତଆକାଶତଳେ ଶରଣପ୍ରଣାମପୂର୍ବକ ପରଂବ୍ରହ୍ମଙ୍କୁ ପ୍ରାର୍ଥନା କରନ୍ତି । ଏହି ଗ୍ରନ୍ଥ ପ୍ରଣୟନ-ଦ୍ୱାରା ଶ୍ରୀମନ୍ତ ବିଶ୍ୱନାଥ ବାବା କୃତଜ୍ଞତାଭାଜନ ହୋଇ ଅଛନ୍ତି ।

**ପ୍ରାଣକୃଷ୍ଣ ପରିଜା**

ତା ୧୫ । ୧୧ । ୭୮

ମହିମା

ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡଃ ସଦାଶିବ ମିଶ୍ର, M. A., Ph D. (London)
ଲେଖିଛନ୍ତି—

# ମହିମା ଦର୍ଶନ

ଅଲେଖ ବା ମହିମାଧର୍ମର ଉଦ୍ଭବ ଉତ୍କଳଭୂମିରେ । ଏ ଧର୍ମର ଆଚାରପଦ୍ଧତି ଏହି ଦେଶର ପରିପ୍ରେକ୍ଷୀ ସହିତ ଜଡ଼ିତ । ଏ ଧର୍ମ-ସମ୍ପ୍ରଦାୟର ଆହାର, ପରିଧେୟ, ଆସ୍ଥାନ ଏବଂ ଭିକ୍ଷାପ୍ରଣାଳୀ ଏହି ଦେଶର ପରିସ୍ଥିତି ସହିତ ସମ୍ପୃକ୍ତ, ମାତ୍ର ଏ ଧର୍ମର ଭିତ୍ତି ଗଭୀର ଈଶ୍ୱର ବିଶ୍ୱାସ ଉପରେ ଏବଂ ଏହାର ତଥ୍ୟ ଏବଂ ତତ୍ତ୍ୱ ଅତି ସୂକ୍ଷ୍ମ ବିଷୟ ଉପରେ ପ୍ରତିଷ୍ଠିତ ।

ସ୍ୱୟଂ ଅଲେଖସ୍ୱାମୀ ସଂସାରରେ ଅବତୀର୍ଣ୍ଣ ହୋଇ ପ୍ରଥମେ ଏହି ଉତ୍କଳଭୂମିରେ ଏ ଧର୍ମ ପ୍ରଚାର କରିଥିଲେ ଏବଂ ଏହି ଧର୍ମରେ ଅବଧୂତ ସନ୍ନ୍ୟାସପନ୍ଥା ଓ ଗୃହସ୍ଥ ଭକ୍ତପନ୍ଥା ମଧ୍ୟ ସ୍ଥାପନ କଲେ । ତାଙ୍କର ସେହି ଭକ୍ତମାନଙ୍କ ମଧ୍ୟରେ ଭୀମ ଭୋଇ ଥିଲେ ପ୍ରଧାନ । ତାଙ୍କର ଅଭିଳାଷ ଥିଲା—ଭାରତବର୍ଷରେ ସର୍ବତ୍ର ଏ ଧର୍ମର ପ୍ରବର୍ତ୍ତନ ହେଉ । ସେ ଥିଲେ ଅନ୍ଧ ଏବଂ ସାଧାରଣ ବିଦ୍ୟା ଲାଭର ସୁଯୋଗ ପାଇ ନ ଥିଲେ । ମାତ୍ର ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରି ତାଙ୍କର ପ୍ରତିଭା ବିକଶିତ ହୋଇ ଉଠିଲା । ସେ ସ୍ତୁତି, ଜଣାଣ, ଆବେଦନ ଏବଂ ଉପଦେଶ ଆକାରରେ ଏ ଧର୍ମକୁ ସାଧାରଣରେ ପ୍ରଚାର କଲେ । ସେ ଅତି ସହଜଭାବରେ ସରଳ ଭାଷାରେ ଏ ଧର୍ମର ତତ୍ତ୍ୱ ଲୋକଙ୍କ ଆଗରେ ଉପସ୍ଥାପିତ କଲେ । ଶୂନ୍ୟବ୍ରହ୍ମବାଦ, ନିରାକାର ପରମ ବ୍ରହ୍ମ-ଉପାସନା ଏ ଧର୍ମର ମୂଳ ପିଣ୍ଡ, ମାତ୍ର ଭୀମ ଭୋଇ ସାଧାରଣଙ୍କର ବୋଧଗମ୍ୟ ହେବା ଭଳି ଅତି ସରଳ ରୀତିରେ ଏହାର ଅବତାରଣା କଲେ । ପୃଥିବୀରେ ଅନ୍ୟାୟର ମାତ୍ରା ଅଧିକ ହେବାରୁ, ପାତକଭାର ବୃଦ୍ଧି ପାଇବାରୁ ଧର୍ମ ସବୁ ଆକାଶକୁ ଉଠିଗଲେଣି । ମନୁଷ୍ୟର ନାନା ଅକର୍ମ ଦେଖି ତାଙ୍କ ହାତରୁ ପୂଜା ନ ଖାଇବା ପାଇଁ ଦେବଦେବୀମାନେ ଶୂନ୍ୟକୁ ବାହାରି ଗଲେଣି । କପିଳାସ, ପୁରୀ ଧାମରୁ ଧର୍ମ ଚାଲିଗଲାଣି; ତୀର୍ଥମାନ ସବୁ ଭ୍ରଷ୍ଟ ହୋଇଗଲାଣି । ଅତଏବ ନିରାକାର ବ୍ରହ୍ମ ଉପାସନା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ସ୍ତୁତିଚିନ୍ତାମଣିର ଶହେ ଗୋଟି ବୋଲିରେ ଦୁଇ ସହସ୍ର ପଦ କବିତା-ଆକାରରେ ଭୀମ ଭୋଇ ମହିମାଧର୍ମର ତତ୍ତ୍ୱ ଓ ମହିମା ଏଭଳିଭାବରେ ସାଧାରଣଙ୍କ ନିକଟରେ ପହଞ୍ଚାଇ ପାରିଛନ୍ତି । ଭକ୍ତି ତାଙ୍କର ମାର୍ଗ ଏବଂ ଏହି ମାର୍ଗରେ ସେ ଗୁରୁଙ୍କର ପାଦରେ ଆପଣାକୁ ଅର୍ପଣ କରିଛନ୍ତି ।

ଭକ୍ତିଯୋଗରେ ପ୍ରାଣ ଅଭିଭୂତ ହୁଏ । ଜ୍ଞାନ-ଯୋଗରେ ପ୍ରାଣ ସମ୍ପ୍ରସାରିତ ହୁଏ । ଭକ୍ତିରୁ ଜନ୍ମେ ପ୍ରେମ । ଜ୍ଞାନରୁ ମିଳେ ଆଲୋକ । ଭୀମ ଭୋଇ ଦେଇଛନ୍ତି ଭକ୍ତିମାର୍ଗ । ଅବଧୂତ

ବିଶ୍ୱନାଥ ବାବା ଏ ଧର୍ମର ଅନ୍ତର୍ନିହିତ ତତ୍ତ୍ୱ ଜ୍ଞାନଯୋଗରେ ପ୍ରତିପାଦିତ କରିଛନ୍ତି । 'ଅଲେଖ ପରଂବ୍ରହ୍ମ ଦର୍ଶନ ଏକ ପାଣ୍ଡିତ୍ୟପୂର୍ଣ୍ଣ ବିରାଟ ଗ୍ରନ୍ଥ । ପରିବ୍ରାଜକ ଭଳି ଜୀବନଯାପନ କରି କୌଣସି ସ୍ଥାନରେ ଏକାଦିକ୍ରମେ ଏକ ଯାମିନୀରୁ ଅଧିକ ଯାପନ ନ କରି ଏଭଳି ଏକ ଗ୍ରନ୍ଥ ପ୍ରଣୟନ କରିବା ବିସ୍ମୟର କଥା । ଶ୍ରୀମଦ୍ ଗୁ ରୁ ମହିମାସ୍ୱାମୀ ଯେଉଁସବୁ ସଦୁପଦେଶ ଦେଇ-ଯାଇଛନ୍ତି, ସେ ସମସ୍ତର ସମନ୍ୱୟ ବେଦ ଉପନିଷଦରେ ନିହିତ ଅଛି । ଏହି ସମନ୍ୱୟ ପ୍ରତିପାଦିତ କରି ଅବଧୂତ ବାବା ଏ ଗ୍ରନ୍ଥ ପ୍ରଣୟନ କରିଛନ୍ତି । ବେଦ, ବେଦାନ୍ତ, ଗୀତା, ଭାଗବତ, ମହାଭାରତ, ଯୋଗବାଶିଷ୍ଠ ରାମାୟଣ, ବିଭିନ୍ନ ଭାଷ୍ୟ ଏବଂ ସଂହିତାମାନଙ୍କରୁ ଯଥାଯଥ ଅଂଶମାନ ଉଦ୍ଧାର କରି ଜ୍ଞାନମାର୍ଗରେ ମହିମାଧର୍ମର ତତ୍ତ୍ୱମାନ ବ୍ୟାଖ୍ୟାନ କରିଛନ୍ତି । ବିଶ୍ୱନାଥ ବାବାଙ୍କର ଏ ମହନୀୟ ଗ୍ରନ୍ଥ ମହିମାତତ୍ତ୍ୱର ଦାର୍ଶନିକ ବିଚାର । ଏ ଗ୍ରନ୍ଥ ଧର୍ମ-ଦର୍ଶନରେ ବିଶିଷ୍ଟ ସ୍ଥାନ ଲାଭ କରିବ ।

ବାଣୀବିହାର
ଭୁବନେଶ୍ୱର
ତା ୧୩ । ୧୧ । ୬୮

ଶ୍ରୀ ସଦାଶିବ ମିଶ୍ର

## ମହିମା

( ବମ୍ବେ ପ୍ରଦେଶର ଭୂତପୂର୍ବ ଗଭର୍ଣ୍ଣର, ଭାରତ ସରକାରଙ୍କ ଭୂତପୂର୍ବ ଶିଳ୍ପ ମନ୍ତ୍ରୀ ଓଡ଼ିଶାର ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ୍ ଡ. ଲିଟ ଲେଖିଅଛନ୍ତି । )

# ମହିମା ଧର୍ମ

ଓଡ଼ିଶାର ସବୁ ଅଞ୍ଚଳରେ ତଥା ଓଡ଼ିଶା ବାହାର ବିଭିନ୍ନ ଅଞ୍ଚଳରେ ମହିମା ଧର୍ମ ଏପରି ପ୍ରଚଳିତ ଓ ପ୍ରଗୃହିତ ଯେ ସେ ସମ୍ବନ୍ଧରେ ସମସ୍ତ ତତ୍ତ୍ୱ ପ୍ରକାଶକରି ସେହିଧର୍ମର ଜଣେ ସିଦ୍ଧ ପୁରୁଷ ଗୋଟିଏ ଦର୍ଶନଗ୍ରନ୍ଥ ଲେଖିବା ଆବଶ୍ୟକ ଥିଲା । ତାହା ବର୍ତ୍ତମାନ ପୂରଣ ହୋଇଅଛି । ବହୁଯୁଗରୁ ଓଡ଼ିଶାର ଜନଧର୍ମ ଯୋଗକୁ ଆଶ୍ରୟ କରି ଚାଲିଆସିଛି । ଏପରିକି ଭକ୍ତିଯୁଗରେ ମଧ୍ୟ ଜ୍ଞାନ ବା ଯୋଗମିଶ୍ରିତ ଭକ୍ତି ଓଡ଼ିଶାର ଜନଧର୍ମ ହୋଇଥିଲା । ଆଜି ମଧ୍ୟ ତାହାହିଁ ଅଛି । ଏହି ଜନଧର୍ମ ନାନା ସିଦ୍ଧ ପୁରୁଷମାନଙ୍କ ସାଧନାର ପ୍ରଣାଳୀ ଓ ପ୍ରଗୃତି ଫଳରେ ଏପରି ଏକ ଅବସ୍ଥାରେ ପହଞ୍ଚିଛି ଯେ, ଏହାର ନିର୍ଦ୍ଦିଷ୍ଟ ଦର୍ଶନ ଓ ନିର୍ଦ୍ଦିଷ୍ଟ ସାଧନପ୍ରଣାଳୀ ଲିପିବଦ୍ଧ କରିବା ଦୁଷ୍କର ହୋଇଛି । ମହିମା ଧର୍ମର ଜନପ୍ରିୟତା ଓଡ଼ିଶାର ପରମ୍ପରା ଏବଂ ଧର୍ମର ମାହାତ୍ମ୍ୟ ଉପରେ ପ୍ରତିଷ୍ଠିତ ।

ଶ୍ରୀମତ୍ ପ୍ରବୁଦ୍ଧଗୁରୁ ମହିମା ସ୍ୱାମୀ ଖ୍ରୀ: ୧୮୨୬ରେ ଓଡ଼ିଶାକୁ ଅଭୂତଭାବେ ଆଗମନପୂର୍ବକ ବିଭିନ୍ନାଞ୍ଚଳ ପରିଭ୍ରମଣ କରି କପିଳାସରେ କେତେକ ବର୍ଷ ଅବସ୍ଥାନ କରିଥିଲେ । ତା'ପରେ ସେ ଗୁରୁସ୍ୱାମୀ ଅବଧୂତ ପରମ ସନ୍ନ୍ୟାସୀସ୍ୱରୂପରେ ମହିମା ଧର୍ମ ପ୍ରଚାର କରି, ସେ ସ୍ୱାମୀ ନିଜେ କୁମ୍ଭୀପଟ ବଳ୍କଳ ଭେକବାନା ଗ୍ରହଣପୂର୍ବକ ତାଙ୍କର ସିଦ୍ଧ ପରମ ସନ୍ନ୍ୟାସୀମାନଙ୍କୁ ମଧ୍ୟ ବଳ୍କଳ ଭେକ ପ୍ରଦାନ କରିଥିଲେ । ମହିମା ସ୍ୱାମୀ ଅବଶେଷରେ ଢେଙ୍କାନାଳ ଯୋରନ୍ଦାଠାରେ ଚିରସମାଧି ଅବଲମ୍ବନପୂର୍ବକ ତିରୋହିତ ହୋଇଥିଲେ । ସେ ଯେଉଁ ମହିମା ଧର୍ମ ପ୍ରଚାର କରି ଯାଇଅଛନ୍ତି, ସେହି ଧର୍ମର ତତ୍ତ୍ୱମାନ ଏହି ଦର୍ଶନ ଗ୍ରନ୍ଥରେ ବିଶେଷଭାବେ ଆଲୋଚିତ ହୋଇଅଛି ।

ପ୍ରଥମେ ଓଡ଼ିଶା ଗଡ଼ଜାତର ବିଭିନ୍ନ ଅଞ୍ଚଳରେ ଏ ଧର୍ମ ବିଶେଷଭାବେ ପ୍ରକାଶ ପାଇଥିଲା । ଗୁରୁ ମହିମା ସ୍ୱାମୀଙ୍କ ଅପାର କରୁଣାରେ ପ୍ରସିଦ୍ଧ ସାଧକ ଭକ୍ତକବି ଭୀମଭୋଇଙ୍କଠାରୁ ଅଭୂତଭାବେ କବିତା-ଶକ୍ତି ପ୍ରକାଶ ପାଇଥିଲା । ସେ ଯେଉଁ ସ୍ତୁତି ରଚନା କରିଯାଇ ଅଛନ୍ତି, ତାହା ଯୁଗ-ଯୁଗବ୍ୟାପି ମନୁଷ୍ୟ ମନରେ ଈଶ୍ୱରଭାବ ଉଦ୍ରେକ କରୁଥିବ । କୌଣସି-

ପ୍ରକାର ଜ୍ଞାନାର୍ଜ୍ଜନଠାରୁ ବହୁଦୂରରେ ରହୁଥିବା ଲୋକେ ଏହି ମହିମା ଧର୍ମରେ ପ୍ରଭାବିତ ହୋଇ ନିଜର ଅନ୍ତରରେ ଶାନ୍ତି ଉପଲବ୍ଧି କରିଛନ୍ତି । ନିରକ୍ଷର ଓ ଅନୁନ୍ନତମନା ଜନସାଧାରଣ ଏହି ଧର୍ମର ସାଧନା ପଥରେ ଆଶ୍ରିତ ହୋଇ ଜୀବନକୁ ସୁନ୍ଦର ଓ ମହନୀୟ କରିପାରିଛନ୍ତି । ଏହି ହେଉଛି ଏ ଧର୍ମର ବୈଶିଷ୍ଟ୍ୟ ମହତ୍ତ୍ୱ ।

ଏହି ଧର୍ମ ଗ୍ରନ୍ଥର ପ୍ରଣେତା ମହିମା ଧର୍ମର ଜଣେ ସିଦ୍ଧ ପୁରୁଷ । ତାଙ୍କର ଲେଖନୀରୁ ସେ ଧର୍ମର ଗୂଢ଼ତତ୍ତ୍ୱ ସମ୍ବନ୍ଧରେ ପାଠକମାନଙ୍କର ଅବଶ୍ୟ ମହିମା ଧର୍ମ ତତ୍ତ୍ୱ ବିଷୟରେ ଦୃଢ଼ ଧାରଣା ହେବ; କିନ୍ତୁ ମୋର ମନେହୁଏ, କେବଳ ଗ୍ରନ୍ଥ ଶ୍ରବଣ ପଠନ ଯଥେଷ୍ଟ ହେବନାହିଁ । ଏ ଧର୍ମରେ ଯେଉଁସବୁ ଧର୍ମ ସାଧନାର ପ୍ରଣାଳୀ ଗୁରୁମହିମା ସ୍ୱାମୀଙ୍କର ଆଦେଶ ରହିଅଛି, ସେହି ସାଧନାରେ ଅନୁବ୍ରତୀ ହେଲେ ନିଜ ନିଜ ଅନ୍ତରରେ ଧର୍ମର ଗୂଢ଼ତତ୍ତ୍ୱ ନିଜେ ନିଜେ ହୃଦୟଙ୍ଗମ କରିପାରିବେ ଓ ସାଧକମାନେ ତାହା କରି ପାରୁଛନ୍ତି । ମହିମା-ଧର୍ମ ପ୍ରଭାବରେ ଜନ-ସାଧାରଣଙ୍କର ଆଧ୍ୟାତ୍ମିକ ଚେତନା ଜାଗ୍ରତ ହେଉ ଏହାହିଁ ମୋର ମହିମାମୟ ପରମେଶ୍ୱରଙ୍କଠାରେ ପ୍ରାର୍ଥନା ॥

ଶ୍ରୀ ହରେକୃଷ୍ଣ ମହତାବ୍
ତା ୨୫ । ୧୦ । ୬୮

ଲୋକସେବକମଣ୍ଡଳର ଉପସଭାପତି ଓ ସମାଜ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ପଦ୍ମଭୂଷଣ ଲେଖିଅଛନ୍ତି—

# ମହିମାଧର୍ମର ଲକ୍ଷ୍ୟ

ଶ୍ରୀ ମହର୍ଷି କୃଷ୍ଣଦ୍ୱୈପାୟନ-ପ୍ରଣୀତ ବ୍ରହ୍ମସୂତ୍ରର ନାମ ବେଦାନ୍ତ ଦର୍ଶନ । ବ୍ରହ୍ମଜ୍ଞାନ ଲାଭ କରିବାକୁ ହେଲେ ପରଂବ୍ରହ୍ମଙ୍କ ଉପଲବ୍‌ଧି ପାଇଁ କଠୋର ସାଧନା କରିବାକୁ ହୁଏ । ତାହା ବିଭିନ୍ନ ଯୁଗରେ ବିଭିନ୍ନ ପନ୍ଥା ଓ ବିଭିନ୍ନ ମହାପୁରୁଷଙ୍କ ସାଧନା ଓ ତତ୍ତ୍ୱାଲୋଚନାରେ ପ୍ରକାଶିତ ଓ ପ୍ରବର୍ତ୍ତିତ ହୋଇ ଆସୁଛି । କଥିତ ଅଛି—

"ବଦନ୍ତୁ ଶାସ୍ତ୍ରାଣି ଯଜନ୍ତୁ ଦେବାନ୍
କୁର୍ବନ୍ତୁ କର୍ମାଣି ଭଜନ୍ତୁ ଦେବାଃ
ଆତ୍ମୈକ୍ୟ ବୋଧେନ ବିନାପି ମୁକ୍ତିଃ
ନ ସିଧ୍ୟତି ବ୍ରହ୍ମଶତାନ୍ତରେଽପି ।"

ଶ୍ୱେତାଶ୍ୱତରୋପନିଷଦ ପ୍ରଥମ ଶ୍ଳୋକରେ ଲିଖିତ ଅଛି—

"କିଂ କାରଣଂ ବ୍ରହ୍ମ କୁତଃ ସ୍ମ ଜାତା
ଜୀବାମ କେନ କ୍ୱ ଚ ସଂପ୍ରତିଷ୍ଠାଃ ।
ଅଧିଷ୍ଠିତାଃ କେନ ସୁଖେତରେଷୁ
ବର୍ତ୍ତାମହେ ବ୍ରହ୍ମବିଦୋ ବ୍ୟବସ୍ଥାମ୍ ।"

ବ୍ରହ୍ମତତ୍ତ୍ୱନିଷ୍ଠ ମନୀଷୀମାନେ ଈଶ୍ୱରତତ୍ତ୍ୱ ନିରୂପଣ ଚିନ୍ତାରେ ତତ୍ପର ରହି ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ସଂହାର ବିଷୟରେ ଓ ବ୍ରହ୍ମନିରୂପଣ ବିଷୟରେ ସର୍ବପ୍ରଥମ ପ୍ରଶ୍ନ ଉତ୍‌ଥାପନ କରି ପଚାରିଛନ୍ତି—

"ଏ ବିଶ୍ୱ ସୃଷ୍ଟି ପ୍ରତି ବ୍ରହ୍ମ ହିଁ କି କାରଣ ? ଅଥବା ଅକାରଣରେ ଏହାର ଉତ୍ପତ୍ତି ହୋଇଛି । ମୁଁ ବା କାହିଁକି ଜନ୍ମଧାରଣପୂର୍ବକ ଜୀବିତ ରହିଛି । ପ୍ରଳୟ ସମୟରେ ବ୍ରହ୍ମାଣ୍ଡର ପ୍ରାଣୀମାନଙ୍କର ଜୀବ କେଉଁଠାରେ ବାସ କରେ ଏବଂ କି କାରଣରୁ ବା ଆମ୍ଭମାନଙ୍କୁ ସୁଖଦୁଃଖ ଭୋଗର ଅଧୀନ ହୋଇ ସଂସାରଯାତ୍ରା ନିର୍ବାହ କରିବାକୁ ପଡ଼େ ।"

ସୃଷ୍ଟିର କାରଣ ଓ ଜୀବର ଉଦ୍ଦେଶ୍ୟ ନିରୂପଣ କରିବାକୁ ଯାଇ ବ୍ରହ୍ମଜ୍ଞାନ ଓ ବ୍ରହ୍ମତତ୍ତ୍ୱ-ଉପଲବ୍ଧିରୂପକ ଚରମ ଅବସ୍ଥାରେ ପ୍ରବିଷ୍ଟ ହେବାକୁ ଢେଙ୍କାନାଳ ମହିମା-ଗାଦି ବ୍ରହ୍ମତତ୍ତ୍ୱ ନିରୂପଣ ଲକ୍ଷ୍ୟରେ ଏକ ମହାସାଧନାପୀଠରୂପେ ପ୍ରତିଷ୍ଠିତ । ଏହା ପରମତ୍ୟାଗୀ ସାଧକ ଅବଧୂତ ସନ୍ନ୍ୟାସୀମାନଙ୍କ ପାରଂପରିକ ସାଧନାପୀଠ । ଅବଧୂତ ସନ୍ନ୍ୟାସୀ ବିଶ୍ୱନାଥ ବାବା ଏ ସାଧକଶ୍ରେଣୀଭିତରୁ ଜଣେ । ଏ ଗାଦିର ମହିମା ତାଙ୍କ ତ୍ୟାଗପୂତ ଜୀବନ ଓ ସାଧନାରେ ପ୍ରକଟିତ; କିନ୍ତୁ ଏ ବ୍ୟକ୍ତିଗତ ଜୀବନର ଆଦର୍ଶ ଜନସମାଜକୁ ପ୍ରଭାବିତ କରିବା ଯଥେଷ୍ଟ ନୁହେଁ । ଉପଦେଶ ଏବଂ ଶାସ୍ତ୍ରଦ୍ୱାରା ତତ୍ତ୍ୱର ପ୍ରକାଶ ମାନବ-ଶିକ୍ଷାର ଗୋଟିଏ ବିଶିଷ୍ଟ ଅଙ୍ଗ । ସେହି ଦୃଷ୍ଟିରୁ "ସର୍ବବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣି ମହିମାଧର୍ମ ଦର୍ଶନ" ନାମକ ଏ ଗ୍ରନ୍ଥ ସେ ପ୍ରଣୟନ କରିଛନ୍ତି । ଏହା ଗୁରୁପାଦରେ ବର୍ଣ୍ଣିତ, ନିରୂପିତ ତତ୍ତ୍ୱ ଅତି ସହଜ ଓ ସରଳ ଭାଷାରେ ବ୍ୟକ୍ତ । ପରିବାରଗୋଷ୍ଠୀ, ସମାଜ ଓ ସମଗ୍ର ସାଂସାରିକ ଜୀବନର ଆଚରଣ ନିୟନ୍ତ୍ରଣ ଓ ବିକାଶଦିଗରେ ସୂତ୍ରାକାରରେ ଗ୍ରଥିତ ଉପଦେଶାବଳୀରୂପେ ନିବିଷ୍ଟ କରାଯାଇଛି । ପରଂବ୍ରହ୍ମଙ୍କ ଉପଲବ୍ଧିପାଇଁ ବ୍ୟକ୍ତିଜୀବନରୁ ସନ୍ନ୍ୟାସୀ ଜୀବନ ପର୍ଯ୍ୟନ୍ତ କିପରିଭାବେ ନିରବଚ୍ଛିନ୍ନସୂତ୍ରରେ ଆତ୍ମସାଧନ କରିବାକୁ ହେବ ଓ ପରିଣାମରେ ଆତ୍ମଜ୍ଞାନ ଲାଭ କରାଯାଇପାରିବ, ଏଥିରେ ଅତି ସରଳ ସୁନ୍ଦରଭାବରେ ବୁଝାଇ ଦିଆଯାଇଛି । ନିରାକାର ପରଂବ୍ରହ୍ମଙ୍କ ଉପଲବ୍ଧି ଜୀବନର ଲକ୍ଷ୍ୟ । ମହିମାଧର୍ମର ତାହା ହିଁ ସାରତତ୍ତ୍ୱ । ଏ ଗ୍ରନ୍ଥ ସେ ତତ୍ତ୍ୱର ଏକ ସାର ଅଭିବ୍ୟକ୍ତି । ସକଳପ୍ରକାର ସାଂପ୍ରଦାୟିକତା, ଭେଦଭାବ ଓ ସଂକୀର୍ଣ୍ଣତାକୁ ଦୂରକରି ମାନବଜୀବନକୁ ଦିବ୍ୟପଥରେ ନେଇଯିବା ଦିଗରେ ଏ ପ୍ରକାର ସରଳ ସାହିତ୍ୟ ଏକ ଅତି ଉପାଦେୟ ବାହନ । ବିଶ୍ୱଜନମଙ୍ଗଳାଭିଳାଷୀ ଅବଧୂତ ସନ୍ନ୍ୟାସୀ ବିଶ୍ୱନାଥ ବାବା ବେଦାନ୍ତର ସାରତତ୍ତ୍ୱକୁ ଏହି ଅମୃତମୟୀ ବାଣୀରେ ପ୍ରକାଶ କରି ଜନକଲ୍ୟାଣ ସାଧନଦ୍ୱାରା ମହିମାଧର୍ମର ପ୍ରାଧାନ୍ୟ ପ୍ରତିଷ୍ଠିତ କରିପାରିଛନ୍ତି । ତାଙ୍କଠାରେ ଦେଶବାସୀ ତଥା ମାନବସମାଜ ଚିରକୃତଜ୍ଞ ରହିବେ ।

ଗୋପବନ୍ଧୁ ଭବନ
କଟକ-୧
ତା ୧୯ । ୧୧ । ୬୮

ରାଧାନାଥ ରଥ
ସଂପାଦକ, "ସମାଜ"

# ମହିମା

ରାଧାନାଥ ଟ୍ରେନିଂ କଲେଜର ଅଧକ୍ଷ ଓ ମହିମା ଧର୍ମାଲୋଚନା ସମିତିର
ସମ୍ପାଦକ ଶ୍ରୀ ଶତ୍ରୁଘ୍ନ ନାଥ, ଏମ୍. ଏ. (ଲଣ୍ଡନ) ଲେଖିଛନ୍ତି—

# ଗ୍ରନ୍ଥ ପରିଚୟ

"ସତ୍ୟମଦ୍ୱୈତମ୍", "ସତ୍ୟରୂପଂ ପରଂବ୍ରହ୍ମ", "ସତ୍ୟଂ ବ୍ରହ୍ମ ସନାତନମ୍" ଏ ପ୍ରକାର ବର୍ଣ୍ଣିତ ସତ୍ୟରୂପୀ ଅଲେଖ ନିରଞ୍ଜନ ପରଂବ୍ରହ୍ମଙ୍କ ଉପାସନା ମହିମା ଧର୍ମର ମୂଳକଥା । ଏହା ବିଶୁଦ୍ଧାଦ୍ୱୈତବ୍ରହ୍ମବାଦ ଅଟେ ଓ ସାଧନା ଏବଂ ସିଦ୍ଧିର ଚରମ ସୋପାନ ଅଟେ । ସନାତନ ହିନ୍ଦୁ ଧର୍ମର ସୂକ୍ଷ୍ମାତିସୂକ୍ଷ୍ମ ଓ ମୌଳିକ ତତ୍ତ୍ୱର ଉପରେ ଏହା ପ୍ରତିଷ୍ଠିତ । ଏହା ଜଗତର କେବଳ ଆଦ୍ୟ କାରଣ ଓ ବିଶୁଦ୍ଧ ପରମବ୍ରହ୍ମ ପରମାତ୍ମାଙ୍କର ଅଭିବ୍ୟଞ୍ଜକ ମାତ୍ର ।

ବିଶ୍ୱପିତା ପ୍ରବୁଦ୍ଧଗୁରୁ ମହିମାସ୍ୱାମୀ ଏହି ଧର୍ମର ପ୍ରତିଷ୍ଠାତା । ସେ ଅଦ୍ଭୁତକର୍ମା, ସେ ମହାଶୂନ୍ୟରୁ ସ୍ୱମହିମାରେ ଆବିର୍ଭୂତ ହୋଇ ଜଗଦ୍‌ବାସୀଙ୍କୁ ସତ୍ୟନିଷ୍ଠ, ବ୍ରହ୍ମମୟ ଓ ଜ୍ଞାନଦୀପ୍ତ ଜୀବନଯାପନ କରିବାପାଇଁ ଉପଦେଶ ଦେଲେ ଓ ଧର୍ମାନୁସରଣଦ୍ୱାରା ଧର୍ମ ପ୍ରଚାର ପାଇଁ ବଳ୍କଳଧାରୀ ସିଦ୍ଧପର ସନ୍ନ୍ୟାସୀ ଓ ତତ୍ପରେ ଡୋର କୌପୀନଧାରୀ ଅପର ସନ୍ନ୍ୟାସୀ ସୃଷ୍ଟି କଲେ । "ଗୁରୁ ଆଜ୍ଞା" ସମସ୍ତଙ୍କର ଶିରୋଧାର୍ଯ୍ୟ ହେଲା । କବି ଭୀମ ଭୋଇ ତାଙ୍କର ପ୍ରତ୍ୟକ୍ଷ ଆଶିଷ ଲାଭ କରି ଗୃହୀଭକ୍ତ ଜୀବନଯାପନ କରିଥିଲେ ଓ ଗୁରୁ ମହିମାସ୍ୱାମୀଙ୍କ ଅଲୌକିକ କରୁଣା-ବଳରେ 'ସ୍ତୁତି ଚିନ୍ତାମଣି', 'ବ୍ରହ୍ମନିରୂପଣ ଗୀତା' ପ୍ରଭୃତି ପଦ୍ୟାନୁବନ୍ଧରେ ମହିମାଧର୍ମର ମାହାତ୍ମ୍ୟ ବର୍ଣ୍ଣନ କରିଥିଲେ । ସେସବୁ ମଧ୍ୟ ତାଙ୍କ ଭଜନାବଳୀରେ ପ୍ରକଟିତ ହୋଇଥିଲା । ଏହିସବୁ ଭଜନାବଳୀ ଓ ଗ୍ରନ୍ଥ ମହିମା-ଧର୍ମାବଲମ୍ବୀ ସନ୍ନ୍ୟାସୀ ଓ ଭକ୍ତଙ୍କର ଏକମାତ୍ର ମାର୍ଗଦର୍ଶକ ହୋଇ ଆସୁଅଛି ।

କିନ୍ତୁ ଏସବୁର ସ୍ୱଳ୍ପତା ହେତୁରୁ ଓ ମହିମାଧର୍ମର ସମ୍ପୂର୍ଣ୍ଣ ଦର୍ଶନ, ସାଧନ-ପ୍ରଣାଳୀ ଓ ତତ୍ତ୍ୱଜ୍ଞାନର ବ୍ୟାପକ ବିଶ୍ଳେଷଣର ଅଭାବ ହେତୁରୁ ଧର୍ମ ସମ୍ବନ୍ଧରେ ସମ୍ୟକ୍ ଧାରଣା ଲାଭ କରିବାରେ ଅଭାବ ବୋଧ କରାଗଲା । ଶିକ୍ଷିତ ଜନସମାଜ ବିଶେଷଭାବରେ ଆକୃଷ୍ଟ ହୋଇ ପାରିଲେ ନାହିଁ । ଫଳରେ ନାନା ଭ୍ରାନ୍ତ ଧାରଣା ପ୍ରକାଶ ପାଇଲା । ଧର୍ମ-ଜୀବନ ଜ୍ଞାନମାର୍ଗୀ ନ ହୋଇ କେବଳ ଭକ୍ତିମାର୍ଗରେ ସୀମିତ ହେଲା । ଭକ୍ତି, ଜ୍ଞାନ ଓ କର୍ମର ସମନ୍ୱୟ ବିନା ଧର୍ମ-ଧାରଣା କେବଳ ଔପଚାରିକ ହୋଇଯାଏ ।

ଏପରି ଅବସ୍ଥାରେ ସିଦ୍ଧସାଧକ, ବ୍ରହ୍ମାଶ୍ରିତ, ଆଜନ୍ମବ୍ରହ୍ମଚାରୀ, ଅବଧୂତ ବିଶ୍ୱନାଥ ବାବା ମହୋଦୟ ଗୁରୁ ମହିମାଗୋସାଇଁଙ୍କ କୃପା-ନିର୍ଦ୍ଦେଶକ୍ରମେ ଜନ୍ମ ଲାଭ କରି ମହିମା-ଧର୍ମାବଲମ୍ବୀ ହେଲେ । ତାଙ୍କର ଭକ୍ତିରସାପ୍ଲୁତ ହୃଦୟ ଏପରି ବ୍ୟାକୁଳ ହେଲା ଯେ ସେ ଶୀଘ୍ର ସଂସାରର ବନ୍ଧନ ଛିନ୍ନ କରିବାପାଇଁ ପିତାମାତାଙ୍କୁ ବୁଝାଇ କହିଥିଲେ,

"କପିଳ ମୁନିଙ୍କର ସୁତ, ନାମ ତାହାଙ୍କ ଅବଧୂତ ;
ବାଲ୍ୟରେ ହୋଇଲେ ସନ୍ନ୍ୟାସ, ଧରିଲେ ଅବଧୂତ ବେଶ ।"

ତାଙ୍କ ସନ୍ନ୍ୟାସଗ୍ରହଣ, ଯୋଗସାଧନ ଓ ବ୍ରହ୍ମନିଷ୍ଠ ଜୀବନଯାପନ କେବଳ ସେହି ପରଂବ୍ରହ୍ମ ପରମାତ୍ମାଙ୍କର ସୁକଳ୍ପିତ ସଙ୍କେତଦ୍ୱାରା ସମ୍ଭବ ହୋଇଥିଲା । ମହିମା-ଧର୍ମର ସାଧନପଦ୍ଧତି ଦର୍ଶନ ଓ ଉପଦେଶାମୃତ ସମ୍ବନ୍ଧରେ ଧାରାବାହିକ, ପ୍ରାମାଣିକ ଓ ବିଶ୍ଳେଷଣାତ୍ମକ ସାହିତ୍ୟ ସୃଷ୍ଟି ପାଇଁ କେବଳ ସାଧକ ହିଁ ସମର୍ଥ । ଏହା ବିଶ୍ୱନିୟନ୍ତାଙ୍କର ପୂର୍ବ ନିର୍ଦ୍ଧାରଣ ପରି ମନେହୁଏ । ସାଧନାସିଦ୍ଧ ଉପଲବ୍ଧି ବ୍ୟତୀତ ଏହା ସମ୍ଭବ ନୁହେଁ । ଫଳରେ ବାବା ମହୋଦୟ ମହିମାଧର୍ମର ପ୍ରାମାଣିକ ସାହିତ୍ୟସୃଷ୍ଟିରେ ଯେ ପ୍ରଥମ, ଏଥିରେ ସନ୍ଦେହ ନାହିଁ । ତାଙ୍କ ପ୍ରଣୀତ "ସାଧୁଗୀତି" କେବଳ ବ୍ରହ୍ମନିଷ୍ଠ ସାଧୁଜୀବନର ପରିପ୍ରକାଶ ହୋଇପାରେ ।

ବାବା ମହୋଦୟଙ୍କ ପ୍ରଣୀତ ମହିମାଧର୍ମପ୍ରତିପାଦକ ଗ୍ରନ୍ଥ ମହିମାଧର୍ମର ନିଗୂଢ଼ ତତ୍ତ୍ୱର ବ୍ୟାଖ୍ୟାନରେ ଅଦ୍ୱିତୀୟ ଅଟେ । ଏହା ଦୁଇଖଣ୍ଡରେ ପ୍ରଥମେ ପ୍ରାଚୀ ସମିତି ଦ୍ୱାରା ଓ ତତ୍ପରେ ଉତ୍କଳ ବିଶ୍ୱବିଦ୍ୟାଳୟକର୍ତ୍ତୃକ ପ୍ରକାଶ ପାଇଥିଲା । ଏହାର ପ୍ରଥମ ମୁଦ୍ରଣ ୧୯୩୧ ମସିହାରେ ଓ ଦ୍ୱିତୀୟ ମୁଦ୍ରଣ ପରେ ତୃତୀୟ ମୁଦ୍ରଣ ୧୯୬୯ ମସୀହାରେ ପ୍ରକାଶିତ ହୋଇ ମହିମାଧର୍ମର ଜନପ୍ରିୟତା ବୃଦ୍ଧି କରିଅଛି । ତତ୍ପରବର୍ତ୍ତୀ "ଇତିହାସ ଗ୍ରନ୍ଥ" ସତ୍ୟ ମହିମା-ଧର୍ମାଲୋଚନା ସମିତିର ଆନୁକୂଲ୍ୟରେ ୧୯୩୫ ମସିହାରେ ସର୍ବପ୍ରଥମେ ଆତ୍ମପ୍ରକାଶ କରିଥିଲା । ପୌତ୍ତଳିକତାଶ୍ରିତ, ବେଦାନ୍ତ ପ୍ରସୂତ, ନିରୁପାଧି ଏକ ବ୍ରହ୍ମବାଦକୁ ତତ୍ତ୍ୱଜିଜ୍ଞାସୁ ବିଦ୍ୱନ୍ମଣ୍ଡଳୀରେ ପରିଚିତ କରାଇବାରେ ଏହି "ଇତିହାସଗ୍ରନ୍ଥ" ଅତୁଳନୀୟ । ଦ୍ୱିତୀୟ ସଂସ୍କରଣ ପରେ ଏହାର ତୃତୀୟ ସଂସ୍କରଣ ୧୯୬୫ ମସିହାରେ ପ୍ରକାଶିତ ହୋଇଅଛି । ମହିମାଧର୍ମ ଯେ ସନାତନ, ଅଦ୍ୱିତୀୟ ବ୍ରହ୍ମବାଦୀ ବିଶୁଦ୍ଧ ଆର୍ଯ୍ୟଧର୍ମ ଛଡ଼ା ଅନ୍ୟ କିଛି ନୁହେଁ, ଏହାର ଅକାଟ୍ୟ ଓ ଶାସ୍ତ୍ରସିଦ୍ଧ ପ୍ରମାଣ ପୂଜ୍ୟପାଦ ବାବା ମହୋଦୟ ଉଲ୍ଲିଖିତ ଗ୍ରନ୍ଥଗୁଡ଼ିକରେ ପ୍ରତିପାଦନ କରି ଜ୍ଞାନୀମାନଙ୍କ ହୃଦୟଗ୍ରାହୀ କରାଇ ପାରିଛନ୍ତି । ମହିମା-ଧର୍ମାବଲମ୍ବୀମାନଙ୍କ ପକ୍ଷରେ କେଉଁ କେଉଁ କର୍ମପଦ୍ଧତି ଆଚରଣୀୟ ତହିଁର ପୋଷକତା ଉଦ୍ଦେଶ୍ୟରେ ବାବା ମହୋଦୟଙ୍କ ଲେଖନୀରୁ "ଭାଗବତ ସାରସତ୍ୟଧର୍ମ" ୧୯୩୬ ମସିହାରେ ସର୍ବପ୍ରଥମେ ଆତ୍ମପ୍ରକାଶ କଲା । ଏହି ଗ୍ରନ୍ଥ ମଧ୍ୟ ଏପରି ଆଦୃତ ହେଲା ଯେ ଏହାର ଦ୍ୱିତୀୟ ସଂସ୍କରଣ ପରେ ତୃତୀୟ ସଂସ୍କରଣ ୧୯୬୬ ମସିହାରେ

ପ୍ରକାଶ ପାଇଲା । "ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତା" ପରମ ପୂଜ୍ୟ ବାବାଙ୍କର ଅନ୍ୟତମ ଗ୍ରନ୍ଥ । ବ୍ରହ୍ମୋପଲବ୍ଧିର ମାର୍ଗ ସୁଗମ କରିବାରେ ଏହାର ମୌଳିକତା ବିଷୟରେ ପ୍ରଶ୍ନ କରାଯାଇ ନ ପାରେ । ୧୯୬୮ ମସିହାରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇଲା ।

ଏହା ବ୍ୟତୀତ, 'ଡାଡମାର ଗୀତି' 'ମହିମାବାଖ୍ୟଖ୍ୟାନାଗୀତି', 'ମହିମାଧର୍ମ-ତତ୍ତ୍ୱସାର', ମହିମାଧର୍ମ-ସ୍ୱରୂପ', ମହିମାଧର୍ମପ୍ରଦୀପ', ମହିମା ଧର୍ମର ସଚେତବାଣୀ ପ୍ରଭୃତି ବହୁ କ୍ଷୁଦ୍ର ପୁସ୍ତକ ରଚନା କରି ବାବା ମହୋଦୟ ଧର୍ମସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ଓ ମହିମାଧର୍ମର ନିରବଚ୍ଛିନ୍ନ ଓ ଐକାନ୍ତିକ ପ୍ରଚାର କରି ଆସୁଛନ୍ତି । "ମହିମାଧର୍ମ ଦର୍ଶନ" ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ତଥା ନିର୍ଗୁଣ ବ୍ରହ୍ମୋପାସନା ଉଦ୍ଦେଶ୍ୟରେ ଏକ ଅମୂଲ୍ୟ ସାହିତ୍ୟରତ୍ନ ଓ ଏହାର ପଟାନ୍ତର ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ବାବା ମହୋଦୟଙ୍କଠାରୁ ଜଣାଯାଏ ଯେ ଏହି ଗ୍ରନ୍ଥର ପ୍ରାରମ୍ଭ ଦେଶଭ୍ରମଣ କାଳରେ ୧୯୪୩ ମସିହାରେ କରାଯାଇଥିଲା । ଧର୍ମପ୍ରଚାର ଓ ମହିମାଗାଦୀର ଦାୟିତ୍ୱ ବହନ ହେତୁ ପ୍ରତିବର୍ଷ ୪।୫ ମାସରୁ ଅଧିକ ସମୟ ଗ୍ରନ୍ଥ ରଚନାରେ ଦିଆଯାଇ ପାରୁ ନ ଥିଲା । ବାବା ମହୋଦୟ ଅତିଥିଭବରେ ଭ୍ରମଣ କରି ଭୂମିରେ ଉପବେଶନପୂର୍ବକ 'ଗୁରୁ ଆଜ୍ଞା' ଅନୁସାରେ ଏହି ଗ୍ରନ୍ଥ ରଚନା କରିଥିଲେ । ପରିଶେଷରେ ୧୯୫୨ ମସିହାରେ ମହିମା-ଗାଦିମଣ୍ଡଳରେ ଏହି ରଚନା କାର୍ଯ୍ୟର ସମାପ୍ତି ହୋଇଥିଲା । ବସ୍ତୁତଃ ଏହି ଗ୍ରନ୍ଥ ସର୍ବ ବେଦବେଦାନ୍ତ ସାରତତ୍ତ୍ୱଶିରୋମଣି ଅଟେ । ଜ୍ଞାନ-ପିପାସୁ ଓ ସତ୍ୟାନୁସନ୍ଧାନୀ ସକଳ ସନ୍ନ୍ୟାସୀ, ଯୋଗାରୂଢ଼ ସାଧକ ଓ ପରମ ପଦାଶ୍ରୟୀ ଭକ୍ତମାନଙ୍କର ଏବଂ ବିଦ୍ୱନ୍ମଣ୍ଡଳୀରେ ଏହା ଏକ ଓ ଅଦ୍ୱିତୀୟ ପଥପ୍ରଦର୍ଶକ । ବାବା ମହୋଦୟ କ୍ଷଣଜନ୍ମା ଯୋଗୀ ଓ ତାଙ୍କର ବ୍ରହ୍ମୋପଲବ୍ଧିର ପରିପ୍ରକାଶରୂପେ ଏ ସବୁ କୃତି । ପ୍ରକାଶୋନ୍ମୁଖ "ମହିମାଧର୍ମ ସିଦ୍ଧସାଧୁଚରିତାମୃତ" ଓ "ମହିମାଧର୍ମଧାମ—ଇତିହାସ" ମହିମାଧର୍ମର ପ୍ରଚାର, ପ୍ରସାର ଓ ଗବେଷଣାପାଇଁ ଅମୂଲ୍ୟ ଉପାଦାନ ହୋଇ ରହିବ ।

ଉତ୍କଳ ବିଶ୍ୱବିଦ୍ୟାଳୟ ଏହି ମହତ୍ ଦର୍ଶନ ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ବହନପୂର୍ବକ ଏକାନ୍ତ ପ୍ରଶଂସାର୍ହ ହୋଇ ଅଛନ୍ତି ।

ମହିମାବ୍ଦ—୧୪୨
୨୨ । ୧୦ । ୧୯୬୮
କଟକ

ଶତ୍ରୁଘ୍ନ ନାଥ
ସମ୍ପାଦକ
ମହିମା-ଧର୍ମାଲୋଚନା ସମିତି

ଅଲେଖ ବ୍ରହ୍ମ

ସର୍ବ ବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣିଃ

# ଅଲେଖ ପରଂବ୍ରହ୍ମ-ଦର୍ଶନମ୍

( ମହିମାଧର୍ମ-ଦର୍ଶନମ୍ )

ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦଃ

ପୂର୍ବାର୍ଦ୍ଧ

ପ୍ରଥମ ପାଦସ୍ୟ ପ୍ରଥମାନପାଦଃ

# ବ୍ରହ୍ମ ଶରଣ

ମହିମ ମୟାଲେଖ ପ୍ରଭୁ ପରଂବ୍ରହ୍ମ ପଦେ ଶରଣଂ ବ୍ରଜାମି ।
ତତ୍ ସତ୍ୟ ଜ୍ଞାନାନନ୍ଦ ମୟାନନ୍ତ ବ୍ରହ୍ମପଦେ ଶରଣଂ ନମାମି ।
ଯନ୍ ମହାବାକ୍ୟୈକ ଲକ୍ଷ୍ୟଂ ଯମ୍ବିନ୍ ମାତ୍ରଂ ବିଶୁଦ୍ଧମେକ
ମେବାଦ୍ୱିତୀୟଂ ।
ତତ୍ ସର୍ବ ଜୀବାଶ୍ରୟ ପରଂବ୍ରହ୍ମାଭୟ ପଦେ ଶରଣଂ ନମାମି ॥ ୧ ॥

ମହିମାମୟ ଅଲେଖ ପ୍ରଭୁ ପରଂବ୍ରହ୍ମଙ୍କ ପଦରେ ଶରଣାପନ୍ନ ହେଉଅଛୁ । ସେହି ସତ୍ୟ, ଜ୍ଞାନମୟ, ଅନନ୍ତ ଏବଂ ଆନନ୍ଦମୟ (ପରମ) ବ୍ରହ୍ମଙ୍କ ପଦରେ ଶରଣାପନ୍ନ ହେଉଅଛୁ । ଯେ (ବେଦାନ୍ତ) ମହାବାକ୍ୟ ଚତୁଷ୍ଟୟର ଏକମାତ୍ର ଲକ୍ଷ୍ୟ, ଯେ ସମ୍ବିତ୍ ସ୍ୱରୂପ, ଯେ ବିଶୁଦ୍ଧ କେବଳ ଏକ ଏବଂ ଅଦ୍ୱିତୀୟ, ସେହି ସର୍ବ ଜୀବମାନଙ୍କ ଆଶ୍ରୟ ପରଂବ୍ରହ୍ମଙ୍କର ଅଭୟ ପଦରେ ଶରଣାପନ୍ନ ହେଉଅଛୁ ॥ ୧ ॥

ସଦୋପାଧି ଶୂନ୍ୟଂ ଗୁଣୈର୍ନୋଽଭିଲିପ୍ତଂ
ପରଂ ପରତ୍ ଯତ୍ କାରଣଂ କାରଣାନାମ୍ ।
କ୍ଷରାତୀତ ମେବା କ୍ଷରାତୀତ ମେକଂ
ପରଂବ୍ରହ୍ମ ଯତ୍ ତତ୍ ଶରଣ୍ୟଂ ନମାମି ॥ ୨ ॥

ଯେ ସଦାଉପାଧି ଶୂନ୍ୟ ତ୍ରିଗୁଣାତୀତ, ଯେ ପରାତ୍ପର ଓ ସର୍ବ କାରଣର କାରଣ ଅଟନ୍ତି, କ୍ଷର ଏବଂ ଅକ୍ଷର ଏ ଉଭୟରୁ ଅତୀତ ଏକମାତ୍ର ପରଂବ୍ରହ୍ମ, ସେହି ଶରଣ ରକ୍ଷଣ ପରଂବ୍ରହ୍ମଙ୍କୁ (ସାଷ୍ଟାଙ୍ଗେ) ପ୍ରଣିପାତ ପୂର୍ବକ ଶରଣପ୍ରାପ୍ତ ହେଉଅଛୁ ॥ ୨ ॥

ବିକାରୈର୍ବିହୀନଂ ପ୍ରମାଣୈରଗମ୍ୟଂ
ଚିଦାନନ୍ଦ ରୂପଂ ସଦାନନ୍ଦ ମୀଶମ୍ ।
ପ୍ରଶାନ୍ତଂ ସ୍ୱଭାସା ଜଗଦ୍ଭାସକଂ ଯତ୍
ପରଂବ୍ରହ୍ମ ଯତ୍ ତତ୍ ଶରଣ୍ୟଂ ନମାମି ॥ ୩ ॥

ଯେ ବିକାର ବିହୀନ ନିର୍ବିକାର, ପ୍ରମାଣ ସକଳଦ୍ୱାରା ଅଗମ୍ୟ, ଚିତ୍ ଓ ଆନନ୍ଦ ସ୍ୱରୂପ, ସଦାନନ୍ଦ, ପ୍ରଭୁ, ସତ୍ପ୍ରଶାନ୍ତ ଏବଂ ନିଜ ଆଲୋକଦ୍ୱାରା ଜଗତକୁ ଆଲୋକିତ କରୁଅଛନ୍ତି; ସେହି ଶରଣ ରକ୍ଷଣ ସତ୍ୟ ସ୍ୱରୂପ ପରଂବ୍ରହ୍ମଙ୍କୁ ପ୍ରଣିପାତ ପୂର୍ବକ ଶରଣ ହେଉଅଛୁ । ୩ ।

ଶ୍ରୁତିର୍ନେତି ନେତ୍ୟାଦି ବାଗ୍‌ଭ୍ରମନ୍ତୀ
ସ୍ୱରୂପଂ ଯଦୀୟଂ ନ ନାମାପି ବେତ୍ତି ।
ଯଦୋଙ୍କାର ଗମ୍ୟଂ କ୍ୱଚିନ୍ନୈବ କାଳେ
ପରଂବ୍ରହ୍ମ ଯତ୍ ତତ୍ ଶରଣ୍ୟଂ ନମାମି ॥ ୪ ॥

ବେଦ ନ ଇତି ନ ଇତି ପ୍ରଭୃତି ବାକ୍ୟଦ୍ୱାରା ଭ୍ରମଣଶୀଳ ହୋଇ ଯାହାଙ୍କ ସ୍ୱରୂପ ଅଳ୍ପମାତ୍ର ଜାଣିପାରେ ନାହିଁ, ଯେ କୌଣସି କାଳରେ ଓଁକାର ଦ୍ୱାରା ଗମ୍ୟ ନୁହଁନ୍ତି, ସେହି ବ୍ରହ୍ମଙ୍କର ଶରଣାପନ୍ନ ହେଉଅଛି ॥ ୪ ॥

ମହିମ୍ନା ସ୍ୱକୀୟେନ ଯସ୍ୟ ପ୍ରତିଷ୍ଠା
ବିଶୁଦ୍ଧଂ ନ ଚ ଦ୍ୱୈତ ଭାବଂ ଦଧାନଂ ।
ଅବାଗ୍‌ଗୋଚରଂ ନିର୍ମଳଂ ନିର୍ବିଶେଷଂ
ପରଂବ୍ରହ୍ମ ଯତ୍ ତତ୍ ଶରଣ୍ୟଂ ନମାମି ॥ ୫ ॥

ଯେ ସ୍ୱକୀୟ ମହିମାରେ ପ୍ରତିଷ୍ଠିତ, ବିଶୁଦ୍ଧ ଓ ଅଦ୍ୱୈତ ଯେ ବାକ୍ୟର ଅଗୋଚର, ନିର୍ମଳ, ନିର୍ବିଶେଷ, ପରମବ୍ରହ୍ମ, ସେହି ପରଂବ୍ରହ୍ମଙ୍କର ଶରଣାପନ୍ନ ହେଉଅଛି ॥ ୫ ॥

ପ୍ରପଞ୍ଚାତିଗଂ ଶାଶ୍ୱତଂ ଚାଦିମୂଳଂ
ଅଲେଖଂ ବିଭୁଂ କୃତ୍ସ୍ନ କଲ୍ୟାଣ କନ୍ଦମ୍ ।
ବିମୁକ୍ତି ପ୍ରଦଂ ଛେଦକଂ ବନ୍ଧନାନାଂ
ପରଂବ୍ରହ୍ମ ଯତ୍ ତତ୍ ଶରଣ୍ୟଂ ନମାମି ॥ ୬ ॥

ଯେ ପ୍ରପଞ୍ଚ ଅର୍ଥାତ୍ (ପରିଦୃଶ୍ୟମାନ) ଜଗତର ଅତୀତ ଶାଶ୍ୱତ, ଆଦିକାରଣ, ଅଲେଖ, ବିଭୁ, ସକଳ ମଙ୍ଗଳର ମୂଳ, ମୁକ୍ତିଦାତା, ସର୍ବ ବନ୍ଧନ ଛେଦକ ଯେ ପରଂବ୍ରହ୍ମ, ସେହି ପରଂବ୍ରହ୍ମଙ୍କର ଶରଣାପନ୍ନ ହେଉଅଛି ॥ ୬ ॥

ତ୍ୱମେବ ପ୍ରଭୋମେ ଗୁରୁଜ୍ଞାନ ମୂର୍ତ୍ତିଃ
ଗୁରୂଣାଂ ଗୁରୁସ୍ତ୍ୱଂ ପ୍ରଭୋଽନନ୍ତ ଶକ୍ତେ ।
ମମାତ୍ମେଶ୍ୱର ସ୍ତ୍ୱଂ ଚ ବପ୍ତା ଚ ମାତା
ପରଂ ଶାନ୍ତୟେ ତ୍ୱାଂ ଶରଣ୍ୟଂ ନମାମି ॥ ୭ ॥

ହେ ପ୍ରଭୋ ! ଆପଣ ମୋର ଜ୍ଞାନମୂର୍ତ୍ତି ଗୁରୁ ଏବଂ ଗୁରୁମାନଙ୍କର ମଧ୍ୟ ଗୁରୁ । ହେ ଅନନ୍ତ ଶକ୍ତି ସଂପନ୍ନ ପ୍ରଭୋ ! ଆପଣ ଏ ଆତ୍ମାର ଅଧିପତି, ପିତା ଓ ମାତା । ଚରମଶାନ୍ତି ନିମିତ୍ତ ଆପଣଙ୍କୁ ପ୍ରଣିପାତ ପୂର୍ବକ ଶରଣାପନ୍ନ ହେଉଅଛୁ ॥ ୭ ॥

ତ୍ୱମାତ୍ମାତ୍ମନୋ ଜ୍ୟୋତଷାଂ ଜ୍ୟୋତରେବ
ତ୍ୱମେବାସି ସତ୍ୟସ୍ୟ ସତ୍ୟସ୍ୱରୂପମ୍ ।
ତ୍ୱମେ ବାସି ଗୋପ୍ତାପ୍ରପନ୍ନାନ୍ତରାଣାଂ
ପରଂଭକ୍ତୟେ ତ୍ୱାଂ ଶରଣ୍ୟଂ ନମାମି ॥ ୮ ॥

ହେ ପ୍ରଭୋ ! ଆପଣ ଏ ଆତ୍ମାର ଆତ୍ମା, ଜ୍ୟୋତିମାନଙ୍କର ଜ୍ୟୋତି ଆପଣ ସତ୍ୟର ସତ୍ୟ ସ୍ୱରୂପ, ଶରଣାଗତ-ହୃଦୟମାନଙ୍କର ସ୍ୱୟଂ ରକ୍ଷକ, ତେବେ ପରମଭକ୍ତି ପ୍ରାପ୍ତି ନିମିତ୍ତ ଆପଣଙ୍କର ଶରଣାଗତ ହେଉଅଛୁ ॥ ୮ ॥

ଭବତୁ ତବ ପ୍ରସାଦାଦ୍‌ଭକ୍ତି ରୈକାନ୍ତିକୀ ମେ,
ଗୁରୁତର ଭବତାପାନ୍ମୁଚ୍ୟତାଂ ମେଽନ୍ତରାତ୍ମା ।
ସପଦ ହୃଦ ନବନ୍ଧା ଗ୍ରନ୍ଥୟୋ ମେ ସ୍ଫୁଟନ୍ତୁ
ଶରଣ ମୁପଗତୋଽସ୍ମି ତେଽହଂ କୈବଲ୍ୟ ଦାୟିନ୍ ॥ ୯ ॥

ହେ ପ୍ରଭୋ ! ତବ ଅନୁଗ୍ରହରୁ ଏ ଜୀବର ଐକାନ୍ତିକୀ ଭକ୍ତି ହେଉ । ଏ ଅନ୍ତରାତ୍ମାକୁ ଗୁରୁତର ସଂସାର କ୍ଲେଶରୁ ମୁକ୍ତ କରନ୍ତୁ । ହୃଦୟର ବନ୍ଧନ ସକଳ ଶୀଘ୍ର ଧ୍ୱସ୍ତ ହୁଅନ୍ତୁ । ହେ କୈବଲ୍ୟଦାତା (ଅଲେଖପ୍ରଭୁ ପରଂବ୍ରହ୍ମ) ଏ ଜୀବ ଆପଣଙ୍କ ଶରଣାପନ୍ନ ହେଉଅଛୁ । ୯ ॥

# ଅଲେଖ ପରବ୍ରହ୍ମ ଦର୍ଶନର ପାଦାନୁପାଦଯୋଗ

* ଯୋଗନାମ କରଣମ୍ *

# ସର୍ବବେଦ ବେଦାନ୍ତ ସାରତତ୍ତ୍ୱଶିରୋମଣି
# ଅଲେଖ ପରଂବ୍ରହ୍ମ ଦର୍ଶନମ୍
## ପୂର୍ବାର୍ଦ୍ଧର ବିଷୟାନୁକ୍ରମଣୀ
### * ପ୍ରଥମ ପାଦସ୍ୟ ପ୍ରଥମାନୁପାଦଃ *

ବିଷୟ ... ପୃଷ୍ଠା



## (୨) * ପ୍ରଥମ ପାଦସ୍ୟ ଦ୍ୱିତୀୟାନୁପାଦଃ *

## ସୃଷ୍ଟିତତ୍ତ୍ୱ-ବିଜ୍ଞାନଯୋଗଃ

ବିଷୟ | ପୃଷ୍ଠା

## ୪ । * ପ୍ରଥମ ପାଦସ୍ୟ ଚତୁର୍ଥାନୁପାଦଃ *

## ସଗୁଣ-ନିର୍ଗୁଣ-ତତ୍ତ୍ୱବିଚାରଯୋଗଃ

ବିଷୟ ପୃଷ୍ଠା

## ସର୍ବ ବେଦବେଦାନ୍ତସାରତତ୍ତ୍ୱଶିରୋମଣି

## ଅଲେଖ ପରଂବ୍ରହ୍ମ ଦର୍ଶନ

### * ଦ୍ୱିତୀୟ ପାଦସ୍ୟ ପ୍ରଥମାନୁପାଦଃ *

### ( ମହାବାକ୍ୟାଦି ତତ୍ତ୍ୱ ନିରୂପଣ ଯୋଗଃ )

ବିଷୟ — ପୃଷ୍ଠା

## * ଦ୍ୱିତୀୟପାଦସ୍ୟ ଦ୍ୱିତୀୟାନୁପାଦଃ

## * ବିଶୁଦ୍ଧାତ୍ମଜ୍ଞାନ-ଭକ୍ତିଯୋଗ

## ୨-୩—* ଦ୍ୱିତୀୟପାଦସ୍ୟ ତୃତୀୟାନୁପାଦଃ *

## ମହିମା ଧର୍ମାଶ୍ରିତ ବିଶିଷ୍ଟାଗୁରନୀତଯୋଗଃ

ବିଷୟ | ପୃଷ୍ଠା



## ସର୍ବ ବେଦବେଦାନ୍ତ-ସାରତତ୍ତ୍ୱଶିରୋମଣି ଅଲେଖ ପରଂବ୍ରହ୍ମ ଦର୍ଶନର ପୂର୍ବାର୍ଦ୍ଧ ବିଷୟାନୁକ୍ରମଣିକା

ସମ୍ପନ୍ନ

ମହାମହିମାମୟ ଅଲେଖପ୍ରଭୁପରଂବ୍ରହ୍ମଣୋଽଭୟପଦେ ଶରଣମ୍ ।

ସର୍ବବେଦବେଦାନ୍ତସାରତତ୍ତ୍ୱ ଶିରୋମଣିଃ

# ଅଲେଖ ପରଂବ୍ରହ୍ମ-ଦର୍ଶନମ୍

( ମହିମାଧର୍ମ-ଦର୍ଶନମ୍ )

ପ୍ରଥମପାଦସ୍ୟ ପ୍ରଥମାନୁପାଦଃ

## ବିଶୁଦ୍ଧ ଜ୍ଞାନଯୋଗଃ

ଅଥ ସର୍ବବେଦବେଦାନ୍ତାନାଂ ସାରତତ୍ତ୍ୱଗ୍ରହଣେନ
ମହିମାଧର୍ମ ଦର୍ଶନନିରୂପଣାୟ ଗ୍ରନ୍ଥୋଽୟଂ ପ୍ରାରଭ୍ୟତେ ।

### ୦-ପ୍ରାଗ୍‌ବାଣୀ,

ଏହି ପବିତ୍ର ଭାରତଭୂମି ମଧ୍ୟରେ ପ୍ରବୁଦ୍ଧାବତାର ଶ୍ରୀମଦ୍‌ଜଗଦ୍‌ଗୁରୁ ମହିମାସ୍ୱାମୀ * ଅବତୀର୍ଣ୍ଣ ହୋଇ ମହିମାଧର୍ମର ଯେଉଁସବୁ ସଦୁପଦେଶ ଶ୍ରୀମୁଖରେ ପ୍ରଦାନ କରିଅଛନ୍ତି, ସେସବୁ ବେଦ ଓ ବେଦାନ୍ତ ଗ୍ରନ୍ଥମାନଙ୍କରେ ସାନ୍ତ୍ରଭୂତଭାବେ ନିହିତ ଥିବା ପ୍ରତ୍ୟକ୍ଷ କରି ସେହି ଗୁରୁସ୍ୱାମୀଙ୍କ ସଦୁପଦେଶ ସହିତ ବେଦବେଦାନ୍ତ-ସିଦ୍ଧାନ୍ତର ସମନ୍ୱୟ ପୂର୍ବକ ଏହି ଗ୍ରନ୍ଥ ପ୍ରଣୟନ କରାଯାଉଅଛି ।

### ୦-ବେଦର ଅର୍ଥ ଓ ବିଭାଗ :

ବିଦ୍‌ଧାତୁରୁ ଅ ପ୍ରତ୍ୟୟ ଯୋଗରେ ବେଦ ଶବ୍ଦ ନିଷ୍ପନ୍ନ; ଅର୍ଥାତ୍ ବେଦର ମର୍ମାର୍ଥଜ୍ଞାନ; ଯାହାଦ୍ୱାରା ପରଂବ୍ରହ୍ମଙ୍କ ଅସ୍ତିତ୍ୱ ସ୍ୱୀକାର କରାଯାଏ ଓ ପରଂବ୍ରହ୍ମଙ୍କର ଅଲୌକିକ ଗୁଣାବଳୀ ହୃଦ୍‌ବୋଧ କରିବାକୁ ହୁଏ, ତାହାର ନାମ ବେଦ † । ଏହି ବେଦର ଅପର ନାମ ଶ୍ରୁତି; କାରଣ, ପରମ୍ପରାକ୍ରମେ ଆର୍ଯ୍ୟ ଋଷିମାନେ ଗୁରୁ-ଶିଷ୍ୟ ଉପଦେଶାନୁସାରେ ଶିକ୍ଷାଲାଭକରି ସ୍ମୃତିପଟରେ ରଖୁଥିବାରୁ ଏହା ଶ୍ରୁତି ବୋଲି କୁହାଯାଏ । କଥିତ ଅଛି—ଏହି ବେଦ ଅପୌରୁଷେୟ, ଅର୍ଥାତ୍ ଏହା କୌଣସି ପୁରୁଷଦ୍ୱାରା ରଚିତ ହୋଇ ନାହିଁ; ଏହା ସ୍ୱତଃ ପରମେଶ୍ୱରଙ୍କ

---

* ପ୍ରକାଶିତ ମହିମାଧର୍ମ ଇତିହାସରେ ପ୍ରବୁଦ୍ଧାବତାର ଶ୍ରୀମଦ୍‌ଗୁରୁ ମହିମାସ୍ୱାମୀଙ୍କର ପରିଚୟ ଦେଖନ୍ତୁ ।

† ବିଦ୍ୟତେ ଜ୍ଞାନଂ ଲଭ୍ୟତେ ଅନେନେତି ବେଦଃ ।

ପ୍ରେରଣାରେ ଋଷିମାନଙ୍କ ହୃଦୟରେ ଉଦ୍‌ଘୋଷିତ ହୋଇଅଛି; କିନ୍ତୁ ଆଧୁନିକ ସମାଲୋଚକଙ୍କ ମତରେ ବେଦର ସୂକ୍ତମାନଙ୍କରେ ଥିବା ଋଷିମାନେ ପୂର୍ବରୁ ଇତସ୍ତତଃ ବିକ୍ଷିପ୍ତଭାବରେ ଲୋକମୁଖରେ ଉଚ୍ଚାରିତ ହେଉଥିବା ମନ୍ତ୍ରର ଅଂଶଗୁଡ଼ିକ ଯଜ୍ଞ ନିମନ୍ତେ ଏକତ୍ର କରି ମନ୍ତ୍ର ଓ ସୂକ୍ତ ରଚନା କରିଛନ୍ତି । ମୌଳିକ ମନ୍ତ୍ରାଂଶଗୁଡ଼ିକ କେଉଁ ସମୟରେ ଓ କାହାଦ୍ୱାରା ରଚିତ ହୋଇଥିଲା, ଏ ବିଷୟ ପ୍ରତିପାଦନ କରିବା ସକାଶେ ଏପର୍ଯ୍ୟନ୍ତ କୌଣସି ଦୃଢ଼ତର ପ୍ରମାଣ ମିଳିନାହିଁ । ବେଦ ଚତୁର୍ବିଧ—ଋକ୍, ଯଜୁଃ, ସାମ ଓ ଅଥର୍ବ । ସମଗ୍ର ବୈଦିକ-ସାହିତ୍ୟ ଦୁଇ ଭାଗରେ କାର୍ଯ୍ୟତଃ ବିଭକ୍ତ—କର୍ମକାଣ୍ଡ ଓ ଜ୍ଞାନକାଣ୍ଡ । କର୍ମକାଣ୍ଡର ମୁଖ୍ୟ ଉଦ୍ଦେଶ୍ୟ ଯଜ୍ଞସମ୍ପାଦନ, ଋକ୍, ଯଜୁଃ, ସାମ—ଏହି ବେଦତ୍ରୟର ମନ୍ତ୍ର ଯଜ୍ଞକର୍ମରେ ବ୍ୟବହୃତ ହୁଏ । ଅତଏବ ଶ୍ରୌତକର୍ମ-ଉପଯୋଗୀ ହେବାରୁ ଏହି ତିନି ବେଦ କେବଳ 'ବେଦତ୍ରୟ' ନାମରେ ଅଭିହିତ । ଅଥର୍ବ ବେଦରେ ଯଜ୍ଞବିଧାନ ନାହିଁ କହିଲେ ଚଳେ, ଏହାର ସର୍ବାଧିକ ଭାଗ ଆଭିଚାରିକ ମନ୍ତ୍ରରେ ପୂର୍ଣ୍ଣ, ଅତଏବ ଏହା ଶ୍ରୌତକର୍ମ ନିମନ୍ତେ ବେଦପଦବାଚ୍ୟ ନୁହେଁ ।

## ବେଦର ଦୁଇ ବିଭାଗ :

ପୂର୍ବେ କୁହାଯାଇଅଛି ଯେ ବୈଦିକ ସାହିତ୍ୟ ସାଧାରଣତଃ ଦୁଇ ଭାଗରେ ବିଭକ୍ତ—କର୍ମକାଣ୍ଡ ଓ ଜ୍ଞାନକାଣ୍ଡ । କର୍ମକାଣ୍ଡ ସାଧନାରେ ଅର୍ଥାତ୍ ଯଜ୍ଞାନୁଷ୍ଠାନାଦିଦ୍ୱାରା ଐହିକ ସର୍ବବିଧ କଲ୍ୟାଣ, ଐଶ୍ୱର୍ଯ୍ୟ, ସମୃଦ୍ଧି, ଶକ୍ତି, ପ୍ରଭାବ, ପ୍ରତିଷ୍ଠା, ପ୍ରତିପତ୍ତି ବୃଦ୍ଧି ଓ ପାରତ୍ରିକ ମଙ୍ଗଳ ସ୍ୱର୍ଗପ୍ରାପ୍ତି, ବହୁ କଳ୍ପବ୍ୟାପୀ ସ୍ୱର୍ଗରାଜ୍ୟରେ ଅନନ୍ତ ସୁଖସମ୍ଭୋଗ, ଏପରିକି ଦେବତ୍ୱ ଓ ଇନ୍ଦ୍ରତ୍ୱ ଲାଭ ପର୍ଯ୍ୟନ୍ତ ସକଳ ସୁଖ ସମ୍ଭବପର ହୁଏ; କିନ୍ତୁ ଜ୍ଞାନକାଣ୍ଡର ସାଧନାରେ ସଂସାର-ଜନ୍ମଜନିତ ଅପାର ଦୁଃଖର ଅବସାନ ଓ ମାୟା-ପ୍ରହେଳିକାର ନିରାକରଣ, ପରଂବ୍ରହ୍ମ ପରମାତ୍ମାଙ୍କ ସହ ଜୀବାତ୍ମାର ଅବିଚ୍ଛିନ୍ନ ସଂଯୋଗଦ୍ୱାରା ଅମୃତତ୍ୱ ବା ମୁକ୍ତିଲାଭ ସୁନିଶ୍ଚିତ ।

କର୍ମକାଣ୍ଡ ଦ୍ୱିବିଧ—ସଂହିତା ଓ ବ୍ରାହ୍ମଣ (ଶ୍ରୌତସୂତ୍ର ମଧ୍ୟ) ।
ଜ୍ଞାନକାଣ୍ଡ ମଧ୍ୟ ଦ୍ୱିବିଧ—ଆରଣ୍ୟକ ଓ ଉପନିଷଦ୍ ।

ଭାରତରେ ଗୌରବାନ୍ୱିତ ବୈଦିକଯୁଗରୁ କର୍ମକାଣ୍ଡ ଓ ଜ୍ଞାନକାଣ୍ଡର ସାଧନ-ପ୍ରଣାଳୀ ପ୍ରବର୍ତ୍ତିତ ହୋଇଆସୁଅଛି * । ଏହି ସମ୍ବନ୍ଧରେ ତୈତ୍ତିରୀୟ ସଂହିତା ପ୍ରଥମ କାଣ୍ଡ ପ୍ରଥମ ପ୍ରପାଠକର ପ୍ରଥମ ଅନୁବାକରେ ଉକ୍ତ ବାକ୍ୟ—

* ଶାସ୍ତ୍ରରେ ଉକ୍ତ ଅଛି ଯେ, ଶୁଦ୍ଧଚିତ୍ତ ଯୋଗୀମାନେ କର୍ମକାଣ୍ଡର ମାହାତ୍ମ୍ୟ ଅବଗତ ହେବା ପରେ ତାହା ତ୍ୟାଗକରି ଜ୍ଞାନକାଣ୍ଡରେ ପ୍ରବୃତ୍ତ ହୁଅନ୍ତି ।

"କର୍ମକାଣ୍ଡସ୍ୟ ମହାତ୍ମ୍ୟଂ ବୁଦ୍ଧ୍ୱା ଯୋଗୀ ତ୍ୟଜେତ୍ ସୁଧୀଃ ।
ପୁଣ୍ୟପାପଦ୍ୱୟଂ ତ୍ୟକ୍ତ୍ୱା ଜ୍ଞାନକାଣ୍ଡେ ପ୍ରବର୍ତ୍ତତେ ॥ ଶିବସଂହିତା ୧-୩୨

"ବେଦାନ୍ତବତ୍ କାଣ୍ଡଦ୍ୱୟାତ୍ମକଃ । ତତ୍ର ପୂର୍ବସ୍ମିନ୍ କାଣ୍ଡେ ନିତ୍ୟନୈମିତ୍ତିକକାମ୍ୟନିଷିଦ୍ଧରୂପଂ ଚତୁର୍ବିଧଂ କର୍ମ ପ୍ରତିପାଦିତମ୍ । ଅଥୋତ୍ତରକାଣ୍ଡମାରବ୍ଧବ୍ୟମ୍ । ଆତ୍ୟନ୍ତିକପୁରୁଷାର୍ଥସିଦ୍ଧିଶ୍ଚ ଦ୍ୱିବିଧା—ସଦ୍ୟୋମୁକ୍ତିଃ କ୍ରମମୁକ୍ତିଶ୍ଚ । ଅସ୍ମାଦୁତ୍ତରକାଣ୍ଡେ ବ୍ରହ୍ମୋପଦେଶୋ ବ୍ରହ୍ମପ୍ରାପ୍ତିଶ୍ଚେତ୍ୟୁଭୟଂ ପ୍ରତିପାଦ୍ୟତେ ।"

ଅର୍ଥାତ୍ ସମଗ୍ର ବେଦ ଦୁଇ ଭାଗରେ ବିଭକ୍ତ—ପୂର୍ବକାଣ୍ଡ ଓ ଉତ୍ତରକାଣ୍ଡ । ପୂର୍ବକାଣ୍ଡରେ ନିତ୍ୟ, ନୈମିତ୍ତିକ, କାମ୍ୟ ଓ ନିଷିଦ୍ଧ—ଏପରି ଚତୁର୍ବିଧ କର୍ମର ବିଷୟ ବର୍ଣ୍ଣିତ ହୋଇଅଛି । ଏ ସମସ୍ତ କେବଳ ପ୍ରବୃତ୍ତିମାର୍ଗର ଧର୍ମ । ପୂର୍ବକାଣ୍ଡ ଶେଷରେ ଉତ୍ତରକାଣ୍ଡ ଆରମ୍ଭ ହୋଇଅଛି । ସଦ୍ୟମୁକ୍ତି ଓ କ୍ରମମୁକ୍ତି—ଏପରିଭାବରେ ଆତ୍ୟନ୍ତିକ ପୁରୁଷାର୍ଥସିଦ୍ଧି ବା ଅପବର୍ଗ (ମୁକ୍ତି) ଦୁଇପ୍ରକାର । ଉତ୍ତରକାଣ୍ଡରେ ଏଥିନିମନ୍ତେ ବ୍ରହ୍ମବିଷୟକ ଉପଦେଶ ଓ ବ୍ରହ୍ମୋପାସନା-ରୂପକ ଦୁଇ ବିଷୟ ପ୍ରତିପାଦିତ ହୋଇଅଛି । ଏହି ଦୁଇ ବିଷୟ ନିବୃତ୍ତିମାର୍ଗର ଧର୍ମ ।

ବେଦର ପ୍ରଥମ ବା କର୍ମକାଣ୍ଡ ଆଶ୍ରୟ କରି ଯେଉଁ ମୀମାଂସା ଦର୍ଶନ ପ୍ରବର୍ତ୍ତିତ, ତାହାର ନାମ ପୂର୍ବ-ମୀମାଂସା । ବେଦର ଦ୍ୱିତୀୟ ବା ଜ୍ଞାନକାଣ୍ଡକୁ ଭିତ୍ତିକରି ଯେଉଁ ଦର୍ଶନ ପ୍ରବର୍ତ୍ତିତ ତାହାର ନାମ ଉତ୍ତର-ମୀମାଂସା । ଯେତେବେଳେ ମାନବଗଣ ବୈଦିକ କର୍ମକାଣ୍ଡ ପ୍ରତି ଆକୃଷ୍ଟ ହୋଇ ବ୍ରହ୍ମବାଦ ବା ଆତ୍ମତତ୍ତ୍ୱବିଷୟକ ଜ୍ଞାନପ୍ରତି ଅବହିତ ହେଲେ ନାହିଁ; ସେତେବେଳେ ମହାତ୍ମା ଜ୍ଞାନୀବୃନ୍ଦ ବେଦର ଶୀର୍ଷ ସ୍ଥାନୀୟ ଜ୍ଞାନକାଣ୍ଡ ବିଭାଗର ସାରୋଦ୍ଧାର କରି ବେଦାନ୍ତାଦି ଗ୍ରନ୍ଥସମୂହ ପ୍ରଣୟନ ବିଷୟରେ ପ୍ରୟାସୀ ହେଲେ ।

## ଠ-ବେଦର ଉତ୍ପତ୍ତି :

ଯେପରି ବିନା ଆୟାସରେ ପ୍ରାଣୀମାନଙ୍କର ନିଶ୍ୱାସ ପ୍ରଶ୍ୱାସ ପ୍ରବାହିତ ହୁଏ, ସେହିପରି ଋକ୍, ଯଜୁଃ, ସାମ ଓ ଅଥର୍ବ ମନ୍ତ୍ର ସେହି ପରମେଶ୍ୱରଙ୍କ ନିଃଶ୍ୱାସ ସ୍ୱରୂପ ଋଷିମାନଙ୍କ ହୃଦୟରେ ବିନା ଆୟାସରେ ସମ୍ଭୂତ ହେଲେ * —

---

* ବେଦରୁ ବେଦାନ୍ତ ସମ୍ଭୂତ—

"ନିଃଶ୍ୱାସଭୂତା ମେ ବିଷ୍ଣୋର୍ବେଦା ଜାତାଃ ସୁବିସ୍ତରାଃ । ତିଳେଷୁ ତୈଳବଦ୍ ବେଦେ ବେଦାନ୍ତଃ ସୁପ୍ରତିଷ୍ଠିତଃ ॥
ରାମ ! ବେଦାଃ କତିବିଧାସ୍ତେଷାଂ ଶାଖାଶ୍ଚ ରାଘବ । ତାସୂପନିଷଦଃ କାଃ ସ୍ୟୁଃ କୃପୟା ବଦ ତତ୍ତ୍ୱତଃ ॥"

ଶ୍ରୀରାମ ଉବାଚ—ଋଗ୍‌ବେଦାଦିବିଭାଗେନ ବେଦାଶ୍ଚତ୍ୱାର ଈରିତାଃ । ତେଷାଂ ଶାଖା ହ୍ୟନେକାଃ—
ସ୍ୟୁସ୍ତାସୂପନିଷଦସ୍ତଥା ॥

ଋଗ୍‌ବେଦସ୍ୟ ତୁ ଶାଖାଃ ସ୍ୟୁରେକବିଂଶତିସଂଖ୍ୟକାଃ । ନବାଧିକଶତଂ ଶାଖା ଯଜୁଷୋ ମାରୁତାତ୍ମଜ ।
ସହସ୍ରସଂଖ୍ୟୟା ଜାତାଃ ଶାଖାଃ ସାମ୍ନଃ ପରନ୍ତପ । ଆଥର୍ବଣସ୍ୟ ଶାଖାଃ ସ୍ୟୁଃ ପଞ୍ଚାଶଦ୍ ଭେଦତୋ ହରେ ॥
ଏକୈକସ୍ୟାସ୍ତୁ ଶାଖାୟା ଏକୈକୋପନିଷନ୍ମତା । ତାସାମେକାମୃଚଂ ଯେନ ପଠ୍ୟତେ ଭକ୍ତିତୋ ମୟି ।
ସ ମତ୍‌ସାୟୁଜ୍ୟପଦବୀଂ ପ୍ରାପ୍ନୋତି ମୁନିଦୁର୍ଲଭମ୍ ॥" ମୁକ୍ତିକୋପନିଷଦ୍ ୯-୧୪

ତସ୍ମାଦ୍‌ଯଜ୍ଞାତ୍ ସର୍ବହୁତଃ ଋଚଃ ସାମାନି ଯଜ୍ଞିରେ
ଛନ୍ଦାଂସି ଯଜ୍ଞିରେ ତସ୍ମାଦ୍ ଯଜୁସ୍ତସ୍ମାଦଜାୟତ ॥
ଯଜୁର୍ବେଦ—୩୧-୭ ।

ଅର୍ଥାତ୍ ସେହି ସର୍ବପୂଜ୍ୟ ପରମାତ୍ମାଙ୍କଠାରୁ ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦ ଉତ୍ପନ୍ନ ହୋଇଅଛନ୍ତି । ଈଶ୍ୱର ସମସ୍ତ ଜ୍ଞାନ ଏହି ବେଦମାନଙ୍କରୁ ପ୍ରକାଶିତ ଓ ସେହି କେବଳ ସମସ୍ତ ବିଦ୍ୟାର ଆଧାର ଓ ଆଶ୍ରୟ । ଏ ସମ୍ବନ୍ଧରେ ବାଦରାୟଣ ବ୍ରହ୍ମସୂତ୍ରର ପ୍ରଥମ ଅଧ୍ୟାୟ ପ୍ରଥମ ପାଦରେ ଉଲ୍ଲେଖ କରିଅଛନ୍ତି—

ଶାସ୍ତ୍ରଯୋନିତ୍ୱାତ୍ ॥ ୧-୧-୩ ॥

ଅର୍ଥାତ୍ ପ୍ରଶାସକ ଜ୍ଞାନରୂପ ଶାସ୍ତ୍ର ସର୍ବଜ୍ଞ ଈଶ୍ୱରଙ୍କଠାରୁ ସମୁଦ୍‌ଭୂତ ହୋଇଅଛି; ଅତଏବ ସେହି ପ୍ରଶାସକ ଜ୍ଞାନରୂପ ବେଦଶାସ୍ତ୍ର ପରଂବ୍ରହ୍ମଙ୍କ ଅସ୍ତିତ୍ୱ ବିଷୟରେ ପ୍ରମାଣ । ବ୍ରହ୍ମ କି ବସ୍ତୁ ତାହା ଶାସ୍ତ୍ରଦ୍ୱାରା ଜଣାଯାଏ । ବ୍ରହ୍ମ ଯେ ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟର କାରଣ, ତାହା ଶାସ୍ତ୍ରରେ ଉକ୍ତ ହୋଇଅଛି । ଅର୍ଥାତ୍ ଶାସ୍ତ୍ର କେବଳ ସେହି ଅଜ୍ଞାତ ବସ୍ତୁର ଜ୍ଞାପକ ।

---

୦-ଅଷ୍ଟୋତ୍ତରଶତ ଉପନିଷଦ୍‌ର ନାମ—

ଈଶ-କେନ-କଠ-ପ୍ରଶ୍ନ-ମୁଣ୍ଡ-ମାଣ୍ଡୂକ୍ୟ ତିତ୍ତିରିଃ । ଐତରେୟଂ ଚ ଛାନ୍ଦୋଗ୍ୟଂ ବୃହଦାରଣ୍ୟକଂ ତଥା ॥
ବ୍ରହ୍ମକୈବଲ୍ୟ ଜାବାଲ ଶ୍ୱେତାଶ୍ୱୋ-ହଂସ ଆରୁଣିଃ । ଗର୍ଭୋ ନାରାୟଣୋ ହଂସୋବିନ୍ଦୁର୍ନାଦଃ ଶିରଃ ଶିଖାଃ ॥
ମୈତ୍ରାୟଣୀ କୌଷିତକୀ ବୃହଜ୍ଜାବାଲତାପନୀ । କାଲାଗ୍ନିରୁଦ୍ର-ମୈତ୍ରେୟୀ ସୁବାଲକ୍ଷୁରମନ୍ତ୍ରିକା ॥
ସର୍ବସାରଂ ନିରାଲମ୍ବଂ ରହସ୍ୟଂ ବଜ୍ରସୂଚିକମ୍ । ତେଜୋ-ନାଦଧ୍ୟାନବିଦ୍ୟାଯୋଗତତ୍ତ୍ୱାତ୍ମବୋଧକମ୍ ॥
ପରିବ୍ରାଟ ତ୍ରିଶିଖୀ ସୀତାଚୂଡ଼ାନିର୍ବାଣମଣ୍ଡଲମ୍ । ଦକ୍ଷିଣା ଶରଭଂ ସ୍କନ୍ଦଂ ମହାନାରାୟଣାଦ୍ୱୟମ୍ ॥
ରହସ୍ୟଂ ରାମତପନଂ ବାସୁଦେବଂ ଚ ମୁଦ୍‌ଗଲମ୍ । ଶାଣ୍ଡିଲ୍ୟଂ ପୈଙ୍ଗଳଂ ଭିକ୍ଷୁ ମହଚ୍ଛାରୀରକଂ ଶିଖା ॥
ତୁରୀୟାତୀତସନ୍ନ୍ୟାସ ପରିବ୍ରାଜାକ୍ଷମାଳିକା । ଅବ୍ୟକ୍ତୈକା-କ୍ଷରଂ ପୂର୍ଣ୍ଣା ସୂର୍ଯ୍ୟାକ୍ଷ୍ୟଧ୍ୟାତ୍ମକୁଣ୍ଡିକା ॥
ସାବିତ୍ର୍ୟାତ୍ମା ପାଶୁପତଂ ବ୍ରହ୍ମାବଧୂତକମ । ତ୍ରିପୁରା ତପନଂ ଦେବୀ‌ତ୍ରିପୁରା କଠଭାବନା ॥
ହୃଦୟଂ କୁଣ୍ଡଲୀ ଭସ୍ମ ରୁଦ୍ରାକ୍ଷଗଣଦର୍ଶନମ୍ । ତାରସାରମହାବାକ୍ୟପଞ୍ଚବ୍ରହ୍ମାଗ୍ନିହୋତ୍ରକମ୍ ॥
ଗୋପାଳତପନଂ କୃଷ୍ଣଂ ଯାଜ୍ଞବଲ୍କ୍ୟଂ ବରାହକମ୍ । ଶାଟ୍ୟାୟନୀ ହୟଗ୍ରୀବଂ ଦତ୍ତାତ୍ରେୟଂ ଚ ଗାରୁଡ଼ମ୍ ॥
କଲିଜାବାଲସୌଭାଗ୍ୟରହସ୍ୟଋଚମୁକ୍ତିକା । ଏବମଷ୍ଟୋତ୍ତରଶତଂ ଭାବନାତ୍ରୟନାଶନମ୍ ॥
ଜ୍ଞାନବୈରାଗ୍ୟଦଂ ପୁଂସାଂ ବାସନାତ୍ରୟନାଶନମ୍ ॥ ମୁକ୍ତିକୋପନିଷଦ୍ ୧।୨୭-୩୭ ॥

ଉପର୍ଯ୍ୟୁକ୍ତ ଉପନିଷତ୍‌ସମୂହମଧ୍ୟରୁ କେଉଁ ଉପନିଷଦ୍ କେଉଁ ବେଦରୁ ଓ କେଉଁ ଶାଖାରୁ ଉଦ୍ଭୂତ ତାହାର ବିଶିଷ୍ଟବିବରଣୀ ଉକ୍ତ ଉପନିଷଦ୍‌ରେ ଦ୍ରଷ୍ଟବ୍ୟ ।

ପୁନଶ୍ଚ-ସର୍ବୋପନିଷଦାଂ ମଧ୍ୟେ ସାରମଷ୍ଟୋତ୍ତରଂ ଶତମ୍ । ସକୃଚ୍ଛ୍ରବଣମାତ୍ରେଣ ସର୍ବାଘୌଘନିକୃନ୍ତନମ୍ ।
ମୁକ୍ତି : ୧।୪୧ ॥

ବେଦାର୍ଥ ସାଧାରଣତଃ ଅଗୋଚର, ଅର୍ଥାତ୍ ପରଂବ୍ରହ୍ମସତ୍ତା ଇନ୍ଦ୍ରିୟଗ୍ରାହ୍ୟ ନ ହେଲେ ମଧ୍ୟ ଆଧ୍ୟାତ୍ମିକ ପରିବିଦ୍ୟା ବ୍ୟତୀତ ଭୌତିକ ବିଜ୍ଞାନଦ୍ୱାରା ପରଂବ୍ରହ୍ମଙ୍କ ଅସ୍ତିତ୍ୱ ପ୍ରମାଣିତ ହୁଏ ନାହିଁ । ଅନୁମାନଦ୍ୱାରା ମଧ୍ୟ ବ୍ରହ୍ମସତ୍ତା ନିରୂପଣ କରିଯାଇପାରେ ନାହିଁ । ଏ ସ୍ଥଳେ ଶାସ୍ତ୍ର କେବଳ ପରଂବ୍ରହ୍ମଙ୍କ ଅସ୍ତିତ୍ୱ ବିଷୟରେ ଏକମାତ୍ର ପ୍ରମାଣ । "ସର୍ବେ ବେଦା ଯତ୍ପଦମାମନନ୍ତି" । କଠବଲ୍ଲୀ, ପୂର୍ବୋକ୍ତ ସୂତ୍ର ସହିତ ଏହି ଶ୍ରୁତିବାକ୍ୟାର୍ଥର ସମନ୍ୱୟ ସୁସଙ୍ଗତ ।

ସୁବାଳ-ଉପନିଷଦ୍‌ରେ ମଧ୍ୟ କଥିତ ଅଛି—

"ତସ୍ୟୈତସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେବୈତଦ୍ ଯଦୃଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବବେଦଃ ଶିକ୍ଷା କଳ୍ପୋ ବ୍ୟାକରଣଂ ନିରୁକ୍ତଂ ଛନ୍ଦୋ ଜ୍ୟୋତିଷାମୟନଂ ନ୍ୟାୟୋ ମୀମାଂସା ଧର୍ମଶାସ୍ତ୍ରାଣି ବ୍ୟାଖ୍ୟାନାନ୍ୟୁପବ୍ୟାଖ୍ୟାନାନି ଚ ସର୍ବାଣି ଚ ଭୂତାନି ହିରଣ୍ୟ-ଜ୍ୟୋତିର୍ଯସ୍ମିନ୍ନୟମାତ୍ମା-ଧିକ୍ଷପନ୍ତି-ଭୁବନାନି ବିଶ୍ୱା ॥"

ସୁବାଳୋପନିଷଦ୍—ଖ: ୨-୨ ॥

ସେହି ହିରଣ୍ୟଗର୍ଭ ଉପାଧିକ ମହାଭୂତରୁ ଏହି ସକଳ ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦସ୍, ଜ୍ୟୋତିଷ, ନ୍ୟାୟ, ମୀମାଂସା, ସକଳ ଧର୍ମଶାସ୍ତ୍ର, ବ୍ୟାଖ୍ୟା ସମୁଦାୟ ଓ ଉପବ୍ୟାଖ୍ୟାସମୂହ ପ୍ରାଣୀମାନଙ୍କର ନିଃଶ୍ୱାସ ପରି ଅଯତ୍ନସମ୍ଭୂତ । ଏହି ହିରଣ୍ୟଜ୍ୟୋତି ହିରଣ୍ୟଗର୍ଭ—ଆତ୍ମାରେ ସକଳ ଚତୁର୍ଦ୍ଦଶ ଭୁବନ ଅବସ୍ଥାନ କରୁଅଛନ୍ତି ।

ଉପର୍ଯ୍ୟୁକ୍ତ ବିବରଣୀ ଅନୁସାରେ ବେଦର ଉତ୍ପତ୍ତି-ବିଷୟ ବର୍ଣ୍ଣିତ ହେଲା ମହାଭାରତରେ ମଧ୍ୟ—

"ତଦୁକ୍ତଂ ବେଦବାଦେଷୁ ଗହନଂ ବେଦଦର୍ଶିଭିଃ ।
ବେଦାନ୍ତେଷୁ ପୁନର୍ବ୍ୟକ୍ତଂ କର୍ମଯୋଗେନ ଲକ୍ଷ୍ୟତେ ॥"

ବେଦରେ ଯଦ୍ୟପି ବ୍ରହ୍ମସ୍ୱରୂପ ବର୍ଣ୍ଣିତ ହୋଇଅଛି, ତଥାପି ବେଦ 'ଅତି ଗହନ'; ବେଦଜ୍ଞ ପୁରୁଷଙ୍କ ପକ୍ଷରେ ମଧ୍ୟ ଏହା ଦୁର୍ଜ୍ଞେୟ । ବେଦାନ୍ତ-ବିଦ୍ୟାଦ୍ୱାରା କେବଳ ସେହି ବ୍ରହ୍ମ ଜ୍ଞାତ ହୁଅନ୍ତି । କର୍ମଯୋଗଦ୍ୱାରା ମଧ୍ୟ ବ୍ରହ୍ମଙ୍କୁ ଲକ୍ଷ୍ୟ କରିଯାଇ ନ ପାରେ ।

### ଠ-ବେଦାନ୍ତ ଶବ୍ଦର ବ୍ୟୁତ୍ପତ୍ତି :

ବର୍ତ୍ତମାନ ବେଦାନ୍ତ ଶବ୍ଦର ଅର୍ଥ ବିସ୍ତୃତଭାବେ କରିଯାଉଅଛି । ଉପନିଷଦ୍ ହିଁ ବେଦାନ୍ତ ।

ବେଦାନ୍ତର ଅର୍ଥ—ବେଦର ଅନ୍ତ, ବେଦର ପରମଜ୍ଞାନସଂକଳନ ଆରଣ୍ୟକର ପରିଶିଷ୍ଟସ୍ୱରୂପ ଉପନିଷଦ୍ କେବଳ ବେଦାନ୍ତ । ଆର୍ଯ୍ୟ ଋଷିମାନେ କହିଛନ୍ତି—ଉପନିଷତ୍ * ବା ବେଦାନ୍ତ ବେଦର ମସ୍ତକସ୍ୱରୂପ, ଅର୍ଥାତ୍ ଶୀର୍ଷସ୍ଥାନୀୟ । ବେଦର ଏହି ଅଂଶ ହିଁ ଜଗତର ଶ୍ରେଷ୍ଠ ଜ୍ଞାନ ବ୍ରହ୍ମବିଦ୍ୟାର ଅପୂର୍ବ ବିକାଶ । ଯେଉଁମାନେ ଶ୍ରଦ୍ଧା ଭକ୍ତିପୂର୍ବକ ଏହି ବ୍ରହ୍ମବିଦ୍ୟାର ଅନୁଶୀଳନ କରି ପରଂବ୍ରହ୍ମରେ ଆତ୍ମନିବେଦନ କରନ୍ତି, ସେମାନଙ୍କର ଗର୍ଭବାସ ଜନ୍ମ, ଜରା, ରୋଗ ପ୍ରଭୃତି ଅନର୍ଥ ନିଚୟ ବିନାଶପ୍ରାପ୍ତ ହୁଏ । ଅବିଦ୍ୟାଦି ସଂଶୟ-କାରଣର ଅବସାନ ଘଟେ ଏବଂ ଶେଷରେ ସେମାନେ ପରଂବ୍ରହ୍ମରେ ଲୀନ ହୁଅନ୍ତି ।

## ୦-ଉପନିଷଦ୍ ଶବ୍ଦାର୍ଥ ଓ ଉପନିଷଦ୍ ହିଁ ବ୍ରହ୍ମବିଦ୍ୟା ।

ଏ ସମ୍ବନ୍ଧରେ ଆଚାର୍ଯ୍ୟ ଶଙ୍କର ବୃହଦାରଣ୍ୟକର ଭାଷ୍ୟ ଭୂମିକାରେ ପ୍ରତିପାଦନ କରିଅଛନ୍ତି—"ସେୟଂ ବ୍ରହ୍ମବିଦ୍ୟା ଉପନିଷଦ୍ ଶବ୍ଦବାଚ୍ୟା, ତତ୍ପରାଣାଂ ସହେତୋଃ ସଂସାରସ୍ୟ ଅତ୍ୟନ୍ତାବସାଦନାତ୍ । ଉପ-ନି-ପୂର୍ବ ସଦେସ୍ତଦର୍ଥତ୍ୱାତ୍ ।' ବୃହଦାରଣ୍ୟକଭାଷ୍ୟ-୧-୧ । ଅର୍ଥାତ୍ ସେହି ବ୍ରହ୍ମବିଦ୍ୟା ହିଁ ଉପନିଷଦ୍ । ଯେଉଁମାନେ ଏହି ବ୍ରହ୍ମବିଦ୍ୟାର ଅନୁଶୀଳନରେ ସଦା ତତ୍ପର,

* ଉପନିଷୀଦତି-ପ୍ରାପ୍ନୋତି ବ୍ରହ୍ମାତ୍ମଭାବମନୟା ଇତି ଉପନିଷଦ୍; ଉପ-ନି-ସଦ୍ ଧାତୋଃ କ୍ୱିପ୍ ପ୍ରତ୍ୟୟଃ', ବ୍ରହ୍ମବିଦ୍ୟାୟାଂ; ତତ୍ପ୍ରତିପାଦକେ ବେଦଶିରୋଭାଗେ ବେଦାନ୍ତେ ଚ । ଯ ଇମାଂ ବ୍ରହ୍ମବିଦ୍ୟାମୁପଯନ୍ତି ଆତ୍ମଭାବେନ ଶ୍ରଦ୍ଧାଭକ୍ତିପୁରଃସରାଃ ସନ୍ତଃ ତେଷାଂ ଗର୍ଭଜନ୍ମଜରାରୋଗାଦ୍ୟନର୍ଥପୂଗଂ ନିଶାତୟତି, ପରଂ ବା ବ୍ରହ୍ମ ଗମୟତ୍ୟବିଦ୍ୟାଦିସଂସାରକାରଣଞ୍ଚାତ୍ୟନ୍ତମବସାଦୟତି ବିନାଶୟତି ଇତ୍ୟୁପନିଷଦ୍ । ଉପ-ନି-ପୂର୍ବସ୍ୟ ସଦେରେବମର୍ଥସ୍ମରଣାତ୍ । ମୁଣ୍ଡକଭାଷ୍ୟ—୧-୧

ପୁନଶ୍ଚ—ଉପ + ନି + ସଦ୍‌ରୁ ଯେପରି ଉପନିଷଦ୍ ଶବ୍ଦ ଉତ୍ପନ୍ନ ହୋଇଅଛି, ସେହିପରି ଉପ + ସଦ୍‌ରୁ ଉପସଦ୍, ପରି + ସଦ୍‌ରୁ ପରିଷଦ୍ ଓ ସମ୍ + ସଦ୍‌ରୁ ସଂସଦ୍ ଆଦି ଶବ୍ଦ ସିଦ୍ଧ ହୋଇଅଛି । ଉପସଦ୍‌ର ଅର୍ଥ ଯଜ୍ଞାଙ୍ଗବିଶେଷ; ଏହି ଅର୍ଥରେ ବୈଦିକ ସାହିତ୍ୟରେ ଏପରି ଶବ୍ଦମାନଙ୍କର ପ୍ରଭୂତ ପ୍ରୟୋଗ ଦୃଷ୍ଟ ହୁଏ ।

ଦ୍ୱାଦଶାହଂ ଉପସଦ୍ ବ୍ରତୀ ଭୂତ୍ୱା—ବୃ. ଆ. ଉ.—୬-୩-୧ ॥
ଯଦ୍ ରମତେ ତଦ୍ ଉପସଦଃ—ମ. ନାରାୟଣ ଉ.—୧୫-୧ ॥

କିନ୍ତୁ ଉପସନ୍ନ ଶବ୍ଦର ଅର୍ଥ ଭିନ୍ନ; ଗୁରୁଙ୍କ ନିକଟରେ ଶିଷ୍ୟ ଉପସନ୍ନ ହୁଏ—ଆଙ୍ଗିରସଂ ବିଧିବତ ଉପସନ୍ନଃ—ମୁଣ୍ଡକ ଉ.—୭-୧-୧୪ ।

ଭଗବନ୍ତଂ ପିପଲାଦଂ ଉପସନ୍ନାଃ—ପ୍ରଶ୍ନ—୧୧ ॥ ଉପସସାଦ ସନତ୍କୁମାରଂ ନାରଦଃ—ଛାନ୍ଦୋଗ୍ୟ—୧-୧ । ଏ ସକଳ ସ୍ଥଳରେ ଉପ + ସଦ୍ ଧାତୁର ଅର୍ଥ ବିନୀତଭାବରେ ଗୁରୁଙ୍କର ସମୀପସ୍ଥ ହେବ । ଏଠାରେ ଉପ ଓ ନି ଉପସର୍ଗଦ୍ୱୟ ସଦ୍ ଧାତୁ ସହିତ ସନ୍ନିବିଷ୍ଟ ହୋଇଥିବାରୁ ଶବ୍ଦର ପ୍ରକୃଷ୍ଟାର୍ଥ ଏହା—ବିନୀତଭାବରେ ଶିଷ୍ୟକର୍ତ୍ତୃକ ଗୁରୁଙ୍କ ସମୀପାବସ୍ଥାନ । ଯଥା—ତସ୍ମୈ ସ ବିଦ୍ୱାନ୍ ଉପସନ୍ନାୟ ସମ୍ୟକ୍ ପ୍ରଶାନ୍ତଚିତ୍ତାୟ ସମାନ୍ୱିତାୟ ।

ଯେନାକ୍ଷରଂ ପୁରୁଷଂ ବେଦ ସତ୍ୟଂ ପ୍ରୋବାଚ ତାଂ ତତ୍ତ୍ୱତୋ ବ୍ରହ୍ମବିଦ୍ୟାମ୍ । ମୁଣ୍ଡକ—୧-୨-୧୩ ॥

ସେମାନଙ୍କର ଏହି ଜନ୍ମ-ଜରା-ମରଣଶୀଳ ସଂସାରପ୍ରାପକ ଅବିଦ୍ୟାଗ୍ରନ୍ଥି ଉଚ୍ଛେଦିତ ହୁଏ; ଅତଏବ ଏହି ବ୍ରହ୍ମବିଦ୍ୟା ଉପନିଷଦ୍ ନାମରେ ଅଭିହିତ। ଶବ୍ଦର ବ୍ୟୁତ୍ପନ୍ନାର୍ଥରୁ କେବଳ ଉପନିଷଦ୍-ଗ୍ରନ୍ଥନାମରେ ଏହି ସାର୍ଥକ ହେବ ବ୍ୟବହୃତ ହୁଏ। ପ୍ରାୟ ସକଳ ଉପନିଷଦ୍‌ରେ ଦେଖାଯାଏ ଯେ ବ୍ରହ୍ମବିଦ୍ୟା ଗୁରୁଶିଷ୍ୟଙ୍କ ପ୍ରଶ୍ନୋତ୍ତର ପ୍ରସଙ୍ଗରେ ପଲ୍ଲବିତ କରାଯାଇଛି। ପ୍ରିୟତମ, ନୈଷ୍ଠିକ ଓ ବ୍ରହ୍ମଚର୍ଯ୍ୟବ୍ରତାବଲମ୍ବୀ ଶିଷ୍ୟ ବ୍ୟତୀତ ବ୍ରହ୍ମବିତ୍ ଗୁରୁ ଅନ୍ୟ ବ୍ୟକ୍ତିଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କରନ୍ତି ନାହିଁ। ପ୍ରତ୍ୟେକ ଉପନିଷଦ୍‌ରେ ଏହାର ପ୍ରମାଣ ଦୃଷ୍ଟିଗୋଚର ହୁଏ।

ବେଦାନ୍ତସାରରେ କଥିତ ଅଛି—

"ବେଦାନ୍ତୋ ନାମ ଉପନିଷତ୍ ପ୍ରମାଣମ୍।
ତଦୁପକାରୀଣି ଶାରୀରକସୂତ୍ରାଦୀନି ଚ" ବେ. ସାର ୩ ॥

ସ୍ୱତଃସିଦ୍ଧ ପ୍ରମାଣସ୍ୱରୂପ ଉପନିଷଦ୍‌କୁ ବେଦାନ୍ତ କହନ୍ତି ଓ ଯେଉଁ ସମସ୍ତ ଶାସ୍ତ୍ର ବେଦାନ୍ତ-ବାକ୍ୟରେ ଅନୁକୂଳ, ସେପରି ଶାରୀରକ ସୂତ୍ର * ଆଦି ଶାସ୍ତ୍ରକୁ ମଧ୍ୟ ବେଦାନ୍ତ ବୁଝାଯାଏ। ଅନ୍ୟତ୍ର ଶଙ୍କରାଚାର୍ଯ୍ୟ ମଧ୍ୟ ଉପନିଷଦ୍‌ର ଅର୍ଥ ନିମ୍ନଭାବେ ବ୍ୟକ୍ତ କରିଛନ୍ତି।

**"ସଦେବେରୁପନିପୂର୍ବସ୍ୟ କ୍ୱିପି ଚୋପନିଷଦ୍ ଭବେତ୍।**
**ମନ୍ଦୀକରଣଭାବାଚ୍ଚ ଗର୍ଭାଦେଃ ଶାତନାତ୍ତଥା ॥"**

ଉପଦେଶ। ସାହସ୍ରୀ ୨୬ ॥

---

* ଶରୀରେ ଭବଃ ଶାରୀରଃ ତତଃ କୁତ୍ସିତାର୍ଥେ କଃ ଜୀବ ଇତ୍ୟର୍ଥଃ। ତତ୍ସମ୍ବନ୍ଧୀ ମୀମାଂସା ବିଚାର ଶାରୀରକ ମୀମାଂସା, ଅର୍ଥାତ୍ ଆତ୍ମତତ୍ତ୍ୱବିଚାର। ଏହା ବେଦାନ୍ତମୀମାଂସାଦର୍ଶନରେ ପ୍ରତିପାଦିତ ହୋଇଛି। "ଶରୀରମେବ ଶରୀରକଂ, ତତ୍ର ନିବାସୀ ଶାରୀରକଃ ଜୀବାତ୍ମା, ତସ୍ୟ ତ୍ୱଂ ପଦାଭିଧେୟସ୍ୟ ତତ୍‌ପଦାଭିଧେୟ ପରମାତ୍ମରୂପତା ମୀମାଂସା ଯା ସା ତଥୋକ୍ତା ॥ ଭାମତୀ ॥ ଅର୍ଥାତ୍ ଶରୀର ହିଁ ଶରୀରକ ପଦବାଚ୍ୟ ହୁଏ। ତହିଁରେ ଯେ ବାସ କରେ ସେ ଶାରୀରକ ଅର୍ଥାତ୍ ଜୀବାତ୍ମା। ସେହି ତ୍ୱଂପଦାଭିଧେୟ ଜୀବାତ୍ମାର ଓ ତତ୍-ପଦାଭିଧେୟ ପରମାତ୍ମା-ସ୍ୱରୂପର ଯେ ମୀମାଂସା, ତାହାର ନାମ ଶାରୀରକ ମୀମାଂସା।

"ପରମପୁରୁଷାର୍ଥହେତୁଭୂତ ସୂକ୍ଷ୍ମତମାର୍ଥନିର୍ଣ୍ଣୟଫଲତା ବିଚାରସ୍ୟ ପୂଜିତତା ତସ୍ୟା। ମୀମାଂସାୟାଃ ଶାସ୍ତ୍ରମ୍, ସା ହି ଅନେନ ଶିଷ୍ୟତେ ଶିଷ୍ୟେଭ୍ୟଃ ଯଥାବତ୍ ପ୍ରତିପାଦ୍ୟତେ ଇତି। ସୂତ୍ରଂ ଚ ବହ୍ୱର୍ଥସୂଚନାଦ୍ ଭବତି।

ଯଥା ଆହୁଃ—

ଲଘୂନି ସୂଚିତାର୍ଥାନି ସ୍ୱଳ୍ପାକ୍ଷରପଦାନି ଚ।
ସର୍ବତଃ ସାରଭୂତାନି ସୂତ୍ରାଣ୍ୟାହୁର୍ମନୀଷିଣଃ। ଇତି ଭାମତୀ ॥

ଅର୍ଥ—ପରମପୁରୁଷାର୍ଥର ହେତୁଭୂତ ସୂକ୍ଷ୍ମତମ ଅର୍ଥର ଯେ ନିର୍ଣ୍ଣୟ ଓ ତାହା ଯେଉଁ ବିଚାରଦ୍ୱାରା ସିଦ୍ଧ ହୁଏ, ତାହା ହିଁ ପୂଜିତ ବିଚାର। ସେହି ମୀମାଂସାର ଯେ ଶାସ୍ତ୍ର ତାହା ମୀମାଂସା ଶାସ୍ତ୍ର। କାରଣ, ଏହାଦ୍ୱାରା କେବଳ ସେହି ମୀମାଂସା ଶ୍ରେଷ୍ଠ ହୁଏ, ଅର୍ଥାତ୍ ଶିଷ୍ୟମାନଙ୍କୁ ଉତ୍ତମଭାବରେ ବୁଝାଇ ଦିଆଯାଏ। ବହୁ ଅର୍ଥକୁ ଯାହା ସୂଚିତ କରେ ତାହାର ନାମ ସୂତ୍ର। ଯଥା—

ଉପ-ନି-ପୂର୍ବକ ସଦ୍‌ଧାତୁରୁ ଉପନିଷଦ୍ ଶବ୍ଦ ନିଷ୍ପନ୍ନ ହୁଏ; ଏ ହେତୁରୁ ଉପନିଷତ୍ ଜ୍ଞାନ ଜନ୍ମ—ଜରା ପ୍ରଭୃତିକୁ ଶିଥିଳ କରେ। ଅର୍ଥାତ୍ ସେ ସମସ୍ତର ଉଚ୍ଛେଦସାଧନ କରେ † ଉପର୍ଯ୍ୟୁକ୍ତ ବର୍ଣ୍ଣନା ଅନୁସାରେ ବେଦ ଓ ବେଦାନ୍ତ ଶବ୍ଦର ଅର୍ଥ ନିର୍ଣ୍ଣୀତ ହୋଇଛି। ଅତଏବ ବେଦଶବ୍ଦଦ୍ୱାରା କେବଳ ଜ୍ଞାନକାଣ୍ଡର ଗ୍ରହଣ କରାଯାଇ ନ ପାରେ। କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଉଭୟ ବେଦ ହେଲେ ମଧ୍ୟ କେବଳ ଜ୍ଞାନକାଣ୍ଡ ସାଧନରେ ଅବିଦ୍ୟା-ନିବୃତ୍ତିପୂର୍ବକ ମୁକ୍ତିମାର୍ଗ ପ୍ରଶସ୍ତ ହୁଏ। ଏହି ହେତୁରୁ ଏହାର ନାମ ବେଦାନ୍ତ। "ବେଦସ୍ୟ ଅନ୍ତଃ ସାରଭାଗଃ ବେଦାନ୍ତଃ" ଅର୍ଥାତ୍ ବେଦର ଅନ୍ତ ବା ସାରତତ୍ତ୍ୱକୁ ବେଦାନ୍ତ କୁହାଯାଏ, ଏହି ବେଦାନ୍ତ ହିଁ ସକଳ ବେଦଶାସ୍ତ୍ରାଦିର ଶୀର୍ଷସ୍ଥାନୀୟ *। ବେଦାନ୍ତ ବ୍ରହ୍ମବିଦ୍ୟା ଓ ଉପନିଷଦ୍ ପର୍ଯ୍ୟାୟ ଶବ୍ଦ। ଯେଉଁ ଗ୍ରନ୍ଥଦ୍ୱାରା ବ୍ରହ୍ମବିଦ୍ୟା ଲବ୍‌ଧ ହୁଏ, ତାହାରି ନାମ ଉପନିଷଦ୍।

## ଠ-ବ୍ରହ୍ମବିଦ୍ୟାଭିନ୍ନ ଅନ୍ୟାନ୍ୟ ସକଳବିଦ୍ୟା ପରିହାର୍ଯ୍ୟ।

ଯେଉଁ ସବୁ ଶ୍ରୁତିଶାସ୍ତ୍ରରେ ବ୍ରହ୍ମବିଦ୍ୟାଭିନ୍ନ ଅନ୍ୟାନ୍ୟ ବିଦ୍ୟା ପର୍ଯ୍ୟାଲୋଚିତ ହୋଇ-ଅଛି, ତାହା ସବୁ ଏହି ଗ୍ରନ୍ଥରେ ପରିହୃତ ହୋଇଛି। ଏପରି କି ଉପନିଷଦ୍ ଗ୍ରନ୍ଥରେ ଯେଉଁସବୁ ବିଷୟ ବ୍ରହ୍ମୋପାସନା ମାର୍ଗର ପ୍ରତିଦ୍ୱନ୍ଦ୍ୱୀ ତାହା ବେଦାନ୍ତରେ ଗ୍ରହଣଯୋଗ୍ୟ ନୁହେଁ। ଯେ ସକଳ ଶ୍ରୁତିଶାସ୍ତ୍ର ବ୍ରହ୍ମବିଦ୍ୟା ଅବଲମ୍ବନରେ ବିରଚିତ ତାହା ସବୁ ବେଦାନ୍ତ-ଗ୍ରନ୍ଥ ନାମରେ ପ୍ରସିଦ୍ଧ। ବ୍ରହ୍ମବିଦ୍ୟା ଭିନ୍ନ ଅନ୍ୟାନ୍ୟବିଦ୍ୟା ଦୁର୍ବଳ। ଅତଏବ ପରଂବ୍ରହ୍ମ ଉପାସନ ମାର୍ଗର ପଥ ଉଦ୍‌ଘାଟନକାରୀ ବ୍ରହ୍ମବିଦ୍ୟା ବିଷୟ ଏହି ଗ୍ରନ୍ଥରେ ବର୍ଣ୍ଣିତ ହେଉଅଛି। ଏ ସମ୍ବନ୍ଧରେ ସ୍ୱୟଂ ଅଙ୍ଗିରସ ମୁଣ୍ଡକୋପନିଷଦ୍‌ରେ କହିଅଛନ୍ତି—

ଆର୍ଯ୍ୟଋଷିମାନଙ୍କ ମତରେ—ଯାହା ଲଘୁ ବା ଯହିଁରେ ସ୍ୱଳ୍ପାକ୍ଷର ପଦ ଥାଏ ଓ ଯହିଁରେ ବହ୍ୱର୍ଥ ଗର୍ଭିତ ତାହା କେବଳ ସୂତ୍ରପଦବାଚ୍ୟ।

† ତାତ୍ପର୍ଯ୍ୟ ଏହା—ସଦ୍ ଧାତୁର ଅର୍ଥ ବିଶରଣ (ଶିଥିଳୀକରଣ), ଗତି (ପ୍ରାପ୍ତି) ଓ ଅବସାଦ ବା ନାଶ। ଏ ସ୍ଥଳେ ଏକ ଧାତୁର ତ୍ରିବିଧ ଅର୍ଥ ଉପନିଷଦ୍ ଶବ୍ଦରେ ପ୍ରଯୁଜ୍ୟ ହୋଇପାରେ। ଯଥା—ପ୍ରଥମାଧିକାରୀରେ ଜନ୍ମ ଜରା ପ୍ରଭୃତି ଶିଥିଳ କରେ, ମଧ୍ୟମାଧିକାରୀ ସମୀପରେ ନିଷ୍ପ୍ରସ୍ୱରୂପରେ ବ୍ରହ୍ମପ୍ରାପ୍ତି ଘଟାଏ ଏବଂ ଉତ୍ତମାଧିକାରୀର ଜନ୍ମାଦି ସମୂଳେ ନାଶ କରେ। ଏହି ହେତୁରୁ ଏହାର ନାମ ଉପନିଷଦ୍। ଉପନିଷଦ୍ ଶବ୍ଦର ଅନ୍ୟ ଅର୍ଥ ବ୍ରହ୍ମବିଦ୍ୟା ଓ ପ୍ରକୃତରେ ଉପନିଷଦ୍ ଓ ବ୍ରହ୍ମବିଦ୍ୟା ଏକାର୍ଥବାଚକ। ବ୍ରହ୍ମଜ୍ଞାନ ହେଲେ ଅଜ୍ଞାନ ଲୟ ପ୍ରାପ୍ତ ହୁଏ। ଜନ୍ମ, ଜରା, ବ୍ୟାଧି, ମରଣ ପ୍ରଭୃତି ଆଉ ରହେ ନାହିଁ। ଏହି ଭୀଷଣ ସଂସାରକବଳରୁ ନିଷ୍କୃତିଲାଭ ନିମନ୍ତେ ଉପନିଷଦ୍ ହିଁ ଅବଲମ୍ବନୀୟ।

* "ତାବଦ୍ ଗର୍ଜନ୍ତି ଶାସ୍ତ୍ରାଣି ଜମ୍ବୁକା ବିପିନେ ଯଥା;
ନ ଗର୍ଜନ୍ତି ମହାଶକ୍ତିର୍ଯାବଦ୍ ବେଦାନ୍ତ-କେଶରୀ ॥" (ବୀରଚନ୍ଦ୍ରୋଦୟ)

ଅର୍ଥାତ୍ ବେଦାନ୍ତରାଜ୍ୟରେ ଅନ୍ୟ କୌଣସି ଶାସ୍ତ୍ରର ଗର୍ଜନ ଶୁଣାଯାଏ ନାହିଁ। ସିଂହର ସମ୍ମୁଖରେ ଯେପରି ଶୃଗାଳ ମୌନ ହୋଇଯାଏ, ସେହିପରି ବେଦାନ୍ତ ସମ୍ମୁଖରେ ଅନ୍ୟ ଶାସ୍ତ୍ରସମୂହ ନୀରବ ହୋଇଯା'ନ୍ତି।

ଦ୍ୱେ ବିଦ୍ୟେ ବେଦିତବ୍ୟେ ଇତି ହସ୍ମ ଯଦ୍ ବ୍ରହ୍ମବିଦୋ ବଦନ୍ତି, ପରା ଚୈବାପରା ଚ । ମୁଣ୍ଡକ ଉ. ୧-୧-୪ ।

ବ୍ରହ୍ମବିତ୍ ପଣ୍ଡିତମାନେ କହିଅଛନ୍ତି ଯେ, ଦୁଇଗୋଟି ବିଦ୍ୟା ଜ୍ଞାତବ୍ୟ ବିଷୟ । ଏକ ପରାବିଦ୍ୟା ଓ ଦ୍ୱିତୀୟ ଅପରାବିଦ୍ୟା ।

ତତ୍ରାପରା ବିଦ୍ୟା ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବବେଦଃ ; ଶିକ୍ଷା କଳ୍ପୋ ବ୍ୟାକରଣଂ ନିରୁକ୍ତଂ ଛନ୍ଦୋ ଜ୍ୟୋତିଷମିତି । ଅଥ ପରା ଯୟା ତଦକ୍ଷରମଧିଗମ୍ୟତେ । ମୁଣ୍ଡକ ୧-୧-୫ ।

ଋଗ୍‌ବେଦ, ଯଜୁର୍ବେଦ, ସାମବେଦ ଓ ଅଥର୍ବବେଦ ଏବଂ ଶିକ୍ଷା, କଳ୍ପସୂତ୍ର, ବ୍ୟାକରଣ, ନିରୁକ୍ତ, ଛନ୍ଦସ୍ ଓ ଜ୍ୟୋତିଷ—ଏହି ଶାସ୍ତ୍ର ସକଳ ଅପରାବିଦ୍ୟା । ପରନ୍ତୁ ଯେଉଁ ବିଦ୍ୟାଦ୍ୱାରା ସେହି ଅବିନାଶୀ ବ୍ରହ୍ମବସ୍ତୁ ଅବଗତ ହୁଏ ତାହା ପରାବିଦ୍ୟା ।

ବ୍ୟାସଦେବ ଶୁକଦେବଙ୍କୁ ମଧ୍ୟ ଏ ସମ୍ବନ୍ଧରେ କହିଅଛନ୍ତି—

“ଦ୍ୱେ ବିଦ୍ୟେ ବେଦିତବ୍ୟେ ହି ପରା ଚୈବାପରା ଚ ତେ ।
ତତ୍ରାପରା ତୁ ବିଦ୍ୟୈଷା ଋଗ୍‌ବେଦୋ ଯଜୁରେବଚ ॥
ସାମବେଦ ସ୍ତଥାଥର୍ବବେଦଃ ଶିକ୍ଷା ମୁନୀଶ୍ୱର ।
କଳ୍ପୋ ବ୍ୟାକରଣଂ ଚୈବ ନିରୁକ୍ତଂ ଛନ୍ଦ ଏବ ଚ ॥
ଜ୍ୟୋତିଷଂ ଚ ତଥାଽନାତ୍ମବିଷୟା ଅପି ବୁଦ୍ଧୟଃ ।
ଅଥୈଷା ପରମା ବିଦ୍ୟା ଯୟାତ୍ମା ପରମାକ୍ଷରମ୍ ॥”

ଶୁକ୍ରହୃଦୟୋପନିଷଦ୍ ॥

ଅର୍ଥାତ୍—ହେ ଶୁକ ! ବିଦ୍ୟା ଦୁଇ ପ୍ରକାର—ପରା ଓ ଅପରା । ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଶିକ୍ଷା, କଳ୍ପସୂତ୍ର, ବ୍ୟାକରଣ, ନିରୁକ୍ତ, ଛନ୍ଦସ୍ ଓ ଜ୍ୟୋତିଷ ଏବଂ ଆତ୍ମା ଭିନ୍ନ ଅନ୍ୟ ବିଷୟରେ ଯେଉଁ ଜ୍ଞାନ ସେ ସମସ୍ତକୁ ଅପରାବିଦ୍ୟା କୁହାଯାଏ । ଏହି ବିଦ୍ୟାସାଧନରେ ସାଧ୍ୟ ସାଧନ ଫଳାଦିଭେଦବିଶିଷ୍ଟ ସ୍ୱର୍ଗାଦିଫଳଜନକ ଯାଗାଦି କର୍ମ ଓ ଅନ୍ୟାନ୍ୟ ଅନାତ୍ମବିଷୟର ଜ୍ଞାନ ଲାଭ ହୋଇଥାଏ ; କିନ୍ତୁ ଯାହାଦ୍ୱାରା ପରମ ଅକ୍ଷର, ଅର୍ଥାତ୍ ଅବିନାଶୀ ଆତ୍ମାର ଯଥାର୍ଥ ସ୍ୱରୂପଜ୍ଞାନ ଲାଭ ହୁଏ, ତାହା ହିଁ ପରାବିଦ୍ୟା । ଫଳାନୁରୋଧୀ ଯାଗାନୁଷ୍ଠାନରୂପକ ଅପରାବିଦ୍ୟାସାଧନରେ ଯେଉଁ ଫଳ ଲାଭ ହୁଏ, ତାହା ସୀମିତ ଓ ବିନାଶଶୀଳ ; କିନ୍ତୁ ପରାବିଦ୍ୟା ସାଧନରେ ବ୍ରହ୍ମଜ୍ଞାନ ଲାଭ ହୁଏ ;

ଆତ୍ମଜ୍ଞାନ ଲାଭ କୌଣସି ଅନୁଷ୍ଠାନ ବା କାଳାନ୍ତର ଅପେକ୍ଷା ରଖେ ନାହିଁ । ଆତ୍ମସ୍ୱରୂପ-ପ୍ରାପ୍ତିହେତୁ ଉପନିଷତ୍ ପ୍ରୋକ୍ତ ଏହି ଆତ୍ମବିଦ୍ୟା ହିଁ ପରାବିଦ୍ୟା ।

ଛାନ୍ଦୋଗ୍ୟ ଉପନିଷଦ୍‌ରେ ସନତ୍‌କୁମାର ନାରଦଙ୍କୁ ଏ ବିଷୟ କହିଅଛନ୍ତି—ନାମ ବା ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦ ଆଥର୍ବଣଶ୍ଚତୁର୍ଥ ଇତିହାସପୁରାଣଃ ପଞ୍ଚମୋ ବେଦାନାଂ ବେଦଃ ପିତ୍ର୍ୟୋ ରାଶିର୍ଦୈବୋ ନିଧିର୍ବାକୋବାକ୍ୟଂ ଏକାୟନଂ ଦେବବିଦ୍ୟା ବ୍ରହ୍ମବିଦ୍ୟା ଭୂତବିଦ୍ୟା କ୍ଷତ୍ରବିଦ୍ୟା ନକ୍ଷତ୍ରବିଦ୍ୟା ସର୍ପଦେବଜନବିଦ୍ୟା ନାମୈବୈତତ୍ ନାମୋପାସ୍ୱେତି ॥ ଛା. ଉ. ୭-୧-୪ ॥

ଅର୍ଥାତ୍—ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ପଞ୍ଚମ-ଇତିହାସ-ପୁରାଣ, ବ୍ୟାକରଣ, କଳ୍ପସୂତ୍ର, ଭୂତତନ୍ତ୍ରବିଦ୍ୟା ବା ବେଦର ବେଦ, ଗଣିତବିଦ୍ୟା, ଦୈବବିଦ୍ୟା (ଭବିଷ୍ୟତ୍ ବାଣୀ), ପିତୃଯଜ୍ଞବିଦ୍ୟା, ସମସ୍ତବିଦ୍ୟା, ତର୍କବିଦ୍ୟା, ନୀତି ଓ ରାଜନୀତିବିଦ୍ୟା, ଭୂଗୋଳବିଦ୍ୟା, ସର୍ପବିଦ୍ୟା ଓ କଳାବିଦ୍ୟା—ଏହା ସବୁ ନାମପଦବାଚ୍ୟ ଓ ବାଗାତ୍ମକ ବିକାର ମାତ୍ର । ଏହି ନାମ ମଧ୍ୟରୁ ସାରତତ୍ତ୍ୱ ନାମ ଉପାସନୀୟ ।

ଉପର୍ଯ୍ୟୁକ୍ତ ଶ୍ରୁତିରୁ ପ୍ରତିପନ୍ନ ହେଉଅଛି ଯେ, ବେଦବେଦାନ୍ତାଦି ଶାସ୍ତ୍ରସମୂହର ସାରରୂପକ ବ୍ରହ୍ମବିଦ୍ୟା ଗ୍ରହଣ କରି ଅସାର ଭାଗ ତ୍ୟାଗ କରିବା ବିଧେୟ । ସେହି ପରାବିଦ୍ୟା ପରଂବ୍ରହ୍ମ ପରମାତ୍ମାଙ୍କ ତତ୍ତ୍ୱ ବେଦବେଦାନ୍ତରେ ଗୁପ୍ତଭାବେ ନିହିତ ଅଛି :—

ତଦ୍ ବେଦ ଗୁହ୍ୟୋପନିଷତ୍ସୁ ଗୂଢ଼ଂ ତଦ୍ ବ୍ରହ୍ମା ବେଦୟତେ ବ୍ରହ୍ମଯୋନିମ୍ ॥
ଶ୍ୱେତାଶ୍ୱତର ଉ. ୫-୬ ॥

ସେହି ଜଗତ୍‌ପତି ପରମାତ୍ମା ବେଦବେଦାନ୍ତରେ ଗୁପ୍ତଭାବେ ରହିଅଛନ୍ତି । ସେହି ଜଗତ୍‌କାରଣସ୍ୱରୂପ ବ୍ରହ୍ମଙ୍କୁ ବ୍ରହ୍ମା ଅବଗତ ହୋଇଛନ୍ତି ।

୦—ବ୍ରହ୍ମବିଦ୍ୟାର ଅଧିକାରୀ ।

ସେହି ପରମାତ୍ମାଙ୍କୁ ଅଜ୍ଞ ଓ ପାପାଗ୍ରହୀ ବ୍ୟକ୍ତି ଜାଣିପାରନ୍ତି ନାହିଁ । କେବଳ ସଂଯମୀ, ବିଜ୍ଞ ଓ ସଜ୍ଜନ ସାଧକବୃନ୍ଦ ସହଜରେ ଅନୁଭବ କରିପାରନ୍ତି ।

**ନାବିରତୋ ଦୁଶ୍ଚରିତାନ୍ନାଶାନ୍ତୋ ନାସମାହିତଃ ।**
**ନାଶାନ୍ତମାନସୋ ବାପି ପ୍ରଜ୍ଞାନେନୈନମାପ୍ନୁୟାତ୍ ॥**
**ଯସ୍ୟ ବ୍ରହ୍ମ ଚ କ୍ଷତ୍ରଞ୍ଚ ଉଭେ ଭବତ ଓଦନଃ ।**
**ମୃତ୍ୟୁର୍ଯସ୍ୟୋପସେଚନଂ କ ଇତ୍ଥା ବେଦ ଯତ୍ର ସଃ ।**

କଠୋପନିଷଦ୍ ୧ । ୨ । ୨୪-୨୫ ॥

ଯେ ସକଳ ବ୍ୟକ୍ତି ପାପକର୍ମାସକ୍ତ, ଯେଉଁମାନେ ଇନ୍ଦ୍ରିୟଗୃଅଲିପ୍ତବଶତଃ ସର୍ବଦା ଅଶାନ୍ତ ଓ ଅସମାହିତଚିତ୍ତ, ଅର୍ଥାତ୍ ବିକ୍ଷିପ୍ତଚିତ୍ତ ଏବଂ ଯେଉଁମାନେ ବିଷୟ-

ନିବୃତ୍ତଚିତ୍ତ ନୁହନ୍ତି, ସେମାନେ ପରମାତ୍ମାଙ୍କୁ ଲାଭ କରିପାରନ୍ତି ନାହିଁ । ଯେଉଁମାନେ ପାପ-କର୍ମରୁ ବିରତ, ଇନ୍ଦ୍ରିୟଗୃଞ୍ଖଳରହିତ, ସମାହିତଚିତ୍ତ ଓ ଶାନ୍ତମନା, ସେମାନେ ସାଧୁ ଆଚାର୍ଯ୍ୟ ଲାଭ କରି ତାଙ୍କଠାରୁ ଲବ୍ଧଜ୍ଞାନ-ପ୍ରଭାବରେ ପରମାତ୍ମାଙ୍କୁ ଲାଭ କରିପାରନ୍ତି । ହିରଣ୍ୟଗର୍ଭ ଓ ପ୍ରକୃତି ଯାହାର ଅନ୍ନସ୍ୱରୂପ, ସର୍ବସଂହାରକ ମୃତ୍ୟୁ ଯାହାର ଅନ୍ନର ଉପସେଚନ, ଅର୍ଥାତ୍ ଘୃତସ୍ଥାନୀୟ, ସେହି ପରମାତ୍ମାଙ୍କୁ ଯଥୋକ୍ତସାଧନହୀନ ପ୍ରାକୃତବୁଦ୍ଧିସମ୍ପନ୍ନ କିଏ କେଉଁ ବ୍ୟକ୍ତି ଜାଣିପାରେ ? ପରମାତ୍ମାଙ୍କ ସ୍ୱରୂପ ସାଧନସମ୍ପନ୍ନ ବ୍ୟକ୍ତିର ହିଁ ଜ୍ଞେୟ । ଏହି ଶ୍ରୁତିର ଫଳିତାର୍ଥ ଏହି ଯେ, ଜ୍ଞାନପିପାସୁ ସୁଧୀବୃନ୍ଦ ଯଥାବିଧାନ ସାଧନଭଜନ ବିନା ବ୍ରହ୍ମଜ୍ଞାନ ବିଷୟରେ ଅଧିକାରୀ ହୋଇପାରନ୍ତି ନାହିଁ । ଏ ବିଷୟ ବ୍ରହ୍ମସୂତ୍ରକାର ବାଦରାୟଣ ପ୍ରଥମ ସୂତ୍ରର ସୂଚିତ କରିଅଛନ୍ତି—

**ଅଥାତୋ ବ୍ରହ୍ମଜିଜ୍ଞାସା** * ‖ ବ୍ରହ୍ମସୂତ୍ର—୧-୧-୧ ‖

ସୂତ୍ରସ୍ଥ ଅଥ ଶବ୍ଦର ଅର୍ଥ ଆନନ୍ତର୍ଯ୍ୟ । ଗ୍ରନ୍ଥାରମ୍ଭର ମଙ୍ଗଳସୂଚକ ଶବ୍ଦ ହେଲେ ମଧ୍ୟ ତାହା ଏ ସ୍ଥଳେ ସେହି ଅର୍ଥରେ ପ୍ରଯୁକ୍ତ । ଅଥ ଶବ୍ଦ ଏଠାରେ ଅବିଦ୍ୟାନିବୃତ୍ତିପୂର୍ବକ ସାଧନ-ଚତୁଷ୍ଟୟସମ୍ପନ୍ନ ଅଧିକାରୀକୁ ବୁଝାଉଅଛି । ଉକ୍ତ ସାଧନରେ ଅଧିକାରୀ ହୋଇ ବ୍ରହ୍ମଙ୍କୁ ଜ୍ଞାନ କରିବା ବିଧେୟ । ଏ ସମ୍ବନ୍ଧରେ ଆଚାର୍ଯ୍ୟ ଶଙ୍କର ଉକ୍ତ ସୂତ୍ରର ଭାଷ୍ୟ † ରେ ଲେଖିଛନ୍ତି—

ନିତ୍ୟାନିତ୍ୟବସ୍ତୁବିବେକଃ, ଇହାମୂତ୍ରାର୍ଥଫଳଭୋଗବିରାଗଃ, ଶମଦମାଦି-ସାଧନସମ୍ପତ୍, ମୁମୁକ୍ଷୁତ୍ୱଂ ଚ । ତେଷୁ ହି ସତ୍ସୁ, ପ୍ରାଗପି ଧର୍ମଜିଜ୍ଞାସାୟା ଊର୍ଦ୍ଧ୍ୱଂ ଚ ଶକ୍ୟତେ ବ୍ରହ୍ମ ଜିଜ୍ଞାସିତୁଂ ଜ୍ଞାତୁଂ ଚ, ନ ବିପର୍ଯ୍ୟୟେ । ତସ୍ମାଦଥଶବ୍ଦେନ ଯଥୋକ୍ତ ସାଧନସମ୍ପତ୍ତ୍ୟା ଽ ଽ-ନନ୍ତର୍ଯ୍ୟଂ ଉପଦିଶ୍ୟତେ । ଅତଃ-ଶବ୍ଦୋ ହେତ୍ୱର୍ଥଃ । ଯସ୍ମାଦ୍ ବେଦ ଏବାଗ୍ନିହୋତ୍ରାଦୀନାଂ ଶ୍ରେୟଃସାଧନାନାମନିତ୍ୟଫଳତାଂ ଦର୍ଶୟତି—ତଦ୍ ଯଥେହ କର୍ମଚିତୋ ଲୋକଃ

* ଅଥ—ଅନନ୍ତରଂ, ସାଧନଚତୁଷ୍ଟୟସ୍ୟ ସମ୍ପତ୍ତ୍ୟନନ୍ତରଂ, ବ୍ରହ୍ମଜିଜ୍ଞାସା କର୍ତ୍ତବ୍ୟା, ବ୍ରହ୍ମ ବିଚାରଯିତ-ବ୍ୟମିତ୍ୟର୍ଥଃ । ବିଚାରଜନିତେନ ଜ୍ଞାନେନାବଗନ୍ତୁମିଷ୍ଟଂ ବ୍ରହ୍ମେତି ସୂତ୍ରତାତ୍ପର୍ଯ୍ୟମ୍ । ବେଦାନ୍ତ ଦର୍ଶନ : ଟି : ‖ ଅର୍ଥାତ୍ ଜ୍ଞାନ ଓ ଶମଦମାଦିସଦ୍‌ଗୁଣ ଲାଭ ପରେ ବ୍ରହ୍ମବିଷୟ ବିଚାର କରିବ ।

† ଭାଷ୍ୟଶବ୍ଦାର୍ଥ—ସୂତ୍ରସ୍ଥଂ ପଦମାଦାୟ ପଦୈଃ ସୂତ୍ରାନୁସାରିଭିଃ ।
ସ୍ୱପଦାନି ଚ ବର୍ଣ୍ଣ୍ୟନ୍ତେ ଭାଷ୍ୟଂ ଭାଷ୍ୟବିଦୋ ବିଦୁଃ । ଶ୍ରୀଭାଷ୍ୟ ବେଦାନ୍ତ

ଅର୍ଥାତ୍ସୂତ୍ରାନୁରୂପପଦଦ୍ୱାରା ସୂତ୍ରସ୍ଥ ପଦସମୂହର ବ୍ୟାଖ୍ୟା କରାଯାଏ ଏବଂ ସେହି ବ୍ୟାଖ୍ୟା ମାଧ୍ୟମରେ ନିଜର ବାକ୍ୟାନୁଗତ ବ୍ୟାଖ୍ୟା ସଂଯୁକ୍ତ କରାଯାଇଥାଏ, ଭାଷ୍ୟବିତ୍ ପଣ୍ଡିତମାନେ ତାହା ଭାଷ୍ୟ ବୋଲି କହନ୍ତି ।

କ୍ଷୀୟତ ଏବମେବାମୁତ୍ର ପୁଣ୍ୟଚିତୋ ଲୋକଃ କ୍ଷୀୟତେ-ଇତ୍ୟାଦିଃ । ତଥା ବ୍ରହ୍ମବିଜ୍ଞାନାଦପି ପରମପୁରୁଷାର୍ଥଂ ଦର୍ଶୟତି 'ବ୍ରହ୍ମବିଦାପ୍ନୋତି ପରମ୍' ଇତ୍ୟାଦିଃ । ତସ୍ମାଦ୍ ଯଥୋକ୍ତସାଧନ-ସମ୍ପତ୍ତ୍ୟନନ୍ତରଂ ବ୍ରହ୍ମଜିଜ୍ଞାସା କର୍ତ୍ତବ୍ୟା ।

ଅର୍ଥାତ୍ —ନିତ୍ୟାନିତ୍ୟବସ୍ତୁ ବିବେକ । ଐହିକ ଓ ପାରତ୍ରିକ ବିଷୟଭୋଗବୈରାଗ୍ୟ ଓ ଶମ, ଦମ, ଉପରତି, ତିତିକ୍ଷା, ଶ୍ରଦ୍ଧା, ସମାଧାନ, ମୁମୁକ୍ଷୁତ୍ୱ—ଏହି ସମସ୍ତ ଗୁଣ ବା ସମସ୍ତ ସାଧନ ବର୍ତ୍ତମାନ ଥିଲେ ଧର୍ମଜିଜ୍ଞାସା ପୂର୍ବରୁ ଓ ପରେ ମଧ୍ୟ ବ୍ରହ୍ମଜିଜ୍ଞାସା କରାଯାଇପାରେ, କିନ୍ତୁ ଏହି ସକଳ ସାଧନ ଅସିଦ୍ଧ ଥିଲେ କେବେହେଲେ ବ୍ରହ୍ମଜିଜ୍ଞାସା ପ୍ରଶ୍ନ ଉଠେ ନାହିଁ । ଏହି ସବୁ କାରଣରୁ ଏହା ସ୍ୱୀକାର୍ଯ୍ୟ ଯେ, ମହାମୁନି ବ୍ୟାସ 'ଅଥ' ଶବ୍ଦଦ୍ୱାରା ଏହି ସକଳ ସାଧନାର ଅନନ୍ତର ବା ଉପଲବ୍ଧି ପରେ କେବଳ ବ୍ରହ୍ମଜିଜ୍ଞାସା କରିବା ବିଧେୟ ବୋଲି ଉପଦେଶ ଦେଇଅଛନ୍ତି । ବ୍ୟାସଦେବଙ୍କ ଉପଦେଶର ତାତ୍ପର୍ଯ୍ୟ ଏହି ଯେ, ଜୀବ ଏହି ସକଳଗୁଣସମ୍ପନ୍ନ ହେଲେ ବ୍ରହ୍ମଜିଜ୍ଞାସୁ ହୋଇପାରେ ; ଅନ୍ୟଥା ବ୍ରହ୍ମଜ୍ଞାନ ଅନୁସନ୍ଧିତ୍ସୁ ହେବା ସମ୍ଭବପର ନୁହେଁ । ଯେଉଁ ବ୍ୟକ୍ତି ଏହି ସକଳଗୁଣର ସାଧକ, ସେହି କେବଳ ବ୍ରହ୍ମତତ୍ତ୍ୱବିଚାରର ଯଥାର୍ଥ ଅଧିକାରୀ ।

ସୂତ୍ରରେ ଅଥଶବ୍ଦ ପରେ 'ଅତଃ' ଶବ୍ଦ ମଧ୍ୟ ଲିଖିତ ଅଛି । ତାହାର ଅର୍ଥ—ସେହିହେତୁରୁ, ଅର୍ଥାତ୍ କ୍ରିୟାଫଳରେ (ସ୍ୱର୍ଗାଦିର) ଅନିତ୍ୟତାହେତୁକ ବ୍ରହ୍ମବିଜ୍ଞାନର ପରମପୁରୁଷାର୍ଥସାଧନ ହେତୁରୁ (ଯସ୍ମାଦ୍ୱସ୍ମାଦ୍) ; ସ୍ୱୟଂ ବେଦ ହିଁ ସୁକ୍ତିସହକାରେ ଅଗ୍ନି-ହୋତ୍ରାଦି କର୍ମଫଳର ଅନିତ୍ୟତା ପ୍ରଦର୍ଶନ କରିଅଛି ; ଯେପରି କୃଷିକର୍ମାଦିଦ୍ୱାରା ନିଷ୍ପାଦିତ ଐହିକଫଳ (ଶସ୍ୟାଦି) ଅନିତ୍ୟ ବା ନଶ୍ୱର, ସେପରି ଯାଗାଦିକର୍ମନିଷ୍ପାଦିତ ପାରତ୍ରିକ-ସ୍ୱର୍ଗାଦିଫଳ ମଧ୍ୟ ଅନିତ୍ୟ । କେବଳ ବ୍ରହ୍ମଜ୍ଞ ପୁରୁଷ ପରଂବ୍ରହ୍ମଙ୍କୁ ଲାଭ କରେ—ଇତ୍ୟାଦି ପ୍ରକାରରେ ବ୍ରହ୍ମ ବିଜ୍ଞାନରୂପ ପରମପୁରୁଷାର୍ଥ ଲାଭର କଥା କେବଳ ବର୍ଣ୍ଣିତ ହୋଇଅଛି । ଅତଏବ ମୁମୁକ୍ଷୁ ପୂର୍ବୋକ୍ତ ଗୁଣସମ୍ପନ୍ନ ହୋଇ ବ୍ରହ୍ମଜିଜ୍ଞାସା କରିବ । ଏ ସମ୍ବନ୍ଧରେ ଉପନିଷଦ୍‌ରେ ମଧ୍ୟ କୁହାଯାଇଛି—

ଋଭୁର୍ନାମ ମହାଯୋଗୀ କ୍ରୋଡ଼ରୂପଂ ରମାପତିମ୍ ।
ବରିଷ୍ଠାଂ ବ୍ରହ୍ମବିଦ୍ୟାଂ ତ୍ୱମଧୀହି ଭଗବନ୍ମମ ॥
ଏବଂ ସ ପୃଷ୍ଟୋ ଭଗବାନ୍ ପ୍ରାହ ଭକ୍ତାର୍ତ୍ତିଭଞ୍ଜନଃ ।
ସ୍ୱବର୍ଣ୍ଣାଶ୍ରମଧର୍ମେଣ ତପସା ଗୁରୁତୋଷଣାତ୍ ॥
ସାଧନଂ ପ୍ରଭବେତ୍ ପୁଂସାଂ ବୈରାଗ୍ୟାଦିଚତୁଷ୍ଟୟମ୍ ।

ନିତ୍ୟାନିତ୍ୟବିବେକଶ୍ଚ ଇହାମୁତ୍ର ବିରାଗତଃ ।
କ୍ଷମାଦିଷଟ୍‌କସମ୍ପତ୍ତିଃ ମୁମୁକ୍ଷୁସ୍ତାନ୍ ସମଭ୍ୟସେତ୍ ।।
ଏବଂ ଜିତେନ୍ଦ୍ରିୟୋ ଭୂତ୍ୱା ସର୍ବତ୍ର ମମତାମତମ୍ ।
ବିହାୟ ସାକ୍ଷିଚୈତନ୍ୟେ ମୟି କୁର୍ଯ୍ୟାଦହଂମତମ୍ ।।

ବରାହୋପନିଷଦ୍—୧।୨।୫ ।।

ଋଭୁନାମକ ମହାଯୋଗୀ ବିଷ୍ଣୁଙ୍କୁ ପ୍ରଶ୍ନ କଲେ—ଭଗବାନ୍ ! ଆପଣ ମତେ ଶ୍ରେଷ୍ଠ ବ୍ରହ୍ମବିଦ୍ୟା ବିଷୟରେ ଉପଦେଶ ପ୍ରଦାନ କରନ୍ତୁ । ଭକ୍ତଦୁଃଖହାରୀ ଭଗବାନ୍ ନାରାୟଣ ଋଭୁକର୍ତ୍ତୃକ ଏହିପରି ଜିଜ୍ଞାସିତ ହୋଇ କହିଲେ—"ମାନବଗଣ ନିଜ ନିଜ ବର୍ଣ୍ଣ ଓ ଆଶ୍ରମ ଧର୍ମରେ ରତ, ତପସ୍ୟା ଓ ଗୁରୁଶୁଶ୍ରୂଷାଦିରେ ବକ୍ଷ୍ୟମାଣ ଚତୁର୍ବିଧ ସାଧନରତ ହୁଅନ୍ତି । (୧)—ନିତ୍ୟ ଓ ଅନିତ୍ୟ ବସ୍ତୁରେ ପାର୍ଥକ୍ୟବୁଦ୍ଧି, (୨) ଐହିକ ଭୋଗବିଳାସ ଓ ପାରତ୍ରିକ ସ୍ୱର୍ଗାଦି ଭୋଗ ବିଷୟରେ ବୈରାଗ୍ୟ । (୩) ଶମ, ଦମ, ଉପରତି, ତିତିକ୍ଷା, ସମାଧାନ ଓ ଶ୍ରଦ୍ଧାର ଉତ୍କର୍ଷ ଲାଭ ଏବଂ (୪) ମୋକ୍ଷେଚ୍ଛା—ଏହା ବ୍ରହ୍ମଜିଜ୍ଞାସା ବା ବ୍ରହ୍ମଜ୍ଞାନର ଚାରି ସାକ୍ଷାତ୍ ସାଧନ ବା ଉପାୟ । ଯେଉଁମାନେ ବ୍ରହ୍ମଜ୍ଞାନ ଲାଭ କରିବା ନିମନ୍ତେ ପ୍ରୟାସୀ, ସେମାନେ ଯଥାଯଥଭାବେ ଏହି ଚାରି ସାଧନ ସମ୍ୟକ୍ ରୂପେ ଅଭ୍ୟାସ କରିବେ । ଇନ୍ଦ୍ରିୟଗଣଙ୍କୁ ବଶୀଭୂତ ଓ ସକଳ ପଦାର୍ଥରେ ଅହଂ-ମମଭାବ ପରିତ୍ୟାଗ କରି ସବୁ ପଦାର୍ଥର ଦ୍ରଷ୍ଟା ଓ ଚୈତନ୍ୟସ୍ୱରୂପ ଆତ୍ମଠାରେ ଆତ୍ମବୁଦ୍ଧି ସ୍ଥାପନ କରିବେ ।"

## ୦—ବ୍ରହ୍ମବିଦ୍ୟା-ଆଲୋଚନାରେ ତର୍କ ନିଷିଦ୍ଧ :

ସାଧନଚତୁଷ୍ଟୟ ସମ୍ପାଦନ ବଳରେ ବ୍ରହ୍ମଜ୍ଞାନର ଲାଭ ହୁଏ—ଏହା ଉପର୍ଯ୍ୟୁକ୍ତ ଯୁକ୍ତିରୁ ପ୍ରତିପନ୍ନ ହୁଏ । ଆତ୍ମଜ୍ଞାନ-ଆଲୋଚନା ବିଷୟରେ ଅଧ୍ୟାତ୍ମ ଶାସ୍ତ୍ରର ଯୁକ୍ତି ବ୍ୟତୀତ ତର୍କଶାସ୍ତ୍ର-ଯୁକ୍ତି ପ୍ରୟୋଗ କରିବା ବିବେକୀ ବ୍ୟକ୍ତିର କର୍ତ୍ତବ୍ୟ ନୁହେଁ । ଉପନିଷଦ୍ ବଚନ—

**ନୈଷା ତର୍କେଣ ମତିରାପନେୟା ପ୍ରୋକ୍ତାନ୍ୟେନୈବ ସୁଜ୍ଞାନାୟ ପ୍ରେଷ୍ଠ ।**
**ଯାଂ ତ୍ୱମାପଃ ସତ୍ୟଧୃତିର୍ବତାସି ତାଦୃଙ୍ ନୋ ଭୂୟାନ୍ନଚିକେତଃ ପ୍ରଷ୍ଟା ।।**

କଠ. ଉ. ୧-୨-୯ ।

ଅର୍ଥାତ୍—ହେ ପ୍ରିୟତମ ନଚିକେତଃ ! ସୂକ୍ଷ୍ମ-ଆତ୍ମତତ୍ତ୍ୱଦର୍ଶୀ ଆଚାର୍ଯ୍ୟଙ୍କ * ଦ୍ୱାରା

---

* ଆଚାର୍ଯ୍ୟ ଶବ୍ଦର ଅର୍ଥ—ଆଚିନୋତି ଚ ଶାସ୍ତ୍ରାର୍ଥମାଚାରେ ସ୍ଥାପୟତ୍ୟପି ।
ସ୍ୱୟମାଚରତେ ଯସ୍ମାଦାଚାର୍ଯ୍ୟସ୍ତେନ କୀର୍ତ୍ତିତଃ ।।

ଅର୍ଥାତ୍ ଯେ ସ୍ୱୟଂ ଶାସ୍ତ୍ରମାନଙ୍କର ସାରସଂଗ୍ରହ କରିଛନ୍ତି, ଲୋକମାନଙ୍କୁ ସଦାଚାର ଶିକ୍ଷା ଦିଅନ୍ତି ଓ ନିଜେ ମଧ୍ୟ ତଦନୁରୂପ ଆଚରଣ କରନ୍ତି, ସେ ଆଚାର୍ଯ୍ୟ ନାମରେ ଅଭିହିତ ହୁଅନ୍ତି :

ଉପଦିଷ୍ଟ ହୋଇ ଆତ୍ମତତ୍ତ୍ୱ ବିଷୟରେ ଯେପରି ବୁଦ୍ଧି ଦୃଢ଼ ହୁଏ, ତାହା ତର୍କଦ୍ୱାରା ଅପନୀତ ହୋଇପାରେ ନାହିଁ । ଅତଏବ ଶାସ୍ତ୍ରାଭିଜ୍ଞ ଆଚାର୍ଯ୍ୟଙ୍କ ଉପଦେଶ ଓ ଶାସ୍ତ୍ରବୁଦ୍ଧି କେବଳ ସମ୍ୟକ୍ ଜ୍ଞାନସାଧିକା ହୋଇଥାଏ । ତର୍କର ଅଗମ୍ୟ ମତ ବିଷୟରେ କହୁଅଛନ୍ତି—ହେ ନଚିକେତଃ ! ତୁମ୍ଭେ ଆମ୍ଭଠାରୁ ବର ପାଇ ଯେଉଁ ଜ୍ଞାନଲାଭ କରିଅଛ, ତାହା କୁତର୍କାଶ୍ରୟୀ ବ୍ୟକ୍ତି ଜାଣିପାରିବେ ନାହିଁ । ହେ ନଚିକେତଃ ! ତୁମ୍ଭେ ସତ୍ୟ ବିଷୟ ଅବଧାରଣ କରିବାକୁ ସଂକଳ୍ପ କରିଅଛ ; ତୁମ୍ଭପରି ତତ୍ତ୍ୱଦ୍ରଷ୍ଟା ବ୍ୟକ୍ତି ଅନ୍ୟ କେହି ନାହାନ୍ତି ।

ପୁନଶ୍ଚ—

**ଅଚିନ୍ତ୍ୟାଃ ଖଲୁ ଯେ ଭାବା ନ ତାଂସ୍ତର୍କେଣ ଯୋଜୟେତ୍ ।**
**ପ୍ରକୃତିଭ୍ୟଃ ପରଂ ଯଚ୍ଚ ତଦଚିନ୍ତ୍ୟସ୍ୟ ଲକ୍ଷଣମ୍ ॥**

ବ୍ରହ୍ମସୂତ୍ର—ଶାଙ୍କରଭାଷ୍ୟ ॥

ଯାହା ଚିନ୍ତାର ଅତୀତ, ତାହା ତର୍କରେ ଆରୋପିତ ହେବାରେ ଅଯୋଗ୍ୟ ; ଅର୍ଥାତ୍ ଯାହା ତର୍କଦ୍ୱାରା ଅପ୍ରାପ୍ୟ, ପ୍ରକୃତିର ମଧ୍ୟ ଅତୀତ, ତାହା ଅଚିନ୍ତ୍ୟ ; କାରଣ, ଅଚିନ୍ତ୍ୟତାହିଁ ସେହି ପରମାତ୍ମାବସ୍ତୁର ଲକ୍ଷଣ । ବ୍ୟାସଦେବ ମଧ୍ୟ ବ୍ରହ୍ମସୂତ୍ରରେ କହିଛନ୍ତି—

**ତର୍କାପ୍ରତିଷ୍ଠାନାଦପ୍ୟନ୍ୟଥାନୁମେୟମିତି ଚେଦେବମପ୍ୟବିମୋକ୍ଷପ୍ରସଙ୍ଗଃ ।**

ବ୍ରହ୍ମସୂତ୍ର—୨-୧-୧୧ ।

ଯାହା ଶାସ୍ତ୍ରଗମ୍ୟ, ତାହା ବିରୁଦ୍ଧରେ ତର୍କ କରିବା ଅନୁଚିତ । କାରଣ, ଯେଉଁଲୋକ ଶାସ୍ତ୍ରାବଲମ୍ବନ ନ କରି କେବଳ ତର୍କ କରିବାରେ ଅଭ୍ୟସ୍ତ, ତା'ର ମତ ସ୍ଥିର ନୁହେଁ । ତର୍କ ଓ କଳ୍ପନାର କୌଣସି ସୀମା ବା ନିୟାମକ ନାହିଁ । ଯା'ର ବୁଦ୍ଧି ଯେତିକି ପ୍ରଖର ସେହି ପରିମାଣରେ ସେ କଳ୍ପନା କରେ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ପ୍ରଥମ ବ୍ୟକ୍ତି ତର୍କଦ୍ୱାରା କୌଣସି ପଦାର୍ଥ ନିଶ୍ଚୟ କରିବା ନିମନ୍ତେ ଚେଷ୍ଟା କଲେ, ଦ୍ୱିତୀୟ ଅଧିକ ବୁଦ୍ଧିମାନ୍ ଲୋକ ତାହା ସେହିକ୍ଷଣି ଖଣ୍ଡନ କରିଦିଏ ; ତୃତୀୟ ତାର୍କିକ ଏହି ଦୁଇ ମତକୁ ମଧ୍ୟ ଖଣ୍ଡନ କରିପାରେ, ଅତଏବ ଏଥିରୁ କୌଣସି ସ୍ଥିରତର ସିଦ୍ଧାନ୍ତ ଜଣାଯିବ ନାହିଁ । ମାନବ ବୁଦ୍ଧି ବିଚିତ୍ର ଓ ନାନାପ୍ରକାରର ଦେଖାଯାଏ । ସେହି ହେତୁରୁ ପ୍ରତିଷ୍ଠିତ ତର୍କ ମଧ୍ୟ ଶାସ୍ତ୍ରାର୍ଥ ନିର୍ଣ୍ଣୟ ନିମନ୍ତେ ଅନୁପଯୁକ୍ତ । ମାନବବୁଦ୍ଧି ଅନବସ୍ଥିତ ବା ଏକପ୍ରକାରର ନୁହେଁ, ତତ୍‌ପ୍ରଭବ ତର୍କ ମଧ୍ୟ ଅବସ୍ଥିତ ହେବା ସ୍ୱାଭାବିକ । ତର୍କ ଅପ୍ରତିଷ୍ଠା ଦୋଷରେ ଦୂଷିତ, ଅର୍ଥାତ୍ ସ୍ଥିରତର ବା ଅବ୍ୟଭିଚାରୀ ତର୍କ ହେବା ଅସମ୍ଭବ । ଅତଏବ ଶାସ୍ତ୍ରାର୍ଥ ନିର୍ଣ୍ଣୟ କରିବା ସକାଶେ ତର୍କ ଅବଶ୍ୟ ; ତର୍କ ସାହାଯ୍ୟରେ ଶାସ୍ତ୍ରାର୍ଥ ନିର୍ଣ୍ଣୟ

କରିବା କଠିନ ବ୍ୟାପାର । ତର୍କାନୁପ୍ରାଣିତ ଶାସ୍ତ୍ରଦ୍ୱାରା ଅର୍ଥ ନିଷ୍ପନ୍ନ କରିବା ଓ ତର୍କଦ୍ୱାରା ନିଷ୍ପନ୍ନରୂପେ ଅର୍ଥ ପ୍ରତିପାଦନ ଓ ସେ ବିଷୟରେ ତର୍କକୁ ପ୍ରମାଣ ମାନିବା କଷ୍ଟକର । କାରଣ, ଯତ୍ନପୂର୍ବକ ତର୍କସ୍ଥାପନ କଲେ ମଧ୍ୟ ତଦ୍ଦ୍ୱାରା କେବେହେଲେ ପ୍ରକୃତାର୍ଥ ନିର୍ଣ୍ଣୀତ ହୁଏ ନାହିଁ । ପ୍ରତିବାଦୀ ପକ୍ଷ ମଧ୍ୟ ତଦ୍‌ବିରୋଧତର୍କ ଉପସ୍ଥାପିତ କରି ଅର୍ଥକୁ ଅନର୍ଥ କରିପାରେ । ଅତଏବ ତର୍କ ପ୍ରମାଣରୂପେ ପ୍ରତିଷ୍ଠିତ ନୁହେଁ । ତଦ୍ଦ୍ୱାରା ଅର୍ଥ-ନିଷ୍ପନ୍ନତା ସିଦ୍ଧ ହୁଏ ନାହିଁ * । ଅପ୍ରତିଷ୍ଠାନ ଦୋଷରୁ ତର୍କର ନିସ୍ତାର ନାହିଁ । ବୁଦ୍ଧିର ଅଗୋଚର ବିଷୟ ତର୍କଦ୍ୱାରା କେବେହେଲେ ପ୍ରତିଷ୍ଠାପିତ କରିପାରେ ନାହିଁ ।

**ସ୍ୱାନୁଭୂତାବବିଶ୍ୱାସେ ତର୍କସ୍ୟାପ୍ୟନବସ୍ଥିତେଃ ।**
**କଥଂ ବା ତାର୍କିକ ମନ୍ୟସ୍ତତ୍ତ୍ୱନିଶ୍ଚୟମାପ୍ନୁୟାତ୍ ।।**
**ବୁଦ୍ଧ୍ୟାରୋହାୟ ତର୍କଶ୍ଚେଦପେକ୍ଷେତ ତଥା ସତ ।**
**ସ୍ୱାନୁଭୂତ୍ୟନୁସାରେଣ ତର୍କ୍ୟତାଂ ମା ଚ କୀୟତମ୍ ।।**

ପଞ୍ଚଦଶୀ ୭-୨୯ । ୩୦ ।।

ଅର୍ଥାତ୍ ଯଦି ସ୍ୱୀୟ ଅନୁଭବରେ ବିଶ୍ୱାସ ନାହିଁ ତେବେ କେବଳ ତର୍କଦ୍ୱାରା କିପରି ତତ୍ତ୍ୱ ନିରୂପିତ ହୋଇପାରିବ ? ତର୍କର ସୀମା ମଧ୍ୟ ନାହିଁ ; ଏକ ବ୍ୟକ୍ତି ତର୍କଦ୍ୱାରା ଏକପ୍ରକାର ନିଷ୍ପନ୍ନ କରେ, ତା'ଠାରୁ ଅଧିକ ବୁଦ୍ଧିମାନ୍ ବ୍ୟକ୍ତି ତାହା ଖଣ୍ଡନ କରି ଅନ୍ୟପ୍ରକାର ନିରୂପଣ କରେ । ଯଦ୍ୟପି ବୁଦ୍ଧିର ପ୍ରଖରତା ଅବଧାରଣ କରିବାସକାଶେ ତର୍କ ଅପେକ୍ଷିତ ହୁଏ, ତେବେ ସ୍ୱୀୟ ଅନୁଭବ ଅନୁସାରେ ସୁତର୍କ ଅବଲମ୍ବନ କର । କୁତର୍କର ତ୍ୟାଗ ବିଧେୟ ; କାରଣ ତଦ୍ଦ୍ୱାରା ଅନିଷ୍ଟର ସଂଭାବନା ବେଶି ।

**ଠ—ଶାସ୍ତ୍ରବାକ୍ୟ ଓ ଗୁରୁପଦେଶଦ୍ୱାରା ବ୍ରହ୍ମବସ୍ତୁ ଅବଧାରଣ—**

ତର୍କର ପ୍ରତିଷ୍ଠା ଦୋଷ ପ୍ରତି ଲକ୍ଷ୍ୟ କରି ସ୍ମୃତି କହେ—

**ପ୍ରତ୍ୟକ୍ଷମନୁମାନଞ୍ଚ ଶାସ୍ତ୍ରଞ୍ଚ ବିବିଧାଗମମ୍**
**ତ୍ରୟଂ ସୁବିଦିତଂ କାର୍ଯ୍ୟଂ ଧର୍ମ୍ମଶୁଦ୍ଧିମଭୀପ୍‌ସତା ।।**

---

* (ଅଚିନ୍ତ୍ୟାଃ ଖଲୁ ଯେ ଭାବା ନ ତାଂସ୍ତର୍କେଣ ଯୋଜୟେତ୍ ।
ପ୍ରକୃତିଭ୍ୟଃ ପରଂ ଯଚ୍ଚ ତଦଚିନ୍ତ୍ୟସ୍ୟ ଲକ୍ଷଣମ୍) ।।
ବାୟୁପୁରାଣ—୭।୪୮।। ଅର୍ଥାତ୍ ଯେଉଁ ବସ୍ତୁ ଅଚିନ୍ତନୀୟ, ସେ ସମ୍ବନ୍ଧରେ ତର୍କ କରିବା ଅନୁଚିତ, ଯାହା ପ୍ରକୃତିର ଅତୀତ, ତାହା ଚିନ୍ତ୍ୟ ବୋଲି ପ୍ରତିଷ୍ଠିତ ।

ଆର୍ଷଂ ଧର୍ମୋପଦେଶଞ୍ଚ ବେଦଶାସ୍ତ୍ରାବିରୋଧିନା
ଯସ୍ତର୍କେଣାନୁସନ୍ଧତ୍ତେ ସ ଧର୍ମଂ ବେଦ ନେତରଃ ।

ମନୁ-୧୨-୧୦୫ ଓ ୧୦୬ ।

ଯେଉଁମାନେ ଧର୍ମବୁଦ୍ଧି ଇଚ୍ଛା କରନ୍ତି ସେମାନେ ପ୍ରତ୍ୟକ୍ଷ ଓ ଅନୁମାନରୂପକ ପ୍ରମାଣ ଓ ବିବିଧଶାସ୍ତ୍ର ଉତ୍ତମରୂପେ ଅବଗତ ହୋଇ ଆଚରଣାନୁକୂଳ କର୍ମ କରିବେ । ଯେଉଁମାନେ ବେଦଶାସ୍ତ୍ରର ଅବିରୋଧୀ-ତର୍କ ଅବଲମ୍ବନ କରି ଋଷିଜୁଷ୍ଟ ଧର୍ମବିଧି ଅନୁସନ୍ଧାନ କରନ୍ତି, ସେହି କେବଳ ଧର୍ମର ରହସ୍ୟ ଅବଗତ ହୁଅନ୍ତି ।

ସାଂଖ୍ୟଦର୍ଶନରେ ମଧ୍ୟ ଏହି ସୂକ୍ତ ଦେଖାଯାଏ—

ନ ଦୃଷ୍ଟାତ୍ତତ୍ସିଦ୍ଧିର୍ନିବୃତ୍ତେରପ୍ୟନୁବୃତ୍ତି ଦର୍ଶନାତ୍ । ସା: ପ୍ର: ୧-୨ ।

ଶାସ୍ତ୍ରୀୟ ଉପାୟ ବ୍ୟତୀତ ଦୃଷ୍ଟ ଉପାୟରେ, ଅର୍ଥାତ୍ ଲୋକବିଦିତ ଉପାୟରେ ପରମପୁରୁଷାର୍ଥ ଲାଭ କରିଯାଏ ନାହିଁ । ଲୋକବିଦିତ ଉପାୟରେ ଯେଉଁ ଦୁଃଖର ନିବୃତ୍ତି ହୁଏ ତାହା ଆତ୍ୟନ୍ତିକନିବୃତ୍ତି ନୁହେଁ । ପୁନଶ୍ଚ ତତ୍ସଦୃଶ ଅନ୍ୟ ଦୁଃଖ ଆସେ, ଦୁଃଖର ମୂଳୋଚ୍ଛେଦ ହୁଏ ନାହିଁ ।

ସର୍ବାସମ୍ଭବାତ୍ ସମ୍ଭବେଽପ୍ୟତ୍ୟନ୍ତାସମ୍ଭବାତ୍ ହେୟଃ ପ୍ରମାଣକୁଶଳୈଃ ।
ଉତ୍କର୍ଷାଦପି ମୋକ୍ଷସ୍ୟ ସର୍ବୋତ୍କର୍ଷଶ୍ରୁତେଃ ॥ ସାଂଖ୍ୟ ପ୍ର: ୧-୪-୫ ।

ଲୌକିକ ଉପାୟରେ ସମସ୍ତ ଦୁଃଖର ପ୍ରତିକାର ହୁଏ ନାହିଁ ; ହେଲେ ମଧ୍ୟ ତାହା ଆତ୍ୟନ୍ତିକ ନୁହେଁ, ପୁନର୍ବାର ସେହି ଦୁଃଖ ଆସିବା ସମ୍ଭାବନା ଥାଏ । ସେ ହେତୁରୁ ପ୍ରମାଣଜ୍ଞ, ଅର୍ଥାତ୍ ବିବେକୀ ଓ ବିଚାରବାନ୍ ଲୋକ ଲୌକିକ ଉପାୟ ତ୍ୟାଗ କରି ଶାସ୍ତ୍ରୀୟ ଉପାୟ ଅବଲମ୍ବନ କରେ । ଦୃଷ୍ଟ ଉପାୟରୁ ପ୍ରାପ୍ତ ରାଜ୍ୟଧନାଦି ଅପେକ୍ଷା ମୋକ୍ଷ ଉତ୍କୃଷ୍ଟ ; ଶ୍ରୁତିପ୍ରତିପାଦିତ ମୋକ୍ଷଲାଭ ମନୁଷ୍ୟର ସର୍ବୋତ୍କୃଷ୍ଟ ଧ୍ୟେୟବସ୍ତୁ ।

ପୁନଶ୍ଚ—

ଲୋକସ୍ୟ ନୋପଦେଶାତ୍ ସିଦ୍ଧିଃ ପୂର୍ବବତ୍ । ସା: ପ୍ର: ୭-୫୭ ।

ଲୋକ ଉପଦେଶରେ ସିଦ୍ଧି, ଅର୍ଥାତ୍ ଜ୍ଞାନ ହୁଏ ନାହିଁ ।

ଏ ବିଷୟରେ ମହର୍ଷି ଋଭୁ କହିଛନ୍ତି—

ଶାସ୍ତ୍ରୈଃ ସଜ୍ଜନସମ୍ପର୍କପୂର୍ବକୈଶ୍ଚ ତପୋଦମୈଃ ।
ଆଦୌ ସଂସାର ମୁକ୍ତ୍ୟର୍ଥଂ ପ୍ରଜ୍ଞାମେବାଭିବର୍ଦ୍ଧୟେତ୍ ॥

ସ୍ୱାନୁଭୂତେଶ୍ଚ ଶାସ୍ତ୍ରସ୍ୟ ଗୁରୋରେଶ୍ଚୈବୈକ୍ୟବାକ୍ୟତା ।
ଯସ୍ୟାଭ୍ୟାସେନ ତେନାତ୍ମା ସତତଂ ଦୃଶ୍ୟତେ ହି ଯଃ ॥
ସଂକଳ୍ପା ସାନୁସନ୍ଧାନବର୍ଜନଂ ଚେତ୍ ପ୍ରତକ୍ଷଣମ୍ ।
କରୋଷି ତଦ୍ଭୂତତତ୍ତ୍ୱଂ ପ୍ରାପ୍ତଏବାସି ପାବନମ୍ ॥

ମହୋପନିଷଦ୍—୪-୪-୭ ॥

ଶାସ୍ତ୍ରାଧ୍ୟୟନପୂର୍ବକ ସଜ୍ଜନଙ୍କ ସହିତ ସଙ୍ଗ କରି ତପସ୍ୟା ଦମ ପ୍ରଭୃତି ଉପାୟ-ଦ୍ୱାରା ସଂସାରରୁ ମୁକ୍ତିଲାଭ କରିବାପାଇଁ ପ୍ରଥମେ ପ୍ରଜ୍ଞାକୁ ବର୍ଦ୍ଧିତ ବା ଉନ୍ନତ କରିବ । ଅଭ୍ୟାସ ଓ ଅନୁଭୂତିଦ୍ୱାରା ଯାହାର ଶାସ୍ତ୍ର ଓ ଗୁରୁବାକ୍ୟରେ ଏକବାକ୍ୟତା ଜନ୍ମି ଅଛି, ଅର୍ଥାତ୍—ଶାସ୍ତ୍ରର ତାତ୍ପର୍ଯ୍ୟ ଏବଂ ଗୁରୁଙ୍କ ଉପଦେଶ ବିଷୟରେ ଯାହାର ପୂର୍ଣ୍ଣ ବିଶ୍ୱାସ ଜନ୍ମିଅଛି, ସେହି କେବଳ ଆତ୍ମାକୁ ଦେଖିପାରେ । ଯଦି ପ୍ରତିକ୍ଷଣ ସଂକଳ୍ପ, ଆଶା ଓ ଅନୁସନ୍ଧାନକୁ ପରିତ୍ୟାଗ କରି, ତାହାହେଲେ ପବିତ୍ର ତତ୍ତ୍ୱସମ୍ବନ୍ଧରହିତ୍ୟ ବା ମୁକ୍ତିଲାଭ କରିବ ।

ଉପର୍ଯ୍ୟୁକ୍ତ ଶ୍ରୁତିମାନଙ୍କରୁ ପ୍ରତିପନ୍ନ ହେଉଅଛି ଯେ, ସୁଶାସ୍ତ୍ରଯୁକ୍ତ ସଜ୍ଜନସଙ୍ଗ ଓ ଗୁରୁବାକ୍ୟ ଅନୁସରଣ ଭିନ୍ନ କେବଳ ତର୍କ ଯୁକ୍ତିଦ୍ୱାରା ବ୍ରହ୍ମବସ୍ତୁର ଅନୁଭବ ହୋଇପାରେ ନାହିଁ । ବେଦାନ୍ତାଦି ଶାସ୍ତ୍ରବଚନ ତାହାର ସ୍ୱତଃସିଦ୍ଧ ପ୍ରମାଣ । ବ୍ରହ୍ମ ଓ ଆତ୍ମାର ଏକତ୍ୱଜ୍ଞାନ ବେଦାନ୍ତଶାସ୍ତ୍ରର ଅନୁବନ୍ଧଚତୁଷ୍ଟୟରେ ନିରୂପିତ ହୋଇଅଛି । ଅତଏବ ବର୍ତ୍ତମାନ ସେହି ଅନୁବନ୍ଧଚତୁଷ୍ଟୟ ବିଷୟରେ ବର୍ଣ୍ଣନା କରାଯାଉଛି ।

## ଠ—ଅନୁବନ୍ଧଚତୁଷ୍ଟୟ

ଅସ୍ୟ ଶାସ୍ତ୍ରାନୁସାରତ୍ୱାଦନୁବନ୍ଧଚତୁଷ୍ଟୟଂ ।
ଯଦେବ ମୂଳଂ ଶାସ୍ତ୍ରସ୍ୟ ନିର୍ଦ୍ଦିଷ୍ଟଂ ତଦଦୋଚ୍ୟତେ ॥
ଅଧିକାରୀ ଚ ବିଷୟଃ ସମ୍ବନ୍ଧଶ୍ଚ ପ୍ରୟୋଜନଂ ।
ଶାସ୍ତ୍ରାରମ୍ଭଫଳଂ ପ୍ରାହୁରନୁବନ୍ଧଚତୁଷ୍ଟୟମ୍ ॥

ସର୍ବବେଦାନ୍ତ ସିଦ୍ଧାନ୍ତ ସାର ସଂଗ୍ରହ—୭-୭ ॥

ବେଦାନ୍ତଶାସ୍ତ୍ର ଆରମ୍ଭରେ ଚାରୋଟି ବସ୍ତୁର ନିର୍ଦ୍ଦେଶ କରାଯାଇଛି ; ଏହି ଗ୍ରନ୍ଥ ମଧ୍ୟ ବେଦାନ୍ତ ଶାସ୍ତ୍ରରୂପରେ ବିରଚିତ ହୋଇଥିବାରୁ ଏଥିରେ ମଧ୍ୟ ସେହି ଚାରି ଅନୁବନ୍ଧର ବ୍ୟାଖ୍ୟା କରାଯାଉଅଛି । ଅଧିକାରୀ, ଅର୍ଥାତ୍—ଶାସ୍ତ୍ରୋକ୍ତଫଳକାମୀ ; ବିଷୟ = ଶାସ୍ତ୍ରର ପ୍ରତିପାଦ୍ୟ ବସ୍ତୁ ; ଅଧିକାରୀ ଓ ପ୍ରତି ପାଦ୍ୟ ବସ୍ତୁର ସମ୍ବନ୍ଧ, ତଥା ଗ୍ରନ୍ଥାଧ୍ୟୟନର ପ୍ରୟୋଜନ—ଏହି ଚାରୋଟିକୁ ଅନୁବନ୍ଧ କୁହାଯାଏ । ଅନୁବନ୍ଧ-ଚତୁଷ୍ଟୟର ଜ୍ଞାନ ବ୍ୟତିରେକେ ଶାସ୍ତ୍ରାଧ୍ୟୟନରେ ପ୍ରବୃତ୍ତି ହୁଏ ନାହିଁ ।

ଚତୁର୍ଭିଃ ସାଧନୈଃ ସମ୍ୟକ୍ ସମ୍ପନ୍ନୋ ମୁକ୍ତିଦକ୍ଷିଣଃ ।
ମେଧାବୀ ପୁରୁଷୋ ବିଦ୍ୱାନଧିକାର୍ଯ୍ୟେବ ସମ୍ମତଃ ॥
ବିଷୟଃ ଶୁଦ୍ଧଚୈତନ୍ୟଂ ଜୀବବ୍ରହ୍ମୈକଲକ୍ଷଣଂ ।
ଯତ୍ରୈବ ଦୃଶ୍ୟତେ ସର୍ବବେଦାନ୍ତାନାଂ ସମନ୍ୱୟଃ ॥
ଏତଦୈକ୍ୟ ପ୍ରମେୟସ୍ୟ ପ୍ରମାଣସ୍ୟାଽପି ଚ ଶ୍ରୁତେଃ ।
ସମ୍ବନ୍ଧଃ କଥ୍ୟତେ ସଦ୍ଭିର୍ବୋଧ୍ୟବୋଧକଲକ୍ଷଣଃ ॥
ବ୍ରହ୍ମାତ୍ମୈକତ୍ୱବିଜ୍ଞାନଂ ସନ୍ତଃ ପ୍ରାହୁଃ ପ୍ରୟୋଜନମ୍ ।
ଯେନ ନିଃଶେଷସଂସାରବନ୍ଧାତ୍ ସଦ୍ୟଃ ପ୍ରମୁଚ୍ୟତେ ॥
ପ୍ରୟୋଜନଂ ସମ୍ପ୍ରବୃତ୍ତେଃ କାରଣଂ ଫଳଲକ୍ଷଣଂ ।
ପ୍ରୟୋଜନମନୁଦ୍ଦିଶ୍ୟ ନ ମନ୍ଦୋଽପି ପ୍ରବର୍ତ୍ତତେ ॥

ସର୍ବବେଦାନ୍ତ ସିଦ୍ଧାନ୍ତସାର ସଂଗ୍ରହ—୮-୧୨ ॥

କଥିତ ଚାରିପ୍ରକାର ସାଧନସମ୍ପତ୍ତି ଯାହାର ସିଦ୍ଧ ହୋଇଅଛି, ଯେ ମୁକ୍ତିର ସାଧକ ଓ ଶାସ୍ତ୍ରୀୟ ବିଷୟ ଅବବୋଧକରି ଯେ ଧାରଣା କରିପାରେ ଓ ବେଦାଦି ଶାସ୍ତ୍ରରେ ଯେଉଁ ଲୋକ ବ୍ୟୁତ୍ପନ୍ନ, ସେହି କେବଳ ବେଦାନ୍ତ ଶାସ୍ତ୍ରାଧ୍ୟୟନ ଓ ସାଧନାର ଅଧିକାରୀ ବୋଲି ବିବେଚିତ ହୋଇଛି । ସକଳ ଉପନିଷଦ୍‌ରେ ଯାହା ସାରଭାବରେ ବର୍ଣ୍ଣିତ, ସେହି ଜୀବ ଓ ବ୍ରହ୍ମର ଐକ୍ୟରୂପ ବିଶୁଦ୍ଧ ଚୈତନ୍ୟହିଁ ଏହି ଶାସ୍ତ୍ରର ପ୍ରତିପାଦ୍ୟ ବିଷୟ । ଏହି ଜୀବବ୍ରହ୍ମ-ଐକ୍ୟରୂପକ ପ୍ରମେୟ ଓ ଶ୍ରୁତିପ୍ରତିପାଦିତ ପ୍ରମାଣ ମଧ୍ୟରେ ବୋଧ-ବୋଧକରୂପ ସମ୍ବନ୍ଧହିଁ ପଣ୍ଡିତମାନଙ୍କଦ୍ୱାରା ଏହି ଶାସ୍ତ୍ରର ସମ୍ବନ୍ଧ ବୋଲି କଥିତ । ଯେଉଁ ବ୍ରହ୍ମପ୍ରାପ୍ତିଦ୍ୱାରା ଜୀବ ସକଳପ୍ରକାର ସଂସାରବନ୍ଧନରୁ ମୁକ୍ତି ଲାଭ କରେ, ସେହି ଜୀବ ଓ ବ୍ରହ୍ମର ଅଭେଦଜ୍ଞାନକୁ ସଜ୍ଜନଗଣ ବେଦାନ୍ତ ଶାସ୍ତ୍ରର ପ୍ରୟୋଜନ ବୋଲି ନିର୍ଦ୍ଦେଶ କରିଅଛନ୍ତି । ପ୍ରୟୋଜନ କେବଳ ଲୋକରେ ପ୍ରବୃତ୍ତି ପ୍ରତି କାରଣ ହୋଇଥାଏ; ଅଳ୍ପବୁଦ୍ଧି ବ୍ୟକ୍ତି ମଧ୍ୟ ବିନା ପ୍ରୟୋଜନରେ କୌଣସି କାର୍ଯ୍ୟରେ ପ୍ରବୃତ୍ତ ହୁଏ ନାହିଁ—ଏହା ସର୍ବଜନବିଦିତ ।

## ୦— ବ୍ରହ୍ମଶବ୍ଦାର୍ଥ ଓ ବ୍ରହ୍ମନିରୂପଣ

ପୂର୍ବବର୍ଣ୍ଣିତ ସକଳ ବିଷୟ ଗ୍ରନ୍ଥର ପ୍ରତିପାଦ୍ୟ ବ୍ରହ୍ମ ବିଷୟରେ କୁହାଯାଇଛି । ଅଧୁନା ସେହି ବ୍ରହ୍ମବସ୍ତୁର ଅର୍ଥବୋଧ ବିଷୟରେ ବର୍ଣ୍ଣନା କରାଯାଉଛି ।

"ବ୍ରହ୍ମଣୋ ଜିଜ୍ଞାସା ବ୍ରହ୍ମଜିଜ୍ଞାସା,
ବ୍ରହ୍ମନ୍‌ଶବ୍ଦସ୍ୟ ହି ବ୍ୟୁତ୍ପାଦ୍ୟମାନସ୍ୟ
ନିତ୍ୟଶୁଦ୍ଧତ୍ୱାଦୟୋଽର୍ଥାଃ ପ୍ରତୀୟନ୍ତେ ;

ବୃହତେର୍ଧାତୋରର୍ଥାନୁଗମାତ୍ ।
ସର୍ବସ୍ୟାତ୍ମତ୍ୱାଚ୍ଚ ବ୍ରହ୍ମାସ୍ତିତ୍ୱପ୍ରସିଦ୍ଧିଃ ।"

ବ୍ରହ୍ମସୂତ୍ର—ଶଙ୍କରଭାଷ୍ୟ ॥

ବ୍ରହ୍ମଶବ୍ଦର ବ୍ୟୁତ୍ପତ୍ତି ଅନୁସନ୍ଧାନ କଲେ ଏହି ଅର୍ଥ ପ୍ରକାଶିତ ହୁଏ—

ବୃହ + ମନ୍ = ବ୍ରହ୍ମ । ବୃହଧାତୁର ଅର୍ଥ ବୃଦ୍ଧି, ଯାହାର ଅନ୍ୟ ନାମ ବଡ଼ ବା ମହତ୍ତ୍ୱ । ମନ୍‌ପ୍ରତ୍ୟୟର ଅର୍ଥ ନିରତିଶୟ, ଅର୍ଥାତ୍—ଅବଧିରହିତ୍ୟ । ଯେ ନିରତିଶୟ ମହାନ୍; ଯାହା ଅପେକ୍ଷା ବୃହତ୍ (ବଡ଼), ବ୍ୟାପକ ବା ଉତ୍କୃଷ୍ଟ ଆଉ କିଛି ନାହିଁ, ସେହି ବ୍ରହ୍ମ । ଅତଏବ ଅଧ୍ୟେତୃସମ୍ପ୍ରଦାୟ ମଧ୍ୟରେ ବ୍ରହ୍ମ ଏକାନ୍ତ ଅପ୍ରସିଦ୍ଧ ନୁହେଁ । ଆହୁରି ମଧ୍ୟ, ଯାହା ନଶ୍ୱର ବା ସଦୋଷ, ସନ୍ନିଁରେ ସବଙ୍କତ୍ୱାଦ୍ଧ ଗୁଣ ନାହିଁ, ସେପରି ବସ୍ତୁ କୌଣସି କାଳେ ନିରତିଶୟ ବା ମହାନ୍ ହୋଇପାରେ ନାହିଁ । ବ୍ରହ୍ମଶବ୍ଦର ବ୍ୟୁତ୍ପତ୍ତିରୁ ମଧ୍ୟ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତସ୍ୱଭାବତା ପ୍ରଭୃତି ଅର୍ଥ କେବଳ ଅନୁଭୂତ ହୁଏ । ଦୋଷଶୂନ୍ୟ ହେତୁରୁ ବ୍ରହ୍ମ ନିତ୍ୟ, ଶୁଦ୍ଧ, ଜାଡ୍ୟବିପରୀତ ଓ ନିତ୍ୟବୁଦ୍ଧ; ଅବଧି ବା ସୀମା ନ ଥିବା ହେତୁରୁ ନିତ୍ୟ ଓ ମୁକ୍ତ ।

"ବ୍ରହ୍ମ ବୃହତ୍, ବୃହତ୍ତ୍ୱାଦ୍‌ବ୍ରହ୍ମ, ବ୍ରହ୍ମ ସୁମହତ୍" ।

ବୃଦ୍ଧିରୂପ ଫଳନିମନ୍ତେ ଅନୁକୂଳ ବ୍ୟାପାରଯୁକ୍ତତା ବୃହଧାତୁର ଅର୍ଥ; ଅର୍ଥାତ୍—ଯାହା ଅନ୍ୟର ବୃଦ୍ଧିର ହେତୁ, ଯାହା ଅପରକୁ ବର୍ଦ୍ଧିତ କରୁଥାଏ ଏବଂ ଅନ୍ୟର ମହତ୍ତ୍ୱଲାଭର ଯାହା କାରଣ, ତାହାହିଁ ବ୍ରହ୍ମ ।

ବର୍ତ୍ତମାନ ଏହି ବ୍ରହ୍ମ ବିଷୟ ଉପନିଷତ୍-ଶ୍ରୁତି ଅନୁସାରେ ବର୍ଣ୍ଣନ କରାଯାଉଛି—

**ଦିବ୍ୟୋ ହ୍ୟମୂର୍ତ୍ତଃ ପୁରୁଷଃ ସ ବାହ୍ୟାଭ୍ୟନ୍ତରୋ ହ୍ୟଜଃ ।**
**ଅପ୍ରାଣୋ ହ୍ୟମନାଃ ଶୁଭ୍ରୋ ହ୍ୟକ୍ଷରାତ୍ ପରତଃ ପରଃ ॥**

ମୁଣ୍ଡକୋପନିଷତ୍—୨-୧-୨ ॥

ସେହି ଅକ୍ଷରାତ୍ମା ସ୍ୱୟଂ ଜ୍ୟୋତିଃସ୍ୱରୂପ, ମୂର୍ତ୍ତିହୀନ, ପରିପୂର୍ଣ୍ଣ, ବାହ୍ୟ ଓ ଆଭ୍ୟନ୍ତର—ଉଭୟ ଦେଶବର୍ତ୍ତୀ, ଜନ୍ମରହିତ, ଯାହାର କ୍ରିୟାଶକ୍ତିଯୁକ୍ତ-ପ୍ରାଣ ଓ ଜ୍ଞାନଶକ୍ତି-ବିଶିଷ୍ଟ ମନ—ଉଭୟ ନାହିଁ । ସେହି ବ୍ରହ୍ମ ଶୁଦ୍ଧସ୍ୱରୂପ, ଅର୍ଥାତ୍ ଅବିଦ୍ୟାଦୋଷବର୍ଜିତ । ଏହି ମହାନ୍ ଆତ୍ମା ଅକ୍ଷର, ଅର୍ଥାତ୍ ନାମ ଓ ରୂପର କାରଣରୂପ ଉପାଧିବିଶିଷ୍ଟ ଅବ୍ୟାକୃତାଖ୍ୟ ଅକ୍ଷରଠାରୁ ଶ୍ରେଷ୍ଠ । ଅର୍ଥାତ୍ ସେ ନିରୁପାଧିକ ପଦାର୍ଥ ।

ବୃହଚ୍ଚ ତଦ୍ଦିବ୍ୟମଚିନ୍ତ୍ୟରୂପଂ ସୂକ୍ଷ୍ମାଚ୍ଚ ତତ୍ ସୂକ୍ଷ୍ମତରଂ ବିଭାତି ।
ଦୂରାତ୍ ସୁଦୂରେ ତଦିହାନ୍ତିକେ ଚ ପଶ୍ୟତ୍ସ୍ୱିହୈବ ନିହିତଂ ଗୁହାୟାମ୍ ॥
ମୁଣ୍ଡକ ଉ: ୩-୧-୭ ॥

ସେହି ପ୍ରକୃଷ୍ଟ ବ୍ରହ୍ମ ପଦାର୍ଥ ସତ୍ୟାଦି ସାଧନଦ୍ୱାରା ସର୍ବତ୍ର ପରିବ୍ୟାପ୍ତ ; ସେହି ହେତୁରୁ ସେ ବୃହତ୍ ଓ ସ୍ୱୟଂ ଜ୍ୟୋତିର୍ମୟ, ଇନ୍ଦ୍ରିୟମାନଙ୍କର ଅଗୋଚର; ଅତଏବ ତାହାର ରୂପ ଚିନ୍ତାର ଅବିଷୟ । ସେ ପରମାଣୁଆଦି ସୂକ୍ଷ୍ମରୁ ସୂକ୍ଷ୍ମତର ; ତାହାଙ୍କର ତେଜ ସୂର୍ଯ୍ୟଚନ୍ଦ୍ରାଦି ଗ୍ରହୋପଗ୍ରହରେ ମଧ୍ୟ ପ୍ରକାଶିତ ହେଉଛି । ସେ ଅବିଦ୍ୱାନ୍ ବ୍ୟକ୍ତିଙ୍କ ପକ୍ଷରେ ଅତି ଦୂରରେ ଅବସ୍ଥିତ; ବିଦ୍ୱାନ୍ ଓ ତତ୍ତ୍ୱଜ୍ଞଙ୍କ ପକ୍ଷରେ ଅତି ନିକଟରେ, ଅର୍ଥାତ୍ ଏହି ଦେହ ମଧ୍ୟରେ ବୁଦ୍ଧିରୂପ-ଗୁହାରେ ନିହିତ ଅଛନ୍ତି । ଚେତନାବାନ୍ ବ୍ୟକ୍ତିଗଣ ନିଜ ଦେହମଧ୍ୟରେ ବୁଦ୍ଧିରୂପ-ଗୁହାରେ ଲକ୍ଷ୍ୟ କରିପାରନ୍ତି । ଅବିଦ୍ୱାନ୍ ବ୍ୟକ୍ତି ନିଜ ବୁଦ୍ଧିସ୍ଥିତ ହେଲେ ମଧ୍ୟ ତାହାଙ୍କୁ ଦେଖିପାରନ୍ତି ନାହିଁ । ଏ ବିଷୟରେ ବ୍ରହ୍ମା କହିଅଛନ୍ତି—

ଆଦିତ୍ୟବର୍ଣ୍ଣଂ ତମସସ୍ତୁ ପାରେ ସର୍ବାଣି ରୂପାଣି ବିଚିନ୍ତ୍ୟ ଧୀରଃ ।
ନାମାନି କୃତ୍ୱାଭିବଦନ୍ ଯଦାସ୍ତେ ଧାତା ପୁରସ୍ତାଦ୍ ଯମୁଦାଜହାର ॥
ମହାବାକ୍ୟୋପନିଷଦ୍—୧-୫ ॥

ଧୀର ବ୍ୟକ୍ତି ଯାହାଙ୍କର ନାନା ରୂପ ଅନ୍ୱେଷଣ କରି ନାମୋଚ୍ଚାରଣପୂର୍ବକ ଅବିଦ୍ୟାଲେପରହିତ ଓ ସୂର୍ଯ୍ୟ ତୁଲ୍ୟ ତେଜୋବିଶିଷ୍ଟ ଯେଉଁ ବ୍ରହ୍ମଙ୍କୁ ଅଭିବାଦନ କରନ୍ତି ଏବଂ ପୂର୍ବେ ବିଧାତା ଯାହାଙ୍କ କଥା ବର୍ଣ୍ଣନା କରିଅଛନ୍ତି, ସେହି ବ୍ରହ୍ମ । ଏ ବିଷୟ ଭରଦ୍ୱାଜଙ୍କୁ ମଧ୍ୟ ବ୍ରହ୍ମା କହିଅଛନ୍ତି—

କିଂ ବ୍ରହ୍ମେତି ଚ; ଅଖିଳୋପାଧିବିନିର୍ମୁକ୍ତ
ମନାଦ୍ୟନନ୍ତଂ ଶୁଦ୍ଧଂ ଶାନ୍ତଂ ନିର୍ଗୁଣଂ ।
ନିରବୟବଂ ନିତ୍ୟାନନ୍ଦମଖଣ୍ଡୈକରସଂ
ଅଦ୍ୱିତୀୟଂ ଚୈତନ୍ୟଂ ବ୍ରହ୍ମ ॥
ନିରାଲମ୍ବୋପନିଷଦ୍—୪ ॥

ଅର୍ଥାତ୍-ବ୍ରହ୍ମଙ୍କ ସ୍ୱରୂପ କ'ଣ ? ଉତ୍ତରରେ—ଯେ ସକଳ ଉପାଧିରୁ, ଅର୍ଥାତ୍ ନାମ ରୂପ ପ୍ରଭୃତିରୁ ବିନିର୍ମୁକ୍ତ, ଯେ ଅନାଦି, ଅନନ୍ତ, ଶୁଦ୍ଧ, ଶାନ୍ତ, ନିର୍ଗୁଣ, ନିରବୟବ, ନିତ୍ୟାନନ୍ଦସ୍ୱରୂପ, ଅଖଣ୍ଡୈକରସ (ପୂର୍ଣ୍ଣରସାନନ୍ଦ), ଅଦ୍ୱିତୀୟ ଚୈତନ୍ୟ, ଅର୍ଥାତ୍ ସକଳ ପ୍ରାଣୀଙ୍କର ଯେ ଏକମାତ୍ର ଚେତୟିତା, ସେହି ବ୍ରହ୍ମ । ପୁନଶ୍ଚ ଏହି ବ୍ରହ୍ମ ବିଷୟରେ ବ୍ରହ୍ମା ଆଶ୍ୱାଲୟନଙ୍କୁ କହିଛନ୍ତି—

**ଅଚିନ୍ତ୍ୟମବ୍ୟକ୍ତମନନ୍ତରୂପଂ**
**ଶିବଂ ପ୍ରଶାନ୍ତମମୃତଂ ବ୍ରହ୍ମଯୋନିମ୍**
**ତଥାଦ୍ୟମଧ୍ୟାନ୍ତବିହୀନମେକଂ**
**ବିଭୁଂ ଚିଦାନନ୍ଦମରୂପମଦ୍ଭୁତମ୍ ।।**
କୈବଲ୍ୟ ଉ: ୧୬ ।।

ଅର୍ଥାତ୍ ଯେ ଅଚିନ୍ତ୍ୟ—ବାକ୍ୟ ଓ ମନର ଅଗୋଚର, ଅବ୍ୟକ୍ତସ୍ୱରୂପ, ଅନନ୍ତରୂପ, ମଙ୍ଗଳମୟ, ପ୍ରଶାନ୍ତ, ଅବିଦ୍ୟା-ଦୋଷଶୂନ୍ୟ, ଅମୃତ ବା ଭୂତ-ଭବିଷ୍ୟଦ୍-ବର୍ତ୍ତମାନ ରୂପକ-କାଳତ୍ରୟ-ଅସଂସ୍ପୃଷ୍ଟ, ବୃହତ୍, ନିଖିଳ ବ୍ରହ୍ମାଣ୍ଡର ଉତ୍ପତ୍ତିହେତୁ, ଯାହାର ଆଦି, ମଧ୍ୟ ଓ ଅନ୍ତ କିଛି ନାହିଁ, ଯେ ଏକ ଓ ଅଦ୍ୱିତୀୟ, ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ସ୍ୱୟଂ ପ୍ରକାଶମାନ ଚିଦାନନ୍ଦସ୍ୱରୂପ, ରୂପାଦିବିହୀନ ଓ ଅଦ୍ଭୁତ ବସ୍ତୁ, ସେହି ବ୍ରହ୍ମ ।

**ସମସ୍ତସାକ୍ଷିଂ ସଦସଦ୍‌ବିହୀନଂ ପ୍ରୟାତି ଶୁଦ୍ଧଂ ପରମାତ୍ମରୂପମ୍ ।।**
କୈବଲ୍ୟ ଉ. ୧।୨୪ ।।

ଅର୍ଥାତ୍ ଯେଉଁମାନେ ଏହି ବ୍ରହ୍ମଙ୍କୁ ଅଦ୍ୱିତୀୟ, ସର୍ବସାକ୍ଷୀସ୍ୱରୂପ, ଭାବ ଓ ଅଭାବବର୍ଜିତ, ନିତ୍ୟ, ପବିତ୍ର ପରମାତ୍ମସ୍ୱରୂପରେ ଅବଗତ ହୁଅନ୍ତି ସେମାନେ କେବଳ ପରମାତ୍ମାଙ୍କୁ ଲାଭ କରିବାକୁ ସମର୍ଥ ।

ଏହି ବ୍ରହ୍ମବିଦ୍ୟା ବିଷୟରେ ମହାବିଷ୍ଣୁ ବ୍ରହ୍ମାଙ୍କୁ ଉପଦେଶ ଦେଇଅଛନ୍ତି :— ତତସ୍ତସ୍ମାତ୍ ନିର୍ବିଶେଷମତିନିର୍ମଳଂ ଭବତି । ଅବିଦ୍ୟାପାଦମତିଶୁଦ୍ଧଂ ଭବତି । ଶୁଦ୍ଧ-ବୋଧାନନ୍ଦଲକ୍ଷଣକୈବଲ୍ୟଂ ଭବତି । ବ୍ରହ୍ମଣଃ ପାଦଚତୁଷ୍ଟୟଂ ନିର୍ବିଶେଷଂ ଭବତି । ଅଖଣ୍ଡଲକ୍ଷଣାଖଣ୍ଡପରିପୂର୍ଣ୍ଣସଚ୍ଚିଦାନନ୍ଦ ସ୍ୱପ୍ରକାଶଂ ଭବତି । ଅଦ୍ୱିତୀୟମନାଶ୍ୱରଂ ଭବତି । ଅଖିଳକାର୍ଯ୍ୟକାରଣସ୍ୱରୂପ-ମଖଣ୍ଡଚିଦ୍‌ଘନାନନ୍ଦ-ସ୍ୱରୂପମତିଦିବ୍ୟମଙ୍ଗଳାକାରଂ ନିରତିଶୟାନନ୍ଦତେଜୋରାଶିବିଶେଷଂ ସର୍ବପରିପୂର୍ଣ୍ଣାନନ୍ତଚିନ୍ମୟସ୍ତମ୍ଭାକାରମ୍ । ଶୁଦ୍ଧବୋଧାନନ୍ଦବିଶେଷାକାରମନନ୍ତଚିଦ୍‌ବିଳାସବିଭୂତିସମଷ୍ଟ୍ୟାକାରମଦ୍ଭୁତାନନ୍ଦାଶ୍ଚର୍ଯ୍ୟବିଭୂତି ବିଶେଷାକାରମନନ୍ତପରିପୂର୍ଣ୍ଣାନନ୍ଦଦିବ୍ୟସୌଦାମିନୀନିଚୟାକାରମ୍ । ଏବମାକାର ମଦ୍ୱିତୀୟାଖଣ୍ଡାନନ୍ଦବ୍ରହ୍ମସ୍ୱରୂପଂ ନିରୂପିତମ୍ । ତ୍ରିପାଦବିଭୂତି-ମହାନାରାୟଣ ଉ: ୭।୯ ।।

ମୂଳ ଅବିଦ୍ୟା ଲୟପ୍ରାପ୍ତ ହେଲେ ତଜ୍ଜନିତ ସକଳପ୍ରକାର ବୈଶିଷ୍ଟ୍ୟଶୂନ୍ୟ ବ୍ରହ୍ମ ଅତ୍ୟନ୍ତ ନିର୍ମଳ ରୂପରେ ଅବସ୍ଥାନ କରନ୍ତି । ଅବିଦ୍ୟାପାଦ ଅତିଶୁଦ୍ଧ ହୁଏ । [ବସ୍ତୁତଃ ବ୍ରହ୍ମର କୌଣସି ରୂପ ବା ପାଦାଦି ବିଭାଗ ନାହିଁ, ଅବିଦ୍ୟାର କିଛି ସତ୍ତା କେବଳ ଥିବା ହେତୁରୁ

ତଦୁପସ୍ଥିତ ଚୈତନ୍ୟ ଅବିଦ୍ୟାବିଳାସ ବିଶିଷ୍ଟରୂପେ ପ୍ରତୀୟମାନ ହୁଏ ଓ ସେଥିରୁ ଏହି ଅବିଦ୍ୟାପାଦ କଳ୍ପିତ ହୋଇଅଛି; ଅବିଦ୍ୟାର ଲୟ ହେଲେ ତାହାର କୌଣସିରୂପ ପ୍ରପଞ୍ଚାଭିମାନଜନ୍ୟ ବ୍ରହ୍ମରେ ପ୍ରତୀୟମାନ ହୁଏ ନାହିଁ ; ଏହି ହେତୁରୁ ସେହି ଅବସ୍ଥାରେ ଅବିଦ୍ୟାପାଦ ବିଶୁଦ୍ଧ ହୁଏ ବୋଲି କଥିତ ] । ପରମାର୍ଥତଃ ବ୍ରହ୍ମ ଅବିଦ୍ୟାଦୋଷରହିତ, ଶୁଦ୍ଧଜ୍ଞାନ ଓ ଆନନ୍ଦସ୍ୱରୂପ କୈବଲ୍ୟାତ୍ମକ ; ପାଦଚତୁଷ୍ଟୟ କଥନଦ୍ୱାରା ପ୍ରକୃତରେ ବ୍ରହ୍ମ ରୂପବିଶିଷ୍ଟ ନୁହେଁ । ଏହାର ଯଥାର୍ଥସ୍ୱରୂପ ନିରାକାର ଓ ନିରଂଶ । ଅତଏବ ଏହା ଅଖଣ୍ଡ-ସ୍ୱରୂପ ଓ ବିଭାଗରହିତ, ପରିପୂର୍ଣ୍ଣ ସତ୍ ଚିତ୍-ଆନନ୍ଦମୟ ଓ ସ୍ୱୟଂ ପ୍ରକାଶସ୍ୱରୂପ । ଏହା ଦିକ୍ଷୟରହିତ ଓ ଅନୀଶ୍ୱର (ବ୍ରହ୍ମଚୈତନ୍ୟ ମାୟାରୂପ ଉପାଧିବିଶିଷ୍ଟ ହେଲେ ଈଶ୍ୱର-ଶବ୍ଦ-ବାଚ୍ୟ ହୁଅନ୍ତି, ମାୟାରହିତ ହେଲେ ସ୍ୱଭାବତଃ ତହିଁରେ ଈଶ୍ୱରତ୍ୱ-ବୈଶିଷ୍ଟ୍ୟ ରହେ ନାହିଁ ; ଏହି ହେତୁରୁ ବ୍ରହ୍ମ ଅନୀଶ୍ୱର] । ଏହା (ବ୍ରହ୍ମଙ୍କର ପାଦ-ଚତୁଷ୍ଟୟ) ଯାବତୀୟ କାର୍ଯ୍ୟ ଓ କାରଣର ସ୍ୱରୂପ [ଅର୍ଥାତ୍ ବ୍ରହ୍ମରେ ପରିଦୃଶ୍ୟମାନ ଓ କାର୍ଯ୍ୟ-କାରଣରୂପେ ପ୍ରତୀୟମାନ ପଦାର୍ଥସମୂହ ଅବିଦ୍ୟାଦ୍ୱାରା ପ୍ରତିଭାତ ହୋଇଥାଏ ; ବ୍ରହ୍ମସତ୍ତାଦ୍ୱାରା ହିଁ ଏହାର ସତ୍ତା ପ୍ରତୀତ ; ଅତଏବ ବ୍ରହ୍ମହିଁ ଏହାର ଯଥାର୍ଥସ୍ୱରୂପ ; ଯେପରି ରଜ୍ଜୁରେ କଳ୍ପିତ ସର୍ପ ରଜ୍ଜୁସ୍ୱରୂପ ] । ବିଭାଗରହିତ, ଅର୍ଥାତ୍ ଅବୟବାଦିବିଭାଗଶୂନ୍ୟ ନିବିଡ଼ଚୈତନ୍ୟରାଶିରୂପ ଆନନ୍ଦାତ୍ମକ ଦିବ୍ୟ ମଙ୍ଗଳାକାର ଓ ନିରତିଶୟ, ଅର୍ଥାତ୍ ଆନନ୍ଦାତ୍ମକ ତେଜୋରାଶିବିଶେଷ । ଏହା ସର୍ବପରିପୂର୍ଣ୍ଣ ଅନନ୍ତ ଚିନ୍ମୟ ସ୍ତମ୍ଭସ୍ୱରୂପ, ଏଥିରେ ଅବିଦ୍ୟା-ଦୋଷହୀନ ନିର୍ମଳଜ୍ଞାନାତ୍ମକ ଆନନ୍ଦବିଶେଷ ଭିନ୍ନ ଅନ୍ୟ କୌଣସି ପ୍ରକାର ଆକାର ନାହିଁ । ଅସୀମ ଚୈତନ୍ୟର ବିକାରରୂପ ବିଭୂତିସମଷ୍ଟି ଏହାର ଯଥାର୍ଥ ସ୍ୱରୂପ । ଅଦ୍ଭୁତ ଅଲୌକିକ ଆନନ୍ଦସ୍ୱରୂପ ଆଶ୍ଚର୍ଯ୍ୟବିଭୂତିବିଶେଷ ହିଁ ଏହାର ଯଥାର୍ଥ ଆକାର । ଏହା ଅନନ୍ତ ଓ ପରିପୂର୍ଣ୍ଣ ଆନନ୍ଦ-ସ୍ୱରୂପ, ଦିବ୍ୟବିଦ୍ୟୁତ୍‌ରାଶି ସଦୃଶ ପ୍ରକାଶରୂପରେ ସର୍ବଦା ବିରାଜମାନ । ଏହି ଆକାରରେ ଅଦ୍ୱିତୀୟ ଅଖଣ୍ଡ ଆନନ୍ଦାତ୍ମକ ବ୍ରହ୍ମସ୍ୱରୂପ ନିରୂପିତ ହୋଇଅଛି ।

ଏହି ସମ୍ବନ୍ଧରେ ଦେବଗଣଙ୍କ ପ୍ରତି ପ୍ରଜାପତିଙ୍କର ଉପଦେଶ—

**ଯଦା ହ୍ୟେବ ଏଷ ଏତସ୍ମିନ୍ ଅଦୃଶ୍ୟତ୍ୱାଦି ଲକ୍ଷଣେ ।**
**ନିର୍ଭେଦଂ ପରମାଦ୍ୱୈତଂ ବିନ୍ଦତେ ଚ ମହାଯତିଃ ॥**
**ତଦେବାଭୟ ମତ୍ୟନ୍ତକଲ୍ୟାଣଂ ପରମାମୃତମ୍ ।**
**ସଦ୍ରୂପଂ ପରମଂ ବ୍ରହ୍ମ ତ୍ରିପରିଚ୍ଛେଦବର୍ଜିତମ୍ ॥**

କଠରୁଦ୍ରୋପନିଷଦ୍—୨୬-୨୭ ॥

ଯେତେବେଳେ ଜୀବ ଅଦୃଶ୍ୟତ୍ୱ ଆଦି ଲକ୍ଷଣଯୁକ୍ତ ପରଂବ୍ରହ୍ମଠାରେ ତ୍ରିବିଧ-ଭେଦଶୂନ୍ୟ ପରମ ଅଦ୍ୱୈତ ଜ୍ଞାନ ଲାଭ କରେ, ସେତେବେଳେ ସେ ମହାଯତି ବୋଲି

କଥିତ ହୁଏ । ସେହି ବ୍ରହ୍ମ ହିଁ ଅଭୟସ୍ୱରୂପ । ସେ ପରମ କଲ୍ୟାଣାତ୍ମକ ଓ ସର୍ବୋତ୍କୃଷ୍ଟ ଅମୃତ, ଅର୍ଥାତ୍ ନିତ୍ୟ ମୋକ୍ଷସ୍ୱରୂପ । ସେହି କେବଳ ସଦ୍ରୂପ ପରଂବ୍ରହ୍ମ, ତାଙ୍କର ତ୍ରିବିଧ ପରିଚ୍ଛେଦ ନାହିଁ । ବସ୍ତୁସମୂହର ଦେଶ, କାଳ ଓ ବସ୍ତୁଦ୍ୱାରା ତ୍ରିବିଧ ପରିଚ୍ଛେଦ ହୋଇ-ଥାଏ । ଯେଉଁ ପଦାର୍ଥ କୌଣସି ଏକ ଦେଶରେ ବିଦ୍ୟମାନ, ଅଥଚ ଦେଶାନ୍ତରରେ ତା'ର ଅଭାବ, ସେପରି ଘଟାଦି ବସ୍ତୁ ଦେଶଦ୍ୱାରା ପରିଚ୍ଛିନ୍ନ । ଏହିରୂପ ପରିଚ୍ଛେଦ ବା ସୀମାର ନାମ ଦେଶତଃ ପରିଚ୍ଛେଦ । ବ୍ରହ୍ମଙ୍କର କୌଣସି ଦେଶରେ ଅଭାବ ନଥିବା ହେତୁରୁ ତାଙ୍କର ଦେଶଜନିତ ପରିଚ୍ଛେଦ ନାହିଁ । ଯେ ସକଳ ଅନିତ୍ୟ ବସ୍ତୁ କୌଣସି ଏକ କାଳରେ ବିଦ୍ୟମାନ, ଅଥଚ ଅନ୍ୟ କାଳରେ ତା'ର ଅଭାବ ପରିଦୃଷ୍ଟ, ସେହି ସକଳ ବସ୍ତୁ କାଳଦ୍ୱାରା ପରିଚ୍ଛିନ୍ନ । ଘଟାଦି ବସ୍ତୁ ବର୍ତ୍ତମାନ କାଳରେ ଅଛି, ଉତ୍ପତ୍ତିର ପୂର୍ବ କାଳରେ ତା'ର ଅଭାବ ଥିଲା ଓ ବିନାଶ ପର କାଳରେ ଅଭାବ ରହିବ—ଏପରି କାଳ-ପରିଚ୍ଛେଦ-ବିଶିଷ୍ଟ ହେବାରୁ ଏହା କାଳତଃ ପରିଚ୍ଛିନ୍ନ । ବ୍ରହ୍ମଙ୍କର କୌଣସି କାଳରେ ଅଭାବ ନାହିଁ, ସେହି ହେତୁରୁ ସେ କାଳ-ପରିଚ୍ଛିନ୍ନ ନୁହନ୍ତି । ଯେ ପଦାର୍ଥ ଅନ୍ୟ ପଦାର୍ଥଠାରୁ ଭିନ୍ନ, ତାହା ସବୁ ବସ୍ତୁପରିଚ୍ଛେଦବିଶିଷ୍ଟ । ଯେପରି ଘଟ ପଟଠାରୁ ଭିନ୍ନ ; ଅତଏବ ଏହା ପଟ-ରୂପକ ବସ୍ତୁଜନିତପରିଚ୍ଛେଦବିଶିଷ୍ଟ । ବ୍ରହ୍ମବ୍ୟତିରିକ୍ତ କୌଣସି ବସ୍ତୁର ସତ୍ତା ନ ଥିବାରୁ ସେଥିରେ କୌଣସି ବସ୍ତୁର ଭେଦ ନାହିଁ । ଅତଏବ ବ୍ରହ୍ମ ବସ୍ତୁକୃତ ପରିଚ୍ଛେଦରହିତ । ଏହିସବୁ କାରଣରୁ ବ୍ରହ୍ମ ତ୍ରିବିଧପରିଚ୍ଛେଦଶୂନ୍ୟ ।

ଏହି ବ୍ରହ୍ମ-ଲକ୍ଷଣ ସମ୍ବନ୍ଧରେ ଋଭୁ ମହର୍ଷି ନିଦାଘଙ୍କୁ ଉପଦେଶ ଦେଇଛନ୍ତି—

**ଯଜ୍ଜଗଦ୍‌ଭାସକଂ ଭାନଂ ନିତ୍ୟଂ ଭାତି ସ୍ୱତଃ ସ୍ଫୁରତ୍ ।**
**ସ ଏବ ଜଗତଃ ସାକ୍ଷୀ ସର୍ବାତ୍ମା ବିମଳାକୃତିଃ ॥**
**ପ୍ରତିଷ୍ଠା ସର୍ବଭୂତାନାଂ ପ୍ରଜ୍ଞାନଘନଲକ୍ଷଣଃ ।**
**ତଦ୍‌ବିଦ୍ୟା ବିଷୟଂ ବ୍ରହ୍ମ ସତ୍ୟଜ୍ଞାନସୁଖାଦ୍ୱୟମ୍ ॥**

ଅନ୍ନପୂର୍ଣ୍ଣୋପନିଷଦ୍ ୪-୨୬ ଓ ୨୭ ॥

ଯେ ସମସ୍ତ ଜଗତର ଉଦ୍ଭାସକ, ଜ୍ଞାନସ୍ୱରୂପ, ସ୍ୱୟଂ ପ୍ରକାଶରୂପରେ ସର୍ବଦା ପ୍ରକାଶ ପାଉଅଛନ୍ତି, ସେହି ନିର୍ମଳ ସକଳ ଜଗତର ସାକ୍ଷୀ, ଅର୍ଥାତ୍ ଅସଙ୍ଗରୂପରେ ଦ୍ରଷ୍ଟା । ସେ ସମସ୍ତଙ୍କର ଆତ୍ମସ୍ୱରୂପ ଓ ଅବିଦ୍ୟାଦିଦୋଷଶୂନ୍ୟ, ସେହି କେବଳ ସକଳ ପ୍ରାଣୀର ପ୍ରତିଷ୍ଠା । କେବଳ ଜ୍ଞାନ ହିଁ ତାହାଙ୍କର ଲକ୍ଷଣ ବା ସ୍ୱରୂପ । ସେହି ସତ୍ୟ, ଜ୍ଞାନ ଓ ସୁଖାତ୍ମକ ଅଦ୍ୱିତୀୟ ବସ୍ତୁ ।

ଶ୍ୱେତାଶ୍ୱତର ଶ୍ରୁତିରେ ମଧ୍ୟ କଥିତ ଅଛି—

ଯସ୍ମାତ୍ ପରଂ ନାପରମସ୍ତି କିଞ୍ଚିତ୍
ଯସ୍ମାନ୍ନାଣୀୟୋ ନ ଜ୍ୟାୟୋଽସ୍ତି କିଞ୍ଚିତ୍ ।
ବୃକ୍ଷ ଇବ ସ୍ତବ୍ଧୋ ଦିବି ତିଷ୍ଠତ୍ୟେକ-
ସ୍ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବମ୍ ॥
ଶ୍ୱେତାଶ୍ୱ : ଉ: ୩-୯ ।

ସେହି ପରମାତ୍ମା ପରମପୁରୁଷଙ୍କଠାରୁ ଉତ୍କୃଷ୍ଟ ଅନ୍ୟ ପୁରୁଷ ଆଉ କେହି ନାହିଁ ; ସେହି କେବଳ ଜଗତରେ ଅତି ସୂକ୍ଷ୍ମ ଓ ସର୍ବପ୍ରଧାନ ଏବଂ ବୃକ୍ଷତୁଲ୍ୟ ସ୍ଥିର; ଅଥଚ ସ୍ୱୀୟ ମାହାତ୍ମ୍ୟବଳରେ ସର୍ବତ୍ର ବ୍ୟାପୀ ରହିଅଛନ୍ତି । ସେ ପୂର୍ଣ୍ଣ ଓ ଅବିଚ୍ଛିନ୍ନ, ଏହି ଅଖିଳ ଜଗତର କୌଣସି ସ୍ଥାନରେ ମଧ୍ୟ ତାଙ୍କର ଅଭାବ ନାହିଁ ; ସର୍ବତ୍ର ସେ ପୂର୍ଣ୍ଣରୂପରେ ଅବସ୍ଥିତ କରିଅଛନ୍ତି ।

ଆହୁରି ମଧ୍ୟ—

ଅଧିଷ୍ଠାନମନୌପମ୍ୟମବାଙ୍ମନସଗୋଚରମ୍ ।
ଯତ୍ତଦ୍ଦେତଦଦୃଶ୍ୟମଗ୍ରାହ୍ୟମଗୋତ୍ରଂ ରୂପବର୍ଜିତମ୍ ॥
ଅଚକ୍ଷୁଃଶ୍ରୋତ୍ର ମତ୍ୟର୍ଥଂ ତଦପାଣିପଦଂ ତଥା
ନିତ୍ୟଂ ବିଭୁ ସର୍ବଗତଂ ସୁ-ସୂକ୍ଷ୍ମଞ୍ଚ ତଦବ୍ୟୟମ୍ ॥
ବ୍ରହ୍ମୈବେଦମମୃତଂ ତତ୍ପୁରସ୍ତାଦ୍
ବ୍ରହ୍ମାନନ୍ଦଂ ପରମଂ ଚୈବ ପଶ୍ଚାତ୍ ।
ବ୍ରହ୍ମାନନ୍ଦଂ ପରମଂ ଦକ୍ଷିଣେ ଚ
ବ୍ରହ୍ମାନନ୍ଦଂ ପରମଂ ଚୋତ୍ତରେ ଚ ॥
ପାଶୁପତବ୍ରହ୍ମୋପନିଷତ୍—୨୮-୩୦ ।

ସେହି ବ୍ରହ୍ମ ଜଗତରେ ଅଧିଷ୍ଠାନ କରିଥିଲେ ମଧ୍ୟ ଜଗତର କୌଣସି ବସ୍ତୁ ସହିତ ତାଙ୍କର ତୁଳନା ହୋଇ ନ ପାରେ । ସେ ଚକ୍ଷୁରାଦି ଜ୍ଞାନେନ୍ଦ୍ରିୟ ଓ ହସ୍ତାଦି କର୍ମେନ୍ଦ୍ରିୟର ବିଷୟ ନୁହନ୍ତି । ତାହାଙ୍କର କାରଣ ଓ କୌଣସି ରୂପ ନାହିଁ । ତାହାଙ୍କର ଚକ୍ଷୁଶ୍ରୋତ୍ରାଦି ଜ୍ଞାନେନ୍ଦ୍ରିୟ ଓ ହସ୍ତପଦାଦି କର୍ମେନ୍ଦ୍ରିୟ ନାହିଁ । ସେ ଜାଗତିକ ସକଳ ପଦାର୍ଥ ଅତିକ୍ରମ କରି ବିଦ୍ୟମାନ ; ତାଙ୍କର ଉତ୍ପତ୍ତି ବା ବିନାଶ ନାହିଁ । ସେ ସର୍ବବ୍ୟାପୀ ଓ ସର୍ବତ୍ର ଅବସ୍ଥିତ । ସର୍ବବ୍ୟାପକ ହେଲେ ମଧ୍ୟ ଇନ୍ଦ୍ରିୟାଦିର ଅଗୋଚର ହେଉଛନ୍ତି

ଅନ୍ତଶୟ୍ୟ ସୂକ୍ଷ୍ମ । ତାଙ୍କର କୌଣସି ରୂପ ପରିମାଣ ନାହିଁ । ଏହି ଅମୃତାତ୍ମକ, ନିତ୍ୟ ମୋକ୍ଷସ୍ୱରୂପ, ପରମ ଆନନ୍ଦରୂପ ବ୍ରହ୍ମ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ସର୍ବତ୍ର ହିଁ ଅବସ୍ଥିତ ।

ଏହି ବ୍ରହ୍ମଙ୍କ ବିଷୟରେ ମହାଦେବ ପୈପ୍‌ପଲାଦ ଋଷିଙ୍କୁ କହିଅଛନ୍ତି—

ନ ଜାନନ୍ତି ସୁରାଃ ସର୍ବେ ସର୍ବକାରଣ-କାରଣମ୍ ।
ନ ସଂଦୃଶେ ତିଷ୍ଠତି ରୂପମସ୍ୟ ପରାତ୍‌ପରଂ ପୁରୁଷଂ ବିଶ୍ୱଧାମ ॥
ପଞ୍ଚବ୍ରହ୍ମୋପନିଷଦ୍—୧୯ ॥

ସେହି ସର୍ବକାରଣର କାରଣିକି ପରମାତ୍ମାଙ୍କୁ ଦେବଗଣମାନେ ଜାଣିପାରନ୍ତି ନାହିଁ । ତାହାଙ୍କୁ ଦର୍ଶନ କରିବା ନିମନ୍ତେ ତାହାଙ୍କର ରୂପ ଅଛି—ଏହା ନିଶ୍ଚିତଭାବେ କୁହାଯାଇ ନ ପାରେ, କାରଣ ସେ ରୂପବିହୀନ । ସେହିହେତୁରୁ ସମୁଦାୟ ବ୍ରହ୍ମାଣ୍ଡର ଆଶ୍ରୟ ପରାତ୍ପର ପରମାତ୍ମାଙ୍କୁ ସାଧକ ଦର୍ଶନ କରି, ଅର୍ଥାତ୍ ଶ୍ରବଣାଦିଦ୍ୱାରା ଅବଗତ ହୋଇ ତାଙ୍କର ଶରଣ, ଦର୍ଶନ ଭଜନ କରିବ; କିନ୍ତୁ ତାହାଙ୍କର ରୂପଦର୍ଶନରେ ଅଭିଳାଷୀ ହେବ ନାହିଁ ॥

ଅପରଂ ଚ—

ପରିପୂର୍ଣ୍ଣମନା ଦ୍ୟନ୍ତ ମପ୍ରମେୟମବିକ୍ରିୟମ୍ ।
ସଦ୍‌ଘନଂ ଚିଦ୍‌ଘନଂ ନିତ୍ୟମାନନ୍ଦଘନମବ୍ୟୟମ୍ ॥
ପ୍ରତ୍ୟଗେକରସଂ ପୂର୍ଣ୍ଣମନନ୍ତଂ ସର୍ବତୋମୁଖମ୍ ।
ଅହେୟମନୁପାଦେୟମନାଧେୟମନାଶ୍ରୟମ୍ ॥
ନିର୍ଗୁଣଂ ନିଷ୍କ୍ରିୟଂ ସୂକ୍ଷ୍ମଂ ନିର୍ବିକଳ୍ପଂ ନିରଞ୍ଜନମ୍ ।
ଅନିରୂପ୍ୟସ୍ୱରୂପଂ ଯନ୍ମନୋବାଗମଗୋଚରମ୍ ॥
ସତ୍‌ସମୃଦ୍ଧଂ ସ୍ୱତଃ ସିଦ୍ଧଂ ଶୁଦ୍ଧଂ ବୁଦ୍ଧମନିଦୃଶମ୍ ।
ଏକମେବାଦ୍ୱୟଂ ବ୍ରହ୍ମ ନେହ ନାନାସ୍ତି କିଞ୍ଚନ ॥
ଅଧ୍ୟାତ୍ମୋପନିଷଦ୍—୬୧-୬୪ ॥

ବ୍ରହ୍ମଙ୍କ ସ୍ୱରୂପ ସମ୍ବନ୍ଧରେ ଏହା କଥିତ ହୋଇଛି—ବ୍ରହ୍ମ ପରିପୂର୍ଣ୍ଣ ଅର୍ଥାତ୍ ଦେଶ, କାଳ ଓ ବସ୍ତୁଗତ ପରିଚ୍ଛେଦ ତାଙ୍କର ନାହିଁ; ତାଙ୍କର ଆଦି ବା ଅନ୍ତ ନାହିଁ, ସେ ସ୍ୱୟଂ ପ୍ରକାଶବିଶିଷ୍ଟ । ବ୍ରହ୍ମଙ୍କର କୌଣସି ରୂପ ବିକାର ନାହିଁ; ଜଗତ୍ ବା ପ୍ରପଞ୍ଚର ମାୟା ପରିଣାମ- ହେତୁରୁ ବିକାର ପରିଲକ୍ଷିତ ହୁଏ; କିନ୍ତୁ ବ୍ରହ୍ମ ଜଗତର ଅଧିଷ୍ଠାନ ମାତ୍ର । ଅତଏବ ସେ ନିର୍ବିକାର । ବ୍ରହ୍ମଙ୍କର ନିରବଚ୍ଛିନ୍ନ ସତ୍ତା ମଧ୍ୟ ଚୈତନ୍ୟସ୍ୱରୂପରେ ଅବସ୍ଥିତ ।

ଏହି ବ୍ରହ୍ମ ନିତ୍ୟ, ଆନନ୍ଦମୟ ଓ ଅବ୍ୟୟ, ଅର୍ଥାତ୍ ଉତ୍ପତ୍ତ୍ୟାଦିଭାବବିକାରବିହୀନ । ସେ ଇନ୍ଦ୍ରିୟାଦିର ଅଗୋଚର ଓ ଏକାତ୍ମକ । ବ୍ରହ୍ମ ଜ୍ଞାପକ, ଅନ୍ତଃଶୂନ୍ୟ ଓ ସର୍ବତୋମୁଖ, ଅର୍ଥାତ୍ ଇନ୍ଦ୍ରିୟାଦିରହିତ ହେଲେ ମଧ୍ୟ ସର୍ବଜ୍ଞ ଜ୍ଞାନମୟ ହେତୁରୁ ଏହାଙ୍କ ମୁଖ ସମସ୍ତ ଦିଗରେ ଦୃଷ୍ଟିପ୍ରମାନ ହୁଏ । ସେ ଆତ୍ମସ୍ୱରୂପରେ ସର୍ବତ୍ର ବ୍ୟାପକଭାବରେ ବିଦ୍ୟମାନ ହେତୁରୁ ତ୍ୟାଗ ଓ ଗ୍ରହଣର ଅଯୋଗ୍ୟ; ତାହାଙ୍କର ସଂଯୋଗାଦି ସମ୍ବନ୍ଧ ନେଇ କୌଣସି ଆଧାର ନାହିଁ ; ଅଥବା ସେ କୌଣସିରୂପେ ଗୁଣାନ୍ତର ଉତ୍ପାଦନ ବା ସଂସ୍କାରଯୋଗ୍ୟ ନୁହନ୍ତି । ତାହାଙ୍କର କୌଣସି ପ୍ରକାର ଆଧାର ମଧ୍ୟ ନାହିଁ ; ସେ ଗୁଣହୀନ, ନିସ୍କାରହିତ, ସୂକ୍ଷ୍ମ ଅର୍ଥାତ୍ ଇନ୍ଦ୍ରିୟାଦିର ଅଗୋଚର । ତାହାଙ୍କଠାରେ ଧର୍ମ-ଧର୍ମୀ ଆଦି ବିକଳ୍ପ ବା ଅଞ୍ଜନ, ଅର୍ଥାତ୍ ଅବିଦ୍ୟା ଆଦି ଦୋଷ ନାହିଁ । ତାହାଙ୍କର ସ୍ୱରୂପ ନିରୂପଣ କରାଯାଏ ନାହିଁ । କାରଣ, ସେ ବଚନ ଓ ମନର ଅବିଷୟ । ସେ ସତ୍ତ୍ୱପୂର୍ଣ୍ଣ, ସ୍ୱତଃସିଦ୍ଧ, ବିଶୁଦ୍ଧରୂପ ଓ ପ୍ରକାଶାତ୍ମକ । ତାଙ୍କ ସଦୃଶ ଅନ୍ୟ ବସ୍ତୁ କିଛି ନାହିଁ । ଏହି ବ୍ରହ୍ମ ଏକ ଏବଂ ଅଦ୍ୱିତୀୟ, ଅର୍ଥାତ୍ ସେ ସଜାତୀୟ ବା ବିଜାତୀୟଭେଦଶୂନ୍ୟ ; ଅର୍ଥାତ୍ ଯେପରି ଅନ୍ୟ ଘଟ ବିଦ୍ୟମାନ ଥିଲେ ସଜାତୀୟ ଘଟାନ୍ତରଭେଦ ଘଟରେ ଥାଏ, ସେପରି ବ୍ରହ୍ମର ସଜାତୀୟ ଅନ୍ୟ ବସ୍ତୁ ନଥିବାହେତୁ ସେଥିରେ ସଜାତୀୟ ଭେଦ ନାହିଁ । ଘଟରେ ବିଜାତୀୟ ବସ୍ତୁର ଭେଦ ଅନୁଭୂତ; କିନ୍ତୁ ସେପରି ବ୍ରହ୍ମଭିନ୍ନ ଅନ୍ୟବସ୍ତୁ ସତ୍ତାର ଅଭାବହେତୁ ବ୍ରହ୍ମଠାରେ ବିଜାତୀୟ ଭେଦ ରହେ ନାହିଁ । ଘଟ ସାବୟବହେତୁ ସ୍ୱଗତଅବୟବଭେଦ ଘଟରେ ଥାଏ; କିନ୍ତୁ ବ୍ରହ୍ମ ନିରବୟବ; ଅତଏବ ସ୍ୱଗତ ଅବୟବଭେଦ ସେଥିରେ ନାହିଁ । ଜାଗତିକ ସକଳ ବସ୍ତୁରେ ବ୍ରହ୍ମସତ୍ତାତିରିକ୍ତ ସତ୍ତା ବିଦ୍ୟମାନ ନାହିଁ, ଏ ବିଷୟରେ ବେଦବଚନ—

"ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂର୍ୟାଥାତଥ୍ୟତୋଽର୍ଥାନ୍
ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥

ଯଜୁଃ ସଂ ଅ ୪୦ । ମ ୮ ॥

ଅର୍ଥାତ୍, ପରମାତ୍ମା ସର୍ବବ୍ୟାପକ, ସର୍ବଶକ୍ତିମାନ୍, ଶରୀରରହିତ, ରୋଗରହିତ, ଜନ୍ମରହିତ, ଶୁଦ୍ଧ, ନିଷ୍ପାପ, ସର୍ବଜ୍ଞ, ଅନ୍ତର୍ଯ୍ୟାମୀ, ଦୁଷ୍ଟର ଦମନକର୍ତ୍ତା ଓ ଅନାଦି । ଅନନ୍ତକାଳରୁ ପ୍ରଜାମାନଙ୍କ ହିତନିମିତ୍ତ ପରମାତ୍ମା ସବୁକାଳ ନିମନ୍ତେ ଯଥାଯଥ ଫଳବିଧାନ କରନ୍ତି ।

ଅନ୍ୟମଧ୍ୟ—

**ସ ବା ଅୟମାତ୍ମା ସର୍ବସ୍ୟ ବଶୀ, ସର୍ବସ୍ୟେଶାନଃ, ସର୍ବସ୍ୟାଧିପତିଃ ସର୍ବମିଦଂ ପ୍ରଶାସ୍ତି ଯଦିଦଂ କିଞ୍ଚ, ସ ନ ସାଧୁନା କର୍ମଣା ଭୂୟାନେବାସାଧୁନା**

**କନୀୟାନେଷ ଭୂତାଧିପତିରେଷ ଲୋକେଶ୍ୱର ଏଷ ଲୋକପାଳଃ ସ ସେତୁ-ର୍ବିଧରଣ ଏଷାଂ ଲୋକାନାମସମ୍ଭେଦାୟ ॥**

ଯଜୁଃ-ପ୍ର: ୧୪ । ଅଃ ୩ । ମଃ ୨୪॥

ସେହି ପରମାତ୍ମା ସକଳଠାରୁ ସ୍ୱତନ୍ତ୍ର, ସମସ୍ତଙ୍କର ନିୟନ୍ତା, ସମସ୍ତଙ୍କ ଅଧିପତି; ସେ ସମସ୍ତ ପରିଦୃଶ୍ୟମାନ ଜଗତର ଶାସନକର୍ତ୍ତା । ସେ ସାଧୁ ବା ଅସାଧୁ କାର୍ଯ୍ୟଦ୍ୱାରା ଉନ୍ନତ ବା ଅବନତ ହୁଅନ୍ତି ନାହିଁ; ସେ ନିତ୍ୟ ଓ ଅବିକାରୀ, ପ୍ରାଣୀମାନଙ୍କର ଅଧିପତି ଏବଂ ସର୍ବଲୋକର ଅଧୀଶ୍ୱର, ସେ ସମସ୍ତଙ୍କର ପ୍ରତିପାଳକ । ଲୋକମାନଙ୍କ ବିପତ୍ତିନିବାରଣ ସକାଶେ ସେ ସଂସାରରୂପକ ଅର୍ଣ୍ଣବରେ ସେତୁସ୍ୱରୂପ; ସେ ସକଳ ଲୋକ ଧାରଣ କରି ଅଛନ୍ତି ।

**ଅନନ୍ତଂ ବିତତଂ ପୁରୁତ୍ରାନନ୍ତମନ୍ତବଚ୍ଚ ସମନ୍ତେ ।**
**ତେ ନାକପାଳଶ୍ଚରତି ବିଚିନ୍ୱନ୍ ବିଦ୍ୱାନଭୂତ-ଭୂତ-ଭବ୍ୟମସ୍ୟ ॥**

ଅଥର୍ବସଂ ୧୦-୮-୧୨ ॥

ଅର୍ଥାତ୍ ଚତୁର୍ଦ୍ଦିଗରେ ଏକ ଅନନ୍ତ ବିସ୍ତୃତ ହୋଇ ରହିଅଛି; ଚତୁର୍ଦ୍ଦିଗରେ ଅନନ୍ତ ଏବଂ ଅନ୍ତବତ ଉଭୟହିଁ ଅଛି । ଯେ ସ୍ୱର୍ଗଲୋକର ପ୍ରତିପାଳକ ଅନନ୍ତ ବ୍ରହ୍ମ, ସେ ସର୍ବଜ୍ଞ; ସେ ଏହି ବିଶ୍ୱର ଅଭୂତ ଭୂତ ଭବିଷ୍ୟତ୍ ଜ୍ଞାତ ହୋଇ ବିଚରଣ କରୁଛନ୍ତି ।

**ଅକାମ୍ୟଧୀର ଅମୃତଃ ସ୍ୱୟମ୍ଭୂ ରସେନ ତୃପ୍ତୋ ନ କୁତଶ୍ଚ ନୋ ନଃ ।**
**ତମେବ ବିଦ୍ୱାନ୍ ନ ବିଭାୟ ମୃତ୍ୟୋରାତ୍ମାନଂ ଧୀରମମରଂ ଯୁବାନମ୍ ॥**

ଅଥର୍ବସଂ-୧୦-୮-୪୪ ॥

ସେହି ପରମାତ୍ମା କାମନାପରିଶୂନ୍ୟ, ବିକାରରହିତ, ଅମୃତ, ସ୍ୱୟମ୍ଭୂ, ନିଜ ଆନନ୍ଦରେ ନିଜେ ପରିତୃପ୍ତ; ସେ କୌଣସି ପ୍ରକାରେ ନ୍ୟୂନ ନୁହନ୍ତି; ଅବିକାରୀ, ଅମର, ଶ୍ରେଷ୍ଠ ପରମାତ୍ମାଙ୍କୁ ଜାଣିପାରିଲେ ମନୁଷ୍ୟ ଆଉ ମୃତ୍ୟୁକୁ ଭୟ କରେ ନାହିଁ ।
ଏ ସମ୍ବନ୍ଧରେ ପଞ୍ଚଦଶୀରେ କଥିତ ଅଛି—

**ନ ବ୍ୟାପିତ୍ୱାଦ୍ଦେଶତୋଽନ୍ତୋ ନିତ୍ୟତ୍ୱାନ୍ନାପି କାଳତଃ ।**
**ନ ବସ୍ତୁତୋଽପି ସର୍ବାତ୍ମ୍ୟାଦାନନ୍ତ୍ୟଂ ବ୍ରହ୍ମଣି ତ୍ରିଧା ॥**

ପଞ୍ଚଦଶୀ-୩-୩୫ ॥

ପରମାତ୍ମାଙ୍କ ସ୍ୱରୂପ ନିତ୍ୟ ଓ ସତ୍ୟ; ଏହା ପ୍ରତିପନ୍ନ କରି ଶ୍ରୁତିଦ୍ୱାରା ତାହାଙ୍କର ଅପରିଚ୍ଛିନ୍ନ ସ୍ୱରୂପ ନିରୂପଣ କରାଯାଇଛି ।

ଦେହେନ୍ଦ୍ରିୟାଦି ଯୁକ୍ତସ୍ୟ ଜୀବାଭାସଭ୍ରମସ୍ୟ ଯା ।
ଅଧିଷ୍ଠାନାଚଉଃ ସୈଷା କୂଟସ୍ଥାତ୍ର ବିବକ୍ଷିତା ॥
ଜଗଦ୍ ଭ୍ରମସ୍ୟ ସର୍ବସ୍ୟ ଯଦଧିଷ୍ଠାନମୀରିତମ୍ ।
ତ୍ରସ୍ୟନ୍ତେଷୁ ତଦେବ ସ୍ୟାଦ୍ ବ୍ରହ୍ମଶବ୍ଦବିବକ୍ଷିତମ୍ ॥
ପଞ୍ଚଦଶୀ-୮-୪୮—୪୯

ଦେହେନ୍ଦ୍ରିୟାଦିଯୁକ୍ତ ଚୈତନ୍ୟ ଆଭାସରୂପ ଜୀବଭ୍ରାନ୍ତିର ଅଧିଷ୍ଠାନ ଯେ ଚୈତନ୍ୟ, ସେ ଏ ସ୍ଥଳରେ କୂଟସ୍ଥଚୈତନ୍ୟରୂପରେ ବିବକ୍ଷିତ ହୁଏ । ଏହି ସମୁଦାୟ ଭ୍ରମାତ୍ମକ ଜଗତର ଆଧାରଭୂତ ଯେଉଁ ଚୈତନ୍ୟ ବେଦାନ୍ତଶାସ୍ତ୍ରରେ ଉକ୍ତ, ସେହି ନିଷ୍ଠସ୍ୱ ବ୍ରହ୍ମଶବ୍ଦବାଚ୍ୟ । ଉପର୍ଯ୍ୟୁକ୍ତ ଶ୍ରୁତିପ୍ରତିପାଦିତ ଯୁକ୍ତିସମୂହରୁ ବେଦାନ୍ତନିର୍ଦ୍ଧାରିତ ମତବାଦ ବର୍ଣ୍ଣିତ ହୋଇ ଆସୁଅଛି । ଆଚାର୍ଯ୍ୟ ବାଦରାୟଣ ମଧ୍ୟ ସ୍ୱକୃତ ବ୍ରହ୍ମସୂତ୍ରରେ 'ଅକ୍ଷର' ଶବ୍ଦଦ୍ୱାରା ବ୍ରହ୍ମଙ୍କୁ ହିଁ ନିରୂପଣ କରିଅଛନ୍ତି—

ଅକ୍ଷରମମ୍ବରାନ୍ତଧୃତେଃ ॥ ବ୍ରହ୍ମସୂତ୍ର-୧-୩-୧୦ ॥

ଅମ୍ବରାନ୍ତଧାରଣ ହେତୁ, ଅର୍ଥାତ୍ କ୍ଷିତ୍ୟାଦିଠାରୁ ଆକାଶ ପର୍ଯ୍ୟନ୍ତ ବିବିଧକାର୍ଯ୍ୟ-ରୂପ ଭୂତସମୂହର ଧାରଣକର୍ତ୍ତା ହେତୁ 'ଅକ୍ଷର'ଶବ୍ଦଦ୍ୱାରା ସେହି ପରମାତ୍ମା କେବଳ ବୋଧ । ଏ ସମ୍ବନ୍ଧରେ ବୃହଦାରଣ୍ୟକ ଉପନିଷଦ୍‌ରେ ମଧ୍ୟ ଉଲ୍ଲେଖ ଅଛି—

ସ ହୋବାଚ ଏତଦ୍ ବୈ ତଦକ୍ଷରଂ ଗାର୍ଗି ବ୍ରାହ୍ମଣା ଅଭିବଦନ୍ତି ଅସ୍ଥୂଲମନଣ୍ୱହ୍ରସ୍ୱମଦୀର୍ଘମଲୋହିତମସ୍ନେହମଚ୍ଛାୟମତମୋଽବାୟ୍ୱନାକାଶ-ମସଙ୍ଗମରସମଗନ୍ଧମଚକ୍ଷୁଷ୍କମଶ୍ରୋତ୍ରମବାକ୍ ଅମନୋଽତେଜସ୍କମପ୍ରାଣ ମମୁଖମମାତ୍ର ମନନ୍ତରମବାହ୍ୟଂ ନ ତଦଶ୍ନାତି କଞ୍ଚନ ନ ତଦଶ୍ନାତି କଶ୍ଚନ ॥
ବୃ. ଆ. ଉ. ୩ । ୮ । ୮

ହେ ଗାର୍ଗି ! ଏହି ଏକ ଆକାଶ ହିଁ କାଳତ୍ରୟସମ୍ପର୍କଶୂନ୍ୟ ହେତୁରୁ ସାଧାରଣତଃ ଦୁର୍ଜ୍ଞେୟ; ତାହାର ଉପରିଭାଗ, ଯହିଁରେ ଆକାଶ ଓତପ୍ରୋତ ଭାବରେ ବିଦ୍ୟମାନ, ତାହା ଅକ୍ଷରବ୍ରହ୍ମର ଅଂଶସ୍ୱ ଓ ତାହା କୌଣସିରୂପେ ବର୍ଣ୍ଣନୀୟ ନୁହେଁ । ଗାର୍ଗୀ ମନେ କଲେ ଯେ, ଏହି ଅବାଚ୍ୟ ବିଷୟ ଉତ୍ଥାପନ କରି ଅପ୍ରତିପତ୍ତି ଓ ବିପ୍ରତିପତ୍ତି-ନାମକ ଦୁଇ ଦୋଷରେ ଯାଜ୍ଞବଲ୍କ୍ୟଙ୍କୁ ନିଗୃହୀତ କରିବେ । ତାର୍କିକମାନେ ଅବାଚ୍ୟ ବିଷୟର ଉତ୍ଥାପନ କରି ପ୍ରତିବାଦୀକୁ ଅପ୍ରତିପତ୍ତି ଦୋଷରେ (ଯାହାର ଆଉ ଉତ୍ତର ନାହିଁ)

ନିଗୃହୀତ କରନ୍ତି । ପ୍ରଶ୍ନବାଦୀ ମଧ୍ୟ ଅବାଚ୍ୟର ଉକ୍ତି ହେତୁରୁ ବାଦୀଙ୍କୁ ବିପ୍ରତିପତ୍ତି ଦୋଷରେ ଦୋଷୀ କରେ; କିନ୍ତୁ ପରିଶେଷରେ ଅବାଚ୍ୟବାଦୀ କେବଳ ନିଗୃହୀତ ହୁଏ । ଏହି ଅନୁସାରେ ତାର୍କିକ ଶିଷ୍ଟର ଉତ୍ତର ଦେଇ ଯାଜ୍ଞବଲ୍କ୍ୟ ଅବାଚ୍ୟବାଦୀ ହେଲେ ଓ ନିୟମ ଅନୁସାରେ ନିଗୃହୀତ ହେବେ; କିନ୍ତୁ ଯାଜ୍ଞବଲ୍କ୍ୟ ଉକ୍ତ ଦୋଷଦ୍ୱୟର, ଅର୍ଥାତ୍ ବସ୍ତୁର ଅବାଚ୍ୟତାରୂପ ଅପ୍ରତିପତ୍ତି ନିଗ୍ରହ ଓ ଯାଜ୍ଞବଲ୍କ୍ୟଙ୍କର ଅବାଚ୍ୟ ବିଷୟର ଉତ୍ତର ଦେବାଦ୍ୱାରା ବିପ୍ରତିପତ୍ତିରୂପ ନିଗ୍ରହ—ଏପରି ଦୁଇ ଦୋଷର ପରିହାର କାମନାରେ ଉତ୍ତର ଦେଲେ । ହେ ଗାର୍ଗି ! ତୁମେ ଯେଉଁ ବିଷୟରେ ପ୍ରଶ୍ନ କରିଅଛ, ତା'ର ନାମ ଅକ୍ଷର । ଅକ୍ଷରର ଅର୍ଥ—ଯାହାର କ୍ଷୟ ଏବଂ କ୍ଷରଣ ବା ବିନାଶ ନାହିଁ । ଏହା ଅବାଚ୍ୟ ନୁହେଁ, କାରଣ ତଦ୍ଦ୍ୱାରା ଆମେ ଅବାଚ୍ୟବାଦୀ ହେବୁ, ଅଥବା ଅବାଚ୍ୟ ବିଷୟ ସ୍ୱୀକାର କରି ନିଗୃହୀତ ହେବୁ; କିନ୍ତୁ ବ୍ରହ୍ମଜ୍ଞ ମାତ୍ରେ ସ୍ୱୀକାର କରନ୍ତି ଯେ, ସେମାନେ ମଧ୍ୟ ଏହି ଅକ୍ଷରର କଥା କହନ୍ତି; ସେମାନଙ୍କ ମତରେ ଆକାଶ ମଧ୍ୟ ଏହି ଅକ୍ଷରରେ ଓତପ୍ରୋତ ଭାବରେ ଜଡ଼ିତ ଅଛି । ଯାଜ୍ଞବଲ୍କ୍ୟ ଏହି ପ୍ରଶ୍ନର ଏପରି ମୀମାଂସା କଲେ । ଗାର୍ଗୀ କହିଲେ—ହେ ଯାଜ୍ଞବଲ୍କ୍ୟ ! ତୁମେ କହ, ବ୍ରହ୍ମଜ୍ଞମାନେ କିପ୍ରକାରରେ ସେହି ଅକ୍ଷର ନିରୂପଣ କରିଅଛନ୍ତି । ଏହାର ଉତ୍ତରରେ ଯାଜ୍ଞବଲ୍କ୍ୟ କହିବାକୁ ଆରମ୍ଭ କଲେ—ସେହି ଅକ୍ଷର ଅସ୍ଥୂଳ—ସ୍ଥୂଳ ପଦାର୍ଥଠାରୁ ଭିନ୍ନ; ସେ ଅନଣୁ, ଅର୍ଥାତ୍ ସୂକ୍ଷ୍ମ ମଧ୍ୟ ନୁହନ୍ତି । ସେ ଅହ୍ରସ୍ୱ ବା ହ୍ରସ୍ୱ ନୁହନ୍ତି, ଅଦୀର୍ଘ ବା ଦୀର୍ଘପରିମାଣଭିନ୍ନ; ଏହିପରି ଦ୍ରବ୍ୟମାତ୍ରର ସ୍ଥୂଳସୂକ୍ଷ୍ମ ହ୍ରସ୍ୱଦୀର୍ଘତ୍ୱରୂପକ ଚତୁର୍ବିଧ ପରିମାଣବିଶେଷର ନିରାକରଣଦ୍ୱାରା ଅକ୍ଷର ଦ୍ରବ୍ୟ ନୁହେଁ ଏ କଥା ପ୍ରମାଣିତ କରାଗଲା । *

ପୁନଶ୍ଚ—ଅଗ୍ନିର ଲୋହିତ ବର୍ଣ୍ଣ ପରି ବ୍ରହ୍ମ ଲୋହିତ ବର୍ଣ୍ଣ ନୁହନ୍ତି । ସେ ଅଲୋହିତ । ଜଳ ବା ତୈଳ ପରି ବ୍ରହ୍ମ ସ୍ନେହ ପଦାର୍ଥ ନୁହନ୍ତି । ସେ ସମ୍ପୂର୍ଣ୍ଣ ଅନିର୍ଦ୍ଦେଶ୍ୟ, ଅତଏବ ଛାୟା ସଦୃଶ ହୋଇପାରନ୍ତି ନାହିଁ । ସେ ତମଃ ବା ଅନ୍ଧକାର, ବାୟୁ, ଆକାଶ

* ବର୍ତ୍ତମାନ ସଂଶୟ ହୁଏ ଯେ, ଏହି ଅକ୍ଷର କ'ଣ ? ବ୍ରହ୍ମ, ନା ପ୍ରଣବ ? କାରଣ, ପ୍ରଣବ ମଧ୍ୟ ସ୍ଥୂଳାଦି ସର୍ବଗୁଣ ବ୍ୟତିରିକ୍ତ ଓ ନାଦମାତ୍ରସ୍ୱରୂପ, ଅତଏବ ଅକ୍ଷରଶବ୍ଦବାଚ୍ୟ ହୋଇପାରେ । ଶ୍ରୁତିରେ ଅଛି "ଓଁକାର ଏବେଦଂ ସର୍ବମ୍"; ଅର୍ଥାତ୍ ସକଳ ହିଁ ଓଁକାର; କିନ୍ତୁ ଏହାର ଉତ୍ତରରେ କୁହାଯାଏ ଯେ, ବର୍ଣ୍ଣରୂପୀ ଓଁକାର ଅକ୍ଷର ନୁହେଁ; ଓଁକାର ବା ପ୍ରଣବ ବ୍ରହ୍ମଜ୍ଞାନର ସାଧନମାତ୍ର । ଈଶ୍ୱରବାଚକ ସ୍ୱରୂପରେ ସାଂକେତିକ ଶବ୍ଦ । ଅତଏବ, ଅକ୍ଷରଶବ୍ଦଦ୍ୱାରା କେବଳ ପରମାତ୍ମା କଥିତ, ପ୍ରଣବଦ୍ୱାରା ନୁହେ । ସେହି ଶ୍ରୁତିରେ ମଧ୍ୟ ଉକ୍ତ ଅଛି "ଆକାଶେ ତଦ୍‌ସର୍ବଂ ଓତପ୍ରୋତଂ ଚ—ଏତସ୍ମିନ୍ ଖଲୁ ଗାର୍ଗି ଆକାଶ ଓତଶ୍ଚ ପ୍ରୋତଶ୍ଚ" ।।

ନୁହନ୍ତି; ଜନ୍ତୁ ପରି କୌଣସି ବସ୍ତୁରେ ସଂଯୁକ୍ତ ନୁହନ୍ତି । ସେ ରସ ଓ ଗନ୍ଧ ନୁହନ୍ତି; ସେ ଅଚକ୍ଷୁ, ଅର୍ଥାତ୍ ଚକ୍ଷୁଦ୍ୱାରା ଦର୍ଶନ କରନ୍ତି ନାହିଁ; ଅନ୍ୟତ୍ର ମଧ୍ୟ କୁହାଯାଇଛି—"ପଶ୍ୟତ୍ୟଚକ୍ଷୁଃ", ଅର୍ଥାତ୍ ତାଙ୍କର ଚକ୍ଷୁ ନାହିଁ, ଅଥଚ ସର୍ବତ୍ର ଦର୍ଶନ କରନ୍ତି । ସେ ଶ୍ରୋତ୍ର-ରହିତ, ବାଗିନ୍ଦ୍ରିୟହୀନ, ତେଜଃରହିତ, ଆଧ୍ୟାତ୍ମିକପ୍ରାଣବାୟୁଶୂନ୍ୟ, ମୁଖରହିତ, ଦର୍ଶନ-ସାଧନ-ରୂପାଦିଶୂନ୍ୟ, ଅବକାଶହୀନ, ବ୍ୟବଧାନରହିତ; ସେ କାହାର ବାହ୍ୟ ବା ବହିର୍ଭୂତ ନୁହନ୍ତି ଓ ସେ କିଛି ଭକ୍ଷଣ କରନ୍ତି ନାହିଁ; ତାଙ୍କୁ ମଧ୍ୟ କେହି ଭକ୍ଷଣ କରିପାରେ ନାହିଁ; ଅର୍ଥାତ୍ ଯେତେ ପ୍ରକାର ବିଶେଷଣ ସମ୍ଭବପର, ସେ ସମସ୍ତରୁ ସେ ରହିତ । କେବଳ ସେ ବିଶୁଦ୍ଧ, ଏକ, ଅଦ୍ୱିତୀୟ ଓ ନିର୍ବିଶେଷସ୍ୱରୂପ ।

ଗୀତାରେ ମଧ୍ୟ ଭଗବାନ କହିଛନ୍ତି—

"ଅକ୍ଷରଂ ପରମଂ ବ୍ରହ୍ମ",

ଅର୍ଥାତ୍ ଯେ ପରମ ଓ ଅକ୍ଷର [ କ୍ଷୟଶୂନ୍ୟ ଓ ଜଗତର ମୂଳ କାରଣ ] ସେହି ବ୍ରହ୍ମ । ବ୍ରହ୍ମସୂତ୍ରର ପ୍ରଥମାଧ୍ୟାୟର ତୃତୀୟ ପାଦରେ ମଧ୍ୟ ଉକ୍ତ ଅଛି—

"ଆକାଶୋଽର୍ଥାନ୍ତରତ୍ୱାଦିବ୍ୟପଦେଶାତ୍ ।।" ସୂ : ୪୧ ।।

ବ୍ରହ୍ମହିଁ ଆକାଶସ୍ୱରୂପ; କାରଣ, ସେ ନାମ ଓ ରୂପର ନିର୍ବାହକ ଓ ନାମରୂପରୁ ଭିନ୍ନ; ବ୍ରହ୍ମ ଘଟାକାଶ ବା ଭୂତାକାଶ ପ୍ରଭୃତି ନୁହନ୍ତି । *

ଛାନ୍ଦୋଗ୍ୟ ଶ୍ରୁତି ମଧ୍ୟ କହେ—

ଆକାଶୋ ବୈନାମ ନାମରୂପୟୋର୍ନିର୍ବହିତା ।
ତେ ଯଦନ୍ତରା ତଦ୍‌ବ୍ରହ୍ମ, ତଦମୃତଂ ସ ଆତ୍ମା ।। ଛା : ୮—୧୪—୧

* ଅର୍ଥାତ୍ ସ୍ୱର୍ଗ, ପୃଥ୍ୱୀ, ଅନ୍ତରୀକ୍ଷ, ବର୍ତ୍ତମାନ, ଭୂତ ଓ ଭବିଷ୍ୟତ୍ ଯହିଁରେ ଓତପ୍ରୋତ ହୋଇ ରହିଅଛି, ସେହି ସର୍ବାଧାର ସ୍ୱରୂପରେ ଲବ୍ଧ ଆକାଶସ୍ୱରୂପୀ ଶୂନ୍ୟ ଅମ୍ବର ମଧ୍ୟ ଏହି ଅବିନାଶୀ ନିତ୍ୟ ବୋଧସ୍ୱରୂପ ଅକ୍ଷର ବ୍ରହ୍ମ ସହିତ ଏକତା ଲାଭ କରିଅଛି ଓ ଓତପ୍ରୋତଭାବରେ ତା ସହିତ ଜଡ଼ିତ । ସୁତରାଂ ସର୍ବାଧାର ଆକାଶର ମଧ୍ୟ ଧାରକ ହେତୁ ଏକମାତ୍ର ପରମାତ୍ମା ହିଁ 'ଅକ୍ଷର' ଶବ୍ଦବାଚ୍ୟ । ଏହି ଅକ୍ଷର ପରଂବ୍ରହ୍ମ ହି ମୁମୁକ୍ଷୁର ଉପାସ୍ୟ । ପୁନଶ୍ଚ ବର୍ଣ୍ଣିତ ଅଛି—

"ଶ୍ରୁତ୍ୟୁକ୍ତାଃ ଷୋଡ଼ଶକଳାଃ ତଦାଶ୍ରୟସ୍ୟ ନାତ୍ମନଃ ।
ନିଷ୍କଳତ୍ୱାନ୍ନାସ୍ୟ ଲୟସ୍ତସ୍ମାନ୍ନିତ୍ୟତ୍ୱମାତ୍ମନଃ"—"ସର୍ବବେ: ସି: ସା: ୬୧୮"

ଶ୍ରୁତିରେ ଯେଉଁ ପ୍ରାଣ, ମନ ପ୍ରଭୃତି ଷୋଡ଼ଶ କଳାର କଥା ବର୍ଣ୍ଣିତ ଅଛି, ତାହା ତଦାଶ୍ରୟର, ପରମାତ୍ମାଙ୍କର ନୁହେଁ ; କିନ୍ତୁ ପରମାତ୍ମା କଳାବିହୀନ ଓ କୌଣସି ପ୍ରକାର ଲୟପ୍ରାପ୍ତ ହୁଅନ୍ତି ନାହିଁ । ଏଥିରୁ ପରମାତ୍ମାଙ୍କ ନିତ୍ୟତ୍ୱ ସିଦ୍ଧ ହୁଏ ।

ବ୍ରହ୍ମଲକ୍ଷଣ ନିର୍ଦ୍ଦେଶ ନିମନ୍ତେ କହୁଅଛନ୍ତି- ଶ୍ରୁତିପ୍ରସିଦ୍ଧ ଆକାଶ ବା ଆତ୍ମା ହିଁ [ ଆତ୍ମା ଆକାଶତୁଲ୍ୟ ଅଶରୀର ଓ ସୂକ୍ଷ୍ମହେତୁରୁ ଆତ୍ମାଙ୍କୁ ଆକାଶ ସହିତ ଲକ୍ଷ୍ୟ କରାଯାଏ ] ନାମ ଓ ରୂପର ନିର୍ବାହକ । ସେହି ନାମ ଓ ରୂପ ଯାହାଠାରେ ବର୍ତ୍ତମାନ, ସେହି କେବଳ ବ୍ରହ୍ମ, ତାହାହିଁ ଅମୃତ ବା ଅବିନାଶୀ ଓ ସେହି କେବଳ ଆତ୍ମା ।

## ୦ ବିଭିନ୍ନମତବାଦର ସମାଲୋଚନାପୂର୍ବକ ବିଶୁଦ୍ଧାଦ୍ୱୈତ ବ୍ରହ୍ମ-ବାଦର ଶ୍ରେଷ୍ଠତା ପ୍ରତିପାଦନ—

ଉପର୍ଯ୍ୟୁକ୍ତ ଯୁକ୍ତିସମୂହରୁ ଏକ ଓ ଅଦ୍ୱିତୀୟ ବ୍ରହ୍ମଙ୍କର ସ୍ୱରୂପ ପ୍ରତିପାଦିତ ହେଲେ ମଧ୍ୟ ଅନ୍ୟାନ୍ୟ ଦାର୍ଶନିକମାନେ ସେହି ଏକବ୍ରହ୍ମଙ୍କୁ ସବିଶେଷ, ନିର୍ବିଶେଷ, ସଗୁଣ, ନିର୍ଗୁଣ ଇତ୍ୟାଦି ବିଭିନ୍ନ ନାମରେ ବର୍ଣ୍ଣନ କରି ସ୍ୱ ସ୍ୱ ମତବାଦ ସ୍ଥାପନ କରିଅଛନ୍ତି । ଏହା ସବୁ ନିର୍ବିଶେଷାଦ୍ୱୈତବାଦ, ବିଶିଷ୍ଟାଦ୍ୱୈତବାଦ ଓ ଦ୍ୱୈତବାଦ ନାମରେ ଅଭିହିତ । ଆଚାର୍ଯ୍ୟ ଶଙ୍କର ନିର୍ବିଶେଷାଦ୍ୱୈତବାଦୀ, ରାମାନୁଜ ବିଶିଷ୍ଟାଦ୍ୱୈତବାଦୀ ଓ ଆଚାର୍ଯ୍ୟ ବଲ୍ଲଭପ୍ରଭୃତି ଦ୍ୱୈତବାଦୀ ।

ଶଙ୍କରାଚାର୍ଯ୍ୟ ଶ୍ରୁତିସକଳର ରହସ୍ୟ ଅନୁଭବ କରି ବ୍ରହ୍ମସୂତ୍ରର ବ୍ୟାଖ୍ୟାନା-ବସରରେ ବ୍ରହ୍ମ ଏକ ଓ ଅଦ୍ୱିତୀୟ ବୋଲି ପ୍ରମାଣିତ କରି ଅଦ୍ୱୈତବାଦର ସିଦ୍ଧାନ୍ତ ପ୍ରତିପାଦନ କରିଅଛନ୍ତି । ନିର୍ବିଶେଷାଦ୍ୱୈତବାଦର ସଂକ୍ଷିପ୍ତ ମର୍ମ ଏହି ଯେ, ବ୍ରହ୍ମ ଏକରୂପ; ତାହାର ଅନ୍ୟ କୌଣସି ରୂପବିଶେଷ, ଅର୍ଥାତ୍ ସଜାତୀୟ, ବିଜାତୀୟ ଓ ସ୍ୱଗତ ଭେଦ ନାହିଁ । ଏହି ସକଳ ଭେଦ କେବଳ ପ୍ରତିଭାସମାତ୍ର । ବିଶ୍ୱ ମାୟିକ, ସୁତରାଂ ମିଥ୍ୟା ।

ରାମାନୁଜଙ୍କ ବିଶିଷ୍ଟାଦ୍ୱୈତବାଦର ସଂକ୍ଷିପ୍ତ ମର୍ମ ଏହା—ଯେପରି ବୃକ୍ଷ ଏକ ହେଲେ ମଧ୍ୟ କାଣ୍ଡ, ଶାଖା, ପତ୍ର, ପୁଷ୍ପ, ଫଳ ଆଦି ନାନା ଭେଦ ତା'ର ଦେଖାଯାଏ ଓ ତାହା ସବୁ ବୃକ୍ଷାତିରିକ୍ତ ନୁହେଁ, ସେପରି ବ୍ରହ୍ମ ଓ ଜଗତ୍ ଭିନ୍ନ ହେଲେ ମଧ୍ୟ ଜଗତ୍ ବ୍ରହ୍ମଠାରୁ ଭିନ୍ନ ନୁହେଁ । ସେହି ବ୍ରହ୍ମ ସେବ୍ୟ ଓ ଜୀବସକଳ ତାଙ୍କର ସେବକ । ଏହିପରି ରାମାନୁଜ ଓ ମଧ୍ୱାଚାର୍ଯ୍ୟ ନିଜ ମତ ପ୍ରତିପାଦନ କରିଛନ୍ତି । ମଧ୍ୱ ଓ ରାମାନୁଜାଚାର୍ଯ୍ୟଙ୍କ ମତବାଦର ବିସ୍ତୃତ ବିବରଣ ଏପରି କରାଯାଇପାରେ— ରାମାନୁଜ ବିଶିଷ୍ଟାଦ୍ୱୈତବାଦୀ ଓ ପଦାର୍ଥତ୍ରୟବାଦୀ । ତାଙ୍କ ମତରେ ଚିତ୍, ଜଡ଼ ଓ ଈଶ୍ୱର—ଏହି ତିନି ତତ୍ତ୍ୱପ୍ରଧାନ । ଚିତ୍ = ଜୀବ, ଜଡ଼—ପରିଦୃଶ୍ୟମାନ ଜଗତ୍ ଓ ଈଶ୍ୱର = ପରମାତ୍ମା, ହରି । ଜୀବ ଭୋକ୍ତା, ଦୃଶ୍ୟଜଗତ୍ ତା'ର ଭୋଗ୍ୟ ଏବଂ ଈଶ୍ୱର ସେହି ସମୁଦାୟର ନିୟନ୍ତା ।

ଦୃଶ୍ୟ ଜଗତ୍ ତିନିଭାଗରେ ବିଭକ୍ତ— ଭୋଗ୍ୟ, ଭୋଗର ଉପକରଣ ଓ ଭୋଗର ଆୟତନ । ଈଶ୍ୱର ଏହି ତ୍ରୟାତ୍ମକ ଜଗତର କର୍ତ୍ତା ଓ ଉପାଦାନ । ଗୌତମ ପ୍ରଭୃତି

ନ୍ୟାୟଶାସ୍ତ୍ରପ୍ରବର୍ତ୍ତକ ଋଷିମାନେ ନିତ୍ୟପରମାଣୁ ପ୍ରଭୃତିକୁ ବିଶ୍ୱର ଉପାଦାନ କାରଣ ବୋଲି ସ୍ୱୀକାର କରିଛନ୍ତି; କିନ୍ତୁ ରାମାନୁଜ ସେଥିରୁ ଭିନ୍ନମତ ପୋଷଣ କରନ୍ତି । ତାଙ୍କ ମତରେ ଭଗବାନ୍ ହରି ନିଜେ ନିଜ ସୃଷ୍ଟିର ଉପାଦାନ କାରଣ, ଓ ପୁରାଣାଦି ଶାସ୍ତ୍ରରେ 'ଭଗବାନ୍', 'ପୁରୁଷୋତ୍ତମ', 'ବାସୁଦେବ' ଇତ୍ୟାଦି ନାମରେ ସେ ଅଭିହିତ ହୋଇଅଛନ୍ତି । ସେହି ହରି ପରମ କାରୁଣିକ ଓ ଭକ୍ତବତ୍ସଳ । ଯେ ସକଳ ଜୀବ ସେହି ହରିଙ୍କର ଉପାସନା କରନ୍ତି, ସେ ସେମାନଙ୍କୁ ନିଜ ଉପାସନାସୀମା ଅନୁସାରେ ଫଳପ୍ରଦାନ କରନ୍ତି; ଭକ୍ତବତ୍ସଳ ହରି ଲୀଳା-ବିଶେଷ ଗ୍ରହଣ କରି ଅର୍ଚ୍ଚା, ବିଭବ, ବ୍ୟୂହ, ସୂକ୍ଷ୍ମ ଓ ଅନ୍ତର୍ଯାମୀ ଆଦି ନାନା ଭେଦରେ ପ୍ରତିପନ୍ନ ହୁଅନ୍ତି । ତତ୍ପରେ ଭକ୍ତଗଣ ସୋପାନାରୋହଣ ସଦୃଶ କ୍ରମଶଃ ପୂର୍ବ ପୂର୍ବ ମୂର୍ତ୍ତିର ଉପାସନା ପରେ ପର ପର ମୂର୍ତ୍ତିର ଅନୁଗ୍ରହ ଲାଭ କରି ଓ ଚରମ ସୋପାନରେ ପ୍ରବେଶ କରି କୃତାର୍ଥତା ଲାଭ କରନ୍ତି । ଉପାସକମାନେ ପୂର୍ବ ପୂର୍ବ ମୂର୍ତ୍ତିର ଉପାସନା ବଳରେ ବାସୁଦେବପ୍ରାପ୍ତିରୂପ ମୋକ୍ଷର ପରିପନ୍ଥୀରୂପଦୁରିତନିଚୟ କ୍ଷୟ କରି ଉତ୍ତରୋତ୍ତର ଉପାସନାର ଅଧିକାରୀ ହୁଅନ୍ତି ।

ଅର୍ଚ୍ଚା ଆଦିର ଅର୍ଥ—

ଅର୍ଚ୍ଚା = ପ୍ରତିମାଦି; ବିଭବ = ଅବତାର; ବ୍ୟୂହ = ସଙ୍କର୍ଷଣ, ବାସୁଦେବ, ପ୍ରଦ୍ୟୁମ୍ନ; ଅନିରୁଦ୍ଧ—ଏହି ଚାରି ରୂପ । ବାସୁଦେବ ସକଳ ଷଡ଼୍ଗୁଣବିଶିଷ୍ଟ, ସେହି କେବଳ ବେଦାନ୍ତାଦି ଶାସ୍ତ୍ରରେ ବ୍ରହ୍ମ ଆଖ୍ୟାରେ ପ୍ରଖ୍ୟାତ ।

ସୂକ୍ଷ୍ମ ଅନ୍ତର୍ଯାମୀ ମୂର୍ତ୍ତି ଜୀବର ହୃଦୟସ୍ଥ ଓ ଜୀବର ପ୍ରେରକରୂପେ କାର୍ଯ୍ୟ କରେ । ରାମାନୁଜଙ୍କ ମତରେ ଉପାସନା ପାଞ୍ଚପ୍ରକାର—ଅଭିଗମନ, ଉପାଦାନ, ଇଜ୍ୟା, ସ୍ୱାଧ୍ୟାୟ ଓ ଯୋଗ । ଅଭିଗମନର ଅର୍ଥ-ଭଗବତ୍ ମନ୍ଦିରର ମାର୍ଜନ ଓ ଲେପନାଦି । ଉପାଦାନ—ଗନ୍ଧ, ପୁଷ୍ପ, ଧୂପ, ଦୀପାଦି ଦାନ । ଇଜ୍ୟାଶବ୍ଦର ଅର୍ଥ ପୂଜା । ସ୍ୱାଧ୍ୟାୟ—ମନ୍ତ୍ର, ଜପ, ନାମଜପ, ସ୍ତୋତ୍ର-ପାଠ, ନାମସଂକୀର୍ତ୍ତନାଦି ଓ ଭଗବତ୍ତତ୍ତ୍ୱ-ପ୍ରକାଶକ ଶାସ୍ତ୍ରର ଅଭ୍ୟାସ । ଯୋଗ ଏକାଗ୍ରଚିତ୍ତରେ ଭଗବଦନୁସନ୍ଧାନ । ଏହି ପଞ୍ଚବିଧ ଉପାସନାବଳରେ ଭକ୍ତିନାମକ ଜ୍ଞାନ ଆବିର୍ଭୂତ ହୁଏ ଏବଂ ଚରମ ଅବସ୍ଥାରେ, ଅହଙ୍କାରାଦି ବିଲୁପ୍ତ ହେବା ପରେ ଭକ୍ତବତ୍ସଳ ଭଗବାନ୍ ନିଜ ଭକ୍ତକୁ ନିବୃତ୍ତିରହିତ ସ୍ୱୀୟ ପରମାନନ୍ଦ-ଧାମ ପ୍ରଦାନ କରନ୍ତି । ଏହାହିଁ ମତାନ୍ତରରେ ମୋକ୍ଷ । ଧ୍ୟାନାଦିସହକୃତ ଭକ୍ତିଦ୍ୱାରା ହିଁ ଭଗବତ୍ ସାକ୍ଷାତ୍କାର ଲାଭ କରାଯାଏ । ଏତଦ୍ଭିନ୍ନ ଅନ୍ୟ ଉପାୟରେ ଏହା ଅସମ୍ଭବ । କେବଳ "ତତ୍ତ୍ୱମସି" ପ୍ରଭୃତି ବାକ୍ୟଶ୍ରବଣଦ୍ୱାରା ଭଗବତ୍ ସାକ୍ଷାତ୍କାର ହୋଇ ପାରେ ନାହିଁ । ପୁନଶ୍ଚ ରାମାନୁଜଙ୍କ ମତରେ ଏକମାତ୍ର ଭକ୍ତି ଭଗବତ୍-ପ୍ରାପ୍ତିର ଉପାୟ । ଭକ୍ତି ଜ୍ଞାନବିଶେଷ ଓ ଧ୍ୟେୟେତର ବିଷୟପ୍ରତି ବିତୃଷ୍ଣା ତା'ର ସ୍ୱରୂପ । ଭଗବାନ୍ ବ୍ୟତୀତ ଅନ୍ୟ ସମସ୍ତ ଯେତେବେଳେ ହେୟରୂପେ ପ୍ରତୀତ ହୁଏ, ସେତେବେଳେ

ଅନନ୍ୟପରା ବା ଅଚଳା ଭକ୍ତି ବିକଶିତ ହୁଏ ଓ ସେହି ଭକ୍ତି ହିଁ ଭଗବତ୍‌ପ୍ରାପ୍ତିର ହେତୁ । ବୈରାଗ୍ୟ ବ୍ୟତୀତ ସେପରି ଭକ୍ତିଲାଭ କରିବା ଆଶା ବୃଥା । ବୈରାଗ୍ୟ ସତ୍ତ୍ୱଶୁଦ୍ଧି ବ୍ୟତିରେକେ ଜାଗ୍ରତ ହୁଏ ନାହିଁ । ସତ୍ତ୍ୱଶୁଦ୍ଧି ଆହାର-ବିହାରାଦିର ଶୁଦ୍ଧତା ନେଇ କ୍ରମଶଃ ଉନ୍ନତିଲାଭ କରେ । ଆଚାର୍ଯ୍ୟ ରାମାନୁଜ ବାଦରାୟଣ-କୃତ ବ୍ରହ୍ମସୂତ୍ରର ଟୀକାରୂପ ସ୍ୱକୃତ ଶ୍ରୀଭାଷ୍ୟରେ ଏହି ଅର୍ଥ ପ୍ରକାଶ କରିଛନ୍ତି ।

ମଧ୍ୱାଚାର୍ଯ୍ୟଙ୍କ ମତ ମଧ୍ୟ ପ୍ରାୟ ଏହିପରି । ଜୀବ, ଅଣୁ ଓ ପରମାଣୁ ଆଦି ସକଳ ଭଗବାନଙ୍କର ଦାସ; ବେଦ ନିତ୍ୟ ଓ ଅପୌରୁଷେୟ; ପଞ୍ଚରାତ୍ରନାମକ ଶାସ୍ତ୍ର ଜୀବର ଆଶ୍ରୟ; ପ୍ରପଞ୍ଚଭେଦ (ଜଗତ୍) ସତ୍ୟ—ଇତ୍ୟାଦି କେତେକ ବିଷୟରେ ମଧ୍ୟ ରାମାନୁଜଙ୍କ ସହିତ ଏକମତ । ପରନ୍ତୁ ତତ୍ତ୍ୱବିଭାଗ ବ୍ୟବସ୍ଥା ନେଇ ଭିନ୍ନ ମତ ସ୍ୱୀକାର କରନ୍ତି । ମଧ୍ୱ ସମ୍ପୂର୍ଣ୍ଣ ଦ୍ୱୈତବାଦୀ; ତାଙ୍କ ମତରେ ତତ୍ତ୍ୱ ଦ୍ୱିବିଧ—ସ୍ୱତନ୍ତ୍ର ଓ ଅସ୍ୱତନ୍ତ୍ର । ଅଶେଷ ସଦ୍‌-ଗୁଣାଧାର ଭଗବାନ୍ ବିଷ୍ଣୁ ସ୍ୱତନ୍ତ୍ରତତ୍ତ୍ୱ । ଜୀବ ଓ ଜଡ଼ଜଗତ୍ ଅସ୍ୱତନ୍ତ୍ରତତ୍ତ୍ୱ । ଜୀବ ଭ୍ରମବଶତଃ ଭଗବଦ୍ଦାସ୍ୟ ତ୍ୟାଗ କରି ଭଗବତ୍‌ସାମ୍ୟ ବା "ଅହଂବ୍ରହ୍ମାସ୍ମି" ଉପାସନାରେ ନିବିଷ୍ଟ ହେଲେ ଅଧଃପତିତ ହୁଏ । ସେହିହେତୁରୁ ଅସ୍ୱତନ୍ତ୍ର ଜୀବଜଗତର ଭଗବଦ୍ଦାସ୍ୟ ହିଁ ପରମ ଅବଲମ୍ବନୀୟ । ପରମସେବ୍ୟ ଭଗବାନଙ୍କର ସେବା ବ୍ୟତୀତ ଜୀବର ଅନ୍ୟ କୌଣସି କର୍ତ୍ତବ୍ୟ ନାହିଁ । ମଧ୍ୱଙ୍କ ମତରେ ସେବା ପ୍ରଧାନତଃ ତ୍ରିବିଧ—ଅଙ୍କନ, ନାମ-କରଣ ଓ ଭଜନ । ସର୍ବଦା ଭଗବାନଙ୍କଠାରେ ଶରଣ ଓ ତନ୍ମୟ ହେବା ନିମନ୍ତେ ଏହି ଭକ୍ତମାନେ ନିଜ ଶରୀରରେ ଗଦାଚକ୍ରାଦି ନାରାୟଣାୟୁଧର ଚିହ୍ନ ଧାରଣ କରନ୍ତି । ସର୍ବଦା ଭଗବାନ୍ ବିଷ୍ଣୁଙ୍କର ନାମସ୍ମରଣ କରିବା ଉଦ୍ଦେଶ୍ୟରେ ସେମାନେ ନିଜ ପୁତ୍ରାଦିର ନାମ କେଶବ, କୃଷ୍ଣ, ରାମ ପ୍ରଭୃତି ରଖନ୍ତି । ଏହି ସକଳ ବ୍ୟାପାର ସେମାନଙ୍କ ମତରେ ସେବା ବୋଲି ଗଣ୍ୟ । ଭଜନ ଦଶପ୍ରକାର—ଦୟା, ଭଗବତ୍ ସ୍ପୃହା ଓ ଶ୍ରଦ୍ଧା—୩ ପ୍ରକାର ମାନସିକ ଭଜନ; ସତ୍ୟବାକ୍ୟ, ହିତବାକ୍ୟ, ପ୍ରିୟବାକ୍ୟ ଓ ସ୍ୱାଧ୍ୟାୟ—ଏହି ଚାରି ବାଚିକ; ଦାନ, ପରି ପରିତ୍ରାଣ ଓ ପୂଜା—୩ କାୟିକ ଭଜନ ।

ପରମସେବ୍ୟ ସ୍ୱତନ୍ତ୍ରତତ୍ତ୍ୱ ଭଗବାନ୍‌ଙ୍କର ସେବା-ଶୁଶ୍ରୂଷାଲାଭ କେବଳ ଅସ୍ୱତନ୍ତ୍ର-ସେବକ ଜୀବର ପରମ ପୁରୁଷାର୍ଥ, କିନ୍ତୁ ଏହା ଭଗବାନଙ୍କର ଉତ୍କୃଷ୍ଟ ଗୁଣଜ୍ଞାନ ବ୍ୟତୀତ ସମ୍ଭବ ନୁହେଁ । ତତ୍ତ୍ୱମସି-ଆଦି ବାକ୍ୟଶ୍ରବଣରେ ସେପରି ଜ୍ଞାନ ଅସମ୍ଭବ । ଅଙ୍କନ, ନାମ-କରଣ ଓ ଭଜନଦ୍ୱାରା କେବଳ ତାହା ଲବ୍‌ଧ ହୋଇ ସ୍ଥିରତର ହୁଏ । ସାଲୋକ୍ୟ, ସାରୂପ୍ୟ ଆଦି ମୁକ୍ତି କେବଳ ପରମାର୍ଥ । ମଧ୍ୱାଚାର୍ଯ୍ୟ ଏହି ଭାବ ହୃଦୟସ୍ଥ କରି ବ୍ରହ୍ମସୂତ୍ରର ଭାଷ୍ୟ ରଚନା କରିଅଛନ୍ତି ।

ପ୍ରସଙ୍ଗକ୍ରମେ ବଲ୍ଲଭାଚାର୍ଯ୍ୟଙ୍କ ମତ ମଧ୍ୟ ନିମ୍ନମତେ ସଂକ୍ଷେପରେ ଉଲ୍ଲେଖ କରାଯାଉଛି— ଜୀବ, ଅଣୁ, ସେବ୍ୟ-ସେବକ, ପ୍ରପଞ୍ଚଭେଦ (ଜଗତ୍), ସତ୍ୟ—ଏହି ସକଳ ବିଷୟରେ ମଧ୍ୱଙ୍କ ସହିତ ବଲ୍ଲଭ ଏକମତ । ପ୍ରଭେଦ ଏହି ଯେ, ମାଧ୍ୱମତରେ ବୈକୁଣ୍ଠ-ପତି ବିଷ୍ଣୁ ମୁମୁକ୍ଷୁଜୀବର ସେବ୍ୟ, ଅଥବା ଗୋଲୋକାଧିପତି ଶ୍ରୀକୃଷ୍ଣ ମୁମୁକ୍ଷୁର ସେବ୍ୟ । ବିଶେଷତଃ ମାଧ୍ୱମତରେ ଅଙ୍କନାଦିଭେଦରେ ସେବା ବିବିଧ; କିନ୍ତୁ ବଲ୍ଲଭ କହନ୍ତି ଯେ, ସେବା ଦ୍ୱିବିଧ—ଫଳରୂପା ଓ ସାଧନରୂପା । ସର୍ବଦା କୃଷ୍ଣନାମ ଶ୍ରବଣରୂପ ମାନସୀ ସେବା ଫଳ-ରୂପା ଏବଂ ଦ୍ରବ୍ୟାର୍ପଣାଦି ଓ କାୟକ୍ଲିଷ୍ଟାଦ୍ୟ ଶାରୀରିକ ସେବା ସାଧନ-ରୂପା । ମଧ୍ୱ କହନ୍ତି ଯେ, ବୈକୁଣ୍ଠଲୋକପ୍ରାପ୍ତି ହିଁ ମୋକ୍ଷ, କିନ୍ତୁ ବଲ୍ଲଭଙ୍କ ମତରେ ବୃନ୍ଦାବନରେ ଭଗବଦନୁଗ୍ରହରୁ ଗୋପୀଭାବ ପ୍ରାପ୍ତ ହୋଇ ଅଖଣ୍ଡ ରାସରସୋତ୍ସବରେ ନିର୍ଭର ରସା-ବେଶରେ ପତିସ୍ୱରୂପ ଭଗବାନଙ୍କୁ ସେବା କରିବା ହିଁ ମୋକ୍ଷ । ବଲ୍ଲଭଙ୍କ ମତରେ ଜ୍ଞାନମାର୍ଗ ଓ ଭକ୍ତିମାର୍ଗ ନିକୃଷ୍ଟ, କେବଳ ପ୍ରୀତିମାର୍ଗ ମୋକ୍ଷପ୍ରାପ୍ତିର ସର୍ବୋତ୍କୃଷ୍ଟ ପନ୍ଥା ॥ ବଲ୍ଲଭ ସମ୍ପୂର୍ଣ୍ଣ ଦ୍ୱୈତବାଦୀ ହୋଇ ମଧ୍ୟ ଜୀବାତ୍ମା ଓ ପରମାତ୍ମାର ଶୁଦ୍ଧତା ଦର୍ଶନ କରିଅଛନ୍ତି । ଏହି ହେତୁରୁ ତାଙ୍କ ମତ ଶୁଦ୍ଧଦ୍ୱୈତ ନାମରେ ଖ୍ୟାତ । ଏତଦ୍‌ଭିନ୍ନ ଅନ୍ୟ ସବୁ ବିଷୟ ତାଙ୍କ ଦର୍ଶନରେ ଦ୍ରଷ୍ଟବ୍ୟ ।

ଶଙ୍କର ଦ୍ୱୈତବାଦୀଙ୍କ ବର୍ଣ୍ଣିତ ମୁକ୍ତିକୁ ସ୍ୱର୍ଗମଧ୍ୟରେ ଗଣନା କରିଛନ୍ତି । ବିଶିଷ୍ଟା-ଦ୍ୱୈତବାଦୀ ରାମାନୁଜ ଓ ଶୁଦ୍ଧଦ୍ୱୈତବାଦୀ ବଲ୍ଲଭ ପ୍ରଭୃତିଙ୍କର ମତକୁ ସେ ଅନୁମୋଦନ କରି ନାହାନ୍ତି । ଶଙ୍କରଙ୍କର ଅଭିପ୍ରାୟ ଏହି ଯେ, ଯେଉଁ ପର୍ଯ୍ୟନ୍ତ ଅଦ୍ୱୈତ ବ୍ରହ୍ମର ସାକ୍ଷାତ୍କାର ନ ହୋଇଛି, ସେ ପର୍ଯ୍ୟନ୍ତ ମୁକ୍ତି ଆଶା ନିରର୍ଥକ । ପୂର୍ବୋକ୍ତ ରୀତିରେ ଭଗବତ୍‌ସାରୂପ୍ୟ ଓ ଭଗବତ୍‌ସ୍ଥାନ ଲାଭ କଲେ ମଧ୍ୟ ସେହି ଅବସ୍ଥା ସ୍ଥାୟୀ ହୁଏ ନାହିଁ । ସବୁବେଳେ ସେବକର ସେବାପରାଧ-ଭୟ ଥାଏ ଓ ଯେଉଁ ଦିନ ହେହି ଦୋଷ ଘଟିବ, ସେହି ଦିନହିଁ ପୁନଶ୍ଚ ସଂସାରକୁ ଜୀବ ପ୍ରତ୍ୟାବୃତ୍ତ ହେବ । ଭଗବାନଙ୍କର ନିତ୍ୟପାର୍ଶ୍ୱଦ ଜୟ ବିଜୟ ତାହାର ଦୃଷ୍ଟାନ୍ତ । ଅତଏବ ସାଯୁଜ୍ୟ, ସାରୂପ୍ୟ, ସାଲୋକ୍ୟ—ଏହା ସବୁ ପରମ ମୁକ୍ତି ନୁହେଁ । ଏହା ସବୁ ଗୌଣ ବା ଆପେକ୍ଷିକ ମୁକ୍ତି । ମୋକ୍ଷର ଅନ୍ୟ ନାମ ଅମୃତ । ଯେଉଁମାନେ ସତ୍‌କର୍ମ-ପ୍ରଭାବରେ ଦୀର୍ଘକାଳ ସ୍ୱର୍ଗସୁଖ ଉପଭୋଗ କରନ୍ତି, ସେମାନଙ୍କୁ ମଧ୍ୟ ଶାସ୍ତ୍ରରେ ଅମୂର୍ତ୍ତ ବା ମୁକ୍ତପୁରୁଷ ବୋଲି କୁହାଯାଇଛି; କିନ୍ତୁ ପ୍ରକୃତରେ ସେମାନେ ମୁକ୍ତ ନୁହନ୍ତି । ମୋକ୍ଷ ଉତ୍କର୍ଷାପକର୍ଷଶୂନ୍ୟ, ଏକରୂପ ଓ ଏକରସ, ସୁତରାଂ ତାହା ଅଦ୍ୱୟ । ଅଦ୍ୱୟ ବ୍ୟତୀତ ସଦ୍ୱୟରେ ସଂସାରଭୟ ନିବାରିତ ହୁଏ ନାହିଁ, ଏ କଥା ଶ୍ରୁତି ଉଚ୍ଚୈଃସ୍ୱରରେ ଉଦ୍‌ଘୋଷିତ କରେ—

"ଦ୍ୱିତୀୟାଦ୍ ବୈ ଭୟମ୍ଭବତ" ।

ଶଙ୍କରଙ୍କ ଦର୍ଶନରେ ଏପରି ଅନେକ ବିଷୟ ବର୍ଣ୍ଣିତ ହୋଇଛି, ସେସବୁ ତାଙ୍କ ଦର୍ଶନରେ ଦ୍ରଷ୍ଟବ୍ୟ ।

ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ ଉପରେ ବ୍ରହ୍ମବାଦୀଗଣ ଦୋଷାରୋପ କରି ବ୍ୟାଖ୍ୟା କରନ୍ତି ଯେ, ଆଚାର୍ଯ୍ୟ ନିର୍ବିଶେଷାଦ୍ୱୈତବାଦ ରକ୍ଷା କରିବାକୁ ଯାଇ ମାୟାବାଦକୁ ସ୍ୱୀକାର କରିଛନ୍ତି; ସୃଷ୍ଟିତତ୍ତ୍ୱନିର୍ଣ୍ଣୟାବସରରେ ମାୟାକୁ ଉପାଦାନ କାରଣ ବୋଲି ଦର୍ଶାଇଛନ୍ତି । ଏହି ମତ ସ୍ୱୀକାର କରିବାଦ୍ୱାରା ବ୍ରହ୍ମର ଏକତ୍ୱ ଓ ଅଦ୍ୱିତୀୟତ୍ୱ ବାଧିତ ହେଉଛି । ବ୍ରହ୍ମ ସର୍ବଭେଦଲକ୍ଷଣଶୂନ୍ୟ, ଅଦ୍ୱିତୀୟ, ରସୈକଘନ, ଅବାଙ୍ମନସଗୋଚର, ଏକମାତ୍ର ଚିନ୍ମୟପରମାତ୍ମା; ସେହି କେବଳ ଅନନ୍ତ ବିଶ୍ୱର ଜନ୍ମ-ସ୍ଥିତି-ଲୟର ଏକମାତ୍ର କାରଣ । ଆତ୍ମାର ବ୍ରହ୍ମନାମର ଏହାହିଁ ସାର୍ଥକତା । ତତ୍ତ୍ୱଦ୍ୱୟ ସ୍ୱୀକାର କଲେ ଏକତତ୍ତ୍ୱ ଅନ୍ୟର ଆତ୍ମା ହୋଇ ପାରିବ ନାହିଁ । ଦୁଇ ମଧ୍ୟରୁ କୌଣସି ଏକ ବ୍ରହ୍ମନାମରେ ଆଖ୍ୟାତ ହେବାର ଯୋଗ୍ୟତା ରଖି ପାରିବ ନାହିଁ ।

ଆଚାର୍ଯ୍ୟ ଶଙ୍କର ଅଦ୍ୱୈତତତ୍ତ୍ୱର ସ୍ଥାପନା ଉଦ୍ଦେଶ୍ୟରେ ମାୟାବାଦର ଆଶ୍ରୟ ସ୍ୱୀକାର କରି କିପ୍ରକାର ବିଫଳକାମ ହୋଇ ଅଛନ୍ତି ଦେଖାଯାଉ । ପ୍ରଥମେ ସେ ଅବିଦ୍ୟାକୁ ଜଗତର କାରଣ ବୋଲି କହିବାକୁ ଯାଇ ବ୍ରହ୍ମର ନିଷ୍କ୍ରିୟତ୍ୱ ପ୍ରମାଣ କରିବାକୁ ଯିବାରୁ କାର୍ଯ୍ୟତଃ ତତ୍ତ୍ୱଦ୍ୱୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ପରମାତ୍ମାଙ୍କୁ ନିଷ୍କ୍ରିୟ ରଖିବା ନିମନ୍ତେ ସେ ଅବିଦ୍ୟାର ଆଶ୍ରୟ ଗ୍ରହଣ କରିଛନ୍ତି । ଅବିଦ୍ୟାକୁ ମଧ୍ୟ ଜଗତର କାରଣ କହିବାଦ୍ୱାରା ଆତ୍ମାର ଈଶ୍ୱରତ୍ୱ ଓ ବ୍ରହ୍ମର ପାରମାର୍ଥିକତା ନଷ୍ଟ ହେଉଅଛି ଓ ଆତ୍ମାର ମହିମା ମଧ୍ୟ ଉପେକ୍ଷିତ ହେଉଅଛି । ଆତ୍ମାର ଈଶ୍ୱରତ୍ୱ ଓ ବ୍ରହ୍ମତ୍ୱ ପ୍ରତିପାଦନ ଦ୍ୱାରା ଆତ୍ମା ଜଗତର ଜନ୍ମାଦିରୂପ କ୍ରିୟା ପ୍ରତି ହେତୁ ବୋଲି ଅଦ୍ୱୈତଦର୍ଶନର ମତ । ମାୟାବାଦର ଜନକାଦି ପ୍ରତି ହେତୁତ୍ୱ ସ୍ୱୀକାର କଲେ ବ୍ରହ୍ମର ପାରମାର୍ଥିକତା ନଷ୍ଟ ହେବ—ଏହା ସାଧାରଣଙ୍କ ବୋଧବିଷୟ । ଆତ୍ମାର ଅଦ୍ୱିତୀୟତ୍ୱ ଓ ବ୍ରହ୍ମତ୍ୱ ପ୍ରତିପାଦନ ଅଦ୍ୱୈତଦର୍ଶନର ମୂଳସିଦ୍ଧାନ୍ତ । ସୁତରାଂ ଆଚାର୍ଯ୍ୟଙ୍କର ଅଦ୍ୱୈତବାଦସ୍ଥାପନଚେଷ୍ଟାରେ ଆତ୍ମାକୁ ନିର୍ଗୁଣ କହି ଜଗତକୁ ଅବିଦ୍ୟାଜାତ କହିବାଦ୍ୱାରା ବ୍ରହ୍ମବାଦର ମୂଳମନ୍ତ୍ର ଉପେକ୍ଷିତ ହେଉଅଛି—ଏହା ସ୍ପଷ୍ଟ ଦେଖାଯାଏ ।

ପୁନଶ୍ଚ, ଦ୍ୱୈତବାଦୀ ଦାର୍ଶନିକମାନେ କହନ୍ତି ଏହି ଜଗତର ସୃଷ୍ଟି, ସ୍ଥିତି ଓ ଲୟ ଅନାଦି କାଳରୁ ଚଳି ଆସୁଅଛି । କେବେ ହେଲେ ଜାଗତିକ ଲୀଳା ଐକାନ୍ତିକ ଭାବରେ ନିରସ୍ତ ହୋଇଯିବ—ଏହା କୁହାଯାଇ ନ ପାରେ । ଆଚାର୍ଯ୍ୟଙ୍କ ମତରେ ଜଗତ୍ ଅବିଦ୍ୟାଜାତ ।

ଅବଶ୍ୟ ଅବିଦ୍ୟାର ପରମାର୍ଥିକତ୍ୱ ସେ ଅସ୍ୱୀକାର କରିଛନ୍ତି; କିନ୍ତୁ ଅବିଦ୍ୟାକୁ ଜଗନ୍ନାଥର ହେତୁ ବୋଲି କହିବା ଦ୍ୱାରା, ଏହା ବ୍ରହ୍ମ ଭିନ୍ନ ଦ୍ୱିତୀୟ କାରଣ ବୋଲି ଏକପ୍ରକାର ସ୍ୱୀକାର କରିଛନ୍ତି । ଅନନ୍ତ କାଳ ପର୍ଯ୍ୟନ୍ତ ଜଗତର ଲୀଳା ଗୃହୀତ ଏବଂ ଜଗତ୍ ଭୋଗମୟ ହେବା ହେତୁରୁ ଜୀବ ମଧ୍ୟ ଅନନ୍ତ କାଳ ରହିବ—ଏ କଥା ସେ ଅସ୍ୱୀକାର କରିପାରିବେ ନାହିଁ । ସୁତରାଂ ପରମାତ୍ମା ଓ ଜଗତର କାରଣ ଅବିଦ୍ୟା—ଏହି ଉଭୟ ପାରମାର୍ଥିକ ତତ୍ତ୍ୱ ବୋଲି ଶଙ୍କର ଏକପ୍ରକାର ସ୍ୱୀକାର କରୁଛନ୍ତି । ଏହି ହେତୁରୁ ତାଙ୍କର ଅଦ୍ୱୈତ ଅଙ୍ଗୀକାର ବାଧିତ ହେଉଅଛି । ଅବିଦ୍ୟାର ନାଶ ଅଛି; କିନ୍ତୁ ନାଶବିହୀନ ବ୍ରହ୍ମର ପାରମାର୍ଥିକ ଅଦ୍ୱିତୀୟତ୍ୱ ଭଙ୍ଗ ହୁଏ ନାହିଁ ବୋଲି କହିବା ମଧ୍ୟ ଠିକ୍ ନୁହେଁ, କାରଣ ଅବିଦ୍ୟା ଅନାଦି ଓ ବ୍ରହ୍ମ ବିଲକ୍ଷଣ ବୋଲି କହିବାଦ୍ୱାରା ଅବିଦ୍ୟାକୁ ବ୍ରହ୍ମଶକ୍ତିବିଶେଷ କହିବା ଭିନ୍ନ ଅନ୍ୟ ଉପାୟ ନାହିଁ । ଜଗତ୍ ଦର୍ଶନ ଭ୍ରାନ୍ତିସ୍ୱରୂପ ହେଲେ ମଧ୍ୟ ସେହି ଭ୍ରାନ୍ତିରଚନା ଗୋଟିଏ ଶକ୍ତି-ପ୍ରସୂତ ବୋଲି ଧରିଯିବ । ସୁତରାଂ ଅବିଦ୍ୟା ସଗୁଣ ବ୍ରହ୍ମଙ୍କର ଭେଦବିଶେଷ ବୋଲି ସ୍ୱୀକାର କଲେ ବ୍ରହ୍ମର ଅଦ୍ୱିତୀୟତ୍ୱ ବିଷୟରେ ଦୋଷ ରହିଯିବ । ଏହିପରି ଆଚାର୍ଯ୍ୟ ଶଙ୍କର ନିଜେ ଅଦ୍ୱୈତବାଦର ବ୍ୟାଖ୍ୟାନାବସରରେ ଏହି ସବୁ ନାନାପ୍ରକାର ଯୁକ୍ତି ଉତ୍ଥାପନ କରିଛନ୍ତି । ବିଶିଷ୍ଟାଦ୍ୱୈତବାଦ ସମ୍ବନ୍ଧରେ ମଧ୍ୟ ଶ୍ରୁତି ଓ ସ୍ମୃତିମାନଙ୍କରେ ବହୁ ଦୋଷ ଦେଖାଯାଏ । ରାମାନୁଜଙ୍କ ଦାର୍ଶନିକ ମତବାଦର ନାମ ବିଶିଷ୍ଟାଦ୍ୱୈତବାଦ । ଏଥିରେ ଚେତନ ଓ ଅଚେତନବିଶିଷ୍ଟ ବ୍ରହ୍ମର କଳ୍ପନା କରାଯାଇଛି । ଦ୍ୱୈତର ଅର୍ଥ ଭେଦ ଓ ଅଦ୍ୱୈତାର୍ଥ ତାହାର ବିପରୀତ ଅଭେଦ ବା ଏକତ୍ୱ ; ବାଦ = ସିଦ୍ଧାନ୍ତ । ଏହାର ସମ୍ମିଳିତାର୍ଥ ହେଉଛି—ଚେତନାଚେତନବିଗ୍ରହବିଶିଷ୍ଟ ବ୍ରହ୍ମର ଅଭେଦ ବା ଏକତ୍ୱ ନିରୂପକ ସିଦ୍ଧାନ୍ତ । କେହି କେହି ଏହାର ଅର୍ଥ କରନ୍ତି—ବ୍ରହ୍ମ ଦ୍ୱିବିଧ, ଏକ ସ୍ଥୂଳ ଚେତନାଚେତନବିଶିଷ୍ଟ; ଅପର ସୂକ୍ଷ୍ମ ଚେତନାଚେତନବିଶିଷ୍ଟ । ଏହି ଉଭୟବିଧ ବ୍ରହ୍ମର ଅଦ୍ୱୈତ ବା ଏକତ୍ୱ ପ୍ରତିପାଦନ ବିଶିଷ୍ଟାଦ୍ୱୈତବାଦର ଧ୍ୟେୟ । ପ୍ରଳୟକାଳୀନ ବ୍ରହ୍ମ ସୂକ୍ଷ୍ମ ଚେତନାଚେତନବିଶିଷ୍ଟ; କାରଣ, ପ୍ରଳୟ ସମୟରେ ଚେତନ ଓ ଅଚେତନ ସମସ୍ତ ହିଁ ବ୍ରହ୍ମରେ ବିଲୀନ ହୋଇଯାନ୍ତି । ପୁନଶ୍ଚ ସୃଷ୍ଟିକାଳୀନ ବ୍ରହ୍ମ ସ୍ଥୂଳଚେତନାଚେତନବିଶିଷ୍ଟ ; କାରଣ, ସେ ସମୟରେ ସୂକ୍ଷ୍ମଚେତନାଚେତନ ପଦାର୍ଥସମୂହ ଅଗ୍ନି-ସ୍ଫୁଲିଙ୍ଗ ତୁଲ୍ୟ ବ୍ରହ୍ମରୁ ବହିର୍ଗତ ହୋଇ ସ୍ଥୂଳଭାବରେ ପୁନଶ୍ଚ ତହିଁରେ ଅବସ୍ଥାନ କରନ୍ତି । ଚେତନାଚେତନ ପଦାର୍ଥନିଚୟ ହେଉଛି ଶରୀର ; ବ୍ରହ୍ମ ହେଉଛନ୍ତି ସେହି ଶରୀରର ଅଧିଷ୍ଠାନ ଆତ୍ମା । ଶରୀର କଦାଚ ଶରୀରୀ ଆତ୍ମାଠାରୁ ଅତିରିକ୍ତ ହୋଇ ରହିପାରେ ନାହିଁ ଏବଂ ଶରୀର-ଶରୀରୀର ଏକତ୍ୱ ବ୍ୟବହାର ହିଁ ଲୋକପ୍ରସିଦ୍ଧ । ସୁତରାଂ ଚେତନାଚେତନବିଶିଷ୍ଟ ବ୍ରହ୍ମର ଏକତ୍ୱ ନିରୂପଣ କଦାଚ ଅଶୋଭନ ହୋଇପାରେ ନାହିଁ । ଯେପରି ବୃକ୍ଷ ସ୍ୱରୂପତଃ ଏକ ହେଲେ ମଧ୍ୟ ତାହାର ଶାଖା-ପଲ୍ଲବାଦି ଅଂଶଦ୍ୱାରା ଅନେକ ଓ ଏହି ସମସ୍ତ ଅଂଶ ନେଇ ବୃକ୍ଷର ଏକତ୍ୱ

ବ୍ୟବହୃତ ହୁଏ, ଯେଉଁପରି ଜୀବ, ଜଗତ୍ ଓ ଈଶ୍ୱରଭାବରେ ପୃଥକ୍ ହେଲେ ମଧ୍ଯ ଜୀବଠାରେ ପରମ ପୁରୁଷ ନାରାୟଣଙ୍କ ସହ ଏକତ୍ୱ ସିଦ୍ଧ ହୋଇଥାଏ । ଏହି ତତ୍ତ୍ୱ ପ୍ରତିପାଦନ କରିବାହେତୁ ରାମାନୁଜଙ୍କ ମତ ବିଶିଷ୍ଟାଦ୍ୱୈତବାଦ ନାମରେ ପ୍ରସିଦ୍ଧି ଲାଭ କରିଅଛି; କିନ୍ତୁ ଆଚାର୍ଯ୍ୟ ରାମାନୁଜଙ୍କ ଭାଷ୍ୟରେ ପୂର୍ବୋକ୍ତ ତତ୍ତ୍ୱନିରୂପଣ ଦୋଷଗ୍ରସ୍ତ ଓ ତାଙ୍କର ଏକଦେଶଦର୍ଶିତା ସ୍ପଷ୍ଟ ପ୍ରତୀତ ହୁଏ । ପରମାତ୍ମତତ୍ତ୍ୱ ପ୍ରତିଷ୍ଠା କରିବାକୁ ଯାଇ ସେ କାର୍ଯ୍ୟତଃ ଈଶ୍ୱରତତ୍ତ୍ୱ ପ୍ରତିଷ୍ଠା କରି ଅଛନ୍ତି ଓ ତାଙ୍କର ବିଚାରପଦ୍ଧତିଦ୍ୱାରା ପରମାତ୍ମତତ୍ତ୍ୱ-ନିରୂପଣ ବହୁ ନିମ୍ନ ସ୍ତରକୁ ଗତ କରିଛି । ତାଙ୍କର ଯୁକ୍ତିର ପ୍ରଧାନ ଦୋଷ ଏହି ଯେ, ସେ ବ୍ରହ୍ମତତ୍ତ୍ୱକୁ ଗୋଟିଏ ଯୌଗିକ-ତତ୍ତ୍ୱ ବା ତତ୍ତ୍ୱତ୍ରୟସ୍ୱରୂପରେ କଳ୍ପନା କରିଅଛନ୍ତି । ଏକ ତତ୍ତ୍ୱରୁ ସର୍ବ ତତ୍ତ୍ୱର ଉଦ୍ଭବ ଓ ସେହି ଏକ ତତ୍ତ୍ୱରେ ସର୍ବତତ୍ତ୍ୱ ଅନ୍ତର୍ଭୁକ୍ତ; ଫଳତଃ ଏହି ରୂପ ଐକାନ୍ତିକ ତତ୍ତ୍ୱୈକତ୍ୱରକ୍ଷା ହିଁ ଅଦ୍ୱିତୀୟ ପରମାତ୍ମତତ୍ତ୍ୱର ପ୍ରଧାନ ଲକ୍ଷଣ । ଏହା ହିଁ ପରମାତ୍ମାଙ୍କର ବ୍ରହ୍ମତ୍ୱ; କିନ୍ତୁ ରାମାନୁଜଙ୍କ ବିଚାରପଦ୍ଧତିରେ ଏହି ପ୍ରଧାନ ବିଷୟ ଉପେକ୍ଷିତ ହୋଇଅଛି । ବହୁବିଧ ପଶୁପକ୍ଷୀ ଓ ବୃକ୍ଷଲତାଦିପୂର୍ଣ୍ଣ ସ୍ଥାନବିଶେଷର ନାମ ଯେପରି ଅରଣ୍ୟ, ସେହିପରି ଚିତ୍-ଅଚିତ୍-ସମନ୍ୱିତ ଈଶ୍ୱର ହିଁ ବ୍ରହ୍ମ ବୋଲି ଅଦ୍ୱୈତ ତତ୍ତ୍ୱଜ୍ଞାନର ବ୍ୟାଖ୍ୟା କଲେ, ପ୍ରକୃତରେ ବ୍ରହ୍ମତତ୍ତ୍ୱ ନିରୂପଣ ନିରର୍ଥକ ହେବ; କାରଣ, ଆତ୍ମା ଏକ, ବାହ୍ୟାନ୍ତରଶୂନ୍ୟ ଓ ଶୁଦ୍ଧ ଚିତ୍‌ସ୍ୱରୂପ । ଚିତ୍‌ସ୍ୱରୂପ ପରମାତ୍ମା ବା ବ୍ରହ୍ମ ସୃଷ୍ଟିର ଉପାଦାନ ଓ ନିମିତ୍ତ କାରଣ ଏବଂ ଜୀବଜଗତର ମଧ୍ଯ ମୂଳାଧାର । ଏହିପରି ସର୍ବଭେଦ-ଲକ୍ଷଣାଶୂନ୍ୟ ଅଦ୍ୱୈତ ମତ ପ୍ରତିଷ୍ଠା ଶ୍ରୁତିର ଏକମାତ୍ର ଉଦ୍ଦେଶ୍ୟ—ଏହା ନିଃସଂଶୟରେ କୁହାଯାଇ ପାରେ । "ଅୟମାତ୍ମା ବ୍ରହ୍ମ", "ଆତ୍ମୈବେଦଂ ସର୍ବମ୍"—ଏହିପରି ଅଭେଦ ଜ୍ଞାନ ହିଁ ଅଦ୍ୱୈତ ତତ୍ତ୍ୱର ପ୍ରଧାନ ପ୍ରତିପାଦ୍ୟ ବିଷୟ । ଚିତ୍, ଅଚିତ୍ ଓ ପରମେଶ୍ୱର—ଏପରି ତତ୍ତ୍ୱ-ତ୍ରୟ ସ୍ୱୀକାର କଲେ ପ୍ରତ୍ୟେକଟି ନିଶ୍ଚୟ ସସୀମରେ ପରିଣତ ହେବ । "ପ୍ରଜ୍ଞାନଂ ବ୍ରହ୍ମ"—ଏହି ଶ୍ରୁତିବାକ୍ୟ ଅନୁସାରେ ପ୍ରଜ୍ଞାନରୂପକ ବ୍ରହ୍ମ ଭିନ୍ନ ଆଉ କିଛି ତତ୍ତ୍ୱ ନାହିଁ, ତାହା ଆଚାର୍ଯ୍ୟଙ୍କ ମତରେ ଅବଶ୍ୟ ପ୍ରଜ୍ଞାନଘନ, ସୁତରାଂ ପ୍ରଜ୍ଞାନାତୀତ ଅନ୍ୟ କିଛି ନାହିଁ । ପ୍ରଜ୍ଞାନାତୀତର ଅର୍ଥ ଅପ୍ରଜ୍ଞ, ଅର୍ଥାତ୍ ଅଚିତ୍ । ତେବେ ପ୍ରଜ୍ଞାନ ହିଁ ଯାହାର ଧର୍ମ ଓ ସ୍ୱରୂପ, ତାହାର ଅଚିତ୍ କିପରି ଧର୍ମ ହେବ ? କିନ୍ତୁ ପ୍ରଜ୍ଞାନ ଧର୍ମ ଓ ଧର୍ମୀ ହେଲେ ବ୍ରହ୍ମର ଏକତ୍ୱରେ କୌଣସି ବାଧା ରହେ ନାହିଁ । ପ୍ରଜ୍ଞାନର ମଧ୍ଯ ଧର୍ମ ଓ ଧର୍ମିତ୍ୱ ସ୍ୱଗତଭେଦ ବୋଲି କୁହା-ଯାଇ ନ ପାରେ । ବସ୍ତୁତଃ ଏପରି ପ୍ରଜ୍ଞାନକୁ ଆତ୍ମା ବୋଲି ଆତ୍ମାର ବ୍ରହ୍ମତ୍ୱ ଶ୍ରୁତି ଉଦ୍-ଘୋଷଣା କରେ; ବ୍ୟକ୍ତାବସ୍ଥାରେ ଧର୍ମଧର୍ମୀଭାବରେ ପ୍ରକାଶ ପାଇଲେ ମଧ୍ଯ ପରମାର୍ଥତଃ ଏହା ଏକତ୍ୱର ହିଁ ଲକ୍ଷଣଭେଦ । ତତ୍ତ୍ୱବୋଧ-ଅଭିଜ୍ଞତା ଯାହାର ଅଛି, ସେ ସହଜରେ ବୁଝିପାରେ ଯେ ଆତ୍ମତତ୍ତ୍ୱର ବୋଧ ନିମନ୍ତେ ଅନ୍ୟ ତତ୍ତ୍ୱର ଅପେକ୍ଷା ରହେ ନାହିଁ । ଆତ୍ମାର ଶରୀର ଅଚିତ୍ ବା ଈଶ୍ୱର ଚିତ୍ ଓ ଅଚିତ୍—ଏପରି ସମ୍ବନ୍ଧ ସ୍ଥାପନଦ୍ୱାରା ଚିତ୍ ଓ ଅଚିତ୍

ସହିତ ଈଶ୍ୱରଙ୍କର ଆତ୍ମୀୟତ୍ୱ ବୁଦ୍ଧି ପ୍ରତିଷ୍ଠିତ ହୋଇପାରେ; କିନ୍ତୁ ଆତ୍ମବୋଧ ନିମନ୍ତେ ଅନ୍ୟ ତତ୍ତ୍ୱର ଅପେକ୍ଷା ରହେ ନାହିଁ ।

ଆଚାର୍ଯ୍ୟ ରାମାନୁଜ ତତ୍ତ୍ୱତ୍ରୟ କଳ୍ପନା କରିବାକୁ ଯାଇ ଆଚାର୍ଯ୍ୟ ଶଙ୍କରଙ୍କ ଅପେକ୍ଷା ସାଂଖ୍ୟବାଦର ହିଁ ଆଶ୍ରୟ ନେଇଛନ୍ତି । ସାଂଖ୍ୟମତରୁ କେବଳ ପାରମାର୍ଥିକ ଚିତ୍ ଏବଂ ଅଚିତ୍ ବିଭାଗ ଓ ଆତ୍ମାର ବହୁତ୍ୱ ଗ୍ରହଣ କରିଅଛନ୍ତି ଏବଂ ତତ୍ ସହ ଈଶ୍ୱର ସଂଯୁକ୍ତ କରି ବ୍ରହ୍ମବାଦ ପ୍ରତିଷ୍ଠାର ପ୍ରୟାସ କରିଅଛନ୍ତି । ପ୍ରକୃତରେ ସାଂଖ୍ୟବାଦ ଅବଲମ୍ବନ କରି ବ୍ରହ୍ମବାଦ ପ୍ରତିଷ୍ଠା କରାଯାଇ ନ ପାରେ । ଏହା ବେଦାନ୍ତ ଦର୍ଶନର ସିଦ୍ଧାନ୍ତ । ବସ୍ତୁତଃ ଆଚାର୍ଯ୍ୟ ରାମାନୁଜ ତତ୍ତ୍ୱତ୍ରୟ ସ୍ୱୀକାର କରି ଆନନ୍ଦମୟ, ପ୍ରଜ୍ଞାନଘନ, ଅଖଣ୍ଡ, ସର୍ବେଶ୍ୱର, ସର୍ବଜ୍ଞ ଓ ସମସ୍ତଙ୍କର ଯୋନିସ୍ୱରୂପ ଆତ୍ମାର ଯେ ତୃତୀୟ ପାଦ—ଏହାକୁ ଚରମ ତତ୍ତ୍ୱ ବୋଲି ଗ୍ରହଣ କରିଅଛନ୍ତି । ଜ୍ଞାନ, ଜ୍ଞାତା, ଜ୍ଞେୟ ଓ ସତ୍, ଚିତ୍, ଆନନ୍ଦ ବା ଚିଦଚିଦୀଶ୍ୱର—ଏହି ରୂପ ତ୍ରୟାଧାର ହୋଇ ଅବ୍ୟକ୍ତ-ତତ୍ତ୍ୱ ବ୍ୟକ୍ତ ଈଶ୍ୱରରୂପରେ ପ୍ରକାଶ ପାଆନ୍ତି; ବ୍ୟକ୍ତାବ୍ୟକ୍ତ ରୂପ ଆତ୍ମାର ସେହି ପାଦକୁ ହିଁ ଆଚାର୍ଯ୍ୟ ବ୍ରହ୍ମ କହି ଅଛନ୍ତି । ବ୍ରହ୍ମର ତତ୍ତ୍ୱତ୍ରୟ ସ୍ୱୀକାର କରିବା-ଦ୍ୱାରା ଆତ୍ମାର ସେହି ଅନିର୍ବଚନୀୟ ପାଦକୁ ଉପେକ୍ଷା କରିଅଛନ୍ତି । ଆଚାର୍ଯ୍ୟଙ୍କର ଏହି ରୂପ ସବିଶେଷ ବ୍ରହ୍ମବାଦ ପ୍ରତିଷ୍ଠାର ଉଦ୍ଦେଶ୍ୟ ହେଉଛି ଦ୍ୱୈତାତ୍ମକ ଭକ୍ତିବାଦ ପ୍ରତିଷ୍ଠା କରିବା । ସେ ପରମାତ୍ମତତ୍ତ୍ୱ ଦର୍ଶନ ନ କରି ସେହି ଅବ୍ୟକ୍ତ ଈଶ୍ୱରତତ୍ତ୍ୱର କେବଳ ଦର୍ଶନ କରି-ଅଛନ୍ତି । ଅତଏବ ଆଚାର୍ଯ୍ୟ ଶଙ୍କରଙ୍କ ପରି ଏକଦେଶଦର୍ଶୀ ହୋଇଅଛନ୍ତି । ତାଙ୍କ ଭାଷ୍ୟରେ କେବଳ ଶଙ୍କରଙ୍କ ଅଦ୍ୱୈତବାଦର ନିରସନ ନିମନ୍ତେ ଅତି ବ୍ୟସ୍ତତା ପ୍ରକାଶିତ ହେଲା ଭଳି ଦେଖାଯାଏ; କିନ୍ତୁ ସ୍ୱମତବାଦ ପ୍ରତିଷ୍ଠା ନିମନ୍ତେ କେତେକ ଅପ୍ରଧାନ ଉପନିଷଦ୍ ଓ ପୁରାଣର ପ୍ରବଚନ ଉଦ୍ଧାର ଓ ସଗୁଣ ଈଶ୍ୱରବର୍ଣ୍ଣନାତ୍ମକ ଶ୍ରୁତିର ସାହାଯ୍ୟ ଗ୍ରହଣ ବ୍ୟତୀତ କୌଣସି ସାର୍ବଭୌକ ଯୁକ୍ତିର ଅବତାରଣା କରିପାରି ନାହାନ୍ତି । ବର୍ତ୍ତମାନ ଅଚିତ୍ ଧର୍ମର ବିଷୟ ଦେଖାଯାଉ । ଚିଦ୍ଘନ ପରମାତ୍ମାଙ୍କର ଅଚିତ୍ ଅଙ୍ଗ କିପରି ସମ୍ଭବ ହେବ; କଳ୍ପନା ବଳରେ ଅଚିତ୍-ଚିଦ୍ଘନ ପୁରୁଷଙ୍କର ଶରୀର କହିଲେ ତତ୍ତ୍ୱୈକତ୍ୱ କିପରି ପ୍ରତିଷ୍ଠିତ ହେବ ? ବିଶେଷତଃ ପାରମାର୍ଥିକ ଅଚିତ୍ ବୋଲି କୌଣସି ସତ୍ତାର ଅସ୍ତିତ୍ୱ ଉପନିଷଦ୍‌ରେ ସ୍ୱୀକୃତ ହୋଇନାହିଁ ଏବଂ ବ୍ରହ୍ମସୂତ୍ରରେ ମଧ୍ୟ 'ଅଚିତ୍' ବୋଲି କୌଣସି ପଦାର୍ଥ ଜଗତର କାରଣ (ନିମିତ୍ତ ବା ଉପାଦାନ) ହେବା ବିଷୟ ନିରାକୃତ ହୋଇଅଛି । ଯଦି ସେହି ଅଚିତ୍ ତତ୍ତ୍ୱରୂପେ ସ୍ୱୀକୃତ ହୁଏ, ତେବେ ବ୍ରହ୍ମବାଦ କିପରି ପ୍ରତିଷ୍ଠିତ ହୋଇପାରେ ? ଅତଏବ, ରାମାନୁଜ ସ୍ୱଗତ ଭେଦବାଦ-ଯୁକ୍ତିସ୍ଥାପନ ଓ ଶାସ୍ତ୍ରୀୟ ପ୍ରମାଣଦ୍ୱାରା କୌଣସିପ୍ରକାରେ ଗୌରବ ଅର୍ଜନ କରିବାକୁ ସମର୍ଥ ନୁହନ୍ତି । ବିଶିଷ୍ଟାଦ୍ୱୈତବାଦ ସ୍ଥାପନ ନିମନ୍ତେ ଆତ୍ମାକୁ ନିତ୍ୟ, ବିଜ୍ଞାତା, ଅହଂସ୍ୱରୂପ, ସୁତରାଂ ସବିଶେଷ ବୋଲି ବୁଝାଇବାକୁ ଚେଷ୍ଟା କରିଅଛନ୍ତି ।

କିନ୍ତୁ ଆଚାର୍ଯ୍ୟ ଶଙ୍କର ବ୍ରହ୍ମ ଚିତ୍‌ସ୍ୱରୂପ, ସୁତରାଂ ନିର୍ବିଶେଷ ବୋଲି ସ୍ୱମତ ପ୍ରକାଶ କରିଛନ୍ତି । ଆଚାର୍ଯ୍ୟ ଶଙ୍କରଙ୍କର 'ଅନୁଭୂତି' ଶବ୍ଦ ଓ ଆଚାର୍ଯ୍ୟ ରାମାନୁଜଙ୍କର 'ଜ୍ଞ' ଶବ୍ଦଦ୍ୱାରା ସେହି ପରମ ତତ୍ତ୍ୱ ଯଥାକ୍ରମେ ନିର୍ବିଶେଷ ଓ ସବିଶେଷ ବୋଲି ସ୍ୱୀକୃତ ହୋଇଛି । ଏହି ବିଷୟ ପରେ ସ୍ୱତନ୍ତ୍ରଭାବେ ଆଲୋଚନା କରାଯିବ ।

ଦ୍ୱୈତବାଦର ସଂକ୍ଷିପ୍ତ ଆଲୋଚନା ପୂର୍ବରୁ କରାଯାଇଛି । ଏହି ସମସ୍ତ ମତଦ୍ୱୈଧ ନେଇ ବର୍ତ୍ତମାନ ନାନା ମତବାଦ ପରିଲକ୍ଷିତ ହୁଏ । ଉପାସ୍ୟ ମଧ୍ୟ ତଦନୁସାରେ (ନିଜ ନିଜ ରୁଚି ଅନୁସାରେ) ନାନାବିଧ ହୋଇଯାଇଛି । ବେଦାନ୍ତୀର ବ୍ରହ୍ମ-ନିରୂପଣଗ୍ରନ୍ଥରେ ଦ୍ୱୈତବାଦର ସତ୍ତା ନାହିଁ; ଅତଏବ ସେ ବିଷୟର ଅଧିକ ଆଲୋଡ଼ନ କରିବା ନିଷ୍ପ୍ରୟୋଜନ ।

୦—ବ୍ରହ୍ମ ଏକ ଓ ଅଦ୍ୱିତୀୟ

ଶ୍ରୁତି କହେ—

ନ ଦ୍ୱିତୀୟୋ ନ ତୃତୀୟଶ୍ଚତୁର୍ଥୋ ନାପ୍ୟୁଚ୍ୟତେ ।
ନ ପଞ୍ଚମୋ ନ ଷଷ୍ଠଃ ସପ୍ତମୋ ନାପ୍ୟୁଚ୍ୟତେ ।
ନାଷ୍ଟମୋ ନ ନବମୋ ଦଶମୋ ନାପ୍ୟୁଚ୍ୟତେ ।
ଯ ଏତଂ ବେଦ ସୈକ-ବୃତଂ ବେଦ ॥

ଅଥର୍ବ ସଂହିତା—କାଣ୍ଡ ୧୩-ବ: ୪-ମ: ୨ । ୧୬-୧୭-୧୮ ॥

ଅର୍ଥାତ୍ ପରମାତ୍ମା ଏକ, ତାଙ୍କ ବ୍ୟତୀତ କେହି ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ, ନବମ ବା ଦଶମ ଈଶ୍ୱର ବୋଲି ଅଭିହିତ ହୁଏ ନାହିଁ । ଯେ ତାହାଙ୍କୁ ନିଶ୍ଚିତରୂପରେ ଏକ ଓ ଅଦ୍ୱିତୀୟ ବୋଲି ଜାଣନ୍ତି, ସେ ତାଙ୍କୁ ପ୍ରାପ୍ତ ହୁଅନ୍ତି । ଏ ବିଷୟ ଉପନିଷଦ୍‌ରେ ମଧ୍ୟ ଉକ୍ତ ହୋଇଛି—

ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ
ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।
କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ
ସାକ୍ଷୀ ଚେତାଃ କେବଲୋ ନିର୍ଗୁଣଶ୍ଚ ॥

ଶ୍ୱେତାଶ୍ୱତର ଉ: ୬—୧୧ ।

ସେହି ଏକ ଅଦ୍ୱିତୀୟ ପରମାତ୍ମା ପରମପିତା ପରମେଶ୍ୱରଙ୍କର ପରିଜ୍ଞାନ ଭିନ୍ନ ଅନ୍ୟ କୌଣସି ଉପାୟରେ ପରମାର୍ଥପ୍ରାପ୍ତି ହୁଏ ନାହିଁ । ସେହି ଅଦ୍ୱିତୀୟ ଦେବାଧିଦେବ ଜଗତ୍‌ପିତା ସର୍ବଭୂତରେ ଗୂଢ଼ରୂପରେ ବିଦ୍ୟମାନ ଅଛନ୍ତି । ସେ ସର୍ବବ୍ୟାପୀ ଓ ସମସ୍ତ ପ୍ରାଣୀମାନଙ୍କର ଅନ୍ତରାତ୍ମା-ସ୍ୱରୂପ । ଆମ୍ଭେମାନେ ଯାହା କିଛି କରୁଁ, ସେ ସବୁ ତାଙ୍କର ଅଜ୍ଞାତ ନୁହେଁ । ସେ ସର୍ବ ଭୂତରେ ଅବସ୍ଥାନ କରି ଅଛନ୍ତି । ପ୍ରାଣୀଗଣ ଯାହା କିଛି କରନ୍ତି, ସେ ସବୁ କାର୍ଯ୍ୟର ସାକ୍ଷୀସ୍ୱରୂପ । ସେ ଜୀବକୁ ଚୈତନ୍ୟ ପ୍ରଦାନ କରନ୍ତି । ନିର୍ଗୁଣ ରୂପ ପରମାତ୍ମାଙ୍କୁ ଜାଣିପାରିଲେ ଜୀବ ମୁକ୍ତିଲାଭ କରେ ।

ଠ— ଏକ ବ୍ରହ୍ମବିଷୟକ ସାର ଗ୍ରହଣ କରି ଅସାର ତ୍ୟାଗ କର ।

ଉପର୍ଯ୍ୟୁକ୍ତ ଶ୍ରୁତିପ୍ରମାଣରୁ ବେଦାନ୍ତ ପ୍ରତିପାଦ୍ୟ ଏକ ଓ ଅଦ୍ୱିତୀୟ ବ୍ରହ୍ମ-ବସ୍ତୁର ତାତ୍ପର୍ଯ୍ୟ କେବଳ ଏହି ଗ୍ରନ୍ଥର ପ୍ରତିପାଦ୍ୟ ବିଷୟ । ଏକ ଓ ଅଦ୍ୱିତୀୟ ବ୍ରହ୍ମସତ୍ତା ଭିନ୍ନ ଅନ୍ୟ ବିଷୟ ପରିହାର୍ଯ୍ୟ ।

ଦ୍ୱେ ବିଦ୍ୟେ ବେଦିତବ୍ୟେ ହି ଶବ୍ଦବ୍ରହ୍ମ ପରଂ ଚ ଯତ୍ ।
ଶବ୍ଦବ୍ରହ୍ମଣି ନିଷ୍ଣାତଃ ପରଂବ୍ରହ୍ମାଧିଗଚ୍ଛତି ॥
ଗ୍ରନ୍ଥମଭ୍ୟସ୍ୟ ମେଧାବୀ ଜ୍ଞାନବିଜ୍ଞାନତତ୍ତ୍ୱତଃ ।
ପଲାଳମିବ ଧାନ୍ୟାର୍ଥୀ ତ୍ୟଜେତ୍ ଗ୍ରନ୍ଥମଶେଷତଃ ॥
ଗବାମନେକବର୍ଣ୍ଣାନାଂ କ୍ଷୀରସ୍ୟାପ୍ୟେକବର୍ଣ୍ଣତା ।
କ୍ଷୀରବତ୍ ପଶ୍ୟତେ ଜ୍ଞାନଂ ଲିଙ୍ଗିନସ୍ତୁ ଗବାଂ ଯଥା ॥

ବ୍ରହ୍ମବିନ୍ଦୁ ଉ: ୧୭—୧୯ । ଅମୃତବିନ୍ଦୁ ଉ: ୧୭—୧୯ ॥

ଶବ୍ଦ-ବିଦ୍ୟା ଓ ବ୍ରହ୍ମବିଦ୍ୟା ଉଭୟ ଜ୍ଞାତବ୍ୟ । କାରଣ, ଶବ୍ଦବିଦ୍ୟାରେ ନିପୁଣତା ଲାଭ ନ କଲେ ବ୍ରହ୍ମବିଦ୍ୟା ବୋଧଗମ୍ୟ ହୁଏ ନାହିଁ । ଶବ୍ଦମୟୀ ଶ୍ରୁତି-ବିଦ୍ୟାରେ ଅଧିକାରୀ ନ ହେଲେ ବ୍ରହ୍ମବିଦ୍ୟା-ଜ୍ଞାନ ହୋଇପାରେ ନାହିଁ । ଯେପରି ଧାନ୍ୟାର୍ଥୀମାନେ ତୃଣ ସହିତ ଧାନ୍ୟ ସଂଗ୍ରହ କରେ ଓ ତୃଣ ପରିତ୍ୟାଗ କରି ଧାନ୍ୟ ଗ୍ରହଣ କରେ, ସେହିପରି ଧାରଣାଶାଳୀ ବ୍ୟକ୍ତି ଶବ୍ଦଶାସ୍ତ୍ର ପାଠ କରି ଶାବ୍ଦିକ ଜ୍ଞାନଲାଭ କରେ ଓ ତା ସହିତ ଆତ୍ମବିଷୟକ ଶାସ୍ତ୍ର ଅଧ୍ୟୟନ କରି ବ୍ରହ୍ମ-ସାକ୍ଷାତ୍କାର-ବିଦ୍ୟାରେ ପ୍ରବୃତ୍ତ ହୁଏ । ଗୌ ନାନାବର୍ଣ୍ଣବିଶିଷ୍ଟ ହେଲେ ମଧ୍ୟ ସକଳ ଗାଈର ଦୁଗ୍ଧ କେବଳ ଶୁକ୍ଳ

ବର୍ଣ୍ଣ ହୋଇଥାଏ । ଗୋପାଳଗଣ ଯେପରି ବିବିଧ ବର୍ଣ୍ଣର ଗାଈଠାରୁ କେବଳ ଶୁକ୍ଳ ବର୍ଣ୍ଣ କ୍ଷୀର ଲାଭ କରିବା ଆଶା ରଖନ୍ତି, ସେପରି ବହୁ ଶାସ୍ତ୍ର ପାଠ କଲେ ମଧ୍ୟ ଏକ ପରମାତ୍ମ-ତତ୍ତ୍ୱ ଜ୍ଞାନଲାଭ ହିଁ ସମସ୍ତଙ୍କର ଆଦର୍ଶ ।

## ଠ—ପରଂବ୍ରହ୍ମଙ୍କ ଲକ୍ଷଣ ବର୍ଣ୍ଣନ

ଏହା ପୂର୍ବରୁ ଅକ୍ଷର-ପରଂବ୍ରହ୍ମ ନିରୂପଣ କରାଯାଇଅଛି; ଯେଉଁ ନିରୂପିତ ବ୍ରହ୍ମ ନିର୍ଗୁଣ, ଅଦ୍ୱିତୀୟ, ଅଲେଖ ପରଂବ୍ରହ୍ମ ପରମାତ୍ମା । ସେହି ବ୍ରହ୍ମ ହିଁ ସର୍ବ ଜଗତର ଏକମାତ୍ର କାରଣ । ତାଙ୍କ ବ୍ୟତୀତ ଅନ୍ୟ ଦ୍ୱିତୀୟ କାରଣ କିଛି ନାହିଁ । ତାହାଙ୍କର ଅଦ୍ଭୁତ ମହିମାରୁ ସମସ୍ତ ଜଗତ୍ ସମ୍ଭୂତ ହୋଇଅଛି । ସେ ନିର୍ଲିପ୍ତଭାବରେ ଓ ନିରବଚ୍ଛିନ୍ନ ସ୍ୱ ସ୍ୱ ରୂପରେ ସର୍ବତ୍ର ବିଦ୍ୟମାନ ଅଛନ୍ତି । ସମସ୍ତ ପ୍ରପଞ୍ଚ ତାହାଙ୍କଠାରୁ ଉତ୍ପନ୍ନ ହେଲେ ମଧ୍ୟ ସେ ସ୍ୱୟଂ ନିଷ୍ପ୍ରପଞ୍ଚ ଓ ନିର୍ବିକାର ହୋଇ ରହି ଅଛନ୍ତି । ସେ ସର୍ବଗୁଣାଧାର ହୋଇ ମଧ୍ୟ ନିର୍ଗୁଣଭାବେ ଅବସ୍ଥିତ । ସର୍ଗ ବିସର୍ଗାଦି ସୃଷ୍ଟି ଲେଖମଣ୍ଡଳରୁ ଅତିରିକ୍ତ ଓ କୌଣସି ପ୍ରକାର ଲେଖନ ବା ବର୍ଣ୍ଣନାଦ୍ୱାରା ତାଙ୍କ ମହିମା ବର୍ଣ୍ଣିତ କରି ସମାପ୍ତି କରାଯାଇ ନ ପାରେ । ଏହି ହେତୁରୁ ବ୍ରହ୍ମ ଅଲେଖ ବା ଅବର୍ଣ୍ଣନୀୟ ଓ ଅଚିନ୍ତ୍ୟ, ନିରୂପାଧିକ, ଶୁଦ୍ଧ ଚୈତନ୍ୟ, ସଚ୍ଚିଦାନନ୍ଦମୟ ବିଭୁ, ଅବ୍ୟକ୍ତ, ଅନାମ, ଅଦେହ, ଅରୂପ, ଅନିର୍ଦ୍ଦେଶ୍ୟ—ଇତ୍ୟାଦି ପ୍ରପଞ୍ଚାତୀତ ଅନୁପମ ନାମରେ କଥିତ । ଯେହି ଅଲେଖ-ପରଂବ୍ରହ୍ମଙ୍କର କୌଣସି ପ୍ରକାର ଉପାଧିଯୁକ୍ତ ସଗୁଣ ନାମ ରୂପ ନାହିଁ । ସେ ସ୍ୱ-ମହିମାଦ୍ୱାରା ସତ୍ୟ, ଜ୍ଞାନ, ଅନନ୍ତ ଓ ଆନନ୍ଦସ୍ୱରୂପରେ ନିତ୍ୟ ବିଦ୍ୟମାନ ଅଛନ୍ତି । ବେଦାନ୍ତାଦି ଗ୍ରନ୍ଥରେ ଏହି ଅନିର୍ବଚନୀୟ ବ୍ରହ୍ମଙ୍କ ସୁବିସ୍ତୃତ ବିବରଣ ସୁନିର୍ଦ୍ଦିଷ୍ଟଭାବେ କରାଯାଇ ଅଛି । କେବଳ ଗୁରୁଶିଷ୍ୟଙ୍କର ସାଧନ-ସମ୍ପତ୍ତି ସମ୍ୟକ୍ ବିଦିତ ହୋଇ ନିଜ ଉପଦେଶଦ୍ୱାରା ସେହି ଅଲେଖ ବ୍ରହ୍ମଙ୍କର ପ୍ରକୃତ ସ୍ୱରୂପ ତାଙ୍କୁ ଅବଗତ କରି ପାରନ୍ତି ।

ବିଶୁଦ୍ଧ ତତ୍ତ୍ୱ ବା ଅଦ୍ୱିତୀୟ ବ୍ରହ୍ମ ଏକ ହେଲେ ମଧ୍ୟ ସୃଷ୍ଟ୍ୟାଦିକର୍ମର କର୍ତ୍ତା ହେତୁ ବେଦାନ୍ତାଦିଶାସ୍ତ୍ର ମଧ୍ୟରେ ତାଙ୍କର ଦ୍ୱିବିଧାକାର ଲକ୍ଷଣ ବର୍ଣ୍ଣିତ ହୋଇଅଛି । ବ୍ରହ୍ମ ଦ୍ୱିବିଧ—ସ୍ୱରୂପ ଓ ତଟସ୍ଥ; କିନ୍ତୁ ଏପରି ଦ୍ୱିବିଧ ଚିହ୍ନବିଶିଷ୍ଟ ହେଲେ ମଧ୍ୟ ବ୍ରହ୍ମ ପ୍ରକୃତରେ ଏକ ଓ ଅଦ୍ୱିତୀୟ; ତାଙ୍କର ଲିଙ୍ଗଭେଦ ଓ ଶକ୍ତିଭେଦ କଳ୍ପନା ପ୍ରକୃତରେ ଅବାସ୍ତବ । ତଟସ୍ଥ ଲକ୍ଷଣଦ୍ୱାରା ତାଙ୍କର ଅଦ୍ଭୁତ ମହିମା ପ୍ରକଟିତ ହୁଏ; ଏହି ଅଦ୍ଭୁତ ମହିମାଦ୍ୱାରା ଅନନ୍ତ ସୃଷ୍ଟିର ଉତ୍ପତ୍ତି—ସ୍ଥିତି ଓ ପ୍ରଳୟାଦି କର୍ମ ସଂସାଧିତ ହେଉଅଛି । ସେହି ସତ୍‌ସ୍ୱରୂପ ପରଂବ୍ରହ୍ମଙ୍କର ମହିମା ଲକ୍ଷ୍ୟ କରି ମହିମାଧର୍ମର ମୂଳ ଧର୍ମମତ ଓ ଉପାସନାପ୍ରଣାଳୀ ପ୍ରତିଷ୍ଠିତ ହୋଇଅଛି । ଅଲେଖ ପରଂବ୍ରହ୍ମଙ୍କର ମହିମା ବିଶୁଦ୍ଧା-

ଦ୍ୱୈତବାଦ-ମତର ପୋଷକ ଅଟେ । ଏହି ସବୁ କାରଣରୁ ଏହା 'ବିଶୁଦ୍ଧାଦ୍ୱୈତବ୍ରହ୍ମବାଦ—ମଧ୍ୱମାଧ୍ୱମ' ନାମରେ ଆଖ୍ୟାତ । ଏହି ବ୍ରହ୍ମବାଦ ମତର ସ୍ରଷ୍ଟା ଶ୍ରୀମଦ୍‌ପ୍ରବୃଦ୍ଧ ଗୁରୁ ମଧ୍ୱମାସ୍ୱାମୀ ।

## ୦—ପରଂବ୍ରହ୍ମଙ୍କର ଦ୍ୱିବିଧ ଲକ୍ଷଣ ବର୍ଣ୍ଣନ

ଲକ୍ଷଣର ଅର୍ଥ ପଦାର୍ଥ ପରିଗୃହ୍ୟକ । ଏହା ଦ୍ୱିବିଧ—ସ୍ୱରୂପ ଓ ତଟସ୍ଥ । ଯାହାଦ୍ୱାରା ପଦାର୍ଥର ପ୍ରକୃତ ପରିଚୟ ଅବଗତ କରାଯାଏ, ତାହା ପଦାର୍ଥର ସ୍ୱରୂପଲକ୍ଷଣ । ତଟସ୍ଥ ଲକ୍ଷଣ ପଦାର୍ଥର ସହଚର ଧର୍ମର ନିର୍ଦ୍ଦେଶ କରେ; ଅର୍ଥାତ୍ ସ୍ୱରୂପଲକ୍ଷଣ ବସ୍ତୁର ସ୍ୱରୂପଜ୍ଞାପକ; କିନ୍ତୁ ତଟସ୍ଥ ଲକ୍ଷଣ ବସ୍ତୁର ଅସ୍ଥାୟୀ ଗୁଣର ନିର୍ଦ୍ଦେଶକ । ବସ୍ତୁର ଯଥାର୍ଥ-ଜ୍ଞାନ ବିଷୟରେ ତଟସ୍ଥ ଅପେକ୍ଷା ସ୍ୱରୂପ ଲକ୍ଷଣର ଉପଯୋଗିତା ଅଧିକ । ଏହି ହେତୁରୁ ଶ୍ରୁତି ବ୍ରହ୍ମର ତଟସ୍ଥ-ଲକ୍ଷଣ ପ୍ରଥମେ ନିର୍ଦ୍ଦେଶ କରି ପରେ ସ୍ୱରୂପ-ଲକ୍ଷଣ ପ୍ରତିପାଦନ କରିଛନ୍ତି ।

ଯତୋ ବା ଇମାନି ଭୂତାନି ଜାୟନ୍ତେ ।
ଯେନ ଜାତାନି ଜୀବନ୍ତି ।
ଯତ୍ ପ୍ରୟନ୍ତି ଅଭିସଂବିଶନ୍ତି ।
ତଦ୍ ବିଜିଜ୍ଞାସସ୍ୱ ତଦ୍ ବ୍ରହ୍ମ ଇତି ।।
ତୈତ୍ତିରୀୟ ଉ : ଭୃଗୁବଲ୍ଲୀ ଅନୁବାକ—୧-୪୧

ଯାହାଙ୍କଠାରୁ ବ୍ରହ୍ମା ପ୍ରଭୃତି ସକଳ ଭୂତବର୍ଗ ଉତ୍ପନ୍ନ ହୋଇଅଛନ୍ତି ଓ ଯାହାଙ୍କ-ଦ୍ୱାରା ଜୀବିତ ରହିଅଛନ୍ତି; ବିନାଶ ସମୟରେ ଯାହାଙ୍କଠାରେ ଭୂତବର୍ଗ ବିଲୀନ ହେବେ, ତାହାଙ୍କୁ ବିଶେଷଭାବରେ ଜାଣିବାକୁ ଇଚ୍ଛା କର; ତାହାହିଁ ବ୍ରହ୍ମ ।
ଅନ୍ୟ ମଧ୍ୟ—

ଯସ୍ମିନ୍ନିଦଂ ସଂଚ ବିଚୈତି ସର୍ବଂ
ଯସ୍ମିନ୍ ଦେବା ଅଧିବିଶ୍ୱେ ନିଷେଦୁଃ ।
ତଦେବ ଭୂତଂ ତଦୁ ଭବ୍ୟ ମା
ଇଦଂ ତଦକ୍ଷରେ ପରମେ ବ୍ୟୋମ୍ନି ।।
ଯେନାବୃତଂ ଖଂ ଚ ଦିବଂ ମହୀଂ ଚ
ଯେନାଦିତ୍ୟସ୍ତପତି ତେଜସା ଭ୍ରାଜସା ଚ ।

ଯମନ୍ତଃ ସମୁଦ୍ରେ କବୟୋଽବଯନ୍ତି
ଯଦକ୍ଷରେ ପରମେ ପ୍ରଜାଃ ।
ଯତଃ ପ୍ରସୂତା ଜଗତଃ ପ୍ରସୂତୀ
ତୋୟେନ ଜୀବାନ୍ ସସର୍ଜ ସର୍ବଭୂମ୍ୟାମ୍ ।
ଯଦୋଷଧିଭିଃ ପୁରୁଷାନ୍ ପଶୂଂଶ୍ଚ
ବିବେଶ ଭୂତାନି ଚରାଚରାଣି ।।

ମହାନାରାୟଣ ଉ: ୪ । ୨ । ୪ ।

ପରିଦୃଶ୍ୟମାନ ଏହି ସମସ୍ତ ଜଗତ୍ ସୃଷ୍ଟିକାଳରେ ଯାହାଙ୍କଠାରୁ ଉତ୍ପନ୍ନ ହୋଇଛି, ସ୍ଥିତିକାଳରେ ଯହିଁରେ ଅବସ୍ଥାନ କରେ ଏବଂ ପ୍ରଳୟକାଳରେ ଯହିଁରେ ଲୟ ପ୍ରାପ୍ତ ହୁଏ; ହିରଣ୍ୟଗର୍ଭ, ବିରାଟ୍ ପ୍ରଭୃତି ଦେବଗଣ ଯାହାଙ୍କର ଆଶ୍ରୟ ଲାଭ କରନ୍ତି; ସୃଷ୍ଟି, ସ୍ଥିତି ଓ ଲୟ ଏବଂ ଦେବତାମାନଙ୍କର ଆଧାରଭୂତ ଅବ୍ୟକ୍ତ ମୂଳକାରଣ, ଅତୀତ ଭବିଷ୍ୟତ୍ ଓ ବର୍ତ୍ତମାନ କାଳ—ଏହା ସବୁ ଜଗତର ନାମ ରୂପଦ୍ୱାରା ଅଭିବ୍ୟକ୍ତ ନ ହୋଇଥିବା ମୂଳ କାରଣଠାରୁ ଭିନ୍ନ ନୁହେଁ । ଜଗତର ମୂଳ କାରଣରୂପ ଏହି ପରଂବ୍ରହ୍ମ ମହାଶୂନ୍ୟ ବା ପରମ ଆକାଶରେ ସର୍ବତ୍ର ପରିବ୍ୟାପ୍ତ । ଅନ୍ତରୀକ୍ଷଲୋକ, ଦ୍ୟୁଲୋକ ଓ ଭୂଲୋକ ଏବଂ ସେହି ସେହି ଲୋକମାନଙ୍କର ବାସ କରୁଥିବା ଜୀବମାନଙ୍କର ଦେହସମୂହ ଯାହାଦ୍ୱାରା ବ୍ୟାପ୍ତ ଏବଂ ଯେ ସତ୍‌ସ୍ୱରୂପରେ ସର୍ବତ୍ର ଭାସମାନ ହୋଉଅଛନ୍ତି; ଯାହାର ଅନୁଗ୍ରହରେ ସୂର୍ଯ୍ୟଦେବ ନିଜର ତେଜ ଓ ଦୀପ୍ତିଦ୍ୱାରା ସମସ୍ତ ଜଗତକୁ ଅଭିତପ୍ତ ଓ ପ୍ରକାଶିତ କରୁଅଛନ୍ତି; ତତ୍ତ୍ୱବିତ୍ ପଣ୍ଡିତମାନେ ଯାହାଙ୍କୁ ସମୁଦ୍ର ଆଦି ନିଖିଳ ଜଗତ ମଧ୍ୟରେ ଅନ୍ତର୍ବାହିରୂପେ ପରିବ୍ୟାପ୍ତ ବୋଲି ବ୍ୟାଖ୍ୟା କରନ୍ତି, ଅର୍ଥାତ୍ ବସ୍ତ୍ରରେ ଯେପରି ସୂତ୍ରସମୂହ ଅନୁସ୍ୟୂତ, ସେପରି ବ୍ରହ୍ମସତ୍ତା ସର୍ବତ୍ର ପରିବ୍ୟାପ୍ତ । ଏହିଭାବରେ ଅନୁଭୂତ ବ୍ରହ୍ମତତ୍ତ୍ୱ ଅକ୍ଷରସ୍ୱରୂପ ସ୍ୱାତ୍ମରୂପରେ ଅବସ୍ଥାନ କରି ପ୍ରଜାବର୍ଗଙ୍କ ସୃଷ୍ଟି ବିଧାନ କରନ୍ତି ।

ଯେଉଁ ଆତ୍ମଚୈତନ୍ୟଙ୍କଠାରୁ ଏହି ଜଗତର ଉତ୍ପତ୍ତି, ଯେ ଜଳଆଦି ପଞ୍ଚମହାଭୂତ ସାହାଯ୍ୟରେ ମନୁଷ୍ୟ ଗୋ ପ୍ରଭୃତି ପ୍ରାଣୀବର୍ଗ ସୃଷ୍ଟି କରିଛନ୍ତି, ଯେ ବ୍ରୀହିଯବାଦି ଅନ୍ନ-ରୂପରେ ମନୁଷ୍ୟ ପଶୁ-ଆଦି ପ୍ରାଣୀମାନଙ୍କ ମଧ୍ୟରେ ପ୍ରବେଶ କରିଛନ୍ତି, ସେହି ଚେତନ ଆତ୍ମାଦ୍ୱାରା ସମସ୍ତ ଜଗତ୍ ସୃଷ୍ଟ ଓ ରକ୍ଷିତ । ଛାନ୍ଦୋଗ୍ୟଶ୍ରୁତି କହେ—

ସର୍ବଂ ଖଲ୍ୱିଦଂ ବ୍ରହ୍ମତଜ୍ଜଲାନିତ ୩।୧୪।୧

ଏହି ସମସ୍ତ ଜଗତ୍ ବ୍ରହ୍ମମୟ, ଜଗତ୍ ତଜ୍ଜ, ତଲ୍ଲ ଓ ତଦନ, ଅର୍ଥାତ୍ ସମସ୍ତ ଜଗତ୍ ବ୍ରହ୍ମଙ୍କଠାରୁ ଉତ୍ପନ୍ନ ; ସେଥିରେ ଜଗତ୍ ଅବସ୍ଥିତ ଓ ଅନ୍ତମକାଳରେ ତହିଁରେ ଲୟ ପ୍ରାପ୍ତ ହୁଏ । *

ବ୍ରହ୍ମସୂତ୍ର ମଧ୍ୟ ବ୍ରହ୍ମର ଏହି ଲକ୍ଷଣ ସମ୍ବନ୍ଧରେ କହେ—

"ଜନ୍ମାଦ୍ୟସ୍ୟ ଯତଃ" । ବ୍ରହ୍ମସୂତ୍ର—୧।୧।୨

ଅର୍ଥାତ୍ ଯାହାଙ୍କଠାରୁ ଜଗତର ଜନ୍ମ, ସ୍ଥିତି ଓ ଲୟ ଘଟିଥାଏ, ସେହି ବ୍ରହ୍ମ । ଶ୍ରୁତିରେ ମଧ୍ୟ ଏହି ବ୍ରହ୍ମସୂତ୍ରର ଭାବ ବ୍ୟକ୍ତ ହୋଇଛି—

ସ ଯଥୋର୍ଣ୍ଣନାଭିସ୍ତନ୍ତୁନୋଚ୍ଚରେଦ୍
ଯଥାଗ୍ନେଃ କ୍ଷୁଦ୍ରା ବିସ୍ଫୁଲିଙ୍ଗା ବ୍ୟୁଚ୍ଚରନ୍ତି ।
ଏବମେବାସ୍ମାଦାତ୍ମନଃ ସର୍ବେ ପ୍ରାଣାଃ
ସର୍ବେ ଲୋକାଃ ସର୍ବେ ଦେବାଃ ସର୍ବାଣି ଭୂତାନି ବ୍ୟୁଚ୍ଚରନ୍ତି ।
ବୃହଦାରଣ୍ୟ କ: ଉ:— ୨-୧-୨୦ ।

ଯେପରି ଊର୍ଣ୍ଣନାଭି (ବୁଢ଼ୀଆଣୀ) ତନ୍ତୁ ଉଦ୍‌ଗିରଣ କରେ, ଯେପରି ଅଗ୍ନି ସ୍ଫୁଲିଙ୍ଗ ଉଦ୍‌ଗିରଣ କରେ, ସେହିପରି ଏହି ଆତ୍ମାରୁ ସମସ୍ତ ପ୍ରାଣ, ସମସ୍ତ ଲୋକ, ସମସ୍ତ ଦେବ ଓ ସମସ୍ତ ଭୂତ ନିଃସୃତ ହୋଇ ଅଛନ୍ତି ।

---

* ଯସ୍ମିନ୍ ସର୍ବମିଦଂପ୍ରୋତଂ ବ୍ରହ୍ମସ୍ଥାବରଜଙ୍ଗମମ୍ ।
ତସ୍ମିନ୍ନେବ ଲୟଂ ଯାନ୍ତି ସ୍ରବନ୍ତ୍ୟଃ ସାଗରେ ଯଥା ॥
ଯସ୍ମିନ୍ ଭାବାଃ ପ୍ରଲୀୟନ୍ତେ ଲୀନାଶ୍ଚାବ୍ୟକ୍ତତାଂ ଯଯୁଃ ।
ପଶ୍ୟନ୍ତି ବ୍ୟକ୍ତତାଂ ଭୂୟୋ ଜାୟନ୍ତେ ବୁଦ୍‌ବୁଦାଇବ ॥
ମାନ୍ତ୍ରିକୋପନିଷଦ୍—୧୭-୧୮ ॥

ଯେପରି ସମୁଦ୍ରର ଜଳ ସୂର୍ଯ୍ୟରଶ୍ମି ଦ୍ୱାରା ନୀତ ହୋଇ ବୃଷ୍ଟିରୂପରେ ନଦୀଜଳରେ ପରିଣତ ହୁଏ ଏବଂ ପରିଣାମରେ ସମୁଦ୍ରରେ ଲୀନ ହୁଏ, ସେହିପରି ସ୍ଥାବରଜଙ୍ଗମାଦି ସମସ୍ତ ହିଁ ବ୍ରହ୍ମର କାର୍ଯ୍ୟ । ବୁଦ୍‌ବୁଦ ଯେପରି ଜଳରୁ ସମୁତ୍ପନ୍ନ ହୋଇ ଜଳରେ ଲୀନ ହୋଇ ଯାଏ ଏବଂ ପୁନର୍ବାର ତହିଁରୁ ଉଦ୍‌ଭୂତ ହେଉଥାଏ, ସେହିପରି ପଦାର୍ଥମାନେହିଁ ବ୍ରହ୍ମରେ ଲୀନ ହୋଇ ଅପ୍ରକାଶିତ ହୁଏ, ଏବଂ ପୁନର୍ବାର ତାହାଙ୍କଠାରୁ ଅଭିବ୍ୟକ୍ତ ହୋଇଥାଏ ; ଜ୍ଞାନୀମାନେ ଏହା ଅବଲୋକନ କରନ୍ତି ।

ଉପର୍ଯ୍ୟୁକ୍ତ ତଟସ୍ଥ ଲକ୍ଷଣକୁ ଲକ୍ଷ୍ୟ କରି ଏହି ଲକ୍ଷଣସଂଯୁକ୍ତ ସ୍ୱରୂପକୁ ସଗୁଣ ବ୍ରହ୍ମଭାବରେ ବ୍ୟାଖ୍ୟା କରନ୍ତି । ବ୍ରହ୍ମ ଅଦ୍ୱିତୀୟ,

"ଏକମେବାଦ୍ୱିତୀୟଂ ବ୍ରହ୍ମ, ନେହ ନାନାସ୍ତି କିଂଚନ" ।

—ଏହାହିଁ ସ୍ୱତଃସିଦ୍ଧ ପ୍ରମାଣ । ସେହି ପରଂବ୍ରହ୍ମଙ୍କର ଅଦ୍ଭୁତ ମହିମା କଥଞ୍ଚିତ୍ ଉପର୍ଯ୍ୟୁକ୍ତ ଲକ୍ଷଣରୁ ପ୍ରକାଶ ପାଉଅଛି । ଏହାଦ୍ୱାରା ସ୍ୱରୂପଲକ୍ଷଣର କୌଣସି ଇଙ୍ଗିତ ପ୍ରକାଶିତ ନୁହେଁ । ଏହି ବିଶାଳ ଓ ଅସୀମ ଜଗତର ଯେ ସୃଷ୍ଟିକର୍ତ୍ତା, ପାଳନ ଓ ସଂହାରକର୍ତ୍ତା * ସେ ସର୍ବଶକ୍ତିମାନ୍ ; ତାହାଙ୍କର ମହିମା ଅସୀମ ; ତଟସ୍ଥଲକ୍ଷଣ ସେହି ମହିମାର ବ୍ୟଞ୍ଜକ ମାତ୍ର ।

## ୦—ବ୍ରହ୍ମଙ୍କର ସ୍ୱରୂପ ଲକ୍ଷଣ

ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ, ଆନନ୍ଦରୂପମମୃତମ୍ ।
ଯଦ୍ ବିଭାତି ଶାନ୍ତଂ ଶିବମଦ୍ୱୈତଂ ଶୁଦ୍ଧମପାପବିଦ୍ଧମ୍ ॥

ତୈତ୍ତିରୀୟ ଉ:—୨-୧-୧୮

ବ୍ରହ୍ମ ସତ୍ୟସ୍ୱରୂପ, ଜ୍ଞାନସ୍ୱରୂପ ଓ ଅନନ୍ତସ୍ୱରୂପ ; ସେ ସର୍ବାପେକ୍ଷା ଶ୍ରେଷ୍ଠ ; ସେ ଆନନ୍ଦସ୍ୱରୂପ ଓ ଅମୃତସ୍ୱରୂପରେ ପ୍ରକାଶ ପାନ୍ତି ; ସେ ଶାନ୍ତ-ସ୍ୱରୂପ, ମଙ୍ଗଳସ୍ୱରୂପ, ଅଦ୍ୱିତୀୟ, ଶୁଦ୍ଧ ଏବଂ ପାପସ୍ପର୍ଶରହିତ ।

ବୃହଦାରଣ୍ୟକ ଶ୍ରୁତିରେ ମଧ୍ୟ ଅଛି—

---

* ଏହି ସୃଷ୍ଟି, ସ୍ଥିତି ଓ ସଂହାର କାର୍ଯ୍ୟକୁ ଲକ୍ଷ୍ୟ କରି ପୁରାଣାଦିରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର—ଏପରି ଦେବତ୍ରୟ ଉପର୍ଯ୍ୟୁକ୍ତ ସୃଜନାଦି କ୍ରିୟାର ଅଧିପତି ବୋଲି ଅଭିହିତ ହୋଇ ଅଛନ୍ତି । ତଦନୁସାରେ ରଜୋଗୁଣପ୍ରଧାନ ସୃଷ୍ଟି କାର୍ଯ୍ୟକୁ ଲକ୍ଷ୍ୟ କରି ବ୍ରହ୍ମା, ସତ୍ତ୍ୱଗୁଣପ୍ରଧାନ ପାଳନକୁ ଲକ୍ଷ୍ୟ କରି ବିଷ୍ଣୁ ଏବଂ ତମୋଗୁଣପ୍ରଧାନ ଲୟର ରୁଦ୍ର—ଏମାନଙ୍କୁ ତ୍ରିମୂର୍ତ୍ତି ବୋଲି ବର୍ଣ୍ଣନ କରାଯାଇଛି । ଭାଗବତରେ ଉକ୍ତ ଅଛି—

ଆତ୍ମ ମାୟାଂ ସମାବିଶ୍ୟ ସୋଽହଂ ଗୁଣମୟୀଂ ଦ୍ୱିଜ !
ସୃଜନ୍ ରକ୍ଷନ୍, ହରନ୍ ବିଶ୍ୱଂ ଦଧ୍ରେ ସଜ୍ଞାଂ କ୍ରିୟୋଚିତାମ୍ ॥

ହେ ଦ୍ୱିଜ ! ଆମ୍ଭେ ଗୁଣମୟୀ ଆତ୍ମାକୁ ଆଶ୍ରୟ କରି ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ସଂହାର ସମ୍ପାଦନ କରୁଁ । ସେହି ସେହି କ୍ରିୟା ଅନୁଯାୟୀ ଆମ୍ଭର ବ୍ରହ୍ମାଆଦି ସଂଜ୍ଞା ହୁଏ ।

"ବିଜ୍ଞାନମାନନ୍ଦଂ ବ୍ରହ୍ମ ରାତଦାତୁଃ ପରାୟଣମ୍ ॥"

ବୃ-୯-୨୮

ଅର୍ଥାତ୍—ବ୍ରହ୍ମ ବିଜ୍ଞାନ ଆନନ୍ଦସ୍ୱରୂପ ଏବଂ ଧନଦାତାର ପରମ ଆଶ୍ରୟ ।

ସର୍ବାଧିଷ୍ଠାନମଦ୍ୱନ୍ଦ୍ୱଂ ପରଂବ୍ରହ୍ମ ସନାତନମ୍ ।
ସଚ୍ଚିଦାନନ୍ଦରୂପଂ ତଦବାଙ୍ମନସଗୋଚରମ୍ ।

ରୁଦ୍ରହୃଦୟ ଉ: ୨୭ ॥

ଅର୍ଥାତ୍—ସେ ଏହି ସୁପ୍ରସିଦ୍ଧ ମଙ୍ଗଳାତ୍ମକ ବ୍ରହ୍ମ, ସକଳପ୍ରପଞ୍ଚର ଅଧିଷ୍ଠାନସ୍ୱରୂପ, ସୁଖ ଓ ଦୁଃଖାଦିଗୁଣ ରହିତ ହେତୁ ନିର୍ଦ୍ୱନ୍ଦ୍ୱ । ସେ ସର୍ବବ୍ୟାପକ ହେତୁରୁ ପରଂବ୍ରହ୍ମ, ଅର୍ଥାତ୍ ତାହାଙ୍କଠାରୁ ବୃହତ୍ କୌଣସି ପଦାର୍ଥ ନାହିଁ । ସେ ସନାତନ, ଅର୍ଥାତ୍ ତାଙ୍କର ଉତ୍ପତ୍ତି ବା ଧ୍ୱଂସ ନାହିଁ ; ଏହି ହେତୁରୁ ସେ କାଳତ୍ରୟରେ ଏକରୂପେ ବିଦ୍ୟମାନ । ସେ ସତ୍ୟ, ଆନନ୍ଦ ଓ ଜ୍ଞାନସ୍ୱରୂପ । ବାକ୍ୟ ବା ମନ ତାହାଙ୍କୁ ପ୍ରକାଶ କରିପାରେ ନାହିଁ । ସେ ସ୍ୱତଃ ପ୍ରକାଶିତ । ଏହି ହେତୁରୁ ସେ ବାକ୍ୟ ବା ଇନ୍ଦ୍ରିୟଜନ୍ୟ ପ୍ରକାଶରୂପ ଫଳଶାଳୀ ନୁହନ୍ତି ।

## ଠ—ବ୍ରହ୍ମ ଲକ୍ଷଣ ସମ୍ବନ୍ଧରେ ଦ୍ୱୈତ-ସଗୁଣବାଦୀଙ୍କର ବିଚାର

ଉପର୍ଯ୍ୟୁକ୍ତ ବ୍ରହ୍ମଙ୍କ ଲକ୍ଷଣ ସମ୍ବନ୍ଧରେ ଦ୍ୱୈତ ଓ ଅଦ୍ୱୈତବାଦ ମଧ୍ୟରେ ମତଭେଦ ଦେଖାଯାଏ । ଅଦ୍ୱୈତବାଦୀମାନେ ପରଂବ୍ରହ୍ମଙ୍କର ସ୍ୱରୂପ ଓ ତଟସ୍ଥ ଲକ୍ଷଣ ପ୍ରମାଣିତ କରନ୍ତି ; କିନ୍ତୁ ଦ୍ୱୈତବାଦୀମାନେ କହନ୍ତି ଯେ, ବ୍ରହ୍ମ ସଗୁଣ ଓ ଈଶ୍ୱର-ପଦବାଚ୍ୟ । ସେ ବିଷୟରେ ଦ୍ୱୈତବାଦୀ ତର୍କ ଉତ୍ଥାପନ କରି ଶାସ୍ତ୍ରପ୍ରମାଣ ଦେଖାଏ—

"ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ॥"

ବ୍ରହ୍ମସଂହିତା—୫-୧ ॥

କୃଷ୍ଣଙ୍କ ନମସ୍କାରରେ ମଧ୍ୟ କୁହାଯାଏ—

ସଚ୍ଚିଦାନନ୍ଦରୂପାୟ କୃଷ୍ଣାୟାକ୍ଲିଷ୍ଟକାରିଣେ ।

ଅର୍ଥାତ୍ ସଚ୍ଚିଦାନନ୍ଦରୂପ ଅକ୍ଲିଷ୍ଟକର୍ମା ଶ୍ରୀକୃଷ୍ଣଙ୍କୁ ନମସ୍କାର । ସେହି ସଚ୍ଚିଦାନନ୍ଦ-କୃଷ୍ଣଙ୍କଠାରେ ତିନୋଟି ଶକ୍ତିର ପ୍ରକାଶ ହୁଏ, ଯଥା—ସନ୍ଧିନୀ, ହ୍ଲାଦିନୀ ଓ ସମ୍ବିତ୍ ।

"ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ତ୍ୱୟ୍ୟେକ ସର୍ବସଂସ୍ଥିତୌ ॥"

( ବିଷ୍ଣୁପୁରାଣ )

ଅର୍ଥାତ୍—ହ୍ଲାଦିନୀ, ସନ୍ଧିନୀ ଓ ସମ୍ବିତ୍—ଏହି ଶକ୍ତିତ୍ରୟ ସର୍ବାଧାର ଅଦ୍ୱିତୀୟ ଭଗବାନଙ୍କଠାରେ ଅବସ୍ଥିତ । ମହେଶ୍ୱର ସନ୍ଧିନୀ ଶକ୍ତିଯୋଗରେ ସତ୍, ସମ୍ବିତ୍ ଶକ୍ତିଯୋଗରେ ଚିତ୍ ଓ ହ୍ଲାଦିନୀ ଶକ୍ତିଯୋଗରେ ଆନନ୍ଦସ୍ୱରୂପ ଅଟନ୍ତି । ସନ୍ଧିନୀଶକ୍ତିର କ୍ରିୟା ସତ୍ତା; ସମ୍ବିତ୍‌ଶକ୍ତିର କ୍ରିୟା ଜ୍ଞାନ ଓ ହ୍ଲାଦିନୀଶକ୍ତିର କ୍ରିୟା ଆନନ୍ଦ ।

## ଠ—ବିଶୁଦ୍ଧାଦ୍ୱୈତବାଦମତରେ ପରଂବ୍ରହ୍ମଙ୍କର ଲକ୍ଷଣ

ସଗୁଣ ଦ୍ୱୈତବାଦୀଗଣ ଏପରି ନାନାରୂପଯୁକ୍ତି ନିଜ ମତବାଦ ପ୍ରତିଷ୍ଠା ଉଦ୍ଦେଶ୍ୟରେ କରିଛନ୍ତି ; କିନ୍ତୁ ପ୍ରଧାନ ଉପନିଷଦ୍‌ମାନଙ୍କରେ ବ୍ରହ୍ମର ଲକ୍ଷଣ ବର୍ଣ୍ଣନା ଯେପରି ଦେଖାଯାଏ, ସେଥିରୁ ଜଣାଯାଏ ଯେ ଅଦ୍ୱୈତ ବ୍ରହ୍ମବାଦ କେବଳ ଉପନିଷଦ୍‌ମାନଙ୍କର ପ୍ରଧାନ ବର୍ଣ୍ଣିତ ବିଷୟ । ବିଶେଷତଃ, ଏହି ମହିମା ଧର୍ମ ବିଶୁଦ୍ଧାଦ୍ୱୈତବାଦର ପୋଷକ ; ଅତଏବ ଦ୍ୱୈତବାଦୀଙ୍କ ମତ ଏଠାରେ ଗ୍ରହଣଯୋଗ୍ୟ ନୁହେଁ । ଉପନିଷଦ୍ ଶ୍ରୁତି ଉପରିକଥିତ ବିଷୟ ବାରମ୍ବାର ଉଦାତ୍ତସ୍ୱରରେ ଘୋଷଣା କରେ, ଯଥା—

"ନିର୍ଗୁଣଂ ନିତ୍ୟମଦ୍ୱୟମ୍ ; ସାକ୍ଷୀ ଚେତାଃ କେବଲୋ ନିର୍ଗୁଣଶ୍ଚ"

ଇତ୍ୟାଦି ।

ଏହିପରି ପ୍ରମାଣିତ ଯୁକ୍ତିବଳରେ ବିଶୁଦ୍ଧାଦ୍ୱୈତ ସତ୍ୟ ବ୍ରହ୍ମବାଦ ପ୍ରତିଷ୍ଠିତ । ପ୍ରାଚୀନ ଶ୍ରୁତି ପ୍ରମାଣବ୍ୟତୀତ ଅର୍ବାଚୀନ କାଳ୍ପନିକ ଯୁକ୍ତି ଭ୍ରାନ୍ତ ବୋଲି ବୁଝିବାକୁ ହେବ । ଉପନିଷଦ୍‌ଶ୍ରୁତି ଏ ବିଷୟ ସିଦ୍ଧାନ୍ତଭାବରେ ପ୍ରତିପାଦନ କରିଛି—

ସତ୍ୟଂ ଜ୍ଞାନମନନ୍ତମାନନ୍ଦଂ ବ୍ରହ୍ମ ସତ୍ୟମବିନାଶି ଦେଶକାଳବସ୍ତୁନିମିତ୍ତେଷୁ ବିନଶ୍ୟତ୍ସୁ ଯନ୍ନ ବିନଶ୍ୟ ସତ୍ୟମବିନାଶି ତତ୍ ସତ୍ୟମିତ୍ୟୁଚ୍ୟତେ । ଜ୍ଞାନମିତ୍ୟୁତ୍ପତ୍ତି ବିନାଶରହିତଂ ଚୈତନ୍ୟଂ ଜ୍ଞାନମିତ୍ୟଭିଧୀୟତେ ॥

ଅନନ୍ତଂ ନାମ ମୃଦ୍‌ବିକାରେଷୁ ମୃଦେବ ସୁବର୍ଣ୍ଣବିକାରେଷୁ ସୁବର୍ଣ୍ଣମିବ ତନ୍ତୁକାର୍ଯ୍ୟେଷୁ ତନ୍ତୁରିବାଽବ୍ୟକ୍ତାଦିସୃଷ୍ଟିପ୍ରପଞ୍ଚପୂର୍ବଂ ବ୍ୟାପକଂ ଚୈତନ୍ୟମନନ୍ତମିତ୍ୟୁଚ୍ୟତେ; ଆନନ୍ଦୋ ନାମ ସୁଖ ଚୈତନ୍ୟସ୍ୱରୂପୋଽପରିମିତାନନ୍ଦସମୁଦ୍ରୋଽବଶିଷ୍ଟ ସୁଖ ସ୍ୱରୂପଶ୍ଚାନନ୍ଦଇତ୍ୟୁଚ୍ୟତେ । ଏତଦ୍‌ବସ୍ତୁଚତୁଷ୍ଟୟଂ ଯସ୍ୟ ଲକ୍ଷଣଂ ଦେଶକାଳବସ୍ତୁନିମିତ୍ତେଷ୍ୱବ୍ୟଭିଚରି ସ ତତ୍‌ପଦାର୍ଥଃ

ପରମାତ୍ମା ପରଂବ୍ରହ୍ମେତ୍ୟୁଚ୍ୟତେ । ତ୍ୱଂ ପଦାର୍ଥାଦୌପାଧିକାଦ୍ ତତ୍‌ପଦାର୍ଥାଦୌପାଧିକାଦ୍ ବିଲକ୍ଷଣ ଆକାଶବତ୍ ସର୍ବଗତଃ ସୂକ୍ଷ୍ମଂ କେବଳସତ୍ତାମାତ୍ରୋଽସି, ପଦାର୍ଥଃ ସ୍ୱୟଂ ଜ୍ୟୋତିରାତ୍ମେତ୍ୟୁଚ୍ୟତେ, ତତ୍ ପଦାର୍ଥଶ୍ଚାତ୍ମେତ୍ୟୁଚ୍ୟତେ । ସର୍ବୋପନିଷଦସାର—୩,୪ ॥

ପରଂବ୍ରହ୍ମ ପରମାତ୍ମାଙ୍କର ସ୍ୱରୂପ ନିରୂପଣ ନିମନ୍ତେ ୪ଟି ଲକ୍ଷଣ କୁହାଯାଇଛି—ବ୍ରହ୍ମ ସତ୍ୟ, ଜ୍ଞାନ, ଅନନ୍ତ ଓ ଆନନ୍ଦସ୍ୱରୂପ । ସତ୍ୟଦ୍ୱାରା ବ୍ରହ୍ମ ଅବିନାଶୀ, ଅର୍ଥାତ୍ ନାମ, ଦେଶ, କାଳ, ବସ୍ତୁ ଓ ନିମିତ୍ତର ବିନାଶ ହେଲେ ମଧ୍ୟ ଯେ ବିନଷ୍ଟ ହୁଅନ୍ତି ନାହିଁ ସେ ଅବିନାଶୀ । ଉତ୍ପତ୍ତି ଓ ବିନାଶରହିତ ଚୈତନ୍ୟକୁ ଜ୍ଞାନସ୍ୱରୂପ ବୋଲାଯାଏ । ଯେପରି ମୃତ୍ତିକାର ବିକାରଭୂତ ସମସ୍ତ ପଦାର୍ଥରେ ବ୍ୟାପକଭାବରେ ମୃତ୍ତିକା, ସୁବର୍ଣ୍ଣର ବିକାରଭୂତ ଦ୍ରବ୍ୟରେ ସୁବର୍ଣ୍ଣ ଏବଂ ତନ୍ତୁର ସମବାୟାତ୍ମକ ବସ୍ତ୍ରରେ ତନ୍ତୁ ବ୍ୟାପକଭାବରେ ବିଦ୍ୟମାନ ଥାଏ, ସେହିପରି ପ୍ରଧାନଠାରୁ ସମସ୍ତ ସୃଷ୍ଟି ପ୍ରପଞ୍ଚରେ ଚୈତନ୍ୟ ବ୍ୟାପକଭାବରେ ବିରାଜମାନ ଅଛନ୍ତି ; ଅତଏବ ଏହାଙ୍କର ନାମ ଅନନ୍ତ । ଯେ ଚୈତନ୍ୟ ସୁଖସ୍ୱରୂପ, ଅର୍ଥାତ୍ ଅପରିମିତ ଆନନ୍ଦସାଗରସ୍ୱରୂପ, ଅତଏବ ତାଙ୍କର ନାମ ଆନନ୍ଦ । ଏହି ସତ୍ୟାଦି ଚତୁଷ୍ଟୟସ୍ୱରୂପ ଦେଶ, କାଳ ଓ ନିମିତ୍ତଦ୍ୱାରା ଅବ୍ୟଭିଚାରୀ, ଅର୍ଥାତ୍ କୌଣସି ଦେଶରେ, କାଳରେ ଏବଂ କୌଣସି କାରଣରେ ଯାହାଙ୍କର ସ୍ୱରୂପ ଅନ୍ୟଥା ହୁଏ ନାହିଁ—ତାଦୃଶ ଚୈତନ୍ୟ ତତ୍ପଦଦ୍ୱାରା ପ୍ରତିପାଦ୍ୟ । ଏତାଦୃଶ ଚୈତନ୍ୟକୁ ପରମାତ୍ମା ଓ ପରଂବ୍ରହ୍ମ କୁହାଯାଏ । ପୁନଶ୍ଚ, ଯେ ଔପାଧିକ 'ତ୍ୱଂ' ପଦାର୍ଥ ଓ 'ତତ୍' ପଦାର୍ଥଠାରୁ ବିଲକ୍ଷଣ, ଆକାଶ ତୁଲ୍ୟ ସର୍ବବ୍ୟାପୀ, ସୂକ୍ଷ୍ମ ଓ କେବଳ ସତ୍ତାମାତ୍ର ବସ୍ତୁ, ସେହି ଆତ୍ମା ବା ଶୁଦ୍ଧ ପରଂବ୍ରହ୍ମ ବୋଲି ଅଭିହିତ ହୁଅନ୍ତି ।

କୁସୁମାଞ୍ଜଳି ବୃତ୍ତିରେ ବ୍ରହ୍ମଙ୍କର ଲକ୍ଷଣ ଏପରି ବର୍ଣ୍ଣିତ ଅଛି—

"ସତ୍ୟମାନନ୍ଦମଦ୍ୱୟମମୃତମେକରୂପମବାଙ୍ମନସଗୋଚରଂ ସର୍ବଗଂ ସର୍ବାତୀତଂ ଶଦେକରସଂ ଦେଶକାଳପରିଚ୍ଛିନ୍ନମପାଦମପି ଶୀଘ୍ରଗମପାଣି ଚ ସର୍ବଗ୍ରହମଚକ୍ଷୁରପି ସର୍ବଦ୍ରଷ୍ଟୃ ଅଶ୍ରୋତ୍ରମପି ସର୍ବଶ୍ରୋତୃ ଅଚନ୍ତ୍ୟମପି ସର୍ବଜ୍ଞଂ ସର୍ବନିୟନ୍ତୃ ସର୍ବଶକ୍ତି ସର୍ବେଷାଂ ସୃଷ୍ଟିସ୍ଥିତିଲୟକର୍ତ୍ତୃ କମପିବସ୍ତୁ ବ୍ରହ୍ମେତି ବେଦା ବଦନ୍ତି" । "ବେଦାନ୍ତସାର ପରିଶିଷ୍ଟ"

ଅର୍ଥାତ୍ ସତ୍ୟସ୍ୱରୂପ, ଆନନ୍ଦମୟ, ମନର ଅଗୋଚର, ସର୍ବଗ, ସର୍ବାତୀତ, ଶଦେକରସ, ଦେଶ ଓ କାଳଦ୍ୱାରା ଅପରିଚ୍ଛିନ୍ନ, ଅପାଦ, ଅଥଚ ଶୀଘ୍ରଗାମୀ; ଅପାଣି, କିନ୍ତୁ ସର୍ବଗ୍ରାହକ; ଅଚକ୍ଷୁ, ତଥାପି ସକଳର ଦ୍ରଷ୍ଟା, ଅକର୍ଣ୍ଣ ହେଲେ ସୁଦ୍ଧା ସର୍ବଶ୍ରୋତା,

ଅଚିନ୍ତ୍ୟ ; କିନ୍ତୁ ସର୍ବଜ୍ଞ, ସମସ୍ତଙ୍କର ନିୟନ୍ତା ଓ ସର୍ବଶକ୍ତିମାନ୍, ସମୁଦାୟର ସୃଷ୍ଟି-ସ୍ଥିତି ଓ ଲୟକାରୀ ଏପରି ଏକ ଓ ଅନିର୍ବଚନୀୟ ବସ୍ତୁ ହିଁ ବ୍ରହ୍ମ । ବେଦରେ ମଧ୍ୟ ଏହି ବ୍ରହ୍ମଙ୍କ ଲକ୍ଷଣ ବହୁ ସ୍ଥାନରେ ଏହିପରି ଭାବରେ ନିର୍ଦ୍ଦିଷ୍ଟ ହୋଇଅଛି ; ଅର୍ଥାତ୍ ବ୍ରହ୍ମର ସତ୍-ଚିତ୍-ଆନନ୍ଦସ୍ୱରୂପ ଲକ୍ଷଣ ନିର୍ଣ୍ଣୀତ ହୋଇଛି—

ସତ୍ ବିଷୟରେ—

ବେନସ୍ତତ୍ ପଶ୍ୟନ୍ନିହିତଂ ଗୁହାୟାଂ
ଯତ୍ର ବିଶ୍ୱଂ ଭବତ୍ୟେକନୀଡ଼ମ୍ ।
ତସ୍ମିନ୍ନିଦଂ ସଂ ଚ ବିଚୈତି ସର୍ବଂ
ସ ଓତଃପ୍ରୋତଶ୍ଚ ବିଭୂଃ ପ୍ରଜାସୁ ॥

ଯଜୁର୍ବେଦ-ଅ. ୩୨-୮ ॥

ଅର୍ଥାତ୍ ଯାହାଁରେ ସର୍ବ ଜଗତ୍ ଆଶ୍ରୟ ଗ୍ରହଣ କରିଅଛି, ସେହି ବୁଦ୍ଧିଗମ୍ୟ ଚେତନ ବ୍ରହ୍ମଙ୍କୁ ମେଧାବୀ ପୁରୁଷ ଜ୍ଞାନଦୃଷ୍ଟିରେ ଦର୍ଶନ କରନ୍ତି । ସମସ୍ତ ଜଗତ୍ ପ୍ରଳୟକାଳରେ ତାହାଁରେ ସୂକ୍ଷ୍ମରୂପେ ମିଳିତ ହୁଏ ; ଏବଂ ଉତ୍ପତ୍ତିକାଳରେ ପୃଥକ୍ ସ୍ଥୂଳରୂପରେ ପରିଣତ ହୁଏ । ସେହି ସତ୍ୟସ୍ୱରୂପ ପରମାତ୍ମା ଜୀବ ଓ ପ୍ରକୃତିରେ ଓତପ୍ରୋତଭାବରେ ଜଡ଼ିତ ଅଛନ୍ତି ।

ଚିତ୍ ବିଷୟରେ ବେଦବାକ୍ୟ—

ନ କାବ୍ୟା ବେଧସଃ ଶଶ୍ୱତସ୍କହସ୍ତେ
ଦଧାନୋ ନର୍ଯ୍ୟା ପୁରୂଣି ।
ଅଗ୍ନିର୍ଭୁବଦ୍ରୟିପତୀ ରୟୀଣାଂ
ସତ୍ରା ଚକ୍ରାଣେ ଅମୃତାନି ବିଶ୍ୱା ॥

ଋକ୍ସଂହିତା ୧-୭୨-୧ ॥

ସେହି ବିଦ୍ୱାନ୍ ପୁରୁଷ ସର୍ବବିଦ୍ୟାର ଧାରଣକର୍ତ୍ତା, ଅନାଦିସ୍ୱରୂପ ପରମେଶ୍ୱର-କର୍ତ୍ତୃକ ପ୍ରକାଶିତ, ନାନାବିଧ ସତ୍ୟାର୍ଥର ପ୍ରକାଶକ, ମୋକ୍ଷଦାତା ଓ ମନୁଷ୍ୟର ସୁଖମୂଳ ଜ୍ଞାନରାଶିକୁ ପ୍ରତ୍ୟକ୍ଷ ପଦାର୍ଥଗୁଡ଼ିକ ହସ୍ତରେ ଧାରଣ କରି ଧାର୍ମିକଙ୍କୁ ନିଶ୍ଚିତରୂପରେ ଜ୍ଞାନ-ଧନରେ ପୂର୍ଣ୍ଣ କରନ୍ତି । ସେ ଅନନ୍ତ ବିଦ୍ୟା ଓ ଧନୈଶ୍ବର୍ଯ୍ୟକୁ ରକ୍ଷା କରନ୍ତି ; ଏବଂ ଅନନ୍ତ ଶୋଭା ବା ସୌନ୍ଦର୍ଯ୍ୟ ବର୍ଦ୍ଧନ କରନ୍ତି ।

ଆନନ୍ଦ ବିଷୟରେ ବେଦବାକ୍ୟ—

କସ୍ତ୍ୱା ସତ୍ୟୋମଦାନାଂ ମଁହିଷ୍ଠୋ ମତ୍ ସଦନ୍ଧସଃ ।
ଦୃଢ଼ା ଚିଦାରୁଜେ ବସୁ ॥

ଯଜୁଃ-୩୬-୫ ॥

ଅର୍ଥାତ୍—"ହେ ମନୁଷ୍ୟ, ଆନନ୍ଦସମୂହମଧ୍ୟରେ ଯେଉଁ ବ୍ରହ୍ମ ସର୍ବଶ୍ରେଷ୍ଠ ଓ ନିତ୍ୟ ସୁଖସ୍ୱରୂପ ଓ ଯାହା ଅବିନଶ୍ୱର ସେହି ବ୍ରହ୍ମ ତୁମ୍ଭଙ୍କୁ ଅନ୍ନାଦିଦ୍ରବ୍ୟ ସାହାଯ୍ୟରେ ଆନନ୍ଦ ଦାନ କରନ୍ତି ଏବଂ ଦ୍ରୋହଶୂନ୍ୟ ଜୀବଙ୍କୁ ଶାଶ୍ୱତ ଧନ ପ୍ରଦାନ କରନ୍ତି ।" ଉପର୍ଯ୍ୟୁକ୍ତ ସୂକ୍ତ ଅନୁସାରେ ବ୍ରହ୍ମଙ୍କର ଲକ୍ଷଣ ଏକ ଓ ଅଦ୍ୱିତୀୟ ନିର୍ଗୁଣ ବ୍ରହ୍ମଙ୍କ ପ୍ରତି ଲକ୍ଷ୍ୟ ରଖି କରାଯାଇଅଛି । ସେହି ଅର୍ଥରେ ଆଚାର୍ଯ୍ୟ ଶଙ୍କର ମଧ୍ୟ ବର୍ଣ୍ଣନ କରିଅଛନ୍ତି—

ସତ୍ତ୍ୱଂ ଚିତ୍ତ୍ୱଂ ତଥାନନ୍ଦଃ ସ୍ୱରୂପଂ ପରମାତ୍ମନଃ ।
ନିର୍ଗୁଣସ୍ୟ ଗୁଣାଯୋଗାତ୍ ଗୁଣାସ୍ତୁ ନ ଭବନ୍ତି ତେ ॥
ବିଶେଷଣନ୍ତୁ ବ୍ୟାବୃତ୍ତ୍ୟୈ ଭବେଦ୍ ଦ୍ୱ୍ୟାନ୍ତରେ ସତି ।
ପରମାତ୍ମା ଦ୍ୱିତୀୟୋଽୟଂ ପ୍ରପଞ୍ଚସ୍ୟ ମୃଷା ତ୍ୱତଃ ॥
ବସ୍ତ୍ୱନ୍ତରସ୍ୟାଭାବେନ ନ ବ୍ୟାବୃତ୍ୟଃ କଦାଚ ନ ।
କେବଲୋ ନିର୍ଗୁଣଶ୍ଚେତି ନିର୍ଗୁଣତ୍ୱଂ ନିରୂଚ୍ୟତେ ॥

ସର୍ବବେଦାନ୍ତ ସି. ସାର ॥ ୭୫-୭୭ ॥

ସତ୍ତ୍ୱ, ଚିତ୍ତ୍ୱ (ଜ୍ଞାନ) ଏବଂ ଆନନ୍ଦ ପରମାତ୍ମାଙ୍କର ସ୍ୱରୂପ ; ନିର୍ଗୁଣ ଆତ୍ମାରେ ଗୁଣସମ୍ବନ୍ଧ ରହିପାରେ ନାହିଁ ; (ସତ୍ତ୍ୱ, ଚିତ୍ତ୍ୱ ଆନନ୍ଦ ଯଦି ଧର୍ମ ହୁଏ, ତାହାହେଲେ ଏହା ସବୁ ବ୍ରହ୍ମର ବିଶେଷଣ ହୋଇଯିବ ; କିନ୍ତୁ ବିଶେଷଣ ଇତରର ନିଷେଧକ ହୁଏ ; ଏଠାରେ ପରମାତ୍ମବ୍ୟତିରିକ୍ତ ଅନ୍ୟ ପଦାର୍ଥ ନ ଥିବାରୁ ଏହି ବିଶେଷଣ କା'ର ନିଷେଧ କରିବ । ଅନ୍ୟପ୍ରକାରେ—ଯଦି ପରମାତ୍ମଭିନ୍ନ ଅନ୍ୟ ପଦାର୍ଥ ଥା'ନ୍ତା, ତେବେ ବିଶେଷଣ ବ୍ୟାବୃତ୍ତିର (ଅପର ନିଷେଧର) ନିମିତ୍ତ ହୁଅନ୍ତା । ଜଗତକୁ ମିଥ୍ୟା ବୋଲି ପ୍ରମାଣିତ କରିବା-ଦ୍ୱାରା ବ୍ରହ୍ମହିଁ ଅଦ୍ୱିତୀୟ ବସ୍ତୁ ବୋଲି ପ୍ରମାଣିତ ହୁଏ । ପରମାତ୍ମାବ୍ୟତୀତ ଅନ୍ୟ ବସ୍ତୁର ଅଭାବ ହେତୁରୁ ଅନ୍ୟ ବସ୍ତୁ କେବେହେଁ ନିଷେଧ ହୋଇପାରିବ ନାହିଁ ; କାରଣ— କେବଳ ବ୍ରହ୍ମର ନିର୍ଗୁଣତ୍ୱପ୍ରତିପାଦକ ଶ୍ରୁତି ନିର୍ଗୁଣତ୍ୱ ନିରୂପଣ କରେ । ଅତଏବ—

ଶ୍ରୁତ୍ୟୈବ ନ ତତସ୍ତେଷାଂ ଗୁଣତ୍ୱମୁପପଦ୍ୟତେ ।
ଉଷ୍ଣତ୍ୱଞ୍ଚ ପ୍ରକାଶଶ୍ଚ ଯଥା ବହ୍ନେସ୍ତଥାତ୍ମନଃ ॥

ସତ୍ତ୍ୱଚିତ୍ତ୍ୱାନନ୍ଦତାଦି ସ୍ୱରୂପମିତି ନିର୍ଣ୍ଣିତମ୍ ।
ଅତଏବ ସ୍ୱଜାତୀୟ ବିଜାତୀୟାଦି ଲକ୍ଷଣଃ ॥
ଭେଦୋ ନ ବିଦ୍ୟତେ ବସ୍ତୁନ୍ୟଦ୍ୱିତୀୟେ ପରମାତ୍ମନି ॥

ପ. ବେ ସି ସା. ୬୭୭-୬୭୯ ॥

ଶ୍ରୁତି-ପ୍ରମାଣଦ୍ୱାରା ମଧ୍ୟ ସତ୍ତ୍ୱ, ଚିତ୍ତ୍ୱ ଓ ଆନନ୍ଦ ବ୍ରହ୍ମଙ୍କର ଗୁଣରୂପେ ଉପପନ୍ନ ହୁଏ ନାହିଁ । ଯେପରି ଉଷ୍ଣତା ଓ ପ୍ରକାଶ ଅଗ୍ନିର ସ୍ୱରୂପ, ସେହିପରି ସତ୍ତ୍ୱ ଚିତ୍ତ୍ୱ ଓ ଆନନ୍ଦ ବ୍ରହ୍ମଙ୍କର ସ୍ୱରୂପ—ଏହା ହିଁ ନିଶ୍ଚିତ । ଅତଏବ ଅଦ୍ୱିତୀୟ ବସ୍ତୁ ପରମାତ୍ମାଙ୍କର ସଜାତୀୟ ବିଜାତୀୟ ପ୍ରଭୃତି ଭେଦ ନାହିଁ ।

ଆହୁରି ମଧ୍ୟ କଥିତ ଅଛି—

ପ୍ରକାଶୋଽର୍କସ୍ୟ ତୋୟସ୍ୟ ଶୈତ୍ୟମଗ୍ନେର୍ୟଥୋଷ୍ଣତା ।
ସ୍ୱଭାବଃ ସଚ୍ଚିଦାନନ୍ଦନିତ୍ୟନିର୍ମଳତାତ୍ମନଃ ॥

ଆତ୍ମବୋଧ-୨୩ ॥

ସୂର୍ଯ୍ୟର ପ୍ରକାଶ କରିବା ଯେପରି ଗୁଣ, ଜଳର ଶୈତ୍ୟ ଓ ଅଗ୍ନିର ଉଷ୍ଣତା, ପରମାତ୍ମାଙ୍କର ମଧ୍ୟ ସ୍ୱଭାବ ସତ୍‌ଚିତ୍ ଆନନ୍ଦ, ନିତ୍ୟ ଓ ନିର୍ମଳ ।

ଅଖଣ୍ଡ ସଚ୍ଚିଦାନନ୍ଦମବାଙ୍ମନସଗୋଚରମ୍ ॥

ବେଦାନ୍ତସାର ॥

ଅର୍ଥାତ୍ ବ୍ରହ୍ମ ପୂର୍ଣ୍ଣ, ସତ୍ୟ ଜ୍ଞାନମୟ, ଆନନ୍ଦସ୍ୱରୂପ ଏବଂ ବାକ୍ୟ ଓ ମନର ଅଗୋଚର । ଉପର୍ଯ୍ୟୁକ୍ତ ଶ୍ରୁତିଯୁକ୍ତିରୁ ନିର୍ଣ୍ଣୀତ ହେଉଅଛି ଯେ, ନିର୍ଗୁଣ ପରଂବ୍ରହ୍ମ ସଚ୍ଚିଦାନନ୍ଦସ୍ୱରୂପ ଓ ସେ ସତ୍ୟ, ଜ୍ଞାନ, ଅନନ୍ତ ଆନନ୍ଦଲକ୍ଷଣରେ ପୂର୍ଣ୍ଣ ଲକ୍ଷିତ । ଏହା ଉପଦିଷ୍ଟ ଜ୍ଞାନୀ ଓ ଅନୁଭବୀ ବ୍ୟକ୍ତି ସମ୍ୟକ୍ ବିଦିତ ହୋଇ ଅନ୍ୟମାନଙ୍କ ଅସଦ୍ ଯୁକ୍ତିରେ ମୋହିତ ହେବେ ନାହିଁ—ଏହା ହିଁ ବିଶୁଦ୍ଧାଦ୍ୱୈତ ସତ୍ୟ ବ୍ରହ୍ମବାଦର ଅଭିପ୍ରାୟ । ଛାନ୍ଦୋଗ୍ୟଶ୍ରୁତିରେ ସନତ୍କୁମାର ଏହି ଅଦ୍ୱିତୀୟ ପରଂବ୍ରହ୍ମଙ୍କୁ 'ଭୂମା' ନାମରେ କହି ପରଂବ୍ରହ୍ମଙ୍କର ସର୍ବବ୍ୟାପିତ୍ୱ ଓ ଅମୃତତ୍ୱରୂପକ ମହିମା ଅଭିବ୍ୟକ୍ତ କରିଅଛନ୍ତି ।

ଅଧୀହି ଭଗବ ଇତି ହୋପସସାଦ
ସନତ୍କୁମାରଂ ନାରଦସ୍ତଂ ହୋ ବାଚ ।

ଯଦ୍ୱେତ୍ଥ ତେନ ମୋପସୀଦ
ତତସ୍ତ ଊର୍ଦ୍ଧ୍ୱଂ ବକ୍ଷ୍ୟାମୀତ ॥

ଛାନ୍ଦୋଗ୍ୟ ଉ. ୭-୧-୧ ।

ଏକ ସମୟରେ ନାରଦ ମହର୍ଷି ମହାଯୋଗୀ ସନତ୍କୁମାରଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରଶ୍ନ କଲେ—ଭଗବନ୍ ! ଅନୁଗ୍ରହ କରି ମତେ ବ୍ରହ୍ମବିଦ୍ୟାବିଷୟକ ଉପଦେଶ ଦିଅନ୍ତୁ । ସନତ୍କୁମାର ଏହି ପ୍ରଶ୍ନ ଶ୍ରବଣ କରି କହିଲେ—"ହେଉ, ତୁମ୍ଭେ କେଉଁ କେଉଁ ଶାସ୍ତ୍ରବିଷୟରେ ଜ୍ଞାନଲାଭ କରିଅଛ ତାହା ଆଗେ ଆମ୍ଭଙ୍କୁ ଅବଗତ କରାଅ, ଆମ୍ଭେ ତାହା ପରେ ତୁମ୍ଭଙ୍କୁ ଉପଦେଶ ପ୍ରଦାନ କରିବୁ । ତତ୍ପରେ ନାରଦ କହିଲେ, ମୁଁ ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଇତିହାସ, ପୁରାଣ, ବ୍ୟାକରଣ; ଗଣିତବିଦ୍ୟା, ଭୂମିକମ୍ପ ପ୍ରଭୃତିର କାଳନିର୍ଣ୍ଣୟାତ୍ମକ ଶାସ୍ତ୍ର, ଭୂତବିଦ୍ୟା, କ୍ଷତ୍ରବିଦ୍ୟା, ତର୍କଶାସ୍ତ୍ର, ଶିକ୍ଷାକଳ୍ପ ପ୍ରଭୃତି ବେଦର ଷଡ଼ଙ୍ଗ ଭୂତତନ୍ତ୍ର ନିର୍ଣ୍ଣାୟକଶାସ୍ତ୍ର, ଧନୁର୍ବିଦ୍ୟା, ଜ୍ୟୋତିଷଶାସ୍ତ୍ର, ସର୍ପବିଦ୍ୟା, ବିଜ୍ଞାନ, ନାନାବିଧ ସୂକ୍ଷ୍ମକଳାତ୍ମକ ଶିଳ୍ପବିଦ୍ୟା ଅଧ୍ୟୟନ କରିଅଛି । କିନ୍ତୁ ଦେବ ! ଏତେ ବିଦ୍ୟା ଜ୍ଞାତ ହେଲେ ମଧ୍ୟ ସେହି ସେହି ଶାସ୍ତ୍ରର ତତ୍ତ୍ୱ ଅଜ୍ଞାତରୂପରେ ଜଣାଯାଏ ; କାରଣ, ପରମାତ୍ମତତ୍ତ୍ୱ ବିଷୟରେ ମୁଁ ଅଜ୍ଞ । ଏହିପରି କହି ନାରଦ ଶିଷ୍ୟଭାବରେ ପ୍ରାର୍ଥନା କଲେ—

ସୋଽହଂ ଭଗବଃ ଶୋଚାମି ତଂ ମା ଭଗବାନ୍
ଶୋକାସ୍ୟ ପାରଂ ତାରୟତୁ ॥

ଛାନ୍ଦୋଗ୍ୟ—୭-୧-୩ ॥

ହେ ଭଗବନ୍ ! ତଥାପି ମୁଁ ଶୋକର ଅଧୀନ ; ମତେ ଶୋକ-ସାଗରରୁ ଉତ୍ତୀର୍ଣ୍ଣ କରନ୍ତୁ । ତତ୍ପରେ ସନତ୍କୁମାର କ୍ରମଶଃ ନାରଦଙ୍କୁ ଭୂମା-ତତ୍ତ୍ୱର ଉପଦେଶ ପ୍ରଦାନ କଲେ । ପ୍ରଥମରୁ ବାକ୍, ପ୍ରାଣ, ମନ, ବୁଦ୍ଧି ପ୍ରଭୃତିର ଅଧିଷ୍ଠାତ୍ରୀ ଦେବତାଙ୍କର ଉପାସନା ଓ ତତ୍ଫଳ ନାନାବିଧଭାବରେ ବ୍ୟାଖ୍ୟା କରିବା ପରେ ପୁନଶ୍ଚ ନାରଦ ପ୍ରକୃତ ତତ୍ତ୍ୱ ଜିଜ୍ଞାସା କରିବାରୁ ସନତ୍କୁମାର ପ୍ରକୃତ ତତ୍ତ୍ୱର ଉପଦେଶ ପ୍ରଦାନ କରି କହିଲେ—

ଯୋ ବୈ ଭୂମା ତତସୁଖଂ ନାଲ୍ପେ ସୁଖମସ୍ତି ଭୂମୈବ ସୁଖଂ ଭୂମାତ୍ୱେବ ବିଜିଜ୍ଞାସିତବ୍ୟଃ ଇତି ଭୂମାନଂ ଭଗବୋ ବିଜିଜ୍ଞାସ ଇତି ।

ଛାଂ ୭-୨୩-୧ ॥

ସନତ୍‌କୁମାର କହିଲେ—ଯେ ଭୂମା, 'ମହାନ୍', ସେହି କେବଳ ସୁଖସ୍ୱରୂପ; କୌଣସି କ୍ଷୁଦ୍ର ବସ୍ତୁରେ ସୁଖ ନାହିଁ । ସେହି ଭୂମା ବା ସେହି ମହାନ୍‌ହିଁ ଆନନ୍ଦସ୍ୱରୂପ; ଅତଏବ ନିରତିଶୟ-ଆନନ୍ଦଲାଭ କରିବା ନିମନ୍ତେ ସେହି ଭୂମା ପରମାର୍ଥତତ୍ତ୍ୱ ପରମାତ୍ମା କ'ଣ ? ଏହାହିଁ ଜାଣିବା ନିମନ୍ତେ ପ୍ରୟାସୀ ହେବା ଉଚିତ । ନାରଦ କହିଲେ— ଦେବ ! ମୁଁ ତ ସେହି ଭୂମା ପରମାର୍ଥତତ୍ତ୍ୱ ପରମାତ୍ମାଙ୍କୁ ଜାଣିବାକୁ ଚାହେଁ ।

ଯତ୍ର ନାନ୍ୟତ୍ ପଶ୍ୟତି ନାନ୍ୟଚ୍ଛୃଣୋତି ନାନ୍ୟଦ୍ ବିଜାନାତି ସ ଭୂମାଽଥ ଯତ୍ରାନ୍ୟତ୍ ପଶ୍ୟତି ଅନ୍ୟଚ୍ଛୃଣୋତି ଅନ୍ୟଦ୍ ବିଜାନାତି ତଦଳ୍ପଂ ଯୋ ବୈ ଭୂମା ତଦମୃତମଥ ଯଦଳ୍ପଂ ତନ୍ମର୍ତ୍ତ୍ୟଂ ସ ଭଗବଃ କସ୍ମିନ୍ ପ୍ରତିଷ୍ଠିତ ଇତି ସ୍ୱେ ମହିମ୍ନି ଯଦି ବା ନ ମହିମ୍ନୀତି ॥

ଛାଃ ଉଃ ୭-୨୪ ୧ ॥

ଯେଉଁଠାରେ ଆପଣାଠାରୁ ପୃଥକ୍ ରୂପରେ ପଦାର୍ଥାନ୍ତରର ଦର୍ଶନ, ଶ୍ରବଣ ବା ଚିନ୍ତନ ହୁଏ ନାହିଁ, ତାହାହିଁ ଭୂମା ; ତାହାହିଁ ଅନନ୍ତ । ପୁନଶ୍ଚ ଯେଉଁଠାରେ ତାହା ହୁଏ— ଦ୍ରଷ୍ଟା ଯେଉଁଠାରେ ଆପଣାଠାରୁ ପୃଥକ୍‌ରୂପରେ ପଦାର୍ଥାନ୍ତରର ଦର୍ଶନ, ଶ୍ରବଣ ଓ ଚିନ୍ତନ କରନ୍ତି, ତାହାହିଁ ଅଳ୍ପ, ତାହା ପରିମିତ । ଯାହା ଭୂମା, ତାହା ଅମୃତ ; ଯାହା ଅଳ୍ପ, ତାହା ମର୍ତ୍ତ୍ୟ, ଅର୍ଥାତ୍ ମରଣଶୀଳ । ସନତ୍‌କୁମାରଙ୍କଠାରୁ ନାରଦ ଏହି ଅପୂର୍ବ ତତ୍ତ୍ୱଶ୍ରବଣ କରି ଜିଜ୍ଞାସା କଲେ—ଦେବ ! ସେହି ଭୂମା କେଉଁଠାରେ ଅବସ୍ଥିତ ? ସନତ୍‌କୁମାର ଉତ୍ତର ଦେଲେ—ସେ ଆତ୍ମମହିମାରେ ନିତ୍ୟ ପ୍ରତିଷ୍ଠିତ ଅଛନ୍ତି ; ପ୍ରକୃତ ପକ୍ଷରେ ସେ ମହିମା ମଧ୍ୟ ତାଙ୍କର ପ୍ରତିଷ୍ଠାଭୂମି ନୁହେଁ ; ସେ କାହାର ମଧ୍ୟ ଆଶ୍ରୟ ଗ୍ରହଣ ନ କରି ଅବସ୍ଥାନ କରିଅଛନ୍ତି ।

ଅର୍ଥାତ୍—ଆତ୍ମାଦେଶ ଏବାତ୍ମୈବାଧସ୍ତାଦାତ୍ମୋପରିଷ୍ଟାଦାତ୍ମା ପଶ୍ଚାଦାତ୍ମା ପୁରସ୍ତାଦାତ୍ମା ଦକ୍ଷିଣତ ଆତ୍ମୋତ୍ତରତ ଆତ୍ମୈବେଦଂ ସର୍ବମିତି । ସ ବା ଏଷ ଏବଂ ପଶ୍ୟଂନ୍ନେବଂ ମନ୍ୱାନ ଏବଂ ବିଜାନନ୍ନାତ୍ମରତିରାତ୍ମକ୍ରୀଡ଼ ଆତ୍ମମିଥୁନ ଆତ୍ମାନନ୍ଦଃ ସ ସ୍ୱରାଡ୍ ଭବତି, ତସ୍ୟ ସର୍ବେଷୁ ଲୋକେଷୁ କାମଚାରୋ ଭବତି । ଅଥ ଯେଽନ୍ୟଥାଽତୋ ବିଦୁରନ୍ୟରାଜାନସ୍ତେ କ୍ଷଯ୍ୟଲୋକା ଭବନ୍ତି ; ତେଷାଂ ସର୍ବେଷୁ ଲୋକେଷ୍ୱକାମଚାରୋ ଭବତି ॥

ଛାନ୍ଦୋଗ୍ୟ ଉଃ—୭ । ୨୫ । ୨ ॥

ପୁନଶ୍ଚ—ଆତ୍ମା କହିଲେ ଯାହା ବୁଝାଏ, ତାହା ମଧ୍ୟ ଏହି ଅନନ୍ତ, ଅବ୍ୟୟ 'ଭୂମା' ବ୍ରହ୍ମଚୈତନ୍ୟ କେବଳ । ଅତଏବ ଆତ୍ମାହିଁ ଊର୍ଦ୍ଧ୍ୱ, ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣରେ ସର୍ବତ୍ର ନିତ୍ୟ ବର୍ତ୍ତମାନ ରହିଅଛନ୍ତି ଏବଂ ସେ ଏହି ବିପୁଳ ଆକାରରେ ନିତ୍ୟ ଅଭିବ୍ୟକ୍ତ ହୋଇ ଅବସ୍ଥାନ କରି ଅଛନ୍ତି । ଯେ ଦର୍ଶନ ଓ ମନନଦ୍ୱାରା ଆତ୍ମାଙ୍କୁ ପୂର୍ବୋକ୍ତ ରୂପରେ ଜାଣିପାରେ, ତାହାର ପ୍ରୀତି, ସମସ୍ତ ଆନନ୍ଦ, ତାହାଠାରେ ସ୍ଥାପିତ ହୁଏ । ଲୌକିକ କୌଣସି ଆନନ୍ଦ ସେ ସମୟରେ ତାହାଙ୍କୁ କୌଣସି ପ୍ରକାରେ ମୁଗ୍‌ଧ କରିପାରେ ନାହିଁ । ସେ ସ୍ୱାଧୀନ ହୋଇ ସକଳ ଲୋକରେ ଇଚ୍ଛା ଅନୁସାରେ ଅଧିକାର ଲାଭ କରିଛନ୍ତି । ଯେଉଁମାନେ ଏହାର ବିପରୀତ ଜ୍ଞାନଲାଭ କରନ୍ତି, ବିରାଟ୍ ଏହି ବିଶ୍ୱର ପ୍ରତ୍ୟେକ ପଦାର୍ଥକୁ ଆତ୍ମାଠାରୁ ପୃଥକ୍‌ରୂପରେ ଦର୍ଶନ କରନ୍ତି, ସେମାନେ ପରାଧୀନ ହୋଇ ଅଚିରସ୍ଥାୟୀ ଭୋଗସମ୍ପଦ ଲାଭ କରନ୍ତି । କୌଣସିଠାରେ ସେମାନଙ୍କର ଇଚ୍ଛାନୁକୂଳ ଅଧିକାର ସ୍ଥାପିତ ହୋଇପାରେ ନାହିଁ । ଏହିପରି ଭୂମାତତ୍ତ୍ୱ (ପରମାତ୍ମତତ୍ତ୍ୱ) ଉପଦେଶ ପ୍ରଦାନ କରି ସିଦ୍ଧ ଯୋଗୀ ସନତ୍‌କୁମାର ମହର୍ଷି ନାରଦଙ୍କୁ ଅଜ୍ଞାନର ପରପାରକୁ ଉତ୍ତୀର୍ଣ୍ଣ କରାଇଥିଲେ ।

ଆହାରଶୁଦ୍ଧୌ * ସତ୍ତ୍ୱଶୁଦ୍ଧିଃ ସତ୍ତ୍ୱଶୁଦ୍ଧୌ ଧ୍ରୁବା ସ୍ମୃତିଃ ସ୍ମୃତିଲମ୍ଭେ ସର୍ବଗ୍ରନ୍ଥୀନାଂ ବିପ୍ରମୋକ୍ଷସ୍ତସ୍ମୈ ମୃଦିତକଷାୟାୟ ତମସଃ ପାରଂ ଦର୍ଶୟତି ଭଗବାନ୍ ସନତ୍‌କୁମାର ସ୍ତଂ ସ୍କନ୍ଦଇତ୍ୟାଚକ୍ଷତେ ॥

ଛାଂ ଉ: ୭ । ୨୬ । ୨ ॥

ଗନ୍ଧ, ସ୍ପର୍ଶ ପ୍ରଭୃତି ବିଷୟ ଆକର୍ଷଣ ଯେତେବେଳେ ଚିତ୍ତବୃତ୍ତିକୁ ଚଞ୍ଚଳ କରି ସୁଖ ଦୁଃଖର ତରଙ୍ଗରେ ଆଲୋଡ଼ିତ କରେ ନାହିଁ, ସେତେବେଳେ ସେହି ପ୍ରଶାନ୍ତଚିତ୍ତରେ ଭୂମା—ପରମାତ୍ମାଙ୍କର ଅଖଣ୍ଡ ସ୍ମୃତିଧାରା ସ୍ପଷ୍ଟରୂପରେ ପ୍ରବାହିତ ହୋଇ ଉଠେ ଏବଂ ସେ ସମୟରେ ଜୀବର ଜନ୍ମଜନ୍ମାନ୍ତର ସଞ୍ଚିତ ବାସନାସମୂହ ମାୟାମୋହଜାଲରୁ ଚିରକାଳ ନିମନ୍ତେ ମୁକ୍ତିଲାଭ କରେ । ଜ୍ଞାନ ଓ ବୈରାଗ୍ୟର ନିରନ୍ତର ଅଭ୍ୟାସଦ୍ୱାରା ନାରଦଙ୍କର ବିଷୟାସକ୍ତି ପ୍ରତି ଅନୁରାଗ ଯେତେବେଳେ ଚିରକାଳ ସକାଶେ ବିଦୂରିତ ହୋଇଗଲା, ସେତେବେଳେ ଭଗବାନ୍ ସନତ୍‌କୁମାର ତାଙ୍କୁ ମାୟାତୀତ ପରମାର୍ଥ ବ୍ରହ୍ମତତ୍ତ୍ୱର ଉପଦେଶ ପ୍ରଦାନ କଲେ ।

* ଆହାରଶୁଦ୍ଧୌ—ଆହାରଃ ଶବ୍ଦାଦିବିଷୟଜ୍ଞାନଂ, ତସ୍ୟ ଶୁଦ୍ଧିଃ = ରାଗଦ୍ୱେଷମୋହ-ଦୋଷୈରସଂସୃଷ୍ଟିଃ ତସ୍ମାନ୍ତୁ ସତ୍ୟମ୍ । ସତ୍ତ୍ୱଶୁଦ୍ଧାଃ = ସତ୍ତ୍ୱସ୍ୟ ପୂର୍ବୋକ୍ତ ଶୁଦ୍ଧିମତଃ ଅନ୍ତଃକରଣସ୍ୟ ଶୁଦ୍ଧିର୍ନିର୍ମଳତ, ଭବତୀତ ଶେଷଃ ।

ବ୍ୟାସ ଏହି ଭୂମାତତ୍ତ୍ୱ ସମ୍ବନ୍ଧରେ ବ୍ରହ୍ମସୂତ୍ରରେ ପ୍ରତିପାଦନ କରିଛନ୍ତି— "ଭୂମା ସମ୍ପ୍ରସାଦାଦଧ୍ୟୁପଦେଶାତ୍" ॥ ବ୍ରହ୍ମସୂତ୍ର—୧-୩-୮ ॥ ସୁଷୁପ୍ତି ସ୍ଥାନ, ଅର୍ଥାତ୍—ପ୍ରାଣ ସତ୍ତ୍ୱଚିତ୍ତରୂପ ଜୀବର ସଂକଳ୍ପାଦିରୂପଜୀବତ୍ତ୍ୱ ବର୍ଜିତ ପ୍ରସାଦରୂପ ଯେଉଁ ଅବସ୍ଥା ହୁଏ, ଯେଉଁ ଅବସ୍ଥାରେ ମଧ୍ୟ ପ୍ରସନ୍ନତା ପ୍ରାପ୍ତି ହୁଏ, ତାହାହିଁ ସୁଷୁପ୍ତି ବା ସଂପ୍ରସାଦ ; ଏହି ସ୍ୱରୂପରେ ଏହି ଅବସ୍ଥାରେ ଅବସ୍ଥିତ ପ୍ରାଣ 'ସୁଷୁପ୍ତି ସ୍ଥାନ' ନାମରେ କଥିତ ; ପ୍ରାଣଠାରୁ ଶ୍ରେଷ୍ଠ ବା ଉପରିସ୍ଥିତ ଭୂୟିଷ୍ଠତର ଉପଦେଶହେତୁ ପରମାତ୍ମାହିଁ ଭୂମା, ଅର୍ଥାତ୍ ବହୁତ୍ତ୍ୱ ବା ବୈପୁଲ୍ୟଶବ୍ଦବାଚ୍ୟ ହୁଏ ; କିନ୍ତୁ ପ୍ରାଣ ନୁହେ ।

ଛାନ୍ଦୋଗ୍ୟ ଶ୍ରୁତି ଅନୁସାରେ ସମ୍ପ୍ରସାଦଠାରୁ ବ୍ରହ୍ମ ଅଲଗା ।

**ଅଥ ଯ ଏଷ ସଂପ୍ରସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂ ଜ୍ୟୋତିରୂପଂ ସଂପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ ଏଷ ଆତ୍ମେତିହୋବାଚ ଏତଦମୃତମଭୟମେତଦ୍ ବ୍ରହ୍ମେତି ତସ୍ୟ ହ ବା ଏତସ୍ୟ ବ୍ରହ୍ମଣୋ ନାମ ସତ୍ୟମିତି ।**
ଛା. ଉ. ୮ । ୩ । ୪

ବର୍ତ୍ତମାନ ସତ୍ୟ-ବ୍ରହ୍ମବାଦ ବିଷୟରେ ଶ୍ରୁତିପ୍ରମାଣ—

ସୁଷୁପ୍ତି କାଳରେ ସର୍ବଦୁଃଖର ଅବସାନ ଅବସ୍ଥାରେ ଯେ ସମ୍ୟକ୍ ପ୍ରସନ୍ନ ଓ ପ୍ରଶାନ୍ତ ହୋଇ ଆପଣାର ଜ୍ଞାନପ୍ରଭାବରେ ଜଡ଼ ଶରୀର ପ୍ରତି ମିଥ୍ୟାମମତା ପରିତ୍ୟାଗ କରେ ଓ ପରମାତ୍ମା ଜ୍ୟୋତିକୁ ଲାଭ କରି ଆପଣାର ଯଥାର୍ଥସ୍ୱରୂପ ପ୍ରାପ୍ତ ହୁଏ, ସେହି କେବଳ ଆତ୍ମା । ସର୍ବଭୟନିବାରକ ମରଣାତୀତ ପରଂଜ୍ୟୋତିସ୍ୱରୂପ ହିଁ ବ୍ରହ୍ମ । ଏହାର ଅପର ନାମ ସତ୍ୟ । ଏହିପରି ଉପନିଷଦ୍‌ମାନଙ୍କରେ ସତ୍ୟ-ବ୍ରହ୍ମବାଦର ବିଷୟ ବର୍ଣ୍ଣିତ ହୋଇଅଛି । ଏହାର ବ୍ୟାଖ୍ୟା କରି ବାଦରାୟଣ ବ୍ରହ୍ମସୂତ୍ରରେ କହିଛନ୍ତି—

## ତତ୍ତୁ ସମନ୍ୱୟାତ୍ । ୧ । ୧ । ୪ ।

ସମନ୍ୱୟ ଭିନ୍ନ ଅନ୍ୟ ଉପାୟରେ ବିରୋଧ ସକଳ ମୀମାଂସିତ ହୋଇପାରେ ନାହିଁ । ଅର୍ଥାତ୍ ବେଦାନ୍ତବର୍ଣ୍ଣିତ ବ୍ରହ୍ମପଦାର୍ଥବୋଧ ଓ ବ୍ରହ୍ମର ଅବସ୍ଥିତି—ଏହି

ଉଭୟର ସମନ୍ୱୟଦ୍ୱାରା କେବଳ ମୀମାଂସା ହୋଇପାରେ । * ସକଳ ଉପନିଷଦ୍ ଶ୍ରୁତି ବ୍ରହ୍ମଙ୍କର ଯେପରି ସଚ୍ଚିଦାନନ୍ଦସ୍ୱରୂପ ପ୍ରତିପାଦନ କରେ, ବ୍ରହ୍ମସୂତ୍ରରେ ବାଦରାୟଣ ମଧ୍ୟ ସେହିପରି ନିର୍ଣ୍ଣୟ କରିଛନ୍ତି—

**ଅସମ୍ଭବସ୍ତୁ ସତୋଽନୁପପତ୍ତେଃ ॥ ୨-୩-୯**

ସୂତ୍ରାର୍ଥ— ସ୍ୱତଃ ଅଥବା ଅନ୍ୟ କେଉଁଠାରୁ ବ୍ରହ୍ମର ଉତ୍ପତ୍ତି ଆଶଙ୍କା କର ନାହିଁ; କାରଣ ତାହା ସମ୍ଭବ ନୁହେ । ବ୍ରହ୍ମ କେବଳ ସତ୍ । ତଦ୍‌ଭିନ୍ନ ଅନ୍ୟ କେହି ସତ୍ ନୁହନ୍ତି; ଅତଏବ ଅନ୍ୟ ଅସଦ୍ ବସ୍ତୁରୁ ଉତ୍ପତ୍ତି ଅସମ୍ଭବ ।

ବ୍ରହ୍ମ ସତ୍‌ସ୍ୱରୂପ—

"ଆହ ଚ ତନ୍ମାତ୍ରମ୍" । ୩-୨-୧୬ ।

ଶ୍ରୁତି ଅନୁସାରେ ବ୍ରହ୍ମ ନିର୍ବିଶେଷ, ଏକାକାର ଓ କେବଳ ଚୈତନ୍ୟ । ଆତ୍ମାର ଅନ୍ତର ବା ବାହ୍ୟ ନାହିଁ । ଚୈତନ୍ୟ ଭିନ୍ନ ଅନ୍ୟ ରୂପ ବା ଆକାର ନାହିଁ; ନିରବଚ୍ଛିନ୍ନ ଚୈତନ୍ୟ ହିଁ ପରମାତ୍ମାଙ୍କର ସର୍ବକାଳୀନ ରୂପ ।

---

* ତଦ୍‌ବ୍ରହ୍ମ ସର୍ବଜ୍ଞଂ ସର୍ବଶକ୍ତି ଜଗଦୁତ୍ପତ୍ତିସ୍ଥିତି ଲୟକାରଣଂ ବେଦାନ୍ତ ଶାସ୍ତ୍ରାଦବଗମ୍ୟତେ । କଥମ୍ ? ସମନ୍ୱୟାତ୍; ସର୍ବେଷୁ ହି ବେଦାନ୍ତେଷୁ ବାକ୍ୟାନି ତାତ୍ପର୍ଯ୍ୟେଣ ଏତସ୍ୟାର୍ଥସ୍ୟ ଏବ ପ୍ରତିପାଦକତ୍ୱେନ ସମନୁଗତାନି; "ସଦେବ ସୌମ୍ୟେଦମଗ୍ର ଆସୀତ୍ ଏକମେବାଦ୍ୱିତୀୟମ୍", "ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍," "ତଦେତଦ୍ ବ୍ରହ୍ମାପୂର୍ବମନପର ମନନ୍ତରମବାହ୍ୟମ୍", "ଅୟମାତ୍ମା ବ୍ରହ୍ମ ସର୍ବାନୁଭୂଃ", "ବ୍ରହ୍ମୈବେଦମମୃତଂ ପୁରସ୍ତାତ୍" ଇତ୍ୟାଦୀନି । ବେଦାନ୍ତଶାସ୍ତ୍ରଦ୍ୱାରା ଜଣାଯାଏ ଯେ, ସର୍ବଜ୍ଞ ଓ ସର୍ବଶକ୍ତି ବ୍ରହ୍ମ ହିଁ ଏହି ଦୃଶ୍ୟ ଜଗତର ସୃଷ୍ଟି ସ୍ଥିତିପ୍ରଳୟର କାରଣ ବା ନିଦାନ ! ଏହା ସମନ୍ୱୟରୁ କେବଳ ସିଦ୍ଧ ହୁଏ । ସମୁଦାୟ ବେଦାନ୍ତର ପ୍ରାୟ ସକଳବାକ୍ୟ ବ୍ରହ୍ମବ୍ୟାଖ୍ୟାନପର ଓ ବ୍ରହ୍ମପ୍ରତିପାଦନ ସକଳ ବେଦାନ୍ତ ବାକ୍ୟର ତାତ୍ପର୍ଯ୍ୟ । ବ୍ରହ୍ମବ୍ୟାଖ୍ୟାନପର ବେଦାନ୍ତବାକ୍ୟ ଏହିପରି—ହେ ସୌମ୍ୟ, (ଶ୍ୱେତକେତୋ) ସୃଷ୍ଟି ପୂର୍ବରୁ ଏହି ବିଶ୍ୱ କେବଳ ସତ୍, ଅର୍ଥାତ୍ ଅସ୍ତିତ୍ୱ ମାତ୍ର ଥିଲା । ଏକ ଓ ଅଦ୍ୱିତୀୟ । ଅଗ୍ରେ ଅର୍ଥାତ୍ ସୃଷ୍ଟି ପୂର୍ବରେ ଏହା ଏକମାତ୍ର ଆତ୍ମସ୍ୱରୂପ ଥିଲା । ସେହି ବ୍ରହ୍ମ ଜଗତ୍ ସୃଷ୍ଟିର ପୂର୍ବରେ ଥିଲେ, ପରେ ମଧ୍ୟ ରହିବେ; ସେ ଅନ୍ତରରେ ଓ ବାହାରେ ମଧ୍ୟ ଅଛନ୍ତି । ଅଥବା, ତାଙ୍କର କାରଣ ନାହିଁ, ଅତଃ ସେ କାର୍ଯ୍ୟ ବା ଜନ୍ୟ ନୁହନ୍ତି ! ତାଙ୍କର ଅନ୍ତର ନାହିଁ, ବାହାର ମଧ୍ୟ ନାହିଁ; ଅର୍ଥାତ୍ ସେ ଏକ ରସ । ଏହି ଆତ୍ମାହିଁ ବ୍ରହ୍ମ । ଏହା ସମସ୍ତଙ୍କର ଅନୁଭବଯୋଗ୍ୟ ବା ସର୍ବତ୍ର ଦେଦୀପ୍ୟମାନ । ଏହା କେବଳ ବ୍ରହ୍ମ ଓ ଅମୃତ ।

## ବ୍ରହ୍ମ ପରମାନନ୍ଦ ସ୍ୱରୂପ—ଆନନ୍ଦମୟୋଽଭ୍ୟାସାତ୍ ୧-୧-୧୨ ।

ବ୍ରହ୍ମ ହିଁ ଆନନ୍ଦମୟ; ଏହା ଅଭ୍ୟାସ (ଶାସ୍ତ୍ରପାଠ ଓ ସାଧନାଦି) ଦ୍ୱାରା ଉପଲବ୍ଧ ହୁଏ, ଏହି ଆନନ୍ଦ ପଞ୍ଚକୋଶାତ୍ମକ ନୁହେ । ଏହା ପରମାନନ୍ଦ, ଏବଂ ଆନନ୍ଦ କେବଳ ପରମାତ୍ମା ପରଂବ୍ରହ୍ମଙ୍କୁ ବୁଝାଏ । ଶ୍ରୁତିରେ ବ୍ରହ୍ମଙ୍କର ଆନନ୍ଦମୟତ୍ୱ ବହୁବାର ଉଦ୍‌ଘୋଷିତ ହୋଇଛି—

"ସତ୍ୟଂ ଜ୍ଞାନମନନ୍ତମାନନ୍ଦଂ ବ୍ରହ୍ମ," "ବିଜ୍ଞାନମାନନ୍ଦଂ ବ୍ରହ୍ମ"

ଇତ୍ୟାଦିଦ୍ୱାରା ଜଣାଯାଏ ଯେ ସେହି ଆନନ୍ଦର ବିକାର ନାହିଁ ; ଆନନ୍ଦପ୍ରଚୁର, ଆନନ୍ଦଘନ ।

**ବିକାରଶବ୍ଦାନ୍ନେତି ଚେନ୍ନ ପ୍ରାଚୁର୍ଯ୍ୟାତ୍**　　ବ୍ର: ସୂ: ୧-୧-୧୩

ଆନନ୍ଦମୟ ଶବ୍ଦଦ୍ୱାରା ବିକାରି ଜୀବ ବୋଧ୍ୟ ନୁହେ; କାରଣ ଏଠାରେ ମୟଟ୍ ପ୍ରତ୍ୟୟ ବିକାରାର୍ଥରେ ହୋଇନାହିଁ, କେବଳ ପ୍ରାଚୁର୍ଯ୍ୟାର୍ଥରେ ହୋଇଛି ।

**ତଦ୍ଧେତୁ ବ୍ୟପଦେଶାଚ୍ଚ ।**　　ବ୍ର: ସୂ: ୧-୧-୧୪

ଶ୍ରୁତି ବେଦକୁ ଆନନ୍ଦର କାରଣ ବୋଲି ନିର୍ଦ୍ଦେଶ କରିଅଛି । ଅତଏବ ଆନନ୍ଦମୟ ଶବ୍ଦରେ ମୟଟ୍ ପ୍ରତ୍ୟୟ ପ୍ରାଚୁର୍ଯ୍ୟ ଅର୍ଥରେ କରାଯାଇଛି । ବିକାରାର୍ଥରେ ନୁହେ । ବ୍ରହ୍ମଙ୍କର ଆନନ୍ଦ-ପ୍ରାଚୁର୍ଯ୍ୟ ବିଷୟରେ ଶ୍ରୁତି ପ୍ରମାଣ ଅଛି । ଅତଏବ ଆନନ୍ଦମୟ ଶବ୍ଦରେ ପରମାତ୍ମା ହିଁ ବୋଧ ।

**ଆନନ୍ଦାଦୟଃ ପ୍ରଧାନସ୍ୟ ।** ୩-୩-୧୧

ଆନନ୍ଦାଦି ଧର୍ମସମୂହ ବ୍ରହ୍ମଙ୍କ ବିଷୟରେ ସାର୍ବତ୍ରିକ, ଅର୍ଥାତ୍ ସର୍ବତ୍ର ସମୁଦାୟ ଧର୍ମ ସମାବେଶ କରି ବ୍ରହ୍ମତତ୍ତ୍ୱ ବୁଝିବାକୁ ହେବ । କାରଣ, ବ୍ରହ୍ମ ସର୍ବତ୍ରହିଁ ଅଭିନ୍ନ, ଅର୍ଥାତ୍ ଏକ । ସମୁଦାୟ ବେଦାନ୍ତ ଶାସ୍ତ୍ରରେ ବ୍ରହ୍ମ ଏକ ଓ ଅଦ୍ୱିତୀୟ ରୂପରେ କଥିତ । ଅତଏବ କୌଣସି ସ୍ଥାନରେ କୌଣସି ଏକ ବିଶେଷଣ ଅକଥିତ ହେଲେ ମଧ୍ୟ ବ୍ରହ୍ମ ଅଭିନ୍ନ ଓ ଏକ—ଏହା ନିର୍ବିବାଦ । ସତ୍, ଚିତ୍ ଓ ଆନନ୍ଦମୟ ବ୍ରହ୍ମଙ୍କର ସ୍ୱରୂପବୋଧକ ଏହି ବିଶେଷଣତ୍ରୟ ସର୍ବତ୍ର ବକ୍ତବ୍ୟ ।

## ଠ—ବ୍ରହ୍ମ ଏକ, କେବଳ ଲକ୍ଷଣ ଅନୁସାରେ ଦ୍ୱିବିଧ ଭାବ ପ୍ରକାଶିତ

ବେଦାନ୍ତ ଶାସ୍ତ୍ରରେ ଯେଉଁ ପରଂବ୍ରହ୍ମଙ୍କ ବିଷୟ ବର୍ଣ୍ଣିତ ହୋଇଛି ସେ ସଗୁଣ କି ନିର୍ଗୁଣ, ସବିକଳ୍ପ ନା ନିର୍ବିକଳ୍ପ, ବିଶେଷ କି ନିର୍ବିଶେଷ—ଇତ୍ୟାଦି ନାନା ପ୍ରଶ୍ନ ଉଠିଥାଏ

ହୁଏ । ଏପରି ପ୍ରଶ୍ନ ଦ୍ୱୈତ ଓ ଦ୍ୱୈତବାଦୀଙ୍କ ମନରେ ଜାଗ୍ରତ ହୁଏ; କିନ୍ତୁ ପୂର୍ବୋକ୍ତ ବର୍ଣ୍ଣନରେ ଏହି ସକଳ ପରସ୍ପର ବିରୋଧୀଭାବର ସମୂହସ୍ୱଭାବ ପ୍ରକାଶ କରାଯାଇଅଛି; ବେଦାନ୍ତର ଏହାହିଁ ଚରମ ସିଦ୍ଧାନ୍ତ । ଉପନିଷଦ୍‌ମାନଙ୍କର ଯେଉଁ ସ୍ଥାନରେ ବ୍ରହ୍ମଙ୍କର ସ୍ୱରୂପ ପ୍ରତିପାଦନ କରାଯାଇଛି, ସେହିଠାରେ ବ୍ରହ୍ମଙ୍କୁ ସମସ୍ତଗୁଣରହିତ, ଅର୍ଥାତ୍ ନିର୍ବିଶେଷ, ନିର୍ଗୁଣ, ନିରୁପାଧି ଇତ୍ୟାଦିରୂପରେ ବର୍ଣ୍ଣନ କରାଯାଇଅଛି, ଯେଉଁଠାରେ ବ୍ରହ୍ମଙ୍କର ତଟସ୍ଥ ଲକ୍ଷଣ ବର୍ଣ୍ଣିତ ହୋଇଛି, ସେଠାରେ ବ୍ରହ୍ମଙ୍କୁ ସଗୁଣ, ସବିଶେଷ ଇତ୍ୟାଦିରୂପରେ ଉଲ୍ଲେଖ କରାଯାଇଛି । ଏହିପରି ଉଭୟବିଧ ଲକ୍ଷଣ ଦେଖାଯିବାରୁ ଦ୍ୱୈତ ଓ ଅଦ୍ୱୈତବାଦୀମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ; କିନ୍ତୁ ବିଶୁଦ୍ଧାଦ୍ୱୈତବାଦୀମାନଙ୍କ ମତ ଅନୁସାରେ ସତ୍ୟ-ବ୍ରହ୍ମବାଦର ଚରମ ସିଦ୍ଧାନ୍ତ ଏହି ଯେ, ବ୍ରହ୍ମ ଏକ ଅଦ୍ୱିତୀୟ ଓ ସଚ୍ଚିଦାନନ୍ଦସ୍ୱରୂପ, ଏତଦ୍‌ଭିନ୍ନ ଅନ୍ୟ କୌଣସି ଲକ୍ଷଣ ବ୍ରହ୍ମର ନାହିଁ—ଏହା ଚୂଡ଼ାନ୍ତ ଓ ସ୍ଥିରତର ସିଦ୍ଧାନ୍ତ । ସୃଷ୍ଟିପ୍ରକ୍ରିୟାଦି କିମ୍ବା ନିମନ୍ତେ ବ୍ରହ୍ମଙ୍କୁ ସଗୁଣ ବା ସବିଶେଷ ବୋଲି ମଧ୍ୟ କୁହାଯାଇଛି, କିନ୍ତୁ ତାହା ଅଧ୍ୟାରୋପମାତ୍ର* । ପ୍ରକୃତରେ ନିର୍ଗୁଣ ଓ ନିରଞ୍ଜନ ପରଂବ୍ରହ୍ମହିଁ ଅଦ୍ୱିତୀୟ ତତ୍ତ୍ୱ । ସେହି ପରଂବ୍ରହ୍ମଙ୍କର ଅଦ୍ଭୁତ ମହିମାରୁ ବିଶ୍ୱସୃଷ୍ଟି ସମ୍ଭୂତ ହୁଏ; ସେହି ସୃଷ୍ଟିରେ ବିଶୁଦ୍ଧ ଓ ଅଦ୍ୱିତୀୟ ସ୍ୱରୂପରେ ପରଂବ୍ରହ୍ମଙ୍କର ସତ୍ତା ନିତ୍ୟ ପ୍ରତିଷ୍ଠିତ ଥାଏ; କିନ୍ତୁ ଏହା ସାଧାରଣ ବୁଦ୍ଧିର ଅଗମ୍ୟ ବା ଅଗୋଚର ।

ସକଳ ଉପନିଷଦ୍‌ମାନଙ୍କରେ ବ୍ରହ୍ମଙ୍କର ଅଦ୍ଭୁତ ମହିମା ପରସ୍ପର ବିରୁଦ୍ଧ ବିଶେଷଣସନ୍ନିବେଶରେ ପ୍ରତିପାଦିତ ହୋଇଛି; ବ୍ରହ୍ମ ଅଣୁ ଅପେକ୍ଷା ଅଣୁ, ମହାନ୍ ଅପେକ୍ଷା ମହାନ୍ ଏବଂ ସେ ଅଣୁ ନୁହନ୍ତି, ମହାନ୍ ହ୍ରସ୍ୱ ବା ଦୀର୍ଘ ମଧ୍ୟ ନୁହନ୍ତି; ସେ ଅଗନ୍ଧ, ଅସ୍ପର୍ଶ, ଅଲେଖ, ଅରୂପ, ଅନାମ, ଅବ୍ୟକ୍ତ, ଅଲକ୍ଷ୍ୟ—ଏପରି ଅଦ୍ଭୁତ ସ୍ୱରୂପରେ ବର୍ଣ୍ଣିତ ହୋଇଛନ୍ତି ।

**ଅଣୋରଣୀୟାନ୍ ମହତୋ ମହୀୟାନ୍** ଶ୍ୱେତାଶ୍ୱ: ଉ: ।

ଅର୍ଥାତ୍ ପରମାତ୍ମା ଅଣୁ ଅପେକ୍ଷା ଅଣୁ ଓ ମହାନ୍ ଅପେକ୍ଷା ମହାନ୍ । ଆହୁରି ମଧ୍ୟ—

**ଅପାଣିପାଦୋ ଜବନୋ ଗ୍ରହୀତା**
**ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।**
**ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା**
**ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ॥**

ଶ୍ୱେତାଶ୍ୱ: ଉ: ୩ । ୧୯ ।

* ଏକ ପଦାର୍ଥରେ ଭ୍ରମବଶତଃ ଅନ୍ୟ ପଦାର୍ଥର କଳ୍ପନା ।

ଅର୍ଥାତ୍ ସେହି ପରମକାରୁଣିକ ଜଗତ୍‌କର୍ତ୍ତାଙ୍କର ହସ୍ତ ନାହିଁ, ଅଥଚ ସେ ସକଳ ବସ୍ତୁ ଗ୍ରହଣ କରିପାରନ୍ତି । ତାହାଙ୍କର ପାଦ ନାହିଁ; କିନ୍ତୁ ସେ ଶୀଘ୍ରଗାମୀ । ଚକ୍ଷୁ ନାହିଁ, ଜଗତର ସକଳ ପଦାର୍ଥ ସେ ଦେଖୁଛନ୍ତି । କର୍ଣ୍ଣ ନାହିଁ, ଜଗତର ସକଳପ୍ରକାର ଶବ୍ଦ ସେ ଶୁଣିପାରନ୍ତି । ସେ ଅସୀମ ଜଗତର ସମସ୍ତ କାର୍ଯ୍ୟ ଜାଣୁ ଅଛନ୍ତି; କିନ୍ତୁ ତାହାଙ୍କୁ କେହି ଜାଣିପାରନ୍ତି ନାହିଁ ; ସୁତରାଂ ତାହାଙ୍କୁ ମହାନ୍ ପୁରୁଷ ବୋଲି କୀର୍ତ୍ତନ କରାଯାଏ ।

ଅଣୀୟାନ୍ ବ୍ରୀହେର୍ବା ଯବାଦ୍ ବା
ସର୍ଷପାଦ୍ ବା ଶ୍ୟାମାକାଦ୍ ବା ଶ୍ୟାମାକ-
ତଣ୍ଡୁଲାଦ୍ ବା — — ଜ୍ୟାୟାନ୍ ଦିବୋ
ଜ୍ୟାୟାନେଭ୍ୟୋ ଲୋକେଭ୍ୟଃ ।

ଛାନ୍ଦୋଗ୍ୟ ଉ:-୩-୧୪-୩

ଅର୍ଥାତ୍ ଏହି ପରଂବ୍ରହ୍ମ ବ୍ରୀହି ଅପେକ୍ଷା, ଯବ, ସର୍ଷପ ଶ୍ୟାମାକ ବା ଶ୍ୟାମାକର ତଣ୍ଡୁଳ ଅପେକ୍ଷା ଅଣୁ । ଏହି ଆତ୍ମା ହୃଦୟ ମଧ୍ୟରେ ଅବସ୍ଥିତ । ସେ ପୃଥିବୀ, ଅନ୍ତରୀକ୍ଷ, ଦିବ୍ ବା ସମସ୍ତ ବିଶ୍ୱ ଅପେକ୍ଷା ମଧ୍ୟ ବୃହତ୍ ।

ଅନେଜଦେକଂ ମନସୋ ଜବୀୟୋ
ନୈନଦ୍ଦେବା ଆପ୍ନୁବନ୍ ପୂର୍ବମର୍ଷତ୍ ।
ତଦ୍ଧାବତୋଽନ୍ୟାନତ୍ୟେତି ତିଷ୍ଠତ୍
ତସ୍ମିନ୍ନପୋ ମାତରିଶ୍ୱା ଦଧାତି ॥
ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ ।
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ॥

ଈଶ: ୪।୫ ॥

ବ୍ରହ୍ମ ସ୍ୱୟଂ ଏକ ଓ ନିଶ୍ଚଳ, ଅଥଚ ମନ ଅପେକ୍ଷା ମଧ୍ୟ ଅଧିକ ବେଗବାନ୍ । ଅତଏବ ଇନ୍ଦ୍ରିୟସକଳ ଏହାଙ୍କୁ ଲାଭ କରିପାରନ୍ତି । ସେ ନିଶ୍ଚଳସ୍ୱଭାବ ହେଲେ ମଧ୍ୟ ଦ୍ରୁତଗାମୀ । ମନ ପ୍ରଭୃତିକୁ ଅତିକ୍ରମ କରି ସର୍ବାଗ୍ରେ ଗମ୍ୟ ସ୍ଥାନରେ ପ୍ରବେଶ କରନ୍ତି । ବିଧାତା ହିରଣ୍ୟଗର୍ଭ ସେହି ବ୍ରହ୍ମଙ୍କ ସତ୍ତାଦ୍ୱାରା ଜୀବର ସକଳପ୍ରକାର କର୍ମଫଳ ସମ୍ପାଦନ କରିଥାନ୍ତି; ଅର୍ଥାତ୍ ହିରଣ୍ୟଗର୍ଭ ବ୍ରହ୍ମଙ୍କ ସତ୍ତାର ସତ୍ତା ଓ କ୍ରିୟାବାନ୍ ହୋଇ ପ୍ରାଣୀମାନଙ୍କର ପ୍ରାଣଧାରଣାଦି କ୍ରିୟା ଓ କ୍ରିୟାଫଳ ସମ୍ପାଦନ କରୁଅଛନ୍ତି । ସେହି କେବଳ ଅଗ୍ନିର ଦହନ ଓ ଜ୍ୱଳନ, ସୂର୍ଯ୍ୟର ବିଶ୍ୱପ୍ରକାଶ ଓ ମେଘର ବାରିବର୍ଷଣାଦି ସକଳ କର୍ମ ପୃଥକ୍ ପୃଥକ୍‌ଭାବରେ ସମ୍ପାଦନ କରୁଅଛନ୍ତି । ସେହି ପରମାତ୍ମା ସ୍ୱଭାବତଃ କ୍ରିୟାହୀନ, ନିଶ୍ଚଳ; ଅଥଚ ତାହାଙ୍କ

ତେଜରେ ହିଁ ସ୍ୱା ଅନୁଷ୍ଠିତ ହୁଏ, ସେହିହେତୁରୁ ସେ ଅଚଳ । ଅଜ୍ଞ ବ୍ୟକ୍ତିମାନେ କୋଟି କୋଟି ବର୍ଷରେ ମଧ୍ୟ ଆତ୍ମତତ୍ତ୍ୱ ଜାଣିପାରନ୍ତି ନାହିଁ । ଅତଏବ ଅଜ୍ଞମାନଙ୍କ ନିକଟରୁ ସେ ବହୁ ଦୂରରେ ଅବସ୍ଥିତ । ଯେଉଁ ଲୋକ ଆତ୍ମାର ସ୍ୱରୂପ ଉପଲବ୍‌ଧି କରିଅଛନ୍ତି, ସେମାନଙ୍କ ପକ୍ଷରେ ସେ ଅତି ନିକଟରେ । ଆତ୍ମା ସର୍ବବ୍ୟାପକ ବୋଲି ଜଗତର ଦୃଶ୍ୟାଦୃଶ୍ୟ ସକଳ ବସ୍ତୁ ଅନ୍ତର ଓ ବାହ୍ୟରେ ଅବସ୍ଥାନ କରିଅଛନ୍ତି ।

**୦—ନିର୍ଗୁଣ ପରଂବ୍ରହ୍ମ ସତ୍ୟର ସତ୍ୟସ୍ୱରୂପ, ସର୍ବନିୟନ୍ତା ଓ ସର୍ବପ୍ରଧାନ ।**

ଏହିରୂପରେ ଉପନିଷଦ୍ ବିଭିନ୍ନଭାବେ ବର୍ଣ୍ଣନା କରି ସଗୁଣ, ନିର୍ଗୁଣ, ସବିଶେଷ, ନିର୍ବିଶେଷ, ସୋପାଧିକ ଓ ନିରୁପାଧିକ—ଇତ୍ୟାଦି ବହୁ ବିରୋଧର ସମନ୍ୱୟ ବ୍ରହ୍ମଙ୍କଠାରେ କରିଅଛି; କିନ୍ତୁ ବ୍ରହ୍ମ ଅଦ୍ୱିତୀୟ ବିଶୁଦ୍ଧ ତତ୍ତ୍ୱ, ତାହା କେବେ ଦ୍ୱୈତ ବା ସଦ୍ୱିତୀୟ ନୁହେ ।

ପରାବିଦ୍ୟା ଉପଦେଶ ସମୟରେ ଅଙ୍ଗିରସ କହିଅଛନ୍ତି—

ଯତ୍ତଦଦ୍ରେଶ୍ୟ ମଗ୍ରାହ୍ୟମଗୋତ୍ର ମବର୍ଣ୍ଣମଚକ୍ଷୁଃ
ଶ୍ରୋତ୍ରଂ ତଦପାଣିପାଦମ୍ ।
ନିତ୍ୟଂ ବିଭୁଂ ସର୍ବଗତଂ ସୁସୂକ୍ଷ୍ମଂ ତଦବ୍ୟୟଂ
ଯଦ୍ ଭୂତଯୋନିଂ ପରିପଶ୍ୟନ୍ତି ଧୀରାଃ ॥
ମୁଣ୍ଡକ ଉ. ୧।୧।୬।

ଅର୍ଥାତ୍ ଯେ ଅଦ୍ରେଶ୍ୟ = ହସ୍ତପାଦାଦିଦ୍ୱାରା, ଅଗ୍ରାହ୍ୟ, ସକଳ କର୍ମେନ୍ଦ୍ରିୟର ଅବିଷୟ, ଯାହାର ଗୋତ୍ର ସମ୍ବନ୍ଧ ନାହିଁ, ଯେ ସ୍ଥୂଳତ୍ୱ-ସୂକ୍ଷ୍ମତ୍ୱାଦି ଧର୍ମରହିତ, ଯେ ଚକ୍ଷୁ, କର୍ଣ୍ଣ, ହସ୍ତପାଦାଦି ବିହୀନ, ଯେ ନିତ୍ୟ, ବ୍ରହ୍ମା ଆଦି ସ୍ଥାବରାନ୍ତ ପ୍ରାଣୀସମୂହର ଅଧିଷ୍ଠାତା, ସେହି ପରମାତ୍ମା ଆକାଶ ତୁଲ୍ୟ ସର୍ବବ୍ୟାପକ ବସ୍ତୁ । ଯେ ଅତୀବ ସୂକ୍ଷ୍ମ ଓ ଅପରିଣାମୀ, ଅଥଚ ସର୍ବଭୂତର କାରଣ, ତାଦୃଶ ଆତ୍ମ-ବସ୍ତୁକୁ ପଣ୍ଡିତଗଣ ସର୍ବଦା ଦର୍ଶନ କରିଥାନ୍ତି । ଏତାଦୃଶ ଅକ୍ଷର ବ୍ରହ୍ମ ଯେଉଁ ବିଦ୍ୟାଦ୍ୱାରା ଜଣାଯାନ୍ତି ତାହାର ନାମ ପରାବିଦ୍ୟା ।

ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣ-
ମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।
କବିର୍ମନୀଷୀ ପରିଭୂଃ ସ୍ୱୟଂଭୂ
ର୍ଯାଥାତଥ୍ୟତୋଽର୍ଥାନ୍
ବ୍ୟଦଧାତ୍ ଶାଶ୍ୱତୀଭ୍ୟଃ ସମାଭ୍ୟଃ । ଈଶ. ଉ. ୮ ।

ଅର୍ଥାତ୍ ସେହି ପରମାତ୍ମା ସର୍ବତ୍ର ଆକାଶତୁଲ୍ୟ ବ୍ୟାପି ରହିଅଛନ୍ତି ଏବଂ ସେ ସ୍ୱପ୍ରକାଶକ ଓ ସୂକ୍ଷ୍ମ ଶରୀର ରହିତ ; ସେ ଖଣ୍ଡିତ ନୁହନ୍ତି ; ଆଉ ମଧ୍ୟ ତାଙ୍କର ଶିର ନାହିଁ, ଅର୍ଥାତ୍ ତାଙ୍କର ସ୍ଥୂଳଶରୀର ମଧ୍ୟ ନାହିଁ । ସେ ନିର୍ମଳ, ପାପ ପୁଣ୍ୟ ଉଭୟରୁ ଅଲିପ୍ତ । ସେ ସକଳ ପଦାର୍ଥ ଦେଖି ପାରୁଛନ୍ତି ; ସେ ମନର ନିୟାମକ, ସକଳଙ୍କ ଉପରି ବର୍ତ୍ତମାନ । ସେ ସୃଷ୍ଟିକାଳରେ ସ୍ୱୟଂପ୍ରକାଶ । ନିତ୍ୟମୁକ୍ତ ସେହି ପରମାତ୍ମା ଅନାଦି ସମୟରୁ ସକଳ ପଦାର୍ଥରେ ପରିବ୍ୟାପ୍ତ ରହି ପ୍ରଜା ଓ ପ୍ରଜାପତି ସମସ୍ତଙ୍କର ହିତ କର୍ତ୍ତବ୍ୟ-ବିଧାନପୂର୍ବକ ସମସ୍ତଙ୍କୁ ବିଭକ୍ତ କରି ରଖିଛନ୍ତି । ବ୍ରହ୍ମସୂତ୍ରରେ ବ୍ୟାସ ମଧ୍ୟ କହିଛନ୍ତି—

ଅଦୃଶ୍ୟତ୍ୱାଦିଗୁଣକୋ ଧର୍ମୋକ୍ତେଃ　।୧।୨।୨୧।

ଅଦୃଶ୍ୟତ୍ୱାଦି ବିଶେଷଣବିଶିଷ୍ଟ, ଭୂତଯୋନି, ଅର୍ଥାତ୍ ଭୂତମାନଙ୍କର ଉତ୍ପତ୍ତିର ମୂଳ କାରଣ ସେହି ପରମାତ୍ମା ଜଗତର ପରମ ଈଶ୍ୱର । ପରମେଶ୍ୱର ଭୂତଯୋନି— ଏହା ତାଙ୍କର ଧର୍ମକଥନରୁ ଜଣାଯାଏ । ସର୍ବଜ୍ଞ ଓ ସର୍ବବିତ୍ତ୍ୱରୂପକ ବାକ୍ୟରେ ପରମେଶ୍ୱରଙ୍କ ଧର୍ମ କଥିତ ହୋଇଅଛି ।

## ଠ— ବ୍ରହ୍ମ ଏକ, ଅଦ୍ୱିତୀୟ ଓ ଅରୂପ—

ସୃଷ୍ଟିର ଉପାଧିକୃତ ଭେଦ ଅନୁସାରେ ବ୍ରହ୍ମ ଭିନ୍ନ ନୁହନ୍ତି । ସେ ସର୍ବଭେଦ-ବର୍ଜିତ, ଏକ ଓ ଅଦ୍ୱିତୀୟ, ଅରୂପ—

ନ ଭେଦାଦିତି ଚେନ୍ନ　　ପ୍ରତ୍ୟେକମତଦ୍ବଚନାତ୍ ॥

ବ୍ରହ୍ମସୂତ୍ର—୩-୨-୧୨ ॥

ବ୍ରହ୍ମ ନିର୍ବିକଳ୍ପକ ଓ ଏକରୂପ ବୋଲି କୁହାଯାଇଛି ; କିନ୍ତୁ କୌଣସି ସ୍ଥଳରେ ଭେଦବାଦର ବର୍ଣ୍ଣନା ଦେଖି ସୂତ୍ରକାର କହୁଛନ୍ତି ଯେ, ଶାସ୍ତ୍ର ପ୍ରତ୍ୟେକ ଔପାଧିକ ଭେଦର ଉଲ୍ଲେଖ କରି ବ୍ରହ୍ମଙ୍କୁ ଭେଦ-ବିପରୀତ ବା ଅଭେଦ ବୋଲି କହିଅଛି ।

ଅପି ଚୈବମେକେ ।　　　ବ୍ରହ୍ମସୂତ୍ର ୩।୨।୧୩

ବ୍ରହ୍ମ ଅଦ୍ୱିତୀୟ ଓ ଏକ ଏହା ସୁନିଶ୍ଚିତ ; କାରଣ, ଶ୍ରୁତ୍ୟାଦିରେ ଭେଦଦୃଷ୍ଟିର ବାଧକତା ଦୃଷ୍ଟିଗୋଚର ହୁଏ ।

ଅରୂପବଦେବ ହି ତତ୍ପ୍ରଧାନତ୍ୱାତ୍　　　ବ: ସୂ: ୩।୨।୧୪ ॥

ଅର୍ଥାତ୍ ବ୍ରହ୍ମ ରୂପାଦିରହିତ—ଏ କଥା ନିର୍ଣ୍ଣିତ ; ରୂପାଦିମତ୍ ଅର୍ଥାତ୍ ବ୍ରହ୍ମର ସାକାରତ୍ୱ କଳ୍ପନା ବିଧେୟ ନୁହେଁ । କାରଣ, ବ୍ରହ୍ମପ୍ରତିପାଦକ ବାକ୍ୟସମୂହ ତତ୍ପ୍ରଧାନ, ଅର୍ଥାତ୍ ଅରୂପପ୍ରଧାନ, ସେହି ସକଳବାକ୍ୟ ଅରୂପବ୍ରହ୍ମଙ୍କୁ ପ୍ରତିପାଦନ କରନ୍ତି * ଏହି ବିଷୟରେ ଶାଙ୍କରଭାଷ୍ୟ—

**ଅସ୍ଥୂଲମନଣ୍ୱହ୍ରସ୍ୱମଦୀର୍ଘମ୍, ଅଶବ୍ଦମସ୍ପର୍ଶମରୂପମବ୍ୟୟମ୍ ଆକାଶୋ ବୈ ନାମରୂପୟୋର୍ନିର୍ବହିତା ତେ ଯଦନ୍ତରା ତଦ୍ ବ୍ରହ୍ମ, ଦିବ୍ୟୋହ୍ୟମୂର୍ତ୍ତଃ-ପୁରୁଷଃ ସ ବାହ୍ୟାଭ୍ୟନ୍ତରୋ ହ୍ୟଜଃ, ତଦେତଦ୍ ବ୍ରହ୍ମାପୂର୍ବମପର-ମନନ୍ତରମବାହ୍ୟମ୍, ଅୟମାତ୍ମା ବ୍ରହ୍ମ ସର୍ବାନୁଭୂଃ—ଇତ୍ୟେବମାଦୀନି ହି ବାକ୍ୟାନି ନିଷ୍ପ୍ରପଞ୍ଚବ୍ରହ୍ମାତ୍ମତତ୍ତ୍ୱପ୍ରଧାନାନି ନାର୍ଥାନ୍ତରପ୍ରଧାନାନୀତ୍ୟେତତ୍ ପ୍ରତିଷ୍ଠାପିତଂ "ତତ୍ତୁ ସମନ୍ୱୟାତ୍" ଇତ୍ୟତ୍ର ।**

ଅର୍ଥାତ୍ "ସେ ବ୍ରହ୍ମ ସ୍ଥୂଳ ନୁହନ୍ତି, ସୂକ୍ଷ୍ମ ବା ପରମାଣୁ ତୁଲ୍ୟ କ୍ଷୁଦ୍ର ନୁହନ୍ତି, ହ୍ରସ୍ୱ ନୁହନ୍ତି ବା ଦୀର୍ଘ ନୁହେଁ"—ଅଶବ୍ଦ, ଅସ୍ପର୍ଶ, ଅରୂପ ଓ ଅବ୍ୟୟ" ବ୍ରହ୍ମ ପ୍ରସିଦ୍ଧ ଆକାଶ, ନାମ ଓ ରୂପର ନିର୍ବାହକ ; ନାମ ଓ ରୂପ ଯାହାର ଅନ୍ତରରେ ସେହି ବ୍ରହ୍ମ ସେହି, କେବଳ ଦିବ୍ୟ, ମୂର୍ତ୍ତିହୀନ ପୁରୁଷ, ଅର୍ଥାତ୍ ପୂର୍ଣ୍ଣ", ସୁତରାଂ ବାହ୍ୟ ଓ ଅନ୍ତରରେ ବିରାଜମାନ ; ଅଜ, ଅର୍ଥାତ୍ ଜନ୍ମରହିତ ; ସେହି ବ୍ରହ୍ମ ଅପୂର୍ବ, ଅନପର ଅନନ୍ତର ଓ ଅବାହ୍ୟ ; ଏହି ଆତ୍ମା-ବ୍ରହ୍ମ ମଧ୍ୟ ସମସ୍ତଙ୍କର ଅନୁଭୂତିସ୍ୱରୂପ"—ଇତ୍ୟାଦି ସକଳ ବାକ୍ୟରୁ ମୋକ୍ଷରୂପ ନିଷ୍ପ୍ରପଞ୍ଚ ବ୍ରହ୍ମାତ୍ମଭାବ ବୋଧ ହୁଏ ଓ ଏହା "ତତ୍ତୁ ସମନ୍ୱୟାତ୍" ସୂତ୍ରରେ ପ୍ରତିପାଦିତ ହୋଇଅଛି ।

ଏ ସମ୍ବନ୍ଧରେ ବୃହଦାରଣ୍ୟକ ଶ୍ରୁତି—

**ନ ହ୍ୟେତସ୍ମାଦିତି ନେତ୍ୟନ୍ୟତ୍**
**ପରମସ୍ତ୍ୟଥ ନାମଧେୟଂ ।**
**ସତ୍ୟସ୍ୟ ସତ୍ୟମିତି ପ୍ରାଣା ବୈ**
**ସତ୍ୟଂ ତେଷାମେଷ ସତ୍ୟମ୍ ॥**

ବୃହଃ ଉଃ ୨ । ୩ । ୬ ।

* ବ୍ରହ୍ମ ଅରୂପବଦେବ ରୂପାଦିରହିତମେବ, ହି ଯତଃ । ତତ୍ପ୍ରଧାନତ୍ୱାତ୍ରୂପାଦି ରହିତ ବ୍ରହ୍ମ ତାତ୍ପର୍ଯ୍ୟକତ୍ୱାତ୍ ଶ୍ରୁତୀନାମିତିଶେଷଃ ।

ବ୍ରହ୍ମ ରୂପାଦିବର୍ଜିତ ; କାରଣ, ବ୍ରହ୍ମପ୍ରତିପାଦକ ଶ୍ରୁତିସମୂହ ନିଶ୍ଚୟ ଅରୂପବ୍ରହ୍ମପ୍ରଧାନ, ଅର୍ଥାତ୍, ନିର୍ଗୁଣ ବ୍ରହ୍ମ ହିଁ ବ୍ରହ୍ମପ୍ରତିପାଦକ ବାକ୍ୟର ତାତ୍ପର୍ଯ୍ୟ ବୋଲି ପ୍ରତିପାଦନ କରେ ।

ଏହିରୂପରେ କ୍ରମେ ଶ୍ରୁତି ସତ୍ୟର ସ୍ୱରୂପ ନିରୂପଣ ପରେ ସତ୍ୟର ଯେଉଁ ସତ୍ୟ ଅନିରୂପିତ ସେହି ସ୍ୱରୂପ ନିରୂପଣ କରିବା ନିମନ୍ତେ ପ୍ରତିଜ୍ଞା କରେ—“ଅତଃ ପର ସତ୍ୟର ଯାହା ସତ୍ୟ ତାହାର ସ୍ୱରୂପ ନିର୍ଦ୍ଦେଶ କରାଯିବ” । ତା ମଧ୍ୟରେ “ନେତି ନେତି” ଅର୍ଥାତ୍—ଏହା ବ୍ରହ୍ମ ନୁହେଁ—ଇତ୍ୟାଦି ସର୍ବନିଷେଧ ପରେ ଯାହା ବ୍ରହ୍ମ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି, ତାହାହିଁ ବ୍ରହ୍ମଙ୍କର ସ୍ୱରୂପନିର୍ଦ୍ଦେଶ, ଅର୍ଥାତ୍—ସ୍ୱରୂପକଥନ । ଯଦି ପ୍ରଶ୍ନ ହେବ ଯେ—କେବଳ “ନେତି ନେତି” ଶବ୍ଦଦ୍ୱୟଦ୍ୱାରା କିପରି ସତ୍ୟର ସ୍ୱରୂପ (ବ୍ରହ୍ମସ୍ୱରୂପ) ଶ୍ରୁତିନିର୍ଦ୍ଦିଷ୍ଟ ହୋଇପାରେ ? ଉତ୍ତରରେ କୁହାଯିବ—ସର୍ବଧର୍ମ ନିଷେଧ ପରେ ଅବଶିଷ୍ଟ—କଥନ ଅନୁସାରେ ଅବାଙ୍ମନସଗୋଚର ବସ୍ତୁର ସ୍ୱରୂପ ନିର୍ଦ୍ଦିଷ୍ଟ ହୋଇ ପାରେ, ଅର୍ଥାତ୍—ଯହିଁରେ ନାମ, ରୂପ, କର୍ମ, ଜାତି ବା ଗୁଣ ପ୍ରଭୃତି କୌଣସି ପ୍ରକାର ବିଶେଷ ଧର୍ମ ଅଛି, କେବଳ ସେହି ସମସ୍ତ ବସ୍ତୁହିଁ ବିଶେଷ ଧର୍ମ ସାହାଯ୍ୟରେ “ଏହି ସେ” ବୋଲି ନିର୍ଦ୍ଦିଷ୍ଟ ହୁଏ ; କିନ୍ତୁ ଯାହାର ପୂର୍ବୋକ୍ତ ଧର୍ମରୁ ଗୋଟିଏ ହେଲେ ନାହିଁ, ତାହାର “ଏହି ସେ” ଇତ୍ୟାକାର ଶବ୍ଦଦ୍ୱାରା ନିର୍ଦ୍ଦେଶ କିପରି ହେବ । ନିର୍ଗୁଣ ବ୍ରହ୍ମଙ୍କର ପୂର୍ବୋକ୍ତ କୌଣସି ଏକ ଧର୍ମ ମଧ୍ୟ ନାହିଁ; ଏତଏବ ତାହାଙ୍କୁ ଜାଗତିକ କୌଣସି ଚିହ୍ନ ବା ଉପମାନଦ୍ୱାରା “ଏହି ସେ” ବୋଲି ନିର୍ଦ୍ଦିଷ୍ଟ କରାଯାଇ ପାରେ ନାହିଁ । ଯେଉଁ ଯେଉଁ ସ୍ଥାନମାନଙ୍କରେ “ଏହି ସେ ବ୍ରହ୍ମ” ବୋଲି ନିର୍ଦ୍ଦେଶ କରାଯାଇଛି, ସେହି ସକଳ ସ୍ଥାନରେ ଅବିଦ୍ୟାକଳ୍ପିତ ବ୍ରହ୍ମରେ ଆରୋପିତ ନାମ, ରୂପ, କର୍ମ ପ୍ରଭୃତି ବିଶିଷ୍ଟ ଧର୍ମଦ୍ୱାରା ବ୍ରହ୍ମ ବିଜ୍ଞାନମୟ ଓ ଆନନ୍ଦମୟ ବୋଲି ନିର୍ଦ୍ଦିଷ୍ଟ ହୋଇ ଅଛନ୍ତି । କେବେ ହେଲେ ନିର୍ବିଶେଷ ରୂପରେ ନିରୂପିତ ହୁଅନ୍ତି ନାହିଁ । କିନ୍ତୁ ନିର୍ବିଶେଷ—ବ୍ରହ୍ମସ୍ୱରୂପ ନିର୍ଦ୍ଦେଶ କରିବାକୁ ହେଲେ ଏକମାତ୍ର ଜଗତପ୍ରପଞ୍ଚସ୍ଥିତ ପ୍ରତ୍ୟେକ ଧର୍ମର ନିଷେଧହିଁ ତାହାଙ୍କର ସ୍ୱରୂପଜ୍ଞାନର ଉପାୟ । ଏହିପରି ନିଷେଧ କରୁ କରୁ ସର୍ବନିଷେଧର ପର ଯାହା ଅବଶିଷ୍ଟ ରହିବ ତାହାହିଁ ବ୍ରହ୍ମଙ୍କର ଅବ୍ୟୟ, ଅକ୍ଷୟ, ଅନାମ, ଅଲେଖ ବିଶୁଦ୍ଧ ପୁରୁଷ । ଅତଏବ “ନେତି ନେତି” ବୋଲି ବୀପ୍ସାର୍ଥରେ ଦୁଇଗୋଟି ନଞ୍ର ପ୍ରୟୋଗ କରାଯାଇଛି । ନକାର ଦ୍ୱିରୁକ୍ତ ହେବାର ତାତ୍ପର୍ଯ୍ୟ ଏହି ଯେ ବକ୍ତା ସକଳ ପ୍ରତିଷେଧର ଇଚ୍ଛା କରନ୍ତି । ନାମରୂପାତ୍ମକ ସକଳ ପଦାର୍ଥ ବ୍ରହ୍ମ ବୋଲି ଆଶଙ୍କା ହୋଇପାରେ ; କିନ୍ତୁ ସେହି ସକଳ ପଦାର୍ଥର ନିଷେଧ କରିବାହିଁ ନକାରର ଦ୍ୱିରୁକ୍ତ ପ୍ରୟୋଗର ଉଦ୍ଦେଶ୍ୟ । ପ୍ରସ୍ତାବିତ ମୂର୍ତ୍ତ ଓ ଅମୂର୍ତ୍ତ ସକଳ ପଦାର୍ଥର ପ୍ରତିଷେଧ ନିମନ୍ତେ ଯଦି ନକାରଦ୍ୱୟ ପ୍ରଯୁକ୍ତ ହୋଇଥାନ୍ତା, ତାହାହେଲେ ଏହି ପ୍ରତିଷିଦ୍ଧ ମୂର୍ତ୍ତ ଓ ଅମୂର୍ତ୍ତ ଭିନ୍ନ ଜାଗତିକ କୌଣସି ପଦାର୍ଥ ବ୍ରହ୍ମ ବା ବ୍ରହ୍ମ ନୁହେଁ—ଏହି ଆଶଙ୍କା ସ୍ୱତଃ ହୃଦୟରେ ଉଦିତ ହୁଅନ୍ତା । ଯଦି ଏହିପରି ଆଶଙ୍କାର ନିବୃତ୍ତି ନ ହୁଏ, ତେବେ ସେ ବ୍ରହ୍ମନିର୍ଦ୍ଦେଶର ଫଳ ବା କ'ଣ ? କାରଣ, ପ୍ରକୃତ ବ୍ରହ୍ମଜିଜ୍ଞାସୁ ଗାର୍ଗ୍ୟଙ୍କର ସନ୍ଦେହ ନିବୃତ୍ତିସକାଶେ ଏହା କୁହାଯାଇଛି ; ତେବେ “ବ୍ରହ୍ମ ଜ୍ଞାପୟିଷ୍ୟାମି” ରୂପକ ପ୍ରତିଜ୍ଞା ଅପର-

ସମାପ୍ତ ରହିଯିବ । ଯେତେବେଳେ ବ୍ରହ୍ମଙ୍କର ସର୍ବବିଧ ଉପାଧି ନିରାକରଣପୂର୍ବକ ଦିଗ୍-ଦେଶ-କାଳାଦି ସମସ୍ତ ଉପାଧିରେ ବ୍ରହ୍ମଭିନ୍ନଙ୍କ ବହିଷ୍କୃତ ହେବ, ସେତେବେଳେ ଯାଇ ସୈନ୍ଧବଖଣ୍ଡବତ୍ ଏକରସ, ନିରବକାଶ, ଅବାଚ୍ୟ, ଜ୍ଞାନଘନ, ଆନନ୍ଦମୟ ଓ ସତ୍ୟର ମଧ୍ୟ ସତ୍ୟସ୍ୱରୂପ ବ୍ରହ୍ମଙ୍କ ସହିତ ଜୀବାତ୍ମାର ଅଭେଦ ଜ୍ଞାନଲାଭ ହୋଇ ପାରିବ ; ଏବଂ ତତ୍‌କ୍ଷଣାତ୍ ତାହାର ବିବିଦିଷା, ଅର୍ଥାତ୍—ଜ୍ଞାନେଚ୍ଛାବୃତ୍ତି ପୂର୍ଣ୍ଣ ହେବ ଓ ସେହି ବ୍ରହ୍ମ ଓ ଜୀବାତ୍ମାର ଅଭେଦଜ୍ଞାନ ପରେ ମୁମୁକ୍ଷୁର ବୁଦ୍ଧିବୃତ୍ତି ନିର୍ବାତନିଷ୍କମ୍ପ ଦୀପଶିଖାତୁଲ୍ୟ ସର୍ବତୋଭାବରେ ଅନ୍ତର୍ମୁଖୀ ହେବ । ଅତଏବ ବ୍ରହ୍ମଭିନ୍ନ ସକଳବସ୍ତୁର ପ୍ରତିଷେଧ ନିମନ୍ତେ କେବଳ ବୀପ୍‌ସାର୍ଥରେ ନକାରଦ୍ୱୟ ପ୍ରଯୁକ୍ତ ହୋଇଅଛି ବୋଲି ବୁଝିବାକୁ ହେବ । ବାଦୀ ପୁନଶ୍ଚ ଆପତ୍ତି କରିପାରେ—ଯେଉଁ ବ୍ରହ୍ମଙ୍କ ସ୍ୱରୂପ ନିରୂପଣ ନିମନ୍ତେ ଏତେ ଯତ୍ନ ଓ ଏତେ ଆଡ଼ମ୍ବର, ସେହି ବ୍ରହ୍ମଙ୍କର ପ୍ରକୃତ ସ୍ୱରୂପ କ'ଣ ? ସେହି ବ୍ରହ୍ମଙ୍କ ସ୍ୱରୂପ କ'ଣ ଅନିର୍ଦ୍ଦେଶ୍ୟ ? ଅର୍ଥାତ୍—କୌଣସି ପ୍ରକାରେ ନିର୍ଦ୍ଦିଷ୍ଟ ହୋଇ ନ ପାରେ ? ଉତ୍ତରରେ ଏହା କୁହାଯାଇ ପାରେ ଯେ, "ନେତି ନେତି" ଇତ୍ୟାଦି ବାକ୍ୟରେ ସର୍ବ ପ୍ରତ୍ୟାଖ୍ୟାନ ପରେ ଯେତେବେଳେ ଅନ୍ୟ କୌଣସିପ୍ରକାରେ ଶ୍ରୁତି ତାହାଙ୍କୁ ନିର୍ଦ୍ଦେଶ କରିପାରେ ନାହିଁ, ସେତେବେଳେ ଏହି "ନେତି ନେତି" ଶବ୍ଦଦ୍ୱାରାହିଁ ବ୍ରହ୍ମଙ୍କର ସ୍ୱରୂପ ନିର୍ଦ୍ଦେଶ କରାଯିବ । ସେହି ବ୍ରହ୍ମ ନିଷିଦ୍ଧସକଳ ଜାଗତିକ ପଦାର୍ଥରୁ ଅତୀତ । ଅତଏବ ଏହି ରୂପରେ ବ୍ରହ୍ମଙ୍କୁ ସତ୍ୟର ସତ୍ୟନାମରେ ଅଭିହିତ କରା ହୋଇଅଛି । ଅତଏବ ବ୍ରହ୍ମଙ୍କର ନାମ ଯେ ସତ୍ୟର ସତ୍ୟ ବୋଲି କୁହାଗଲା, ଏହା ଯୁକ୍ତିସଙ୍ଗତ । ଶ୍ରୁତି କହେ —"ପ୍ରାଣା ବୈ ସତ୍ୟମ୍" । "ତେଷାମେବ ସତ୍ୟମ୍"—"ଅର୍ଥାତ୍ ପ୍ରାଣ ସକଳ ସତ୍ୟ, ପ୍ରାଣାଦିର ସତ୍ୟତା ହିଁ ବ୍ରହ୍ମ ।

ପୁନଶ୍ଚ ସତ୍ୟର ସତ୍ୟନିରୂପଣ—

**ତଦ୍ ବା ଏତଦକ୍ଷରଂ ଗାର୍ଗି, ଅଦୃଷ୍ଟଂ ଦ୍ରଷ୍ଟୃ, ଅଶ୍ରୁତଂ ଶ୍ରୋତୃ, ଅମତଂ ମନ୍ତୃ, ଅବିଜ୍ଞାତଂ ବିଜ୍ଞାତୃ, ନାନ୍ୟଦତୋଽସ୍ତି ଦ୍ରଷ୍ଟୃ, ନାନ୍ୟଦତୋଽସ୍ତି ଶ୍ରୋତୃ, ନାନ୍ୟଦତୋଽସ୍ତି ମନ୍ତୃ, ନାନ୍ୟଦତୋଽସ୍ତି ବିଜ୍ଞାତୃ, ଏତସ୍ମିନ୍ ନୁ ଖଲ୍ୱକ୍ଷରେ ଗାର୍ଗି ଆକାଶ ଓତଶ୍ଚ ପ୍ରୋତଶ୍ଚ ଇତି ।**

ବୃହଦ୍ ଆରଣ୍ୟ. ଉ. ୩ । ୮ । ୧୧ ।

ଯାଜ୍ଞବଲ୍କ୍ୟ କହୁଛନ୍ତି—ହେ ଗାର୍ଗି, ସେହି ଅକ୍ଷର ପରମାତ୍ମା ପରମପୁରୁଷଙ୍କୁ କେହି ଚକ୍ଷୁଦ୍ୱାରା ଦର୍ଶନ କରିପାରନ୍ତି ନାହିଁ ; କିନ୍ତୁ ସେ ସମସ୍ତଙ୍କର ଦ୍ରଷ୍ଟା ; ଏହାର ତାତ୍ପର୍ଯ୍ୟ ଏହି ଯେ, ଚକ୍ଷୁରିନ୍ଦ୍ରିୟ ସେହି ପଦାର୍ଥକୁ ହିଁ ଗ୍ରହଣ କରେ ଯାହା ଚକ୍ଷୁର ବିଷୟ ; କିନ୍ତୁ ଯାହା ଦର୍ଶନର ଯୋଗ୍ୟ ନୁହେଁ ତାହା ଚକ୍ଷୁର ଅଗ୍ରାହ୍ୟ । ଆକାଶ

ଦର୍ଶନର ଯୋଗ୍ୟ ନୁହେଁ ବୋଲି ଯେପରି ତାହାକୁ ଦର୍ଶନ କରାଯାଇପାରେ ନାହିଁ; ସେପରି ଅକ୍ଷର-ପରମାତ୍ମା ମଧ୍ୟ ଦର୍ଶନର ଅଯୋଗ୍ୟ—ସୁତରାଂ ଚକ୍ଷୁଦ୍ୱାରା ତାହାଙ୍କୁ ଦର୍ଶନ କରିବା ମଧ୍ୟ ଅସମ୍ଭବ; କିନ୍ତୁ ସେ ସ୍ୱୟଂ ଦ୍ରଷ୍ଟା; କାରଣ, ଜଗତର ସକଳ ବସ୍ତୁ ସେ ଦର୍ଶନ କରିଥାନ୍ତି। ସେହିପରି ସେ ଅଶ୍ରୁତ, ଅର୍ଥାତ୍ କେହି ତାହାଙ୍କୁ ଶ୍ରବଣେନ୍ଦ୍ରିୟଦ୍ୱାରା ଗ୍ରହଣ କରିପାରେ ନାହିଁ; କିନ୍ତୁ ସେ ସ୍ୱୟଂ ସର୍ବପ୍ରକାର ଶବ୍ଦର ଶ୍ରୋତା। ସେହିପରି ସେ ମନର ଅବିଷୟ ବା ଅଗୋଚର; କିନ୍ତୁ ନିଜେ ଜ୍ଞାନସ୍ୱରୂପ ହେବାରୁ ସେ ମନ୍ତା ବା ସକଳ ବିଷୟର ଜ୍ଞାତା। ସେ ବୁଦ୍ଧିର ଅଗୋଚର, ଅତଏବ ସମସ୍ତଙ୍କର ଅବିଜ୍ଞାତ; କିନ୍ତୁ ସ୍ୱୟଂ ଜ୍ଞାନରୂପୀ, ତାଙ୍କର ଅବିଜ୍ଞାତ କିଛି ନାହିଁ। ଅଧିକ କ'ଣ କହିବା, ଏହି ଅକ୍ଷର ବ୍ୟତୀତ ଅନ୍ୟ କେହି ଦ୍ରଷ୍ଟା, ଶ୍ରୋତା, ମନ୍ତା ବା ବିଜ୍ଞାତା ନାହିଁ; କେବଳ ଏହି ଅକ୍ଷର ହିଁ ସକଳ ଜୀବଜଗତର ଦ୍ରଷ୍ଟା, ଶ୍ରୋତା ଓ ମନ୍ତା। ସେହି କେବଳ ସର୍ବ ଜାଗତିକ ବସ୍ତୁର ବିଜ୍ଞାନ କରିଥାନ୍ତି। ସେହି ବ୍ରହ୍ମଭିନ୍ନ ଅନ୍ୟ କୌଣସି ପଦାର୍ଥର, ଅର୍ଥାତ୍ ଚେତନାଚେତନ ସକଳ ଦ୍ରବ୍ୟର ଦର୍ଶନାଦକ୍ରିୟା ସମ୍ପାଦନ କରିବା ଶକ୍ତି ନାହିଁ। ହେ ଗାର୍ଗି ! ସେହି ଅକ୍ଷର-ପରମାତ୍ମା ଆକାଶ ସହିତ ଓତପ୍ରୋତଭାବରେ ଜଡ଼ିତ। ଅତଏବ ଏହି ଅକ୍ଷର ପରମାତ୍ମାଙ୍କୁ ପ୍ରତ୍ୟକ୍ଷରୂପୀ ବ୍ରହ୍ମ ବୋଲି ନିର୍ଦ୍ଦେଶ କରାଯାଇଛି। ଯାହାଙ୍କୁ ସକଳ ସାଂସାରିକ ଭୋଗରହିତ ଧର୍ମ, ଅନ୍ତରର ଅନ୍ତର ବୋଲି ନିର୍ଦ୍ଧାରଣ କରାଯାଇଛି, ସେହି କେବଳ ସମସ୍ତ ଶେଷର ସୀମା, ଅର୍ଥାତ୍ 'ନେତି ନେତି' ବାକ୍ୟର ବିଶ୍ରାମ ସ୍ଥାନ, ସେହି ସମସ୍ତ ବସ୍ତୁର ପରମଗତି ବା ଗନ୍ତବ୍ୟ-ସ୍ଥାନ, ସେହି କେବଳ ପରଂବ୍ରହ୍ମ; ପୃଥିବୀ ଓ ଆକାଶ ସମସ୍ତ ସତ୍ୟର ବା ସଦ୍‌ବସ୍ତୁର ସତ୍ୟ, ଅର୍ଥାତ୍ ସତ୍ତ୍ୱର କାରଣ, ସେହି ଏକମାତ୍ର ସର୍ବାଶ୍ରୟ ପରମପିତା—

ଏହିରୂପେ ପରମାତ୍ମାଙ୍କ ବିଷୟ ନିରୂପଣ କରି ଯାଜ୍ଞବଲ୍କ୍ୟ ଉଷସ୍ତଙ୍କ ସନ୍ଦେହ ନିରାକରଣ କରିଥିଲେ—

**ନ ଦୃଷ୍ଟେର୍ଦ୍ରଷ୍ଟାରଂ ପଶ୍ୟେଃ ନ ଶ୍ରୁତେଃ ଶ୍ରୋତାରଂ ଶୃଣୁୟାଃ, ନ ମତେର୍ମନ୍ତାରଂ ମନ୍ୱୀଥାଃ, ନ ବିଜ୍ଞାତେର୍ବିଜ୍ଞାତାରଂ ବିଜାନୀୟାଃ, ଏଷ ତ ଆତ୍ମା ସର୍ବାନ୍ତରୋଽତୋଽନ୍ୟଦାର୍ତ୍ତଂ ତତୋ ହ ଉଷସ୍ତଶ୍ଚାକ୍ରାୟଣ ଉପରରାମ ॥** ବୃ: ଆ. ଉ. ୩।୪।୨ ॥

ଅର୍ଥାତ୍—ଯେଉଁ ହେତୁରୁ ବ୍ରହ୍ମ ଏକମାତ୍ର ଦ୍ରଷ୍ଟା ଓ ସର୍ବାଧାର, ଅତଏବ ସେ କୌଣସି କାଳରେ ଦୃଶ୍ୟବିଷୟ ହୋଇ ପାରନ୍ତି ନାହିଁ। ବ୍ରହ୍ମ ଶ୍ରୁତିଗୋଚରରୁ ଅଜ୍ଞାତ, ଅତଏବ ସେ ଅଜ୍ଞେୟ, ବ୍ରହ୍ମ ନିରୁପାଧିକ, ଅର୍ଥାତ୍ ଦେଶକାଳ ନିମିତ୍ତରୂପକ ତ୍ରିବିଧ-ଉପାଧି ବିନିର୍ମୁକ୍ତ। ଅତଏବ ସେ କଦାପି ଜ୍ଞାନର ବିଷୟ ହୋଇ ପାରନ୍ତି ନାହିଁ। କୌଣସି

ବସ୍ତୁକୁ ଜ୍ଞାନର ବିଷୟ କରିବାକୁ ହେଲେ ତାହା ଦେଶକାଳ ନିମିତ୍ତରୂପକ ଉପାଧିଯୁକ୍ତ କରିବାକୁ ହୁଏ; କୌଣସି ଦେଶ ବା କାଳର ସମ୍ବନ୍ଧ ଜ୍ଞାନ ନ ହେଲେ ତଦ୍‌ବିଷୟକ ବସ୍ତୁର ଜ୍ଞାନ ହୋଇ ନ ପାରେ; କିନ୍ତୁ ନିରୂପାଧିକ ବ୍ରହ୍ମ, ଅତଏବ ତାହା ଦେଶାତୀତ, କାଳାତୀତ ଓ ନିମିତ୍ତାତୀତ । ଅତଏବ ହେ ଗାର୍ଗି, ଏହାହିଁ ତୁମର ଜିଜ୍ଞାସ୍ୟମାନ ସର୍ବାନ୍ତର୍ବର୍ତ୍ତୀ ଆତ୍ମା । ଏତଦ୍‌ଭିନ୍ନ ଯାହା କିଛି କାର୍ଯ୍ୟାତ୍ମକ ଶରୀର ବା କାରଣାତ୍ମକ ଲିଙ୍ଗଶରୀର ଅଛି, ସେସବୁ ଆର୍ତ୍ତ ବା ବିନାଶଶୀଳ; କେବଳ ପରମାତ୍ମା ହିଁ କୂଟସ୍ଥ, ଅବିନାଶୀ ଓ ଅବିକୃତ ସ୍ୱରୂପ । ଏପରି ଯାଜ୍ଞବଲ୍‌କ୍ୟଙ୍କଠାରୁ ଉତ୍ତର ଶ୍ରବଣ କରି ଉଷସ୍ତ ସନ୍ଦେହମୁକ୍ତ ହେଲେ ।

ଏହାପରେ ଯାଜ୍ଞବଲ୍‌କ୍ୟ ମୈତ୍ରେୟୀଙ୍କୁ ଅବିନାଶୀ ଆତ୍ମତତ୍ତ୍ୱର ବୋଧ କରାଇ ତାଙ୍କର ସନ୍ଦେହ ମୋଚନ କରିଥିଲେ ।

**ସ ଯଥା ସୈନ୍ଧବଘନୋଽନନ୍ତରୋଽବାହ୍ୟଃ କୃତ୍ସ୍ନୋ ରସଘନ ଏବୈବଂ ବା ଅରେଽୟମାତ୍ମାଽନନ୍ତରୋଽବାହ୍ୟଃ କୃତ୍ସ୍ନଃ ପ୍ରଜ୍ଞାନଘନ ଏବ ଏତେଭ୍ୟୋ ଭୂତେଭ୍ୟଃ ସମୁତ୍ଥାୟ ତାନ୍ୟେବାନୁବିନଶ୍ୟତି ନ ପ୍ରେତ୍ୟ ସଂଜ୍ଞାଽସ୍ତୀତ୍ୟରେ ବ୍ରବୀମୀତି ହୋବାଚ ଯାଜ୍ଞବଲ୍‌କ୍ୟଃ ।**

ବୃହଦ୍-୪-୫-୧୩ ॥

ଯେପରି ଘନୀଭୂତ ସୈନ୍ଧବଖଣ୍ଡର ବାହ୍ୟ ଓ ଆଭ୍ୟନ୍ତରରେ ସ୍ୱତନ୍ତ୍ରଭାବରେ ରସ ନ ଥାଏ, ଅଥଚ ସମସ୍ତ ଖଣ୍ଡ ଲବଣରସମୟ, ହେ ମୈତ୍ରେୟି ! ସେହିପରି ପରିପୂର୍ଣ୍ଣ, ବାହ୍ୟାଭ୍ୟନ୍ତରହୀନ । ଘନଜ୍ଞାନମୟ ସେହି ପରମାତ୍ମା ମଧ୍ୟ ଏହି ସମସ୍ତ ଦୃଶ୍ୟମାନ ଭୂତ ବା ଜଡ଼ ପଦାର୍ଥକୁ ଅବଲମ୍ବନ କରି ଆବିର୍ଭୂତ ହୁଅନ୍ତି ଓ ପୁନର୍ବାର ସେହି ପଦାର୍ଥର ବିଲୟ ସଙ୍ଗେ ସ୍ୱୟଂ ବିଲୀନ ହୋଇଯାନ୍ତି, ଅର୍ଥାତ୍ ପ୍ରାଣୀମାନଙ୍କର ଉତ୍ପତ୍ତି ସହିତ ସେହି ବ୍ରହ୍ମ ନାନା ସଂଜ୍ଞାରେ ସଂଜ୍ଞିତ ହୋଇ ବ୍ୟାବହାରିକ ଜଗତରେ ନାନା ସ୍ୱରୂପରେ ପ୍ରତୀୟମାନ ହୁଅନ୍ତି; ବ୍ରହ୍ମଜ୍ଞାନଲାଭ ପରେ ସେହି ଭୂତର ଯେତେବେଳେ ବିଲୟ ହୁଏ ସେହି ସମୟରେ ପୁନଶ୍ଚ ସେହି ବ୍ରହ୍ମର ଅବାସ୍ତବ ବା କାଳ୍ପନିକ ନାମ ରହେ ନାହିଁ । ତାତ୍ପର୍ଯ୍ୟ ଏହି ଯେ ଜାଗତିକ ସମସ୍ତ ଦ୍ରବ୍ୟ ପୂର୍ଣ୍ଣମାତ୍ରାରେ ବିଲୀନ ହେବା ପରେ ସୈନ୍ଧବଖଣ୍ଡ ତୁଲ୍ୟ ବାହ୍ୟାନ୍ତରରହିତ, ପରିପୂର୍ଣ୍ଣ ସ୍ୱରୂପ ପ୍ରଜ୍ଞାନ-ଘନ ଏକମାତ୍ର ଆତ୍ମା ଅବଶିଷ୍ଟ ରହନ୍ତି; କିନ୍ତୁ ବିଲୀନ ହେବା ପୂର୍ବରୁ ପ୍ରାଣୀ ଓ ପ୍ରାଣୀର ଇନ୍ଦ୍ରିୟାଦି ସହିତ ଅଭେଦ-ଜ୍ଞାନବଶତଃ ଯେଉଁ ଆତ୍ମା ବିଶିଷ୍ଟ ସଂଜ୍ଞାଲାଭ କରିଥିଲା, ବର୍ତ୍ତମାନ ବିଦ୍ୟାଦ୍ୱାରା ସେହି ସମସ୍ତ ଉପାଧିବିଶିଷ୍ଟ ଆତ୍ମା ଓ ତାହାର କାରଣୀଭୂତ ସଂସର୍ଗ ନିବୃତ୍ତ ହେବା ପରେ (ଦେହପାତାନନ୍ତର) ତାହାର କୌଣସି ପ୍ରକାର ଉପାଧି ବା ସଂଜ୍ଞା ରହେ ନାହିଁ । ହେ ମୈତ୍ରେୟି, ଏହାହିଁ ଆମ୍ଭର ବକ୍ତବ୍ୟ; ଯାଜ୍ଞବଲ୍‌କ୍ୟ ଏହିପରି ମୈତ୍ରେୟୀଙ୍କୁ ଉପଦେଶ ପ୍ରଦାନ କରିଥିଲେ ।

ସ ହୋବାଚ ମୈତ୍ରେୟୀ, ଅତ୍ରୈବ ମା ଭଗବାନ୍ ମୋହାନ୍ତ-ମପୀପଦନ୍ନ ବା ଅହମିମଂ ବିଜାନାମୀତି । ସ ହୋବାଚ; ନ ବା ଅରେଽହଂ ମୋହଂ ବ୍ରବୀମ୍ୟବିନାଶୀ ବା ଅରେଽୟମାତ୍ମାଽନୁଚ୍ଛିତ୍ତିଧର୍ମା ॥

ବୃ. ଆ. ଉ. ୪।୫।୧୪ ।

ତତ୍ପରେ ମୈତ୍ରେୟୀ କହିଲେ—ହେ ଭଗବନ୍ ! ଆପଣ ଯେଉଁ ଆତ୍ମାକୁ (ବ୍ରହ୍ମଙ୍କୁ) ପୂର୍ବେ ନିରନ୍ତର ଓ ବିଜ୍ଞାନଘନ ବୋଲି ନିର୍ଦ୍ଦେଶ କରିଅଛନ୍ତି, ତାଙ୍କୁ ହିଁ ପରେ "ନ ପ୍ରେତ୍ୟ ସଂଜ୍ଞାସ୍ତି", ଅର୍ଥାତ୍ ବିଲୟର ପର ସଂଜ୍ଞାହୀନ ବୋଲି କହୁଛନ୍ତି । ଏହାଦ୍ୱାରା ମତେ ମୋହରେ ପକାଇ ଅଛନ୍ତି । ମୁଁ ଭଗବଦୁକ୍ତ ଉକ୍ତ ଗୁଣବିଶିଷ୍ଟ ଆତ୍ମାକୁ ସମ୍ପୂର୍ଣ୍ଣରୂପେ ବୁଝିବା ନିମନ୍ତେ ସମର୍ଥ ହୋଇ ପାରୁ ନାହିଁ ।" ମୈତ୍ରେୟୀଙ୍କର ଏହି କଥା ଶ୍ରବଣ କରି ଯାଜ୍ଞବଲ୍କ୍ୟ କହିଲେ—"ଆମେ ଏପରି କୌଣସି କଥା କହୁନାହୁଁ ଯଦ୍ଦ୍ୱାରା ତୁମର ମୋହ ଆସି ପାରିବ । ମୈତ୍ରେୟି ! ଏହି ପ୍ରସ୍ତାବିତ ଆତ୍ମା ଅବିନାଶୀ; କାରଣ ବିକାର-ସ୍ୱରୂପ ରୂପାନ୍ତର ପ୍ରାପ୍ତି ଯାହାର ସ୍ୱଭାବ, ତାହାକୁ ହିଁ ବିନାଶୀ କୁହାଯାଏ; କିନ୍ତୁ ଏହି ଆତ୍ମାର କୌଣସି ପ୍ରକାର ବିକାର ନାହିଁ, ଅତଏବ ଏହା ଅବିନାଶୀ; ଆତ୍ମା ଅନୁଚ୍ଛିତ୍ତିଧର୍ମା, ଅର୍ଥାତ୍ ଏହାର ଉଚ୍ଛେଦ ବା ଧ୍ୱଂସ ନାହିଁ, ଆତ୍ମା ସେପରି ଧ୍ୱଂସସ୍ୱଭାବ ନୁହନ୍ତି । ତାତ୍ପର୍ଯ୍ୟ ଏହି ଯେ, ବସ୍ତୁର ଦୁଇପ୍ରକାର ବିନାଶ ହେବା ଦେଖାଯାଏ, ଏକ ବିକାର, ଦ୍ୱିତୀୟ ମୂଳତଃ ଉଚ୍ଛେଦ । ଆତ୍ମାପକ୍ଷରେ ସେହି ଉଭୟବିଧ ବିନାଶ କେବେ ସମ୍ଭବ ନୁହେଁ । ସର୍ବଦା ସେ ଅବିନାଶୀ ସତ୍ୟ ଅଟନ୍ତି । ଆହୁରି ମଧ୍ୟ ପଞ୍ଚଦଶୀକାର ଉକ୍ତ ବିଷୟ ପ୍ରମାଣିତ କରିବା ନିମନ୍ତେ ତଦ୍‌ବିଷୟକ ଶ୍ରୁତିସକଳର ତାତ୍ପର୍ଯ୍ୟାର୍ଥ ନିରୂପଣ କରି ଅଛନ୍ତି—

ସ୍ୱୟଂ ଜ୍ୟୋତିର୍ଭବତ୍ୟେଷ ପୁରୋଽସ୍ମାତ୍ ଭାସତେଽଖିଲାତ୍
ତମେବ ଭାନ୍ତମନ୍ୱେତି ତଦ୍‌ଭାସା ଭାସତେ ଜଗତ୍ ।
ଯେନେଦଂ ଜାନତେ ସର୍ବଂ ତଂ କେନାନ୍ୟେନ ଜାନତାମ୍
ବିଜ୍ଞାତାରଂ କେନ ବିଦ୍ୟାତ୍ ଶକ୍ତଂ ବେଦ୍ୟେତୁ ସାଧନମ୍ ।
ସ ବେତ୍ତି ବେଦ୍ୟଂ ତତ୍ ସର୍ବଂ ନାନ୍ୟସ୍ତସ୍ୟାସ୍ତି ବେଦିତା
ବିଦିତାବିଦିତାଭ୍ୟାଂ ତତ୍ ପୃଥକ୍‌ବୋଧସ୍ୱରୂପକମ୍ ।

ପଞ୍ଚଦଶୀ ୩।୫।୧୬—୧୮

ଏହି ଆତ୍ମା ସ୍ୱୟଂପ୍ରକାଶସ୍ୱରୂପ; ଅଖିଳ ଜଗତର ଉତ୍ପତ୍ତି ପୂର୍ବରୁ କେବଳ ସେହି ଏକମାତ୍ର ବିଦ୍ୟମାନ ଥିଲେ; ସମସ୍ତ ଜଗତ୍ ତାହାଙ୍କ ପ୍ରକାଶର ଅନୁଗାମୀ ଓ ତାଙ୍କ ପ୍ରକାଶ-ଦ୍ୱାରା ସମୁଦାୟ ଜଗତ୍ ପ୍ରକାଶିତ ହୁଏ । ଯେଉଁ ସାକ୍ଷୀସ୍ୱରୂପ ନିତ୍ୟ ଚୈତନ୍ୟଦ୍ୱାରା ଏହିପରି

ଦୃଶ୍ୟମାନ ସବୁ ଜଗତ୍ ଜ୍ଞାତ ହୁଏ, ତାହା କ'ଣ ବସ୍ତ୍ୱନ୍ତରଦ୍ୱାରା ଜଣା ଯାଇପାରେ ? ବସ୍ତ୍ୱନ୍ତରଦ୍ୱାରା ଜ୍ଞାତ ହେବା ଅସମ୍ଭବ । ପରମାତ୍ମା ସମସ୍ତଙ୍କର ଜ୍ଞାତା, ଅତଏବ ଇନ୍ଦ୍ରିୟମାନଙ୍କ-ଦ୍ୱାରା ସେ ଜ୍ଞାତ ହୋଇ ପାରିବେ ନାହିଁ; ଇନ୍ଦ୍ରିୟସମୂହ ଜ୍ଞେୟ ବିଷୟ ପ୍ରତି ଆକୃଷ୍ଟ, କିନ୍ତୁ ଜ୍ଞାତା ପ୍ରତି ଅନୁଧାବନ କରିବାରେ ଅସମର୍ଥ ।

ପରମାତ୍ମାଙ୍କର ସ୍ୱୟଂପ୍ରକାଶସ୍ୱରୂପ ବିଷୟରେ ପ୍ରମାଣ—

ଜଗତରେ ଯାହା କିଛି ଜ୍ଞେୟ ପଦାର୍ଥ ଅଛି, ସେ ସବୁ ସେହି ପରମାତ୍ମା କେବଳ ଜାଣିପାରନ୍ତି; କିନ୍ତୁ ପରମାତ୍ମାଙ୍କୁ କେହି ଜାଣିବାପାଇଁ ଅସମର୍ଥ । ପରମାତ୍ମା ବିଦିତ ପଦାର୍ଥ-ଠାରୁ ଭିନ୍ନ ଓ ଅବିଦିତ ପଦାର୍ଥଠାରୁ ମଧ୍ୟ ପୃଥକ୍ । ସେ ନିତ୍ୟସିଦ୍ଧ, ଜ୍ଞାନସ୍ୱରୂପ ଓ ପରଂବ୍ରହ୍ମ ବା ପରମାତ୍ମା ।

ପରମାତ୍ମାଙ୍କୁ ଉପନିଷଦ୍ ଏହିରୂପେ ବର୍ଣ୍ଣନା କରେ—

**ଅଚିନ୍ତ୍ୟମବ୍ୟକ୍ତ ମନନ୍ତରୂପଂ**
**ଶିବଂ ପ୍ରଶାନ୍ତମମୃତଂ ବ୍ରହ୍ମଯୋନିମ୍ । ୬ ।**
**ତଥାଦିମଧ୍ୟାନ୍ତବିହୀନମେକଂ**
**ବିଭୁଂ ଚିଦାନନ୍ଦମରୂପମଦ୍ଭୁତମ୍ । ୭ ।**

କୈବଲ୍ୟୋପନିଷଦ୍ । ୬ ।

ବସ୍ତୁତଃ ଏହି ପରମାତ୍ମା ଅଚିନ୍ତ୍ୟ, ଅର୍ଥାତ୍ ବାକ୍ୟ ଓ ମନର ଅଗୋଚର; ଅବ୍ୟକ୍ତ-ସ୍ୱରୂପ, ଅର୍ଥାତ୍ ବଚନରେ ତାହା ବ୍ୟକ୍ତ କରି ହୁଏ ନାହିଁ ବା ଲିଖନଦ୍ୱାରା ତାହାଙ୍କର ମହିମା-ବର୍ଣ୍ଣନ ସମାପ୍ତ ହୁଏ ନାହିଁ । ଏହି ହେତୁରୁ ସେ ଅଲେଖ ବା ଅବ୍ୟକ୍ତ ନାମରେ ଅଭିହିତ, ଅନନ୍ତରୂପ, ମଙ୍ଗଳସ୍ୱରୂପ ଓ ଅବିଦ୍ୟାଦି ଦୋଷପରିଶୂନ୍ୟ । ପରମାତ୍ମା ଅମୂର୍ତ୍ତି, ଅର୍ଥାତ୍ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ଏଇ କାଳତ୍ରୟାସ୍ପୃଷ୍ଟ । ପରମାତ୍ମା ବୃହତ୍, ଜଗଦୁତ୍ପତ୍ତିର କାରଣ, ଆଦି, ମଧ୍ୟ ଓ ଅନ୍ତରହିତ, ଏକ ଓ ଅଦ୍ୱିତୀୟ ବିଭୁ (ସର୍ବବ୍ୟାପକ), ସ୍ୱୟଂ ପ୍ରକାଶବାନ୍, ଚିଦାନନ୍ଦସ୍ୱରୂପ, ଅରୂପ ଓ ଅଦ୍ଭୁତବସ୍ତୁ ।

ଗୀତାରେ ମଧ୍ୟ ଉକ୍ତ ଅଛି—

**ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି**
**ଯଜ୍ଜ୍ଞାତ୍ୱାମୃତମଶ୍ନୁତେ ।**
**ଅନାଦିମତ୍ ପରଂ ବ୍ରହ୍ମ**
**ନ ସତ୍ତନ୍ନାସଦୁଚ୍ୟତେ ।।**

ଗୀତା ୧୩-୧୨

ଅର୍ଥାତ୍ ହେ ଅର୍ଜୁନ ! ଯାହା ଜ୍ଞେୟ ତାହା ଜାଣିବାଦ୍ୱାରା ଜୀବ କପରି ମୋକ୍ଷ ଲାଭ କରେ ସେ ବିଷୟ ତୁମକୁ କହିବି; ସେହି ଜ୍ଞେୟ ବସ୍ତୁ ଅନାଦି ପରଂବ୍ରହ୍ମ; ସେ ସତ୍ ବା ଅସତ୍ ନୁହନ୍ତି । ଅର୍ଥାତ୍ ସେ ଅନାଦି, ପରମ ଅବ୍ୟକ୍ତ ଅଲେଖ ବ୍ରହ୍ମ । ବ୍ୟକ୍ତାବ୍ୟକ୍ତ ଦୃଷ୍ଟିରୁ ସେ ଅତୀତ ।

ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମସଃ ପରମୁଚ୍ୟତେ
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ହୃଦି ସର୍ବସ୍ୟ ବିଷ୍ଠିତମ୍ ।

ଗୀତା ୧୩-୧୭

ସେହି ବ୍ରହ୍ମ ସୂର୍ଯ୍ୟ ପ୍ରଭୃତି ଜ୍ୟୋତିଷ୍କମାନଙ୍କର ଜ୍ୟୋତିଃ ସ୍ୱରୂପ, ଅର୍ଥାତ୍ ପ୍ରକାଶକ; ଅତଏବ ସେ ଅଜ୍ଞାନରୂପକ ଅନ୍ଧକାରାତୀତ (ଅଜ୍ଞାନ ତାହାଙ୍କୁ ସ୍ପର୍ଶ କରି ପାରେ ନାହିଁ); ସେହି କେବଳ ଜ୍ଞାନ, ଜ୍ଞେୟ ଓ ଜ୍ଞାନଗମ୍ୟ, ଅର୍ଥାତ୍ ସାଧନ ଦ୍ୱାରା ପ୍ରାପ୍ୟ । ସେ ସମସ୍ତ ପ୍ରାଣୀମାନଙ୍କର ହୃଦୟରେ ନିୟନ୍ତୃରୂପରେ ଅବସ୍ଥାନ କରୁଅଛନ୍ତି । ଉପନିଷଦରେ ମଧ୍ୟ ବ୍ରହ୍ମ ଏହିପରି ନିର୍ଦ୍ଦିଷ୍ଟ ହୋଇଛି—

ବୀଜାକ୍ଷରଂ ପରଂ ବିନ୍ଦୁଂ
ନାଦଂ ତସ୍ୟୋପରି ସ୍ଥିତମ୍ ।
ସ ଶବ୍ଦଂ ଚାକ୍ଷରେ କ୍ଷୀଣେ
ନିଃଶବ୍ଦଂ ପରମଂ ପଦମ୍ ॥
ଅନାହତଂ ତୁ ଯଚ୍ଛବ୍ଦଂ
ତସ୍ୟ ଶବ୍ଦସ୍ୟ ଯତ୍ ପରମ୍ ।
ତତ୍ ପରଂ ବିନ୍ଦତେ ଯସ୍ତୁ
ସ ଯୋଗୀ ଛିନ୍ନସଂଶୟଃ ॥
ବାଳାଗ୍ରଶତସାହସ୍ରଂ
ତସ୍ୟ ଭାଗସ୍ୟ ଭାଗିନଃ ।
ତସ୍ୟ ଭାଗସ୍ୟ ଭାଗାର୍ଦ୍ଧଂ
ତତ୍କ୍ଷୟେ ତୁ ନିରଞ୍ଜନମ୍ ॥
ପୁଷ୍ପମଧ୍ୟେ ଯଥା ଗନ୍ଧଃ
ପୟୋମଧ୍ୟେ ଯଥା ଘୃତମ୍ ।
ତିଳମଧ୍ୟେ ଯଥା ତୈଳଂ
ପାଷାଣେଷ୍ୱିବ କାଞ୍ଚନମ୍ ॥

ଏବଂ ସର୍ବାଣି ଭୂତାନି
ମଣୌ ସୂତ୍ର ଇବାତ୍ମନି ।
ସ୍ଥିରବୁଦ୍ଧି ରସଂମୂଢ଼ୋ
ବ୍ରହ୍ମବଦ୍ ବ୍ରହ୍ମଣି ସ୍ଥିତଃ ॥
ଧ୍ୟାନବିନ୍ଦୂପନିଷଦ୍—୨—୭ ॥

ତୈଳଧାରମିବାଚ୍ଛିନ୍ନଦୀର୍ଘଘଣ୍ଟାନିନାଦବତ୍ ।
ବିନ୍ଦୁନାଦକଳାତୀତଂ ଯସ୍ତଂ ବେଦ ସ ବେଦବିତ୍ । ୩୭ ।

ଏହାର ଅର୍ଥ ସ୍ପଷ୍ଟ । ଯୋଗଶିଖୋପନିଷଦରେ ଶିବ ବ୍ରହ୍ମାଙ୍କୁ ଏହି ବ୍ରହ୍ମନିର୍ଣ୍ଣୟ ବିଷୟରେ କହିଅଛନ୍ତି—

ପରଂବ୍ରହ୍ମ ପରଂ ସତ୍ୟଂ ସଚ୍ଚିଦାନନ୍ଦଲକ୍ଷଣମ୍ ।
ଅପ୍ରମେୟମନିର୍ଦ୍ଦେଶ୍ୟମବାଙ୍ମନସଗୋଚରମ୍ ॥
ଶୁଦ୍ଧଂ ସୂକ୍ଷ୍ମଂ ନିରାକାରଂ ନିର୍ବିକାରଂ ନିରଞ୍ଜନମ୍ ।
ଅନନ୍ତମପରିଚ୍ଛେଦ୍ୟମନୁପମମନାମୟକମ୍ ॥
ଯୋ. ଶି. ଉ. ୨ ।୧୬।୧୭

ସଚ୍ଚିଦାନନ୍ଦ ଲକ୍ଷଣସଂଯୁକ୍ତ ପରଂବ୍ରହ୍ମ ହିଁ ଚରମ ସତ୍ୟସ୍ୱରୂପ । ସେ ଅପ୍ରମେୟ, ଅନିର୍ଦ୍ଦେଶ୍ୟ, ବାକ୍ୟ ଓ ମନର ଅଗୋଚର; ସେ ଶୁଦ୍ଧ, ସୂକ୍ଷ୍ମ, ନିରାକାର, ନିର୍ବିକାର, ନିରଞ୍ଜନ ଅନନ୍ତ, ଅପରିଚ୍ଛେଦ୍ୟ ଓ ଉପମାହୀନ ଏବଂ ଅନାମୟ । ଉପର୍ଯ୍ୟୁକ୍ତ ଉପନିଷଦ୍ ଶ୍ରୁତି-ସମୂହରୁ ନିର୍ଗୁଣ ଅଦ୍ୱିତୀୟ ପରଂବ୍ରହ୍ମଙ୍କର ସଚ୍ଚିଦାନନ୍ଦସ୍ୱରୂପ ପ୍ରମାଣିତ ହୁଏ । ବ୍ରହ୍ମ ବିଶୁଦ୍ଧ ଓ ଅଦ୍ୱିତୀୟ; ଅତଏବ କୌଣସିପ୍ରକାରେ ତାଙ୍କର ଉପାଧିଗତ ରୂପରେଖ ଲକ୍ଷିତ ହୁଏ ନାହିଁ । ଏହା ଅସନ୍ଦିଗ୍ଧରୂପେ ପ୍ରତିପାଦିତ ହୋଇଛି ।

ଆତ୍ମାର ପାଦ ନିର୍ଣ୍ଣୟ ବିଷୟରେ ମାଣ୍ଡୁକ୍ୟଶ୍ରୁତି ଏହିପରି ବର୍ଣ୍ଣନା କରିଛି—

ନାନ୍ତଃପ୍ରଜ୍ଞଂ ନ ବହିଃପ୍ରଜ୍ଞଂ ନୋଭୟତଃ ପ୍ରଜ୍ଞଂ ନ ପ୍ରଜ୍ଞାନଘନଂ ନ ପ୍ରଜ୍ଞଂ ନାପ୍ରଜ୍ଞମଦୃଷ୍ଟମବ୍ୟବହାର୍ଯ୍ୟମଗ୍ରାହ୍ୟମଲକ୍ଷଣମଚିନ୍ତ୍ୟମବ୍ୟପଦେଶ୍ୟ-ମେକାତ୍ମପ୍ରତ୍ୟୟସାରଂ ପ୍ରପଞ୍ଚୋପଶମଂ ଶାନ୍ତଂ ଶିବମଦ୍ୱୈତଂ ଚତୁର୍ଥଂ ମନ୍ୟନ୍ତେ, ସ ଆତ୍ମା ସ ବିଜ୍ଞେୟଃ ।
ମାଣ୍ଡୁକ୍ୟୋପନିଷଦ୍—୭ ॥

ଯାହାର ପ୍ରଜ୍ଞା ବହିର୍ମୁଖ ନୁହେଁ ବା ଅନ୍ତର୍ମୁଖ ମଧ୍ୟ ନୁହେଁ, ଉଭୟମୁଖ ମଧ୍ୟ ନୁହେଁ ଯେ ପ୍ରଜ୍ଞାନଘନ ନୁହନ୍ତି, ପ୍ରଜ୍ଞ ନୁହନ୍ତି, ଅପ୍ରଜ୍ଞ ମଧ୍ୟ ନୁହନ୍ତି ; ଯେ ଦର୍ଶନର ଅଜ୍ଞାତ, ବ୍ୟବହାରର ଅଜ୍ଞାତ, ଲକ୍ଷଣର ଅଜ୍ଞାତ, ଚିନ୍ତା ଓ ନିର୍ଦ୍ଦେଶର ଅଜ୍ଞାତ ; ଯେ ଆତ୍ମପ୍ରତ୍ୟୟ ମାତ୍ର ସିଦ୍ଧ (ଅର୍ଥାତ୍ ଆତ୍ମଜ୍ଞାନ କେବଳ ଯାହାଙ୍କ ପ୍ରତି ପ୍ରମାଣ), ପ୍ରପଞ୍ଚାତୀତ, ଶାନ୍ତ, ମଙ୍ଗଳ-ସ୍ୱରୂପ, ଅଦ୍ୱିତୀୟ ; ଯାହାଙ୍କୁ ବ୍ରହ୍ମବିଦ୍‌ଗଣ ଚତୁର୍ଥ ବା ତୁରୀୟ ବୋଲି ଅଭିହିତ କରିଛନ୍ତି, ସେହି ଆତ୍ମା ; ତାଙ୍କୁ ହିଁ ସମ୍ୟଗ୍ ରୂପରେ ଜାଣିବାକୁ ହେବ । ପୁନଶ୍ଚ—

ଅମାତ୍ରଶ୍ଚତୁର୍ଥୋଽବ୍ୟବହାର୍ଯ୍ୟଃ
ପ୍ରପଞ୍ଚୋପଶମଃ ଶିବୋଽଦ୍ୱୈତମ୍ ॥
ମାଣ୍ଡୁକ୍ୟ—୧୨ ॥

ଯାହା ମାତ୍ରାଶୂନ୍ୟ ଓ ବର୍ଣ୍ଣାଦିରହିତ, ତାହା ପ୍ରଣବୋଙ୍କାର ଚତୁର୍ଥ ପାଦ, ଅର୍ଥାତ୍ ସେ ତୁରୀୟ ଓ ନିର୍ବିଶେଷ ପରମାତ୍ମା ଅଟନ୍ତି । ସେ ବାକ୍ୟ ଓ ମନର ଅଗୋଚର ; ସେହି ହେତୁରୁ ସେ ଅବ୍ୟବହାର୍ଯ୍ୟ, ଉପାଧିରହିତ ଏବଂ ନିତ୍ୟଶୁଦ୍ଧ, ଭେଦ ବା ଦ୍ୱୈତରହିତ, ଅର୍ଥାତ୍ ଅଦ୍ୱିତୀୟ ଅଟନ୍ତି । ପ୍ରକୃତ ପକ୍ଷରେ ବେଦାନ୍ତାଦି ଆପ୍ତଶାସ୍ତ୍ର ଅନୁଧ୍ୟାନ କଲେ ନିଶ୍ଚୟ ଜଣାଯାଏ ଯେ, ଏକ ଓ ଅଦ୍ୱିତୀୟ ଅଲେଖ ପ୍ରଭୁ ପରଂବ୍ରହ୍ମଙ୍କ ବ୍ୟତୀତ ଦ୍ୱିତୀୟ ସତ୍ତା ନାହିଁ ଏହାହିଁ ପ୍ରକାଶ କରିବା ନିମନ୍ତେ ଶାସ୍ତ୍ର ବାରମ୍ବାର କହେ—

ଏବଂ ତର୍ହି ଶୃଣୁ ଦ୍ୱୈତସନ୍ମାୟାମୟମତ୍ୱତଃ ।
ତେନ ବାସ୍ତବମଦ୍ୱୈତଂ ପରିଶେଷାଦ୍ ବିଭାସତେ ॥
ଅଚିନ୍ତ୍ୟରଚନାରୂପଂ ମାୟୈବ ସକଳଂ ଜଗତ୍ ।
ଇତି ନିଶ୍ଚିତ୍ୟ ବସ୍ତୁତ୍ୱମଦ୍ୱୈତେ ପରିଶିଷ୍ୟତାମ୍ ॥
ପୁନର୍ଦ୍ୱୈତସ୍ୟ ବସ୍ତୁତ୍ୱଂ ଭାତି ଚେତ୍ତ୍ୱଂ ତଥା ପୁନଃ ।
ପରିଶୀଲୟ କୋ ବାଽତ୍ର ପ୍ରୟାସସ୍ତେନ ତେ ବଦ ॥
ପଞ୍ଚଦଶୀ ପ: ୬।୨୪୫—୨୪୭ ॥

ଅର୍ଥ—ଏହିପରି ଶ୍ରବଣ କର, ମାୟାମୟତ୍ୱ ହେତୁରୁ ଦ୍ୱୈତବସ୍ତୁ ମାନେହିଁ ଅସତ୍ ଅତଏବ ଅଦ୍ୱୈତ ବସ୍ତୁ ସ୍ୱରୂପରେ ନିତ୍ୟ ପଦାର୍ଥରୂପରେ ସିଦ୍ଧ ହୁଏ । ଅଚିନ୍ତ୍ୟ ରଚନା-ରୂପକ ଏହି ନିଖିଳ ଜଗତ୍ ମାୟାର କେବଳ କାର୍ଯ୍ୟ ଏହିରୂପେ ନିଶ୍ଚୟ କରି ଶେଷରେ ଅଦ୍ୱୈତ ବସ୍ତୁର ନିତ୍ୟତ୍ୱ ଅବଧାରଣ କର । ସେଥିରେ ମଧ୍ୟ ଯଦି ପୁନର୍ବାର ଦ୍ୱୈତଭାବ ଜାଗ୍ରତ ହୁଏ, ତେବେ ତୁମ୍ଭେ ବାରମ୍ବାର ଅନୁଶୀଳନ କର, ଏହା ପ୍ରୟାସସାଧ୍ୟ ନୁହେଁ ।

ଏ ବିଷୟରେ ଆଚାର୍ଯ୍ୟ ଶଙ୍କରଙ୍କ ଉକ୍ତି—

**ଅତଃ ପରଂ ବ୍ରହ୍ମ ସଦସଦ୍ ଦ୍ୱିତୀୟଂ, ବିଶୁଦ୍ଧ ବିଜ୍ଞାନଘନଂ ନିରଞ୍ଜନମ୍ ।**
**ପ୍ରଶାନ୍ତମାଦ୍ୟନ୍ତବିହୀନମକ୍ରିୟଂ ନିରନ୍ତରାନନ୍ଦରସସ୍ୱରୂପମ୍ ॥**
**ନିରସ୍ତମାୟାକୃତସର୍ବଭେଦଂ ନିତ୍ୟଂ ଧ୍ରୁବଂ ନିଷ୍କଳମପ୍ରମେୟମ୍ ।**
**ଅରୂପମବ୍ୟକ୍ତମନାଖ୍ୟମବ୍ୟୟଂ ଜ୍ୟୋତିଃ ସ୍ୱୟଂ କିଞ୍ଚିଦିଦଂ ଚକାସ୍ତି ॥**

ବିବେକଚୂଡ଼ାମଣି—୨୨୯-୩୮୦ ॥

ଯଥାର୍ଥତଃ ଯେ ସତ୍ୟସ୍ୱରୂପ * ଅଦ୍ୱିତୀୟ, ବିଶୁଦ୍ଧ, ବିଜ୍ଞାନଘନ, ନିରଞ୍ଜନ, ପ୍ରଶାନ୍ତ, ଅନାଦି, ଅନନ୍ତ, ନିଷ୍କ୍ରିୟ ଓ ନିତ୍ୟାନନ୍ଦମୟ, ଏକମାତ୍ର ସେହି ପରଂବ୍ରହ୍ମ ସର୍ବତ୍ର ବିରାଜମାନ । ଯାହାଙ୍କଠାରୁ ମାୟାକୃତ ଭେଦଜ୍ଞାନ ବିଦୂରିତ ହୁଏ, ସେ ଶାଶ୍ୱତ, ଅପରିଚ୍ଛିନ୍ନ, ନିଷ୍କଳ, ଅପ୍ରମେୟ, ରୂପହୀନ, ଅବ୍ୟକ୍ତ, ନାମହୀନ, ଅବ୍ୟୟ ଓ ଜ୍ୟୋତିସ୍ୱରୂପ । ସେହି ପରମାତ୍ମା ସ୍ୱୟଂ ସର୍ବତ୍ର ବିରାଜମାନ ହୋଇ ଅଛନ୍ତି ।

**୦—କେବଳ ସେହି ଏକ ନିର୍ଗୁଣପରଂବ୍ରହ୍ମଙ୍କ ଜ୍ଞାନରେ ଜୀବର ମୁକ୍ତି ।**

**ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।**
**କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ ।**

ଶ୍ୱେତାଶ୍ୱତର ଉ: ୬।୧୧ ।

* ସେହି ପରଂବ୍ରହ୍ମଙ୍କର କେବେ ବିଚ୍ୟୁତି ହୁଏ ନାହିଁ ; ସେହିହେତୁରୁ ସେ ସତ୍ୟ ସଚ୍ଚିଦାନନ୍ଦମୟ ବୋଲି ତାଙ୍କର ସତ୍ୟନାମ କଥିତ । ସତ୍ୟଶବ୍ଦର 'ସ' ଅସ୍ତିତ୍ୱବାଚକ 'ତ' ଶବ୍ଦର ଅର୍ଥ—ଅନନ୍ତ ବୈଚିତ୍ର୍ୟମୟ, ସତ୍ୟ-ମିଥ୍ୟା, ନିତ୍ୟାନିତ୍ୟ, ମୃତ୍ୟୁ-ଅମୃତ୍ୟୁ, ସର୍ବବିପରୀତାର୍ଥ ଗ୍ରହଣ ସମର୍ଥ, ମାୟାମୟ ଚେତନର ବୋଧବାଚକ ; ପୁନଶ୍ଚ ସମସ୍ତ ଚୈତନ ବିଳାସର ଆନନ୍ଦମୁଖରେ, ଆନନ୍ଦର ଅନୁଶାସନ ଓ ଉଦ୍ଦେଶ୍ୟରେ ଆନନ୍ଦର ସ୍ୱତଃସିଦ୍ଧ ପ୍ରେରଣାହେତୁରୁ ନିୟନ୍ତୃତ୍ୱବାଚକ ଏହି 'ଯ' ଶବ୍ଦରୁ ଆନନ୍ଦ ନିୟନ୍ତୃତ୍ୱ ବୁଝାଏ । ସେହିହେତୁରୁ ସେହି ପରଂବ୍ରହ୍ମ ସତ୍ୟ । ସେହି ସତ୍ୟର ଆଶ୍ରୟ ସତ୍ୟଙ୍କୁ ହିଁ ବୁଝାଏ । ପୁନଶ୍ଚ ସ, ତ ଓ ଯ ଜନ୍ମ-ଲୟ ଓ ନିୟାମକତ୍ୱବାଚକ । ଏହି ବିଶ୍ୱର ଜନ୍ମ ଓ ଲୟର ନିୟାମକହେତୁରୁ ସେହି ପରଂବ୍ରହ୍ମ ହିଁ ସତ୍ୟ ଓ ବିଶ୍ୱର ପରମସତ୍ୟରୂପରେ ଅଭିହିତ ।

ବାଙ୍ମୟ, ମନୋମୟ ଓ ପ୍ରାଣମୟ ପ୍ରଭୃତିର ପରମ ଆଧାର ହେତୁରୁ ସେହି ପରଂବ୍ରହ୍ମ ସତ୍ୟ ଶବ୍ଦଦ୍ୱାରା ଅଭିହିତ ହୁଅନ୍ତି । ଭାଗବତ—"ସତ୍ୟସ୍ୟ ସତ୍ୟମୃତ ସତ୍ୟନେତ୍ରମ୍" । ବିଶୁଦ୍ଧ ସଦ୍ ବସ୍ତୁ ଚକ୍ଷୁଦ୍ୱାରା ଦୃଷ୍ଟ ହୋଇପାରେ ନାହିଁ ; କାରଣ, ଚକ୍ଷୁ କେବଳ ରୂପ ଗ୍ରହଣ କରେ । ସଦ୍‌ବସ୍ତୁ ରୂପବାନ୍ ନୁହନ୍ତି । ତ୍ୱକଦ୍ୱାରା ମଧ୍ୟ ଅନୁଭୂତ ହୋଇ ପାରେ ନାହିଁ, କାରଣ, ତ୍ୱକ୍ କେବଳ ସ୍ପର୍ଶଯୁକ୍ତ ବସ୍ତୁ ଗ୍ରହଣ କରେ ଏବଂ ଶ୍ରୋତ୍ର ପ୍ରଭୃତି ଇନ୍ଦ୍ରିୟଗଣ ମଧ୍ୟ ବିଶୁଦ୍ଧ ସଦ୍‌ବସ୍ତୁକୁ ଗ୍ରହଣ କରି ପାରନ୍ତି ନାହିଁ । ନିର୍ବିଶେଷ ବିଶୁଦ୍ଧ ସତ୍ତ୍ୱସ୍ୱରୂପ ଯେ ପରମାତ୍ମା ସେ କେବଳ ବିବେକାନୁଭୂତିରେ ଗ୍ରାହ୍ୟ ।

ସେହି ପରମପିତା ପରମାତ୍ମାଙ୍କର ପରିଜ୍ଞାନ ଭିନ୍ନ ଅନ୍ୟ କୌଣସି ଉପାୟରେ ପରମପଦର ପ୍ରାପ୍ତି ହୁଏ ନାହିଁ । ସେହି ଅଦ୍ୱିତୀୟ ଦେବାଧିଦେବ ଜଗତ୍ପିତା ସର୍ବଭୂତରେ ଗୂଢ଼ଭାବରେ ବିଦ୍ୟମାନ ଅଛନ୍ତି । ସେ ସର୍ବବ୍ୟାପୀ ଓ ସର୍ବାନ୍ତର୍ଯାମୀ ; ଅର୍ଥାତ୍ ସର୍ବପ୍ରାଣୀର ଅନ୍ତରାତ୍ମାସ୍ୱରୂପ । ଆମେ ଯାହାକିଛି କରୁଁ, ସେ ସବୁକଥା ଜାଣନ୍ତି । ପ୍ରାଣୀମାନେ ଯାହା କିଛି କରନ୍ତି, ସେ ତାହାର ଅଧିଷ୍ଠାତା, ନିରବଚ୍ଛିନ୍ନ ଚିତ୍ ସ୍ୱରୂପରେ ପ୍ରାଣୀମାନଙ୍କର ସେ ଚେତନାଦାତା । ସେ ନିର୍ଗୁଣ ଓ ମାୟାତୀତ, ଅତଏବ ବିଶୁଦ୍ଧ । ସର୍ବ ସଂକଳ୍ପାଦିରୂପ ଇନ୍ଦ୍ରିୟାଦିରୁ ସେ ଅତୀତ । ଏହି ରୂପରେ ପରମାତ୍ମାଙ୍କୁ ଜାଣିପାରିଲେ ଜୀବର ସଦ୍‌ଗତି-ଲାଭ ହୁଏ ।

ତଦ୍ ବ୍ରହ୍ମାନନ୍ଦମଦ୍ୱନ୍ଦ୍ୱଂ ନିର୍ଗୁଣଂ ସତ୍ୟଚିଦ୍‌ଘନମ୍ ।
ବିଦିତ୍ୱା ସ୍ୱାତ୍ମନୋ ରୂପଂ ନ ବିଭେତି କଦାଚନ ।।
ପରାତ୍‌ପରଂ ଯନ୍ମହତୋ ମହାନ୍ତଂ
ସ୍ୱରୂପତେଜୋମୟଶାଶ୍ୱତଂ ଶିବମ୍
କବିଂ ପୁରାଣଂ ପୁରୁଷଂ ସନାତନଂ
ସର୍ବେଶ୍ୱରଂ ସର୍ବଦେବୈରୁପାସ୍ୟମ୍ ।।

ମହୋପନିଷଦ୍ ୪।୭୦।୭୧ ।।

ଆନନ୍ଦସ୍ୱରୂପ, ଦ୍ୱନ୍ଦ୍ୱରହିତ, ନିର୍ଗୁଣ, ସଚ୍ଚିଦାନନ୍ଦସ୍ୱରୂପ ଓ ଆତ୍ମସ୍ୱରୂପ ବ୍ରହ୍ମଙ୍କୁ ଜାଣି ପାରିଲେ କୌଣସି ପ୍ରକାର ଭୟ ରହେନାହିଁ । ପରାତ୍ପର ମହତ୍‌ଠାରୁ ମଧ୍ୟ ଶ୍ରେଷ୍ଠସ୍ୱରୂପ, ତେଜଃସ୍ୱରୂପ, ନିତ୍ୟମଙ୍ଗଳମୟ, ସର୍ବଜ୍ଞ, ପୁରାଣ, ସନାତନ, ସର୍ବେଶ୍ୱର ଓ ସର୍ବଦେବ-କର୍ତ୍ତୃକ ଉପାସ୍ୟ ପରମାତ୍ମାଙ୍କୁ ଜାଣି ଲୋକ ଭୀତ ହୁଏ ନାହିଁ ।

ପୁନଶ୍ଚ—ଯତୋ ବାଚୋ ନିବର୍ତ୍ତନ୍ତେ, ଅପ୍ରାପ୍ୟମନସା ସହ ।
ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତ କଦାଚନେତ ।।

ତୈତ୍ତିରୀୟ ଉପଃ-ବ୍ର. ୪ ।

ବାକ୍ୟ ଓ ମନ ଯାହାଙ୍କୁ ପ୍ରାପ୍ତ ନ ହୋଇ, ଅର୍ଥାତ୍ ପ୍ରକାଶ କରିବାକୁ ଅସମର୍ଥ ହୋଇ ଯାହାଙ୍କ ସମକ୍ଷରୁ ଫେରିଆସେ, ସେହି ବ୍ରହ୍ମାନନ୍ଦଙ୍କୁ ଯେ ଜାଣେ, ସେ କେଉଁଠାରେ ହେଲେ ଭୟ ପ୍ରାପ୍ତ ହୁଏ ନାହିଁ; ଅର୍ଥାତ୍ ତାହାର ଜନ୍ମମରଣ-ଭୟ ନିବୃତ୍ତ ହୁଏ ।

ବର୍ଣ୍ଣିତ ପ୍ରଥମପାଦର ପ୍ରଥମାନୁପାଦରୁ 'ନେତି ନେତି' ନିଷେଧବାଚକ ଶବ୍ଦଦ୍ୱାରା ବ୍ରହ୍ମଙ୍କର ଯେଉଁ ତତ୍ତ୍ୱ ନିରୂପଣ କରାଗଲା, ତଦ୍ଦ୍ୱାରା ସେହି ପରଂବ୍ରହ୍ମ ଅକ୍ଷୟ, ଅବ୍ୟୟ, ଅଜର, ଅମର, ଅକଳ୍ପିତ, ନିରଞ୍ଜନ, ନିର୍ଗୁଣ, ଅଲେଖ, ଅଦ୍ୱୟ—ଇତ୍ୟାଦି ବିଶୁଦ୍ଧ ଅଦ୍ୱୈତଶବ୍ଦାବଳୀ-ଦ୍ୱାରା କେବଳ ଅଭିହିତ ବୋଲି ନିଶ୍ଚିତଭାବରେ ଜଣାଯାଏ । ସେ ସ୍ଥୂଳ ନୁହନ୍ତି, ସୂକ୍ଷ୍ମ ମଧ୍ୟ ନୁହନ୍ତି, ହ୍ରସ୍ୱ, ଦୀର୍ଘ ଓ ଶ୍ୱେତରକ୍ତାଦି କୌଣସି ବର୍ଣ୍ଣବିଶିଷ୍ଟ ନୁହନ୍ତି । ସେ ଛାୟାମାୟାକାୟା ଓ ତମରୁ ଅତୀତ; ସେ ପଞ୍ଚଭୂତାଦି ଭୌତିକ ପଦାର୍ଥର ଅନ୍ତର୍ଗତ ନୁହନ୍ତି । କୌଣସି ଇନ୍ଦ୍ରିୟ ବା ଇନ୍ଦ୍ରିୟଗ୍ରାହ୍ୟ ନୁହନ୍ତି । ସେ ଭୋକ୍ତା ବା ଭୋଗ୍ୟ ନୁହନ୍ତି । ଶବ୍ଦସ୍ପର୍ଶାଦି ବିଷୟରୁ ସେ ଭିନ୍ନ । କେବଳ ସେ ସତ୍ୟ-ଜ୍ଞାନ-ଅନନ୍ତ ଓ ଆନନ୍ଦସ୍ୱରୂପରେ ନିତ୍ୟ ପ୍ରତିଷ୍ଠିତ ଅଛନ୍ତି ।

ସେହି ପରଂବ୍ରହ୍ମ ପରମାତ୍ମାଙ୍କ ପ୍ରଦୀପ୍ତ ମହିମାରୁ ସୂର୍ଯ୍ୟଚନ୍ଦ୍ର-ଗ୍ରହନକ୍ଷତ୍ରଖଚିତ ଆକାଶ ଓ ନଦନଦୀ-ଭୂଧରପୂର୍ଣ୍ଣ ବିପୁଳ ଓ ବିଚିତ୍ର ବିଶ୍ୱ ଅଭିବ୍ୟକ୍ତ ହୋଇଅଛି । ସେହି ପରମାତ୍ମାଙ୍କ ନିୟନ୍ତ୍ରଣରେ ସୂର୍ଯ୍ୟ, ଚନ୍ଦ୍ର ନିମେଷ, ମୁହୂର୍ତ୍ତ, ଦିବା, ରାତ୍ରି, ମାସ ସମ୍ବତ୍ସର ପ୍ରଭୃତି ସ୍ୱ ସ୍ୱ ନିୟମାନୁଯାୟୀ ନିୟନ୍ତ୍ରିତ ହୁଅନ୍ତି । ସେହି ପରମପିତା ପରମାତ୍ମାଙ୍କର ପ୍ରଶାସନରେ ପିପୀଳିକାଠାରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ସମସ୍ତ ନିୟନ୍ତ୍ରିତ ଏବଂ ତାଙ୍କ ମହିମାରେ ଏହି ସର୍ବ ପରିବ୍ୟାପ୍ତ । ସେହି ପରଂବ୍ରହ୍ମଙ୍କର କରୁଣାପ୍ରଭାବରେ କୌଣସି ପ୍ରକାର ବ୍ୟତିକ୍ରମ ହୁଏ ନାହିଁ । ସେହି ଏକମାତ୍ର ସମସ୍ତଙ୍କ ନିୟନ୍ତା, ସର୍ବାନ୍ତର୍ଯ୍ୟାମୀ ଓ ସେ ସର୍ବେଶ୍ୱରେଶ୍ୱର ଅଟନ୍ତି ଏବଂ ସେହି ବିଶୁଦ୍ଧାନନ୍ଦ ଅଲେଖ ପରଂବ୍ରହ୍ମ କେବଳ ଆଶ୍ରୟପ୍ରଦ ।

ଇତି ପ୍ରଥମପାଦସ୍ୟ ପ୍ରଥମାନୁପାଦଃ ।



## ପ୍ରଥମପାଦସ୍ୟ ଦ୍ୱିତୀୟାନୁପାଦଃ

# ସୃଷ୍ଟିତତ୍ତ୍ୱବିଜ୍ଞାନଯୋଗଃ

### ୦—ସୃଷ୍ଟିତତ୍ତ୍ୱର ବ୍ୟାଖ୍ୟା ।

ପୂର୍ବାନୁପାଦରେ ଅଲେଖପରଂବ୍ରହ୍ମ ପରମାତ୍ମାଙ୍କର ତଥ୍ୟ ନିରୂପଣ **କରାଯାଇଛି ;** ଅଧୁନା ଏହି ଅନୁପାଦରେ ସେହି ପରଂବ୍ରହ୍ମଙ୍କ ମହିମାରୁ କିପରି ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି ହୋଇଅଛି, ତାହା ସଂକ୍ଷେପରେ ବର୍ଣ୍ଣନ କରାଯାଉଅଛି ।

ସୃଷ୍ଟି ସମ୍ବନ୍ଧରେ ବିଭିନ୍ନ ମତବାଦ—

ଅନ୍ୟାନ୍ୟ ମତାବଲମ୍ବୀମାନେ ସୃଷ୍ଟିର ମୂଳତତ୍ତ୍ୱ ସମ୍ବନ୍ଧରେ ଯେ ସମସ୍ତ ଭିନ୍ନ ଭିନ୍ନ ମତ ପୋଷଣ କରିଅଛନ୍ତି; ସେହି ସକଳ ମତ ପୁଙ୍ଖାନୁପୁଙ୍ଖରୂପେ ପର୍ଯ୍ୟାଲୋଚିତ ହୋଇ ସତ୍ୟମହିମାଧର୍ମ—ବିଶୁଦ୍ଧାଦ୍ୱୈତ-ବ୍ରହ୍ମବାଦମତ ସହିତ ଏକ ଅପୂର୍ବ ଭାବସମନ୍ୱିତ ଏଠାରେ ବିବେଚିତ ।

କେତେକଙ୍କ ମତରେ ପ୍ରକୃତିପୁରୁଷ ସହଯୋଗରେ ଜଗତର ସୃଷ୍ଟି । ମାୟା ବା ଅବିଦ୍ୟା ସୃଷ୍ଟିର କାରଣ ; ସଗୁଣ ବ୍ରହ୍ମ ଉଭୟଲିଙ୍ଗଯୁକ୍ତ ଓ ତାହାଙ୍କଠାରୁ ସକଳପଦାର୍ଥର ସୃଷ୍ଟି—ଏପରି ଦୁଇ ପ୍ରକାର ମତ ଦେଖାଯାଏ । ଅନ୍ୟ କୌଣସି ଭୌତିକବାଦୀଙ୍କ ମତରେ ପଞ୍ଚମହାଭୂତର ସ୍ୱାଭାବିକ କ୍ରିୟାଦ୍ୱାରା ବିଶ୍ୱର ସୃଷ୍ଟି ଅନନ୍ତସମୟରୁ ହୋଇ **ଆସୁଛି ।** ଏପରି ନାନାମୁନିମାନଙ୍କର ନାନାମତ ପର୍ଯ୍ୟାୟକ୍ରମେ ନିରାକୃତ ହୋଇ କେବଳ ପରଂବ୍ରହ୍ମଙ୍କ ମହିମାରୁ କିପରି ସୃଷ୍ଟିର ଉପକ୍ରମ ହୋଇଛି, ତାହା ଯୁକ୍ତିଯୁକ୍ତଭାବରେ ଏଠାରେ ବ୍ୟାଖ୍ୟାତ ହେବ ।

### ୦—ଜଗତର ସୃଷ୍ଟି ପୂର୍ବରୁ ଏକ ଅଦ୍ୱିତୀୟ ପରଂବ୍ରହ୍ମ ବିଦ୍ୟମାନ ଥିଲେ ଏବଂ ସେ କେବଳ ଏହି ସୃଷ୍ଟିର ଅଦ୍ୱିତୀୟ କାରଣ ।

ଗୁରୁ ମହିମାସ୍ୱାମୀଙ୍କ ଉପଦେଶ ଅନୁସାରେ ଏକ ପରଂବ୍ରହ୍ମ ପ୍ରଭୁଙ୍କ ମହିମା-ବିକାଶରୁ ବିଶ୍ୱସୃଷ୍ଟି ସମ୍ଭୂତ ହୋଇଅଛି । ଏହି ସୃଷ୍ଟିର ପୂର୍ବେ ସେହି ଏକମାତ୍ର ପରଂବ୍ରହ୍ମ ପ୍ରଭୁ ବିଦ୍ୟମାନ ଥିଲେ । ଏହି ମହିମାସ୍ୱାମୀଙ୍କ ଉପଦେଶ ବେଦାନ୍ତାଦି ଗ୍ରନ୍ଥମାନଙ୍କରେ ମଧ୍ୟ ସିଦ୍ଧାନ୍ତରୂପରେ ନିର୍ଣ୍ଣିତ ହୋଇଅଛି । ସୃଷ୍ଟିକ୍ରମ ସମ୍ବନ୍ଧରେ ଶ୍ରୁତିବଚନ ପର୍ଯ୍ୟାଲୋଚନା

କଲେ ଜଣାଯାଏ ଯେ, ଜଗତ୍‌ସୃଷ୍ଟିର ପୂର୍ବେ ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା କେବଳ ବିଦ୍ୟମାନ ଥିଲେ । ତାହାଙ୍କ ଅଲୌକିକ ମହିମାରୁ କେବଳ ଜଗତର ସୃଷ୍ଟି ସମ୍ଭବ ହୋଇଛି । ଏ ସମ୍ବନ୍ଧରେ ଶ୍ୱେତକେତୁଙ୍କୁ ମହର୍ଷି ଉଦ୍ଦାଳକ ଛାନ୍ଦୋଗ୍ୟ ଶ୍ରୁତିରେ ଉପଦେଶ ଦେଇ ଅଛନ୍ତି—

**ସଦେବ ସୌମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟଂ ତଦ୍ ହୈ ଏକ ଆହୁରସଦେବେଦମଗ୍ର ଆସୀଦେକମେବାଦ୍ୱିତୀୟଂ ତସ୍ମାଦସତଃ ସଜ୍ଜାୟତ ।** ଛାନ୍ଦୋଗ୍ୟ ଉ: ୬।୨।୧ ॥

ବତ୍ସ ! ଏହି ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ନକ୍ଷତ୍ରଖଚିତ ନଦନଦୀ-ଭୂଧରପୂର୍ଣ୍ଣ ବିପୁଳ ବିଶ୍ୱ ଅଭିବ୍ୟକ୍ତ ହେବା ପୂର୍ବରୁ କେବଳ ଏକମାତ୍ର ଅଦ୍ୱିତୀୟ ସତ୍‌ସ୍ୱରୂପ ପରମାତ୍ମା ପରଂବ୍ରହ୍ମ ବିଦ୍ୟମାନ ଥିଲେ ; କିନ୍ତୁ କେହି କେହି କହନ୍ତି ଯେ, ସୃଷ୍ଟିର ପୂର୍ବରୁ କୌଣସି ଅସ୍ତିତ୍ୱ ନ ଥିଲା, ସେ ସମୟରେ କେବଳ ଏକମାତ୍ର ଅଭାବାତ୍ମକ ଶୂନ୍ୟହିଁ ବର୍ତ୍ତମାନ ଥିଲା । ସେହି ଅସ୍ତିତ୍ୱହୀନ ଓ ଏକାନ୍ତ ଅଭାବାତ୍ମକ ଶୂନ୍ୟଠାରୁ ଏହି ବିପୁଳ ଓ ବିଚିତ୍ର ବିଶ୍ୱର ଉତ୍ପତ୍ତି ହୋଇଅଛି ।

**କୁତସ୍ତୁ ଖଲୁ ସୌମ୍ୟେବଂ ସ୍ୟାଦିତି ହୋବାଚ, କଥମସତଃ ସଜ୍ଜାୟେତେତି ସତ୍ତ୍ୱେବ ସୌମ୍ୟେଦମଗ୍ର ଆସୀଦେକମେବା-ଦ୍ୱିତୀୟମ୍ ।** ଛାନ୍ଦୋଗ୍ୟ ୬।୨।୨ ॥

କିନ୍ତୁ ହେ ବତ୍ସ ! ଏପରି କୌଣସି ପ୍ରମାଣ ନାହିଁ ଯଦ୍ଦ୍ୱାରା ଏହା ସ୍ୱୀକାର କରା ଯାଇପାରେ ଯେ ଅସତ୍‌ରୁ ସତ୍‌ର ଉତ୍ପତ୍ତି ହୋଇଅଛି । ଏହା ପରସ୍ପର ବିରୁଦ୍ଧ ଓ ଅଯୌକ୍ତିକ ; କିନ୍ତୁ ଏହା ନିଶ୍ଚିତ ଯେ, ପରିଦୃଶ୍ୟମାନ ବିଶ୍ୱର ସୃଷ୍ଟିପୂର୍ବେ ଏକ ଅଦ୍ୱିତୀୟ ସତ୍‌ସ୍ୱରୂପ ପରମାତ୍ମା ପରଂବ୍ରହ୍ମ ବିଦ୍ୟମାନ ଥିଲେ । ଏ ବିଷୟ ସନତ୍‌କୁମାର ମଧ୍ୟ ନାରଦଙ୍କୁ ସଂକ୍ଷେପରେ ବୋଧଗମ୍ୟ କରାଇଛନ୍ତି ।

**ସ ଏକଧା ଭବତି—** ଛାନ୍ଦୋଗ୍ୟ ୭।୨୬।୨ ॥

ସୃଷ୍ଟିର ପୂର୍ବେ ସେହି ପରମାତ୍ମା କେବଳ ଏକ ରୂପରେ ବିଦ୍ୟମାନ ଥିଲେ । ପୁନଶ୍ଚ ଐତରେୟ ଶ୍ରୁତି କହେ—

**ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍ । ନାନ୍ୟତ୍ କିଞ୍ଚନ ମିଷତ୍ ॥ ସ ଈକ୍ଷତ ଲୋକାନ୍ନୁ ସୃଜା ଇତି ।** ଐତରେୟ ଉ: ୧।୧।୧ ॥

ସୃଷ୍ଟି ପୂର୍ବରେ ଏକମାତ୍ର ଆତ୍ମା ଥିଲେ, ଅର୍ଥାତ୍ ବିବିଧ ବୈଚିତ୍ର୍ୟବିଶିଷ୍ଟ ଏହି ଜଗତ୍‌ସୃଷ୍ଟିର ପୂର୍ବରେ ଏକ ଅଦ୍ୱିତୀୟ ପରଂବ୍ରହ୍ମ ହିଁ ବିଦ୍ୟମାନ ଥିଲେ; ତଦ୍‌ଭିନ୍ନ ସ୍ପନ୍ଦିତ ଅନ୍ୟ କିଛି ନ ଥିଲା । ସେ ଆଲୋଚନା କଲେ— ଆମ୍ଭେ ଅମ୍ଭଃ ପ୍ରଭୃତି ଲୋକ ସୃଷ୍ଟି କରିବୁଁ । ଅନ୍ୟ ମଧ୍ୟ—

**ପୁରା କଲେବଂ ନ କଞ୍ଚନାସୀନ୍ନ ଦ୍ୟୌର୍ନାନ୍ତରୀକ୍ଷଂ ନ ପୃଥିବୀ, କେବଳଂ ଜ୍ୟୋତିରୂପଂ ଅନାଦ୍ୟନନ୍ତଂ ଅନଣୁ ଅସ୍ଥୂଳରୂପମରୂପଂ ରୂପ-ବିଦବିଜ୍ଞେୟଂ ଜ୍ଞାନରୂପମାନନ୍ଦମୟମାସୀତ୍ ।।**        ଅବ୍ୟକ୍ତ ଉ: ।।

ସୃଷ୍ଟିର ପୂର୍ବକାଳରେ ଏହି ପରିଦୃଶ୍ୟମାନ କୌଣସି ପଦାର୍ଥ ବିଦ୍ୟମାନ ନ ଥିଲା ; ସ୍ୱର୍ଗ, ଅନ୍ତରୀକ୍ଷ ଓ ପୃଥିବୀ ଇତ୍ୟାଦି କିଛିହିଁ ନ ଥିଲା । କେବଳ ଅନାଦି, ଅନନ୍ତ, ଅନଣୁ, ଅସ୍ଥୂଳ, ଅରୂପ—ଅର୍ଥାତ୍ ସକଳ ପ୍ରକାର ଧର୍ମବର୍ଜିତ ଜ୍ୟୋତିଃସ୍ୱରୂପ ଚୈତନ୍ୟମାତ୍ରହିଁ ବିଦ୍ୟମାନ ଥିଲେ । ସେ ରୂପହୀନ ହେଲେ ମଧ୍ୟ ଅବ୍ୟକ୍ତ ଓ ଆରୋପିତ ନାମରୂପବିଶିଷ୍ଟ ଥିଲେ । ଏହି ଚୈତନ୍ୟ କୌଣସି ପ୍ରକାର ଜ୍ଞାନର ବିଷୟ ନୁହନ୍ତି । କେବଳ ଜ୍ଞାନରୂପ ଓ ଆନନ୍ଦସ୍ୱରୂପ ଥିଲେ ।

ଉପର୍ଯ୍ୟୁକ୍ତ ଶ୍ରୁତିବଚନରୁ ସୃଷ୍ଟିର କାରଣସ୍ୱରୂପ ଅଦ୍ୱିତୀୟ ପରଂବ୍ରହ୍ମ ବିଦ୍ୟମାନ ଥିବା ସୁନିଶ୍ଚିତ ହୁଏ । ଏପରି ସ୍ଥଳେ କେହି କେହି କହନ୍ତି ଯେ, ସୃଷ୍ଟିର ପୂର୍ବରୁ ଏହାର କାରଣ କିଛି ନ ଥିଲା; କିନ୍ତୁ ଏହା ଶ୍ରୁତିବଚନବିରୁଦ୍ଧ, ଅତଏବ ଅଯୌକ୍ତିକ । କାରଣ ନ ଥାଇ କାର୍ଯ୍ୟ ଉତ୍ପନ୍ନ ହେବା ଅସମ୍ଭବ । "କାରଣାଭାବେ କାର୍ଯ୍ୟାଭାବଃ"—ବ୍ରହ୍ମସୂତ୍ର । କାରଣ ନ ଥିଲେ କାର୍ଯ୍ୟର ନିଷ୍ପତ୍ତି ଅଭାବ, ଅତଏବ ଅଭାବରୂପ ଉପାଦାନରୁ ଭାବରୂପ ଜଗତ୍ କାହିଁରେ ସମ୍ଭବ ହେବ । ସୁବାଲୋପନିଷଦ୍ ପ୍ରମାଣ କରେ ଯେ—

**"ଅ ଦେବ ଇଦମଗ୍ର ଆସୀତ୍ ।।"**

ଅତଏବ ଅଭାବରୁ ଜଗତର ସୃଷ୍ଟି ସମ୍ଭବ—ଏ କଥା କାହିଁକି ଅସ୍ୱୀକୃତ ହେବ ; କିନ୍ତୁ ଏହି ଯୁକ୍ତି ଠିକ୍ ନୁହେଁ । ପୂର୍ବୋକ୍ତ ଅସତ୍ ଶବ୍ଦରୁ ପରମାତ୍ମାଙ୍କର ଅଭାବ—ଏପରି ଅର୍ଥ କରିଯାଇ ପାରେ; ଅର୍ଥାତ୍ କେବଳ ଏହି ଜଗତର ଅପ୍ରକାଶ୍ୟ ଅସତ୍ ଶବ୍ଦ ପ୍ରକାଶ କରୁଅଛି । କାରଣ, ପ୍ରାମାଣିକ ପ୍ରଧାନ ଶ୍ରୁତିମାନେ କହନ୍ତି ଯେ, ଜଗତର ଉତ୍ପତ୍ତି ପୂର୍ବରେ ଏକମାତ୍ର ସର୍ବଜ୍ଞ ସର୍ବଶକ୍ତିମାନ୍ ପରମାତ୍ମା ହିଁ ବିଦ୍ୟମାନ ଥିଲେ । ବାଦରାୟଣ ମଧ୍ୟ ପୂର୍ବୋକ୍ତ ଅସତ୍ ଶବ୍ଦ ବିଷୟରେ କହିଅଛନ୍ତି—

ଅସଦିତି ଚେନ୍ନ ପ୍ରତିଷେଧମାତ୍ରତ୍ୱାତ୍ ॥ ବ୍ରହ୍ମସୂତ୍ର ୨।୧।୭ ॥

ଅର୍ଥାତ୍ ସୃଷ୍ଟିର ପୂର୍ବରେ ଅସତ୍ ଥିଲା – ଏପରି କହିବା ଠିକ୍ ନୁହେଁ ; କାରଣ ଶ୍ରୁତିରେ ଏହାର ପ୍ରତିଷେଧ କରାଯାଇଅଛି ।

ବାସ୍ତବିକ ଅସତ୍ ବା ଅଭାବରୁ ସୃଷ୍ଟି ହୋଇ ନ ପାରେ । ଶ୍ରୁତି ସ୍ୱୀକାର କରନ୍ତି —ଜଗତର ଉତ୍ପତ୍ତି ପୂର୍ବରୁ କାରଣାତ୍ମକ ପରମାତ୍ମା ହିଁ ବିଦ୍ୟମାନ ଥିଲେ । ଏହାର ନିରାକରଣ କୌଣସି ଶ୍ରୁତି କରି ନାହିଁ । ଏହାହିଁ ବିଶୁଦ୍ଧାଦ୍ୱୈତଦର୍ଶନମତର ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଜଗତ ପରଂବ୍ରହ୍ମଙ୍କର ବିଶୁଦ୍ଧ ବା ଅବିକାରୀ ସତ୍-ଚିତ୍‌ସ୍ୱରୂପ; ଆଂଶିକ ଅନୁବୃତ୍ତିରୂପ ପରିଣାମ ମଧ୍ୟ ନୁହେଁ, କାରଣ, ବିଶୁଦ୍ଧ ବସ୍ତୁ ବିକାରୀ ବା ବିପରିଣାମୀ ( ବିବର୍ତ୍ତ ) ହୋଇ ପାରେ ନାହିଁ । ସେ ସଂପୂର୍ଣ୍ଣ ଅଦ୍ୱିତୀୟ, ନିରବଚ୍ଛିନ୍ନ ରୂପରେ ସତତ ବିଦ୍ୟମାନ । ସେହି ପରମାତ୍ମା କେବଳ ଏହି ଜଗତ୍ ସୃଷ୍ଟିର ହେତୁସ୍ୱରୂପ ; ତାଙ୍କ ବ୍ୟତୀତ ଦ୍ୱିତୀୟ ଅନ୍ୟ କେହି ନାହିଁ ।

ଇଦଂ ସର୍ବଂ ପୁରା ସୃଷ୍ଟେରେକମେବାଦ୍ୱିତୀୟକମ୍
ସଦେବାସୀନ୍ନାମରୂପେ ନାସ୍ତାମିତ୍ୟାରୁଣେର୍ବଚଃ ॥

ପଞ୍ଚଦଶୀ ୨।୧୮ ॥

ସେହି ଇଦଂଶବ୍ଦବାଚ୍ୟ ଜଗତ୍‌ସୃଷ୍ଟିର ପୂର୍ବରେ ଏକମାତ୍ର ଅଦ୍ୱିତୀୟ ସତ୍‌ସ୍ୱରୂପ ପରମାତ୍ମା ବିଦ୍ୟମାନ ଥିଲେ । ନାମ ବା ରୂପ କିଛିମାତ୍ର ନ ଥିଲା; ଏହା ଉପନିଷଦ୍‌ରେ ଆରୁଣି କହି ଅଛନ୍ତି ।

ଗୋପାଳୋତ୍ତରତାପନୀୟୋପନିଷଦ୍ କହେ—

"ପୂର୍ବଂ ହ୍ୟେକମେବାଦ୍ୱିତୀୟଂ ବ୍ରହ୍ମାସୀତ୍" ।

ସୃଷ୍ଟିର ପୂର୍ବେ ଏକ ଅଦ୍ୱିତୀୟ ବ୍ରହ୍ମମାତ୍ର ଥିଲେ । ଏ ବିଷୟରେ ବ୍ୟାସଦେବ ଶୁକଦେବଙ୍କୁ କହିଅଛନ୍ତି ।

ଅନାଦ୍ୟନ୍ତମଜଂ ଦିବ୍ୟମଜରଂ ଧ୍ରୁବମବ୍ୟୟମ୍ ।
ଅପ୍ରତର୍କ୍ୟମବିଜ୍ଞେୟଂ ବ୍ରହ୍ମାଗ୍ରେ ସଂପ୍ରବର୍ତ୍ତତେ ॥

ଶାନ୍ତିପର୍ବ ୨୩୧–୧୧।୭ ॥

ଅନାଦି, ଅନନ୍ତ, ଜନ୍ମରହିତ, ପ୍ରକାଶମାନ, ନିତ୍ୟ, ଅଜର, ଅବ୍ୟୟ ଓ ତର୍କର ଅଗୋଚର (ଅର୍ଥାତ୍ ଲେଖବର୍ଜିତ, ଅଲେଖ) ଅବିଜ୍ଞେୟ ବ୍ରହ୍ମ ସୃଷ୍ଟିପୂର୍ବରୁ ବିଦ୍ୟମାନ ଅଛନ୍ତି ।

ଶ୍ୱେତାଶ୍ୱତର ଶ୍ରୁତି କହେ—

ସ ବିଶ୍ୱକୃଦ୍ ବିଶ୍ୱବିତ୍ ଆତ୍ମଯୋନିର୍ଜ୍ଞଃ
କାଳକାରୋ ଗୁଣୀ ସର୍ବବିଦ୍ ଯଃ ।
ପ୍ରଧାନ କ୍ଷେତ୍ରଜ୍ଞ-ପତିର୍ଗୁଣେଶଃ
ସଂସାରମୋକ୍ଷ-ସ୍ଥିତିବନ୍ଧହେତୁଃ ॥
ସ ତନ୍ମୟୋ ହ୍ୟମୃତ ଈଶସଂସ୍ଥୋ
ଜ୍ଞଃ ସର୍ବଗୋ ଭୁବନସ୍ୟାସ୍ୟ ଗୋପ୍ତା ।
ଯ ଈଶେଽସ୍ୟ ଜଗତୋ ନିତ୍ୟମେବ
ନାନ୍ୟୋ ହେତୁ ର୍ବିଦ୍ୟତ ଈଶନାୟ ॥ ଶ୍ୱେତାଶ୍ୱ: ଉ: ୬-୬-୧୭ ॥

ସେହି ପରମାତ୍ମା ବିଶ୍ୱକର୍ତ୍ତା ଓ ବିଶ୍ୱର ବେତ୍ତା; ସମସ୍ତଙ୍କର ଆତ୍ମା ଓ ସକଳର କାରଣ । ସେ କାଳର କର୍ତ୍ତା; ତାହାଙ୍କର ନିୟମରେ ଶୀତବସନ୍ତାଦି ଋତୁ ଓ ସମ୍ବତ୍ସର ଯୁଗାଦି ଚଳୁଅଛି । ସେ ସତ୍ତ୍ୱାଦିସର୍ବଗୁଣାଶ୍ରୟ, ସର୍ବଜ୍ଞ ଓ ଅବ୍ୟକ୍ତ । ସେହି କେବଳ ବିଜ୍ଞାନାତ୍ମା ଓ ଜୀବାତ୍ମାର ଅଧିପତି । ସେ ସତ୍ତ୍ୱାଦି ଗୁଣତ୍ରୟର ଈଶ୍ୱର ଏବଂ ସେହି ପରମପୁରୁଷ କେବଳ ସଂସାର-ସ୍ଥିତି, ମୋକ୍ଷ ଓ ବନ୍ଧନର କାରଣ । ସେହି ପରମପିତା ଜ୍ୟୋତିର୍ମୟ; ତାହାଙ୍କର ଆଲୋକରେ ଅନନ୍ତ ବ୍ରହ୍ମାଣ୍ଡ ପ୍ରଦୀପ୍ତ ହେଉଅଛି । ସେ ଜରାମରଣରହିତ ଓ ସକଳ ଜଗତର ସ୍ୱାମୀ-ସ୍ୱରୂପରେ ବିଦ୍ୟମାନ ଅଛନ୍ତି । ସେ ସର୍ବଜ୍ଞ, ତାଙ୍କର ଅଗୋଚର କିଛି ନାହିଁ; ସେ ସର୍ବତ୍ର ଗମନ କରି ପାରନ୍ତି, ତାଙ୍କର ଅଗମ୍ୟସ୍ଥାନ କିଛି ନାହିଁ । ସେ ଏହି ଅନନ୍ତ ଭୁବନ ପାଳନ କରୁଅଛନ୍ତି । ସେ ସର୍ବଦା ଏହି ଜଗତକୁ ନିୟନ୍ତ୍ରିତ କରି ରଖି ଅଛନ୍ତି; ସେହି ପରମାତ୍ମାଙ୍କ ଭିନ୍ନ ଏହି ଅସୀମ ବ୍ରହ୍ମାଣ୍ଡର ହେତୁ ଅନ୍ୟ କେହି ନାହିଁ ।

ଏ ସମ୍ବନ୍ଧରେ ବାଦରାୟଣ ସୂତ୍ର—

**ଆତ୍ମନି ଚୈବଂ ବିଚିତ୍ରାଶ୍ଚ ହି ॥**   ବ୍ରହ୍ମସୂତ୍ର ୨।୧।୨୮ ॥

ଯେପରି ଆତ୍ମାର ସ୍ୱପ୍ନାବସ୍ଥାରେ ନାନାବିଧ ସୃଷ୍ଟି ପ୍ରଖ୍ୟାତ ହେଲେ ମଧ୍ୟ ଆତ୍ମାର ଏକତ୍ୱ ନଷ୍ଟ ହୁଏ ନାହିଁ * ସେହିପରି ବ୍ରହ୍ମଙ୍କଠାରୁ ବିଚିତ୍ର ସୃଷ୍ଟିସମୂହ ଅଭିବ୍ୟକ୍ତ ହେଲେ ମଧ୍ୟ ତାହାଙ୍କର ନିଜ ସ୍ୱରୂପ ନଷ୍ଟ ହୁଏ ନାହିଁ ।

* ଆତ୍ମନି ଚ ଆତ୍ମନ୍ୟପି ଏକସ୍ମିନ୍ ବିଚିତ୍ରା ଅନେକାକାରା ସୃଷ୍ଟିର୍ଦୃଶ୍ୟତେ ପଠ୍ୟତେ ଚ ଶ୍ରୁତୌ— ପରମାତ୍ମାଙ୍କର ସ୍ୱରୂପହାନି, ଅର୍ଥାତ୍ କ୍ଷୟ ହୁଏ ନାହିଁ, ଅଥଚ ବ୍ରହ୍ମଙ୍କଠାରୁ ଅନେକ ଆକାର ସୃଷ୍ଟି ହୁଏ । ଏ ସମ୍ବନ୍ଧରେ ଦୃଷ୍ଟାନ୍ତ ଅଛି ଆତ୍ମା ଏକ, ସ୍ୱପ୍ନକାଳରେ ତାହାର ସ୍ୱରୂପ ଯଥାଯଥ ଥାଏ, ଅଥଚ ତହିଁରେ ବିଚିତ୍ରସୃଷ୍ଟି (ସ୍ୱାପ୍ନିକସୃଷ୍ଟି) ଦେଖାଯାଏ ଏବଂ ଏହା ଶ୍ରୁତିରେ ମଧ୍ୟ କଥିତ ହୋଇଅଛି ।

ସର୍ବୋପେତା ଚ ତଦ୍ଦର୍ଶନାତ୍ ॥ ବ୍ରହ୍ମସୂତ୍ର ୨-୧-୩୦ ॥

ପୂର୍ବୋକ୍ତ ବର୍ଣ୍ଣନାନୁସାରେ ପରଂବ୍ରହ୍ମଙ୍କଠାରୁ ବିଚିତ୍ର ବିକାରପ୍ରପଞ୍ଚ (ଜଗତ) * ଉତ୍ପନ୍ନ ହେବା ଅଯୁକ୍ତ ନୁହେଁ ; କିନ୍ତୁ, ପରଂବ୍ରହ୍ମ ବିଚିତ୍ର ଶକ୍ତିସମ୍ପନ୍ନ ; ଏହା କିପରି ଜଣାଯିବ ? ଏହି ପ୍ରଶ୍ନର ଉତ୍ତରସ୍ୱରୂପ ଏହି ବ୍ରହ୍ମସୂତ୍ର ବଚନ, ଅର୍ଥାତ୍ ସେହି ପରମାତ୍ମା ସର୍ବଶକ୍ତିଯୁକ୍ତ । ଶ୍ରୁତିବଚନ ମଧ୍ୟ ଏହା ପ୍ରମାଣିତ କରୁଛି—ପରମାତ୍ମା ସର୍ବଶକ୍ତିସମ୍ପନ୍ନ, ଅତଏବ ସେ ସର୍ବକର୍ମା, ସର୍ବକାମ, ସର୍ବଗନ୍ଧ, ସର୍ବରସ, ସର୍ବବ୍ୟାପୀ, ବାଗିନ୍ଦ୍ରିୟବର୍ଜିତ, ନିଷ୍କାମ, ଆପ୍ତକାମ, ସତ୍ୟସଂକଳ୍ପ, ସର୍ବଜ୍ଞ ଓ ସର୍ବବିତ୍—ଇତ୍ୟାଦି ବିଶେଷଣ ବିଶିଷ୍ଟଭାବରେ ଶ୍ରୁତିରେ କୁହାଯାଇଅଛି ।

ବିକରଣତ୍ୱାନ୍ନେତି ଚେତ୍ତଦୁକ୍ତମ୍ ବ୍ରହ୍ମସୂତ୍ର ୨-୧-୩୧ ॥

ବିକରଣତ୍ୱ ହେତୁ, ଅର୍ଥାତ୍ ଇନ୍ଦ୍ରିୟହୀନତ୍ୱ ହେତୁରୁ ପରଂବ୍ରହ୍ମଙ୍କର ସର୍ବକର୍ମ-ତ୍ୱାଦିଗୁଣ ଅଯୁକ୍ତ ହେବା ଠିକ୍ ନୁହେଁ; କାରଣ, ଶ୍ରୁତି କହେ—

ଅପାଣିପାଦୋ ଜବନୋ ଗୃହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ—ଇତ୍ୟାଦି—

ପୁନଶ୍ଚ—ନ ତସ୍ୟ କାର୍ଯ୍ୟଂ କରଣଂ ଚ ବିଦ୍ୟତେ,
ନ ତତ୍ ସମଶ୍ଚାପ୍ୟଧିକଶ୍ଚ ଦୃଶ୍ୟତେ ।
ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ,
ସ୍ୱାଭାବିକୀ ଜ୍ଞାନବଲକ୍ରିୟା ଚ ॥ ଶ୍ୱେତାଶ୍ୱତର ଉ: ୬।୮ ॥

ସେହି ପରମାତ୍ମାଙ୍କର ଶରୀର ଓ ଚକ୍ଷୁ ପ୍ରଭୃତି କରଣ ବା ଇନ୍ଦ୍ରିୟ ନାହିଁ; ତାଙ୍କ ସଦୃଶ ବା ତାଙ୍କଠାରୁ ଅଧିକ ଶକ୍ତିବିଶିଷ୍ଟ କେହି ଦେଖାଯାଏ ନାହିଁ ଓ ଶୁଣାଯାଏ ନାହିଁ । ସର୍ବତ୍ର ତାଙ୍କର ଅଲୌକିକ ମହିମା ଓ ଅସାଧାରଣ ବିବିଧ କାର୍ଯ୍ୟ ଦେଖାଯାଏ ।

* ସର୍ବୋପେତା ସର୍ବଶକ୍ତିସଂପନ୍ନା ସା ପରଦେବତା ଇତ୍ୟୁହ୍ୟମ୍ । କୁତଃ ? ତଦ୍ଦର୍ଶନାତ ସର୍ବଶକ୍ତିଯୁକ୍ତତ୍ୱଦର୍ଶନାତ୍ । ପରଦେବତାୟାଃ ସର୍ବଶକ୍ତିମତ୍ତ୍ୱଂ ଶ୍ରୁତ୍ୟା ଦର୍ଶିତମିତ୍ୟର୍ଥଃ । ଶ୍ରୁତି ପରଂବ୍ରହ୍ମଙ୍କର ବିଚିତ୍ରଶକ୍ତିର ସଦ୍ଭାବ ଦେଖାଇ ଅଛନ୍ତି । ବିଚିତ୍ରଶକ୍ତିସମ୍ପନ୍ନ ହେତୁରୁ ତାହାଙ୍କଠାରୁ ଏହି ବିଚିତ୍ରସୃଷ୍ଟି ଉତ୍ପନ୍ନ ହୋଇଛି ।

ତାହାଙ୍କର ଜ୍ଞାନ ସର୍ବ ପଦାର୍ଥରେ ଅନୁଭୂତ ହେଉଅଛି । ସେ ବଳ ପ୍ରୟୋଗଦ୍ୱାରା ସକଳ ସଂସାରକୁ ବଶୀଭୂତ କରି ରଖିଅଛନ୍ତି । ଏହାପରି ସେହି ଜଗଦାଧାରଙ୍କୁ ଅନ୍ତଃକରଣରେ ଭାବନା କଲେ ଜୀବନ୍ମୁକ୍ତ ହୁଏ ।

ସୂତ୍ରରେ ଯେଉଁ "ଶବ୍ଦକରଣଭ୍ୟାନ୍ତେତ" ଶବ୍ଦ କଥିତ ହୋଇଛି, ତାହା ପରଂବ୍ରହ୍ମଙ୍କର କେବଳ ନିର୍ଗୁଣ ଭାବ ବ୍ୟତୀତ ଅନ୍ୟ କିଛି ପ୍ରକାଶ କରେ ନାହିଁ । ଚେତନ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କିଛି ଜଗତର କାରଣ ନାହିଁ । ✱

**ରଚନାନୁପପତ୍ତେଶ୍ଚ ନାନୁମାନମ୍ ॥** ବ୍ରହ୍ମସୂତ୍ର— ୨-୨-୧ ॥

ଅର୍ଥାତ୍— ବିଶ୍ୱରଚନା ପ୍ରଧାନପକ୍ଷରେ ଉପପନ୍ନ ହୁଏ ନାହିଁ । କାରଣ, ପରଂବ୍ରହ୍ମଙ୍କୁ ଅଚେତନ ବୋଲି ମାନିଲେ ଜଗତର ରଚନାସନ୍ନିବେଶକରଣ ଅନୁପପନ୍ନ ହେବ । କେବଳ ଚେତନାବାନ୍ ପରମାତ୍ମା ହିଁ ଜଗତର ମୂଳ କାରଣ ।

ଏହି ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ମହର୍ଷି ଉଦ୍ଦାଳକ ଶ୍ୱେତକେତୁଙ୍କୁ ଦୃଷ୍ଟାନ୍ତଦ୍ୱାରା ନିଃସନ୍ଦେହରେ କହି ଅଛନ୍ତି—

**ନ୍ୟଗ୍ରୋଧଫଳମତ ଆହରେତୀଦଂ ଭଗବ ଇତ, ଭିନ୍ଧୀତ ଭିନ୍ନଂ ଭଗବ ଇତ ; କିମତ୍ର ପଶ୍ୟସୀତ ; ଅଣ୍ୱ୍ୟ ଇବେମା ଧାନା ଭଗବ ଇତ; ଆସାମଙ୍ଗୈକାଂ ଭିନ୍ଧୀତ; ଭିନ୍ନା ଭଗବ ଇତ; କିମତ୍ର, ପଶ୍ୟସୀତ; ନ କିଞ୍ଚନ, ଭଗବ ଇତ ॥** ଛାନ୍ଦୋଗ୍ୟ ଉ: ୬।୧୨। ୧ ॥

ସୃଷ୍ଟିର୍ନାମ ବ୍ରହ୍ମରୂପେ ସଚ୍ଚିଦାନନ୍ଦବସ୍ତୁନ ।
ଅବ୍ଧୌ ଫେନାଦିବତ୍ ସର୍ବନାମରୂପପ୍ରସାରଣା ॥

ଦୃକ୍‌ଦୃଶ୍ୟବିବେକ-୧୪

---

✱ ଚେତନାନଧିଷ୍ଠିତଜଡ଼ପ୍ରକୃତେଃ କାରଣପକ୍ଷେ ଜଗତଃ ସୁଖଦୁଃଖପ୍ରାପ୍ତିପରିହାରାର୍ଥଯୋଗ୍ୟ-ବିଶିଷ୍ଟବିନ୍ୟାସୋ ରଚନା, ତସ୍ୟା ଅନୁପପତ୍ତିରସିଦ୍ଧିଃ ସ୍ୟାଦତ୍ୟଚେତନସ୍ୟ ଜଗତ୍କାରଣସ୍ୟାନୁମାନଂ ନ ଭବତୀତି ଯୋଜନା ।

ଯେ ହେତୁରୁ ଚେତନାର ପ୍ରେରଣାବ୍ୟତୀତ ଏପରି ବିଚିତ୍ର ଓ ଶୃଙ୍ଖଳିତ ଜଗତ୍ର ରଚନା ଅଚେତନ ପ୍ରଧାନ ବା ପ୍ରକୃତି ପକ୍ଷରେ ଅପ୍ରସିଦ୍ଧ ବା ଅସମ୍ଭବ; ସେହି ହେତୁରୁ ଜଗତ୍-କାର୍ଯ୍ୟ ଦେଖି ଅଚେତନପ୍ରଧାନର ଅନୁମାନ ଅସିଦ୍ଧ, ଅର୍ଥାତ୍ ସିଦ୍ଧ ହୁଏ ନାହିଁ ।

ପିତା କହିଲେ "ବତ୍ସ ! ଏହି ବଟବୃକ୍ଷରୁ ଗୋଟିଏ ଫଳ ଆନୟନ କର; ପୁତ୍ର କହିଲେ—ଆନୟନ କଲି ଦେଖନ୍ତୁ; ପିତା—ଫଳଟିକୁ ଭାଙ୍ଗି ଦିଅ; ପୁତ୍ର—ହଁ, ଭାଙ୍ଗିଲି; ପିତା—ଏହା ମଧ୍ୟରେ କ'ଣ ଦେଖୁଛ ? ପୁତ୍ର—କେତେଗୁଡ଼ିଏ ଅଣୁପରି ସୂକ୍ଷ୍ମ ସୂକ୍ଷ୍ମ ବୀଜକଣା ରହିଥିବା ଦେଖୁଛି; ପିତା—ଆଚ୍ଛା, ଏହି ସୂକ୍ଷ୍ମ ବୀଜକଣାରୁ ଗୋଟିଏ ଆଣି ଭାଙ୍ଗିଦିଅ; ପୁତ୍ର—ହଁ ଭାଙ୍ଗିଲି; ପିତା ପୁନର୍ବାର ପଚାରିଲେ—ବର୍ତ୍ତମାନ ଏହା ମଧ୍ୟରେ କ'ଣ ଦେଖି ପାରୁଅଛ ? ପୁତ୍ର—କାହିଁ, ଏଥର ତ ଆଉ କିଛି ଦେଖି ପାରୁନାହିଁ ।"

**ତଂ ହୋବାଚ ଯଂ ବୈ ସୌମ୍ୟୈତମଣିମାନଂ ନ ନିଭାଲୟସେ ଏତସ୍ୟ ବୈ ସୌମ୍ୟୈଷୋଽଣିମ୍ନ ଏବଂ ମହାନ୍ୟଗ୍ରୋଧସ୍ତିଷ୍ଠତ, ଶ୍ରଦ୍ଧସ୍ୱ ସୌମ୍ୟ ॥**

ଛାନ୍ଦୋଗ୍ୟ ୬।୧୨।୨ ॥

ଅର୍ଥାତ୍ ପୁତ୍ରର ଏହି ଉତ୍ତର ଶୁଣି ପିତା କହିବାକୁ ଲଗିଲେ—ବତ୍ସ ! ଯଦ୍ୟପି ଏହି ବୀଜକଣା ମଧ୍ୟରେ ଅତ୍ୟନ୍ତ ସୂକ୍ଷ୍ମ ଅଙ୍କୁରକଣିକା ଜନ୍ମିଅଛି, ତାହା ତୁମ୍ଭେ ଦେଖି-ପାରୁନାହଁ; କିନ୍ତୁ, ନିଶ୍ଚୟ ଜାଣ, ବତ୍ସ ! ଏହିପରି ଅଦୃଶ୍ୟଭାବରେ ଅତିସୂକ୍ଷ୍ମ ଅଙ୍କୁର-କଣିକାଠାରୁ ଶାଖାପ୍ରଶାଖାବିଶିଷ୍ଟ ଏତାଦୃଶ ବିଶାଳ ବଟବୃକ୍ଷ ଏହି ବୀଜମଧ୍ୟରେ ନିହିତ ଅଛି । ବର୍ତ୍ତମାନ ବୋଧହୁଏ ତୁମେ ଏହି ଦୃଷ୍ଟାନ୍ତରୁ ବୁଝି ପାରୁଛ ଯେ, ପୂର୍ବେ ଆମ୍ଭେ ଯେଉଁ ସଦ୍‌ରୂପୀ ସୂକ୍ଷ୍ମ ପରମକାରଣରୁ ଏହି ବିଶାଳ ବିଶ୍ୱର ଅଭିବ୍ୟକ୍ତି କଥା କହିଅଛୁଁ, ତାହା ଅସଙ୍ଗତ ନୁହେଁ । ଅତଏବ ହେ ବତ୍ସ ! ତୁମ୍ଭେ ନିଃସନ୍ଦେହରେ ଆମ କଥାରେ ବିଶ୍ୱାସ ସ୍ଥାପନ କର, ମନରେ ଆଉ କୌଣସି ପ୍ରକାର ସଂଶୟ ରଖନାହିଁ ।

ଶେଷୋକ୍ତ ଛାନ୍ଦୋଗ୍ୟ ଶ୍ରୁତିବାକ୍ୟର ପୂର୍ବବାକ୍ୟ—

**ତସ୍ୟ କ୍ୱ ମୂଳଂ ସ୍ୟାଦନ୍ୟତ୍ରାନ୍ନାଦେବମେବ ଖଳୁ ସୌମ୍ୟାନ୍ନେନ ଶୁଙ୍ଗେନାପୋ ମୂଳମନ୍ୱିଚ୍ଛ, ଅଦ୍ଭିଃ ସୌମ୍ୟ ଶୁଙ୍ଗେନ ତେଜୋମୂଳମନ୍ୱିଚ୍ଛ ତେଜସା, ସୌମ୍ୟ, ଶୁଙ୍ଗେନ ସନ୍ମୂଳମନ୍ୱିଚ୍ଛ; ସନ୍ମୂଳାଃ ସୌମ୍ୟେମାଃ ସର୍ବାଃ ପ୍ରଜାଃ ସଦାୟତନାଃ ସତ୍‌ପ୍ରତିଷ୍ଠାଃ ।**

ଛା: ୬।୮।୪ ॥

ଅର୍ଥାତ୍, ହେ ବତ୍ସ ! ଆମ୍ଭମାନଙ୍କର ନିତ୍ୟ ଆହାରସାମଗ୍ରୀ ଅନ୍ନ କେବଳ ଏହି ଶରୀରର ମୂଳକାରଣ; ଅନ୍ନବ୍ୟତୀତ ଆଉ କୌଣସି ଏହାର ମୂଳ ହୋଇ ନ ପାରେ; କାରଣ

ଅନ୍ନରୁ ଉତ୍ପନ୍ନ ଶୁକ୍ର ଓ ଶୋଣିତର ସମ୍ମିଳନରେ କେବଳ ଆମ୍ଭମାନଙ୍କର ଏହି ଶରୀର ପ୍ରଥମେ ଗଠିତ ହୁଏ ଏବଂ ପରେ ତାହାଦ୍ୱାରା ପ୍ରତିଦିନ ଏହା ପୁଷ୍ଟି ଓ ପରିଣତି ଲାଭ କରେ । ବତ୍ସ ! ଅନ୍ନ ଯେପରି ଏହି ଦେହପିଣ୍ଡ-ପ୍ରତିଷ୍ଠାର ମୂଳକାରଣ, ସେହିପରି ଜଳ ଅନ୍ନପ୍ରତିଷ୍ଠାର ମୂଳକାରଣ । ପୁନଶ୍ଚ, ଜଳ ମଧ୍ୟ ତେଜରେ ପ୍ରତିଷ୍ଠିତ ଓ ତେଜଃ ଜଳର ଆଦି କାରଣ । ପୁନଶ୍ଚ ଏହି ତେଜୋରାଶି ମଧ୍ୟ ନିତ୍ୟ ପରମାତ୍ମାଙ୍କ ଜ୍ୟୋତିରୁ ବିଚ୍ଛୁରିତ ହେଉଅଛି । ଆଉ ଅଧିକ କ'ଣ କହିବା, ଏହି ବିପୁଳ ବିଶ୍ୱର ସମସ୍ତ ପଦାର୍ଥ ସେହି ପରମାତ୍ମାଜ୍ୟୋତି ବା ମହିମାରୁ ସୃଷ୍ଟ ହୋଇଅଛି ଓ ବର୍ତ୍ତମାନ ତହିଁରେ ଅବସ୍ଥାନ କରିଅଛି; ଭବିଷ୍ୟତ୍ରେ ମଧ୍ୟ ତହିଁରେ ବିଲୀନ ହେବ ।

ଆହୁରି ମଧ୍ୟ—

**ତସ୍ୟ କ୍ୱ ମୂଳଂ ସ୍ୟାଦନ୍ୟତ୍ରାଦ୍ଭ୍ୟଃ, ଅଦ୍ଭିଃ ସୌମ୍ୟ, ଶୁଙ୍ଗେନ ତେଜୋମୂଳମନ୍ୱିଚ୍ଛ, ତେଜସା ସୌମ୍ୟ ଶୁଙ୍ଗେନ ସନ୍ମୂଳମନ୍ୱିଚ୍ଛ, ସନ୍ମୂଳାଃ ସୌମ୍ୟେମାଃ ସର୍ବାଃ ପ୍ରଜାଃ ସଦାୟତନାଃ ସତ୍ପ୍ରତିଷ୍ଠାଃ ।।**

ଛାନ୍ଦୋଗ୍ୟ ୬।୮।୬ ।।

ବତ୍ସ ! ଆମ୍ଭମାନଙ୍କର ନିତ୍ୟ ପେୟ ଜଳ ବ୍ୟତୀତ ଏହି ଶରୀରର ମୂଳକାରଣ ଆଉ କେଉଁ ପଦାର୍ଥ ହୋଇପାରେ ? ରସରକ୍ତାଦି ଭାଗରେ ଏହି ଜଳର ଅସ୍ତିତ୍ୱ ଅବଶ୍ୟ ଆମ୍ଭେମାନେ ସ୍ପଷ୍ଟ ଉପଲବ୍ଧି କରୁଁ । ହେ ବତ୍ସ ! ଜଳ ଯେପରି ଆମ୍ଭମାନଙ୍କର ଶରୀରପିଣ୍ଡର ମୂଳକାରଣ; ସେହିପରି ତେଜଃ ଏହି ଜଳର ମଧ୍ୟ ମୂଳକାରଣ; ଏହି ତେଜୋରାଶି ମଧ୍ୟ ଅନନ୍ତକାଳରୁ ଯେଉଁ ପରମାତ୍ମାଙ୍କ ଜ୍ୟୋତି ପାଉଅଛି, ତହିଁରୁ ସେ ବିଚ୍ଛୁରିତ ହୋଇଅଛି । ଅଧିକ ଆଉ କ'ଣ କହିବା, ବତ୍ସ ! ଏହି ବିରାଟ ବ୍ରହ୍ମାଣ୍ଡର ସବୁ ସେହି ପରମାତ୍ମଜ୍ୟୋତିରୁ (ପରମାତ୍ମାଙ୍କ ମହିମାରୁ) ଉଦ୍ଭୂତ ହୋଇଅଛି, ଏବଂ କଳ୍ପ ଅନ୍ତପରେ ସେହି ପରମାତ୍ମାଙ୍କ ଜ୍ୟୋତିରେ ବିଲୀନ ହୋଇଯାଉଅଛି ।

ବୃହଦାରଣ୍ୟକ ଶ୍ରୁତି କହେ—

**ତଦ୍ଧେଦଂ ତର୍ହ୍ୟବ୍ୟାକୃତମାସୀତ୍ । ତନ୍ନାମରୂପାଭ୍ୟାମେବ ବ୍ୟାକ୍ରିୟତାସୌ ନାମାୟମିଦଂ ରୂପ ଇତ; ତଦିଦମପ୍ୟେତର୍ହି ନାମ-ରୂପାଭ୍ୟାମେବ ବ୍ୟାକ୍ରିୟତେଽସୌ ନାମାୟମିଦଂ ରୂପ ଇତ ସ ଏଷ ଇହ ପ୍ରବିଷ୍ଟଃ ।।**

ବୃହଦାରଣ୍ୟକ ୧।୪।୭

ଏହି କାର୍ଯ୍ୟକାରଣସମଷ୍ଟି ରୂପକ ଜଗତ୍ ଉତ୍ପତ୍ତି ପୂର୍ବରୁ ଅବ୍ୟକ୍ତାବସ୍ଥାରେ ଥାଏ । ପରେ ଏହା କାର୍ଯ୍ୟକାରଣରୂପରେ ଅଭିବ୍ୟକ୍ତ ହୁଏ । ଏହି ଜଗତ୍ ବିସ୍ପଷ୍ଟ ନାମରୂପାଦିଦ୍ୱାରା ବିଶେଷିତଃ ଜୀବର ଅବଧାରଣ ଯୋଗ୍ୟ ରୂପରେ ଅଭିବ୍ୟକ୍ତ ହୋଇଥାଏ । କାର୍ଯ୍ୟ ମାତ୍ରେ ହିଁ କାରଣ ସାପେକ୍ଷ । ବ୍ୟାକୃତହେବା ମଧ୍ୟ ଗୋଟିଏ କାର୍ଯ୍ୟ; ସୁତରାଂ ତାହାର ମଧ୍ୟ କାରଣ—ସାପେକ୍ଷତା ଅଛି । ଏହି ଯୁକ୍ତିବଳରେ ନିୟନ୍ତ୍ରଣ, କର୍ତ୍ତୃତ୍ୱ, ସାଧନ ଓ ବ୍ୟାପାରରୂପ କାରଣ ସମୁଦାୟ ଏହି ଜଗତରେ ଅଭିବ୍ୟକ୍ତ କାର୍ଯ୍ୟରେ ଅପେକ୍ଷିତ ହେବା ସ୍ୱାଭାବିକ । ଯେଉଁପରି ନିର୍ମଳ ଜଳରୁ ମଳତୁଲ୍ୟ ଫେନ ଉତ୍ପିତ ହୁଏ, ଅଥଚ ଫେନ ଜଳଠାରୁ ପୃଥକ୍ ନୁହେଁ, ସେହିପରି ଏହି ନାମରୂପାତ୍ମକ ଜଗତ୍ ମଧ୍ୟ ଯେଉଁ ସ୍ୱରୂପରେ ବ୍ୟାକୃତ ହୋଇଅଛି, ସେହି ବ୍ୟାକୃତ ନାମରୂପଠାରୁ ସ୍ୱତନ୍ତ୍ର ନୁହେଁ । ମୂଳକାରଣ ସ୍ୱଭାବତଃ ନିତ୍ୟ (ଅର୍ଥାତ୍ ଉତ୍ପତ୍ତି-ବିନାଶରହିତ), ଶୁଦ୍ଧ ( ରାଗଦ୍ୱେଷାଦିମଳହୀନ ), ବୁଦ୍ଧ (ଜ୍ଞାନସ୍ୱରୂପ), ମୁକ୍ତ (ଅବିଦ୍ୟାଦିଦୋଷଶୂନ୍ୟ) ସ୍ୱଭାବସମ୍ପନ୍ନ । ପରମାତ୍ମା ନିଜର ଆତ୍ମସ୍ୱରୂପ (ନିଜଠାରୁ ଅଭିନ୍ନ) ନାମରୂପାତ୍ମକ ଜଗତକୁ ବ୍ୟାକୃତ କରି ହିରଣ୍ୟଗର୍ଭଠାରୁ ସ୍ତମ୍ବ ପର୍ଯ୍ୟନ୍ତ ସମସ୍ତ ଜୀବ-ଶରୀରରେ ପ୍ରବିଷ୍ଟ ଅଛନ୍ତି । *

## ଠ—କେବଳ ପରଂବ୍ରହ୍ମଙ୍କ ମହିମାରୁ ସୃଷ୍ଟି ସମ୍ଭବ ହୋଇଅଛି ।

ଉପର୍ଯ୍ୟୁକ୍ତ ଯୁକ୍ତିରୁ ସିଦ୍ଧାନ୍ତ ହେଲା ଯେ, ସୃଷ୍ଟି ପୂର୍ବରେ ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ବିଦ୍ୟମାନ ଥିଲେ; ତାହାଙ୍କଠାରୁ ସୃଷ୍ଟି ପ୍ରକ୍ରିୟା ହୋଇଅଛି । ଏଠାରେ ଆପତ୍ତି ହୋଇପାରେ—ପରଂବ୍ରହ୍ମ ଏକ ଓ ଅଦ୍ୱିତୀୟ ବୋଲି ନିଷେଧ ଥିବା ସ୍ଥଳେ ସୃଷ୍ଟିକ୍ରିୟାର

---

* ଶ୍ରୁତିକଥିତ ଅବ୍ୟାକୃତ ଜଗତର ନାମରୂପ ଅଭିବ୍ୟକ୍ତି ସମ୍ବନ୍ଧରେ ନାନା ବିତର୍କ ଉତ୍ଥିତ ହୁଏ । ତାର୍କିକ ଯୁକ୍ତି କରେ—ଅବ୍ୟାକୃତ ଜଗତ୍ ଯଦି ସ୍ୱୟଂ ବ୍ୟାକୃତ ହୁଏ, ତେବେ ପରମାତ୍ମା ସେହି ଅବ୍ୟାକୃତ ଜଗତର ଅଭିବ୍ୟକ୍ତିପାଇଁ କର୍ତ୍ତା କିପରି ହେଲେ, ତନ୍ମଧ୍ୟରେ ପ୍ରବିଷ୍ଟ ହୋଇ କିପରି ବା ରହିଲେ—ଏହିପରି ପୂର୍ବାପରସଙ୍ଗତି ବିହୀନତା ସ୍ପଷ୍ଟ ଜଣାଯାଏ—କିନ୍ତୁ ଏପରି ଦୋଷ ସମ୍ଭବ ନୁହେଁ ; ତାର୍କିକଙ୍କ ପୂର୍ବାପରସଙ୍ଗତିରାହିତ୍ୟରୂପକ ଦୋଷଗ୍ରହଣ ଭ୍ରମମାତ୍ର । କାରଣ, ଏ ସ୍ଥଳରେ ପରମାତ୍ମା କେବଳ ଅବ୍ୟାକୃତ ଜଗତ୍ରୂପରେ ବିଦ୍ୟମାନ—ଏହା ଶ୍ରୁତିର ଆଶୟ । ଅବ୍ୟାକୃତ ଜଗତ୍ ସ୍ୱୟଂ ବ୍ୟାକୃତ ହୁଏ ଏବଂ ସେହି ଅଭିବ୍ୟକ୍ତି ପ୍ରତି ପରମାତ୍ମାଙ୍କର ନିୟନ୍ତୃତ୍ୱ ଓ କର୍ତ୍ତୃତ୍ୱରୂପକ ବ୍ୟାପାର କାରଣସ୍ୱରୂପରେ ଅପେକ୍ଷିତ । କାର୍ଯ୍ୟ କାରଣସାପେକ୍ଷ; ଅଭିବ୍ୟକ୍ତି କାର୍ଯ୍ୟ ପ୍ରତି କାରଣର ଅପେକ୍ଷା ଥିବା ହେତୁରୁ ପରମାତ୍ମା କେବଳ ବ୍ୟାକୃତି ପ୍ରତି କାରଣ । ଏହା ଶ୍ରୁତିର ଆଶୟ ଓ ଏହି ସିଦ୍ଧାନ୍ତ ସର୍ବଜନାଦୃତ । ଅତଏବ ସାର ଏହା ଯେ, ସ୍ୱୟଂ ପରମାତ୍ମା ଏହି ସୃଷ୍ଟିର ପରମ କାରଣ ଓ କର୍ତ୍ତା ଅଟନ୍ତି ।

ସମ୍ଭାବନା କପରି ହୋଇପାରେ ? ଏହି ଆପତ୍ତିର ଉତ୍ତର ଏହି ଯେ, ପରମାତ୍ମା ଅଦ୍ୱିତୀୟ-ରୂପେ ନିର୍ଣ୍ଣିତ ହେଲେ ମଧ ତାହାଙ୍କର ତଦ୍ରୂପ ଅଦ୍ଭୁତ ମହିମା ସ୍ୱଭାବତଃ ନିତ୍ୟଭାବରେ ବିଦ୍ୟମାନ । ଯେପରି ଜାଗତିକ ଅନିତ୍ୟବସ୍ତୁର ଅନିତ୍ୟ ସ୍ୱଭାବ ବିଦ୍ୟମାନ, ସେହିପରି ପରଂବ୍ରହ୍ମଙ୍କଠାରେ ନିତ୍ୟ ଅଦ୍ଭୁତମହିମା ସର୍ବଦା ଅବସ୍ଥିତ । ଏହି ବିପୁଳ ଓ ବିଚିତ୍ର ବିଶ୍ୱର ଜାତି, ସ୍ଥିତି ଓ ସଂହୃତି ସେହି ଅଦ୍ଭୁତ ମହିମାର ହିଁ କାର୍ଯ୍ୟ । ଏ ସମ୍ବନ୍ଧରେ ଛାନ୍ଦୋଗ୍ୟଶ୍ରୁତି କହେ—

**ତାବାନସ୍ୟ ମହିମା ତତୋ ଜ୍ୟାୟାଂଶ୍ଚ ପୁରୁଷଃ ।**
**ପାଦୋଽସ୍ୟ ସର୍ବାଭୂତାନି ତ୍ରିପାଦସ୍ୟାମୃତଂ ଦିବୀତି ।**

ଛାଃ ୩-୧୨-୬ ।

ବର୍ତ୍ତମାନପର୍ଯ୍ୟନ୍ତ ଯାହା କୁହାଗଲା, ତାହା ଗାୟତ୍ରୀନାମକ କାର୍ଯ୍ୟବ୍ରହ୍ମମହିମାର ବର୍ଣ୍ଣନା । ପରମାତ୍ମା ପରମପୁରୁଷ ଏହି କାର୍ଯ୍ୟବ୍ରହ୍ମ ଅପେକ୍ଷା ଅଧିକ ମହିମାନ୍ୱିତ । ଏହି ବିକାରମୟ ବିରାଟ ବିଶ୍ୱ ତାହାଙ୍କର ଗୋଟିଏ ଅଂଶମାତ୍ର; ଅପର ଅଂଶ ତାହାଙ୍କର ନିର୍ବିକାର ସ୍ୱରୂପରେ ଅବସ୍ଥିତ !

ଏହି ଅସୀମ ଓ ଅଦ୍ଭୁତ ମହିମା ସମ୍ବନ୍ଧରେ ଜାନଶ୍ରୁତିଙ୍କୁ ମହାତ୍ମା ରୈକ୍ୟ କହି ଅଛନ୍ତି—

**"ଅସ୍ୟ ମହିମାନମାହୁରନିଦ୍ୟମାନୋ ।"** ଛାଂ ଉ:

ଅର୍ଥାତ୍ ପରମାତ୍ମାଙ୍କର ମହିମା ଅପାର ।

ପୁନଶ୍ଚ—

**ଯଃ ସର୍ବଜ୍ଞଃ ସର୍ବବିତ୍ ଯସ୍ୟୈଷ ମହିମା ଭୁବି ।**
**ଦିବ୍ୟେ ବ୍ରହ୍ମପୁରେ ହ୍ୟେଷ ବ୍ୟୋମ୍ନ୍ୟାତ୍ମା ପ୍ରତିଷ୍ଠିତଃ ।**

। ମୁଣ୍ଡକ ଉ: ୨-୨-୭ ।

ଯେ ସର୍ବଜ୍ଞ ବା ସର୍ବବିତ୍ ଯାହାଙ୍କ ମହିମା ସର୍ବଲୋକପ୍ରସିଦ୍ଧ ଅର୍ଥାତ୍ ଯେଉଁ ମହିମାରେ ସର୍ବଜଗତ୍ ଧୃତ ହୋଇ ରହିଅଛି, ସେହି ପ୍ରକାଶଶୀଳ ଆତ୍ମା [ ମହିମା ] ହୃଦୟ-ପୁଣ୍ଡରୀକରେ ପ୍ରତିଷ୍ଠିତ ବୋଲି ଉପଲବ୍ଧ ହୁଅନ୍ତି ।

ସେହି ପରଂବ୍ରହ୍ମଙ୍କ ମହିମା ଜଗତର ବିଧାରକ—ଏ ବିଷୟରେ ବାଦରାୟଣ କହି ଅଛନ୍ତି—

**ଧୃତେଶ୍ଚ ମହିମ୍ନୋଽସ୍ୟାସ୍ମିନ୍ ଉପଲବ୍ଧେଃ ।**

। ବ୍ରହ୍ମସୂ: ୧-୩-୧୬ ।

"ଦହର" କର୍ତ୍ତୃକ ଜଗତ୍‌ଧୃତ ହୋଇଅଛି—ଏପରି କଥନହେତୁରୁ ଦହର ଶବ୍ଦ-ଦ୍ୱାରା ସେହି ବ୍ରହ୍ମହିଁ ବୋଧ । କାରଣ, ଏହି ଧୃତରୂପକ ମହିମାଦ୍ୱାରା ସେହି ପରମାତ୍ମା ପରମେଶ୍ୱର କେବଳ ଉପଲବ୍ଧ ହୁଅନ୍ତି । ପରମାତ୍ମାଙ୍କ ମହିମାରୁ ଜଗତ୍ ସମ୍ଭୂତ ହେଲେ ମଧ୍ୟ ପରମାତ୍ମାଙ୍କର ଅଦ୍ୱିତୀୟ ବିଶୁଦ୍ଧ ନିର୍ଗୁଣଭାବ ଅକ୍ଷୁର୍ଣ୍ଣ ରହିଅଛି । ମାୟା ଆଶ୍ରୟରେ ଯେଉଁ ତତ୍ତ୍ୱ ବୁଝାଯାଏ ତହିଁରେ ଏକ ଓ ଅଦ୍ୱିତୀୟଭାବର ରକ୍ଷା ହୋଇପାରେନାହିଁ । ପରମାତ୍ମାଙ୍କର ନିତ୍ୟମହିମା ସ୍ୱୟଂପ୍ରକାଶ ହେତୁରୁ ଶ୍ରୁତି ତାଙ୍କର ନିର୍ଗୁଣତ୍ୱ ପ୍ରତିପାଦନ କରିଅଛି, ଯଥା—

**ସ୍ୱମହିମ୍ନି ଯଦିବା ନ ମହିମ୍ନେତି**—ଛାନ୍ଦୋଗ୍ୟ ଉ: ।

ଆହୁରି ମଧ୍ୟ—

**ମହାନ୍ ପ୍ରଭୁର୍ବୈ ପୁରୁଷଃ ସତ୍ତ୍ୱସ୍ୟୈଷ ପ୍ରବର୍ତ୍ତକଃ ।**
**ସୁନିର୍ମଳାମିମାଂ ପ୍ରାପ୍ତିମୀଶାନୋ ଜ୍ୟୋତିରବ୍ୟୟଃ ॥**

। ଶ୍ୱେତାଶ୍ୱତର ଉ: ୩-୧୨ ।

ସେହି ପରମାତ୍ମା ପରମେଶ୍ୱରହିଁ ଅତୁଳମହିମାଶାଳୀ, ସେହି କେବଳ ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ କାର୍ଯ୍ୟରେ ସମର୍ଥ ଓ ସକଳ ଅନ୍ତଃକରଣର ପ୍ରବର୍ତ୍ତକ । ସେହି ଜ୍ୟୋତିର୍ମୟ ପରମପୁରୁଷ ସ୍ୱୟଂ ପ୍ରକାଶ ପାଉ ଅଛନ୍ତି । ଉପର୍ଯ୍ୟୁକ୍ତ ଭାବରେ ପରମତତ୍ତ୍ୱଜ୍ଞମାନେ ପରମାତ୍ମାଙ୍କ ମହିମା ଅବଗତ ହୋଇ ସାଂସାରିକ ଶୋକରୁ ବିମୁକ୍ତ ହୁଅନ୍ତି—

**"ମହିମାନମିତି ବୀତଶୋକଃ" ।**

## ୦—ସୃଷ୍ଟିପ୍ରକ୍ରିୟାର କ୍ରମବିକାଶ ।

ଅତଃପର ସେହି ଏକ ପରମାତ୍ମାଙ୍କ ମହିମାରୁ ଯେପରି ସୃଷ୍ଟିପ୍ରକ୍ରିୟା କ୍ରମାନୁସାରେ ପ୍ରକାଶିତ ହୋଇଅଛି ଓ ତତ୍‌ସମ୍ବନ୍ଧରେ ଉପନିଷଦ୍‌ରେ ଯାହା ବର୍ଣ୍ଣିତ ହୋଇଅଛି, ତାହା ଏଠାରେ ବର୍ଣ୍ଣନା କରାଯାଉଛି—

ତଦୈକ୍ଷତ ବହୁ ସ୍ୟାଂ ପ୍ରଜାୟେୟେତି ତତ୍ତେଜୋଽସୃଜତ
ତତ୍ତେଜ ଐକ୍ଷତ ବହୁ ସ୍ୟାଂ ପ୍ରଜାୟେୟେତି ତଦପୋଽସୃଜତ
ତସ୍ମାଦ୍ ଯତ୍ର କ୍ୱ ଚ ଶୋଚତି ସ୍ୱେଦତେ ବା ପୁରୁଷସ୍ତେଜସ
ଏବ ତଦଧ୍ୟାପୋ ଜାୟନ୍ତେ । ଛା: ୬-୨-୩ ।

ଅର୍ଥାତ୍ ସେହି ପରମାତ୍ମା ସୃଷ୍ଟି କରିବା ନିମନ୍ତେ ଇଚ୍ଛା କରିବାରୁ ପ୍ରଥମେ ତେଜର ସୃଷ୍ଟି ହେଲା, ତେଜରୁ ଜଳର ସୃଷ୍ଟି । ଅତଏବ କୌଣସି ପୁରୁଷ ଯଦି କଷ୍ଟ ଅନୁଭବ କରେ, ଅଥବା ତା'ର ଯଦି ଝାଳ ବାହାରେ, ତେବେ ତାହାର ତେଜରୁ ଜଳ ଉଦ୍‌ଗମ ହୁଏ ।

ତା ଆପ ଐକ୍ଷନ୍ତ ବହ୍ୱ୍ୟଃ ସ୍ୟାମ ପ୍ରଜାୟେମହୀତି ତା ଅନ୍ନମସୃଜନ୍ତ ତସ୍ମାଦ୍ ଯତ୍ର କ୍ୱ ଚ ବର୍ଷତି ତଦେବ ଭୂୟିଷ୍ଠମନ୍ନଂ ଭବତ୍ୟଦ୍ଭ୍ୟ ଏବ ତଦଧ୍ୟନ୍ନାଦ୍ୟଂ ଜାୟତେ । ଛା: ୬-୨-୪ ।

ସେହି ଜଳରୂପରେ ଅଭିବ୍ୟକ୍ତ ଜଗତର ପରମକାରଣ ପୁନର୍ବାର ସଂକଳ୍ପ କରିବାରୁ ସେହି ଜଳରାଶିରୁ ଧାନ୍ୟାତ୍ମକ ପୃଥିବୀ ସୃଷ୍ଟି ହେଲା । ଅତଏବ ଧାନ୍ୟାତ୍ମକ ପୃଥିବୀ ଜଳରୁ ସୃଷ୍ଟି ହୋଇଛି । ବୃଷ୍ଟି ଭଲଭାବରେ ହେଲେ ଧାନ, ଯବ ପ୍ରଭୃତି ଶସ୍ୟ ଉତ୍ତମରୂପେ ହୁଅନ୍ତି, କାରଣ ତାହାସବୁ ଜଳସାହାଯ୍ୟରେ ଉତ୍ପନ୍ନ ହୁଅନ୍ତି ।

ତେଷାଂ ଖଲ୍ୱେଷାଂ ଭୂତାନାଂ ତ୍ରୀଣ୍ୟେବ ବୀଜାନି ଭବନ୍ତ୍ୟଣ୍ଡଜଂ ଜୀବଜମୁଦ୍‌ଭିଜ୍ଜମିତି ।

ସେୟଂ ଦେବତୈକ୍ଷତ ହନ୍ତାହମିମାସ୍ତିସ୍ରୋ ଦେବତା ଅନେନ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରବାଣୀତି ।

ତାସାଂ ତ୍ରିବୃତଂ ତ୍ରିବୃତମେକୈକାଂ କରବାଣୀତି ସେୟଂ ଦେବତେମାସ୍ତିସ୍ରୋ ଦେବତା ଅନେନୈବ ଜୀବେନାତ୍ମନାନୁପ୍ରବିଶ୍ୟ ନାମରୂପେ ବ୍ୟାକରୋତ୍ ।

ତାସାଂ ତ୍ରିବୃତଂ ତ୍ରିବୃତମେକୈକାମକରୋଦ୍ ଯଥାନୁ ଖଲୁ ସୌମ୍ୟେମାସ୍ତିସ୍ରୋ ଦେବତାସ୍ତ୍ରିବୃତ୍ତ୍ରିବୃଦେକୈକା ଭବତି ତନ୍ମେ ବିଜାନୀହୀତି । ଛା: ଉ: ଅ: ୬-ଖ: ୬, ୧, ୨, ୩, ୪,

ଅର୍ଥାତ୍—ଏହି ପ୍ରାଣୀବର୍ଗଙ୍କ ଉତ୍ପତ୍ତି ପ୍ରତି ତିନୋଟି କାରଣ ଦେଖାଯାଏ; ତାହା ଅଣ୍ଡଜ, ଜରାୟୁଜ ଓ ଉଦ୍‌ଭିଜ୍ଜ । ସେହି ପରମ ପୁରୁଷ ପୁନର୍ବାର ବିଚାର କଲେ ଯେ

"ଆତ୍ମର ମହିମା ସମଗ୍ରଭାବରେ ଅଭିବ୍ୟକ୍ତ ହୋଇ ପ୍ରକାଶିତ ହେବ; ଅର୍ଥାତ୍ ଅବକୃତ ସ୍ୱରୂପରେ ତେଜଃପ୍ରଭୃତି ଭୂତତ୍ରୟ ମଧ୍ୟରେ ପ୍ରବେଶ କରି ବିଭିନ୍ନ ନାମ ଓ ବିଭିନ୍ନ ରୂପରେ ଏବଂ ବିପୁଳ ବିଭବରେ ବିକଶିତ ହୋଇ ଆତ୍ମର ମହିମା ପ୍ରକାଶିତ କରିବୁଁ ।

ଈଶ୍ୱର ଆଦିଦେବତା ପୁନର୍ବାର ବିଚାର କଲେ—ନିଜ ମହିମାରୁ ବିକଶିତ ପୂର୍ବୋକ୍ତ ମହାଭୂତ ତିନୋଟିର ପ୍ରତ୍ୟେକକୁ ସମାନ ଦୁଇଭାଗରେ ବିଭକ୍ତ କରି ସେଥିରୁ ଏକଭାଗ ନେଇ ଅନ୍ୟ ଦୁଇଭାଗର ପ୍ରତ୍ୟେକ ସହିତ ତୁଲ୍ୟ ରୂପରେ ମିଶ୍ରିତ କରିବୁଁ" । ତା ପରେ ସେ ପୂର୍ବସଂକଳ୍ପତୁଲ୍ୟ ଏଥର ସ୍ୱୀୟ ଅବକୃତ ସ୍ୱରୂପରେ ଚେତନ ଜୀବାତ୍ମା-ରୂପରେ ତେଜଃପ୍ରଭୃତି ଭୂତମଧ୍ୟରେ ପ୍ରବେଶ କରି ବିଭିନ୍ନ ନାମ ଓ ବିଭିନ୍ନ ରୂପରେ ବିଚିତ୍ର ଓ ବିପୁଳ ବିଭବରେ ମହିମା ପ୍ରକାଶ କରିବାକୁ ଲାଗିଲେ ।

ତା' ପରେ ସେହି ଆଦିପୁରୁଷଙ୍କର ସଂକଳ୍ପ ବଳରେ ପୂର୍ବୋକ୍ତ ମହାଭୂତତ୍ରୟର ପ୍ରତ୍ୟେକ ତ୍ରିବୃତ୍ୟାତ୍ମକ ହେଲା । ପ୍ରତ୍ୟେକଟି ଦୁଇଭାଗରେ ବିଭକ୍ତ ହୋଇ ସେଥିରୁ ଏକଭାଗ ଅପର ଦୁଇ ଭୂତ ସହିତ ସମାନଭାବରେ ମିଶ୍ରିତ ହେଲା । ବିଶ୍ୱ ସୃଷ୍ଟିତକେତୁ । ଏହି ସକଳ ମହାଭୂତ ତ୍ରିବୃତ୍ୟାତ୍ମକ ହୋଇ କପରି ପ୍ରତ୍ୟେକ ବିଶେଷ ନାମରେ ପରିଚିତ ହେଉଅଛି, ତାହା ଆତ୍ମ ନିକଟରୁ ତୁମ୍ଭେ ଜ୍ଞାତ ହୁଅ । ଏହି ଭାବକୁ ଲକ୍ଷ୍ୟ କରି ବାଦରାୟଣ ବ୍ରହ୍ମସୂତ୍ରରେ କହିଛନ୍ତି—

ସଂଜ୍ଞା ମୂର୍ତ୍ତିକ୍ଳୃପ୍ତିସ୍ତୁ ତ୍ରିବୃତ୍କୁର୍ବତ ଉପଦେଶାତ୍ ।

ବ୍ର : ସୂ : ୨-୪-୨୦ ।

ଅର୍ଥାତ୍—ସଂଜ୍ଞା ମୂର୍ତ୍ତିକ୍ଳୃପ୍ତି (ଜଗତର ବିଭିନ୍ନ ବସ୍ତୁର ନାମକରଣ ଓ ରୂପକରଣ) ତ୍ରିବୃତ୍କୃତ (ଯାହାଙ୍କଦ୍ୱାରା ତ୍ରିବୃତ୍ୟାତ୍ମକ ସ୍ୱରୂପରେ ନିଷ୍ପନ୍ନ) । ଉପଦେଶାତ୍—ଅର୍ଥାତ୍ ଶ୍ରୁତିରେ ଏହା ଉପଦିଷ୍ଟ ହୋଇଅଛି ।

ଛାନ୍ଦୋଗ୍ୟ ଉପନିଷଦ୍‌ରେ କଥିତ ଅଛି—"ସା ଇୟଂ ଦେବତା ଐକ୍ଷତ = ସେହି ଦେବତା ବା ପରମାତ୍ମା ସଂକଳ୍ପ କଲେ; ହନ୍ତ ଅହଂ ଇମାଃ ତିସ୍ରଃ ଦେବତାଃ = ମୁଁ ଏହି ତିନୋଟି ଦେବତା—ଅଗ୍ନି, ବାୟୁ ଓ ଜଳ ମଧ୍ୟରେ; ଅନେନ ଜୀବେନ ଆତ୍ମନା ଅନୁପ୍ରବିଶ୍ୟ = ଜୀବରୂପରେ ପ୍ରବିଷ୍ଟ ହୋଇ; ନାମରୂପେ ବ୍ୟାକରବାଣୀତି = ନାମ ଓ ରୂପ ସୃଷ୍ଟି କରିବି; ତାସାଂ ତ୍ରିବୃତଂ ତ୍ରିବୃତଂ ଏକୈକାଂ କରବାଣି = ଅଗ୍ନି, ବାୟୁ ଓ ଜଳର ପ୍ରତ୍ୟେକକୁ ତ୍ରିବୃତ୍ କରିବି ।" ଅର୍ଥାତ୍ ଅଧିକ ପରିମାଣବିଶିଷ୍ଟ ସୂକ୍ଷ୍ମ ଅଗ୍ନି ସହିତ କମ୍

ପରିମାଣରେ ସୂକ୍ଷ୍ମ ବାୟୁ ଓ ସୂକ୍ଷ୍ମ ଜଳ ଉତ୍ପନ୍ନ ହୁଏ । ସ୍ଥୂଳ ବାୟୁ ଓ ସ୍ଥୂଳ ଜଳର ଉତ୍ପତ୍ତି ପ୍ରତି ଏହା କାରଣ ; ପ୍ରତ୍ୟେକ ମଧ୍ୟରେ ତିନି ପଦାର୍ଥ ଥାଏ; ଏହାକୁ ତ୍ରିବୃତ୍ କୁହାଯାଏ । ଏଠାରେ ଉଲ୍ଲିଖିତ ନାମ ଓ ରୂପର ସୃଷ୍ଟି ଜୀବକର୍ତ୍ତୃକ ସମ୍ପାଦିତ ହୋଇପାରେ ନାହିଁ; ତାହା ପରମାତ୍ମାଙ୍କ ସୃଷ୍ଟି । ଯେଉଁ ପରମାତ୍ମା "ତ୍ରିବୃତ୍କରଣ" ପ୍ରକ୍ରିୟା ସମ୍ପନ୍ନ କରନ୍ତି, ସେହି କେବଳ ନାମ ଓ ରୂପର ସ୍ରଷ୍ଟା ।

ସୂତ୍ରସ୍ଥ 'ତୁ' ଶବ୍ଦଦ୍ୱାରା ପୂର୍ବପକ୍ଷ ନିରାକରଣ କରାଯାଇଛି । ଅର୍ଥାତ୍ ନାମରୂପ ବ୍ୟାକରଣ ଜୀବକର୍ତ୍ତୃକ ନୁହେଁ । ସୂତ୍ରସ୍ଥ ସଂଜ୍ଞାଶବ୍ଦର ଅର୍ଥ ନାମ, ମୂର୍ତ୍ତି-ଆକାର, କ୍ଳୃପ୍ତିର ଅର୍ଥ କଳ୍ପନା ବା ରଚନା । ସମୁଦାୟ ସୂତ୍ର ସ୍ଥୂଳ ପଦାର୍ଥ-ସୃଷ୍ଟିର କାରଣ ନିର୍ଦ୍ଦେଶ କରେ । "ତ୍ରିବୃତ୍କାରୀ"ର ଅର୍ଥ ପରମାତ୍ମା । ସମୁଦାୟ ସୂତ୍ରର ସାର ଅର୍ଥ ଏହି—ପରମାତ୍ମା ନାମ-କଳ୍ପନା ଓ ରୂପକଳ୍ପନାର କର୍ତ୍ତା । ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍ ଇତ୍ୟାଦି ନାମକଳ୍ପନା; ସେହିପରି କୁଶ, କାଶ, ପଲାଶ, ପଶୁ, ପକ୍ଷୀ, ମନୁଷ୍ୟ ଇତ୍ୟାଦି ବସ୍ତୁର ନାମ, ସେମାନଙ୍କର ଆକୃତି ଆଦି ସକଳ, ଅଗ୍ନି, ଜଳ ଓ ପୃଥିବୀର ସ୍ରଷ୍ଟା ସେହି ପରମାତ୍ମାଙ୍କର କାର୍ଯ୍ୟ । ଏହା ଏହି ଶ୍ରୁତିର ତାତ୍ପର୍ଯ୍ୟ ।

ଉକ୍ତ ଶ୍ରୁତିରେ ଥିବା 'ଜୀବେନ' ପଦ କର୍ତ୍ତା ନୁହେଁ । କାରଣ, 'ଅନୁପ୍ରବିଶ୍ୟ' ଶବ୍ଦ ସହିତ ତା'ର ସମ୍ପର୍କ; କିନ୍ତୁ 'ବ୍ୟାକରଣବାଣି' ରୂପକ କ୍ରିୟାର ସେ କର୍ତ୍ତା ନୁହେଁ । ଅତଏବ ଜୀବସୃଷ୍ଟିର କର୍ତ୍ତା ନୁହେଁ, ନାନାବିଧ ନାମରୂପ ସୃଷ୍ଟି ପ୍ରତି ଉପାଦାନ କାରଣ ହୋଇ ପାରେ । କେବଳ ପରଂବ୍ରହ୍ମ ପରମାତ୍ମା ନାମ-ରୂପର ବ୍ୟାକରଣ କର୍ତ୍ତା—ଏହା କେବଳ ସକଳ ଉପନିଷଦର ସିଦ୍ଧାନ୍ତ ।

ପୂର୍ବୋକ୍ତ ପ୍ରକାରେ ଛାନ୍ଦୋଗ୍ୟଶ୍ରୁତିବର୍ଣ୍ଣିତ ସୃଷ୍ଟିକ୍ରମ ବର୍ଣ୍ଣିତ ହେଲା; ବର୍ତ୍ତମାନ ଐତରେୟ ଶ୍ରୁତିରେ ବର୍ଣ୍ଣିତ ସୃଷ୍ଟିକ୍ରମ କୁହାଯାଉଛି ।

ଐତରେୟ ଶ୍ରୁତି କହେ—

**ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍ । ନାନ୍ୟତ୍ କିଞ୍ଚନ ମିଷତ୍ ।**
**ସ ଈକ୍ଷତ ଲୋକାନ୍ ନୁ ସୃଜା ଇତି** । ଐତରେୟ ଉ: ଖ-୧-୧-୧ ।

ସୃଷ୍ଟି ପୂର୍ବେ ଏହି ଜଗତ୍ ଏକମାତ୍ର ଆତ୍ମା ଥିଲା, ଅର୍ଥାତ୍ ବିବିଧ ବୈଚିତ୍ର୍ୟବିଶିଷ୍ଟ ଏହି ଜଗତ୍ ଏକ ଅଦ୍ୱିତୀୟ ବ୍ରହ୍ମସ୍ୱରୂପରେ ଥିଲା, ତଦ୍‌ଭିନ୍ନ ସକ୍ରିୟ ଅନ୍ୟ କିଛି ନ ଥିଲା । ସେହି ବ୍ରହ୍ମ ଚିନ୍ତା କଲେ—ଆମ୍ଭେ ଅମ୍ଭଃ ପ୍ରଭୃତି ଲୋକ ସୃଷ୍ଟି କରିବୁଁ—

ସ ଇମାଁଲ୍ଲୋକାନସୃଜତ, ଅମ୍ଭୋ ମରୀଚୀର୍ମରମାପୋଽଦୋ ଅମ୍ଭଃ ପରେଣ ଦିବମ୍ ; ଦ୍ୟୌଃ ପ୍ରତିଷ୍ଠା, ଅନ୍ତରୀକ୍ଷଂ ମରୀଚୟଃ ପୃଥିବୀ ମରୋ ଯା ଅଧସ୍ତାତ୍ ତା ଆପଃ । 'ଐତରେୟ ଉ: ୧-୧-୨ ।

ସେହି ପରମାତ୍ମା ଏକାକୀ ହେଲେ ମଧ୍ୟ ସର୍ବଜ୍ଞ ହେତୁରୁ ଉପାଦାନ ଅଭାବରେ ମଧ୍ୟ ସ୍ୱୟଂ ଚିନ୍ତା କଲେ—"ଆମ୍ଭେ ପ୍ରାଣୀସକଳର କର୍ମଫଳାନୁରୂପ ଭୋଗସାଧନର ଉପାୟ-ରୂପ ଅମ୍ଭଃ ପ୍ରଭୃତି ଲୋକସମୂହ ସୃଷ୍ଟି କରିବୁଁ" ଏହିପରି ଆଲୋଚନା କରି ଏହି ଲୋକ-ସମୂହ ସୃଷ୍ଟି କଲେ । "ତସ୍ମାଦ୍ ବା ଏତସ୍ମାଦ୍ ଆତ୍ମନଃ ଆକାଶଃ ସମ୍ଭୂତଃ" ଇତ୍ୟାଦି ଶ୍ରୁତି-ପ୍ରତିପାଦ୍ୟ ଆକାଶାଦିକ୍ରମରେ ଅଣ୍ଡ ପର୍ଯ୍ୟନ୍ତ ସୃଷ୍ଟି କରି ଅମ୍ଭଃ, ମରୀଚି, ମର ଏବଂ ଆପ ପ୍ରଭୃତି ଲୋକ ସୃଷ୍ଟି କଲେ । ଦ୍ୟୁଲୋକ ଉପରିବର୍ତ୍ତୀ ମହଲ୍ଲୋକ, ଜନଲୋକ, ତପଃଲୋକ ଓ ସତ୍ୟଲୋକ ବିଦ୍ୟମାନ, ଦେବତାମାନଙ୍କର ଆଶ୍ରୟ-ସ୍ଥାନରୂପକ ପ୍ରସିଦ୍ଧ ଦ୍ୟୁ ବା ସ୍ୱର୍ଗ-ଲୋକ—ଏହି ସମସ୍ତଙ୍କର ସାଧାରଣ ନାମ ଅମ୍ଭଃ । ସ୍ୱର୍ଗଲୋକର ଅଧୋଦେଶରେ ଅନ୍ତରୀକ୍ଷ ଲୋକର ନାମ ମରୀଚି; ସାଧାରଣତଃ ଏହା ଅନ୍ତରୀକ୍ଷ କୁହାଯାଏ । ସୂର୍ଯ୍ୟ ମରୀଚି (କିରଣ)-ସମୂହର ଆଶ୍ରୟସ୍ଥାନ ହେତୁରୁ ମରୀଚି ନାମରେ ଅଭିହିତ । ପୃଥିବୀର ଅନ୍ୟ ନାମ ମର, କାରଣ ଏ ସ୍ଥାନର ପ୍ରାଣୀସମୂହ ମରଣଶୀଳ । ଏହାର ନିମ୍ନତର ସ୍ଥାନର ନାମ ଆପ; କାରଣ, ପ୍ରାଣୀମାନେ ଏହି ସ୍ଥାନରେ ଆପନ୍ନ (ପ୍ରାପ୍ତ) ହେବା ହେତୁରୁ ଏହାର ନାମ ଆପ । ଏହାର ଅପର ନାମ ପାତାଳ ।

ସ ଈକ୍ଷତେମେ ନୁ ଲୋକା ଲୋକପାଲାନ୍ନୁ ସୃଜା ଇତି ।
ସୋଽଦ୍ଭ୍ୟ ଏବ ପୁରୁଷଂ ସମୁଦ୍ଧୃତ୍ୟାମୂର୍ଚ୍ଛୟତ୍ ।

। ଐତରେୟ ଉ: ୧-୧-୩ ।

ସେହି ପରମାତ୍ମା ସର୍ବପ୍ରାଣୀର କର୍ମଫଳ ଓ ତତ୍ସାଧନ ସମୁଦାୟର ଆଶ୍ରୟୀଭୂତ ଅମ୍ଭଃ ପ୍ରଭୃତି ଚାରିପ୍ରକାର ଲୋକ ସୃଷ୍ଟି କରି ପୁନଶ୍ଚ ଈକ୍ଷଣ ବା ଆଲୋଚନା କଲେ—ଆମ୍ଭେ ଯେ ଅମ୍ଭଃ ପ୍ରଭୃତି ଲୋକସମୂହ ସୃଷ୍ଟି କରିଅଛୁ, ଏହି ସମୁଦାୟ ଲୋକ ନିଶ୍ଚୟ ପରିପାଳକ ଅଭାବରେ ନଷ୍ଟ ହୋଇଯିବ; ଅତଏବ ଏହି ଲୋକମାନଙ୍କର ରକ୍ଷଣ ସକାଶେ ଲୋକପାଳମାନଙ୍କୁ ସୃଷ୍ଟି କରିବୁଁ । ଏହି ରୂପରେ ଈକ୍ଷଣ କରି ଜଳପ୍ରଧାନ ସମୁଦାୟ ଭୂତ-ମାନଙ୍କରୁ (ଯେଉଁ ସମୁଦାୟ ଭୂତରୁ ଅମ୍ଭଃ ପ୍ରଭୃତି ଲୋକ ସୃଷ୍ଟି) ହସ୍ତମସ୍ତକାଦିବିଶିଷ୍ଟ ପୁରୁଷାକୃତି, ପିଣ୍ଡ-କୁମ୍ଭକାର ପୃଥିବୀରୁ ମୃତ୍-ପିଣ୍ଡ ନିର୍ମାଣ କଲାଭଳି, ନିର୍ମାଣ କରି ମୂର୍ଚ୍ଛିତ

କରିଥିଲେ, ଅର୍ଥାତ୍ ଉପର୍ଯୁକ୍ତ ଅବୟବ ସଂଯୋଜନା କରି ସପିଣ୍ଡିତ (ସ୍ଥୂଳଭାବାପନ୍ନ) କରିଥିଲେ ।

ତମଭ୍ୟତପତ୍ତସ୍ୟାଭିତପ୍ତସ୍ୟ ମୁଖଂ ନିରଭିଦ୍ୟତ ଯଥାଣ୍ଡମ୍,
ମୁଖାଦ୍ ବାଗ୍‌ବାଚୋଽଗ୍ନିର୍ନାସିକେ ନିରଭିଦ୍ୟେତାଂ, ନାସିକାଭ୍ୟାଂ ପ୍ରାଣଃ
ପ୍ରାଣାଦ୍ ବାୟୁରକ୍ଷିଣୀ ନିରଭିଦ୍ୟେତାମ୍, ଅକ୍ଷିଭ୍ୟାଞ୍ଚକ୍ଷୁଶ୍ଚକ୍ଷୁଷ
ଆଦିତ୍ୟଃ କର୍ଣ୍ଣୌ ନିରଭିଦ୍ୟେତାଂ, କର୍ଣ୍ଣାଭ୍ୟାଂ ଶ୍ରୋତ୍ରଂ ଶ୍ରୋତ୍ରାଦ୍ଦିଶ-
ସ୍ତ୍ୱଙ୍ ନିରଭିଦ୍ୟତ ତ୍ୱଚୋ ଲୋମାନି ଲୋମଭ୍ୟଃ ଓଷଧିବନ-
ସ୍ପତୟୋ ହୃଦୟଂ ନିରଭିଦ୍ୟତ, ହୃଦୟାନ୍ମନୋ ମନସଶ୍ଚନ୍ଦ୍ରମା
ନାଭିର୍ନିରଭିଦ୍ୟତ, ନାଭ୍ୟା ଅପାନୋଽପାନାନ୍ମୃତ୍ୟୁଃ ଶିଶ୍ନଂ
ନିରଭିଦ୍ୟତ, ଶିଶ୍ନାଦ୍ରେତୋ ରେତସ ଆପଃ ।

ଐତରେୟ ଉ: ୧-୧-୪ ।

ପୂର୍ବୋକ୍ତ ପରମାତ୍ମା ସେହି ପୂର୍ବସୃଷ୍ଟ ପୁରୁଷାକାର ପିଣ୍ଡକୁ ଲକ୍ଷ୍ୟ କରି ସଂକଳ୍ପ କଲେ ( ଏଠାରେ "ତପସ୍ୟା"ର ଅର୍ଥ ସଂକଳ୍ପ, ଅନ୍ୟ ଶ୍ରୁତିରେ ମଧ୍ୟ ଜ୍ଞାନ ହିଁ ଯାହାଙ୍କର ତପସ୍ୟା ବା ସଂକଳ୍ପ ଇତ୍ୟାଦି ଦେଖାଯାଏ) ।

ପରମାତ୍ମାଙ୍କ ସଂକଳ୍ପ ଫଳରେ ସେହି ପକ୍ଷୀଡିମ୍ବ ଭଳି ପୁରୁଷାକାର ଡିମ୍ବରୁ ପ୍ରଥମେ ମୁଖ ନିର୍ଭିନ୍ନ ହେଲା, ଅର୍ଥାତ୍ ତାହାର ମୁଖବିବର ଅଭିବ୍ୟକ୍ତ ହେଲା । ମୁଖପରେ ବାଗିନ୍ଦ୍ରିୟ ଓ ବାଗିନ୍ଦ୍ରିୟ ପରେ ସେହି ଇନ୍ଦ୍ରିୟର ଅଧିଷ୍ଠାତ୍ରୀ ଦେବତା ବାଗଗ୍ନି ଅଭିବ୍ୟକ୍ତ ହେଲା । ପରେ ନାସିକାରନ୍ଧ୍ରଦ୍ୱୟ ପ୍ରକାଶ ପାଇଲା; ନାସିକା ପରେ ପ୍ରାଣ ଅର୍ଥାତ୍ ପ୍ରାଣେନ୍ଦ୍ରିୟ ଓ ତାହାର ଅଧିଦେବତା ବାୟୁ ଅଭିବ୍ୟକ୍ତ ହେଲା । ଅନନ୍ତର ଚକ୍ଷୁର ଦୁଇଟି ଗୋଲକ, ତାପରେ ଚକ୍ଷୁରିନ୍ଦ୍ରିୟ ଓ ତାହାର ଅଧିଦେବତା ଆଦିତ୍ୟ ପ୍ରକାଶିତ ହେଲା । ଅତଃପର ଦୁଇ କର୍ଣ୍ଣବିବର, ତା'ପରେ ଶ୍ରବଣେନ୍ଦ୍ରିୟ ଓ ତା'ର ଅଧିଦେବତା ଦିକ୍‌ସମୂହ ପ୍ରକାଶିତ ହେଲା । ତା'ପରେ ତ୍ୱକ୍ ଅଭିବ୍ୟକ୍ତ ହେଲା; ତ୍ୱକ୍ ପରେ ଲୋମସମୂହ (ସ୍ପର୍ଶେନ୍ଦ୍ରିୟ) ଓ ତହିଁରୁ ଓଷଧି ଓ ବନସ୍ପତି ସକଳ ଉଦ୍‌ଭିନ୍ନ ହେଲା । ତା'ପରେ ହୃଦୟ ଅଭିବ୍ୟକ୍ତ ହେଲା ଓ ତହିଁରୁ ଅନ୍ତଃକରଣ, ମନ ଓ ମନର ଦେବତା ଚନ୍ଦ୍ର ପ୍ରକାଶିତ ହେଲେ । ଅନନ୍ତର ସମସ୍ତ ପ୍ରାଣର ଆଶ୍ରୟୀଭୂତ ନାଭି ନିଷ୍ପନ୍ନ ହେଲା; ନାଭି ଉପରେ ଅପାନ ପାୟୁ (ପାୟୁ-ମଳଦ୍ୱାର) ଓ ତାହାର

ଅଧିଦେବତା ମୃତ୍ୟୁ ଅଭିବ୍ୟକ୍ତ ହେଲା । ତା'ପରେ ଶିଶ୍ନ ପ୍ରକାଶ ପାଇଲା; ଶିଶ୍ନପରେ ରେତଃ, ଅର୍ଥାତ୍ ଶୁକ୍ରସମ୍ବଳିତ ଇନ୍ଦ୍ରିୟ ଓ ତାହାର ଅଧିଦେବତା ଅପ (ଜଳ) ଆବିର୍ଭୂତ ହେଲା । ଏହିପରି ଐତରେୟ ଶ୍ରୁତିରେ ସୃଷ୍ଟିକ୍ରମ ବର୍ଣ୍ଣିତ ହୋଇଛି ।

ତୈତ୍ତିରୀୟ ଶ୍ରୁତି ବର୍ଣ୍ଣିତ ସୃଷ୍ଟିକ୍ରମ ଏହିପରି—

**ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ । ଆକାଶାଦ୍ ବାୟୁଃ । ବାୟୋରଗ୍ନିଃ । ଅଗ୍ନେରାପଃ । ଅଦ୍‌ଭ୍ୟଃ ପୃଥିବୀ । ପୃଥିବ୍ୟା ଓଷଧୟଃ । ଓଷଧୀଭ୍ୟୋଽନ୍ନମ୍ । ଅନ୍ନାଦ୍ରେତଃ । ରେତସୋ ପୁରୁଷଃ । ସ ବା ଏଷ ପୁରୁଷୋଽନ୍ନରସମୟଃ । ତସ୍ୟେଦମେବ ଶିରଃ । ଅୟଂ ଦକ୍ଷିଣଃ ପକ୍ଷଃ । ଅୟମୁତ୍ତରପକ୍ଷଃ । ଅୟମାତ୍ମା । ଇଦଂ ପୁଚ୍ଛଂ ପ୍ରତିଷ୍ଠା ।**

ତୈତ୍ତିରୀୟ ବ୍ରହ୍ମାନନ୍ଦ ବଲ୍ଲୀ ୧-୨୮ ।

[ ଅତଃପର ପୂର୍ବବର୍ଣ୍ଣିତ ବ୍ରହ୍ମଙ୍କର ସତ୍ୟଜ୍ଞାନାଦି-ସ୍ୱରୂପ ପ୍ରତିପାଦନ ନିମନ୍ତେ ତାଙ୍କର ସର୍ବକାରଣତ୍ୱ ପ୍ରଦର୍ଶିତ ହେଉଅଛି ] ସେହି ଏତାଦୃଶ ବ୍ରହ୍ମଙ୍କଠାରୁ ଶବ୍ଦଗୁଣାତ୍ମକ ସୂକ୍ଷ୍ମ ଆକାଶ ଉତ୍ପନ୍ନ ହେଲା; ଆକାଶରୁ ଶବ୍ଦସ୍ପର୍ଶଗୁଣସମ୍ପନ୍ନ ବାୟୁ, ବାୟୁରୁ ଶବ୍ଦ, ସ୍ପର୍ଶ ଓ ରୂପ—ଏହି ତ୍ରିଗୁଣବିଶିଷ୍ଟ ଅଗ୍ନି, ଅଗ୍ନିରୁ ଶବ୍ଦ, ସ୍ପର୍ଶ, ରୂପ ଓ ରସସମ୍ପନ୍ନ ଜଳ, ଜଳରୁ ପୁନଶ୍ଚ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧଯୁକ୍ତ ପୃଥିବୀ ଉତ୍ପନ୍ନ ହେଲା । ସେହି ପୃଥିବୀଠାରୁ ଓଷଧି (ଲତାତୃଣ ପ୍ରଭୃତି) ଉତ୍ପନ୍ନ ହେଲା; ଓଷଧିରୁ ଅନ୍ନଶସ୍ୟାଦି ଜାତ ହୋଇ ଆହାରଦ୍ୱାରା ଶୁକ୍ରରୂପରେ ପରିଣତ ହେଲା । ସେହି ରେତଃ ବା ଶୁକ୍ରରୁ ପୁରୁଷ, ଅର୍ଥାତ୍ ହସ୍ତମସ୍ତକାଦି-ସମ୍ପନ୍ନ ଦେହ ଉତ୍ପନ୍ନ ହେଲା । ଏହି ହେତୁରୁ ଏହି ପୁରୁଷ ଅନ୍ନରସମୟ ଅର୍ଥାତ୍ ଅନ୍ନରସର ପରିଣାମ ବା ବିକାର ବୋଲି ପ୍ରସିଦ୍ଧ । ସେହି ପୁରୁଷର ଏହି ପ୍ରସିଦ୍ଧ ଶିରହିଁ ଶିର ବା ମସ୍ତକ, ଦକ୍ଷିଣବାହୁ ଦକ୍ଷିଣ ପକ୍ଷ; ବାମପକ୍ଷ ବାମବାହୁ; ଦେହ ମଧ୍ୟଭାଗରେ ଆତ୍ମା ସର୍ବାଙ୍ଗର ପ୍ରଧାନ ଏବଂ ଏହି ନାଭିର ନିମ୍ନଭାଗସ୍ଥିତ ଅଂଶ ତାହାର ଅବସ୍ଥିତିର ହେତୁଭୂତ ପୁଚ୍ଛ—ଇତ୍ୟାଦି

ଉପର୍ଯ୍ୟୁକ୍ତ ପ୍ରମାଣସମୂହରୁ ପ୍ରତିପନ୍ନ ହୁଏ ଯେ, ପରଂବ୍ରହ୍ମ ପରମାତ୍ମା ସୃଷ୍ଟିର ଏକମାତ୍ର କାରଣ । ଏହି ଲକ୍ଷ୍ୟଦେଇ ବାଦରାୟଣ କହିଅଛନ୍ତି ।

**ଈକ୍ଷତେର୍ନାଶବ୍ଦମ୍ ॥** ବ୍ରହ୍ମସୂତ୍ର ୧-୧-୫ ।

ଈକ୍ଷଣ ହେତୁରୁ ବ୍ରହ୍ମ କେବଳ ଜଗତର କାରଣ; ଶ୍ରୁତିବିରୁଦ୍ଧ ପ୍ରଧାନାଦି କାରଣ ନୁହେଁ ✻ । ଏହିପରି ପୂର୍ବଶ୍ରୁତ୍ୟାଦିରେ ମଧ୍ୟ ଈକ୍ଷଣପୂର୍ବକ ସୃଷ୍ଟି ବିଷୟ ବର୍ଣ୍ଣିତ ହୋଇଛି—

"ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍, ନାନ୍ୟତ୍ କିଞ୍ଚନ ମିଷତ୍ । ସ ଐକ୍ଷତ ଲୋକାନ୍ନୁ ସୃଜା ଇତି । ସ ଇମାଲ୍ଲୋକାନସୃଜତ" ଇତି ଈକ୍ଷା-ପୂର୍ବିକାମେବ ସୃଷ୍ଟିମାଚଷ୍ଟେ । କ୍ୱଚିଚ ଷୋଡ଼ଶକଳଂ ପୁରୁଷଂ ପ୍ରସ୍ତୁତ୍ୟାହ "ସ ଈକ୍ଷାଂଚକ୍ରେ, ସ ପ୍ରାଣମସୃଜତ ଇତି" । †

ବ୍ରହ୍ମସୂତ୍ର ଶାଙ୍କରଭାଷ୍ୟ

ଏହା, ଅର୍ଥାତ୍ ଏହି ଜଗତ୍ ଅଗ୍ରେ, ଅର୍ଥାତ୍ ଉତ୍ପତ୍ତିପୂର୍ବେ ବା ଏହିପରି ବ୍ୟକ୍ତ ହେବା ପୂର୍ବେ, କେବଳ ଏକ ପରମାତ୍ମା ଥିଲେ । ସେହି ପରମାତ୍ମା ଈକ୍ଷଣ କଲେ—ଆମ୍ଭେ

✻ ସାଂଖ୍ୟପରିକଳ୍ପିତମଚେତନଂ ପ୍ରଧାନଂ ନ ଜଗତ୍କାରଣମିତ୍ୟର୍ଥଃ । ଯତସ୍ତଦ୍ ଅଶବ୍ଦଂ ଶବ୍ଦା-ପ୍ରତିପାଦ୍ୟମ୍ ; ଅଶବ୍ଦତ୍ୱାଦେବ ଯାବତ୍ । ଅଶବ୍ଦତ୍ୱେ ହେତୁଃ—ଈକ୍ଷତେରିତି । ଯତ୍ ଜଗତ୍କାରଣଂ ତତ୍ ଈକ୍ଷିତ ! ଈକ୍ଷଣପୂର୍ବକଦ୍ରଷ୍ଟୃତ୍ୱାତ୍; ଅଚେତନସ୍ୟ ଈକ୍ଷଣାସମ୍ଭବାତ୍ ଅଚେତନଂ ପ୍ରଧାନଂ ନ ଜଗତ୍କାରଣମିତି ସମୁଦିତାର୍ଥଃ; ଅର୍ଥାତ୍ ସାଂଖ୍ୟକଳ୍ପିତ ପ୍ରଧାନ ଜଗତର କାରଣ ନୁହେଁ; କାରଣ, ଶ୍ରୁତି ଅଚେତନର ଜଗତ୍କର୍ତ୍ତୃତ୍ୱ କହେ ନାହିଁ । ତାହାର ହେତୁ ଏହି ଯେ, ଶ୍ରୁତିରେ ଈକ୍ଷଣ ବା ଆଲୋଚନାପୂର୍ବକ ପରମାତ୍ମାଙ୍କ ମହିମାର ସୃଷ୍ଟି ବୋଲି ଅଭିହିତ ହୋଇଛି । ପ୍ରଧାନର ସ୍ୱରୂପ ଜଡ଼, ସେଥିରେ ଈକ୍ଷଣ ନାହିଁ, ସୁତରାଂ ତାହାର ସୃଷ୍ଟିକର୍ତ୍ତୃତ୍ୱ ଅସମ୍ଭବ ।

† ଭାମତୀ ଟୀକା ଅନୁସାରେ ଷୋଡ଼ଶକଳାର ଅର୍ଥ ଏହିପରି—"ତଦ୍ୟଥା—ପ୍ରାଚୀ, ପ୍ରତୀଚୀ ଦକ୍ଷିଣୋଦୀଚୀତି ଚତସ୍ରଃକଳାଃ ବ୍ରାହ୍ମଣଃ ପ୍ରକାଶବାନ୍ ନାମ ପ୍ରଥମଃ ପାଦଃ । ତଦର୍ଦ୍ଧଂ ଶଫଃ । ତଥା ପୃଥିବ୍ୟନ୍ତରିକ୍ଷଂ ଦ୍ୟୌଃ ସମୁଦ୍ର ଇତ୍ୟପରାଃ ଚତସ୍ରଃ କଳାଃ ଦ୍ୱିତୀୟଃ ପାଦୋଽନନ୍ତବାନ୍ ନାମ । ତଥା ଅଗ୍ନିଃ ସୂର୍ଯ୍ୟଶ୍ଚନ୍ଦ୍ରମାଃ ବିଦ୍ୟୁଦିତି ଚତସ୍ରଃ କଳାଃ, ସ ଜ୍ୟୋତିଷ୍ମାନ୍ ନାମ ତୃତୀୟଃ ପାଦଃ । ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରଂ ବାଗିତି ଚତସ୍ରଃ କଳା, ସ ଚତୁର୍ଥ ଆୟତନବାନ୍ ନାମ ବ୍ରହ୍ମଣଃ ପାଦଃ । ତଦେବଂ ଷୋଡ଼ଶକଳଂ ଷୋଡ଼ଶାବୟବଂ ବ୍ରହ୍ମ ଉପାସ୍ୟମିତି ।" ଉକ୍ତ ବାକ୍ୟସକଳ ପରଂବ୍ରହ୍ମଙ୍କର ମହିମାବ୍ୟାପକତାର ପରିଚାୟକ ମାତ୍ର । ପ୍ରକୃତ ପରଂବ୍ରହ୍ମ ନାଦବିନ୍ଦୁକଳାତୀତ ଅଲେଖ ବା ଅବର୍ଣ୍ଣନୀୟ । ଏ ସମ୍ବନ୍ଧରେ ବର୍ଣ୍ଣିତ ଅଛି—

ଶ୍ରୁତ୍ୟୁକ୍ତାଃ ଷୋଡ଼ଶକଳା ଶ୍ଚିଦାଭାସସ୍ୟ ନାତ୍ମନଃ ।

ନିଷ୍କଳତ୍ୱାନ୍ନାସ୍ୟ ଲୟ ସ୍ତସ୍ମାନ୍ନିତ୍ୟତ୍ୱମାତ୍ମନଃ । ସ: ସି: ସା: ୫-୬୧୮ ।

ଶ୍ରୁତିରେ ଯେଉଁ ପ୍ରାଣ, ମନ ପ୍ରଭୃତି ଷୋଡଶ କଳାର କଥା ବର୍ଣ୍ଣିତ ଅଛି, ତାହା ଚିଦାଭାସର, ପରମାତ୍ମାଙ୍କର ନୁହେଁ । ପରମାତ୍ମା କିନ୍ତୁ କଳାବିହୀନ ହେତୁରୁ କୌଣସି ପ୍ରକାର ଲୟପ୍ରାପ୍ତ ହୁଅନ୍ତି ନାହିଁ । ଅତଏବ ପରମାତ୍ମାଙ୍କର ନିତ୍ୟତ୍ୱ ସର୍ବସମ୍ମତ ।

ଲୋକସବୁ ସର୍ଜନ କରିବୁଁ । ଅନନ୍ତର ସେ ଏହି ଲୋକସକଳ ସର୍ଜନ କଲେ । (କ୍ୱଚିତ ଅସୃଜନ୍ତ)—କୌଣସି ଶ୍ରୁତି ଷୋଡ଼ଶକଳ ପୁରୁଷର ପ୍ରସ୍ତାବ କରି କହିଅଛନ୍ତି; ସେହି ଷୋଡ଼ଶକଳ ପୁରୁଷ ଈକ୍ଷଣ କରି ପରେ ପ୍ରାଣ ସୃଷ୍ଟି କଲେ ।

୦—ସୃଷ୍ଟି ପ୍ରକ୍ରିୟାରେ ବ୍ରହ୍ମ ନିର୍ଗୁଣସ୍ୱରୂପ ।
ଗୌଣଶ୍ଚେନ୍ନାତ୍ମଶବ୍ଦାତ୍ । ବ୍ର: ସୂ : ୧-୧-୬

ବ୍ରହ୍ମଙ୍କର ଈକ୍ଷଣ ଗୌଣ ନୁହେଁ, କାରଣ ସେଠାରେ ଆତ୍ମଶବ୍ଦ ପ୍ରଯୁକ୍ତ ହୋଇଛି । ଏହି ଈକ୍ଷଣ ବା ପର୍ଯ୍ୟାଲୋଚନା ମୋକ୍ଷସ୍ୱରୂପ ଆତ୍ମାର ନ ହୋଇ କୌଣସି ଅଚେତନ ପଦାର୍ଥର ଗୁଣରୂପରେ ଉପଚରିତ ହୋଇ ପାରେ, କାରଣ, ପୂର୍ବଶ୍ରୁତିରେ ଉଲ୍ଲେଖ ଅଛି—

"ତତ୍ତେଜ ଐକ୍ଷତ", ତା ଆପ ଐକ୍ଷନ୍ତ" ଇତ୍ୟାଦି ।

ଏହି ସଂଶୟ ପରିହାର ନିମନ୍ତେ କହି ଅଛନ୍ତି ଯେ, ବ୍ରହ୍ମଙ୍କର ଏହି ଈକ୍ଷିତୃତ୍ୱ ଗୌଣ ବା ଅପ୍ରଧାନ ନୁହେଁ । କାରଣ ସେ 'ଆତ୍ମା' ଶବ୍ଦଦ୍ୱାରା ଗ୍ରାହ୍ୟ । ଆତ୍ମାରେ କୌଣସି ପ୍ରକାର ଗୁଣ ରହିପାରେ ନାହିଁ ।

ଛାନ୍ଦୋଗ୍ୟଶ୍ରୁତି କହେ—

"ଯୋ ଗୁଣୈଃ ସର୍ବତୋ ହୀନୋ ଯଶ୍ଚ ଦୋଷବିବର୍ଜିତଃ,
ହେୟୋପାଦେୟରହିତଃ ସ ଆତ୍ମା ଇତ୍ୟଭିଧୀୟତେ" ।

ଇତ୍ୟାଦିଦ୍ୱାରା ଆତ୍ମା ସର୍ବପ୍ରକାର ଗୁଣ-ବର୍ଜିତ ବୋଲି କୀର୍ତ୍ତିତ ହୋଇଛି । ଜଡ଼ର (ପ୍ରଧାନର) ଈକ୍ଷିତୃତ୍ୱ ଗୌଣ, ଅର୍ଥାତ୍ ଜଡ଼ ସଗୁଣ ବୋଲି ଧାର୍ଯ୍ୟ ହୁଏ । କାରଣ, ଏହାର ଈକ୍ଷିତୃତ୍ୱ "ହରିର ଅନୁପ୍ରବେଶ" ନିମନ୍ତେ ହୋଇଥାଏ । କେବଳ ସତ୍ତ୍ୱର ବା ଆତ୍ମାର ଈକ୍ଷିତୃତ୍ୱ ମୁଖ୍ୟ, ଅର୍ଥାତ୍ ତାହା ସ୍ୱୟଂସିଦ୍ଧ । ଜୀବାତ୍ମାର ସଗୁଣତ୍ୱ ଆତ୍ମାର ଉପାଧି ମାତ୍ର ଜୀବରେ ଅନୁପ୍ରବିଷ୍ଟ ଆତ୍ମା ନିର୍ଲିପ୍ତ ଓ ନିର୍ଗୁଣ । "ଆତ୍ମା ବା ଇଦଂ ଏକ ଏବାଗ୍ର ଆସୀତ୍" ଇତ୍ୟାଦି ଶ୍ରୁତିରେ ପ୍ରଯୁକ୍ତ 'ଆତ୍ମା' ଶବ୍ଦ କେବଳ ପୂର୍ଣ୍ଣ ବ୍ରହ୍ମରୂପକ ମୁଖ୍ୟାର୍ଥରେ ବ୍ୟବହୃତ ହୋଇଛି । ସେହି ହେତୁରୁ ବ୍ରହ୍ମ ନିର୍ଗୁଣ ଓ ନିର୍ଲିପ୍ତ ।

ଏ ସମ୍ବନ୍ଧରେ ଗୀତାବଚନ—

ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ ।
ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ ॥
ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।
ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ ॥

ଗୀତା-୧୩ । ୩୧-୩୨"

ଅର୍ଥାତ୍—ହେ କୌନ୍ତେୟ ! ଆଦ୍ୟନ୍ତବିହୀନ ଓ ନିର୍ଗୁଣ ହେତୁରୁ ଏହି ପରମାତ୍ମା ସକଳ ପ୍ରକାର ବିକାରହୀନ, ଅତଏବ ସେ ଦେହରେ ଥାଇ ସୁଦ୍ଧା କିଛି କରନ୍ତି ନାହିଁ; ତେଣୁ କର୍ମଫଳରେ ଲିପ୍ତ ହୁଅନ୍ତି ନାହିଁ । ଯେପରି ସର୍ବଗତ ଅର୍ଥାତ୍ ସର୍ବସ୍ଥାନରେ ଅବସ୍ଥିତ ଆକାଶ ସୂକ୍ଷ୍ମତ୍ୱ ହେତୁରୁ କୌଣସିଠାରେ ଲିପ୍ତ ହୁଏନାହିଁ, ସେହିପରି ସର୍ବବିଧ ଉପାଧି ବା ସର୍ବଦେହରେ (ଉତ୍ତମ, ମଧ୍ୟମ, ଓ ଅଧମ) ଥାଇ ସୁଦ୍ଧା ଆତ୍ମା ଦୈହିକ ଦୋଷ ବା ଗୁଣରେ ଲିପ୍ତ ହୁଅନ୍ତି ନାହିଁ ।

ଏହିପରି ଶ୍ରୁତିରେ ପରମାତ୍ମାଙ୍କର ନିର୍ଗୁଣତ୍ୱ ପ୍ରତିପାଦନ ହେତୁରୁ "ଈକ୍ଷିତୃତ୍ୱାଦି" ଶବ୍ଦଦ୍ୱାରା କେବଳ ଅଦ୍ୱିତୀୟ ପରଂବ୍ରହ୍ମଙ୍କ ଅଦ୍ଭୁତ ମହିମାରୁ ସୃଷ୍ଟି ସଂଭୂତ—ଏ କଥା ପ୍ରତିପାଦିତ ହୁଏ ।

କୃତ୍ସ୍ନ ପ୍ରସକ୍ତିର୍ନିରବୟବତ୍ୱଶବ୍ଦକୋପୋ ବା ॥

ପରଂବ୍ରହ୍ମ ଜାଗତିକ ପଦାର୍ଥରୂପରେ ପରିଣତ ହୋଇଛନ୍ତି—ଏ ବିଷୟରେ ପ୍ରଶ୍ନ ଉଠେ—ଜଗତ୍ ସମଗ୍ର ବ୍ରହ୍ମଙ୍କର ପରିଣତି ନା ବ୍ରହ୍ମଙ୍କର କିଛି ଅଂଶର ପରିଣତି ? ଯଦି ସମଗ୍ର ପରଂବ୍ରହ୍ମ ଜଗତ୍‌ରୂପରେ ପରିଣତ ହୋଇଛନ୍ତି ବୋଲି ଗ୍ରହଣ କରାଯାଏ, ତେବେ ବର୍ତ୍ତମାନ ଆଉ ବ୍ରହ୍ମ ନାହାନ୍ତି । ତାଙ୍କର ପରିଣତିରୂପକ ଜଗତ୍ କେବଳ ଅବସ୍ଥିତ ଅଛି— ଏପରି ଶଙ୍କା ହୋଇପାରେ । ଯଦି ଜଗତ ବ୍ରହ୍ମଙ୍କର କିୟଦଂଶର ପରିଣତି ବୋଲି ସ୍ୱୀକାର କରାଯାଏ, ତେବେ 'ବ୍ରହ୍ମ ନିରବୟବ'—ଏହି ଶ୍ରୁତିବାକ୍ୟ ସହିତ ବିରୋଧ ହେବ । ଅତଏବ ଉଭୟ ପକ୍ଷ ଦୋଷଯୁକ୍ତ ହେବ । ଏହି ସଂଶୟର ନିବାରଣ ନିମନ୍ତେ ବ୍ୟାସଦେବ ବ୍ରହ୍ମସୂତ୍ରରେ କହିଛନ୍ତି—

ଶ୍ରୁତେସ୍ତୁ ଶବ୍ଦମୂଳତ୍ୱାତ୍

ବ୍ର: ସୂ. ୨-୧-୨୭

ଅର୍ଥାତ୍ ଶ୍ରୁତିସମୂହରୁ * ବା ଶ୍ରୁତିବାକ୍ୟରୁ ବ୍ରହ୍ମଙ୍କ ସ୍ୱଭାବ ବୁଝିବାକୁ ହେବ । କାରଣ, "ଶବ୍ଦମୂଳତ୍ୱାତ୍"—ଅର୍ଥାତ୍ ବ୍ରହ୍ମଶବ୍ଦମୂଳକ, ଶବ୍ଦ ବା ଶ୍ରୁତିବାକ୍ୟ କେବଳ ତାହାଙ୍କର ସ୍ୱରୂପ ବା ତାଙ୍କୁ ଜାଣିବାର ଉପାୟ । ଶ୍ରୁତିରେ ଏହା ବ୍ୟାଖ୍ୟାତ ହୋଇଅଛି ଯେ, ବ୍ରହ୍ମଙ୍କର ଏକାଂଶରେ ସମସ୍ତ ଜଗତ୍, ଅଥଚ ବ୍ରହ୍ମ ନିରବୟବ—

ତାବାନସ୍ୟ ମହିମାଽତୋ ଜ୍ୟାୟାଂଶ୍ଚ ପୂରୁଷଃ ।
ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ॥

ଏହି ଜଗତ୍ ବ୍ରହ୍ମଙ୍କ ମହିମାରୁ ସମ୍ଭୂତ, ବ୍ରହ୍ମ କିନ୍ତୁ ଏହା ଅପେକ୍ଷା ବୃହତ୍ । ବିଶ୍ୱର ସକଳ ପ୍ରାଣୀ ତାହାଙ୍କର ଏକ ଅଂଶ ମାତ୍ର; ତାହାଙ୍କର ଅପର ତିନି ଅଂଶ ସ୍ୱର୍ଗରେ ଅମୃତରୂପେ ବିରାଜିତ । ଦ୍ୱିତୀୟତଃ, ଯଦି ସମଗ୍ର ବ୍ରହ୍ମହିଁ ଜଗତରୂପରେ ପରିଣତ ହୁଅନ୍ତି, ତେବେ ବ୍ରହ୍ମଙ୍କୁ ଇନ୍ଦ୍ରିୟର ଅଗୋଚର ବୋଲି କୁହାଯାନ୍ତା ନାହିଁ; କିନ୍ତୁ ଶ୍ରୁତିବଚନ ଅନୁସାରେ ବ୍ରହ୍ମ ଇନ୍ଦ୍ରିୟମାନଙ୍କର ଅଗୋଚର । ଆହୁରି ମଧ୍ୟ, ସମଗ୍ର ବ୍ରହ୍ମ ଜଗତ୍‌ରୂପରେ ପରିଣତ ହୁଅନ୍ତି ନାହିଁ ବୋଲି ବ୍ରହ୍ମ ଅବୟବଯୁକ୍ତ ବସ୍ତୁ, ଏପରି ଅନୁମାନ କରିବା ମଧ୍ୟ ଯୁକ୍ତିସଂଗତ ନୁହେଁ । କାରଣ, ଶ୍ରୁତିରେ ବ୍ରହ୍ମ ନିରବୟବ ବୋଲି ସ୍ପଷ୍ଟଭାବରେ ନିର୍ଦ୍ଦିଷ୍ଟ ହୋଇଛି । ଅତଏବ ଏଥିରୁ ଏହି ସିଦ୍ଧାନ୍ତ ମିଳେ ଯେ, ବ୍ରହ୍ମ ଯଦିଓ ଜଗତ୍‌ରୂପରେ ପରିଣତ ହୁଅନ୍ତି, ତଥାପି ସମଗ୍ର ବ୍ରହ୍ମ ସେପରି ପରିଣତ ହୁଅନ୍ତି ନାହିଁ । ବ୍ରହ୍ମଙ୍କର ଅଂଶ ମଧ୍ୟ ନାହିଁ । ଶ୍ରୁତି ବର୍ଣ୍ଣନା ଅନୁସାରେ—"ଯତୋ ବା ଇମାନି ଭୂତାନି ଜାୟନ୍ତେ" "ଅସ୍ଥୂଳମନଣ୍ୱ" ଇତ୍ୟାଦି ସିଦ୍ଧାନ୍ତ ପ୍ରତିପନ୍ନ ହୁଏ । ଅର୍ଥାତ୍—ଯାହାଙ୍କଠାରୁ ସମସ୍ତ ପ୍ରାଣୀ ଉତ୍ପନ୍ନ ହୁଅନ୍ତି, ଯାହାଙ୍କଦ୍ୱାରା ସମସ୍ତ ଜୀବିତ ଓ ପ୍ରଳୟ ସମୟରେ ଯାହାଙ୍କ ମଧ୍ୟରେ ପ୍ରବେଶ କରନ୍ତି, ସେ ସ୍ଥୂଳ ନୁହନ୍ତି, ଅଣୁ ମଧ୍ୟ ନୁହନ୍ତି ।

"ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍"—ବ୍ରହ୍ମ ଅଂଶହୀନ, କ୍ରିୟାହୀନ, ଶାନ୍ତ, ଦୋଷହୀନ ଓ ନିର୍ଲେପ ଇତ୍ୟାଦି ପ୍ରମାଣଭୂତ ଶ୍ରୁତିବାକ୍ୟରେ ବ୍ରହ୍ମଙ୍କର ସୃଷ୍ଟିକାରଣତ୍ୱ ଓ ନିରବୟବତ୍ୱ ପ୍ରତିପାଦିତ ହୋଇଅଛି । ଅତଏବ ବ୍ରହ୍ମଙ୍କର କୃତ୍ସ୍ନପ୍ରସକ୍ତି ଦୋଷର ଆପତ୍ତି ହୋଇ ନ ପାରେ ।

* ତୁଶବ୍ଦଃ ପୂର୍ବପକ୍ଷପରିହାରାର୍ଥଃ । କୃତ୍ସ୍ନପ୍ରସକ୍ତିରିତି ପୂର୍ବପକ୍ଷୋ ନ ଭବତୀତ୍ୟର୍ଥଃ । କୁତଃ ? ଶ୍ରୁତେଃ—ବିକାରବ୍ୟତିରେକେଣ ହି ବ୍ରହ୍ମଣୋଽବସ୍ଥାନଂ ଶ୍ରୂୟତେ ଇତି ଯାବତ୍ । ଶବ୍ଦମୂଳତ୍ୱାତ୍ ଶବ୍ଦପ୍ରମାଣକତ୍ୱାଚ୍ଚ ବ୍ରହ୍ମଣଃ କୃତ୍ସ୍ନପ୍ରସକ୍ତିଦୋଷାଭାବଃ ॥ ଶବ୍ଦୋ ହି ଉଭୟମପି ବ୍ରହ୍ମଣଃ ପ୍ରତି-ପାଦୟତି, ଅକୃତ୍ସ୍ନପ୍ରସକ୍ତିଂ ନିରବୟବତାର୍ଥେତି ସୂତ୍ରାର୍ଥଃ ।

ପୁନଶ୍ଚ ବାଦଖଣ୍ଡନ କରୁଛନ୍ତି—

**ଆତ୍ମନି ଚ ଏବଂ ବିଚିତ୍ରାଶ୍ଚ ହି ।**          ବ୍ର· ସୂ· ୨-୧-୨୮

ସ୍ୱପ୍ନ ସମୟରେ 'ଆତ୍ମନି' ଅର୍ଥାତ୍ ନିଜ ମଧ୍ୟରେ 'ବିଚିତ୍ରାଶ୍ଚ' ଅର୍ଥାତ୍ ବିଚିତ୍ର ରଥ, ପଥପ୍ରଭୃତି ସୃଷ୍ଟି ହୁଏ ; ସେ ସମୟରେ ଆତ୍ମାର ସ୍ୱରୂପ ନଷ୍ଟ ହୁଏନାହିଁ । ସେହିପ୍ରକାରେ ବ୍ରହ୍ମ ନିଜ ସ୍ୱରୂପ ବିନଷ୍ଟ ନ କରି ବିଚିତ୍ର ଜଗତ୍ ସ୍ୱ ମହିମାରେ ପ୍ରକାଶ କରନ୍ତି ଓ ସେ ନିଜେ ସତ୍, ପରମ ଓ ଅବ୍ୟକ୍ତସ୍ୱରୂପରେ ବିଦ୍ୟମାନ ଥାଆନ୍ତି ।

ବୃହଦାରଣ୍ୟକ ଶ୍ରୁତି ମଧ୍ୟ ଏ ସମ୍ବନ୍ଧରେ ନିର୍ଦ୍ଦେଶ କରିଅଛନ୍ତି—

**ସ ଯଥୋର୍ଣ୍ଣନାଭିସ୍ତନ୍ତୁନୋଚ୍ଚରେଦ୍ ଯଥାଗ୍ନେଃ କ୍ଷୁଦ୍ରା ବିସ୍ଫୁଲିଙ୍ଗା ବ୍ୟୁଚ୍ଚରନ୍ତ୍ୟେବମେବାସ୍ମାଦାତ୍ମନଃ ସର୍ବେ ପ୍ରାଣାଃ ସର୍ବେ ଲୋକାଃ ସର୍ବେ ଦେବାଃ ସର୍ବାଣି ଭୂତାନି ବ୍ୟୁଚ୍ଚରନ୍ତି । ତସ୍ୟୋପନିଷତ୍ ସତ୍ୟସ୍ୟ ସତ୍ୟମିତି ପ୍ରାଣା ବୈ ସତ୍ୟଂ ତେଷାମେଷ ସତ୍ୟମ୍ ।**

ବୃହଦାରଣ୍ୟକ ଉ· ୨-୧-୨୦

ଏହି ଶ୍ରୁତିବାକ୍ୟରୁ ଏହା ପ୍ରତିପନ୍ନ ହୁଏ ଯେ, ଅଗ୍ନିଠାରୁ କ୍ଷୁଦ୍ର ସ୍ଫୁଲିଙ୍ଗ ପରି ଏହି ପରମାତ୍ମାଙ୍କଠାରୁ ସକଳ ନିର୍ଗତ ହୁଏ ; ଆତ୍ମାର ଉପାଦାନ କେହି ନାହିଁ, ଅର୍ଥାତ୍ ଆତ୍ମା ବ୍ୟତୀତ କୌଣସି ବସ୍ତୁର ସତ୍ତା ନାହିଁ । ଯଦି କହ, ପ୍ରାଣାଦିସମୂହ ଆତ୍ମାଠାରୁ ପୃଥକ୍ ବସ୍ତୁ, ତା ମଧ୍ୟ ଠିକ୍ ନୁହେଁ ; କାରଣ, ପ୍ରାଣାଦି ମଧ୍ୟ ଏହି ଆତ୍ମାଠାରୁ ନିର୍ଗତ ହୋଇଛନ୍ତି । ଯେପରି ଊର୍ଣ୍ଣନାଭି ଅନ୍ୟର ସାହାଯ୍ୟ ବ୍ୟତିରେକେ ସୂତ୍ର ବହିର୍ଗତ କରି ସେହି ସୂତ୍ରସହିତ ନିଜେ ଗତି କରେ, ଯେପରି ଅଗ୍ନିରୁ ବହୁ ଅଗ୍ନିକଣା ନିର୍ଗତ ହୁଅନ୍ତି, ସେହିପରି ବିଜ୍ଞାନମୟ ଆତ୍ମାର ପ୍ରବୋଧପୂର୍ବକାଳୀନ ସ୍ୱରୂପରୁ ( ବ୍ରହ୍ମଙ୍କ ସହିତ ଅଭିନ୍ନଭାବେ ଅବସ୍ଥିତି ସମୟରୁ ) ବାକ୍‌ପ୍ରଭୃତି ଇନ୍ଦ୍ରିୟବର୍ଗ ବହିର୍ଗତ ହୁଅନ୍ତି । କେବଳ ବହିର୍ଗତ ହେବାପରେ ପରମାତ୍ମା ପୃଥକ୍‌ଭାବରେ ପ୍ରତୀୟମାନ ହୁଅନ୍ତି; କିନ୍ତୁ ବସ୍ତୁତଃ ଅପୃଥକ୍ । କେବଳ ନୁହେଁ, ଆତ୍ମସ୍ୱରୂପରେ ଅବସ୍ଥିତ ଆତ୍ମାଠାରୁ ସମସ୍ତ ଭୁବନ, ସୁଖ-ଦୁଃଖାଦି ସମସ୍ତ କର୍ମଫଳ ଓ ଇନ୍ଦ୍ରିୟାଧିଷ୍ଠାତ୍ରୀ ସମସ୍ତ ଦେବତା, ବ୍ରହ୍ମାଦି ସ୍ତମ୍ବ ପର୍ଯ୍ୟନ୍ତ ସମସ୍ତ ପ୍ରାଣୀ ସମୁଦ୍ଭୂତ ହୁଅନ୍ତି । ସ୍ଥାବରଜଙ୍ଗମାଦି ସମସ୍ତ ଜଗତ୍ ଅଗ୍ନିସ୍ଫୁଲିଙ୍ଗ ପରି ସେହି ପରମାତ୍ମାଙ୍କଠାରୁ ଅହରହଃ ଉଦ୍‌ଭୂତ ହେଉଅଛି । ସମସ୍ତ ଜଗତ୍ ଜଳବୁଦ୍‌ବୁଦ ପରି ଯେଉଁ ପରମାତ୍ମାଙ୍କଠାରୁ ଜାତ ହୋଇ ସେଥିରେ ବିଳୟ ପ୍ରାପ୍ତ ହୁଏ, ସ୍ଥିତିକାଳରେ ଯହିଁରେ ଅବସ୍ଥିତ ହୁଏ, ସେହି ବ୍ରହ୍ମସ୍ୱରୂପ ଆତ୍ମାର ବ୍ରହ୍ମୋ-

ପାସକମାନଙ୍କଦ୍ୱାରା ଉପାସ୍ୟ ନାମ—'ସତ୍ୟସ୍ୟ ସତ୍ୟମ୍', ଅର୍ଥାତ୍ ସେ ସତ୍ୟର ମଧ୍ୟ ସତ୍ୟ । ଅର୍ଥାତ୍ ପ୍ରାଣାଦି ଅପେକ୍ଷାକୃତ ସତ୍ୟ, କିନ୍ତୁ ପରମାତ୍ମା ସକଳ ସତ୍ୟର ସତ୍ୟ; ଆତ୍ମାର ସତ୍ତା ବଳରେ ପ୍ରାଣର ସତ୍ତା, ତଦ୍‌ଭିନ୍ନ ପ୍ରାଣ ଆତ୍ମସତ୍ତା ଲାଭ କରି ନ ପାରେ । ସେଥି ନିମନ୍ତେ ଶ୍ରୁତି କହେ—"ପ୍ରାଣା ବୈ ସତ୍ୟଂ ତେଷାମେଷ ସତ୍ୟମିତି" । ସତ୍ତ୍ୱସ୍ୱରୂପରେ ପ୍ରସିଦ୍ଧମାନ ବାକ୍‌ପ୍ରଭୃତି ଇନ୍ଦ୍ରିୟମାନଙ୍କର ମଧ୍ୟ ଏହି ଆତ୍ମା ବାସ୍ତବିକ କାରଣ, ଅତଏବ ଏହା ସତ୍ୟର ମଧ୍ୟ ସତ୍ୟ ।

### ଠ—ସୃଷ୍ଟିପ୍ରକ୍ରିୟା ଓ ପ୍ରାଣାଦି ସୃଷ୍ଟି ।

ବାଦରାୟଣ କହୁଛନ୍ତି—**ତଥା ପ୍ରାଣାଃ ॥** ବ୍ର: ସୂ: ୨ । ୪ । ୧ ॥

ଆକାଶାଦି ପରି ପ୍ରାଣ ମଧ୍ୟ ପରମାତ୍ମାଙ୍କଠାରୁ ଉତ୍ପନ୍ନ । ପ୍ରଶ୍ନୋପନିଷଦ୍‌ରେ (୬-୪) ମଧ୍ୟ ଅଛି-"ସପ୍ରାଣଂ ଅସୃଜତ", ଅର୍ଥାତ୍ ପରମାତ୍ମା ପ୍ରାଣ ସୃଷ୍ଟି କରିଥିଲେ । ଆହୁରି ମଧ୍ୟ—

ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ
ଖଂ ବାୟୁର୍ଜ୍ୟୋତିରାପଃ ପୃଥିବୀ ବିଶ୍ୱସ୍ୟ ଧାରିଣୀ ।

ମୁଣ୍ଡକ ଉ: ୨ । ୧ । ୩ ॥

ଏହି ପରଂବ୍ରହ୍ମଙ୍କଠାରୁ ପ୍ରାଣ, ମନ, ସର୍ବ ଇନ୍ଦ୍ରିୟ, ଆକାଶ, ବାୟୁ, ଅଗ୍ନି, ଜଳ ଓ ବିଶ୍ୱଧାରିଣୀ ପୃଥିବୀ ଉତ୍ପନ୍ନ ହୋଇଅଛି । ଯେଉଁ ପ୍ରାଣର ବିଷୟ ଉଲ୍ଲେଖ କରାଗଲା, ତାହା ବାୟୁକ୍ରିୟାରୁ ପୃଥକ୍ । *

**ନ ବାୟୁକ୍ରିୟେ ପୃଥଗୁପଦେଶାତ୍ ।** ବ୍ର: ସୂ: ୨ । ୪ । ୯ ॥

ପ୍ରାଣ, ବାୟୁ ବା ଇନ୍ଦ୍ରିୟକ୍ରିୟା ନୁହେଁ, କାରଣ ଏ ସମସ୍ତଠାରୁ ଏହା ପୃଥକ୍ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି ।

---

* ପ୍ରାଣୋ ନ ବାୟୁ ର୍ନବା କ୍ରିୟା କରଣାନାଂ ବ୍ୟାପାରଃ ; କିନ୍ତୁ ତତ୍ତ୍ୱାନ୍ତର ମେବ । ଯତଃ ପ୍ରାଣସ୍ୟ ତାଭ୍ୟାଂ ପୃଥକ୍ତ୍ୱଂ ଶ୍ରୂୟତେ ।

ମୁଖ୍ୟପ୍ରାଣ ଏହି ଭୌତିକ ବାୟୁ ନୁହେଁ, ଭୌତିକ ବାୟୁର ବିକାର ମଧ୍ୟ ନୁହେଁ, ଇନ୍ଦ୍ରିୟ-ସମଷ୍ଟିର ପୁଞ୍ଜୀଭୂତ ସାଧାରଣ ବ୍ୟାପାର ମଧ୍ୟ ନୁହେଁ । ଏହା ଏକ ସ୍ୱତନ୍ତ୍ର ବା ପୃଥକ୍ ତତ୍ତ୍ୱ । କାରଣ, ପ୍ରାଣ ଶ୍ରୁତିରେ ପୃଥକ୍ ତତ୍ତ୍ୱ ବୋଲି ଉପଦିଷ୍ଟ ହୋଇଅଛି ।

ଶ୍ରୁତିରେ ଉକ୍ତ ଅଛି—ପ୍ରଥମେ ପ୍ରାଣର ଅଭିବ୍ୟକ୍ତି ହେବାପରେ ଅନ୍ୟ ଇନ୍ଦ୍ରିୟାଦି ସମ୍ଭୂତ ହୋଇଛନ୍ତି । ଅତଏବ ପ୍ରାଣ ଭୌତିକ ପଞ୍ଚବିଧ ବାୟୁଠାରୁ ସ୍ୱତନ୍ତ୍ର ବୋଲି ବୁଝିବାକୁ ହେବ । ଏହି ପ୍ରାଣ ବ୍ରହ୍ମଚୈତନ୍ୟର ଅଂଶ ଓ ସମସ୍ତ ଦେହେନ୍ଦ୍ରିୟର ଜୀବନସ୍ୱରୂପରେ ସେଥିରେ ପରିବ୍ୟାପ୍ତ ।

## ୦—ସୃଷ୍ଟିପ୍ରକ୍ରିୟା ସମ୍ବନ୍ଧରେ ବିଭିନ୍ନ ଆଶଙ୍କା ଓ ତାର ନିରାକରଣ ।

ବ୍ରହ୍ମଙ୍କ ବିଷୟରେ ଏପରି ଆଶଙ୍କା ଜାତ ହୁଏ—ଯଦି ଏକ ଅଦ୍ୱିତୀୟ ବ୍ରହ୍ମଙ୍କ ଲକ୍ଷଣ ବେଦାନ୍ତଶାସ୍ତ୍ରର ପ୍ରତିପାଦ୍ୟ, ତେବେ କାହିଁକି ବିଭିନ୍ନ ବେଦାନ୍ତଗ୍ରନ୍ଥରେ ଭିନ୍ନପ୍ରକାର ସୃଷ୍ଟି କ୍ରମର ଉଲ୍ଲେଖ ଥିବା ଦେଖାଯାଏ ? ଶ୍ରୁତିରେ ମଧ୍ୟ ଭିନ୍ନପ୍ରକାର ବ୍ୟାଖ୍ୟା ଦେଖାଯାଏ—"ଆତ୍ମନଃ ଆକାଶଃ ସମ୍ଭୂତଃ ॥ ଅର୍ଥାତ୍ ସର୍ବପ୍ରଥମେ ଆତ୍ମାଠାରୁ ଆକାଶର ସୃଷ୍ଟି ; ଅନ୍ୟ ଶ୍ରୁତି କହେ—"ତତ୍ତେଜୋଽସୃଜତ"—ଅର୍ଥାତ୍ ପ୍ରଥମେ ତେଜର ସୃଷ୍ଟି କଲେ—ଏପରି ତେଜପୂର୍ବିକା ସୃଷ୍ଟି କଥିତ ହୋଇଅଛି । ଅନ୍ୟ ଶ୍ରୁତିରେ ଏପରି ବି କୁହାଯାଇଛି—"ସ ପ୍ରାଣମସୃଜତ", ଅର୍ଥାତ୍ ପ୍ରଥମେ ପରମାତ୍ମା ପ୍ରାଣ ସୃଷ୍ଟି କଲେ । ଅନ୍ୟ ମଧ୍ୟ-"ଯଥାଗ୍ନେଃ କ୍ଷୁଦ୍ରା ବିସ୍ଫୁଲିଙ୍ଗାଃ"-ଅର୍ଥାତ୍ ଯେପରି ଅଗ୍ନିରୁ ଏକସମୟରେ ବହୁ ଅଗ୍ନିକଣା ଜାତ ହୁଅନ୍ତି, ସେପରି ପରମାତ୍ମା ଯୁଗପତ୍ ଏହି ସମସ୍ତ ଲୋକ ସୃଷ୍ଟି କଲେ । ଅନ୍ୟ ଶ୍ରୁତିରେ ଏପରି ମଧ୍ୟ ବର୍ଣ୍ଣିତ ଅଛି—"ଅସତଃ ସଜ୍ଜାୟତ", ଅର୍ଥାତ୍ ଏହି ଜଗତ୍ ସୃଷ୍ଟ ହେବାପୂର୍ବରୁ ଅସତ୍ ବା ଅଭାବାତ୍ମକ ଥିଲା, ପରେ ଏହା ସତ୍, ଅର୍ଥାତ୍ ବିଦ୍ୟମାନ ହୋଇଅଛି—ଏହିପରି ଅଭାବ-ପୂର୍ବିକା ସୃଷ୍ଟିର ମଧ୍ୟ ଉଲ୍ଲେଖ ଅଛି । କୌଣସି କୌଣସି ଶ୍ରୁତିରେ ଅସଦ୍ ବାଦର ନିରା-କରଣ କରି ସଦ୍‌ବାଦର ସ୍ୱୀକାର କରାଯାଇଛି । ଆଉ କେତେକ କହନ୍ତି—ଜାଗତିକ ସମସ୍ତ ପଦାର୍ଥ ଆପେ ଆପେ ସୃଷ୍ଟ—ଇତ୍ୟାଦି । ଏହିପରି ସୃଷ୍ଟି ସମ୍ବନ୍ଧରେ ବିପ୍ରତିପତ୍ତି ବା ବହୁ ପରସ୍ପର ବିରୁଦ୍ଧ ମତ ଦେଖାଯାଏ, କିନ୍ତୁ ଶ୍ରୁତିପ୍ରସିଦ୍ଧ ଓ ନ୍ୟାୟସିଦ୍ଧ ସୃଷ୍ଟିର କାରଣ ସ୍ୱୀକାର କରିବା ନିମନ୍ତେ ବ୍ରହ୍ମସୂତ୍ର ବଚନ ଏହିପରି—

**ଅସ୍ତି ତୁ ।**　　　ବ୍ର: ସୂ: ୨-୩-୨ ॥

ଆତ୍ମାଠାରୁ ଆକାଶ ସମ୍ଭୂତ ହେଲା—ଏ କଥା ଛାନ୍ଦୋଗ୍ୟ ଉପନିଷଦ୍‌ରେ କୁହାଯାଇ-ନାହିଁ ; କିନ୍ତୁ ତୈତ୍ତିରୀୟ ଉପନିଷଦ୍‌ରେ ଆତ୍ମାରୁ ଆକାଶର ସୃଷ୍ଟି କଥା ବର୍ଣ୍ଣିତ ହୋଇଛି । ତୈତ୍ତିରୀୟରେ ଉଲ୍ଲେଖ ଅଛି—"ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ" (୨-୧-୧) । ଅର୍ଥାତ୍ ବ୍ରହ୍ମ ସତ୍ୟସ୍ୱରୂପ, ଜ୍ଞାନସ୍ୱରୂପ ଓ ଅନନ୍ତ । ତା'ପରେ କୁହାଯାଇଛି—"ତସ୍ମାଦ୍ ବା ଏତସ୍ମାଦ୍

ଆତ୍ମନଃ ଆକାଶଃ ସମ୍ଭୂତଃ ଅର୍ଥାତ୍ ସେହି ଆତ୍ମସ୍ୱରୂପ ବ୍ରହ୍ମଙ୍କ ମହିମାରୁ ଆକାଶର ଉତ୍ପତ୍ତି ହେଲା ।

**ପ୍ରତଜ୍ଞାଽହାନିଃ ଅବ୍ୟତିରେକାତ୍ ଶବ୍ଦେଭ୍ୟଃ ।** ବ୍ର: ସୂ: ୨-୩-୬ ॥

ଅର୍ଥାତ୍ ବ୍ରହ୍ମଙ୍କ ମହିମାରୁ ଆକାଶର ଉତ୍ପତ୍ତି, କେବଳ ବ୍ରହ୍ମଙ୍କୁ ଜାଣିବାଦ୍ୱାରା ଜଗତର ସକଳ ବସ୍ତୁ ଜ୍ଞାତ ହୁଏ—ଏପରି ପ୍ରତିଜ୍ଞା ବେଦାନ୍ତର ବହୁସ୍ଥଳରେ ଦେଖାଯାଏ । ଏ ବିଷୟରେ ଛାନ୍ଦୋଗ୍ୟଶ୍ରୁତିବଚନ— ଯେପରି

**"ଅଶ୍ରୁତଂ ଶ୍ରୁତଂ ଭବତି, ଅମତଂ ମତଂ, ଅବିଜ୍ଞାତଂ ବିଜ୍ଞାତଂ"** (୬।୧।୩)

ଅର୍ଥାତ୍ ଯାହାଙ୍କଦ୍ୱାରା ଅଶ୍ରୁତ ବସ୍ତୁ ଶ୍ରୁତ ହୁଏ, ଅଚିନ୍ତିତ ବସ୍ତୁ ଚିନ୍ତାଗମ୍ୟ ଓ ଅବିଜ୍ଞାତ ବସ୍ତୁ ବିଜ୍ଞାତ ହୁଏ । ଏ ବିଷୟରେ ବୃହଦାରଣ୍ୟକ ଶ୍ରୁତିରେ ମଧ୍ୟ କୁହାଯାଇଛି—

**"ଆତ୍ମନି ଖଲୁଅରେ ଦୃଷ୍ଟେ ଶ୍ରୁତେ ମତେ ବିଜ୍ଞାତେ ଇଦଂ ସର୍ବଂ ବିଦିତମ୍"**

ଅର୍ଥାତ୍ ଆତ୍ମାକୁ ଦର୍ଶନ କଲେ, ଶ୍ରବଣ କଲେ ବା ଜାଣିପାରିଲେ ଏହି ସମସ୍ତ ଜଗତ୍ ଜଣାଯାଏ । ମୁଣ୍ଡକ ଉପନିଷଦ୍‌ରେ ମଧ୍ୟ—

**"କସ୍ମିନ୍ନୁଭଗବୋ ବିଜ୍ଞାତେ ସର୍ବଂ ଇଦଂ ବିଜ୍ଞାତଂ ଭବତି"** (୧-୧-୩)

ଅର୍ଥାତ୍, ହେ ଭଗବନ, କାହାକୁ ଜାଣିଲେ ଏହି ସମସ୍ତ ବିଜ୍ଞାତ ହୁଏ ? ଉତ୍ତରରେ "ତସ୍ମିନ୍ନୁ" ଇତ୍ୟାଦି । ଏହିପରି ଶ୍ରୁତିମାନଙ୍କରେ ଯେଉଁ ପ୍ରତିଜ୍ଞା କରାଯାଇଛି ତାହାର ଅହାନି, ଅର୍ଥାତ୍ ହାନି ହୁଏ ନାହିଁ । ସୂତ୍ରୋକ୍ତ- "ଅବ୍ୟତିରେକାତ୍‌ର ଅର୍ଥ ବ୍ରହ୍ମବ୍ୟତିରିକ୍ତ କୌଣସି ବସ୍ତୁ ନାହିଁ; ଅତଏବ ଆତ୍ମାରୁ ଅଗ୍ନିର ଯେପରି ଉତ୍ପତ୍ତି, ସେପରି ଆକାଶର ଉତ୍ପତ୍ତି ମଧ୍ୟ ଯଥାର୍ଥ । ତୈତ୍ତିରୀୟରେ ଆକାଶସୃଷ୍ଟିର ଉଲ୍ଲେଖ ଥିବାରୁ ଛାନ୍ଦୋଗ୍ୟରେ ଏହାର ଅନୁକ୍ତିଦ୍ୱାରା ଆକାଶସୃଷ୍ଟିର ଅଭାବ ଆଶଙ୍କା କରିବା ଯଥାର୍ଥ ନୁହେଁ ।

**ଯାବଦ୍‌ବିକାରଂ ତୁ ବିଭାଗୋ ଲୋକବତ୍ ।** ବ୍ର. ସୂ. ୨-୩-୭

ଆକାଶର ଉତ୍ପତ୍ତି ଅସମ୍ଭବ ନୁହେଁ; କାରଣ ଅନୁମାନଦ୍ୱାରା ତାହା ପ୍ରମାଣିତ । ଜଗତର ସମସ୍ତ ବିକାରଯୁକ୍ତ ବସ୍ତୁ ବିଭକ୍ତ, ଯାହା ବିକାରଯୁକ୍ତ ବା ଜନ୍ମବାନ୍ ନୁହେଁ, ତାହା ବିଭକ୍ତ ମଧ୍ୟ ନୁହେଁ—ଏହି ଅବ୍ୟଭିଚରିତ ବ୍ୟାପ୍ତିରୁ ଯେଉଁ ଅନୁମାନ, ତଦ୍ଦ୍ୱାରା ଆକାଶୋତ୍ପତ୍ତି ଅନୁମିତ ।

**ଏତେନ ମାତରିଶ୍ୱା ବ୍ୟାଖ୍ୟାତଃ ।**　　　ବ୍ର. ସୂ. ୨ ୩-୮

ଏତେନ—ଅର୍ଥାତ୍ ଆକାଶର ଉତ୍ପତ୍ତି କଥନଦ୍ୱାରା ମାତାରିଶ୍ୱା ଅର୍ଥାତ୍ ବାୟୁର ଉତ୍ପତ୍ତି ମଧ୍ୟ ବ୍ୟାଖ୍ୟାତ ବା ସିଦ୍ଧ ହୁଏ । ଅର୍ଥାତ୍ ଯେଉଁ କାରଣରୁ ଆକାଶର ଉତ୍ପତ୍ତି, ସେହି କାରଣରୁ ବାୟୁର ଉତ୍ପତ୍ତି ସିଦ୍ଧ ।

**ତେଜୋଽତସ୍ତଥା ହ୍ୟାହ । ଆପଃ । ପୃଥିବ୍ୟଧିକାର-ରୂପ-ଶବ୍ଦାନ୍ତରେଭ୍ୟଃ ।**　　　ବ୍ର: ସୂ: ୨-୩-୧୦-୧୧-୧୨ ସୂତ୍ର

ତେଜଃ, ଅର୍ଥାତ୍ ଅଗ୍ନି, ଅତଃ = ବାୟୁଠାରୁ ଉତ୍ପନ୍ନ ହୋଇଅଛି । ତଥାହି ଆହ, ଅର୍ଥାତ୍ ଶ୍ରୁତି ଏପରି କହୁଛି ।

ଅଗ୍ନି ବାୟୁଠାରୁ ଉତ୍ପନ୍ନ, ଅଥବା ସ୍ୱତନ୍ତ୍ରଭାବରେ ସେହି ପରମାତ୍ମାଙ୍କଦ୍ୱାରା ସୃଷ୍ଟ —ଏପରି ସନ୍ଦେହର ଅବକାଶ ହୋଇପାରେ; କାରଣ ଛାନ୍ଦୋଗ୍ୟ ଶ୍ରୁତିରେ ଅଛି—"ତତ୍ ତେଜଃ ଅସୃଜତ"—ଅର୍ଥାତ୍ ବ୍ରହ୍ମ ଅଗ୍ନି ସୃଷ୍ଟି କରିଥିଲେ; କିନ୍ତୁ ବାୟୁରୁ ଅଗ୍ନି ସୃଷ୍ଟ ହୋଇ ନାହାନ୍ତି; କିନ୍ତୁ ତୈତ୍ତିରୀୟରେ କଥିତ ଅଛି—"ବାୟୋରଗ୍ନିଃ" ଅର୍ଥାତ୍ ବାୟୁପରେ ଅଗ୍ନି ସୃଷ୍ଟ ହୋଇଛି । ଏପରି ଉଭୟ ମତ ଥିଲେ ମଧ୍ୟ ତୈତ୍ତିରୀୟ ବଚନ ଯଥାର୍ଥ ନୁହେଁ । କାରଣ "ଆତ୍ମନଃ ଆକାଶଃ ସମ୍ଭୂତଃ" ଓ "ପୃଥିବ୍ୟାଃ ଓଷଧୟଃ" ଇତ୍ୟାଦି ସ୍ଥଳରେ "ଆତ୍ମନଃ, ପୃଥିବ୍ୟାଃ" ଇତ୍ୟାଦି ଶବ୍ଦରେ ଥିବା ପଞ୍ଚମୀ ବିଭକ୍ତି ଅପାଦାନ ଅର୍ଥରେ ବ୍ୟବହୃତ ହୋଇଛି । ସେପରି ବାୟୋରଗ୍ନିଃ— ଏଠାରେ ମଧ୍ୟ ବାୟୁ ଶବ୍ଦରୁ ପଞ୍ଚମୀ ବିଭକ୍ତି ଅପାଦାନ ଅର୍ଥରେ । ଅତଏବ ଏଥିରୁ ଅର୍ଥ ସ୍ପଷ୍ଟ ଜଣାଯାଏ ଯେ, ବ୍ରହ୍ମ ହିଁ ବାୟୁ ରୂପରେ ଆବିର୍ଭୂତ ହୋଇ ତା'ଠାରୁ ଅଗ୍ନି ସୃଷ୍ଟି କରିଅଛନ୍ତି । ବାୟୁ ପ୍ରତି ବ୍ରହ୍ମ ଯେପରି କାରଣ, ସେପରି ଅଗ୍ନି-ସୃଷ୍ଟି ପ୍ରତି ସେହି କେବଳ କାରଣ ।

**ବ୍ରହ୍ମ ଅଗ୍ନି ରୂପରେ ପରିଣତ ହୋଇ ଅଗ୍ନିରୁ ଜଳ ସୃଷ୍ଟି କରିଛନ୍ତି ।**

**"ତା ଆପଃ ଐକ୍ଷନ୍ତ ବହ୍ୱଃ ସ୍ୟାମ ପ୍ରଜାୟେମହି ଇତି ତା ଅନ୍ନଂ ଅସୃଜନ୍ତ"**　　　(ଛାନ୍ଦୋଗ୍ୟ ୬-୨-୪) ;

ଅର୍ଥାତ୍ ଜଳସକଳ ଈକ୍ଷଣ କଲେ—"ଆମେ ବହୁତ ହେବୁଁ, ଜନ୍ମଗ୍ରହଣ କରିବୁଁ" ଅତଏବ ସେମାନେ ଅନ୍ନ ସୃଷ୍ଟି କଲେ । ଏଠାରେ ଅନ୍ନ ଶବ୍ଦର ଅର୍ଥ ଯବ ଓ ଗହମ

ପ୍ରଭୃତି ଖାଦ୍ୟଦ୍ରବ୍ୟ ନୁହେଁ; କିନ୍ତୁ ଏହି ଶବ୍ଦର ଅର୍ଥ ପୃଥିବୀ । "ଅଧିକାର ରୂପ ଶବ୍ଦାନ୍ତରେଭ୍ୟଃ" ଅର୍ଥାତ୍ ଅଧିକାର, ରୂପ ଓ ଅନ୍ୟ ଶ୍ରୁତିବାକ୍ୟରୁ ଏପରି ସିଦ୍ଧାନ୍ତ କରିବା ଆବଶ୍ୟକ । ଅଧିକାରଦ୍ୱାରା ଏଠାରେ ଉକ୍ତ ଅର୍ଥ ପ୍ରତିପନ୍ନ ହୁଏ; ପୂର୍ବୋଦ୍ଧୃତ ବାକ୍ୟର ପୂର୍ବରେ ଅଗ୍ନି ଓ ଜଳର ସୃଷ୍ଟି କଥା ଉଲ୍ଲିଖିତ ହୋଇଅଛି । ଅତଏବ ମହାଭୂତ ସକଳର ସୃଷ୍ଟି ଅଭିପ୍ରେତ । ଅନ୍ନର ଉତ୍ପତ୍ତି କଥା ସେହି ପ୍ରସଙ୍ଗରେ କରାଯାଇଥିବାରୁ ମହାଭୂତାନ୍ତର୍ଗତ ଅନ୍ନ ବା ପୃଥିବୀ ଏଠାରେ ଲକ୍ଷ୍ୟ ବୋଲି ଜଣାଯାଏ । ସୂତ୍ରର ରୂପ-ଶବ୍ଦ ଦ୍ୱାରା ମଧ୍ୟ ଅନ୍ନ ଶବ୍ଦର ପୃଥିବୀ ଅର୍ଥ ବୁଝାଯାଏ । "ଯତ୍ କୃଷ୍ଣଂ ତଦ୍ ଅନ୍ନସ୍ୟ" ଅର୍ଥାତ୍ ଜଗତରେ ଯାହା କୃଷ୍ଣବର୍ଣ୍ଣ ତାହା ଅନ୍ନର, କେବଳ ପୃଥିବୀ ସ୍ଥଳବିଶେଷରେ କୃଷ୍ଣ ବର୍ଣ୍ଣ ହୋଇପାରେ; କିନ୍ତୁ ଯବ, ଗହମ, ଧାନ ଆଦି ସକଳ ଅନ୍ନ କଦାପି କୃଷ୍ଣ ବର୍ଣ୍ଣ ନୁହେଁ; ଅତଏବ ରୂପଦ୍ୱାରା ମଧ୍ୟ ପୃଥିବୀ ଅର୍ଥ ଏଠାରେ ଜ୍ଞାତ, ଯବାଦି ନୁହେଁ । "ଶବ୍ଦାନ୍ତରେଭ୍ୟଃ"—ଏହି ଅଂଶର ଅର୍ଥ ମଧ୍ୟ ଏହିପରି—ଅନ୍ୟ ଶ୍ରୁତିବାକ୍ୟ ପ୍ରମାଣରୁ ମଧ୍ୟ ଅନ୍ନ ଶବ୍ଦର ଏଠାରେ ଅର୍ଥ 'ପୃଥିବୀ' କେବଳ ଗୃହୀତ ହେବ । ତୈତ୍ତିରୀୟ ଶ୍ରୁତିରେ "ଅଦ୍ଭ୍ୟଃ ପୃଥିବୀ" ଅର୍ଥାତ୍ ଜଳରୁ ପୃଥିବୀର ଉତ୍ପତ୍ତି ବୋଲି ବର୍ଣ୍ଣିତ; ବୃହଦାରଣ୍ୟକରେ ମଧ୍ୟ—"ତଦ୍‌ଯଦ୍ ଅପାଂ ଶର ଆସୀତ୍ ତତ୍ ସମହ୍ନ୍ୟତ ସା ପୃଥିବୀ ଅଭବତ୍" ବୋଲି ବର୍ଣ୍ଣିତ ହୋଇଛି; ଅର୍ଥାତ୍ ସେହି ଜଳର ଯେଉଁ ଶର ଥିଲା, ତାହା କଠିନ ହୋଇ ପୃଥିବୀ ହେଲା; ଏହି ସକଳ କାରଣରୁ ଏହା ବୁଝିବାକୁ ହେବ ଯେ, ଏଠାରେ ଅନ୍ନ ଶବ୍ଦର ଅର୍ଥ ପୃଥିବୀ ।

ତଦଭିଧ୍ୟାନାଦେବ ତୁ ତଲ୍ଲିଙ୍ଗାତ୍ ସଃ । ବ୍ର: ସୂ: ୨-୩-୧୩ ।

ପୂର୍ବେ କୁହାଯାଇଅଛି ଯେ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି ଓ ଅଗ୍ନିରୁ ଜଳ ପ୍ରଭୃତିର ଉତ୍ପତ୍ତି ହୋଇଛି । କିନ୍ତୁ ଶଙ୍କା ହୁଏ ଯେ, ଆକାଶ ବାୟୁ ପ୍ରଭୃତି ନିଜଠାରୁ ନିଜେ ଏହି ସକଳ ପଦାର୍ଥ ସୃଷ୍ଟି କରିଛନ୍ତି, ଅଥବା ବ୍ରହ୍ମ କେବଳ ଆକାଶ ପ୍ରଭୃତି ରୂପରେ ଅବସ୍ଥାନ କରି ବାୟୁ ଅଗ୍ନି ପ୍ରଭୃତି ସୃଷ୍ଟି କରିଛନ୍ତି; କିନ୍ତୁ ସିଦ୍ଧାନ୍ତ ସ୍ୱରୂପ ଏହା କୁହାଯାଇ ପାରେ ଯେ, ବ୍ରହ୍ମହିଁ ଆକାଶ ପ୍ରଭୃତି ରୂପରେ ଅବସ୍ଥାନ କରି ବାୟୁ ପ୍ରଭୃତି ସୃଷ୍ଟି କରି-ଅଛନ୍ତି । ଅତଏବ "ତଦ୍ ଅଭିଧ୍ୟାନାତ୍"ର ଅର୍ଥ—ବ୍ରହ୍ମଙ୍କ ସଙ୍କଳ୍ପରୁ ଏହି ସମସ୍ତ ସୃଷ୍ଟି ହୋଇଅଛନ୍ତି । "ତଲ୍ଲିଙ୍ଗାତ୍"ର ଅର୍ଥ—ସେହି ପ୍ରକାର ଚିହ୍ନ ବେଦରେ ଦେଖାଯାଏ—

ଅର୍ଥାତ୍ ବୃହଦାରଣ୍ୟକରେ ବର୍ଣ୍ଣିତ ଅଛି—

**"ଯଃ ପୃଥିବ୍ୟାଂ ତିଷ୍ଠନ୍, ପୃଥିବ୍ୟା ଅନ୍ତରଃ, ଯଂ ପୃଥିବୀ ନ ବେଦ, ଯସ୍ୟ ପୃଥିବୀ ଶରୀରଂ ଯଃ ପୃଥିବୀଂ ଅନ୍ତରୋ ଯମୟତ (୫-୭-୩)**

ଅର୍ଥାତ୍ ଯେ ପୃଥିବୀରେ ଅଧିଷ୍ଠିତ ହୋଇ ପୃଥିବୀ ମଧ୍ୟରେ ଥାନ୍ତି; ପୃଥିବୀ ଯାହାଙ୍କୁ ଜାଣେନାହିଁ । ପୃଥିବୀ ଯାହାର ଶରୀର । ଯେ ଅନ୍ତର ମଧ୍ୟରେ ଥାଇ ପୃଥିବୀକୁ ସଂଯତ କରନ୍ତି । ଏହାଦ୍ୱାରା ବୁଝାଯାଏ ଯେ, ବ୍ରହ୍ମଙ୍କଦ୍ୱାରା ଅଧିଷ୍ଠିତ ହୋଇ ଅଚେତନ ବସ୍ତୁ ପ୍ରବୃତ୍ତିଯୁକ୍ତ ହୁଏ ।

ବର୍ତ୍ତମାନ "ଅସତଃ ସଜ୍ଜାୟେତେ"—ଅର୍ଥାତ୍ ଅସତ୍‌ରୁ ସତ୍‌ର ଉତ୍ପତ୍ତି-ରୂପକ ଶ୍ରୁତି-ଆପତ୍ତିର ନିରାକରଣ ବିଷୟରେ ବାଦରାୟଣ କହୁଛନ୍ତି—

**ଅସମ୍ଭବସ୍ତୁ ସତୋଽନୁପପତ୍ତେଃ** । ବ୍ର: ସୂ: ୨-୩-୯ ।

ଅର୍ଥାତ୍ ବ୍ରହ୍ମଙ୍କର ଉତ୍ପତ୍ତି ଅସମ୍ଭବ, କାରଣ କୌଣସିପ୍ରକାରେ ସେପରି ଉତ୍ପତ୍ତିର ଯୁକ୍ତିଯୁକ୍ତତା ହୋଇ ନ ପାରେ । ଶାଙ୍କରଭାଷ୍ୟରେ କଥିତ ଅଛି—

**"ସତଃ ସତ୍‌ସ୍ୱରୂପସ୍ୟ ବ୍ରହ୍ମଣଃ ଅସମ୍ଭବଃ ଉତ୍ପତ୍ତିର୍ନ ସମ୍ଭାବ୍ୟତେ । କୁତଃ ? ଅନୁପପତ୍ତେଃ ସନ୍ମାତ୍ରସ୍ୟୋତ୍ପତ୍ତିର୍ନୋପପଦ୍ୟତେ ନ ଯୁକ୍ତ୍ୟା ସିଦ୍ଧ୍ୟତୀତ୍ୟର୍ଥ ।"**

ଅର୍ଥାତ୍ ବ୍ରହ୍ମ ସତ୍‌ସ୍ୱରୂପ, ସୁତରାଂ ତାହାଙ୍କର ଉତ୍ପତ୍ତି ଅନ୍ୟ କୌଣସିଠାରୁ ଅସମ୍ଭବ । ଯାହା କେବଳ ନିତ୍ୟ, ଏକରୂପ ତାହାଙ୍କର ଉତ୍ପତ୍ତି ଯୁକ୍ତିସିଦ୍ଧ ନୁହେଁ । ଅତଏବ "କଥଂ ଅସତଃ ସଜ୍ଜାୟେତ"—ଅସତ୍‌ରୁ ସତ୍‌ର କିପରି ଉତ୍ପତ୍ତି ହୋଇପାରେ ବୋଲି କୁହାଯାଇଛି । ସତ୍‌ସ୍ୱରୂପ ବ୍ରହ୍ମ ଜନ୍ୟ ନୁହନ୍ତି, ସେ ଜନକ । ଶ୍ରୁତି କହେ— "ନ ଚାସ୍ୟ କଶ୍ଚିତ୍ ଜନିତା"=ବ୍ରହ୍ମଙ୍କର ଉତ୍ପତ୍ତି ନାହିଁ । ବ୍ରହ୍ମ ସ୍ୱୟଂ ଜଗତର ଅଦ୍ୱିତୀୟ ମୂଳ କାରଣ । ବ୍ରହ୍ମ="ସତ୍ୟସ୍ୟ ସତ୍ୟଂ, ପ୍ରାଣା ବୈ ସତ୍ୟମ୍"—ଇତ୍ୟାଦି ଶ୍ରୁତି ବାକ୍ୟ ଦ୍ୱାରା ବ୍ରହ୍ମ ନିର୍ବିକାର ଓ ଅନୁତ୍ପନ୍ନ ବୋଲି ପ୍ରମାଣିତ ହୋଇଅଛି । ଅତଏବ ସତ୍‌ସ୍ୱରୂପ ବ୍ରହ୍ମ "ସବିଶେଷତ୍ୱ" ଅର୍ଥାତ୍ ବିକାର ବା ବିବର୍ତ୍ତରେ ପରିଣତ ହୁଅନ୍ତି ନାହିଁ । ତାହାଙ୍କ ଅଦ୍ଭୁତ ମହିମାରୁ ଏ ସମସ୍ତ ଜଗତ୍ ଉତ୍ପନ୍ନ ହୋଇଅଛି ।

ଏକମେବାଦ୍ୱିତୀୟଂ ବ୍ରହ୍ମ—ଯେ ସୃଷ୍ଟିର ମୁଖ୍ୟ କାରଣ, ସେହି ବ୍ରହ୍ମ ଏକ ଓ ଅଦ୍ୱିତୀୟ ବୋଲି ସର୍ବବେଦାନ୍ତସିଦ୍ଧାନ୍ତ । ଏ ବିଷୟରେ ଗୋପାଳୋତ୍ତରତାପନୀୟ

ଶ୍ରୁତି ବଚନ—

ପୂର୍ବଂ ହ୍ୟେକମେବାଦ୍ୱିତୀୟଂ ବ୍ରହ୍ମାସୀତ୍; ତସ୍ମାଦବ୍ୟକ୍ତଂ ବ୍ୟକ୍ତମେବାକ୍ଷରଂ; ତସ୍ମାଦକ୍ଷରତ୍ ମହାନ୍ ମହତୋ ବା ଅହଂକାରସ୍ତସ୍ମାଦହଂକାରତ୍ ପଞ୍ଚତନ୍ମାତ୍ରାଣି; ତେଭ୍ୟୋ ଭୂତାନି ତୈରାବୃତଂ ଅକ୍ଷରଂ ଭବତି ।

ଗୋପାଳ-୧୭ କ

ସୃଷ୍ଟି ପୂର୍ବରେ ଏକମାତ୍ର ଅଦ୍ୱିତୀୟ ବ୍ରହ୍ମ ଥିଲେ ; ତାହାଙ୍କଠାରୁ ଅବ୍ୟକ୍ତ ଜୀବ ଚୈତନ୍ୟ ବ୍ୟକ୍ତ ହେଲେ । ସେହି (ତ୍ରିଗୁଣାତ୍ମକ) ଅକ୍ଷରରୁ ତ୍ରିବିଧ ମହତ୍ତତ୍ତ୍ୱ ଓ ମହତ୍ତତ୍ତ୍ୱରୁ ଅହଂକାର ତତ୍ତ୍ୱ, ଅହଂକାରରୁ ପଞ୍ଚ ତନ୍ମାତ୍ର ଏବଂ ପଞ୍ଚତନ୍ମାତ୍ରରୁ ପଞ୍ଚମହାଭୂତର ସୃଷ୍ଟି ହେଲା । ସେ ଭୂତଗଣ ଅକ୍ଷରକୁ ବେଷ୍ଟନ କରି ବିଦ୍ୟମାନ ଅଛନ୍ତି ।

ବସ୍ତୁତଃ ଭୂତାଦିଶବ୍ଦଦ୍ୱାରା ତ୍ରିବିଧ ଅହଂକାର ପ୍ରକରଣାଦି ବୁଝିବାକୁ ହେବ । ବସ୍ତୁ ସ୍ୱୟଂସିଦ୍ଧ ନୁହେଁ—ଏହା କହିଲେ ସଂଶୟ ହୁଏ ଯେ, ଭୂତାଦିର ଉତ୍ପତ୍ତି ସାକ୍ଷାତ୍ ବ୍ରହ୍ମଙ୍କଠାରୁ ହୁଏ କି ପୂର୍ବ ପୂର୍ବ କାର୍ଯ୍ୟାଦିରୁ ହୁଏ ; କିନ୍ତୁ ଉତ୍ତର ଏହା ଯେ, ପୂର୍ବ ପୂର୍ବ ଭୂତାଦି କାର୍ଯ୍ୟରୂପ ବ୍ରହ୍ମଙ୍କଠାରୁ ଉତ୍ତରୋତ୍ତର ଭୂତାଦିର ସୃଷ୍ଟି । ସେହି ପରମାତ୍ମା ହିଁ ତପୋକ୍ଷଣ ନିମିତ୍ତ ଅଭିଧ୍ୟାନ ଅର୍ଥାତ୍ ପର୍ଯ୍ୟାଲୋଚନା ଯୋଗରେ ଏକମାତ୍ର ହୋଇ ବହୁତ୍ୱରେ ପରିଣତ ହୁଅନ୍ତି ଓ ଆକାଶାଦି ରୂପ ତଦ୍‌ବିକାରଜାତ ଭୂତସମୂହ ସୃଷ୍ଟି କରନ୍ତି । ଅର୍ଥାତ୍ ଭୂତାଦିରୂପ ଉପାଧିଗ୍ରସ୍ତ ହୋଇ ବିକାରସ୍ୱରୂପରେ ଅଭିବ୍ୟକ୍ତ ହୁଅନ୍ତି । ଏହି ଈକ୍ଷଣଜନ୍ୟ ସୃଷ୍ଟିକାର୍ଯ୍ୟ କେବଳ ତାହାଙ୍କର ଅଭିଧ୍ୟାନ ବା ପ୍ରକାଶଶକ୍ତିରୂପ ପର୍ଯ୍ୟାଲୋଚନା ମାତ୍ର ନୁହେଁ । ତା ସହିତ ଏକତ୍ୱାନ୍ୱିତ ତାହାଙ୍କର ଅଧ୍ୟକ୍ଷତାଲିଙ୍ଗଯୋଗେ ଘଟିଥାଏ; ସେହି ସକଳ ଅନୁପ୍ରବିଷ୍ଟ ବା ଅବସ୍ଥିତଘଟିତ ପ୍ରଶାସକସ୍ୱରୂପତ୍ୱ ବା ଜ୍ଞାନଶକ୍ତିରୂପ ନିୟମନସ୍ୱରୂପତ୍ୱ ଯୋଗେ ହିଁ ସମ୍ଭବ ହୁଏ । ଅଧ୍ୟକ୍ଷଶୂନ୍ୟ ପଦାର୍ଥର ପ୍ରବୃତ୍ତି ସିଦ୍ଧ ହୁଏ ନାହିଁ । ସୁତରାଂ ସୃଷ୍ଟିକାର୍ଯ୍ୟରେ କେବଳ ଅଭିଧ୍ୟାନ ନୁହେଁ, ତାଙ୍କର ଅଧ୍ୟକ୍ଷତା ଅର୍ଥାତ୍ ନିୟମନସ୍ୱରୂପତ୍ୱ ମଧ୍ୟ ପ୍ରୟୋଜନ ହୁଏ । "ତଦୈକ୍ଷତ ବହୁ ସ୍ୟାମ୍, ଏଷ ସର୍ବେଶ୍ୱରଃ, ଏଷ ଅନ୍ତର୍ଯ୍ୟାମୀ" ଇତ୍ୟାଦି ଶ୍ରୁତି ବାକ୍ୟରୁ ଏହା ହିଁ ପ୍ରତିପନ୍ନ ହୁଏ ।

ଏ ସମ୍ବନ୍ଧରେ ମାଣ୍ଡୁକ୍ୟ ଶ୍ରୁତିରେ ଆତ୍ମାର ଚତୁର୍ଥ ପାଦ ବର୍ଣ୍ଣନସ୍ଥଳରେ ଉକ୍ତ ଅଛି ।

"ଏଷ ସର୍ବେଶ୍ୱରଃ, ଏଷ ସର୍ବଜ୍ଞଃ ଏଷୋଽନ୍ତର୍ଯ୍ୟାମ୍ୟେଷ ଯୋନିଃ ସର୍ବସ୍ୟ ପ୍ରଭବାପ୍ୟୟୌ ହି ଭୂତାନାମ୍ ।"

ମାଣ୍ଡୁକ୍ୟ ଉ: ୬

ଏହି ତ୍ରିଗୁଣ ଅବସ୍ଥାର ଅଧିଷ୍ଠାତା ଯେ ପରମାତ୍ମା, ସେ ସମସ୍ତ ବିଶ୍ୱର ଈଶ୍ୱର; ଏହି ପରମାତ୍ମା ସର୍ବତ୍ର ବ୍ୟାପି ରହି ଅଛନ୍ତି ଏବଂ ସକଳ ବସ୍ତୁକୁ ବିଶେଷରୂପରେ ଜାଣନ୍ତି । ଏହି ପରମାତ୍ମା ସମସ୍ତଙ୍କ ଅନ୍ତରରେ ଅବସ୍ଥିତ ଥାଇ ସମସ୍ତଙ୍କ ନିୟମନ-କର୍ତ୍ତା ହୁଅନ୍ତି; ସେ ସର୍ବୋପରି କାରଣ, ଏହି ବିଶ୍ୱର ଉତ୍ପତ୍ତି ଓ ଲୟ ତାହାଙ୍କଠାରୁ ହୁଏ ।

## ଠ – ସୃଷ୍ଟି ତତ୍ତ୍ୱ ସମ୍ବନ୍ଧରେ ବେଦାନ୍ତାଦି ଦର୍ଶନ ମତ ।

ଆତ୍ମବିଦ୍ୟା ମୟା ଲବ୍‌ଧା ବ୍ରହ୍ମଣୈବ ସନାତନୀ ।
ବ୍ରହ୍ମତ୍ୱଂ ମେ ସଦା ନିତ୍ୟଂ ସଚ୍ଚିଦାନନ୍ଦରୂପତଃ ॥
ପ୍ରକୃତିତ୍ୱଂ ତତଃ ସୃଷ୍ଟଂ ସତ୍ତ୍ୱାଦିଗୁଣସାମ୍ୟତଃ ।
ସତ୍ୟମାଭାତି ଚିଚ୍ଛାୟା ଦର୍ପଣେ ପ୍ରତିବିମ୍ବବତ୍ ॥
ତେନ ଚିତ୍‌ପ୍ରତିବିମ୍ବେନ ତ୍ରିବିଧା ଭାତି ସ ପୁନଃ ।
ପ୍ରକୃତ୍ୟବଚ୍ଛିନ୍ନତୟା ପୁରୁଷତ୍ୱଂ ପୁନଶ୍ଚ ତେ ॥
ଶୁଦ୍ଧସତ୍ତ୍ୱପ୍ରଧାନାୟାଂ ମାୟାୟାଂ ବିମ୍ବିତୋ ହ୍ୟଜଃ ।
ସତ୍ତ୍ୱପ୍ରଧାନା ପ୍ରକୃତିର୍ମାୟେତି ପ୍ରତିପାଦ୍ୟତେ ॥
ସା ମାୟା ସ୍ୱବଶୋପାଧିଃ ସର୍ବଜ୍ଞସ୍ୟେଶ୍ୱରସ୍ୟ ଚ ।
ବଶ୍ୟମାୟତ୍ୱମେକତ୍ୱଂ ସର୍ବଜ୍ଞତ୍ୱଞ୍ଚ ତସ୍ୟ ତୁ ॥
ସାତ୍ତ୍ୱିକତ୍ୱାତ୍ ସମଷ୍ଟିତ୍ୱାତ୍ ସାକ୍ଷିତ୍ୱାଜ୍ଜଗତାମପି ।
ଜଗତ୍ କର୍ତ୍ତୁମକର୍ତ୍ତୁଂ ବା ଚାନ୍ୟଥା କର୍ତ୍ତୁମୀଶତେ ॥
ଯଃ ସ ଈଶ୍ୱର ଇତ୍ୟୁକ୍ତଃ ସର୍ବଜ୍ଞତ୍ୱାଦିଭିର୍ଗୁଣୈଃ ॥

ସରସ୍ୱତୀରହସ୍ୟୋପନିଷଦ୍—୧୧-୧୭

ସରସ୍ୱତୀ ଋଷିମାନଙ୍କୁ କହୁଅଛନ୍ତି—ସ୍ୱୟଂ ବ୍ରହ୍ମାଙ୍କଠାରୁ ମୁଁ ଏହି ସନାତନୀ ଆତ୍ମବିଦ୍ୟା ଲାଭ କରିଅଛି । ସତ୍ତ୍ୱ, ଆନନ୍ଦ ଓ ଜ୍ଞାନରୂପ ବ୍ରହ୍ମଭାବ ଅମଠାରେ ନିତ୍ୟକାଳ-ବ୍ୟାପୀ ସର୍ବଦା ବିଦ୍ୟମାନ ରହିଅଛି । ତତ୍ପରେ—ସତ୍ତ୍ୱାଦିଗୁଣର ସମପରିମାଣରେ ପ୍ରକୃତିଧର୍ମର ସୃଷ୍ଟି ହୋଇଅଛି । ଦର୍ପଣରେ ପ୍ରତିବିମ୍ବ ତୁଲ୍ୟ ଚୈତନ୍ୟ ପ୍ରତିବିମ୍ବିତ ହୋଇ ସତ୍ତ୍ୱ ପ୍ରକାଶିତ ହୁଏ । ସେହି ଚିତ୍‌ପ୍ରତିବିମ୍ବଦ୍ୱାରା ପ୍ରକୃତି ପୁନଃ ତ୍ରିବିଧାକାରରେ ପ୍ରକାଶ ପାଏ । ଏହି ପ୍ରକୃତି ସହିତ ସଂଶ୍ଳିଷ୍ଟ ହୋଇ ଅନ୍ତର୍ନିହିତ ଚିରନ୍ତନ ବ୍ରହ୍ମଭାବ ପୁନଶ୍ଚ

ପୁରୁଷଭାବରେ ପରିବର୍ତ୍ତିତ ହୁଏ । ଯେତେବେଳେ ପ୍ରକୃତିରେ ଶୁଦ୍ଧ ସତ୍ତ୍ୱଗୁଣର ପ୍ରାଧାନ୍ୟ ସମ୍ଭବ ହୁଏ, ସେତେବେଳେ ତାହା ମାୟା ନାମରେ ଆଖ୍ୟାତ । ଏହି ମାୟାରେ ପ୍ରତିବମ୍ବିତ ହେବାରୁ ଅଜ ଆତ୍ମା ପ୍ରକାଶ ପାନ୍ତି । ଏହାହିଁ ସର୍ବଜ୍ଞ ଈଶ୍ୱରଙ୍କର ସ୍ୱାଧୀନ ଉପାଧି । ସେଥି ନିମନ୍ତେ ଆତ୍ମା ବଶ୍ୟମାୟୀ, ଅର୍ଥାତ୍ ସେ ମାୟାକୁ ନିଜର ବଶୀଭୂତ କରି ପାରିଥାନ୍ତି । ସେହି ହେତୁରୁ ତାହାଙ୍କଠାରେ ସର୍ବଜ୍ଞତା ଓ ଏକତ୍ୱଜ୍ଞାନର ବିକାଶ ଘଟିଅଛି । ତତ୍ତ୍ୱପ୍ରଧାନ ଜଗତର ସାକ୍ଷୀ ଓ ସମଷ୍ଟି ପୁରୁଷ ହେତୁ ସେ ଈଶ୍ୱର ସୃଷ୍ଟି, ନାଶ ଅଥବା ଅନ୍ୟ କୌଣସି ରୂପ ପରିବର୍ତ୍ତନ କରିବାକୁ ସମର୍ଥ । ଏହି ସବୁ ସର୍ବଜ୍ଞତା ପ୍ରଭୃତି ଗୁଣ ତାଙ୍କର ଅଛି ବୋଲି ସେ ଈଶ୍ୱର ଓ ମାୟାକୁ ବଶୀଭୂତ କରି ପାରିଛନ୍ତି ।

ଶକ୍ତିଦ୍ୱୟଂ ହି ମାୟାୟା ବିକ୍ଷେପାବୃତିରୂପକମ୍ ।
ବିକ୍ଷେପଶକ୍ତିର୍ଲିଙ୍ଗାଦି ବ୍ରହ୍ମାଣ୍ଡାନ୍ତଂ ଜଗତ୍ ସୃଜେତ୍ ॥
ଅନ୍ତର୍ଦୃଗ୍‌ଦୃଶୟୋର୍ଭେଦଂ ବାହ୍ୟଶ୍ଚ ବ୍ରହ୍ମସର୍ଗୟୋଃ ।
ଆବୃଣୋତ୍ୟପରାଶକ୍ତିଃ ସା ସଂସାରସ୍ୟ କାରଣମ୍ ।
ସାକ୍ଷିଣଃ ପୁରତୋ ଭାତଂ ଲିଙ୍ଗଦେହେନ ସଂଯୁତମ୍ ।
ଚିଚ୍ଛାୟାସମାବେଶାଜ୍ଜୀବଃ ସ୍ୟାଦ୍ ବ୍ୟାବହାରିକଃ
ଅସ୍ୟ ଜୀବତ୍ୱମାରୋପାତ୍ ସାକ୍ଷିଣୋଽପ୍ୟବଭାସତେ ।
ଆବୃତୌ ତୁ ବିନଷ୍ଟାୟାଂ ଭେଦେ ଭାତେଽପଯାତି ତତ୍ ॥
ତଥା ସର୍ଗବ୍ରହ୍ମଣୋଶ୍ଚ ଭେଦମାବୃତ୍ୟ ତିଷ୍ଠତି ।
ଯା ଶକ୍ତିସ୍ତଦ୍‌ବଶାଦ୍‌ବ୍ରହ୍ମ ବିକୃତତ୍ୱେନ ଭାସତେ ॥
ଅତ୍ରାପ୍ୟାବୃତିନାଶେନ ବିଭାତି ବ୍ରହ୍ମସର୍ଗୟୋଃ ॥

ସରସ୍ୱତୀରହସ୍ୟୋପନିଷଦ୍ ୧୮ । ୨ ॥

ମାୟାର ଦୁଇଟି ଶକ୍ତି—ବିକ୍ଷେପ ଓ ଆବରଣ । ବିକ୍ଷେପ ଶକ୍ତି ସୂକ୍ଷ୍ମ ଲିଙ୍ଗଶରୀରଠାରୁ ସ୍ଥୂଳ ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ବିପୁଳ ଜଡ଼ ଜଗତ, ଅନ୍ତରର ପୁରୁଷ ପ୍ରକୃତି ଓ ବାହ୍ୟ ବ୍ରହ୍ମାଣ୍ଡ ମଧ୍ୟରେ ଭେଦ ସୃଷ୍ଟି କରିଅଛି । ଆବରଣନାମକ ଶକ୍ତି କେବଳ ଆବରଣ କରେ । ଏହାହିଁ ଏହି ସଂସାରର ମୂଳ କାରଣ । ଆବରଣ ଶକ୍ତି ଲିଙ୍ଗ ଦେହ ସହିତ ସଂଯୁକ୍ତ ହୋଇ ସାକ୍ଷୀ-ସ୍ୱରୂପ ଆତ୍ମାର ସମ୍ମୁଖରେ ପ୍ରକାଶ ପାଏ । ଏହାଠାରେ ଚୈତନ୍ୟର ଛାୟା ପଡ଼ିବା ହେତୁରୁ ବ୍ୟାବହାରିକ ଜୀବର ସୃଷ୍ଟି ହୁଏ । ଏହିପରି ସାକ୍ଷୀସ୍ୱରୂପ ଆତ୍ମାରେ ଆରୋପିତ ହେବା

ହେତୁରୁ ଲିଙ୍ଗଶରୀର ଜୀବରୂପରେ ପ୍ରକାଶ ପାଏ । ଏହି ଆବରଣ ଶକ୍ତି ବିନଷ୍ଟ ହେଲେ ସାକ୍ଷୀରୂପ ଯେଉଁ ଆତ୍ମା ସୂକ୍ଷ୍ମ ଶରୀର ମଧ୍ୟରେ ତିରୋହିତ ହୋଇ ରହିଅଛି, ତାହା ପୁନଶ୍ଚ ପ୍ରକଟ ହୋଇ ଉଠେ । ସେହି ସମୟରେ ସେହି ସୂକ୍ଷ୍ମ ଶରୀର କେଉଁଠାରେ ମୁହୂର୍ତ୍ତିକ ମଧ୍ୟରେ ବିଲୀନ ହୋଇ ଯିବ । ସେହିପରି ବ୍ରହ୍ମ ଓ ବ୍ରହ୍ମାଣ୍ଡ ମଧ୍ୟରେ ଯେ ଭେଦ ରହିଅଛି ତାହାକୁ ମଧ୍ୟ ଆବୃତ କରି ଏହି ଶକ୍ତି ବିଦ୍ୟମାନ; ଏହା ଫଳରେ ଏକ ଅଖଣ୍ଡ ବ୍ରହ୍ମ ବିଦ୍ଧ ହୋଇ ବିକୃତଭାବରେ ଜଗତରୂପରେ ପ୍ରକାଶ ପାଉଅଛନ୍ତି । ଏ ସ୍ଥଳରେ ମଧ୍ୟ ଆବରଣ ଶକ୍ତିର ବିନାଶରେ ବ୍ରହ୍ମ ଓ ବ୍ରହ୍ମାଣ୍ଡ ମଧ୍ୟରେ ଯେଉଁ ସ୍ୱାଭାବିକ ଭେଦ ରହିଅଛି, ତାହା ପ୍ରକଟ ହୋଇ ଉଠେ । ବିକାର କେବଳ ବ୍ରହ୍ମାଣ୍ଡର ନିଜସ୍ୱ ଗୁଣ ହେତୁରୁ ବିଲୀନ ହୋଇଯାଏ । ବ୍ରହ୍ମ ଅବିକୃତ ହୋଇ ଅବସ୍ଥାନ କରନ୍ତି ।

ଏ ବିଷୟରେ ସୁବାଳଶ୍ରୁତି ଜଗଦୁତ୍ପତ୍ତି ସମ୍ବନ୍ଧରେ ବ୍ରହ୍ମଙ୍କର ଯେଉଁ ବ୍ୟାଖ୍ୟା କରିଛନ୍ତି, ତାହା ଅପ୍ରାସଙ୍ଗିକ ଓ ଯୁକ୍ତିହୀନ । *

---

* ତଦାହୁଃ କିଂ ତଦାସୀତ୍, ତସ୍ମୈ ସହୋବାଚ—ନସନ୍ନାସନ୍ନ ସଦସଦିତି । ତସ୍ମାତ୍ ତମଃ ସଂଜାୟତେ ଭୂତାଦି ର୍ଭୂତାଦେରାକାଶମାକାଶାଦ୍ ବାୟୁଃ ବାୟୋରଗ୍ନିରଗ୍ନେରାପୋଽଦ୍ଭ୍ୟଃ ପୃଥିବୀ ତଦଣ୍ଡଂ ସମଭବତ୍ । ତତ ସମ୍ବତ୍ସରମାତ୍ରମୁଷିତ୍ୱା ଦ୍ୱିଧାଽକରୋଦଧସ୍ତାଦ୍ଭୂମିମୁପରିଷ୍ଟାଦାକାଶଂ ମଧ୍ୟେ ପୁରୁଷୋ ଦିବ୍ୟଃ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍, ସହସ୍ରବାହୁରିତି । ସୋଽଗ୍ରେ ଭୂତାନାଂ ମୃତ୍ୟୁମସୃଜତ୍ ତ୍ର୍ୟକ୍ଷରଂ ତ୍ରିଶିରସ୍କଂ ତ୍ରିପାଦଂ ଖଣ୍ଡପରଶୁଂ ତସ୍ୟ ବ୍ରହ୍ମାଭିଧେତି ସବ୍ରହ୍ମଣମେବ ବିବେଶ ସ ମାନସାନ୍ ସପ୍ତପୁତ୍ରାନ୍ ଅସୃଜତ୍ ତେହ ବିରାଜଃ ସତ୍ୟମାନସାନ୍ ଅସୃଜନ୍ ତେହ ପ୍ରଜାପତୟଃ ॥
ସୁବାଲୋପନିଷତ୍ ୧।୧।୬ ॥

ସୃଷ୍ଟି ଆଦ୍ୟରେ ସତ୍ ଅସତ୍ ବା ଏତଦୁଭୟବିଲକ୍ଷଣ ସଦସତ୍ ମଧ୍ୟ ଏପରି ବସ୍ତୁ ନ ଥିଲା । ତହିଁରୁ ତମସ୍ ଉତ୍ପନ୍ନ ହେଲା, ତମସ୍ଠାରୁ ଭୂତାଦି ( ଅହଂକାର ) ତାହାଠାରୁ ଆକାଶ, ଆକାଶରୁ ବାୟୁଃ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥିବୀ, ପୃଥିବୀରୁ ଅଣ୍ଡ ଜାତ ହେଲା । ସେହି ଅଣ୍ଡ ଏକ ସମ୍ବତ୍ସରକାଳ ବାସ କରି ଦ୍ୱିଭାଗରେ ବିଭକ୍ତ ହେଲା । ନିମ୍ନରେ ଭୂମି, ଊର୍ଦ୍ଧ୍ୱରେ ଆକାଶ ଓ ମଧ୍ୟ ସ୍ଥାନରେ ତେଜଃସମ୍ପନ୍ନ ସହସ୍ର ମସ୍ତକ, ସହସ୍ର ଚକ୍ଷୁ, ସହସ୍ର ଚରଣ ଓ ସହସ୍ର ବାହୁଯୁକ୍ତ ଏକ ପୁରୁଷ ଉତ୍ପନ୍ନ ହେଲେ । ସେହି ପୁରୁଷ ପ୍ରଜାସୃଷ୍ଟି ପୂର୍ବରୁ ପ୍ରଥମେ ତ୍ର୍ୟକ୍ଷର-ତ୍ରିଶିରା ତ୍ରିପାଦ-ଖଣ୍ଡପରଶୁରୂପକ ମୃତ୍ୟୁକୁ ସୃଷ୍ଟି କଲେ । ତାହାର ନାମ ବ୍ରହ୍ମା । ସେହି ବ୍ରହ୍ମ ବ୍ରହ୍ମାଙ୍କଠାରେ ପ୍ରବେଶ କଲେ । ବ୍ରହ୍ମା ସପ୍ତମାନସପୁତ୍ର ସୃଷ୍ଟି କଲେ; ସେହି ପୁତ୍ରମାନେ ସତ୍ୟ ସଂକଳ୍ପ ଋଷିମାନଙ୍କୁ ସୃଷ୍ଟି କଲେ ଓ ଏହି ଋଷିମାନେ ପ୍ରଜାପତିନାମରେ ପ୍ରସିଦ୍ଧି ଲାଭ କଲେ ।

ଉପର୍ଯ୍ୟୁକ୍ତ ବର୍ଣ୍ଣନା ସୁବାଲୋପନିଷଦ୍‌ରେ ଦେଖାଯାଏ, କିନ୍ତୁ ଏହି ସୃଷ୍ଟିପ୍ରକ୍ରିୟା ଅନ୍ୟାନ୍ୟ ପ୍ରସିଦ୍ଧ ବେଦାନ୍ତମତ ସହିତ ସାମଞ୍ଜସ୍ୟ ଲାଭ କରେ ନାହିଁ; ପ୍ରକୃତରେ ଏହା ପ୍ରମାଣିତ ମଧ୍ୟ ନୁହେଁ ।

ପଞ୍ଚଦଶୀକାର ବେଦାନ୍ତାନୁକୂଳ ମତ ପ୍ରକାଶ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଏବ୍ରୂପ ବର୍ଣ୍ଣନା କରିଛନ୍ତି—

ଚିଦାନନ୍ଦମୟବ୍ରହ୍ମପ୍ରତିବିମ୍ବସମନ୍ୱିତା ।
ତମୋରଜଃସତ୍ତ୍ୱଗୁଣା ପ୍ରକୃତିର୍ଦ୍ୱିବିଧା ଚ ସା ॥
ସତ୍ତ୍ୱଶୁଦ୍ଧ୍ୟବିଶୁଦ୍ଧିଭ୍ୟାଂ ମାୟାଽବିଦ୍ୟେ ଚ ତେ ମତେ ।
ମାୟାବିମ୍ବୋ ବଶୀକୃତ୍ୟ ତାଂ ସ୍ୟାତ୍ ସର୍ବଜ୍ଞ ଈଶ୍ୱରଃ ॥
ଅବିଦ୍ୟାବଶଗସ୍ତ୍ୱନ୍ୟସ୍ତଦ୍‌ବୈଚିତ୍ର୍ୟାଦନେକଧା ।
ସା କାରଣଶରୀରଂ ସ୍ୟାତ୍ ପ୍ରାଜ୍ଞସ୍ତତ୍ରାଭିମାନବାନ୍ ॥
ତମଃପ୍ରଧାନପ୍ରକୃତେସ୍ତଦ୍‌ଭୋଗାୟେଶ୍ୱରାଜ୍ଞୟା ।
ବିୟତ୍ ପବନତେଜୋଽମ୍ବୁଭୁବୋ ଭୂତାନି ଜଜ୍ଞିରେ ॥
ସତ୍ତ୍ୱାଂଶୈଃ ପଞ୍ଚଭିସ୍ତେଷାଂ କ୍ରମାଦ୍ଧୀନ୍ଦ୍ରିୟପଞ୍ଚକମ୍ ।
ଶ୍ରୋତ୍ରତ୍ୱଗକ୍ଷିରସନଘ୍ରାଣାଖ୍ୟମୁପଜାୟତେ ॥
ତୈରନ୍ତଃକରଣଂ ସର୍ବୈର୍ବୃତ୍ତିଭେଦେନ ତଦ୍ ଦ୍ୱିଧା ।
ମନୋ ବିମର୍ଷରୂପଂ ସ୍ୟାତ୍ ବୁଦ୍ଧିଃ ସ୍ୟାନ୍ନିଶ୍ଚୟାତ୍ମିକା ॥
ରଜୋଽଂଶୈଃ ପଞ୍ଚଭିସ୍ତେଷାଂ କ୍ରମାତ୍ କର୍ମେନ୍ଦ୍ରିୟାଣି ତୁ ।
ବାକ୍‌ପାଣିପାଦପାୟୂପସ୍ଥାଭିଧାନାନି ଜଜ୍ଞିରେ ॥
ତୈଃ ସର୍ବୈଃ ସହିତୈଃ ପ୍ରାଣୋ ବୃତ୍ତିଭେଦାତ୍ ସ ପଞ୍ଚଧା ।
ପ୍ରାଣୋଽପାନଃ ସମାନଶ୍ଚୋଦାନବ୍ୟାନୌ ଚ ତେ ପୁନଃ ॥
ବୁଦ୍ଧିକର୍ମେନ୍ଦ୍ରିୟପ୍ରାଣ-ପଞ୍ଚକୈର୍ମନସା ଧିୟା ।
ଶରୀରଂ ସପ୍ତଦଶଭିଃ ସୂକ୍ଷ୍ମଂ ତଲ୍ଲିଙ୍ଗମୁଚ୍ୟତେ ॥

ପଞ୍ଚଦଶୀ ୧ । ୧୫-୨୩ ॥

ପୂର୍ବୋକ୍ତ ତ୍ରିଭିବନ୍ଧକ ହେଉଥିବାରୁ ଅବିଦ୍ୟାର ସ୍ୱରୂପ ବର୍ଣ୍ଣନା ପ୍ରସଙ୍ଗରେ ତା'ର ମୂଳ ପ୍ରକୃତିର ସ୍ୱରୂପ କହୁଅଛନ୍ତି । ପୂର୍ବବର୍ଣ୍ଣିତ ନିତ୍ୟ-ଜ୍ଞାନମୟ-ଆନନ୍ଦମୟ-ଆନନ୍ଦସ୍ୱରୂପ ପରଂବ୍ରହ୍ମଙ୍କର ପ୍ରତିଚ୍ଛାୟା ବା ପ୍ରତିବିମ୍ବବିଶିଷ୍ଟ ସତ୍ତ୍ୱ, ରଜସ୍ ଓ ତମୋଗୁଣର ସୂକ୍ଷ୍ମ ଅବସ୍ଥାକୁ ପ୍ରକୃତି କୁହାଯାଏ । ସେହି ପ୍ରକୃତି ଦୁଇ ପ୍ରକାର—ମାୟା ଓ ଅବିଦ୍ୟା । ସତ୍ତ୍ୱ ଗୁଣର

ନୈର୍ମଲ୍ୟବିଶିଷ୍ଟ ପ୍ରଥମର ନାମ ମାୟା; ମାଳିନ୍ୟଯୁକ୍ତ ଦ୍ୱିତୀୟ ପ୍ରକାରର ନାମ ଅବିଦ୍ୟା । ଏହିପରି ମାୟା ଓ ଅବିଦ୍ୟାର ଭେଦ ବର୍ଣ୍ଣନା କରି ବର୍ତ୍ତମାନ ସେ ବିଷୟରେ କହୁଅଛନ୍ତି— ଉକ୍ତ ମାୟାରେ ପ୍ରତିବିମ୍ବିତ ଚୈତନ୍ୟ ସେହି ମାୟାକୁ ବଶୀଭୂତ କରି ସର୍ବଜ୍ଞ ଓ ଈଶ୍ୱର-ନାମରେ ପ୍ରସିଦ୍ଧ ହୁଅନ୍ତି । ସେହି ଅବିଦ୍ୟାରେ ପ୍ରତିବିମ୍ବିତ ଚୈତନ୍ୟ ଅବିଦ୍ୟାର ବଶ୍ୟତାପନ୍ନ ହୋଇ ଜୀବ ନାମରେ କଥିତ ହୁଏ । ସେହି ଅବିଦ୍ୟାର ନୈର୍ମଲ୍ୟ ଓ ମାଳିନ୍ୟର ତାରତମ୍ୟ ନେଇ ଦେବ, ମନୁଷ୍ୟ, ଗୋ, ଅଶ୍ୱ ପ୍ରଭୃତି ଜୀବ ମଧ୍ୟ ଅନେକ ପ୍ରକାର ହୁଏ । ପୂର୍ବ ବର୍ଣ୍ଣିତ ଅବିଦ୍ୟାର ନାମ କାରଣ-ଶରୀର । ସେହି କାରଣରୁ ଶରୀରରେ ଅଭିମାନୀ ଜୀବମାନଙ୍କୁ ପ୍ରାଜ୍ଞ ବୋଲିଯାଏ ।

କାରଣଶରୀର ନିରୂପଣ କରିବା ପରେ ସୂକ୍ଷ୍ମଶରୀର ବା ଲିଙ୍ଗଶରୀରର ନିରୂପଣ କରିବା ନିମନ୍ତେ ପ୍ରଥମତଃ ତାହାର କାରଣସ୍ୱରୂପ ଆକାଶାଦି ପଞ୍ଚଭୂତର କିପରି ସୃଷ୍ଟି ହେଲା, ତାହା କହୁଅଛନ୍ତି । ପୂର୍ବୋକ୍ତ ତମଃପ୍ରଧାନ ପ୍ରକୃତିଠାରୁ ଈଶ୍ୱରଙ୍କ ଆଜ୍ଞାନୁସାରେ ପ୍ରାଜ୍ଞ ପ୍ରଭୃତିର ଭୋଗ ନିମନ୍ତେ ପ୍ରଥମତଃ ଆକାଶ, ବାୟୁ, ତେଜସ୍, ଜଳ ଓ ପୃଥିବୀ—ଏହି ପଞ୍ଚଭୂତ ଉତ୍ପନ୍ନ ହେଲେ । ପୂର୍ବବର୍ଣ୍ଣିତ ପଞ୍ଚ ମହାଭୂତର ପ୍ରତ୍ୟେକ ସତ୍ତ୍ୱଗୁଣାଂଶରୁ ଯଥାକ୍ରମେ ଶ୍ରୋତ୍ରାଦି ପଞ୍ଚ ଜ୍ଞାନେନ୍ଦ୍ରିୟ ଉତ୍ପନ୍ନ ହେଲେ । ଅର୍ଥାତ୍ ଆକାଶର ସତ୍ତ୍ୱଗୁଣରୁ ଶ୍ରୋତ୍ରେନ୍ଦ୍ରିୟ, ବାୟୁର ସତ୍ତ୍ୱଗୁଣରୁ ତ୍ୱଗିନ୍ଦ୍ରିୟ, ତେଜଃର ସତ୍ତ୍ୱଗୁଣରୁ ଚକ୍ଷୁରିନ୍ଦ୍ରିୟ, ଜଳର ସତ୍ତ୍ୱଗୁଣରୁ ଜିହ୍ୱେନ୍ଦ୍ରିୟ ଓ ପୃଥିବୀର ସତ୍ତ୍ୱଗୁଣରୁ ଘ୍ରାଣେନ୍ଦ୍ରିୟ ଉତ୍ପନ୍ନ ହେଲା । ପୂର୍ବୋକ୍ତ ସମଗ୍ର ପଞ୍ଚମହାଭୂତର ସତ୍ତ୍ୱଗୁଣସମଷ୍ଟିରୁ ଅନ୍ତଃକରଣ ଜାତ ହେଲା । ଅନ୍ତଃକରଣ ବୃତ୍ତି-ଭେଦରେ ଦୁଇ ପ୍ରକାର—ମନ ଓ ବୁଦ୍ଧି । ଅନ୍ତଃକରଣର ସଂଶୟାତ୍ମିକା ବୃତ୍ତିକୁ ମନ କୁହାଯାଏ, ନିଶ୍ଚୟାତ୍ମିକା ବୃତ୍ତି ପ୍ରକୃତରେ ବୁଦ୍ଧି ବୋଲି ଅଭିହିତ ।

ସେହି ପୂର୍ବୋକ୍ତ ପଞ୍ଚମହାଭୂତ ମଧ୍ୟରୁ ପ୍ରତ୍ୟେକର ରଜୋଗୁଣାଂଶରୁ ଯଥାକ୍ରମେ ବାକ୍ ପ୍ରଭୃତି ପଞ୍ଚ କର୍ମେନ୍ଦ୍ରିୟ ଉତ୍ପନ୍ନ ହେଲେ । ଅର୍ଥାତ୍ ଆକାଶର ରଜୋଗୁଣାଂଶରୁ ବାଗିନ୍ଦ୍ରିୟ, ବାୟୁର ରଜୋଗୁଣାଂଶରୁ ହସ୍ତ-ଇନ୍ଦ୍ରିୟ, ତେଜସ୍‌ର ରଜୋଗୁଣରୁ ପଦ-ଇନ୍ଦ୍ରିୟ, ଜଳର ରଜୋଗୁଣରୁ ପାୟୁ-ଇନ୍ଦ୍ରିୟ ଓ ପୃଥିବୀର ରଜୋଗୁଣରୁ ଉପସ୍ଥ-ଇନ୍ଦ୍ରିୟ ଉତ୍ପନ୍ନ ହେଲା । ପୂର୍ବବର୍ଣ୍ଣିତ ସମଗ୍ର ପଞ୍ଚମହାଭୂତର ରଜୋଗୁଣସମଷ୍ଟିରୁ ପ୍ରାଣ ଉତ୍ପନ୍ନ ହେଲା । ଏହି ପ୍ରାଣ ବୃତ୍ତିଭେଦରେ ପଞ୍ଚବିଧ—ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ । ନାସିକାସ୍ଥିତ ବାୟୁର ନାମ ପ୍ରାଣ, ପାୟୁରେ ସ୍ଥିତ ବାୟୁର ନାମ ଅପାନ, ଉଦରସ୍ଥ ଦ୍ରବ୍ୟର ପାଚନକାରୀ ବାୟୁର ନାମ ସମାନ, କଣ୍ଠସ୍ଥିତ ବାୟୁର ନାମ ଉଦାନ ଓ ସମସ୍ତଶରୀରବ୍ୟାପୀ ବାୟୁର

ନାମ ବ୍ୟାନ । ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ପ୍ରାଣ, ମନ ଓ ବୁଦ୍ଧି—ଏହି ସପ୍ତଦଶ ଅବୟବ ସମଷ୍ଟିର ନାମ ସୂକ୍ଷ୍ମ ଶରୀର ଓ ଏହାର ଅପର ନାମ ଲିଙ୍ଗଶରୀର ।

ପ୍ରାଜ୍ଞସ୍ତତ୍ରାଭିମାନେନ ତୈଜସତ୍ୱଂ ପ୍ରପଦ୍ୟତେ ।
ହିରଣ୍ୟଗର୍ଭତାମୀଶସ୍ତୟୋର୍ବ୍ୟଷ୍ଟିସମଷ୍ଟିତା ॥
ସମଷ୍ଟିରୀଶଃ ସର୍ବେଷାଂ ସ୍ୱାତ୍ମତାଦାତ୍ମ୍ୟବେଦନାତ୍ ।
ତଦଭାବାତ୍ତତୋଽନ୍ୟେ ତୁ କଥ୍ୟନ୍ତେ ବ୍ୟଷ୍ଟିସଂଜ୍ଞୟା ॥
ତଦ୍‌ଭୋଗାୟ ପୁନର୍ଭୋଗ୍ୟ-ଭୋଗାୟତନଜନ୍ମନେ ।
ପଞ୍ଚୀକରୋତି ଭଗବାନ୍ ପ୍ରତ୍ୟେକଂ ବିୟଦାଦିକମ୍ ॥
ଦ୍ୱିଧା ବିଧାୟ ଚୈକୈକଂ ଚତୁର୍ଦ୍ଧା ପ୍ରଥମଂ ପୁନଃ ।
ସ୍ୱ-ସ୍ୱେତରଦ୍ୱିତୀୟାଂଶୈର୍ଯୋଜନାତ୍ ପଞ୍ଚ ପଞ୍ଚ ତେ ॥
ତୈରଣ୍ଡସ୍ତତ୍ର ଭୁବନ-ଭୋଗ୍ୟଭୋଗାଶ୍ରୟୋଦ୍ଭବଃ ।
ହିରଣ୍ୟଗର୍ଭଃ ସ୍ଥୂଳେଽସ୍ମିନ୍ ଦେହେ ବୈଶ୍ୱାନରୋ ଭବେତ୍ ।
ତୈଜସା ବିଶ୍ୱତାଂ ଯାତା ଦେବତିର୍ଯ୍ୟଙ୍‌ନରାଦୟଃ ॥

ପଞ୍ଚଦଶୀ ୧।୨୪-୨୮

ପୂର୍ବୋକ୍ତ ମଳିନସତ୍ତ୍ୱପ୍ରଧାନ ଅବିଦ୍ୟାରେ ଉପହିତ ପ୍ରାଜ୍ଞଙ୍କୁ ସେହି ଲିଙ୍ଗଶରୀରରେ ଅଭିମାନବଶତଃ ତୈଜସ କୁହାଯାଏ; ବିଶୁଦ୍ଧସତ୍ତ୍ୱପ୍ରଧାନ ମାୟାରେ ଉପହିତ ଈଶ୍ୱରଙ୍କୁ ସେହି ଲିଙ୍ଗଶରୀରରେ ଅଭିମାନବଶତଃ ହିରଣ୍ୟଗର୍ଭ କୁହାଯାଏ । ଏହି ତୈଜସ ଓ ହିରଣ୍ୟଗର୍ଭ ଉଭୟ ଲିଙ୍ଗଶରୀରାଭିମାନୀ ରୂପରେ ସମାନ; କିନ୍ତୁ ଉଭୟଙ୍କର ଭେଦ ଏହି ଯେ, ବ୍ୟଷ୍ଟି ଲିଙ୍ଗଶରୀରାଭିମାନୀର ନାମ ତୈଜସ ଓ ସମଷ୍ଟି-ଲିଙ୍ଗଶରୀରାଭିମାନୀକୁ ହିରଣ୍ୟଗର୍ଭ କୁହାଯାଏ । ଯେଉଁ ହେତୁରୁ ପୂର୍ବୋକ୍ତ ହିରଣ୍ୟଗର୍ଭ ଲିଙ୍ଗଶରୀରୋପାଧିବିଶିଷ୍ଟ ଓ ସମୁଦାୟ ତୈଜସ ଜୀବମାନଙ୍କସହିତ ଅଭିନ୍ନ, ଅତଏବ ତାହାଙ୍କୁ 'ସମଷ୍ଟି' ଶବ୍ଦଦ୍ୱାରା ଅଭିହିତ କରାଯାଏ । ସେହିପରି ଜ୍ଞାନର ଅଭାବ ହେତୁରୁ ତୈଜସସକଳ 'ବ୍ୟଷ୍ଟି' ଶବ୍ଦରେ କଥିତ ହୁଅନ୍ତି ।

ପୂର୍ବୋକ୍ତ ରୀତିରେ ଲିଙ୍ଗଶରୀର ଓ ତଦୁପାଧିବିଶିଷ୍ଟ ତୈଜସ, ପ୍ରାଜ୍ଞ ଓ ହିରଣ୍ୟଗର୍ଭ ଈଶ୍ୱରଙ୍କ ବିବରଣ ଉଲ୍ଲେଖ କରି ସ୍ଥୂଳ ଶରୀରାଦିର ଉତ୍ପତ୍ତି ବର୍ଣ୍ଣନା କରିବା

ସକାଶେ ପ୍ରଥମତଃ ପଞ୍ଚମହାଭୂତର ପଞ୍ଚୀକରଣ ବିଷୟ କହୁଅଛନ୍ତି । ସେହି ପୂର୍ବୋକ୍ତ ପ୍ରାଜ୍ଞ ପ୍ରଭୃତିର ଭୋଗ ନିମନ୍ତେ ଭୋଗ୍ୟ ଅନ୍ନପାନାଦି ଓ ଭୋଗର ସ୍ଥାନ ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍‌ଭିଜ୍ଜ ପ୍ରଭୃତି ଚତୁର୍ବିଧ ଶରୀରର ଉତ୍ପତ୍ତିବିଧାନ ସକାଶେ ଈଶ୍ୱର ସେହି ସକଳ ଆକାଶାଦି ପଞ୍ଚମହାଭୂତର ପ୍ରତ୍ୟେକକୁ ପଞ୍ଚପଞ୍ଚାତ୍ମକ କଲେ, ଅର୍ଥାତ୍ ପଶ୍ଚାଦୁକ୍ତ ଅଂଶର ବର୍ଣ୍ଣନା ଅନୁସାରେ ମିଶ୍ରିତ କଲେ ।

**ପଞ୍ଚୀକରଣ**—ଆକାଶାଦି ପ୍ରତ୍ୟେକ ପଞ୍ଚଭୂତକୁ ପ୍ରଥମତଃ ଦୁଇ ଦୁଇ ଅଂଶରେ ବିଭକ୍ତ କରି, ପରେ ସେହି ଦୁଇ ଦୁଇ ଅଂଶର ଏକ ଏକ ଅଂଶକୁ ଚାରିଭାଗ କରି ପ୍ରତ୍ୟେକର ଅର୍ଦ୍ଧାଂଶ ପରିତ୍ୟାଗ ପୂର୍ବକ ଅନ୍ୟ ଚାରିଭୂତର ପ୍ରଥମୋକ୍ତ ଅର୍ଦ୍ଧ ଅର୍ଦ୍ଧ ଅଂଶରେ ସେହି ଚାରି ଅଂଶର ଏକ ଏକ ଅଂଶ ଯୋଗ କଲେ, ସକଳ ଭୂତରୁ ପ୍ରତ୍ୟେକ ପଞ୍ଚାତ୍ମକ ହେବ—ଏହାର ନାମ ପଞ୍ଚୀକରଣ ।

ସେହି ପଞ୍ଚୀକୃତ ପଞ୍ଚମହାଭୂତଠାରୁ ବ୍ରହ୍ମାଣ୍ଡ ଓ ଭୂର୍ଲୋକାଦି ପାତାଳ ପର୍ଯ୍ୟନ୍ତ ଚତୁର୍ଦ୍ଦଶ ଭୁବନ ଏବଂ ସକଳ ଭୋଗ୍ୟ ପଦାର୍ଥ, ଭୋଗର ଉପଯୋଗୀ ଶରୀର ଉତ୍ପନ୍ନ ହେଲା । ଏହିପ୍ରକାର ସ୍ଥୂଳ ଶରୀରର ବର୍ଣ୍ଣନା କରି ସେହି ସ୍ଥୂଳ ଶରୀରର ସମଷ୍ଟିରେ ଅଭିମାନୀ ହିରଣ୍ୟଗର୍ଭର ଯେଉଁ 'ବୈଶ୍ୱାନର' ବା 'ବିରାଟ୍' ସଂଜ୍ଞା ହୁଏ ଏବଂ ବ୍ୟଷ୍ଟି-ଅଭିମାନୀ ତୈଜସର ଯେଉଁ 'ବିଶ୍ୱ' ସଂଜ୍ଞା ହୁଏ—ସେ ବିଷୟ କହୁଅଛନ୍ତି—ସେହି ପୂର୍ବୋକ୍ତ ସ୍ଥୂଳ-ଶରୀରସମଷ୍ଟିରେ ଅବସ୍ଥିତ ହିରଣ୍ୟଗର୍ଭ ସେଥିରେ ଅଭିମାନୀ ବୈଶ୍ୱାନର ବା ବିରାଟ ଶବ୍ଦବାଚ୍ୟ ହୁଅନ୍ତି ଏବଂ ବ୍ୟଷ୍ଟିରେ ଅବସ୍ଥିତ ତୈଜସସକଳ—ଦେବ, ମନୁଷ୍ୟ, ଗୋ, ଅଶ୍ୱ ପ୍ରଭୃତି ବିଶ୍ୱନାମରେ ଅଭିହିତ ହୁଅନ୍ତି । କଠରୁଦ୍ର ଉପନିଷଦ୍‌ରେ ମଧ୍ୟ (୧୨-୨୫) ଏହି ବିଷୟ ବର୍ଣ୍ଣିତ ହୋଇଛି ।

## ଠ—ବ୍ରହ୍ମସତ୍ତା ଭିନ୍ନ ସୃଷ୍ଟ୍ୟାଦିକ୍ରିୟାର ଅନ୍ୟ କାରଣ ନାହିଁ ।

ସମସ୍ତ ବେଦାନ୍ତାଦି ଶାସ୍ତ୍ରର ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ, ଜଗତର ସୃଷ୍ଟି, ସ୍ଥିତି ଓ ଭଙ୍ଗ ବା କୌଣସି ପ୍ରାକୃତିକ ନିୟମର ପରିବର୍ତ୍ତନାଦି ବ୍ରହ୍ମଚୈତନ୍ୟସତ୍ତା ବ୍ୟତୀତ ଜଡ଼ ବା ପ୍ରକୃତିର କାର୍ଯ୍ୟ ହୋଇ ପାରେ ନାହିଁ । ସ୍ୱୟଂସିଦ୍ଧ ବ୍ରହ୍ମବହିର୍ମାତ୍ରୟାଶ୍ରିତ କେବଳ ମାୟା ଓ ଅବିଦ୍ୟାର ଓ ତତ୍କାର୍ଯ୍ୟବର୍ଗର ମୁଖ୍ୟ କାରଣ । ସେହିପରି ଆକାଶ ମଧ୍ୟ ବ୍ରହ୍ମସତ୍ତା ଭିନ୍ନ ଅନ୍ୟ କିଛି ନୁହେଁ; ଶୂନ୍ୟ ଉପଲବ୍ଧି ମାତ୍ର । ସେହି ଚିନ୍ମୟ ସତ୍ତାଦ୍ୱାରା ଏହାର ନାମ-ରୂପବିଶିଷ୍ଟ ଦେଶୋପାଧିବିଶେଷ ହୁଏ, ଅର୍ଥାତ୍ କଳ୍ପ ଓ ଅବ୍ୟ, ଭୂତ ଓ

ଭବିଷ୍ୟତ୍ ଇତ୍ୟାଦି ରୂପରେ ଉପଲବ୍ଧି ଉପାଧିମାତ୍ର, ସ୍ୱୟଂ ବସ୍ତୁ ନୁହେଁ । ପୁନଶ୍ଚ, ପ୍ରାଣ ଏହି ଉପଲବ୍ଧିର ନିମିତ୍ତକାରଣ; କାରଣ, ପ୍ରାଣର ଅସ୍ତିତ୍ୱରେ ଉପଲବ୍ଧିର ଅସ୍ତିତ୍ୱ । ବସ୍ତୁସତ୍ତ୍ୱମାନେ ଅର୍ଥାତ୍ ସମଗ୍ର ଜଗତ୍ ଏହିରୂପ ଦେଶ, କାଳ, ନିମିତ୍ତକ୍ରିୟା ଫଳାଶ୍ରୟ ଉପଲବ୍ଧିଜାତମାତ୍ର । ଅତଏବ ଏ ସମସ୍ତ ସ୍ୱତନ୍ତ୍ର ବସ୍ତୁ ବା ମୁଖ୍ୟ କାରଣ ହୋଇପାରେ ନାହିଁ । କାରଣ, ସେ ସମସ୍ତ ଦେଶ କାଳ ନିମିତ୍ତାଦିଦ୍ୱାରା ନିୟମିତ । ଏ ସ୍ଥଳରେ ମନରୂପୀ ଉପଲବ୍ଧି ଯେଉଁ ବସ୍ତୁର ଆଶ୍ରୟମାତ୍ର, ସେହି ବସ୍ତୁ କେବଳ ମୁଖ୍ୟ କାରଣ ।

ପୂର୍ବେ ସତ୍ୟଜ୍ଞାନାଦିରୂପ ବ୍ରହ୍ମଙ୍କର ବିସଦୃଶ ଜଗତ୍‌ଜନ୍ମାଦି କାରଣସ୍ୱରୂପ ତଟସ୍ଥ ଲକ୍ଷଣ କଥିତ ହୋଇଅଛି । ଅର୍ଥାତ୍ ବ୍ରହ୍ମ କେବଳ ପ୍ରକାଶାତ୍ମକ ସ୍ୱରୂପରେ, ଅର୍ଥାତ୍ ଚୈତନ୍ୟରୂପରେ ଜଗତର ଜନ୍ମାଦି ପ୍ରତି କାରଣ । ତାହାହେଲେ କେବଳ ତାହାଙ୍କର ମହିମାନ୍ୱିତ ସର୍ବଶକ୍ତିମୟତା ସ୍ୱୟଂସିଦ୍ଧଭାବରେ ଉପପନ୍ନ ହୁଏ । ସେହି ଏକ ଓ ଅଦ୍ୱିତୀୟ ପରମାତ୍ମାଙ୍କ ବ୍ୟତୀତ ଜଗତର ଦ୍ୱିତୀୟ କାରଣ ବା ସ୍ରଷ୍ଟା ଅନ୍ୟ କେହି ନାହିଁ—ଏହା ହିଁ ବିଶୁଦ୍ଧାଦ୍ୱୈତବାଦର ତାତ୍ପର୍ଯ୍ୟ ।

### ଠ—ପିଣ୍ଡବ୍ରହ୍ମାଣ୍ଡର ଉତ୍ପତ୍ତି ନିରୂପଣ ।

ବେଦାନ୍ତସାରରେ ଅଜ୍ଞାନକୁ ତ୍ରିଗୁଣାତ୍ମକଭାବରେ ବର୍ଣ୍ଣନ କରି ସେହି ଅଜ୍ଞାନରେ ପରମାତ୍ମାଙ୍କର ଉପହିତ ଚୈତନ୍ୟରୁ ଯେପରି ସମୁଦାୟ ଜଗତ୍ ସୃଷ୍ଟ ହୋଇଅଛି, ସେ ବିଷୟ ଏଠାରେ ଉଲ୍ଲେଖ କରାଯାଉଅଛି—

**ଅଜ୍ଞାନଂ ତୁ ସଦସଦ୍‌ଭ୍ୟାଂ ଅନିର୍ବଚନୀୟଂ ତ୍ରିଗୁଣାତ୍ମକଂ ଜ୍ଞାନବିରୋଧି-ଭାବରୂପଂ ଯତ୍ କିଞ୍ଚିଦିତି ବଦନ୍ତି । ଅହମଜ୍ଞ ଇତ୍ୟାଦ୍ୟନୁଭବାତ୍ । "ଦେବାତ୍ମ ଶକ୍ତିଂ ସ୍ୱଗୁଣୈର୍ନିଗୂଢ଼ାମ୍"—ଇତ୍ୟାଦିଶ୍ରୁତେଶ୍ଚ ।** ବେ : ସାର—୨୫ ।

ବର୍ତ୍ତମାନ ଅଜ୍ଞାନ କ'ଣ ତାହା ବର୍ଣ୍ଣିତ ହେଉଅଛି । ଅସତ୍ କେବେହେଁ କୌଣସି ପଦାର୍ଥର କାରଣ ହୋଇପାରେନାହିଁ । ଯେପରି ଆକାଶପୁଷ୍ପ ଓ ଶଶଶୃଙ୍ଗଦ୍ୱାରା କୌଣସି କାର୍ଯ୍ୟ ସାଧିତ ହୋଇ ପାରେ ନାହିଁ । କିନ୍ତୁ ଏହି ଜଗତ୍ ଅଜ୍ଞାନର କାର୍ଯ୍ୟଭାବେ ଦେଖାଯାଏ । ଅତଏବ ଅଜ୍ଞାନ ଅସତ୍ ହୋଇ ନ ପାରେ । ସଦ୍‌ବସ୍ତୁ ଜ୍ଞାନଦ୍ୱାରା ଅଜ୍ଞାନର ନାଶ ହୁଏ ଓ ଏକମାତ୍ର ବ୍ରହ୍ମ ସତ୍ୟ ଓ ତଦ୍‌ଭିନ୍ନ ଅନ୍ୟ ସମସ୍ତ ଅସତ୍ ବୋଧ ହୁଏ, ତଥାପି ଅଜ୍ଞାନ ଅସତ୍ ନୁହେଁ । ଅଜ୍ଞାନ ସତ୍ ବା ଅସତ୍ ନୁହେଁ, ସେ ଏକ ଅନିର୍ବଚନୀୟ ପଦାର୍ଥ ; କିନ୍ତୁ

ଆତ୍ମାର ସାକ୍ଷାତ୍କାର ହେଲେ ତାହାର ନିବୃତ୍ତି ହୁଏ । ଆଜି ଯାହାଦ୍ୱାରା ଆମେ ନିଜକୁ ଅଜ୍ଞ ବୋଲି ଅନୁଭବ କରୁଁ, ତାହା ଏକପ୍ରକାର ଭାବରୂପ ଅଘଟନ-ଘଟନପଟୁ ଓ ଅନିର୍ଦ୍ଦେଶ୍ୟ ପଦାର୍ଥ । ଶ୍ରୁତିରେ ଏହା ପ୍ରମାଣିତ ହୋଇଅଛି ଯେ, ସ୍ୱପ୍ରକାଶ ଆତ୍ମାର ଶକ୍ତିକୁ ସତ୍ତ୍ୱ, ରଜସ୍ ଓ ତମୋଗୁଣଦ୍ୱାରା ଅବିଦ୍ୟା ଆଚ୍ଛନ୍ନ କରିଥାଏ; କିନ୍ତୁ ଶ୍ରବଣ, ମନନ ଓ ନିଦିଧ୍ୟାସନାଦିଦ୍ୱାରା ଅଜ୍ଞାନରୂପ ଆବରଣ ଦୂରୀଭୂତ ହେଲେ ଆତ୍ମଶକ୍ତି ପ୍ରକାଶ ପାଏ ।

ଇଦମଜ୍ଞାନଂ ସମଷ୍ଟିବ୍ୟଷ୍ଟ୍ୟଭିପ୍ରାୟେଣୈକମନେକମିତି ଚ ବ୍ୟବହ୍ରିୟତେ । ତଥାହି—ଯଥା ବୃକ୍ଷାଣାଂ ସମଷ୍ଟ୍ୟଭିପ୍ରାୟେଣ ବନମିତ୍ୟେକତ୍ୱବ୍ୟପଦେଶଃ । ଯଥା ବା ଜଲାନାଂ ସମଷ୍ଟ୍ୟଭିପ୍ରାୟେଣ ଜଲାଶୟ ଇତି, ତଥା ନାନାତ୍ୱେନ ପ୍ରତିଭାସମାନଜୀବଗତାଜ୍ଞାନାନାଂ ସମଷ୍ଟ୍ୟଭିପ୍ରାୟେଣ ତଦେକତ୍ୱବ୍ୟପଦେଶଃ । ଅଜାମେକାଂ—ଇତ୍ୟାଦିଶ୍ରୁତେଃ । ଇୟଂ ସମଷ୍ଟିରୁତ୍କୃଷ୍ଟୋପାଧିତୟା ବିଶୁଦ୍ଧସତ୍ତ୍ୱପ୍ରଧାନା । ଏତଦୁପହିତଂ ଚୈତନ୍ୟଂ ସର୍ବଜ୍ଞତ୍ୱସର୍ବେଶ୍ୱରତ୍ୱସର୍ବନିୟନ୍ତୃତ୍ୱାଦିଗୁଣକଂ ସଦସଦ-ବ୍ୟକ୍ତଂ ଅନ୍ତର୍ଯ୍ୟାମୀ ଜଗତ୍କାରଣଂ ଈଶ୍ୱର ଇତି ଚ ବ୍ୟପଦିଶ୍ୟତେ । ସକଲାଜ୍ଞାନାବଭାସକତ୍ୱାଦସ୍ୟ ସର୍ବଜ୍ଞତ୍ୱମ୍ । "ଯଃ ସର୍ବଜ୍ଞଃ ସ ସର୍ବବିତ୍" ଇତିଶ୍ରୁତେଃ । ୨୭ ।

ବନ ତୁଲ୍ୟ ସମଷ୍ଟିକୁ ଧରିଲେ ଏହି ଅଜ୍ଞାନକୁ ଏକ ବୋଲିଯାଏ; ବୃକ୍ଷ ତୁଲ୍ୟ ବ୍ୟଷ୍ଟି ଧରିଲେ ଏହା ଅନେକ ବୋଲି ନିର୍ଦ୍ଦିଷ୍ଟ କରାଯାଇ ପାରେ । ଯେପରି ଗୋଟିଏ ବନରେ ବହୁସଂଖ୍ୟକ ବୃକ୍ଷ ଅଛି । ପ୍ରତ୍ୟେକ ବୃକ୍ଷ ଭିନ୍ନ ଭିନ୍ନ ହେଲେ ସୁଦ୍ଧା ବନ ବୋଲି ଉଲ୍ଲେଖ କଲେ ସମସ୍ତ ବୃକ୍ଷର ଉପଲବ୍ଧି ହୁଏ, ଯେପରି ସମସ୍ତ ନଦନଦୀ ପୃଥକ୍ ହେଲେହେଁ ଏକମାତ୍ର ଜଳାଶୟ କହିଲେ ସମୁଦାୟ ଜଳମଗ୍ନ ସ୍ଥାନର ବୋଧ ହୁଏ, ସେହିପରି ପ୍ରତ୍ୟେକ ଜୀବଗତ ଅଜ୍ଞାନ ଅନ୍ତଃକରଣୋପାଧିଭେଦରେ ବହୁବିଧ ହେଲେ ସୁଦ୍ଧା ସମଷ୍ଟିଭାବରେ ଏକ ଓ ବ୍ୟଷ୍ଟିଭାବରେ ଅନେକ ବୋଲି ନିର୍ଦ୍ଦିଷ୍ଟ ଓ ବ୍ୟବହୃତ ହୁଏ । ସମଷ୍ଟି ବିଷୟରେ ଶ୍ରୁତି କହେ ଯେ, ଈଶ୍ୱର ମାୟାଦ୍ୱାରା ନାନାପ୍ରକାର ସୃଷ୍ଟି କରନ୍ତି ।

ବ୍ୟଷ୍ଟି ଓ ସମଷ୍ଟି ଭେଦରେ ଅଜ୍ଞାନକୁ ଦୁଇ ଭାଗରେ ବିଭକ୍ତ କରାଯାଇଅଛି; ଏବଂ ଏହି ଅଜ୍ଞାନ ଆହୁରି ଦୁଇ ଅଂଶରେ ବିଭକ୍ତ ହୁଏ; ଅର୍ଥାତ୍ ବିଶୁଦ୍ଧସତ୍ତ୍ୱପ୍ରଧାନ ଓ ମଳିନସତ୍ତ୍ୱପ୍ରଧାନ । ମଳିନସତ୍ତ୍ୱପ୍ରଧାନ ଅଜ୍ଞାନରେ ଚୈତନ୍ୟ ପ୍ରତିଫଳିତ ହେଲେ ଅସର୍ବଜ୍ଞ, ଅନୀଶ୍ୱର ଜୀବରୂପରେ ପରିଗଣିତ ହୁଏ, ଏବଂ ସେହି ଚୈତନ୍ୟ ବିଶୁଦ୍ଧ ସତ୍ତ୍ୱ-ପ୍ରଧାନ ଅଜ୍ଞାନରେ ପ୍ରତିଫଳିତ ହେଲେ ସର୍ବଜ୍ଞ ଈଶ୍ୱର ବୋଲି ନିର୍ଦ୍ଦିଷ୍ଟ ହୁଏ । ଏହି ଅଜ୍ଞାନ ସମଷ୍ଟି ଯେତେବେଳେ ଉତ୍କୃଷ୍ଟୋପାଧିକ ହୁଏ, ସେତେବେଳେ ତାହା ବିଶୁଦ୍ଧସତ୍ତ୍ୱପ୍ରଧାନ; ଅଜ୍ଞାନସମଷ୍ଟିରେ ଚୈତନ୍ୟ ଉପହିତ ହେଲେ ତାହାଙ୍କୁ ସର୍ବଜ୍ଞତ୍ୱସର୍ବେଶ୍ୱରତ୍ୱ ଓ ସର୍ବନିୟନ୍ତୃତ୍ୱ ଆଦି ଗୁଣସମ୍ପନ୍ନ ଓ ସର୍ବ ଦେଦୀପ୍ୟମାନ, ସର୍ବଜୀବପ୍ରବର୍ତ୍ତକ, ଅନ୍ତର୍ଯାମୀ ଓ ଜଗତର କାରଣସ୍ୱରୂପ ଈଶ୍ୱର ବୋଲାଯାଏ । ଶ୍ରୁତି ପ୍ରମାଣ ଅନୁସାରେ ଯେ ସାମାନ୍ୟ ଓ ବିଶେଷରୂପେ ସମୁଦାୟର ବିଜ୍ଞାତା, ସେ ଅନ୍ତର୍ଯାମୀ ଓ ଯେ ସମସ୍ତଙ୍କର ଅନ୍ତରାତ୍ମା ସେ ମହେଶ୍ୱର ।

**ଈଶ୍ୱରସ୍ୟେୟଂ ସମଷ୍ଟିରଖିଳକାରଣତ୍ୱାତ୍ କାରଣଶରୀରମାନନ୍ଦ-ପ୍ରଚୁରତ୍ୱାତ୍ କୋଷବତ୍ ଆଚ୍ଛାଦକତ୍ୱାଚ୍ଚାନନ୍ଦମୟକୋଷଃ ସର୍ବୋପରମ-ତ୍ୱାତ୍ ସୁଷୁପ୍ତିଃ ଅତଏବ ସ୍ଥୂଳସୂକ୍ଷ୍ମପ୍ରପଞ୍ଚଲୟସ୍ଥାନମିତ୍ୟୁଚ୍ୟତେ । ୬୭ ।**

ଏହି ଅଜ୍ଞାନସମଷ୍ଟି ନିଖିଳ ଜଗତର କାରଣ, ଅତଏବ ଏହାକୁ କାରଣଶରୀର ବୋଲାଯାଏ । ଆନନ୍ଦପ୍ରଚୁରତା ହେତୁରୁ ଏବଂ କୋଷ ତୁଲ୍ୟ ଆବରଣକର୍ତ୍ତା ହେତୁରୁ ଏହା ଆନନ୍ଦମୟ କୋଷ ନାମରେ କଥିତ; ଏବଂ ଏଥିରେ ସମସ୍ତ ଆକାଶାଦି ମହାଭୂତ ଓ ଇନ୍ଦ୍ରିୟ ପ୍ରଭୃତିର ବିଲୟ ହୁଏ ବୋଲି ଏହା ସୁଷୁପ୍ତି କିମ୍ବା ପ୍ରଳୟ ଶବ୍ଦବାଚ୍ୟ । ଅତଏବ ଏହି ବିଶୁଦ୍ଧସତ୍ତ୍ୱଗୁଣପ୍ରଧାନ ଅଜ୍ଞାନସମଷ୍ଟି ସ୍ଥୂଳ ଓ ସୂକ୍ଷ୍ମ ସମୁଦାୟ ଜଗତର ବିଲୟ ସ୍ଥାନ ବୋଲି ନିର୍ଦ୍ଦିଷ୍ଟ ହୋଇଛି ।

**ଇୟଂ ବ୍ୟଷ୍ଟିର୍ନିକୃଷ୍ଟୋପାଧିତୟା ମଳିନସତ୍ତ୍ୱପ୍ରଧାନା । ଏତଦୁପହିତ ଚୈତନ୍ୟମଲ୍ପଜ୍ଞତ୍ୱାଽନୀଶ୍ୱରତ୍ୱାଦଗୁଣକଂ ପ୍ରାଜ୍ଞ ଇତ୍ୟୁଚ୍ୟତେ । ଏକାଽଜ୍ଞାନା-ବଭାସକତ୍ୱାଦସ୍ୟ ପ୍ରାଜ୍ଞତ୍ୱଂ ଅସ୍ପଷ୍ଟୋପାଧିତୟା ଅନତପ୍ରକାଶକତ୍ୱମ୍ ।୧୮।**

ଏହି ଅଜ୍ଞାନ ଯେତେବେଳେ ବ୍ୟଷ୍ଟିଭାବରେ ନିକୃଷ୍ଟୋପାଧିକ ହୁଏ, ସେତେବେଳେ ତାହା ମଳିନସତ୍ତ୍ୱପ୍ରଧାନ ଓ ଜ୍ଞାନର ପ୍ରତିବନ୍ଧକ ହେତୁରୁ ଜୀବଶବ୍ଦରେ ଅଭିହିତ ହୁଏ ; କାରଣ, ସେ ଯେତେବେଳେ ବ୍ୟଷ୍ଟିଭାବରେ ପ୍ରତ୍ୟେକ ଜୀବଗତ ହୁଏ,

ସେତେବେଳେ ରଜୋଗୁଣ ଓ ତମୋଗୁଣଦ୍ୱାରା ଅଭିଭୂତ ହେବାରୁ ତାହାର ମଳିନସତ୍ତ୍ୱ-ଗୁଣପ୍ରଧାନ ହୁଏ । ସତ୍ତ୍ୱଗୁଣରେ ଚୈତନ୍ୟଙ୍କର ସ୍ୱଚ୍ଛ ପ୍ରତିବିମ୍ବ ପ୍ରକାଶିତ ହୁଏ; କିନ୍ତୁ ରଜୋଗୁଣ ଓ ତମୋଗୁଣର ଅସ୍ୱଚ୍ଛତା ହେତୁରୁ ଚୈତନ୍ୟଙ୍କର ସେପରି ପ୍ରତିବିମ୍ବର ପ୍ରକାଶ ହୁଏ ନାହିଁ । ବିଶୁଦ୍ଧସତ୍ତ୍ୱଗୁଣ-ପ୍ରତିବିମ୍ବିତ ଚୈତନ୍ୟ ଈଶ୍ୱରଶବ୍ଦବାଚ୍ୟ ଏବଂ ମଳିନସତ୍ତ୍ୱ-ଗୁଣପ୍ରତିବିମ୍ବିତ ଚୈତନ୍ୟ ଜୀବଶବ୍ଦବାଚ୍ୟ ହୁଏ । ଏହି ମଳିନସତ୍ତ୍ୱପ୍ରଧାନ ଅଜ୍ଞାନ-ପ୍ରତିବିମ୍ବିତ ଚୈତନ୍ୟଙ୍କୁ ଅଲ୍ପଜ୍ଞତ୍ୱ-ଅନୀଶ୍ୱରତ୍ୱ ଆଦି ଗୁଣବିଶିଷ୍ଟ ହେତୁରୁ ପ୍ରାଜ୍ଞ, ଅର୍ଥାତ୍ ନିକୃଷ୍ଟ ଗୁଣସମ୍ପନ୍ନ ବୋଲଯାଏ ।

**ଏତଦୁପହିତୟୋରୀଶ୍ୱରପ୍ରାଜ୍ଞୟୋରପି ବନବୃକ୍ଷାବଚ୍ଛିନ୍ନାକାଶ-ୟୋରିବ ଜଳାଶୟଜଳଗତପ୍ରତିବିମ୍ବାକାଶୟୋରିବ ଚାଭେଦଃ । ଏଷ ସର୍ବେଶ୍ୱର ଏଷ ସର୍ବଜ୍ଞ ଏଷୋଽନ୍ତର୍ଯ୍ୟାମୀ ଏଷ ଯୋନିଃ ସର୍ବସ୍ୟ ପ୍ରଭବାପ୍ୟୟୌ ହି ଭୂତାନାମ୍ ଇତ୍ୟାଦିଶ୍ରୁତେଃ । ୩୬ ।**

ଏହି ଅଜ୍ଞାନୋପହିତ ଚୈତନ୍ୟର ଈଶ୍ୱର ଓ ଜୀବରୂପକ ଉପାଧିଭେଦ ହେବାରୁ ଯେଉଁ ଭେଦଜ୍ଞାନ ଲକ୍ଷିତ ହୁଏ, ତାହା ବାସ୍ତବରେ ଭେଦ ନୁହେଁ । ଈଶ୍ୱର ବନବ୍ୟାପୀ ଆକାଶତୁଲ୍ୟ ସମଷ୍ଟି ଓ ଜୀବ ବନାନ୍ତର୍ଗତ ବୃକ୍ଷବ୍ୟାପୀ ଆକାଶ ସଦୃଶ ବ୍ୟଷ୍ଟି, ଏବଂ ଈଶ୍ୱର ଜଳାଶୟ ବା ଜଳରାଶିବ୍ୟାପୀ ଆକାଶର ପ୍ରତିବିମ୍ବତୁଲ୍ୟ ସମଷ୍ଟି ଓ ଜୀବ ଜଳାଶୟାନ୍ତର୍ଗତ ଜଳ ବା ସ୍ୱଳ୍ପ ଜଳବ୍ୟାପୀ ଆକାଶର ପ୍ରତିବିମ୍ବତୁଲ୍ୟ ବ୍ୟଷ୍ଟି, କିନ୍ତୁ ଯେପରି ସେହି ଆକାଶରେ କୌଣସି ଭେଦ ହୁଏ ନାହିଁ, ସେହିପରି ଈଶ୍ୱର ଓ ଜୀବର ଉପାଧିଭେଦ ହେଲେ ସୁଦ୍ଧା ତାହାଙ୍କର (ଅର୍ଥାତ୍ ଅଜ୍ଞାନସମଷ୍ଟିବିଶିଷ୍ଟ ଚୈତନ୍ୟର ଓ ଅଜ୍ଞାନର ବ୍ୟଷ୍ଟି ଉପହିତ ଚୈତନ୍ୟର) କୌଣସି ଭେଦ ଲକ୍ଷିତ ହୁଏ ନାହିଁ; ଅର୍ଥାତ୍ ତାହାଙ୍କର କାର୍ଯ୍ୟକାରଣ ଉପାଧି ପରିତ୍ୟକ୍ତ ହେଲେ କେବଳ ସେ ପୂର୍ଣ୍ଣବ୍ରହ୍ମସ୍ୱରୂପରେ ରହନ୍ତି । ଶ୍ରୁତିବଚନ ଅନୁସାରେ ଈଶ୍ୱର ସର୍ବଜ୍ଞ, ଅନ୍ତର୍ଯ୍ୟାମୀ, ସମସ୍ତଙ୍କର କାରଣ ଏବଂ ସର୍ବଭୂତର ଉତ୍ପତ୍ତି ଓ ପ୍ରଳୟର ସ୍ଥାନ ।

**ଅସ୍ୟାଜ୍ଞାନସ୍ୟାବରଣବିକ୍ଷେପନାମକଂ ଶକ୍ତିଦ୍ୱୟମସ୍ତି ।** ବେ: ସା:

ଅର୍ଥାତ୍ – ଏହି ଅଜ୍ଞାନର ଦୁଇଟି ଶକ୍ତି ଅଛି—ଗୋଟିଏ ଆବରଣଶକ୍ତି ଓ ଅପର ବିକ୍ଷେପଶକ୍ତି । *

* ଉକ୍ତ ଶକ୍ତିଦ୍ୱୟର ବିବରଣ ପୂର୍ବଶ୍ରୁତିରେ ମଧ୍ୟ ଉକ୍ତ ହୋଇଅଛି ।

ତମଃପ୍ରଧାନବିକ୍ଷେପଶକ୍ତିମଦଜ୍ଞାନୋପହିତଚୈତନ୍ୟାଦାକାଶଃ ଆକାଶାଦ୍‌ବାୟୁର୍ବାୟୋରଗ୍ନିରଗ୍ନେରାପଃ ଅଦ୍‌ଭ୍ୟଃ ପୃଥିବୀ ଚୋତ୍ପଦ୍ୟତେ । ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ—ଇତ୍ୟାଦିଶ୍ରୁତେଃ । ୩୯ ।

ବିକ୍ଷେପ-ଶକ୍ତିବିଶିଷ୍ଟ, ତମଃପ୍ରଧାନ, ଅଜ୍ଞାନଦ୍ୱାରା ଆବୃତ ଚୈତନ୍ୟରୁ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଓ ଜଳରୁ ପୃଥିବୀ ଉତ୍ପନ୍ନ ହୁଏ । ଏ ବିଷୟରେ ଶ୍ରୁତି କହେ ଯେ, ସେହି ଅଜ୍ଞାନାବୃତ ଆତ୍ମାରୁ ଯଥାକ୍ରମେ ଆକାଶ ଆଦି ପଞ୍ଚମହାଭୂତ ଉତ୍ପନ୍ନ ହୋଇଅଛନ୍ତି ।

ତେଷୁ ଜାଡ୍ୟାଧିକ୍ୟଦର୍ଶନାତ୍ତମଃପ୍ରାଧାନ୍ୟଂ ତତ୍‌କାରଣସ୍ୟ ତଦାନୀଂ । ସତ୍ତ୍ୱରଜଃତମାଂସି କାରଣଗୁଣପ୍ରକ୍ରମେଣ ତେଷ୍ୱାକାଶାଦିଷୂତ୍ପଦ୍ୟନ୍ତେ । ଇମାନ୍ୟେବ ସୂକ୍ଷ୍ମଭୂତାନି ତନ୍ମାତ୍ରାଣ୍ୟପଞ୍ଚୀକୃତାନି ଚୋଚ୍ୟନ୍ତେ । ଏତେଭ୍ୟଃ ସୂକ୍ଷ୍ମଶରୀରାଣି ସ୍ଥୂଳଭୂତାନି ଚୋତ୍ପଦ୍ୟନ୍ତେ । ୪୦ ।

ଆକାଶ, ବାୟୁ, ତେଜ, ସଲିଳ ଓ ପୃଥିବୀରେ ତମୋଗୁଣର କାର୍ଯ୍ୟ ଜଡ଼ତା ଅଧିକ ଲକ୍ଷିତ ହେବାରୁ ଏହି ଜଡ଼ ପଦାର୍ଥର କାରଣଭୂତ ଯେ ଅଜ୍ଞାନାବୃତ ଚୈତନ୍ୟ ସେଥିରେ ମଧ୍ୟ ଏକମାତ୍ର ତମୋଗୁଣର ପ୍ରାଧାନ୍ୟ ଉପଲବ୍‌ଧ ହୁଏ । କଥିତ ଅଛି ଯେ, କାରଣର ଗୁଣ କାର୍ଯ୍ୟରେ ସଂକ୍ରମଣ କରେ, ଅର୍ଥାତ୍—କାରଣରେ ଯେଉଁଗୁଣ ଯେଉଁ ପରିମାଣରେ ଥାଏ, ତାହାର କାର୍ଯ୍ୟରେ ସେହି ଗୁଣ ସେହି ପରିମାଣରେ ଆବିର୍ଭୂତ ହୁଏ । ଯେଉଁ ସମୟରେ ଆକାଶାଦି ପଞ୍ଚମହାଭୂତର ସୃଷ୍ଟି ହୁଏ, ସେହି ସମୟରେ ତାହାର ନିଦାନ ବା କାରଣଭୂତ ଅଜ୍ଞାନୋପହିତ ଚୈତନ୍ୟରେ ଯେଉଁ ପରିମାଣରେ ସତ୍ତ୍ୱ, ରଜ ଓ ତମୋଗୁଣର ଅଂଶ ଥାଏ, ତାହାର କାର୍ଯ୍ୟ ଆକାଶାଦି ପଞ୍ଚଭୂତରେ ମଧ୍ୟ ସେହି ପରିମାଣରେ ସେହି ତିନଗୁଣର ଅଂଶ ପ୍ରକାଶିତ ହୁଏ । ଏହି ପଞ୍ଚବିଧ ସୂକ୍ଷ୍ମଭୂତଙ୍କୁ ଅପଞ୍ଚୀକୃତଭୂତ ଓ ପଞ୍ଚତନ୍ମାତ୍ର କୁହାଯାଏ ।

ପଞ୍ଚତନ୍ମାତ୍ର ଯଥା—

ଶବ୍ଦତନ୍ମାତ୍ର, ସ୍ପର୍ଶତନ୍ମାତ୍ର, ରୂପତନ୍ମାତ୍ର ରସତନ୍ମାତ୍ର ଓ ଗନ୍ଧତନ୍ମାତ୍ର । ଏହାପରେ ସୂକ୍ଷ୍ମଭୂତରୁ ସୂକ୍ଷ୍ମଶରୀର ଓ ପଞ୍ଚବିଧ ମହାଭୂତ ଉତ୍ପନ୍ନ ହୁଅନ୍ତି । ପଞ୍ଚୀକରଣ ପରେ ଶବ୍ଦତନ୍ମାତ୍ରରୁ ଆକାଶ, ସ୍ପର୍ଶତନ୍ମାତ୍ରରୁ ବାୟୁ, ରୂପତନ୍ମାତ୍ରରୁ ତେଜ, ରସତନ୍ମାତ୍ରରୁ ସଲିଳ ଓ ଗନ୍ଧତନ୍ମାତ୍ରରୁ ପୃଥିବୀ ଉତ୍ପନ୍ନ ହୁଏ ।

**ସୂକ୍ଷ୍ମଶରୀରାଣି ସପ୍ତଦଶାବୟବାନି ଲିଙ୍ଗଶରୀରାଣି । ଅବୟବାସ୍ତୁ ଜ୍ଞାନେନ୍ଦ୍ରିୟପଞ୍ଚକଂ, ବୁଦ୍ଧିମନସୀ, କର୍ମେନ୍ଦ୍ରିୟପଞ୍ଚକଂ, ବାୟୁପଞ୍ଚକଞ୍ଚେତି । ଜ୍ଞାନେନ୍ଦ୍ରିୟାଣି ଶ୍ରୋତ୍ରତ୍ୱକ୍‌ଚକ୍ଷୁର୍ଜିହ୍ୱାଘ୍ରାଣାଖ୍ୟାନି । ଏତାନ୍ୟାକାଶାଦୀନାଂ ସାତ୍ତ୍ୱିକାଂଶେଭ୍ୟଃ ବ୍ୟସ୍ତେଭ୍ୟଃ ପୃଥକ୍ କ୍ରମେଣୋତ୍ପଦ୍ୟନ୍ତେ ବୁଦ୍ଧିର୍ନାମ ନିଶ୍ଚୟାତ୍ମିକାନ୍ତଃକରଣବୃତ୍ତିଃ । ମନୋ ନାମ ସଂକଳ୍ପବିକଳ୍ପାତ୍ମିକାନ୍ତଃ-କରଣବୃତ୍ତିଃ । ୪୧ ।**

ସପ୍ତଦଶ ଅବୟବବିଶିଷ୍ଟ ସୂକ୍ଷ୍ମଶରୀରର ନାମ ଲିଙ୍ଗଶରୀର । ସପ୍ତଦଶ ଅବୟବ— ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍‌ରୂପକ ପଞ୍ଚ ଜ୍ଞାନେନ୍ଦ୍ରିୟ ; ବାକ୍ ପାଣି, ପାଦ, ପାୟୁ ଓ ଉପସ୍ଥ-ରୂପ ପଞ୍ଚ କର୍ମେନ୍ଦ୍ରିୟ ; ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ—ଏହି ପଞ୍ଚବାୟୁ ଓ ବୁଦ୍ଧି ଓ ମନ—ଏମାନେ ଏକସରେ ଲିଙ୍ଗଶରୀର କୁହାଯାନ୍ତି ।

ଆକାଶ ପ୍ରଭୃତି ଅପଞ୍ଚୀକୃତ ପଞ୍ଚମହାଭୂତର ସାତ୍ତ୍ୱିକାଂଶରୁ ଯଥାକ୍ରମେ ପୃଥକ୍-ଭାବରେ ଏହି ପଞ୍ଚ ଜ୍ଞାନେନ୍ଦ୍ରିୟର ଉତ୍ପତ୍ତି ହୁଏ । ସେଥିରୁ ଆକାଶର ସାତ୍ତ୍ୱିକାଂଶରୁ କର୍ଣ୍ଣ, ବାୟୁର ସାତ୍ତ୍ୱିକାଂଶରୁ ତ୍ୱକ୍ ବା ଚର୍ମ, ତେଜର ସାତ୍ତ୍ୱିକାଂଶରୁ ଚକ୍ଷୁ, ଜଳର ସାତ୍ତ୍ୱିକାଂଶରୁ ଜିହ୍ୱା ଓ ପୃଥିବୀର ସାତ୍ତ୍ୱିକାଂଶରୁ ଘ୍ରାଣ (ନାସିକା) ଇନ୍ଦ୍ରିୟମାନେ ଉତ୍ପନ୍ନ ହୁଅନ୍ତି ।

ନିଶ୍ଚୟାତ୍ମିକା ଅନ୍ତଃକରଣବୃତ୍ତିର ନାମ ବୁଦ୍ଧି; ସଂକଳ୍ପ-ବିକଳ୍ପାତ୍ମିକା ଅନ୍ତଃକରଣ-ବୃତ୍ତିର ନାମ ମନ ଓ ଏହାକୁ ସଂଶୟାତ୍ମିକା ଅନ୍ତକରଣବୃତ୍ତି ମଧ୍ୟ କୁହାଯାଏ ।

**ଅନୟୋରେବ ଚିତ୍ତାହଂକାରୟୋରନ୍ତର୍ଭାବଃ । ଅନୁସନ୍ଧାତ୍ମିକାନ୍ତଃ-କରଣବୃତ୍ତିଶ୍ଚିତ୍ତମ୍, ଅଭିମାନାତ୍ମିକାନ୍ତଃକରଣବୃତ୍ତିରହଂକାରଃ — ଏତେ ପୁନରାକାଶାଦିଗତସାତ୍ତ୍ୱିକାଂଶେଭ୍ୟଃ ମିଳିତେଭ୍ୟଉତ୍ପଦ୍ୟନ୍ତେ । ଏତେଷାଂ ପ୍ରକାଶାତ୍ମକତ୍ୱାତ୍ ସାତ୍ତ୍ୱିକାଂଶକାର୍ଯ୍ୟତ୍ୱମ୍ । ୪୨ ।**

ଚିତ୍ତ ଏବଂ ଅହଙ୍କାର ବୁଦ୍ଧି ଓ ମନର ଅନ୍ତର୍ଭୁକ୍ତ । ଅନୁସନ୍ଧାତ୍ମକ ଅନ୍ତଃକରଣ-ବୃତ୍ତିର ନାମ ଅହଂକାର । ଅହଂକାର ମନର ଅନ୍ତର୍ଗତ । ବସ୍ତୁତଃ ଯେପରି ଏକ ବ୍ୟକ୍ତିକୁ କର୍ମଭେଦରେ ପାଚକ, ପାଠକ, ପୂଜକ ପ୍ରଭୃତି କୁହାଯାଏ; ସେହିପରି ଏକ ଅନ୍ତଃକରଣକୁ ନିଶ୍ଚୟ-ସଂଶୟ, ସ୍ମରଣ ଓ ଅହଂକାରରୂପ ବୃତ୍ତିଭେଦରେ ଭିନ୍ନ ଭିନ୍ନ ନାମଦ୍ୱାରା ନିର୍ଦ୍ଦେଶ କରାଯାଏ ।

ଏହି ବୁଦ୍ଧି ଓ ମନ, ଆକାଶ ପ୍ରଭୃତିର ମିଳିତ ସାତ୍ତ୍ୱିକାଂଶରୁ ଉତ୍ପନ୍ନ ହୁଅନ୍ତି । ବୁଦ୍ଧି ଓ ମନ ଏବଂ ଜ୍ଞାନେନ୍ଦ୍ରିୟ ସକଳ ସ୍ୱପ୍ରକାଶସ୍ୱଭାବ ବୋଲି ଏହାକୁ ସାତ୍ତ୍ୱିକାଂଶର କାର୍ଯ୍ୟ ବୋଲାଯାଏ ।

**"ଇୟଂ ବୁଦ୍ଧି ର୍ଜ୍ଞାନେନ୍ଦ୍ରିୟୈଃ ସହିତା ସତୀ ବିଜ୍ଞାନମୟକୋଷୋ ଭବତି । ଅୟଂ କର୍ତ୍ତୃତ୍ୱଭୋକ୍ତୃତ୍ୱାଭିମାନିତ୍ୱେନ ଇହଲୋକ-ପରଲୋକଗାମୀ ବ୍ୟାବହାରିକଜୀବ ଇତ୍ୟୁଚ୍ୟତେ" ।**

ଅର୍ଥାତ୍ ଏହି ବୁଦ୍ଧି ପଞ୍ଚ ଜ୍ଞାନେନ୍ଦ୍ରିୟ ସହିତ ମିଳିତ ହୋଇ ବିଜ୍ଞାନମୟ କୋଷନାମରେ ଅଭିହିତ ।

ଏହି ବିଜ୍ଞାନମୟ କୋଷକୁ କର୍ତ୍ତୃତ୍ୱାଭିମାନୀ ଭୋକ୍ତୃତ୍ୱାଭିମାନୀ ସୁଖିତ୍ୱ-ଦୁଃଖିତ୍ୱାଭିମାନୀ ହେତୁରୁ ଇହଲୋକ ଓ ପରଲୋକଗାମୀ ବ୍ୟାବହାରିକ ଜୀବ ବୋଲାଯାଏ ।

**ମନସ୍ତୁ କର୍ମେନ୍ଦ୍ରିୟୈଃ ସହିତଂ ସନ୍ମନୋମୟ କୋଷୋ ଭବତି । କର୍ମେନ୍ଦ୍ରିୟାଣି ବାକ୍‌ପାଣି-ପାଦପାୟୂପସ୍ଥାନି । ଏତାନି ପୁନରାକାଶାଦୀନାଂ ରଜୋଽଂଶେଭ୍ୟୋ ବ୍ୟସ୍ତେଭ୍ୟଃ ପୃଥକ୍ କ୍ରମେଣୋତ୍ପଦ୍ୟନ୍ତେ । ୪୪ ।**

ମନକର୍ମେନ୍ଦ୍ରିୟପଞ୍ଚକ ସହିତ ସମବେତ ହୋଇ ମନୋମୟକୋଷ ଶବ୍ଦରେ ଅଭିହିତ ହୁଏ । ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥମାନଙ୍କୁ କର୍ମେନ୍ଦ୍ରିୟ ବୋଲାଯାଏ । ଏମାନେ ଆକାଶପ୍ରଭୃତି ପଞ୍ଚଭୂତର ପୃଥକ୍ ପୃଥକ୍ ରଜୋଗୁଣର ଅଂଶରୁ ଉତ୍ପନ୍ନ ହୁଅନ୍ତି । ଆକାଶର ରାଜସିକ ଅଂଶରୁ ବାକ୍, ବାୟୁର ରାଜସିକ ଅଂଶରୁ ପାଣି ବା ହସ୍ତ, ଅଗ୍ନିର ରାଜସିକ ଅଂଶରୁ ପାଦ, ଜଳର ରାଜସିକ ଅଂଶରୁ ଉପସ୍ଥ ଏବଂ ପୃଥ୍ୱୀର ରାଜସିକାଂଶରୁ ପାୟୁ (ଗୁହ୍ୟ) ଇନ୍ଦ୍ରିୟ ଉତ୍ପନ୍ନ ହୁଏ ।

**ବାୟବଃ—ପ୍ରାଣାପାନାବ୍ୟାନୋଦାନସମାନାଃ । ପ୍ରାଣୋନାମ—ପ୍ରାଗ୍‌ଗମନବାନ୍ ନାସାଗ୍ରସ୍ଥାନବର୍ତ୍ତୀ । ଅପାନୋ ନାମ—ଅବାଗ୍‌ଗମନବାନ୍ ପାୟ୍ୱାଦସ୍ଥାନବର୍ତ୍ତୀ । ବ୍ୟାନୋନାମ—ବିଷ୍ୱଗ୍‌ଗମନବାନ୍ ଅଖିଳଶରୀରବର୍ତ୍ତୀ । ଉଦାନଃ—କଣ୍ଠସ୍ଥାନୀୟ ଊର୍ଦ୍ଧ୍ୱଗମନବାନ୍ ଉତ୍କ୍ରମଣବାୟୁଃ । ସମାନଃ—ଶରୀରମଧ୍ୟଗତାଶିତପୀତାନ୍ନାଦସମୀକରଣକରଃ । ସମୀକରଣଂ ତୁ ପରିପାକକରଣଂ, ରସରୁଧିର-ଶୁକ୍ରପୁରୀଷାଦିକରଣଂ ବା । ୪୫ ।**

ପଞ୍ଚ ବାୟୁର ନାମ ଯଥା—ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ। ଊର୍ଦ୍ଧ୍ୱଗମନଶୀଳ ନାସାଗ୍ରସ୍ଥାୟୀ ବାୟୁକୁ ପ୍ରାଣ କୁହାଯାଏ; ଅଧୋଗମନଶୀଳ ପାୟୁସ୍ଥାନାସ୍ଥିତ ବାୟୁର ନାମ ଅପାନ । ସର୍ବନାଡ଼ୀଗମନଶୀଳ ସର୍ବଶରୀରବର୍ତ୍ତୀ ବାୟୁକୁ ବ୍ୟାନ କୁହାଯାଏ । ଊର୍ଦ୍ଧ୍ୱଗମନଶୀଳ କଣ୍ଠସ୍ଥିତ ବାୟୁ ଉଦାନ ଓ ଭୁକ୍ତପୀତ ଅନ୍ନ-ଜଳ ପ୍ରଭୃତିର ପରିପାଳକ ଓ ସମୀକରଣକାରୀ ନାଭିଦେଶସ୍ଥିତ ବାୟୁକୁ ସମାନ କୁହାଯାଏ । ସମୀକରଣର ଅର୍ଥ ଅନ୍ନାଦିରୁ ରସ, ରକ୍ତ, ଶୁକ୍ର, ପୁରୀଷ ପ୍ରଭୃତି ନିଷ୍ପାଦନ କରିବା ।

କେଚିତ୍ତୁ ନାଗକୂର୍ମକୃକରଦେବଦତ୍ତଧନଞ୍ଜୟାଖ୍ୟାଃ ପଞ୍ଚାନ୍ୟେ ବାୟବଃ ସନ୍ତୀତ୍ୟାହୁ । ତତ୍ର ନାଗଃ—ଉଦ୍‌ଗୀରଣକରଃ; କୂର୍ମ—ଉନ୍ମୀଳନାଦିକରଃ ; କୃକରଃ—କ୍ଷୁଧାକରଃ; ଦେବଦତ୍ତଃ—ଜୃମ୍ଭଣକରଃ ଧନଞ୍ଜୟ—ପୋଷଣକରଃ; ଏତେଷାଂ ପ୍ରାଣାଦିଷ୍ୱନ୍ତର୍ଭାବାତ୍ ପ୍ରାଣାଦୟଃ ପଞ୍ଚୈବ ଇତି କେଚିତ୍ ; ଇଦଂ ପ୍ରାଣାଦିପଞ୍ଚକଂ ଆକାଶାଦିଗତରଜୋଽଂଶେଭ୍ୟଃ ମିଳିତେଭ୍ୟ ଉତ୍ପଦ୍ୟତେ । ଇଦଂ ପ୍ରାଣାଦିପଞ୍ଚକଂ କର୍ମେନ୍ଦ୍ରିୟସହିତଂ ସତ୍ ପ୍ରାଣମୟକୋଷୋ ଭବତି । ଅସ୍ୟ କ୍ରିୟାତ୍ମକତ୍ୱେନ ରଜୋଽଂଶ-କାର୍ଯ୍ୟତ୍ୱମ୍ । । ୪୭ ।

ଉପର୍ଯ୍ୟୁକ୍ତ ବାୟୁପଞ୍ଚକ ବ୍ୟତୀତ ଶାସ୍ତ୍ରାଦିରେ ଅନ୍ୟ ପାଞ୍ଚପ୍ରକାର ବାୟୁ କଥିତ ଅଛି—ନାଗ, କୂର୍ମ, କୃକର, ଦେବଦତ୍ତ ଓ ଧନଞ୍ଜୟ । ଯେଉଁ ବାୟୁଦ୍ୱାରା ଉଦ୍‌ଗୀରଣ ବା ବମନ ହୁଏ, ତାହାକୁ ନାଗ କୁହାଯାଏ; ଯେଉଁ ବାୟୁଦ୍ୱାରା ଉଭୟ ନୟନର ଉନ୍ମୀଳନ ହୁଏ, ତାହାର ନାମ କୂର୍ମ । ଯେଉଁ ବାୟୁବଳରେ କ୍ଷୁଧା ପିପାସା ହୁଏ, ତାହାକୁ କୃକର କହନ୍ତି । ଯେଉଁ ବାୟୁଦ୍ୱାରା ଜୃମ୍ଭଣ ବା ହାଇମାରିବା କାର୍ଯ୍ୟ ହୁଏ ତାହାକୁ ଦେବଦତ୍ତ କହନ୍ତି ଓ ଯେଉଁ ବାୟୁଦ୍ୱାରା ଶରୀର ପୁଷ୍ଟ ହୁଏ, ତାହାର ନାମ ଧନଞ୍ଜୟ । ବେଦାନ୍ତୀମାନେ କହନ୍ତି ଯେ, ନାଗକୂର୍ମପ୍ରଭୃତି ପଞ୍ଚ ବାୟୁ ପ୍ରାଣ-ଅପାନପ୍ରଭୃତି ପଞ୍ଚବାୟୁର ଅନ୍ତର୍ଗତ ଅତଏବ ସେମାନଙ୍କର ପୃଥକ୍ ଉଲ୍ଲେଖ କରିବା ଅନାବଶ୍ୟକ । ଏହି ପ୍ରାଣାଦି ପଞ୍ଚବାୟୁ କର୍ମେନ୍ଦ୍ରିୟ ସହିତ ମିଳିତ ହେଲେ ଏହାକୁ ପ୍ରାଣମୟକୋଷ କୁହାଯାଏ । ଆଉ ଏମାନେ ଆକାଶାଦି ମିଳିତ ରଜୋଗୁଣରୁ ଉତ୍ପନ୍ନ ହୁଅନ୍ତି । ଏହି ପ୍ରାଣାଦି ପଞ୍ଚ ବାୟୁ କ୍ରିୟାତ୍ମକ ହେବାରୁ ଏହାକୁ ରଜୋଗୁଣର କାର୍ଯ୍ୟ କୁହାଯାଏ ।

ଏତେଷୁ କୋଷେଷୁ ମଧ୍ୟେ ବିଜ୍ଞାନମୟୋ ଜ୍ଞାନଶକ୍ତିମାନ୍ କର୍ତ୍ତୃରୂପମନୋମୟଃ ଇଚ୍ଛାଶକ୍ତିମାନ୍ କାରଣରୂପଃ । ପ୍ରାଣମୟଃ କ୍ରିୟାଶକ୍ତିମାନ୍ କାର୍ଯ୍ୟରୂପଃ ଯୋଗ୍ୟତ୍ୱାଦେବମେତେଷାଂ ବିଭାଗ ଇତି ବର୍ଣ୍ଣୟନ୍ତି । ଏତତ୍ କୋଷତ୍ରୟଂ ମିଳିତଂ ସତ୍ ସୂକ୍ଷ୍ମଶରୀରମିତ୍ୟୁଚ୍ୟତେ ।୪୭।

ଏହି କୋଷସମୁଦାୟ ମଧ୍ୟରେ ବିଜ୍ଞାନମୟ କୋଷ ଜ୍ଞାନଶକ୍ତିସମ୍ପନ୍ନ । ସୁତରାଂ କର୍ତ୍ତାସ୍ୱରୂପ । ମନୋମୟ କୋଷ ଇଚ୍ଛାଶକ୍ତିସମ୍ପନ୍ନ, ସୁତରାଂ କରଣସ୍ୱରୂପ ଓ ପ୍ରାଣମୟ କୋଷ କ୍ରିୟାଶକ୍ତିସମ୍ପନ୍ନ ଅତଏବ କାର୍ଯ୍ୟସ୍ୱରୂପ । ଏହିପରି ଏମାନଙ୍କର ଯଥାଯଥ ବିଭାଗ ବର୍ଣ୍ଣିତ ହେଲା, ବିଜ୍ଞାନମୟକୋଷ, ମନୋମୟକୋଷ ଓ ପ୍ରାଣମୟକୋଷ, ଏହି କୋଷତ୍ରୟ ଏକତ୍ର ମିଳିତ ହୋଇ ସୂକ୍ଷ୍ମଶରୀର ବା ଲିଙ୍ଗଶରୀର ନାମରେ ଅଭିହିତ ହୁଏ ।

ଅତ୍ରାପ୍ୟଖିଳସୂକ୍ଷ୍ମଶରୀରମେକବୁଦ୍ଧିବିଷୟତୟା ବନଜଳାଶୟବଦ୍ଵା ସମଷ୍ଟିଃ; ଅନେକବୁଦ୍ଧିବିଷୟତୟା ବୃକ୍ଷବଜ୍ଜଳବଦ୍ଵା ବ୍ୟଷ୍ଟିଶ୍ଚ ଭବତି । ଏତତ୍ସମଷ୍ଟ୍ୟୁପହିତଂ ଚୈତନ୍ୟଂ ସୂତ୍ରାତ୍ମା ହିରଣ୍ୟଗର୍ଭଃ ପ୍ରାଣ ଇତଚ୍ଚୋଚ୍ୟତେ; ସର୍ବାନୁସ୍ୟୂତତ୍ୱାତ୍ । ଜ୍ଞାନେଚ୍ଛାକ୍ରିୟାଶକ୍ତିମଦ୍ ଅପଞ୍ଚୀକୃତ-ପଞ୍ଚମହାଭୂତାଭିମାନତ୍ୱାଚ୍ଚ ।୪୮।

ଏଠାରେ ମଧ୍ୟ ସମସ୍ତ ସୂକ୍ଷ୍ମଶରୀର ଏକ ବୁଦ୍ଧିର ବିଷୟ ହେଲେ ବନ କିମ୍ବା ଜଳାଶୟତୁଲ୍ୟ ସମଷ୍ଟି ଓ ଅନେକ ବୁଦ୍ଧିର ବିଷୟ ହେଲେ ବୃକ୍ଷ ଅଥବା ଜଳତୁଲ୍ୟ ବ୍ୟଷ୍ଟି ହୋଇଥାଏ । ଏହି ସୂକ୍ଷ୍ମଶରୀରର ସମଷ୍ଟିରେ ଉପହିତ ଚୈତନ୍ୟକୁ ସୂତ୍ରାତ୍ମା, ହିରଣ୍ୟଗର୍ଭ ଓ ପ୍ରାଣ ବୋଲାଯାଏ; କାରଣ, ସୂତ୍ରାତ୍ମା ନିଖିଳ ସୂକ୍ଷ୍ମ ଶରୀରରେ ସୂତ୍ରତୁଲ୍ୟ ପରିବ୍ୟାପ୍ତ ଓ ଅନୁପ୍ରବିଷ୍ଟ ହୋଇ ରହିଛନ୍ତି ଏବଂ ସେ ଜ୍ଞାନଶକ୍ତି, ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିସମ୍ପନ୍ନ, ପୁନଶ୍ଚ ଅପଞ୍ଚୀକୃତ ପଞ୍ଚମହାଭୂତାଭିମାନୀ, ଆଉ ସେ ସର୍ବ ମାଳାନ୍ତର୍ଗତ ସୂତ୍ରତୁଲ୍ୟ ପରିବ୍ୟାପ୍ତ ଅଛନ୍ତି ବୋଲି ତାହାଙ୍କୁ ସୂତ୍ରାତ୍ମା ବୋଲାଯାଏ; ସେ ଜ୍ଞାନଶକ୍ତିସମ୍ପନ୍ନ ଅନ୍ତଃକରଣରେ ଉପହିତ ହୋଇଅଛନ୍ତି ବୋଲି ହିରଣ୍ୟଗର୍ଭ ନାମରେ ଅଭିହିତ ହୁଅନ୍ତି । ଆଉ ମଧ୍ୟ ସେ କ୍ରିୟାଶକ୍ତିସମ୍ପନ୍ନ ପ୍ରାଣର ଅଧିଦେବତା ବୋଲି ପ୍ରାଣ ନାମରେ କଥିତ ହୁଅନ୍ତି ।

ଅସ୍ୟୈଷା ସମଷ୍ଟିଃ ସ୍ଥୂଳପ୍ରପଞ୍ଚାପେକ୍ଷୟା ସୂକ୍ଷ୍ମତ୍ୱାତ୍ ସୂକ୍ଷ୍ମଶରୀରଂ, ବିଜ୍ଞାନମୟାଦିକୋଷତ୍ରୟଂ, ଜାଗ୍ରଦ୍ବାସନାମୟତ୍ୱାତ୍ ସ୍ୱପ୍ନଃ । ଅତଃ ସ୍ଥୂଳ-ପ୍ରପଞ୍ଚଲୟସ୍ଥାନମିତ ଚ୍ୟେତେ । ଏତଦ୍‌ବ୍ୟଷ୍ଟ୍ୟୁପହିତଂ ଚୈତନ୍ୟଂ ତୈଜସୋ ଭବତ ତେଜୋମୟାନ୍ତଃକରଣୋପହିତତ୍ୱାତ୍ । ୪୯ ।

ଯେଉଁ ହିରଣ୍ୟଗର୍ଭୋପାଧିକ ସୂକ୍ଷ୍ମଶରୀରସମଷ୍ଟି ତାହା ସ୍ଥୂଳପ୍ରପଞ୍ଚ ଅପେକ୍ଷା ସୂକ୍ଷ୍ମ ହେବାରୁ ସୂକ୍ଷ୍ମଶରୀର ବୋଲଯାଏ ଏବଂ ଏହାକୁ ବିଜ୍ଞାନମୟାଦି କୋଷତ୍ରୟ ଓ ଜାଗ୍ରତ୍ ଅବସ୍ଥା ବୋଲଯାଏ । ଜାଗ୍ରତ୍ ଅବସ୍ଥାରେ ବାସନାପ୍ରଯୁକ୍ତ ହେବାରୁ ଏହାକୁ ସ୍ୱପ୍ନ ମଧ୍ୟ ବୋଲଯାଏ । ଏହି ସୂକ୍ଷ୍ମଶରୀରସମଷ୍ଟି ସମୁଦାୟ ସ୍ଥୂଳ ପ୍ରପଞ୍ଚର ଲୟସ୍ଥାନ ବୋଲି କଥିତ ହୁଏ । ଏହି ସୂକ୍ଷ୍ମଶରୀରର ବ୍ୟଷ୍ଟିରେ, ଅର୍ଥାତ୍ ପ୍ରତ୍ୟେକ ସୂକ୍ଷ୍ମଶରୀରରେ ଯେଉଁ ପୃଥକ୍ ପୃଥକ୍ ଚୈତନ୍ୟ ଉପହିତ ହୁଅନ୍ତି, ତାହାଙ୍କୁ ତୈଜସ ବୋଲଯାଏ; କାରଣ, ସେ ତେଜୋମୟ ଅନ୍ତଃକରଣରେ ପ୍ରତିଫଳିତ ହୁଅନ୍ତି ।

ଅସ୍ୟାପୀୟଂ ବ୍ୟଷ୍ଟିଃ ସ୍ଥୂଳଶରୀରାପେକ୍ଷୟା ସୂକ୍ଷ୍ମତ୍ୱାତ୍ ସୂକ୍ଷ୍ମଶରୀରଂ ବିଜ୍ଞାନମୟାଦିକୋଷତ୍ରୟଂ ଜାଗ୍ରଦ୍ବାସନାମୟତ୍ୱାତ୍ ସ୍ୱପ୍ନଃ । ଅତଏବ ସ୍ଥୂଳଶରୀରଲୟସ୍ଥାନମିତ ଚ୍ୟେତେ । ଏତୌ ସୂତ୍ରାତ୍ମତୈଜସୌ ତଦାନୀଂ ସୂକ୍ଷ୍ମାଭିର୍ମନୋବୃତ୍ତିଭିଃ ସୂକ୍ଷ୍ମବିଷୟାନନୁଭବତଃ । "ପ୍ରବିବିକ୍ତଭୁକ୍ ତୈଜସଃ" ଇତ୍ୟାଦିଶ୍ରୁତେଃ । ୫୦ ।

ଏହି ତୈଜସ-ଉପାଧିକ ଯେଉଁ ସୂକ୍ଷ୍ମଶରୀରର ବ୍ୟଷ୍ଟି, ତାହା ସ୍ଥୂଳଶରୀର ଅପେକ୍ଷା ସୂକ୍ଷ୍ମତର ହୋଇଥିବାରୁ ସୂକ୍ଷ୍ମଶରୀର ବୋଲଯାଏ ଓ ଏହାକୁ ବିଜ୍ଞାନମୟାଦି କୋଷତ୍ରୟ ଏବଂ ଜାଗ୍ରଦବସ୍ଥାର ବାସନାମୟତା ହେତୁରୁ ସ୍ୱପ୍ନ ମଧ୍ୟ କୁହାଯାଏ । ଅତଏବ କଥିତ ଅଛି ଯେ, ଏହି ସୂକ୍ଷ୍ମଶରୀର ବ୍ୟଷ୍ଟି ସ୍ଥୂଳଶରୀରର ଲୟସ୍ଥାନ ହୁଏ । ପୁନଶ୍ଚ, ଏହି ସୂତ୍ରାତ୍ମା ଓ ତୈଜସ ଉଭୟେ ସୁଷୁପ୍ତିକାଳରେ ସୂକ୍ଷ୍ମ ମନୋବୃତ୍ତିଦ୍ୱାରା ସୂକ୍ଷ୍ମ ବିଷୟ ଭୋଗ କରନ୍ତି । ଅର୍ଥାତ୍ ବାସନାମୟ ଶବ୍ଦାଦିବିଷୟ ଅନୁଭବ କରନ୍ତି । ଏ ବିଷୟରେ ଶ୍ରୁତି ମଧ୍ୟ କହେ—

ଅତ୍ରାପି ସମଷ୍ଟିବ୍ୟଷ୍ଟ୍ୟୋସ୍ତଦୁପହିତସୂତ୍ରାତ୍ମତୈଜସୟୋଶ୍ଚ ବନବୃକ୍ଷ-ବତ୍ତଦବଚ୍ଛିନ୍ନାକାଶବଚ୍ଚ ଜଳାଶୟଜଳବତ୍ତଦ୍‌ଗତପ୍ରତିବିମ୍ବିତାକାଶବଚ୍ଚା-ଭେଦଃ । ଏବଂ ସୂକ୍ଷ୍ମଶରୀରୋତ୍ପତ୍ତିଃ । ୫୧ ।

ଯେପରି ଏହି ଲିଙ୍ଗଶରୀର ସମଷ୍ଟି ଓ ବ୍ୟଷ୍ଟିରେ ପରସ୍ପର ବନ ଓ ବୃକ୍ଷତୁଲ୍ୟ ଅଥବା ଜଳାଶୟ ଓ ଜଳତୁଲ୍ୟ ଅଭିନ୍ନ ହୁଏ, ଏବଂ ଯେପରି ପରସ୍ପର ବୃକ୍ଷାବଚ୍ଛିନ୍ନ ଆକାଶ ସହିତ ବନାବଚ୍ଛିନ୍ନ ଆକାଶତୁଲ୍ୟ, ଅଥବା ଜଳରେ ପ୍ରତିବିମ୍ବିତ ଆକାଶ ସହିତ ଜଳାଶୟରେ ପ୍ରତିବିମ୍ବିତ ଆକାଶତୁଲ୍ୟ ଅଭିନ୍ନ ହୁଏ, ସେହିପରି ସମସ୍ତ ଲିଙ୍ଗଶରୀରରେ ଉପହିତ ଚୈତନ୍ୟ ହିରଣ୍ୟଗର୍ଭ ଏବଂ ପ୍ରତ୍ୟେକ ଲିଙ୍ଗଶରୀରରେ ଉପହିତ ଚୈତନ୍ୟ ତୈଜସ—ଏ ଦୁହିଙ୍କ ମଧ୍ୟରେ କୌଣସି ଭେଦ ନାହିଁ ।

ଏହିଠାରେ ସୂକ୍ଷ୍ମଶରୀରର ଉତ୍ପତ୍ତିପ୍ରକରଣ ଶେଷ ହେଲା ।

**ସ୍ଥୂଳଭୂତାନି ତୁ ପଞ୍ଚୀକୃତାନି । ପଞ୍ଚୀକରଣଂ ତୁ ଆକାଶାଦିପଞ୍ଚସ୍ୱେକୈକଂ ଦ୍ୱିଧା ସମଂ ବିଭଜ୍ୟ ତେଷୁ ଦଶସୁ ଭାଗେଷୁ ପ୍ରାଥମିକାନ୍ ପଞ୍ଚଭାଗାନ୍ ପ୍ରତ୍ୟେକଂ ଚତୁର୍ଦ୍ଧା ସମଂ ବିଭଜ୍ୟ ତେଷାଂ ଚତୁର୍ଣ୍ଣାଂ ଭାଗାନାଂ ସ୍ୱସ୍ୱଦ୍ୱିତୀୟାର୍ଦ୍ଧଭାଗଂ ପରିତ୍ୟଜ୍ୟ ଭାଗାନ୍ତରେଷୁ ସଂଯୋଜନମ୍ ।**

**ତଦୁକ୍ତଂ—ଦ୍ୱିଧା ବିଧାୟ ଚୈକୈକଂ ଚତୁର୍ଦ୍ଧା ପ୍ରଥମଂ ପୁନଃ ।**
**ସ୍ୱସ୍ୱେତରଦ୍ୱିତୀୟାଂଶୈର୍ଯୋଜନାତ୍ ପଞ୍ଚ ପଞ୍ଚ ତେ । ଇତି । ୫୨ ।**

ପଞ୍ଚୀକୃତ ପଞ୍ଚମହାଭୂତର ନାମ ସ୍ଥୂଳଭୂତ । ପଞ୍ଚୀକରଣ ପ୍ରକରଣ କୁହାଯିବ । ପ୍ରଥମତଃ ଆକାଶ ପ୍ରଭୃତି ପଞ୍ଚଭୂତର ପ୍ରତ୍ୟେକକୁ ସମାନ ଦୁଇ ଦୁଇ ଅଂଶରେ ବିଭକ୍ତ କରି ପ୍ରଥମ ଅର୍ଦ୍ଧାଂଶକୁ ନିଜପାଇଁ ରଖି ଅପର ଅର୍ଦ୍ଧାଂଶକୁ ପୁନର୍ବାର ଚାରି ଚାରି ଭାଗରେ ବିଭକ୍ତ କରି ତାହା ଅପର ଭୂତର ଅର୍ଦ୍ଧାଂଶରେ ଯୋଗ କରିବାକୁ ହେବ । ସେଥି ମଧ୍ୟରେ ପ୍ରଥମତଃ ଆକାଶକୁ ଦୁଇ ଭାଗରେ ବିଭକ୍ତ କରି ନିଜ ନିମନ୍ତେ ଅର୍ଦ୍ଧାଂଶ ରଖି ଅପର ଅର୍ଦ୍ଧାଂଶକୁ ପୁନର୍ବାର ଚାରି ଭାଗ କରି ସେହି ଚାରି ଭାଗର ଏକ ଭାଗ ବାୟୁରେ ଓ ଏକ ଏକ ଭାଗ ତେଜ, ଜଳ ଓ ପୃଥିବୀରେ ଯୋଗ କରିବ । ଏହିପରି ବାୟୁକୁ ପ୍ରଥମତଃ ଦୁଇ ଭାଗରେ ବିଭକ୍ତ କରି ଅର୍ଦ୍ଧାଂଶ ନିଜ ସକାଶେ ରଖି, ଅପର ଅର୍ଦ୍ଧାଂଶ ଚାରିଭାଗ କରି ସେହି ଚାରିଭାଗ ମଧ୍ୟରୁ ଏକ ଏକ ଭାଗ ଆକାଶ, ତେଜ, ଜଳ ଓ ପୃଥ୍ୱୀରେ ଯୋଗ କରିବ । ତଦ୍‌ବତ୍ ତେଜକୁ ପ୍ରଥମେ ଦୁଇ ଅଂଶ କରି ଅର୍ଦ୍ଧାଂଶ ନିଜ ସକାଶେ ରଖି ଅପର ଅର୍ଦ୍ଧାଂଶ ଚାରି ଭାଗ କରି ସେହି ଚାରି ଭାଗ ମଧ୍ୟରୁ ଏକ ଏକ ଭାଗ ଆକାଶ, ବାୟୁ, ଜଳ ଓ ପୃଥିବୀରେ ଯୋଗ କରିବ । ଏହିପରି ଜଳକୁ ସମଦ୍ୱିଖଣ୍ଡରେ ବିଭକ୍ତ କରି ଅର୍ଦ୍ଧାଂଶ ନିଜ ସକାଶେ ରଖି ଅପର ଅର୍ଦ୍ଧାଂଶକୁ ପୁନର୍ବାର ଚାରି ଭାଗ କରି ଏକ ଏକ ଭାଗ ଆକାଶ, ବାୟୁ, ତେଜ ଓ ପୃଥିବୀରେ ଯୋଗ କରିବ । ଏହିପରି ପୃଥିବୀକୁ ଦୁଇ ଭାଗ କରି ଅର୍ଦ୍ଧାଂଶ ନିଜ ସକାଶେ ରଖି ଅନ୍ୟ ଅର୍ଦ୍ଧାଂଶକୁ ଚାରିଭାଗ କରି ତାହାର ଏକ ଏକ ଭାଗ ଆକାଶ, ବାୟୁ, ତେଜ ଓ ଜଳରେ ଯୋଗ କରିବ । ଏହା ପଞ୍ଚୀକରଣର ବିଭାଗ ।

**ଅସ୍ୟାପ୍ରାମାଣ୍ୟଂ ନାଶଙ୍କନୀୟଂ ତ୍ରିବୃତ୍କରଣଶ୍ରୁତେଃ ପଞ୍ଚୀକରଣସ୍ୟାପ୍ୟୁପଲକ୍ଷଣାର୍ଥତ୍ୱାତ୍ । ପଞ୍ଚାନାଂ ପଞ୍ଚାତ୍ମକତ୍ୱେ ସମାନେଽପି "ବୈଶେଷ୍ୟାତ୍ତୁ ତଦ୍ୱାଦସ୍ତଦ୍ୱାଦଃ" ଇତି ନ୍ୟାୟେନ ଆକାଶାଦିବ୍ୟପଦେଶଃ ସମ୍ଭବତି । ୫୩ ।**

ଏହି ପଞ୍ଚୀକରଣର ପ୍ରାମାଣ୍ୟ ବିଷୟରେ ଆଶଙ୍କା କରାଯାଇ ନ ପାରେ । କାରଣ, ତ୍ରିବୃତ୍କରଣଶ୍ରୁତି ସେଥିରେ ପ୍ରମାଣ । ତ୍ରିବୃତ୍କରଣଦ୍ୱାରା ପଞ୍ଚୀକରଣ ଉପଲକ୍ଷିତ ହୁଏ । ପଞ୍ଚୀକରଣ ପରେ ଆକାଶାଦିପଞ୍ଚଭୂତ ପ୍ରତ୍ୟେକେ ପଞ୍ଚାତ୍ମକ ହେଲେ ସୁଦ୍ଧା ନିଜ ନିଜ ଅଂଶର ଆଧିକ୍ୟ ହେତୁରୁ ଆକାଶାଦି ନାମରେ ବ୍ୟବହୃତ ହୁଅନ୍ତି । ସାଧାରଣ ନ୍ୟାୟ ଅନୁସାରେ ଯାହାର ବୈଶିଷ୍ଟ୍ୟ ବା ଆଧିକ୍ୟ ଥାଏ ତାହାର ନାମ ବିଖ୍ୟାତ । ଏହି ନ୍ୟାୟ ଅନୁସାରେ ଆକାଶରେ ଆକାଶଭାଗ ଅଧିକ ଥିବାରୁ ତାହାକୁ ଆକାଶ କହନ୍ତି । ଅନ୍ୟ ଭୂତଚତୁଷ୍ଟୟ ମଧ୍ୟ ଏହି ନ୍ୟାୟ-ଅନୁସାରେ ବ୍ୟବହୃତ ହୁଅନ୍ତି ।

**ତଦାନୀଂ ଆକାଶେ ଶବ୍ଦୋଽଭିବ୍ୟଜ୍ୟତେ, ବାୟୌ ଶବ୍ଦସ୍ପର୍ଶୌ, ଅଗ୍ନୌ ଶବ୍ଦସ୍ପର୍ଶରୂପାଣି, ଅପ୍ସୁ ଶବ୍ଦସ୍ପର୍ଶରୂପରସାଃ, ପୃଥିବ୍ୟାଂ ଶବ୍ଦସ୍ପର୍ଶରୂପରସଗନ୍ଧାଶ୍ଚ । ୫୪ ।** *

ଏହିପରି ପଞ୍ଚୀକରଣ ସମୟରେ ଆକାଶରେ ଶବ୍ଦଗୁଣ, ବାୟୁରେ ଶବ୍ଦ ଓ ସ୍ପର୍ଶଗୁଣ, ତେଜରେ ଶବ୍ଦ, ସ୍ପର୍ଶ, ଓ ରୂପଗୁଣ, ଜଳରେ ଶବ୍ଦ, ସ୍ପର୍ଶ, ରୂପ ଓ ରସଗୁଣ ଏବଂ ପୃଥିବୀରେ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧଗୁଣ ଅଭିବ୍ୟକ୍ତ ରୂପରେ ଥାଏ ।

**ଏତେଭ୍ୟଃ ପଞ୍ଚୀକୃତେଭ୍ୟୋ ଭୂତେଭ୍ୟୋ ଭୂର୍ଭୁବଃ ସ୍ୱର୍ମହର୍ଜନସ୍ତପଃ ସତ୍ୟମିତ୍ୟେତନ୍ନାମକାନାଂ ଉପର୍ଯ୍ୟୁପରି ବିଦ୍ୟମାନାନାମତଳବିତଳସୁତଳରସାତଳତଳାତଳମହାତଳପାତାଳନାମକାନାମଧୋଽଧୋ ବିଦ୍ୟମାନାନାଂ ଲୋକାନାଂ ବ୍ରହ୍ମାଣ୍ଡସ୍ୟ ତଦନ୍ତର୍ଗତଚତୁର୍ବିଧସ୍ଥୂଳଶରୀରାଣାଂ ଅନ୍ନପାନାଦୀନାଞ୍ଚୋତ୍ପତ୍ତିର୍ଭବତି । ୫୫ ।**

---

* ଶବ୍ଦୈକଗୁଣମାକାଶଂ ଶବ୍ଦସ୍ପର୍ଶଗୁଣୋ ମରୁତ୍ ।
ଶବ୍ଦସ୍ପର୍ଶରୂପଗୁଣୈସ୍ତ୍ରିଗୁଣଂ ତେଜ ଉଚ୍ୟତେ ।
ଶବ୍ଦସ୍ପର୍ଶରୂପରସଗୁଣୈରାପଶ୍ଚତୁର୍ଗୁଣଃ ।
ଶବ୍ଦସ୍ପର୍ଶରୂପରସଗନ୍ଧୈଃ ପଞ୍ଚଗୁଣା ମହୀ ॥ ପଞ୍ଚୀକରଣବାର୍ତ୍ତିକମ୍ — ୪ । ୫ ॥

ଏହି ପଞ୍ଚୀକୃତ ଭୂତପଞ୍ଚକରୁ ଉପର ଉପର କ୍ରମରେ ଭୂର୍ଲୋକ, ଭୁବର୍ଲୋକ, ସ୍ୱର୍ଲୋକ, ମହର୍ଲୋକ, ଜନଲୋକ, ତପଃଲୋକ ଓ ସତ୍ୟଲୋକ—ଏହି ସପ୍ତଲୋକ ବିଦ୍ୟମାନ ଅଛି ; ଏବଂ ତଳକୁ ତଳକୁ କ୍ରମରେ ଅତଳ, ବିତଳ, ସୁତଳ, ରସାତଳ, ତଳାତଳ, ମହାତଳ ଓ ପାତାଳ—ଏପରି ସପ୍ତଲୋକ ବର୍ତ୍ତମାନ ଅଛି । ଏହି ଚତୁର୍ଦ୍ଦଶ ଲୋକର ଆଧାର ବ୍ରହ୍ମାଣ୍ଡ ହୁଏ; ଏବଂ ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ୍ଜ—ଏମାନେ ବ୍ରହ୍ମାଣ୍ଡ ଅନ୍ତର୍ଗତ । ଏଥିରେ ଏହି ଚତୁର୍ବିଧ ଶରୀରର ଉପଯୋଗୀ ଅନ୍ନପାନପ୍ରଭୃତି ମଧ୍ୟ ଉତ୍ପନ୍ନ ହୁଏ ।

ଚତୁର୍ବିଧସ୍ଥୂଳଶରୀରାଣି ଜରାୟୁଜାଣ୍ଡଜସ୍ୱେଦଜଉଦ୍ଭିଜ୍ଜାଖ୍ୟାନି । ଜରାୟୁଜାନି ଜରାୟୁଭ୍ୟୋ ଜାତାନି ମନୁଷ୍ୟପଶ୍ୱାଦୀନି । ଅଣ୍ଡଜାନି—ଅଣ୍ଡେଭ୍ୟୋ ଜାତାନି ପକ୍ଷିପନ୍ନଗାଦୀନି । ସ୍ୱେଦଜାନି—ସ୍ୱେଦେଭ୍ୟୋ ଜାତାନି ଯୂକମଶକାଦୀନି । ଉଦ୍‌ଭିଜ୍ଜାନି—ଭୂମିମୁଦ୍‌ଭିଦ୍ୟ ଜାତାନି ଲତାବୃକ୍ଷାଦୀନି । ୫୬ ।

ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଓ ଉଦ୍ଭିଜ୍ଜ ଏହି ଚତୁର୍ବିଧ ଶରୀରକୁ ସ୍ଥୂଳଶରୀର ବୋଲାଯାଏ । ଜରାୟୁ (ଗର୍ଭସ୍ଥ ସନ୍ତାନ ରହିବା ଚର୍ମମୁଣା)ରୁ ଉତ୍ପନ୍ନ ମନୁଷ୍ୟ; ପଶୁ ପ୍ରଭୃତିକୁ ଜରାୟୁଜ ବୋଲାଯାଏ । ଅଣ୍ଡରୁ ଉତ୍ପନ୍ନ ସର୍ପ ପକ୍ଷୀ ପ୍ରଭୃତିକୁ ଅଣ୍ଡଜ କହନ୍ତି । ସ୍ୱେଦ (ଝାଳ)ରୁ ଉତ୍ପନ୍ନ ଯୂକ ବା ଉକୁଣି, ମଶକ ପ୍ରଭୃତିକୁ ସ୍ୱେଦଜ କୁହାଯାଏ । ଯାହା ସବୁ ଭୂମି ଭେଦ କରି ଉତ୍ପନ୍ନ ହୁଅନ୍ତି, ସେ ପ୍ରକାର ବୃକ୍ଷ-ଲତା ପ୍ରଭୃତିକୁ ଉଦ୍‌ଭିଜ୍ଜ କହନ୍ତି ।

ଅତ୍ରାପି ଚତୁର୍ବିଧସ୍ଥୂଳଶରୀରମ୍ । ଏକାନେକବୁଦ୍ଧିବିଷୟତୟା ବନବଦ୍ ଜଳାଶୟବଦ୍ୱା ସମଷ୍ଟିଃ, ବୃକ୍ଷବଜ୍ଜଳବଦ୍ୱା ବ୍ୟଷ୍ଟିରପି ଭବତି । ଏତତ୍‌ସମଷ୍ଟ୍ୟୁପହିତଂ ଚୈତନ୍ୟଂ ବୈଶ୍ୱାନରୋ ବିରାଡ଼ିତି ଚୋଚ୍ୟତେ । ସର୍ବନରାଭିମାନିତ୍ୱାଦ୍ ବିବିଧଂ ରାଜମାନତ୍ୱାଚ୍ଚ ଅସ୍ୟୈଷା ସମଷ୍ଟିଃ ସ୍ଥୂଳ-ଶରୀରଂ, ଅନ୍ନବିକାରତ୍ୱାଦନ୍ନମୟକୋଷଃ । ସ୍ଥୂଳଭୋଗାୟତନତ୍ୱାଜ୍ଜାଗ୍ରଦିତି ଚୋଚ୍ୟତେ । ୫୭ ।

ଯେପରି ବନ ବୃକ୍ଷସମୂହର ସମଷ୍ଟି ହୁଏ ଓ ପ୍ରତ୍ୟେକ ବୃକ୍ଷ ବନର ବ୍ୟଷ୍ଟି ହୁଏ, ଏବଂ ଜଳାଶୟ ଜଳର ସମଷ୍ଟି ହୁଏ ଓ ଜଳ ଜଳାଶୟର ବ୍ୟଷ୍ଟି ହୁଏ, ସେହିପରି ଏହି ଚତୁର୍ବିଧ ସ୍ଥୂଳଶରୀର ଏକବୁଦ୍ଧି ବିଶିଷ୍ଟ ହେଲେ ସମଷ୍ଟି, ଆଉ ଭିନ୍ନ ଭିନ୍ନ ବୁଦ୍ଧି ବିଶିଷ୍ଟ ହେଲେ ବ୍ୟଷ୍ଟି କୁହାଯାନ୍ତି । ଏହି ସ୍ଥୂଳଶରୀର ସମଷ୍ଟିରେ ଉପହିତ ଚୈତନ୍ୟ ସମୁଦାୟ ଦେହର ଅଭିମାନୀ ହେବାରୁ ବୈଶ୍ୱାନର ଓ ଅନେକପ୍ରକାର ଦେହର ପ୍ରକାଶମାନ ହେବାରୁ

ବିରାଟ ଶବ୍ଦରେ କଥିତ ହୁଅନ୍ତି । ପୁନଶ୍ଚ, ଏହି ସମଷ୍ଟି ରୂପ ସ୍ଥୂଳଶରୀରରେ ଅନ୍ନବିକାର ହେତୁରୁ ତାହାଙ୍କୁ ଅନ୍ନମୟ କୋଷ କୁହାଯାଏ । ସ୍ଥୂଳଭୋଗର ଆୟତନ ହେତୁରୁ ଏହାକୁ ଜାଗ୍ରଦବସ୍ଥା ମଧ୍ୟ କହନ୍ତି ।

**ଏତଦ୍ ବ୍ୟଷ୍ଟ୍ୟୁପହିତଂ ଚୈତନ୍ୟଂ ବିଶ୍ୱ ଇତ୍ୟୁଚ୍ୟତେ । ସୂକ୍ଷ୍ମଶରୀରାଭିମାନଂ ଅପରିତ୍ୟଜ୍ୟ ସ୍ଥୂଳଶରୀରାଦିପ୍ରବିଷ୍ଟତ୍ୱାତ୍ । ଅସ୍ୟାପ୍ୟେଷା ବ୍ୟଷ୍ଟିଃ ସ୍ଥୂଳଶରୀରଂ ଅନ୍ନବିକାରତ୍ୱାତ୍ ଅନ୍ନମୟକୋଷଃ । ସ୍ଥୂଳଭୋଗାୟତନତ୍ୱାଜ୍ଜାଗ୍ରଦିତ ଚୋଚ୍ୟତେ । ୪୮ ।**

ଏହି ସ୍ଥୂଳଶରୀରର ବ୍ୟଷ୍ଟିରେ; ଅର୍ଥାତ୍ ପୃଥକ୍ ପୃଥକ୍ ପ୍ରତ୍ୟେକ ସ୍ଥୂଳଶରୀରରେ ଉପହିତ ଚୈତନ୍ୟକୁ ବିଶ୍ୱ ବୋଲାଯାଏ; କାରଣ, ଏହି ଚୈତନ୍ୟ ସୂକ୍ଷ୍ମ ଶରୀରାଭିମାନ ପରିତ୍ୟାଗ ନ କରି ସ୍ଥୂଳଶରୀରରେ ଅନୁପ୍ରବିଷ୍ଟ ହେବାରୁ ଏହାକୁ ବିଶ୍ୱ କହନ୍ତି । ଏହି ସ୍ଥୂଳଶରୀରର ବ୍ୟଷ୍ଟିକୁ ସ୍ଥୂଳଶରୀର ବୋଲାଯାଏ ଏବଂ ଅନ୍ନବିକାର ହେତୁରୁ ଏହାକୁ ଅନ୍ନମୟ କୋଷ ବୋଲାଯାଏ । ଆଉ ଜାଗ୍ରଦବସ୍ଥାରେ ସ୍ଥୂଳପ୍ରପଞ୍ଚବିଷୟକ ଭୋଗର ଆୟତନ ବୋଲି ଏହା ଜାଗ୍ରତ୍ ଶବ୍ଦରେ ଅଭିହିତ ହୁଏ ।

**ତଦାନୀମେତୌ ବିଶ୍ୱବୈଶ୍ୱାନରୌ ଦିଗ୍ ବାତାର୍କପ୍ରଚେତୋଽଶ୍ୱିଭିଃ କ୍ରମାନ୍ନିୟନ୍ତ୍ରିତେନ ଶ୍ରୋତ୍ରାଦୀନ୍ଦ୍ରିୟପଞ୍ଚକେନ କ୍ରମାଚ୍ଛବ୍ଦସ୍ପର୍ଶରୂପରସଗନ୍ଧାନ୍, ଅଗ୍ନୀନ୍ଦ୍ରୋପେନ୍ଦ୍ରଯମପ୍ରଜାପତିଭିଃ କ୍ରମାନ୍ନିୟନ୍ତ୍ରିତେନ ବାଗାଦୀନ୍ଦ୍ରିୟପଞ୍ଚକେନ କ୍ରମାଦ୍ବଚନାଦାନଗମନବିସର୍ଗାନନ୍ଦାନ୍, ଚନ୍ଦ୍ରଚତୁର୍ମୁଖଶଙ୍କରାଚ୍ୟୁତୈଃ କ୍ରମାନ୍ନିୟନ୍ତ୍ରିତେନ ମନୋବୁଦ୍ଧ୍ୟହଂକାରଚିତ୍ତାଖ୍ୟେନାନ୍ତରିନ୍ଦ୍ରିୟଚତୁଷ୍କେଣ କ୍ରମାତ୍ ସଂଶୟନିଶ୍ଚୟାହଙ୍କାର୍ଯ୍ୟଚୈତାଂଶ୍ଚ ସର୍ବାନେତାନ୍ ସ୍ଥୂଳବିଷୟାନନୁଭବତଃ । "ଜାଗରିତସ୍ଥାନୋବହିଃପ୍ରଜ୍ଞଃ" ଇତ୍ୟାଦିଶ୍ରୁତେଃ । ୪୯ ।**

ଜାଗ୍ରଦବସ୍ଥାରେ ଏହି ବିଶ୍ୱ ଓ ବୈଶ୍ୱାନର ଦିକ୍‌କର୍ତ୍ତୃକ ପ୍ରେରଣା ହେତୁରୁ ଶ୍ରୋତ୍ରଦ୍ୱାରା ଶବ୍ଦ, ବାୟୁକର୍ତ୍ତୃକ ପ୍ରେରଣା ହେତୁରୁ ତ୍ୱଗିନ୍ଦ୍ରିୟଦ୍ୱାରା ସ୍ପର୍ଶ; ଅର୍କ (ସୂର୍ଯ୍ୟ) କର୍ତ୍ତୃକ ପ୍ରେରଣା ହେତୁରୁ ଦର୍ଶନେନ୍ଦ୍ରିୟଦ୍ୱାରା ରୂପ, ପ୍ରଚେତା (ବରୁଣ) କର୍ତ୍ତୃକ ପ୍ରେରଣା ହେତୁରୁ ରସନେନ୍ଦ୍ରିୟଦ୍ୱାରା ରସ, ଅଶ୍ୱିନୀକୁମାରକର୍ତ୍ତୃକ ପ୍ରେରଣା ହେତୁରୁ ଘ୍ରାଣେନ୍ଦ୍ରିୟଦ୍ୱାରା ଗନ୍ଧ ଅନୁଭବ କରନ୍ତି ।

ଜାଗ୍ରଦବସ୍ଥାରେ ଏହି ବିଶ୍ୱ ଓ ବୈଶ୍ୱାନର ଅଗ୍ନିକର୍ତ୍ତୃକ ପ୍ରେରଣା ହେତୁରୁ ବାଗିନ୍ଦ୍ରିୟଦ୍ୱାରା ବଚନ; ଇନ୍ଦ୍ରକର୍ତ୍ତୃକ ପ୍ରେରଣାରେ ପାଣିଦ୍ୱାରା ଆଦାନ; ଉପେନ୍ଦ୍ର ବା ବିଷ୍ଣୁଙ୍କ ପ୍ରେରଣା ହେତୁରୁ ପାଦଦ୍ୱାରା ଗମନ; ଯମକର୍ତ୍ତୃକ ପ୍ରେରଣା ହେତୁରୁ ପାୟୁଦ୍ୱାରା ତ୍ୟାଗ ଓ ପ୍ରଜାପତିକର୍ତ୍ତୃକ ପ୍ରେରଣାରେ ଉପସ୍ଥଇନ୍ଦ୍ରିୟଦ୍ୱାରା ଆନନ୍ଦ—ଏପରି ସମୁଦାୟ ସ୍ଥୂଳ ବାହ୍ୟ ବିଷୟ ଅନୁଭବ କରନ୍ତି । ପୁନଶ୍ଚ; ଜାଗ୍ରଦ୍‌ବସ୍ଥାରେ ଏହି ବିଶ୍ୱ ଓ ବୈଶ୍ୱାନର ଚନ୍ଦ୍ରକର୍ତ୍ତୃକ ପ୍ରେରଣାରେ ସଂକଳ୍ପବିକଳ୍ପାତ୍ମକ ଅନ୍ତଃକରଣବୃତ୍ତିସ୍ୱରୂପ ମନଦ୍ୱାରା ସଂକଳ୍ପବିକଳ୍ପାଦି, ଚତୁର୍ମୁଖ ବା ବ୍ରହ୍ମାଙ୍କ ପ୍ରେରଣା ହେତୁରୁ ନିଶ୍ଚୟାତ୍ମକ ଅନ୍ତଃକରଣବୃତ୍ତିସ୍ୱରୂପ ବୁଦ୍ଧିଦ୍ୱାରା ନିଶ୍ଚୟକରଣ, ଶଙ୍କରକର୍ତ୍ତୃକ ପ୍ରେରଣା ହେତୁରୁ ଅଭିମାନାତ୍ମକ ଅନ୍ତଃକରଣ ବୃତ୍ତିସ୍ୱରୂପ ଅହଂକାରଦ୍ୱାରା ଅହଂଭାବ ଓ ଅଚ୍ୟୁତକର୍ତ୍ତୃକ ପ୍ରେରଣାରୁ ଅନୁସନ୍ଧାନାତ୍ମକ ଅନ୍ତଃକରଣବୃତ୍ତିସ୍ୱରୂପ ଚିତ୍ତଦ୍ୱାରା ଚୈତ୍ୟଭାବ—ଏହି ସମୁଦାୟ ବାହ୍ୟବିଷୟ ଅନୁଭବ କରନ୍ତି ।

ଏ ବିଷୟରେ ଶ୍ରୁତି ମଧ୍ୟ କହେ ଯେ, ଜାଗ୍ରଦବସ୍ଥାରେ ବିଶ୍ୱ ପ୍ରତ୍ୟେକ ବାହ୍ୟବିଷୟ ଭୋଗ କରେ ଓ ବୈଶ୍ୱାନର ମଧ୍ୟ ଏ ସମସ୍ତ ସ୍ଥୂଳବିଷୟ ଭୋଗ କରେ ।

**ଅନୟୋଃ ସ୍ଥୂଳବ୍ୟଷ୍ଟିସମଷ୍ଟ୍ୟୋସ୍ତଦୁପହିତୟୋର୍ବିଶ୍ୱ-ବୈଶ୍ୱାନରୟୋଶ୍ଚ ବନବୃକ୍ଷବତ୍ତଦବଚ୍ଛିନ୍ନାକାଶବଚ୍ଚ ଜଳାଶୟ ଜଳବତ୍ ତଦ୍‌ଗତପ୍ରତିବିମ୍ବାକାଶବଚ୍ଚ ବା ପୂର୍ବବଦଭେଦଃ । ଏବଂ ପଞ୍ଚୀକୃତ-ପଞ୍ଚମହାଭୂତେଭ୍ୟଃ ସ୍ଥୂଳପ୍ରପଞ୍ଚୋତ୍ପତ୍ତିଃ । ୭୦ ।**

ଯେପରି ବନ ସହିତ ବୃକ୍ଷର ଏବଂ ଜଳାଶୟ ସହିତ ଜଳର ଭେଦ ନାହିଁ, ସେହିପରି ସ୍ଥୂଳ ଶରୀର-ସମଷ୍ଟି ସହିତ ସ୍ଥୂଳ ଶରୀରବ୍ୟଷ୍ଟିର ମଧ୍ୟ ଭେଦ ନାହିଁ ଏବଂ ଯେପରି ବନଗତ ଆକାଶ ସହିତ ବୃକ୍ଷଗତ ଆକାଶର ଆଉ ଜଳାଶୟରେ ପ୍ରତିବିମ୍ବିତାକାଶ ସହିତ ଜଳଗତ ପ୍ରତିବିମ୍ବାକାଶର ଭେଦ ନାହିଁ, ସେହିପରି ସ୍ଥୂଳଶରୀର ସମଷ୍ଟିଗତ ଚୈତନ୍ୟସ୍ୱରୂପ ବୈଶ୍ୱାନର ସହିତ ସ୍ଥୂଳଶରୀରର ବ୍ୟଷ୍ଟିଗତ ଚୈତନ୍ୟସ୍ୱରୂପ ବିଶ୍ୱର କୌଣସି ଭେଦ ନାହିଁ । ଏହି ଭାବରେ ପଞ୍ଚୀକୃତ ପଞ୍ଚ ମହାଭୂତରୁ ସ୍ଥୂଳଜଗତର ଉତ୍ପତ୍ତି ହୋଇଅଛି ।

ପୁନଶ୍ଚ ଏହି ଜଗଦୁତ୍ପତ୍ତି ସମ୍ବନ୍ଧରେ ଆଚାର୍ଯ୍ୟ ଶଙ୍କରଙ୍କ ଉକ୍ତି—

**"ବ୍ରହ୍ମାଶ୍ରୟା ସତ୍ତ୍ୱରଜସ୍ତମୋଗୁଣାତ୍ମିକା ମାୟାସ୍ତି, ତତଃ ଆକାଶଃ ସମ୍ଭୂତଃ "**

ତତ୍ତ୍ୱବୋଧ ।

ଅର୍ଥାତ୍ ବ୍ରହ୍ମଙ୍କର ଆଶ୍ରୟଭୂତା ତ୍ରିଗୁଣାତ୍ମିକା ମାୟାରୁ ଆକାଶାଦି କ୍ରମଶଃ ସୃଷ୍ଟି ହୋଇଅଛି ।

୦—ମାୟା ଓ ପ୍ରକୃତିର ବିବରଣ ଓ ତଦନୁସାରେ ଆତ୍ମାର ଅବସ୍ଥା ପରିବର୍ତ୍ତନ ।

ଅନାଦିରନ୍ତର୍ବର୍ତ୍ମୀ ପ୍ରମାଣାପ୍ରମାଣସାଧାରଣା ନ ସତୀ ନାସତୀ ନ ସଦସତୀ ସ୍ୱୟମବିକାରିଦ୍ ବିକାରହେତୌ ନିରୂପ୍ୟମାଣେଽସତୀ । ଅନିରୂପ୍ୟମାଣେ ସତୀ ଲକ୍ଷଣାଶୂନ୍ୟା ସା ମାୟେତ୍ୟୁଚ୍ୟତେ ॥

ସର୍ବୋପନିଷତ୍ ସାର । ୪ ।

ବର୍ତ୍ତମାନ ମାୟାର ଲକ୍ଷଣ କୁହା ଯାଉଛି—ଯାହା ଅନାଦି ଓ ଅନ୍ତର୍ବର୍ତ୍ମୀ, ଅର୍ଥାତ୍ କାର୍ଯ୍ୟୋତ୍ପାଦନରେ ସମର୍ଥ, ଯାହା ପ୍ରମାଣ ଓ ଅପ୍ରମାଣ ସାଧାରଣ, ଯାହାକୁ ସତ୍ତା, ଅସତ୍ତା ବା ସଦସତ୍ତା ବୋଲି ନିର୍ଦ୍ଧାରଣ କରିଯାଏ ନାହିଁ, ଯାହା ଲକ୍ଷଣାଶୂନ୍ୟା—ତାହାର ନାମ ମାୟା । ଅର୍ଥାତ୍, ବ୍ରହ୍ମ ସ୍ୱୟଂ ଅବିକାରୀ, କିନ୍ତୁ ମାୟା ବିକାରର ହେତୁ—ଏହିପରି ନିରୂପିତ ହେଲେ ମାୟା ଅସତ୍ତା ବୋଲି ନିର୍ଦ୍ଦିଷ୍ଟ ହୁଏ; କିନ୍ତୁ ଯେଉଁ ସମୟରେ ଏହି ପ୍ରକାର ନିରୂପିତ ହୁଏ ନାହିଁ, ସେ ସମୟରେ ମାୟା ସତ୍ତା; ସୁତରାଂ ମାୟାକୁ ଲକ୍ଷଣଶୂନ୍ୟା କୁହାଯାଏ, ତାହାକୁ କୌଣସି ପ୍ରକାରେ ନିର୍ଦ୍ଦିଷ୍ଟ କରିଯାଇ ପାରେ ନାହିଁ ।

ସ ଏବ ମାୟାପରିମୋହିତାତ୍ମା ଶରୀରମାସ୍ଥାୟ କରୋତି ସର୍ବମ୍ ।
ସ୍ତ୍ର୍ୟନ୍ନପାନାଦିବିଚିତ୍ରଭୋଗୈଃ ସ ଏବ ଜାଗ୍ରତ୍ ପରିତୃପ୍ତିମେତି ॥
ସ୍ୱପ୍ନେ ସ ଜୀବଃ ସୁଖଦୁଃଖଭୋକ୍ତା ସ୍ୱମାୟୟା କଳ୍ପିତ ଜୀବଲୋକେ ।
ସୁଷୁପ୍ତିକାଳେ ସକଳେ ବିଲୀନେ ତମୋଽଭିଭୂତଃ ସୁଖରୂପମେତି ॥
ପୁନଶ୍ଚ ଜନ୍ମାନ୍ତରକର୍ମଯୋଗାତ୍ ସ ଏବ ଜୀବଃ ସ୍ୱପିତି ପ୍ରବୁଦ୍ଧଃ ।
ପୁରତ୍ରୟେ କ୍ରୀଡ଼ତି ଯଶ୍ଚ ଜୀବଃ ତତସ୍ତୁ ଜାତଂ ସକଳଂ ବିଚିତ୍ରମ୍ ।
ଆଧାରମାନନ୍ଦମଖଣ୍ଡବୋଧଂ ଯସ୍ମିଁଲ୍ଲୟଂ ଯାତି ପୁରତ୍ରୟଞ୍ଚ ॥

କୈବଲ୍ୟ : ଉ : ୧୨-୧୪ ॥

ଆତ୍ମା ଅସଙ୍ଗ ଉଦାସୀନ ହେଲେ ମଧ୍ୟ ମାୟା, ଅର୍ଥାତ୍ ଆବରଣ ଓ ବିକ୍ଷେପକାରିଣୀ ଶକ୍ତିଦ୍ୱାରା ପରିମୋହିତ ହୋଇ ମନୁଷ୍ୟାଦିଦେହ ଅବଲମ୍ବନପୂର୍ବକ ସମସ୍ତ କାର୍ଯ୍ୟ କରୁଅଛି ଏବଂ ସ୍ତ୍ରୀ ଅନ୍ନପାନାଦି ବିବିଧ ଭୋଗ୍ୟବସ୍ତୁର ଉପଭୋଗଦ୍ୱାରା ଜାଗରଣ ଅବସ୍ଥା, ଅର୍ଥାତ୍ ବିଷୟୋପଲବ୍ଧିରୂପ ଅବସ୍ଥା ପ୍ରାପ୍ତ ହୋଇ ପରିତୃପ୍ତ ହେଉଅଛି । ପୁନଶ୍ଚ ଏହି ଜୀବହିଁ ସ୍ୱପ୍ନାବସ୍ଥାରେ ସ୍ୱୀୟ ମାୟାକଳ୍ପିତ ବିବିଧ ବାସନାମୟ ଭୋଗ୍ୟବସ୍ତୁର ଉପଭୋଗ କରୁଥାଏ

ଏବଂ ସମସ୍ତ ଇନ୍ଦ୍ରିୟ ଯେଉଁ ସମୟରେ ସ୍ୱସ୍ୱକାରଣରେ ବିଲୀନ ହୋଇଥାଏ ସେହି ସୁଷୁପ୍ତି ଅବସ୍ଥାରେ ଅଜ୍ଞାନାବୃତ ହୋଇ ଆନନ୍ଦସ୍ୱରୂପ ଉପଲବ୍ଧି କରେ ।

ଜୀବ ଏହିପ୍ରକାର ଆନନ୍ଦସ୍ୱରୂପ ବସ୍ତୁ ଉପଲବ୍ଧି କରି ମଧ୍ୟ ପୁନର୍ବାର ପୂର୍ବଜନ୍ମସମ୍ବନ୍ଧୀ କର୍ମବଶତଃ ସୁଷୁପ୍ତି ଅବସ୍ଥାରୁ ଜାଗ୍ରଦ୍ଦଶା ପ୍ରାପ୍ତ ହୁଏ । ଯେଉଁ ଜୀବ ସ୍ଥୂଳ, ସୂକ୍ଷ୍ମ ଓ ଜ୍ଞାନାତ୍ମକ, ସେହି ଜୀବରୁ ଅଭିନ୍ନରୂପ ଆତ୍ମାରୁ ସମସ୍ତ ଚରାଚର ବିଶ୍ୱ ଉତ୍ପନ୍ନ ହୋଇଅଛି ।

ବେଦରେ ମଧ୍ୟ ଏହି ବିଷୟ ବର୍ଣ୍ଣିତ—

**ଏଷା ସନତ୍ନୀ ସନମେବ ଜାତୈଷା ପୁରାଣୀ ପରି ସର୍ବଂ ବଭୂବ ।**
**ମହୀ ଦେବ୍ୟୁଷସୋ ବିଭାତୀ ସୈକେନୈକେନ ମିଷତା ବିଚଷ୍ଟେ ॥**
**ଆବି ର୍ବୈ ନାମ ଦେବତର୍ତେନାସ୍ତେ ପରୀବୃତା ।**
**ତସ୍ୟା ରୂପେଣେମେ ବୃକ୍ଷା ହରିତା ହରିତସ୍ରଜଃ ॥**

ଅଥର୍ବବେଦ ସଂ, ୧୦।୮।—୩୦-୩୧ ॥

ଅର୍ଥାତ୍, ଏହି ନିତ୍ୟା ପ୍ରକୃତି ସର୍ବଦା ପରିଣାମଯୁକ୍ତା, ପୁରାତନ, ନବ ନବ ରୂପଧାରିଣୀ ଏବଂ ସର୍ବକାର୍ଯ୍ୟରେ କାରଣରୂପରେ ବିରାଜମାନା । ପ୍ରତ୍ୟେକ ଗତିଶୀଳ ଜୀବର ସଙ୍ଗରେ ଏହି ପ୍ରକୃତି ନିଜର ସ୍ୱରୂପ ଓ ସତ୍ତ୍ୱ ପ୍ରକାଶ କରୁଅଛି । ଏହା ସତ୍ୟ ଯେ, ପ୍ରକୃତିନାମକ ଏକ ଦେବତା ସର୍ବବ୍ୟାପକ ପରମାତ୍ମାଙ୍କ ନିୟମରେ ଭିତରେ ଓ ବାହାରେ ଆଚ୍ଛାଦିତ ରହିଅଛି; ତାହାର ରୂପଦ୍ୱାରା ଏହି ହରିତ୍‌ବର୍ଣ୍ଣର ସୃଷ୍ଟିମୟ ବୃକ୍ଷରାଜି ହରିତ୍‌ବର୍ଣ୍ଣ ଧାରଣ କରିଅଛି ।

ଶ୍ୱେତାଶ୍ୱତର ଶ୍ରୁତିରେ ମଧ୍ୟ ଉକ୍ତ ଅଛି—

**ଅଜାମେକାଂ ଲୋହିତଶୁକ୍ଳକୃଷ୍ଣାଂ**
**ବହ୍ୱୀଃ ପ୍ରଜାଃ ସୃଜମାନାଂ ସରୂପାଃ ।**
**ଅଜୋ ହ୍ୟେକୋ ଜୁଷମାଣୋଽନୁଶେତେ**
**ଜହାତ୍ୟେନାଂ ଭୁକ୍ତଭୋଗାମଜୋଽନ୍ୟଃ । ୪-୫ ।**

ଅର୍ଥାତ୍—ଅଜ (ଆତ୍ମା) ଲୋହିତ-ଶୁକ୍ଳକୃଷ୍ଣବର୍ଣ୍ଣବିଶିଷ୍ଟ, ସ୍ୱସଦୃଶ ଓ ବହୁସନ୍ତାନ ପ୍ରସବିନୀ ଅଜା ପ୍ରତି ପ୍ରୀତିବିଶିଷ୍ଟ ହୋଇ ତାହାର ଅନୁସରଣ କରିଥାଏ । ଅନ୍ୟ ଅଜ ବା ଆତ୍ମା ପୁନର୍ବାର ତାହାକୁ ଭୋଗ କରି ପରିତ୍ୟାଗ କରେ ।

ଏହାର ତାତ୍ପର୍ଯ୍ୟ ଏହି—ଅଜ୍ଞଜୀବ ମାୟା ଓ ତାହାର କାର୍ଯ୍ୟଜାତକୁ ଆତ୍ମବୁଦ୍ଧି ଦ୍ୱାରା ସେବା କରି ନିଜକୁ ଶାନ୍ତ ବିବେଚନା କରେ ଏବଂ ଯେ ଗୁରୁ-ଉପଦେଶ ପାଇଅଛନ୍ତି, ଆତ୍ମା ଓ ଅନାତ୍ମାର ସ୍ୱରୂପ ବୁଝିଅଛନ୍ତି, ସେ ମାୟାର ଅଧୀନ ହୁଅନ୍ତି ନାହିଁ, ଅର୍ଥାତ୍ କାମାଦି କର୍ମରେ ଲିପ୍ତ ହୁଅନ୍ତି ନାହିଁ। ଏହି ଶ୍ରୁତିବାକ୍ୟରେ ଯେଉଁ 'ଲୋହିତ-ଶୁକ୍ଳକୃଷ୍ଣ' ଶବ୍ଦ ଦେଖାଯାଏ, ତା'ର ଅର୍ଥ ରଜଃ, ସତ୍ତ୍ୱ ଓ ତମୋଗୁଣ। ରଞ୍ଜନଗୁଣ ଅନୁସାରେ ଲୋହିତ ଶବ୍ଦର ଅର୍ଥ ରଜଃ, ପ୍ରକାଶଗୁଣ ଅନୁସାରେ ଶୁକ୍ଳଶବ୍ଦର ଅର୍ଥ ସତ୍ତ୍ୱ ଏବଂ ଆବରଣ ସ୍ୱଭାବ ହେତୁରୁ କୃଷ୍ଣଶବ୍ଦର ଅର୍ଥ ତମଃ। ଯଦ୍ୟପି ଗୁଣତ୍ରୟର ସାମ୍ୟାବସ୍ଥାରୂପ ଅଜା ଏକ, ତଥାପି ଅବୟବ ଧର୍ମ ଅନୁସାରେ ସେ ତ୍ରିଗୁଣଯୁକ୍ତା ବହୁପ୍ରଜାସର୍ଜ୍ଜନକାରଣୀ ଅଟେ।

ଏ ସମ୍ବନ୍ଧରେ ନିରାଲମ୍ବୋପନିଷଦ୍‌ରେ ଉକ୍ତ ହୋଇଛି—

**କା ପ୍ରକୃତିରିତି ? ବ୍ରହ୍ମଣଃ ସକାଶାନ୍ନାନାବିଚିତ୍ରଜଗନ୍ନିର୍ମାଣସାମର୍ଥ୍ୟ-ବୁଦ୍ଧିରୂପା ବ୍ରହ୍ମଶକ୍ତିରେବ ପ୍ରକୃତିଃ। ୮।**

ପ୍ରକୃତି କ'ଣ ?—ଏହାର ଉତ୍ତରରେ କୁହାଯାଇଛି କି, ନାନାବିଧ ଓ ଆଶ୍ଚର୍ଯ୍ୟ ଜଗତ୍‌ସମୂହର ନିର୍ମାଣସକାଶେ ସାମର୍ଥ୍ୟବିଶିଷ୍ଟା ଓ ବ୍ରହ୍ମଙ୍କଠାରୁ ପ୍ରକାଶିତା—ଏହିରୂପ ବୁଦ୍ଧି ସ୍ୱରୂପ ଯେଉଁ ବ୍ରହ୍ମଶକ୍ତି ତାହାହିଁ ପ୍ରକୃତି।

**ଠ—ପ୍ରକୃତି 'ପର' ଓ 'ଅପର' ନାମରେ ଦ୍ୱିବିଧ ଓ ତତ୍‌କର୍ତ୍ତୃକ ଜଗତ୍‌ସୃଷ୍ଟି।**

**ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ।**
**ଅହଂକାର ଇତୀୟଂ ମେ ଭିନ୍ନା ପ୍ରକୃତିରଷ୍ଟଧା ॥**
**ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍।**
**ଜୀବଭୂତାଂ ମହାବାହୋ ! ଯୟେଦଂ ଧାର୍ଯ୍ୟତେ ଜଗତ୍ ॥**
**ଏତଦ୍ ଯୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ॥**

ଗୀତା-୭। ୪-୫-୬।

ଭୂମି, ଜଳ, ଅନଳ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଂକାର—ଏହି ଆଠ ପ୍ରକାରେ ଭିନ୍ନ ଭିନ୍ନ ହୋଇ ପ୍ରକାଶ ପାଇଥିବା ମୋର ପ୍ରକୃତି; କିନ୍ତୁ ହେ ମହାବାହୋ ! ଏହି ଆଠଟି ହେଉଛି ମୋର ଅପର ପ୍ରକୃତି; ଏହାଛଡ଼ା ଆଉ ଏକ ମୋର ପର ପ୍ରକୃତି ଅଛି; ସେ ଚେତନ ବା ମନୁଷ୍ୟଠାରେ ଜୀବରୂପରେ ପ୍ରକାଶ ପାଏ। ସେହି ଆଧାରରେ ଏହି ଜଗତ୍ ଧୃତ ହୋଇଅଛି। ସ୍ଥାବରଜଙ୍ଗମାତ୍ମକ ଭୂତମାନେ ଏହି ଦ୍ୱିବିଧ ପ୍ରକୃତିରୁ ଜାତ ହୋଇଛନ୍ତି, ଏ କଥା ଜାଣ।

ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।
ହେତୁନାଽନେନ କୌନ୍ତେୟ ! ଜଗଦ୍ ବିପରିବର୍ତ୍ତତେ ॥
ଗୀତା ୯ । ୧୦ ।

ଭଗବାନ୍ କହୁଅଛନ୍ତି—ମୋର ସନ୍ନିଧାନ ହେତୁରୁ ପ୍ରକୃତି ଏହି ଚରାଚର ଜଗତକୁ ପ୍ରସବ କରୁଅଛି । ହେ କୌନ୍ତେୟ ! ଏହି ହେତୁରୁ ପ୍ରକୃତିର କ୍ରିୟାରେ ଜଗତ୍ ସର୍ବଦା ବିକାର ବା ପରିବର୍ତ୍ତନ ଲାଭ କରୁଅଛି ।

ବିକାରଜନନୀମାୟାମଷ୍ଟରୂପାମଜାଂ ଧ୍ରୁବାମ୍ ।
ଧ୍ୟାୟତେଽଧ୍ୟାସିତା ତେନ ତନ୍ୟତେ ପ୍ରେରିତା ପୁନଃ ।
ସୂୟତେ ପୁରୁଷାର୍ଥଂ ଚ ତେ ନୈବାଧିଷ୍ଠିତଂ ଜଗତ୍ ।
ମନ୍ତ୍ରିକ ଓ ଚୂଳି କା: ଉ: । ୩-୪ ।

ସେହି ବିକାରବତୀ, ଭୂମି ଜଳାଦି ଅଷ୍ଟ ପ୍ରକୃତିରୂପା, ଅଚେତନା ନିତ୍ୟା ପ୍ରକୃତିକୁ ଜଗତ୍ସୃଷ୍ଟି ନିମନ୍ତେ ନିଯୁକ୍ତ କରାଯାଏ । ପ୍ରକୃତି ତତ୍କର୍ତ୍ତୃକ ନିୟୋଜିତ ଓ ପ୍ରେରିତ ହୋଇ ସ୍ୱୟଂ ମହଦାଦି କାର୍ଯ୍ୟ ରୂପରେ ସ୍ୱୀୟ ବିସ୍ତୃତି ସାଧନ କରେ ଓ ତତ୍କର୍ତ୍ତୃକ ଅଧିଷ୍ଠିତ ହୋଇ ପୂର୍ବରୁ ପୁରୁଷର ଭୋଗ୍ୟ ବସ୍ତୁ ପ୍ରସ୍ତୁତ କରି ରଖେ ।

୦—ସୃଷ୍ଟି ତତ୍ତ୍ୱକାରଣ ସମ୍ବନ୍ଧରେ ଆଶଙ୍କା ଓ ତା'ର ନିରାକରଣ ।

ଏପର୍ଯ୍ୟନ୍ତ ସୃଷ୍ଟି ତତ୍ତ୍ୱ କାରଣ ସମ୍ବନ୍ଧରେ ଯେ ସମସ୍ତ ଶ୍ରୁତିର ଅବତାରଣା କରାଗଲା, ତନ୍ମଧ୍ୟରୁ ମାୟାବାଦ, ପ୍ରକୃତିବାଦ ପ୍ରଭୃତି ବିଷୟରେ ସନ୍ଦେହ ଜାତ ହୁଏ—ଯଥା, ଏକ ଶ୍ରୁତି ବଚନ ଅନୁସାରେ ମାୟାକୁ ଆଶ୍ରୟ କରି ପରମେଶ୍ୱର ସୃଷ୍ଟି ସମ୍ପାଦନ କରନ୍ତି; ଅନ୍ୟ ଶ୍ରୁତି ଅନୁସାରେ ପ୍ରକୃତିର ଗୁଣକ୍ରିୟା ଅନୁସାରେ ସୃଷ୍ଟି ସମ୍ପାଦିତ ହୁଏ ଓ ପରମେଶ୍ୱର ସେଥିରେ ନିମିତ୍ତ ମାତ୍ର ରହିଥାନ୍ତି । ଏହାଛଡ଼ା ମୂଳ ସାଙ୍ଖ୍ୟକାର ମଧ୍ୟ ସୃଷ୍ଟି ତତ୍ତ୍ୱକାରଣ ସମ୍ବନ୍ଧରେ ଏପରି କହି ଅଛନ୍ତି—

ପୁରୁଷସ୍ୟ ଦର୍ଶନାର୍ଥଂ କୈବଲ୍ୟାର୍ଥଂ ତଥା ପ୍ରଧାନସ୍ୟ ।
ପଙ୍ଗ୍ୱନ୍ଧବଦୁଭୟୋରପି ସଂଯୋଗସ୍ତତ୍କୃତଃ ସର୍ଗଃ ॥
ପ୍ରକୃତେର୍ମହାଂସ୍ତତୋଽହଂକାରସ୍ତସ୍ମାଦ୍ ଗଣଶ୍ଚ ଷୋଡ଼ଶକଃ ।
ତସ୍ମାଦପି ଷୋଡ଼ଶକାତ୍ ପଞ୍ଚଭ୍ୟଃ ପଞ୍ଚଭୂତାନି ॥
ସାଂଖ୍ୟକାରିକା ୨୧-୨୨

ଅନ୍ଧ-ପଙ୍ଗୁ ଦୃଷ୍ଟାନ୍ତ ଅନୁସାରେ ପ୍ରଧାନ ପୁରୁଷକର୍ତ୍ତୃକ ଦୃଷ୍ଟ ହୁଏ ଏବଂ ପୁରୁଷ ମଧ୍ୟ କେବଳଠାରୁ, ଅର୍ଥାତ୍ ପ୍ରଧାନର ସଂସର୍ଗ ତ୍ୟାଗ କରିବାକୁ ଇଚ୍ଛା କରେ । ସେହି କାରଣରୁ ସେହି ଉଭୟର ସଂଯୋଗ ବା ସନ୍ନିଧାନ ହୁଏ । ସେହି ସନ୍ନିଧାନଦ୍ୱାରା ବିଶ୍ୱର ସୃଷ୍ଟି ହୁଏ ।

[ ପଙ୍ଗୁ ଚଳିପାରେ ନାହିଁ ଓ ଅନ୍ଧ ଦେଖିପାରେ ନାହିଁ, କିନ୍ତୁ ଅନ୍ଧ କାନ୍ଧରେ ପଙ୍ଗୁ ଆରୋହଣ କଲେ ପଥ ପ୍ରଦର୍ଶନ ଓ ଗମନରୂପକ ଉଭୟର ଉଭୟ କାର୍ଯ୍ୟ ସିଦ୍ଧ ହୁଏ; ଏହିପରି ଚେତନ ପୁରୁଷ ଅଚେତନ ପ୍ରଧାନ ଆରୋହଣ କରି, ଅର୍ଥାତ୍ ପ୍ରଧାନ ସହଯୋଗରେ ମହଦାଦି ଜାତ କରେ ] ।

ପ୍ରକୃତିଠାରୁ ମହତ୍, ମହତ୍ତରୁ ଅହଂକାର ଓ ଅହଂକାରରୁ ଷୋଡ଼ଶସଂଖ୍ୟକ ତତ୍ତ୍ୱ ଜନ୍ମେ (୧୬ ତତ୍ତ୍ୱ = ଇନ୍ଦ୍ରିୟ ୧୧ ଓ ତନ୍ମାତ୍ର ୫) ଏହି ଷୋଡ଼ଶ ସଂଖ୍ୟକ ତତ୍ତ୍ୱର ଅପକୃଷ୍ଟ ୫, ଅର୍ଥାତ୍ ତନ୍ମାତ୍ର ପଞ୍ଚକରୁ ଆକାଶାଦି ପଞ୍ଚଭୂତ ଜନ୍ମିଅଛି । ଆହୁରି ମଧ୍ୟ—

**ମହଦାଦିକ୍ରମେଣ ପଞ୍ଚଭୂତାନାମ୍ ।**

ସାଂଖ୍ୟପ୍ରବଚନ । ୬-୧୦ ।

ପ୍ରକୃତିଠାରୁ କ୍ରମଶଃ ମହତ୍, ଅହଂକାର ତନ୍ମାତ୍ରାପଞ୍ଚକ ଓ ଭୂତପଞ୍ଚକ ସୃଷ୍ଟ ହୋଇଅଛି । ସେ ସକଳ ବିଦରି ମୂର୍ତ୍ତି ପ୍ରକ୍ଷେପ ପରି ଏକକାଳରେ ସୃଷ୍ଟ ହୋଇନାହିଁ । ପରିଣାମ କ୍ରମେ ପରେ ପରେ ହୋଇଅଛି ।

**ଆତ୍ମାର୍ଥତ୍ୱାତ୍ ସୃଷ୍ଟେର୍ନୈଷାମାତ୍ମାର୍ଥଂ ଆରମ୍ଭଃ ।**

ସାଂଖ୍ୟପ୍ରବଚନ—୬।୧୧

ମହାବାଦିତତ୍ତ୍ୱର ସୃଷ୍ଟି ଆତ୍ମାର ମୁକ୍ତି ନିମନ୍ତେ, ନିଜ ମୁକ୍ତି ନିମନ୍ତେ ନୁହେଁ । ମହଦାଦି ସମସ୍ତ ତତ୍ତ୍ୱ ନଶ୍ୱର, ସେହି ହେତୁରୁ ସେମାନଙ୍କର ମୁକ୍ତି ନିଷ୍ପ୍ରୟୋଜନ । ସୃଷ୍ଟିତତ୍ତ୍ୱକାରଣ ସମ୍ବନ୍ଧରେ ସାଙ୍ଖ୍ୟବାଦୀମାନେ ଏପରି ଯୁକ୍ତି ଦେଖାଇ ଅଛନ୍ତି । ନିର୍ବିଶେଷବାଦୀ, ସବିଶେଷବାଦୀ, ଓ ବିଶିଷ୍ଟାଦ୍ୱୈତବାଦୀମାନେ ମଧ୍ୟ ସୃଷ୍ଟିତତ୍ତ୍ୱକାରଣ ସମ୍ବନ୍ଧରେ ବିଭିନ୍ନ ଯୁକ୍ତି ଦେଖାଇ ଅଛନ୍ତି । ବସ୍ତୁତଃ ସୃଷ୍ଟିର ପ୍ରକୃତ ମୂଳ-କାରଣ କ'ଣ ? ତାହା ଉଲ୍ଲିଖିତ ମତବାଦୀମାନଙ୍କର ଅଲକ୍ଷ୍ୟରେ ରହି ଯାଇଅଛି । ବାଦୀମାନେ ସ୍ୱୟଂସିଦ୍ଧ ପରଂବ୍ରହ୍ମଙ୍କ ମହିମାକୁ ଲକ୍ଷ୍ୟ ନ କରି କେବଳ ତତ୍କାର୍ଯ୍ୟବର୍ଗକୁ ହିଁ କାରଣରୂପରେ ଗ୍ରହଣ କରିଛନ୍ତି । ମୁଖ୍ୟତଃ ପରଂବ୍ରହ୍ମ ଯେ ଜଗତରେ ଏକମାତ୍ର କାରଣ, ତଦ୍ବ୍ୟତୀତ ଦ୍ୱିତୀୟ କାରଣ କେହି ନାହିଁ—ଏହା ଧ୍ୟାନମଗ୍ନ ବ୍ରହ୍ମବାଦୀଗଣ ଚିନ୍ତା କରି କହି ଅଛନ୍ତି—

ତେ ଧ୍ୟାନଯୋଗାନୁଗତା ଅପଶ୍ୟନ୍ ଦେବାତ୍ମଶକ୍ତିଂ ସ୍ୱଗୁଣୈର୍ନିଗୂଢ଼ାମ୍ ।
ଯଃ କାରଣାନି ନିଖିଳାନି ତାନି କାଳାତ୍ମଯୁକ୍ତାନ୍ୟଧିତିଷ୍ଠତ୍ୟେକଃ ॥
ଶ୍ୱେତାଶ୍ୱତ : ଉ: ୧।୩ ।

ଜଗତ୍‌ସୃଷ୍ଟି ବିଷୟରେ ନାନାକାରଣ ବିବୃତ କରିବା ପରେ ପ୍ରକୃତ କାରଣ ପ୍ରଦର୍ଶିତ ହେଉଅଛି । ବ୍ରହ୍ମବିଦ୍‌ଗଣ ଜଗତର କାରଣଜ୍ଞାନ ବିଷୟରେ ପ୍ରବୃତ୍ତ ହୋଇ ଧ୍ୟାନବଳରେ ପରମ କାରଣକୁ ଜାଣି ପାରିଥିଲେ । ସେ ସମୟରେ ଧ୍ୟାନଦ୍ୱାରା ସେମାନେ ଜାଣି ପାରିଲେ ଯେ, କେବଳ ପରଂବ୍ରହ୍ମହିଁ ଜଗତର ଏକମାତ୍ର କାରଣ; ସେହି ବ୍ରହ୍ମଙ୍କ ଆତ୍ମସ୍ୱରୂପ ମାୟାଗୁଣ, ସତ୍ତ୍ୱ, ରଜସ୍ ଓ ତମସ୍‌ଦ୍ୱାରା ଆବୃତଥିବା ହେତୁରୁ ସମସ୍ତଙ୍କର ଅନୁଭୂତ ହୁଏ ନାହିଁ; କିନ୍ତୁ, ଧ୍ୟାନଯୋଗ ମହିମାରୁ ଯେତେବେଳେ ସେ ଆବରଣ ଦୂରୀଭୂତ ହୋଇଯାଏ, ସେତେବେଳେ ଜଗତର କାରଣଭୂତ ପରଂବ୍ରହ୍ମଙ୍କର ସାକ୍ଷାତ୍ ଲାଭ ହୁଏ । ପୂର୍ବୋକ୍ତ କାଳାଦି ମଧ୍ୟ ଜଗତର କାରଣ ନୁହେଁ; ଧ୍ୟାନଯୋଗ ବଳରେ ବ୍ରହ୍ମବିଦ୍‌ମାନେ ଦେଖିଛନ୍ତି ଯେ, କାଳାଦି ସକଳ ପଦାର୍ଥର ଅଧିଷ୍ଠାତା କେବଳ ସେହି ପରଂବ୍ରହ୍ମ । ଅତଏବ ସେହି ପରଂବ୍ରହ୍ମହିଁ ଜଗତର ଏକମାତ୍ର ମୂଳକାରଣ ।

## ଠ—ପରଂବ୍ରହ୍ମ କେବଳ ଏକମାତ୍ର ସୃଷ୍ଟିର ନିମିତ୍ତ ଓ ଉପାଦାନ କାରଣ ।

ବ୍ରହ୍ମବାଦୀ ବାଦରାୟଣ ନିଜ ବ୍ରହ୍ମସୂତ୍ରରେ ସେହି ମୂଳକାରଣ ପରଂବ୍ରହ୍ମ, ସୃଷ୍ଟିର ନିମିତ୍ତ ଓ ଉପାଦାନ କାରଣ ବୋଲି ନିର୍ଦ୍ଦେଶ କରିଛନ୍ତି—

ଅଭିଧ୍ୟୋପଦେଶାଚ୍ଚ । ସାକ୍ଷାଚ୍ଚୋଭୟାମ୍ନାନାତ୍ ।
ଆତ୍ମକୃତେଃ ପରିଣାମାତ୍ ॥ ବ୍ରହ୍ମସୂତ୍ର—୧ । ୪ । ୨୪-୨୫-୨୬ ॥

ବ୍ରହ୍ମ ଜଗତର ନିମିତ୍ତ ଓ ଉପାଦାନ କାରଣ—ଏହା ନିଶ୍ଚିତ; କାରଣ ଶ୍ରୁତିରେ ସୃଷ୍ଟି ବିଷୟ ସେହି ରୂପରେ ଉପଦିଷ୍ଟ ହୋଇଅଛି । * ଯଥା—"ସୋଽକାମୟତ ବହୁ ସ୍ୟାଂ ପ୍ରଜାୟେୟ ଇତି । (ତୈତ୍ତିରୀୟ), "ତଦ୍ ଐକ୍ଷତ ବହୁ ସ୍ୟାଂ ପ୍ରଜାୟେୟ (ଛାନ୍ଦୋଗ୍ୟ) । ବ୍ରହ୍ମ ସାକ୍ଷାତ୍ (ସ୍ପଷ୍ଟଭାବରେ) ଉଭୟାମ୍ନାନାତ୍ (ଉତ୍ପତ୍ତି ଓ ଲୟର ଏତଦୁଭୟ କାରଣ ରୂପରେ କଥିତ ହେବାରୁ) ସେ ସାକ୍ଷାତ୍ ନିମିତ୍ତ ଓ ଉପାଦାନ ଉଭୟ କାରଣ ବୋଲି

* ଅଭିଧ୍ୟା ସୃଷ୍ଟିସଂକଳ୍ପଃ ତସ୍ୟୋପଦେଶାଦପି ବ୍ରହ୍ମଣଃ କର୍ତ୍ତୃତ୍ୱ-ପ୍ରକୃତିତ୍ୱେ ଇତି ଶେଷଃ । ଅର୍ଥାତ୍ ଶ୍ରୁତିରେ ସୃଷ୍ଟି ସଂକଳ୍ପର ଉପଦେଶ ଅଛି, ସେହି ଉପଦେଶବଳରେ ମଧ୍ୟ ଆତ୍ମାର ଅଭିନ୍ନନିମିତ୍ତୋପାଦାନତା ସିଦ୍ଧ ହୁଏ ।

ବେଦରେ କଥିତ । ଛାନ୍ଦୋଗ୍ୟ ଶ୍ରୁତିରେ ଅଛି—"ସର୍ବାଣି ହ ବା ଇମାନି ଭୂତାନି ଆକାଶାଦ୍ ଏବ ସମୁତ୍ପଦ୍ୟନ୍ତେ, ଆକାଶଂ ପ୍ରତି ଅସ୍ତଂ ଯାନ୍ତି" । "ଏହି ସମୁଦାୟ ଭୂତ ଆକାଶ (ବ୍ରହ୍ମ)ଙ୍କଠାରୁ ଉତ୍ପନ୍ନ ହୁଏ, ପୁନଶ୍ଚ ଆକାଶରେ ହିଁ ଲୟ ପ୍ରାପ୍ତ ହୁଏ" । ଯେ ଯାହାଠାରୁ ଉତ୍ପନ୍ନ ହୁଏ ଓ ଯାହାଠାରେ ଅସ୍ତମିତ ହୁଏ, ସେ ତାହାର ଉପାଦାନ । **

ଏହି କାରଣରୁ ବ୍ରହ୍ମ ଉଭୟ ନିମିତ୍ତ ଓ ଉପାଦାନ କାରଣ; ଜଗତ୍ ସୃଷ୍ଟି ବିଷୟରେ ବ୍ରହ୍ମଙ୍କୁ କର୍ତ୍ତା ଓ କର୍ମ ଉଭୟ ରୂପରେ ଉଲ୍ଲେଖ କରାଯାଇଛି । "ତତ୍ ଆତ୍ମାନଂ ସ୍ୱୟଂ ଅକୁରୁତ" ; ଅର୍ଥାତ୍ ସେହି ବ୍ରହ୍ମ ଆତ୍ମାକୁ କଲେ, ଅର୍ଥାତ୍ ଜଗତ୍ ରୂପରେ ପରିଣତ କଲେ (ପରିଣାମାତ୍) ***

**ଯୋନିଶ୍ଚ ହି ଗୀୟତେ ॥ ବ୍ରହ୍ମସୂତ୍ର ୧-୪-୨୭ ॥**

ବ୍ରହ୍ମଙ୍କୁ ଯୋନି କୁହାଯାଇଛି । ମୁଣ୍ଡକୋପନିଷଦ୍‌ରେ—

**କର୍ତ୍ତାରଂ ଈଶଂ ପୁରୁଷଂ ବ୍ରହ୍ମଯୋନିମ୍,**

(ସେ କର୍ତ୍ତା, ଈଶ୍ୱର, ପୁରୁଷ, ବ୍ରହ୍ମ ଓ ଯୋନି ମଧ୍ୟ) । ଆହୁରି ମଧ୍ୟ "ଯଦ୍ ଭୂତଯୋନିଂ ପରିପଶ୍ୟନ୍ତି ଧୀରାଃ," (ପଣ୍ଡିତମାନେ ଯାହାଙ୍କୁ ପ୍ରାଣୀମାନଙ୍କର ଉତ୍ପତ୍ତି ସ୍ଥାନରୂପରେ ଦର୍ଶନ କରିଅଛନ୍ତି) । ଯୋନି ଶବ୍ଦର ପ୍ରୟୋଗରୁ ଜଣାଯାଉଅଛି ଯେ ବ୍ରହ୍ମ ହିଁ ଜଗତର ପ୍ରକୃତ ଉପାଦାନ କାରଣ ।

---

** ତଶବ୍ଦୋ ହେତ୍ୱନ୍ତରମୂର୍ଚ୍ଛିନୋତି । ଅୟମପି ବ୍ରହ୍ମଣ ଉପାଦାନତ୍ୱେ ହେତୁଃ, ଯତ୍ ସାକ୍ଷାତ୍ ଉପାଦାନାନ୍ତରମନୁପାଦାୟ ଉଭୟୋଃ ପ୍ରଭବପ୍ରଳୟୟୋଃ ଆମ୍ନାନଂ ଦୃଶ୍ୟତେ, ଶ୍ରୁତାବିତ ଶେଷଃ । ଅର୍ଥାତ୍ ଶ୍ରୁତି ସାକ୍ଷାତ୍ ଅନ୍ୟ ଉପାଦାନର ଉଲ୍ଲେଖ ନ କରି କେବଳ ବ୍ରହ୍ମଙ୍କୁ କାରଣସ୍ୱରୂପରେ ଗ୍ରହଣ କରି ସେହି କାରଣରୁ ଜଗତର ଉତ୍ପତ୍ତି ଓ ପ୍ରଳୟର ଉପଦେଶ ଦେଇ ଅଛନ୍ତି ; ଅତଏବ ଏହା ବ୍ରହ୍ମଙ୍କର ଉପାଦାନ କାରଣତା ପ୍ରତି ପୁଷ୍କଳ ହେତୁ ।

*** ପରିଣାମାତ୍ ପରିଣାମଘଟକାତ୍ ଆତ୍ମକୃତେଃ ଆତ୍ମସମ୍ବନ୍ଧିନୀ କୃତିଃ ସମ୍ଭବୋଽପି ଆତ୍ମନଃ କୃତିଂ ପ୍ରତି ବିଷୟତ୍ୱଂ ଆଶ୍ରୟତ୍ୱଞ୍ଚ, ତସ୍ମାଦପି ବ୍ରହ୍ମଣଃ ପ୍ରକୃତିତ୍ୱମିତି ଯୋଜନା । ବ୍ରହ୍ମ ନିଜକୁ ହିଁ ନିଜେ ପରିଣାମିତ କରିଅଛନ୍ତି, ଏହି ଶ୍ରୌତ ଅର୍ଥ ମଧ୍ୟ ବ୍ରହ୍ମଙ୍କର ଉପାଦାନ କାରଣତା ବ୍ୟକ୍ତ କରୁଅଛି ।

ଏତେନ ସର୍ବେ ବ୍ୟାଖ୍ୟାତା ବ୍ୟାଖ୍ୟାତାଃ । ବ୍ରହ୍ମସୂତ୍ର ୧-୪-୨୮ ।

ଏହାଦ୍ୱାରା ସମସ୍ତ ହିଁ ବ୍ୟାଖ୍ୟାତ ହେଲା * କେହି କହନ୍ତି ସାଂଖ୍ୟର ପ୍ରକୃତିବାଦ ଉପନିଷଦ୍‌ରେ ଦେଖିବାକୁ ମିଳେ ; କେହି କହନ୍ତି ବୈଶେଷିକଦର୍ଶନର ପରମାଣୁବାଦ ମଧ୍ୟ ଉପନିଷଦ୍‌ରେ ମିଳେ । ଏହି ଭାବରେ ଅନ୍ୟ ଦର୍ଶନର ତତ୍ତ୍ୱଗୁଡିକ ଉପନିଷଦ୍‌ବାକ୍ୟଦ୍ୱାରା ସମର୍ଥନ କରିବାର ଚେଷ୍ଟା ଅନେକ କରିଥାନ୍ତି । ଏହି ସମସ୍ତ ପ୍ରତିପକ୍ଷମାନଙ୍କ ମଧ୍ୟରେ ସାଂଖ୍ୟ-ମତାବଲମ୍ବୀ ପ୍ରଧାନ । ଏହି ହେତୁରୁ ସାଂଖ୍ୟବାଦ ଖଣ୍ଡନ କରିବା ସଙ୍ଗେ ସଙ୍ଗେ ବୈଶେଷିକ ପ୍ରଭୃତି ଅନ୍ୟ ମତବାଦ ମଧ୍ୟ ଖଣ୍ଡନ କରିବା ଚେଷ୍ଟା କରାଯାଉଛି । ଏହି ସମସ୍ତ ଦର୍ଶନର ତତ୍ତ୍ୱଗୁଡ଼ିକ ଉପନିଷଦ୍‌ବାକ୍ୟଦ୍ୱାରା ସମର୍ଥିତ ହୁଏ ନାହିଁ; ଓ ଏହା ସବୁ ଉପନିଷଦ୍ ସିଦ୍ଧାନ୍ତର ପ୍ରତିକୂଳ ।

ଉପନିଷଦ୍‌ସିଦ୍ଧାନ୍ତର ଅନୁକୂଳ ମତ—

ତଦେତତ୍ ସତ୍ୟମ୍—ଯଥା ସୁଦୀପ୍ତାତ୍ ପାବକାତ୍ ବିସ୍ଫୁଲିଙ୍ଗାଃ ସହସ୍ରଶଃ ପ୍ରଭବନ୍ତେ ସ୍ୱରୂପାଃ । ତଥାକ୍ଷରାତ୍ ବିବିଧାଃ ସୌମ୍ୟଭାବାଃ ପ୍ରଜାୟନ୍ତେ ତତ୍ର ଚୈବାପି ଯନ୍ତି ॥ ମୁଣ୍ଡକୋପନିଷତ୍—୨।୧।୧ ॥

ଯେଉଁ ପରମାର୍ଥ ସତ୍ୟବସ୍ତୁ ଓ ଯାହା ପରାବିଦ୍ୟାର ବିଷୟ, ବର୍ତ୍ତମାନ ତାହା କହୁଅଛନ୍ତି— ସେହି ପ୍ରସିଦ୍ଧ ଅକ୍ଷରାମ୍ ପରଂବ୍ରହ୍ମ ହିଁ ସତ୍ୟବସ୍ତୁ; ଯେପରି ପ୍ରଜ୍ୱଳିତ ଅଗ୍ନିରୁ ଅଗ୍ନିସଦୃଶ ସହସ୍ର ସହସ୍ର ବିସ୍ଫୁରଣ (ଅଗ୍ନିକଣା) ଉତ୍ପନ୍ନ ହୁଏ, ହେ ସୌମ୍ୟ ! ସେହିପରି ଅକ୍ଷରାମ୍ ପରଂବ୍ରହ୍ମଙ୍କ ମହିମାରୁ ନାନାବିଧ ଜୀବ ଉତ୍ପନ୍ନ ହୁଅନ୍ତି ଓ ଶେଷରେ ସେମାନେ ତହିଁରେ ହିଁ ବିଲୟ ପ୍ରାପ୍ତ ହୁଅନ୍ତି ।

## ୦—ପୁନଶ୍ଚ ସୃଷ୍ଟିର କାରଣ ସମ୍ବନ୍ଧରେ ବିଭିନ୍ନ ଆଶଙ୍କା ଓ ତାର ନିବାରଣ ।

ଏ ବିଷୟରେ ପୂର୍ବପକ୍ଷ ଆପତ୍ତି କରିପାରନ୍ତି—

ନ ବିଲକ୍ଷଣତ୍ୱାଦସ୍ୟ ତଥାତ୍ୱଞ୍ଚ ଶବ୍ଦାତ୍ । ବ୍ରହ୍ମସୂତ୍ର ୨-୧-୪ ॥

ଜଗତ୍ ବ୍ରହ୍ମଠାରୁ ଉତ୍ପନ୍ନ ହୋଇ ନାହିଁ, କାରଣ ବ୍ରହ୍ମଙ୍କ ସ୍ୱଭାବ ଏବଂ ଜଗତର ସ୍ୱଭାବ ବିଲକ୍ଷଣ । ବ୍ରହ୍ମ ଚେତନ, ଜଗତ୍ କିନ୍ତୁ ଅଚେତନ; ବ୍ରହ୍ମ ଶୁଦ୍ଧ, କିନ୍ତୁ ଜଗତ୍ ଅଶୁଦ୍ଧ; ବ୍ରହ୍ମ ନିତ୍ୟାନନ୍ଦ, ଜଗତ୍ ସୁଖଦୁଃଖମୟ । ଅତଏବ ସମଲକ୍ଷଣ ନୁହେଁ । ପୂର୍ବେ କୁହାଯାଇଅଛି ଯେ,

* ଏତେନ ପ୍ରଧାନକାରଣବାଦନିଷେଧନ୍ୟାୟକଲାପେନ ସର୍ବେ ଅଣ୍ୱାଦିକାରଣବାଦାଃ ପ୍ରତିକ୍ଷିପ୍ତତୟା ବ୍ୟାଖ୍ୟାତା ବେଦିତବ୍ୟାଃ ।

ଏ ପର୍ଯ୍ୟନ୍ତ ଯେଉଁ ସମସ୍ତ ଯୁକ୍ତିଦ୍ୱାରା ପ୍ରଧାନକାରଣବାଦ ନିରାକୃତ କରାଗଲା, ସେହି ଯୁକ୍ତିଦ୍ୱାରା କେବଳ ପରମାଣୁକାରଣବାଦ ମଧ୍ୟ ନିରାକୃତ ହେଲା ବୋଲି ବୁଝିବାକୁ ହେବ ।

ବ୍ରହ୍ମ ହିଁ ଜଗତ୍ରୂପ କାର୍ଯ୍ୟର ପ୍ରକୃତ ଉପାଦାନ କାରଣ, କିନ୍ତୁ ତାହା ଅସଙ୍ଗତ । ନିୟମ ଏହି ଯେ, ଯେଉଁ ଦ୍ରବ୍ୟ ଯାହାର ପ୍ରକୃତ ବା ଉପାଦାନ କାରଣ, ସେହି ପଦାର୍ଥ ତାହାର ସମଲକ୍ଷଣ ହେବା ଆବଶ୍ୟକ । ମୃଣ୍ମୟ ଘଟର ସ୍ୱଭାବ ମୃତ୍ତିକାର ଅନୁରୂପ ହୁଏ; କିନ୍ତୁ ସୁବର୍ଣ୍ଣ ସଦୃଶ ହୁଏ ନାହିଁ । ଯେତେବେଳେ ଜଗତ୍ ବ୍ରହ୍ମଲକ୍ଷଣାକ୍ରାନ୍ତ ନୁହେଁ, ପ୍ରତ୍ୟୁତ ବ୍ରହ୍ମବିଲକ୍ଷଣ । ସେତେବେଳେ ବ୍ରହ୍ମ ଏହାର ଉପାଦାନ—ଏହା କଦାଚ ସମ୍ଭବ ନୁହେଁ । ଜଗତ୍ ବ୍ରହ୍ମବିଲକ୍ଷଣ—ଏହା ଶାସ୍ତ୍ରସିଦ୍ଧ । ଯଥା—"ବିଜ୍ଞାନଂ ଚ, ଅବିଜ୍ଞାନଂ ଚ"—ଏଠାରେ ବ୍ରହ୍ମକୁ ବିଜ୍ଞାନ ଓ ଜଗତକୁ ଅବିଜ୍ଞାନ କୁହାଯାଇଅଛି । କିନ୍ତୁ, ବାଦୀଙ୍କ ଏହି ପ୍ରକାର ଯୁକ୍ତିର ନିରାକରଣ ନିମନ୍ତେ ବାଦରାୟଣ କହିଅଛନ୍ତି—ଦୃଶ୍ୟତେ ତୁ ॥ ବ୍ରଃ ସୂଃ ୨-୧-୬ ॥ ଏହି ସୂତ୍ରରେ ପୂର୍ବର ଯୁକ୍ତି ଖଣ୍ଡନ କରି ସିଦ୍ଧାନ୍ତ ସ୍ଥାପନ କରା ଯାଇଅଛି । ଜଗତ୍ ବ୍ରହ୍ମପ୍ରଭବ ନୁହେଁ—ଏଥିରେ ବୈଲକ୍ଷଣ ଦେଖି କହି ନ ପାରେ ଯେ ଯାହାଠାରୁ ଜାତ ହୁଏ, ସେ ଯେ ତାହାର ଅବଶ୍ୟ ସଲକ୍ଷଣ ହେବ, ଏପରି କୌଣସି ନିୟମ ନାହିଁ । ଦୃଶ୍ୟତେ, ଅର୍ଥାତ୍ ଲୋକରେ ଏହା ଦେଖାଯାଏ ଯେ, ଏକ ବସ୍ତୁ ଅପର ବସ୍ତୁଠାରୁ ଉତ୍ପନ୍ନ ହୋଇଅଛି; କିନ୍ତୁ ଉଭୟର ସ୍ୱଭାବ ଭିନ୍ନ । ସେହି ଅଦୃଶ୍ୟ ଓ ଅଜ୍ଞେୟ ପରଂବ୍ରହ୍ମଙ୍କଠାରୁ ଏହି ସକଳ ପରିଦୃଶ୍ୟମାନ ଜଗତର ସୃଷ୍ଟି ହେଲେ ହେଁ ଚେତନ ଜୀବରୁ ଅଚେତନ କେଶଲୋମାଦିର ଉତ୍ପତ୍ତି ଓ ଅଚେତନ ଗୋମୟରୁ ଚେତନ ବୃଶ୍ଚିକାଦିର ଉତ୍ପତ୍ତି ଦେଖାଯାଏ । କାର୍ଯ୍ୟ ଓ କାରଣ ମଧ୍ୟରେ କିଛି ସାଦୃଶ୍ୟ ଥିଲେ ମଧ୍ୟ ବୈସାଦୃଶ୍ୟ ବା ପାର୍ଥକ୍ୟ ମଧ୍ୟ ଭୂରିଶଃ ଦେଖାଯାଏ । ଯଦି ପାର୍ଥକ୍ୟ ନ ରହିବ, ତେବେ ଏହା କାର୍ଯ୍ୟ ଓ ଏହା କାରଣ ବୋଲି କିପରି କୁହାଯିବ ? ବ୍ରହ୍ମ ଓ ଜଗତ୍ମଧ୍ୟରେ କିଛି ସାଦୃଶ୍ୟ ଓ କିଛି ପ୍ରଭେଦ ମଧ୍ୟ ବିଦ୍ୟମାନ । ବ୍ରହ୍ମ ଓ ଜଗତ୍ ଉଭୟର ଅସ୍ତିତ୍ୱ ଥିଲେ ମଧ୍ୟ ବ୍ରହ୍ମ ଚେତନ ଓ ଜଗତ୍ ଅଚେତନ ଏହି ପ୍ରଭେଦ ଅଛି । ଏପରି ସ୍ଥଳରେ ବ୍ରହ୍ମକାରଣ ଓ ଜଗତ କାର୍ଯ୍ୟ କହିବା ଦୋଷାବହ ନୁହେଁ । ବ୍ରହ୍ମଙ୍କର ଜଗତ୍କାରଣତା ପ୍ରତି ଶ୍ରୁତି ପ୍ରମାଣ । ବ୍ରହ୍ମଙ୍କର କୌଣସି ରୂପ ନ ଥିବାରୁ ସେ ପ୍ରତ୍ୟକ୍ଷ ହୋଇ ନ ପାରନ୍ତି; ସେପରି କୌଣସି ଲକ୍ଷଣ ନ ଥିବାରୁ ଅନୁମାନଦ୍ୱାରା ତାଙ୍କର ସତ୍ତା ନିଶ୍ଚୟ କରିବା କଠିନ; ଅତଏବ ବ୍ରହ୍ମଙ୍କର ସତ୍ତାସ୍ଥାପନ ସକାଶେ ଯୁକ୍ତି ବା ତର୍କର ଉପାଦେୟତା ଆଦୃତ ନୁହେଁ; କେବଳ ଶ୍ରୁତିବାକ୍ୟ ସେଥିରେ ପ୍ରକୃଷ୍ଟ ପ୍ରମାଣ । ଶ୍ରୁତିବଚନର ଅର୍ଥବିଷୟରେ ନାନା ତର୍କ ହୋଇପାରେ; କିନ୍ତୁ ଶ୍ରୁତି ସତ୍ୟ ବା ମିଥ୍ୟା—ଏ ବିଷୟରେ ତର୍କ କରିବା ନିରର୍ଥକ ।

**"ନୈଷା ତର୍କେଣ ମତିରାପନେୟା, ପ୍ରୋକ୍ତାନ୍ୟେନୈବ ସୁଜ୍ଞାନାୟ ପ୍ରେଷ୍ଠ ।"**
**"କୋ ଅଦ୍ଧା ବେଦ କଇହ ପ୍ରାବୋଚତ୍ ଇୟଂ ବିସୃଷ୍ଟିର୍ଯତ ଆବଭୂବ"—**

ଇତ୍ୟାଦି ଶ୍ରୁତି କଥନରୁ ଜଣାଯାଏ ଯେ, ଜଗତର କାରଣସ୍ୱରୂପ ବ୍ରହ୍ମଙ୍କ ସ୍ୱରୂପ ନିତାନ୍ତ ଦୁର୍ବୋଧ, ଦେବତାମାନଙ୍କର ମଧ୍ୟ ଦୁର୍ଜ୍ଞେୟ, ଅତଏବ "ହେ ନଚିକେତା, ଏହି ମତି ବା

ଏହି ବ୍ରହ୍ମଜ୍ଞାନ କେବଳ ନିଜ ବୁଦ୍ଧି ଅନୁସାରେ ନିର୍ଦ୍ଧାରଣ କରାଯାଏ ନାହିଁ; କି ତର୍କଦ୍ୱାରା ବାଧିତ ମଧ୍ୟ କରାଯାଏ ନାହିଁ ।" ଏହା ଅନ୍ୟ କର୍ତ୍ତୃକ, ଅର୍ଥାତ୍ ବେଦାନ୍ତତତ୍ତ୍ୱଜ୍ଞ ଗୁରୁଙ୍କଦ୍ୱାରା ଉପଦିଷ୍ଟ ହେଲେ ଏହା ବୋଧଗମ୍ୟ ହୁଏ । ଅନ୍ୟଥା ସକଳ ଯତ୍ନ ବିଫଳ ହୁଏ । ଯାହାଙ୍କଠାରୁ ଏହି ଜଗତ ସୃଷ୍ଟି ହୋଇଅଛି, ତାଙ୍କର ସାକ୍ଷାତ୍କାର କିଏ କରିପାରିବ ? ତାହାଙ୍କୁ ଜାଣିବା ତ ଦୂରର କଥା । ଏପରି କୌଣସି ବ୍ୟକ୍ତି ନାହିଁ ଯେ ତାଙ୍କୁ ବୁଝାଇ ପାରିବ । ସ୍ମୃତି ଓ ଗୀତା କହେ—

**ଅଚିନ୍ତ୍ୟାଃ ଖଳୁ ଯେ ଭାବାଃ ନ ତାଂସ୍ତର୍କେଣ ଯୋଜୟେତ୍ ।**
**ପ୍ରକୃତିଭ୍ୟଃ ପରଂ ଯଚ୍ଚ ତଦଚିନ୍ତ୍ୟସ୍ୟ ଲକ୍ଷଣମ୍ ॥**
**ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ ।**
**ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।**
**ଅହମାଦିର୍ହି ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ ॥**

ଅର୍ଥାତ୍ "ଯାହା ଚିନ୍ତାର ଅଗୋଚର, ତାକୁ ତର୍କରେ ଆରୋପିତ କରିବା ଅନ୍ୟାଯ୍ୟ । ଅର୍ଥାତ୍ ତର୍କଦ୍ୱାରା ସେହି ଅର୍ଥ ବୋଧଗମ୍ୟ ହୁଏ ନାହିଁ । ଯାହା ପ୍ରକୃତିର ମଧ୍ୟ ଅଗୋଚର, ତାହା ଅଚିନ୍ତ୍ୟ— ଅଚିନ୍ତ୍ୟତା ହିଁ ସେ ବସ୍ତୁର ଲକ୍ଷଣ । ଏହି ଜଗତ କାରଣସ୍ୱରୂପ ବ୍ରହ୍ମ ଅବ୍ୟକ୍ତ, ଅଚିନ୍ତ୍ୟ ଓ ବିକାରରହିତ । କି ଦେବଗଣ, କି ମହର୍ଷିଗଣ, କେହି ମଧ୍ୟ ମୋର ଆଦି ବା ଉତ୍ପତ୍ତି ଜାଣନ୍ତି ନାହିଁ ( ଆଦି ନାହିଁ ବୋଲି ତାହା ଜାଣନ୍ତି ନାହିଁ )। ମୁଁ କେବଳ ସମସ୍ତ ଦେବତାମାନଙ୍କର ଓ ଋଷିଗଣଙ୍କର ଆଦିକର୍ତ୍ତା ବା ଉତ୍ପତ୍ତିର କାରଣ ।"

ବ୍ରହ୍ମଙ୍କ ସତ୍ତା ବିଷୟରେ ପୁନଶ୍ଚ ବାଦୀ ତର୍କ କରିପାରେ—ଜଗତ୍ ଯଦି ବ୍ରହ୍ମଙ୍କଠାରୁ ଉତ୍ପନ୍ନ, ତେବେ ପ୍ରଳୟ ସମୟରେ ଜଗତ୍ ବ୍ରହ୍ମଠାରେ ବିଲୀନ ହେବ । ଯେଉଁ ବସ୍ତୁ ଯାହାଠାରୁ ଉତ୍ପନ୍ନ; ତାହା ଧ୍ୱଂସ ସମୟରେ ସେଥିରେ ବିଲୀନ ହେବା ସ୍ୱାଭାବିକ; ଜଗତ୍ ମଧ୍ୟ ଧ୍ୱଂସ ହୋଇ ବ୍ରହ୍ମରେ ଲୀନ ହେବା ସମୟରେ ଜାଗତିକ ଦୋଷ, ଅପବିତ୍ରତା ଆଦି ସକଳ ଦୁର୍ଗୁଣ ବ୍ରହ୍ମଙ୍କଠାରେ ସଞ୍ଚାରିତ ହେବା ମଧ୍ୟ ସ୍ୱାଭାବିକ ।

କିନ୍ତୁ ବାଦୀଙ୍କ ଉତ୍ଥାପିତ ଏହି ସବୁ ଦୋଷ ଦୋଷପଦବାଚ୍ୟ ନୁହେଁ ।

କାରଣ—**ନ ତୁ ଦୃଷ୍ଟାନ୍ତଭାବାତ୍ ।** ବ୍ରହ୍ମସୂତ୍ର ୨-୧-୯ ॥

ଅର୍ଥାତ୍ କାର୍ଯ୍ୟ ପ୍ରଳୟପ୍ରାପ୍ତ ହେବା ସମୟରେ କାରଣକୁ ସ୍ୱଧର୍ମବିଶିଷ୍ଟ କରିପାରେ ନାହିଁ । ଦୃଷ୍ଟାନ୍ତସ୍ୱରୂପ କୁହାଯାଇ ପାରେ ଯେ ମୃତ୍ତିକାରୁ ଜାତ ଘଟାଦି ବସ୍ତୁ ବିଭାଗାବସ୍ଥା ବା ଘଟସ୍ୱରୂପ କାର୍ଯ୍ୟାବସ୍ଥାରେ ନାନାପ୍ରଭେଦଯୁକ୍ତ ହେଲେ ମଧ୍ୟ ଅବିଭାଗ ବା ଲୟାବସ୍ଥାରେ ମୃତ୍ତିକାରୂପକ ସ୍ୱକାରଣକୁ ସ୍ୱଧର୍ମ ବା ଗୁଣର ସଂସୃଷ୍ଟ କରିପାରେ ନାହିଁ; ଅର୍ଥାତ୍ ଘଟ ଭାଙ୍ଗିଯିବା

ପରେ ମାଟିର ଧର୍ମରେ ମିଶିଯାଏ; କିନ୍ତୁ ନିଜର କ୍ଷୁଦ୍ରତ୍ୱ, ଶୁକ୍ଳତ୍ୱ ବା ନୀଳତ୍ୱାଦି ଗୁଣ ମାଟିରେ ସଞ୍ଚାରିତ କରିପାରେ ନାହିଁ । ଆଉ ମଧ୍ୟ କଟକାଦି ସୁବର୍ଣ୍ଣାଳଙ୍କାର ଗଳି ସୁନାଖଣ୍ଡ କରିଗଲେ ନିଜର କଟକାଦି ଆକାର ସୁନା ଖଣ୍ଡରେ ସଂକ୍ରମିତ କରିପାରେ ନା । ମନୁଷ୍ୟାଦି ଜୀବ ମଧ୍ୟ ମୃତ ହୋଇ ପୃଥିବ୍ୟାଦି ପାଞ୍ଚ ଭୂତରେ ମିଶିଗଲେ ସେହି ମହାଭୂତରେ ମନୁଷ୍ୟାଦିର ଗୁଣ ଓ ଆକାର କିଛି ରହେ ନାହିଁ; ସେହିପରି ସକଳ ଜାଗତିକ ପଦାର୍ଥ ଲୟକାଳରେ ସ୍ୱକାରଣଭୂତ ବ୍ରହ୍ମଙ୍କୁ ସ୍ୱୀୟ ଧର୍ମଦ୍ୱାରା ବିଶେଷିତ କରେ ନାହିଁ ।

ଉପର୍ଯ୍ୟୁକ୍ତ ସକଳ ଶ୍ରୁତିପ୍ରମାଣରୁ ଏହା ନିଶ୍ଚିତ ହୁଏ ଯେ, ଅକ୍ଷର, ଅର୍ଥାତ୍ ଅବିନାଶୀ ଅପ୍ରମେୟ, ନିର୍ଗୁଣ, ବୁଦ୍ଧ୍ୟାଦିର ଅଗୋଚର ଯେଉଁ ପରମାତ୍ମା, ସେହି ଅଲେଖବ୍ରହ୍ମହିଁ ଜଗତର ମୁଖ୍ୟ କାରଣ; ତାହାଙ୍କ ଅଦ୍‌ଭୁତ ମହିମାରୁ ଏ ସମସ୍ତ ପ୍ରକୃତି, ପୁରୁଷ, ମାୟା, ଅବିଦ୍ୟା ପ୍ରଭୃତି ଜଗତ୍ ସମ୍ଭୂତ ଓ ତହିଁରେ ହିଁ ତିରୋଭୂତ ହେଉଅଛି—

**"ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି, ଯତ୍ ପ୍ରୟନ୍ତି ଅଭିସମ୍ବିଶନ୍ତି ।।"**

ଯାହାଙ୍କଠାରୁ ଏହି ସମସ୍ତ ଭୂତ ଜାତ ହୁଅନ୍ତି, ଜାତ ହୋଇ ଯାହାଙ୍କଠାରେ ସ୍ଥିତି କରନ୍ତି ଏବଂ ପ୍ରଳୟକାଳରେ ଯାହାଙ୍କଠାରେ ପ୍ରବେଶ କରନ୍ତି ସେହି ବ୍ରହ୍ମ; ତାହାଙ୍କୁ ହିଁ ଜଗତର କାରଣ ବୋଲି ଜାଣ ।

**୦—ସୃଷ୍ଟିର ଲୟାବସ୍ଥା ଓ ପରମାତ୍ମାଙ୍କ ନିର୍ଲିପ୍ତତା :—**

**ବିପର୍ଯ୍ୟୟେଣ ତୁ କ୍ରମୋଽତ ଉପପଦ୍ୟତେ ଚ ।।**

ବ୍ରହ୍ମସୂତ୍ର ୨-୩-୧୪ ।

ବିପର୍ଯ୍ୟୟେଣ ତୁ କ୍ରମଃ (ଏହାର ବିପରୀତ କ୍ରମ) ଉପପଦ୍ୟତେ (ଏହା ଉପପନ୍ନ ହୁଏ) । ପ୍ରଳୟକ୍ରମ ଉତ୍ପତ୍ତିକ୍ରମର ବିପରୀତ । ଲୋକରେ ମଧ୍ୟ ଦେଖାଯାଏ ଯେ, ମନୁଷ୍ୟ ଯେଉଁ କ୍ରମରେ ସୋପାନ ଆରୋହଣ କରେ, ତାହାର ବିପରୀତ କ୍ରମରେ ଅବରୋହଣ କରେ । ସଂସାରରେ ଦେଖାଯାଏ ଯେ; ମୃତ୍ତିକାଜାତ ଘଟାଦି ପ୍ରଳୟପ୍ରାପ୍ତ ହୋଇ ମୃଦ୍‌ଭାବ ପ୍ରାପ୍ତ ହୁଏ;ଜଳଜନ୍ମା କରକାଦି (କୁଆପଥର) ଶେଷରେ ଜଳରୂପରେ ପରିଣତ ହୁଏ । ଅତଏବ, ପୃଥିବୀ ଜଳରୁ ଜନ୍ମଗ୍ରହଣ କରି ସ୍ଥିତିକାଳ ଅତିକ୍ରମ କଲେ ପୁଣି ଜଳରେ ପ୍ରଲୀନ ହୁଏ । ସେହିପରି ଜଳ ମଧ୍ୟ ତେଜରୁ ଉତ୍ପନ୍ନ ହୋଇ ସ୍ଥିତିକାଳ ଅତିକ୍ରମ ପରେ ପ୍ରଳୟକାଳରେ ତେଜରେ ହିଁ ଲୟପ୍ରାପ୍ତ ହୁଏ; ତେଜରୁ ପୁଣି

ସୂକ୍ଷ୍ମତମ ପଦାର୍ଥରେ ଓ କ୍ରମଶଃ ପରମସୂକ୍ଷ୍ମ ପରମ କାରଣ ବ୍ରହ୍ମରେ ଲୀନ ହୁଏ । ଜଳ ଭଳି ସକଳ ଜନ୍ୟପଦାର୍ଥର ଏହି ଦଶା—ଏହାହିଁ ଯୁକ୍ତିସିଦ୍ଧ ।

ଉତ୍ପତ୍ତିକ୍ରମର ବିପରୀତକ୍ରମରେ ପ୍ରଳୟ ହେବା ଅନ୍ୟତ୍ର ବର୍ଣ୍ଣିତ—

**ଜଗତ୍ପ୍ରତିଷ୍ଠା ଦେବର୍ଷେ ! ପୃଥିବ୍ୟପ୍ସୁ ପ୍ରଲୀୟତେ**
**ଜ୍ୟୋତିଷ୍ୟାପଃ ପ୍ରଲୀୟନ୍ତେ ଜ୍ୟୋତିର୍ବାୟୌ ପ୍ରଲୀୟତେ ।**

ଶାଙ୍କରଭାଷ୍ୟରେ ଉକ୍ତ ।

ଅର୍ଥାତ୍ ହେ ଦେବର୍ଷେ ! ଜଗତର ପ୍ରତିଷ୍ଠା ଓ ସମାପ୍ତି ବା ପ୍ରଳୟ ଏହିପରି— ପୃଥିବୀ ଜଳରେ ଲୟ ପ୍ରାପ୍ତ ହୁଏ । ଜଳ ତେଜରେ ଓ ତେଜ ବାୟୁରେ ଲୟ ପ୍ରାପ୍ତ ହୁଏ । ଏହି ନିୟମାନୁସାରେ ଅନୁଲୋମ ଓ ବିଲୋମକ୍ରମରେ ପଞ୍ଚଭୂତ ଓ ତତ୍କାର୍ଯ୍ୟବର୍ଗର ଉତ୍ପତ୍ତି ଓ ଲୟ କେବଳ ପରମାତ୍ମାଙ୍କଠାରୁ ହୋଇଥାଏ । ଆଶଙ୍କା ହୋଇପାରେ—ଜଗତ୍ ଯଦି ବ୍ରହ୍ମଙ୍କଠାରୁ ଉତ୍ପନ୍ନ ହୋଇ ତହିଁରେ ଲୟ ପ୍ରାପ୍ତ ହୁଏ, ତେବେ ତଦ୍ଦ୍ୱାରା ବ୍ରହ୍ମଙ୍କର ହ୍ରାସ ବୃଦ୍ଧି ହେବା ସମ୍ଭବ; କିନ୍ତୁ ଏପରି ଆଶଙ୍କା ନିରର୍ଥକ; ତଦ୍ଦ୍ୱାରା ବ୍ରହ୍ମଙ୍କର ହ୍ରାସବୃଦ୍ଧି ହୁଏ ନାହିଁ, କିମ୍ବା ବିଶୁଦ୍ଧତା ମଧ୍ୟ ନଷ୍ଟ ହୁଏ ନାହିଁ । ଆକାଶର ବିଭିନ୍ନ ସ୍ଥାନରେ ନୀଳପୀତାଦି ବିଭିନ୍ନ ବର୍ଣ୍ଣ ଦେଖାଯାଏ; କିନ୍ତୁ ତାହା ଅଦୃଶ୍ୟ ବା ଆକାଶରେ ମିଶ୍ରିତ ହେବାପରେ ଆକାଶ ପୂର୍ବବତ୍ ନିର୍ଲିପ୍ତ ରହିଥାଏ ଓ ସେହି ହେତୁ ବର୍ଣ୍ଣଯୁକ୍ତ ହୁଏ ନାହିଁ । କାରଣ ନୀଳପୀତାଦିବର୍ଣ୍ଣ ଆକାଶର ପରିଣାମଜନିତ ବିକାର ନୁହନ୍ତି, କେବଳ ବ୍ୟାବହାରିକ ଆଭାସରୂପ ଉପାଧିମାତ୍ର । ସେହିପରି ପରମାତ୍ମାଙ୍କର କାର୍ଯ୍ୟରୂପ ଜଗଦାଦିଦେହଧର୍ମ, ସକଳ ଦେହର ବୀଜ କାରଣଧର୍ମ, ପରମାତ୍ମାଙ୍କର ପରିଣାମଜନିତ ବିକାର ନୁହେଁ; ତାହା ବ୍ୟାବହାରିକ ଆଭାସରୂପ ଉପାଧି ମାତ୍ର । ଆତ୍ମା ଆକାଶପରି ଉପାଧିରେ ଲିପ୍ତ ନୁହନ୍ତି ।

**ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।**
**ସର୍ବତ୍ରାବସ୍ଥିତୋ ଦେହେ ତଥାତ୍ମା ନୋପଲିପ୍ୟତେ ।**

ଗୀତା ୧୩ । ୩୨

ଯେପରି ସର୍ବବ୍ୟାପକ ଆକାଶ ସୂକ୍ଷ୍ମହେତୁରୁ କେଉଁଥିରେ ଲିପ୍ତ ହୁଏ ନାହିଁ, ସେହିପରି (ସର୍ବତ୍ରସ୍ଥିତ) ଆତ୍ମା ଜାତିତଃ କୌଣସି ପଦାର୍ଥରେ ଲିପ୍ତ ହୁଅନ୍ତି ନାହିଁ ।

**ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।**
**ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ॥**

ଗୀତା ୧୩ । ୧୪

ସେହି ପରମାତ୍ମା ଚକ୍ଷୁପ୍ରଭୃତି ସମସ୍ତ ଇନ୍ଦ୍ରିୟମାନଙ୍କଦ୍ୱାରା ବିଷୟସ୍ୱରୂପରେ ପ୍ରକାଶମାନ; ଅଥଚ ସ୍ୱୟଂ ଇନ୍ଦ୍ରିୟବିହୀନ; ସଙ୍ଗଶୂନ୍ୟ, ଅଥଚ ସ୍ୱୟଂ ସମସ୍ତ ବସ୍ତୁର ଆଧାରଭୂତ; ସ୍ୱୟଂ ଗୁଣହୀନ, କିନ୍ତୁ ସତ୍ତ୍ୱାଦିଗୁଣର ପାଳକ ।

## ଠ—ପରଂବ୍ରହ୍ମଙ୍କ ମହିମାରୁ ସୃଷ୍ଟ୍ୟାଦି କ୍ରିୟା :—

ସୃଷ୍ଟିର କାରଣ ସମ୍ବନ୍ଧରେ ଏପର୍ଯ୍ୟନ୍ତ ବହୁ ଶ୍ରୁତିବଚନ ଓ ଯୁକ୍ତିତର୍କଦ୍ୱାରା ସକଳ ଆଶଙ୍କା ପରିହୃତ ହୋଇ ସିଦ୍ଧାନ୍ତ ପ୍ରତିପାଦିତ କରାଯାଇଛି; ବର୍ତ୍ତମାନ ଉପସଂହାରରେ ପ୍ରଖ୍ୟାତ ଦୃଷ୍ଟାନ୍ତ ସହ ସେହି ସିଦ୍ଧାନ୍ତ ଦୃଢ଼ କରାଯାଉଛି—

**ଯଥୋର୍ଣ୍ଣନାଭିଃ ସୃଜତେ ଗୃହ୍ଣତେ ଚ ଯଥା ପୃଥିବ୍ୟାମୋଷଧୟଃ ସମ୍ଭବ**
**ଯଥା ସତଃ ପୁରୁଷାତ୍ କେଶଲୋମାନି ଯଥାକ୍ଷରାତ୍ ସମ୍ଭବନ୍ତୀହ ବିଶ୍ୱମ୍ ॥**

ମୁଣ୍ଡକୋପନିଷଦ୍—୧-୧-୭ ॥

ଊର୍ଣ୍ଣନାଭି (ମାଙ୍କଡ଼ସା) ଯେପରି ଅନ୍ୟ କାରଣର ଅପେକ୍ଷା ନ ରଖି ସ୍ୱୀୟ ଶରୀରରୁ ସମ୍ପୂର୍ଣ୍ଣ ଭିନ୍ନରୂପ ସୂତ୍ରସମୂହକୁ ଉତ୍ପାଦନ କରେ, ପୁନଶ୍ଚ ତାହା ସ୍ୱଶରୀରରେ ପ୍ରତିସଂହୃତ କରେ; ଧାନ୍ୟପ୍ରଭୃତି ଓଷଧିସମୂହ ମଧ୍ୟ ପୃଥିବୀରୁ ଉତ୍ପନ୍ନ ହୁଏ; ସଜୀବ ପୁରୁଷଶରୀରରୁ କେଶ, ଲୋମସମୂହ ଆବିର୍ଭୂତ ହୁଏ; ସେହିପରି ସେହି ଅକ୍ଷର-ବ୍ରହ୍ମଙ୍କଠାରୁ ଏହି ସମସ୍ତ ଜଗତ୍ ଉତ୍ପନ୍ନ ହୋଇଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ, ଦ୍ୱୈତବାଦୀ ନୈୟାୟିକପ୍ରଭୃତିଙ୍କ ମତରେ ବ୍ରହ୍ମ ଜଗତର ସମବାୟି ବା ଉପାଦାନ କାରଣ ହୋଇପାରନ୍ତି ନାହିଁ; କାରଣ, ବ୍ରହ୍ମ ଚେତନ, ଶୁଦ୍ଧ; କିନ୍ତୁ ଜଗତ୍ ଜଡ଼ ଓ ଅଶୁଦ୍ଧ । ସମାନଜାତୀୟ କାରଣରୁ ସମାନଜାତୀୟ କାର୍ଯ୍ୟର ଉତ୍ପତ୍ତି ହେବା ଦେଖାଯାଏ, ଜଡ଼ ମୃତ୍ତିକାରୁ ଜଡ଼ଘଟ ଉତ୍ପତ୍ତି ହୁଏ । ଅତଏବ ବ୍ରହ୍ମ ଜଗତର ଉପାଦାନ କାରଣ ନୁହନ୍ତି । ଅନ୍ୟ ମଧ୍ୟ—କାର୍ଯ୍ୟର ଯାହା ଉପାଦାନ କାରଣ, ତାହା ନିମିତ୍ତକାରଣ ହୋଇପାରେ ନାହିଁ; ଘଟର ଉପାଦାନ କାରଣ ମୃତ୍ତିକା; କିନ୍ତୁ ନିମିତ୍ତକାରଣ ଚେତନ କୁମ୍ଭକାର । ସୁତରାଂ ବ୍ରହ୍ମ ନିମିତ୍ତକାରଣ ହୋଇପାରନ୍ତି; କିନ୍ତୁ ଉପାଦାନ କାରଣ ନୁହନ୍ତି ।

କିନ୍ତୁ ବାଦୀର ଏବଂବିଧ ଅଭିପ୍ରାୟ ଅବଗତ ହୋଇ ଉପର୍ଯ୍ୟୁକ୍ତ ଶ୍ରୁତିବଚନ ତାହାର ଉତ୍ତର ଦେଇଅଛି—ଊର୍ଣ୍ଣନାଭି ସୂତ୍ରର ଉପାଦାନ ଓ ନିମିତ୍ତକାରଣ; ଜୀବିତ ପୁରୁଷର ଶରୀରରୁ କେଶ ଓ ଲୋମାଦି ଉତ୍ପନ୍ନ ହୁଏ; ଯେପରି ଏକମାତ୍ର ପୃଥିବୀ ଓଷଧିସମୂହର ଉପାଦାନ ଓ ନିମିତ୍ତ କାରଣ, ସେହିପରି ବ୍ରହ୍ମଙ୍କଠାରୁ ଜଗତର ଉତ୍ପତ୍ତି ବିଷୟରେ କୌଣସି ବାଧା ନାହିଁ । ଉଲ୍ଲିଖିତ ଦୃଷ୍ଟାନ୍ତତ୍ରୟରୁ ବିଜାତୀୟ କାରଣରୁ ବିଜାତୀୟ ବସ୍ତୁର ଉତ୍ପତ୍ତିରେ

ଅନନ୍ୟତ୍ୱ ପ୍ରଦର୍ଶିତ ହେଲା ଏବଂ ଗୋଟିଏ କାର୍ଯ୍ୟର ଉଭୟକାରଣ ହୋଇପାରେ—ଏହା ମଧ୍ୟ ପ୍ରତିପାଦିତ ହେଲା ।

ଜଗତର ଏକମାତ୍ର ମୂଳକାରଣ ପରଂବ୍ରହ୍ମ—ଏହା ବହୁବାର ଯୁକ୍ତିଯୁକ୍ତଭାବରେ ପ୍ରଦର୍ଶିତ ହେଲା । ତାହାଙ୍କର ଅଦ୍ଭୁତ ମହିମାବଳରେ ଯେପରି ଜଗତର ଉତ୍ପତ୍ତି-ସ୍ଥିତି-ଲୟାଦି କାର୍ଯ୍ୟ ସମ୍ପାଦିତ ହେଉଅଛି, ତାହା ସାଧାରଣ ବୁଦ୍ଧିର ଅଗମ୍ୟ । ବୈଦିକ ଋଷିମାନେ ଏ ବିଷୟରେ ଏହିପରି ବର୍ଣ୍ଣନା କରିଛନ୍ତି—

ନାସଦାସୀନ୍ନୋ ସଦାସୀତ୍ ତଦାନୀଂ
ନାସୀଦ୍ରଜୋ ନୋ ବ୍ୟୋମା ପରୋ ଯତ୍ ।
କିମାବରୀବଃ କୁହକସ୍ୟ ଶର୍ମନ୍ନ—
ମ୍ଭଃ କିମାସୀଦ୍ ଗହନଂ ଗଭୀରମ୍

ଋକ୍ ସଂହିତା ମ ୧୦—ସୂକ୍ତ ୧୨୯ ମ: ୧ ॥

ଅର୍ଥ—ଏହି ବିଶ୍ୱର ସୃଷ୍ଟି ପୂର୍ବେ ଏହି ପରିବର୍ତ୍ତନଶୀଳ ଜଡ଼ େନ ଥିଲା; ତନ୍ମାତ୍ରତତ୍ତ୍ୱ କିଛି ନ ଥିଲା; ପରମାଣୁପୂର୍ଣ୍ଣ ଅନ୍ତରୀକ୍ଷ ମଧ୍ୟ ନ ଥିଲା ଏବଂ ସର୍ବତ୍ର ଆକାଶ ଅବସ୍ଥିତ ତାହା ମଧ୍ୟ ନ ଥିଲା, ଏହିପରି ଅବସ୍ଥାରେ କିଏ କାହାକୁ ଆବରଣ କଲା ? କେଉଁଠାରେ କାହା ଆଶ୍ରୟରେ କିଏ ବା ଥିଲା ? ଅଗାଧ ଓ ଗହନ ଜଳ ମଧ୍ୟ କେଉଁଠାରେ ଥିଲା ? ଅର୍ଥାତ୍ ସେ ସମୟରେ ଜଳ ମଧ୍ୟ ନ ଥିଲା ।

ନ ମୃତ୍ୟୁରାସୀଦମୃତଂ ନ ତର୍ହି ନ ରାତ୍ର୍ୟା ଅହ୍ନ ଆସୀତ୍ ପ୍ରକେତଃ ।
ଆନୀଦବାତଂ ସ୍ୱଧୟା ତଦେକଂ ତସ୍ମାଦ୍ଧାନ୍ୟନ୍ନ ପରଃ କିଞ୍ଚନାଽସ ॥

ଋ: ମ: ୧୦-୧୨୯—୨

ସେ ସମୟରେ ମୃତ୍ୟୁ ନ ଥିଲା, ଅର୍ଥାତ୍ ମୃତ୍ୟୁଗ୍ରସ୍ତ ଦୃଷ୍ଟ ଜଡ଼ ସୃଷ୍ଟ ହୋଇ ନ ଥିଲା; ସୁତରାଂ ଅମରତ୍ୱ ମଧ୍ୟ ନ ଥିଲା; ଦିନ ଓ ରାତ୍ରିବିଭାଗର କୌଣସି ସଙ୍କେତ ନ ଥିଲା; ସେ ସମୟରେ ଏକ ପରମାତ୍ମତତ୍ତ୍ୱ ସ୍ୱମହିମାରେ ବିଦ୍ୟମାନ ଥିଲେ । ତାଙ୍କର ଅସ୍ତିତ୍ୱ ପ୍ରାଣବାୟୁ ଉପରେ ନିର୍ଭର କରି ନ ଥିଲା । ତାଙ୍କ ବ୍ୟତୀତ ଅନ୍ୟ କିଛି ଶ୍ରେଷ୍ଠ ନ ଥିଲା ।

ତମ ଆସୀତ୍ତମସା ଗୂଢ଼ମଗ୍ରେଽପ୍ରକେତଂ ସଲିଳଂ ସର୍ବମା ଇଦମ୍ ।
ତୁଚ୍ଛେନାଭ୍ୱପିହିତଂ ଯଦାସୀତ୍ ତପସସ୍ତନ୍ମହିନ୍ନାଽଜାୟତୈକମ୍ ॥

ଋକ ସଂ ୧୦-୧୨୯-୩ ।

ସର୍ବପ୍ରଥମେ ଅନ୍ଧକାର ଥିଲା ଓ ଏହି ସକଳ ପରିଦୃଶ୍ୟମାନ ଜଗତ୍ ଅନ୍ଧକାରରେ ଆବୃତ ଥିଲା; ଭେଦାଭେଦଶୂନ୍ୟ ଜଳ ଥିଲା; କମ୍ବା ଆଭୁ, ଅର୍ଥାତ୍ ସର୍ବବ୍ୟାପୀ ବ୍ରହ୍ମ (ପ୍ରଥମରେ) ତୁଚ୍ଛରେ ଅର୍ଥାତ୍ ଶୂନ୍ୟରେ ଆଚ୍ଛାଦିତ ଥିଲେ । ତତ୍ ଅର୍ଥାତ୍ ସେହି ମୂଳରେ ଏକ (ବ୍ରହ୍ମ ହିଁ) ସ୍ୱୟଂସିଦ୍ଧ ମହିମାରେ (ତତ୍ ମହିମାର ରୂପାନ୍ତରରେ) ପ୍ରକଟ ହେଲେ ।

**କାମସ୍ତଦଗ୍ରେ ସମବର୍ତ୍ତତାଧିମନସୋ ରେତଃ ପ୍ରଥମଂ ଯଦାସୀତ୍**
**ସତୋ ବନ୍ଧୁମସତୀ ନିରବିନ୍ଦନ୍ ହୃଦି ପ୍ରତୀଷ୍ୟା କବୟୋ ମନୀଷା । ॥**

ଋ ୧୦-୧୨୯-୪

ମନର ଯେଉଁ ରେତଃ ବା ବୀଜ ପ୍ରଥମରେ ନିଃସୃତ ହେଲା, ତାହାହିଁ ପ୍ରଥମରେ କାମ ( ଜଗତ୍ ସୃଷ୍ଟି କରିବାର ପ୍ରବୃତ୍ତି ବା ଶକ୍ତି ) ହେଲା । ଜ୍ଞାନୀମାନେ ଅନ୍ତଃକରଣରେ ବିଚାର କରି ସ୍ୱବୁଦ୍ଧିରେ ନିଶ୍ଚିତ କରିଅଛନ୍ତି ଯେ ଏହାହିଁ ସତ୍‌ରେ ଅର୍ଥାତ୍ ମୂଳ ପରଂବ୍ରହ୍ମରେ ଅସତ୍‌ର ଅର୍ଥାତ୍ ନଶ୍ୱର ଦୃଶ୍ୟଜଗତର ପ୍ରଥମ ସମ୍ବନ୍ଧ ।

**ତିରଶ୍ଚୀନୋ ବିତତୋ ରଶ୍ମିରେଷାଂ ଅଧଃସ୍ୱିଦାସୀଦୁପରିସ୍ୱିଦାସୀତ୍ ।**
**ରେତୋଧା ଆସନ୍ ମହିମାନାସନ୍ ସ୍ୱଧା ଅବସ୍ତାତ୍ ପ୍ରୟତିଃ ପରସ୍ତାତ୍ ॥**

ଋ ୧୦-୧୨୯-୫ ।

ଏହି ରଶ୍ମି, ଅର୍ଥାତ୍ ସୂତ୍ର ବା କିରଣ ଏହା ଭିତରେ ଅନ୍ତରୀଳରୂପେ ପ୍ରସାରିତ । ଯଦି କହିବ ଏହା ନିମ୍ନରେ ଥିଲା, ତେବେ ଏହା ଊର୍ଦ୍ଧ୍ୱରେ ମଧ୍ୟ ଥିଲା । ଏହା ମଧ୍ୟରେ ରେତଧା, ଅର୍ଥାତ୍ ବୀଜଧାରଣ ହୁଏ ଓ ତାହା ବଢ଼ି ବଡ଼ ମଧ୍ୟ ହୁଏ । ତାହାର ସ୍ୱ-ଶକ୍ତିର ମହିମା ଥିଲା, ପୁନଶ୍ଚ ପ୍ରୟତି, ଅର୍ଥାତ୍ ପ୍ରଭାବ ମଧ୍ୟ ବ୍ୟାପ୍ତ ହୋଇଥିଲା ।

**କୋ ଅଦ୍ଧା ବେଦ କ ଇହ ପ୍ରବୋଚତ୍ କୁତ ଆଜାତା କୁତ ଇୟଂ ବିସୃଷ୍ଟିଃ**
**ଅର୍ବାଗ୍ ଦେବା ଅସ୍ୟ ବିସର୍ଜନେନାଥ କୋ ବେଦ ଯତ ଆବଭୂବ ॥**

ଋ ୧୦-୧୨୯-୬

ଏହି ବିସର୍ଗ, ଅର୍ଥାତ୍ ବିସ୍ତାର କାହାଠାରୁ ବା କେଉଁଠାରୁ ଉଦ୍ଭବ ହେଲା, ଏହା ପ୍ର, ଅର୍ଥାତ୍ ବିସ୍ତାରିତ ରୂପରେ କିଏ କହିବ ? କିଏ ଏହାକୁ ନିଶ୍ଚିତ କରି ଜାଣେ ? ଦେବତାମାନେ ମଧ୍ୟ ଏ ଜଗତର ପରେ ବିସୃଷ୍ଟ ହେଲେ । ପୁଣି ତାହା କେଉଁଠାରୁ ନିଃସୃତ ହେଲା, ତାହା କିଏ କହିବ ବା ଜାଣିବ ?

ଇୟଂ ବିସୃଷ୍ଟିର୍ଯତ ଆବଭୂବ ଯଦି ବା ଦଧେ ଯଦି ବା ନ ।
ଯୋ ଅସ୍ୟାଧ୍ୟକ୍ଷ ପରମେ ବ୍ୟୋମନ୍ ସୋ ଅଙ୍ଗବେଦ ଯଦିବା ନ ବେଦ
ଋକ୍ ୧୦-୧୨୯-୭

ଏହି ବିସୃଷ୍ଟି, ଅର୍ଥାତ୍ ବିସ୍ତାର କେଉଁଠାରୁ ଆସିଅଛି, କିମ୍ବା ସୃଷ୍ଟ ହୋଇଅଛି, ବା ହୋଇନାହିଁ—ତାହା ପରମ ଆକାଶରେ ଥିବା ଅଧ୍ୟକ୍ଷ (ହିରଣ୍ୟଗର୍ଭ) ଜାଣନ୍ତି ବା ଜାଣନ୍ତି ନାହିଁ (କିଏ କହିପାରେ) ।

ଉପର୍ଯ୍ୟୁକ୍ତ ବର୍ଣ୍ଣନା ସୃଷ୍ଟି ବିଷୟରେ ପ୍ରାଚୀନତମ ଆର୍ଯ୍ୟଋଷିମାନେ କରିଛନ୍ତି । ଏ ବିଷୟରେ ଉପନିଷତ୍ ଶ୍ରୁତିରେ ଏପରିଭାବରେ ବର୍ଣ୍ଣନା କରାଯାଇଛି—

ସ୍ୱଭାବମେକେ କବୟୋ ବଦନ୍ତି କାଲଂ ତଥାନ୍ୟେ ପରିମୁହ୍ୟମାନାଃ ।
ଦେବସ୍ୟୈଷ ମହିମା ତୁ ଲୋକେ ଯେନେଦଂ ଭ୍ରାମ୍ୟତେ ବ୍ରହ୍ମଚକ୍ରମ୍ ॥
ଯେନାବୃତଂ ନିତ୍ୟମିଦଂ ହି ସର୍ବଂ ଜ୍ଞଃ କାଲକାରୋ ଗୁଣୀ ସର୍ବବିଦ୍ୟଃ ।
ତେନେଶିତଂ କର୍ମ ବିବର୍ତ୍ତତେ ହ ପୃଥ୍ୱ୍ୟପ୍ତେଜୋଽନିଲଖାନିଚିନ୍ତ୍ୟମ୍ ॥
ଶ୍ୱେତାଶ୍ୱତର ଉ, ୬।୧-୨

କୌଣସି କୌଣସି କବି କହିଥାନ୍ତି ଯେ, ସକଳ ପଦାର୍ଥର ସ୍ୱାଭାବିକ ଶକ୍ତିଦ୍ୱାରା ଏହି ଅନନ୍ତ ଜଗତ୍ ସମୁତ୍ପନ୍ନ ହୋଇଅଛି । ଅନ୍ୟମାନଙ୍କ ମତରେ କାଳ ଜଗଦୁତ୍ପତ୍ତିର ଆଦିକାରଣ । ଏହି ତଥାକଥିତ ପଣ୍ଡିତମାନେ ବିବେକଶୂନ୍ୟ ଓ ମାୟାମୋହରେ ଜଡ଼ିତ ହୋଇ ପ୍ରକୃତ ତତ୍ତ୍ୱ ଅବଗତ ହୋଇ ନାହାନ୍ତି । ସୂକ୍ଷ୍ମବିବେଚନାପୂର୍ବକ ବିଚାର କଲେ ଜଣାଯିବ ଯେ ପରଂବ୍ରହ୍ମଙ୍କର ମହିମା କେବଳ ଜଗଦୁତ୍ପତ୍ତିର ମୂଳ କାରଣ । ସେହି ପରଂବ୍ରହ୍ମଙ୍କ ଅଦ୍ଭୁତ ମହିମାବଳରେ ଏହି ବ୍ରହ୍ମଚକ୍ର ବା ସଂସାରଚକ୍ର ଭ୍ରମୁଅଛି । ଯେଉଁ ପରାତ୍ପର ପରମାତ୍ମା ସର୍ବଦା ଏହି ଅନନ୍ତ ବ୍ରହ୍ମାଣ୍ଡକୁ ବ୍ୟାପି ରହିଛନ୍ତି ସେ କାଳର ମଧ୍ୟ ସୃଷ୍ଟି କର୍ତ୍ତା; ସେ ସର୍ବଜ୍ଞ ଓ ଅବିଦ୍ୟାଦି ଦୋଷଶୂନ୍ୟ । ତାଙ୍କ ଆଜ୍ଞାରେ ଜଗତର ସମସ୍ତ କାର୍ଯ୍ୟ ଚାଲୁଅଛି । ସୁତରାଂ ପୃଥିବ୍ୟାଦି ପଞ୍ଚମହାଭୂତ ଜଗତର କାରଣ ନୁହନ୍ତି; ଏକ ପରଂବ୍ରହ୍ମ କେବଳ ପୃଥିବ୍ୟାଦି ପଞ୍ଚମହାଭୂତ ଓ ସକଳ ଜାଗତିକ କାର୍ଯ୍ୟର କାରଣ ।

**ଠ—ପରଂବ୍ରହ୍ମଙ୍କ ସ୍ୱୟଂସିଦ୍ଧମହିମାରୁ ପରମାଣୁସଦୃଶ ଅସଂଖ୍ୟ ଅସଂଖ୍ୟ ବ୍ରହ୍ମାଣ୍ଡର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ସାଧିତ ।**

ଅଲେଖ ପରଂବ୍ରହ୍ମଙ୍କ ଅଲୌକିକ ମହିମାରୁ ଯେପରି ଜଗତର ସୃଷ୍ଟି ହୋଇଅଛି, ଏକଥା ପୂର୍ବରୁ ବହୁ ଶାସ୍ତ୍ରପ୍ରମାଣଦ୍ୱାରା ପ୍ରକାଶିତ ହୋଇ ଆସୁଅଛି । ଏହି ମହିମା ସଚ୍ଚିନ୍ମୟ,

ଅନାଦିମଧ୍ୟାନ୍ତ, ସ୍ଥୂଳରୁ ସ୍ଥୂଳତର ଓ ସୂକ୍ଷ୍ମରୁ ସୂକ୍ଷ୍ମତମ । ପିପିଲିକାଠାରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ସକଳ ବିଶ୍ୱ ଏହି ମହିମାରେ ଅନୁସ୍ୟୂତ ହୋଇ ରହିଅଛି । ଏହି ସୃଷ୍ଟିରେ ଯାହା କିଛି ମହିମାନ୍ୱିତ, ସେ ସମସ୍ତ ହିଁ ସେହି ଅଦ୍‌ଭୁତ ମହିମାର ମାହାତ୍ମ୍ୟ । ଏହି ମହିମା ଏକ ହୋଇ ମଧ୍ୟ କୃତ୍ସ୍ନରୂପରେ ପ୍ରକଟିତ । ପ୍ରକୃତି, ପୁରୁଷ, କାଳାଦି ସକଳ ସେହି ମହିମାରୁ ହିଁ ପ୍ରଖ୍ୟାପ୍ୟମାନ ହୁଅନ୍ତି । ପ୍ରକୃତପକ୍ଷେ ଏହି ମହିମା ନିରବଚ୍ଛିନ୍ନ ନିତ୍ୟସ୍ୱରୂପ ଓ ପ୍ରପଞ୍ଚାତୀତ । ଏ ବିଷୟରେ ବାଲ୍ମୀକି ମୁନି କହିଅଛନ୍ତି—

ଯଥା ପ୍ରବିତତାମ୍ଭୋଧୌ ଦ୍ରୁତେନୈକତରଙ୍ଗିଣି ।
ଶାମ୍ୟତ୍ସ୍ପନ୍ଦତୟାନେକ କଲ୍ଲୋଳାବଳିଶାଳିନି ॥
ବାର୍ଯ୍ୟାମ୍ଭନି ସମେ ସ୍ୱଚ୍ଛେ ଶୁଦ୍ଧେ ସ୍ୱାଦୁନି ଶୀତଳେ ।
ଅବିନାଶିନି ବିସ୍ତୀର୍ଣ୍ଣେ ମହାମହିମନି ସ୍ଫୁଟେ ॥

ଯୋଗବାଶିଷ୍ଠ ରାମାୟଣ, ସ୍ଥିତିପ୍ର, ସ ୧୧।୨୮-୨୯ ।

ଯେପରି ଅତିବିସ୍ତୀର୍ଣ୍ଣ ସମୁଦ୍ର ଓ ଅନ୍ୟସ୍ଥାନସ୍ଥିତ ଜଳ ଜଳତ୍ୱ ନେଇ ସମାନ ହେଲେ ମଧ୍ୟ ସମୁଦ୍ରରେ ହିଁ ଅସଂଖ୍ୟ ତରଙ୍ଗର ଓ କଲ୍ଲୋଳାଦିର ଉଦୟ ହୁଏ, ସେହିପରି ସର୍ବବ୍ୟାପୀ ଅବିନାଶୀ ମହା ମହିମ ପରମାତ୍ମାରୂପକ ସମୁଦ୍ରରେ ଏହି ବିଶ୍ୱକଳ୍ପନା ଉଦିତ ବା ଉତ୍ଥିତ ହେଉଅଛି ।

ସୂର୍ଯ୍ୟାଦ୍ୟଂଶୁଷୁ ସଂଖ୍ୟାତୁଂ ଶକ୍ୟନ୍ତେ ଲଘବୋଽଣବଃ ।
ଉତ୍ପଦ୍ୟନ୍ତେ ଚିଦାଦିତ୍ୟେ ତ୍ରୈଲୋକ୍ୟପରମାଣବଃ ॥
ଯଥାଣବୋ ବହନ୍ତ୍ୟର୍କଦୀପ୍ତିଷ୍ୱପ୍ସୁ ରଜଃସୁ ଚ ।
ତଥା ବହନ୍ତି ଚିଦ୍‌ବ୍ୟୋମ୍ନି ତ୍ରୈଲୋକ୍ୟପରମାଣବଃ ॥

ଯୋଗବାଶିଷ୍ଠ ସ୍ଥିତି ପ୍ର— ୩।୨୦-୨୧

ଯେପରି ସୂର୍ଯ୍ୟକିରଣରେ ଅସଂଖ୍ୟ ପରମାଣୁ ପ୍ରସ୍ଫୁରିତ ହୁଅନ୍ତି, ସେହିପରି ଚିଦାଦିତ୍ୟ ପ୍ରକାଶରେ ଲକ୍ଷ ଲକ୍ଷ ତ୍ରୈଲୋକ୍ୟ ପରମାଣୁ ସମୁଦିତ ଓ ପରିସ୍ଫୁରିତ ହୋଇଥାଏ ।

ଯଥା ତରଙ୍ଗା ଜଳଧୌ ମୃଗତୃଷ୍ଣା ମରୌ ଯଥା ।
କୁସୁମାନି ଯଥା ଚୂତେ ତଥା ବିଶ୍ୱଶ୍ରିୟଃ ପରେ ॥
ଭାନୋର୍ଗଣୟିତୁଂ ଶକ୍ୟା ରଶ୍ମିଷୁବ୍ରସରେଣବଃ ।
ଆଲୋକବପୁଷୋ ବ୍ରହ୍ମ ତତ୍ତ୍ୱେନ ଜଗତାଂ ଗଣାଃ ॥

ଯଥା ମଶକଜାଲାନି ବର୍ଷାଦଷ୍ୱାକୁଲାନି ତୁ ।
ଉତ୍ପତ୍ୟୋତ୍ପତ୍ୟ ନଶ୍ୟନ୍ତି ତଥେମା ଲୋକସୃଷ୍ଟୟଃ ।
ନ ଚ ବଜ୍ଞାୟତେ କସ୍ମାତ୍ କାଲାତ୍ ପ୍ରଭୃତି ସ୍ୱଗତାଃ ।
ତତ୍ୟାଗମାପାୟପରା ଏତାଃ ସର୍ଗପରମ୍ପରାଃ ।।
ଅନାଦ୍ୟମତେ୍ୟା ବତରଂ ପ୍ରସ୍ଫୁରନ୍ତି ତରଙ୍ଗବତ୍ ।
ପୂର୍ବାତ୍ ପୂର୍ବଂ କଳାଭୂର୍ବସ୍ତତଃ ପୂର୍ବତରଂ ଯଥା ।।
ଭୂତ୍ୱା ଭୂତ୍ୱା ପ୍ରଲୀୟନ୍ତେ ସସୁରସୁରମାନବାଃ ।
ସରତ୍ତରଙ୍ଗଭଙ୍ଗୌଘବ ସମସ୍ତା ଭୂତଜାତୟଃ ।।

ଯୋଗବାଶିଷ୍ଠ—୪୭।୧୪।୨୦

ସମୁଦ୍ରରେ ତରଙ୍ଗ ଓ ମରୁଭୂମିରେ ମୃଗତୃଷ୍ଣା ପରି ପରଂବ୍ରହ୍ମଙ୍କ ମହିମାରେ ଅନନ୍ତ କୋଟି ବ୍ରହ୍ମାଣ୍ଡ ବିଦ୍ୟମାନ, ଅନ୍ୟଥ ନୁହେଁ । ଯେପରି ସୂର୍ଯ୍ୟରଶ୍ମିସ୍ଥିତ ତ୍ରସରେଣୁ ଅସଂଖ୍ୟେୟ; ଯେପରି ମଶକକୁଳ ବର୍ଷାକାଳରେ ଉତ୍ପନ୍ନ ଓ ନଷ୍ଟ ହୁଅନ୍ତି, ସେହିପରି ଲୋକସୃଷ୍ଟି ମଧ୍ୟ କାଳେ କାଳେ ଉତ୍ପନ୍ନ ଓ ବିନଷ୍ଟ ହୋଇ ଅଛନ୍ତି ।

ଉତ୍ପତ୍ତିବିନାଶଧର୍ମା ସୃଷ୍ଟି ପରମ୍ପରା କେବେ ବା କେଉଁ କାଳରୁ ପ୍ରବୃତ୍ତ ହୋଇ ଆସୁଅଛି—ଏହା କାହାର ଜ୍ଞାନଗମ୍ୟ ନୁହେଁ । କେଉଁ ତରଙ୍ଗ ପ୍ରଥମ, କେଉଁ ସମୟରେ ବା ତରଙ୍ଗର ପ୍ରଥମାରମ୍ଭ—ଏହା ଯେପରି ଜଣାଯାଏ ନାହିଁ, ସେପରି ସୃଷ୍ଟି ତରଙ୍ଗର ମଧ୍ୟ ପ୍ରାଥମ୍ୟ ବା ଆଦିମତ୍ତ୍ୱ ଜଣାଯାଏ ନାହିଁ । ଏତିକ କେବଳ ଜଣାଯାଏ ଯେ ସୃଷ୍ଟିର ଉତ୍ପତ୍ତି ସତ୍ୟ, କିନ୍ତୁ ତରଙ୍ଗ ପରି ଅନାଦିପ୍ରବାହରେ ପ୍ରବାହିତ । ଯେପରି ଏକ ତରଙ୍ଗର ଉତ୍‌ଥାନ ଓ ତତ୍‌ପୂର୍ବବର୍ତ୍ତୀ ତରଙ୍ଗର ପତନ, ସେହିପରି ଏକ ସୃଷ୍ଟିର ଆବିର୍ଭାବ ଓ ତତ୍‌ପୂର୍ବବର୍ତ୍ତୀର ତିରୋଭାବ—ଏତିକି ତଥ୍ୟ ବୁଦ୍ଧିସ୍ଥ କରାଯାଏ । ବସ୍ତୁତଃ କହିଲେ—ଏହି ସୃଷ୍ଟିର ପୂର୍ବେ ଏହି ରୂପ ଅନ୍ୟ ସୃଷ୍ଟି ଓ ସେହି ସୃଷ୍ଟିର ପୂର୍ବରେ ତଦ୍ରୂପ ଅନ୍ୟ ସୃଷ୍ଟି ଥିଲା—ଏହିପରି ଅନାଦିତ୍ୱବହିଁ ପ୍ରାପ୍ତ ହେବାକୁ ହୁଏ । ଯେପରି ନଦୀରେ ତରଙ୍ଗର ଆବିର୍ଭାବ ଓ ତିରୋଭାବ ହୋଇଥାଏ, ସେହିପରି ସୁରାସୁରପ୍ରଭୃତି ଅସଂଖ୍ୟ ଭୂତଜାଲ ପୁନଃ ପୁନଃ ଆବିର୍ଭୂତ ଓ ବିଲୀନ ହୋଇ ଅଛନ୍ତି । *

* ଉପନିଷଦ୍‌ରେ ବର୍ଣ୍ଣିତ ଅଛି—ଅସ୍ୟ ବ୍ରହ୍ମାଣ୍ଡସ୍ୟ ସମନ୍ତତଃ ସ୍ଥିତାନ୍ୟେତାଦୃଶାନି ଅନନ୍ତ କୋଟି ବ୍ରହ୍ମାଣ୍ଡାନି ସାବରଣାନି ଜ୍ୱଲନ୍ତି । ଚତୁର୍ମୁଖ-ପଞ୍ଚମୁଖ-ଷଣ୍ମୁଖ-ସପ୍ତମୁଖାଷ୍ଟମୁଖାଦି-ସଂଖ୍ୟା-କ୍ରମେଣ ସହସ୍ରାବଧି ମୁଖାନ୍ତୈର୍ନାରାୟଣାଂଶୈ-ରଜୋଗୁଣପ୍ରଧାନୈରେକୈକ ସୃଷ୍ଟି-କର୍ତ୍ତୃଭିରଧିଷ୍ଠିତାନି ବିଷ୍ଣୁମହେଶ୍ୱରାଖ୍ୟୈର୍ନାରାୟଣାଂଶୈଃ ସତ୍ତ୍ୱତମୋଗୁଣପ୍ରଧାନୈରେ-କୈକସ୍ଥିତିସଂହାରକର୍ତ୍ତୃଭିରଧିଷ୍ଠିତାନି ମହାଜଲୌଘମତ୍ସ୍ୟବୁଦ୍‌ବୁଦାନନ୍ତସଂଘବତ୍ ଭ୍ରମନ୍ତି ।

ଏପର୍ଯ୍ୟନ୍ତ ସୃଷ୍ଟିତତ୍ତ୍ୱବିଜ୍ଞାନଯୋଗରେ ଯେଉଁ ସମସ୍ତ ତତ୍ତ୍ୱର ବ୍ୟାଖ୍ୟା କରାଗଲା, ସେ ସମସ୍ତ ସୃଷ୍ଟିର ଏକମାତ୍ର ଆଧାର ହେଉଛନ୍ତି ଏକ ଓ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମ । ତାହାଙ୍କର ସ୍ୱୟଂସିଦ୍ଧ ଅଲୌକିକ ମହିମାରୁ ଅଲୌକିକ ସୃଷ୍ଟି ସମ୍ଭୂତ ହୋଇଅଛି ।

**ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ ତଂ ଦେବାନାଂ ପରମଂ ଚ ଦୈବତମ୍ ।**
**ପତିଂ ପତୀନାଂ ପରମଂ ପରସ୍ତାତ୍ ବିଦାମ ଦେବଂ ଭୁବନେଶମୀଡ଼୍ୟମ୍ ॥**

ଶ୍ୱେତାଶ୍ୱତର ଉ. —୬-୭ ।

---

କ୍ରୀଡ଼ାସକ୍ତଜାଲିକକରତଳାମଳକବୃନ୍ଦବନ୍ମହାବିଷ୍ଣୋଃ କରତଳେ ବିଲସନ୍ତ୍ୟନନ୍ତକୋଟି-ବ୍ରହ୍ମାଣ୍ଡାନି । ଜଳଯନ୍ତ୍ରଘଟମାଳିକଜାଲବନ୍ମହାବିଷ୍ଣୋରେକୈକରୋମକୂପାନ୍ତରେଷ୍ୱନନ୍ତ-କୋଟି ବ୍ରହ୍ମାଣ୍ଡାନି ସାବରଣାନି ଭ୍ରମନ୍ତି ।

ତ୍ରିପାଦବିଭୂତି ମହାନାରାୟଣୋପନିଷଦ୍ । ୭ ।

ଏହି ବ୍ରହ୍ମାଣ୍ଡର ଚତୁର୍ଦ୍ଦିଗରେ ଏହିପରି ଆବରଣ ସହିତ ଅନନ୍ତକୋଟିବ୍ରହ୍ମାଣ୍ଡ ଅବସ୍ଥିତ ହୋଇ ଉଜ୍ଜ୍ୱଳ ଦୀପ୍ତିରେ ପ୍ରଜ୍ୱଳିତ ହୋଇଅଛନ୍ତି । ସେହି ସମସ୍ତ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ପ୍ରତ୍ୟେକର ଜଣେ ଜଣେ ବ୍ରହ୍ମା; ସେହି ସେହି ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଚାରି, ପାଞ୍ଚ, ଛଅ, ସାତ ଓ ଆଠ ସଂଖ୍ୟାଠାରୁ ଆରମ୍ଭକରି ସହସ୍ର ସଂଖ୍ୟା ପର୍ଯ୍ୟନ୍ତ ମୁଖ ବିଦ୍ୟମାନ । ଏମାନେ ସମସ୍ତେ ହିଁ ନାରାୟଣଙ୍କ ଅଂଶ ଓ ରଜୋଗୁଣପ୍ରଧାନ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ବ୍ରହ୍ମାଣ୍ଡର ସ୍ଥିତି ଓ ସଂହାରକର୍ତ୍ତା ବିଷ୍ଣୁ ଓ ମହେଶ୍ୱରନାମକ ନାରାୟଣଙ୍କ ଅଂଶ ପ୍ରତ୍ୟେକ ବ୍ରହ୍ମାଣ୍ଡର ଅଧିଷ୍ଠାତା ଅଛନ୍ତି । ଏମାନେ ସମସ୍ତେ ହିଁ ସତ୍ତ୍ୱ ଓ ତମୋଗୁଣପ୍ରଧାନ । ଏହି ବ୍ରହ୍ମାଣ୍ଡସକଳ ମହାଜଳପ୍ରବାହରେ ଅନନ୍ତସଂଘବିଶିଷ୍ଟ ମତ୍ସ୍ୟ ଓ ବୁଦ୍‌ବୁଦପରି ଅନବରତ ଇତସ୍ତତଃ ବିକ୍ଷିପ୍ତଭାବରେ ଭ୍ରମଣ କରୁଅଛି । କ୍ରୀଡ଼ାପ୍ରଦର୍ଶନ ଐନ୍ଦ୍ରଜାଲିକର କରସ୍ଥିତ ଆମଳକସମୂହପରି ମହାବିଷ୍ଣୁଙ୍କ କରତଳରେ ଅନନ୍ତକୋଟିବ୍ରହ୍ମାଣ୍ଡ ବିଳୀନ ହେଉଅଛି । କୂପରୁ ଜଳ ଉତ୍ତୋଳନ ସକାଶେ ଯନ୍ତ୍ରରେ ନିବଦ୍ଧ ଘଟମାଳାପରି ମହାବିଷ୍ଣୁଙ୍କର ଏକ ଏକ ରୋମକୂପରେ ଆବରଣ ସହିତ ଅନନ୍ତକୋଟିବ୍ରହ୍ମାଣ୍ଡ ଭ୍ରମଣ କରୁଅଛି । ଭକ୍ତ ଭୀମ ଭୋଇ ମଧ୍ୟ କହିଅଛନ୍ତି—"ଯାହାର ଲୋମ ମୂଳେ ମାଳ ମାଳ ମେଦିନୀ,

ବର୍ଣ୍ଣି ନାହାନ୍ତି ଯାକୁ ସାରଳାହିଁ ମୁନି,
ଯା ଗର୍ଭେ ପୂରିଅଛି ସପ୍ତଦ୍ୱୀପା ଧରଣୀ"—ଇତ୍ୟାଦି ।

## ଠ—ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଜ୍ୟୋତିର୍ବିଜ୍ଞାନ :

ସୃଷ୍ଟିତତ୍ତ୍ୱ ବିଜ୍ଞାନ ସମ୍ବନ୍ଧରେ ଜ୍ୟୋତିର୍ବିଜ୍ଞାନ ବା ଗଣିତ ଜ୍ୟୋତିଷ କହେ ଯେ, ସୂର୍ଯ୍ୟକୁ କେନ୍ଦ୍ରକରି ଯେ ସମସ୍ତ ଗ୍ରହ ଉପଗ୍ରହମାନଙ୍କ ସହିତ ପରିକ୍ରମଣ କରନ୍ତି ସୂର୍ଯ୍ୟ ସହିତ ସେମାନଙ୍କର ସମଷ୍ଟି ନାମ ସୌରମଣ୍ଡଳ । ଇଂରାଜୀରେ ଏହାକୁ Solar system କୁହାଯାଏ । ଇହ ଜଗତରେ ଦୃଶ୍ୟମାନ ସୂର୍ଯ୍ୟ ସମସ୍ତଙ୍କର ନିତ୍ୟ ପରିଚିତ ବସ୍ତୁ । ଅତି ପରିଚୟ ହେତୁରୁ ବା ଦୂରତ୍ୱକୁ ନେଇ ସୂର୍ଯ୍ୟର ବୃହତ୍ତ୍ୱଜ୍ଞାନ ସମସ୍ତଙ୍କ ମନରେ ନ ହୋଇପାରେ; କିନ୍ତୁ ବିଜ୍ଞାନ ସମସ୍ତଙ୍କୁ ସ୍ମରଣ କରାଇ ଦିଏ ଯେ, ସୂର୍ଯ୍ୟତୁଳନାରେ ଏହି ପୃଥିବୀ କେଡ଼େ କ୍ଷୁଦ୍ର ।

ସେହି ପରମେଶ୍ୱର ପରମାତ୍ମା ବୈବସ୍ୱତପ୍ରଭୃତି ମନୁମାନଙ୍କର ଅଧୀଶ୍ୱର, ସେ ଇନ୍ଦ୍ରାଦି ଦେବତାମାନଙ୍କର ପରମ ଦୈବସ୍ୱରୂପ। ସେ ବ୍ରହ୍ମାଦି ପ୍ରଜାପତିମାନଙ୍କର ମଧ୍ୟ ଅଧିପତି, ସେ ପରମରୁ ମଧ୍ୟ ପରମ; ସେ ସ୍ୱର୍ଗାଦି ଚତୁର୍ଦ୍ଦଶ ଭୁବନର ଅଦ୍ୱିତୀୟ ଅଧୀଶ୍ୱର; ତାହାଙ୍କୁ ହିଁ ଏକମାତ୍ର ଉପାସ୍ୟ ବୋଲି ଜାଣ। ଏହିରୂପେ ସେହି ପରମାତ୍ମାଙ୍କୁ ଭକ୍ତିଚିତ୍ତରେ ଦର୍ଶନ କଲେ ଜୀବ ମୁକ୍ତ ହୁଏ।

---

ସମୁଦ୍ର ତୁଳନାରେ ସିକତାଭଳି। ଏହି କ୍ଷୁଦ୍ର ପୃଥିବୀ ବୃହତ୍ତ ସୂର୍ଯ୍ୟର ଚତୁଃପାଖେ ଆକାଶ-ମାର୍ଗରେ ପରିକ୍ରମା କରୁଛି। ପୃଥିବୀପରି ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନିପ୍ରଭୃତି ଆଉ କେତେକ ଗ୍ରହ ଏହି ସୌରମଣ୍ଡଳ ଅନ୍ତର୍ଗତ। କୌଣସି କୌଣସି ଗ୍ରହର ଉପଗ୍ରହ ମଧ୍ୟ ଅଛି। ପୃଥିବୀର ଉପଗ୍ରହ ଚନ୍ଦ୍ର, ଓ ବୃହସ୍ପତିର ୪ ଉପଗ୍ରହ। ପ୍ରତ୍ୟେକ ଗ୍ରହ ସୂର୍ଯ୍ୟଙ୍କୁ କେନ୍ଦ୍ର-କରି ନିଜ ନିଜ କକ୍ଷରେ ପରିଭ୍ରମଣ କରୁଅଛନ୍ତି। ସେହିପରି ଉପଗ୍ରହମାନେ ମଧ୍ୟ ନିଜ ନିଜ ଗ୍ରହକୁ କେନ୍ଦ୍ର କରି ନିଜ ନିଜ କକ୍ଷରେ ଆବର୍ତ୍ତିତ ହେଉଅଛନ୍ତି। ଯେଉଁ ବୃତ୍ତ ସୌରମଣ୍ଡଳର ସୀମା ନିର୍ଦ୍ଦେଶ କରୁଅଛି, ତାହାକୁ ସୂର୍ଯ୍ୟର ପରିଧି କୁହାଯାଏ।

ଆକାଶରେ ଅଗଣ୍ୟ ନକ୍ଷତ୍ରପୁଞ୍ଜ ଉଜ୍ଜ୍ୱଳ ଦେଖାଯାଉଅଛନ୍ତି। ଜ୍ୟୋତିର୍ବିଦ୍‌ମାନେ ସେମାନଙ୍କର ସଂଖ୍ୟା ନିର୍ଦ୍ଧାରଣ କରିବାକୁ ଅକ୍ଷମ। କେତେ ଲକ୍ଷ ଲକ୍ଷ ନକ୍ଷତ୍ର ଆକାଶରେ ଚନ୍ଦ୍ରାତପତଳରେ ବିଲମ୍ବିତ ରହି ଅଛନ୍ତି, କିଏ ତାହାର ଇୟତ୍ତା ନିଶ୍ଚୟ କରିବ ? ଏହି ସୂର୍ଯ୍ୟ ପୃଥିବୀଠାରୁ ବହୁ ଦୂରରେ ଅବସ୍ଥିତ; କିନ୍ତୁ ଏପରି ଅନେକ ନକ୍ଷତ୍ର ଅଛନ୍ତି, ଯେଉଁମାନଙ୍କର ଦୂରତ୍ୱ ତୁଳନାରେ ଏହି ସୂର୍ଯ୍ୟ ପୃଥିବୀର ନିକଟସ୍ଥ ମନେ ହେବ। କୌଣସି କୌଣସି ନକ୍ଷତ୍ରରୁ ଆଲୋକରେଖା ପୃଥିବୀରେ ପହଞ୍ଚିବାକୁ ଶତ ଶତ ବର୍ଷ ଲାଗେ। ପୁନଶ୍ଚ କୌଣସି କୌଣସି ନକ୍ଷତ୍ର ଏତେ ଦୂରରେ ଅବସ୍ଥିତ ଯେ, ଉତ୍କୃଷ୍ଟତମ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ମଧ୍ୟ ସେମାନଙ୍କୁ ନେତ୍ରଗୋଚର କରିଯାଇ ପାରେ ନାହିଁ। ବିଜ୍ଞାନସାହାଯ୍ୟରେ ଜଣାଯାଏ ଯେ ଗୋଟିଏ ଗୋଟିଏ ନକ୍ଷତ୍ର ଏକ ଏକ ସୂର୍ଯ୍ୟ। ଏହି ସମସ୍ତ ନକ୍ଷତ୍ର-ସୂର୍ଯ୍ୟ ମଧ୍ୟରେ କେତୋଟିର ପରିମାଣ ଏହି ସୂର୍ଯ୍ୟ ଅପେକ୍ଷା ମଧ୍ୟ ସହସ୍ର ଗୁଣରେ ବୃହତ୍। ସେ ସମସ୍ତ ନକ୍ଷତ୍ର—ସୂର୍ଯ୍ୟ କେତେ ଯେ ପ୍ରକାଣ୍ଡ ତାହା କିଏ ବା ଜାଣେ ? ଏହି ସୂର୍ଯ୍ୟଙ୍କୁ କେନ୍ଦ୍ର କରି ଯେପରି କେତେକ ଗ୍ରହ ଉପଗ୍ରହ ଆବର୍ତ୍ତିତ ହେଉଅଛନ୍ତି, କିଏ ଜାଣେ ସେହି ସକଳ ନକ୍ଷତ୍ର—ସୂର୍ଯ୍ୟର ଅଧୀନରେ କେତେ କୋଟି ଗ୍ରହ ଉପଗ୍ରହ ଆକାଶରେ ବିଚରଣ କରୁଅଛନ୍ତି। ସମ୍ଭବତଃ ପ୍ରତ୍ୟେକ ନକ୍ଷତ୍ର-ସୂର୍ଯ୍ୟହିଁ ଗୋଟିଏ ଗୋଟିଏ ସୌରମଣ୍ଡଳର କେନ୍ଦ୍ରସ୍ଥଳ। ଅତଏବ ବିଶ୍ୱରେ ସୌରମଣ୍ଡଳର ସଂଖ୍ୟା ଗଣନାତୀତ।

ଏହି ପୃଥିବୀ "ଭୂତସ୍ୟ ଧାରଣୀ"—ନାନା ଜୀବଜନ୍ତୁର ଆବାସଭୂମି। କେତେକ ବୈଜ୍ଞାନିକ ଦୂରବୀକ୍ଷଣ ଯନ୍ତ୍ରସାହାଯ୍ୟରେ ପରୀକ୍ଷା କରି ସ୍ଥିର କରିଅଛନ୍ତି ଯେ, ମଙ୍ଗଳ-ଗ୍ରହରେ ମଧ୍ୟ ଜୀବମାନଙ୍କର ବସବାସ ଅଛି (?)। ତାହା ଯଦି ଠିକ୍ ହୁଏ, ତେବେ ଅନ୍ୟାନ୍ୟ ଗ୍ରହରେ ଯେ ଜୀବର ନିବାସ ନ ଥିବ, ତାର ପ୍ରମାଣ କ'ଣ ? ପ୍ରକୃତରେ ଦେଖିଲେ, ଏକ

## ୦—ନିର୍ଗୁଣ ପରଂବ୍ରହ୍ମଙ୍କର ସୃଷ୍ଟି ବିଷୟରେ ଆଶଙ୍କା ଓ ତାର ନିରାକରଣ ।

ସୃଷ୍ଟିକ୍ରିୟା ବିଷୟରେ ଏହି ଆଶଙ୍କା ହୁଏ—ଯଦି ପରଂବ୍ରହ୍ମ ନିର୍ଗୁଣ ଓ ନିର୍ଲେପାଦି-ଗୁଣବିଶିଷ୍ଟ ହେବା ଯୁକ୍ତିଯୁକ୍ତ, ତେବେ ତାଙ୍କର ଏହି ସୃଷ୍ଟିପ୍ରକ୍ରିୟାରେ ପ୍ରବୃତ୍ତି ହେବାର ଆବଶ୍ୟକତା କାହିଁକି ? ଏହି ଆଶଙ୍କାର ନିରାକରଣ ଉଦ୍ଦେଶ୍ୟରେ ବ୍ରହ୍ମସୂତ୍ର ବଚନ ଏହିପରି—

**ନ ପ୍ରୟୋଜନବତ୍ତ୍ୱାତ୍ ॥**

ବ୍ର. ସୂ. ୬-୧-୩୨ ।

ନ, ଅର୍ଥାତ୍ ବ୍ରହ୍ମ ଜଗତର କର୍ତ୍ତା ହୋଇ ପାରନ୍ତି ନାହିଁ; ପ୍ରୟୋଜନବତ୍ତ୍ୱାତ୍, ଅର୍ଥାତ୍—କୌଣସି କାର୍ଯ୍ୟ କରିବାକୁ ହେଲେ ସେହି କାର୍ଯ୍ୟର ପ୍ରୟୋଜନ ଥିବା ନିତାନ୍ତ ଆବଶ୍ୟକ ।

---

ବିନ୍ଦୁ ଜଳ ମଧ୍ୟ ପ୍ରାଣିଶୂନ୍ୟ ନୁହେଁ । ତାହା ସହସ୍ର ଜୀବର କ୍ରୀଡ଼ାଭୂମି । ସେ ହେତୁରୁ ମନେ ହୁଏ ଯେ, ପୃଥିବୀ ପରି ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହରେ ମଧ୍ୟ ପ୍ରାଣୀ ଥାଇ ପାରନ୍ତି । ଏହି ସୌରମଣ୍ଡଳ ବିଷୟରେ ଯାହା କୁହାଗଲା, ନଭଃସ୍ଥିତ ଅନ୍ୟାନ୍ୟ ନକ୍ଷତ୍ରମଣ୍ଡଳବିଷୟରେ ମଧ୍ୟ ତାହାହିଁ ବକ୍ତବ୍ୟ । ସମ୍ଭବତଃ ଅସୀମ ସୃଷ୍ଟିର କୁତ୍ରାପି ଜୀବର ଅଭାବ ନାହିଁ ।

ହିନ୍ଦୁ ଶାସ୍ତ୍ରରେ ଏକ ଏକ ସୌର ବା ନକ୍ଷତ୍ରମଣ୍ଡଳକୁ ବ୍ରହ୍ମାଣ୍ଡ କୁହାଯାଏ । ଋଷିମାନଙ୍କ ମତରେ ଏହିପରି ଅସଂଖ୍ୟ ବ୍ରହ୍ମାଣ୍ଡ ଅଛି । ସୂର୍ଯ୍ୟମଣ୍ଡଳ-ପରିଧିର ଆକାର ଅଣ୍ଡାତୁଲ୍ୟ ( Oval form ), ସେହି ହେତୁରୁ ତାହାକୁ ବ୍ରହ୍ମାଣ୍ଡ କୁହାଯାଏ । ଅତଏବ ବ୍ରହ୍ମାଣ୍ଡର ବହୁତ୍ୱ ସମ୍ବନ୍ଧରେ ପାଶ୍ଚାତ୍ୟ ଓ ପ୍ରାଚ୍ୟ ବିଜ୍ଞାନ ଏକମତ । ବ୍ରହ୍ମାଣ୍ଡମାନଙ୍କର ଅସଂଖ୍ୟତ୍ୱ ବିଷୟରେ ଶାସ୍ତ୍ରରେ ଉଲ୍ଲେଖ ଅଛି—

"ସଂଖ୍ୟା ଚେଦ୍ର ରଜସାମସ୍ତି ବିଶ୍ୱାନାଂ ନ କଦାଚନ ।
ବ୍ରହ୍ମାବିଷ୍ଣୁଶିବାଦୀନାଂ ତଥା ସଂଖ୍ୟା ନ ବିଦ୍ୟତେ ॥
ପ୍ରତିବିଶ୍ୱେଷୁ ସନ୍ତ୍ୟେବ ବ୍ରହ୍ମାବିଷ୍ଣୁଶିବାଦୟଃ ।

—ଦେବୀଭାଗବତ—୯-୩-୭-୮

ଅର୍ଥାତ୍—ବରଂ ଧୂଳିକଣାମାନଙ୍କର ସଂଖ୍ୟା କରାଯାଇପାରେ, କିନ୍ତୁ ବ୍ରହ୍ମାଣ୍ଡର ସଂଖ୍ୟା କୌଣସି ପ୍ରକାରେ କରାଯାଇ ପାରିବ ନାହିଁ । ପ୍ରତି ବ୍ରହ୍ମାଣ୍ଡରେ ବ୍ରହ୍ମା, ବିଷ୍ଣୁ, ଶିବ ବିରାଜିତ ଅଛନ୍ତି । ସେମାନଙ୍କର ସଂଖ୍ୟା ଗଣନାତୀତ ।

"କୋଟିକୋଟ୍ୟୟୁତାନି ମେ ଗୃଣ୍ଡାନି କଥିତାନି ତୁ ।
ତତ୍ର ତତ୍ର ଚତୁର୍ବକ୍ତ୍ରା ବ୍ରହ୍ମାଣୋ ହରୟୋ ଭବାଃ ।

ବ୍ରହ୍ମାଣ୍ଡ ଯେ କୋଟି କୋଟି, ଅୟୁତ ଅୟୁତ—ତାହା ଉକ୍ତ ହୋଇଅଛି । ସେହି ବ୍ରହ୍ମାଣ୍ଡରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରସମୂହ ଅଧିଷ୍ଠିତ ରହି ଅଛନ୍ତି ।

ଏହା ପୂର୍ବପକ୍ଷ । ଜଗତରେ ଦେଖାଯାଏ ଯେ, ଯେଉଁମାନେ କିଛି କାର୍ଯ୍ୟ କରନ୍ତି, ସେହି କାର୍ଯ୍ୟର କୌଣସି ନା କୌଣସି ପ୍ରୟୋଜନ ଥାଏ । ବ୍ରହ୍ମ ଜଗତ୍-ସୃଷ୍ଟି ରୂପକ କାର୍ଯ୍ୟ କରିଅଛନ୍ତି,ଅତଏବ ତାଙ୍କର ଏହି କାର୍ଯ୍ୟ ପ୍ରତି କୌଣସି ପ୍ରୟୋଜନଥିବା ଏକପ୍ରକାର ସିଦ୍ଧକଥା । ଅର୍ଥାତ୍ ଜଗତ୍‌ସୃଷ୍ଟି ପୂର୍ବରୁ ପରଂବ୍ରହ୍ମଙ୍କର କୌଣସି କାମନା ଅସମ୍ପୂର୍ଣ୍ଣ ଥିଲା, ଜଗତ୍‌ସୃଷ୍ଟି ପରେ ସେହି କାମନା ପୂର୍ଣ୍ଣ ହୋଇଅଛି; କିନ୍ତୁ ଶ୍ରୁତିପ୍ରମାଣ ଅନୁସାରେ ପରଂବ୍ରହ୍ମଙ୍କର କୌଣସି ସମ୍ବନ୍ଧରେ କୌଣସି କାମନା ଅପୂର୍ଣ୍ଣ ଥାଏ ନାହିଁ, ସେ ସର୍ବଦା ହିଁ ଆପ୍ତକାମ । ଅତଏବ ଏହିରୂପ ସିଦ୍ଧାନ୍ତ କରିବା ଉଚିତ ହୁଏ ଯେ, ପରଂବ୍ରହ୍ମ ସୃଷ୍ଟି କରି ନାହାନ୍ତି—ଏହା ସବୁ ବାଦୀର ଉକ୍ତି । ଏହାର ଉତ୍ତରରେ ବ୍ରହ୍ମସୂତ୍ର କହେ—

ଲୋକବତ୍ତୁଲୀଳାକୈବଲ୍ୟମ୍ ।

ବ୍ର: ସୂ: ୨-୧-୩ ।

ସୂତ୍ରସ୍ଥ 'ତୁ'ଶବ୍ଦ ଆପତ୍ତିପରିହାରର ଦ୍ୟୋତକ । ଅର୍ଥାତ୍ ସେହି ସମସ୍ତ ଆପତ୍ତି ଏହି ନିୟମରେ ନିରସ୍ତ ହୁଏ । ସୃଷ୍ଟିକାର୍ଯ୍ୟ ପରମାତ୍ମାଙ୍କର ଲୀଳାମାତ୍ର; * ଯେପରି ଲୋକମଧ୍ୟରେ କୌଣସି ପ୍ରାପ୍ତକାମ ରାଜାର ବା ରାଜ-ଅମାତ୍ୟର (ଅର୍ଥାତ୍ ଯାହାର କିଛି ଅଭାବ ନାହିଁ) ବିନା ପ୍ରୟୋଜନରେ କେବଳ କ୍ରୀଡ଼ା ନିମନ୍ତେ ନାନାପ୍ରକାର ପ୍ରବୃତ୍ତି ଓ ଚେଷ୍ଟା ଦେଖାଯାଏ, ଅଥବା, ଯେପରି ମନୁଷ୍ୟର ଶ୍ୱାସ-ପ୍ରଶ୍ୱାସ କେବଳ ସ୍ୱଭାବବଶତଃ ବିନା ଆୟାସରେ ପ୍ରବୃତ୍ତ ହେବା ଦେଖାଯାଏ, ସେହିପରି ପରମାତ୍ମାଙ୍କର ପ୍ରବୃତ୍ତି ମଧ୍ୟ ବିନା ଉଦ୍ଦେଶ୍ୟରେ ବା ପ୍ରୟୋଜନରେ କେବଳ ସ୍ୱଭାବବଶତଃ ନିଷ୍ପନ୍ନ ହୋଇପାରେ । ଲୀଳାରେ ଯାହା କିଛି ଉଲ୍ଲାସାଦି ପ୍ରୟୋଜନ ଅଛି ସତ; କିନ୍ତୁ ଶ୍ୱାସ-ପ୍ରଶ୍ୱାସ ତ୍ୟାଗରେ କୌଣସି ଉଦ୍ଦେଶ୍ୟ ବା ଅଭିସନ୍ଧି ନାହିଁ । କୌଣସି ବୁଦ୍ଧିମାନ୍ ବ୍ୟକ୍ତି ଏହା ବା ତାହା ହେଉ ବୋଲି ଭାବନା କରି ଶ୍ୱାସ ତ୍ୟାଗ ଓ ପ୍ରଶ୍ୱାସ ଗ୍ରହଣ କରେନାହିଁ । ତାହା ସ୍ୱଭାବତଃ ନିଷ୍ପନ୍ନ ହୋଇଥାଏ । ସେହିପରି ପରମାତ୍ମାଙ୍କର ମଧ୍ୟ ସ୍ୱୟଂସିଦ୍ଧ ମହିମା ଅଛି; ସେହି ମହିମା ତାହାଙ୍କର ସ୍ୱଭାବଗତ । ସେହି ସ୍ୱଭାବରୁ ସୃଷ୍ଟି ହୁଏ, ତାହା କେହି ନିବାରଣ କରିବା ନିମନ୍ତେ କ୍ଷମ ନୁହନ୍ତି । ଜଗତ୍‌ସୃଷ୍ଟି ବିଷୟରେ ପରମାତ୍ମାଙ୍କର କୌଣସିପ୍ରକାର ଉଦ୍ଦେଶ୍ୟ, ଅଭିସନ୍ଧି ବା ପ୍ରୟୋଜନ ଅଛି ଏହା ସମ୍ଭବ ନୁହେଁ । ଶ୍ରୁତି ଓ ଯୁକ୍ତିରେ ମଧ୍ୟ କୌଣସି

* ଏହି ଲକ୍ଷ୍ୟରେ ମନୁ ମଧ୍ୟ କହିଅଛନ୍ତି—

ମନ୍ୱନ୍ତରାଣ୍ୟସଂଖ୍ୟାନି ସର୍ଗଃ ସଂହାର ଏବଚ ।
କ୍ରୀଡ଼ନ୍ନିବୈତତ୍ କୁରୁତେ ପରମେଷ୍ଠୀ ପୁନଃ ପୁନଃ ॥ ମନୁ—୧-୮୦ ॥

ମନ୍ୱନ୍ତର ଅସଂଖ୍ୟ ଓ ସୃଷ୍ଟି ଏବଂ ପ୍ରଳୟ ମଧ୍ୟ ଅସଂଖ୍ୟ । ପରମେଶ୍ୱର ପୁନଃ ପୁନଃ ଖେଳପରି ସହଜରେ ଏହା କରୁଅଛନ୍ତି, ଅର୍ଥାତ୍ ପରମାତ୍ମାଙ୍କର ଏହା ଲୀଳା ।

ପ୍ରକାର ପ୍ରୟୋଜନର ସଦ୍ଭାବ ନିରୂପିତ ହୁଏ ନାହିଁ । ପରଂବ୍ରହ୍ମ ମୌନ ନ ରହି ବା ଅଚେଷ୍ଟ ନ ହୋଇ ଏହି ସୃଷ୍ଟି କାହିଁକି କରନ୍ତି—ଏପରି ପ୍ରଶ୍ନ ଉଠି ନ ପାରେ । କାରଣ, ପରମାତ୍ମାଙ୍କର ସ୍ୱୟଂସିଦ୍ଧ ସ୍ୱଭାବ ଓ ମହିମାରୁ ସେପରି କାର୍ଯ୍ୟ କରିବା ନିତାନ୍ତ ଅପରିହାର୍ଯ୍ୟ ହୋଇପଡ଼େ । ଆମେ ମନେକରୁଁ ଯେ, ଜଗତର ରଚନା ଏକ ଗୁରୁତର କାର୍ଯ୍ୟ; କିନ୍ତୁ ପରମାତ୍ମାଙ୍କ ପକ୍ଷରେ ତାହା ଗୁରୁତର ନୁହେଁ; ଏହା ଅକିଞ୍ଚିତ୍କର । ଯାହାଙ୍କର ଅସୀମ ମହିମା, ତାଙ୍କ ପକ୍ଷରେ ଜଗତର ରଚନାକାର୍ଯ୍ୟ ଲୀଳାବ୍ୟତୀତ ଅନ୍ୟ କିଛି ନୁହେଁ । ଲୌକିକ ଲୀଳାରେ ଅବଶ୍ୟ କିଛି ପ୍ରୟୋଜନ ଥିବା ଅନୁମାନ କରାଯାଇ ପାରେ, କିନ୍ତୁ ପରମାତ୍ମାଙ୍କ ଜଗତ୍କର୍ମିକ ଲୀଳାରେ କୌଣସି ପ୍ରୟୋଜନ ଥିବା ସମ୍ଭବ ନୁହେଁ । କାରଣ, ପରମାତ୍ମା ଆପ୍ତକାମ, ପୂର୍ଣ୍ଣ ବା ନିତ୍ୟତୃପ୍ତ । ସେ ସର୍ବଜ୍ଞ—ସମସ୍ତ ହିଁ ଜ୍ଞାନପୂର୍ବକ କରନ୍ତି । ଶ୍ରୁତିରେ ଅଛି—

ନ ତସ୍ୟ କାର୍ଯ୍ୟଂ କରଣଂ ଚ ବିଦ୍ୟତେ
ନ ତତ୍ ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ ।
ପରାସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ
ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚ ।

ଶ୍ୱେତାଶ୍ୱତରଃ ଉଃ—୬-୮ ।

ଅର୍ଥାତ୍—ପରମାତ୍ମାଙ୍କର ଶରୀର ଓ ଚକ୍ଷୁଃ ପ୍ରଭୃତି ଇନ୍ଦ୍ରିୟ ନାହିଁ, ତାହାଙ୍କ ସଦୃଶ ବା ସମଧିକ ଶକ୍ତିବିଶିଷ୍ଟ କେହି ଦେଖାଯାଏ ନାହିଁ ବା ଶୁଣାଯାଏ ନାହିଁ । ସର୍ବତ୍ର ତାହାଙ୍କର ଅଲୌକିକ ମହିମା ଓ ଅସାଧାରଣ ବିବିଧ କାର୍ଯ୍ୟ ଦେଖାଯାଏ । ତାହାଙ୍କର ଜ୍ଞାନପ୍ରବୃତ୍ତି ସକଳ ପଦାର୍ଥରେ ଲକ୍ଷିତ ହେଉଅଛି । ସେ ବଳପ୍ରୟୋଗଦ୍ୱାରା ସମସ୍ତ ସଂସାରକୁ ବଶୀଭୂତ କରି ରଖିଅଛନ୍ତି । ସେ ଜ୍ଞାନବଳକ୍ରିୟା ଶକ୍ତି ବୋଲି କଥିତ—ଏହା ତାହାଙ୍କର ସ୍ୱାଭାବିକ ବିକାଶ, ଉଦ୍ୟମକୃତ ନୁହେଁ ।

ସର୍ବଧର୍ମୋପପତ୍ତେଶ୍ଚ ।

ବ୍ର. ସୂ. ୨-୧-୩୭ ।

ପରଂବ୍ରହ୍ମ ଜଗତର ନିମିତ୍ତ ଓ ଉପାଦାନ କାରଣ—ଏହା ସ୍ୱୀକାର କରିବାଦ୍ୱାରା ତାଙ୍କର ସର୍ବଜ୍ଞତ୍ୱ, ସର୍ବଶକ୍ତିମତ୍ତ୍ୱ ପ୍ରଭୃତି ସମସ୍ତଧର୍ମ ଉପପନ୍ନ ବା ଅବିରୁଦ୍ଧ ହୁଏ ।ସୁତରାଂ ପରଂବ୍ରହ୍ମହିଁ ଜଗତର ନିମିତ୍ତ ଓ ଉପାଦାନ କାରଣ ଏହା ସୁନିଶ୍ଚିତ । ପ୍ରକୃତି, ପୁରୁଷ, ମାୟା, ଅବିଦ୍ୟାପ୍ରଭୃତି ଜଗତର କାରଣ ବୋଲି ଅନ୍ୟାନ୍ୟ ଦାର୍ଶନିକମାନେ ନାନାଯୁକ୍ତିର ଅବତାରଣା

କରିଛନ୍ତି; ଅଥଚ ସାଧାରଣତଃ ଆଂଶିକଭାବରେ ତାହା ବେଦ ଓ ଉପନିଷଦ୍ ମତର ଅବିରୋଧୀ ହୋଇପାରେ; କିନ୍ତୁ ଅପରାଂଶ ବେଦୋପନିଷଦାଦିର ବିରୁଦ୍ଧ; ସୁତରାଂ ମହିମାଧର୍ମ ବିଶୁଦ୍ଧାଦ୍ୱୈତବାଦୀ ମତରେ ଉପର୍ଯ୍ୟୁକ୍ତ ଦାର୍ଶନିକମତ ଗ୍ରହଣୋପଯୋଗୀ ନୁହେଁ ।

ଏକ ଓ ଅଦ୍ୱିତୀୟ ପରଂବ୍ରହ୍ମଙ୍କ ମହିମାରୁ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟକାର୍ଯ୍ୟ ସମ୍ପାଦିତ ହେଉଅଛି; ଏ ବିଷୟ ପ୍ରମାଣଭୂତ ବେଦ ଓ ଉପନିଷଦ୍‌ର ଯୁକ୍ତିଦ୍ୱାରା ଏହି ଅନୁପାଦରେ ବର୍ଣ୍ଣନା କରାଗଲା ।

ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍ ।
ଅମୃତସ୍ୟ ପରଂ ସେତୁଂ ଦଗ୍ଧେନ୍ଧନମିବାନଳମ୍ ॥

ଶ୍ୱେତାଶ୍ୱତର ଉ:—୬-୧୯ ।

ସେହି ପରମପିତା ପରଂବ୍ରହ୍ମଙ୍କର କୌଣସି ଅବୟବ ନାହିଁ; ସେ କୌଣସି କାର୍ଯ୍ୟ କରନ୍ତି ନାହିଁ, ଅଥଚ ସ୍ୱ-ମହିମା ପ୍ରଭାବରେ ସର୍ବତ୍ର ପ୍ରତିଷ୍ଠିତ ଅଛନ୍ତି । ତାଙ୍କର କୌଣସି ବିକାର ନାହିଁ; ସେ ଅନିନ୍ଦନୀୟ ଓ ସର୍ବ ବିଷୟରେ ନିର୍ଲିପ୍ତ । ଜୀବର ମୋକ୍ଷପଦପ୍ରାପ୍ତି ବିଷୟରେ ସେ ସେତୁସ୍ୱରୂପ । ତାଙ୍କ ପ୍ରସାଦରେ ସାଧକମାନେ ସଂସାର-ସାଗରର ପର ପାରକୁ ଗମନ କରନ୍ତି ଏବଂ ସେ ପ୍ରଜ୍ୱଳିତ କାଷ୍ଠସଦୃଶ ଦୀପ୍ତିମାନ୍ ।

ଇତି ପ୍ରଥମପାଦସ୍ୟ ଦ୍ୱିତୀୟାନୁପାଦଃ ॥



# ଅଲେଖ ପରଂବ୍ରହ୍ମ ଦର୍ଶନ

## ପ୍ରଥମ ପାଦସ୍ୟ ତୃତୀୟାନୁପାଦଃ

## ବିଶୁଦ୍ଧତତ୍ତ୍ୱବିବେକଜ୍ଞାନଯୋଗ

### ୦—ତତ୍ତ୍ୱବିଷୟ୍ୱ ଆଲୋଚନା ଓ ବିଶୁଦ୍ଧତତ୍ତ୍ୱ ନିରୂପଣ ।

ସୃଷ୍ଟିତତ୍ତ୍ୱବର୍ଣ୍ଣନାବସରରେ ଏକ ଅଦ୍ୱିତୀୟ ପରଂବ୍ରହ୍ମ କେବଳ ଜଗତର ଏକମାତ୍ର କାରଣ ବୋଲି ପ୍ରଦର୍ଶିତ ହୋଇଅଛି । ବର୍ତ୍ତମାନ ଏହି "ବିଶୁଦ୍ଧତତ୍ତ୍ୱ-ବିବେକଜ୍ଞାନଯୋଗ"ରେ ତତ୍ତ୍ୱଚୟର ବିବରଣ ଓ ବିଶୁଦ୍ଧତତ୍ତ୍ୱର ନିର୍ଣ୍ଣୟ କରାଯାଉଅଛି ।

ପ୍ରଥମତଃ ତତ୍ତ୍ୱ ଏକ କି ଅନେକ—ଏ ବିଷୟରେ ଶ୍ରୁତ୍ୟାଦିରେ ନାନାତତ୍ତ୍ୱର ବ୍ୟାଖ୍ୟା କରାଯାଇଅଛି; କିନ୍ତୁ ବିଶୁଦ୍ଧାଦ୍ୱୈତବାଦର ପ୍ରତିଷ୍ଠାତା—ଶ୍ରୀମତ୍ପ୍ରବୁଦ୍ଧଜଗଦ୍‌ଗୁରୁ ମହିମା ସ୍ୱାମୀଙ୍କ ଉପଦେଶ ଅନୁସାରେ ଏକ ଓ ଅଦ୍ୱିତୀୟ ଅଲେଖ ନିର୍ଗୁଣ ପରଂବ୍ରହ୍ମ କେବଳ ପରମ ତତ୍ତ୍ୱ; ତଦ୍‌ବ୍ୟତୀତ ସମସ୍ତ ତତ୍ତ୍ୱ ଔପାଧିକଭାବରେ ସୃଷ୍ଟିପ୍ରକ୍ରିୟାରେ ଉତ୍ପତ୍ତି, ସ୍ଥିତି ଓ ଲୟ ମାର୍ଗର ଆଶ୍ରୟ ନିଅନ୍ତି । ଏକ ଓ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ହିଁ ସର୍ବାଶ୍ରୟ, ବିଶୁଦ୍ଧ ଓ ନିର୍ଗୁଣ ପରମତତ୍ତ୍ୱ ନାମରେ ଅଭିହିତ ଏବଂ ସେହି ପରମତତ୍ତ୍ୱଙ୍କ ଜ୍ଞାନଦ୍ୱାରା ଜୀବର ମୋକ୍ଷ ଉପାୟ ସାଧିତ ହୁଏ । ଏହି ତତ୍ତ୍ୱ ସମ୍ବନ୍ଧରେ ଶ୍ରୁତିବଚନ—

> ମନୋବୁଦ୍ଧିରହଂକାରଃ ଖାନିଳାଗ୍ନି ଜଳାନି ଭୂଃ ।
> ଏତାଃ ପ୍ରକୃତୟସ୍ତ୍ୱଷ୍ଟୌ ବିକାରାଃ ଷୋଡ଼ଶାପରେ ॥

ଶାରୀରକୋପନିଷଦ୍—୬ ।

ମନ, ବୁଦ୍ଧି, ଅହଂକାର, ଆକାଶ, ବାୟୁ, ଅଗ୍ନି, ଜଳ ଏବଂ ପୃଥିବୀ ଏହି ଅଷ୍ଟବିଧକୁ ପ୍ରକୃତି କୁହାଯାଏ । ଅପର ଷୋଡ଼ଶ—ବିକାରପଦବାଚ୍ୟ ।

> ଶ୍ରୋତ୍ରଂ ତ୍ୱକ୍‌ଚକ୍ଷୁଷୀ ଜିହ୍ୱା ଘ୍ରାଣଂ ଚୈବ ତୁ ପଞ୍ଚମମ୍ ।
> ପାୟୂପସ୍ଥୌ କରୌ ପାଦୌ ବାକ୍ ଚୈବ ଦଶମୀ ମତା ॥
> ଶବ୍ଦଃ ସ୍ପର୍ଶଶ୍ଚ ରୂପଞ୍ଚ ରସୋ ଗନ୍ଧସ୍ତଥୈବ ଚ ।

ନବୈକାଦଶତତରେତାନି ତତ୍ତ୍ୱାନି ପ୍ରକୃତାନି ତୁ ॥
ଚତୁର୍ବିଂଶତତରବ୍ୟକ୍ତଂ ପ୍ରଧାନଂ ପୁରୁଷଃ ପରଃ ॥

ଶାରୀରକୋପନିଷଦ୍—୭ ୮ ।

ଶ୍ରୋତ୍ର, ତ୍ୱକ୍, ଚକ୍ଷୁଦ୍ୱୟ, ଜିହ୍ୱା ଓ ଘ୍ରାଣରୂପକ ପାଞ୍ଚ, ପାୟୁ, ଉପସ୍ଥ, କରଦ୍ୱୟ, ପଦଦ୍ୱୟ ଓ ବାକ୍-ରୂପକ ପାଞ୍ଚ, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଏବଂ ମନ ଓ ବୁଦ୍ଧି ପ୍ରଭୃତି ପ୍ରକୃତ୍ୟଷ୍ଟକ—ଏହି ନବୈକାଦଶସଂଖ୍ୟକ କେବଳ ପ୍ରକୃତ ତତ୍ତ୍ୱ । ଅନିର୍ବାଚ୍ୟ ପ୍ରକୃତି ଚତୁର୍ବିଂଶ ତତ୍ତ୍ୱ; ପୁରୁଷ ସର୍ବପ୍ରଧାନ—ଏହା ଉପନିଷଦ୍ ମତ । ଏହି ତତ୍ତ୍ୱସମ୍ବନ୍ଧରେ ବରାହରୂପୀ ଭଗବାନ୍ ମୁନିମାନଙ୍କୁ କହିଅଛନ୍ତି—

ଚତୁର୍ବିଂଶତତତ୍ତ୍ୱାନି କେଚଦିଚ୍ଛନ୍ତି ବାଦିନଃ ।
କେଚତ୍ ଷଟ୍ତ୍ରିଂଶତତ୍ତ୍ୱାନି କେଚତ୍ ଷଣ୍ଣବତୀନି ଚ । ୧ ।

ବରାହୋପନିଷଦ୍—୧-୧

କେତେକ ଦାର୍ଶନିକ ଚତୁର୍ବିଂଶତି ପଦାର୍ଥ ସ୍ୱୀକାର କରନ୍ତି; କେହି କେହି ଷଟ୍ତ୍ରିଂଶ ଓ ଅନ୍ୟମାନେ ଛୟାନବେ ପଦାର୍ଥ ସ୍ୱୀକାର କରନ୍ତି ।

ତେଷାଂ କ୍ରମଂ ପ୍ରବକ୍ଷ୍ୟାମି ସାବଧାନମନାଃ ଶୃଣୁ ।
ଜ୍ଞାନେନ୍ଦ୍ରିୟାଣି ପଞ୍ଚୈବ ଶ୍ରୋତ୍ରତ୍ୱକ୍‌ଲୋଚନାଦୟଃ । ୨ ।
କର୍ମେନ୍ଦ୍ରିୟାଣି ପଞ୍ଚୈବ ବାକ୍‌ପାଣ୍ୟଂଘ୍ର୍ୟାଦୟଃ କ୍ରମାତ୍ ।
ପ୍ରାଣାଦୟସ୍ତୁ ପଞ୍ଚୈବ ପଞ୍ଚ ଶବ୍ଦାଦୟସ୍ତଥା । ୩ ।
ମନୋବୁଦ୍ଧିରହଙ୍କାରଶ୍ଚିତ୍ତଂ ଚେତି ଚତୁଷ୍ଟୟମ୍ ।
ଚତୁର୍ବିଂଶତତତ୍ତ୍ୱାନି ତାନି ବ୍ରହ୍ମବିଦୋ ବିଦୁଃ । ୪ ।

ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା ଏବଂ ନାସିକା—ଏହା ପଞ୍ଚ ଜ୍ଞାନେନ୍ଦ୍ରିୟ; ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ—ଏହି ପାଞ୍ଚ କର୍ମେନ୍ଦ୍ରିୟ; ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ—ଏହି ପଞ୍ଚ ଅନ୍ତର୍ବାୟୁ; ଶବ୍ଦ, ସ୍ପର୍ଶ, ରୂପ ରସ ଓ ଗନ୍ଧ—ଏହା ପାଞ୍ଚ ଇନ୍ଦ୍ରିୟମାନଙ୍କର ବିଷୟ; ମନ, ବୁଦ୍ଧି, ଅହଂକାର ଓ ଚିତ୍ତ—ଏପରି ଚାରି ସହିତ ପୂର୍ବୋକ୍ତ ସକଳ ମିଶି ଚତୁର୍ବିଂଶତିତତ୍ତ୍ୱ କୁହାଯାଏ । ଏହା ବ୍ରହ୍ମଜ୍ଞ ପୁରୁଷମାନଙ୍କର ବଚନ ।

ଏତୈସ୍ତତ୍ତ୍ୱୈଃ ସମଂ ପଞ୍ଚୀକୃତଭୂତାନି ପଞ୍ଚ ଚ ।
ପୃଥିବ୍ୟାପସ୍ତଥା-ତେଜୋ ବାୟୁରାକାଶମେବ ଚ । ୫ ।

ଦେହତ୍ରୟଂ ସ୍ଥୂଳ-ସୂକ୍ଷ୍ମକାରଣାନି ବଦୁର୍ବୁଧାଃ ।
ଅବସ୍ଥାତ୍ରିତୟଂ ଚୈବ ଜାଗ୍ରତ୍ସ୍ୱପ୍ନସୁଷୁପ୍ତୟଃ । ୬ ।
ଆହତ୍ୟ ତତ୍ତ୍ୱଜାତାନାଂ ଷଟ୍ତ୍ରିଂଶନ୍ ମୁନୟୋ ବଦୁଃ ।
ପୂର୍ବୋକ୍ତୈ ସ୍ତତ୍ତ୍ୱଜାତୈସ୍ତୁ ସମଂ ତତ୍ତ୍ୱାନି ଯୋଜୟେତ୍ । ୭ ।

ପୂର୍ବୋକ୍ତ ଚତୁର୍ବିଂଶତିତତ୍ତ୍ୱ ସହିତ ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶରୂପକ ପଞ୍ଚୀକୃତ ଭୂତ, ସ୍ଥୂଳ, ସୂକ୍ଷ୍ମ, ଓ କାରଣରୂପକ ଶରୀରତ୍ରୟ ଏବଂ ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି ରୂପକ ଅବସ୍ଥାତ୍ରୟ ଏବଂ ଆତ୍ମା—ଏ ସମସ୍ତ ମିଳିତ ହୋଇ ଷଟ୍ତ୍ରିଂଶ ତତ୍ତ୍ୱ ପରିଗଣିତ ହୁଏ—ଏ କଥା ପଣ୍ଡିତମାନେ କହିଛନ୍ତି ।

ଷଡ଼୍ଭାବ ବିକୃତଶ୍ଚାସ୍ତି ଜାୟତେ ବର୍ଦ୍ଧତେଽପି ଚ ।
ପରିଣାମଂ କ୍ଷୟଂ ନାଶଂ ଷଡ଼୍ଭାବବିକୃତଂ ବଦୁଃ । ୮ ।

ପଣ୍ଡିତମାନେ ସ୍ୱୀକାର କରିଅଛନ୍ତି ଯେ, ବିଦ୍ୟମାନତା, ଜନ୍ମ, ବୃଦ୍ଧି, ପରିଣାମ, କ୍ଷୟ ଓ ବିନାଶ—ଏହି ଭାବପଦାର୍ଥର ଛ ପ୍ରକାର ବିକାର ।

ଅଶନଂ ଚ ପିପାସା ଚ ଶୋକମୋହୌ ଜରା ମୃତଃ ।
ଏତେ ଷଡ଼ୂର୍ମୟଃ ପ୍ରୋକ୍ତାଃ ଷଟ୍କୋଷାନଥ ବର୍ଣ୍ଣତେ । ୯ ।

ଭୋଜନେଚ୍ଛା, ପିପାସା, ଶୋକ, ମୋହ, ଜରା ଓ ମରଣ—ଏହି ଛ'ଟି ଊର୍ମି ବୋଲି କଥିତ ହୁଏ । ଊର୍ମି ଶବ୍ଦର ଅର୍ଥ ତରଙ୍ଗ; ତରଙ୍ଗ ଯେପରି ସମୁଦ୍ରକୁ ବିକ୍ଷୋଭିତ କରେ, ଅଶନ-ପ୍ରଭୃତି ଛଟି ମଧ୍ୟ ମନୁଷ୍ୟକୁ ସେହିପରି ଚଞ୍ଚଳ କରିଦିଏ । ଏମାନେ ମୁକ୍ତିର ପ୍ରତିବନ୍ଧକ । ବର୍ତ୍ତମାନ ଛ' ଗୋଟି କୋଷର ବର୍ଣ୍ଣନା କରାଯାଉଛି ।

ତ୍ୱକ୍ ଚ ରକ୍ତଂ ମାଂସମେଦୋ ମଜ୍ଜାସ୍ଥୀନି ନିବୋଧତ ।
କାମକ୍ରୋଧୌ ଲୋଭମୋହୌ ମଦୋ ମାତ୍ସର୍ଯ୍ୟମେବ ଚ ॥
ଏତେଽରିଷ୍ଟକା ବିଶ୍ୱଶ୍ଚ ତୈଜସଃ ପ୍ରାଜ୍ଞ ଏବ ଚ ।
ଜୀବତ୍ରୟଂ ସତ୍ତ୍ୱରଜସ୍ତମାଂସି ଚ ଗୁଣତ୍ରୟମ୍ ॥
ପ୍ରାରବ୍ଧାଗାମ୍ୟର୍ଜିତାନି କର୍ମତ୍ରୟମିତୀରିତମ୍ ।
ବଚନାଦାନଗମନବିସର୍ଗାନନ୍ଦପଞ୍ଚକମ୍ ॥
ସଂକଳ୍ପୋଽଧ୍ୟବସାୟଶ୍ଚ ଅଭିମାନୋଽବଧାରଣା ॥
ମୁଦିତା କରୁଣା ମୈତ୍ରୀ ଉପେକ୍ଷା ଚ ଚତୁଷ୍ଟୟମ୍ ।

ଦଗ୍‌ବାତାର୍କ ପ୍ରଚେତୋଽଶ୍ୱିବହ୍ନୀନ୍ଦ୍ରୋପେନ୍ଦ୍ରମୃତ୍ୟୁକାଃ ।
ତଥାଚନ୍ଦ୍ରଶ୍ଚତୁର୍ବକ୍ତ୍ରୋ ରୁଦ୍ରଃ କ୍ଷେତ୍ରଜ୍ଞ ଈଶ୍ୱରଃ ॥
ଆହୃତ୍ୟ ତତ୍ତ୍ୱଜାତାନାଂ ଷଣ୍ଣବତ୍ୟସ୍ତୁ କୀର୍ତ୍ତିତାଃ ।
ପୂର୍ବୋକ୍ତତତ୍ତ୍ୱଜାତାନାଂ ବୈଲକ୍ଷଣ୍ୟମନାମୟମ୍ ॥

ବରାହୋପନିଷଦ୍—୧।୧୦-୧୫

ଚର୍ମ, ରକ୍ତ, ମାଂସ, ମେଦ, ମଜ୍ଜା, ଅସ୍ଥି ଏବଂ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ (ଛ ଅନ୍ତଃଶତ୍ରୁ); ବିଶ୍ୱ, ତୈଜସ ଓ ପ୍ରାଜ୍ଞରୂପକ ଜୀବତ୍ରୟ; ସତ୍ତ୍ୱ, ରଜ ଓ ତମ—ଏହି ଗୁଣତ୍ରୟ; ପ୍ରାରବ୍‌ଧ, ଭବିଷ୍ୟତ୍ ଓ ଅଜ୍ଞାତରୂପକ କର୍ମତ୍ରୟ; ବଚନ, ଆଦାନ ବା ଗ୍ରହଣ, ଗମନ, ବିସର୍ଗ ବା ମଳତ୍ୟାଗ ଓ ଆନନ୍ଦ—ଏହି ପଞ୍ଚ ଯଥାକ୍ରମେ ବାକ୍, ପାଣି; ପାଦ, ପାୟୁ ଓ ଉପସ୍ଥରୂପକ ପଞ୍ଚ କର୍ମେନ୍ଦ୍ରିୟର ଧର୍ମ; ମୁଦିତା, କରୁଣା, ମୈତ୍ରୀ ଓ ଉପେକ୍ଷାରୂପକ ବୃତ୍ତି; ସଂକଳ୍ପ, ଅଧ୍ୟବସାୟ, ଅଭିମାନ ଓ ଅବଧାରଣା; ଦିକ୍, ବାୟୁ, ସୂର୍ଯ୍ୟ, ବରୁଣ, ଅଗ୍ନି, ଇନ୍ଦ୍ର, ଉପେନ୍ଦ୍ର ଓ ମୃତ୍ୟୁ; ଚନ୍ଦ୍ର, ବ୍ରହ୍ମା, ରୁଦ୍ର, ଜୀବ ଓ ଈଶ୍ୱର—ଏ ସମସ୍ତ ଏକତ୍ର କଲେ ଛୟାନବେ ଗୋଟି ପଦାର୍ଥ ହୁଏ—ଏ କଥା ଶାସ୍ତ୍ରଜ୍ଞମାନଙ୍କଦ୍ୱାରା କଥିତ ହୋଇଅଛି । ପୂର୍ବୋକ୍ତ ପଦାର୍ଥସମୂହରୁ ବିଲକ୍ଷଣ ବା ଭିନ୍ନ ଓ ରୋଗାଦିଶୂନ୍ୟ କେବଳ ପରମାତ୍ମା ଅଟନ୍ତି । ଏ ବିଷୟରେ ପୁନଶ୍ଚ ଶ୍ରୁତି କହେ—

ତଂ ଷଡ୍‌ବିଂଶକମିତ୍ୟେକେ ସପ୍ତବିଂଶଂ ତଥାପରେ ।
ପୁରୁଷଂ ନିର୍ଗୁଣଂ ସାଂଖ୍ୟମଥର୍ବଶିରସୋ ବିଦୁଃ ॥
ଚତୁର୍ବିଂଶତି ସଂଖ୍ୟାକଂ ଅବ୍ୟକ୍ତବ୍ୟକ୍ତଦର୍ଶନମ୍ ।
ଅଦ୍ୱୈତଂ ଦ୍ୱୈତମିତ୍ୟାହୁଃ ତ୍ରିଧା ତଂ ପଞ୍ଚଧା ତଥା ॥
ବ୍ରହ୍ମାଦ୍ୟଂ ସ୍ଥାବରାନ୍ତଂ ଚ ପଶ୍ୟନ୍ତୋ ଜ୍ଞାନଚକ୍ଷୁଷଃ ।
ତମେକମେବ ପଶ୍ୟନ୍ତି ପରିଶୁଦ୍ଧଂ ବିଭୁଂ ଦ୍ୱିଜାଃ ॥

ମନ୍ତ୍ରିକୋପନିଷଦ୍—୧୪-୧୫

ଅଥର୍ବବେଦର ଶିରସ୍ୱରୂପ ଏହି ଜ୍ଞାନଗମ୍ୟ, ସ୍ୱୟଂ ଅବ୍ୟକ୍ତ ହୋଇ ମଧ୍ୟ ବ୍ୟକ୍ତ-ଜଗତର ପ୍ରକାଶକ ଗୁଣାତୀତ ପୁରୁଷଙ୍କୁ କେହି ଷଡ୍‌ବିଂଶତି, କେହି ସପ୍ତବିଂଶତି, କେହି ବା ଚତୁର୍ବିଂଶତି ତତ୍ତ୍ୱରୂପରେ ଅବଲୋକନ କରନ୍ତି । ବେଦାନ୍ତୀମାନେ ଅଦ୍ୱୈତରୂପରେ ଏବଂ କେହି କେହି ତ୍ରିଧା ବା ପଞ୍ଚଧା ରୂପରେ ତାହାଙ୍କର ସ୍ୱରୂପ ଉପଲବ୍‌ଧି କରନ୍ତି । ଯାହାଙ୍କର ନିଜ ଜ୍ଞାନଚକ୍ଷୁ ଉନ୍ମୀଳିତ ହୋଇଅଛି, ସେ କେବଳ ବ୍ରହ୍ମଠାରୁ ସ୍ତମ୍ବ ପର୍ଯ୍ୟନ୍ତ ବିଶୁଦ୍ଧ, ସର୍ବବ୍ୟାପକ ଏକ

ପରମାତ୍ମାଙ୍କର ସ୍ୱରୂପ ଉପଲବ୍‌ଧି କରିପାରନ୍ତି (ଅର୍ଥାତ୍ ଏକ ଅଦ୍ୱିତୀୟ ବିଶୁଦ୍ଧ ପରମାତ୍ମାଙ୍କର ତେଜରୁ ସମସ୍ତ ଜାତ; ସେ ସମସ୍ତଙ୍କର ଆଧାର ହୋଇ ସର୍ବତ୍ର ନିର୍ଲିପ୍ତରୂପରେ ପ୍ରକାଶିତ ହୋଇଅଛନ୍ତି; ତାହାଙ୍କୁ ପରିଜ୍ଞାନ କରି ଜୀବ ମୁକ୍ତି ପାଏ, ଏହିରୂପ ଶ୍ରୁତିର ଗୂଢ଼ାର୍ଥ ବେଦବିତ୍‌ମାନେ ଉପଲବ୍‌ଧି କରିଥାନ୍ତି ) ।

## ଠ—ପୁନଶ୍ଚ ଏହି ସୃଷ୍ଟିତତ୍ତ୍ୱ-ବିଚାର ସମ୍ବନ୍ଧରେ ଷଡ୍‌ଦର୍ଶନକାରଙ୍କ ଅଭିମତ ଓ ସେ ବିଷୟରେ ବିଶୁଦ୍ଧାଦ୍ୱୈତବାଦର ଶ୍ରେଷ୍ଠତା ।

### ଷଡ୍‌ଦର୍ଶନର ସ୍ଥୂଳ କଥା—

ଏହି ଭାରତଭୂମିରେ ଛଅପ୍ରକାର ଦର୍ଶନ ପ୍ରଚଳିତ—ନ୍ୟାୟ ଓ ବୈଶେଷିକ, ସାଂଖ୍ୟ ଓ ପାତଞ୍ଜଳ, ପୂର୍ବମୀମାଂସା ଓ ଉତ୍ତରମୀମାଂସା ବା ବେଦାନ୍ତ । * ପ୍ରତ୍ୟେକ ଦର୍ଶନର ମୂଳ ଦୁଃଖବାଦ ଓ ଦୁଃଖବିନାଶ । ସକଳ ଦର୍ଶନକାରଙ୍କ ମତରେ ସଂସାର ଦୁଃଖର ଆଳୟ । ସଂସାରରେ ଯାହା କିଛି ସୁଖ ବୋଲି ଦେଖାଯାଏ, ତାହା କେବଳ କ୍ଷଣସ୍ଥାୟୀ—ଏତିକି ନୁହେଁ, ତାହା ଦୁଃଖର ପୂର୍ବରୂପମାତ୍ର । ସେ ସୁଖରେ ଜୀବ କେତେବେଳେ ହେଲେ ସନ୍ତୁଷ୍ଟ ହୋଇପାରେ ନାହିଁ । ତେଣୁ ସେହି ଦୁଃଖର ନାଶପାଇଁ ନାନା ଉପାୟ ଅନ୍ୱେଷଣ କରେ; କିନ୍ତୁ ଜୀବ ଯେ କୌଣସି ଉପାୟ ଅବଲମ୍ବନ କରୁ, ତଦ୍ଦ୍ୱାରା ସେ ସଂସାରଦୁଃଖର ଆକ୍ରମଣରୁ ନିଷ୍କୃତି ପାଇପାରେ ନାହିଁ । ଅଥଚ ଦୁଃଖନାଶ ଜୀବର ଏକାନ୍ତ ଈପ୍‌ସିତ; ଦୁଃଖହାନି ହିଁ ଜୀବର ପରମ ପୁରୁଷାର୍ଥ । ସେହି ଦୁଃଖହାନିର ପ୍ରକୃଷ୍ଟ ଉପାୟ ଉଦ୍ଭାବନସକାଶେ ଦର୍ଶନଶାସ୍ତ୍ର ଅବଲମ୍ବନୀୟ ।

ସକଳ ଦର୍ଶନରେ ଦୁଃଖନିବାରଣର ଉପାୟ ଉଦ୍ଭାବିତ ହୋଇଛି; କିନ୍ତୁ ସମସ୍ତଙ୍କ ନିର୍ଦ୍ଧାରିତ ଉପାୟ ଏକପ୍ରକାର ନୁହେଁ । ଭିନ୍ନ ଭିନ୍ନ ଦାର୍ଶନିକ ଦୁଃଖନିବୃତ୍ତି ବିଷୟରେ ବିଭିନ୍ନ ଉପାୟ ନିର୍ଦ୍ଧାରଣ କରିଅଛନ୍ତି । ବିଶୁଦ୍ଧାଦ୍ୱୈତବାଦରେ ମଧ୍ୟ ଦୁଃଖନାଶର ଉପାୟ ଉପଦିଷ୍ଟ ହୋଇଅଛି; କିନ୍ତୁ ସେହି ଉପାୟ ସହିତ ଅନ୍ୟାନ୍ୟ ଦର୍ଶନୋକ୍ତ

---

* ଗୌତମସ୍ୟ କଣାଦସ୍ୟ କପିଲସ୍ୟ ପତଞ୍ଜଲେଃ ।
ବ୍ୟାସସ୍ୟ ଜୈମିନେଶ୍ଚାପି ଦର୍ଶନାନିଷଡ଼େବହି ॥
ବ୍ୟାସୋ ବେଦାନ୍ତକର୍ତ୍ତା ସ୍ୟାତ୍ ମୀମାଂସାୟାସ୍ତୁ ଜୈମିନିଃ ।
ବୈଶେଷିକୋ କଣାଦସ୍ୟ ପାତଞ୍ଜଲେଃ ॥
ସାଂଖ୍ୟସ୍ୟ କପିଲଃ କର୍ତ୍ତା ନ୍ୟାୟକୃତ୍ ଗୌତମୋ ମୁନିଃ ॥

ଗୌତମପ୍ରଣୀତ ନ୍ୟାୟ, କଣାଦପ୍ରଣୀତ ବୈଶେଷିକ, କପିଳପ୍ରଣୀତ ସାଂଖ୍ୟ ପତଞ୍ଜଳିକୃତ ପାତଞ୍ଜଳ ବା ସେଶ୍ୱର ସାଂଖ୍ୟ, ଜୈମିନିକୃତ ପୂର୍ବମୀମାଂସା ଓ ବ୍ୟାସଙ୍କ କୃତ ଉତ୍ତର ମୀମାଂସା ବା ବେଦାନ୍ତ ।

ଉପାୟମାନଙ୍କରେ ବହୁ ଭେଦ ଦେଖାଯାଏ । ବିଶୁଦ୍ଧାଦ୍ୱୈତମତରେ ଦୁଃଖନିବାରଣର ପ୍ରଧାନ ଉପାୟ ଏହା ଯେ ମୁମୁକ୍ଷୁ କାୟମନୋବାକ୍ୟରେ ପରମାତ୍ମାଙ୍କଠାରେ ଆତ୍ମସମର୍ପଣ କରିବ । ସକଳ ଦର୍ଶନଶାସ୍ତ୍ର ଆଲୋଚନା କଲେ ଜଣାଯାଏ ଯେ, ସେଥିରେ ବର୍ଣ୍ଣିତ ଦୁଃଖହାନିବିଷୟକ ପ୍ରଣାଳୀ ସହିତ ପରମାତ୍ମାଙ୍କ ସମ୍ପର୍କ ସେପରି ଘନିଷ୍ଠ ନୁହେଁ । ସାଂଖ୍ୟ ଓ ପୂର୍ବ-ମୀମାଂସା-ଦର୍ଶନରେ ପରମାତ୍ମା ବୋଲି କେହି ନାହାନ୍ତି । ନ୍ୟାୟ ଓ ବୈଶେଷିକ ଦର୍ଶନରେ ପରମାତ୍ମାଙ୍କ ସତ୍ତା ସ୍ୱୀକୃତ; କିନ୍ତୁ ସେଥିରେ ଦୁଃଖ-ନିବୃତ୍ତି ବିଷୟରେ ଉଦ୍ଭାବିତ ଉପାୟ ସହିତ ପରମାତ୍ମାଙ୍କର କୌଣସି ସମ୍ବନ୍ଧ ନାହିଁ । ପାତଞ୍ଜଳ ଯୋଗଦର୍ଶନରେ ପରମାତ୍ମା ଯୋଗପ୍ରଣାଳୀ ସହିତ ସମ୍ପୃକ୍ତ କରାଯାଇଛନ୍ତି; କିନ୍ତୁ ସେଥିରେ ବର୍ଣ୍ଣିତ ପରମାତ୍ମାଙ୍କ ସ୍ଥାନ ଅତି ଗୌଣ । ବେଦାନ୍ତଦର୍ଶନର ପ୍ରତିପାଦ୍ୟ ପରମାତ୍ମା ହେଲେ ମଧ୍ୟ ସେଥିରେ ବର୍ଣ୍ଣିତ ପ୍ରଣାଳୀଠାରୁ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ବା ମହିମାଧର୍ମ ଦର୍ଶନର ପ୍ରତିପାଦିତ ପ୍ରଣାଳୀ ବହୁପ୍ରକାରରେ ଭିନ୍ନ । ଏସବୁ ପ୍ରସଙ୍ଗର ବିସ୍ତୃତ ବର୍ଣ୍ଣନା କ୍ରମଶଃ କରାଯିବ ।

## ଠ—ନ୍ୟାୟଦର୍ଶନର ସଂକ୍ଷିପ୍ତ ତତ୍ତ୍ୱାଲୋଚନା ।

ନ୍ୟାୟ ଓ ବୈଶେଷିକ ଦର୍ଶନର ପ୍ରତିପାଦ୍ୟ ବିଷୟରେ ଅଧିକ ଭେଦ ଦେଖାଯାଏ ନାହିଁ । ପଞ୍ଚାବୟବ ପ୍ରତିପାଦନ ନ୍ୟାୟଦର୍ଶନର ପ୍ରଧାନ ବିଷୟ, * ପରମାଣୁବାଦ ବୈଶେଷିକ-ଦର୍ଶନର ବିଶେଷତ୍ୱ । ବୈଶେଷିକ ମତରେ ପରମାଣୁ ନିତ୍ୟ ପଦାର୍ଥ; କିନ୍ତୁ ବାସ୍ତବଦୃଷ୍ଟିରେ ଦେଖିବାକୁ ଗଲେ ପରମାଣୁ ଅନିତ୍ୟ; ପରମାଣୁ ସାଂଖ୍ୟଦର୍ଶନର ତନ୍ମାତ୍ରସ୍ଥାନୀୟ । ନ୍ୟାୟ ଓ ବୈଶେଷିକର ଯେଉଁଠି ସିଦ୍ଧାନ୍ତ, ସେଠାରୁ ପ୍ରକୃତ ଦର୍ଶନର ଆରମ୍ଭ । ତୈତ୍ତିରୀୟ ଉପନିଷଦ୍‌ର ଦୀପିକାରେ ବିଦ୍ୟାରଣ୍ୟ ମୁନି କହିଛନ୍ତି— ମୂଳକାରଣ ପରଂବ୍ରହ୍ମଙ୍କଠାରୁ ଆକାଶ, କାଳ, ଦିକ୍ ଓ ପରମାଣୁ ପ୍ରଥମେ ଉତ୍ପନ୍ନ ହେବା ପରେ ସେମାନଙ୍କର ଉତ୍ତରକାଳୀନ ସୃଷ୍ଟିକୁ ଗୌତମାଦି ଋଷିମାନେ ସ୍ୱପ୍ରଦର୍ଶିତ ପ୍ରଣାଳୀରେ ମୌଳିକ ସୃଷ୍ଟି ବୋଲି ସ୍ଥାପିତ କରିଛନ୍ତି । ନ୍ୟାୟଦର୍ଶନ ମତରେ ସଂସାର ଦୁଃଖମୟ । ସୁଖ ଦୁଃଖାନୁସକ୍ତ; ଅତଏବ ଗୌଣ-

---

* ନ୍ୟାୟଦର୍ଶନର ଭିତ୍ତି ମହର୍ଷି ଗୌତମପ୍ରଣୀତ ନ୍ୟାୟସୂତ୍ର । ଏହା ପାଞ୍ଚ ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟରେ ଦୁଇ ଗୋଟି ପରିଚ୍ଛେଦ; ଏମାନଙ୍କୁ ଆହ୍ନିକ ବୋଲାଯାଏ । ନ୍ୟାୟଦର୍ଶନର ବାତ୍ସ୍ୟାୟନପ୍ରଣୀତ ପ୍ରାଚୀନ ଭାଷ୍ୟ ଅଛି । ତା ଉପରେ ଉଦ୍ୟୋତକାରଙ୍କ ନ୍ୟାୟବାର୍ତ୍ତିକ, ବାଚସ୍ପତି ମିଶ୍ରଙ୍କ ତାତ୍ପର୍ଯ୍ୟଟୀକା ଓ ଉଦୟନାଚାର୍ଯ୍ୟଙ୍କ ତାତ୍ପର୍ଯ୍ୟପରିଶୁଦ୍ଧି ପ୍ରଚଳିତ ଅଛି ।

† "ମୂଳକାରଣାତ୍ ପରଂବ୍ରହ୍ମ ଉତ୍ପନ୍ନା ଆକାଶକାଳଦିଶଃ ପରମାଣବଶ୍ଚ ଯଦା ବ୍ୟବସ୍ଥିତାଃ, ତଦା ତତ ଆରଭ୍ୟ ଉତ୍ତରକାଳୀନା ସୃଷ୍ଟି ଗୌତମାଦ୍ୟୁକ୍ତପ୍ରକାରେଣ ବ୍ୟବସ୍ଥିତାମ୍"— ଭୃଗୁବଲ୍ଲୀ ୧ମ ଖଣ୍ଡ, "ତସ୍ମାଦ୍ ବା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତଃ"— ଏହି ଅଂଶର ଦୀପିକା ।

ରୂପରେ ସୁଖକୁ ମଧ୍ୟ ଦୁଃଖ ବୋଲି ଗଣ୍ୟ କରିବା ଉଚିତ । * ଜନ୍ମମାନେ ହିଁ ଦୁଃଖ; ଯଦି ଦୁଃଖର ନାଶ କରିବାକୁ ହେବ, ତେବେ ଜନ୍ମବାରଣ ବା ଜନ୍ମ ନିରୋଧ ପ୍ରଥମତଃ କର୍ତ୍ତବ୍ୟ । ଜନ୍ମର ହେତୁ ପ୍ରବୃତ୍ତି । ଜୀବ ପ୍ରବୃତ୍ତିବଶ ହୋଇ କର୍ମ କରେ, କର୍ମଫଳରେ ତାକୁ ଜନ୍ମଗ୍ରହଣ କରିବାକୁ ହୁଏ । ପ୍ରବୃତ୍ତିର ହେତୁ ଦୋଷ ତିନପ୍ରକାର—ରାଗ, ଦ୍ୱେଷ ଓ ମୋହ । ମନରେ ରାଗାଦି ଜାତ ନ ହେଲେ କୌଣସି ବିଷୟରେ ଜୀବର ପ୍ରବୃତ୍ତି ହୁଏ ନାହିଁ । ଏହି ଦୋଷ ପୁଣି ମିଥ୍ୟାଜ୍ଞାନରୁ ଉତ୍ପନ୍ନ । ଅତଏବ ମିଥ୍ୟାଜ୍ଞାନର ଉଚ୍ଛେଦ ସାଧନ ବିନା ଦୁଃଖ ନିବୃତ୍ତିର ଅନ୍ୟ ଉପାୟ ନାହିଁ ।

**ଦୁଃଖ-ଜନ୍ମ-ପ୍ରବୃତ୍ତି-ଦୋଷ-ମିଥ୍ୟାଜ୍ଞାନାନାମୁତ୍ତରୋତ୍ତରାପାୟେ ତଦନନ୍ତରାପାୟାତ୍ ଅପବର୍ଗଃ ।**　　ନ୍ୟାୟସୂତ୍ର—୧-୧-୨ ।

ମିଥ୍ୟାଜ୍ଞାନ ଉଚ୍ଛେଦର ଉପାୟ ବିଷୟରେ ନ୍ୟାୟଦର୍ଶନ କହେ ଯେ, ତତ୍ତ୍ୱଜ୍ଞାନ ଭିନ୍ନ ମିଥ୍ୟାଜ୍ଞାନର ନାଶ ହୁଏ ନାହିଁ । ଅତଏବ ତତ୍ତ୍ୱଜ୍ଞାନ ଲାଭ କରିପାରିଲେ ଜୀବ ନିଃଶ୍ରେୟସ ବା ଅପବର୍ଗ ଲାଭ କରେ । ଅପବର୍ଗର ଅର୍ଥ ଆତ୍ୟନ୍ତିକ ଦୁଃଖବିନାଶ । ଅତଏବ ନ୍ୟାୟଦର୍ଶନ ମତରେ ଦୁଃଖନାଶର ଏକମାତ୍ର ଉପାୟ ତତ୍ତ୍ୱଜ୍ଞାନ ଏବଂ ଏହି ତତ୍ତ୍ୱଜ୍ଞାନ ଜୀବନକୁ ପ୍ରଦାନ କରିବା ନ୍ୟାୟଦର୍ଶନର ପ୍ରଧାନ ଉଦ୍ଦେଶ୍ୟ ।

## ଠ—ନ୍ୟାୟମତରେ ତତ୍ତ୍ୱସଂଖ୍ୟା ।

ନ୍ୟାୟଦର୍ଶନରେ ତତ୍ତ୍ୱଜ୍ଞାନ ବିଷୟରେ କୁହାଯାଇଛି—ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି ଓ ନିଗ୍ରହସ୍ଥାନ—ଏହି ଷୋଡ଼ଶ ପଦାର୍ଥର ତତ୍ତ୍ୱଜ୍ଞାନ । ତନ୍ମଧ୍ୟରେ ପ୍ରମେୟର ତତ୍ତ୍ୱଜ୍ଞାନ ସାକ୍ଷାତ୍ ଓ ପ୍ରମାଣାଦିର ତତ୍ତ୍ୱଜ୍ଞାନ ପରମ୍ପରୟା ଅପବର୍ଗରେ ହେତୁ । ନ୍ୟାୟଦର୍ଶନ ଅନୁସାରେ ଏମାନଙ୍କର ସ୍ୱରୂପ ଏହିପରି—

ପ୍ରମାଣର ଅର୍ଥ ପ୍ରମାତ୍ମକଜ୍ଞାନର ସାଧନ; ଏହା ୪ ପ୍ରକାର—ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶାବ୍ଦ । ପ୍ରମାଣଦ୍ୱାରା ପ୍ରମେୟ ପ୍ରତିପନ୍ନ ହୁଏ । ପ୍ରମେୟ ୧୨ ପ୍ରକାର—ଆତ୍ମା, ଶରୀର, ଇନ୍ଦ୍ରିୟ, ଇନ୍ଦ୍ରିୟାର୍ଥ (ଅର୍ଥାତ୍ ଇନ୍ଦ୍ରିୟର ବିଷୟ କ୍ଷିତି, ଆପ୍, ତେଜଃ, ବାୟୁ ଓ ଆକାଶର ସଂଯୋଗରେ ଯଥାକ୍ରମେ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ; ତା ସହିତ ବୁଦ୍ଧି, ମନ,

* ସୋଽୟଂ ସର୍ବଂ ଦୁଃଖେନ ଅନୁବଦ୍ଧମିତି ପଶ୍ୟନ୍ ଦୁଃଖଂ ଜିହାସୁଃ ଜନ୍ମନି ଦୁଃଖଦର୍ଶୀ ନିର୍ବିଦ୍ୟତେ ନିର୍ବିଣ୍ଣୋ ବିରଜ୍ୟତେ ବିରକ୍ତଶ୍ଚ ବିଚ୍ୟତେ— ୧-୨୧ ସୂତ୍ରର ବାତ୍ସ୍ୟାୟନ ଭାଷ୍ୟ ।

ପ୍ରବୃତ୍ତି, ଦୋଷ (ରାଗ, ଦ୍ୱେଷ, ମୋହ) ପ୍ରେତ୍ୟଭାବ (ପୁନର୍ଜନ୍ମ), ଫଳ (କର୍ମଫଳଭୋଗ), ଦୁଃଖ ଓ ଅପବର୍ଗ— ଏସବୁର ନାମ ଇନ୍ଦ୍ରିୟାର୍ଥ) ୩ୟ ସଂଶୟ ଅର୍ଥାତ୍ ସନ୍ଦେହ; ୪ର୍ଥ ପ୍ରୟୋଜନ, ଅର୍ଥାତ୍ ଯେଉଁ ଉଦ୍ଦେଶ୍ୟରେ ଲୋକର ପ୍ରବୃତ୍ତି ହୁଏ; ୫ମ ଦୃଷ୍ଟାନ୍ତ; ୬ଷ୍ଠ ସିଦ୍ଧାନ୍ତ—ବିଷୟର ନିଷ୍ପତ୍ତି, (୭) ଅବୟବ ବା ନ୍ୟାୟର ଏକଦେଶ; (୮) ତର୍କ; ୯-ନିର୍ଣ୍ଣୟ, ଅର୍ଥାତ୍ ପରପକ୍ଷ ଦୂଷଣ ଓ ସ୍ୱପକ୍ଷସ୍ଥାପନଦ୍ୱାରା ଅର୍ଥର ନିଶ୍ଚୟ; ୧୦—ବାଦ ବା ଯୁକ୍ତି କରିବା; ୧୧—ଜଳ୍ପ; ୧୨—ବିତଣ୍ଡା ବା ବ୍ୟର୍ଥଯୁକ୍ତି କରିବା; ୧୩—ହେତ୍ୱାଭାସ ବା ଭ୍ରାନ୍ତହେତୁଦ୍ୱାରା ଅନୁମାନ କରିବା ଚେଷ୍ଟା; ୧୪—ଛଳ, ୧୫—ଜାତି ବା ଭ୍ରାନ୍ତ ଉପମାନ ଓ ୧୬—ନିଗ୍ରହସ୍ଥାନ, ଅର୍ଥାତ୍ ଯଦ୍ଦ୍ୱାରା ବିବାଦୀର ବିପ୍ରତିପତ୍ତି ବା ଅପ୍ରତିପତ୍ତି ( ଅଜ୍ଞାନ ) ପ୍ରକାଶିତ ହୁଏ ।

ଏହି ଷୋଡ଼ଶ ପଦାର୍ଥ ଆଶ୍ରୟରେ ଯାହାର ତତ୍ତ୍ୱଜ୍ଞାନ ହୁଏ, ନ୍ୟାୟମତରେ ତାହାର ଦୁଃଖର ଆତ୍ୟନ୍ତିକ ନିବୃତ୍ତି ବା ଅପବର୍ଗ ଲାଭ ହୁଏ; କିନ୍ତୁ ପ୍ରୋକ୍ତ ସକଳ ପଦାର୍ଥମଧ୍ୟରେ ପରମାତ୍ମାଙ୍କର ଉଲ୍ଲେଖ ନାହିଁ । ଅଥଚ ବର୍ଣ୍ଣିତ ୧୬ ପଦାର୍ଥର ବିଚାର କେବଳ ନ୍ୟାୟ-ଦର୍ଶନର ପ୍ରଧାନ ଉପାଦେୟ ଓ ତଦ୍‌ଭିନ୍ନ ଅନ୍ୟ କୌଣସି ପଦାର୍ଥର ନାମଗନ୍ଧ ସୁଦ୍ଧା ନାହିଁ । ସାଧାରଣତଃ ନ୍ୟାୟଦର୍ଶନର ବିଷୟ ୩ ଭାଗରେ ବିଭକ୍ତ— ୧ମ--ନ୍ୟାୟାଂଶ ବା ପ୍ରମାଣନିରୂପଣ ୨ୟ ତର୍କାଂଶ ବା ଯୁକ୍ତିତର୍କ ଓ ୩ୟ ଆଧ୍ୟାତ୍ମିକ ଦର୍ଶନ । ଏଥିରୁ ପ୍ରଥମାଂଶ ନେଇ ପ୍ରମାଣ ବିଚାରସହ ପଞ୍ଚାବୟବ ନ୍ୟାୟର ଗବେଷଣାପୂର୍ଣ୍ଣ ଆଲୋଚନା ପରିଦୃଷ୍ଟ ହୁଏ । ପରବର୍ତ୍ତୀ କାଳରେ ନବ୍ୟନ୍ୟାୟ ଉଦ୍ଭାବିତ ହେବା ପରେ ନୈୟାୟିକମାନେ କେବଳ ପ୍ରମାଣର ବିଚାରରେ ହିଁ ସକଳ ଶକ୍ତି ପ୍ରୟୋଗ କରିଛନ୍ତି, କିନ୍ତୁ ମୁକ୍ତି ବିଷୟରେ ନବ୍ୟ ନୈୟାୟିକମାନଙ୍କର ବିଚାର ଅଧିକ ଅଗ୍ରସର ହୋଇ ନାହିଁ । ଆଉ କେତେକ ନୈୟାୟିକ ଅନୁମାନରୂପ ପ୍ରମାଣଦ୍ୱାରା ପରମେଶ୍ୱରଙ୍କ ଅସ୍ତିତ୍ୱ ସ୍ଥାପନ ନିମନ୍ତେ ଅନେକ ଯୁକ୍ତିତର୍କର ଅବତାରଣା କରିଅଛନ୍ତି ।

**କ୍ଷିତ୍ୟାଦିକଂ ସକର୍ତ୍ତୃକଂ, କାର୍ଯ୍ୟତ୍ୱାତ୍ ଘଟବତ୍ ।**

(ନ୍ୟାୟଦର୍ଶନ ୪।୧।୨୧ ସୂତ୍ରର ବିଶ୍ୱନାଥକୃତବୃତ୍ତି)

ଅର୍ଥାତ୍ ଘଟର ଯେପରି ସୃଷ୍ଟିକର୍ତ୍ତା କୁମ୍ଭକାର, ସେପରି ଜଗତର ମଧ୍ୟ ସୃଷ୍ଟିକର୍ତ୍ତା ଅଛନ୍ତି—ସେ ହେଉଛନ୍ତି ପରମେଶ୍ୱର । ଏପରି ଯୁକ୍ତିର ନାମ ନ୍ୟାୟତର୍କ । । ନ୍ୟାୟତର୍କଦ୍ୱାରା ପରମେଶ୍ୱରଙ୍କ ସତ୍ତ୍ୱସ୍ଥାପନରୀତି ଉଦୟନାଚାର୍ଯ୍ୟଙ୍କ କୁସୁମାଞ୍ଜଳିନାମକ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ତାଙ୍କ ମତରେ ଏହି ନ୍ୟାୟତର୍କ ହିଁ ଶାସ୍ତ୍ରୋକ୍ତ ମନନନିଦିଧ୍ୟାସନ ।

ନ୍ୟାୟଚର୍ଚ୍ଚେୟମୀଶସ୍ୟ ମନନବ୍ୟପଦେଶଭାକ୍ ।

କୁସୁମାଞ୍ଜଳି—୧-୩ ।

ତର୍କଦ୍ୱାରା ଯଦି ଈଶ୍ୱରସତ୍ତ୍ୱସ୍ଥାପନ ଅସାଧ୍ୟ ନ ହୁଏ, ତେବେ ନୈୟାୟିକର ଶ୍ରମ ନିଷ୍ଫଳ ନୁହେଁ ; କିନ୍ତୁ ଅନେକଙ୍କ ମତରେ ଈଶ୍ୱରଙ୍କୁ ତର୍କ ବିଷୟ ନ କରିବା ହିଁ ଶ୍ରେୟସ୍କର ।

ନ୍ୟାୟଦର୍ଶନର ତର୍କାଂଶ—ଏଥିରେ ଜଳ୍ପ, ବିତଣ୍ଡା, ଛଳପ୍ରଭୃତି ସାହାଯ୍ୟରେ ବହୁ ସୂକ୍ଷ୍ମ କରାଯାଇଛି । କିନ୍ତୁ ଯୁ। ସହିତ ଦର୍ଶନର ପ୍ରକୃତ ପ୍ରତିପାଦ୍ୟ ବିଷୟର ସମ୍ବନ୍ଧ ସେତେ ପରିଲକ୍ଷିତ ହୁଏ ନାହିଁ, ନ୍ୟାୟର ଦର୍ଶନାଂଶ ଆତ୍ମା, ଶରୀର, ଇନ୍ଦ୍ରିୟ, ମନ ପ୍ରଭୃତିର ବିଚାରରେ ପୂର୍ଣ୍ଣ । ଏହି ଅଂଶରେ ପ୍ରସଙ୍ଗକ୍ରମେ କ୍ଷିତି, ଆପ ପ୍ରଭୃତି ପଞ୍ଚମହାଭୂତ ଓ ରୂପ, ରସପ୍ରଭୃତି ଇନ୍ଦ୍ରିୟାର୍ଥର ବିଚାର ଏବଂ ସଂକ୍ଷେପରେ ପରମାଣୁବାଦର ଉଲ୍ଲେଖ ପରିଦୃଷ୍ଟ ହୁଏ । ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧିଠାରୁ ଆତ୍ମା ସ୍ୱତନ୍ତ୍ର ଏବଂ ସେ ଭୋକ୍ତା, ଜ୍ଞାତା ଓ ନିତ୍ୟବସ୍ତୁ—ଏ ବିଷୟ ନ୍ୟାୟଦର୍ଶନ ସୁନ୍ଦର ଯୁକ୍ତିଦ୍ୱାରା ପ୍ରମାଣିତ କରିଅଛି ।

## ଠ—ନ୍ୟାୟ ଦର୍ଶନ ଓ ଈଶ୍ୱରସ୍ୱୀକାର ।

ନ୍ୟାୟଦର୍ଶନରେ ଈଶ୍ୱରସତ୍ତ୍ୱ ଅସ୍ୱୀକୃତ ନୁହେଁ, ବରଂ ୪ର୍ଥ ଅଧ୍ୟାୟର ପ୍ରଥମ ଆହ୍ନିକରେ ଅସତ୍‌ରୁ ସତ୍‌ର ଉତ୍ପତ୍ତିନିରାସ ପ୍ରସଙ୍ଗରେ ଈଶ୍ୱରସତ୍ତ୍ୱ ସ୍ୱୀକାର କରିଅଛନ୍ତି ଏବଂ ସେହି ଈଶ୍ୱର କେବଳ ଜୀବର କର୍ମଫଳଦାତା—ଏ କଥା ମଧ୍ୟ ଘୋଷିତ ହୋଇଛି ।

ଈଶ୍ୱରଃ କାରଣଂ ପୁରୁଷକର୍ମଫଳାଦଦର୍ଶନାତ୍ ।

ନ୍ୟାୟସୂତ୍ର—୪-୧-୧୯

ତତ୍ କାରିତତ୍ୱାଦହେତୁଃ ।　　ନ୍ୟାୟସୂତ୍ର—୪-୧-୨୧ ।

ଏହି ସୂତ୍ରର ବ୍ୟାଖ୍ୟାନାବସରରେ ବାତ୍ସ୍ୟାୟନ କହିଅଛନ୍ତି, "ମନୁଷ୍ୟର କର୍ମଫଳ ଭୋଗ ଯାହାଙ୍କ ଅଧୀନ, ସେହି କେବଳ ଈଶ୍ୱର । ଈଶ୍ୱରଙ୍କ ଅନୁଗ୍ରହ ଭିନ୍ନ ପୁରୁଷକାର ଫଳ ଜନ୍ମାଇ ପାରେ ନାହିଁ । * ଏହାଭିନ୍ନ ନ୍ୟାୟଦର୍ଶନର ଅନ୍ୟ କୌଣସି ବର୍ଣ୍ଣନାପ୍ରସଙ୍ଗରେ ଈଶ୍ୱରଙ୍କ ପ୍ରସଙ୍ଗ ପରିଦୃଷ୍ଟ ହୁଏ ନାହିଁ । ଏଥିରୁ ଜଣାଯାଏ, ମୂଳ ନ୍ୟାୟଦର୍ଶନରେ ଈଶ୍ୱରଙ୍କ ସ୍ଥାନ ଗୌଣ । ନ୍ୟାୟଦର୍ଶନକାର ଦୁଃଖନାଶ ବା ଅପବର୍ଗଲାଭର ଯେଉଁ ଉପାୟ ଉଦ୍ଭାବନ କରି ଅଛନ୍ତି, ତା ସହିତ ଈଶ୍ୱରଙ୍କର କିଛିମାତ୍ର ସମ୍ପର୍କ ନାହିଁ । ନ୍ୟାୟଦର୍ଶନପ୍ରଦର୍ଶିତ ପ୍ରଣାଳୀ ଅନୁସାରେ ଈଶ୍ୱରସତ୍ତ୍ୱ ଓ ଈଶ୍ୱରଙ୍କ ସହିତ ଜୀବର ସମ୍ବନ୍ଧ ସ୍ଥାପିତ ହେଉ ବା ନ ହେଉ, ସେଥିରେ କିଛି ଯାଏ ଆସେ ନାହିଁ । କାରଣ, ନ୍ୟାୟଦର୍ଶନୋକ୍ତ ୧୬ ପଦାର୍ଥର (ଏଥିରେ ଈଶ୍ୱର ଅନ୍ତର୍ଭୁକ୍ତ ନୁହେଁ)

* ପରାଧୀନଂ ପୁରୁଷସ୍ୟ କର୍ମଫଳାରାଧନମିତି ଯଦଧୀନଂ ସ ଈଶ୍ୱରଃ । ତସ୍ମାତ୍ ଈଶ୍ୱରଃ କାରଣମ୍ ମିତି । × × ପୁରୁଷକାରମୀଶ୍ୱରୋଽନୁଗୃହ୍ଣାତି, ଫଳାୟ ପୁରୁଷସ୍ୟ ଯତମାନସ୍ୟ ଈଶ୍ୱରଃ ଫଳଂ ସମ୍ପାଦୟତି । ଯଦା ନ ସମ୍ପାଦୟତି, ଯଦା ପୁରୁଷକର୍ମାଽଫଳଂ ଭବତି ।

ପ୍ରକୃଷ୍ଟ ଜ୍ଞାନ ଅର୍ଜନ କରି ପାରିଲେ କେବଳ ଜୀବ ଆତ୍ୟନ୍ତିକ ଦୁଃଖରୁ ନିବୃତ୍ତିଲାଭ କରି ଅପବର୍ଗ ଲାଭ କରିପାରେ । ଏହା କେବଳ ନ୍ୟାୟଦର୍ଶନ ପ୍ରଦର୍ଶିତ ମୁକ୍ତିପଥ ।

ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦରେ ମୁକ୍ତିଲାଭନିମନ୍ତେ ଯେଉଁ ପଥ ଅନୁମୋଦିତ, ତାହା ଏଥିରୁ ସମ୍ପୂର୍ଣ୍ଣ ପୃଥକ୍ । ସେହିପଥରେ ଅଗ୍ରସର ହେବା ନିମନ୍ତେ ପରଂବ୍ରହ୍ମ ପରମାତ୍ମାଙ୍କ ଅବଲମ୍ବନ ହିଁ ଏକମାତ୍ର ଉପାୟ । ଗୀତାବଚନ ମଧ୍ୟ ଏହି ପଥ ପ୍ରଦର୍ଶନରେ ପର୍ଯ୍ୟବସିତ । ସେହି ହେତୁରୁ ସମଗ୍ରଗୀତାରେ ନ୍ୟାୟଦର୍ଶନର କୌଣସି ପ୍ରସଙ୍ଗ ବା ଆଭାସ ପରିଦୃଷ୍ଟ ହୁଏ ନାହିଁ ।

## ୦—ବୈଶେଷିକ ଦର୍ଶନର ସଂକ୍ଷିପ୍ତ ତତ୍ତ୍ୱାଲୋଚନା ।

ପୂର୍ବେ ଉକ୍ତ ହୋଇଅଛି ଯେ, ନ୍ୟାୟ ଓ ବୈଶେଷିକ ଦର୍ଶନ ଏକଶ୍ରେଣୀୟ । ବୈଶେଷିକ ଦର୍ଶନ * ମତରେ ମଧ୍ୟ ସଂସାର ଦୁଃଖମୟ । ସେହି ଦୁଃଖର ଅତ୍ୟନ୍ତ ନିବୃତ୍ତି ହିଁ ନିଃଶ୍ରେୟସ । "ନିଃଶ୍ରେୟସମାତ୍ୟନ୍ତିକୀ ଦୁଃଖନିବୃତ୍ତିଃ"—ଶଙ୍କରମିଶ୍ରକୃତ ବୈଶେଷିକ ସୂତ୍ରୋପସ୍କାର—୧-୧-୨ । ବୈଶେଷିକ ମତରେ ମଧ୍ୟ ନିଃଶ୍ରେୟସ ଲାଭର ଉପାୟ ତତ୍ତ୍ୱଜ୍ଞାନ । ବୈଶେଷିକ ଦର୍ଶନର ଉଦ୍ଦେଶ୍ୟ ଜୀବକୁ ଏହି ତତ୍ତ୍ୱଜ୍ଞାନର ଅଧିକାରୀ କରିବା । କି ରୂପରେ ତତ୍ତ୍ୱଜ୍ଞାନ ହେଲେ ନିଃଶ୍ରେୟସ ଲାଭ ହୁଏ ? ଏହି ପ୍ରଶ୍ନର ଉତ୍ତରରେ ବୈଶେଷିକ କହନ୍ତି ଯେ, ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ—ଏହି ଛ ପଦାର୍ଥର ସାଧର୍ମ୍ୟ ଓ ବୈଧର୍ମ୍ୟ-ଜ୍ଞାନଜନିତ ତତ୍ତ୍ୱଜ୍ଞାନଦ୍ୱାରା ଜୀବ ନିଃଶ୍ରେୟସ ଲାଭ କରେ ।

**ଧର୍ମବିଶେଷପ୍ରସୂତାଦ୍ ଦ୍ରବ୍ୟଗୁଣକର୍ମ ସାମାନ୍ୟବିଶେଷ ସମବାୟାନାଂ ପଦାର୍ଥାନାଂ ସାଧର୍ମ୍ୟବୈଧର୍ମ୍ୟାଭ୍ୟାଂ ତତ୍ତ୍ୱଜ୍ଞାନାତ୍ ନିଃଶ୍ରେୟସମ୍ ।**

ବୈ : ଦର୍ଶନ ୧-୧-୩

(୧) ଦ୍ରବ୍ୟ ୯ ପ୍ରକାର—କ୍ଷିତି, ଅପ୍, ତେଜ, ବାୟୁ, ଆକାଶ, କାଳ, ଦିକ୍, ଆତ୍ମା ଓ ମନ । କ୍ଷିତି, ଅପ୍, ତେଜ ଓ ବାୟୁ—ଏହି ଚାରି ମହାଭୂତ ନିତ୍ୟ ଓ ଅନିତ୍ୟଭେଦରେ

* ମହର୍ଷି କଣାଦପ୍ରଣୀତ ବୈଶେଷିକସୂତ୍ର ବୈଶେଷିକଦର୍ଶନର ମୂଳଭିତ୍ତି । ଏହା ୧୦ ଅଧ୍ୟାୟରେ ବିଭକ୍ତ । ପ୍ରତ୍ୟେକ ଅଧ୍ୟାୟରେ ୨ଟି ପରିଚ୍ଛେଦ । ଏହାର ନାମ ମଧ୍ୟ ଆହ୍ନିକ । ବୈଶେଷିକସୂତ୍ରର ପ୍ରାଚୀନଭାଷ୍ୟ ଆଜକାଲି ମିଳେ ନାହିଁ ; କିନ୍ତୁ ପ୍ରଶସ୍ତପାଦାଚାର୍ଯ୍ୟଙ୍କ "ପଦାର୍ଥସଂଗ୍ରହ" ଗ୍ରନ୍ଥ ଏହାର ଭାଷ୍ୟସ୍ଥାନୀୟ । ଉଦୟନାଚାର୍ଯ୍ୟଙ୍କ କିରଣାବଳୀ ଓ ଶ୍ରୀଧରାଚାର୍ଯ୍ୟଙ୍କ ନ୍ୟାୟକନ୍ଦଳୀ "ପଦାର୍ଥସଂଗ୍ରହ"ର ଉତ୍କୃଷ୍ଟ ଟୀକା । ଶଙ୍କରମିଶ୍ରକୃତ "ବୈଶେଷିକ-ସୂତ୍ରୋପସ୍କାର" ନାମରେ ଅପେକ୍ଷାକୃତ ଆଧୁନିକ ଭାଷ୍ୟ ମଧ୍ୟ ପ୍ରଚଳିତ ଅଛି ।

ଦ୍ୱିବିଧ । ପରମାଣୁରୂପରେ ନିତ୍ୟ ଓ ପରମାଣୁ ସଂଘାତଜନିତ ଶରୀର, ଇନ୍ଦ୍ରିୟ ଓ ବିଷୟ-ରୂପରେ ଅନିତ୍ୟ । ବୈଶେଷିକ ମତରେ ଏହି ଚତୁର୍ବିଧ ପରମାଣୁ ଓ ଆକାଶାଦି ଅପର ପଞ୍ଚଦ୍ରବ୍ୟ ନିତ୍ୟ । ଆତ୍ମା ଜ୍ଞାନର ଆଶ୍ରୟ ଓ ଏହା ମାନସ ପ୍ରତ୍ୟକ୍ଷ ହୁଏ । ଆତ୍ମା ବିଭୁ ଓ ଅନେକ ବା ପ୍ରତିଶରୀରରେ ଭିନ୍ନ । ଏହି ଦର୍ଶନମତରେ ମନ ଅଣୁ ଓ ଆତ୍ମାର ସୁଖଦୁଃଖାଦି ଜ୍ଞାନରେ ପ୍ରତ୍ୟକ୍ଷ କରଣ । ଦ୍ରବ୍ୟ ଗୁଣର ଆଶ୍ରୟ; ଗୁଣ ବିରହିତ ହୋଇ ଦ୍ରବ୍ୟ ରହିପାରେ ନାହିଁ ।

(୨)—ଗୁଣ ୨୪ ପ୍ରକାର—ରୂପ, ରସ, ଗନ୍ଧ, ସ୍ପର୍ଶ, ସଂଖ୍ୟା, ପରିମାଣ, ପୃଥକ୍ତ୍ୱ, ସଂଯୋଗ, ବିଭାଗ, ପରତ୍ୱ, ଅପରତ୍ୱ, ବୁଦ୍ଧି, ସୁଖ, ଦୁଃଖ, ଇଚ୍ଛା, ଦ୍ୱେଷ ଓ ପ୍ରଯତ୍ନ । ସୂତ୍ରୋକ୍ତ ଏହି ସପ୍ତଦଶ ଗୁଣ ସହିତ ପ୍ରଶସ୍ତପାଦାଚାର୍ଯ୍ୟ ଗୁରୁତ୍ୱ, ଦ୍ରବ୍ୟତ୍ୱ, ସ୍ନେହ, ସଂସ୍କାର, ଅଦୃଷ୍ଟ (ଧର୍ମ ଓ ଅଧର୍ମ) ଓ ଶବ୍ଦ—ଏହି ସପ୍ତଗୁଣର ଯୋଗ କରି ୨୪ ସଂଖ୍ୟା ସମ୍ପୂର୍ଣ୍ଣ କରିଛନ୍ତି ।

(୩)—କର୍ମ ୫ ପ୍ରକାର—ଉତ୍କ୍ଷେପଣ, ଅବକ୍ଷେପଣ, ଆକୁଞ୍ଚନ, ପ୍ରସାରଣ ଓ ଗମନ । ଅନ୍ୟ ସକଳ କର୍ମ ଗମନର ଅନ୍ତର୍ଗତ ।

(୪)—ଜାତି ୨ ପ୍ରକାର—ପର ଓ ଅପର । ଅଧିକଦେଶବୃତ୍ତି ଜାତିକୁ ପର ଏବଂ ଅଳ୍ପ ଦେଶବୃତ୍ତି ଜାତିକୁ ଅପର କୁହାଯାଏ । ମନୁଷ୍ୟତ୍ୱ, ଅଶ୍ୱତ୍ୱ, ଗୋତ୍ୱ ଆଦି ଅପର ଜାତି; କିନ୍ତୁ ସେମାନଙ୍କଠାରେ ଥିବା ପ୍ରାଣିତ୍ୱ ପରଜାତି ।

(୫)—ବିଶେଷ—କେହି କେହି କହନ୍ତି ଯେ ବିଶେଷର ଅର୍ଥ ବ୍ୟକ୍ତି । ସାମାନ୍ୟକୁ ଜାତି ଓ ବିଶେଷକୁ ବ୍ୟକ୍ତି କୁହାଯାଏ । ଏହି ମତ ସମୀଚୀନ ହେଲେ ମଧ୍ୟ ବୈଶେଷିକ ମତାବ-ଲମ୍ବୀମାନେ ଏହା ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ ଯେଉଁ ଅସାଧାରଣ ଧର୍ମଦ୍ୱାରା ନିରବୟବ ପଦାର୍ଥର ପରସ୍ପର ଭେଦ ସିଦ୍ଧ ହୁଏ, ତାହା ହିଁ ବିଶେଷ ।

(୬)—ସମବାୟ, ନିତ୍ୟ ସମ୍ବନ୍ଧ । ତନ୍ତୁ ସହିତ ବସ୍ତ୍ର । ଗୁଣ ସହିତ ଗୁଣୀ, କ୍ରିୟା ସହିତ ଦ୍ରବ୍ୟ ଓ ଜାତି ସହିତ ବ୍ୟକ୍ତିର ଯେଉଁ ସମ୍ବନ୍ଧ, ତାହାର ନାମ ସମବାୟ ।

(୭)—ଅଭାବ ଦ୍ୱିବିଧ—ପ୍ରଥମ ସଂସର୍ଗାଭାବ, ଅର୍ଥାତ୍ ସମ୍ବନ୍ଧର ଅଭାବ; ଏହା ମଧ୍ୟ ୩ ପ୍ରକାର—ପ୍ରାଗଭାବ = ବସ୍ତୁର ସ୍ୱରୂପକ ପ୍ରାଗଭାବ, ଧ୍ୱଂସ ବା ନାଶ ଓ ଅତ୍ୟନ୍ତାଭାବ, ଅର୍ଥାତ୍ ଜଡ଼ରେ ଚେତନର ଅତ୍ୟନ୍ତାଭାବ । ଦ୍ୱିତୀୟ ଅନ୍ୟୋନ୍ୟାଭାବ—ଅଶ୍ୱ ଗଜ ନୁହେଁ, ଏପରି ଉଦାହରଣରେ ଅଶ୍ୱରେ ଗଜର ଅଭାବ ଓ ଗଜରେ ଅଶ୍ୱର ଅଭାବକୁ ଅନ୍ୟୋନ୍ୟାଭାବ କୁହାଯାଏ ।

## ଠ—ବୈଶେଷିକ ମତରେ ଈଶ୍ୱର ବା ପରମାତ୍ମାଙ୍କ ପ୍ରସଙ୍ଗ

ବୈଶେଷିକ ଦର୍ଶନରେ ପରମାତ୍ମାଙ୍କ ସତ୍ତା ଅସ୍ୱୀକୃତ ନୁହେଁ । ୨ୟ ଅଧ୍ୟାୟର ପ୍ରଥମ ଆହ୍ନିକରେ ବାୟୁପଦାର୍ଥ ବିଚାରପ୍ରସଙ୍ଗରେ ପରମାତ୍ମାଙ୍କ ଉଲ୍ଲେଖ କରାଯାଇଛି ।

ସଂଜ୍ଞାକର୍ମତ୍ୱସ୍ମାଦ୍ ବଶିଷ୍ଟାନାଂ ଲିଙ୍ଗମ୍ । ବୈଶେଷିକ ସୂତ୍ର—(୨-୧-୧୮)
ପ୍ରତ୍ୟକ୍ଷପ୍ରବୃତ୍ତତ୍ୱାତ୍ ସଂଜ୍ଞାକର୍ମଣଃ । ,, ୨-୧-୧୯ ।

ସଂଜ୍ଞା, ଅର୍ଥାତ୍ ନାମ ଓ କର୍ମ, ଯଥା—କ୍ଷିତ୍ୟାଦି କାର୍ଯ୍ୟ—ଏହି ଦୁଇଟି ଆମ୍ଭମାନଙ୍କ-ଠାରୁ ବଶିଷ୍ଟ—ଈଶ୍ୱର, ମହର୍ଷି ପ୍ରଭୃତିର ଅସ୍ତିତ୍ୱ ପ୍ରମାଣିତ କରେ । ଘଟ-ପଟାଦି ଶବ୍ଦରୁ ପରମାତ୍ମାଙ୍କ ସଙ୍କେତଦ୍ୱାରା ସେହି ସେହି ପଦାର୍ଥ ବୁଝାଯାଏ । କ୍ଷିତି, ଅପ୍ ଆଦି କାର୍ଯ୍ୟର କର୍ତ୍ତା ସେହି ଈଶ୍ୱର ବା ପରମାତ୍ମା-ଇତ୍ୟାଦି—ପରମାତ୍ମାଙ୍କ ସର୍ବସ୍ୱୀକୃତ ବିଷୟରେ କିଛି ଇଙ୍ଗିତ କେବଳ ଉପର୍ଯ୍ୟୁକ୍ତ ଦର୍ଶନରେ ଦେଖାଯାଏ । ଏତଦ୍ ଭିନ୍ନ ବୈଶେଷିକ ଦର୍ଶନର ଅନ୍ୟ କୌଣସି ସ୍ଥାନରେ ପରମାତ୍ମାପ୍ରସଙ୍ଗ ଉତ୍ଥାପିତ ହୋଇ ନାହିଁ । ନବ୍ୟ-ନୈୟାୟିକମାନଙ୍କର ବୈଶେଷିକ-ଦର୍ଶନସମ୍ବନ୍ଧୀ ପ୍ରକରଣଗ୍ରନ୍ଥମାନଙ୍କରେ ମୂଳସୂତ୍ରୋକ୍ତ ଆତ୍ମାର ବିଶ୍ଳେଷଣରେ ପରମାତ୍ମାଙ୍କ ପ୍ରସଙ୍ଗ ପରିଦୃଷ୍ଟ ହୁଏ । ସେମାନଙ୍କ ମତରେ ଆତ୍ମା ଜୀବାତ୍ମା ଓ ପରମାତ୍ମା-ଭେଦରେ ଦ୍ୱିବିଧ । ନବ୍ୟ ନ୍ୟାୟର ଭାଷାପରିଚ୍ଛେଦନାମକ ଗ୍ରନ୍ଥରେ ଆତ୍ମା ଶବ୍ଦ ପରିବର୍ତ୍ତରେ "ଦେହିନୌ" ଅର୍ଥାତ୍ ଜୀବ ଓ ଈଶ୍ୱରାର୍ଥକ ଶବ୍ଦର ପ୍ରୟୋଗ ଦେଖାଯାଏ । ମୂଳସୂତ୍ରର ତୃତୀୟ ଅଧ୍ୟାୟରେ କଣାଦ ଆତ୍ମାର ନିରୂପଣାବସରରେ କହିଛନ୍ତି—ଦେହ, ଇନ୍ଦ୍ରିୟ ଓ ମନଠାରୁ ଆତ୍ମା ସ୍ୱତନ୍ତ୍ର । ସେଥିରେ ବହୁଯୁକ୍ତିଦ୍ୱାରା ଏପରି ଅର୍ଥ କରାଯାଇଥିଲେ ମଧ୍ୟ ଈଶ୍ୱରଙ୍କର କୌଣସି ପ୍ରସଙ୍ଗ ଦେଖାଯାଏ ନାହିଁ । ନବ୍ୟ ବୈଶେଷିକମାନେ ସ୍ଥିର କରିଛନ୍ତି ଯେ, ଈଶ୍ୱରଙ୍କଠାରେ ଜ୍ଞାନ, ଇଚ୍ଛା, ପ୍ରଯତ୍ନ, ସଂଖ୍ୟା-ପ୍ରଭୃତି ୮ ଗୋଟି ଗୁଣର ସମାବେଶ ଅଛି (ମହେଶ୍ୱରେଽଷ୍ଟୌ); କିନ୍ତୁ କଣାଦମହର୍ଷିଙ୍କ ମୂଳ ଦର୍ଶନରେ ଏପରି ଗଣନା କରାଯାଇ ନାହିଁ । ପ୍ରଶସ୍ତପାଦାଚାର୍ଯ୍ୟ ପଦାର୍ଥମାନଙ୍କ ତତ୍ତ୍ୱଜ୍ଞାନ କେବଳ ମୋକ୍ଷର କାରଣ; ଏହି ବର୍ଣ୍ଣନା ପ୍ରସଙ୍ଗରେ—

"ତଚ୍ଚ ଈଶ୍ୱରନୋଦନାଭିବ୍ୟକ୍ତାତ୍ ଧର୍ମାଦେବ"—

ଅର୍ଥାତ୍ ସେହି ତତ୍ତ୍ୱଜ୍ଞାନ ଈଶ୍ୱର-ପ୍ରେରଣାଜନିତ ଧର୍ମରୁ ଉତ୍ପନ୍ନ ହୁଏ ବୋଲି କହିଛନ୍ତି; କିନ୍ତୁ ମୂଳ ସୂତ୍ରରେ "ଧର୍ମବିଶେଷପ୍ରସୂତ"—ଏତିକମାତ୍ର ଉଲ୍ଲିଖିତ । ଏହାର ଉଦ୍ଦେଶ୍ୟ ଏହା ହୋଇପାରେ—ନିବୃତ୍ତି-ଲକ୍ଷଣ ଧର୍ମ ବା ନିଷ୍କାମକର୍ମୋପାର୍ଜିତ ଧର୍ମରୁ ସମୁତ୍ପନ୍ନ ତତ୍ତ୍ୱଜ୍ଞାନ ମୁକ୍ତିର ସାଧନ ।

## ଠ—ପରମାଣୁବାଦରେ ମଧ୍ୟ ମହେଶ୍ୱର ମୁଖ୍ୟ ନୁହନ୍ତି

ପ୍ରଶସ୍ତପାଦାଚାର୍ଯ୍ୟ ପରମାଣୁବାଦ ପ୍ରସଙ୍ଗରେ ଈଶ୍ୱରଙ୍କ ଅବତାରଣା କରିଛନ୍ତି; କିନ୍ତୁ ସେହି ପ୍ରସଙ୍ଗର ମୂଳସୂତ୍ରରେ ଈଶ୍ୱରଙ୍କ ଉଲ୍ଲେଖ ପରିଦୃଷ୍ଟ ହୁଏ ନାହିଁ । କଣାଦଙ୍କ ମତରେ ପରମାଣୁ ସତ୍, ନିତ୍ୟ ଓ ଅକାରଣ ବା କାରଣରହିତ । ଘଟପଟରୂପକ କାର୍ଯ୍ୟର ପରମାଣୁ କାରଣ; କିନ୍ତୁ ପରମାଣୁର ଅନ୍ୟ କୌଣସି କାରଣ ନାହିଁ । ଘଟପଟପ୍ରଭୃତି ସାବୟବ ଦ୍ରବ୍ୟର

ଅବୟବ ବିଭାଗ କରି ସୂକ୍ଷ୍ମରୁ ସୂକ୍ଷ୍ମତର ଓ ସୂକ୍ଷ୍ମତମ ଅବୟବରେ ପହଞ୍ଚିବାକୁ ହୁଏ ଓ ଶେଷାଂଶର ଆଉ ବିଭାଗ କରିବା ସମ୍ଭବ ହୁଏ ନାହିଁ; ଯାହା ଆଉ ବିଭାଜ୍ୟ ନୁହେଁ—ଏପରି ପରମ ସୂକ୍ଷ୍ମ ଅଂଶକୁ ପରମାଣୁ କୁହାଯାଏ । ପରମାଣୁର ଉତ୍ପତ୍ତି ବା ବିନାଶ ନାହିଁ, ଅତଏବ ତାହା ନିତ୍ୟ । ଦୁଇଟି ପରମାଣୁର ସଂଯୋଗରେ ଦ୍ୟଣୁକ ଓ କେତୋଟି ଦ୍ୟଣୁକର ସଂଯୋଗରେ ତ୍ରସରେଣୁ ଉତ୍ପନ୍ନ ହୁଏ । ଏହିପରି କ୍ରମେ ସକଳ ସ୍ଥୂଳାବୟବ ଦ୍ରବ୍ୟ ଉତ୍ପନ୍ନ ହୋଇଅଛି । ଏ ବିଷୟ ବୈଶେଷିକ ଦର୍ଶନର ପ୍ରଥମ ଆହ୍ନିକରେ ଦ୍ରଷ୍ଟବ୍ୟ ।

ପ୍ରଶସ୍ତପାଦାଚାର୍ଯ୍ୟ ଏହା ମଧ୍ୟ ବର୍ଣ୍ଣନା କରିଛନ୍ତି—ସକଳଭୁବନପତି ମହେଶ୍ୱରଙ୍କ ସଂହାର-ଇଚ୍ଛା ହେଲେ ପରମାଣୁପୁଞ୍ଜର ସଂଘାତଜନିତ ଶରୀର, ଇନ୍ଦ୍ରିୟ ଓ ତଦ୍‌ବିଷୟ କ୍ରମଶଃ ବିଶ୍ଳିଷ୍ଟ ଓ ବିନଷ୍ଟ ହୋଇଯାଏ । ସେ ସମୟରେ କେବଳ ମୌଳିକ ପରମାଣୁ ଅବଶିଷ୍ଟ ରହି ଯାଏ । ପ୍ରଳୟକାଳର ଅବସାନରେ ପ୍ରାଣୀମାନଙ୍କର ଭୋଗ-ସମ୍ପାଦନନିମନ୍ତେ ମହେଶ୍ୱରଙ୍କର ପୁନଶ୍ଚ ସୃଷ୍ଟି-ଇଚ୍ଛା ହୁଏ । ସେତେବେଳେ ଅଦୃଷ୍ଟପ୍ରେରଣାରେ ପ୍ରଥମତଃ ବାୟୁପରମାଣୁରେ ସ୍ପନ୍ଦନ ଉତ୍ପନ୍ନ ହୁଏ ଏବଂ ପରେ କ୍ରମଶଃ ବାୟୁପରମାଣୁସମୂହର ପରସ୍ପର ସଂଯୋଗରେ ଦ୍ୟଣୁକାଦିକ୍ରମେ ମହାନ୍ ବାୟୁ ଉତ୍ପନ୍ନ ହୋଇ ଆକାଶରେ ପ୍ରବାହିତ ହୁଏ । ଏହିପରି ତୈଜସ-ପରମାଣୁରୁ ବୃହତ୍ ତେଜ ଏବଂ ଜଳୀୟ ପରମାଣୁରୁ ମହାନ୍ ସଲିଳରାଶି ଉତ୍ପନ୍ନ ହୁଏ; ଏହିପରି ପାର୍ଥିବ ପରମାଣୁସଂଯୋଗରେ ବିପୁଳ ପୃଥିବୀର ଉତ୍ପତ୍ତି ହୁଏ । ଏପରି ଚାରି ମହାଭୂତ ଉତ୍ପନ୍ନ ହେବାପରେ ମହେଶ୍ୱରଙ୍କ ସଂକଳ୍ପରେ କେବଳ ବ୍ରହ୍ମାଣ୍ଡର ଉତ୍ପତ୍ତି ହୁଏ ଏବଂ ତନ୍ମଧ୍ୟରେ ବ୍ରହ୍ମା ଆବିର୍ଭୂତ ହୋଇ ସୃଷ୍ଟିକାର୍ଯ୍ୟ ନିଷ୍ପନ୍ନ କରନ୍ତି । ଅବଶ୍ୟ ଏହି ସବୁ ମତ ପ୍ରଶସ୍ତପାଦା-ଚାର୍ଯ୍ୟଙ୍କର; କିନ୍ତୁ ମୂଳସୂତ୍ରରେ ଏପରି ମତର କୌଣସି ଆଭାସ ମିଳେ ନାହିଁ । ଏହି ସବୁଥିରୁ ପ୍ରମାଣିତ ହୁଏ ଯେ, ବୈଶେଷିକଦର୍ଶନରେ ମଧ୍ୟ ଈଶ୍ୱରଙ୍କ ସ୍ଥାନ ସେତେ ମୁଖ୍ୟ ବା ଦୃଢ଼ ନୁହେଁ । କେବଳ ଗୌଣଭାବରେ ଈଶ୍ୱରପ୍ରସଙ୍ଗରେ ବର୍ଣ୍ଣନା କରାଯାଇଛି । ବୈଶେଷିକ-ଦର୍ଶନକାର ନିଃଶ୍ରେୟସ ପ୍ରାପ୍ତିନିମନ୍ତେ ଯେଉଁ ପ୍ରଣାଳୀର ନିର୍ଦ୍ଧାରଣ କରିଛନ୍ତି, ତା ସହିତ ଈଶ୍ୱରଙ୍କ ସମ୍ବନ୍ଧ ଅତିଅଳ୍ପ । ବୈଶେଷିକଦର୍ଶନ ଈଶ୍ୱରଙ୍କ ସତ୍ତା ଓ ଜୀବସହିତ ତାଙ୍କ ସଂପର୍କ ଆଦି ବିଷୟରେ ଦୃଢ଼ମତ ପ୍ରତିପାଦନ କରୁ ନାହିଁ । କେବଳ ପୂର୍ବୋକ୍ତ ସପ୍ତ ପଦାର୍ଥ (ଯହିଁରେ ଈଶ୍ୱର ଅନ୍ତର୍ଭୁକ୍ତ ନୁହନ୍ତି) ଓ ସେମାନଙ୍କ ସାଧର୍ମ୍ୟ ଓ ବୈଧର୍ମ୍ୟଜ୍ଞାନକୁ ଅକ୍ଷୁର୍ଣ୍ଣ ରଖି ସେହି ତତ୍ତ୍ୱଜ୍ଞାନବଳରେ ଦୁଃଖର ମୂଳ ଉତ୍ପାଟନ କରି ନିଃଶ୍ରେୟସଲାଭ ଏହି ଦର୍ଶନର ପ୍ରଧାନ ପ୍ରତିପାଦ୍ୟ ବିଷୟ ଓ ମୁକ୍ତିପଥ ।

କିନ୍ତୁ ବିଶୁଦ୍ଧାଦ୍ୱୈତବ୍ରହ୍ମବାଦ-ପ୍ରଦର୍ଶିତ ମାର୍ଗ ଏଥିରୁ ସମ୍ପୂର୍ଣ୍ଣ ପୃଥକ୍ । ଏହାର ଭେଦ ସବୁ ପୂର୍ବେ ବର୍ଣ୍ଣିତ ହୋଇଛି ଓ ପରେ ଯଥାସ୍ଥାନରେ ବର୍ଣ୍ଣିତ ହେବ ।

## ୦—ପୂର୍ବମୀମାଂସାଦର୍ଶନର ସଂକ୍ଷିପ୍ତ ବିବରଣ—

ପୂର୍ବେ ବର୍ଣ୍ଣନା କରାଯାଇଛି—ବେଦର ଦୁଇଟି ଭାଗ, କର୍ମକାଣ୍ଡ ଓ ଜ୍ଞାନକାଣ୍ଡ। କର୍ମକାଣ୍ଡ ବେଦର ବିରୋଧଭଞ୍ଜନ ଓ ସାମଞ୍ଜସ୍ୟ-ବିଧାନପାଇଁ ମୀମାଂସାଦର୍ଶନର ଉତ୍ପତ୍ତି। *

ମୀମାଂସାଦର୍ଶନ ମତରେ ବେଦର କର୍ମକାଣ୍ଡ ହିଁ ସାର୍ଥକ। ଜ୍ଞାନକାଣ୍ଡ ନିରର୍ଥକ;

"ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାତ୍ ଆନର୍ଥକ୍ୟଂ ତଦର୍ଥାନାମ୍ ।।"

ମୀମାଂସାସୂତ୍ର-୧-୨୧

ଅର୍ଥାତ୍ କର୍ମହିଁ ବେଦର ପ୍ରତିପାଦ୍ୟ, ଅତଏବ ବେଦରେ ତଦ୍‌ଭିନ୍ନ ଜ୍ଞାନଅଂଶ ନିରର୍ଥକ। ଅତଏବ ଏହି ମତରେ ଉପନିଷଦ୍‌ର ସମସ୍ତ ସାରସତ୍ୟ ଉପଦେଶ ଅର୍ଥବାଦ ମାତ୍ର। "ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ" "ଅୟମାତ୍ମା ବ୍ରହ୍ମ", "ତତ୍ତ୍ୱମସି"-ପ୍ରଭୃତି ମହାବାକ୍ୟ ନ ଥିଲେ ମଧ୍ୟ ତାଙ୍କର କିଛି ଯାଏଆସେ ନାହିଁ। ମୀମାଂସକମାନେ କହନ୍ତି ଯେ, ବେଦରେ ଯେଉଁ ଆତ୍ମାର ତତ୍ତ୍ୱଜ୍ଞାନ ଉପଦିଷ୍ଟ ହୋଇଛି, ତାହାର ଉଦ୍ଦେଶ୍ୟ ଦେହାତିରିକ୍ତ ଆତ୍ମାର ଅସ୍ତିତ୍ୱ ପ୍ରତିପାଦନ କରି ଜୀବକୁ ଅଦୃଷ୍ଟ ଫଳ ସ୍ୱର୍ଗାଦିର ସାଧନସ୍ୱରୂପ ଯଜ୍ଞକର୍ମରେ ପ୍ରବର୍ତ୍ତିତ କରିବା।

"ଶେଷତ୍ୱାତ୍ ପୁରୁଷାର୍ଥବାଦୋ ଯଥାଽନ୍ୟେଷୁ।"

ଇତି ଜୈମିନିଃ-ବ୍ର. ସୂ. ୩-୪-୨

ମୀମାଂସାଦର୍ଶନରେ ବେଦ ନିତ୍ୟ, ଅଭ୍ରାନ୍ତ ଓ ଅପୌରୁଷେୟ। ଅର୍ଥାତ୍ ବେଦ କୌଣସି ପୁରୁଷକୃତ ନୁହେଁ; ଋଷିମାନେ କେବଳ ମନ୍ତ୍ରଦ୍ରଷ୍ଟା। ବେଦ ଚିରନ୍ତନ ଅଛି ଓ ଚିରନ୍ତନ ଥିବ। ବେଦର ପ୍ରାମାଣ୍ୟ ସ୍ୱତଃସିଦ୍ଧ; ବେଦର ସତ୍ୟତା ପ୍ରମାଣାନ୍ତର ଅପେକ୍ଷା କରେ ନାହିଁ। ସକଳବେଦ ଜୀବହିତାର୍ଥେ ଧର୍ମମାର୍ଗ ପ୍ରତିପାଦନ କରିଅଛି। ବେଦୋକ୍ତ ପ୍ରଧାନ ଧର୍ମମାର୍ଗ ହେଉଛି ଯଜ୍ଞସମ୍ପାଦନ। "ଯଜେତ ସ୍ୱର୍ଗକାମଃ", ସ୍ୱର୍ଗକାମନା କରି ଯାଗ କରିବ। ଏହିପରି ଉପଦେଶଦ୍ୱାରା ବେଦ ଜୀବକୁ ଧର୍ମକାର୍ଯ୍ୟରେ ପ୍ରେରଣା କରେ। ଯାହା ଦୃଷ୍ଟବିଷୟ, ଜୀବ ନିଜେ ତାହାର ଉପାୟ ଉଦ୍ଭାବନ କରିପାରେ, ଯେପରି କ୍ଷୁଧାତୃଷା ନିବାରଣନିମନ୍ତେ

* ଜୈମିନିପ୍ରଣୀତ ପୂର୍ବ ମୀମାଂସାସୂତ୍ର ମୀମାଂସାଦର୍ଶନର ମୂଳ ଗ୍ରନ୍ଥ। ଏହା ଦ୍ୱାଦଶ ଅଧ୍ୟାୟରେ ବିଭକ୍ତ। ପୂର୍ବ ମୀମାଂସାରେ ଶବରସ୍ୱାମୀକୃତ ପ୍ରସିଦ୍ଧ ଭାଷ୍ୟ ଅଛି। କୁମାରିଲଭଟ୍ଟ ଏହି ଭାଷ୍ୟର "ତନ୍ତ୍ରବାର୍ତ୍ତିକ" ନାମକ ବିଖ୍ୟାତ ବାର୍ତ୍ତିକ ରଚନା କରିଛନ୍ତି। ମାଧବାଚାର୍ଯ୍ୟଙ୍କ "ଜୈମିନୀୟ ନ୍ୟାୟମାଳା ବିସ୍ତର"ରେ ମୀମାଂସାଦର୍ଶନର ଅଧିକରଣସମୂହ ବିଶଦଭାବରେ ବ୍ୟାଖ୍ୟାତ ହୋଇଅଛି। ଆପୋଦେବଙ୍କର "ମୀମାଂସାନ୍ୟାୟପ୍ରକାଶ" ଓ ଲୌଗାକ୍ଷିଭାସ୍କରଙ୍କ "ଅର୍ଥ ସଂଗ୍ରହ" ମୀମାଂସାଦର୍ଶନସମ୍ବନ୍ଧରେ ସୁପ୍ରଚଳିତ ପ୍ରକରଣ-ଗ୍ରନ୍ଥ ବୋଲି ପ୍ରଖ୍ୟାତ।

ଜୀବ ଅନ୍ନଜଳ ସଂଗ୍ରହ କରୁଛି; କିନ୍ତୁ ଯାହା ଅଦୃଷ୍ଟ ବିଷୟ ସ୍ୱର୍ଗାଦି, ତା'ର ଲାଭନିମନ୍ତେ ଜୀବ ନିଜେ ଉପାୟ ଉଦ୍ଭାବନ କରି ପାରେ ନାହିଁ । ଜୀବ ଦୁଃଖମୟ ସଂସାର ଛାଡ଼ି ସୁଖମୟ ସ୍ଥାନ ଲାଭ କରିବା ପାଇଁ ସର୍ବଦା ବ୍ୟାକୁଳ । ଲୌକିକ ଉପାୟରେ ସେ ଉଦ୍ଦେଶ୍ୟ ସିଦ୍ଧ ହୁଏ ନାହିଁ । ସେହି ହେତୁରୁ ବେଦ କୃପା କରି ଜୀବକୁ ଉପଦେଶ ଦିଅନ୍ତି—"ସ୍ୱର୍ଗକାମୋ ଯଜେତ", ସ୍ୱର୍ଗପ୍ରାପ୍ତିର ସାଧନ ଯଜ୍ଞ ଅନୁଷ୍ଠାନ କର, ତାହାହେଲେ ନିଶ୍ଚୟ ସ୍ୱର୍ଗଲାଭ ହେବ । ସ୍ୱର୍ଗ ସୁଖଧାମ, ସେଠାରେ ଲେଶମାତ୍ର ଦୁଃଖ ନାହିଁ, ସେଠାରେ ଗୃହୀଁଲୋମାନେ ସୁଖ ମିଳେ । ପୁନଶ୍ଚ ବେଦ କହେ-"ଅକ୍ଷୟ୍ୟଂ ହବୈ ଚାତୁର୍ମାସ୍ୟଯାଜିନଃ ସୁକୃତଂ ଭବତି"; ଅର୍ଥାତ୍ ଚାତୁର୍ମାସ୍ୟଯାଗ-କାରୀର ଅକ୍ଷୟ ପୁଣ୍ୟ ସଞ୍ଚିତ ହୁଏ । "ସର୍ବାନ୍ ଲୋକାନ୍ ଜୟତି, ମୃତ୍ୟୁଂ ତରତି, ପାପ୍ମାନଂ ତରତି, ବ୍ରହ୍ମହତ୍ୟାଂ ତରତି ଯୋଽଶ୍ୱମେଧେନ ଯଜତେ" । ଅଶ୍ୱମେଧଯଜ୍ଞର ଫଳ ଅନୁସାରେ ଯଜମାନ ସମସ୍ତ ଲୋକ ଜୟ କରେ; ମୃତ୍ୟୁକୁ ଜିଣେ, ସକଳପାପ ଓ ବ୍ରହ୍ମହତ୍ୟାରୁ ମୁକ୍ତ ହୁଏ । ଅଶ୍ୱମେଧଯାଜୀଙ୍କର ଅନ୍ୟ ଯଜ୍ଞଫଳ—"କିଂ ନୂନଂ ଅସ୍ମାନ୍ କୃତବତ୍ ଅରାତିଃ", ଅର୍ଥାତ୍ ଶତ୍ରୁ ଆମ୍ଭର କ'ଣ କରିପାରେ ? "ଜନ୍ମ ଧୂର୍ତ୍ତିରମୃତମର୍ତ୍ତ୍ୟସ୍ୟ", ଅର୍ଥାତ୍ ମର୍ତ୍ତ୍ୟରେ ମୋର ଜନ୍ମ ହେଲେ ସୁଦ୍ଧା ବର୍ତ୍ତମାନ ମୁଁ ଅମର ହୋଇଅଛି । ଧୂର୍ତ୍ତି ବା ଜରାବସ୍ଥା ମୋର କ'ଣ କରିପାରେ ?" ପୂର୍ବମୀମାଂସା ମତରେ ବେଦ ପଞ୍ଚବିଧ—(୧) ବିଧି, (୨) ମନ୍ତ୍ର (୩) ନାମଧେୟ (୪) ନିଷେଧ ଓ (୫) ଅର୍ଥବାଦ । ଏମାନଙ୍କ ସ୍ୱରୂପ ଏହିପରି:—ବିଧି—ଅଜ୍ଞାତ ବିଷୟର ଜ୍ଞାପକ ବେଦବାକ୍ୟର ନାମ; ଯଥା—"ସ୍ୱର୍ଗକାମୋ ଯଜେତ" ଇତ୍ୟାଦି । ପୂର୍ବମୀମାଂସା ମତରେ ବିଧିବାକ୍ୟ କେବଳ ବେଦର ସାରଭାଗ । ବିଧିବାକ୍ୟ ମଧ୍ୟ ଚାରି ପ୍ରକାର—ଉତ୍ପତ୍ତିବିଧି, ବିନିଯୋଗବିଧି, ପ୍ରୟୋଗବିଧି ଓ ଅଧିକାରବିଧି । ଯେଉଁ ବିଧି କର୍ମସ୍ୱରୂପପ୍ରବୋଧକ, ତାହାର ନାମ ଉତ୍ପତ୍ତିବିଧି । "ଅଗ୍ନିହୋତ୍ରଂ ଜୁହୋତି"; ଅର୍ଥାତ୍ ଅଗ୍ନିହୋତ୍ର ହୋମ କରୁଛି । ଏହା ଅଗ୍ନିହୋତ୍ର ହୋମର ସ୍ୱରୂପ ଜଣାଉଛି; କିନ୍ତୁ ହୋମନିଷ୍ପାଦନ ସକାଶେ ଉତ୍ପତ୍ତିବିଧିଜ୍ଞାନ ଯଥେଷ୍ଟ ନୁହେଁ । କେଉଁ ଦ୍ରବ୍ୟ ସାହାଯ୍ୟରେ ଓ କେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ହୋମ କରିବାକୁ ହେବ—ଏହା ମଧ୍ୟ ଜ୍ଞାତବ୍ୟ; ଅତଏବ ବିନିଯୋଗ ବିଧିର ଆବଶ୍ୟକତା । "ଦଧ୍ନା ଜୁହୋତି, ଇନ୍ଦ୍ରାଗ୍ନୀ ଇଦଂ ହବିଃ", ଅର୍ଥାତ୍ ଦହି ଆହୁତି ଦେଇ ହୋମ କରୁଛି—ଏଠାରେ ହୋମଦ୍ରବ୍ୟ ଦହି, ଇନ୍ଦ୍ର ଓ ଅଗ୍ନିଙ୍କ ଉଦ୍ଦେଶ୍ୟରେ ଏହି ହୋମଦ୍ରବ୍ୟର ବିନିଯୋଗ—ଇତ୍ୟାଦିଦ୍ୱାରା ବିନିଯୋଗ ବିଧିର ମଧ୍ୟ ହୋମ ସକାଶେ ଆବଶ୍ୟକତା ଅନୁଭୂତ । ଅଥଚ ଏହାଭିନ୍ନ ହୋମର କ୍ରମଜ୍ଞାନସକାଶେ ପ୍ରୟୋଗବିଧିର ଆବଶ୍ୟକତା ମଧ୍ୟ ଅନୁଭୂତ ହୁଏ । "ଅଗ୍ନିହୋତ୍ରଂ ଜୁହୋତି ଯବାଗୂଂ ପଚତି" ଇତ୍ୟାଦି ବାକ୍ୟରେ ଅଗ୍ନିହୋତ୍ର ହୋମ ପରେ ଯବାଗୂପଚନକ୍ରିୟା ବିଧେୟ—ଇତ୍ୟାଦି ହୋମ ଓ ପଚନକ୍ରିୟାର କ୍ରମଜ୍ଞାନ ପ୍ରୟୋଗବିଧି ସାହାଯ୍ୟରେ ଜଣାଯାଏ ; ଏହା ନ ଜାଣିଲେ ବୈଦିକ ହୋମକାର୍ଯ୍ୟ ସଫଳ ହେବ ନାହିଁ । ଏହା ବ୍ୟତୀତ ଯଜ୍ଞାନୁଷ୍ଠାନରେ କିଏ କେଉଁ କର୍ମର ଅଧିକାରୀ, ଏ କଥା ନ ଜାଣିଲେ ଯଜ୍ଞାନୁଷ୍ଠାନ ସଫଳ ନୁହେଁ । "ରାଜା ରାଜସୂୟେନ ସ୍ୱରାଜ୍ୟକାମୋ ଯଜେତ ।" ଅର୍ଥାତ୍ ରାଜା କେବଳ ସୁଶାସନ ସକାଶେ ରାଜସୂୟ-ଯାଗ କରିବ; ରାଜସୂୟ ଯାଗରେ ରାଜା ଭିନ୍ନ ଅନ୍ୟ କାହାର ଅଧିକାର ନାହିଁ ।

ମୀମାଂସକମାନେ ବିଧିର ବର୍ଗୀକରଣ କରିବା ସମୟରେ ନିୟମ ଓ ପରିସଂଖ୍ୟା ଉଲ୍ଲେଖ କରିଛନ୍ତି । "ଶ୍ରାଦ୍ଧେ ଭୁଞ୍ଜୀତ ପିତୃସେବିତମ୍", ଅର୍ଥାତ୍ ଶ୍ରାଦ୍ଧକର୍ତ୍ତା ପିତୃଶ୍ରାଦ୍ଧ ଶେଷରେ ଭୋଜନ କରିବ; ଏହା ନିୟମବିଧି । କାରଣ, ଶ୍ରାଦ୍ଧକର୍ତ୍ତା ଭୋଜନ କରିବ ଏବଂ ଭୋଜନ କରିବ ନାହିଁ—ଏପରି ଉଭୟାର୍ଥ ପ୍ରବୃତ୍ତିର ସଂଭାବନାକୁ ଏହି ବିଧିବାକ୍ୟ ନିୟମିତ କରୁଛି—ଅତଏବ ଏହା ନିୟମବିଧି । ସେପରି "ଋତୌ ଭାର୍ଯ୍ୟାମୁପେୟାତ୍" ଅର୍ଥାତ୍ ଋତୁକାଳ ପରେ ଭାର୍ଯ୍ୟାଭିଗମନ କରିବ—ଏହା ମଧ୍ୟ ଗୋଟିଏ ନିୟମବିଧି । "ପ୍ରୋକ୍ଷିତମାଂସଂ ଭୁଞ୍ଜୀତ" । ଅର୍ଥାତ୍ ମନ୍ତ୍ରସଂସ୍କୃତ ମାଂସଭକ୍ଷଣ ବିଧେୟ; ଯେକୌଣସି ମାଂସ ଖାଇବା ବିଷୟରେ ମନୁଷ୍ୟର ପ୍ରବୃତ୍ତି ଦୃଷ୍ଟ ହେଲେ ମଧ୍ୟ ଶାସ୍ତ୍ର ନିୟମିତ କରୁଛି ଯେ, କେବଳ ପ୍ରୋକ୍ଷିତ ବା ମନ୍ତ୍ର ସଂସ୍କୃତ ମାଂସ ଭକ୍ଷଣ କରିବ, ଅନ୍ୟ ମାଂସ ନୁହେଁ ।

୨—**ମନ୍ତ୍ର**—"**ଅଗ୍ନିମୀଡ଼େ ପୁରୋହିତମ୍**" ଇତ୍ୟାଦି ବେଦର ସଂହିତା ଅଂଶ ପ୍ରଧାନତଃ ଏହି ମନ୍ତ୍ରଦ୍ୱାରା ଗଠିତ । ମୀମାଂସକମାନଙ୍କ ମତରେ ଯଜ୍ଞର ଉପଦିଷ୍ଟ ଦେବତା ପ୍ରଭୃତିର ସ୍ମାରକରୂପରେ ମନ୍ତ୍ରମାନଙ୍କର ଉପଯୋଗିତା ।

୩—**ନାମଧେୟ**—ଅର୍ଥାତ୍ ବିଶିଷ୍ଟ ଦ୍ରବ୍ୟର ନାମୋଚ୍ଚାରଣପୂର୍ବକ ବିଧେୟ ବିଷୟର ସଂକୋଚ ସାଧନ କରିବା । ଯଥା—"ଉଦ୍‌ଭିଦା ଯଜେତ ପଶୁକାମଃ"; "ଚିତ୍ରୟା ଯଜେତ ପଶୁକାମଃ ।" ଅର୍ଥାତ୍ ଉଦ୍‌ଭିଦ୍ ଓ ଚିତ୍ରାନାମକ ଯଜ୍ଞ କଲେ ଯଜମାନ ବହୁ ପଶୁଲାଭ କରେ । ଯେ କୌଣସି ଯଜ୍ଞଦ୍ୱାରା ସକଳ ଫଳ ମିଳେ ନାହିଁ । ଉଦ୍ଭିଦ୍ ଓ ଚିତ୍ରାନାମକ ଯଜ୍ଞଦ୍ୱାରା କେବଳ ପଶୁପ୍ରାପ୍ତି ରୂପକ ଫଳ ମିଳେ । ଅନ୍ୟ ପ୍ରକାର ଯଜ୍ଞବିଧାନଦ୍ୱାରା ଏହା ସମ୍ଭବ ନୁହେଁ ।

୪—**ନିଷେଧ**—ନିଷେଧରୂପକ ବେଦବାକ୍ୟଦ୍ୱାରା ମନୁଷ୍ୟକୁ ଅକର୍ତ୍ତବ୍ୟରୁ ନିବୃତ୍ତ କରାଯାଏ । "କଳଞ୍ଜଂ ନ ଭକ୍ଷୟେତ୍" ଅଥବା "ମା ଦିବା ସ୍ୱାପ୍ସୀଃ", ଅର୍ଥାତ୍ କଳଞ୍ଜଭକ୍ଷଣ ଓ ଦିବାସ୍ୱପ୍ନ ନିଷିଦ୍ଧ । ଏହାଦ୍ୱାରା ସେହି ସେହି କର୍ମରୁ ମନୁଷ୍ୟକୁ ନିବାରଣ କରାଯାଏ ।

୫—**ଅର୍ଥବାଦ**—ଯେଉଁ ବାକ୍ୟଦ୍ୱାରା ବିଧି ବା ନିଷେଧ ସଂପର୍କରେ ପ୍ରଶଂସା ବା ନିନ୍ଦା କରାହୁଏ, ତାହାକୁ ଅର୍ଥବାଦ କୁହାଯାଏ । ଏହା ୩ ପ୍ରକାର—ଗୁଣବାଦ, ଅନୁବାଦ ଓ ଭୂତାର୍ଥବାଦ । ଗୁଣବାଦର ଉଦାହରଣ—"ଆଦିତ୍ୟୋ ଯୂପଃ"; ଅର୍ଥାତ୍ ସୂର୍ଯ୍ୟ କେବଳ ଯୂପ-କାଷ୍ଠରେ ପରିଣତ ହୁଅନ୍ତି, ଏହାର ତାତ୍ପର୍ଯ୍ୟ—ଯୂପ ସୂର୍ଯ୍ୟଙ୍କପରି ଉଜ୍ଜ୍ୱଳ । ଅନୁବାଦର ଉଦାହରଣ—ଅଗ୍ନିର୍ହିମସ୍ୟ ଔଷଧମ୍"—ଅଗ୍ନି ଶୀତର ଔଷଧ । ଅଗ୍ନିସେବା କଲେ ଥଣ୍ଡା ଚାଲିଯାଏ, ଏହା ଆପାମର ସମସ୍ତେ ଜାଣନ୍ତି, ଅଥଚ ଏହି ବେଦବାକ୍ୟ ସେହି ଅର୍ଥ ପ୍ରକାଶ କରିବାରୁ ଏହା ଅନୁବାଦ ମାତ୍ର । ଭୂତାର୍ଥବାଦ—"ଇନ୍ଦ୍ରୋ ବୃତ୍ରାୟ ବଜ୍ରଂ ଉପଯଚ୍ଛତ୍"—ଇନ୍ଦ୍ର ବୃତ୍ରପ୍ରତି ବଜ୍ର ଉତ୍ତୋଳନ କଲେ; ଏହା ଅତୀତ ଘଟନାର କଥନ । ଏହିପରି ମୀମାଂସକମାନେ

ପ୍ରତିପାଦନ କରିଛନ୍ତି ଯେ, ସମସ୍ତ ବେଦବାକ୍ୟ ସାକ୍ଷାତ୍ ବା ପରମ୍ପରାରେ ଜ୍ଞାନରୂପ ଧର୍ମର ହିଁ ପ୍ରତିପାଦନକର୍ତ୍ତା । ଇନ୍ଦ୍ରାଦି ଦେବତାଙ୍କ ଉଦ୍ଦେଶ୍ୟରେ ଯଜ୍ଞ ଅନୁଷ୍ଠିତ ହୁଏ; କିନ୍ତୁ ଯଜ୍ଞବିଧାନ ମୀମାଂସକଙ୍କ ମତରେ ମୁଖ୍ୟ କାର୍ଯ୍ୟ, ଦେବତା ଗୌଣ ଓ ଯଜ୍ଞ କର୍ମର ପ୍ରୟୋଜକ ନୁହେଁ । * କାରଣ, ମୀମାଂସାଦର୍ଶନମତରେ ଦେବତାର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଦେବତା ମନ୍ତ୍ରାତ୍ମକ । ମନ୍ତ୍ରଦ୍ୱାରା ନିର୍ଦ୍ଦିଷ୍ଟକ୍ରମରେ ଗ୍ରଥିତ ଶବ୍ଦସମୂହ ବୁଝାଯାଏ; ସେହି କ୍ରମର ବା ଶବ୍ଦର ବ୍ୟତ୍ୟୟ ବା ବିପର୍ଯ୍ୟୟ ଘଟିଲେ ମନ୍ତ୍ର ନିଷ୍ଫଳ ହୁଏ । "ଅଗ୍ନିମୀଳେ ପୁରୋହିତମ୍"—ଏ ମନ୍ତ୍ରରେ ଅଗ୍ନି ଶବ୍ଦ ବଦଳରେ ବହ୍ନି ଶବ୍ଦର ପ୍ରୟୋଗ ବା "ଈଳେ ଅଗ୍ନି ପୁରୋହିତମ୍" ଏହିପରି ନିର୍ଦ୍ଦିଷ୍ଟ କ୍ରମର ବ୍ୟତ୍ୟୟ କରାଗଲେ, ସେହି ମନ୍ତ୍ରପାଠଦ୍ୱାରା କୌଣସି ଫଳ ମିଳିବ ନାହିଁ ।

## ୦—ମୀମାଂସକ ନିରୀଶ୍ୱରବାଦୀ—

ମୀମାଂସାଦର୍ଶନ ଅନୁସାରେ ବେଦ ନିତ୍ୟ ଓ ଅଭ୍ରାନ୍ତ ହେଲେ ମଧ୍ୟ ତାହା ଈଶ୍ୱରଙ୍କ ବାକ୍ୟ ବୋଲି ମାନିବାକୁ ମୀମାଂସକ ଅସ୍ୱୀକାର କରେ । ପ୍ରକୃତରେ ସମଗ୍ର ମୀମାଂସାର କୌଣସି ସ୍ଥାନରେ ମଧ୍ୟ ପରମେଶ୍ୱର-ପରମାତ୍ମାଙ୍କର ପ୍ରସଙ୍ଗ ବର୍ଣ୍ଣିତ ହୋଇ ନାହିଁ । ଏହି ହେତୁରୁ କେବଳ "ବିଦ୍ୱନ୍ମୋଦତରଙ୍ଗିଣୀ"—ଗ୍ରନ୍ଥକାର ମୀମାଂସକମାନଙ୍କ ପରିଚୟ ଦେବା ସମୟରେ କହିଛନ୍ତି ଯେ, ସେମାନେ ଈଶ୍ୱର ମାନନ୍ତି ନାହିଁ । ଜଗତର ସ୍ରଷ୍ଟା, ପାଳୟିତା ବା ସଂହର୍ତ୍ତା କେହି ଅଛନ୍ତି, ଏ କଥା ମଧ୍ୟ ସେମାନେ ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ ଜୀବ କର୍ମାନୁସାରେ ଫଳଭୋଗ କରେ, ସେଥିରେ ପରମେଶ୍ୱରଙ୍କର କୌଣସି ସମ୍ପର୍କ ନାହିଁ ।

## ୦—ଜ୍ଞାନବାଦୀ କର୍ମକାଣ୍ଡର ବିରୋଧୀ—

ପ୍ରକୃତରେ ଜ୍ଞାନବାଦୀ କହେ ଯେ, କର୍ମଦ୍ୱାରା କୌଣସି ଶ୍ରେୟଲାଭ ହୁଏ ନାହିଁ ।

**"ନ କର୍ମଣା ନ ପ୍ରଜୟା ଧନେନ, ତ୍ୟାଗେନୈକେନ ଅମୃତତ୍ତ୍ୱମାନୁଶଃ ।"**

ମହାନାରାୟଣ ଉ: ୧୦-୫ ॥

ଅର୍ଥାତ୍ ଅମରତ୍ୱ ଲାଭର ଉପାୟ କର୍ମ ନୁହେଁ; ସନ୍ତାନ ଲାଭ ବା ଧନଲାଭଦ୍ୱାରା କେହି ଅମର ହୋଇ ନାହିଁ; କେବଳ ତ୍ୟାଗଦ୍ୱାରା ଅମରପଦ ଲାଭ ହୋଇପାରେ । ପୁନଶ୍ଚ ଜ୍ଞାନବାଦୀ

* "ଦେବତା ବା ପ୍ରୟୋଜୟେତ୍, ଅତିଥିବତ୍ ଭୋଜନସ୍ୟ ତଦର୍ଥତ୍ୱାତ୍"—ମୀମାଂସାଦ: ୯-୧-୬" "ଅପି ବା ଶବ୍ଦ ପୂର୍ବତ୍ୱାତ୍ ଯଜ୍ଞକର୍ମପ୍ରଧାନଂ ସ୍ୟାଦ୍ ଗୁଣତ୍ୱେ ଦେବତାଶ୍ରୁତିଃ" ମୀ: ଦ: ୯-୧-୯ "ତସ୍ମାଦ୍ ଦେବତା ନ ପ୍ରୟୋଜକା" । ଇତି ଶଙ୍କର-ଭାଷ୍ୟମ୍ ।

କହେ—କର୍ମଫଳ ଚିରସ୍ଥାୟୀ ନୁହେଁ, ଭୋଗଦ୍ୱାରା କର୍ମ କ୍ଷୟ ହେଲେ କର୍ମୀର ପତନ ଅବଶ୍ୟମ୍ଭାବୀ । ଅତଏବ ଯେଉଁମାନେ ଯାଗାଦି କର୍ମର ଅନୁଷ୍ଠାନକୁ ହିଁ ଶ୍ରେୟୋଲାଭର ଉପାୟ ମନେ କରନ୍ତି, ସେମାନେ ପ୍ରକୃତରେ ମୋହାନ୍ଧ ।

ପ୍ଲବା ହ୍ୟେତେ ଅଦୃଢ଼ା ଯଜ୍ଞରୂପା
ଅଷ୍ଟାଦଶୋକ୍ତମବରଂ ଯେଷୁ କର୍ମ ।
ଏତଚ୍ଛ୍ରେୟୋ ଯେଽଭିନନ୍ଦନ୍ତି ମୂଢ଼ାଃ
ଜରାମୃତ୍ୟୁଂ ତେ ପୁନରେବାପି ଯନ୍ତି ॥

ମୁଣ୍ଡକ ଉ. ୧-୨-୭

ଅବିଦ୍ୟାୟାଂ ବହୁଧା ବର୍ତ୍ତମାନା
ବୟଂ କୃତାର୍ଥା ଇତ୍ୟଭିମନ୍ୟନ୍ତି ବାଳାଃ ।
ଯତ୍ କର୍ମିଣୋ ନ ପ୍ରବେଦୟନ୍ତି ରାଗାତ୍
ତେନାତୁରାଃ କ୍ଷୀଣଲୋକାଶ୍ଚ୍ୟବନ୍ତେ ॥

ମୁ: ଉ: ୧-୨-୯ ।

ଅର୍ଥାତ୍—ଏହି ଅଷ୍ଟାଦଶ ବ୍ୟକ୍ତିଙ୍କର ଅଷ୍ଟାଦଶପ୍ରକାର କର୍ମଦ୍ୱାରା ନିଷ୍ପାଦିତ ଯଜ୍ଞ-କର୍ମ ସଂସାର-ସମୁଦ୍ରକୁ ତରିବାରେ ଅଦୃଢ଼ ଅର୍ଥାତ୍ ଭଙ୍ଗୁର ଭେଳା ସଦୃଶ । ଯେଉଁ ମୂଢ଼ବ୍ୟକ୍ତି ଶ୍ରେୟସ୍ ବିବେଚନା କରି ଏହାର ପ୍ରଶଂସା କରନ୍ତି, ସେମାନେ ପୁନର୍ବାର ଜରାମୃତ୍ୟୁଗ୍ରସ୍ତ ହୁଅନ୍ତି ।

"ନାନାରୂପଅଜ୍ଞାନାଚ୍ଛନ୍ନ ଅଜ୍ଞବ୍ୟକ୍ତି ନାନାବିଧ କର୍ମାନୁଷ୍ଠାନ କରି ନିଜକୁ କୃତାର୍ଥ ମନେକରେ; କିନ୍ତୁ ଫଳାକାଙ୍କ୍ଷାନିବନ୍ଧନ ତତ୍ତ୍ୱଜ୍ଞାନ ଲାଭ ବିଷୟରେ ଅସମର୍ଥ ହୋଇ, କର୍ମକ୍ଷୟ ହେଲା ପରେ ସେହି ଯାଗକର୍ତ୍ତା ଦୁଃଖାଭିଭୂତ ହୋଇ ସ୍ୱର୍ଗଚ୍ୟୁତ ହୁଏ ।

ଏହିସବୁ ଉପର୍ଯ୍ୟୁକ୍ତ ବର୍ଣ୍ଣନାରୁ ଜଣାଯାଏ ଯେ, କର୍ମଫଳ ସ୍ଥାୟୀ ନୁହେଁ, କର୍ମୀର ପତନ ଅବଶ୍ୟମ୍ଭାବୀ; କର୍ମଦ୍ୱାରା ଅମରତ୍ୱ ଲାଭ ହୋଇପାରେ; କିନ୍ତୁ ସେହି ଅମରତ୍ୱ ଆପେକ୍ଷିକ, ଚିରସ୍ଥାୟୀ ନୁହେଁ । ସେହି ଅମରତ୍ୱର ପରମାୟୁ ପ୍ରଳୟ ପର୍ଯ୍ୟନ୍ତ । *

* ଆଭୂତସଂପ୍ଲବଂ ସ୍ଥାନମମୃତତ୍ୱଂ ହି ଭାଷ୍ୟତେ,—ବିଷ୍ଣୁପୁରାଣ ୨-୮-୯୦—ଅର୍ଥାତ୍ ଲୟ-ପର୍ଯ୍ୟନ୍ତ ଅବସ୍ଥାନକୁ ଅମରତ୍ୱ କୁହାଯାଏ ।

କର୍ମଫଳ ଯେ ଭଙ୍ଗୁର, ସେତିକି ନୁହେଁ; ସେଥି ଭଙ୍ଗୁରଭର ତାରତମ୍ୟ ଅଛି । କର୍ମୀମାନେ କର୍ମର ଉତ୍କର୍ଷାପକର୍ଷ ଅନୁସାରେ ଉଚ୍ଚତର ବା ନିମ୍ନତର ଲୋକର ଅଧିକାରୀ ହୁଅନ୍ତି । ଏହିପରି ଅପରର ଉତ୍କର୍ଷ ଦେଖିଲେ ସ୍ୱର୍ଗବାସୀର ମଧ୍ୟ ଦୁଃଖାନୁଭବ ହୁଏ । ଏ ବିଷୟରେ ବାଚସ୍ପତି ମିଶ୍ର ଲେଖିଛନ୍ତି—

"ଜ୍ୟୋତିଷ୍ଟୋମାଦୟଃ ସ୍ୱର୍ଗମାତ୍ରସାଧନଂ,
ବାଜପେୟାଦୟଃ ସ୍ୱାରାଜ୍ୟସ୍ୟ ଇତି ଅତିଶୟଯୁକ୍ତତ୍ୱମ୍ ।
ସା: ତ: କୌ:-୨

ପୁନରପି—ଅତିଶୟୋ ବିଶେଷସ୍ତେନ ଯୁକ୍ତଃ ।
ବିଶେଷଗୁଣଦର୍ଶନାତ୍ ଇତରସ୍ୟ ଦୁଃଖଂ ସ୍ୟାତ୍ ।
ସାଂଖ୍ୟକାରିକା, ୨-ଗୌଡ଼ପାଦଭାଷ୍ୟ ।

କର୍ମର ଅନ୍ୟ ଏକ ବିଷମ ଦୋଷ ଏହି ଯେ, କର୍ମ ବନ୍ଧନର କାରଣ । "କର୍ମଣା ବଧ୍ୟତେ ଜନ୍ତୁର୍ବିଦ୍ୟୟା ଚ ପ୍ରମୁଚ୍ୟତେ"—ଜୀବ କର୍ମଦ୍ୱାରା ବଦ୍ଧ ହୁଏ ଏବଂ ଜ୍ଞାନଦ୍ୱାରା ମୁକ୍ତ ହୁଏ । ଜୀବ ପୁଣ୍ୟ ବା ପାପ ଯେ କୌଣସି କର୍ମ କଲେ ତାହାର ଫଳ ତାକୁ ନିଜେ ଭୋଗିବାକୁ ହେବ । "ଅବଶ୍ୟମେବ ଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭମ୍" । ଅର୍ଥାତ୍ ସୁକୃତ ବା ଦୁଷ୍କୃତରୂପକ ଯେ କୌଣସି କର୍ମ ବିନା ଭୋଗରେ କ୍ଷୟପ୍ରାପ୍ତ ହୁଏ ନାହିଁ । "ନାଭୁକ୍ତଂ କ୍ଷୀୟତେ କର୍ମ କଳ୍ପକୋଟିଶତୈରପି" । ଭୋଗ ନ ହେଲେ ଶତକୋଟି କଳ୍ପରେ ମଧ୍ୟ କର୍ମର କ୍ଷୟ ହୁଏ ନାହିଁ; ଏବଂ ଯେତେଦିନ ପର୍ଯ୍ୟନ୍ତ କର୍ମର ମାତ୍ରା ଅବଶିଷ୍ଟ ଥାଏ, ସେପର୍ଯ୍ୟନ୍ତ ଜୀବକୁ କର୍ମଭୋଗନିମନ୍ତେ ପୁନଃ ପୁନଃ ସଂସାରକୁ ଆସିବାକୁ ହୁଏ । ଅତଏବ ଜ୍ଞାନବାଦୀ କହେ ଯେ, ଯେଉଁ କର୍ମ ଏତେ ଦୋଷର ଆକର, ତାହା ତ୍ୟାଗ କରିବା ହିଁ ଉଚିତ ।

ଅର୍ଥାତ୍ ଜ୍ଞାନବାଦୀଙ୍କ ମତରେ ସର୍ବବିଧ କର୍ମତ୍ୟାଗ ମୁକ୍ତିର ପ୍ରକୃଷ୍ଟ ପନ୍ଥା; କିନ୍ତୁ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ମତରେ କର୍ମ କରିବା ନିମନ୍ତେ ଉପଦେଶ ଦିଆଯାଇଛି । ତାହା କାମ୍ୟ ବା ନିଷିଦ୍ଧ କର୍ମ ନୁହେଁ । କିମ୍ବା ମୀମାଂସାଦର୍ଶନୋକ୍ତ କର୍ମ ମଧ୍ୟ ନୁହେଁ । ଏହି ଦର୍ଶନୋକ୍ତ କର୍ମ ବିଶୁଦ୍ଧ ନିଷ୍କାମ କର୍ମଯୋଗ ନାମରେ ଆଖ୍ୟାତ । ଅର୍ଥାତ୍ କାୟମନୋବାକ୍ୟରେ ଏକ ପ୍ରଭୁ ପରଂବ୍ରହ୍ମଙ୍କ ସ୍ମରଣ ବ୍ୟତୀତ ଅନ୍ୟ କୌଣସି କର୍ମ କରିବାରେ ମହିମାଧର୍ମାଶ୍ରିତର ଅଧିକାର ନାହିଁ । ଏ ବିଷୟ ପରେ ନିଷ୍କାମ କର୍ମଯୋଗ ପ୍ରକରଣରେ ବ୍ୟାଖ୍ୟା କରାଯିବ ।

## ଠ—ସାଂଖ୍ୟଦର୍ଶନ ସଂକ୍ଷିପ୍ତ ତତ୍ତ୍ୱବିବରଣ—

ସାଂଖ୍ୟମତର ଆଲୋଚନା ଓ କର୍ମ ଦୁଃଖମୟ—

ଅନ୍ୟାନ୍ୟ ଦର୍ଶନ ପରି ସାଂଖ୍ୟଦର୍ଶନର ମଧ୍ୟ ଭିତ୍ତି ଦୁଃଖବାଦ । * ଜଗତରେ ଚିର-ଦିନ ଜୀବକୁ ଦୁଃଖର ଅଭିଘାତ ସହିବାକୁ ପଡ଼େ । ସେହି ଦୁଃଖ ତ୍ରିବିଧ—ଆଧ୍ୟାତ୍ମିକ, ଆଧି-ଭୌତିକ ଓ ଆଧିଦୈବିକ । "ତ୍ରିବିଧଂ ଦୁଃଖମ୍"—ତତ୍ତ୍ୱସମାସ—୨୫ । ଆଧ୍ୟାତ୍ମିକ ଦୁଃଖ ଦ୍ୱିବିଧ—"ତତ୍ରାଧ୍ୟାତ୍ମିକଂ ଦ୍ୱିବିଧମ୍; ଶାରୀରଂ ମାନସଂ ଚ"—ସାଂଖ୍ୟତତ୍ତ୍ୱକୌମୁଦୀ । ରୋଗାଦି

* ସାଂଖ୍ୟଦର୍ଶନର ପ୍ରବର୍ତ୍ତକ ମହର୍ଷି କପିଳ । ତାଙ୍କ ଶିଷ୍ୟ ଆସୁରି; ଆସୁରିଙ୍କ ଶିଷ୍ୟ ପଞ୍ଚଶିଖାଚାର୍ଯ୍ୟ । ଏହି ପଞ୍ଚଶିଖାଚାର୍ଯ୍ୟ ସାଂଖ୍ୟଦର୍ଶନର ବିବୃତି କରି ବିବିଧ ଗ୍ରନ୍ଥ ରଚନା କରିଛନ୍ତି; କିନ୍ତୁ ସେସବୁ ଗ୍ରନ୍ଥ ବର୍ତ୍ତମାନ ବିଲୁପ୍ତ । କେବଳ ପାତଞ୍ଜଳଦର୍ଶନର ବ୍ୟାସଭାଷ୍ୟରେ ପଞ୍ଚଶିଖଙ୍କର କେତେକ ବଚନ ଉଦ୍ଧୃତ ହେବା ଦେଖାଯାଏ । ଅଧୁନା, ସାଂଖ୍ୟଦର୍ଶନର ଯେ ସମସ୍ତ ଗ୍ରନ୍ଥ ପ୍ରଚଳିତ ଅଛି, ତନ୍ମଧ୍ୟରେ "ତତ୍ତ୍ୱସମାସ" ସର୍ବାପେକ୍ଷା ପ୍ରାଚୀନ । କେହି କେହି ଏହାକୁ ହିଁ କପିଳପ୍ରଣୀତ ମୂଳ ସାଂଖ୍ୟଦର୍ଶନ ବୋଲି ବିବେଚନା କରନ୍ତି । ଏହା କିନ୍ତୁ ସମୀଚୀନଭଳି ବୋଧ ହୁଏ ନାହିଁ । "ତତ୍ତ୍ୱସମାସ"କୁ ଦର୍ଶନ ନ କହି ଦର୍ଶନର ସୂଚିପତ୍ର ବା ବିଷୟ ତାଲିକା କହିଲେ ଅଧିକ ସଂଗତ ହେବ । "ତତ୍ତ୍ୱସମାସ"ର କେତୋଟି ସୂତ୍ର ଏହିପରି—ଅଷ୍ଟୌ ପ୍ରକୃତୟଃ—୧ । ଷୋଡ଼ଶ ବିକାରାଃ—୨ । ପୁରୁଷଃ—୩ । ତ୍ରୈଗୁଣ୍ୟମ୍—୪ । ସଞ୍ଚରଃ—୫ । ପ୍ରତିସଞ୍ଚରଃ—୬ । ତତ୍ତ୍ୱସମାସର ଗୋଟିଏ ଉପାଦେୟ ବୃତ୍ତି ପ୍ରଚଳିତ ଅଛି । କେହି କେହି ତାହା ଆସୁରିକୃତ ବୋଲି କହନ୍ତି; କିନ୍ତୁ ଏହା ସଙ୍ଗତ ମନେ ହୁଏ ନାହିଁ । କାରଣ ସେହି ବୃତ୍ତିମଧ୍ୟରେ କେତେକ ଆଧୁନିକ ଗ୍ରନ୍ଥର ଉଦ୍ଧରଣ ଦେଖାଯାଏ । ବର୍ତ୍ତମାନ ଷଡ଼ଧ୍ୟାୟାତ୍ମକ "ସାଂଖ୍ୟପ୍ରବଚନ ସୂତ୍ର" ନାମକ ଗ୍ରନ୍ଥ ଗୋଟିଏ ଆଧୁନିକ ସମୟର ଲେଖା ବୋଲି କହିବାରେ ଯଥେଷ୍ଟ କାରଣ ଅଛି । ଆଚାର୍ଯ୍ୟଶଙ୍କର (୮ମ ଖ୍ରୀଷ୍ଟାବ୍ଦ) ବାଚସ୍ପତି ମିଶ୍ର (୯ମ ଶ ଖ୍ରୀ) ଓ ଚତୁର୍ଦ୍ଦଶ ଶତକର ମାଧବାଚାର୍ଯ୍ୟ ମଧ୍ୟ ସ୍ୱଗ୍ରନ୍ଥରେ ଏହି ସାଂଖ୍ୟପ୍ରବଚନସୂତ୍ରରୁ କୌଣସି ବିଷୟ ଉଦ୍ଧୃତ କରି ନାହାନ୍ତି । ଏଥିରୁ ଜଣାଯାଏ, ସେମାନଙ୍କ ସମୟରେ ଏହି ସାଂଖ୍ୟପ୍ରବଚନ ସୂତ୍ର ନଥିଲା । ଏହା ଉପରେ ବିଜ୍ଞାନ-ଭିକ୍ଷୁକୃତ ଗୋଟିଏ ଉପାଦେୟ ଭାଷ୍ୟ ପ୍ରଚଳିତ ଅଛି । ସାଂଖ୍ୟଦର୍ଶନର ଅନିରୁଦ୍ଧକୃତ ସଂକ୍ଷିପ୍ତ ବୃତ୍ତି ଅଧୁନା ପ୍ରଚଳିତ ।

ସାଂଖ୍ୟଦର୍ଶନ ସମ୍ବନ୍ଧରେ ଈଶ୍ୱରକୃଷ୍ଣଙ୍କର ସାଂଖ୍ୟକାରିକା ଅତି ପ୍ରାମାଣିକ ଗ୍ରନ୍ଥ । ଶ୍ରୀ ଶଙ୍କରାଚାର୍ଯ୍ୟ ନିଜ ଶାରୀରକ ଭାଷ୍ୟରେ ଏଥିରୁ ବହୁତ ଉଦ୍ଧୃତ କରିଛନ୍ତି । ମାଧବାଚାର୍ଯ୍ୟ ତାଙ୍କର 'ସର୍ବଦର୍ଶନ' ସଂଗ୍ରହରେ ଏହି ସାଂଖ୍ୟକାରିକା ଅନୁସରଣ କରିଛନ୍ତି । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ଏହି କାରିକା ଚୀନ୍ ଭାଷାରେ ଅନୂଦିତ ହୋଇଥିଲା । ଶଙ୍କରାଚାର୍ଯ୍ୟଙ୍କ ଗୁରୁଙ୍କ ଗୁରୁ—ଗୌଡ଼ପାଦାଚାର୍ଯ୍ୟ ଏହି କାରିକାର ଭାଷ୍ୟ ରଚନା କରିଛନ୍ତି । ଏହି ଭାଷ୍ୟ ବହୁ ପ୍ରାମାଣିକ ଗ୍ରନ୍ଥ । ବାଚସ୍ପତି ମିଶ୍ରକୃତ 'ସାଂଖ୍ୟତତ୍ତ୍ୱକୌମୁଦୀ' ଏହି କାରିକାର ହିଁ ଉତ୍କୃଷ୍ଟ ଟୀକା । ଏତଦ୍‌ବ୍ୟତୀତ ବିଜ୍ଞାନଭିକ୍ଷୁକୃତ 'ସାଂଖ୍ୟସାର' ସାଂଖ୍ୟଦର୍ଶନର ଉପାଦେୟ ଗ୍ରନ୍ଥ ।

ହେତୁରୁ ଶାରୀରିକ ଦୁଃଖ କାମକ୍ରୋଧାଦିଜନ୍ୟ ମାନସିକ ଦୁଃଖ । ଶୀତ, ଗ୍ରୀଷ୍ମ, ବାତ, ବର୍ଷା-ପ୍ରଭୃତିର ଆକ୍ରମଣରୁ ଯେଉଁ ଦୁଃଖ ହୁଏ, ତାହାର ନାମ—ଆଧିଦୈବିକ ଦୁଃଖ । ଯେତେ ଦିନ ପର୍ଯ୍ୟନ୍ତ ଶରୀର ଥିବ, ସେତେ ଦିନ ପର୍ଯ୍ୟନ୍ତ ଦୁଃଖର ଅଭିଘାତ ହେଉଥିବ, ଅଥଚ ଦୁଃଖ ଜୀବର ଉପାଦେୟ ନୁହେଁ । ଏହା ହେୟ । ଅର୍ଥାତ୍ ଜୀବ ଦୁଃଖ ଗ୍ରହଣ କରନ୍ତି ନାହିଁ । ଦୁଃଖର ବିନାଶକୁ ହିଁ ଇଚ୍ଛା କରନ୍ତି । ଏ ସମ୍ବନ୍ଧରେ ଈଶ୍ୱରକୃଷ୍ଣ ଲେଖିଛନ୍ତି—

**ତତ୍ର ଜରାମରଣକୃତଂ ଦୁଃଖଂ ପ୍ରାପ୍ନୋତି ଚେତନଃ ପୁରୁଷଃ ।**
**ଲିଙ୍ଗସ୍ୟାଽବିନିବୃତ୍ତେ ସ୍ତସ୍ମାଦ୍ଦୁଃଖଂ ସ୍ୱଭାବେନ ॥** ସାଂଖ୍ୟକାରିକା—୫୫

ଅର୍ଥାତ୍ ଜୀବ ଯେତେ ଦିନ ଶରୀର ଧାରଣ କରେ, ସେତେ ଦିନ ତାହାକୁ ଜରାମରଣ-ରୂପକ ଦୁଃଖ ଭୋଗ କରିବାକୁ ହୁଏ । ଅତଏବ ଦୁଃଖଭୋଗ ଜୀବର ସ୍ୱାଭାବିକ ଧର୍ମ । †

ଜଗତରେ ସୁଖ ଆଦୌ ନାହିଁ—ଏହା କୁହାଯାଇ ନ ପାରେ; କିନ୍ତୁ ଏପରି ଆପେକ୍ଷିକ ସୁଖ କୌଣସି ଲୋକର ଭାଗ୍ୟରେ ସମ୍ଭବ ହୋଇପାରେ । ତାହା ପୁଣି ଦୁଃଖସଂଭିନ୍ନ ଓ କ୍ଷଣସ୍ଥାୟୀ । ଅତଏବ ତାହା ମଧ୍ୟ ଏକପ୍ରକାର ଦୁଃଖ । ସୂତ୍ରକାର କହିଛନ୍ତି—"କୁତ୍ରାପି କୋଽପି ସୁଖୀତି । ତଦପି ଦୁଃଖଶବଳମ୍ । ଇତି ଦୁଃଖପକ୍ଷେ ନିକ୍ଷିପ୍ୟନ୍ତେ ବିବେଚନାଃ ।
ସାଂଖ୍ୟସୂତ୍ର ୭ । ୭—୮ ।

ଏହି ତ୍ରିବିଧ ଦୁଃଖର ନିବୃତ୍ତି ସମସ୍ତଙ୍କ ଅଭିପ୍ରେତ । ସାମୟିକ ନିବୃତ୍ତି ଲାଭଦାୟକ ନୁହେଁ । ଅତଏବ ଦୁଃଖ ନିବୃତ୍ତି ଐକାନ୍ତିକ ଓ ଆତ୍ୟନ୍ତିକ ହେବା ଆବଶ୍ୟକ । ଏହା ହିଁ ଜୀବର ପୁରୁଷାର୍ଥ ।

## ୦—ଦୁଃଖମୟ କର୍ମରୁ ମୁକ୍ତିନିମନ୍ତେ ସାଂଖ୍ୟବାଦୀଙ୍କ ମତ—
**ଅଥ ତ୍ରିବିଧଦୁଃଖାତ୍ୟନ୍ତନିବୃତ୍ତି ରତ୍ୟନ୍ତପୁରୁଷାର୍ଥଃ ।**
ସାଂଖ୍ୟସୂତ୍ର । ୧ । ୧ ।

କିନ୍ତୁ ଏହି ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତି କିପରି ସାଧିତ ହେବ ? ଲୌକିକ ଉପାୟରେ ଏହା ସମ୍ଭବ ନୁହେଁ । ଔଷଧସେବନରେ ଶାରୀରିକ ଦୁଃଖର, ବା ଇଷ୍ଟସାଧନରେ ମାନସିକ ଦୁଃଖର ଯେଉଁ ନିବୃତ୍ତି ଘଟେ ତାହା ସାମୟିକ; ସ୍ଥାୟୀ ନୁହେଁ । ସେ ସବୁ ଉପାୟ

---

† ସମାନଂ ଜରାମରଣାଦିଜଂ ଦୁଃଖଂ ସାଧାରଣମ୍ । ସାଂ: ସୂ: ୩।୫୩ । ଊର୍ଦ୍ଧ୍ୱାଧୋଗତାନାଂ ବ୍ରହ୍ମାଦି ସ୍ଥାବରାନ୍ତାନାଂ ସର୍ବେଷାମେବ ଜରାମରଣାଦିଦୁଃଖଂ ସାଧାରଣମ୍ । —ବିଜ୍ଞାନଭିକ୍ଷୁ । ଗୀତାରେ ମଧ୍ୟ ଉକ୍ତ ଅଛି—ସଂସାର ଦୁଃଖର ଆଳୟ ଓ କ୍ଷଣଭଙ୍ଗୁର ।—"ପୁନର୍ଜନ୍ମ ଦୁଃଖାଳୟମଶାଶ୍ୱତମ୍" । ୮-୧୫ । ଆହୁରି ମଧ୍ୟ—ଅନିତ୍ୟମସୁଖଂ ଲୋକଂ ଇମଂ ପ୍ରାପ୍ୟ ଭଜସ୍ୱ ମାମ୍—୯-୩୩ । ଅର୍ଥାତ୍ ଏହି ଅନିତ୍ୟ ଓ ଅସୁଖ ସଂସାରକୁ ଆସି ପରମାତ୍ମାଙ୍କୁ ଭଜନ କର ।

ମଧ୍ୟ ଅବ୍ୟଭିଚାରୀ ବା ନିଶ୍ଚିତ ନୁହେଁ । ଅତଏବ ଲୌକିକ ଉପାୟରେ ଦୁଃଖନିବୃତ୍ତି ଦୁରାଶା ମାତ୍ର । ବୈଦିକ ଯାଗାଦିକର୍ମାନୁଷ୍ଠାନଦ୍ୱାରା ଦୁଃଖନିବୃତ୍ତ ହୋଇ ଜୀବ ସୁଖଧାମ ସ୍ୱର୍ଗଲାଭ କରେ, ସତ; କିନ୍ତୁ ଏହି ଉପାୟ ମଧ୍ୟ ଆତ୍ୟନ୍ତିକ ଦୁଃଖନିବୃତ୍ତିର କାରଣ ନୁହେଁ । କାରଣ, ଏହା ବିବିଧ-ଦୋଷଦୁଷ୍ଟ । କର୍ମର ତାରତମ୍ୟ ଅନୁସାରେ ଅର୍ଜିତ ସ୍ୱର୍ଗଲୋକର ମଧ୍ୟ ତାରତମ୍ୟ ଘଟେ । ଫଳରେ କେହି ଉଚ୍ଚତର, କେହି ନିମ୍ନତର ସ୍ୱର୍ଗର ଅଧିକାରୀ ହୁଏ । ଏହିପରି ପରସ୍ପରର ଉତ୍କର୍ଷ-ଅପକର୍ଷର ଭେଦଦର୍ଶନରେ ସ୍ୱର୍ଗବାସୀର ମଧ୍ୟ ଦୁଃଖାନୁଭବ ଅପରିହାର୍ଯ୍ୟ । ଦ୍ୱିତୀୟତଃ, ଯଜ୍ଞ-ସାଧନରେ ଯାଜ୍ଞିକଙ୍କୁ ଅବଶ୍ୟ ଜୀବହିଂସା କରିବାକୁ ହୁଏ; ହିଂସାବହୁଳ ଯଜ୍ଞାନୁଷ୍ଠାନରେ ପୁଣ୍ୟ ଥିଲେ ମଧ୍ୟ ପାପର ସ୍ପର୍ଶ ଅପରିହାର୍ଯ୍ୟ । ସେହି ପାପଫଳରେ ଦୁଃଖଭୋଗ ଅନିବାର୍ଯ୍ୟ । ବୈଦିକ ଉପାୟରେ ଯଜ୍ଞଫଳ ସ୍ୱର୍ଗାଦି ଲାଭ ଯାହା ହୁଏ, ତାହାର ଫଳ ସ୍ଥାୟୀ ହୁଏ ନାହିଁ । ପୁଣ୍ୟଫଳ ଭୋଗ କରିବା ପରେ କର୍ମୀର ପତନ ଅବଶ୍ୟମ୍ଭାବୀ । ଅତଏବ କର୍ମୀକୁ ପୁଣି ଦୁଃଖମୟ ସଂସାରକୁ ଫେରି ଆସିବାକୁ ପଡ଼େ । ଅତଏବ, ସାଂଖ୍ୟାଚାର୍ଯ୍ୟମାନେ କହନ୍ତି ଯେ, ଦୁଃଖନିବୃତ୍ତିନିମନ୍ତେ ଲୌକିକ ଉପାୟ ଭଳି ବୈଦିକ ଉପାୟ ମଧ୍ୟ ଯଥେଷ୍ଟ ନୁହେଁ । * ଦୁଃଖନାଶର ଉପାୟ ନିର୍ଦ୍ଧାରଣ ନିମନ୍ତେ ସାଂଖ୍ୟଦର୍ଶନର ପ୍ରବର୍ତ୍ତନା । †

---

* ଦୁଃଖତ୍ରୟାଭିଘାତାଜ୍ଜିଜ୍ଞାସା ତଦପଘାତକେ ହେତୌ । ଦୃଷ୍ଟେ ସାଽପାର୍ଥା ଚେନ୍ନୈକା-ନ୍ତାତ୍ୟନ୍ତତୋଽଭାବାତ୍ । ସାଂଖ୍ୟକାରିକା, ୧—"ଦୃଷ୍ଟବଦାନୁଶ୍ରବିକଃ ସ ହ୍ୟବିଶୁଦ୍ଧି-କ୍ଷୟାତିଶୟଯୁକ୍ତଃ"। ତତ୍ରୈବ ୨—"ନ ଦୃଷ୍ଟାତ୍ ତତ୍ସିଦ୍ଧିର୍ନିବୃତ୍ତେଽପ୍ୟନୁବୃତ୍ତିଦର୍ଶନାତ୍— "ସାଂଖ୍ୟସୂତ୍ର ୧।୨—"ଉତ୍କର୍ଷାଦପି ମୋକ୍ଷସ୍ୟ ସର୍ବୋତ୍କର୍ଷଶ୍ରୁତେଃ—ତତ୍ରୈବ—୫ । "ଅବିଶେଷଶ୍ଚୋଭୟୋଃ"—ତତ୍ରୈବ—୬ ।

† ସାଂଖ୍ୟବାଦର ଲକ୍ଷ୍ୟ—ଆତ୍ମସ୍ୱରୂପପ୍ରତିଷ୍ଠା ଲାଭକରି ଜନ୍ମଜରାମରଣଦୁଃଖରୁ ଚିରଦିନପାଇଁ ବିମୁକ୍ତ ରହିବା । ମହର୍ଷି କପିଳ ନିଜ ଗ୍ରନ୍ଥରେ ସେହି କଥା ପ୍ରତିପାଦନ କରିଛନ୍ତି— "ତଦ୍ୱ୍ୟୁଚ୍ଛିତ୍ତିଃ ପୁରୁଷାର୍ଥଃ ତଦ୍ୱ୍ୟୁଚ୍ଛିତ୍ତିଃ ପୁରୁଷାର୍ଥଃ ।" ଯେ କୌଣସି ଉପାୟରେ ପ୍ରାକୃତିକ ସମ୍ବନ୍ଧକୁ ଉଚ୍ଛେଦ କରିବା ହିଁ ପରମ ପୁରୁଷାର୍ଥ । ସାରକଥା ଏହି ଯେ, ଜଡ଼ସମ୍ବନ୍ଧରହିତ, ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧାଦିରେ ନିର୍ଲିପ୍ତ ହେଲେ ଅସଙ୍ଗଚିତ୍ସ୍ୱରୂପ ଆତ୍ମସ୍ୱରୂପ ପ୍ରତିଷ୍ଠା ହୁଏ ଓ ସେତେବେଳେ ଆଉ କୌଣସି ପ୍ରକାର ସୁଖଦୁଃଖାଦିର ତରଙ୍ଗାଘାତରେ ଜୀବ ଉତ୍ପୀଡ଼ିତ ହୁଏ ନାହିଁ । ଏହା ହିଁ ସାଂଖ୍ୟମତରେ ସର୍ବଦୁଃଖବିମୋଚନାତ୍ମକ କୈବଲ୍ୟ । ଏହି ପରମ ପୁରୁଷାର୍ଥପ୍ରତ୍ୟୟ ଉତ୍ପାଦନନିମନ୍ତେ କର୍ମଜୀବନରେ ଆତ୍ମା ଓ ଜଗତ୍ ବସ୍ତୁଦ୍ୱୟର ଯଥାର୍ଥ ସ୍ୱରୂପ ଅନ୍ୱେଷଣ କରିବାକୁ ହେବ । ଆତ୍ମା ଓ ପ୍ରକୃତି (ଜଗଦ୍ଭାବାପନ୍ନ) ଏତଦୁଭୟର ପ୍ରକୃତ ତଥ୍ୟ ଅନୁସନ୍ଧାନପୂର୍ବକ ପୁନଃ ପୁନଃ ବୁଦ୍ଧ୍ୟାରୋହ କରିବାର ନାମ ତତ୍ତ୍ୱାଭ୍ୟାସ । ଏହିପରି ବିବେକ ଓ ଜ୍ଞାନଦ୍ୱାରା ବୈରାଗ୍ୟସମ୍ପନ୍ନ ହୋଇ ଶ୍ରଦ୍ଧା ଭକ୍ତିଦ୍ୱାରା ଦୀର୍ଘକାଳବ୍ୟାପୀ ତତ୍ତ୍ୱାଭ୍ୟାସ କଲେ ପ୍ରକୃତିବିଲକ୍ଷଣ ପୁରୁଷାର୍ଥ ଲାଭ କରେ ।

ସାଂଖ୍ୟଦର୍ଶନ ମତରେ ଦୁଃଖନିବୃତ୍ତିର ପ୍ରକୃଷ୍ଟ ଉପାୟ ଜ୍ଞାନ । ପ୍ରକୃତି ଓ ପୁରୁଷର ବିବେକ ବା ପାର୍ଥକ୍ୟ ଜ୍ଞାନ । *

**ତଚ୍ଚ (କୈବଲ୍ୟଂ) ସତ୍ତ୍ୱପୁରୁଷାନ୍ୟତାଖ୍ୟାତିନିବନ୍ଧନମ୍ ।**

ତତ୍ତ୍ୱକୌମୁଦୀ, । ୬୧ ।

ଈଶ୍ୱରକୃଷ୍ଣ କହିଛନ୍ତି—

**ତଦ୍‌ବିପରୀତଃ ଶ୍ରେୟାନ୍ ବ୍ୟକ୍ତାବ୍ୟକ୍ତଜ୍ଞବିଜ୍ଞାନାତ୍—**

ସାଂଖ୍ୟକାରିକା ୨—

ଅର୍ଥାତ୍ ପ୍ରକୃତି-ପୁରୁଷର ଭେଦସାକ୍ଷାତ୍କାର ହିଁ ଶ୍ରେଷ୍ଠ ଉପାୟ । ଏହା ବ୍ୟକ୍ତ (ବିକୃତି), ଅବ୍ୟକ୍ତ (ପ୍ରକୃତି) ଓ ଜ୍ଞ (ପୁରୁଷ)—ଏହି ତିନୋଟିର ବିଶେଷଜ୍ଞାନରୁ ଉତ୍ପନ୍ନ ହୁଏ, ଏବଂ

**ତତ୍ତ୍ୱାଭ୍ୟାସାନ୍ନାଽସ୍ମି ନ ମେ ନାଽହମିତ୍ୟପରିଶେଷମ୍**
**ଅବିପର୍ଯ୍ୟୟାଦ୍ୱିଶୁଦ୍ଧଂ କେବଳମୁତ୍ପଦ୍ୟତେ ଜ୍ଞାନମ୍ ।**

ସାଂଖ୍ୟକାରିକା । ୬୪ ।

ଏହିପରି ତତ୍ତ୍ୱର ପୁନଃ ପୁନଃ ଚର୍ଚ୍ଚା କଲେ ସଂଶୟ ଓ ଭ୍ରମରହିତ, ବିଶୁଦ୍ଧ, ବିମଳ ନିଃଶେଷଜ୍ଞାନ ଉତ୍ପନ୍ନ ହୁଏ । ଫଳତଃ ଜୀବ ଜୀବନ୍ମୁକ୍ତିର ଅଧିକାରୀ ହୋଇ ପ୍ରାରବ୍ଧ କର୍ମର କ୍ଷୟପର୍ଯ୍ୟନ୍ତ ଦେହଧାରଣ କରିଥାଏ । ସେ ଅବସ୍ଥାରେ ଜୀବ ବୁଝିପାରେ ଯେ, ମୁଁ କର୍ତ୍ତା ନୁହେଁ, ଭୋକ୍ତା ନୁହେଁ, ମୋର କୌଣସି ବ୍ୟାପାର ମଧ୍ୟ ନାହିଁ । ସେପରି ନିର୍ମମ ଓ ନିରହଂକାର ବ୍ୟକ୍ତିପକ୍ଷରେ ଧର୍ମାଧର୍ମର ବୀଜଭାବ ନଷ୍ଟ ହୋଇଯାଏ, ଅର୍ଥାତ୍ ଧର୍ମାଧର୍ମ ଓ ଜନ୍ମାଦିରୂପ ଫଳ ଉତ୍ପନ୍ନ କରିବାକୁ ସମର୍ଥ ହୋଇପାରେ ନାହିଁ ।

* ପତଞ୍ଜଳି ଯୋଗସୂତ୍ରରେ ଏହି କଥା ଅନୁମୋଦନ କରିଛନ୍ତି । "ବିବେକଖ୍ୟାତିରବିପ୍ଲବା ହାନୋପାୟଃ" (ସାଧନପାଦ-୨୬) । ବିବେକଖ୍ୟାତିଃ = ସତ୍ତ୍ୱପୁରୁଷାନ୍ୟତାପ୍ରତ୍ୟୟଃ ; ଅର୍ଥାତ୍ ପ୍ରକୃତି ଓ ପୁରୁଷର ପାର୍ଥକ୍ୟଜ୍ଞାନ । ଏହି ଜ୍ଞାନ ଚିତ୍ତରେ ବଦ୍ଧମୂଳ ହେଲେ ଦୁଃଖନିବୃତ୍ତିର ଉପାୟ ପରିଲକ୍ଷିତ ହୁଏ । ଗୀତାରେ ଭଗବାନ୍ ଏହି ପ୍ରକୃତିପୁରୁଷର ପାର୍ଥକ୍ୟଜ୍ଞାନକୁ ପ୍ରଶଂସା କରି କହିଛନ୍ତି—"କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ ଯତ୍ତଜ୍ଜ୍ଞାନଂ ମତଂ ମମ" ଗୀତା ୧୩-୩ । କ୍ଷେତ୍ର ଓ କ୍ଷେତ୍ରଜ୍ଞ, ଅର୍ଥାତ୍ ପ୍ରକୃତି-ପୁରୁଷର ଯେଉଁ ପାର୍ଥକ୍ୟଜ୍ଞାନ, ତାହାହିଁ ମୋ ମତରେ ଶ୍ରେଷ୍ଠ ଜ୍ଞାନ । "କ୍ଷେତ୍ରକ୍ଷେତ୍ରଜ୍ଞୟୋରେବମନ୍ତରଂ ଜ୍ଞାନଚକ୍ଷୁଷା ଭୂତପ୍ରକୃତିମୋକ୍ଷଞ୍ଚ ଯେ ବିଦୁର୍ଯାନ୍ତି ତେ ପରମ୍" ଗୀତା ୧୩-୩୪ । ଯେଉଁମାନେ ଜ୍ଞାନଚକ୍ଷୁଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞର ଭେଦ ଏବଂ ଭୂତସମୂହର ପ୍ରକୃତି ଓ ମୋକ୍ଷ ଦେଖିପାରନ୍ତି, ସେମାନେ ପରମପଦ ପ୍ରାପ୍ତ ହୁଅନ୍ତି ।

ବାଚସ୍ପତି ମିଶ୍ର କହିଛନ୍ତି—

**କ୍ଲେଶସଲିଳାବସିକ୍ତାୟାଂ ହି ବୁଦ୍ଧିଭୂମୌ କର୍ମବୀଜାନ୍ୟଙ୍କୁରଂ ପ୍ରସୁବତେ, ତତ୍ତ୍ୱଜ୍ଞାନନିଦାଘନିପୀତସକଳସଲିଳାୟାମୁଷରାୟାଂ କୁତଃ କର୍ମ ବୀଜାନାମଙ୍କୁରପ୍ରସବଃ ।**

ଅର୍ଥାତ୍ ଜଳସିକ୍ତ କ୍ଷେତ୍ରରେ କେବଳ ବୀଜ ଅଙ୍କୁରିତ ହୁଏ, ପ୍ରଖର ସୂର୍ଯ୍ୟକିରଣରେ ଯଦି କୌଣସି କ୍ଷେତ୍ରର ସମସ୍ତ ଜଳ ପରିଶୁଷ୍କ ହୋଇଯାଏ, ତେବେ ସେ ଊଷର ଭୂମିରେ କ'ଣ ଅଙ୍କୁରୋଦ୍‌ଗମ ହୋଇପାରେ ? ଅଜ୍ଞାନସିକ୍ତ ବୁଦ୍ଧିରେ ହିଁ ସଞ୍ଚିତ କର୍ମ ଫଳୋତ୍ପାଦନରେ ସକ୍ଷମ ହୁଏ, କିନ୍ତୁ ଯେଉଁ ସମୟରେ ତତ୍ତ୍ୱଜ୍ଞାନ ସମସ୍ତ ଅବିବେକକୁ ଅପନୀତ କରି ତାହାକୁ ଊଷର କରିଦିଏ, ସେତେବେଳେ ସେ କ୍ଷେତ୍ରରେ କର୍ମବୀଜ କିପରି ଅଙ୍କୁରିତ ହେବ ? ଏହିପରି ବିବେକୀକୁ ଲକ୍ଷ୍ୟ କରି କାରିକାରେ ଉକ୍ତ ହୋଇଅଛି—

**"ପ୍ରାପ୍ତେ ଶରୀରଭେଦେ ଚରିତାର୍ଥତ୍ୱାତ୍ ପ୍ରଧାନବିନିବୃତ୍ତୌ,**
**ଐକାନ୍ତିକମାତ୍ୟନ୍ତିକମୁଭୟଂ କୈବଲ୍ୟମାପ୍ନୋତି ।** ସାଂଖ୍ୟକାରିକା—୬୮

ବିବେକୀ ତତ୍ତ୍ୱଜ୍ଞର ଶରୀର ବିନଷ୍ଟ ହେଲେ ପ୍ରକୃତିର ପ୍ରବୃତ୍ତି ନିବୃତ୍ତ ହୋଇଯାଏ । ସେ ଐକାନ୍ତିକ ବା ଅବଶ୍ୟମ୍ଭାବୀ ଓ ଆତ୍ୟନ୍ତିକ (ଅବିନାଶୀ) କୈବଲ୍ୟ (ଦୁଃଖତ୍ରୟର ନିବୃତ୍ତି) ଲାଭ କରେ । ଏ ଅବସ୍ଥାରେ ସୁଖ ଓ ଦୁଃଖ ନିବୃତ୍ତ ହୁଏ—

**"ନୋଭୟଞ୍ଚ ତତ୍ତ୍ୱାଖ୍ୟାନେ"**—ସା: ସୂ ୧-୧୦୭—

ତତ୍ତ୍ୱସାକ୍ଷାତ୍କାର ହେଲେ ସୁଖ ଓ ଦୁଃଖ ଉଭୟ ରହେ ନାହିଁ ।

**୦—ସାଂଖ୍ୟମତରେ ପଞ୍ଚବିଂଶତିତତ୍ତ୍ୱ ଓ ପ୍ରକୃତିପୁରୁଷନିରୂପଣ—**

**ସତ୍ତ୍ୱରଜସ୍ତମସାଂ * ସାମ୍ୟାବସ୍ଥା ପ୍ରକୃତିଃ । ପ୍ରକୃତେର୍ମହାନ୍ ମହତୋଽହଂକାରଃ ଅହଂକାରାତ୍ ପଞ୍ଚତନ୍ମାତ୍ରାଣି ଉଭୟମିନ୍ଦ୍ରିୟଂ ତନ୍ମାତ୍ରେଭ୍ୟଃ ସ୍ଥୂଳଭୂତାନି ପୁରୁଷ ଇତି ପଞ୍ଚବିଂଶତିର୍ଗଣଃ ।** ସାଂଖ୍ୟସୂତ୍ର ୧-୬୮

* ସତ୍ତ୍ୱ, ତମଃ ଓ ରଜୋରୂପକ ଗୁଣତ୍ରୟ ନ୍ୟାୟବୈଶେଷିକାଦିସମ୍ମତ ଗୁଣ ନୁହେ । ସେମାନଙ୍କ ସମ୍ମତି ଅନୁସାରେ ଗୁଣ ଦ୍ରବ୍ୟାଶ୍ରିତ; କିନ୍ତୁ ସାଂଖ୍ୟମତରେ ଏହା ଦ୍ରବ୍ୟସ୍ଥାନୀୟ । ପଶୁବନ୍ଧନ ରଜ୍ଜୁକୁ ମଧ୍ୟ ଗୁଣ କୁହାଯାଏ, ଏହି ଗୁଣ ମଧ୍ୟ ପୁରୁଷପଶୁବନ୍ଧନର ଗୁଣସ୍ୱରୂପ । ସତ୍ତ୍ୱାଦି ପଦାର୍ଥତ୍ରୟର ସଂଜ୍ଞାଗୁଣ, ସତ୍ତ୍ୱାଦିର ସାମ୍ୟାବସ୍ଥାରେ, ଅର୍ଥାତ୍ ଯେତେବେଳେ ବୃଦ୍ଧି ବା ହ୍ରାସ ନ ଥାଏ ସେହି ସମୟରେ କୌଣସିପ୍ରକାର ବିକାର ନଥିବାରୁ ସତ୍ତ୍ୱାଦିଦ୍ୱାରା ସୃଷ୍ଟି ବା ପରିଣାମ ହୁଏ ନାହିଁ, କିନ୍ତୁ ଏମାନଙ୍କର ହ୍ରାସବୃଦ୍ଧିରୂପକ ଅବସ୍ଥାକୁ ନେଇ ସୃଷ୍ଟି ସାଧିତ ହୁଏ । ସତ୍ତ୍ୱାଦିଗୁଣମାନଙ୍କର ଅକାର୍ଯ୍ୟାବସ୍ଥା ବା ଅସୃଷ୍ଟ୍ୟାବସ୍ଥାକୁ ସାଂଖ୍ୟମତରେ ପ୍ରଧାନ ପ୍ରକୃତି ଓ ଜଗଦବୀଜ କୁହାଯାଏ ।

ସତ୍ତ୍ୱ, ରଜସ୍ ଓ ତମୋରୂପକ ଗୁଣତ୍ରୟର ସାମ୍ୟାବସ୍ଥା (ସମାନାବସ୍ଥା) ମୂଳପ୍ରକୃତି-ନାମରେ ପରିଚିତ । ତାହାର ବିକାର ମହତ୍ତତ୍ତ୍ୱ; ମହତ୍ତ୍ୱର ବିକାର ଅହଂକାର ତତ୍ତ୍ୱ, ଅହଙ୍କାରର ବିକାର ପଞ୍ଚତନ୍ମାତ୍ର ଓ ଏକାଦଶ ଇନ୍ଦ୍ରିୟ; ଏବଂ ପଞ୍ଚ ତନ୍ମାତ୍ରର ବିକାର ପଞ୍ଚ ମହାଭୂତ, ଏହା ସହିତ ପୁରୁଷ—ଏପରି ପଞ୍ଚବିଂଶତି ତତ୍ତ୍ୱସମୂହ ସାଂଖ୍ୟଦର୍ଶନରେ ପ୍ରତିପାଦିତ । ତତ୍ତ୍ୱସମାସ ଭାଷାରେ କହିବାକୁ ଗଲେ ଅଷ୍ଟପ୍ରକୃତି, ଷୋଡ଼ଶ ବିକାର ଏବଂ ପୁରୁଷ—ଏ ସମସ୍ତ ମିଳି ପଞ୍ଚବିଂଶତି ତତ୍ତ୍ୱ ।

**"ଅଷ୍ଟୌ ପ୍ରକୃତୟଃ, ଷୋଡ଼ଶବିକାରାଃ ପୁରୁଷଶ୍ଚ"—**

ତତ୍ତ୍ୱସମାସ—୧ମ ଓ ୩ୟ ସୂତ୍ର ।

ଏହାର ବ୍ୟାଖ୍ୟା—ଅବ୍ୟକ୍ତଂ ବୁଦ୍ଧିରହଙ୍କାରଃ ପଞ୍ଚ ତନ୍ମାତ୍ରାଣି ଇତ୍ୟେତାଃ ଅଷ୍ଟୌ ପ୍ରକୃତୟଃ—ସୂତ୍ରବୃତ୍ତି । ଅର୍ଥାତ୍ ଅବ୍ୟକ୍ତ (ମୂଳପ୍ରକୃତି) ଓ ବୁଦ୍ଧି, ଅହଂକାର, ପଞ୍ଚତନ୍ମାତ୍ର—ଏହା ଅଷ୍ଟପ୍ରକୃତି । ମୂଳପ୍ରକୃତିକୁ କେବଳ ମୁଖ୍ୟଭାବରେ ପ୍ରକୃତି କୁହାଯାଏ । ବୁଦ୍ଧି, ଅହଂକାର ଓ ପଞ୍ଚତନ୍ମାତ୍ରକୁ ମଧ୍ୟ ଇନ୍ଦ୍ରିୟ ଓ ମହାଭୂତର ଉପାଦାନ ହେବାରୁ ଗୌଣଭାବରେ ପ୍ରକୃତି କୁହାଯାଏ ।

**ଏକାଦଶେନ୍ଦ୍ରିୟାଣି ପଞ୍ଚଭୂତାଣ୍ଚେତେ ଷୋଡ଼ଶବିକାରାଃ—ସୂତ୍ରବୃତ୍ତି ।**

ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ମନ—ଏହା ଏକାଦଶ ଇନ୍ଦ୍ରିୟ ଏବଂ କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ—ଏହା ପଞ୍ଚମହାଭୂତ; ଏମାନେ ମିଳି ଷୋଡ଼ଶ ବିକାର * । ଏମାନଙ୍କ ଊର୍ଦ୍ଧ୍ୱରେ ପୁରୁଷ (ପୁରୁଷ ପ୍ରକୃତି ନୁହେଁ କି ବିକୃତି ମଧ୍ୟ ନୁହେଁ) ଈଶ୍ୱରକୃଷ୍ଣ ମଧ୍ୟ ଏହି କଥା ବର୍ଣ୍ଣନା କରିଛନ୍ତି—

**ମୂଳପ୍ରକୃତିରବିକୃତିର୍ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ ।**
**ଷୋଡ଼ଶକସ୍ତୁ ବିକାରୋ ନ ପ୍ରକୃତିର୍ନବିକୃତିଃ ପୁରୁଷଃ ।।**

ସାଂଖ୍ୟକାରିକା—୩

---

* ଜ୍ଞାତ୍ୱାଷ୍ଟୌ ପ୍ରକୃତୟଃ ଷୋଡ଼ଶବିକାରାଃ ଶରୀରେ ତସ୍ୟୈବ ଦେହିନଃ ।

ଗର୍ଭୋପନିଷଦ୍-୪ ।

ଉପନିଷତ୍ ମଧ୍ୟ ଏହି ଦେହରେ ପ୍ରକୃତି, ମହତ୍ତତ୍ତ୍ୱ (ବୁଦ୍ଧି), ଅହଂକାର ଓ ପଞ୍ଚତନ୍ମାତ୍ର, ଏହି ଅଷ୍ଟ ପ୍ରକୃତି ଏବଂ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ସ୍ଥୂଳଭୂତ ଏବଂ ମନ—ଏହି ଷୋଡ଼ଶ ବିକୃତ ପଦାର୍ଥ ବିଦ୍ୟମାନ ଅଛନ୍ତି ବୋଲି ନିର୍ଦ୍ଦେଶ କରେ ।

ଏହି ପଞ୍ଚବିଂଶତି ତତ୍ତ୍ୱ ସମ୍ବନ୍ଧରେ କିଛି ଆଲୋଚନା କରିବା ଆବଶ୍ୟକ । ପ୍ରଥମତଃ ପ୍ରକୃତି—ପ୍ରକରୋତୀତି ପ୍ରକୃତିଃ—ଯେଉଁ ଉପାଦାନଦ୍ୱାରା ଜଗତ୍ ସୃଷ୍ଟି ହୋଇଛି—ତାହାର ନାମ ପ୍ରକୃତି । ସୂତ୍ରବୃତ୍ତିରେ ମଧ୍ୟ ଉକ୍ତ ଅଛି—

ସୂକ୍ଷ୍ମମଲିଙ୍ଗମନାଦ୍ୟନିଧନଂ ତଥା ପ୍ରସବଧର୍ମି ।
ନିରବୟବମେକମେବ ହି ସାଧାରଣମେତଦବ୍ୟକ୍ତମ୍ ।।

ପ୍ରକୃତିର ଗୋଟିଏ ନାମ ଅବ୍ୟକ୍ତ; ଅର୍ଥାତ୍ ସୃଷ୍ଟିପୂର୍ବରୁ ଜଗତ୍ ଅବ୍ୟକ୍ତ ଅବସ୍ଥାରେ ଥାଏ । ଅବ୍ୟକ୍ତର ବ୍ୟକ୍ତାବସ୍ଥା ହେଲେ ତାହାର ନାମ ସୃଷ୍ଟି । ଏ କଥା ଭଗବଦ୍‌ଗୀତାରେ ମଧ୍ୟ କୁହାଯାଇଛି—

ଅବ୍ୟକ୍ତାଦ୍ ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।
ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ । ୮-୧୮ ।

ଅର୍ଥାତ୍ ପ୍ରଳୟର ଅବସାନ ସମୟରେ ଅବ୍ୟକ୍ତ ପ୍ରକୃତିଠାରୁ ବ୍ୟକ୍ତ ଜଗତର ଆବିର୍ଭାବ ହୁଏ ଏବଂ ସୃଷ୍ଟିର ଅବସାନରେ ବ୍ୟକ୍ତଜଗତ୍ ଅବ୍ୟକ୍ତ ପ୍ରକୃତିରେ ତିରୋହିତ ହୁଏ ।" ତତ୍ତ୍ୱସମାସରେ ଏହି ଅନୁଲୋମକ୍ରମରେ ଆବିର୍ଭାବକୁ ସଞ୍ଚର ଓ ବିଲୋମକ୍ରମରେ ତିରୋଧାନକୁ ପ୍ରତିସଞ୍ଚର କୁହାଯାଇଛି । ସୃଷ୍ଟିର କ୍ରମ ଏହିପରି—ପ୍ରକୃତିରୁ ମହତ୍ତତ୍ତ୍ୱ, ମହତ୍ତତ୍ତ୍ୱରୁ ଅହଙ୍କାରତତ୍ତ୍ୱ; ଅହଙ୍କାରତତ୍ତ୍ୱରୁ ପଞ୍ଚତନ୍ମାତ୍ର ଓ ଏକାଦଶ ଇନ୍ଦ୍ରିୟ ଏବଂ ପଞ୍ଚତନ୍ମାତ୍ରରୁ ପଞ୍ଚମହାଭୂତର ଆବିର୍ଭାବ ହୁଏ । ପ୍ରଳୟର କ୍ରମ ଏହାର ବିପରୀତ—ପ୍ରଥମେ ପଞ୍ଚମହାଭୂତ ଓ ଏକାଦଶେନ୍ଦ୍ରିୟ ପଞ୍ଚତନ୍ମାତ୍ରରେ ବିଲୀନ ହୁଅନ୍ତି; ପରେ ପଞ୍ଚତନ୍ମାତ୍ର ଅହଂକାର ତତ୍ତ୍ୱରେ ବିଲୀନ ହୁଏ; ଏବଂ ଅହଂକାରତତ୍ତ୍ୱ ମହତ୍ତତ୍ତ୍ୱରେ ଓ ମହତ୍ତତ୍ତ୍ୱ ପ୍ରକୃତିରେ ବିଲୀନ ହୁଏ ।

ଠ—ସାଂଖ୍ୟମତରେ ପ୍ରକୃତି ଓ ପୁରୁଷ ନିତ୍ୟ—

"ପ୍ରକୃତିପୁରୁଷୟୋରନ୍ୟତ୍ ସର୍ବମନିତ୍ୟମ୍ । ସାଂଖ୍ୟସୂତ୍ର—୫-୭୨ ।

"ପ୍ରକୃତିପୁରୁଷ କେବଳ ନିତ୍ୟ, ଆଉ ସମସ୍ତ ଅନିତ୍ୟ" । ବିଜ୍ଞାନଭିକ୍ଷୁ ଏହା ସମର୍ଥନ କରି କହିଛନ୍ତି—

ଅବ୍ୟକ୍ତଂ କାରଣଂ ଯତ୍ତନ୍ନିତ୍ୟଂ ସଦସଦାତ୍ମିକମ୍ ।
ପ୍ରଧାନଂ ପ୍ରକୃତିଶ୍ଚେତି ଯଦାହୁସ୍ତତ୍ତ୍ୱଚିନ୍ତକାଃ ।।

ଅର୍ଥାତ୍ ଜଗତର ଅବ୍ୟକ୍ତ କାରଣ ନିତ୍ୟ ଓ ସତ୍ ଏବଂ ଅସତ୍ (କାରଣ, ତାହା ଅନାଦି ଓ ଅନନ୍ତ ହୋଇ ମଧ୍ୟ ବିକାରଶୀଳ) । ତତ୍ତ୍ୱଜ୍ଞମାନେ ତାହାକୁ ପ୍ରଧାନ ଓ ପ୍ରକୃତି ଆଖ୍ୟା ଦେଇଛନ୍ତି । ଗୀତାରେ ମଧ୍ୟ କଥିତ ଅଛି—

**ପ୍ରକୃତିଂ ପୁରୁଷଞ୍ଚୈବ ବିଦ୍ଧ୍ୟନାଦୀ ଉଭାବପି ।**
**ବିକାରାଂଶ୍ଚ ଗୁଣାଂଶ୍ଚୈବ ବିଦ୍ଧି ପ୍ରକୃତିସମ୍ଭବାନ୍ ।**

ପ୍ରକୃତି ଓ ପୁରୁଷ— ଉଭୟ ଅନାଦି; ସମସ୍ତ ବିକାର ଓ ଗୁଣ ପ୍ରକୃତିରୁ ସମ୍ଭୂତ ହୋଇଛନ୍ତି, ଏ ସମ୍ବନ୍ଧରେ ସାଂଖ୍ୟପ୍ରବଚନ-ସୂତ୍ର-ବ୍ୟାଖ୍ୟାରେ ଦେଖାଯାଏ—

**ସ୍ଥୂଳାତ୍ ପଞ୍ଚତନ୍ମାତ୍ରସ୍ୟ ।** ୧।୬୨

କାର୍ଯ୍ୟଦ୍ୱାରା କାରଣ ଅନୁମିତ ହୁଏ । ଅତଏବ ସ୍ଥୂଳଭୂତର, ଅର୍ଥାତ୍ ଏହି ସକଳ ଦୃଶ୍ୟମାନ ପୃଥିବ୍ୟାଦିର କାରଣଭୂତ ପଞ୍ଚତନ୍ମାତ୍ରର (ସୂକ୍ଷ୍ମଭୂତର) ଅସ୍ତିତ୍ୱ କଳ୍ପିତ ହୁଏ ।

**ବାହ୍ୟାଭ୍ୟନ୍ତରାଭ୍ୟାଂ ତୈଶ୍ଚାହଂକାରସ୍ୟ** ସାଂ: ୧-୬୩ ।

ତନ୍ମାତ୍ର ଓ ଇନ୍ଦ୍ରିୟ (ଅର୍ଥାତ୍ ବହିରିନ୍ଦ୍ରିୟ ଓ ଅନ୍ତରିନ୍ଦ୍ରିୟ)—ଏହି ଉଭୟଦ୍ୱାରା ଉଭୟର କାରଣ—ଅହଂକାରତତ୍ତ୍ୱର ଅସ୍ତିତ୍ୱ ଅନୁମିତ ହୁଏ ।

**"ତେନାନ୍ତଃକରଣସ୍ୟ"** ସା: ୧-୬୪ ।

ଅହଂକାରଦ୍ୱାରା ତଦୀୟକାରଣ ଅନ୍ତଃକରଣର, ଅର୍ଥାତ୍ ମହତ୍ତତ୍ତ୍ୱନାମକ ବୁଦ୍ଧିଦ୍ରବ୍ୟର ଅସ୍ତିତ୍ୱ କଳ୍ପିତ ହୁଏ ।

**ତତଃ ପ୍ରକୃତେଃ ।** ସା: ୧-୬୫ ।

ମହତ୍ତତ୍ତ୍ୱଦ୍ୱାରା ମୂଳକାରଣ ପ୍ରକୃତିର ଅନୁମାନ କରାଯାଏ । ଅର୍ଥାତ୍ ଅନୁମାନଦ୍ୱାରା ପ୍ରକୃତି କ'ଣ ବୁଝିବାକୁ ହେବ ।

**ସଂହତପରାର୍ଥତ୍ୱାତ୍ ପୁରୁଷସ୍ୟ ।** ସାଂ ୧-୬୬ ।

ସଂଯୁକ୍ତ ଦୁଇ ବା ତତୋଽଧିକ ପଦାର୍ଥ—ସଂହତନାମରେ ଖ୍ୟାତ; ସାବୟବ ପଦାର୍ଥକୁ ସଂହତ କୁହାଯାଏ । ଜଗତରେ ଯାହା ସଂହତପଦାର୍ଥ, ତାହା ପରାର୍ଥ ବା ପୁରୁଷାର୍ଥ; ପୁରୁଷର

ଅର୍ଥ ଆତ୍ମା । ପରିଦୃଶ୍ୟମାନ ସକଳପଦାର୍ଥରେ ସତ୍ତ୍ୱ, ରଜ ଓ ତମୋଗୁଣ ମିଳିତ ଭାବରେ (ସଂହତ) ବିଦ୍ୟମାନ । ଅତଏବ ସକଳ ପଦାର୍ଥ ସଂହତ; କିନ୍ତୁ ପୁରୁଷ ବା ଆତ୍ମା ସେଥିରୁ ଭିନ୍ନ । ପ୍ରକୃତି ତାହାର ଭୋଗ୍ୟ ଓ ପୁରୁଷ ଭୋକ୍ତା । ପ୍ରକୃତି ପୁରୁଷର ଭୋଗନିମନ୍ତେ ବ୍ୟବସ୍ଥିତ ।

**ମୂଳେ ମୂଳାଭାବାଦମୂଳଂ ମୂଳମ୍ ।** ସାଃ ୧-୬୭ ।

ଯାହା ପ୍ରକୃତି ଓ ପୁରୁଷ ଛଡ଼ା ଅନ୍ୟାନ୍ୟ ତତ୍ତ୍ୱର ମୂଳ, ଅର୍ଥାତ୍ ଉପାଦାନ କାରଣ, ତାହା ପ୍ରକୃତିର ଅମୂଳ । ଅର୍ଥାତ୍ ପ୍ରକୃତିର ମୂଳନାହିଁ, ତାହା ଅନାଦି ଓ ନିତ୍ୟ ।

**ପାରମ୍ପର୍ଯ୍ୟେଽପ୍ୟେକତ୍ର ପରିନିଷ୍ଠେତି ସଂଜ୍ଞାମାତ୍ରମ୍**—ସାଃ ୧-୬୮ ।

ପଦାର୍ଥର ପରମ୍ପରାକ୍ରମରେ କାରଣ ନିରୂପଣ କରୁ କରୁ ଯେଉଁ ଶେଷ ପଦାର୍ଥରେ କାରଣକଳ୍ପନା ଶେଷ ହେବ, ସେହି ନିତ୍ୟପଦାର୍ଥର ନାମ ସାଂଖ୍ୟମତରେ ପ୍ରକୃତି । ମୂଳକାରଣର ନାମ ପ୍ରକୃତି, ଅର୍ଥାତ୍ ସକଳ ପଦାର୍ଥର ମୂଳକାରଣ ପ୍ରକୃତି ।

**ଠ—ସାଂଖ୍ୟମତରେ ପ୍ରକୃତି ସୃଷ୍ଟିର ମୂଳକାରଣ ।**

ସାଂଖ୍ୟଦର୍ଶନପ୍ରବର୍ତ୍ତକ କପିଳଙ୍କ ମତ-ଅନୁସାରେ ପ୍ରକୃତିର ନିୟନ୍ତା ଆଉ କେହି ନାହିଁ । ପ୍ରକୃତିରୁ ବିବିଧପଦାର୍ଥ ସୃଷ୍ଟ ହେଲେ ମଧ୍ୟ ପ୍ରକୃତିର ପ୍ରେରଣକର୍ତ୍ତା ଆଉ କେହି ନାହାଁ । ଯେପରି ରଥରୂପକ ଜଡ଼ବସ୍ତୁର ଚାଳନସକାଶେ ଚେତନାବାନ୍ ପୁରୁଷ କାରଣ, ଅଥବା ଯେପରି ସୁବର୍ଣ୍ଣରୂପକ ଜଡ଼ପଦାର୍ଥକୁ କୁଣ୍ଡଳାଦି ବିଭିନ୍ନାକାରରେ ପରିଣତ କରିବାସକାଶେ ସୁବର୍ଣ୍ଣକାର କର୍ତ୍ତା, ସେପରି ପ୍ରକୃତିର ଅବସ୍ଥା ନୁହେଁ । ପ୍ରକୃତି ଜାଗତିକ ବିବିଧ ପଦାର୍ଥରେ ପରିଣତ ହେବାସକାଶେ ନିଜେ ସ୍ୱାଧୀନ । ଅନାଦି ଅନନ୍ତପୁରୁଷ କେବଳ ତାହାର ଅଧିଷ୍ଠାତା ଓ ନିଜଶକ୍ତି କେବଳ ତାହାର ପରିଣାମ-ପ୍ରୟୋଜକ ।

**ତତ୍ ସନ୍ନିଧାନାତ୍ ଅଧିଷ୍ଠାତୃତ୍ୱଂ ମଣିବତ୍ ।** ସାଃ ୧-୯୬ ।

ଯେପରି ନିକଟସ୍ଥ ହେଲେ ଇଚ୍ଛାଦିଗୁଣଶୂନ୍ୟ ଓ ଜଡ଼ସ୍ୱଭାବ ଅୟସ୍କାନ୍ତମଣି ଲୌହଚାଳନସକାଶେ ସଚେତନ ଅଧିଷ୍ଠାତାପରି କାର୍ଯ୍ୟକାରୀ ହୁଏ, ସେପରି ସାନ୍ନିଧ୍ୟହେତୁ ନିର୍ଗୁଣ ଓ ନିଷ୍କ୍ରିୟ ଆତ୍ମା (ପୁରୁଷ) କେବଳ ପ୍ରକୃତିର ଅଧିଷ୍ଠାତା ବା ପ୍ରେରକରୂପରେ କାର୍ଯ୍ୟ ନିଷ୍ପନ୍ନ କରିବାକୁ କ୍ଷମ ହୁଏ । ଏହାର ବିଶଦାର୍ଥ ଏହିପରି—

ଲୌହ ଓ ଚୁମ୍ବକ ଉଭୟ ଜଡ଼ସ୍ୱଭାବ । ଇଚ୍ଛାଗୁଣଶୂନ୍ୟ ଓ ସ୍ୱୟଂବୃତ୍ତିରହିତ, କିନ୍ତୁ ପରସ୍ପର ସନ୍ନିହିତ ହେବାମାତ୍ରେ ପରସ୍ପର ଶରୀରରେ ବିଦ୍ୟା (ଲୌହଶରୀରରେ ଚଳନ ଓ

ଚୁମ୍ବକରେ ଆକର୍ଷଣଭାବ) ଉପସ୍ଥିତ ହୁଏ; ସେହିପରି ଆତ୍ମା ନିଷ୍କ୍ରିୟ ଓ ଇଚ୍ଛାଶୂନ୍ୟ, ପ୍ରକୃତି ଜଡ଼ ଓ ସ୍ୱତଃପ୍ରବୃତ୍ତିରହିତ ହେଲେ ମଧ୍ୟ ସନ୍ନିଧାନ ବଳରେ ପ୍ରକୃତି ଶରୀରରେ ପରିଣତି-ଶକ୍ତିର ଉଦୟ ହୁଏ । ପ୍ରକୃତି ଜଡ଼ସ୍ୱଭାବ ହେବାରୁ ତାହାର ପୁରୁଷସନ୍ନିଧାନରେ ପରିଣତି ଅନିୟମିତ ବୋଲି ଆଶଙ୍କା କରାଯାଇ ନ ପାରେ; କାରଣ, ପୁରୁଷ ସନ୍ନିଧାନରେ ପ୍ରକୃତିର ଯେଉଁ ପରିଣତି; ତାହା ସର୍ବଦା ନିୟମିତସ୍ୱଭାବ । ସେହି ନିୟମରେ ପ୍ରକୃତିଜାତ ପ୍ରତ୍ୟେକ ବସ୍ତୁ ନିୟମିତ ପରିଣାମାଧୀନ । ଉଦାହରଣସ୍ୱରୂପ, କୁହାଯାଇପାରେ ଯେ, ଦୁଗ୍ଧର ପରିଣାମ କେବଳ ଦଧି; କିନ୍ତୁ କର୍ଦ୍ଦମ ନୁହେଁ । ଚୂନସଂଯୁକ୍ତ ହରିଦ୍ରାର ବର୍ଣ୍ଣ ରକ୍ତବର୍ଣ୍ଣ, କୃଷ୍ଣବର୍ଣ୍ଣ କେବେହେଲେ ହୁଏ ନାହିଁ । ପ୍ରକୃତି ମଧ୍ୟ ନିୟମିତ ପ୍ରାକୃତିକ ପଦାର୍ଥରେ ପରିଣତ ହୁଏ—ଏ ବିଷୟରେ ବିଜ୍ଞାନ, ଜ୍ୟୋତିଷ ଓ ବୈଦ୍ୟଶାସ୍ତ୍ର ସାକ୍ଷୀ । ଆଚାର୍ଯ୍ୟ ଈଶ୍ୱରକୃଷ୍ଣ କହିଅଛନ୍ତି— "ସଲିଳବତ୍ ପ୍ରତିଗୁଣାଶ୍ରୟବିଶେଷାତ୍"—ଅର୍ଥାତ୍ ମେଘ-ନିର୍ମୁକ୍ତ ଜଳ ଏକ, ଅର୍ଥାତ୍ ଏକରୂପ ଓ ଏକରସ; କିନ୍ତୁ ସେହି ଜଳ ପୃଥିବୀର ବହୁ ବିଭିନ୍ନ ପଦାର୍ଥ ସହିତ ସଂସର୍ଗରେ ଆସିଲେ ତାହା ବିଭିନ୍ନ ରୂପ ଓ ଭିନ୍ନ ରସରେ ପରିଣତ ହୁଏ । ଏକ ହିଁ ଜଳ କାରଣବିଶେଷସଂସର୍ଗରେ, ଅର୍ଥାତ୍ ଭିନ୍ନ ଭିନ୍ନ ଫଳ ବା ବିଭିନ୍ନ ବସ୍ତୁରେ କଟୁ, ତିକ୍ତ, ମଧୁର ଓ ଅମ୍ଳରସପ୍ରଭୃତି ବିଭିନ୍ନ ରସ ସୃଷ୍ଟି କରେ । ଏହିପରି ପ୍ରକୃତିନିଷ୍ଠ ବିଭିନ୍ନ ଗୁଣମାନଙ୍କ ମଧ୍ୟରୁ କୌଣସି ଗୁଣର ଅଭିଭବ ବା ନ୍ୟୂନଭାବ ଓ ଅନ୍ୟ କୌଣସି ଗୁଣର ବୃଦ୍ଧି ବା ପ୍ରାବଲ୍ୟ ହେତୁରୁ ପ୍ରବୃଦ୍ଧ ଗୁଣସାହଚର୍ଯ୍ୟରୁ ଜାତ ପ୍ରବଳ ରସ ସହଯୋଗରେ ଦୁର୍ବଳ ଗୁଣ ବିକୃତ ହୁଏ । ଅତଏବ ପ୍ରକୃତିର ନିୟମିତ ପରିଣାମ ନିମନ୍ତେ ପ୍ରକୃତିର ସ୍ୱଶକ୍ତି ଓ ସ୍ୱତଃସିଦ୍ଧସ୍ୱଭାବ କେବଳ ପ୍ରେରକ; ତଦ୍‌ଭିନ୍ନ ଅନ୍ୟ କେହି ପ୍ରେରକ ଅଭିମତ ହେବା କଳ୍ପନାଯୋଗ୍ୟ ନୁହେଁ । ଏହା କେବଳ କପିଳମହର୍ଷିଙ୍କର ସୃଷ୍ଟି ତତ୍ତ୍ୱସମ୍ବନ୍ଧରେ ଏ ବିଷୟରେ ସାଂଖ୍ୟକାରିକାରେ ଏପରି ଉଲ୍ଲିଖିତ ଅଛି—

ବତ୍ସବିବୃଦ୍ଧିନିମିତ୍ତଂ କ୍ଷୀରସ୍ୟ ଯଥା ପ୍ରବୃତ୍ତିରଜ୍ଞସ୍ୟ ।
ପୁରୁଷବିମୋକ୍ଷନିମିତ୍ତଂ ତଥା ପ୍ରବୃତ୍ତିଃ ପ୍ରଧାନସ୍ୟ ।

। ସାଂ କାଃ ୫୭ ।

ଅର୍ଥାତ୍ ବତ୍ସର ପୁଷ୍ଟି ନିମନ୍ତେ ଯେପରି ଅଚେତନ ଦୁଗ୍ଧର ପ୍ରବୃତ୍ତି ହୁଏ, ସେପରି ପୁରୁଷର ମୁକ୍ତିନିମନ୍ତେ ଅଚେତନ ପ୍ରକୃତିର ପ୍ରବୃତ୍ତି ହୋଇଥାଏ ।

ଏଥି ପୂର୍ବରୁ ମହତ୍ତତ୍ତ୍ୱ, ଅହଂକାରତତ୍ତ୍ୱ ଓ ପଞ୍ଚତନ୍ମାତ୍ରବିଷୟରେ ବ୍ୟାଖ୍ୟା କରାଯାଇଛି । ବର୍ତ୍ତମାନ ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ସ୍ଥୂଳଭୂତବିଷୟରେ କିଛି ବିବରଣ ଦେବା ଆବଶ୍ୟକ । ସାଂଖ୍ୟଦର୍ଶନମତରେ ଅହଙ୍କାରତତ୍ତ୍ୱର ବିକୃତି-ଅବସ୍ଥାରେ ତମୋଗୁଣ ପ୍ରବଳ ହେଲେ ପଞ୍ଚତନ୍ମାତ୍ର ଓ ସତ୍ତ୍ୱଗୁଣର ପ୍ରାବଲ୍ୟରେ ଏକାଦଶ ଇନ୍ଦ୍ରିୟ ଉତ୍ପନ୍ନ ହୁଅନ୍ତି ।

"ସାତ୍ତ୍ୱିକ ଏକାଦଶକଃ ପ୍ରବର୍ତ୍ତତେ ବୈକୃତାଦହଙ୍କାରାତ୍"
ସାଂ: କା: ୨୫ ।

ଏକାଦଶ ଇନ୍ଦ୍ରିୟ, ଅର୍ଥାତ୍ ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ (ଜ୍ଞାନେନ୍ଦ୍ରିୟ), ହସ୍ତ, ପାଦ, ବାକ୍, ପାୟୁ ଓ ଉପସ୍ଥ (କର୍ମେନ୍ଦ୍ରିୟ) ଏବଂ ମନ । ଏଥିରୁ ମନ ଜ୍ଞାନ ଓ କର୍ମରୂପ ଉଭୟାତ୍ମକ ଇନ୍ଦ୍ରିୟ । ତନ୍ମାତ୍ର ସୂକ୍ଷ୍ମଭୂତ ସ୍ଥୂଳଭୂତର ଅଭିନ୍ନାବସ୍ଥା । ପଞ୍ଚତନ୍ମାତ୍ର—ଶବ୍ଦତନ୍ମାତ୍ର, ସ୍ପର୍ଶତନ୍ମାତ୍ର, ରୂପତନ୍ମାତ୍ର, ରସତନ୍ମାତ୍ର ଓ ଗନ୍ଧତନ୍ମାତ୍ର; ଏମାନେ ଯଥାକ୍ରମରେ ସ୍ଥୂଳଭୂତ, ଅର୍ଥାତ୍ ଆକାଶ, ଅଗ୍ନି, ବାୟୁ, ଅପ ଓ ପୃଥିବୀ ଉତ୍ପାଦନ କରନ୍ତି । ଏହି ସମସ୍ତ ସ୍ଥୂଳଭୂତ ସବିଶେଷ । ଏ ବିଷୟ ଉପନିଷଦ୍‌ରେ ମଧ୍ୟ ଉକ୍ତ ଅଛି—"ପୃଥୀ ଚ ପୃଥୀମାତ୍ରା ଚ" ପ୍ରଶ୍ନ ଉ : ୪-୮ ॥ ସ୍ଥୂଳ ଓ ସୂକ୍ଷ୍ମଭୂତର ନିର୍ଦ୍ଦେଶ ମଧ୍ୟ ସାଂଖ୍ୟସୂତ୍ରରେ କରାଯାଇଛି—

ଅବିଶେଷାଦ୍ ବିଶେଷାରମ୍ଭଃ । ସାଂଖ୍ୟସୂତ୍ର—୩।୧
ତନ୍ମାତ୍ରାଣ୍ୟବିଶେଷାସ୍ତେଭ୍ୟୋ ଭୂତାନି ପଞ୍ଚ ପଞ୍ଚଭ୍ୟଃ ।
ସାଂ: କା: ୩୮ ॥

ଏହି ପଞ୍ଚମହାଭୂତ ସ୍ଥୂଳ ବିଷୟରୂପରେ ଓ ଜୀବର ଶରୀରରୂପରେ ସମସ୍ତଙ୍କର ଉପଭୋଗ୍ୟ ହୁଅନ୍ତି । ଏମାନଙ୍କ ମଧ୍ୟରୁ କେହି ସୁଖକର, କେହି ଦୁଃଖକର, କେହି ବା ମୋହକର । ଏହିପରି ଅବସ୍ଥାରେ ଏମାନଙ୍କ ପାରିଭାଷିକ ନାମ—ଶାନ୍ତ, ଘୋର ଓ ମୂଢ଼ ।

## ୦—ସାଂଖ୍ୟମତରେ ଜଗତ୍ ତ୍ରିଗୁଣାତ୍ମକ

ଜଗତର ସକଳ ବସ୍ତୁ ଗୁଣତ୍ରୟର ସମବାୟରେ ଗଠିତ । ଗୀତାରେ ମଧ୍ୟ ଏ କଥା ଉକ୍ତ ଅଛି—

ନ ତଦସ୍ତି ପୃଥିବ୍ୟାଂ ବା ଦିବି ଦେବେଷୁ ବା ପୁନଃ ।
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ ଯଦେଭିଃ ସ୍ୟାତ୍ ତ୍ରିଭିର୍ଗୁଣୈଃ । ୧୮-୪୦ ।

ଅର୍ଥାତ୍ ପୃଥିବୀରେ ବା ସ୍ୱର୍ଗର ଦେବଗଣଙ୍କ ମଧ୍ୟରେ ଏପରି କୌଣସି ବସ୍ତୁ ନାହିଁ ଯାହା ପ୍ରକୃତିରୁ ଜାତ ଏହି ଗୁଣତ୍ରୟରୁ ମୁକ୍ତ ହୋଇପାରେ । ସାଂଖ୍ୟମତରେ ପ୍ରତ୍ୟେକ ପଦାର୍ଥ ତ୍ରିଗୁଣାତ୍ମକ ହେବାରୁ ଅବସ୍ଥାଭେଦରେ କେଉଁ ଦ୍ରବ୍ୟ କାହା ପ୍ରତି ସୁଖକର, କାହା ପ୍ରତି ଦୁଃଖକର ଓ ଅନ୍ୟ କାହା ପ୍ରତି ମୋହକର ମଧ୍ୟ ହେବା ସ୍ୱାଭାବିକ । ଦୃଷ୍ଟାନ୍ତଛଳରେ କୁହାଯାଇ ପାରେ ଯେ, ଜଣେ ସୁନ୍ଦରୀ ରମଣୀ ପ୍ରିୟଜନର ସୁଖକର, ସପତ୍ନୀର ଦୁଃଖକର ଓ ନିରାଶ

ପ୍ରେମିକର ମୋହକର ହେବା ଦେଖାଯାଏ । ଉପର୍ଯ୍ୟୁକ୍ତ ପ୍ରକୃତିଠାରୁ ଆରମ୍ଭ କରି ଚତୁର୍ବିଂଶତି ତତ୍ତ୍ୱସମୂହ ସାଂଖ୍ୟମତ ଅନୁସାରେ ବ୍ୟାଖ୍ୟା କରାଗଲା । ବର୍ତ୍ତମାନ ପଞ୍ଚବିଂଶତି-ତମ ତତ୍ତ୍ୱ, ଅର୍ଥାତ୍ ପୁରୁଷ ବିଷୟରେ ବିବରଣ ପ୍ରଦତ୍ତ କରାଯାଉଅଛି ।

ସାଂଖ୍ୟମତରେ ପ୍ରକୃତି ଓ ପୁରୁଷ ଉଭୟ ନିତ୍ୟ, ଅନାଦି, ଅପରିଚ୍ଛିନ୍ନ ଓ ନିଷ୍କ୍ରିୟ; ଉଭୟ ସ୍ୱତନ୍ତ୍ର । ଅଲିଙ୍ଗ ଓ ନିରବୟବ; କିନ୍ତୁ ଦୁହିଁଙ୍କ ମଧ୍ୟରେ ଭେଦ ହେଉଛି— ପ୍ରକୃତି ଜଡ଼ ଓ ପୁରୁଷ ଚେତନ । ପ୍ରକୃତି ପରିଣାମୀ ଓ ପୁରୁଷ ନିର୍ବିକାର; ପ୍ରକୃତି ଗୁଣମୟୀ, ଦୃଶ୍ୟ, ଭୋଗ୍ୟ ଓ ବିଷୟ; କିନ୍ତୁ ପୁରୁଷ ନିର୍ଗୁଣ (ଗୁଣାତୀତ), ଦ୍ରଷ୍ଟା, ଭୋକ୍ତା, ବିଷୟୀ— ଏପରି ପ୍ରକୃତିର ବିପରୀତ ଧର୍ମାବଲମ୍ବୀ । ପୁରୁଷ କୂଟସ୍ଥ (ସୁଖ ଦୁଃଖରୁ ଅତୀତ, ନିତ୍ୟ ଓ ମୁକ୍ତ) ଏବଂ ଅସଙ୍ଗ । "ଅସଙ୍ଗୋ ହ୍ୟୟଂ ପୁରୁଷଃ"— ବୃହଦାରଣ୍ୟକ-୪-୩-୧୫ ।

ତସ୍ମାଚ୍ଚ ବିପର୍ଯ୍ୟାସାତ୍ ସିଦ୍ଧଂ ସାକ୍ଷିତ୍ୱମସ୍ୟ ପୁରୁଷସ୍ୟ ।
କୈବଲ୍ୟଂ ମାଧ୍ୟସ୍ଥ୍ୟଂ ଦ୍ରଷ୍ଟୃତ୍ୱ ମକର୍ତ୍ତୃଭାବାଚ୍ଚ । ସାଂ କାରିକା ୧୯ ।

ମହତତ୍ତ୍ୱ ପ୍ରଭୃତି ଏହାର ଠିକ୍ ବିପରୀତ । ଅର୍ଥାତ୍ ସେମାନେ ଅନିତ୍ୟ, ସାବପରିଚ୍ଛିନ୍ନ ଓ ସକ୍ରିୟ; ସେମାନେ ସାବୟବ, ପରତନ୍ତ୍ର ଓ ଲୟଶୀଳ ୧୦ମ ସାଂଖ୍ୟକାରିକା (କାରିକା ଦ୍ରଷ୍ଟବ୍ୟ) । ତତ୍ତ୍ୱସମାସର ବୃତ୍ତିକାର ପୁରୁଷବିଷୟରେ ଏପରି ଲେଖିଛନ୍ତି—

"ଅଥାହ କଃ ପୁରୁଷ ଇତ୍ୟୁଚ୍ୟତେ ? ପୁରୁଷଃ ଅନାଦିଃ, ସୂକ୍ଷ୍ମଃ ସର୍ବଗତଶ୍ଚେତନୋଽଗୁଣଃ ନିତ୍ୟୋ ଦ୍ରଷ୍ଟା, ଭୋକ୍ତାଽକର୍ତ୍ତା କ୍ଷେତ୍ରବିତ୍ ଅମଲୋଽପ୍ରସବଧର୍ମା ଚ ଇତି ।"

ଅର୍ଥାତ୍ ପୁରୁଷ ଅନାଦି, ସୂକ୍ଷ୍ମ, ସର୍ବବ୍ୟାପୀ, ଚେତନ, ନିର୍ଗୁଣ, ନିତ୍ୟ, ଦ୍ରଷ୍ଟା, ଭୋକ୍ତା ଅକର୍ତ୍ତା, କ୍ଷେତ୍ରଜ୍ଞ, ଅମଳ ଓ ପୁରୁଷ ଅପରିଣାମୀ । ସାଂଖ୍ୟଦର୍ଶନରେ ଚତୁର୍ବିଂଶତି-ତତ୍ତ୍ୱ ଓ ଅସଙ୍ଗପୁରୁଷ ଏପରି ପଞ୍ଚବିଂଶତିତତ୍ତ୍ୱ ନିରୂପିତ ହୋଇଛି ଓ ଏହି ତତ୍ତ୍ୱଜ୍ଞାନଦ୍ୱାରା ଜୀବର ମୁକ୍ତିପଥ ସୁଗମ ହୁଏ ଏ କଥା ମଧ୍ୟ ବର୍ଣ୍ଣିତ * ।

---

* ଏତାଦୃଶ ମୁକ୍ତିକାମୀ ତତ୍ତ୍ୱଜ୍ଞାମାଙ୍କ ବିଷୟରେ ଗୌଡ଼ପାଦାଚାର୍ଯ୍ୟ କହିଛନ୍ତି—
"ପଞ୍ଚବିଂଶତି ତତ୍ତ୍ୱଜ୍ଞୋ ଯତ୍ର ତତ୍ରାଶ୍ରମେ ବସେତ୍ । ଜଟୀମୁଣ୍ଡୀ ଶିଖୀବାପି ମୁଚ୍ୟତେ ନାତ୍ର ସଂଶୟଃ"
ଯେଉଁ ବ୍ୟକ୍ତି ପଞ୍ଚବିଂଶତି ତତ୍ତ୍ୱର ଜ୍ଞାନ ଲାଭ କରିଛି, ସେ ଆଶ୍ରମବାସୀ, ସନ୍ନ୍ୟାସୀ, ଗୃହସ୍ଥ ବା ଆରଣ୍ୟକ ହେଉ, ତାହାର ମୁକ୍ତି ସୁନିଶ୍ଚିତ । ଏହିପରି ଉପନିଷଦ୍‌ରେ ମଧ୍ୟ କଥିତ ଅଛି—
"ଯଃ ଷଣ୍ଣବତିତତ୍ତ୍ୱଜ୍ଞୋ ଯତ୍ର କୁତ୍ରାଶ୍ରମେ ରତଃ ।
ଜଟୀ ମୁଣ୍ଡୀ, ଶିଖୀ ବାପି ମୁଚ୍ୟତେ ନାତ୍ର ସଂଶୟଃ"—
ନିରାଲମ୍ବୋପନିଷତ୍ ।

ସାଂଖ୍ୟମତରେ ପ୍ରକୃତିର ଗୁଣମାନଙ୍କଦ୍ୱାରା ସୃଷ୍ଟି କାର୍ଯ୍ୟ ନିଷ୍ପନ୍ନ ହୁଏ; ସେଥିରେ ପୁରୁଷ ଅକର୍ତ୍ତା, ଉଦାସୀନ ଓ ସାକ୍ଷୀ ମାତ୍ର । ଏ କଥା ସମର୍ଥନ କରି ବୃତ୍ତିକାର ଲେଖିଛନ୍ତି—

"ଯଦି କର୍ତ୍ତା ପୁରୁଷଃ ସ୍ୟାତ୍ ଶୁଭନ କୁର୍ଯ୍ୟାତ୍ ନ ତୁ ବୃତ୍ତିତ୍ରୟମ୍; ଏତଦ୍ବୃତ୍ତିତ୍ରୟଂ ଦୃଷ୍ଟ୍ୱା ଲୋକେ ଗୁଣାନାଂ କର୍ତ୍ତୃତ୍ୱଂ ସିଦ୍ଧମିତି ଚାକର୍ତ୍ତା ପୁରୁଷଃ ସିଦ୍ଧୋ ଭବତି ।"

ଅର୍ଥାତ୍ ଯଦି ପୁରୁଷର କର୍ତ୍ତୃତ୍ୱ ସ୍ୱୀକୃତ ହୁଏ, ତେବେ (ଗୁଣତ୍ରୟର) ବୃତ୍ତିଦ୍ୱାରା କର୍ମ ନିଷ୍ପନ୍ନ ଅସମ୍ଭବ । ବୃତ୍ତିର କ୍ରିୟା ଦେଖି ଜଗତରେ ଗୁଣତ୍ରୟର କର୍ତ୍ତୃତ୍ୱ ଓ ପୁରୁଷର ଅକର୍ତ୍ତୃତ୍ୱ ସିଦ୍ଧ ହୁଏ । ଗୀତା ମଧ୍ୟ କହେ—

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।
ଅହଂକାରବିମୂଢ଼ାତ୍ମା କର୍ତ୍ତାଽହମିତି ମନ୍ୟତେ । ୩ । ୨୭ ।

ଅର୍ଥାତ୍ ପ୍ରକୃତିର ଗୁଣଦ୍ୱାରା ହିଁ ସମସ୍ତ କର୍ମ ନିଷ୍ପନ୍ନ ହୁଏ, ଅଥଚ ଅହଂକାରରୁ ମୂଢ଼-ଚିତ୍ତବ୍ୟକ୍ତି ଆତ୍ମାକୁ କର୍ତ୍ତା ମନେକରେ ।

ପ୍ରକୃତ୍ୟୈବ ଚ କର୍ମାଣି କ୍ରିୟମାଣାନି ସର୍ବଶଃ ।
ଯଃ ପଶ୍ୟତି ତଥାତ୍ମାନଂ ଅକର୍ତ୍ତାରଂ ସ ପଶ୍ୟତି । ୧୩।୩୦

ପ୍ରକୃତି କେବଳ ସମସ୍ତ କର୍ମ ସମ୍ପାଦନ କରେ; କିନ୍ତୁ ଆତ୍ମା ଅକର୍ତ୍ତା; ଯେଉଁ ଲୋକ ଏହିପରି ଦେଖିପାରେ, ସେ ଯଥାର୍ଥଦର୍ଶୀ ।

ସାଂଖ୍ୟମତରେ ପ୍ରକୃତି ଏକ; କିନ୍ତୁ ପୁରୁଷ ବହୁସଂଖ୍ୟକ; ଅଥଚ ପ୍ରତ୍ୟେକ ପୁରୁଷ ବିଶ୍ୱବ୍ୟାପୀ ।

ଜନ୍ମାଦିବ୍ୟବସ୍ଥାତଃ ପୁରୁଷବହୁତ୍ୱମ୍ । ସାଂଖ୍ୟସୂତ୍ର—୧।୧୪୯ ।
ପୁରୁଷବହୁତ୍ୱଂ ବ୍ୟବସ୍ଥାତଃ । ,, ୧।୪୫ ।

ବହୁ ପୁରୁଷ ସ୍ୱୀକାର ନ କଲେ ଜନ୍ମାଦିର ବ୍ୟବସ୍ଥା ସମ୍ଭବ ହେବନାହିଁ ।

ପୂର୍ବେ ଯେଉଁ ଷଣ୍ଣବତି ତତ୍ତ୍ୱମାନଙ୍କର ବ୍ୟାଖ୍ୟା କରାଯାଇଛି, ସେହି ତତ୍ତ୍ୱମାନଙ୍କର ଜ୍ଞାତା ଯେ କୌଣସି ଆଶ୍ରମରେ ଥିଲେ ମଧ୍ୟ ନିଶ୍ଚୟ ମୁକ୍ତ ହୁଏ; କିନ୍ତୁ ତତ୍ତ୍ୱଜ୍ଞାନ ଲାଭଦ୍ୱାରା ମୁକ୍ତ ହେବା ପ୍ରଥା ବିଶୁଦ୍ଧାଦ୍ୱୈତବାଦସମ୍ମତ ନୁହେଁ । ଅନାମସ୍ତୁ ତତ୍ତ୍ୱଜ୍ଞାନ ନ ହେବା ପର୍ଯ୍ୟନ୍ତ ମୁକ୍ତି ସମ୍ଭବ ନୁହେଁ ।

ଜନ୍ମମରଣକରଣାନାଂ ପ୍ରତିନିୟମାଦ ଯୁଗପତ୍ ପ୍ରବୃତ୍ତେଶ୍ଚ ।
ପୁରୁଷବହୁତ୍ୱଂ ସିଦ୍ଧଂ ତ୍ରୈଗୁଣ୍ୟବିପର୍ଯ୍ୟୟାଚ୍ଚ । ସାଂଖ୍ୟକାରିକା ୧୮

ଅର୍ଥାତ୍ ସମସ୍ତ ଜୀବର ଏକସମୟରେ ଜନ୍ମ, ମୃତ୍ୟୁ ବା ଇନ୍ଦ୍ରିୟର ବିକଳତା ଦେଖାଯାଏ ନାହିଁ, ସମସ୍ତଙ୍କର ଏକସମୟରେ ପ୍ରବୃତ୍ତି ମଧ୍ୟ ଦୃଷ୍ଟ ନୁହେଁ । ଏକ ପୁରୁଷଠାରେ ଏକ ଗୁଣର ପ୍ରାବଲ୍ୟ ଓ ଅପରଠାରେ ଅନ୍ୟ ଗୁଣ ପ୍ରବଳ । ଅତଏବ ପୁରୁଷ ବହୁ ହେବା ସୁନିଶ୍ଚିତ । ଏ ବିଷୟରେ ତତ୍ତ୍ୱ-ସମାସ ବୃତ୍ତିକାର ବିସ୍ତୃତ ବିବରଣ ଦେଇଛନ୍ତି—

"ସୁଖଦୁଃଖମୋହସଂକରବିଶୁଦ୍ଧିକରଣପାଟବଜନ୍ମମରଣକରଣାନାଂ ନାନାତ୍ୱାତ୍ ପୁରୁଷବହୁତ୍ୱଂ ସିଦ୍ଧଂ ଲୋକାଶ୍ରମବର୍ଣ୍ଣଭେଦାଚ୍ଚ । ଯଦ୍ୟେକଃ ପୁରୁଷଃ ସ୍ୟାତ୍ ଏକସ୍ମିନ୍ ସୁଖିନି ସର୍ବ ଏବ ସୁଖିନଃ ସ୍ୟୁଃ । ଏକସ୍ମିନ୍ ଦୁଃଖିନି ଚ ସର୍ବ ଏବ ଦୁଃଖିନଃ ସ୍ୟୁଃ । ଏକସ୍ମିନ୍ ମୂଢେ ସର୍ବେ ମୂଢାଃ ସ୍ୟୁଃ । ଏକସ୍ମିନ୍ ସଂକୀର୍ଣ୍ଣେ ସର୍ବେ ସଂକୀର୍ଣ୍ଣାଃ ସ୍ୟୁଃ । ଏକସ୍ମିନ୍ ବିଶୁଦ୍ଧେ ସର୍ବେ ବିଶୁଦ୍ଧାଃ ସ୍ୟୁଃ । ଏକସ୍ୟ କରଣପାଟବେ ସର୍ବେଷାଂ କରଣପାଟବଂ ସ୍ୟାତ୍ । ଏକସ୍ମିନ୍ ଜାତେ ସର୍ବେ ଜାୟେରନ୍ । ଏକସ୍ମିନ୍ ମୃତେ ଚ ସର୍ବେ ମ୍ରିୟେରନ୍—ଇତ ନ ଚୈବମ୍, ଇତଶ୍ଚ ବହବଃ ପୁରୁଷା ସିଦ୍ଧାଃ ।"

ଅର୍ଥାତ୍ ସୁଖ, ଦୁଃଖ, ମୋହ, ଶୁଦ୍ଧି-ଅଶୁଦ୍ଧି, ଇନ୍ଦ୍ରିୟ-ବିକଳତା, ଜନ୍ମ, ମୃତ୍ୟୁ ଓ କରଣର ଭେଦ ଏବଂ ବର୍ଣ୍ଣ, ଆଶ୍ରମ ଓ ଲୋକର ତାରତମ୍ୟ ଦେଖି ପୁରୁଷର ବହୁତ୍ୱ ସର୍ବସିଦ୍ଧ । ଯଦି ପୁରୁଷ ବହୁ ନ ହୋଇ ଏକ ହୁଏ, ତେବେ ଜଣେ ସୁଖୀ ହେଲେ ସମସ୍ତେ ସୁଖୀ ହୁଅନ୍ତେ । ସେପରି ଜଣେ ଦୁଃଖୀ ଓ ଜଣକର ମୋହ ହେଲେ, ସମସ୍ତେ ଦୁଃଖୀ ଓ ସମସ୍ତଙ୍କର ମୋହ ଅବଶ୍ୟମ୍ଭାବୀ ହୁଅନ୍ତା । ସେହିପରି ଜଣେ ଯଦି ଅଶୁଦ୍ଧ, ଶୁଦ୍ଧ ବା ବିକଳେନ୍ଦ୍ରିୟ ହୁଏ, ତେବେ ସମସ୍ତେ ଅଶୁଦ୍ଧ, ଶୁଦ୍ଧ ଓ ବିକଳେନ୍ଦ୍ରିୟ ହୁଅନ୍ତେ, ଜଣକର ଜନ୍ମ ବା ମୃତ୍ୟୁ-ହେବାଦ୍ୱାରା ସମସ୍ତଙ୍କର ସେହି ଦଶା ହୁଅନ୍ତା; କିନ୍ତୁ ପ୍ରକୃତରେ ତାହା ହେଉନାହିଁ, ଅତଏବ ବହୁପୁରୁଷତ୍ୱ ସିଦ୍ଧ ବୋଲି ବୁଝିବାକୁ ହେବ ।

ସାଂଖ୍ୟଦର୍ଶନ ଅନୁସାରେ ସୃଷ୍ଟିକାଳରେ ପ୍ରକୃତି ଓ ପୁରୁଷ ପରସ୍ପର ସଂଯୁକ୍ତଭାବରେ ଅବସ୍ଥିତ । ଫଳତଃ, ପୁରୁଷର ଗୁଣ ପ୍ରକୃତିରେ ଓ ପ୍ରକୃତିର ପୁରୁଷଠାରେ ଉପଚରିତ ରହେ; ସେହି ହେତୁରୁ ଅଚେତନ-ପ୍ରକୃତିକୁ ଚେତନ ବୋଲି ଧରାଯାଏ ଓ ବସ୍ତୁତଃ ପୁରୁଷ କର୍ତ୍ତା ନ ହେଲେ ମଧ୍ୟ କର୍ତ୍ତା ବୋଲି ମନେ କରାଯାଏ ।

**ତସ୍ମାତ୍ ତତ୍ ସଂଯୋଗାଦଚେତନଂ ଚେତନବଦିବ ଲିଙ୍ଗମ୍ ।**
**ଗୁଣକର୍ତ୍ତୃତ୍ୱେଽପି ତଥା କର୍ତ୍ତେବ ଭବତ୍ୟୁଦାସୀନଃ ।**

ସାଂଖ୍ୟକାରିକା ୨୦ ।

ଗୀତାରେ ମଧ୍ୟ ଉକ୍ତ ଅଛି—

**"ପୁରୁଷଃ ପ୍ରକୃତିସ୍ଥୋ ହି ଭୁଂକ୍ତେ ପ୍ରକୃତିଜାନ୍ ଗୁଣାନ୍** । ୧୩-୨୨ ।

ଅର୍ଥାତ୍ ପୁରୁଷ ପ୍ରକୃତିରେ ଅବସ୍ଥିତ ରହି ପ୍ରକୃତିସମ୍ଭୂତ ଗୁଣ ଭୋଗ କରେ । ପ୍ରକୃତି ଓ ପୁରୁଷର ଭୋଗ୍ୟଭୋକ୍ତୃଭାବ ସମ୍ବନ୍ଧରେ ସାଂଖ୍ୟଦର୍ଶନ ଆଚାର୍ଯ୍ୟମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ । ଏହି ଭୋଗ୍ୟ-ଭୋକ୍ତୃଭାବ କର୍ମ, ଅବିବେକ ବା ଲିଙ୍ଗ ଶରୀର ହେତୁରୁ ସାଧିତ ବୋଲି ଭିନ୍ନ ମତ ଦେଖାଯାଏ । ବିଜ୍ଞାନଭିକ୍ଷୁଙ୍କ ମତରେ ଅବିବେକ କେବଳ ଭୋକ୍ତୃ-ଭୋଗ୍ୟଭାବର ପ୍ରକୃତ ହେତୁ । ଅବିବେକ, ଅର୍ଥାତ୍ ପ୍ରକୃତି-ପୁରୁଷ ମଧ୍ୟରେ ଭେଦଜ୍ଞାନର ଅଭାବ ।

**ଅବିବେକନିମିତ୍ତୋ ବା ସ୍ୱସ୍ୱାମିଭାବ ଇତି ପଞ୍ଚଶିଖ ଆହ ।**
**ତନ୍ମତେଽପି ଅନାଦରତ୍ୟର୍ଥଃ । ଏତଦେବ ସ୍ୱମତଂ ପ୍ରାଗୁକ୍ତତ୍ୱାତ୍ ।"**

ପ୍ରଳୟ ସମୟରେ ମଧ୍ୟ ଏହି ଅବିବେକ ବାସନାରୂପରେ ପୁରୁଷଠାରେ ସଂଲଗ୍ନ ଥାଏ ଏବଂ ସୃଷ୍ଟି କାଳରେ ପ୍ରକୃତି ସହିତ ପୁରୁଷର ଭୋକ୍ତୃଭୋଗ୍ୟଭାବ ନିଷ୍ପନ୍ନ କରେ । ସାଂଖ୍ୟ-ଦାର୍ଶନିକମାନେ ଆଉ ମଧ୍ୟ କହନ୍ତି ଯେ, ପ୍ରକୃତି ଅଚେତନ, ଅତଏବ ଅନ୍ଧ ସଦୃଶ; ପୁରୁଷ ଅକର୍ତ୍ତା, ଅତଏବ ପଙ୍ଗୁସ୍ଥାନୀୟ । ଉଭୟ ସଂଯୁକ୍ତ ହୋଇ ଏକ ଅନ୍ୟର ଅଭାବ ପୂରଣ କରେ । ସେମାନଙ୍କ ସଂଯୋଗଫଳରେ ସୃଷ୍ଟି ସାଧିତ ହୁଏ ଓ ସେହି ସୃଷ୍ଟି ପୁରୁଷର ଭୋଗ ଓ ମୁକ୍ତିସାଧକ ।

**ପୁରୁଷସ୍ୟ ଦର୍ଶନାର୍ଥଂ କୈବଲ୍ୟାର୍ଥଂ ତଥା ପ୍ରଧାନସ୍ୟ ।**
**ପଙ୍ଗ୍ୱନ୍ଧବତ୍ ଉଭୟୋରପି ସଂଯୋଗସ୍ତତ୍କୃତଃ ସର୍ଗଃ ।**

ସାଂଖ୍ୟକାରିକା ୨୧ ।

ଯେଉଁ ଲୋକ ତତ୍ତ୍ୱଜ୍ଞାନୀ, ତା ପକ୍ଷରେ ପ୍ରକୃତି ସହିତ ପୁରୁଷ ସଂଯୁକ୍ତ ଥିଲେ ମଧ୍ୟ ଆଉ ସୃଷ୍ଟିର ସମ୍ଭାବନା ରହେ ନାହିଁ । ଦଗ୍‌ଧ ବୀଜ ଯେପରି ଅଙ୍କୁରୋଦ୍‌ଗମ କରିବା ସକାଶେ ଅସମର୍ଥ, ସେହିପରି ଜ୍ଞାନାଗ୍ନି-ଦଗ୍‌ଧ କର୍ମ ମଧ୍ୟ ଜୀବକୁ ପୁନର୍ବାର ସଂସାରସମ୍ପୃକ୍ତ କରିବାରେ ଅସମର୍ଥ ।

ଦୃଷ୍ଟା ମୟେତ୍ୟୁପେକ୍ଷକ ଏକୋ ଦୃଷ୍ଟାହମିତ୍ୟୁପରମତ୍ୟନ୍ୟା ।
ସତ ସଂଯୋଗେଽପି ତୟୋଃ ପ୍ରୟୋଜନଂ ନାସ୍ତି ସର୍ଗସ୍ୟ ।

ସାଂଖ୍ୟକାରିକା ୬୬ ।

ପ୍ରକୃତିର ପରିଣାମର ଦୁଇଟି ପ୍ରୟୋଜନ ଦେଖାଯାଏ—ପ୍ରଥମ ଭୋଗ ଓ ଦ୍ୱିତୀୟ ପ୍ରୟୋଜନ, ପ୍ରକୃତି ପୁରୁଷର ଭେଦଜ୍ଞାନ । ଯେଉଁ ବ୍ୟକ୍ତିପକ୍ଷରେ ଏହି ଉଭୟ ପ୍ରୟୋଜନ ଚରିତାର୍ଥ ହୋଇଛି, ତାଙ୍କ ପକ୍ଷରେ ସୃଷ୍ଟିର ଆବଶ୍ୟକତା ନାହିଁ * । ଗୌଡ଼ପାଦ ଆଉ ଏକ ସ୍ଥଳରେ ଲେଖିଛନ୍ତି—ଯେପରି ପଙ୍ଗୁ ଓ ଅନ୍ଧ ସାମୟିକ ପ୍ରୟୋଜନ ନେଇ ପରସ୍ପର ସଂଯୁକ୍ତ ହୁଅନ୍ତି ଏବଂ କାର୍ଯ୍ୟସିଦ୍ଧ ହେବା ପରେ ପରସ୍ପରଠାରୁ ପୃଥକ୍ ହୋଇଯାନ୍ତି, ସେହିପରି ପ୍ରକୃତି ପୁରୁଷର ମୋକ୍ଷସାଧନ କରି ପୁରୁଷଠାରୁ ନିବୃତ୍ତ ହୁଏ ଏବଂ ପୁରୁଷ ମଧ୍ୟ ପ୍ରକୃତିକୁ ଦର୍ଶନ କରି କୈବଲ୍ୟ ପ୍ରାପ୍ତ ହୁଏ । ସେତେବେଳେ ଉଭୟର ସଂଯୋଗର ପ୍ରୟୋଜନ ସିଦ୍ଧ ହେବା ପରେ ପରସ୍ପର ବିୟୋଗ ଘଟେ । † ଏହା କେବଳ ସାଂଖ୍ୟମତରେ କୈବଲ୍ୟ ବା ମୁକ୍ତିର ଅବସ୍ଥା ।

## ୦—ପରଂବ୍ରହ୍ମ ପରମାତ୍ମା ପ୍ରକୃତି-ପୁରୁଷରୁ ଅତୀତ ।

ଉପର୍ଯ୍ୟୁକ୍ତ ସାଂଖ୍ୟଦର୍ଶନ ପ୍ରତିପାଦିତ ତତ୍ତ୍ୱ ଓ ମୁକ୍ତି ଆଲୋଚିତ ବିଷୟ ସହିତ ବେଦାନ୍ତ-ବିଶୁଦ୍ଧାଦ୍ୱୈତ ମତର ବହୁ ବିଭେଦ ଦେଖାଯାଏ । ସେହି ମତଦ୍ୱୈଧର ସଂକ୍ଷିପ୍ତ

* ବିବିକ୍ତବୋଧାତ୍ ସୃଷ୍ଟିନିବୃତ୍ତିଃ ପ୍ରଧାନସ୍ୟ ସୂଦବତ୍ ପାକେ । ସାଂଖ୍ୟସୂତ୍ର— ୩ । ୬୩ ॥
ବିମୁକ୍ତବୋଧାନ୍ନ ସୃଷ୍ଟିଃ ପ୍ରଧାନସ୍ୟ ଲୋକବତ୍ । ତତ୍ରୈବ—ସୂ: ୬ । ୪୩ ॥
ଅର୍ଥାତ୍ ପାକ ନିଷ୍ପନ୍ନ ହେଲେ ଯେପରି ପାଚକ ନିବୃତ୍ତ ହୁଏ, ସେପରି ପ୍ରକୃତି-ପୁରୁଷର ବିବେକ ଜ୍ଞାନ ହେଲେ ପ୍ରକୃତିର ସୃଷ୍ଟି ବ୍ୟାପାର ନିବୃତ୍ତ ହୁଏ ।

† ସାଂଖ୍ୟକାରିକାରେ ଏପରି ବର୍ଣ୍ଣନା କୁହାଯାଇଛି—
ରଙ୍ଗସ୍ୟ ଦର୍ଶୟିତ୍ୱା ନିବର୍ତ୍ତତେ ନର୍ତ୍ତକୀ ଯଥା ନୃତ୍ୟାତ୍ ।
ପୁରୁଷସ୍ୟ ତଥାତ୍ମାନଂ ପ୍ରକାଶ୍ୟ ବିନିବର୍ତ୍ତତେ ପ୍ରକୃତିଃ । ୫୯ ।
ପ୍ରକୃତେଃ ସୁକୁମାରତରଂ ନ କିଞ୍ଚିଦସ୍ତୀତି ମେ ମତିର୍ଭବତି ।
ଯା ଦୃଷ୍ଟାଽସ୍ମୀତି ପୁନର୍ନଦର୍ଶନମୁପୈତି ପୁରୁଷସ୍ୟ । ୬୧ ॥

ଅର୍ଥାତ୍ ନର୍ତ୍ତକୀ ଯେପରି ଦର୍ଶକମାନଙ୍କୁ ନୃତ୍ୟ ଦେଖାଇ ନିବୃତ୍ତ ହୁଏ, ପ୍ରକୃତି ମଧ୍ୟ ସେହିପରି ପୁରୁଷକୁ ନିଜ ରୂପ ଦେଖାଇ ନିବୃତ୍ତ ହୁଏ । ପ୍ରକୃତି ଅପେକ୍ଷା ଅଧିକ ସୁକୁମାର ଅନ୍ୟ କିଛି ନାହିଁ । କାରଣ ପୁରୁଷ ତାହାକୁ ଥରେ ଦେଖିଲେ ଆଉ ସେ ପୁରୁଷର ଦର୍ଶନ-ପଥବର୍ତ୍ତିନୀ ହୁଏ ନାହିଁ ।

ଆଲୋଚନା ନିମ୍ନରେ କରାଯାଉଛି । ସାଂଖ୍ୟଦର୍ଶନରେ ପ୍ରକୃତି ଓ ପୁରୁଷକୁ ନିତ୍ୟ ସତ୍ୟ ତତ୍ତ୍ୱ ବୋଲି ପ୍ରତିପାଦନ କରାଯାଇଛି; କିନ୍ତୁ ବିଶୁଦ୍ଧାଦ୍ୱୈତବାଦ ଏହା ସ୍ୱୀକାର କରେ ନାହିଁ । ଏହା ମତରେ କେବଳ ଏକ ଓ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମ ନିତ୍ୟ, ସତ୍ୟ, ନିର୍ଗୁଣ ଓ ପରମ ବିଶୁଦ୍ଧ ତତ୍ତ୍ୱ । ପ୍ରକୃତି ଓ ପୁରୁଷ ପରମତତ୍ତ୍ୱ ନୁହେଁ; କିନ୍ତୁ ପରଂବ୍ରହ୍ମଙ୍କ ମହିମାରୁ ସେ ଦୁହେଁ ସମ୍ଭୂତ । ଏହା କେବଳ ବେଦାନ୍ତାଦି ଶାସ୍ତ୍ରର ଚରମ ଆଲୋଚନା । ପରଂବ୍ରହ୍ମ-ତତ୍ତ୍ୱଜ୍ଞାନ ହୃଦୟରେ ଜାଗ୍ରତ ନ ହେବା ପର୍ଯ୍ୟନ୍ତ ପୁରୁଷର (ଆତ୍ମାର) ସଦ୍‌ଗତି ବା ମୁକ୍ତିପାଇଁ ଅନ୍ୟ ପନ୍ଥା ନାହିଁ ।

ସୃଷ୍ଟିତତ୍ତ୍ୱ ବିଷୟରେ ବିଭିନ୍ନ ଦାର୍ଶନିକମାନଙ୍କର ଅନେକ ପ୍ରମାଣ ଦେଖାଯାଏ ଓ ସେଥିରେ ବହୁ ଭେଦଭାବ ମଧ୍ୟ ପରିଲକ୍ଷିତ ହୁଏ; କିନ୍ତୁ ସତ୍ୟ ମହିମାଧର୍ମର ପ୍ରବର୍ତ୍ତକ ଗୁରୁ ମହିମା ସ୍ୱାମୀ ସେ ବିଷୟରେ ଯେଉଁ ସବୁ ଉପଦେଶ ଦେଇଛନ୍ତି, ସେହି ଗୁରୁବାକ୍ୟ କେବଳ ଅଦ୍ୱୈତ ବେଦାନ୍ତର ସାରତତ୍ତ୍ୱ ସହିତ ସମନ୍ୱୟ ରକ୍ଷା କରେ । ତାହା କେବଳ ଏ ଗ୍ରନ୍ଥରେ ପ୍ରମାଣରୂପରେ ଗୃହୀତ ।

ସାଂଖ୍ୟଦର୍ଶନ ଅନୁସାରେ ପ୍ରକୃତି ଓ ପୁରୁଷ ବିଶ୍ୱସୃଷ୍ଟିର ମୂଳକାରଣ । ପ୍ରକୃତି ଜଡ଼; ଜଗତର ଅମୂଳ ମୂଳ * ଏବଂ ପୁରୁଷ ଜଡ଼ର ବିପରୀତ—ଚେତନ । ସାଂଖ୍ୟଦର୍ଶନରେ ଏହି ପ୍ରକୃତି ଓ ପୁରୁଷ ମହାଦ୍ୱୈତଭାବରେ ପର୍ଯ୍ୟବସିତ । ଏହି ଉଭୟର ସମନ୍ୱୟଜନ୍ୟ ଏକତ୍ୱ ବିଷୟରେ ସାଂଖ୍ୟଦର୍ଶନରେ କୌଣସି ଆଭାସ ମିଳେ ନାହିଁ; କିନ୍ତୁ ଅଦ୍ୱୈତବେଦାନ୍ତ ସେହି ଚରମ ଏକତ୍ୱର ସୁସ୍ପଷ୍ଟ ଉପଦେଶ ଦେଇଅଛି । ବେଦାନ୍ତମତରେ ସାଂଖ୍ୟୋକ୍ତ ପ୍ରକୃତି ଓ ପୁରୁଷ-ପରଂବ୍ରହ୍ମଙ୍କ ମହିମାର ଦୁଇଟି ବିଭାଗ ବା ପ୍ରକାରମାତ୍ର । ଅଦ୍ୱୈତଦର୍ଶନର ସ୍ଥାନେ ସ୍ଥାନେ ସେହି ଦୁଇ ପରା ଓ ଅପରା ପ୍ରକୃତିରୂପରେ ବର୍ଣ୍ଣିତ ହୋଇଛନ୍ତି । ସାଂଖ୍ୟୋକ୍ତ ପ୍ରଧାନ ବେଦାନ୍ତର ଅପରା ପ୍ରକୃତି ଓ ପୁରୁଷ ପରା ପ୍ରକୃତି । ସାଂଖ୍ୟର ଏହି ଦୁଇ ତତ୍ତ୍ୱ ବେଦାନ୍ତ-ଦର୍ଶନର ଓ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ଚରମତତ୍ତ୍ୱ ନୁହେଁ, କିନ୍ତୁ ପରଂବ୍ରହ୍ମଙ୍କ ମହିମାର ବିକାଶ ମାତ୍ର । ଏ ବିଷୟରେ ଶ୍ରୁତିବଚନ—

**କ୍ଷରଂ ପ୍ରଧାନଂ ଅମୃତାକ୍ଷରଂ ହରଃ**
**କ୍ଷରାତ୍ମାନୌ ଈଶତେ ଦେବ ଏକଃ ।**

ଶ୍ୱେତାଶ୍ୱତର ଉ: ୧।୧୦

---

* ମୂଲେ ମୂଲାଭାବାତ୍ ଅମୂଲଂ ମୂଲମ୍ । ସାଂଖ୍ୟସୂତ୍ର—୧-୬୭ ॥
ସମାନଃ ପ୍ରକୃତେର୍ଦ୍ୱୟୋଃ । ସାଂ: ସୂ: ୧-୬୧ ॥

କ୍ଷର ହିଁ ପ୍ରଧାନ, ଅକ୍ଷର ଅମୃତ, * ଯେଉଁ ଅଦ୍ୱିତୀୟ ଦେବ କ୍ଷର ଓ ଆତ୍ମାର ପ୍ରଭୁ, ସେହି ପରମାତ୍ମା ହର ହିଁ ସଦାନନ୍ଦସ୍ୱରୂପ । ଏ ବିଷୟରେ ଗୀତା ବଚନ—

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଂ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ।
ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ॥
ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥

ଗୀତା ୧୫।୧୬।୧୮

ଅର୍ଥାତ୍ କ୍ଷର ଓ ଅକ୍ଷରନାମକ ଦୁଇ ପୁରୁଷ ଲୋକପ୍ରସିଦ୍ଧ; ସମସ୍ତ ଭୂତ କ୍ଷର ପୁରୁଷ ଓ କୂଟସ୍ଥ ଅକ୍ଷର ପୁରୁଷ; କିନ୍ତୁ ଏତଦ୍‌ଭିନ୍ନ ଏକ ଉତ୍ତମ ପୁରୁଷ ଅଛନ୍ତି । ଯାହାଙ୍କର ନାମ ପରମାତ୍ମା । ସେହି ଅବ୍ୟୟ ପରମେଶ୍ୱର ଲୋକତ୍ରୟର ସର୍ବତ୍ର ପ୍ରବିଷ୍ଟ ଓ ସମସ୍ତଙ୍କର ଧାରଣକର୍ତ୍ତା । ଯେଉଁ ହେତୁରୁ ସେ ଅକ୍ଷରରୁ ଅତୀତ ଓ ଅକ୍ଷର ଅପେକ୍ଷା ଉତ୍ତମ, ସେହି କାରଣରୁ ଲୋକ ଓ ବେଦରେ ସେ ଉତ୍ତମ ପୁରୁଷ ବୋଲି ଖ୍ୟାତ । ଅତଏବ ଗୀତାମତରେ ମଧ୍ୟ ପ୍ରକୃତି ପୁରୁଷ ଚରମତତ୍ତ୍ୱ ନୁହେଁ । ପରମାତ୍ମା ହିଁ ପରମତତ୍ତ୍ୱ । ପ୍ରକୃତିପୁରୁଷ ପରା ଓ ଅପରା ପ୍ରକୃତି ନାମରେ ଅଭିହିତ, ଜଡ଼ ପଦାର୍ଥମାନଙ୍କର ଉପାଦାନ ଅପରା ପ୍ରକୃତି ଓ ଜୀବରୂପୀ ପୁରୁଷ ପରା ପ୍ରକୃତିନାମରେ ଅଭିହିତ—ଏହା ପୂର୍ବ ପ୍ରକରଣରେ ବର୍ଣ୍ଣିତ ହୋଇଛି । ଏହି ପ୍ରକୃତି ଓ ପୁରୁଷଙ୍କୁ ଶାସ୍ତ୍ରର ନାନା ସ୍ଥାନରେ ବିଭିନ୍ନ ସଂଜ୍ଞାରେ ଅଭିହିତ କରାହୋଇଛି । କେଉଁଠାରେ ଏମାନଙ୍କର ନାମ କ୍ଷେତ୍ର ଓ କ୍ଷେତ୍ରଜ୍ଞ, ଅନ୍ୟତ୍ର ମୂଳ ପ୍ରକୃତି ଓ ପ୍ରତ୍ୟଗାତ୍ମା । ଅନ୍ନ ଓ ଅନ୍ନାଦ, ସ୍ୱଧା ଓ ପ୍ରଯତି, ରୈ ଓ ପ୍ରାଣ, ଅପ ଓ ମାତରିଶ୍ୱା—ଇତ୍ୟାଦି ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ନାମରେ ଏହି ଦୁଇ ପ୍ରକୃତି ଓ ପୁରୁଷ ନାମିତ ହୋଇଥିବା ଦେଖାଯାଏ ; କିନ୍ତୁ ଯେ କୌଣସି ନାମରେ ନାମିତ ହେଲେ ମଧ୍ୟ ଅଦ୍ୱୈତ ବେଦାନ୍ତ ଏ ଦୁହିଁଙ୍କୁ ଚରମତତ୍ତ୍ୱ ବୋଲି ସ୍ୱୀକାର କରି ନାହିଁ ।

"ଏତାବଦ୍ ବା ଇଦଂ ସର୍ବମ୍, ଅନ୍ନଂ ଚୈବାନ୍ନାଦଶ୍ଚ, ସୋମ ଏବାନ୍ନଂ ଅଗ୍ନିରନ୍ନାଦଶ୍ଚ" ॥　　ବୃହଦାରଣ୍ୟକ ଉ. ୧।୪।୬ ॥

ଅର୍ଥାତ୍ ଅନ୍ନ ଓ ଅନ୍ନାଦ—ଏହି ଦୁଇଙ୍କର ମିଳନରୁ ସମସ୍ତ ଜଗତ୍ ଉଦ୍ଭୂତ ।

* ସ ଈଶ୍ୱରଃ କ୍ଷରାତ୍ମାନୌ ପ୍ରଧାନପୁରୁଷୌ ଈଶତେ ଈଷ୍ଟେ ଦେବଃ
ଏକସ୍ତୁ ସଦାନନ୍ଦାଦ୍ୱିତୀୟଃ ପରମାତ୍ମା—ଶାଙ୍କରଭାଷ୍ୟ ।

"ପ୍ରଜାକାମୋ ବୈ ପ୍ରଜାପତିଃ । ସ ମିଥୁନ ମୁତ୍ପାଦୟତେ × × ରୟିଂ ଚ ପ୍ରାଣଞ୍ଚେତି । ଏତୌ ମେ ବହୁଧା ପ୍ରଜାଃ କରିଷ୍ୟତ ଇତି ।

ପ୍ରଶ୍ନ ୧।୪

ଅର୍ଥାତ୍ ପ୍ରଜାପତି ପ୍ରଜା-ଉତ୍ପାଦନ କାମନା କରି ରୟି ଓ ପ୍ରାଣ—ଏହି ଉଭୟ ଉତ୍ପାଦନ କଲେ । କାରଣ ସେ ଦୁହେଁ ତାଙ୍କ ନିମନ୍ତେ ବହୁବିଧ ପ୍ରଜା ଉତ୍ପାଦନ କରିବେ । "ତସ୍ମିନ୍ ଆପୋ ମାତରିଶ୍ୱା ଦଧାତି । ଈଶ । ୪ ॥ ଅର୍ଥାତ୍ ମାତରିଶ୍ୱା (ପ୍ରାଣ) ପରମାତ୍ମା ଅପ୍ ନିହିତ କରନ୍ତି । ଅପ = କାରଣାର୍ଣ୍ଣବ, ଅର୍ଥାତ୍ ଅବ୍ୟକ୍ତପ୍ରକୃତି । ମାତରିଶ୍ୱା = ପ୍ରାଣ, ଅର୍ଥାତ୍ ପୁରୁଷ । ଉକ୍ତ ପ୍ରକୃତି ଓ ପୁରୁଷ ପରମାତ୍ମାଙ୍କ ମହିମାରୁ ସମ୍ଭୂତ ହୋଇ ସୃଷ୍ଟିକର୍ମ ସମ୍ପାଦନ କରନ୍ତି । ପ୍ରଳୟସମୟରେ ପ୍ରକୃତି ଓ ପୁରୁଷ ଉଭୟେ ପରମାତ୍ମାଙ୍କଠାରେ ବିଲୀନ ହୁଅନ୍ତି । "ଅକ୍ଷରଂ ତମସି ଲୀୟତେ, ତମଃ ପରେ ଦେବେ ଏକୀଭବତି"—ଶ୍ରୁତିଃ । ଅର୍ଥାତ୍ ଅକ୍ଷର ତମସ୍‌ରେ ଲୀନ ହୁଏ ଓ ପରମାତ୍ମାଙ୍କଠାରେ ଏକୀଭୂତ ହୁଏ । ତମଃ ପ୍ରକୃତିର ହିଁ ଚାରିତ୍ରିକ ସଂଜ୍ଞା * । ପ୍ରଳୟସମୟରେ ପ୍ରକୃତି ଓ ପୁରୁଷ ପରମାତ୍ମାଙ୍କଠାରେ ବିଲୀନ ହୁଅନ୍ତି—ଶ୍ରୁତି ଏହା ହିଁ ଉପଦେଶ ଦେଇଛନ୍ତି । ଅତଏବ ପରମାତ୍ମା ହିଁ ବିଶୁଦ୍ଧତତ୍ତ୍ୱ ଓ ସର୍ବ-ବ୍ୟାପକ—ଏହା ଉପର୍ଯ୍ୟୁକ୍ତ ଆଲୋଚନାରୁ ପ୍ରତିପନ୍ନ ହେଲା । ଏ ବିଷୟରେ ବିଶଦ ବିବରଣ ପୂର୍ବରେ ଦିଆଯାଇଛି । ପରେ ମଧ୍ୟ ବର୍ଣ୍ଣିତ ହେବ ।

## ପାତଞ୍ଜଳ-ଦର୍ଶନ ମତ

### ଠ—ପାତଞ୍ଜଳ-ଦର୍ଶନର ସଂକ୍ଷିପ୍ତ ତତ୍ତ୍ୱାଲୋଚନା ଓ ଈଶ୍ୱରତତ୍ତ୍ୱ-ନିରୂପଣ ॥

ପାତଞ୍ଜଳ ଦର୍ଶନର ଆବିଷ୍କର୍ତ୍ତା ପତଞ୍ଜଳି । * ଏହାର ଅନ୍ୟ ନାମ ସାଂଖ୍ୟପ୍ରବଚନ । କାରଣ, ଏଥିରେ ପାତଞ୍ଜଳ ସାଂଖ୍ୟଦର୍ଶନର ପ୍ରବର୍ତ୍ତକ କପିଳ ମହର୍ଷିଙ୍କର ଦାର୍ଶନିକ ସିଦ୍ଧାନ୍ତ

---

* ଆସୀଦିଦଂ ତମୋଭୂତମ୍ (ମନୁ ; ତମ ଆସୀତ୍ ତମସା ଗୂଢ଼ମଗ୍ରେ (ଋକ୍ : ସଂ) "ଆଗ୍ରେ ତମ ଆସୀତ୍" ଇତ୍ୟାଦି ବୈଦିକ ବାକ୍ୟ ଏକଥା ପ୍ରମାଣିତ କରୁଛି । ଆହୁ ମଧ୍ୟ ଦେଖାଯାଏ ଯେ, ତତ୍ତ୍ୱସମାସବୃତ୍ତିରେ ତମଃଶବ୍ଦ ପ୍ରକୃତିର ଏକ ପର୍ଯ୍ୟାୟବାଚକରୂପରେ ନିର୍ଦ୍ଦିଷ୍ଟ ହୋଇଅଛି । "ଅବ୍ୟକ୍ତଂ ପ୍ରଧାନଂ ଅକ୍ଷରଂ କ୍ଷେତ୍ରଂ ତମଃ ପ୍ରସୂତମିତି" ।

* ପାତଞ୍ଜଳ ଦର୍ଶନରେ ସର୍ବସମେତ ୧୯୫ ଗୋଟି ସୂତ୍ର ଅଛି । ଏହି ଦର୍ଶନ ଗ୍ରନ୍ଥ ୪ ପାଦରେ ବିଭକ୍ତ । ଏମାନଙ୍କ ନାମ—ସମାଧିପାଦ, ସାଧନପାଦ, ବିଭୂତିପାଦ ଓ କୈବଲ୍ୟପାଦ । ପାତଞ୍ଜଳଦର୍ଶନର ଏକ ପ୍ରାଚୀନ ଓ ପ୍ରାମାଣିକ ଭାଷ୍ୟ ପ୍ରଚଳିତ ଅଛି । ଦାର୍ଶନିକଙ୍କ ମଧ୍ୟରେ ଏହା ବ୍ୟାସଭାଷ୍ୟ ନାମରେ ପରିଚିତ । ବାଚସ୍ପତି ମିଶ୍ର "ତତ୍ତ୍ୱବୈଶାରଦୀ" ଓ ବିଜ୍ଞାନଭିକ୍ଷୁ "ଯୋଗବାର୍ତ୍ତିକ" ନାମରେ ଟୀକାଦ୍ୱୟ ରଚନା କରିଛନ୍ତି । ଏହି ଦର୍ଶନର ଭୋଜରାଜକୃତ ଏକ ଉପାଦେୟ ବୃତ୍ତି ମଧ୍ୟ ପ୍ରଚଳିତ ଅଛି । ଏ ସମ୍ପର୍କରେ ବିଜ୍ଞାନଭିକ୍ଷୁଙ୍କର "ଯୋଗସାର-ସଂଗ୍ରହ" ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ଉଲ୍ଲେଖଯୋଗ୍ୟ ।

ବହୁ ଭାବରେ ସ୍ୱୀକାର ଓ ଗ୍ରହଣ କରିଛନ୍ତି । ସାଂଖ୍ୟଦର୍ଶନୋକ୍ତ ପଞ୍ଚବିଂଶତି ତତ୍ତ୍ୱ (ଯଥା—ପ୍ରକୃତି, ପୁରୁଷ, ମହତ୍ତତ୍ତ୍ୱ, ଅହଂକାର, ପଞ୍ଚତନ୍ମାତ୍ର, ଏକାଦଶ ଇନ୍ଦ୍ରିୟ ଓ ପଞ୍ଚ ମହାଭୂତ) ପାତଞ୍ଜଳ ଦର୍ଶନରେ ସ୍ୱୀକୃତ ହୋଇଛି; କିନ୍ତୁ ପାତଞ୍ଜଳି ଏହି ପଞ୍ଚବିଂଶତି ତତ୍ତ୍ୱ ସହିତ ଅନ୍ୟ ଏକ ତତ୍ତ୍ୱ ମଧ୍ୟ ସ୍ୱୀକାର କରିଛନ୍ତି, ତାହା ଈଶ୍ୱର । ଈଶ୍ୱରରୂପ ତତ୍ତ୍ୱ ସାଂଖ୍ୟୋକ୍ତ ପୁରୁଷ ନୁହେଁ । ତାହା ପୁରୁଷବିଶେଷ । ଏହି ଈଶ୍ୱରଙ୍କ ବିଷୟରେ ପାତଞ୍ଜଳଦର୍ଶନର ଭାଷ୍ୟକାର ବ୍ୟାସ ଏପରି ପ୍ରଶ୍ନ ଉତ୍‌ଥାପିତ କରି କହିଛନ୍ତି—

"ଅଥ ପ୍ରଧାନପୁରୁଷବ୍ୟତିରିକ୍ତଃ କୋଽୟଂ ଈଶ୍ୱରୋ ନାମ ?

ଅର୍ଥାତ୍ ପ୍ରକୃତି-ପୁରୁଷ ବ୍ୟତିରିକ୍ତ ଏହି ଅପର ଈଶ୍ୱର କିଏ ? ଏହା ସାଂଖ୍ୟୋକ୍ତ ପଞ୍ଚବିଂଶତି ତତ୍ତ୍ୱରୁ ବ୍ୟତିରିକ୍ତ ବୋଲି ନିର୍ଦ୍ଦେଶ କରିଛନ୍ତି † ଏହି କାରଣରୁ ନିରୀଶ୍ୱର ସାଂଖ୍ୟଦର୍ଶନରୁ ପାତଞ୍ଜଳଦର୍ଶନ ପୃଥକ୍ ଓ ଏହା ସେଶ୍ୱର ସାଂଖ୍ୟ ବୋଲି କୁହାଯାଏ । ବସ୍ତୁତଃ ପାତଞ୍ଜଳଦର୍ଶନରୁ ଈଶ୍ୱରତତ୍ତ୍ୱ ଓ ଚିତ୍ତନିରୋଧ—ଏହି ଦୁଇଟି ବିଷୟ ବାଦ୍ ଦେଲେ ଏହି ଦର୍ଶନ ସାଂଖ୍ୟମତରୁ କୌଣସି ପ୍ରକାରେ ଭିନ୍ନ ନୁହେଁ—ଏ କଥା ସାଧାରଣତଃ ବୁଝାଯାଏ । ଈଶ୍ୱରତତ୍ତ୍ୱ ବିଷୟରେ ପାତଞ୍ଜଳି ଏହି ଲକ୍ଷଣ ପ୍ରତିପାଦିତ କରିଛନ୍ତି—

"କ୍ଲେଶକର୍ମ୍ମବିପାକାଶୟୈରପରାମୃଷ୍ଟଃ ପୁରୁଷବିଶେଷ ଈଶ୍ୱରଃ" ॥
ପାତଞ୍ଜଳଦର୍ଶନ—୧-୨୪

ତତ୍ର ନିରତିଶୟଂ ସର୍ବଜ୍ଞବୀଜମ୍ । ୧-୨୫ ।
ସ ଏଷଃ ପୂର୍ବେଷାମପି ଗୁରୁଃ କାଲେନାନବଚ୍ଛେଦାତ୍ । ୧-୨୬

ଅର୍ଥାତ୍ ଯେଉଁ ପୁରୁଷବିଶେଷ କ୍ଲେଶ, କର୍ମ, ବିପାକ ଓ ଆଶ୍ରୟର ସମ୍ପର୍କଶୂନ୍ୟ, ସେହି ଈଶ୍ୱର । ସେହି ଜ୍ଞାନର ଚରମ ଉତ୍କର୍ଷ; ସେ ସର୍ବଜ୍ଞ । ସେ ବ୍ରହ୍ମାଦି ପୂର୍ବାଚାର୍ଯ୍ୟଗଣଙ୍କର ମଧ୍ୟ

† ସ୍ମୃତେ ମନ୍ତ୍ରସଂଯୁକ୍ତୈ ରଥର୍ବବହ୍ନିଭିର୍ବିଭୁଃ ।
ତଂ ଷଡ଼୍ବିଂଶକମିତ୍ୟେକେ ସପ୍ତବିଂଶ ତଥାପରେ ।
ପୁରୁଷଂ ନିର୍ଗୁଣଂ ସାଂଖ୍ୟମଥର୍ବାଣଂ ଶିରୋ ବିଦୁଃ ॥
ଚୂଳିକା—୧୩-୧୪

"ମାହାଭୂତାନୀନ୍ଦ୍ରିୟାଣି ମନୋବୁର୍ଦ୍ଧିରହଂକୃତିଃ ।
ମହାନ୍ ପ୍ରଧାନଂ ତତ୍ତ୍ୱାନି ଷଡ଼୍ବିଂଶଃ ପରମେଶ୍ୱରଃ ॥"
ଇତି ନାରାୟଣଦୀପିକା ।

ଗୁରୁ; କାରଣ, ସେ କାଳରୁ ଅତୀତ । ସାଧାରଣ ପୁରୁଷ କ୍ଳେଶ, କର୍ମ, ବିପାକ ଓ ଆଶୟର ସମ୍ପର୍କଯୁକ୍ତ । କ୍ଳେଶ ୫ ପ୍ରକାର— ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ । ଅବିଦ୍ୟା—ମିଥ୍ୟା ଜ୍ଞାନ; ଅସ୍ମିତା—ବିଭିନ୍ନ ବସ୍ତୁରେ ଅଭେଦ ପ୍ରତୀତି; ରାଗ—ଅନୁରାଗ; ଦ୍ୱେଷ—ବିରାଗ ଓ ଅଭିନିବେଶ—ମରଣଭୟ । କର୍ମ ଦ୍ୱିବିଧ—ସୁକୃତ ଓ ଦୁଷ୍କୃତ ବା ପାପ-ପୁଣ୍ୟ । ବିପାକ ଓ କର୍ମଫଳ; କର୍ମର ଫଳ ମଧ୍ୟ ତ୍ରିବିଧ—ଜନ୍ମ, ଆୟୁଷ ଓ ଭୋଗ । ଆଶୟ—ବିପାକ ଅନୁରୂପ ସଂସ୍କାର । ସାଧାରଣ ପୁରୁଷ ଏହି ସମସ୍ତଙ୍କର ସଂସ୍ରବ ଲଙ୍ଘନ କରିପାରେ ନାହିଁ । ଅବଶ୍ୟ, ମୁକ୍ତ ପୁରୁଷଠାରେ କ୍ଳେଶାଦିର କୌଣସି ସମ୍ପର୍କ ରହେ ନାହିଁ; କିନ୍ତୁ ମୁକ୍ତି ପୂର୍ବରୁ ସେ ମଧ୍ୟ କ୍ଳେଶାଦିର ଅଧୀନ ଥିଲା । ପୁରୁଷବିଶେଷ ଈଶ୍ୱରଙ୍କଠାରେ କୌଣସିକାଳେ ମଧ୍ୟ କ୍ଳେଶାଦିର ସଂସ୍ପର୍ଶ ନ ଥିଲା । କାରଣ, ସେ ନିତ୍ୟ ମୁକ୍ତ । ପୁରୁଷ, ଅର୍ଥାତ୍ ଜୀବ ଯେପରି ବହୁସଂଖ୍ୟକ; ପୁରୁଷବିଶେଷ, ଅର୍ଥାତ୍ ଈଶ୍ୱର ସେପରି ବହୁ ନୁହନ୍ତି । ସେ ଏକ ଓ ଅଦ୍ୱିତୀୟ; ଈଶ୍ୱର କାଳଦ୍ୱାରା ଅବଚ୍ଛିନ୍ନ ନୁହନ୍ତି । ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ—ଏପରି କାଳତ୍ରୟରୁ ସେ ଅତୀତ । କଳ୍ପ ଓ ମନ୍ୱନ୍ତରାଦି ପ୍ରାରମ୍ଭରେ ବ୍ରହ୍ମା, ମନୁ ଓ ସପ୍ତର୍ଷି ପ୍ରଭୃତି ଯେଉଁ ଶାସ୍ତ୍ରାଦିର ଉପଦେଶ ବା ପ୍ରଚାର କରନ୍ତି, ସେସବୁ ଏହି ଈଶ୍ୱରଙ୍କଠାରୁ ଲବ୍ଧ; ଅତଏବ ଏହି ଈଶ୍ୱରଙ୍କୁ ପୂର୍ବଗୁରୁଗଣଙ୍କର ଗୁରୁ ବୋଲି କୁହାଯାଏ ।

ଜଗତରେ ପଦାର୍ଥମାନଙ୍କର ପରିମାଣର ତାରତମ୍ୟ ପରିଦୃଷ୍ଟ ହୁଏ । କ୍ଷୁଦ୍ର ଜଳାଶୟ ଅପେକ୍ଷା ନଦୀର ପରିମାଣ ବୃହତ୍, ଏବଂ ନଦୀ ଅପେକ୍ଷା ସମୁଦ୍ର ବୃହତ୍ତର । ଏହିପରି ଜ୍ଞାନର ମଧ୍ୟ ତାରତମ୍ୟ ଅଛି । ମୂର୍ଖ ଅପେକ୍ଷା ପଣ୍ଡିତର ଏବଂ ପଣ୍ଡିତ ଅପେକ୍ଷା ସୁପଣ୍ଡିତର ଜ୍ଞାନ ଅଧିକତର; କିନ୍ତୁ ଯାହାଙ୍କଠାରେ ଜ୍ଞାନର ପରାକାଷ୍ଠା ବିଦ୍ୟମାନ, ଅର୍ଥାତ୍ ଯାହାଙ୍କର ଜ୍ଞାନ ଅପରିସୀମ, ସେ ସର୍ବଜ୍ଞ ଓ ସେହି ଈଶ୍ୱର । ଅତଏବ ପାତଞ୍ଜଳଦର୍ଶନରେ ତତ୍ତ୍ୱସଂଖ୍ୟା ୨୫ ନୁହେଁ; କିନ୍ତୁ ୨୬ । ପାତଞ୍ଜଳଦର୍ଶନର ଏହି ୨୬ ତତ୍ତ୍ୱର ଅଧିକ ବ୍ୟାଖ୍ୟା କରିବା ମୁଖ୍ୟ ବିଷୟ ନୁହେଁ । ଯୋଗ କେବଳ ଏହାର ମୁଖ୍ୟ ବିଷୟ । ଅତଏବ ଏହାର ଅପର ନାମ ଯୋଗଦର୍ଶନ । ବାଚସ୍ପତି ମିଶ୍ର ଲେଖିଛନ୍ତି—"ନ ଚୈତାନ ପ୍ରଧାନାଦିସଦ୍ଭାବପରାଣି, କିନ୍ତୁ ଯୋଗସ୍ୱରୂପ ତତ୍‌ସାଧନତଦବାନ୍ତରଫଳବିଭୂତି-ତତ୍‌ପରମଫଳକୈବଲ୍ୟବ୍ୟୁତ୍ପାଦନପରାଣି ।" ଅର୍ଥାତ୍ ପ୍ରଧାନାଦିର ପ୍ରତିପାଦନ ପାତଞ୍ଜଳଦର୍ଶନର ମୁଖ୍ୟ ବିଷୟ ନୁହେ; ଯୋଗର ସ୍ୱରୂପ, ସାଧନ, ଗୌଣ ଫଳ ବିଭୂତି ଓ ମୁଖ୍ୟ ଫଳ କୈବଲ୍ୟର ନିରୂପଣ ଯୋଗଶାସ୍ତ୍ରର ପ୍ରଧାନ ବିଷୟ ।

## ୦—ପାତଞ୍ଜଳଦର୍ଶନୋକ୍ତ ଦୁଃଖନିବୃତ୍ତିର ଉପାୟ ।

ଯୋଗଶାସ୍ତ୍ରର ୪ ଗୋଟି ପର୍ବ—ହେୟ, ହେୟହେତୁ, ହାନ ଓ ହାନୋପାୟ; ଅନ୍ୟାନ୍ୟ ଦର୍ଶନପରି ପାତଞ୍ଜଳଦର୍ଶନମତରେ ମଧ୍ୟ ସଂସାର ଦୁଃଖମୟ; ଅତଏବ ହେୟ ।

"ଦୁଃଖମେବ ସର୍ବଂ ବିବେକିନଃ ।
ହେୟଂ ଦୁଃଖଂ ଅନାଗତମ୍ ।"

ପାତଞ୍ଜଳ ୨।୧୫-୧୬ ।

ଏହି ହେୟ ସଂସାରର ହେତୁ ହେଉଛି ପ୍ରକୃତି-ପୁରୁଷର ସଂଯୋଗ; (ଦ୍ରଷ୍ଟୃଦୃଶ୍ୟୟୋଃ ସଂଯୋଗୋ ହେୟହେତୁଃ) । କିନ୍ତୁ ପ୍ରକୃତିପୁରୁଷର ସଂଯୋଗନିମନ୍ତେ ସଂସାରର ଉଚ୍ଛେଦ ସମ୍ଭବପର, ଅତଏବ ହେୟର ନିବୃତ୍ତିକୁ ହାନ କୁହାଯାଏ । (ତଦଭାବାତ୍ ସଂଯୋଗାଭାବୋ ହାନଂ ତଦ୍ଦୃଶେଃ କୈବଲ୍ୟମ୍ ୨।୨୫) । ପ୍ରକୃତିପୁରୁଷର ନିଶ୍ଚଳ ଭେଦଜ୍ଞାନ ଏହି ହାନର ଉପାୟ । (ବିବେକଖ୍ୟାତିଃ ଅବିପ୍ଲବା ହାନୋପାୟଃ—୨।୨୬) । ପାତଞ୍ଜଳ ମତରେ ପ୍ରକୃତି-ପୁରୁଷର ନିଶ୍ଚଳଭେଦଜ୍ଞାନ ମୋକ୍ଷଲାଭର ଅଦ୍ୱିତୀୟ ପନ୍ଥା । ସାଂଖ୍ୟଦାର୍ଶନିକମାନଙ୍କ ମତରେ ପଞ୍ଚବିଂଶତି ତତ୍ତ୍ୱସହିତ ପରିଚିତ ହୋଇ ପାରିଲେ ସମ୍ୟକ୍ ଜ୍ଞାନ ବା ସେହି ପ୍ରକୃତିପୁରୁଷର ନିଶ୍ଚଳଭେଦଜ୍ଞାନ ଉତ୍ପନ୍ନ ହେବ; କିନ୍ତୁ ପାତଞ୍ଜଳଙ୍କ ମତରେ ସେତିକି ପରିଚୟ ଯଥେଷ୍ଟ ନୁହେଁ । ଯୋଗବଳରେ କେବଳ ସେପରି ଜ୍ଞାନଲାଭ ସମ୍ଭବ; ଅତଏବ ପାତଞ୍ଜଳଦର୍ଶନରେ ଯୋଗଶାସ୍ତ୍ରର ପ୍ରଧାନ ଅବତାରଣା କରାଯାଇଛି । ପତଞ୍ଜଳିଙ୍କ ମତରେ ପ୍ରକୃତିପୁରୁଷର ନିଶ୍ଚଳ ଭେଦଜ୍ଞାନଲାଭର ଏକମାତ୍ର ଉପାୟ ଯୋଗ । ଚିତ୍ତନିରୋଧ ଓ ତାର ଉପାୟକୁ ଯୋଗ କୁହାଯାଏ । ଅତଏବ—

"ଯୋଗଶ୍ଚିତ୍ତବୃତ୍ତିନିରୋଧଃ ।"

ଚିତ୍ତର ୫ଟି ଅବସ୍ଥା ବର୍ଣ୍ଣିତ—କ୍ଷିପ୍ତ ଅର୍ଥାତ୍ ରଜୋଗୁଣ ଆଧିକ୍ୟରୁ ଚିତ୍ତର ବିଶୃଙ୍ଖଳା; ମୂଢ଼ ବା ତମୋଗୁଣର ଆଧିକ୍ୟରୁ ଚିତ୍ତ ମୋହାଚ୍ଛନ୍ନ; ବିକ୍ଷିପ୍ତ ବା ସତ୍ତ୍ୱଗୁଣର ଆଧିକ୍ୟରୁ ସମୟ-ଭେଦରେ ଚିତ୍ତ ସ୍ଥିର ଓ ଅସ୍ଥିର; ଏକାଗ୍ର, ଅର୍ଥାତ୍ ଧ୍ୟେୟବସ୍ତୁରେ ଚିତ୍ତର ଏକତାନ ପ୍ରବାହ ଓ ନିରୋଧ ବା ଚିତ୍ତବୃତ୍ତିର ଅବରୋଧ ହୋଇ ବୃତ୍ତିଜନିତ ସଂସ୍କାରମାନ ଅବଶିଷ୍ଟ ରହେ । ଏଥିମଧ୍ୟରୁ ଚିତ୍ତର କ୍ଷିପ୍ତ ଓ ମୂଢ଼ ଅବସ୍ଥାରେ ଯୋଗ ସମ୍ଭବ ନୁହେଁ । ବିକ୍ଷିପ୍ତାବସ୍ଥାରେ ଯୋଗର ଆରମ୍ଭ ହୁଏ । ବିକ୍ଷିପ୍ତଚିତ୍ତକୁ "କ୍ରିୟାଯୋଗ" ଦ୍ୱାରା ଏକାଗ୍ର କରି ସାଧକ ପ୍ରକୃତ ଯୋଗରେ ଅଧିକାରୀ ହୁଏ । କାରଣ ଏକାଗ୍ର ଓ ନିରୁଦ୍ଧ ଚିତ୍ତଦ୍ୱାରା ଯୋଗ ସମ୍ଭବ ହୁଏ ।

ଚିତ୍ତର ବୃତ୍ତି ୫ ପ୍ରକାର—ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି । ସେଥି-ମଧ୍ୟରୁ ପ୍ରମାଣ ୩ ପ୍ରକାର; ପ୍ରତ୍ୟକ୍ଷ, ଅନୁମାନ ଓ ଆଗମ । ବିପର୍ଯ୍ୟୟର ଅର୍ଥ ମିଥ୍ୟାଜ୍ଞାନ । ପ୍ରକୃତ ପଦାର୍ଥ ନ ଥିଲେ ମଧ୍ୟ କେବଳ ଶବ୍ଦଜ୍ଞାନସକାଶେ ଚିତ୍ତର ଯେଉଁ ବୃତ୍ତି ଜାଗ୍ରତ ହୁଏ, ତାହାର ନାମ ବିକଳ୍ପ, ଯଥା—ଆକାଶକୁସୁମ, ନରଶୃଙ୍ଗ ଇତ୍ୟାଦି । ନିଦ୍ରା ଅର୍ଥ ସୁଷୁପ୍ତି । ସ୍ମୃତି-ଅନୁଭୂତ ବିଷୟର ସ୍ମରଣ । ଏହି ପଞ୍ଚାତିରିକ୍ତ ଅନ୍ୟ ଚିତ୍ତବୃତ୍ତି ନାହିଁ । ଏହି ସମସ୍ତ

ଚିତ୍ତବୃତ୍ତିର ନିରୋଧ ଆବଶ୍ୟକ; କାରଣ ଚିତ୍ତ ସହିତ ପୁରୁଷ ସଂଯୁକ୍ତ, ଅତଏବ ଚିତ୍ତର ସମସ୍ତ ବୃତ୍ତି ପୁରୁଷଠାରେ ଉପଚରିତ ହୁଅନ୍ତି । ପୁରୁଷ ସ୍ୱଚ୍ଛ, କେବଳ ଓ ନିର୍ଗୁଣ । ସ୍ୱଚ୍ଛ ସ୍ଫଟିକ ନିକଟରେ ରକ୍ତମନ୍ଦାର ରଖିଲେ ସ୍ଫଟିକ ରକ୍ତବର୍ଣ୍ଣ ଧାରଣ କରେ ଓ ନୀଳ ଅପରାଜିତାର ସଂସର୍ଗରେ ନୀଳବର୍ଣ୍ଣ ଧାରଣ କରେ । ସେପରି ଚିତ୍ତବୃତ୍ତି ସଂସର୍ଗରେ ଶୁଦ୍ଧପୁରୁଷ ସୁଖଦୁଃଖାଦି ଚିତ୍ତବୃତ୍ତିର ସାରୂପ୍ୟ ଲାଭ କରେ ଓ ନିଜକୁ ସୁଖୀ ବା ଦୁଃଖୀ ମନେକରେ; କିନ୍ତୁ ପ୍ରକୃତରେ ପୁରୁଷର ସୁଖ ଦୁଃଖ କିଛି ନାହିଁ । ଏହା ଚିତ୍ତବୃତ୍ତିର ଉପରାଗ ମାତ୍ର । ଯୋଗଦ୍ୱାରା ଚିତ୍ତବୃତ୍ତି ନିରୁଦ୍ଧ ହେଲେ ଆଉ ପୁରୁଷଠାରେ ବୃତ୍ତିର ଛାୟା ନିପତିତ ହୁଏ ନାହିଁ । ସେହି ସମୟରେ ପୁରୁଷ ନିଜର ପ୍ରକୃତ ସ୍ୱରୂପରେ ଅବସ୍ଥାନ କରେ ।

**ତଦା ଦ୍ରଷ୍ଟୁଃ ସ୍ୱରୂପେ ଅବସ୍ଥାନଂ ବୃତ୍ତିସାରୂପ୍ୟମିତରତ୍ର ।**

୧—୩।୪ ସୂ ।

ଏହି ଚିତ୍ତବୃତ୍ତି ନିରୋଧର କେତୋଟି ଉପାୟ ପତଞ୍ଜଳି ନିର୍ଦ୍ଦେଶ କରିଅଛନ୍ତି; ଯୋଗଦର୍ଶନର ସମାଧିପାଦରେ ଏ ବିଷୟର ବିସ୍ତୃତ ବିବରଣ ମିଳେ—

**ଅଥ ଆସାଂ ନିରୋଧେ କ ଉପାୟ ଇତି ।"**

ଏପରି ପ୍ରଶ୍ନ କରି ପତଞ୍ଜଳି କହିଛନ୍ତି—

**ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ**—୧-୧୨ ସୂତ୍ର

ଅର୍ଥାତ୍ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ଚିତ୍ତବୃତ୍ତିର ନିରୋଧ ହୋଇପାରେ । ଅଭ୍ୟାସ ଓ ବୈରାଗ୍ୟବଳରେ ଯୋଗୀ ଶ୍ରଦ୍ଧା, ଉତ୍ସାହ, ସ୍ମୃତି, ଏକାଗ୍ରତା ଓ ପ୍ରଜ୍ଞା ବା ବିବେକ ସାହାଯ୍ୟରେ ପ୍ରଥମତଃ ସଂପ୍ରଜ୍ଞାତ ସମାଧି ଲାଭ କରେ । ପରେ ଅଭ୍ୟାସ ଦୃଢ଼ତର ଓ ବୈରାଗ୍ୟର ପରାକାଷ୍ଠା ଜାତ ହେଲେ ଯୋଗୀ ଅସମ୍ପ୍ରଜ୍ଞାତ ସମାଧିର ଅଧିକାରୀ ହୁଏ । ଏହାହିଁ ଯୋଗର ଚରମଧ୍ୟେୟ ।

**ଶ୍ରଦ୍ଧାବୀର୍ଯ୍ୟସ୍ମୃତିସମାଧିପ୍ରଜ୍ଞାପୂର୍ବକଇତରେଷାମ୍ ।** ୧।୨୦ ସୂତ୍ର ।

**ତ ଏତେ ସଂପ୍ରଜ୍ଞାତସମାଧେଃ ଉପାୟାଃ ।**

**ତସ୍ୟାଭ୍ୟାସାତ୍ ପରାଚ ବୈରାଗ୍ୟାଦ୍ ଭବତି ଅସଂପ୍ରଜ୍ଞାତଃ ।**

ଭୋଜବୃତ୍ତି ।

**ତଦ୍‌ଭ୍ୟାସାତ୍ ତତ୍ ତତ୍ ବିଷୟାଚ ବୈରାଗ୍ୟାତ୍ ଅସଂପ୍ରଜ୍ଞାତଃ ସମାଧିର୍ଭବତି ।**

ବ୍ୟାସଭାଷ୍ୟ ।

ଯେଉଁ ଯୋଗୀମାନେ "ତୀବ୍ରସଂବେଗ, ଅର୍ଥାତ୍ ଯେଉଁମାନଙ୍କର ଯୋଗରେ ଅତିମାତ୍ରା ଉତ୍ସାହ, ସେମାନଙ୍କର ସମାଧିଲାଭ ଆସନ୍ନତମ ।

ତୀବ୍ର ସଂବେଗାନାମାସନ୍ନଃ । ୧-୬୦ ।

ତସ୍ମାଦଧିମାତ୍ର-ତୀବ୍ରସଂବେଗସ୍ୟ ଅଧିମାତ୍ରୋପାୟସ୍ୟାପି ଆସନ୍ନତମଃ ସମାଧିଲାଭଃ ସମାଧିଫଳଂ ଚେତ—ବ୍ୟାସଭାଷ୍ୟ ।

ସମାଧିଲାଭର ଏହି ଉପାୟ ଛଡ଼ା ଉପାୟାନ୍ତର ବିଷୟରେ ପତଞ୍ଜଳି କହିଛନ୍ତି—

ଈଶ୍ୱରପ୍ରଣିଧାନାଦ୍ ବା । ୧-୬୬ ।

ଏହି ସୂତ୍ର ଉପରେ ବ୍ୟାସଙ୍କ ଭାଷ୍ୟ—

କିଂ ଏତସ୍ମାଦେବ ଆସନ୍ନତମଃ ସମାଧିର୍ଭବତି । ଅଥାସ୍ୟ ଲାଭେ ଭବତି ଅନ୍ୟୋଽପି କଶ୍ଚିତ୍ ଉପାୟୋ ନ ବେତି । ଈଶ୍ୱରପ୍ରଣିଧାନାଦ୍ ବା । ପ୍ରଣିଧାନାଦ୍ ଭକ୍ତିବିଶେଷାତ୍ ଆବର୍ଜିତ ଈଶ୍ୱରସ୍ତମନୁଗୃହ୍ଣାତି ଅଭିଧ୍ୟାନମାତ୍ରେଣ, ତଦଭିଧ୍ୟାନାଦପି ଯୋଗିନ ଆସନ୍ନତମଃ ସମାଧିଲାଭଃ ଫଳଞ୍ଚ ଭବତୀତି ।

ଅର୍ଥାତ୍ ପୂର୍ବୋକ୍ତ ଉପାୟରୁ ଅଚିରେ ସମାଧିଲାଭ ହୋଇପାରେ, ଅଥବା ଏ ବିଷୟରେ ଅନ୍ୟ ଉପାୟ ଅଛି; ଏହି ପ୍ରଶ୍ନର ଉତ୍ତରରେ କୁହାଯାଇଛି—ବିଶିଷ୍ଟ ଭକ୍ତିସହକାରେ ଯୋଗୀ ଈଶ୍ୱରଙ୍କୁ ଆରାଧନା କଲେ ଈଶ୍ୱର ତାଙ୍କର ଅଭୀଷ୍ଟସିଦ୍ଧି ନିମନ୍ତେ ଅନୁଗ୍ରହ କରନ୍ତି । ଈଶ୍ୱରଙ୍କର ସେପରି ଇଚ୍ଛା ହେଲେ ଯୋଗୀର ସମାଧିଲାଭ ସୁଲଭ ହୁଏ । ଏହିପରି ପତଞ୍ଜଳିଙ୍କ ମତରେ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ପ୍ରଥମତଃ ଚିତ୍ତବୃତ୍ତିର ନିରୋଧ କରିବାକୁ ହୁଏ; ପରେ ଅଭ୍ୟାସ ଓ ବୈରାଗ୍ୟ କ୍ରମଶଃ ଦୃଢ଼ତା ଓ ପରାକାଷ୍ଠା ପ୍ରାପ୍ତ ହେଲେ ଯୋଗୀର ସମାଧିଲାଭ ଆସନ୍ନତମ ହୁଏ । ଈଶ୍ୱର ପ୍ରଣିଧାନ ମଧ୍ୟ ଆସନ୍ନ ସମାଧିଲାଭର ଅନ୍ୟତର ଉପାୟ ।

ଈଶ୍ୱର ପ୍ରଣିଧାନର ଫଳ ବିଷୟରେ ପତଞ୍ଜଳି କହୁଛନ୍ତି—

ତତଃ ପ୍ରତ୍ୟକ୍ ଚେତନାଧିଗମୋଽପ୍ୟନ୍ତରାୟାଭାବଶ୍ଚ । ୧-୬୮ ସୂତ୍ର ।

ଯେ ତାବଦନ୍ତରାୟା ବ୍ୟାଧିପ୍ରଭୃତୟସ୍ତେ ତାବତ୍ ଈଶ୍ୱରପ୍ରଣିଧାନାନ୍ନ ଭବନ୍ତି । ସ୍ୱରୂପଦର୍ଶନମପି ଅସ୍ୟ ଭବତି । ବ୍ୟାସଭାଷ୍ୟ ।

ଅର୍ଥାତ୍ ଈଶ୍ୱର-ପ୍ରଣିଧାନ ଫଳରେ ବ୍ୟାଧି, ସଂଶୟ, ପ୍ରମାଦ, ଆଳସ୍ୟ ପ୍ରଭୃତି ଚିତ୍ତ-ବିକ୍ଷେପରୂପ ଅନ୍ତରାୟସମୂହ ଦୂରୀଭୂତ ହୁଏ ଏବଂ ପୁରୁଷର ସ୍ୱରୂପ ଦର୍ଶନ ହୁଏ । ଚିତ୍ତବିକ୍ଷେପ ଦୂର କରିବା ନିମନ୍ତେ ଏକ ତତ୍ତ୍ୱର ଅଭ୍ୟାସ କରିବାକୁ ହୁଏ ।

**ମୈତ୍ରୀକରୁଣାମୁଦିତୋପେକ୍ଷାଣାଂ ସୁଖଦୁଃଖପୁଣ୍ୟାପୁଣ୍ୟବିଷୟାଣାଂ ଭାବନାତଃ ଚିତ୍ତପ୍ରସାଦନମ୍ ।** ୧-୩୨ ସୂତ୍ର ।

ସୁଖୀ, ଦୁଃଖୀ, ପୁଣ୍ୟାତ୍ମା ଓ ପାପୀ ଯଥାକ୍ରମେ ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା-ପ୍ରଭୃତି ଭାବନାଦ୍ୱାରା ଚିତ୍ତପ୍ରସାଦ ପ୍ରସାଦ ଲାଭ କରନ୍ତି । ତଦ୍ଦ୍ୱାରା ମଧ୍ୟ ଚିତ୍ତ ଏକାଗ୍ର ହୋଇ ସ୍ଥୈର୍ଯ୍ୟ ଲାଭ କରେ ।

**ପ୍ରଚ୍ଛର୍ଦ୍ଦନବିଧାରଣାଭ୍ୟାଂ ବା ପ୍ରାଣସ୍ୟ ।** ୧-୩୩ ସୂତ୍ର ।

**ତାଭ୍ୟାଂ ବା ମନସଃ ସ୍ଥିତିଂ ସମ୍ପାଦୟେତ୍**—ବ୍ୟାସଭାଷ୍ୟ

ଅଥବା ପ୍ରାଣର ନିଃସାରଣ ଓ ବିଧାରଣଦ୍ୱାରା ମଧ୍ୟ ଚିତ୍ତର ସ୍ଥୈର୍ଯ୍ୟଲାଭ ହୋଇ ପାରେ ।

**ବିଷୟବତୀ ବା ପ୍ରବୃତ୍ତିରୁତ୍ପନ୍ନା ମନସଃ ସ୍ଥିତିନିବନ୍ଧନୀ ।** ୧-୩୪ ସୂତ୍ର ।

ଅଥବା ଇନ୍ଦ୍ରିୟବିଶେଷର ଧାରଣାଦ୍ୱାରା ଗନ୍ଧାଦି ବିଷୟର ସାକ୍ଷାତ୍କାର ବା ଅନୁଭୂତି ହେଲେ ମଧ୍ୟ ଚିତ୍ତ ସ୍ଥିର ହୁଏ । ଅର୍ଥାତ୍—ନାସାଗ୍ର, ଜିହ୍ୱାମୂଳ ପ୍ରଭୃତିରେ ଧାରଣା କଲେ ଯୋଗୀ ଅଲୌକିକ ଗନ୍ଧ, ରୂପ, ରସ, ସ୍ପର୍ଶ ଶବ୍ଦ ପ୍ରଭୃତିର ଅନୁଭବ କରେ; ତଦ୍ଦ୍ୱାରା ତାଙ୍କର ଚିତ୍ତ ନିବଦ୍ଧ ହୁଏ । ଅତଏବ ଚିତ୍ତସ୍ଥୈର୍ଯ୍ୟର ଏହା ମଧ୍ୟ ଅନ୍ୟତମ ଉପାୟ ।

**ବିଶୋକା ବା ଜ୍ୟୋତିଷ୍ମତୀ ।** ୧-୩୫ ସୂତ୍ର ।

ହୃତ୍-ପଦ୍ମରେ ଧାରଣା କଲେ ଯେଉଁ ଶୋକରହିତ ଜ୍ୟୋତିର ପ୍ରକାଶ ହୁଏ, ତଦ୍ଦ୍ୱାରା ମଧ୍ୟ ଚିତ୍ତର ସ୍ଥିରତା ହୋଇପାରେ । ଅର୍ଥାତ୍ ଏହି ଜ୍ୟୋତିର ସାକ୍ଷାତ୍କାର ମଧ୍ୟ ଚିତ୍ତସ୍ଥୈର୍ଯ୍ୟର ଅନ୍ୟତମ ଉପାୟ ।

**ବୀତରାଗବିଷୟଂ ବା ଚିତ୍ତମ୍ ।** ୧-୩୬ ସୂତ୍ର ।

ଅଥବା ଯେଉଁମାନେ ବୀତରାଗ ବା ବିଷୟରୁ ବିରକ୍ତ ସେମାନଙ୍କ ବିଷୟରେ ଧ୍ୟାନ କଲେ ମଧ୍ୟ ଚିତ୍ତ ସ୍ଥିର ହୁଏ; ଅର୍ଥାତ୍ ନିଷ୍କାମ ମହାତ୍ମାମାନଙ୍କର ଧ୍ୟାନ ମଧ୍ୟ ଚିତ୍ତସ୍ଥୈର୍ଯ୍ୟର ଅନ୍ୟତମ ଉପାୟ ।

ଏହି ଅବସ୍ଥା ଲାଭକରି ଯୋଗୀ ନିଜ ଚିତ୍ତକୁ ସ୍ଥୂଳ, ସୂକ୍ଷ୍ମ ଓ ସୁସୂକ୍ଷ୍ମାଦି ବିବିଧାକାରରେ ପ୍ରତିଷ୍ଠିତ କରେ ଓ ତା'ର ଚିତ୍ତ ସେହି ସେହି ଆକାରରେ ଆକାରିତ ହୁଏ । ଏହି ଅବସ୍ଥାର ନାମ ସମାପତ୍ତି । ଏହି ଆକାର ୪ ପ୍ରକାର—ସବିତର୍କ, ନିର୍ବିତର୍କ ସବିଚାର ଓ ନିର୍ବିଚାର । ଏହି ସବୁ ଚିତ୍ତବୃତ୍ତି ସବୀଜ ବା ସଂପ୍ରଜ୍ଞାତ ସମାଧିର ନାମାନ୍ତର ।

**ତାଏବ ସବୀଜଃ ସମାଧିଃ ।** ୧-୪୬ ସୂତ୍ର ।

ଏହା ଫଳରେ ଯୋଗୀର ଋତାମ୍ଭରା ପ୍ରଜ୍ଞା ଉତ୍ପନ୍ନ ହୁଏ ଓ ସେଥିରୁ ଜାତ ସଂସ୍କାର ଚିତ୍ତର ଅନ୍ୟ ସଂସ୍କାରକୁ ବାଧିତ କରେ ।

**ତଜ୍ଜଃ ସଂସ୍କାରୋଽନ୍ୟସଂସ୍କାର ପ୍ରତିବନ୍ଧୀ ।** ୧-୪୯ ସୂତ୍ର ।

ଯୋଗୀ ଯେତେବେଳେ ଏହି ସଂସ୍କାରର ନିରୋଧ କରନ୍ତି, ସେତେବେଳେ ତାଙ୍କର ନିର୍ବୀଜ ବା ଅସଂପ୍ରଜ୍ଞାତ ସମାଧି ଲାଭ ହୁଏ । ଏହାହିଁ ଯୋଗର ଚରମ ଅବସ୍ଥା ।

**ତସ୍ୟାପି ନିରୋଧେ ସର୍ବନିରୋଧାତ୍ ନିର୍ବୀଜଃ ସମାଧିଃ ।**

। ୧-୫୦ ସୂତ୍ର ।

ଏହିସବୁ ବର୍ଣ୍ଣନାରୁ ଜଣାଯାଏ ଯେ, ପତଞ୍ଜଳିଙ୍କ ମତରେ ଅଭ୍ୟାସ ବୈରାଗ୍ୟର ପରାକାଷ୍ଠା ଏବଂ ଈଶ୍ବରପ୍ରଣିଧାନ ଭିନ୍ନ ପୂର୍ବୋକ୍ତ ପ୍ରଣାଳୀ ଅନୁସରଣ କରି ମଧ୍ୟ ଯୋଗୀର ନିର୍ବୀଜ ସମାଧି ସିଦ୍ଧ ହୋଇପାରେ । ଯୋଗୀର ସାଧନାବସ୍ଥାରେ ଯୋଗାଭ୍ୟାସ ଫଳରେ କେତେକ ଅଲୌକିକ ଶକ୍ତିର ସଂଗ୍ରହ ହୁଏ । ଏମାନଙ୍କୁ ବିଭୂତି ବା ସିଦ୍ଧି କୁହାଯାଏ । ପାତଞ୍ଜଳ ଦର୍ଶନର ତୃତୀୟ ପାଦରେ ଏହି ସମସ୍ତ ସିଦ୍ଧିର ସବିସ୍ତାର ଉଲ୍ଲେଖ ଅଛି । ପ୍ରକୃତ ଯୋଗସାଧକ ପକ୍ଷରେ ଏହି ସବୁ ସିଦ୍ଧି ସହାୟକ ନୁହନ୍ତି, ସେସବୁ ଅନ୍ତରାୟ ମାତ୍ର ।

**ତେ ସମାଧାବୁପସର୍ଗାଃ ବ୍ୟୁତ୍ଥାନେ ସିଦ୍ଧୟଃ ।** ୩-୩୭ ସୂତ୍ର ।

ଅର୍ଥାତ୍ ସମାଧିରହିତ ପକ୍ଷରେ ଏହି ସକଳ ସିଦ୍ଧି ବିଭୂତି ବୋଲି ଗଣ୍ୟ ହୁଅନ୍ତି ; କିନ୍ତୁ ସମାଧିଯୁକ୍ତ ଯୋଗୀ ପକ୍ଷରେ ଏହା ସବୁ ଉପସର୍ଗ ମାତ୍ର ।

**ଯୋଗ-ଅଷ୍ଟାଙ୍ଗ—**

**ଯମନିୟମାସନ ପ୍ରାଣାୟାମ ପ୍ରତ୍ୟାହାର ଧାରଣା**
**ଧ୍ୟାନସମାଧୟୋଽଷ୍ଟାବଙ୍ଗାନି ।** ୨-୨୯ ସୂତ୍ର ।

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି —ଏହା ଯୋଗର ଅଷ୍ଟପ୍ରକାର ଅଙ୍ଗ । ଏମାନଙ୍କ ମଧ୍ୟରୁ ଯମ, ନିୟମ, ଆସନ, ପ୍ରାଣାୟାମ ଓ ପ୍ରତ୍ୟାହାର—ଏହି ପାଞ୍ଚ ବହିରଙ୍ଗ; ଧାରଣା, ଧ୍ୟାନ ଓ ସମାଧି ଅନ୍ତରଙ୍ଗ; ଅହିଂସା, ସତ୍ୟ, ଅସ୍ତେୟ ବା ଚୌର୍ଯ୍ୟାଭାବ, ବ୍ରହ୍ମଚର୍ଯ୍ୟପାଳନ ଓ ଅପରିଗ୍ରହ ବା ପରଦ୍ରବ୍ୟାଗ୍ରହଣ — ଏମାନଙ୍କୁ

ଯମ କୁହାଯାଏ । ଶୌଚ (ବହିଃ ଓ ଅନ୍ତଃଶୁଦ୍ଧିଃ), ସନ୍ତୋଷ, ତପସ୍ୟା, ସ୍ୱାଧ୍ୟାୟ ଓ ଈଶ୍ୱର-ପ୍ରଣିଧାନ—ଏମାନଙ୍କ ନାମ ନିୟମ । ପଦ୍ମାସନ, ବୀରାସନ ପ୍ରଭୃତି ଯୋଗସହାୟକ ଆସନ (ସ୍ଥିରସୁଖମାସନମ୍—୨-୪୬ ସୂତ୍ର) । ପ୍ରାଣବାୟୁର ସଂଯମକୁ ପ୍ରାଣାୟାମ କୁହାଯାଏ, (ଶ୍ୱାସ-ପ୍ରଶ୍ୱାସୟୋର୍ଗତିବିଚ୍ଛେଦଃ ପ୍ରାଣାୟାମଃ—୨-୪୯ ସୂ:) ; ଇନ୍ଦ୍ରିୟନିଗ୍ରହର ନାମ ପ୍ରତ୍ୟାହାର । ଏକଦେଶରେ ଚିତ୍ତର ଧାରଣା ବା ବନ୍ଧନକୁ ଧାରଣା କୁହାଯାଏ ( ଦେଶବନ୍ଧଶ୍ଚିତ୍ତସ୍ୟ ଧାରଣା—୩-୧ ସୂ: ) । ଚିତ୍ତ ବୃତ୍ତିର ଏକତାନ ପ୍ରବାହର ନାମ ଧ୍ୟାନ (ତତ୍ର ପ୍ରତ୍ୟୟୈକତାନତା ଧ୍ୟାନମ୍—୩-୨ ସୂ: ) । ଧ୍ୟାନ ପରିପକ୍ୱ ହୋଇ ଯେତେବେଳେ ଧ୍ୟେୟାକାରରେ ପରିଣତ ହୁଏ ଓ ଚିତ୍ତବୃତ୍ତି ଥିଲେ ମଧ୍ୟ ନ ଥିଲାପରି ଭାସମାନ ହୁଏ, ସେହି ଅବସ୍ଥାର ନାମ ସମାଧି ( ତଦେବାର୍ଥମାତ୍ରନିର୍ଭାସଂ ସ୍ୱରୂପ-ଶୂନ୍ୟମିବ ସମାଧିଃ—୩-୩ ସୂ: ) । ଏହି ସମାଧି ଦ୍ୱିବିଧ—ସବୀଜ ଓ ନିର୍ବୀଜ । ସବୀଜ ସମାଧିରେ ଚିତ୍ତର ଅବଲମ୍ବନ ଥାଏ; ସେ ଅବସ୍ଥାରେ ଚିତ୍ତର ସୂକ୍ଷ୍ମ ସାତ୍ତ୍ୱିକବୃତ୍ତି ତିରୋହିତ ହୁଏ ନାହିଁ । ସେହିହେତୁରୁ ସବୀଜସମାଧିର ଅନ୍ୟ ଗୋଟିଏ ନାମ ସଂପ୍ରଜ୍ଞାତ ସମାଧି । ନିର୍ବୀଜ ସମାଧିରେ ଚିତ୍ତର ସମସ୍ତବୃତ୍ତି ତିରୋହିତ ହୁଏ, କେବଳ ସଂସ୍କାର ଅବଶିଷ୍ଟ ଥାଏ; ସେହିହେତୁରୁ ଏହି ସମାଧିକୁ ଅସଂପ୍ରଜ୍ଞାତ ସମାଧି କୁହାଯାଏ ।—

ବିତର୍କବିଚାରାନନ୍ଦାସ୍ମିତାରୂପାନୁଗମାତ୍ ସଂପ୍ରଜ୍ଞାତଃ । ୧-୧୭ ସୂତ୍ର ।
ବିରାମପ୍ରତ୍ୟୟାଭ୍ୟାସପୂର୍ବଃ ସଂସ୍କାରଶେଷୋଽନ୍ୟଃ । ୧-୧ ସୂତ୍ର ।

ବ୍ୟାସଭାଷ୍ୟରେ ସମାଧିର ଏହିପରି ବ୍ୟାଖ୍ୟା କରାଯାଇଛି—

**ଧ୍ୟାନମେବ ଧ୍ୟେୟାକାରନିର୍ଭାସଂ ପ୍ରତ୍ୟୟାତ୍ମକେନ ସ୍ୱରୂପେଣ ଶୂନ୍ୟମିବ ଯଦା ଭବତି ଧ୍ୟେୟସ୍ୱଭାବାବେଶାତ୍ ତଦା ସମାଧିରିତ୍ୟୁଚ୍ୟତେ ।**

ଯୋଗ ୨ ପ୍ରକାର—ସଂପ୍ରଜ୍ଞାତ ଓ ଅସଂପ୍ରଜ୍ଞାତ । ଏକାଗ୍ରଚିତ୍ତର ଯୋଗ ସଂପ୍ରଜ୍ଞାତ; କାରଣ, ସେସମୟରେ ଧ୍ୟେୟବସ୍ତୁ ସମ୍ୟକ୍ ରୂପରେ ପ୍ରଜ୍ଞାତ ହୁଏ । ନିରୁଦ୍ଧଚିତ୍ତ ଯୋଗର ନାମ ଅସଂପ୍ରଜ୍ଞାତ । କାରଣ, ସେ ସମୟରେ ଧ୍ୟେୟବିଷୟକ ବୃତ୍ତି ମଧ୍ୟ ନିରୁଦ୍ଧ ହୁଏ, ଅତଏବ କୌଣସି ଧ୍ୟେୟବସ୍ତୁ ମଧ୍ୟ ପ୍ରଜ୍ଞାତ ହୁଏ ନାହିଁ । ଏହି ଦ୍ୱିବିଧ ଯୋଗର ସାଧାରଣ ନାମ ସମାଧିଯୋଗ ।

**୦—ପାତଞ୍ଜଳଦର୍ଶନୋକ୍ତ ଜୀବନ୍ମୁକ୍ତିନିରୂପଣ ।**

ଏହି ନିର୍ବୀଜ ସମାଧି ବା ଯୋଗ ଆୟତ୍ତ ହେଲେ ଯୋଗୀପୁରୁଷ ବା ମୂଳପୁରୁଷ ସ୍ୱରୂପରେ ଅବସ୍ଥାନ କରେ । ସେତେବେଳେ ପୁରୁଷକୁ ଶୁଦ୍ଧ ମୁକ୍ତ କୁହାଯାଏ ।

**"ତସ୍ମିନ୍ନିବୃତ୍ତେ ପୁରୁଷଃ ସ୍ୱରୂପପ୍ରତଷ୍ଠଃ**
**ଅତଃ ଶୁଦ୍ଧୋ ମୁକ୍ତ ଇତ୍ୟୁଚ୍ୟତେ"** । ୧-୫୧ ସୂତ୍ରର ବ୍ୟାସଭାଷ୍ୟ ।

ଏହାର ନାମ କୈବଲ୍ୟସିଦ୍ଧି ଓ ଏହା ପାତଞ୍ଜଳଦର୍ଶନର ଚରମ ଲକ୍ଷ୍ୟ ।

**ସତ୍ତ୍ୱପୁରୁଷୟୋଃ ଶୁଦ୍ଧିସାମ୍ୟେ କୈବଲ୍ୟମିତ** । ୩-୫୪ ସୂତ୍ର ।

ଏହି ସୂତ୍ରର ବ୍ୟାସଭାଷ୍ୟ—

**"ଜ୍ଞାନାଦଦର୍ଶନଂ ନିବର୍ତ୍ତତେ, ତସ୍ମିନ୍ନିବୃତ୍ତେ ନ ସନ୍ତ୍ୟୁତ୍ତରେ କ୍ଲେଶାଃ, କ୍ଲେଶାଭାବାତ୍ କର୍ମବିପାକାଭାବଃ, ଚରିତାଧିକାରାଶ୍ଚ ଏତସ୍ୟାମବସ୍ଥାୟାଂ ଗୁଣା ନ ପୁରୁଷସ୍ୟ ପୁନର୍ଦୃଶ୍ୟତ୍ୱେନୋପତଷ୍ଠନ୍ତେ ତତ୍ ପୁରୁଷସ୍ୟ କୈବଲ୍ୟମ୍, ତଦା ପୁରୁଷଃ ସ୍ୱରୂପମାତ୍ରଜ୍ୟୋତରମଳଃ କେବଳୀଭବତ ।"**

ଅର୍ଥାତ୍ ଜ୍ଞାନ ଜାତ ହେଲେ ଅଦର୍ଶନର ବା ଅବିଦ୍ୟାର ନିବୃତ୍ତି ହୁଏ; ଅବିଦ୍ୟାର ନିବୃତ୍ତିଦ୍ୱାରା ପଞ୍ଚକ୍ଲେଶର ନିବୃତ୍ତି ହୁଏ; କ୍ଲେଶର ନିବୃତ୍ତି ହେଲେ କର୍ମ ପରିପକ୍ୱ ହୋଇ ପୁନଶ୍ଚ ଫଳ ଜାତ କରି ପାରେ ନାହିଁ । ଏହି ଅବସ୍ଥାର ପ୍ରୟୋଜନ ଚରିତାର୍ଥହେତୁ ପ୍ରକୃତି ପୁନର୍ବାର ପୁରୁଷର ଦୃଶ୍ୟ ହୁଏ ନାହିଁ । ପୁରୁଷ ସେତେବେଳେ କେବଳ (ସ୍ୱତନ୍ତ୍ର) ହୁଅନ୍ତି ଏବଂ ନିର୍ମଳ ଜ୍ୟୋତିଃସ୍ୱରୂପରେ ଅବସ୍ଥାନ କରନ୍ତି । କୈବଲ୍ୟସିଦ୍ଧିର ଫଳ—

**ତଦା ସର୍ବାବରଣମଳାପେତସ୍ୟ ଜ୍ଞାନସ୍ୟାନନ୍ତ୍ୟାଜ୍ ଜ୍ଞେୟମଲ୍ପମ୍** ।
। ୪-୩୧ ସୂତ୍ର ।

**ପୁରୁଷାର୍ଥଶୂନ୍ୟାନାଂ ଗୁଣାନାଂ ପ୍ରତପ୍ରସବଃ କୈବଲ୍ୟଂ ସ୍ୱରୂପପ୍ରତଷ୍ଠା ବା ଚିତଶକ୍ତେରିତ** । ୪-୩୪ ସୂତ୍ର ।

ଅର୍ଥାତ୍ ସେହି ସମାଧି-ଯୋଗ ଅବସ୍ଥାରେ ଅବିଦ୍ୟାଦି ସମସ୍ତ କ୍ଲେଶ ଓ କର୍ମରୂପ ଆବରଣରୁ ଚିତ୍ତସତ୍ତ୍ୱ ମୁକ୍ତ ହେଲେ ତାହାର ସର୍ବତ୍ର ପ୍ରସାର ହୁଏ । ସେତେବେଳେ ତାହାର ଜ୍ୟୋତି ସର୍ବତ୍ର ପରିବ୍ୟାପ୍ତ ହୁଏ । ସେପରି ଅବସ୍ଥାରେ ଯୋଗୀର ଅଜ୍ଞାତ ବିଷୟ କିଛି ରହେ ନାହିଁ । ଯେଉଁ ଲୋକର ଯୋଗସିଦ୍ଧିଦ୍ୱାରା ଏପରି ତତ୍ତ୍ୱଜ୍ଞାନ ଜାତ ହୋଇଛି, ତା ପକ୍ଷରେ ପ୍ରକୃତି ପୁନର୍ବାର ଉଦ୍ଭୂତ ହୋଇ ଭୋଗ ବା ଅପବର୍ଗ ଜାତ କରିପାରେ ନାହିଁ । ଏହା କେବଳ କୈବଲ୍ୟ ଜ୍ଞାନ ବା ପାତଞ୍ଜଳଦର୍ଶନୋକ୍ତ ମୁକ୍ତି । ଏହି

ଅବସ୍ଥାରେ ଚିତ୍ତଶକ୍ତି ବା ପୁରୁଷ ସ୍ୱରୂପରେ ପ୍ରତିଷ୍ଠିତ ହୁଏ । ପୂର୍ବୋକ୍ତ ପ୍ରଣାଳୀରେ ପାତଞ୍ଜଳ ଦର୍ଶନର ସଂକ୍ଷିପ୍ତ ବିବରଣ ପ୍ରଦତ୍ତ ହେଲା । ପତଞ୍ଜଳି ପୁରୁଷବିଶେଷ—ଈଶ୍ୱରଙ୍କୁ ଚରମତତ୍ତ୍ୱ ବୋଲି ବର୍ଣ୍ଣନା କରିଛନ୍ତି; କିନ୍ତୁ ମହିମାଧର୍ମ ବିଶୁଦ୍ଧାଦ୍ୱୈତବାଦ-ମତରେ ଏହା ଚରମତତ୍ତ୍ୱ ନୁହେଁ । ମହିମାଧର୍ମମତାନୁଯାୟୀ ଅଲେଖ ପରଂବ୍ରହ୍ମ, ଯେ କି ଅଦ୍ୱିତୀୟ ବିଶୁଦ୍ଧ ପରମତତ୍ତ୍ୱ ଏହି ଈଶ୍ୱରଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ । ସେହି ଅଲେଖ ପରଂବ୍ରହ୍ମଙ୍କ ଆଭାସ-ଜୀବ (ପୁରୁଷ) କେବଳ ପୁରୁଷବିଶେଷ ଈଶ୍ୱର । ଅଲେଖ ପରଂବ୍ରହ୍ମ ନିର୍ଗୁଣ ଓ ନିର୍ଲିପ୍ତ । ଅତଏବ ସେ ପରଂବ୍ରହ୍ମ ପରମାତ୍ମା ।

ସେହି ପରଂବ୍ରହ୍ମଙ୍କଠାରେ କାୟମନୋବାକ୍ୟରେ ଐକାନ୍ତିକ ଭକ୍ତିଯୁକ୍ତ ହୋଇ ଶରଣାପନ୍ନ ହେବା ଚିତ୍ତସଂଯମର ପ୍ରଧାନ ଉପାୟ ଏବଂ ଏହି ଭକ୍ତିଯୁକ୍ତ ସମାଧି ହିଁ ପରମ ସମାଧି । ଏତଦ୍ଭିନ୍ନ ଅନ୍ୟପ୍ରକାର ସମାଧିଯୋଗର ଅଭ୍ୟାସ ଗୁରୁ ମହିମାସ୍ୱାମୀଙ୍କଦ୍ୱାରା ଉପଦିଷ୍ଟ ହୋଇ ନାହିଁ । କେବଳ ଏକ ବିଶୁଦ୍ଧ ପରଂତତ୍ତ୍ୱ—ଅଲେଖ-ବ୍ରହ୍ମଙ୍କର ଶରଣ, ଦର୍ଶନ, ଭଜନ, ଚିନ୍ତନ ପ୍ରଭୃତିଦ୍ୱାରା ଚିତ୍ତ ସଂଯମ ଓ ସମାଧିପ୍ରଭୃତି ଅବଲମ୍ବନ କରିବା ପନ୍ଥା ମହିମାସମାଜରେ ପ୍ରବର୍ତ୍ତିତ । ଏ ବିଷୟ ଦ୍ୱିତୀୟ ପାଦରେ ସବିସ୍ତର ବର୍ଣ୍ଣିତ ହେବ ।

ବେଦାନ୍ତ ଦର୍ଶନ ।

## ଠ—ବେଦାନ୍ତଦର୍ଶନର ସଂକ୍ଷିପ୍ତ ବିବରଣ ।

ପୂର୍ବେ କୁହାଯାଇଛି ଯେ, ବେଦ ଦୁଇଭାଗରେ ବିଭକ୍ତ—କର୍ମକାଣ୍ଡ ଓ ଜ୍ଞାନକାଣ୍ଡ । ସଂହିତା ଓ ବ୍ରାହ୍ମଣ-ଗ୍ରନ୍ଥମାନଙ୍କରେ ବୈଦିକ କର୍ମ ବା କର୍ମକାଣ୍ଡ ବର୍ଣ୍ଣିତ ; ଆରଣ୍ୟକ ଓ ଉପନିଷଦ୍‌ମାନଙ୍କରେ ପ୍ରତିପାଦ୍ୟ ବିଷୟ ଜ୍ଞାନକାଣ୍ଡ । ପ୍ରକୃତରେ ଜ୍ଞାନକାଣ୍ଡ କେବଳ ବେଦର ଅନ୍ତ ବା ଚରମ ଭାଗ । ଏହି କାରଣରୁ ଆରଣ୍ୟକ ଓ ଉପନିଷଦ୍‌ରେ ପ୍ରଧାନ ପ୍ରତିପାଦ୍ୟ ବିଷୟକୁ ବେଦାନ୍ତ କୁହାଯାଏ ।

ପୂର୍ବ ମୀମାଂସା କର୍ମକାଣ୍ଡାତ୍ମକ ବେଦବିଭାଗର ବ୍ୟାଖ୍ୟା ଓ ବେଦାନ୍ତଦର୍ଶନ ଜ୍ଞାନକାଣ୍ଡାତ୍ମକ ବୈଦିକ ସାହିତ୍ୟର ପୋଷକ । ଅତଏବ ଉତ୍ତର ବୈଦିକ-ସାହିତ୍ୟ-ଉପନିଷଦାଦି ସମ୍ବଳ କରି ବୈଦିକ ଜ୍ଞାନକାଣ୍ଡର ବ୍ୟାଖ୍ୟା କରୁଥିବାରୁ ଏହାର ନାମ ଉତ୍ତରମୀମାଂସା । ଏଥିରେ ବ୍ରହ୍ମଜ୍ଞାନ ମୁଖ୍ୟ ପ୍ରତିପାଦ୍ୟ ବିଷୟ । ଅତଏବ ଏହାର ଅପର ନାମ ବ୍ରହ୍ମସୂତ୍ର । *

* ବେଦାନ୍ତଦର୍ଶନ ବା ବ୍ରହ୍ମସୂତ୍ରର ପ୍ରଣେତା ମହର୍ଷି ବାଦରାୟଣ । ଦେଶପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ପରାଶରତନୟ କୃଷ୍ଣଦ୍ୱୈପାୟନ ବେଦବ୍ୟାସଙ୍କର ଅପର ନାମ ବାଦରାୟଣ । କିନ୍ତୁ ପାଶ୍ଚାତ୍ୟ ବିଦ୍ୱାନ୍‌ମାନଙ୍କ ମତରେ ବାଦରାୟଣ ଓ କୃଷ୍ଣଦ୍ୱୈପାୟନ ସ୍ୱତନ୍ତ୍ର ବ୍ୟକ୍ତି । ପାଣିନିଙ୍କ ୪–୩–୧୧୦ ସୂତ୍ରରେ (ପାରାଶର୍ଯ୍ୟଶିଲାଲିଭ୍ୟାଂ ଭିକ୍ଷୁନଟସୂତ୍ରୟୋଃ) ପାରାଶର୍ଯ୍ୟ ରଚିତ

ଅନ୍ୟାନ୍ୟ ଦର୍ଶନ ପରି ବେଦାନ୍ତଦର୍ଶନର ମଧ୍ୟ ଭିତ୍ତି ଦୁଃଖବାଦ । ବେଦାନ୍ତ-ମତରେ ସଂସାର ଦୁଃଖମୟ । ଶଙ୍କରାଚାର୍ଯ୍ୟ ସଂସାରକୁ ଉତ୍ତାଳତରଙ୍ଗସଙ୍କୁଳ ଆବର୍ତ୍ତରୂପୀ ନକ୍ର-କୁମ୍ଭୀର ଭୀଷଣ ସମୁଦ୍ର ସହିତ ତୁଳନା କରିଛନ୍ତି । ଏହି ସଂସାର-ସମୁଦ୍ରର ଉତ୍ତାଳ ତରଙ୍ଗାଘାତରେ ଜୀବର ସର୍ବଦା ଉତ୍ଥାନ ପତନ ହେଉଅଛି । ଜୀବର ଏହି ଭୀଷଣ ସାଗରରୁ ଉଦ୍ଧାର ପାଇବାନିମନ୍ତେ ଏକମାତ୍ର ଉପାୟ ଏକାତ୍ମ୍ୟ-ବ୍ରହ୍ମଜ୍ଞାନ ।

---

ଗୋଟିଏ ଭିକ୍ଷୁ ସୂତ୍ରର ଉଲ୍ଲେଖ ମିଳେ । ପାରାଶର୍ଯ୍ୟ ପରାଶରଙ୍କ ତନୟ । ତାଙ୍କର ଅପର ନାମ ବେଦବ୍ୟାସ—ଏ ବିଷୟରେ ସନ୍ଦେହ କରିବାରେ କୌଣସି କାରଣ ନାହିଁ । ତୈତ୍ତିରୀୟ ବ୍ରାହ୍ମଣରେ ମଧ୍ୟ ବ୍ୟାସ-ପାରାଶର୍ଯ୍ୟଙ୍କ ସ୍ପଷ୍ଟ ଉଲ୍ଲେଖ ଅଛି । ବାଚସ୍ପତି ମିଶ୍ରଙ୍କ ମତରେ ବ୍ରହ୍ମ-ସୂତ୍ରର ଅପର ନାମ ପାଣିନିଙ୍କ ଭିକ୍ଷୁ ସୂତ୍ର । କାରଣ, ପ୍ରାଚୀନ କାଳରେ ବ୍ରହ୍ମସୂତ୍ରୋକ୍ତ ବେଦାନ୍ତଦର୍ଶନ ସଂସାରତ୍ୟାଗୀ ଚତୁର୍ଥାଶ୍ରମୀଙ୍କ ଆଲୋଚ୍ୟ ବିଷୟ ଥିଲା । ଯେଉଁମାନେ ଚତୁର୍ଥ ଆଶ୍ରମ ଅବଲମ୍ବନ କରୁଥିଲେ ସେମାନଙ୍କ ନାମ ଭିକ୍ଷୁ । ଅତଏବ ବେଦାନ୍ତଦର୍ଶନକୁ ଭିକ୍ଷୁସୂତ୍ର କହିବା ଅସଙ୍ଗତ ନୁହେଁ । ବର୍ତ୍ତମାନ ମଧ୍ୟ ଦେଖାଯାଏ ଯେ, ଏହି ବ୍ରହ୍ମସୂତ୍ର କେବଳ ଭିକ୍ଷୁମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ହୋଇଥିବାରୁ ବୈଦାନ୍ତିକ ସନ୍ନ୍ୟାସୀମାନେ ସଂସାରୀ ଗୃହସ୍ଥମାନଙ୍କୁ ବେଦାନ୍ତଦର୍ଶନ ପଢ଼ାଇବା ନିମନ୍ତେ ଅନିଚ୍ଛୁକ । ଏହିସବୁ କାରଣରୁ ବ୍ରହ୍ମସୂତ୍ରପ୍ରଣେତା ମହର୍ଷି ବାଦରାୟଣଙ୍କୁ ବେଦବ୍ୟାସ କହିବା ଯୁକ୍ତିଯୁକ୍ତ ।

ବ୍ରହ୍ମସୂତ୍ରର ସୂତ୍ରସଂଖ୍ୟା ୫୫୭ । ଏହା ୪ ଅଧ୍ୟାୟରେ ବିଭକ୍ତ; ପ୍ରତ୍ୟେକ ଅଧ୍ୟାୟ ଚତୁଷ୍ପାଦବିଶିଷ୍ଟ । ପ୍ରଥମ ଅଧ୍ୟାୟର ସାଧାରଣ ବିଷୟ ସମନ୍ୱୟ; ଦ୍ୱିତୀୟର ଅବିରୋଧ; ତୃତୀୟର ସାଧନ ଓ ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣିତ ବିଷୟ ଫଳ । ପ୍ରଥମ ଅଧ୍ୟାୟରେ ସ୍ପଷ୍ଟାର୍ଥ, ଅସ୍ପଷ୍ଟାର୍ଥ ଓ ସନ୍ଦିଗ୍ଧାର୍ଥ ଶ୍ରୁତିବାକ୍ୟମାନଙ୍କର ବ୍ରହ୍ମସମନ୍ୱୟ ପ୍ରତିପାଦିତ ହୋଇଅଛି । ଦ୍ୱିତୀୟ ଅଧ୍ୟାୟରେ ଅନ୍ୟାନ୍ୟ ଦାର୍ଶନିକମତର ଦୋଷପ୍ରଦର୍ଶନ ଓ ବେଦ ସହିତ ବେଦାନ୍ତମତର ଅବିରୋଧ ସ୍ଥାପିତ ହୋଇଛି । ତୃତୀୟ ଅଧ୍ୟାୟରେ ଜୀବ ଓ ବ୍ରହ୍ମଙ୍କର (ସଗୁଣ ଓ ନିର୍ଗୁଣର ) ଲକ୍ଷଣ ନିର୍ଦ୍ଦେଶ ଓ ମୁକ୍ତିର ବହିରଙ୍ଗ ଓ ଅନ୍ତରଙ୍ଗ ସାଧନ ଉପଦିଷ୍ଟ ହୋଇଛି । ଚତୁର୍ଥ ଅଧ୍ୟାୟରେ ଜୀବନ୍ମୁକ୍ତି । ଜୀବର ଉତ୍କ୍ରାନ୍ତି ଏବଂ ସଗୁଣ ଓ ନିର୍ଗୁଣ ବ୍ରହ୍ମଙ୍କ ଉପାସନାଫଳର ତାରତମ୍ୟ ବିବେଚିତ ହୋଇଛି । ଏହି ବ୍ରହ୍ମସୂତ୍ରର ବହୁ ପ୍ରକାର ଭାଷ୍ୟ ପ୍ରଚଳିତ; ଶଙ୍କରାଚାର୍ଯ୍ୟଙ୍କର ଶାରୀରକଭାଷ୍ୟ, ରାମାନୁଜଙ୍କର ଶ୍ରୀଭାଷ୍ୟ ଏବଂ ମଧ୍ୱାଚାର୍ଯ୍ୟଙ୍କ ପୂର୍ଣ୍ଣପ୍ରଜ୍ଞଭାଷ୍ୟ ଯଥାକ୍ରମେ ଅଦ୍ୱୈତ, ବିଶିଷ୍ଟାଦ୍ୱୈତ ଓ ଦ୍ୱୈତବାଦ ନାମରେ ପରିଚିତ । ଆନନ୍ଦଗିରି ଓ ବାଚସ୍ପତି ମିଶ୍ର ଶାରୀରକ ଭାଷ୍ୟର ପ୍ରଧାନ ଟୀକାକାର, ବାଚସ୍ପତିଙ୍କ "ଭାମତୀ" ଟୀକା ପ୍ରଖ୍ୟାତ । ସୁଦର୍ଶନଙ୍କ ଶ୍ରୁତପ୍ରକାଶିକାଭାଷ୍ୟର ପ୍ରଧାନ ଟୀକା ବେଦାନ୍ତର ବା ବ୍ରହ୍ମସୂତ୍ରର ଭାଷ୍ୟକାରଙ୍କ ମଧ୍ୟରେ ବିଜ୍ଞାନଭିକ୍ଷୁ, ଭାସ୍କର, ଯାଦବ ମିଶ୍ର ଓ ନିମ୍ବାର୍କ, ବଲ୍ଲଭ, ଶ୍ରୀକଣ୍ଠଙ୍କ ନାମ ଉଲ୍ଲେଖଯୋଗ୍ୟ । ବେଦାନ୍ତଦର୍ଶନର ସାମ୍ପ୍ରଦାୟିକ ଭାଷ୍ୟ ମଧ୍ୟ ବହୁତ ମିଳେ । ନୀଳକଣ୍ଠଙ୍କ ଶୈବଭାଷ୍ୟ ଓ ବେଦାନ୍ତପାରିଜାତ ଏବଂ ବଳଦେବଙ୍କ ଗୋବିନ୍ଦଭାଷ୍ୟ (ବୈଷ୍ଣବ) ମଧ୍ୟ ରଚିତ ହୋଇଛି । ବେଦାନ୍ତଦର୍ଶନର

୦—ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ମାୟା-ପ୍ରକୃତ ଆଦିକାରଣ ନୁହେଁ, ପରଂବ୍ରହ୍ମ କେବଳ ଆଦିକାରଣ ।

ଅଦ୍ୱୈତମତରେ ବ୍ରହ୍ମ କେବଳ ସଦ୍‌ବସ୍ତୁ, ଅନ୍ୟ ସମସ୍ତ ଅସତ୍ । ଏକ ଓ ଅଦ୍ୱିତୀୟ ବ୍ରହ୍ମ ଭିନ୍ନ ଅନ୍ୟ କୌଣସି ବସ୍ତୁ ନାହିଁ । ଅଦ୍ୱୈତମତରେ ଜଗତ୍ ଅସତ୍, କାଳ୍ପନିକ ଓ ମାୟାର ବିଜୃମ୍ଭଣ ମାତ୍ର । ଜାଗତିକ ସକଳ ପଦାର୍ଥ ରଜ୍ଜୁରେ ସର୍ପଜ୍ଞାନ, ଶୁକ୍ତିରେ ରଜତ ବା

ବ୍ୟାଖ୍ୟାଦ୍ୱାରା ବହୁ ସାମ୍ପ୍ରଦାୟିକ ମତ ପ୍ରତିପାଦିତ ହୋଇଛି ; କିନ୍ତୁ ସେଥି ମଧ୍ୟରେ ଅଦ୍ୱୈତ ଓ ବିଶିଷ୍ଟାଦ୍ୱୈତମତ ପ୍ରଧାନ । ଅଦ୍ୱୈତମତର ଶ୍ରୀ ଶଙ୍କରାଚାର୍ଯ୍ୟ ଓ ବିଶିଷ୍ଟାଦ୍ୱୈତର ଶ୍ରୀ ରାମାନୁଜାଚାର୍ଯ୍ୟ ପ୍ରଧାନ; କିନ୍ତୁ ଶଙ୍କରାଚାର୍ଯ୍ୟ ସେହି ମତର ପ୍ରବର୍ତ୍ତକ ନୁହନ୍ତି, କେବଳ ବିଶିଷ୍ଟ ବ୍ୟାଖ୍ୟାତା; କାରଣ ତାଙ୍କ ପୂର୍ବରୁ ମଧ୍ୟ ତାଙ୍କ ଗୁରୁ ଗୌଡ଼ପାଦଙ୍କଦ୍ୱାରା ରଚିତ ମଣ୍ଡୁକ୍ୟୋପନିଷଦର କାରିକାରେ ଅଦ୍ୱୈତମତ ପ୍ରତିପାଦିତ ହୋଇଛି । ଶଙ୍କର ମଧ୍ୟ ସେହି କାରିକା ଉପରେ ଭାଷ୍ୟ ରଚନା କରିଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ଜନ୍ମ ଖ୍ରୀ: ୮ମ ଶତକରେ; ତାଙ୍କ ପୂର୍ବରୁ ଉପବର୍ଷ ଅଦ୍ୱୈତ ମତର ପ୍ରତିଷ୍ଠାତା ଥିଲେ । ଯୋଗବାଶିଷ୍ଠ ଓ ସୂତ ସଂହିତାରେ ମଧ୍ୟ ଏହି ମତ ବିଶ୍ଳେଷିତ ହୋଇଛି । ରାମାନୁଜାଚାର୍ଯ୍ୟ ମଧ୍ୟ ପ୍ରାଚୀନବୋଧାୟନଙ୍କ ଭାଷ୍ୟରୁ ଉଦ୍ଧାରଣ କରି ନିଜ ମତ ସୁପ୍ରତିଷ୍ଠିତ କରିଛନ୍ତି । ରାମାନୁଜଙ୍କ ପୂର୍ବାଚାର୍ଯ୍ୟମାନଙ୍କ ମଧ୍ୟରେ ବୋଧାୟନ, ଟଙ୍କ, ଦ୍ରମିଡ଼, ଗୁହଦେବ, ଭାରୁଚି, କପର୍ଦ୍ଦୀ ଓ ଯମୁନାଚାର୍ଯ୍ୟ ବିଶିଷ୍ଟାଦ୍ୱୈତବାଦର ବିବରଣ କରି ଗ୍ରନ୍ଥମାନ ରଚନା କରିଥିଲେ; କିନ୍ତୁ ଏହି ସବୁ ଗ୍ରନ୍ଥ ବର୍ତ୍ତମାନ ଲୁପ୍ତ । କେବଳ ଯମୁନାଚାର୍ଯ୍ୟଙ୍କ ସିଦ୍ଧି ତ୍ରୟନାମକ ଗ୍ରନ୍ଥ ବର୍ତ୍ତମାନ ପ୍ରକାଶିତ ହେବାଦ୍ୱାରା ଆଶା କରାଯାଏ ଯେ, ଅନ୍ୟାନ୍ୟ ଆଚାର୍ଯ୍ୟମାନଙ୍କର ଗ୍ରନ୍ଥର ଉଦ୍ଧାର ସାଧନ ହୋଇପାରେ । ଏହିପରି ଆଚାର୍ଯ୍ୟ-ପରମ୍ପରାକ୍ରମେ ବିଶିଷ୍ଟାଦ୍ୱୈତମତ ପ୍ରଚଳିତ ଥିଲା । ଏଥିରୁ ପ୍ରମାଣିତ ହୁଏ ଯେ, ରାମାନୁଜ ଖ୍ରୀ: ୧୨ଶ ଶତକର ହେଲେ ମଧ୍ୟ ତତ୍‌ପୂର୍ବରୁ ବିଶିଷ୍ଟାଦ୍ୱୈତମତ ପ୍ରଚଳିତ ଥିଲା ଓ ଏହା ସୁପ୍ରାଚୀନ । ଏହି ମତକୁ ସୁଗମ କରିବା ନିମନ୍ତେ କେବଳ ରାମାନୁଜ ବେଦାର୍ଥସଂଗ୍ରହ, ବେଦାନ୍ତଦୀପ, ବେଦାନ୍ତସାର ପର୍ଯ୍ୟନ୍ତ ପ୍ରଭୃତି ଗ୍ରନ୍ଥ ରଚନା କରିଥିଲେ । ଏହା ସବୁ ବର୍ତ୍ତମାନ ବିଶିଷ୍ଟାଦ୍ୱୈତବାଦୀଙ୍କର ଉପଜୀବ୍ୟ ଗ୍ରନ୍ଥ, ରାମାନୁଜଙ୍କର ଅନ୍ୟ ଏକ ବେଦାନ୍ତ ତତ୍ତ୍ୱସାରନାମକ ଗ୍ରନ୍ଥ ମଧ୍ୟ ଉଲ୍ଲେଖଯୋଗ୍ୟ ।

ଅଦ୍ୱୈତମତକୁ ବିଶଦ କରିବା ନିମନ୍ତେ ଅଦ୍ୱୈତମତାବଲମ୍ବୀ ବହୁ ପଣ୍ଡିତ ଶଙ୍କରାଚାର୍ଯ୍ୟଙ୍କର ପଦାଙ୍କ ଅନୁସରଣ କରିଛନ୍ତି ଓ ବହୁ ପ୍ରକରଣ ଗ୍ରନ୍ଥ ଲେଖିଛନ୍ତି । ସେଥିରୁ ପଞ୍ଚଦଶୀ, ଅଦ୍ୱୈତବ୍ରହ୍ମସିଦ୍ଧି, ତତ୍ତ୍ୱ ସୁଖୀ, ପଞ୍ଚପାଦିକା, ଖଣ୍ଡନଖଣ୍ଡଖାଦ୍ୟ, ବେଦାନ୍ତ-ପରିଭାଷା, ବେଦାନ୍ତସିଦ୍ଧାନ୍ତମୁକ୍ତାବଳୀ ଓ ବେଦାନ୍ତସାର ମୁଖ୍ୟ । ଅଦ୍ୱୈତ ଓ ବିଶିଷ୍ଟାଦ୍ୱୈତବାଦ ମଧ୍ୟରେ ବହୁ ବିପ୍ରତିପନ୍ନ ମତ ଦେଖାଯାଏ । ଶାରୀରକ ଭାଷ୍ୟରେ କେବଳ ଉପନିଷଦ୍ ଶ୍ରୁତିପ୍ରମାଣସ୍ୱରୂପରେ ଗୃହୀତ ହୋଇଅଛି; ଅନ୍ୟାନ୍ୟ ମତାଶ୍ରୟୀ ଭାଷ୍ୟରେ ପୁରାଣବଚନ ମଧ୍ୟ ପ୍ରମାଣସ୍ୱରୂପରେ ଗ୍ରହଣ କରାଯାଇଛି; କିନ୍ତୁ ଏ ସମସ୍ତ ବାଦର ଯାହା ସାର ଓ ବିଶୁଦ୍ଧ ତତ୍ତ୍ୱ, ସେ ସବୁ ଏହି ମହିମାଧର୍ମ ଦର୍ଶନରେ ବର୍ଣ୍ଣିତ ହୋଇଅଛି ।

ମରୀଚିକାରେ ଜଳଜ୍ଞାନ ଭଳି ମିଥ୍ୟା । ଇନ୍ଦ୍ରଜାଲ ପରି ବ୍ରହ୍ମ ସତ୍ୟର ଏହା ଭ୍ରାନ୍ତଜ୍ଞାନ । ଏହା ସବୁ ବ୍ରହ୍ମର ଚିନ୍ମୟୀ ଲୀଳାର ବିଳାସ; ବିଜ୍ଞାନାତିରିକ୍ତ ଅନ୍ୟ କୌଣସି ଦ୍ରବ୍ୟର ସତ୍ତା ନାହିଁ; କିନ୍ତୁ ବିଶିଷ୍ଟାଦ୍ୱୈତ ମତ ଅନୁସାରେ ଜଗତ୍ ସଦ୍‌ବସ୍ତୁ; ଜଗତ୍ ବ୍ରହ୍ମ ପରତନ୍ତ୍ର ସତ୍, ବ୍ରହ୍ମଙ୍କ ଅଧୀନ, ବ୍ରହ୍ମଙ୍କର ପ୍ରକାର ସ୍ୱରୂପରେ ସତ୍; ଜଗତ୍ ମିଥ୍ୟା ବା କାଳ୍ପନିକ ନୁହେଁ । ଏହି ମତରେ ଜଗତ୍ ପ୍ରକୃତିର ପରିଣାମରେ ଗଠିତ, ବିକାରଜନିତ ବାସ୍ତବ ପଦାର୍ଥ । ନିର୍ବିକାର ବ୍ରହ୍ମଙ୍କ ତୁଳନାରେ ଅସତ୍ ହେଲେ ମଧ୍ୟ ଜଗତ୍ ବିଜ୍ଞାନମାତ୍ର ନୁହେଁ । ଜଗତର ସ୍ୱତନ୍ତ୍ର ସତ୍ତା ଅଛି; କିନ୍ତୁ ଏପରି ମତଦ୍ୱୈଧ ପରିଲକ୍ଷିତ ହେଲେ ମଧ୍ୟ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ସବୁ ଜଗତର ମୂଳବୀଜସ୍ୱରୂପରେ କେବଳ ଏକ ଓ ଅଦ୍ୱିତୀୟ ପରଂବ୍ରହ୍ମଙ୍କୁ ସ୍ୱୀକାର କରେ । ସେହି ବ୍ରହ୍ମଙ୍କ ମହିମାରୁ ନିଖିଳ ଜଗତ୍ ଉତ୍ପନ୍ନ । ସେହି ପରଂବ୍ରହ୍ମଙ୍କ ଭିନ୍ନ ଦ୍ୱିତୀୟ ଅଧିଷ୍ଠାତା ବା ଉତ୍ପତ୍ତି-ସ୍ଥିତି-ଲୟକର୍ତ୍ତା ଅନ୍ୟ କେହି ନାହିଁ । ଏ ବିଷୟରେ ଗୀତାରେ ମଧ୍ୟ ଉକ୍ତ ଅଛି— "ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍ ।" ଗୀତା-୯-୧୮ । ଅର୍ଥାତ୍ ସେ ଜଗତର ଅକ୍ଷୟ ବୀଜ; ତାହାଙ୍କଠାରୁ ଜଗତର ଉତ୍ପତ୍ତି, ତାହାଙ୍କଦ୍ୱାରା ସ୍ଥିତି ଓ ଲୟ ହେଉଛି । ସେହି ଜଗତର ନିଧାନ, ଅର୍ଥାତ୍ ଆଧାର ଓ ଆଶ୍ରୟ । * ଏହି ଭାବକୁ ଲକ୍ଷ୍ୟ କରି ପୁରାଣାଦିରେ ଜଗତ୍‌ର ଆବିର୍ଭାବକାଳକୁ ବ୍ରହ୍ମାଙ୍କର ଦିବା ଓ ତିରୋଭାବକାଳକୁ (ଯେଉଁ ସମୟରେ ଜଗତ୍ ଅବ୍ୟକ୍ତାବସ୍ଥାରେ ଥାଏ ) ରାତ୍ରି କୁହାଯାଏ । ବ୍ରହ୍ମାଙ୍କର ରାତ୍ରିକାଳରେ ଜଗତ୍‌ର ପ୍ରଳୟ ଏବଂ ଦିବାରେ ଜଗତର ସୃଷ୍ଟି ବୋଲି ବର୍ଣ୍ଣିତ ହୋଇଛି । ଗୀତା ମଧ୍ୟ ଉକ୍ତ ବିଷୟ ସମର୍ଥନ କରେ—

ଅବ୍ୟକ୍ତାଦ୍ ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତ୍ୟହରାଗମେ ।
ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବାବ୍ୟକ୍ତସଂଜ୍ଞକେ ॥
ଭୂତଗ୍ରାମଃ ସ ଏବାୟଂ ଭୂତ୍ୱା ଭୂତ୍ୱା ପ୍ରଲୀୟତେ ।
ରାତ୍ର୍ୟାଗମେଽବଶଃ ପାର୍ଥ ପ୍ରଭବତ୍ୟହରାଗମେ । ଗୀତା-୮ । ୧୮-୧
ସର୍ବଭୂତାନି କୌନ୍ତେୟ ପ୍ରକୃତିଂ ଯାନ୍ତି ମାମିକାମ୍
କଳ୍ପକ୍ଷୟେ ପୁନସ୍ତାନି କଳ୍ପାଦୌ ବିସୃଜାମ୍ୟହମ୍ ॥
ପ୍ରକୃତିଂ ସ୍ୱାମବଷ୍ଟଭ୍ୟ ବିସୃଜାମି ପୁନଃ ପୁନଃ ।
ଭୂତଗ୍ରାମମିମଂ କୃତ୍ସ୍ନମବଶଂ ପ୍ରକୃତେର୍ବଶାତ୍ । ଗୀତା ୯।୭-୮ ।

* ଶାସ୍ତ୍ରରେ ଉଲ୍ଲେଖ ମିଳେ—

ଯତୋ ଭୂତାନି ଜାୟନ୍ତେ ଯେନ ଜୀବନ୍ତି ସର୍ବତଃ ।
ଯସ୍ମିଂଶ୍ଚ ବିଲୟଂ ଯାନ୍ତି ନମସ୍ତସ୍ମୈ ପରାତ୍ମନେ ॥

ଅର୍ଥାତ୍ ଯାହାଙ୍କଠାରୁ ଭୂତସମୂହର ଉତ୍ପତ୍ତି, ଯାହାଙ୍କଦ୍ୱାରା ସେମାନଙ୍କର ସ୍ଥିତି ଏବଂ ଯହିଁରେ ଲୟ ସେହି ପରମାତ୍ମାଙ୍କୁ ନମସ୍କାର ।

ପ୍ରଳୟର ଅବସାନରେ ଅବ୍ୟକ୍ତ ପ୍ରକୃତିରୁ ବ୍ୟକ୍ତ ଜଗତର ଆବିର୍ଭାବ ହୁଏ ଏବଂ ସୃଷ୍ଟିର ଅବସାନରେ ବ୍ୟକ୍ତ ଜଗତର ଅବ୍ୟକ୍ତ ପ୍ରକୃତିରେ ତିରୋଭାବ ହୁଏ । ସେହି ଭୂତସମୂହ ବାରମ୍ବାର ଉତ୍ପନ୍ନ ହୋଇ ରାତ୍ରି ସମାଗମରେ ଅସ୍ୱତନ୍ତ୍ରଭାବରେ ବିଲୀନ ହୁଏ ଓ ବିଲୀନ ରହି ଦିବସାଗମରେ ପୁନର୍ବାର ଉଦ୍ଭୂତ ହୁଏ ।

କଳ୍ପାନ୍ତରରେ ସକଳଭୂତ ଆମ୍ଭର (ପରମେଶ୍ୱରଙ୍କର) ତ୍ରିଗୁଣମୟୀ ପ୍ରକୃତିକୁ ପ୍ରାପ୍ତ ହୁଅନ୍ତି । ପୁନଶ୍ଚ ସୃଷ୍ଟିକାଳରେ ସେମାନଙ୍କୁ ଉତ୍ପାଦନ କରନ୍ତି । ଏହି ସମସ୍ତ ଅବଶ୍ୟ, ପ୍ରକୃତିର ବଶ୍ୟତାପନ୍ନ ଭୂତଗ୍ରାମକୁ ପରମେଶ୍ୱର ସ୍ୱୀୟ ପ୍ରକୃତିରେ ଅଧିଷ୍ଠାନ କରି ପୁନଃ ପୁନଃ ସୃଷ୍ଟି କରନ୍ତି । କୌଣସି କୌଣସି ସ୍ଥଳରେ ଏହି ପ୍ରକୃତିକୁ ମାୟାନାମରେ ମଧ୍ୟ ବର୍ଣ୍ଣନା କରିଯାଇଛି । ବସ୍ତୁତଃ ସେହି ମାୟା ବା ପ୍ରକୃତି ଜଗତର ମୂଳ ଅବ୍ୟକ୍ତ କାରଣ ନୁହେଁ । କେବଳ ଏକ ପରଂବ୍ରହ୍ମଙ୍କ ତେଜରୁ ସମସ୍ତ ଜଗତ୍ ପ୍ରାଦୁର୍ଭୂତ ହୋଇଅଛି । ସେହି ଏକ ପରଂବ୍ରହ୍ମ କେବଳ ବିଶୁଦ୍ଧ ଅଦ୍ୱୈତତତ୍ତ୍ୱ—ଏହା ଶ୍ରୁତି ବଚନ ଓ ଗୁରୁବାକ୍ୟସମ୍ମିଳିତ ପ୍ରମାଣରୁ ସର୍ବଦର୍ଶନର ଶୀର୍ଷସ୍ଥାନ ଅଧିକାର କରିଅଛି । ପୂର୍ବରୁ ବର୍ଣ୍ଣିତ ସକଳ ଭୌତିକତତ୍ତ୍ୱ ଅନାମୟ ବ୍ରହ୍ମତତ୍ତ୍ୱରୁ ଭିନ୍ନ—ଏ କଥା ସେହି ସେହି ସ୍ଥଳରେ ବର୍ଣ୍ଣନା କରିଯାଇଛି । ବର୍ତ୍ତମାନ ବିଚାର୍ଯ୍ୟ-ବିଷୟ ଏହି ଯେ, ପ୍ରକୃତି ବା ମାୟା ସୃଷ୍ଟିର କାରଣ ହୋଇପାରେ କି ନାହିଁ । ଏ ବିଷୟର ବିଶେଷତ୍ୱ ବା କ'ଣ । ଏ ବିଷୟରେ ବେଦାନ୍ତର ଅଭିମତ ଏହି ପ୍ରକାରେ—

ମାୟାଂ ତୁ ପ୍ରକୃତିଂ ବିଦ୍ୟାତ୍ ମାୟିନନ୍ତୁ ମହେଶ୍ୱରମ୍ ।
ତସ୍ୟାବୟବଭୂତୈସ୍ତୁ ବ୍ୟାପ୍ତଂ ସର୍ବମିଦଂ ଜଗତ୍ ॥

ଶ୍ୱେତାଶ୍ୱତର ଉ: ୪।୧୦ ।

ସଚ୍ଚିଦାନନ୍ଦବିଗ୍ରହ ଅଦ୍ୱିତୀୟ ଜଗତ୍କାରଣ-ପରଂବ୍ରହ୍ମଙ୍କ ତେଜ ମାୟାବିଶିଷ୍ଟ ହୋଇ ସକଳ ପରିଦୃଶ୍ୟମାନ ଜଗତରେ ବ୍ୟାପି ରହିଅଛି । ତାଙ୍କର ସେହି ମାୟାକୁ ପ୍ରକୃତି ବୋଲାଯାଏ । ସେହି ପରମେଶ୍ୱର ଯେତେବେଳେ ପ୍ରକୃତିବିଶିଷ୍ଟ ହୁଅନ୍ତି, ସେତେବେଳେ ତାହାଙ୍କୁ ମାୟାଧୀଶ ବୋଲାଯାଏ । ସେହି ମାୟାବିଶିଷ୍ଟ ପରମପୁରୁଷ କଳ୍ପିତ ଅବୟବଦ୍ୱାରା ଅଶେଷ ଭୁବନ ବ୍ୟାପ୍ତି ରହି ଅଛନ୍ତି । ଭ୍ରମବଶତଃ ରଜ୍ଜୁରେ ସର୍ପଜ୍ଞାନ ହୁଏ; କିନ୍ତୁ ସେହି ଭ୍ରାନ୍ତି ଦୂର ହୋଇଗଲେ ଆଉ ସର୍ପବୋଲି ଜ୍ଞାନ ରହେ ନାହିଁ ; ସେହିପରି ମାୟାବଶତଃ ପରମେଶ୍ୱରଙ୍କର ଅବୟବାଦି କଳ୍ପିତ ହୋଇଥାଏ ; ପରେ ମାୟାର ଅବସାନ ହେଲେ କେବଳ ସେହି ଚିଦାନନ୍ଦସ୍ୱରୂପ ବ୍ରହ୍ମଭିନ୍ନ ଅନ୍ୟ କିଛି ପ୍ରଣୀତ ହୁଏ ନାହିଁ ।

ଯୋ ଯୋନିଂ ଯୋନିଂ ଅଧିତଷ୍ଠତ୍ୟେକୋ ଯସ୍ମିନ୍ନିଦଂ ସ ଚ
ବିଚୈତି ସର୍ବମ୍ ।                    ଶ୍ୱେତାଶ୍ୱତର: ଉ: ୧୧ ।

ମାୟା ଓ ମାୟାର କାର୍ଯ୍ୟସ୍ୱରୂପ ଏହିପରି ଦୃଶ୍ୟମାନ ଜଗତର କାରଣ ସେହି କୂଟସ୍ଥ ବ୍ରହ୍ମ । ସେ ନିଜ ଶକ୍ତିଦ୍ୱାରା ଅନନ୍ତବ୍ରହ୍ମାଣ୍ଡ ବ୍ୟାପି ରହିଛନ୍ତି । ଏ ବିଷୟରେ ଗୀତାବଚନ—

ପ୍ରକୃତିଂ ସ୍ୱାମବଷ୍ଟଭ୍ୟ ବିସୃଜାମି ପୁନଃ ପୁନଃ ।
ଭୂତଗ୍ରାମମିମଂ କୃତ୍ସ୍ନମବଶଂ ପ୍ରକୃତେର୍ବଶାତ୍ ।।     ଗୀତା ୯—୮ ।

ଅର୍ଥାତ୍ ଆମ୍ଭେ ସ୍ୱୀୟ ସ୍ୱୀକୃତିରେ ଅଧିଷ୍ଠାନ କରି (ଆତ୍ମବିଦ୍ୟା ବିସ୍ମରଣ ହେତୁରୁ କର୍ମନିମନ୍ତେ) ସ୍ୱଭାବତଃ କର୍ମାଦିପରବଶ ଏହି ସମସ୍ତ ଭୂତର ପୁନଃ ପୁନଃ ସୃଷ୍ଟି କରୁଁ । ଆହୁରି ମଧ୍ୟ ଏହି ମାୟାକୁ ଲକ୍ଷ୍ୟ କରି କହିଅଛନ୍ତି—

ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।
ଗୀତା ୭—୧୪

ସତ୍ତ୍ୱାଦିଗୁଣ-ବିକାରମୟୀ ଏହି ଆମ୍ଭର ମାୟା ନିଶ୍ଚୟ ଦୁସ୍ତର; ଯେଉଁମାନେ (ଅବ୍ୟଭିଚାରିଣୀ ଭକ୍ତିଦ୍ୱାରା ବ୍ରହ୍ମ ଚୈତନ୍ୟରୂପରେ) ଆମ୍ଭର ଶରଣାପନ୍ନ ହୁଅନ୍ତି, ସେମାନେ ଏହି ଦୁସ୍ତର ମାୟାକୁ ଅତିକ୍ରମ କରନ୍ତି । ଏହିପରି ପ୍ରକୃତି ଓ ମାୟାର ବିବରଣ ଗୀତା ଓ ଭାଗବତାଦି ପ୍ରାଚୀନ ଗ୍ରନ୍ଥର ସ୍ଥାନେ ସ୍ଥାନେ ବ୍ୟାଖ୍ୟା କରାଯାଇଛି; କିନ୍ତୁ ପ୍ରକୃତପକ୍ଷରେ ମାୟା ବା ପ୍ରକୃତି ଜଗତର ଆଦିକାରଣ ନୁହେଁ । ମାୟା ଏକ ଅଘଟନ ଘଟନା-ପଟୀୟସୀ ଅନିର୍ବଚନୀୟା ସଦସଦ୍ରୂପା ଶକ୍ତି । ଏସମ୍ବନ୍ଧରେ ଉକ୍ତ ଅଛି—

"ଅଜାମେକାଂ ଲୋହିତଶୁକ୍ଳକୃଷ୍ଣାଂ
ବହ୍ୱୀଃ ପ୍ରଜାଃ ସୃଜମାନାଂ ସ୍ୱରୂପାମ୍ ।
ଅଜୋ ହ୍ୟେକୋ ଜୁଷମାଣୋଽନୁଶେତେ
ଜହାତ୍ୟେନାଂ ଭୁକ୍ତଭୋଗାମଜୋଽନ୍ୟଃ ।
ଶ୍ୱେତାଶ୍ୱତର: ଉ: ୪—୫

ଜନ୍ମରହିତା ତ୍ରିଗୁଣମୟୀ (ସତ୍ତ୍ୱରଜସ୍ତମୋମୟୀ) ବହୁପ୍ରଜାସୃଷ୍ଟିକାରିଣୀ ଅଜାକୁ (ମାୟାକୁ) ଏକ ଅଜ (ମାୟାଧୀନ ଜୀବ) ସ୍ୱରୂପ ବା ଆତ୍ମୀୟଜ୍ଞାନ କରି ଓ ତନ୍ନିମିତ୍ତରେ ଆକାଙ୍କ୍ଷିତ ରହି ତଦଗତ ସୁଖ-ଦୁଃଖାଦି ଭୋଗ କରେ ଏବଂ ଅନ୍ୟ ଅଜ (ମାୟାଧୀଶ ଈଶ୍ୱର) ଭୁକ୍ତ ଓ ଭୋଗ୍ୟ ଏହି ମାୟାକୁ ପରିତ୍ୟାଗ କରି ସ୍ୱ-ସ୍ୱରୂପରେ ଅବସ୍ଥିତ ରହେ ।

"ଅନାଦିରନ୍ତର୍ବର୍ତ୍ତୀ ପ୍ରମାଣାପ୍ରମାଣସାଧାରଣା ନ ସତୀ ନାସତୀ ନ ସଦସତୀ ସ୍ୱୟମବିକାରାଦ୍ ବିକାରହେତୌ ନିରୂପ୍ୟମାଣେଽସତୀ । ଅନିରୂପ୍ୟମାଣେ ସତୀ ଲକ୍ଷଣଶୂନ୍ୟା ସା ମାୟେତ୍ୟୁଚ୍ୟତେ ।

ସର୍ବୋପନିଷତ୍‌ସାର । ୪ ।

ଅର୍ଥାତ୍ ଅନାଦି, ଅନ୍ତର୍ବର୍ତ୍ତୀ, ଅର୍ଥାତ୍ କାର୍ଯ୍ୟୋତ୍ପାଦନରେ ସମର୍ଥା, ଯାହା ପ୍ରମାଣ ଓ ଅପ୍ରମାଣ ସାଧାରଣ; ଯାହା ସତ୍ୟ ନୁହେଁ ବା ଅସତ୍ୟ ନୁହେଁ, କିମ୍ବା ସତ୍ ବା ଅସଦ୍ରୂପୀ ବୋଲି ନିର୍ଦ୍ଧାରିତ ହୋଇପାରେ ନାହିଁ । କାରଣ ଦୁଇଗୋଟି ବିରୋଧୀ ପଦାର୍ଥ ଏକତ୍ର ଅବସ୍ଥାନ କରି ପାରେ ନାହିଁ ; ଯେ ଲକ୍ଷଣ ଶୂନ୍ୟ ତାହାର ନାମ ମାୟା । ବ୍ରହ୍ମ ସ୍ୱୟଂ ଅବିକାରୀ; କିନ୍ତୁ ମାୟା ସମସ୍ତବିକାରର ହେତୁ—ଏପରି ନିରୂପିତ ହେଲେ ମାୟା ଅସତ୍ତା ବୋଲି ନିର୍ଦ୍ଦିଷ୍ଟ ହୁଏ । ଯେଉଁ ସମୟ ପର୍ଯ୍ୟନ୍ତ ମାୟା ବିକାରର ହେତୁ ବୋଲି ନିରୂପିତ ହୁଏ ନାହିଁ, ସେ ପର୍ଯ୍ୟନ୍ତ ସେ ସତ୍ତା । ସୁତରାଂ ତାହାର କୌଣସି ଲକ୍ଷଣ ନାହିଁ, ଅର୍ଥାତ୍ ଏପରି ବୋଲି ତାକୁ ନିର୍ଣ୍ଣୟ କରାଯାଇ ପାରେ ନାହିଁ; ଅତଏବ ଏହିସବୁ ଲକ୍ଷଣବିଶିଷ୍ଟା ମାୟା ବୋଲି ଧରିଯିବ ।

ଏହିପରି ବେଦାନ୍ତ ଉପନିଷଦାଦି ଗ୍ରନ୍ଥରେ ସ୍ଥାନେ ସ୍ଥାନେ ସୃଷ୍ଟିପ୍ରକ୍ରିୟାବର୍ଣ୍ଣନ-ସ୍ଥଳରେ ମାୟା ବା ପ୍ରକୃତିର ସାଧାରଣ ବର୍ଣ୍ଣନା ଦେଖିବାକୁ ମିଳେ । ଶଙ୍କରାଚାର୍ଯ୍ୟପ୍ରଭୃତି ବେଦାନ୍ତୀମାନେ ଉପର୍ଯ୍ୟୁକ୍ତଭାବରେ ସୃଷ୍ଟିତତ୍ତ୍ୱର କାରଣରୂପରେ ମାୟାକୁ ଉତ୍ପତ୍ତିପ୍ରକ୍ରିୟାର ଆଦିସ୍ଥାନ ବୋଲି ସେମାନଙ୍କ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ଠ—ଚତୁର୍ବିଂଶତିତତ୍ତ୍ୱର ବିବରଣ—

"ଅଥ ଚତୁର୍ବିଂଶତିତତ୍ତ୍ୱୋତ୍ପତ୍ତିପ୍ରକାରଂ ବକ୍ଷ୍ୟାମଃ । ବ୍ରହ୍ମାଶ୍ରୟା ସତ୍ତ୍ୱରଜସ୍ତମୋଗୁଣାତ୍ମିକା ମାୟାଽସ୍ତି । ତତ ଆକାଶଃ ସମ୍ଭୂତଃ, ଆକାଶାଦ୍ ବାୟୁଃ, ବାୟୋସ୍ତେଜଃ, ତେଜସ ଆପଃ, ଅଦ୍ଭ୍ୟଃ ପୃଥିବୀ ॥"

ତତ୍ତ୍ୱବୋଧ ୩୫ ।

ବର୍ତ୍ତମାନ ସୃଷ୍ଟିତତ୍ତ୍ୱସମ୍ବନ୍ଧୀ ଚତୁର୍ବିଂଶତତତ୍ତ୍ୱୋତ୍ପତ୍ତି ପ୍ରକାର ବର୍ଣ୍ଣନା କରାଯାଉଅଛି । ବ୍ରହ୍ମଙ୍କ ଆଶ୍ରୟ ଓ ସତ୍ତ୍ୱରଜସ୍ତମୋରୂପ ତ୍ରିଗୁଣମୟୀ ଶକ୍ତିକୁ ମାୟା କୁହାଯାଏ । ପ୍ରଥମେ ସେହି ମାୟାଠାରୁ ଆକାଶ ସମ୍ଭୂତ । ଆକାଶରୁ ବାୟୁ, ବାୟୁରୁ ତେଜ, ତେଜରୁ ଜଳ ଏବଂ ଜଳରୁ ପୃଥିବୀ ଉତ୍ପନ୍ନ ହୋଇଅଛି ।

**ଏତେଷାଂ ପଞ୍ଚତତ୍ତ୍ୱାନାଂ ମଧ୍ୟେ ଆକାଶସ୍ୟ ସାତ୍ତ୍ୱିକାଂଶାତ୍ ଶ୍ରୋତ୍ରେନ୍ଦ୍ରିୟଂ ସମ୍ଭୂତମ୍; ବାୟୋଃ ସାତ୍ତ୍ୱିକାଂଶାତ୍ ତ୍ୱଗିନ୍ଦ୍ରିୟଂ ସମ୍ଭୂତମ୍ ଅଗ୍ନେଃ ସାତ୍ତ୍ୱିକାଂଶାତ୍ ଚକ୍ଷୁରିନ୍ଦ୍ରିୟଂ ସମ୍ଭୂତମ୍; ଜଳସ୍ୟ ସାତ୍ତ୍ୱିକାଂଶାତ୍ ରସେନ୍ଦ୍ରିୟଂ ସମ୍ଭୂତମ୍; ପୃଥିବ୍ୟାଃ ସାତ୍ତ୍ୱିକାଂଶାତ୍ ଘ୍ରାଣେନ୍ଦ୍ରିୟଂ ସମ୍ଭୂତମ୍ ; ଏତେଷାଂ ପଞ୍ଚତତ୍ତ୍ୱାନାଂ ସମଷ୍ଟି ସାତ୍ତ୍ୱିକାଂଶାତ୍ ମନୋବୁଦ୍ଧ୍ୟ- ହଂକାରଚିତ୍ତାନ୍ତଃକରଣାନି ସମ୍ଭୂତାନି । ୩୭ ।**

ପୂର୍ବୋକ୍ତ ଆକାଶାଦି ପଞ୍ଚତତ୍ତ୍ୱମଧ୍ୟରୁ ଆକାଶର ସାତ୍ତ୍ୱିକାଂଶରୁ ଶ୍ରୋତ୍ରେନ୍ଦ୍ରିୟ ଓ ବାୟୁର ସାତ୍ତ୍ୱିକାଂଶରୁ ତ୍ୱଗିନ୍ଦ୍ରିୟ ସମ୍ଭୂତ । ସେହିପରି ଅଗ୍ନିର ସାତ୍ତ୍ୱିକାଂଶରୁ ଚକ୍ଷୁରିନ୍ଦ୍ରିୟ, ଜଳର ସାତ୍ତ୍ୱିକାଂଶରୁ ରସେନ୍ଦ୍ରିୟ ଓ ପୃଥିବୀର ସାତ୍ତ୍ୱିକାଂଶରୁ ଘ୍ରାଣେନ୍ଦ୍ରିୟ ସମ୍ଭୂତ ହୋଇଅଛି । ପୁନର୍ବାର—ଏହି ପଞ୍ଚତତ୍ତ୍ୱର ସମଷ୍ଟିର ସାତ୍ତ୍ୱିକାଂଶରୁ ମନ, ବୁଦ୍ଧି, ଅହଂକାର ଓ ଚିତ୍ତରୂପକ ଅନ୍ତଃକରଣ ଉଦ୍ଭୂତ ହୋଇଛି ।

**ସଂକଳ୍ପବିକଳ୍ପାତ୍ମକଂ ମନଃ । ନିଶ୍ଚୟାତ୍ମିକା ବୁଦ୍ଧିଃ; ଅହଂକର୍ତ୍ତା ଅହଙ୍କାରଃ ; ଚିନ୍ତନକର୍ତ୍ତୃ ଚିତ୍ତମ୍ । ମନସୋ ଦେବତା ଚନ୍ଦ୍ରମାଃ ; ବୁଦ୍ଧେର୍ବ୍ରହ୍ମା ; ଅହଙ୍କାରସ୍ୟ ରୁଦ୍ରଃ । ଚିତ୍ତସ୍ୟ ବାସୁଦେବଃ । ୩୭ ।**

ବର୍ତ୍ତମାନ ଅନ୍ତଃକରଣର ବ୍ୟାଖ୍ୟା କରାଯାଉଛି—ଅନ୍ତଃକରଣ ଏକ ହେଲେ ମଧ୍ୟ ବୃତ୍ତିଭେଦରେ ୪ ପ୍ରକାର—ଯେଉଁ କର୍ମରେ ସଂକଳ୍ପ ବିକଳ୍ପଭାବ, ଅର୍ଥାତ୍ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟର ସଂଶୟ ରହେ, ସେହି ବୃତ୍ତିର ନାମ ମନ; କିନ୍ତୁ ଯାହାଦ୍ୱାରା ସେପରି ସଂଶୟ ଦୂର ହୋଇ ନିଶ୍ଚୟରୂପରେ ଅର୍ଥର ଦୃଢ଼ଜ୍ଞାନ ହୁଏ ତାହାର ନାମ ବୁଦ୍ଧି । ଯେତେବେଳେ ନିଜର ଅଭିମାନହେତୁରୁ କର୍ତ୍ତୃଭାବ ଉଦିତ ହୁଏ, ସେତେବେଳେ ତାହାର ନାମ ଅହଂକାର । ଯଦ୍ଦ୍ୱାରା ନିର୍ଦ୍ଦିଷ୍ଟ ବସ୍ତୁର ସ୍ମରଣ ଓ ଚିନ୍ତନାଦି କରାଯାଏ, ତାହାର ନାମ ଚିତ୍ତ । ମନର ଦେବତା ଚନ୍ଦ୍ର ; ବୁଦ୍ଧିର ବ୍ରହ୍ମା, ଅହଂକାରର ରୁଦ୍ର ଏବଂ ଚିତ୍ତର ଦେବତା ବାସୁଦେବ ।

**ଏତେଷାଂ ପଞ୍ଚତତ୍ତ୍ୱାନାଂ ମଧ୍ୟେ ଆକାଶସ୍ୟ ରାଜସାଂଶାତ୍ ବାଗିନ୍ଦ୍ରିୟଂ ସମ୍ଭୂତମ୍ । ବାୟୋଃ ରାଜସାଂଶାତ୍ ପାଣୀନ୍ଦ୍ରିୟଂ ସମ୍ଭୂତମ୍ । ବହ୍ନେଃ ରାଜସାଂଶାତ୍ ପାଦେନ୍ଦ୍ରିୟଂ ସମ୍ଭୂତମ୍ । ଜଳସ୍ୟ ରାଜସାଂଶାଦୁପସ୍ଥେନ୍ଦ୍ରିୟଂ ସମ୍ଭୂତମ୍ । ପୃଥିବ୍ୟାଃ ରାଜସାଂଶାତ୍ ଗୁଦେନ୍ଦ୍ରିୟଂ ସମ୍ଭୂତମ୍ । ଏତେଷାଂ ପଞ୍ଚଭୂତାନାଂ ସମଷ୍ଟିରାଜସାଂଶାତ୍ ପଞ୍ଚପ୍ରାଣାଃ ସମ୍ଭୂତାଃ । ୩୮ ।**

ପୂର୍ବୋକ୍ତ ପଞ୍ଚତତ୍ତ୍ୱ ମଧ୍ୟରୁ ଆକାଶର ରାଜସଅଂଶରୁ ବାଗିନ୍ଦ୍ରିୟ, ବାୟୁର ରାଜସ-ଗୁଣଅଂଶରୁ ପାଣି ବା ହସ୍ତ । ଅଗ୍ନିର ରଜୋଗୁଣ ଅଂଶରୁ ପାଦ ଓ ଜଳର ରଜୋଗୁଣ ଅଂଶରୁ ଉପସ୍ଥ ଏବଂ ପୃଥିବୀର ରଜୋଗୁଣ ଅଂଶରୁ ଗୁଦା ଉତ୍ପନ୍ନ ହୋଇଅଛି । ପୁଣି, ଏହି ପଞ୍ଚତତ୍ତ୍ୱସମୂହର ରଜୋଗୁଣ ଅଂଶରୁ ପଞ୍ଚପ୍ରାଣ ଜାତ ହୋଇଛନ୍ତି । ଏହିପରି ପଞ୍ଚତତ୍ତ୍ୱସ୍ଥ ସତ୍ତ୍ୱଗୁଣର ରଜୋଗୁଣରେ ସୂକ୍ଷ୍ମଶରୀର ନିର୍ମିତ ଓ ତମୋଗୁଣରେ ସ୍ଥୂଳଶରୀର ଉତ୍ପନ୍ନ ହେବା ବୁଝାଯାଉଅଛି ।

**ଏତେଷାଂ ପଞ୍ଚତତ୍ତ୍ୱାନାଂ ତମସାଂଶାତ୍ ପଞ୍ଚୀକୃତପଞ୍ଚତତ୍ତ୍ୱାନି ଭବନ୍ତି । ପଞ୍ଚୀକରଣଂ କଥମିତି ଚେତ୍ ଏତେଷାଂ ପଞ୍ଚମହାଭୂତାନାଂ ତାମସାଂଶ-ସ୍ୱରୂପଂ ଏକଂ ଏକଂ ଭୂତଂ ଦ୍ୱିଧା ବିଭଜ୍ୟ ଏକମେକାର୍ଦ୍ଧଂ ପୃଥକ୍ ତୂଷ୍ଣୀଂ ବ୍ୟବସ୍ଥାପ୍ୟ ଅପରମପରମର୍ଦ୍ଧଂ ଚତୁର୍ଧା ବିଭଜ୍ୟ ସ୍ୱାର୍ଦ୍ଧମନ୍ୟେଷୁ ଅର୍ଦ୍ଧେଷୁ ସ୍ୱଭାଗଚତୁଷ୍ଟୟସଂଯୋଜନଂ କାର୍ଯ୍ୟଂ ; ତଦା ପଞ୍ଚୀକରଣଂ ଭବତି । ଏତେଭ୍ୟୋ ପଞ୍ଚୀକୃତପଞ୍ଚମହାଭୂତେଭ୍ୟୋ ସ୍ଥୂଳଶରୀରଂ ଭବତି ଏବଂ ପିଣ୍ଡବ୍ରହ୍ମାଣ୍ଡୟୋରୈକ୍ୟଂ ସମ୍ଭୂତମ୍ ॥ ୩୯ ॥**

ଏହି ପଞ୍ଚତତ୍ତ୍ୱର ତାମସ ଅଂଶରୁ ପଞ୍ଚୀକୃତ, ଅର୍ଥାତ୍ ପଞ୍ଚୀକରଣଦ୍ୱାରା ପଞ୍ଚମହାଭୂତ ଉତ୍ପନ୍ନ ହୋଇଅଛନ୍ତି । ପଞ୍ଚୀକରଣର ଅର୍ଥ—ଉକ୍ତ ପଞ୍ଚତତ୍ତ୍ୱର ତାମସ ଅଂଶର ଏକ ଏକ ତତ୍ତ୍ୱକୁ ସମାନ ଦୁଇଭାଗରେ ବିଭକ୍ତ କରି ଏକ ଏକ ଭାଗକୁ ସମାନରଖି ଅନ୍ୟ ପଞ୍ଚତତ୍ତ୍ୱର ଏକ ଏକ ଭାଗକୁ ସମାନ ଚାରି ଚାରି ଭାଗରେ ବିଭକ୍ତ କରି ନିଜ ଅର୍ଦ୍ଧ ଅଂଶକୁ ତ୍ୟାଗ କରି ଅନ୍ୟ ଚାରି ତତ୍ତ୍ୱରେ ନିଜ ଅର୍ଦ୍ଧାଂଶ ବିଭକ୍ତ ଅଂଶମାନଙ୍କୁ ଅନ୍ୟାନ୍ୟ ଭୂତର ଅର୍ଦ୍ଧାଂଶରେ ନିଜର ବିଭକ୍ତାଂଶ ମିଳନ କଲେ ପ୍ରତ୍ୟେକ ତତ୍ତ୍ୱରେ ପଞ୍ଚ ପଞ୍ଚ ହେବ । ଏହାର ନାମ ପଞ୍ଚୀକରଣ, ଏହି ପଞ୍ଚୀକୃତ ପଞ୍ଚମହାଭୂତରୁ ସ୍ଥୂଳଶରୀରର ଉତ୍ପତ୍ତି ଓ ଏହି ନିୟମାନୁସାରେ ପିଣ୍ଡବ୍ରହ୍ମାଣ୍ଡର ଉତ୍ପତ୍ତି ବୁଝିବାକୁ ହେବ ।

## ପଞ୍ଚୀକରଣ ଚକ୍ର

| ଆକାଶର ୮ ଭାଗ ପୂର୍ଣ୍ଣ | ବାୟୁର ୮ ଭାଗ ପୂର୍ଣ୍ଣ | ଅଗ୍ନିର ୮ ଭାଗ ପୂର୍ଣ୍ଣ | ଜଳର ୮ ଭାଗ ପୂର୍ଣ୍ଣ | ପୃଥିବୀର ୮ ଭାଗ ପୂର୍ଣ୍ଣ |
|---|---|---|---|---|
| ଆକାଶର ଅନ୍ୟ ଅର୍ଦ୍ଧାଂଶ ୪ ଭାଗରେ ବିଭକ୍ତ | ବାୟୁର ଅନ୍ୟ ଅର୍ଦ୍ଧାଂଶ ୪ ଭାଗରେ ବିଭକ୍ତ | ଅଗ୍ନିର ଅନ୍ୟ ଅର୍ଦ୍ଧାଂଶ ୪ ଭାଗରେ ବିଭକ୍ତ | ଜଳର ଅନ୍ୟ ଅର୍ଦ୍ଧାଂଶ ୪ ଭାଗରେ ବିଭକ୍ତ | ପୃଥିବୀର ଅନ୍ୟ ଅର୍ଦ୍ଧାଂଶ ୪ ଭାଗରେ ବିଭକ୍ତ |
| ଏହାର ଏକ ଭାଗ ବାୟୁରେ | ଏହାର ୧ ଭାଗ ଅଗ୍ନିରେ | ଏହାର ୧ ଭାଗ ଜଳରେ | ଏହାର ୧ ଭାଗ ପୃଥିବୀରେ | ଏହାର ୧ ଭାଗ ଆକାଶରେ |
| ଏହାର ଏକଭାଗ ଅଗ୍ନିରେ | ୧ ଭାଗ ଜଳରେ | ୧ ଭାଗ ପୃଥିବୀରେ | ୧ ଭାଗ ଆକାଶରେ | ୧ ଭାଗ ବାୟୁରେ |
| ଏହାର ୧ ଭାଗ ଜଳରେ | ୧ ଭାଗ ପୃଥିବୀରେ | ୧ ଭାଗ ଆକାଶରେ | ୧ ଭାଗ ବାୟୁରେ | ୧ ଭାଗ ଅଗ୍ନିରେ |
| ୧ ଭାଗ ପୃଥିବୀରେ | ୧ ଭାଗ ଆକାଶରେ | ୧ ଭାଗ ବାୟୁରେ | ୧ ଭାଗ ଅଗ୍ନିରେ | ୧ ଭାଗ ଜଳରେ |
| ଏହି ପ୍ରକାର ୮ ଭାଗ ପୂର୍ଣ୍ଣ ହୋଇ ଆକାଶ ତତ୍ତ୍ୱ ଅଧିକ ହେବାରୁ ଦେବ ଯୋନି ଶରୀର ନିର୍ମିତ | ୮ ଭାଗ ପୂର୍ଣ୍ଣ ହେବାରୁ ବାୟୁ ତତ୍ତ୍ୱ ଆଧିକ୍ୟରେ ପକ୍ଷୀମାନଙ୍କର ଶରୀର ନିର୍ମିତ | ୮ ଭାଗ ପୂର୍ଣ୍ଣ ହୋଇ ଅଗ୍ନି-ତତ୍ତ୍ୱ ଅଧିକ ହୋଇ ଅଗ୍ନିରେ ବାସ କରିବା ଜନ୍ତୁ ନିର୍ମିତ | ଏହି ପ୍ରକାର ୮ ଭାଗ ପୂର୍ଣ୍ଣ ହୋଇ ଜଳତତ୍ତ୍ୱ ଅଧିକ ହେବାରୁ ଗ୍ରାହାଦି ଜଳଚର ଶରୀର ନିର୍ମିତ | ଏହି ପ୍ରକାର ୮ ଭାଗ ପୂର୍ଣ୍ଣ ହେବାରୁ ପୃଥ୍ବୀ-ତତ୍ତ୍ୱ ଆଧିକ୍ୟରୁ ମନୁଷ୍ୟ ପଶୁ ଆଦି ଶରୀର ନିର୍ମିତ |

ଏହି ପ୍ରକାର ଖଣ୍ଡକୁ ପଞ୍ଚୀକରଣ ବୋଲାଯାଏ ।

### ○—ପରଂବ୍ରହ୍ମଙ୍କ ମହିମାରୁ ସମସ୍ତ ଉତ୍ପନ୍ନ

ଏହିପରି ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ଦ୍ୱୈତତତ୍ତ୍ୱଠାରୁ ଷଡ଼୍‌ବିଂଶ ତତ୍ତ୍ୱପର୍ଯ୍ୟନ୍ତ ସକଳତତ୍ତ୍ୱ ବିଭିନ୍ନ ମତବାଦୀମାନେ ଶାସ୍ତ୍ରମାନଙ୍କରେ ନିର୍ଦ୍ଦେଶ କରିଛନ୍ତି । ଏହିପରି ସୃଷ୍ଟିତତ୍ତ୍ୱ-ସମ୍ବନ୍ଧରେ ବିଭିନ୍ନ ମତ ଥିଲେ ମଧ୍ୟ ମୂଳ ଅଦ୍ୱିତୀୟ ବିଶୁଦ୍ଧତତ୍ତ୍ୱ ବିଷୟର ବିକାର ବା ବିବର୍ତ୍ତ ନାହିଁ । ସେହି ମୂଳତତ୍ତ୍ୱ ଏକ, ଅବିନାଶୀ ଓ ନିର୍ବିକାର । ତଦ୍‌ଭିନ୍ନ ସମସ୍ତ ବିନାଶଶୀଳ । ସେହି ଅବିନାଶୀ ପରଂବ୍ରହ୍ମହିଁ ବିଶୁଦ୍ଧତତ୍ତ୍ୱନାମରେ ଅଭିହିତ । ତାହାଙ୍କ ମହିମାରୁ ସକଳ ସୃଷ୍ଟିତତ୍ତ୍ୱ ଉତ୍ପନ୍ନ ହୋଇଛି । କେବଳ ପରଂବ୍ରହ୍ମ ଜଗତର କର୍ତ୍ତା ବା ମୁଖ୍ୟ କାରଣ—ଏ କଥା ଗ୍ରନ୍ଥାରମ୍ଭରୁ ବହୁ ଯୁକ୍ତି ସହିତ ବର୍ଣ୍ଣିତ ହୋଇ ଆସିଅଛି ।

### ○—ସାଂଖ୍ୟୋକ୍ତ ପ୍ରକୃତିପୁରୁଷବାଦର ନିରସନ

ସାଂଖ୍ୟ ଦାର୍ଶନିକମାନେ ଚୈତନ୍ୟସ୍ୱରୂପ ନିର୍ଗୁଣ ଆତ୍ମା ପୁରୁଷଠାରୁ ସତ୍ତ୍ୱ, ରଜସ୍ ଓ ତମ—ଏହି ଗୁଣତ୍ରୟର ସାମ୍ୟାବସ୍ଥାରୂପିଣୀ ବିକାରଜନନୀ ପ୍ରକୃତିକୁ 'ପ୍ରଧାନ' ବୋଲି ପୃଥକ୍‌ରୂପରେ କଳ୍ପନା କରିଛନ୍ତି । ଅର୍ଥାତ୍ ଉଭୟଙ୍କୁ ସ୍ୱତନ୍ତ୍ର ବା ସ୍ୱୟଂସିଦ୍ଧ ବସ୍ତୁ ବୋଲି ଗ୍ରହଣ କରିଛନ୍ତି । ଅଦୃଷ୍ଟବଶତଃ ଏହି ପୁରୁଷର ସାନ୍ନିଧ୍ୟ ଯୋଗରେ ପ୍ରକୃତିର ସାମ୍ୟଭଙ୍ଗ ହେଲେ ପ୍ରକୃତିରେ ଚୈତନ୍ୟର ଓ ପୁରୁଷଠାରେ ପ୍ରାକୃତିକ ବିକାରର ଅଧ୍ୟାସ ଘଟେ; ଏହି ଅଧ୍ୟାସ-ରୂପରେ ଜଗତ୍ ପ୍ରକାଶିତ ହୁଏ । ଏହି ଅଦୃଷ୍ଟବାଦ ସାଂଖ୍ୟଦର୍ଶନର । ଦ୍ୱୈତବାଦୀମାନେ ଏହି ଅଦୃଷ୍ଟକୁ ବ୍ରହ୍ମଙ୍କର ଶକ୍ତିରୂପିଣୀ ମାୟା ବୋଲି ଅଭିହିତ କରିଛନ୍ତି । ସେମାନଙ୍କ ମତରେ ପୁରୁଷବ୍ରହ୍ମକର୍ତ୍ତୃକ ଜଗତ୍ ସୃଷ୍ଟ ହୋଇ ତାହାଙ୍କର ଦାସପରି ଶକ୍ତିଗୃହୀତ ହେଉଅଛି । ଏହା ଦ୍ୱୈତବାଦର ସାର; କିନ୍ତୁ ଏହିପରି ମତ ପ୍ରତିପାଦନରେ ଶଙ୍କା ହୋଇପାରେ ଯେ, ସେହି ଏକଦେଶୀ ବସ୍ତୁସତ୍ତ୍ୱରୂପକ ଶକ୍ତି ସକଳକ୍ରିୟା ମଧ୍ୟରେ ପ୍ରବାହିତ ହେବ ଓ ଜଗତ୍‌କର୍ତ୍ତୃତ୍ୱ ସ୍ଥାପନ କରିବ ? ଅତଏବ ଦ୍ୱୈତବାଦୀମାନେ ପରିଣାମବାଦର ଆଶ୍ରୟ ନିଅନ୍ତି । ଏହି ପରିଣାମବାଦ ପ୍ରକୃତରେ ବିଶିଷ୍ଟାଦ୍ୱୈତସମ୍ବନ୍ଧୀ । ଜୈମିନି ଏହାର ପ୍ରଥମ ପ୍ରବର୍ତ୍ତକ । ଏହି ମତାନୁସାରେ ମାୟା ବ୍ରହ୍ମଙ୍କର ଶକ୍ତିବିଶେଷ । ବ୍ରହ୍ମ ଏହି ମାୟାଦ୍ୱାରା ନିଜକୁ ଜଗତ୍‌ସ୍ୱରୂପରେ ପରିଣତ କରନ୍ତି । ସେ ମାୟାଦ୍ୱାରା ନିଜକୁ ପରିଣାମବିଶିଷ୍ଟ କରନ୍ତି; କିନ୍ତୁ ଏହି ମତ-ଅନୁସାରେ ବ୍ରହ୍ମ ସଗୁଣ ବା ଗୌଣ ଓ ମୁଖ୍ୟସ୍ୱରୂପ ନିର୍ଗୁଣର ସାପେକ୍ଷକାରଣ । ଏହି ବିଷୟ ପ୍ରତିପାଦନରେ ବିଶିଷ୍ଟାଦ୍ୱୈତବାଦୀ ଅଗ୍ରସର; କିନ୍ତୁ ଏହି ମତ ଦୁର୍ବଳ, ଏକ ବ୍ରହ୍ମ ଗୌଣ ଓ ମୁଖ୍ୟ ହେବା ଅସ୍ୱାଭାବିକ; ଅତଏବ ଏହି ମତର ପରିପୁଷ୍ଟି ଅଦ୍ୱୈତାବାଦରେ ଅଧିକଭାବରେ କରାଯାଇଛି । ଏହି ଅଦ୍ୱୈତବାଦ ଅନୁସାରେ ବ୍ରହ୍ମ ନିର୍ଗୁଣ ଓ ମାୟା ତାଙ୍କର ସ୍ୱାଭାବିକସିଦ୍ଧଶକ୍ତିର ବିକ୍ଷେପମାତ୍ର । ଏହି ବିକ୍ଷେପହିଁ ବିବର୍ତ୍ତନସ୍ୱରୂପରେ ଜଗତ୍‌ରୂପରେ ଅଭିବ୍ୟକ୍ତ ହୋଇଥାଏ । ବ୍ରହ୍ମ କିନ୍ତୁ ନିଜେ ନିଷ୍କ୍ରିୟସ୍ୱରୂପରେ ବିଦ୍ୟମାନ । ବ୍ରହ୍ମସୂତ୍ର, ଗୀତା, ଉପନିଷଦ୍ ଓ ଯୋଗବାଶିଷ୍ଠ ଆଦି ଗ୍ରନ୍ଥମାନଙ୍କରେ ପ୍ରସଙ୍ଗକ୍ରମେ ଅଦ୍ୱୈତବାଦ ପର୍ଯ୍ୟାଲୋଚିତ ହୋଇଛି; କିନ୍ତୁ ଭଗବାନ୍ ଶଙ୍କରାଚାର୍ଯ୍ୟଙ୍କଦ୍ୱାରା ଅଦ୍ୱୈତମତର ଦୃଢ଼ଭିତ୍ତି ସ୍ଥାପିତ ହୋଇ ସର୍ବାଙ୍ଗ-ସୌନ୍ଦର୍ଯ୍ୟ ସାଧିତ ହୋଇଛି ।

ବିଶୁଦ୍ଧାଦ୍ୱୈତବାଦମତରେ ପରମାତ୍ମା ଅଲେଖପରଂବ୍ରହ୍ମ ନିର୍ଗୁଣ ଓ ଏହି ପରଂବ୍ରହ୍ମଙ୍କ ସ୍ୱଭାବଗତ ସ୍ୱୟଂସିଦ୍ଧ ମହିମାପ୍ରଭାବରେ ସକଳ ଜାଗତିକ ବସ୍ତୁ ଉତ୍ପନ୍ନ ହୋଇଅଛି—ଏହା ସ୍ୱୀକାର୍ଯ୍ୟ । ଏହି ମହିମାମୟତ୍ୱ ଭିନ୍ନ ଅନ୍ୟ କୌଣସି ଶକ୍ତି ତାହାଁରେ ରହି ପାରେ ନାହିଁ ; ଶକ୍ତିବିଶିଷ୍ଟତ୍ୱ ସ୍ୱୀକାର କଲେ ପରଂବ୍ରହ୍ମଙ୍କର ମହାମହିମତ୍ୱରେ ବ୍ୟାଘାତ ଆସିଯିବ ଓ ଶକ୍ତିର ପ୍ରାଧାନ୍ୟରୁ ପରଂବ୍ରହ୍ମ ଗୌଣ ହୋଇଯିବେ, ଯାହା ବିଶୁଦ୍ଧାଦ୍ୱୈତବାଦ କଦାପି ସ୍ୱୀକାର କରେ ନାହିଁ । ଏହି ମତ ଆଗମପ୍ରମାଣ, ଅର୍ଥାତ୍ ପ୍ରତ୍ୟକ୍ଷରୁ ଆଗତ ଆଗମ ଏହାର ପ୍ରମାଣ ବୋଲି ମାନିବାକୁ ହୁଏ । ବେଦାନ୍ତର ଅନୁମାନରୂପ ପ୍ରମାଣ ଅଲେଖ ବ୍ରହ୍ମଦର୍ଶନ ସ୍ୱୀକାର କରେ ନାହିଁ । ସ୍ୱୟଂସିଦ୍ଧ ଅଦ୍ୱିତୀୟ ପରଂବ୍ରହ୍ମଙ୍କର ସ୍ୱତଃସିଦ୍ଧ ମହିମା ଅଛି ; ସେହି ମହିମା ଲିଙ୍ଗଯୁକ୍ତ ବା କୌଣସି ଶକ୍ତିସମ୍ପନ୍ନ ନୁହେଁ । ଅଲୌକିକ ଅଦ୍ଭୁତ ଓ ଅଶେଷଶକ୍ତିସମ୍ପନ୍ନ ପରଂବ୍ରହ୍ମଙ୍କ ସ୍ୱୟଂସିଦ୍ଧ ମହିମା ସ୍ୱତଃସିଦ୍ଧ । ଆଧୁନିକ ଭୌତିକବିଜ୍ଞାନରେ ମଧ୍ୟ ଦେଖାଯାଏ ଯେ, କୌଣସି ଶକ୍ତିଦ୍ୱାରା ଗତି ପରିଦୃଷ୍ଟ ହୁଏ; ଶକ୍ତି ଅଦୃଷ୍ଟ; କିନ୍ତୁ ଗତି ଦୃଷ୍ଟ ଓ ଅନୁଭୂତ ହେବା ସ୍ୱାଭାବିକ; କିନ୍ତୁ ଶକ୍ତିର ସ୍ୱରୂପ କ'ଣ, ତାହା ଉପଲବ୍‌ଧ ହୁଏ ନାହିଁ । ଇଞ୍ଜିନ୍‌ର ଗତିକୁ ସମସ୍ତେ ଦେଖିପାରନ୍ତି ; କିନ୍ତୁ ଯେଉଁ ଶକ୍ତିସାହାଯ୍ୟରେ ଏହି ଗତି କାର୍ଯ୍ୟରୂପେ ଅନୁଭୂତ, ସେହି ଶକ୍ତି ଇନ୍ଦ୍ରିୟଗ୍ରାହ୍ୟ ନୁହେଁ । ତେବେ ବି ଏହି ଗତିକୁ କାରଣହୀନ ସତ୍ୟବସ୍ତୁ ବୋଲି କଳ୍ପନା କରନ୍ତି ; ଅର୍ଥାତ୍ ସାଧାରଣ ଲୋକ ଶକ୍ତିର ଅପେକ୍ଷା ନ କରି କେବଳ ଗତିକୁ ଇଞ୍ଜିନ୍‌ର କାର୍ଯ୍ୟ ବୋଲି ବୁଝନ୍ତି ; କିନ୍ତୁ ଏହା ସବୁ ରଜ୍ଜୁରେ ସର୍ପଜ୍ଞାନତୁଲ୍ୟ ଭ୍ରାନ୍ତ କଳ୍ପନା ମାତ୍ର । ବିଶୁଦ୍ଧାଦ୍ୱୈତମତରେ ଉତ୍ପତ୍ତି ପ୍ରତି ଚିତ୍-ଶକ୍ତିର ନିମିତ୍ତତ୍ୱ କଳ୍ପନା ସ୍ୱୀକାର୍ଯ୍ୟ ନୁହେଁ ; କିନ୍ତୁ ବସ୍ତୁର ଉତ୍ପତ୍ତି ସେହି ଚିତ୍‌ଶକ୍ତିର ବା ପରଂବ୍ରହ୍ମଙ୍କ ମହିମାର ଆଭାସମାତ୍ର । ମାନବର ଜୈବତ୍ୱ ବା ଉତ୍ପତ୍ତି ସେହି ମହିମା-ଆଭାସର ଦେଶୋପଲବ୍‌ଧି ବା ବହିର୍ବୋଧଜ୍ଞାନ ଓ କାଳୋପଲବ୍‌ଧି ବା ଅନବଚ୍ଛିନ୍ନ ଅନ୍ତର୍ବୋଧଦ୍ୱାରା ମୂଳମହିମାରୁ ପରିଚ୍ଛିନ୍ନ ହୋଇଥାଏ । ଏହି ପରିଚ୍ଛେଦ ବା ମୂଳମହିମାର ଗତି ପୂର୍ବୋକ୍ତ ଉଭୟ ଉପଲବ୍‌ଧିରୁ ନାମରୂପର ସୃଷ୍ଟିରୂପରେ ପରିଣତ ହୁଏ । ପରଂବ୍ରହ୍ମଙ୍କ ମହିମାର ଆଭାସ ଓ ତାହାଁରୁ ଗତି ବା ସୃଷ୍ଟି ହୁଏ, କିନ୍ତୁ ସୃଷ୍ଟି ହେବାପରେ ସେହି ମହିମା ଅଜ୍ଞାତ ରହେ । କେବଳ ଆଭାସ ଉପଲବ୍‌ଧିରୂପରେ ପ୍ରକାଶିତ ହୁଏ । ନାନାବିଧ ବସ୍ତୁ-ପ୍ରଗତି ଭ୍ରାନ୍ତ, ଯାହା କି ବାସ୍ତବରୂପରେ ଅନୁଭୂତ ହୁଏ ; କିନ୍ତୁ ମହିମାରୂପ ନିମିତ୍ତ ଅଜ୍ଞାତ ।

ଯାହା ବିଶୁଦ୍ଧ ପରମତତ୍ତ୍ୱ ବସ୍ତୁ, ତାହା ମୁଖ୍ୟ; ସକଳ ଅବିଶୁଦ୍ଧ ବସ୍ତୁ ଗୌଣ । 'ପ୍ରକୃତି' ବିକାରାଦିର ଆଶ୍ରୟ, ଅତଏବ ବିଶୁଦ୍ଧ ବସ୍ତୁ ବା ମୁଖ୍ୟ ନୁହେଁ । ପ୍ରକୃତିକୁ ସ୍ୱୟଂସିଦ୍ଧ ବୋଲି କଳ୍ପନା କଲେ ଏହାର ଶକ୍ତି ମଧ୍ୟ ସ୍ୱୟଂସିଦ୍ଧ ବୋଲି ସ୍ୱୀକୃତ ହେବ ; କିନ୍ତୁ ପ୍ରକୃତରେ ତାହା ହୁଏ ନାହିଁ । ପ୍ରକୃତି ସ୍ୱୟଂସିଦ୍ଧ ବସ୍ତୁ ନୁହେଁ । କେବଳ ବ୍ୟାବହାରିକ ବସ୍ତୁ । ସ୍ୱୟଂସିଦ୍ଧ ବସ୍ତୁ ପରମାତ୍ମା ନିର୍ଗୁଣ ହେଲେ ମଧ୍ୟ ତାଙ୍କଠାରେ ସ୍ୱୟଂସିଦ୍ଧମହିମା ବିଦ୍ୟମାନ । ଅଦ୍ୱୈତ-

ବେଦାନ୍ତରେ ପ୍ରକୃତି ଓ ପୁରୁଷର ବ୍ୟାବହାରିକ ଭେଦମାନ ସ୍ଥାପିତ ହୋଇଅଛି । ସାଂଖ୍ୟରେ ଅନୁମାନ ପ୍ରମାଣଲବ୍ଧ "ଅଦୃଷ୍ଟ"କୁ ବେଦାନ୍ତରେ ଆପ୍ତଜ୍ଞାନସମର୍ଥିତ ଆଗମ-ପ୍ରମାଣରୂପରେ ସେହି ନିର୍ଗୁଣ ପରମପୁରୁଷଙ୍କ ସ୍ୱଭାବସିଦ୍ଧ "ଶକ୍ତି" ବୋଲି ଗ୍ରହଣ କରି ସାଂଖ୍ୟର "ପ୍ରଧାନ" ବାଦ ଅଦ୍ୱୈତବାଦରେ ପରିଣତ ହୋଇଅଛି ।

ସାଂଖ୍ୟଦର୍ଶନ ଆପ୍ତଜ୍ଞାନର ପ୍ରାମାଣ୍ୟ ଗ୍ରହଣ କରେ ନାହିଁ । ଅନୁମାନ ଉପରେ ନିର୍ଭର କରି ଅଦୃଷ୍ଟକୁ ପ୍ରକୃତିପୁରୁଷର ସାନ୍ନିଧ୍ୟ ଘଟଣାର କାରଣ ବୋଲି ମାନେ । ଅନୁମାନର ସ୍ୱତଃସିଦ୍ଧତା ନାହିଁ ଏହା ମଧ୍ୟ ସାଂଖ୍ୟ ସ୍ୱୀକାର କରେ । ଅତଏବ ଏହି ଅଦୃଷ୍ଟ ପୁରୁଷଶକ୍ତି ନୁହେଁ—ଏହା ମଧ୍ୟ ସାଂଖ୍ୟ ମାନେ । ପୁରୁଷଶକ୍ତି ସ୍ୱୀକାର କଲେ କେବଳ ଈଶ୍ୱରବାଦ ଗୃହୀତ ହେବ । ଅର୍ଥାତ୍ ତନ୍ମତ 'ଅଧ୍ୟାସ' କେବଳ ପ୍ରକୃତି ବୋଲି ପ୍ରତିପନ୍ନ ହେବ । ଅତଏବ ସାଂଖ୍ୟଦର୍ଶନ ପ୍ରତ୍ୟକ୍ଷ ଓ ଆଗମ ପ୍ରମାଣରୁ ଅଦୃଷ୍ଟବାଦ ସ୍ୱୀକାର କରି ଈଶ୍ୱରବାଦ ଅନୁମାନସାପେକ୍ଷ ବୋଲି ଗ୍ରହଣ କରିଛନ୍ତି । ଏଥିରୁ ପ୍ରତିପନ୍ନ ହୁଏ ଯେ, ସାଂଖ୍ୟ ଓ ବେଦାନ୍ତ-ଦର୍ଶନର କୌଣସି ମୌଳିକ ବିରୋଧ ନାହିଁ ; କେବଳ ପ୍ରମାଣ ବିଷୟରେ କିଛି ବିରୋଧ ଦେଖାଯାଏ । ସାଂଖ୍ୟଦର୍ଶନୋକ୍ତ ସୃଷ୍ଟିପ୍ରକ୍ରିୟା ବିଷୟରେ ବ୍ରହ୍ମସୂତ୍ରବଚନ ଏହିପରି—

**ଅଙ୍ଗିତ୍ୱାନୁପପତ୍ତେଶ୍ଚ । ଅନ୍ୟଥାନୁମିତୌ ଚ ଜ୍ଞଶକ୍ତିବିୟୋଗାତ୍ ।**

। ବ୍ର, ସୂ, ୨-୨-୮ । ୯ ।

ଅର୍ଥାତ୍ ପ୍ରକୃତିଦ୍ୱାରା ଜଗତର ସୃଷ୍ଟି ବୋଲି ସ୍ୱୀକାର କଲେ ପ୍ରକୃତିର ଅଙ୍ଗିତ୍ୱ ହାନି ହେବ । ଅନ୍ୟରୂପ ଅନୁମାନ କଲେ ମଧ୍ୟ ଜ୍ଞଶକ୍ତିବିୟୋଗ, ଅର୍ଥାତ୍ ଚୈତନ୍ୟଶକ୍ତିର ଅଭାବରୁ ପ୍ରକୃତିଠାରୁ ଜଗତ୍ର ଉତ୍ପତ୍ତି ଅସମ୍ଭବ ହେବ । ଅତଏବ ପ୍ରଧାନଠାରୁ ଜଗତର ରଚନା ଅସମ୍ଭବ । ସାଂଖ୍ୟଦର୍ଶନ ଈଶ୍ୱରସତ୍ତା ଗ୍ରହଣ କରେ ନାହିଁ । ସତ୍ତ୍ୱ, ରଜ ଓ ତମୋଗୁଣର ସାମ୍ୟାବସ୍ଥା (ପ୍ରକୃତିଠାରେ) ହେଉଛି "ପ୍ରଧାନ"; କିନ୍ତୁ ଏହି ଗୁଣମାନଙ୍କର ଉତ୍କର୍ଷ ଓ ଅପକର୍ଷ, ଉପକାର୍ଯ୍ୟ-ଉପକାରକ ବା ଅଙ୍ଗାଙ୍ଗୀଭାବ ହେଲେ ବିଶ୍ୱସୃଷ୍ଟି ସମ୍ଭବ ; କିନ୍ତୁ ଏଠାରେ ପ୍ରଶ୍ନ ହୋଇପାରେ—ଗୁଣମାନଙ୍କର ସାମ୍ୟାବସ୍ଥାର ଭଙ୍ଗ ନ ହେଲେ ଉତ୍କର୍ଷ ଓ ଅପକର୍ଷ ଅବସ୍ଥା କିପରି ସମ୍ଭବ ହେବ ; ପୂର୍ବରୁ କୁହାଯାଇଅଛି ଯେ, ସତ୍ତ୍ୱାଦି ଗୁଣମାନଙ୍କର ନ୍ୟୂନତ୍ୱ ଓ ଆଧିକ୍ୟ ଅବସ୍ଥାଦ୍ୱାରା ହିଁ ସୃଷ୍ଟି ହୁଏ ; କିନ୍ତୁ ଏହି ଅବସ୍ଥା ସାମ୍ୟାବସ୍ଥାଭଙ୍ଗସାପେକ୍ଷ ; ସେହି ସାମ୍ୟାବସ୍ଥା ଭଙ୍ଗ ପ୍ରତି କାରଣ ବା ଭଙ୍ଗର କର୍ତ୍ତା କେହି ଜଣେ ଅଛି—ଏହା ସାଂଖ୍ୟ ସ୍ୱୀକାର କରେ ନାହିଁ । କୌଣସି କର୍ତ୍ତା ବ୍ୟତିରେକେ ଗୁଣବୈଷମ୍ୟମୂଳକ ମହଦାଦିର ଉତ୍ପତ୍ତି ସମ୍ଭବ ହେବ ନାହିଁ । ଏହା ନିଶ୍ଚିତ ଯେ ସାଂଖ୍ୟଦର୍ଶନ ଈଶ୍ୱରଙ୍କୁ କର୍ତ୍ତା ବୋଲି ସ୍ୱୀକାର କରେ ନାହିଁ । ମହର୍ଷି କପିଳ ଈଶ୍ୱରଙ୍କର ଅସିଦ୍ଧି ବିଷୟରେ କହିଛନ୍ତି—"ଈଶ୍ୱରାସିଦ୍ଧେଃ" ଅର୍ଥାତ୍ ଈଶ୍ୱରଙ୍କୁ ମୁକ୍ତ ବୋଲି ସ୍ୱୀକାର କଲେ ତାହାଙ୍କର ସୃଷ୍ଟି ବିଷୟରେ ପ୍ରବୃତ୍ତି ଅସମ୍ଭବ, ବଦ୍ଧ ବୋଲି ସ୍ୱୀକାର

କରିବାଦ୍ୱାରା ସେ ସୃଷ୍ଟିକାର୍ଯ୍ୟରେ ଅସମର୍ଥ ହେବେ । ଅତଏବ ଈଶ୍ୱରସ୍ୱୀକାର ଅସିଦ୍ଧ । ଆହୁରି ମଧ୍ୟ, କପିଳଙ୍କ ମତରେ ଦିକ୍ ଓ କାଳ ଆକାଶର ଭେଦ; କିନ୍ତୁ ପୁରୁଷର ଭେଦ-ଗୁଣାଦି ନୁହେଁ । କାରଣ, ପୁରୁଷ ଉଦାସୀନ ବା ଅକର୍ତ୍ତାରୂପରେ ଚିର ବିରାଜିତ । ଏହି ସବୁ କାରଣରୁ ଏହା ପ୍ରମାଣିତ ହୁଏ ଯେ, ସାଂଖ୍ୟଦର୍ଶନୋକ୍ତ ଗୁଣବୈଷମ୍ୟରୁ ସୃଷ୍ଟିପ୍ରକ୍ରିୟା ସମ୍ଭବ ନୁହେଁ । ଦ୍ୱିତୀୟତଃ, ଆଦିସୃଷ୍ଟି ସମୟରେ ଗୁଣମାନଙ୍କର ସାମ୍ୟାବସ୍ଥାର ବୈଷମ୍ୟ ପ୍ରତି କାରଣ କ'ଣ—ଏହା ସାଂଖ୍ୟଦର୍ଶନରେ କଥିତ ହୋଇ ନାହିଁ । ଯଦି ଏପରି କୁହାଯାଇପାରେ ଯେ, କାର୍ଯ୍ୟାନୁରୋଧରେ ଅର୍ଥାତ୍ ଅଦୃଷ୍ଟଧର୍ମଯୋଗରେ ପୁରୁଷର ଚେତନା ପ୍ରାପ୍ତ ହେବାରୁ ଗୁଣ-ମାନଙ୍କରେ ବୈଷମ୍ୟରୂପକ ବିଚାର ସ୍ୱଭାବ ସୃଷ୍ଟ ହୋଇଛି । ଅତଏବ ସେଥିରୁ ଆଦିସୃଷ୍ଟି ସମ୍ଭୂତ; କିନ୍ତୁ ଏହା କେବଳ ଅନୁମାନଲବ୍ଧ । ଏ ବିଷୟରେ କିଛି ସାକ୍ଷାତ୍ ପ୍ରମାଣ କପିଳଙ୍କଦ୍ୱାରା ଉକ୍ତ ହୋଇ ନାହିଁ । ଦ୍ୱିତୀୟତଃ ଗୁଣମାନଙ୍କର ପୂର୍ବୋକ୍ତରୀତିରେ ବିଚାରଶକ୍ତିସମ୍ପନ୍ନତା ହେଲେ ମଧ୍ୟ ଜ୍ଞ-ଶକ୍ତିର ବା ଜ୍ଞାତୃତ୍ୱର ଅଭାବରୁ ସୃଷ୍ଟି ସମ୍ଭବ ନୁହେଁ । ଅର୍ଥାତ୍ ପ୍ରକୃତ କୌଣସି ଚେତନ-ବସ୍ତୁଦ୍ୱାରା ଅଧିଷ୍ଠିତ ନ ହେଲେ ଅଚେତନ ପ୍ରକୃତିରୁ ଜଗତ୍‌ସୃଷ୍ଟି କୌଣସିମତେ ସମ୍ଭବ ହେବ ନାହିଁ ।

ବେଦାନ୍ତ ମତରେ ଚିନ୍ମୟପରମାତ୍ମା କେବଳ 'ପ୍ରକାଶକ' ନୁହନ୍ତି, ସେ ପ୍ରଶାସକ ମଧ୍ୟ, ଅର୍ଥାତ୍ ଜ୍ୟୋତିରୂପ ପ୍ରକାଶ ଓ ଜ୍ଞାନରୂପ ପ୍ରଶାସନ—ଏହି ଉଭୟ ସ୍ୱରୂପର ଏକତାନ୍ୱୟରେ ପରମାତ୍ମା ପ୍ରକୃତିର ସୃଷ୍ଟିକ୍ରିୟାନିମନ୍ତେ ପ୍ରବର୍ତ୍ତକ ।

ବିଶୁଦ୍ଧଚିନ୍ମୟ ପରମାତ୍ମା କେବଳ ସତ୍‌ସ୍ୱରୂପରେ ସୃଷ୍ଟିର ତଟସ୍ଥ କାରଣ ନୁହନ୍ତି ; ସେ ଏହି 'ସଦ୍‌ଭାବ' ରୂପ ସୃଷ୍ଟିର ଅସ୍ତିତ୍ୱପରିପୂର୍ଣ, କର୍ତ୍ତବ୍ୟ-ବିମର୍ଶରୂପ ସ୍ୱୟଂସିଦ୍ଧ ଉଦ୍ଦେଶ୍ୟ-ସ୍ୱରୂପ ଓ ବିବେକଜ୍ଞାନରୂପ 'ସର୍ବଜ୍ଞ' କାରଣ ମଧ୍ୟ । ଜଗତରେ ଉଚ୍ଚ ନୀଚ ସକଳ ପ୍ରାଣୀମାନଙ୍କ ମଧ୍ୟରେ ଏହି ସଦ୍‌ଭାବରକ୍ଷାରୂପ କର୍ତ୍ତବ୍ୟ-ବିମର୍ଶପରିପୂର୍ଣ ଉଦ୍ଦେଶ୍ୟ ପରିଲକ୍ଷିତ ହୁଏ । ଉଦାହରଣସ୍ୱରୂପ—ଘୁରପୋକ ନିଦ୍ରିତାବସ୍ଥାରେ ଥିବା ବ୍ୟକ୍ତିକୁ କାଟେ; କିନ୍ତୁ ଟିକିଏ ଅଙ୍ଗ-ଚାଳନା ଜାଣିପାରି ପଳାୟନ କରେ । ଏହାର କାରଣ ଏହି ଯେ, ଘୁରପୋକ ମଧ୍ୟ ନିଜର ଚୈତନ୍ୟପ୍ରକାଶର ଅସ୍ତିତ୍ୱ ଅନୁଭବ କରେ ଓ ଏହା (ଅଙ୍ଗଚାଳନ) ତାହାର କ୍ଷତିକାରକ ଓ ପଳାୟନ ଶ୍ରେୟସ୍କର ବୋଲି ଜାଣିପାରେ । ଏହା ହେଉଛି କର୍ତ୍ତବ୍ୟବିମର୍ଶରୂପକ ଜ୍ଞ-ଶକ୍ତି, ଅର୍ଥାତ୍ ଉଦ୍ଦେଶ୍ୟବୋଧକ ପ୍ରବୃତ୍ତି । ଜାଗତିକ ସକଳ ବସ୍ତୁ ଜ୍ଞାନ ବା ଅଜ୍ଞାନସ୍ୱରୂପରେ ଏହି ପ୍ରବୃତ୍ତିର ଅଧୀନ । ଧାନଗଛ ପ୍ରଭୃତିରେ ମଧ୍ୟ ଏହି ପ୍ରବୃତ୍ତି ଥିବା ଦେଖାଯାଏ । ବର୍ଷାଜଳର ବୃଦ୍ଧିଦ୍ୱାରା ଧାନଗଛ ବଢ଼େ । ଏହି 'ସଦ୍‌ଭାବ' ରକ୍ଷା ନିମନ୍ତେ ଶେଷ ପର୍ଯ୍ୟନ୍ତ ଯୁଦ୍ଧ କରିବ । ଏହି ବୃଦ୍ଧି-ନିମନ୍ତେ କାରଣ କର୍ତ୍ତା ପରମାତ୍ମାଙ୍କର ପ୍ରଶାସନଲିଙ୍ଗ ଓ ଏଥିରୁ ଏହାର ଏପରି ପ୍ରବୃତ୍ତି ଘଟିଥାଏ । ଅତଏବ ସାଂଖ୍ୟୋକ୍ତ ପ୍ରଧାନ ବା ଗୁଣାଦିରେ 'ଅଦୃଷ୍ଟ'-ବଶତଃ ନିର୍ଗୁଣ ପୁରୁଷର (ଅର୍ଥାତ୍ ସ୍ୱୟଂସିଦ୍ଧ ଶକ୍ତିରହିତ ଓ ଅକର୍ତ୍ତାରୂପ ପୁରୁଷର) ଚେତନା ଯୋଗରେ ସ୍ୱତଃ ପ୍ରବୃତ୍ତି-

ପ୍ରକାଶ ସ୍ୱୀକାର କଲେ ମଧ୍ୟ, ସେଥିରେ ଜ୍ଞ-ଶକ୍ତିର ଅଭାବ ହେତୁରୁ ପ୍ରଧାନାଦିର ଜଗତ୍‌କର୍ତ୍ତୃତ୍ୱ କୌଣସିମତେ ସମ୍ଭବ ନୁହେଁ ।

ସାଂଖ୍ୟଦର୍ଶନରେ ଆହୁରି ମଧ୍ୟ କୁହାଯାଇଛି ଯେ, ପୁରୁଷ ନିର୍ବିକାର, ଅଥଚ ଭୋକ୍ତା । ଏହା ପରସ୍ପର ବିରୋଧୀ; ଯାହା ନିର୍ବିକାର ତାହା ଭୋକ୍ତା ହୋଇ ନ ପାରେ । ଦ୍ୱିତୀୟତଃ, ସାଂଖ୍ୟମତରେ ପୁରୁଷ ନିର୍ଗୁଣ ହେଲେ ମଧ୍ୟ ପ୍ରକୃତିର ଗୁଣ ତାଠାରେ ଆରୋପିତ ହୁଏ, ଅତଏବ ପୁରୁଷ ନିଜକୁ ସୁଖୀ ବା ଦୁଃଖୀ ମନେ କରେ ; କିନ୍ତୁ ଏହା ଅସମ୍ଭବ; ଯେ ସ୍ୱୟଂ ନିର୍ବିକାର ତାଠାରେ ଅନ୍ୟ ବସ୍ତୁର ଗୁଣ କିପରି ଆରୋପିତ ହେବ । ଏହା ସବୁ ସାଂଖ୍ୟମତର ପରସ୍ପର-ବିରୋଧୀ ସିଦ୍ଧାନ୍ତ । ସାଂଖ୍ୟବାଦୀଙ୍କ ମଧ୍ୟରେ ଇନ୍ଦ୍ରିୟସଂଖ୍ୟା ଓ ମହତ୍ ବା ବୁଦ୍ଧି-ନିରୂପଣବିଷୟରେ ବହୁ ମତଦ୍ୱୈଧ ଦେଖାଯାଏ । କେତେକ ସାଂଖ୍ୟମତବାଦୀ କହନ୍ତି, ଇନ୍ଦ୍ରିୟ-ସଂଖ୍ୟା ସାତ ; ଅନ୍ୟମାନଙ୍କ ମତରେ ଏଗାର ; ମହତ୍ ବା ବୁଦ୍ଧିରୁ ତନ୍ମାତ୍ର (ବା ପଞ୍ଚଭୂତର ସୂକ୍ଷ୍ମ ଅବସ୍ଥା) ଉତ୍ପନ୍ନ ; କିନ୍ତୁ ଅନ୍ୟତ୍ର ଅହଂକାରରୁ ତନ୍ମାତ୍ର ଉତ୍ପନ୍ନ ବୋଲି କଥିତ ହୋଇଛି । ଏକସ୍ଥାନରେ ଅନ୍ତଃକରଣ ୩; କିନ୍ତୁ ସାଂଖ୍ୟବାଦୀମାନେ ଅନ୍ୟତ୍ର କହିଛନ୍ତି ଯେ ଅନ୍ତଃକରଣ ଏକ ଏହା ସବୁ ଉଲ୍ଲେଖ କରି ବେଦାନ୍ତୀ କହେ—

**ପ୍ରତିଷେଧାଚ୍ଚ ଅସମଞ୍ଜସମ୍ ।** ବ୍ର: ସୂ: ୨-୨-୧୦ ।

ଅର୍ଥାତ୍ ଏହିପରି ପ୍ରତିଷେଧ ବା ପରସ୍ପର ବିରୋଧହେତୁରୁ ଅସମଞ୍ଜସ ବା ପରସ୍ପର ଯୁକ୍ତିହୀନ । ଅତଏବ ସାଂଖ୍ୟଦର୍ଶନବାଦ ବେଦାନ୍ତ ବା ବିଶୁଦ୍ଧାଦ୍ୱୈତବ୍ରହ୍ମବାଦ ସହିତ ସାମଞ୍ଜସ୍ୟ ରଖି ପାରେ ନାହିଁ । *

* ପୁରୁଷାଶ୍ମବଦିତି ଚେତ୍ତଥାପି । ବ୍ର: ସୂ: ୨-୨-୭

ସାଂଖ୍ୟଦର୍ଶନ-ବ୍ୟାଖ୍ୟାପ୍ରସଙ୍ଗରେ ପୂର୍ବେ ପୁରୁଷ ଓ ପ୍ରକୃତିର ସମ୍ବନ୍ଧ ପ୍ରତିପାଦନସକାଶେ ପଙ୍ଗୁ ଓ ଅନ୍ଧର ଦୃଷ୍ଟାନ୍ତ ଦିଆଯାଇଛି । ପଙ୍ଗୁ ଦେଖିପାରେ ଓ ଅନ୍ଧ ଚାଲିପାରେ; ଅତଏବ ପଙ୍ଗୁ ଅନ୍ଧର ସ୍କନ୍ଧାରୋହଣ କରି ପଥ ନିର୍ଦ୍ଦେଶ କଲେ ଅନ୍ଧ ଚାଲିପାରେ ଓ ଉଭୟେ ଗନ୍ତବ୍ୟ ପଥରେ ଯାତ୍ରା କରନ୍ତି । ସେହିପରି ସାଂଖ୍ୟର ପ୍ରକୃତି କ୍ରିୟା କରିପାରେ; କିନ୍ତୁ ତା'ର ଜ୍ଞାନ ନାହିଁ । ପୁରୁଷର ଜ୍ଞାନ ଅଛି; କିନ୍ତୁ କ୍ରିୟା କରି ପାରେ ନାହିଁ । ଅତଏବ ପୁରୁଷଦ୍ୱାରା ଅଧିଷ୍ଠିତ ହୋଇ ପ୍ରକୃତି ସୃଷ୍ଟିକ୍ରିୟା କରେ; କିନ୍ତୁ ଏ ବିଷୟରେ ପଙ୍ଗୁ ଅନ୍ଧର ଉଦାହରଣଦ୍ୱାରା ପ୍ରକୃତ ବିଷୟ ପ୍ରତିପାଦିତ ହୋଇ ପାରିବ ନାହିଁ । ପଙ୍ଗୁ ପଥ ନିର୍ଦ୍ଦେଶ କଲାଭଳି ପୁରୁଷ ସେପରି କ୍ରିୟା ନିମନ୍ତେ ଶକ୍ତିହୀନ; ଅତଏବ ସ୍ୱୟଂକ୍ରିୟାହୀନ ପୁରୁଷ ପ୍ରକୃତିକୁ କିପରି ପରିଚାଳିତ କରିବ । ପ୍ରକୃତି-ପୁରୁଷ ବିଷୟରେ ଚୁମ୍ବକ-ପ୍ରସ୍ତର ଦୃଷ୍ଟାନ୍ତ ମଧ୍ୟ ଯୁକ୍ତିହୀନ—ଚୁମ୍ବକ ନିକଟରେ ଥିବା ଲୌହକୁ ଆକର୍ଷଣ କରେ; ଯଦି ପୁରୁଷ-ସାନ୍ନିଧ୍ୟବଶତଃ ପ୍ରକୃତିକୁ ସକ୍ରିୟ କରେ, ତେବେ ପ୍ରକୃତି ସର୍ବଦା ସକ୍ରିୟ ହୋଇ ରହିବ । ଅର୍ଥାତ୍ ସୃଷ୍ଟିର ପ୍ରଳୟାବସ୍ଥା କଦାପି ସମ୍ଭବ ହେବ ନାହିଁ । ଅତଏବ ସାଂଖ୍ୟମତ ଅନୁପପନ୍ନ ।

## ଠ—ନ୍ୟାୟ ଓ ବୈଶେଷିକ ମତର ପରମାଣୁବାଦ ଖଣ୍ଡନ

ତାର୍କିକମାନଙ୍କ ମତରେ ପ୍ରକୃତିରେ ସଚେତନ ପୁରୁଷର ଅଧିଷ୍ଠାନ ହେତୁରୁ ବିଶ୍ୱସୃଷ୍ଟି ସମ୍ଭବ ହୁଏ ନାହିଁ ; କିନ୍ତୁ ପରମାଣୁ ସମୂହରେ "ଅଦୃଷ୍ଟ" ଯୁକ୍ତ ଚେତନର ସଂଯୋଗହେତୁରୁ ପରମାଣୁଗତ ଆଦ୍ୟକ୍ରିୟା ବା ପରମାଣୁସମୂହର ସଂଯୋଗ ସ୍ଥାପିତ ହୁଏ ଓ ଏହି ସଂଯୋଗାରବ୍ଧ କାର୍ଯ୍ୟରୁ ବିଶ୍ୱସୃଷ୍ଟି ସମ୍ଭବ । ସେମାନଙ୍କ ମତରେ ପରମାଣୁ ପାର୍ଥିବାଦି-ଭେଦରେ ଚତୁର୍ବିଧ; ଏମାନେ ନିରବୟବ ବା ଅଂଶହୀନ, ଅତଏବ 'ସମବେତ' ପରିଣାମ-ଯୋଗରେ ସୃଷ୍ଟି ଆରମ୍ଭ କରିଥାନ୍ତି । ପରମାଣୁବାଦର ବିଶଦ ବିବରଣ ଏହିପରି—

ପ୍ରଳୟକାଳରେ ପରମାଣୁ ଅନାରବ୍ଧ କାର୍ଯ୍ୟସ୍ୱରୂପରେ ଅବସ୍ଥିତ ; କିନ୍ତୁ ସୃଷ୍ଟିକାଳରେ ଜୀବାଦୃଷ୍ଟାଦିପୁରଃସର ବା ଚୈତନ୍ୟରୂପକ ଆତ୍ମା ବା ଜୀବର ଅଦୃଷ୍ଟରୂପକ 'ପ୍ରଭାବ' ଦ୍ୱାରା ପରମାଣୁରେ କ୍ରିୟାପ୍ରବୃତ୍ତି ହେଲେ ପରମାଣୁସମୂହ ସଂଯୁକ୍ତ ହୋଇ ଦ୍ୱ୍ୟଣୁକ ଆଦି କ୍ରମରେ ସାମୟିକ ସ୍ଥୂଳତର ଜଗତ୍‌କାର୍ଯ୍ୟ ଆରମ୍ଭ କରନ୍ତି । ଏ ସ୍ଥଳରେ ଦୁଇଟି ପରମାଣୁର ସଂଯୋଗକ୍ରିୟା ଅଦୃଷ୍ଟସାପେକ୍ଷ ଏବଂ ଏମାନଙ୍କର ସଂଯୋଗ ଘଟିଲେ ହ୍ରସ୍ୱଦ୍ୱ୍ୟଣୁକ ଉତ୍ପନ୍ନ ହୁଏ । ଅତଏବ ଏହି ସୃଷ୍ଟି—ଆରମ୍ଭଣ କାର୍ଯ୍ୟରେ ପରମାଣୁଦ୍ୱୟ ସମବାୟି-କାରଣ, ସମବାୟ ବା ଉଭୟର ସଂଯୋଗରୂପକ "ଜୀବାଦୃଷ୍ଟ" ସୃଷ୍ଟି ପ୍ରତି ନିମିତ୍ତକାରଣ । ଏହିପରି ଦ୍ୱ୍ୟଣୁକଦ୍ୱୟର ପରସ୍ପର ସଂଯୋଗ ଘଟିଲେ ମହତ୍-ତ୍ର୍ୟଣୁକ ଉତ୍ପନ୍ନ ହୁଏ ; କିନ୍ତୁ ଦ୍ୱ୍ୟଣୁକଗତ ହ୍ରସ୍ୱତ୍ୱରୂପ (ସୂକ୍ଷ୍ମରୂପ) ଅଣୁଦ୍ୱୟର ଅନ୍ୟ ଏକ ପରମାଣୁ ସହିତ ସଂଯୋଗ ଘଟିଲେ ତ୍ର୍ୟଣୁକ ଆରମ୍ଭ ହୁଏ ନାହିଁ ; କାରଣ, କାରଣବାହୁଲ୍ୟଦ୍ୱାରାହିଁ କାର୍ଯ୍ୟର ମହତ୍ତ୍ୱ (ସ୍ଥୂଳତ୍ୱ) ଉତ୍ପାଦିତ ହୋଇପାରେ—ଅତିସୂକ୍ଷ୍ମଦ୍ୱାରା ସ୍ଥୂଳତାପ୍ରାପ୍ତି ସମ୍ଭବ ନୁହେଁ । ପୂର୍ବୋକ୍ତ ଏହିସବୁ ବର୍ଣ୍ଣନାରୁ ସାଧାରଣତଃ ଏହା କୁହାଯାଏ—ଦୁଇଟି ପରମାଣୁ ସଂଯୋଗରେ ଦ୍ୱ୍ୟଣୁକର ଉତ୍ପତ୍ତି; ଅଣୁତ୍ରୟର ସଂଯୋଗରେ ତ୍ର୍ୟଣୁକ ଓ ସେହିପରି ଚତୁରଣୁକ ଆଦିର ଉତ୍ପତ୍ତି । ଚତୁରଣୁକମାନଙ୍କଦ୍ୱାରା ସ୍ଥୂଳରୁ ସ୍ଥୂଳତର ଓ ସ୍ଥୂଳତମ ଦ୍ରବ୍ୟର ଉତ୍ପତ୍ତି ହୋଇ ମହତୀ ପୃଥିବୀ, ମହତ୍ ତେଜ ଏବଂ ମହାନ୍ ବାୟୁରୂପକ ଭୂତଚତୁଷ୍ଟୟର ଉତ୍ପତ୍ତି ହୋଇଅଛି । କାରଣଗୁଣ କାର୍ଯ୍ୟଗୁଣରେ ସଂକ୍ରମିତ ହୁଏ—ଏହି ନ୍ୟାୟରେ ପରମାଣୁମାନଙ୍କର ସଂଯୋଗରୂପକ ସମବାୟିକାରଣଗତ ରୂପାଦିରୁ ସେମାନଙ୍କର କାର୍ଯ୍ୟଗତରୂପାଦି ସମୁତ୍ପନ୍ନ ହୁଏ; କିନ୍ତୁ ଯେଉଁ ସମୟରେ ଈଶ୍ୱର ଏହିପ୍ରକାରରେ ସମୁତ୍ପନ୍ନ ପୃଥିବୀପ୍ରଭୃତିର ସଂହାରଅଭିଳାଷୀ ହୁଅନ୍ତି, ସେ ସମୟରେ ପରମାଣୁସମୂହର ବିଯୋଗ କ୍ରିୟାଦ୍ୱାରା ପରମାଣୁମାନଙ୍କରୁ ଉତ୍ପନ୍ନ ସକଳଦ୍ରବ୍ୟ ନଷ୍ଟ ହୁଏ । ଦ୍ୱ୍ୟଣୁକଦ୍ରବ୍ୟର ନାଶ ଘଟିଲେ ତଦାଶ୍ରୟ ତ୍ର୍ୟଣୁକ ନଷ୍ଟ ହୁଏ ଓ ଏହି କ୍ରମରେ ପୃଥିବୀପ୍ରଭୃତି ସକଳ ଦ୍ରବ୍ୟର ନାଶ ସଂଘଟିତ ହୁଏ । ଉଦାହରଣସ୍ୱରୂପ ପଟଗତ ତନ୍ତୁ ଓ ରୂପାଦିର ନାଶ ଘଟିଲେ ପଟ ବିଲୟପ୍ରାପ୍ତ ହୁଏ ; ଜଗତର ସଂହାରକ୍ରମ ଏହିପରି ସାଧିତ ହୁଏ । ଏ ସ୍ଥଳରେ ପରମାଣୁର ନାମ ପରିମଣ୍ଡଳ ଓ

ପରମାଣୁମାନଙ୍କର ସମବେତ ପରିମାଣକୁ ପାରିମଣ୍ଡଳ କୁହାଯାଏ । ଦୁଇ ପରମାଣୁର ସଂଯୋଗରେ ଜାତ ଦ୍ୱ୍ୟଣୁକକୁ ଅଣୁ ବୋଲି କୁହାଯାଇଛି, ଓ ବହୁପରମାଣୁର ସମବେତ-ପରିମାଣ ଅଣୁତ୍ୱ ବା ହ୍ରସ୍ୱତ୍ୱ-ନାମରେ କଥିତ । ତ୍ର୍ୟଣୁକାଦିର ପରିମାଣ ମହତ୍ତ୍ୱ—ଇତ୍ୟାଦି ବୈଶେଷିକମାନଙ୍କର ମତ ।

କିନ୍ତୁ ବେଦାନ୍ତଦର୍ଶନରେ ଏହି ମତର ଏପରି ଖଣ୍ଡନ କରାଯାଇଛି—

**ମହଦ୍ଦୀର୍ଘବଦ୍ ବା ହ୍ରସ୍ୱ ପରିମଣ୍ଡଳାଭ୍ୟାମ୍ ।** ବ୍ର: ସୂ: ୨-୨-୧୧ ।

**ଉଭୟଥାପି ନ କର୍ମାତସ୍ତଦଭାବଃ ।** ,, ୨-୨- ୨ ।

ଅର୍ଥାତ୍—ବୈଶେଷିକମାନଙ୍କ ମତରେ ଦୁଇପରମାଣୁର ମିଳନଜନିତ ଦ୍ୱ୍ୟଣୁକ ଓ ତିନ ଓ ଚାରି ପରମାଣୁରୁ ତ୍ର୍ୟଣୁକ ଓ ଚତୁରଣୁକ ଉତ୍ପନ୍ନ ହୁଏ । ପରମାଣୁର ପରିମାଣର ନାମ ପରିମଣ୍ଡଳ; ଦ୍ୱ୍ୟଣୁକର ପରିମାଣର ନାମ ହ୍ରସ୍ୱ । ପରମାଣୁ ଓ ଦ୍ୱ୍ୟଣୁକରୁ ଚତୁରଣୁକ ଉତ୍ପନ୍ନ ହେଲେ ମଧ୍ୟ ପରମାଣୁର ପରିମଣ୍ଡଳ ଓ ଦ୍ୱ୍ୟଣୁକର ହ୍ରସ୍ୱ ଚତୁରଣୁକରେ ଥାଏ ନାହିଁ । ଚତୁରଣୁକରୁ ମହତ୍, ଦୀର୍ଘପ୍ରଭୃତି ଅପରଗୁଣ ଉତ୍ପନ୍ନ ହୁଏ ; ଏଥିରୁ ଜଣାଯାଏ ଯେ, କାରଣଗୁଣରୁ ଭିନ୍ନଗୁଣ କାର୍ଯ୍ୟରେ ଆବିର୍ଭୂତ ହୁଏ ; କିନ୍ତୁ ପ୍ରକୃତରେ ବୈଶେଷିକମାନେ ମାନନ୍ତି ଯେ କାର୍ଯ୍ୟଗୁଣ କାରଣଗୁଣସାପେକ୍ଷ । ଏହି ଯୁକ୍ତିରେ ସେମାନେ ବେଦାନ୍ତୀମାନଙ୍କର ଚେତନବ୍ରହ୍ମଙ୍କଠାରୁ ଅଚେତନଜଗତର ସୃଷ୍ଟିପ୍ରକ୍ରିୟାକୁ ଖଣ୍ଡନ କରନ୍ତି । ଅଥଚ ପରିମଣ୍ଡଳପରମାଣୁ ଏବଂ ହ୍ରସ୍ୱପରିମାଣ ଦ୍ୱ୍ୟଣୁକରୁ ଭିନ୍ନଗୁଣବିଶିଷ୍ଟ ମହତ୍ ଓ ଚତୁରଣୁକର ଉତ୍ପତ୍ତିକୁ ସ୍ୱୀକାର କରନ୍ତି । ଏପରି ବୈଶେଷିକମତ ପରସ୍ପରବିରୁଦ୍ଧ, ଅତଏବ ଯୁକ୍ତିଯୁକ୍ତ ନୁହେଁ ।

ଦ୍ୱିତୀୟତଃ ବୈଶେଷିକମତରେ ପ୍ରଳୟ ସମୟରେ ପରମାଣୁ ନିଷ୍କ୍ରିୟ; କିନ୍ତୁ ସୃଷ୍ଟି ସମୟରେ ସକ୍ରିୟ ଥିବାରୁ ଜଗତ୍ ରଚନା ଚାଲେ । ଜୀବର କର୍ମ ବା ଅଦୃଷ୍ଟ ହେତୁରୁ ପରମାଣୁ ସୃଷ୍ଟି ଅବସ୍ଥାରେ ସକ୍ରିୟ ଥାଏ ବୋଲି କୁହାଯାଇଛି ; କିନ୍ତୁ ଏଠାରେ ପ୍ରଶ୍ନ ହୁଏ ଯେ, ସୃଷ୍ଟି ଅବସ୍ଥାରେ ଅଦୃଷ୍ଟ କାହାକୁ ଆଶ୍ରୟ କରିଥାଏ ? ଜୀବ ନା ପରମାଣୁକୁ । ଯଦି ଜୀବକୁ ଆଶ୍ରୟ କରି ରହେ, ତେବେ ପରମାଣୁର ଗତି କିପରି ସଙ୍ଗତ ? କୌଣସିପ୍ରକାରେ ଯଦି ପରମାଣୁର ଗତି ହେବା ସ୍ୱାଭାବିକ, ତେବେ ଏହି ଅବସ୍ଥା ନିତ୍ୟ ବା ଶାଶ୍ୱତ ବୋଲି ସ୍ୱୀକୃତ ହେଲେ ପ୍ରଳୟ କଦାପି ସମ୍ଭବ ହେବ ନାହିଁ । ଏଥିରୁ ପ୍ରତିପନ୍ନ ହୁଏ ଯେ ବୈଶେଷିକଦର୍ଶନରେ ସୃଷ୍ଟି ଓ ପ୍ରଳୟକାଳୀନ ପରମାଣୁଗତ ଭେଦ ନିର୍ଣ୍ଣୀତ ହୋଇ ନାହିଁ । ଏ ବିଷୟର ଅଧିକ ବ୍ୟାଖ୍ୟା ଆବଶ୍ୟକ ।

ବୈଶେଷିକ ମତରେ ପରମାଣୁଗତ ଆଦ୍ୟକ୍ରିୟାହିଁ ଅଦୃଷ୍ଟବିଶିଷ୍ଟ ଆତ୍ମସଂଯୋଗର କାରଣ । ଅଦୃଷ୍ଟଯୁକ୍ତ ଆତ୍ମାର ସଂଯୋଗଜନ୍ୟ ପରମାଣୁସ୍ଥିତ ଆଦ୍ୟ କ୍ରିୟାରୁ ପରମାଣୁଦ୍ୱୟର

ସଂଯୋଗରୂପ ଦ୍ୱ୍ୟଣୁକାଦିର ଉତ୍ପତ୍ତି ଓ ତଦ୍ଦ୍ୱାରା କ୍ରମଶଃ ସୃଷ୍ଟିର ସମ୍ଭବ ହୁଏ । ଏହିପରି ଜଗତର ସକଳ ଚେତନ ଓ ଅଚେତନ ବସ୍ତୁ ପରମାଣୁଗତ ଆଦ୍ୟକ୍ରିୟାରୁ ଉତ୍ପନ୍ନ ହୁଅନ୍ତି । ପରିମଣ୍ଡଳ ବା ପରମାଣୁରୁ ଅଣୁହ୍ରସ୍ୱ, ଅର୍ଥାତ୍ ସୂକ୍ଷ୍ମରୂପ ହ୍ରସ୍ୱପରମାଣୁ ଦ୍ୱ୍ୟଣୁକର ଉତ୍ପତ୍ତି ହୁଏ; କିନ୍ତୁ ପୁନଶ୍ଚ ପରିମଣ୍ଡଳର ଉତ୍ପତ୍ତି ନୁହେଁ; ଦ୍ୱ୍ୟଣୁକରୁ ସ୍ଥୂଳ ମହଦ୍ଦୀର୍ଘ ତ୍ର୍ୟଣୁକ ଉତ୍ପନ୍ନ ହୁଏ; କିନ୍ତୁ ଅଣୁହ୍ରସ୍ୱ ଜାତ ହୁଏ ନାହିଁ । ବୈଶେଷିକମତରେ ଏହିସବୁ ବିସଦୃଶ ଜନ୍ମ ସ୍ୱୀକୃତ; କିନ୍ତୁ ଏହା ଅଯୁକ୍ତ । ଅନ୍ୟପକ୍ଷରେ ବେଦାନ୍ତମତର ଅଚେତନ ଚେତନର ଉପାଧିମାତ୍ର, ଅନ୍ୟ କୌଣସି ବସ୍ତୁ ନୁହେଁ । ଏହିଖଣ୍ଡରେ ବୈଶେଷିକମତର ପ୍ରତିପାଦନ କରାଗଲା; ବର୍ତ୍ତମାନ ତାହାର ଖଣ୍ଡନ କରାଯାଉଛି—

ବୈଶେଷିକ ମତରେ ପରମାଣୁର ସ୍ୱରୂପ ନିର୍ଣ୍ଣୟ-ଅବସରରେ କୁହାଯାଇଛି ଯେ, ଯାହାର ଅବୟବ ଅବୟବୀ ବିଭାଗ ଅସମ୍ଭବ ବା ଯାହା ଅତି ସୂକ୍ଷ୍ମ, ବିସ୍ତାରଶୂନ୍ୟ ଅବସ୍ଥାନ ମାତ୍ର ସ୍ୱରୂପ, ତାହା ପରମାଣୁ । ଏହି ପରମାଣୁ ନିରବୟବ । କ୍ଷିତି, ଜଳ, ତେଜ ଓ ବାୟୁ ସାବୟବ ଓ ଏମାନଙ୍କର ବିଭାଗର ସୀମା ଚତୁର୍ବିଧ ପରମାଣୁ; କିନ୍ତୁ ପ୍ରଳୟକାଳରେ କ୍ଷିତ୍ୟାଦିରେ ସଂଯୁକ୍ତ ପରମାଣୁର ଅବସ୍ଥିତି ନ ଥାଏ; ନିରବୟବ ଅନନ୍ତସଂଖ୍ୟକ ପରମାଣୁ କେବଳ ସେଥିରେ ବିଦ୍ୟମାନ ଥାଏ; କିନ୍ତୁ ଉତ୍ପତ୍ତିସମୟରେ ବାୟୁବୀୟ ପରମାଣୁରୁ କ୍ରିୟା ଆରମ୍ଭ ହୋଇ ସମସ୍ତ ଭୂତ ଉତ୍ପନ୍ନ କରେ ।

ବର୍ତ୍ତମାନ ପ୍ରଶ୍ନ ହୁଏ ଯେ, ଏହି ପରମାଣୁର ସଂଯୋଗରୂପ ଆଦ୍ୟକ୍ରିୟାପ୍ରତି କାରଣ କ'ଣ ? ପରମାଣୁଗତ ଅଦୃଷ୍ଟ ବା ଅନ୍ୟକିଛି ଆତ୍ମଗତ କାରଣ ଏଥିରେ ନିମିତ୍ତ । ଅର୍ଥାତ୍ ସୃଷ୍ଟି ପୂର୍ବରେ ପରମାଣୁଦ୍ୱୟ ଯେଉଁ କ୍ରିୟାଦ୍ୱାରା ସଂଯୋଜିତ ହୋଇ ଦ୍ୱ୍ୟଣୁକାଦିର ଉତ୍ପତ୍ତି କରନ୍ତି, ସେହି କ୍ରିୟା କିପରି ସାଧିତ ହୁଏ । ଏଥିପ୍ରତି ଅଦୃଷ୍ଟ କାରଣ ହୋଇପାରେ ନାହିଁ । କାରଣ, ଅଦୃଷ୍ଟ ଚିଦ୍ରୂପ ନୁହେଁ, ଏହା ଅଚେତନ । ଅତଏବ ଅଚେତନ ଅଦୃଷ୍ଟ କାରଣ ନ ହେବାରୁ ସଂଯୋଗ କ୍ରିୟା ସାଧିତ ହୋଇପାରିବ ନାହିଁ । ସଂଯୋଗ ନ ହେଲେ ଦ୍ୱ୍ୟଣୁକାଦିର ଉତ୍ପତ୍ତି ହୋଇପାରିବ ନାହିଁ । ସୃଷ୍ଟି ପ୍ରାରମ୍ଭରେ ଏହିରୂପ ନିମିତ୍ତାଭାବରୁ ସଂଯୋଜକ କ୍ରିୟା ଯେପରି ଅସମ୍ଭବ, ସେପରି ନିମିତ୍ତାଭାବରୁ ବିୟୋଜକ କ୍ରିୟାର ଅଭାବରୁ ପ୍ରଳୟ ମଧ୍ୟ ଅସମ୍ଭବ । ଆତ୍ମଗତ "ଦୃଷ୍ଟ" ରୂପକ ନିମିତ୍ତରୁ ମଧ୍ୟ ପରମାଣୁର ସଂଯୋଗ ବା ବିଭାଗକ୍ରିୟା ହୋଇ ନ ପାରେ । କାରଣ, ଚିତ୍‌ମାତ୍ରରେ ସ୍ୱୟଂସିଦ୍ଧ ଚିତ୍ ଶକ୍ତିକୁ କାରଣ ସ୍ୱୀକାର ନ କଲେ ନିର୍ଗୁଣ ଚେତନଦ୍ୱାରା "ପ୍ରଯତ୍ନ" ବା କ୍ରିୟାପ୍ରବର୍ତ୍ତନ ହୋଇପାରିବ ନାହିଁ । ସେହିପରି ଦୃଷ୍ଟନିମିତ୍ତ ସ୍ୱୀକାର କଲେ ତାହାର ଚିରସ୍ଥାୟିତ୍ୱ ସିଦ୍ଧ ହେବା ହେତୁରୁ ପ୍ରଳୟର ଅଭାବ ହେବ । ଅତଏବ ବୈଶେଷିକମତର ପରମାଣୁଗତ ଆଦ୍ୟ କ୍ରିୟା ଅଯୁକ୍ତ ବା ଅସିଦ୍ଧ । ଆଦ୍ୟ କ୍ରିୟାର ଅଭାବରୁ ପରମାଣୁର ସଂଯୋଗ କ୍ରିୟାର ଅଭାବ ଓ ପରମାଣୁ ସୃଷ୍ଟି ଆରମ୍ଭ କରିବାରେ ଅସମର୍ଥ ।

ଏହିପରି ସଂଯୋଗର ନିମିତ୍ତଭାବ କହିବାପରେ ସମବାୟର ମଧ୍ୟ ସମ୍ବନ୍ଧାଭାବ ବିଷୟ କୁହାଯାଉଛି ।

**ସମବାୟାଭ୍ୟୁପଗମାଚ୍ଚ ସାମ୍ୟାଦନବସ୍ଥିତେଃ ॥** ବ୍ର: ସୂ: ୨-୨-୧୩ ॥

ଏହି ସୂତ୍ରର ଅର୍ଥ ଏହିପରି —ବୈଶେଷିକ ମତରେ ଅବୟବ ଓ ଅବୟବୀର ସମ୍ବନ୍ଧକୁ ସମବାୟ ସମ୍ବନ୍ଧ କୁହାଯାଏ । ହସ୍ତପଦାଦି ଅବୟବ ଓ ଶରୀର ଅବୟବୀ । ପରମାଣୁମାନଙ୍କର ସଂଯୋଗ ଦ୍ୱ୍ୟଣୁକାଦିର ଉତ୍ପତ୍ତିପ୍ରତି କାରଣ । ଅତଏବ ଏହି ସମବାୟକାରଣ ସଂଯୋଗସମ୍ବନ୍ଧରୁ ଭିନ୍ନ ନୁହେଁ; ଏହିପରି ସମ୍ବନ୍ଧ କଳ୍ପନା କଲେ ଅନବସ୍ଥା ଦୋଷ ଘଟିତ ହେବ । ଅର୍ଥାତ୍ ସମବାୟ ଓ ସଂଯୋଗ ସମ୍ବନ୍ଧର ଅଭେଦ କଳ୍ପନା କଲେ ଅନବସ୍ଥା ଦୋଷ ଦେଖାଯିବ । ପ୍ରକୃତରେ ପରମାଣୁର ସଂଯୋଗ ପ୍ରତି ଅଦୃଷ୍ଟରୂପକ ସମବାୟକାରଣ ସେଥିରେ ନିମିତ୍ତ; କିନ୍ତୁ ସଂଯୋଗକୁ ସମବାୟ ବୋଲି ସ୍ୱୀକାର କରିବାଦ୍ୱାରା ଦୁଇ ସମ୍ବନ୍ଧର ଭେଦ ପ୍ରତିପନ୍ନ ହେଉ ନାହିଁ । ଯେପରି ସମବାୟରୂପ ନିମିତ୍ତ ପରମାଣୁଦ୍ୱୟର ସଂଯୋଗଦ୍ୱାରା ଦ୍ୱ୍ୟଣୁକର ସୃଷ୍ଟି କରେ; ସେହିପରି ପୁନଶ୍ଚ ପରମାଣୁ ସହିତ ସମବାୟର ସଂଯୋଗସମ୍ବନ୍ଧରେ ଏହିପରି ଅନ୍ୟ ନିମିତ୍ତ ମଧ୍ୟ ଆବଶ୍ୟକ । ତାହାହେଲେ ଅନ୍ୟ ସମବାୟଦ୍ୱାରା ଏହି ସମବାୟ ସମବାୟୀ ସହିତ ସମବେତ ହେବାଦ୍ୱାରା ସମବାୟର ଅନନ୍ତ କଳ୍ପନା କରିବାକୁ ହେବ । ଅତଏବ ସମବାୟକୁ ସ୍ୱତନ୍ତ୍ର ପଦାର୍ଥ ସ୍ୱୀକାର କରିବାଦ୍ୱାରା ଅନବସ୍ଥା ଦୋଷ ହେବ । ଅର୍ଥାତ୍ ସମବାୟର ଅନନ୍ତ ସମ୍ବନ୍ଧ କଳ୍ପନା କରିବାକୁ ହେବ ଓ ସମବାୟଦ୍ୱାରା ସଂଯୋଗସମ୍ବନ୍ଧବଶତଃ ଦ୍ୱ୍ୟଣୁକର ଉତ୍ପତ୍ତି ଅସିଦ୍ଧ ହେବ; କିନ୍ତୁ ଅଦ୍ୱୈତବାଦୀଙ୍କ ମତରେ ବ୍ରହ୍ମଶକ୍ତିସ୍ୱରୂପିଣୀ ତ୍ରିଗୁଣାତ୍ମିକା ମାୟା ଅସମାନତ୍ୱ-ବିଧାୟିନୀ ହୋଇ ବିଚିତ୍ର ସୃଷ୍ଟି ସମ୍ଭବ କରେ । ଆହୁରି ମଧ୍ୟ—

**ନିତ୍ୟମେବ ଚ ଭାବାତ୍** ॥ ବ୍ର: ସୂ: ୨-୨-୧୪ ॥

ବୈଶେଷିକ ମତରେ ପରମାଣୁର ପ୍ରବୃତ୍ତିଭାବହେତୁରୁ ନିତ୍ୟତ୍ୱ କଳ୍ପନା କଲେ ଉତ୍ପତ୍ତି ଓ ପ୍ରଳୟ ପୃଥକ୍‌ଭାବରେ ଉପପନ୍ନ ହୋଇ ପାରିବ ନାହିଁ । ଅର୍ଥାତ୍ ପରମାଣୁମାନଙ୍କର ପ୍ରବୃତ୍ତି-ସ୍ୱଭାବ ସ୍ୱୀକାର କଲେ ନିତ୍ୟପ୍ରବୃତ୍ତି ବା ସର୍ବଦା ସୃଷ୍ଟି କେବଳ ସମ୍ଭବ ହେବ; ପ୍ରଳୟ କଦାପି ସମ୍ଭବ ହେବ ନାହିଁ । ନିବୃତ୍ତିସ୍ୱଭାବ ସ୍ୱୀକାର କରିବାଦ୍ୱାରା ପ୍ରଳୟ ସିଦ୍ଧ ହେବ; କିନ୍ତୁ ସୃଷ୍ଟି ସମ୍ଭବ ହେବ ନାହିଁ । ଏକାଧାରରେ ଉଭୟସ୍ୱଭାବ ରହିବା ଅସମ୍ଭବ । କାରଣ, ନିମିତ୍ତଦ୍ୱାରା ପ୍ରବୃତ୍ତି ଓ ନିବୃତ୍ତି ସିଦ୍ଧ ହୋଇପାରିବ ନାହିଁ; ନିମିତ୍ତର (କାଳ, ଅଦୃଷ୍ଟ ଓ ଈଶ୍ୱରେଚ୍ଛା) ନିତ୍ୟତ୍ୱ ସ୍ୱୀକୃତ । ଅତଏବ ନିୟତ-ସନ୍ନିହିତ ସ୍ୱରୂପରେ ନିତ୍ୟ । ଅତଏବ ନିମିତ୍ତବଶତଃ ପ୍ରବୃତ୍ତିର ନିବୃତ୍ତି ଘଟିପାରେ ନାହିଁ । ଅତଏବ ସବୁପ୍ରକାରେ ବୈଶେଷିକ ମତ ଅଯୁକ୍ତ ।

ବୈଶେଷିକ ମତରେ ଚତୁର୍ବିଧ ପରମାଣୁ ରୂପରସାଦିଗୁଣଯୁକ୍ତ । ଏମାନେ ନିତ୍ୟ ଏବଂ ସକଳ ଭୌତିକ ପଦାର୍ଥର ଉତ୍ପାଦକ । ଏହି ମତର ଖଣ୍ଡନ ନିମନ୍ତେ ବ୍ରହ୍ମସୂତ୍ର—

ରୂପାଦିମତ୍ତ୍ୱାଚ ବିପର୍ଯ୍ୟୟୋ ଦର୍ଶନାତ୍ ॥ ବ୍ର : ସୂ : ୨-୨-୧୫ ॥

ରୂପାଦିମତ୍ତ୍ୱାତ୍, ଅର୍ଥାତ୍ ପରମାଣୁମାନଙ୍କର ରୂପପ୍ରଭୃତି ଅଛି ବୋଲି ବିପର୍ଯ୍ୟୟଃ, ଅର୍ଥାତ୍ ନିତ୍ୟତ୍ୱର ବିପର୍ଯ୍ୟୟ ହୁଏ; ଦର୍ଶନାତ୍—ଏହିପରି ଦେଖାଯାଏ । ବୈଶେଷିକ ମତରେ ମୃତ୍ତିକା, ଜଳପ୍ରଭୃତି ବିଭିନ୍ନ ଜାତୀୟ ପରମାଣୁର ଗନ୍ଧ-ରସ ପ୍ରଭୃତି ଗୁଣ ଅଛି । ଯେଉଁ ସବୁ ବସ୍ତୁର ରୂପପ୍ରଭୃତି ଗୁଣ ଅଛି, ତାହା ସବୁ ଅନିତ୍ୟ ଓ ଅନ୍ୟ ସୂକ୍ଷ୍ମତର ବସ୍ତୁରୁ ଉତ୍ପନ୍ନ । ଅତଏବ ସ୍ୱୀକାର କରିବାକୁ ହେବ ଯେ, ପରମାଣୁସକଳ ଅନିତ୍ୟ ଓ ସ୍ଥୂଳ; କିନ୍ତୁ ବୈଶେଷିକ ମତରେ ପରମାଣୁ ନିତ୍ୟ ଓ ସୂକ୍ଷ୍ମ । ରୂପ ଦିମାନ୍ ବସ୍ତୁ ଘଟାଦିପରି ସଗୁଣ ବା ଗୌଣକର୍ମ ; କର୍ମମାନେ ହିଁ ଅନିତ୍ୟ । ଅତଏବ ପରମାଣୁ ସ୍ଥୂଳହେବା ହେତୁରୁ ନିମିତ୍ତସାପେକ୍ଷ । କେବଳ କାରଣପରିଶୂନ୍ୟ ପଦାର୍ଥ ନିତ୍ୟ ହୋଇପାରେ, ନିତ୍ୟପଦାର୍ଥର କୌଣସି କାରଣ ବା ନିମିତ୍ତ ନ ଥାଏ । ସୃଷ୍ଟି ନିମନ୍ତେ ଯଦି ବ୍ରହ୍ମ ପରମାଣୁମାନଙ୍କର କାରଣ ହୁଏ, ତେବେ ପରମାଣୁ ଗୌଣ ବା ସ୍ଥୂଳ ହେବା ସ୍ୱତଃସିଦ୍ଧ । ଏପରିଅବସ୍ଥାରେ ପରମାଣୁ ଅନିତ୍ୟ ବୋଲି ଧରାଯିବ । ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ଅନୁସାରେ ରୂପାଦିବିହୀନ ବିଶୁଦ୍ଧ ପଦାର୍ଥ କେବଳ ନିତ୍ୟ ବୋଲି ଧରାଯାଏ ।

ଉଭୟଥା ଚ ଦୋଷାତ୍ ॥ ବ୍ର: ସୂ : ୨-୨-୧୬ ॥

ରୂପରସାଦିଗୁଣଯୁକ୍ତ ପରମାଣୁମାନଙ୍କର ଗୁଣର ସମପରିମାଣତ୍ୱ ସ୍ୱୀକାର କଲେ ରୂପରସାଦିର 'ସଦ୍‌ଭାବ' ଦୋଷ ଘଟିବ । ଅର୍ଥାତ୍ ସମଭାବାପନ୍ନ ଦୋଷ ହେବ । ଅର୍ଥାତ୍ ପୃଥିବୀର ମଧ୍ୟ ତେଜରଗୁଣ ସମ୍ଭବ ହେବ । ଗୁଣମାନଙ୍କର ଉପଚୟାପଚୟସ୍ୱୀକାର ମଧ୍ୟ ଦୋଷଯୁକ୍ତ । ବୈଶେଷିକ ମତରେ ଚତୁର୍ବିଧପ୍ରକାର ପରମାଣୁ ସ୍ୱୀକୃତ; କ୍ଷିତିର ପରମାଣୁରେ ସ୍ପର୍ଶ, ରୂପ, ରସ ଓ ଗନ୍ଧରୂପକ ଗୁଣ ବିଦ୍ୟମାନ; ଜଳପରମାଣୁର ସ୍ପର୍ଶ, ରୂପ ଓ ରସ ; ତେଜର ସ୍ପର୍ଶ ଓ ରୂପ ଦୁଇଟି ଗୁଣ ଓ ବାୟୁର ସ୍ପର୍ଶ କେବଳ ଗୋଟିଏ ଗୁଣ । ଅନ୍ୟତ୍ର କୁହାଯାଇଛି— ପୃଥିବୀ ପରମାଣୁର କେବଳ ଗନ୍ଧ ଗୋଟିଏ ଗୁଣ, ଜଳର ରସ, ତେଜର ରୂପ ଓ ବାୟୁର କେବଳ ସ୍ପର୍ଶ—ଏପରି ପ୍ରତ୍ୟେକ ପରମାଣୁର ଗୋଟିଏ ଗୋଟିଏ ଗୁଣ ବିଦ୍ୟମାନ । ଯାହାକିଛି ହେଉ, କ୍ଷିତ୍ୟାଦି ପରମାଣୁ ସଗୁଣ ହେଲେ ତାର ଅନିତ୍ୟତ୍ୱ ନିଶ୍ଚିତ । ଦ୍ୱିତୀୟତଃ, ପ୍ରଥମକଳ୍ପନା ଅନୁସାରେ କ୍ଷିତିପରମାଣୁ ଅପେକ୍ଷା ଜଳପରମାଣୁ ସୂକ୍ଷ୍ମତର । କିନ୍ତୁ ଏହା ଅସିଦ୍ଧ; କାରଣ ଏହି ମତରେ ପରମାଣୁ ମାତ୍ରେହିଁ ସୂକ୍ଷ୍ମତମ; ପରମାଣୁ ଅପେକ୍ଷା ଅନ୍ୟ କୌଣସି ବସ୍ତୁ ସୂକ୍ଷ୍ମତର ହୋଇ ପାରେ ନା । ଦ୍ୱିତୀୟକଳ୍ପନା ଅନୁସାରେ ପୃଥିବୀ କେବଳ ଗନ୍ଧଗୁଣବିଶିଷ୍ଟ ନୁହେଁ ; କାରଣ ମୃତ୍ତିକାର ଗନ୍ଧଭିନ୍ନ ସ୍ପର୍ଶ, ରୂପ ଓ ରସଗୁଣ ମଧ୍ୟ ଅଛି । ଏହି ସବୁ କାରଣରୁ ଉଭୟ କଳ୍ପନା ଦୋଷାବହ ହେବାରୁ ବୈଶେଷିକ ମତ ଅଯୁକ୍ତ ।

**ଅପରିଗ୍ରହାଚ୍ଚାତ୍ୟନ୍ତ ମନପେକ୍ଷା ॥ ବ୍ର: ସୂ: ୨-୨-୧୭ ॥**

ଅପରିଗ୍ରହାତ୍ = ଅର୍ଥାତ୍ ବେଦଜ୍ଞ ଋଷିମାନେ ଏହି ବୈଶେଷିକ ମତ ସ୍ୱୀକାର ନ କରିବାରୁ 'ଅତ୍ୟନ୍ତମନପେକ୍ଷା', ଅର୍ଥାତ୍ ଏହିମତ କୌଣସି ପ୍ରକାରେ ଗ୍ରହଣୀୟ ନୁହେଁ । ସାଂଖ୍ୟବାଦୀର କେତେକ ବିଷୟ ବେଦାନ୍ତୀ ସ୍ୱୀକାର କରେ, କିନ୍ତୁ ବୈଶେଷିକମତ ଆଦୌ-ଗ୍ରହଣୀୟ ନୁହେଁ । ସାଂଖ୍ୟର ଗ୍ରହଣୀୟତା ବିଷୟ ପୂର୍ବ ଅନୁପାଦରେ ବ୍ୟାଖ୍ୟାତ ହୋଇଛି । ବୈଶେଷିକମତରେ ଏପରି ବହୁ ଅସମଞ୍ଜସ ବିଷୟ ଦୃଷ୍ଟିଗୋଚର ହୁଏ; ଗ୍ରନ୍ଥବିସ୍ତାର ଭୟରେ ସେ ସକଳ ବିଷୟ ଏଠାରେ ଆଲୋଚିତ ନ ହୋଇ ପାରିଲେ ମଧ୍ୟ ନିମ୍ନୋକ୍ତ କେତେକ ବିଷୟ ଅବଧାନଯୋଗ୍ୟ । ତନ୍ମଧ୍ୟରେ ଦେଖାଯାଉ ଯେ, ଦୁଇ ନିରବୟବ ପରମାଣୁର ସଂଯୋଗରେ ସାବୟବ ଦ୍ୱ୍ୟଣୁକର ଉତ୍ପତ୍ତି । କିନ୍ତୁ ଏହା କିପରି ଯୁକ୍ତିସଙ୍ଗତ ? ଯାହାର ଅବୟବ ବା ପରିମାଣ ନାହିଁ, ସେପରି ବସ୍ତୁର ସଂଯୋଗଦ୍ୱାରା ସମବେତ ପରିମାଣବିଶିଷ୍ଟ ମହତ୍—ବସ୍ତୁର ସୃଷ୍ଟି ହେବା ସମ୍ଭବ ନୁହେଁ । ଉଦାହରଣସ୍ୱରୂପ, ଦେଖାଯାଉ—ଅବୟବବିଶିଷ୍ଟ ତନ୍ତୁମାନଙ୍କର ସଂଯୋଗରେ କେବଳ ସମବେତପରିମାଣସ୍ୱରୂପ ପଟର ଉତ୍ପତ୍ତି ସମ୍ଭବ ହୁଏ । ଯଦି ପରମାଣୁ ନିରବୟବ, ତେବେ ସହସ୍ରସଂଖ୍ୟକ ପରମାଣୁର ସଂଯୋଗରେ ମଧ୍ୟ ସେମାନଙ୍କର ସମବେତ ପରିମାଣର ଆଧିକ୍ୟ ଘଟିବ ନାହିଁ ଓ ସେହି ହେତୁରୁ ସୂକ୍ଷ୍ମରୁ ସ୍ଥୂଳସୃଷ୍ଟି ସମ୍ଭବ ହେବ ନାହିଁ । ପରମାଣୁରୂପକାରଣର ବିସ୍ତାରଶୂନ୍ୟ ଅବସ୍ଥାରୁ ବହୁପରମାଣୁର ସଂଯୋଗଦ୍ୱାରା ବିସ୍ତାରଯୁକ୍ତ ଅବସ୍ଥାନ ବିଶିଷ୍ଟ ମହତ୍ତ୍ୱର ଉଦ୍ଭବ କେବଳ କାଳ୍ପନିକ । ଦ୍ୱିତୀୟତଃ, ପୃଥିବୀର ନାଶରେ ଯଦି ଦ୍ୱ୍ୟଣୁକର ନାଶ ସମ୍ଭବ, ତେବେ ଦ୍ୱ୍ୟଣୁକର ନାଶଦ୍ୱାରା ସମକାଳୀୟ ପରମାଣୁର ମଧ୍ୟ ନାଶ ସମ୍ଭବ । ଅତଏବ ବୈଶେଷିକ ମତର ସିଦ୍ଧାନ୍ତ ଦୋଷଯୁକ୍ତ ।

**ଠ—ତାର୍କିକମତ ଖଣ୍ଡନ ଓ ଏକବ୍ରହ୍ମବାଦ ସିଦ୍ଧାନ୍ତ ।**

ତାର୍କିକମାନେ ବେଦାନ୍ତଦର୍ଶନ ବିରୁଦ୍ଧରେ ଏହିମତ ଉତ୍ଥାପିତ କରନ୍ତି—ଯଦି ଏକ ଓ ଅଦ୍ୱିତୀୟ ବ୍ରହ୍ମଙ୍କଠାରୁ ସକଳ ଜଗତର ଉତ୍ପତ୍ତି, ଅର୍ଥାତ୍ ଜଗତର ଚେତନ ଓ ଅଚେତନ ସକଳ ପଦାର୍ଥ ଚିଦେକରସ ଏକବ୍ରହ୍ମଙ୍କଠାରୁ ଉତ୍ପନ୍ନ ବୋଲି ସ୍ୱୀକାର କର, ତେବେ ସକଳ ଜୀବଙ୍କ ମଧ୍ୟରେ ସମୋପଲବ୍ଧିରୂପକ "ସହାନୁଭୂତି" କାହିଁକି ନ ହେବ ? ଅର୍ଥାତ୍, ଏକ ଅନ୍ୟଜୀବର ମନୋଭାବ କାହିଁକି ଅନୁଭବ କରିବ ନାହିଁ । ଉଦାହରଣ ସ୍ୱରୂପ—ସୂର୍ଯ୍ୟ ନିଜ-କିରଣଦ୍ୱାରା ଜଗତକୁ ପ୍ରକାଶିତ କରେ ଓ ସେହି ପ୍ରକାଶରେ ସମସ୍ତେ ସମସ୍ତଙ୍କୁ ଦେଖି ପାରନ୍ତି । ଅର୍ଥାତ୍ ସକଳ ଜୀବ ସେହି ତେଜର ଆଶ୍ରୟରେ ପରସ୍ପର ସହିତ ଦର୍ଶନୋପଲବ୍ଧିବିଶିଷ୍ଟ ସହାନୁଭୂତିଗ୍ରସ୍ତ ହୁଅନ୍ତି । ସେହିପରି ପ୍ରଧାନ ପ୍ରକାଶସ୍ୱରୂପ ଚେତନବ୍ରହ୍ମ ଚୈତନ୍ୟରୂପଜ୍ଞାନଦ୍ୱାରା ଜଗତ୍ ପ୍ରକାଶ କଲେ ସକଳଜୀବ ତଦାଶ୍ରିତ ଭାବରେ ପରସ୍ପର ସହିତ ଏକରସାତ୍ମକ

ଜ୍ଞାନୋପଲବ୍ଧିବିଶିଷ୍ଟ ସହାନୁଭୂତିଗ୍ରସ୍ତ କାହିଁକି ହେଉ ନାହାନ୍ତି । ଅତଏବ ଏକମାତ୍ରବ୍ରହ୍ମ ଜଗତର କପରି କାରଣ ହୋଇପାରେ ।

କିନ୍ତୁ ଏପରି ଶଙ୍କା ଠିକ୍ ନୁହେଁ । ଜଗତ୍ ଏକବସ୍ତୁ ଜାତ ହେଲେ ମଧ୍ୟ ସେହି ବସ୍ତୁଗତ ସ୍ୱଭାବସିଦ୍ଧ ଅଦ୍ଭୁତଶକ୍ତି ସମ୍ଭୂତ ବାଧାପ୍ରତିଷ୍ଟମ୍ଭ ହେତୁରୁ ସେହି ଅଦ୍ଭୁତ ଶକ୍ତିର ନୈମିତ୍ତିକ ବିକ୍ଷେପର ଅଜ୍ଞେୟ ବା ଅବିଦ୍ୟାଗତିଭୂତ ଅସମାନତ୍ୱବିଧାୟକ ବାଧକ ଧର୍ମ ହେତୁରୁ କୌଣସି ଅଂଶଗତ ଘାତ ବା ଅନୁଭୂତି ସର୍ବତ୍ର ସହାନୁଭୂତିରୂପରେ ସମଭାବରେ ବିସ୍ତାରଲାଭ ପାଇପାରେ ନାହିଁ । ଏହା ଜାଗତିକ ପଦାର୍ଥର ପ୍ରତ୍ୟକ୍ଷ ଧର୍ମ । ପଦାର୍ଥବିଜ୍ଞାନରେ ମଧ୍ୟ ଏହା ନିର୍ଣ୍ଣୀତ ହୋଇଛି । ଅଧିକ ହେଉ ବା ନ୍ୟୂନ ହେଉ, ଜଗତର ଯେ କୌଣସି ପଦାର୍ଥରେ ଏହି ବାଧାପ୍ରତିଷ୍ଟମ୍ଭ ନିଶ୍ଚୟ ରହିବ । ଏହି ପ୍ରତିଷ୍ଟମ୍ଭ ହେତୁରୁ ଘାତର ପ୍ରତିଘାତ— ଅର୍ଥାତ୍ କ୍ରିୟାର ପ୍ରତିକ୍ରିୟା ବା ସ୍ପନ୍ଦନର ପ୍ରତିସ୍ପନ୍ଦନ ଅନୁଷ୍ଠିତ ହୁଏ ଏବଂ ଯେ କୌଣସି ଭାବାନୁଭୂତିର ଏହିପରି ପ୍ରତିସ୍ପନ୍ଦନ ଜନିତ ବିରୁଦ୍ଧ ଭାବାତ୍ମକ ଅନୁଭୂତି ରୂପରେ 'କଳ୍ପନ' ବଶତଃ ଏକବସ୍ତୁ ସତ୍ତ୍ୱର ପୃଥକ୍‌ରୂପ ବ୍ୟାବହାରିକ ପରିଚ୍ଛିନ୍ନତା ଉତ୍ପାଦିତ ହୁଏ । ଜଡ଼ଜଗତରେ ଦେଖାଯାଉ; ମୌଳିକ ଜଳ ବାରି, ବରଫ ବା ବାଷ୍ପରୂପ ବିଭିନ୍ନ ଅବସ୍ଥାରେ ନିଜର ଅସ୍ତିତ୍ୱ ପ୍ରକାଶ କଲେ ମଧ୍ୟ ଏକ ଅବସ୍ଥାରେ ଅପର ଅବସ୍ଥାର ଜ୍ଞାନ ହୁଏ ନାହିଁ ; ଅର୍ଥାତ୍ ଜଳ ତରଳ ଅବସ୍ଥାରେ ଥିବା ସମୟରେ ସେଥିରେ ବାଷ୍ପ ବା ହିମର ଆଭାସ ହୁଏ ନାହିଁ ; ଅଧିକନ୍ତୁ ତରଳ ଜଳରୁ ଅବସ୍ଥାନ୍ତର ଜାତ ହୋଇ ବୁଦ୍‌ବୁଦ୍ ବା ତରଙ୍ଗାକାର ଜାତ ହେଲେ ତାହା ଜଳ ବୋଲି ଆଖ୍ୟାତ ନ ହୋଇ ସ୍ୱତନ୍ତ୍ର ଭାବରେ ବୁଦ୍‌ବୁଦ୍‌ାଦି ପଦବାଚ୍ୟ ହୁଏ । ସେହିପରି ଏକମାତ୍ର ନିତ୍ୟୋପଲବ୍ଧି ସ୍ୱରୂପ ପରମାତ୍ମା ବ୍ରହ୍ମ ପଦାର୍ଥ ନାନା-ଅବସ୍ଥାଦି ବିଶିଷ୍ଟ ଜାଗତିକ ପଦାର୍ଥବାଚୀ ହେଲେ ମଧ୍ୟ ତାହାଙ୍କର ଅଦ୍ଭୁତ ସ୍ୱଭାବସିଦ୍ଧ ଶକ୍ତିରୁ ମାୟିକବିକ୍ଷେପଜନିତ ପ୍ରତିଷ୍ଟମ୍ଭରୁ ଆତ୍ମମାନଙ୍କର ଆତ୍ମଗତ ନିତ୍ୟୋପଲବ୍ଧି ସ୍ୱରୂପ ଚିଦ୍‌ଭାବର କ୍ରିୟା ବା ସ୍ପନ୍ଦନ ସେହି ପ୍ରତିଷ୍ଟମ୍ଭବିଶିଷ୍ଟ ପ୍ରତିକ୍ରିୟାରୁ ଆତ୍ମମାନଙ୍କ ମଧ୍ୟରେ ସେହି ଶକ୍ତିର ବିକ୍ଷେପଜାତ ଟିତିରୂପ ଅବସ୍ଥାନ୍ତର ପ୍ରକାଶ କରି ଅବିଦ୍ୟାକଳ୍ପିତ ବିରୁଦ୍ଧଭାବାତ୍ମକ ପରସ୍ପର ବ୍ୟାବହାରିକ ପରିଚ୍ଛିନ୍ନତାମୟ ଅସହାନୁଭୂତିକ ଭାବ ଉତ୍ପାଦନ କରେ । ଏହି ଅସହାନୁଭୂତିକ ପରିଚ୍ଛିନ୍ନତା ପ୍ରକୃତ ପରିଚ୍ଛିନ୍ନତା ନୁହେଁ । ଆତ୍ମମାନଙ୍କର ଆତ୍ମଗତ ସ୍ୱଭାବସିଦ୍ଧ ଶକ୍ତିର ନୈମିତ୍ତିକ ବିପେକ୍ଷ ଅବିଦ୍ୟା କଳ୍ପନମାତ୍ର; ଅର୍ଥାତ୍ ଆତ୍ମମାନଙ୍କର ଭ୍ରାନ୍ତିଜାତ ଉପଲବ୍ଧି ମାତ୍ର । କୌଣସି ଉତ୍କୃଷ୍ଟ ପ୍ରକ୍ରିୟାଦ୍ୱାରା ଏହି ଅବିଦ୍ୟାରୂପ ପ୍ରତିଷ୍ଟମ୍ଭ ଦୂର କରିପାରିଲେ, ଆମ୍ଭେମାନେ ପରସ୍ପର ସହାନୁଭୂତିଗ୍ରସ୍ତ ହୋଇ ପାରିବୁ । ପ୍ରକୃତରେ ସକଳ ଜୀବ ବିଶୁଦ୍ଧ ଚିଦେକରସ ସ୍ୱରୂପ ଏକପଦାର୍ଥ; କିନ୍ତୁ ସେହି ଚିତ୍‌ଶକ୍ତିର ନୈମିତ୍ତିକ ଗତିରୂପ ଅବିଦ୍ୟା-ପ୍ରତିଷ୍ଟମ୍ଭରୁ ଆତ୍ମମାନଙ୍କର ଚିଦନୁଭୂତି ସର୍ବତ୍ର ସଞ୍ଚାର ଲାଭ କରିପାରେ ନାହିଁ । ସେହି ହେତୁରୁ ଜୀବ ପରସ୍ପର ଅସହାନୁଭୂତିକ ପରିଚ୍ଛିନ୍ନତାରେ ସର୍ବଦା ଜାଗ୍ରତ ଥାଏ; ଏବଂ ସେହି କାରଣରୁ

ପରସ୍ପରର ମନୋଭାବ ଜାଣି ପାରେ ନାହିଁ ଏବଂ ନିଜକୁ ପରଠାରୁ ଭିନ୍ନ ବସ୍ତୁ ବୋଲି ମନେ କରେ । ଅଳ୍ପକେ କହିଲେ, ଜୀବ ସ୍ୱଭାବତଃ ଚିଦେକରସ, ନିର୍ମଳ, ନିର୍ଗୁଣ, ବିଶୁଦ୍ଧ ପଦାର୍ଥ; ଜୀବର ଦେହାଦିଗତ ଜଡ଼ତା ଓ ଜୀବାନ୍ତରରୁ ଭେଦଜ୍ଞାନ ଅବିଦ୍ୟାକଳ୍ପିତ ଉପାଧି ମାତ୍ର । ଅର୍ଥାତ୍ ଜୀବର ସ୍ୱତନ୍ତ୍ର ବସ୍ତୁତ୍ୱ ରୂପ ବ୍ୟବହାରିକ ଜ୍ଞାନ ଭ୍ରାନ୍ତିକଳ୍ପିତ ।

ଏ ବିଷୟରେ ଅନ୍ୟପ୍ରକାର ସନ୍ଦେହ ହୋଇପାରେ—ଯଦି ଜୀବ ବିଶୁଦ୍ଧ "କୃଷ୍ଣାନୁଭୂତି" ସ୍ୱରୂପ ପ୍ରକାଶମୟ ପଦାର୍ଥ, ତେବେ ତାହାର ସ୍ୱଭାବସିଦ୍ଧ ଶକ୍ତିରୁ ତଦ୍‌ବିରୁଦ୍ଧଭାବର ଉଦ୍ଦୀପକ ଅସଦାନୁଭୂତିକ ପ୍ରତିଷ୍ଟମ୍ଭ କିପରି ସମ୍ଭବ ହେବ । କିନ୍ତୁ ଏପରି ସନ୍ଦେହ ଅଯଥା କରାଯାଏ ; ସ୍ୱଭାବସିଦ୍ଧଶକ୍ତିରୁ ବିରୁଦ୍ଧଭାବ ବା ବିରୁଦ୍ଧଅବସ୍ଥାର ଉତ୍ପତ୍ତି ଲୌକିକ ବିଜ୍ଞାନରେ ମଧ୍ୟ ଗୃହୀତ ହୋଇଛି । ଶକ୍ତିର ଅବସ୍ଥାନ୍ତର ରୂପ ଭାବ ପ୍ରକାଶକୁ କେବଳ ଜାତି ବା ଜନନ କୁହାଯାଏ । ବିଶୁଦ୍ଧ ଗଣିତ ବିଦ୍ୟାରେ ମଧ୍ୟ ଏହା ସିଦ୍ଧ (see Dynamics) । ଏହି ପଦାର୍ଥଗତ ଶକ୍ତି ସ୍ୱାଭାବିକ, ଅର୍ଥାତ୍ ଏହା ପଦାର୍ଥରୁ ପୃଥକ୍ ନୁହେଁ; ଏବଂ ସେହି ଶକ୍ତିରୂପକନିମିତ୍ତରୁ ଗତି ହେଉଛି ନୈମିତ୍ତିକ, ଅର୍ଥାତ୍ ଯାହା ସେହି ଶକ୍ତିର ଅବସ୍ଥାନ୍ତର ରୂପ ଭାବରେ ପ୍ରକାଶିତ ଓ ବୁଦ୍ଧିଗମ୍ୟ ହୁଏ । ଅତଏବ ଯାହା ପଦାର୍ଥର ସ୍ୱାଭାବିକ ଶକ୍ତି ତାହା ବୁଦ୍ଧିଗମ୍ୟ ହୁଏ ନାହିଁ ; କେବଳ ତନ୍ନିମିତ୍ତକ ଗତିରୂପ ଅବସ୍ଥାନ୍ତର ବୁଦ୍ଧିଗମ୍ୟ ହୁଏ । ଅର୍ଥାତ୍ ଯାହା କେବଳ ସତ୍ୟ, ତାହା ଗୋପନରେ ରହିଥାଏ, ତାହାର ବ୍ୟବହାରିକ ଆଭାସରୂପ ମିଥ୍ୟା ବା ଅବିଦ୍ୟାକଳ୍ପିତ ବସ୍ତୁମାନ ବୁଦ୍ଧିଗମ୍ୟ ହୁଏ । ଲୌକିକ ବିଜ୍ଞାନରୁ ମଧ୍ୟ ଜଣାଯାଏ—କୌଣସି ଶକ୍ତିମାନ ପଦାର୍ଥର ଶକ୍ତିଜନିତ ଗତିକୁ ଆମେ ବିଦ୍ୟୁତ୍ ବା ଆଲୋକ, ତାପ ଇତ୍ୟାଦି ଆଖ୍ୟା ଦେଇଥାଉ; କିନ୍ତୁ ଏହା ଆବିର୍ଭାବକ ଆଭାସାଦି ସ୍ୱରୂପରେ ଅଭିବ୍ୟକ୍ତ ହୁଏ । ମୂଳଶକ୍ତି ସାଧାରଣ ମନୁଷ୍ୟର ସମ୍ପୂର୍ଣ୍ଣ ଅଜ୍ଞାତ ଥାଏ । ଗୋଟିଏ ରଜ୍ଜୁବଦ୍ଧ ଗୋଲକ ଶୂନ୍ୟରେ ଘୂର୍ଣ୍ଣନ କରିବାକୁ ଆରମ୍ଭ କଲେ ଯେଉଁ ପର୍ଯ୍ୟନ୍ତ "ଶକ୍ତିବେଗ" ମୃଦୁ ଥିବ, ଅର୍ଥାତ୍ ଯେତେବେଳ ଯାଏ ସେହି ଶକ୍ତିଜନିତ ବା ଶକ୍ତିର ଅବସ୍ଥାନ୍ତର ରୂପ ଗତି ଅଳ୍ପଭାବରେ ଚାଲୁଥିବ, ସେ ପର୍ଯ୍ୟନ୍ତ ଗୋଲକ ନିଜର ସ୍ୱାଭାବିକରୂପରେ ଦୃଷ୍ଟ ହେଉଥିବ; କିନ୍ତୁ ଯେତେବେଳେ ଶକ୍ତିବେଗ ଅଧିକ ହେବ ସେତେବେଳେ ତଜ୍ଜନିତ ଗତି ମଧ୍ୟ ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହେବାରୁ ସେହି ଗୋଲକକୁ ଆଉ ଚିହ୍ନି ହେବ ନାହିଁ; ତାହାର ଆବର୍ତ୍ତପଥ ନିରବଚ୍ଛିନ୍ନ ଚକ୍ରାକାରରୂପରେ ପ୍ରତୀତ ହେବ । ସେହିପରି ପ୍ରାକୃତିକ ତେଜଆଦି ମଧ୍ୟ ମୃଦୁ-ବେଗରେ ନିଜସ୍ୱରୂପ ପ୍ରକାଶ କରେ ; କିନ୍ତୁ ବେଗ ଆତ୍ୟନ୍ତିକ ହେଲେ ନିଜରୂପ ଆଲୋକ ଅପସରି ଯାଇ ଅନ୍ଧକାର ରୂପଭାବ ପ୍ରକାଶ କରେ । ସେହିପରି କୃଷ୍ଣାନୁଭୂତିମୟ ସ୍ୱତଃପ୍ରକାଶ ସ୍ୱରୂପ ଚୈତନ୍ୟମାତ୍ର ବ୍ରହ୍ମ ; ତାହାଙ୍କର 'ପୂର୍ଣ୍ଣଶକ୍ତି' ରୂପ ନିମିତ୍ତରୁ ଜାତ ବିକ୍ଷେପଜନିତ ଅବିଦ୍ୟାଗତିରୁ ଜାତ ବିକାରାଦି ଯୋଗରେ ଆମ୍ଭମାନଙ୍କ ମନରେ "ସେ ଯାହାକୁହନ୍ତି ସେହିରୂପ ଭାବ" ଅର୍ଥାତ୍ ଭ୍ରାନ୍ତିକଳ୍ପିତ ଅସଦାନୁଭୂତିକ ବିବର୍ତ୍ତଭାବର ପ୍ରକାଶ ସେ କରୁଅଛନ୍ତି । ପୂର୍ଣ୍ଣଜ୍ଞାନ-ଲବ୍ଧିହାରା ଆମ୍ଭମାନଙ୍କର ଚିରସଂସ୍କାର ଜନିତ ଜୈବ—ଜ୍ଞାନାନୁଭୂତିର ଉନ୍ନତିବିଧାନ କରାଗଲେ

ଆମ୍ଭମାନଙ୍କର ମାନସିକ ପ୍ରତିଷ୍ଟମ୍ଭ ବିଦୂରିତ ହେବ ; ତଦ୍ଦ୍ୱାରା ସେହି ଶକ୍ତିର ବିକ୍ଷେପର ପ୍ରତିବିମ୍ବନ ସ୍ୱରୂପ ଏହି ଅବିଦ୍ୟାଭାବରୁ ମୁକ୍ତିଲାଭ କଲେ ସର୍ବଦା ସହାନୁଭୂତିଗ୍ରସ୍ତ ହୋଇ ଯାଇବୁ, ଅର୍ଥାତ୍ ଏକଜୀବ ଅନ୍ୟଜୀବର ଭାବ ଜ୍ଞାତ ହେବ—ଏହା ବେଦାନ୍ତ ଦର୍ଶନର ଶିକ୍ଷା ।

## ଠ—ବୌଦ୍ଧବିଜ୍ଞାନ ମତର ଖଣ୍ଡନ ।

ଗ୍ରନ୍ଥବିସ୍ତାର ଭୟରେ ଏହି ମତର ସଂକ୍ଷିପ୍ତ ବିବରଣ କେବଳ ଏଠାରେ ଦିଆଯାଉଛି । ବୌଦ୍ଧ ଦର୍ଶନର ବୈଭାଷିକମାନଙ୍କ ମତରେ ସକଳ ଜାଗତିକ ବାହ୍ୟପଦାର୍ଥ ପ୍ରତ୍ୟକ୍ଷସିଦ୍ଧ ; କିନ୍ତୁ ସୌତାନ୍ତିକମାନଙ୍କ ମତରେ ବୁଦ୍ଧି ବୈଚିତ୍ର୍ୟ ହେତୁରୁ ସକଳ ପଦାର୍ଥ ସତ୍ତା ଅନୁମେୟ । ଯୋଗାଚାରର ମତରେ ଅର୍ଥଶୂନ୍ୟ ଜ୍ଞାନ କେବଳ ପରମାର୍ଥ ହିଁ, ବାହ୍ୟ ସକଳ ପଦାର୍ଥ ସ୍ୱପ୍ନତୁଲ୍ୟ । କିନ୍ତୁ ବୌଦ୍ଧ ମାଧ୍ୟମିକ ମତ ଅନୁସାରେ ସକଳ ଶୂନ୍ୟ କେବଳ । ଘଟ ପଟାଦି ସକଳ ପଦାର୍ଥ କ୍ଷଣିକ—ଏପରି ବାହ୍ୟ ପଦାର୍ଥାଦିର ଅସ୍ତିତ୍ୱ ବିଷୟରେ ସେମାନେ ସମସ୍ତେ ଏକମତ । ବୌଦ୍ଧ ଦାର୍ଶନିକମାନେ ସକଳ ଜାଗତିକ ପଦାର୍ଥକୁ ପ୍ରଥମେ ଦୁଇଭାଗରେ ବିଭକ୍ତ କରନ୍ତି—ଭୂତଭୌତିକ ଓ ଚିତ୍ତଚୈତ୍ତିକ । ଏହାର ଅର୍ଥ-ଭୂତ ପରମାଣୁ ଓ ସେଥିରୁ ଜାତ ସକଳ ପଦାର୍ଥ ଭୌତିକ; ସେହିପରି ଚିତ୍ତର ଅର୍ଥ ଭାବନା (ମନର କ୍ରିୟା) ଓ ସେଥିରୁ ଜାତ ସକଳଦ୍ରବ୍ୟ ଚୈତ୍ତିକ । ରୂପ, ବିଜ୍ଞାନ, ବେଦନା, ସଂଜ୍ଞା ଓ ସଂସ୍କାର—ଏହି ପାଞ୍ଚଗୋଟି ସ୍କନ୍ଧ; ଏହି ସକଳ ସ୍କନ୍ଧ ଖର, ସ୍ନେହ, ଉଷ୍ଣ, ଚଳନ ଇତ୍ୟାଦି ସ୍ୱଭାବବିଶିଷ୍ଟ ପାର୍ଥିବାଦି ଚତୁର୍ବିଧ ପରମାଣୁ ଏକ ସମୟରେ ପୁଞ୍ଜୀଭୂତ ହୋଇ ପୃଥିବୀ, ଜଳ, ବାୟୁ ଓ ଅଗ୍ନି ରୂପକ ଭୂତ-ଚତୁଷ୍ଟୟ ଉତ୍ପାଦନ କରନ୍ତି । ଅର୍ଥାତ୍ ରୂପବିଜ୍ଞାନାଦି ପଞ୍ଚସ୍କନ୍ଧ ସହିତ ପାର୍ଥିବାଦି ପରମାଣୁର ସଂଯୋଗରେ ପୃଥିବୀ, ଜଳ ଆଦି ଭୂତ-ଚତୁଷ୍ଟୟ ଉତ୍ପନ୍ନ ହୁଅନ୍ତି । ଏହି ଭୂତଚତୁଷ୍ଟୟରୁ ଦେହ, ଇନ୍ଦ୍ରିୟ ଓ ଇନ୍ଦ୍ରିୟବିଷୟ ଆଦି ଭୌତିକ ପଦାର୍ଥ ଉତ୍ପନ୍ନ । ଅତଏବ ଭୂତ ଓ ଭୌତିକ ପରମାଣୁପୁଞ୍ଜ ବ୍ୟତିରେକେ ଅନ୍ୟ କିଛି ନୁହେଁ । ପରମାଣୁହେତୁକ ଭୂତଭୌତିକାତ୍ମକ ବାହ୍ୟ ସମୁଦାୟ ପଦାର୍ଥ ସ୍କନ୍ଧନାମରେ କଥିତ । ବିଜ୍ଞାନାଦି ସ୍କନ୍ଧ ଚତୁଷ୍ଟୟହେତୁକ ଆନ୍ତର ସମୁଦାୟ ହିଁ ଆଧ୍ୟାତ୍ମିକ ବା ଚିତ୍ତଚୈତ୍ତିକ; ତନ୍ମଧ୍ୟରେ ଅହଂଜ୍ଞାନବିଶିଷ୍ଟ ଜ୍ଞାନ ସନ୍ତାନ ( ଆଳୟ ଅର୍ଥାତ୍ ଲୟ ପର୍ଯ୍ୟନ୍ତ ଯେଉଁ ବିଜ୍ଞାନ ପ୍ରବାହ ) ବିଜ୍ଞାନସ୍କନ୍ଧ ନାମରେ ଅଭିହିତ ; ଏହି ଅହଂଜ୍ଞାନବିଶିଷ୍ଟ ବିଜ୍ଞାନସ୍କନ୍ଧକୁ କର୍ତ୍ତା ଓ ଭୋକ୍ତା କୁହାଯାଏ ଓ ଏହା ହେଉଛି ଜୀବର ଆତ୍ମା । ସୁଖବେଦନା ଓ ଦୁଃଖ ବେଦନା—ଇତ୍ୟାଦି ପ୍ରତ୍ୟୟ ବେଦନାସ୍କନ୍ଧ । ମନୁଷ୍ୟ, ଗୋ, ଅଶ୍ୱ—ଇତ୍ୟାଦି ବସ୍ତୁବିଶେଷ ନେଇ ଯେଉଁ ସବିକଳ୍ପକ ପ୍ରତ୍ୟୟ ତାହାର ନାମ ସଂଜ୍ଞାସ୍କନ୍ଧ; ଏବଂ ରାଗ, ଦ୍ୱେଷ, ମୋହ, ଧର୍ମ, ଅଧର୍ମ—ଇତ୍ୟାଦିରୂପ ଚୈତସ ବା ଚିତ୍ତର ଧର୍ମ ସଂସ୍କାରସ୍କନ୍ଧ ବୋଲି ଅଭିହିତ । ପ୍ରଥମ-ରୂପସ୍କନ୍ଧ ଭିନ୍ନ ଅନ୍ୟ ଚାରିପ୍ରକାର ସ୍କନ୍ଧ ଚିତ୍ତ-ଚୈତ୍ତିକ ବୋଲି ଅଭିହିତ । ସେହି ଚାରିମଧ୍ୟରୁ ବିଜ୍ଞାନସ୍କନ୍ଧ ଚିତ୍ତ ବା ଆତ୍ମା ଏବଂ ଅନ୍ୟଗୁଡ଼ିକ ଚିତ୍ତସମ୍ଭବ ବା ଚୈତ୍ତ୍ୟ

ବୋଲି କଥିତ । ଏମାନେ ସକଳ ବାହ୍ୟବ୍ୟବହାରର ଆସ୍ପଦ ବା ମୂଳାଧାର, ଅତଏବ ଅନ୍ତରରେ ସଂହତ ବା ସ୍ଥିତିଶୀଳ ; ଏହି ହେତୁରୁ ଆନ୍ତର ବା ଆଧ୍ୟାତ୍ମିକ ସମୁଦାୟ ଚତୁଃସ୍କନ୍ଧୀ ସ୍ୱରୂପ, ଏହି ରୂପରେ ଭୂତଭୌତିକ ଓ ଚିତ୍ତଚୈତ୍ତିକ—ଏହି ଦ୍ୱିବିଧ ଅନ୍ତର୍ଗତ ସକଳ ଜଗତ୍ । ଏତଦ୍‌ଭିନ୍ନ ଆକାଶ ଆଦି ଅନ୍ୟ ସବୁ ଅବସ୍ତୁପଦବାଚ୍ୟ । ଏହା ସବୁ ବୌଦ୍ଧ ଦାର୍ଶନିକମାନଙ୍କର ସିଦ୍ଧାନ୍ତ । ବର୍ତ୍ତମାନ ପ୍ରଶ୍ନ ହୁଏ—ବୌଦ୍ଧବୈଭାଷିକମାନଙ୍କର "ସମୁଦାୟଦ୍ୱୟ" କଳ୍ପନା, ଯଦ୍ଦ୍ୱାରା ସେମାନେ ବ୍ୟବହାରୋପପତ୍ତିସିଦ୍ଧତା ପ୍ରତିପାଦନ କରନ୍ତି, କପରି ଯୁକ୍ତିଯୁକ୍ତ । ପରମାତ୍ମା ବ୍ୟତୀତ ବାହ୍ୟବସ୍ତୁର ଅସ୍ତିତ୍ୱବାଦ ଏବଂ ପରମାଣୁ ଓ ଶବ୍ଦସ୍ପର୍ଶାଦି ଦ୍ୱାରା ବୌଦ୍ଧ-ଦାର୍ଶନିକ-ସମ୍ମତ ଜଗଦୁତ୍ପତ୍ତିବାଦର ଖଣ୍ଡନ ବିଷୟରେ ବ୍ରହ୍ମସୂତ୍ରବଚନ ଏହିପରି—

**ସମୁଦାୟ ଉଭୟହେତୁକେଽପି ତଦପ୍ରାପ୍ତିଃ । ବ୍ରଂ ସୂଂ ୨-୨-୧୮ ।**

ପରମାଣୁମାନଙ୍କର ସଂଘାତ-ବିଷୟରେ ସ୍ୱତଃ ବା ପରତଃ କାରଣାଭାବ ହେତୁରୁ ଚତୁର୍ବିଧ ଅଣୁ ହେତୁକ ଭୂତ ଭୌତିକ ସଂହତିରୂପ ସମୁଦାୟ କୌଣସି ପ୍ରକାରେ ସିଦ୍ଧ ହୋଇ ପାରିବ ନାହିଁ, ସେହି କାରଣରୁ ମଧ୍ୟ ରୂପ-ବେଦନା, ବିଜ୍ଞାନ, ସଂଜ୍ଞା ଓ ସଂସ୍କାର ହେତୁକ ପଞ୍ଚସ୍କନ୍ଧ ରୂପ ଭୂତଭୌତିକ କଳ୍ପନା ଅସିଦ୍ଧ; ଅର୍ଥାତ ଏମାନଙ୍କର ସଂଘାତରୂପ ଜଗଦୁତ୍ପତ୍ତି କଳ୍ପନା ଅସିଦ୍ଧ ହୁଏ । * ବୌଦ୍ଧ ସର୍ବାସ୍ତିବାଦୀମାନେ ପରମାଣୁହେତୁକ ବାହ୍ୟ ସମୁଦାୟ ଓ ଚତୁସ୍କନ୍ଧହେତୁକ ଆନ୍ତର ସମୁଦାୟ ଏବଂ ଉଭୟ ସଂଘାତ ହେତୁକ ଉଭୟବିଧ ସମୁଦାୟରୁ ଜଗଦୁତ୍ପତ୍ତିନିରୂପଣ ଯାହା ସବୁ କରିଛନ୍ତି, ସେ ସବୁ ଅସିଦ୍ଧ । କାରଣ, ପରମାଣୁମାନଙ୍କର ଅଚେତନତ୍ୱ ହେତୁରୁ ଓ ସମୁଦାୟ ବସ୍ତୁର (ଅର୍ଥାତ୍ ସଂଘାତଜନକ ବସ୍ତୁର) ଅବସ୍ତୁତ୍ୱ ବା ଅଚେତନତ୍ୱ ହେତୁରୁ ଏବଂ ଅନ୍ୟକୌଣସି ସ୍ଥିରଚେତନ ସଂହତିକର୍ତ୍ତାର ଅଭାବରୁ ପରମାଣୁମାନଙ୍କର ସଂଘାତ କ୍ରିୟା ଅସମ୍ଭବ । ଯଦି ପରମାଣୁର ସ୍ୱତଃ ସଂଘାତକରଣପ୍ରବୃତ୍ତି ଅଛି ବୋଲି ସ୍ୱୀକାର କରାଯାଏ, ତେବେ ସାତତ୍ୟ ବା ନୈରନ୍ତର୍ଯ୍ୟ ଦୋଷ ପ୍ରସଙ୍ଗରୁ ପରମାଣୁ

* ଯୋଽୟଂ ବାହ୍ୟପରମାଣୁହେତୁକୋ ଭୂତଭୌତିକ ସଂଘାତରୂପଃ ଆନ୍ତରଶ୍ଚ ସ୍କନ୍ଧହେତୁକଃ ପଞ୍ଚସ୍କନ୍ଧରୂପଃ ସମୁଦାୟୋଽଭିପ୍ରେୟତେ ବୌଦ୍ଧୈଃ, ତସ୍ମିନ୍ ଉଭୟ ହେତୁ କେଽପି ସମୁଦାୟେ ତଦପ୍ରାପ୍ତିଃ ସମୁଦାୟତ୍ୱାପ୍ରାପ୍ତି ସ୍ତେଷାଂ ସଂଘାତଭାବାନୁପପତ୍ତିଃ ସ୍ୟାଦିତି ତନ୍ମତମଗ୍ରାହ୍ୟମିତି ସୂତ୍ରାର୍ଥଃ । ଅର୍ଥାତ୍ ବୌଦ୍ଧମାନଙ୍କ ମତରେ ପରମାଣୁମୂଳକ ବହିଃପ୍ରପଞ୍ଚ ଓ ଚିତ୍ତମୂଳକ ଅନ୍ତଃ ପ୍ରପଞ୍ଚ—ରୂପକ ଉଭୟ ସମୁଦାୟ (ମିଳନ) ସକଳ ବ୍ୟବହାର ନିର୍ବାହକ ବୋଲି ନିରୂପିତ ହୋଇଛି ତାହା ଅନୁପପନ୍ନ; କାରଣ, ଏହି ସମୁଦାୟ ମିଳନବାଦ ସେମାନଙ୍କର କ୍ଷଣିକବାଦ ହେତୁରୁ ଅସମ୍ଭବ । ସେମାନଙ୍କ ମତରେ ପୂର୍ବକ୍ଷଣରେ ଜାତ ପଦାର୍ଥ ପରକ୍ଷଣରେ ରହେ ନାହିଁ । ଅତଏବ ନିରନ୍ତର ସ୍ଥିତିର ଅଭାବରୁ ସମୁଦାୟତ୍ୱ, ଅର୍ଥାତ୍ ମିଳନ ବା ସଂଘାତ ଅନୁପପନ୍ନ । ଅତଏବ ବୌଦ୍ଧମତ ଅଳୀକ ଓ ଭ୍ରାନ୍ତ ।

ମାନଙ୍କର ବିଶ୍ଳେଷଣ ହେବା ଅସମ୍ଭବ ହେବ ଏବଂ ଜଗତର ପ୍ରଳୟ ଆଦୌ ହେବ ନାହିଁ । ପରମାଣୁମାନଙ୍କର ଭାବକ୍ଷଣିକତ୍ୱ ମାନିବାରୁ ସ୍ଥିର ଚେତନାଭାବ ସ୍ୱତଃ ସିଦ୍ଧ ଓ ତଜ୍ଜନ୍ୟ ପ୍ରବୃତ୍ତିର ଅଭାବ ମଧ୍ୟ ସ୍ୱାଭାବିକ ହୋଇପଡ଼େ । ଦ୍ୱିତୀୟତଃ, ଆଳୟବିଜ୍ଞାନ ଓ ବିଜ୍ଞାନ ମଧ୍ୟରେ ଭେଦ କଣ—ଏହା ବୌଦ୍ଧ ଦାର୍ଶନିକ ନିରୂପଣ କରି ନାହାନ୍ତି । କ୍ଷଣିକତ୍ୱ ହେତୁରୁ ସେହି ବିଜ୍ଞାନରେ ପ୍ରବୃତ୍ତି ହେବା ଅସ୍ୱାଭାବିକ; ଅତଏବ ଆତ୍ମାର ପ୍ରବୃତ୍ତି ମଧ୍ୟ ସିଦ୍ଧ ହୁଏନାହିଁ । ଏହିସବୁ କାରଣରୁ ସମୁଦାୟ ବା ସଂଘାତବାଦ ଅସିଦ୍ଧ । ଆହୁରି ମଧ୍ୟ କୁହାଯାଇଛି—

**ନାସତୋଽଦୃଷ୍ଟତ୍ୱାତ୍ ।** ବ୍ର: ସୂ: ୨-୨-୨୬ ॥

ଅଭାବରୁ ଭାବର ଉତ୍ପତ୍ତି ଦୃଷ୍ଟ ହୁଏନାହିଁ । ଗୀତାରେ ମଧ୍ୟଅଛି— ନାସତୋ ବିଦ୍ୟତେ ଭାବଃ । ଖପୁଷ୍ପତୁଲ୍ୟ ପଦାର୍ଥାଭାବରୁ କୌଣସି ପଦାର୍ଥର ଉତ୍ପତ୍ତି କୁହାପି ଦେଖାଯାଏ ନାହିଁ । ଅତଏବ ବୈଶେଷିକମତ ଆଦୃତ ନୁହେଁ । ବୌଦ୍ଧଦର୍ଶନର ବିନାଶବାଦୀମାନେ ଅଭାବକୁ ଭାବର କାରଣ ବା ଉତ୍ପାଦକ ବୋଲି କହିଛନ୍ତି । ଅର୍ଥାତ୍ ବୌଦ୍ଧ ଦର୍ଶନରେ କାରଣ ଧ୍ୱଂସ ହେବାପରେ କାର୍ଯ୍ୟର ଉତ୍ପତ୍ତି ବୋଲି ବର୍ଣ୍ଣିତ ହୋଇଛି । ବୀଜଧ୍ୱଂସ ହେଲେ ତହିଁରୁ ଅଙ୍କୁରର ଉତ୍ପତ୍ତି ହୁଏ; ଦୁଗ୍ଧ ନଷ୍ଟ ହେଲେ ତହିଁରୁ ଦହି ଜାତହୁଏ । ଏପରି ଉଦାହରଣ ମଧ୍ୟ ସେଥିରେ ଦିଆଯାଇଛି । କିନ୍ତୁ ଏହା କେତେଦୂର ସଂଗତ ଦେଖାଯାଉ—ପ୍ରକୃତରେ ଯଦି ବୀଜ ଧ୍ୱଂସ ହେବାପରେ ଅଙ୍କୁରର ଉତ୍ପତ୍ତି, ତେବେ ଦୁଗ୍ଧ ଧ୍ୱଂସ ହେବା ପରେ ମଧ୍ୟ ଅଙ୍କୁରର ଉତ୍ପତ୍ତି ହେବ; କାରଣ ବୀଜଧ୍ୱଂସ ହେଲେ ଯାହାରହେ, ଅର୍ଥାତ୍ ଶୂନ୍ୟ, ଦୁଗ୍ଧ ଧ୍ୱଂସ ହେବା ପରେ ମଧ୍ୟ ସେହି ଶୂନ୍ୟହିଁ ରହିବ । କାରଣ, ଉଭୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କିନ୍ତୁ ପ୍ରକୃତରେ ବୀଜରୁ ଅଙ୍କୁର ଉତ୍ପନ୍ନ ହୁଏ, ଅନ୍ୟ ବସ୍ତୁରୁ ନୁହେଁ । ଅତଏବ ବୁଝିବାକୁ ହେବ ଯେ, ଅଙ୍କୁରର ଉତ୍ପତ୍ତିପୂର୍ବରୁ ବୀଜର ଧ୍ୱଂସ ହୋଇନାହିଁ । କେବଳ ବୀଜର ଅଂଶଗୁଡ଼ିକ ବିଭିନ୍ନ ରୂପରେ ସଜ୍ଜିତ ହୋଇ ଅଙ୍କୁରରେ ପରିଣତ ହୁଏ । ଧ୍ୱଂସ, ଅର୍ଥାତ୍ ଅସଦ୍ ବସ୍ତୁରୁ କେବେ ହେଲେ କୌଣସି ବସ୍ତୁର ଉତ୍ପତ୍ତି ହୁଏନାହିଁ । ଅତଏବ ଏହିମତ କୌଣସି ପ୍ରକାରେ ଯୁକ୍ତିଯୁକ୍ତ ନୁହେଁ । ଏହି ସକଳ ପୂର୍ବାପର ସଙ୍ଗତିବିରୁଦ୍ଧ ଓ ଅସମଞ୍ଜସ କାରଣରୁ ବ୍ରହ୍ମସୂତ୍ରର ୨-୨୧୯—୨୫ ସୂତ୍ର ଓ ଉକ୍ତ ଅଧ୍ୟାୟର ୨୭-୩୨ ସୂତ୍ରମାନଙ୍କର ସର୍ବାସ୍ତିତ୍ୱବାଦୀ, ବିଜ୍ଞାନବାଦୀ ଓ ଶୂନ୍ୟବାଦୀ ବୌଦ୍ଧ ଦାର୍ଶନିକମତ ସମ୍ୟକ୍ ପର୍ଯ୍ୟାଲୋଚିତ ହୋଇ ପ୍ରତ୍ୟାଖ୍ୟାତ ହୋଇଛି ।

**୦—ଜୈନ ଆର୍ହତବାଦଖଣ୍ଡନ ।**

ଜୈନ (ଆର୍ହତବାଦ) ମତରେ ପଦାର୍ଥ ଦ୍ୱିବିଧ—ନିତ୍ୟସ୍ୱରୂପ ଜୀବ ଓ ଅନିତ୍ୟ ଅଜୀବ । ସେଥିରୁ ଜୀବ ଚେତନପରିମାଣ ସାବୟବ । ଅଜୀବ ପଞ୍ଚବିଧ—ଧର୍ମ, ଅଧର୍ମ, ପୁଦ୍ଗଳ, କାଳ ଓ ଆକାଶ । ଗତିହେତୁ ଧର୍ମ, ସ୍ଥିତିହେତୁ ଅଧର୍ମ ଏବଂ ଏହି ଅଧର୍ମ ହିଁ ବ୍ୟାପକ । ଯାହାର

ବର୍ଣ୍ଣ; ଗନ୍ଧ, ରସ ଓ ସ୍ପର୍ଶ ଅଛି, ତାହା ପୁଦ୍‌ଗଳ । ପୁଦ୍‌ଗଳ ଦୁଇପ୍ରକାର—ପରମାଣୁ ଓ ପରମାଣୁର ସଂଘାତ । ଏହିପରି ପରମାଣୁର ସଂଘାତର ଫଳ ହେଉଛି ବାୟୁ, ଅଗ୍ନି, ଜଳ, ପୃଥିବୀ, ଶରୀର-ଇତ୍ୟାଦି । ପୃଥିବୀପ୍ରଭୃତିର ହେତୁରୂପ ପରମାଣୁସମୂହ ଚାରିପ୍ରକାର ନୁହେଁ; କିନ୍ତୁ ଏକ ପ୍ରକାର ଏହି ପରମାଣୁସମୂହର ସଂଘାତରୂପ ସ୍ୱାଭାବିକ ପରିଣାମରୁ ପୃଥିବୀପ୍ରଭୃତି ବିଶେଷ ପଦାର୍ଥର ଉତ୍ପତ୍ତି ହୁଏ । କାଳ ଅତୀତାଦିର ବ୍ୟବହାରହେତୁ ଅଣୁ ଅଟେ । ଆକାଶ ଏକ ଓ ଅସୀମ ପ୍ରଦେଶ । ଏହି ଛ'ପ୍ରକାର ପଦାର୍ଥକୁ ଦ୍ରବ୍ୟ କୁହାଯାଏ । ସକଳ ଜଗତ୍ ଏହିପରି ଦ୍ରବ୍ୟାତ୍ମକ । ଏହିପରି ବସ୍ତୁର ସ୍ୱରୂପ ଜୀବ ନିତ୍ୟ ଓ ଅଜୀବ ଅନିତ୍ୟ; ଅଣୁ ବା କାଳ ବ୍ୟତୀତ ଅନ୍ୟ ପାଞ୍ଚଟି ଦ୍ରବ୍ୟ ଅସ୍ତିକାୟ ବୋଲି କଥିତ । ଅର୍ଥାତ ଜୀବ, ଧର୍ମ, ଅଧର୍ମ, ପୁଦ୍‌ଗଳ ଓ ଆକାଶ—ଏମାନେ ଅନେକ ଦେଶବର୍ତ୍ତୀ (ଅଣୁ ବା କାଳସହିତ ସମ୍ବନ୍ଧ) ଦ୍ରବ୍ୟବାଚୀ ଅସ୍ତିକାୟ ନାମରେ ଅଭିହିତ । ବସ୍ତୁର ନିତ୍ୟାଂଶର ନାମ ଦ୍ରବ୍ୟ ଏବଂ ତାହାର ନିୟତ ପରିବର୍ତ୍ତନଶୀଳ ଗୁଣସମଷ୍ଟି ବିଶିଷ୍ଟ ଅନିତ୍ୟ ଅଂଶର ନାମ ପର୍ଯ୍ୟାୟ । ବସ୍ତୁମାନେ ଏହିପରି ଦ୍ରବ୍ୟ-ପର୍ଯ୍ୟାୟାତ୍ମକ । ପର୍ଯ୍ୟାୟ ଦୁଇପ୍ରକାର—କେତେକ ଦ୍ରବ୍ୟ ସହଭାବୀ ଓ ଅନ୍ୟ କେତେକ କ୍ରମଭାବୀ । ଏହିପରି ପର୍ଯ୍ୟାୟ ଦ୍ରବ୍ୟର ଭାବ ବା ଧର୍ମବୋଧକ । ଜୀବ, ଅଜୀବ, ଆସ୍ରବ, ସମ୍ବର, ନିର୍ଜର, ବନ୍ଧ ଓ ମୋକ୍ଷ, ଏହା ସାତ ପଦାର୍ଥ । ଏହି ସମୁଦାୟର ବୋଧଦ୍ୱାରା ହେୟ ଉପାଦେୟାଦିସିଦ୍ଧି ହୁଏ । ଜୀବ ଚେତନ, ସାବୟବ, କାୟପରିମାଣ ଓ ଜ୍ଞାନାଦିଗୁଣକ । ଅଜୀବ ଜୀବର ଭୋଗ୍ୟପଦାର୍ଥ । ଯେଉଁମାନଙ୍କଦ୍ୱାରା ଜୀବ ବିଷୟମାନଙ୍କରେ ନିବଦ୍ଧ ହୁଏ, ସେହି ଇନ୍ଦ୍ରିୟ-ସଂଘାତର ନାମ ଆସ୍ରବ । ଅବିବେକର ନାମ ସମ୍ବର । ଯାହାଦ୍ୱାରା କାମକ୍ରୋଧାଦି ଜୀର୍ଣ୍ଣ ହୁଏ, ସେହି ବିବେକର ନାମ ନିର୍ଜର । ଅଷ୍ଟପ୍ରକାର କର୍ମଦ୍ୱାରା ଆପାଦିତ ପ୍ରବାହ ବନ୍ଧ । ସେହି ଅଷ୍ଟପ୍ରକାର କର୍ମ ମଧ୍ୟରେ ଚାରିଟିକୁ ପାପବିଶେଷରୂପ ଘାତିକର୍ମ କୁହାଯାଏ, ଏହି ଘାତିକର୍ମଦ୍ୱାରା ସ୍ୱାଭାବିକ ଜ୍ଞାନ, ଦର୍ଶନ, ବୀର୍ଯ୍ୟ ଓ ସୁଖ ପ୍ରତିହତ ହୁଏ । ଅନ୍ୟ ଚାରିଗୋଟି ପୁଣ୍ୟବିଶେଷରୂପ ଅଘାତିକର୍ମ, ଯାହାଦ୍ୱାରା ଦେହସଂସ୍ଥାନ ଦେହର ଅଭିମାନ ଓ ତତ୍‌କୃତ ସୁଖଦୁଃଖରେ ଅପେକ୍ଷା ଓ ଉପେକ୍ଷା ସିଦ୍ଧ ହୁଏ । ସେହି ଅଷ୍ଟପ୍ରକାର କର୍ମରୁ ନିବୃତ୍ତିପ୍ରାପ୍ତିର ଅର୍ଥାତ୍ ଜୀବର ସ୍ୱାଭାବିକ ଆତ୍ମରୂପ ଆବିର୍ଭାବର ନାମ ମୋକ୍ଷ । ସମ୍ୟକ୍‌ଜ୍ଞାନଦର୍ଶନ ଓ ଚାରିତ୍ର୍ୟ—ଏମାନେ ମୁକ୍ତିର ସାଧନ । ରାଗ, ଦ୍ୱେଷ-ଶୂନ୍ୟତାଦ୍ୱାରା ପଦାର୍ଥାଦିର ଅବଲୋକନ ହିଁ ସମ୍ୟକ୍ ଦର୍ଶନ; ଆତ୍ମଅନାତ୍ମ-ବିବେକଦ୍ୱାରା ପଦାର୍ଥାଦିର ଅବଗମ ସମ୍ୟକ୍ ଜ୍ଞାନ; ଫଳନିରପେକ୍ଷ କର୍ମାଦି ଘାତସମୂହର ଅନୁଷ୍ଠାନ ହିଁ ସମ୍ୟକ୍ ଚାରିତ୍ର୍ୟ ।

ଏହି ବସ୍ତୁତତ୍ତ୍ୱର ନିର୍ଣ୍ଣୟ ବା ପ୍ରମାଣକର୍ତ୍ତା ସପ୍ତଭଙ୍ଗୀନୟ ବା ସ୍ୟାଦ୍‌ବାଦର ବ୍ୟାଖ୍ୟା ଏହିପରି—ବସ୍ତୁର ବିଶେଷଧର୍ମର ଅପେକ୍ଷାରେ ବଚନବିନ୍ୟାସ ବା ନିର୍ଣ୍ଣୟର ବିଭାଗକୁ ନୟ କୁହାଯାଏ । ସେମାନଙ୍କ ମତରେ ନୟ କେବଳ ପାକ୍ଷିକ ସତ୍ୟ ପ୍ରକାଶ କରେ । କୌଣସି ଦ୍ରବ୍ୟର ଐକାନ୍ତିକ ସତ୍ୟ ନାହିଁ, ଅତଏବ ବସ୍ତୁର ଯେତେ ପ୍ରକାର ଧର୍ମ ଓ ଧର୍ମର ପରସ୍ପର

ସମ୍ବନ୍ଧ କଳ୍ପିତ, ନୟ ମଧ୍ୟ ସେତେ ପ୍ରକାର ହେବ । ସେହି ହେତୁରୁ ବସ୍ତୁର ସକଳ ପ୍ରକାର ଧର୍ମ ପାକ୍ଷିକ ଧର୍ମ ବୋଲି କୁହାଯାଏ । ଅତଏବ ବସ୍ତୁରେ ଥିବା ସକଳପ୍ରକାର ପାକ୍ଷିକଧର୍ମ ବାଧିତ ନ ହେବା ଉଦ୍ଦେଶ୍ୟରେ ଏହି ନୟରେ ସ୍ୟାତ୍ ଶବ୍ଦର ବ୍ୟବହାର କରାଯାଇଛି । କୌଣସି ନୟ କୌଣସି ବସ୍ତୁର ପ୍ରକୃତ ସମ୍ବନ୍ଧରେ ଏକାନ୍ତ ସତ୍ୟ ଜ୍ଞାପନ କରିପାରେ ନାହିଁ; ଏହି ପ୍ରକୃତଗତ ଧର୍ମ ଏକଦିଗରେ ସତ୍ୟ ହେଲେ ମଧ୍ୟ ଅନ୍ୟ ଦିଗରେ ଅସତ୍ୟ ହୋଇପାରେ । ଏକପ୍ରକାରରେ ବିଧିମୂଳକ ହେଲେ ଅପରପ୍ରକାରେ ନିଷେଧମୂଳକ ହୋଇପାରେ । ଏହି ବିଧିନିଷେଧର କ୍ରମ ଓ ଯୌଗପଦ୍ୟ ବିଚାର କରି ଯେଉଁ ସପ୍ତପ୍ରକାର ବଚନଭଙ୍ଗ ସମ୍ଭବ ହୋଇପାରେ; ସେମାନଙ୍କର ନାମ ସପ୍ତଭଙ୍ଗୀନୟ । ଏହାର ଅପର ନାମ ଅନେକାନ୍ତବାଦ । ଏହାକୁ ଏକପ୍ରକାର "ବ୍ୟବହାରପ୍ରାମାଣ୍ୟବାଦ" କୁହାଯାଇପାରେ । କାରଣ ଏହି ସପ୍ତଭଙ୍ଗୀବିଭାଗରେ ବ୍ୟବହାରନୟ ହିଁ ଅନୁମୋଦିତ । 'ସ୍ୟାଦସ୍ତି', ସ୍ୟାନ୍ନାସ୍ତି—ଏହିପ୍ରକାର ବାକ୍ୟବିଭାଗ ସପ୍ତଭଙ୍ଗୀନୟ ନାମରେ ଅଭିହିତ ।

ଆର୍ହତ ଦର୍ଶନ ଅନୁସାରେ ଏହି ସପ୍ତଭଙ୍ଗୀନୟ ବା ଉକ୍ତ ରୂପ ବ୍ୟବହାର ପ୍ରାମାଣ୍ୟର ସର୍ବତ୍ର ଆବଶ୍ୟକତା ରହେ । କାରଣ, ସକଳ ପଦାର୍ଥର ସତ୍ତ୍ୱ, ଅସତ୍ତ୍ୱ, ନିତ୍ୟତ୍ୱ ଓ ଅନିତ୍ୟତ୍ୱ, ଭିନ୍ନତ୍ୱ ଓ ଅଭିନ୍ନତ୍ୱପ୍ରଭୃତି ଧର୍ମସମୂହଦ୍ୱାରା ସେମାନଙ୍କର ଅନୈକାନ୍ତିକତ୍ୱ, ଅର୍ଥାତ୍ ଅନିଶ୍ଚିତତ୍ୱ ହୁଏ ବୋଲି ସପ୍ତଭଙ୍ଗୀନୟ ସ୍ୱୀକାର୍ଯ୍ୟ । ଯଦି ବସ୍ତୁର ସତ୍ତା ନିତାନ୍ତ ଓ ସର୍ବଥା ଅନୁଭୂତ, ତେବେ ଏହା ସର୍ବଦା, ସର୍ବତ୍ର ସର୍ବଥା ବା ସତ୍ତ୍ୱ-ଅସତ୍ତ୍ୱାଦି ସାଧର୍ମ୍ୟସ୍ୱରୂପରେ ହିଁ ରହିବ । ତାହାହେଲେ ଏକାନ୍ତ ବା ନିଶ୍ଚିତସ୍ୱରୂପ ବସ୍ତୁପକ୍ଷରେ କୁତ୍ରାପି କୌଣସିପକ୍ଷରେ କେବେହେଲେ କାହାର ମଧ୍ୟ ଈପ୍ସା ବା ପ୍ରାପ୍ତିର ଅଭିଳାଷ "ଜିହାସା" ବା ପରିତ୍ୟାଗେଚ୍ଛା ସମ୍ଭବ ହେବ ନାହିଁ, ଅତଏବ ତହିଁରେ ପ୍ରବୃତ୍ତି-ନିବୃତ୍ତିର ଉଦୟ ହେବ ନାହିଁ । କାରଣ ଏପରି ସ୍ଥଳରେ ପ୍ରାପ୍ତିର ଅପ୍ରାପ୍ୟତ୍ୱ ଓ ହେୟ ବସ୍ତୁର ବର୍ଜନର ଅସମ୍ଭବ ହେବା କାରଣରୁ ଏହିପରି ନିର୍ଣ୍ଣୀତ ସ୍ୱରୂପତ୍ୱ ହୋଇଥାଏ । ଅନେକାନ୍ତ ବା ଅନିର୍ଣ୍ଣୀତସ୍ୱରୂପ ବସ୍ତୁ ପକ୍ଷରେ କୌଣସିମତେ କାହାର କୌଣସି ସତ୍ତ୍ୱ ଥିଲେ, ତାହାର ପରିତ୍ୟାଗ ବା ଗ୍ରହଣ ସମ୍ଭବ ହୁଏ; ତଦ୍ଦ୍ୱାରା ତାଠାରେ ପ୍ରବୃତ୍ତି-ନିବୃତ୍ତି ମଧ୍ୟ ଉପପନ୍ନ ହୁଏ । ସମସ୍ତ ବସ୍ତୁ ଦ୍ରବ୍ୟ-ପର୍ଯ୍ୟାୟାତ୍ମକ; ସେମାନଙ୍କର ଦ୍ରବ୍ୟାତ୍ମସ୍ୱରୂପରେ ସତ୍ତ୍ୱାଦିର (ନିତ୍ୟତ୍ୱାଦିର) ଉପପତ୍ତି, ଏବଂ ପର୍ଯ୍ୟାୟାତ୍ମକସ୍ୱରୂପରେ ଅସତ୍ତ୍ୱାଦିର ( ଅନିତ୍ୟ ଧର୍ମାଦିର ) ଉପପତ୍ତି ହୁଏ । ପର୍ଯ୍ୟାୟାଦି ଦ୍ରବ୍ୟର ଅନିତ୍ୟଧର୍ମାଦି ଅବସ୍ଥାବିଶେଷ । ଏହିପରି ସକଳ ବସ୍ତୁ ଦ୍ରବ୍ୟପର୍ଯ୍ୟାୟାତ୍ମକ ଓ ଭାବାଭାବାତ୍ମକ ହେବା ହେତୁରୁ ଏକ ବସ୍ତୁରେ ଯୁଗପତ୍ ସତ୍ତ୍ୱ ଓ ଅସତ୍ତ୍ୱ ଉଭୟର ହିଁ ଉପପତ୍ତି ହୁଏ । ଏହା ଜୈନ ଆର୍ହତ ଦର୍ଶନର ସିଦ୍ଧାନ୍ତ ।

ଏହି ମତର ନିରସନନିମନ୍ତେ ବେଦାନ୍ତାଦି ଯୁକ୍ତି ପ୍ରଦତ୍ତ ହେଉଅଛି—

## ନୈକସ୍ମିନ୍ନସମ୍ଭବାତ୍ । ବ୍ର: ସୂ: ୨-୨-୩୩ ।

ଏକ ବସ୍ତୁରେ ଯୁଗପତ୍ ସତ୍ତ୍ୱ ଓ ଅସତ୍ତ୍ୱ ଧର୍ମର ସନ୍ନିବେଶ ଅସଙ୍ଗତ । ଅର୍ଥାତ୍ ଅସମ୍ଭାବନାବଶତଃ ଏକ ବସ୍ତୁରେ ଯୁଗପତ୍ ସତ୍ ଓ ଅସତ୍ ଏହି ଉଭୟଭାବ ସଙ୍ଗତ ହୋଇ ପାରିବ ନାହିଁ । ଉକ୍ତ ମତରେ ବସ୍ତୁର ସ୍ୱରୂପ ଅନିର୍ଣ୍ଣୀତହେତୁରୁ ତଦ୍‌ବିଷୟକ ଜ୍ଞାନ ମଧ୍ୟ ଅନିର୍ଣ୍ଣୀତ ବୋଲି ଧରାଯିବ । ତାହାହେଲେ ଘଟାଦି ସମସ୍ତ ବସ୍ତୁର "ସାଦାତ୍ମ୍ୟ-ସ୍ୱରୂପ"ରେ ପରସ୍ପର ସମ୍ମିଶ୍ରଣହେତୁରୁ ଜଳାର୍ଥୀର ଅଗ୍ନିରେ ପ୍ରବୃତ୍ତି ହୁଅନ୍ତା ବା ତଦ୍ଦ୍ୱାରା ତୃଷ୍ଣା ନିବୃତ୍ତ ହୋଇପାରନ୍ତା । ସକଳ ବସ୍ତୁରେ ଭେଦ-ଧର୍ମାଦି ଥିଲେ ମଧ୍ୟ ସେପରି ତୃଷ୍ଣା ନିବୃତ୍ତ ହୁଏ ନାହିଁ । ଆହୁରି ମଧ୍ୟ ଭେଦ ପରି ଅଭେଦ-ଧର୍ମାଦିର ଅସ୍ତିତ୍ୱ ଥିବାରୁ ପ୍ରବୃତ୍ତି ହେବା ଆବଶ୍ୟକ; କିନ୍ତୁ ତାହା ହୁଏ ନାହିଁ । ଅତଏବ ବସ୍ତୁରେ ଯୁଗପତ୍ ସତ୍ ଓ ଅସତ୍ ଧର୍ମର ସମାବେଶ ଅସମ୍ଭବ । କୌଣସି ବସ୍ତୁ ଯୁଗପତ୍ ଶୀତୋଷ୍ଣ ହୋଇପାରେ ନାହିଁ । ପୁଦ୍‌ଗଳନାମକ ପରମାଣୁପୁଞ୍ଜରୁ ପୃଥିବ୍ୟାଦିର ଉତ୍ପତ୍ତି ବୋଲି ଯେଉଁ କଳ୍ପନା କରାଯାଇଛି, ସେ ବିଷୟ ପରମାଣୁବାଦ-ନିରାସପ୍ରକରଣରେ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାତ ହୋଇଛି । ପଞ୍ଚ ଅସ୍ତିକାୟ ମଧ୍ୟ ଅସମ୍ଭବ; କାରଣ, ଅନିର୍ଣ୍ଣୀତ ସ୍ୱରୂପଦ୍ରବ୍ୟ କୌଣସିପ୍ରକାରେ ନିର୍ଣ୍ଣୟୋ-ପଯୋଗୀ ସମ୍ବନ୍ଧଭୂତ ନିର୍ଦ୍ଦେଶ ପ୍ରାପ୍ତ ହୋଇପାରେ ନାହିଁ । ସେହି ହେତୁରୁ ଜୀବାଦି ପଦାର୍ଥରେ ସଦସତ ଧର୍ମର ସମାବେଶ ମଧ୍ୟ ଅସମ୍ଭବ ହୁଏ । ଅତଏବ ଜୀବାଦି ସପ୍ତପଦାର୍ଥବାଦୀ ଜୈନମତ ଅଯୁକ୍ତ ।

## ଠ—ଆତ୍ମାର ଦେହପରିମାଣତ୍ୱ ନିରାକରଣ ।

## ଏବଂ ଚାତ୍ମାଽକାର୍ତ୍ସ୍ନ୍ୟମ୍ । ୨-୨-୩୪ ।

ଯେପରି ସପ୍ତଭଙ୍ଗୀନୟାଦି ଅନୁପପନ୍ନ, ସେପରି ଆତ୍ମାର ଅସର୍ବଗତ ପରିମାଣ; ଅର୍ଥାତ୍ ମଧ୍ୟମ ପରିମାଣ ମଧ୍ୟ ଅନୁପପନ୍ନ । ଯେପରି ସତ୍ତ୍ୱା-ସତ୍ତ୍ୱାଦି ବିରୁଦ୍ଧ ଧର୍ମର ସମାବେଶ ସିଦ୍ଧ ହୁଏ ନାହିଁ । ସେହିପରି ଜୈନମତାନୁଯାୟୀ ଆତ୍ମାର ମଧ୍ୟମ ପରିମାଣ, ଅର୍ଥାତ୍ ଦେହର ପରିମାଣ ଅନୁସାରେ ଆତ୍ମାର ପରିମାଣ କଳ୍ପନାସିଦ୍ଧ ହୋଇପାରେ ନାହିଁ । ଆତ୍ମାକୁ ଦେହ ପରିମାଣ କହିଲେ ଏହା ଅବ୍ୟାପୀ ଓ ଅପୂର୍ଣ୍ଣ ହେବା ପ୍ରମାଣିତ ହେବ । ତଦ୍ଦ୍ୱାରା ବାଳ-ଦେହ-ପରିମିତ ଆତ୍ମାର ଯୁବାଦି ଦେହପରିମାଣରେ ପର୍ଯ୍ୟାପ୍ତି ସଙ୍ଘଟିତ ହୋଇପାରିବ ନାହିଁ; ମାନବଶରୀର ପରିମିତ ଆତ୍ମା କର୍ମଫଳହେତୁରୁ ହସ୍ତିଶରୀର ପାଇଲେ ସେଥିରେ ବ୍ୟାପ୍ତ ହୋଇ ପାରିବ ନାହିଁ । ଜୀବାତ୍ମା ଶରୀରପରିମିତ ହେଲେ ମଧ୍ୟ ଅନନ୍ତ ଓ ଅସୀମ— ଏହା ଅନୁମାନଗମ୍ୟ ନୁହେଁ । ଅତଏବ ଏହି ମତ ଅଯୁକ୍ତ ।

## ନ ଚ ପର୍ଯ୍ୟାୟାଦପ୍ୟବିରୋଧୋବିକାରାଦିଭ୍ୟଃ ।

ବ୍ର: ସୂ: ୨-୨-୩୫ ।

ଅବୟବର ପର୍ଯ୍ୟାୟ ବା ହ୍ରାସ ବୃଦ୍ଧି ସ୍ୱୀକାର କଲେ ମଧ୍ୟ ଜୀବ ଦେହପରିମିତ-ବିଷୟରେ ଅବରୋଧ ରହିବ ନାହିଁ; ଅର୍ଥାତ୍ ଏ ବିଷୟରେ ବିରୋଧ ସ୍ୱତଃସିଦ୍ଧ । କାରଣ, ତଦ୍ଦ୍ୱାରା ବିକାରାଦି ଦୋଷର ସମ୍ଭବ ରହେ ।

ବର୍ତ୍ତମାନ ଜୈନ ଦର୍ଶନର ମୁକ୍ତି କଳ୍ପନାରେ ଦୋଷ ପ୍ରଦର୍ଶିତ ହେଉଛି—

**ଅନ୍ତ୍ୟାବସ୍ଥିତେଶ୍ଚୋଭୟନିତ୍ୟତ୍ୱାଦବିଶେଷଃ ।** ବ୍ର: ସୂ:—୨-୨-୩୬ ।

ଅର୍ଥାତ୍ ଅନ୍ତ ବା ମୋକ୍ଷାବସ୍ଥାରେ ଥିବା ଜୀବର ପରିମାଣ ନିତ୍ୟ ବୋଲି ସ୍ୱୀକାର କରିଥିବାରୁ, ଆଦି ଓ ମଧ୍ୟାବସ୍ଥାରେ ଥିବା ଜୀବର ପରିମାଣ ମଧ୍ୟ ନିତ୍ୟ ବୋଲି ଆପତ୍ତି ହେବ; କାରଣ ଅବସ୍ଥାଭେଦରେ କୌଣସି ବିଶେଷତା ରହେ ନାହିଁ । ଏଥିରୁ ଜୀବର ଅନିତ୍ୟତା ହିଁ ସିଦ୍ଧ ହେବ । ※

ଅର୍ଥାତ୍ ଜୈନମାନେ ମୁକ୍ତାବସ୍ଥାରେ ଜୀବପରିମାଣକୁ ନିତ୍ୟ (ତାରତମ୍ୟରହିତ ଏକ-ରୂପ) ସ୍ୱୀକାର କରନ୍ତି । ଏକପ୍ରକାର ଜୀବପରିମାଣ ନିତ୍ୟ ହେଲେ ତାହାର ଆଦ୍ୟ ମଧ୍ୟ ଜୀବ-ପରିମାଣ ମଧ୍ୟ ନିତ୍ୟ ହେବା ସ୍ୱାଭାବିକ । ତାହାହେଲେ ପରିମାଣତ୍ରୟର ସମାନତା ଆସିଯିବ, ସେଥିରେ କୌଣସି ବିଶେଷ ରହିବ ନାହିଁ । ଅତଏବ ଅବିଶେଷଣ ଗୁଣରୁ ଏକ ଶରୀରପରିମାଣତା ଲବ୍ଧ ହେବ; ବୃହତ୍ ଓ କ୍ଷୁଦ୍ର ଶରୀରପ୍ରାପ୍ତି ଓ ତତ୍ତତ୍ପରିମାଣ ସଙ୍ଗତ ହେବ ନାହିଁ । ଏହାଦ୍ୱାରା ଜୀବପରିମାଣର ଏକରୂପତା ସିଦ୍ଧ ହେବ, ପରିମାଣର ଇତରବିଶେଷତା ରହିବ ନାହିଁ । ତଦ୍ଦ୍ୱାରା ଜୀବ ଧ୍ରୁବତ ଅଣୁପରିମାଣ, ନ ଧ୍ରୁବ ତ ବୃହତ୍ ପରିମାଣ ବୋଲି ସ୍ୱୀକୃତ ହେବ । ଅତଏବ ବୌଦ୍ଧମାନଙ୍କ ଭଳି ଜୈନମତ ମଧ୍ୟ ଅସଙ୍ଗତ ଓ ଅସଙ୍ଗତ ହେବାରୁ ଅଗ୍ରାହ୍ୟ ।

## ○—ଶୈବପାଶୁପତାଦିମତ ଖଣ୍ଡନ ।

ବର୍ତ୍ତମାନ ତଟସ୍ଥ ଈଶ୍ୱରବାଦର ଖଣ୍ଡନ କରାଯାଉଛି । ଏହି ତଟସ୍ଥ ବା ନିମିତ୍ତଭୂତ ଈଶ୍ୱରବାଦ ସେଶ୍ୱର ସାଂଖ୍ୟବାଦରେ ଓ ପାଶୁପତାଦି (ଶୈବ, ସୌର ଓ ଗାଣପତ୍ୟ) ମତରେ

※ ଅନ୍ତ୍ୟଃ ଶେଷଃ, ମୋକ୍ଷାବସ୍ଥେତି ଯାବତ୍; ମୋକ୍ଷକାଲିକଜୀବପରିମାଣସ୍ୟ ଅବସ୍ଥିତେଃ ନିତ୍ୟତ୍ୱଦର୍ଶନାତ୍ ଉଭୟୋରାଦ୍ୟ-ମଧ୍ୟପରିମାଣୟୋରପି ନିତ୍ୟତ୍ୱପ୍ରସଙ୍ଗାତ୍ ଅବିଶେଷସ୍ତ୍ରୟାଣାଂ ପରିମାଣାନାଂ ସାମ୍ୟଂ ସ୍ୟାତ୍ । ବିରୁଦ୍ଧପରିମାଣାନାମେକତ୍ରାଯୋଗାଦିତି ସୂତ୍ରଯୋଜନା । ଜୈନମାନେ ଅନ୍ତ୍ୟ ଅର୍ଥାତ୍ ମୋକ୍ଷକାଳିକ ଜୀବପରିମାଣର ନିତ୍ୟତା ମାନନ୍ତି । ତଦନୁସାରେ ଆଦ୍ୟ ମଧ୍ୟ ଜୀବପରିମାଣ ମଧ୍ୟ ନିତ୍ୟ ହୋଇପାରେ; ତାହାହେଲେ ବିଶେଷ, ଅର୍ଥାତ୍ ଜୀବ-ଶରୀରପରିମାଣବିଶିଷ୍ଟ, ଏହି ନିର୍ଦ୍ଦିଷ୍ଟ ମତ ରକ୍ଷିତ ହେବ ନାହିଁ ।

ମଧ୍ୟ ଗୃହୀତ ହୋଇଛୁ । ସେଶ୍ୱର ସାଂଖ୍ୟମତରେ ପ୍ରକୃତି ଓ ପୁରୁଷର ଅଧିଷ୍ଠାତା ହୋଇ ଈଶ୍ୱର ଜଗତର ନିମିତ୍ତ କାରଣ ବୋଲି କଥିତ ହୋଇଛନ୍ତି । ପାଶୁପତମତରେ "କାରଣ", କାର୍ଯ୍ୟ ଯୋଗ, ବିଧି ଏବଂ ଦୁଃଖାନ୍ତ ବା ମୋକ୍ଷ-ଏହି ପଞ୍ଚ ପଦାର୍ଥ । ପଶୁପତି ବା ଶିବ ଜୀବମାନଙ୍କର ମୁକ୍ତି ନିମନ୍ତେ ଉପଦେଶ ଦେଇଛନ୍ତି, ଅତଏବ ସେ ସୃଷ୍ଟି ବିଷୟରେ ନିମିତ୍ତକାରଣ, ମହଦାଦି କାର୍ଯ୍ୟ । ଓଁକାର ଉଚ୍ଚାରଣ ପୂର୍ବକ ଯୋଗସାଧନ ଓ ତ୍ରୈକାଳିକ ସ୍ନାନାଦି-ବିଧିଦ୍ୱାରା ଦୁଃଖାନ୍ତ ବା ମୋକ୍ଷ ମିଳେ । ଗାଣପତ୍ୟାଦିମାନଙ୍କ ମତରେ ମଧ୍ୟ ସୃଷ୍ଟି ପ୍ରତି ଈଶ୍ୱର ନିମିତ୍ତକାରଣ; ତାଙ୍କଠାରୁ ପ୍ରକୃତି ଓ କାଳଦ୍ୱାରା ଈଶ୍ୱର ସୃଷ୍ଟି ହୁଏ । ବୈଶେଷିକ ଓ ନୈୟାୟିକମାନଙ୍କ ମତରେ ମଧ୍ୟ ଈଶ୍ୱର ନିମିତ୍ତକାରଣ । ଏହି ସବୁ ମତ ଖଣ୍ଡନ ନିମନ୍ତେ ବାଦରାୟଣ ସୂତ୍ର କହେ—

ପତ୍ୟୁରସାମଞ୍ଜସ୍ୟାତ୍ । "ବ୍ର: ସୂ: ୨-୨-୩୭ ।

ପୂର୍ବେ ବେଦାନ୍ତମତ ବ୍ୟାଖ୍ୟାବସରରେ କୁହାଯାଇଛି ଯେ, ଈଶ୍ୱର ଜଗତର ନିମିତ୍ତ ଓ ଉପାଦାନରୂପ ଉଭୟ କାରଣ; ଅର୍ଥାତ୍ ପରମେଶ୍ୱର ଜଗତର କର୍ତ୍ତା ଓ ତାହାଙ୍କଠାରୁ କେବଳ ଜଗତର ଉତ୍ପତ୍ତି ହୋଇଅଛି; ଜଗତ୍‌ସୃଷ୍ଟି ନିମନ୍ତେ ଅନ୍ୟ ଉପାଦାନ ନାହିଁ । ବେଦାନ୍ତବିରୋଧୀ ଅନ୍ୟାନ୍ୟ ମତରେ ଈଶ୍ୱରଙ୍କ ଯେଉଁ ରୂପ କଳ୍ପନା କରାଯାଇଛି, ତାହା ସାମଞ୍ଜସ୍ୟହୀନ—ଏହା ଏହି ସୂତ୍ରର ଉଦ୍ଦେଶ୍ୟ । ସାଂଖ୍ୟ ଓ ଯୋଗମତ ଅନୁସରଣ କରି କେହି କେହି କହନ୍ତି ଯେ; ଈଶ୍ୱରଙ୍କଠାରୁ ଜଗତ୍ ଉତ୍ପନ୍ନ ହୋଇନାହିଁ; ପ୍ରକୃତି ଓ ପୁରୁଷଠାରୁ କେବଳ ଉତ୍ପନ୍ନ । ଈଶ୍ୱର ପ୍ରକୃତି-ପୁରୁଷର ଅଧିଷ୍ଠାତା । ଅନ୍ୟ ଦାର୍ଶନିକମାନଙ୍କର ମଧ୍ୟ ଏହି ମତ; କିନ୍ତୁ ଏହି ସକଳ ମତ ଖଣ୍ଡନ କରି ଏଠାରେ କୁହା ଯାଉଛି ଯେ, ଈଶ୍ୱର ଜଗତର 'ପତି' ଅର୍ଥାତ୍ ପ୍ରଭୁମାତ୍ର । ସେ ଜଗଦୁତ୍ପତ୍ତିର ଉପାଦାନକାରଣ ନୁହନ୍ତି—ଏହି ମତ ସମୀଚୀନ ନୁହେଁ । ଈଶ୍ୱର ପ୍ରଧାନ-ପୁରୁଷାଦିର ଅଧିଷ୍ଠାତା-ରୂପରେ ନିମିତ୍ତକାରଣ ହୋଇ ପାରିବେ ନାହିଁ; କାରଣ; ତତ୍‌କର୍ତ୍ତୃକ ନିମିତ୍ତମାତ୍ର ସ୍ୱରୂପରେ ତାଙ୍କର ରାଗ-ଦ୍ୱେଷାଦିରୂପ ବିକାରିତ୍ତ୍ୱ ଆସିଯିବ । ତେବେ ସେ ରାଗଦ୍ୱେଷାଦିକର୍ମାତ୍ମକ, ଜଡ଼ ଓ ଅପ୍ରେରକ ଅନୀଶ୍ୱର ହେବାର ଆପତ୍ତି ଯୁକ୍ତିଯୁକ୍ତ ହେବ । କର୍ମାଦିଦ୍ୱାରା ଈଶ୍ୱର ପ୍ରକୃତିରେ ପ୍ରବର୍ତ୍ତିତ ହୋଇପାରନ୍ତି ନାହିଁ । ଯଦି କର୍ମର ପ୍ରବର୍ତ୍ତକ ଈଶ୍ୱର ଓ ଈଶ୍ୱରଙ୍କର ପ୍ରବର୍ତ୍ତକ କର୍ମ ବୋଲି ଧରାଯିବ, ତେବେ ଅନ୍ୟୋନ୍ୟାଶ୍ରୟ ଦୋଷ ହେବ । କିଏ କାହାର ପ୍ରଥମ ପ୍ରବର୍ତ୍ତକ—ଏକଥା ନିଶ୍ଚୟ କରିବା ସମ୍ଭବ ନୁହେଁ । ଯଦି ପ୍ରବର୍ତ୍ତକତା ସ୍ୱାର୍ଥରୁ ଜାତ ସ୍ୱରୂପରେ ରାଗଦ୍ୱେଷାଦି ଦୋଷର ଅନୁମାପକ, (କାରଣ, ସ୍ୱାର୍ଥଛଡ଼ା କେହି କୌଣସି କାର୍ଯ୍ୟ କରେ ନାହିଁ; ସୁତରାଂ ଈଶ୍ୱର ରାଗ-ଦ୍ୱେଷାଦିବିଶିଷ୍ଟ;) ତଥାପି ସେ ସ୍ୱାର୍ଥୀ ହେଲେ ଜୀବାଦିପରି ସୀମାବଦ୍ଧ ଓ ଅନୀଶ୍ୱର ହେବା ସମ୍ଭବ ହେବ । ଅତଏବ ଈଶ୍ୱରଙ୍କ ନିମିତ୍ତତାବାଦ ଅଯୁକ୍ତ ।

**ସମ୍ବନ୍ଧାନୁପପତ୍ତେଶ୍ଚ ।**   ବ୍ର: ସୂ: ୨-୨-୩୮ ।

ପରମେଶ୍ୱରଙ୍କଠାରେ ସଂଯୋଗ ସମବାୟାଦି ସମ୍ବନ୍ଧର ଉପପତ୍ତି ହୁଏ ନାହିଁ । ଅତଏବ ଈଶ୍ୱର ନିମିତ୍ତକାରଣ ହୋଇ ପାରିବେ ନାହିଁ । ଅର୍ଥାତ୍ ସାଂଖ୍ୟଯୋଗାଦିମତରେ ଈଶ୍ୱର ପ୍ରକୃତି ଓ ପୁରୁଷର ପ୍ରଭୁ; କିନ୍ତୁ ଈଶ୍ୱରଙ୍କ ସହିତ ପ୍ରକୃତି ଓ ପୁରୁଷର ସମ୍ବନ୍ଧ ନ ଥିଲେ କିପରି ଈଶ୍ୱର ତାହାର ପ୍ରଭୁତ୍ୱ ସ୍ଥାପନ କରିବେ । ସାଂଖ୍ୟ ଓ ଯୋଗମତରେ ଈଶ୍ୱରଙ୍କ ସହିତ ପ୍ରକୃତି ଓ ପୁରୁଷର କୌଣସି ପ୍ରକାର ସମ୍ବନ୍ଧ ରହି ପାରେ ନାହିଁ ।

**ଅଧିଷ୍ଠାନାନୁପପତ୍ତେଶ୍ଚ ।**   ୨-୨-୩୯ । ବ୍ର : ସୂ :

ପ୍ରଧାନ-ପୁରୁଷଠାରେ ଈଶ୍ୱରଙ୍କ ଅଧିଷ୍ଠାନ ଅନୁପପନ୍ନ ହେବାରୁ ଈଶ୍ୱର ନିମିତ୍ତବାଦ ଅଯୁକ୍ତ । ଅର୍ଥାତ୍; ତାର୍କିକମତରେ କୁମ୍ଭକାର ଯେପରି ମୃତ୍ତିକାଦିର ଅଧିଷ୍ଠାତା ହୋଇ ଘଟାଦି ନିର୍ମାଣ କରେ, ଈଶ୍ୱର ମଧ୍ୟ ପ୍ରଧାନଠାରେ କ୍ରିୟାକର୍ତ୍ତାରୂପରେ ଅଧିଷ୍ଠିତ ହୋଇ ଜଗତ୍ ନିର୍ମାଣ କରନ୍ତି ନାହିଁ । କାରଣ ଅପ୍ରତ୍ୟକ୍ଷ ଓ ରୂପାଦିବିହୀନ ପ୍ରଧାନାଦିର ପ୍ରଥମେ ଅଧିଷ୍ଠେୟତ୍ୱର ଅଭାବ-ହେତୁରୁ ସେଥିରେ ଈଶ୍ୱରଙ୍କ ଅଧିଷ୍ଠାନ ଅନୁପପନ୍ନ । ପ୍ରଧାନର ମୃତ୍ତିକାଦିଠାରୁ ବୈଲକ୍ଷଣ୍ୟ ପ୍ରଖ୍ୟାତ ହୁଏ; ଏହିସବୁ କାରଣରୁ ଏପରି ତୁଳନା ସଂଗତ ନୁହେଁ; ଅତଏବ ଉକ୍ତମତ ଅଯୁକ୍ତ ।

**କରଣବଚ୍ଚେନ୍ନଭୋଗାଦିଭ୍ୟଃ ।**   ୨-୨-୪୦ । ବ୍ର : ସୂ :

ଜୀବେନ୍ଦ୍ରିୟ ପରି ଈଶ୍ୱର ଓ ପ୍ରଧାନର ଅଧିଷ୍ଠାତୃ-ଅଧିଷ୍ଠେୟତ୍ୱ ସମ୍ବନ୍ଧ ହୋଇପାରେ ବୋଲି କହିବା ମଧ୍ୟ ଠିକ୍ ନୁହେଁ । କାରଣ ଜୀବର ଭୋଗାଦି ଅଛି ; ରୂପାଦି ବିହୀନ ପୁରୁଷ ବା ଜୀବ ଯେପରି ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତା; ଈଶ୍ୱର ମଧ୍ୟ ସେହିପରି ପ୍ରଧାନର ଅଧିଷ୍ଠାତା । ଜୀବର ସୁଖଦୁଃଖାଦି ଅନୁଭୂତି ଓ ଜନ୍ମ-ମରଣାଦି ଅଛି; ଅଥଚ ପ୍ରଧାନର ଅଧିଷ୍ଠାନଯୋଗ୍ୟ ଶରୀର ନାହିଁ; କରଣର ଅର୍ଥ ଇନ୍ଦ୍ରିୟ ଓ ଜନ୍ମମୃତ୍ୟୁ ସୁଖାଦିର ଅନୁଭୂତିକୁ ଭୋଗ କୁହାଯାଏ । ବସ୍ତୁତଃ ଜୀବ ଇନ୍ଦ୍ରିୟାଦିଶୂନ୍ୟ ହେଲେ ମଧ୍ୟ ଦେହେନ୍ଦ୍ରିୟାଦି ଉପାଧି ଗ୍ରହଣ କରି ସେମାନଙ୍କର ଅଧିଷ୍ଠାତା-ରୂପରେ ସେମାନଙ୍କଦ୍ୱାରା କର୍ମରେ ନିବଦ୍ଧ ହୁଏ । କେବଳ ମୃତ୍ୟୁକାଳରେ ସେହି ଦେହେନ୍ଦ୍ରିୟ ସକଳ ତ୍ୟାଗ କରେ । ଏହିପରି ଜୀବ ଜନ୍ମ-ମୃତ୍ୟୁ ଦୁଃଖ-ସୁଖାଦି ଭୋଗ କରେ । ଏହି ଯୁକ୍ତି ଈଶ୍ୱରଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୋଇପାରେ—ଅର୍ଥାତ୍ ଈଶ୍ୱର ମଧ୍ୟ ଦେହ-ଇନ୍ଦ୍ରିୟାଦିଶୂନ୍ୟ ହୋଇ ପ୍ରଧାନକୁ ଉପାଦାନ କରି ସୃଷ୍ଟି କରନ୍ତି ଓ ପ୍ରଳୟ କାଳରେ ସେହି ଉପାଦାନଭୂତ ପ୍ରଧାନକୁ ତ୍ୟାଗ କରନ୍ତି । ଅତଏବ ଈଶ୍ୱର ମଧ୍ୟ ଜୀବପରି ଜନ୍ମ-ମୃତ୍ୟୁ ସୁଖ-ଦୁଃଖର ଭାଗୀ ହୋଇ ପାରନ୍ତି । ସୃଷ୍ଟି ନିମନ୍ତେ ପ୍ରଧାନର ଗ୍ରହଣ ଓ ତ୍ୟାଗ ତାଙ୍କ ପକ୍ଷରେ ଜନ୍ମ ଓ ମୃତ୍ୟୁ ପରି ଗୃହୀତ ହୁଏ । ତାଙ୍କଠାରେ ଭୋଗାଦିର କରଣରୂପ ଇନ୍ଦ୍ରିୟାୟତନ ଦେହକଳ୍ପନା ମଧ୍ୟ ସମ୍ଭବ ହୋଇପାରେ । ଅତଏବ ଉକ୍ତ ମତ ସମ୍ପୂର୍ଣ୍ଣ ଅଯୁକ୍ତ ।

ଅନ୍ତବତ୍ତ୍ୱମସର୍ବଜ୍ଞତା ବା । ୨-୨-୪୧ ।

ତାର୍କିକଙ୍କ ମତରେ ପ୍ରକୃତି, ପୁରୁଷ ଓ ଈଶ୍ୱର ସମସ୍ତେ ଅନନ୍ତ ବା ନିତ୍ୟ; କିନ୍ତୁ ପୂର୍ବୋକ୍ତ ମତ ସ୍ୱୀକାର କଲେ ଈଶ୍ୱରଙ୍କଠାରେ ଅନ୍ତବତ୍ତ୍ୱ ବା ଅନିତ୍ୟତ୍ୱ ଓ ଅସର୍ବଜ୍ଞତା ଦୋଷ ଆସିଯିବ । କାରଣ ଈଶ୍ୱର ଯଦି ପ୍ରକୃ ପୁରୁଷ ଓ ନିଜକୁ ସମ୍ପୂର୍ଣ୍ଣଭାବେ ଜାଣନ୍ତି, ତେବେ ଈଶ୍ୱରଙ୍କର ଜ୍ଞାନଦ୍ୱାରା ଏମାନେ ପରିଚ୍ଛିନ୍ନ ହେବାରୁ ଏମାନଙ୍କର ଅନନ୍ତତ୍ୱକଳ୍ପନା ଅନୁଚିତ ହେବ । ଯଦି ନ ଜାଣନ୍ତି ତେବେ ଈଶ୍ୱର ସର୍ବଜ୍ଞ କିପରି ହେବେ । ଅତଏବ ତାର୍କିକକଳ୍ପିତ ଈଶ୍ୱର-କାରଣବାଦ ଅସଙ୍ଗତ; ତେଣୁ ଆଗ୍ରାହ୍ୟ ।

## ୦—ପୁରାଣାଦିର ଦ୍ୱୈତମତ ଖଣ୍ଡନ ।

ଭାଗବତ-ଆଦି ପୁରାଣବର୍ଣ୍ଣିତ ଶକ୍ତିବାଦର ଖଣ୍ଡନ ଏହିପରି— * ବେଦାନ୍ତମତରେ ଈଶ୍ୱର ସୃଷ୍ଟି ପ୍ରତି ନିମିତ୍ତ ଓ ଉପାଦାନରୂପକ ଉଭୟ କାରଣ; କିନ୍ତୁ ପୁରାଣ ଅନୁସାରେ ସେପରି ନୁହେଁ । ଭାଗବତ ଅନୁସାରେ ଭଗବାନ୍ ବାସୁଦେବ କେବଳ ନିରଞ୍ଜନ; ସର୍ବଜ୍ଞ, ଜ୍ଞାନବପୁ ଓ ପରପ୍ରକୃତିସ୍ୱରୂପ, ଅତଏବ ସେ ପରମାର୍ଥତତ୍ତ୍ୱ । ସେ ନିଜକୁ ଚାରି ବ୍ୟୂହରେ ବିଭକ୍ତ କରି ବିରାଜିତ । ବାସୁଦେବ-ବ୍ୟୂହ ପରମାତ୍ମା; ବାସୁଦେବଙ୍କଠାରୁ ସଙ୍କର୍ଷଣ ବ୍ୟୂହ ଜୀବର ଉତ୍ପତ୍ତି; ସଙ୍କର୍ଷଣଠାରୁ ପ୍ରଦ୍ୟୁମ୍ନ-ବ୍ୟୂହ ମନର ଉତ୍ପତ୍ତି ଓ ପ୍ରଦ୍ୟୁମ୍ନଠାରୁ ଅନିରୁଦ୍ଧବ୍ୟୂହ ଅହଂକାରର ଉତ୍ପତ୍ତି । ଭାଗବତୋକ୍ତ ଶକ୍ତିବାଦମତରେ ସାର୍ବଜ୍ଞ ସତ୍ୟ ସଙ୍କଳ୍ପାଦି ଗୁଣବିଶିଷ୍ଟ ଶକ୍ତି ହିଁ ଈଶ୍ୱର ହେଉଛି । ପରମାତ୍ମା ବାସୁଦେବଙ୍କଠାରୁ ଅବିଦ୍ୟାକଳ୍ପିତ ଜୀବାଦିର ଉତ୍ପତ୍ତି ଅବଶ୍ୟ ବେଦାନ୍ତବିରୁଦ୍ଧ ହୋଇ ନ ପାରେ; କିନ୍ତୁ ସଙ୍କର୍ଷଣଙ୍କଠାରୁ ପ୍ରଦ୍ୟୁମ୍ନ-ବ୍ୟୂହ ଇତ୍ୟାଦିର ଉତ୍ପତ୍ତି ନିଶ୍ଚୟ ବେଦାନ୍ତମତର ବିରୁଦ୍ଧାଚରଣ କରେ । ପ୍ରଦ୍ୟୁମ୍ନଆଦିର ଉତ୍ପତ୍ତି ଉପାଦାନ ବା ଶକ୍ତିମାତ୍ରରୁ ହେଉଥିବାରୁ ଉକ୍ତ ମତ ଶକ୍ତିବାଦରେ ହିଁ ପରିଣତ ହୁଏ; ଅତଏବ ଉପାଦାନକାରଣ କେବଳ ଈଶ୍ୱର ହେଉଛି ବୋଲି ପୌରାଣିକ ମତ ବର୍ତ୍ତମାନ ଖଣ୍ଡନର ବିଷୟ । କେବଳ ଶକ୍ତିସ୍ୱରୂପା ପ୍ରକୃତିର ଉପାଦାନରୁ ଈଶ୍ୱର ଉତ୍ପତ୍ତି ଅସମ୍ଭବ । ଯେପରି ପୁରୁଷ ସଂସର୍ଗ ବିନା କେବଳ ସ୍ତ୍ରୀଠାରୁ ସନ୍ତାନର ଉତ୍ପତ୍ତି ଅସମ୍ଭବ, ସେହିପରି ନିମିତ୍ତସ୍ୱରୂପ ଚୈତନ୍ୟର ଅନୁପ୍ରବେଶ ବ୍ୟତିରେକେ କେବଳ ପ୍ରକୃତି ଈଶ୍ୱର କାରଣ ହୋଇ ନ ପାରେ । କୁମ୍ଭକାରରୂପକ ଜ୍ଞାନଶକ୍ତିସମ୍ପନ୍ନ ନିମିତ୍ତର ଅଭାବରେ କେବଳ ମୃତ୍ତିକାରୂପକ ଉପାଦାନଦ୍ୱାରା ଘଟର ଉତ୍ପତ୍ତି

* ଭାଗବତ-ପୁରାଣାଦିରେ ଆଶ୍ରୟ ବ୍ରହ୍ମପଦ, ବ୍ରହ୍ମନିରୂପଣ ଓ ସାଧୁଭକ୍ତ ଲକ୍ଷଣ ଏବଂ ଅବଧୂତ-ଲକ୍ଷଣ ଯାହା ସାରଭୂତଭାବେ ବର୍ଣ୍ଣିତ ହୋଇଛି, ତାହା ମହିମାଧର୍ମ-ସମାଜରେ ଗ୍ରହଣ କରାଯାଏ, କିନ୍ତୁ ତନ୍ମଧ୍ୟରେ ଯେ ସଗୁଣ ଉପାସନା ଚତୁର୍ବ୍ୟୂହପ୍ରଭୃତି କାମ୍ୟକର୍ମାଦି ବର୍ଣ୍ଣିତ ଅଛି, ତାହା ମହିମାଧର୍ମରେ ଗ୍ରହଣ କରାଯାଏ ନାହିଁ ।

ଅସମ୍ଭବ । ଉତ୍ପତ୍ତି ପ୍ରତି ନିମିତ୍ତ ଓ ଉପାଦାନ ଉଭୟର ଆବଶ୍ୟକତା ଥାଏ । ଭାଗବତମତରେ ବାସୁଦେବ ନିରଞ୍ଜନ, ପରାତ୍ପର ; ତାଙ୍କର ନିଶ୍ବୋତ୍ପତ୍ତି-ଉପଯୋଗୀ ଦେହେନ୍ଦ୍ରିୟରୂପକ କରଣ ନ ଥିବାରୁ କେବଳ ବାସୁଦେବ ଜଗଦୁତ୍ପତ୍ତିର ହେତୁ ହେବା ଅସମ୍ଭବ । ଆହୁରି ମଧ୍ୟ, ପରପ୍ରକୃତିସ୍ୱରୂପ ବାସୁଦେବଙ୍କଠାରୁ ଜୀବ ସଂକର୍ଷଣଙ୍କ ଉତ୍ପତ୍ତି ସ୍ୱୀକାର କଲେ ଜୀବର ଉତ୍ପତ୍ତିମତ୍ତ୍ୱରୂପକ ଅନିତ୍ୟତା ଦୋଷ ଆସି ପାରେ । କାରଣ ଉକ୍ତ ମତରେ "ଜୀବତ୍ୱ" ବା ସଂସାରିତ୍ୱ ଚୈତନ୍ୟର ଉପାଧି ନୁହେଁ । ଚୈତନ୍ୟ ଭିନ୍ନ ଜୀବତ୍ୱ ଅନିତ୍ୟ, ଅତଏବ ମୋକ୍ଷ ମଧ୍ୟ ଅସିଦ୍ଧ । ଅତଏବ କେବଳ ବାସୁଦେବଙ୍କଠାରୁ ସଂକର୍ଷଣାଦି ଉତ୍ପତ୍ତି ସମ୍ଭବ ନ ହେବାହେତୁରୁ ଭାଗବତାଦି ପୌରାଣିକ ମତ ଅଯୁକ୍ତ । ଏହି ସମ୍ପର୍କରେ ବେଦାନ୍ତ ସୂତ୍ର—

ଉତ୍ପତ୍ତ୍ୟସମ୍ଭବାତ୍ ॥　　୨-୨-୪୨ ।

ଅର୍ଥାତ୍ ପୂର୍ବୋକ୍ତ ବ୍ୟାଖ୍ୟା ଅନୁସାରେ ପରମାତ୍ମା ବାସୁଦେବଙ୍କଠାରୁ କ୍ରମିକଭାବରେ ସଙ୍କର୍ଷଣାଦିର ଉତ୍ପତ୍ତି ଅସମ୍ଭବ ।

ନ କର୍ତ୍ତୁଃ କରଣମ୍ ॥　　୨-୨-୪୩ ।

ପୂର୍ବୋକ୍ତ ବର୍ଣ୍ଣନା ଅନୁସାରେ ସଂକର୍ଷଣଙ୍କଠାରୁ କରଣ ପ୍ରଦ୍ୟୁମ୍ନର ଉତ୍ପତ୍ତି ମଧ୍ୟ ଅସମ୍ଭବ । ଅର୍ଥାତ୍ ସଂକର୍ଷଣ (ଜୀବ) ଠାରୁ କରଣ ପ୍ରଦ୍ୟୁମ୍ନ (ମନ)ର ଉତ୍ପତ୍ତି ଅସମ୍ଭବ । କାରଣ, ଭାଗବତମତରେ କେବଳ ବାସୁଦେବ "ଚୈତନ୍ୟ ମାତ୍ର" ନିମିତ୍ତ କାରଣ ପରମାତ୍ମା, ଅତଏବ ସେହି କେବଳ ଉତ୍ପତ୍ତି ପ୍ରତି ମୁଖ୍ୟ କର୍ତ୍ତା । ଜୀବଠାରେ ଚୈତନ୍ୟମାତ୍ର ନିମିତ୍ତକାରଣର ଅଭାବରୁ ଜୀବର ମୁଖ୍ୟ କର୍ତ୍ତୃତ୍ୱ ଅସିଦ୍ଧ । ସେହିପରି କେବଳ ଉପାଦାନସ୍ୱରୂପିଣୀ ଜୀବ-ପ୍ରକୃତିଠାରୁ ମନର ଉତ୍ପତ୍ତି ମଧ୍ୟ ଅସମ୍ଭବ ।

ବିଜ୍ଞାନାଦିଭାବେ ବା ତଦପ୍ରତିଷେଧଃ ॥　　୨-୨-୪୪ ।

ଜୀବାଦିର ବିଜ୍ଞାନାଦି ଐଶିକ ଶକ୍ତି ସ୍ୱୀକାର କଲେ ମଧ୍ୟ ଜୀବଠାରୁ ଉତ୍ପତ୍ତି-ଅସମ୍ଭବ-ରୂପକ ଦୋଷର ପ୍ରତିଷେଧ ହୋଇ ନ ପାରେ, ଅର୍ଥାତ୍ ଭାଗବତମତରେ ବାସୁଦେବ ଆଦି ସମସ୍ତେ ସର୍ବଜ୍ଞ, ସର୍ବଗତ, ଅନନ୍ତଗୁଣସମ୍ପନ୍ନ ଇତ୍ୟାଦି ସ୍ୱୀକୃତ । ଏହିପରି ପ୍ରାକୃତିକ ଶକ୍ତିସମୂହରେ ବିଜ୍ଞାନାଦି ଐଶିକତା ସ୍ୱୀକାର କଲେ ବାସୁଦେବଙ୍କଠାରୁ ସଂକର୍ଷଣାଦି ବା ଜଗତର ଉତ୍ପତ୍ତି ଅସମ୍ଭବ—ଏହି ଦୋଷର ଖଣ୍ଡନ ହୁଏ ନାହିଁ । କାରଣ ଗୁଣାଦିର ସାମ୍ୟାବସ୍ଥା ପ୍ରକୃତି, ଏହି ସାମ୍ୟ ଭଙ୍ଗ ହେଲେ ଜଗତ୍ ପ୍ରକାଶିତ ହୁଏ । ଅତଏବ ବାସୁଦେବାଦିଠାରେ ଶକ୍ତିତାରତମ୍ୟର ଉଲ୍ଲେଖ ନ ଥିବାରୁ ତାଙ୍କଠାରୁ ଉତ୍ପତ୍ତି ହେବା ଅସିଦ୍ଧ ଜଣାଯାଏ ।

ବିପ୍ରତିଷେଧାଚ ॥ ୨-୨-୪୫ ।

ଭାଗବତାଦି ପୌରାଣିକ ମତ ଶ୍ରୁତି ବା ବିଶୁଦ୍ଧ ଦର୍ଶନର ମଧ୍ୟ ବିରୋଧୀ । ଅର୍ଥାତ୍ ପୁରାଣରେ ଜ୍ଞାନାଦିର ଗୁଣତ୍ୱ କଥିତ ହୋଇଅଛି । ବାସୁଦେବାଦି ଐଶିକ ବିଜ୍ଞାନଭାବ ସ୍ୱୟଂ "ଗୁଣ" ଓ ଗୁଣୀ ମଧ୍ୟ; କିନ୍ତୁ ଏହା ଦର୍ଶନବିରୁଦ୍ଧ ଓ ବେଦବିରୁଦ୍ଧ । ଉକ୍ତ ମତ ବୈଷ୍ଣବ-ସମ୍ପ୍ରଦାୟ ମଧ୍ୟରେ ଗ୍ରହଣୀୟ ହେଲେ ମଧ୍ୟ ବିଶୁଦ୍ଧ ଦର୍ଶନମତ ଅନୁସାରେ ଗ୍ରହଣୀୟ ନୁହେଁ ।

## ୦—ଏକ ପରଂବ୍ରହ୍ମଙ୍କ ମହିମାରୁ ସର୍ବଦେବଗଣ ଉତ୍ପନ୍ନ ଓ ଦେବତାମାନଙ୍କର ସଂଖ୍ୟା—

ପୂର୍ବୋକ୍ତ ସକଳ ଦାର୍ଶନିକ ଯୁକ୍ତିରୁ ଏହା ସର୍ବବାଦିସମ୍ମତ ହୁଏ ଯେ, ସ୍ୱୟଂସିଦ୍ଧ ପରଂବ୍ରହ୍ମଙ୍କର ଅଦ୍ଭୁତ ମହିମାରୁ ବିଶ୍ୱଜୀବ ଓ ଜଡ଼ଜଗତ୍ ସକଳ ଉତ୍ପନ୍ନ ହୋଇଅଛି । ତାଙ୍କ ବ୍ୟତୀତ ଜଗଦୁତ୍ପତ୍ତି ପ୍ରତି ଅନ୍ୟ କିଛି ଦ୍ୱିତୀୟ କାରଣ ନାହିଁ । ସେହି ଏକ ଅଦ୍ୱିତୀୟ ବିଶୁଦ୍ଧ ପରଂବ୍ରହ୍ମ ପରମାତ୍ମା କେବଳ ସର୍ବ ଜଗତର ପ୍ରକାଶକ ଓ ପ୍ରଶାସକ; ସେ ସ୍ୱୟଂ ନିର୍ଲିପ୍ତଭାବରେ ପ୍ରକାଶସ୍ୱରୂପରେ ସର୍ବତ୍ର ବିରାଜିତ । ତାହାଙ୍କର ଆତ୍ମସତ୍ତାରେ ସମସ୍ତେ ଆତ୍ମସିଦ୍ଧ । ସେହି କେବଳ ଅଦ୍ୱିତୀୟ ବିଶୁଦ୍ଧାଦ୍ୱୈତତତ୍ତ୍ୱନାମରେ ଅଭିହିତ । ତଦ୍‌ଭିନ୍ନ ବିଶୁଦ୍ଧତତ୍ତ୍ୱ ଅନ୍ୟ କିଛି ନାହିଁ । ସେହି ବିଶୁଦ୍ଧ ପରଂବ୍ରହ୍ମଙ୍କ ସ୍ୱୟଂସିଦ୍ଧ ମହିମାରୁ ସମସ୍ତ ସୃଷ୍ଟି ତତ୍ତ୍ୱ (ପୁରୁଷ-ପ୍ରକୃତ୍ୟାଦି) ସମ୍ଭୂତ । ଏହା ପୂର୍ବରୁ ବର୍ଣ୍ଣିତ ହୋଇ ଆସୁଅଛି । ବର୍ତ୍ତମାନ ଦେବତାମାନଙ୍କ ଉତ୍ପତ୍ତି ଓ ସଂଖ୍ୟା ବିଷୟରେ ବୃହଦାରଣ୍ୟକ ଶ୍ରୁତି ଅନୁସାରେ ବର୍ଣ୍ଣନା କରାଯାଉଛି ।

**ସ ହୋବାଚ ମହିମାନ ଏବୈଷାମେତେ ତ୍ରୟସ୍ତ୍ରିଂଶତ୍ତ୍ୱେବ ଦେବା ଇତି କତମେ ତେ ତ୍ରୟସ୍ତ୍ରିଂଶ ଦତ୍ୟଷ୍ଟୌ ବସବ ଏକାଦଶ ରୁଦ୍ରା ଦ୍ୱାଦଶାଦିତ୍ୟାସ୍ତ ଏକତ୍ରିଂଶଦିନ୍ଦ୍ରଶ୍ଚୈବ ପ୍ରଜାପତିଶ୍ଚ ତ୍ରୟସ୍ତ୍ରିଂଶାଦିତି ॥**

ବୃହଦାରଣ୍ୟକ ଉପନିଷଦ୍ ୩-୯-୨ ।

ଅର୍ଥାତ୍ ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କ ମହିମାରୁ କେବଳ ଏହି ତେତିଶ ଦେବତାମାନଙ୍କର ବିସ୍ତାର । ବସ୍ତୁତଃ ଦେବତାମାନଙ୍କର ସଂଖ୍ୟା ତେତିଶ, ସେଥିରୁ ଅଧିକ ନୁହେଁ । ଏହି ତେତିଶ ଦେବତା ହେଉଛନ୍ତି—ଅଷ୍ଟ ବସୁ, ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ଇନ୍ଦ୍ର ଓ ପ୍ରଜାପତି । ଏହି ତେତିଶ ଦେବତା ହିଁ ଯଥାର୍ଥ । ଏମାନଙ୍କ ବ୍ୟତୀତ ଅନ୍ୟ ସମସ୍ତ ଦେବତା ଏମାନଙ୍କର ବିଭୂତିର ବିସ୍ତାରମାତ୍ର ।

**କତମେ ବସବ ଇତ୍ୟଗ୍ନିଶ୍ଚ ପୃଥିବୀ ଚ ବାୟୁଶ୍ଚାନ୍ତରୀକ୍ଷଞ୍ଚାଦିତ୍ୟଶ୍ଚ ଦ୍ୟୌଶ୍ଚ ଚନ୍ଦ୍ରମାଶ୍ଚ ନକ୍ଷତ୍ରାଣି ଚୈତେ ବସବଃ ଏତେଷୁ ହୀଦଂ ବସୁ ସର୍ବଂ ହିତମିତି ତସ୍ମାଦ୍ ବସବ ଇତି ॥** ବୃହ: ୩-୯-୩ ।

ପୂର୍ବୋକ୍ତ ଅଷ୍ଟବିଧ ବସୁ—ଅଗ୍ନି, ପୃଥିବୀ, ବାୟୁ, ଅନ୍ତରୀକ୍ଷ, ଆଦିତ୍ୟ, ଦ୍ୟୁଲୋକ, ଚନ୍ଦ୍ର ଓ ନକ୍ଷତ୍ର । ଏହି ଅଗ୍ନିଙ୍କଠାରୁ ନକ୍ଷତ୍ର ପର୍ଯ୍ୟନ୍ତ ଦେବତାମାନେ ବସୁନାମରେ ଅଭିହିତ । ଯାହା ବାସ କରେ, ବା ବାସ କରାଏ ତାହା ବସୁଶବ୍ଦ-ବାଚ୍ୟ । ଉକ୍ତିରେ ଅଗ୍ନିଠାରୁ ନକ୍ଷତ୍ରାବଧି ଦେବଗଣ ପ୍ରାଣୀମାନଙ୍କର କର୍ମଫଳର ଆଶ୍ରୟ ଓ ଦେହେନ୍ଦ୍ରିୟାଦିରୂପରେ ପ୍ରାଣୀମାନଙ୍କର ନିବାସରୂପରେ ପରିଣତ ହୋଇ ଏହି ସମସ୍ତ ଜଗତର ଆବାସର ପ୍ରଯୋଜକ ଓ ସ୍ୱୟଂ ବାସକାରୀ, ସେଥିପାଇଁ ଏମାନଙ୍କ ନାମ ବସୁ ।

**କତମେ ରୁଦ୍ରା ଇତି ଦଶେମେ ପୁରୁଷେ ପ୍ରାଣା ଆତ୍ମୈକାଦଶସ୍ତେ ଯଦାସ୍ମାଚ୍ଛରୀରାନ୍ମର୍ତ୍ତ୍ୟାଦୁତ୍କ୍ରାମନ୍ତ୍ୟଥ ରୋଦୟନ୍ତି ତଦ୍ୟଦ୍ରୋଦୟନ୍ତି ତସ୍ମାଦ୍ରୁଦ୍ରା ଇତି ।**　　ବୃ:ଆ:ଉ: ୩ । ୯ । ୪ ।

ଅର୍ଥାତ୍ ଏକାଦଶ ରୁଦ୍ର କେଉଁମାନେ—ଏହି ପ୍ରଶ୍ନର ଉତ୍ତରରେ କୁହାଯାଉଛି ଯେ, ପୁରୁଷର ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ମନ—ଏହି ଏକାଦଶ ରୁଦ୍ରଦେବତା । ଏମାନଙ୍କର ରୁଦ୍ରସଂଜ୍ଞାର ଅର୍ଥସ୍ୱରୂପରେ କୁହାଯାଏ କି, ଯେତେବେଳେ ଏହି ଏକାଦଶ ରୁଦ୍ର ଜୀବର କର୍ମଫଳଭୋଗ ଅବସାନରେ ଶରୀରରୁ ନିଷ୍କ୍ରାନ୍ତ ହୁଅନ୍ତି, ସେତେବେଳେ ଶରୀରର ଅନ୍ୟ ଆତ୍ମୀୟଗଣଙ୍କୁ ରୋଦନ କରାନ୍ତି; ଏଣୁ ଏମାନଙ୍କର ନାମ ରୁଦ୍ର ।

**କତମ ଆଦିତ୍ୟା ଇତି ଦ୍ୱାଦଶ ବୈ ମାସାଃ ସମ୍ବତ୍ସରସ୍ୟୈତ ଆଦିତ୍ୟା ଏତେ ହୀଦଂ ସର୍ବମାଦଦାନା ଯନ୍ତି ତେ ଯଦିଦଂ ସର୍ବମାଦଦାନା ଯନ୍ତି ତସ୍ମାଦାଦିତ୍ୟା ଇତି ॥**　　ବୃ:ଆ:ଉ: ୩ । ୯ । ୫ ।

ଦ୍ୱାଦଶ ଆଦିତ୍ୟ କେଉଁମାନେ—ଏହି ପ୍ରଶ୍ନର ଉତ୍ତରରେ କୁହାଯାଇଛି କି ସମ୍ବତ୍ସରର ଅବୟବରୂପକ ଦ୍ୱାଦଶ ମାସର ନାମ ଦ୍ୱାଦଶ ଆଦିତ୍ୟ । କାରଣ ଏମାନେ ପ୍ରାଣୀମାନଙ୍କର କର୍ମଫଳ ଓ ଆୟୁଷକୁ ଗ୍ରହଣ କରି ସର୍ବଦା ଗତି କରୁଛନ୍ତି । ଏପରି କି ଏହିପରି ଦୃଶ୍ୟମାନ ସମଗ୍ର ଜଗତ୍ ଗ୍ରାସ କରି ମଧ୍ୟ ସ୍ଥିରତ୍ୱ ଲାଭ ନ କରି ଏମାନେ ଅବିରତ ଗମନ କରିଥାନ୍ତି । ଏହି ହେତୁରୁ ଏମାନଙ୍କର ନାମ ଆଦିତ୍ୟ ।

**କତମ ଇନ୍ଦ୍ରଃ କତମଃ ପ୍ରଜାପତିରିତି ସ୍ତନୟିତ୍ନୁରେବେନ୍ଦ୍ରୋ ଯଜ୍ଞଃ ପ୍ରଜାପତିରିତି**　　×　　×　　×　　ବୃ:ଆ:ଉ: ୩ । ୯ । ୬ ।

ସେହି ଶ୍ରୁତିରେ ଇନ୍ଦ୍ରର ଅର୍ଥ ସ୍ତନୟିତ୍ନୁ; ଅର୍ଥାତ୍ ସର୍ବବ୍ୟାପକ ବିଦ୍ୟୁତ୍ ବା ଶକ୍ତି । ପ୍ରଜାପତିର ଅର୍ଥ ମଧ୍ୟ ଯଜ୍ଞ । ବେଦରେ ଏହିମାନେ କେବଳ ତେତିଶ ଦେବତାନାମରେ ଅଭିହିତ । ଏମାନଙ୍କ ଭିନ୍ନ ଷଡ୍‌ଦେବତା, ଦ୍ୱିଦେବତା ଓ ଏକ-ଦେବତା-ସମ୍ବନ୍ଧରେ ମଧ୍ୟ କଥିତ ଅଛି—

କତମେ ତେ ତ୍ରୟୋ ଦେବା ଇତୀମ ଏବ ତ୍ରୟୋ ଲୋକା ଏଷୁ ହୀମେ ସର୍ବେ ଦେବା ଇତ କତମୌ ତୌ ଦ୍ୱୌ ଦେବାବତ୍ୟନ୍ନଂ ଚୈବ ପ୍ରାଣଶ୍ଚେତ କତମୋଽଧ୍ୟର୍ଦ୍ଧ ଇତ ଯୋଽୟଂ ପବତ ଇତ । ବୃ:ଆ:ଉ: ୩ । ୯ । ୮ ।

ତିନୁ ଦେବତା ଇତ୍ୟାଦି କେଉଁମାନେ—ଏହି ପ୍ରଶ୍ନର ଉତ୍ତରସ୍ୱରୂପ କୁହାଯାଇଛି କି— ଭୂଃ ଭୁବଃ ସ୍ୱଃ ଏହି ତିନଲୋକ ହିଁ ଦେବତା ତିନୁ । କାରଣ, ଅନ୍ୟାନ୍ୟ ସକଳ ଦେବତା ଏହି ତିଲୋକର ଅନ୍ତର୍ଭୁକ୍ତ । ସେହିପରି ଅନ୍ନ ଓ ପ୍ରାଣ ମଧ୍ୟ ଦ୍ୱିଦେବତା ବା ଦେବତାଦ୍ୱୟ । ପ୍ରବହମାନ ବାୟୁ କେବଳ ଅଧ୍ୟର୍ଦ୍ଧ ବା ସାର୍ଦ୍ଧେକ ଦେବତା ।

କତମ ଏକୋ ଦେବ ଇତ ପ୍ରାଣ ଇତ ସ ବ୍ରହ୍ମ × × ବୃ:ଆ:ଉ: ୩।୯।୯ ।

ଏକ ଦେବତା କାହାର ନାମ—ଏହି ପ୍ରଶ୍ନର ଉତ୍ତରରେ କୁହାଯାଇଛି ଯେ, ପ୍ରାଣ ଏବଂ ପ୍ରାଣର ଆତ୍ମସ୍ୱରୂପକ ବ୍ରହ୍ମ ହିଁ ଏକ ଦେବତା । ଏହି ବ୍ରହ୍ମଙ୍କ ମହିମାରୁ ତେତିଶ ଦେବତା ସମ୍ଭୂତ * । ଏହି ତେତିଶ ଦେବତାଙ୍କ ସମ୍ବନ୍ଧରେ ଚିନ୍ତାପୂର୍ବକ ଅନୁସରଣ କରି ବେଦ କହେ—

ତ୍ରୟସ୍ତ୍ରିଂଶତାସ୍ତୁବତ ଭୂତାନ୍ୟ ଶାମ୍ୟନ୍ ପ୍ରଜାପତଃ ।
ପରମେଷ୍ଠ୍ୟଧିପତରାସୀତ୍ । ଯଜୁଃ: ୧୪ । ୩୧ ।

ପ୍ରକୃତିର ଶାସକ, ପ୍ରଜାପାଳକ, ସର୍ବବ୍ୟାପକ, ସର୍ବାଧିପତି ପରମାତ୍ମାଙ୍କର ବିକାଶସ୍ୱରୂପ ତେତିଶ ଭୌତିକ ଦେବଶକ୍ତିର ଅନୁଶୀଳନ କର । †

* ବେଦର ୩୩ ଦେବତା ପୁରାଣରେ ୩୩ କୋଟି ଦେବତାରେ ପରିଣତ ହୋଇଅଛନ୍ତି । ବେଦର ୩୩ ଦେବତାଙ୍କୁ ପ୍ରାଚୀନ କାଳରେ ୩୩ କୋଟି ଦେବତା କୁହାଯାଇଛି । ପ୍ରକୃତରେ ଏଠାରେ ଶ୍ରେଣୀ ଅର୍ଥରେ କୋଟୀ ଶବ୍ଦ ବ୍ୟବହୃତ ଏ କଥା ବୁଝିବାକୁ ହେବ । ଯେପରି ସେ ଜଣେ ଉଚ୍ଚ କୋଟୀର ଲୋକ, ଇତ୍ୟାଦି । ପରବର୍ତ୍ତୀ ପୌରାଣିକ ଯୁଗରେ କୋଟୀ ଶବ୍ଦକୁ ପରିବର୍ତ୍ତିତ କରି ଓ ତା'ର ଶ୍ରେଣୀ-ଅର୍ଥ ତ୍ୟାଗ କରି ସ୍ୱେଚ୍ଛାଭାବରେ ତା'ର ସଂଖ୍ୟା ଅର୍ଥ ସ୍ୱୀକାର କରି ଅସଂଖ୍ୟ ଦେବତାଙ୍କର କଳ୍ପନା କରାଯାଇଛି ।

† ବୈଜ୍ଞାନିକମାନେ ମଧ୍ୟ ଏକ ମୌଳିକତତ୍ତ୍ୱକୁ କେବଳ ମାନନ୍ତି । ଏହି ବିଶାଳ ବିଶ୍ୱ ବୈଜ୍ଞାନିକମାନଙ୍କ ମତରେ ଦୁଇ କୋଟୀରେ ବିଭକ୍ତ—ସ୍ଥାବର (Inorganic) ଓ ଜଙ୍ଗମ (Organic) । ସାଗର, ପର୍ବତ, ନଦୀ, ଆକାଶ, ଜଳ, ସ୍ଥଳ, ଅନ୍ତରୀକ୍ଷ, ଧାତୁ, ଶିଳା, ଛିତ, ବାଷ୍ପ—ଏହା ସବୁ ସ୍ଥାବର ଓ ବୃକ୍ଷ, ଲତା, ଗୁଳ୍ମ, ପଶୁ, ପକ୍ଷୀ, କୀଟ, ସରୀସୃପ,

## ଠ—ପରଂବ୍ରହ୍ମଙ୍କ ମହିମାରୁ ସମସ୍ତ ଜଗତ୍ ସମ୍ଭୂତ ଓ ସେ ସ୍ୱୟଂ ସର୍ବାତୀତ ହୋଇ ସ୍ୱ-ମହିମାରେ ବିଦ୍ୟମାନ ଅଛନ୍ତି—

ଉପର୍ଯ୍ୟୁକ୍ତ ଅନୁଶୀଳନରୁ ଜଣାଯାଏ ଯେ ସେହି ପରଂବ୍ରହ୍ମଙ୍କ ମହିମାରୁ ଏହି ସମସ୍ତ ଜଗତ୍ ଉତ୍ପନ୍ନ । ଉପନିଷଦ୍‌ରେ ମଧ୍ୟ କଥିତ ହୋଇଛି—

ମନୁଷ୍ୟ-ଆଦି ଜଙ୍ଗମ । ବିଜ୍ଞାନମତରେ ସକଳ ସ୍ଥାବର ପଦାର୍ଥମାନଙ୍କର ବିଶ୍ଳେଷଣଦ୍ୱାରା ଜଣାଯାଇଛି ଯେ, ଏହି ସମସ୍ତଙ୍କର ମୂଳଭୂତ ୭୦ଟି ପଦାର୍ଥ, ଯାହାର ନାମ Element । କିନ୍ତୁ ଏଲିମେଣ୍ଟ ବା ମୂଳଭୂତ ପଦାର୍ଥ ବର୍ତ୍ତମାନ ୯୫ ବା ୧୦୨ ପର୍ଯ୍ୟନ୍ତ ଥିବା ଜଣାଗଲଣି । ସେହିପରି ଜଙ୍ଗମ ପଦାର୍ଥମାନଙ୍କର ବିଶ୍ଳେଷଣ ଦ୍ୱାରା ଜଣାଯାଏ ଯେ ସେ ସମସ୍ତ କୋଷାଣୁ (Cell) ଦ୍ୱାରା ଗଠିତ । ପୁନଶ୍ଚ ଏହି କୋଷାଣୁମାନଙ୍କୁ ବିଶ୍ଳେଷଣ କଲେ ଜଣାଯିବ ଯେ ସେଥିରେ ମଧ୍ୟ ସେହି ମୂଳତତ୍ତ୍ୱ ଏଲିମେଣ୍ଟ ବିଦ୍ୟମାନ । ଅତଏବ ପାଶ୍ଚାତ୍ୟ ବିଜ୍ଞାନମତରେ ଏହି ବିବିଧ ବୈଚିତ୍ର୍ୟମୟ ଜଡ଼ଜଗତ୍ ସେହି ୭୦ ବା ତତୋଽଧିକ ମୂଳଭୂତ ପଦାର୍ଥ ( ହାଇଡ୍ରୋଜେନ, ଅକ୍ସିଜେନ, ପାରଦ, ସ୍ୱର୍ଣ୍ଣ, ରୌପ୍ୟ, ଗନ୍ଧକ, କାର୍ବନପ୍ରଭୃତି ) ର ସଂଯୋଗ ଓ ସଂହନନରେ ଗଠିତ ହୋଇଅଛି ।

ଅନେକ ଦିନ ପର୍ଯ୍ୟନ୍ତ ବୈଜ୍ଞାନିକମାନେ ଏହି ସମସ୍ତ ମୂଳଭୂତ-ପଦାର୍ଥମାନଙ୍କର ପରମାଣୁକୁ ସ୍ୱତନ୍ତ୍ର ଓ ନିତ୍ୟ ମନେ କରୁଥିଲେ । ସେମାନଙ୍କ ମତରେ ସ୍ୱର୍ଣ୍ଣର ପରମାଣୁ ଅନ୍ୟ ପରମାଣୁଠାରୁ ସ୍ୱତନ୍ତ୍ର ଓ ନିତ୍ୟ ବା ଚିରଦିନ ଅପରିବର୍ତ୍ତିତଭାବରେ ରହିଥିବ । ଏହି ମତ ଅନେକ ଦିନ ପର୍ଯ୍ୟନ୍ତ ଥିଲା; କିନ୍ତୁ ପରବର୍ତ୍ତୀ ସମୟର ଗବେଷଣା-ବଳରେ ଏହି ମତର ଅଭ୍ରାନ୍ତତା ସନ୍ଦିଗ୍ଧ ଜଣାଗଲଣି; ଅର୍ଥାତ୍ ଏହି ସକଳ ମୂଳତତ୍ତ୍ୱ ମଧ୍ୟ ଅନ୍ୟ ଏକ ଓ ଅଦ୍ୱିତୀୟ ଉପାଦାନରେ ଗଠିତ । ଅର୍ଥାତ୍ ଏହି ସବୁ ମୂଳତତ୍ତ୍ୱ ଗୋଟିଏ ଚରମତତ୍ତ୍ୱର ପରିଣାମ ମାତ୍ର । ମନୀଷୀ ସର୍ ଉଇଲିୟମ୍ କ୍ରୁକ୍‌ସ୍‌ଙ୍କର ଏହି ସ୍ୱପ୍ନ ବର୍ତ୍ତମାନ ବାସ୍ତବତାରେ ପରିଣତ ହେଲଣି । ତାଙ୍କ ମତରେ ରସାୟନଶାସ୍ତ୍ରୋକ୍ତ ସେହି ୭୦ ବା ତତୋଽଧିକ ମୂଳତତ୍ତ୍ୱ ବସ୍ତୁତଃ ମୌଳିକ ପଦାର୍ଥ ବା ଏଲିମେଣ୍ଟ ନୁହେଁ । ସେଗୁଡ଼ିକ ପ୍ରୋଟାଇଲ୍ (Protyle) ନାମକ ଏକ ଚରମତତ୍ତ୍ୱର ବିକାର ମାତ୍ର । ଏହି ପ୍ରୋଟାଇଲ୍ ହିଁ ଜଗତ୍‌ର ନିର୍ବିଶେଷ (homogencous) ଚରମ ଉପାଦାନ । ଏହାର ହିଁ ସଂଯୋଗ ଓ ସଂହନନରେ ଏହି ବିଚିତ୍ର ବିଶ୍ୱ ନିର୍ମିତ । କ୍ରୁକ୍‌ସ୍ ଆହୁରି ମଧ୍ୟ ପ୍ରତିପାଦନ କରିଛନ୍ତି ଯେ, ବୈଜ୍ଞାନିକ ଯାହାକୁ ନିତ୍ୟ ଓ ଅଖଣ୍ଡ ପରମାଣୁ ବୋଲି ମନେକରୁଥିଲେ, ପ୍ରକୃତରେ ତାହା ନିତ୍ୟ ନୁହେଁ । ପରସ୍ପରଠାରୁ ସ୍ୱତନ୍ତ୍ର ବି ନୁହେଁ । ପରବର୍ତ୍ତୀ ବୈଜ୍ଞାନିକମତରେ ଯେପରି ଇଷ୍ଟକ ରାଶିକୁ ଭିନ୍ନ ଭିନ୍ନ ପ୍ରକାରରେ ସଜ୍ଜିତ କଲେ ନାନାଜାତୀୟ ଅଟ୍ଟାଳିକା ନିର୍ମାଣ କରାଯାଏ, ସେହିପରି ସେହି ପ୍ରୋଟାଇଲ୍ ରୂପ ମୂଳ ପରମାଣୁର ସଂହନନଭେଦରେ ରସାୟନଶାସ୍ତ୍ରୋକ୍ତ ୭୦ ବା ତତୋଽଧିକ ବିଭିନ୍ନ ପରମାଣୁର ଉତ୍ପତ୍ତି ହୋଇଅଛି । କ୍ରୁକ୍‌ସ୍‌ଙ୍କ ଏହି ମତ ବର୍ତ୍ତମାନ ବୈଜ୍ଞାନିକସମାଜରେ ସ୍ଥିର ସିଦ୍ଧାନ୍ତ ବୋଲି ଗୃହୀତ ହୋଇଅଛି । ଏହି ପ୍ରୋଟାଇଲ୍ ପ୍ରାଚ୍ୟ ଦର୍ଶନର ପ୍ରକୃତି । ସାଂଖ୍ୟ ଦାର୍ଶନିକ ଏହାକୁ ଜଗତର ଅଦ୍ୱିତୀୟ ଉପାଦାନ—

ତାବାନସ୍ୟ ମହିମା ତତୋ ଜ୍ୟାୟାଂଶ୍ଚ ପୂରୁଷଃ ।
ପାଦୋଽସ୍ୟ ସର୍ବାଭୂତାନି ତ୍ରିପାଦସ୍ୟାମୃତଂ ଦିବୀତି ॥

ଛାନ୍ଦୋଗ୍ୟ ଉ: ୩ । ୧୨ । ୬ ।

ଏତଦ୍ଭିନ୍ନ ପ୍ରଶ୍ନ—ମୈତ୍ର୍ୟ ଉପନିଷଦ୍‌ରେ ମଧ୍ୟ କଥିତ ଅଛି—

ତ୍ରିଷ୍ୱେକପାଚ୍ଚରେଦ୍ ବ୍ରହ୍ମ ତ୍ରିପାଚ୍ଚରତ ଚୋତ୍ତରେ ।
ସତ୍ୟାନୃତୋପଭୋଗାର୍ଥୋ ଦ୍ୱୈତୀଭାବୋ ମହାତ୍ମନ ଇତି ॥

ମୈତ୍ର୍ୟ ଉ: ୬ । ୧୧ ।

ଅମୂଳମୂଳ ବୋଲି ପ୍ରତିପାଦନ କରେ; କିନ୍ତୁ ପ୍ରକୃତି ଛଡ଼ା ଜଗତରେ ଅନ୍ୟ ଏକ ପଦାର୍ଥ ଅଛି—ବିଜ୍ଞାନରେ ଏହାର ନାମ ଶକ୍ତି (force Energy ବା power) । ଶକ୍ତିର ନାନାବିଧ ବୈଚିତ୍ର୍ୟରେ ସମସ୍ତେ ବିମୋହିତ । ପ୍ରଥମେ ଶକ୍ତିର ଅନନ୍ତ ଭେଦ ଥିବାଭଳି ଦେଖାଯାଏ; କିନ୍ତୁ ବୈଜ୍ଞାନିକ ଧୀରଭାବରେ ଏହା ବିଶ୍ଳେଷଣ କରି ଦେଖିଛି ଯେ ଶକ୍ତିର ୬ ଗୋଟି ବିଭାଗ ସାଧାରଣତଃ ଧରାଯାଏ—ଗତି, ତାପ, ଆଲୋକ, ତଡ଼ିତ୍, ଚୁମ୍ବକ ଓ ରାସାୟନିକ ଶକ୍ତି (Motion, Heat, Light, Electricity, Magnetism and Chemical affinity) । ଏତଦ୍‌ଭିନ୍ନ ଅନ୍ୟ ଦୁଇଗୋଟି ଶକ୍ତି ମଧ୍ୟ ଅଛି—ପ୍ରାଣଶକ୍ତି ( Vital force ) ଏବଂ ଜୀବଶକ୍ତି (Psychic force) । ଏହିପରି ଶକ୍ତିର ଆଠ ଭେଦ ଧରାଯାଏ । ଅନେକଦିନ ପର୍ଯ୍ୟନ୍ତ ବୈଜ୍ଞାନିକ ମନେ କରୁଥିଲେ ଯେ ଏହି ଅଷ୍ଟବିଧ ଶକ୍ତି ପରସ୍ପର ଭିନ୍ନ ଓ ସ୍ୱତନ୍ତ୍ର ପଦାର୍ଥ; କିନ୍ତୁ ଏମାନେ ଯେ ଏକ ମହାଶକ୍ତିର ରୂପାନ୍ତର—ଏ କଥା ବିଜ୍ଞାନ-ଜଗତ୍‌ରେ ପରିଚିତ ନ ଥିଲା । ସର ଉଇଲିୟମ୍ ଗ୍ରୋଭ ବୈଜ୍ଞାନିକ ପରୀକ୍ଷାଦ୍ୱାରା ପ୍ରତିପାଦନ କରିଛନ୍ତି ଯେ, ଉକ୍ତ ଷଡ୍‌ବିଧ ଭୌତିକ ଶକ୍ତିକୁ ମଧ୍ୟ ପରସ୍ପର ରୂପାନ୍ତରିତ କରାଯାଏ । ଅର୍ଥାତ୍ ତଡ଼ିତ୍‌ରୁ ତାପ, ଆଲୋକ ଓ ଚୌମ୍ବକ ଶକ୍ତି ଉତ୍ପାଦିତ ହୁଏ । ପୁନଶ୍ଚ ତାପ, ଆଲୋକପ୍ରଭୃତିକୁ ମଧ୍ୟ ତଡ଼ିତ୍‌ରେ ରୂପାନ୍ତରିତ କରାଯାଏ । ତାଙ୍କ ମତରେ ଏହି ପ୍ରକ୍ରିୟାର ନାମ—ଶକ୍ତିର ସମାବର୍ତ୍ତନ ( Correlation of Physical forces ) । ବୈଜ୍ଞାନିକ ହେଲମ୍ ହୋଲ୍‌ଜ୍ ( Helmholtz ) ଏବଂ ମାୟାର୍ (Mycr) ଏହି ମତର ପୃଷ୍ଟପୋଷକ ଓ ବିଶ୍ଳେଷକ ମଧ୍ୟ । ପ୍ରସିଦ୍ଧ ଦାର୍ଶନିକ ହର୍ବର୍ଟ ସ୍ପେନ୍‌ସର ମଧ୍ୟ ଏହି ମତର ଅଧିକ ସମ୍ପ୍ରସାରଣ କରି କହିଛନ୍ତି ଯେ—କେବଳ ପୂର୍ବୋକ୍ତ ୬ ଶକ୍ତି ନୁହେଁ, ପ୍ରାଣଶକ୍ତି ଓ ଜୀବଶକ୍ତି ମଧ୍ୟ ଏହି ସମାବର୍ତ୍ତନ ବିଧିର ଅନ୍ତର୍ଭୁକ୍ତ । ସକଳଜାତୀୟ ଶକ୍ତି ଅନ୍ୟ ଜାତୀୟ ଶକ୍ତିରେ ରୂପାନ୍ତରିତ ହୋଇପାରେ । ବସ୍ତୁତଃ ଶକ୍ତିର ହ୍ରାସବୃଦ୍ଧି ନାହିଁ । ଉତ୍ପତ୍ତି ଓ ବିନାଶ, ଉପଚୟ ବା ଅପଚୟ—ଆଦି କିଛି ନାହିଁ । କେବଳ ଅଛି ଆବିର୍ଭାବ, ତିରୋଭାବ, ରୂପାନ୍ତର ଓ ଭାବାନ୍ତର । ବୈଜ୍ଞାନିକ ଭାଷାରେ ଏହି ତତ୍ତ୍ୱର ନାମ—Conservation of Energy । ହର୍ବାର୍ଟ ସ୍ପେନ୍‌ସାର ଏହାର ବିଶିଷ୍ଟ ନାମ ଦେଇଛନ୍ତି, Persistence of force । ସେ କହନ୍ତି ଯେ କୌଣସି ଏକ ଅଜ୍ଞେୟ, ଅଚିନ୍ତ୍ୟ ଶକ୍ତି (Power) ଅଛି,

ଅର୍ଥାତ୍ ତ୍ରିଲୋକମଧ୍ୟରେ ବ୍ରହ୍ମଙ୍କର ଏକପାଦ ମାତ୍ର ଥାଏ—ତାହାର ଊର୍ଦ୍ଧ୍ୱରେ ଅମୃତ ତ୍ରିପାଦ, ସେହି ତଦାତ୍ମରୂପହିଁ ସତ୍ୟ । ତଦ୍‌ଭିନ୍ନ ପରସ୍ପର ଆରୋପିତ ସେହି ସତ୍ୟ ଓ ଅନୃତଦ୍ୱାରା ବ୍ୟବହାର ନିମନ୍ତେ ବ୍ରହ୍ମଙ୍କର ଦ୍ୱୈତ ନାନାଭାବ କଳ୍ପିତ ହୋଇଅଛି । ଏହି ନାନାଭାବ ବାସ୍ତବିକ ନୁହେଁ ।

ଗୀତାରେ ମଧ୍ୟ ଉକ୍ତ ଅଛି—

**ବିଷ୍ଟଭ୍ୟାହମିଦଂ କୃତ୍ସ୍ନଂ ଏକାଂଶେନ ସ୍ଥିତୋ ଜଗତ୍ ।**

ଗୀତା: ୧୦ । ୪୨ ।

---

ଯାହା ରୂପାନ୍ତରିତ ହୁଏ, କିନ୍ତୁ ନଷ୍ଟ ହୁଏ ନାହିଁ । ଉଦାହରଣ ସ୍ୱରୂପ କୁହାଯାଇପାରେ — ଯେପରି ସକଳ ରାଗରାଗିଣୀ ସପ୍ତସ୍ୱରର ବିକାରମାତ୍ର ଓ ସମସ୍ତ ପଦବାକ୍ୟ ପଞ୍ଚାଶଦ୍ ବର୍ଣ୍ଣର ସମନ୍ୱୟ । ସେହିପରି ସମସ୍ତ ଶକ୍ତିପୁଞ୍ଜ ପ୍ରଥମେ ଅଷ୍ଟ ମୂଳଶକ୍ତିରେ ସଂକୁଚିତ ହେଲି ଓ ପରେ ସେହି ଅଷ୍ଟଶକ୍ତି ଏକ ମହାନ୍ ଅଦ୍ଭୁତ ଶକ୍ତିର ହିଁ ରୂପାନ୍ତର ବୋଲି ପ୍ରତିପାଦିତ ହୋଇଛି । ଏହି ମହା-ଅଦ୍ଭୁତ ଶକ୍ତି ଜଡ଼ ନୁହେଁ । ତାହା ମହାମହିମାନ୍ୱିତ ଚିନ୍ମୟ । ପ୍ରାକୃତିକ ଜଗତ୍‌ରେ ଯାହା ଜଡ଼ଶକ୍ତିର ବ୍ୟାପାର ବୋଲି ମନେହୁଏ, ତାହା ପ୍ରକୃତରେ ସେହି ସର୍ବଶକ୍ତିମାନ୍ ମହାମହିମାନ୍ୱିତ ପରମାତ୍ମାଙ୍କର ବିଳାସ । ଗୀତାରେ ଭଗବାନ କହିଛନ୍ତି—

ଯଦାଦିତ୍ୟଗତଂ ତେଜୋ ଜଗଦ୍ ଭାସୟତେଽଖିଳମ୍
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକମ୍ ॥ ଗୀତା ୧୫-୧୨ ॥

ଅର୍ଥାତ୍ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିରେ ଯେଉଁ ତେଜ ଆଲୋକରୂପରେ ପ୍ରାପ୍ତି ପାଏ, ତାହା ସେହି ପରମାତ୍ମାଙ୍କର କେବଳ ତେଜ ବା ମହିମା । ତେଜଶ୍ଚାସ୍ମି ବିଭାବସୌ ॥ ଗୀତା ୭-୯ ॥ ଅର୍ଥାତ୍ ଅଗ୍ନିରେ ଉତ୍ତାପରୂପରେ ଯେଉଁ ଶକ୍ତି ପ୍ରକାଶ ପାଏ, ସେ ମଧ୍ୟ ସେହି ପରମାତ୍ମାଙ୍କର ତେଜ । ଗାମାବିଶ୍ୟ ଚ ଭୂତାନି ଧାରୟାମ୍ୟହମୋଜସା ॥ ଗୀତା ୧୫-୧୩ ॥ ଅର୍ଥାତ୍ ପୃଥିବୀରେ ମାଧ୍ୟାକର୍ଷଣରୂପରେ ଯେଉଁ ଶକ୍ତି ଅଭିବ୍ୟକ୍ତ ହୁଏ, ତାହା ମଧ୍ୟ ସେହି ପରମାତ୍ମାଙ୍କର । ସେହି ଶକ୍ତି 'ଜୀବନଂ ସର୍ବଭୂତେଷୁ' ॥ ଗୀତା ୭-୯ ॥ ଜୀବମାନଙ୍କର ପ୍ରାଣଶକ୍ତି । ଅହଂ ବୈଶ୍ୱାନରେ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତ ॥ ଗୀତା ୧୫-୧୪ ॥ ଅର୍ଥାତ୍ ସେହି ପରମାତ୍ମା ବୈଶ୍ୱାନରରୂପରେ ପ୍ରାଣୀମାନଙ୍କ ଦେହରେ ଅବସ୍ଥିତ । କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ । ଗୀତା ୧୩-୨ ॥ ସମସ୍ତ କ୍ଷେତ୍ରରେ ସେହି, କ୍ଷେତ୍ରଜ୍ଞ-ରୂପରେ ବିରାଜିତ ।

ଉପର୍ଯ୍ୟୁକ୍ତ କ୍ଷେତ୍ର କ୍ଷେତ୍ରଜ୍ଞ, ଅନ୍ନ ଅନ୍ନାଦ, ପ୍ରକୃତି ଓ ପୁରୁଷ, ଏ ସମସ୍ତ ଶାସକ ଏକ ଅଦ୍ୱିତୀୟ ପରମାତ୍ମା ଅଟନ୍ତି । ଉପନିଷଦ୍‌ରେ ଅଛି—

"କ୍ଷରଂ ପ୍ରଧାନଂ ଅମୃତାକ୍ଷରଂ ହରଃ
କ୍ଷରାତ୍ମାନୌ ଈଶତେ ଦେବ ଏକଃ" । ଶ୍ୱେତା ଶ୍ୱ: ଉ: ୧-୧୦ ।

ଅର୍ଥାତ୍ ଏକ ଅଦ୍ୱିତୀୟ ଦେବ (ପରମାତ୍ମା) କ୍ଷର ଓ ଅକ୍ଷର (ପ୍ରଧାନ ଓ ଜୀବ) ଉଭୟଙ୍କୁ ଶାସନ କରନ୍ତି ।

ଆତ୍ମେ ଏକାଂଶଦ୍ୱାରା ଜଗତ୍‌କୁ ବ୍ୟାପି କରି ଅବସ୍ଥିତ ରହିଅଛୁ । ସେହି ପରଂବ୍ରହ୍ମଙ୍କ ଅଂଶରୁ ସର୍ବେ ସମ୍ଭୂତ—

ଏଷ ବ୍ରହ୍ମୈଷ ଇନ୍ଦ୍ର ଏଷ ପ୍ରଜାପତିରେତେ ସର୍ବେ ଦେବା ଇମାନି ଚ ପଞ୍ଚମହାଭୂତାନି ପୃଥିବୀ ବାୟୁରାକାଶ ଆପୋ ଜ୍ୟୋତୀଂଷୀତ୍ୟେତାନୀ-ମାନି ଚ କ୍ଷୁଦ୍ରମିଶ୍ରାଣୀବ, ବୀଜାନୀତରାଣି ଚେତରାଣି ଚାଣ୍ଡଜାନି ଚ ଜାରଜାନି ଚ ସ୍ୱେଦଜାନି ଚୋଦ୍ଭିଜ୍ଜାନି-ଚାଶ୍ୱା ଗାବଃ ପୁରୁଷା ହସ୍ତିନୋ ଯତ୍ କିଞ୍ଚେଦଂ ପ୍ରାଣୀ ଜଙ୍ଗମଂ ଚ ପତତ୍ରି ଚ ଯଚ୍ଚ ସ୍ଥାବରଂ ସର୍ବଂ ତତ୍ପ୍ରଜ୍ଞାନେତ୍ରଂ ପ୍ରଜ୍ଞାନେ ପ୍ରତିଷ୍ଠିତଂ ପ୍ରଜ୍ଞାନେତ୍ରୋ ଲୋକଃ ପ୍ରଜ୍ଞା ପ୍ରତିଷ୍ଠା ପ୍ରଜ୍ଞାନଂ ବ୍ରହ୍ମ ।

ଐତରେୟ: ଉ: ୫ । ୨ ।

ଅର୍ଥାତ୍ ଏହି ବ୍ରହ୍ମା, ଇନ୍ଦ୍ର, ପ୍ରଜାପତି ଆଦି ସମସ୍ତ ଦେବତା, ପୃଥିବୀ, ବାୟୁ, ଆକାଶ, ଅପ ଓ ଜ୍ୟୋତି-ରୂପକ ପଞ୍ଚ ମହାଭୂତ, ଅଣ୍ଡଜ, ଜରାୟୁଜ, ସ୍ୱେଦଜ, ଉଦ୍ଭିଜ୍ଜ ଆଦି କ୍ଷୁଦ୍ରମିଶ୍ର ଜୀବ, ଅଶ୍ୱ, ଗୋ, ପୁରୁଷ, ହସ୍ତୀ ଆଦି ପ୍ରାଣୀସମୂହ; ସମସ୍ତ ହିଁ ପ୍ରଜ୍ଞାନେତ୍ର, ପ୍ରଜ୍ଞାନରେ ପ୍ରତିଷ୍ଠିତ; ପ୍ରଜ୍ଞାନ ହିଁ ଲୋକର ନେତ୍ର, ପ୍ରଜ୍ଞା-ପ୍ରତିଷ୍ଠା; ପ୍ରଜ୍ଞାନ ହିଁ ବ୍ରହ୍ମ ।

ଗୀତା ମଧ୍ୟ କହେ—

ଏତଦ୍‌ଯୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ।<br>
ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥା ॥<br>
ମତ୍ତଃ ପରତରଂ ନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ ।<br>
ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ ॥ ଗୀତା ୭-୬।୭ ।

ଅର୍ଥାତ୍ ସମସ୍ତ ଜଗତ୍ ଆତ୍ମଠାରୁ (ପରମାତ୍ମାଙ୍କଠାରୁ) ଉତ୍ପନ୍ନ ଓ ଆତ୍ମ (ପରମାତ୍ମା) ଠାରେ ଲୀନ ହୁଏ । ଆତ୍ମେ (ପରମାତ୍ମା ହିଁ) ଚରମତତ୍ତ୍ୱ; ତାହାଙ୍କ ପରେ ଅନ୍ୟ କିଛି ନାହିଁ । ଯେପରି ସୂତାରେ ମଣିଗଣ ଗ୍ରଥିତ ଥାଏ, ସେହିପରି ଆତ୍ମ (ପରମାତ୍ମା)ଠାରେ ଏହି ବିଶ୍ୱ ଗ୍ରଥିତ ହୋଇ ରହିଅଛି ।

## ଠ—ପରମାତ୍ମା କ୍ଷରାକ୍ଷରରୁ ଅତୀତ—

ଗୀତାରେ ଉକ୍ତ ଅଛି—ଅପରା ଓ ପରାପ୍ରକୃତିକୁ କ୍ଷରପୁରୁଷ ଓ ଅକ୍ଷରପୁରୁଷ ବୋଲି ଉଲ୍ଲେଖ କରି କ୍ଷରପୁରୁଷ ପ୍ରଧାନ ଏବଂ ଅକ୍ଷର ପୁରୁଷ କ୍ଷେତ୍ରଜ୍ଞ ବୋଲି କୁହାଯାଇଛି । ପରମାତ୍ମା କ୍ଷରରୁ ଅତୀତ ଓ ଅକ୍ଷରରୁ ଉତ୍ତମ ପୁରୁଷ ବୋଲି ବର୍ଣ୍ଣନା କରାଯାଇଛି—

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥
ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ।
ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥

ଗୀତା: ୧୫ । ୧୬ । ୧୮ ।

ଅର୍ଥାତ୍ କ୍ଷର ଓ ଅକ୍ଷରନାମକ ଦୁଇଟି ପୁରୁଷ ଇହ ଲୋକରେ ପ୍ରସିଦ୍ଧ । ସେଥିରେ ସମସ୍ତ ଭୂତ କ୍ଷରପୁରୁଷ ଏବଂ କୂଟସ୍ଥ ଅକ୍ଷରପୁରୁଷ । ଏତଦ୍‌ଭିନ୍ନ ଅନ୍ୟ ଏକ ଉତ୍ତମ ପୁରୁଷ *

* "ପରମାତ୍ମାଙ୍କର ପୁରୁଷ ନାମକରଣ—ଆତ୍ମୈବେଦମଗ୍ର ଆସୀତ୍ ପୁରୁଷବିଧଃ × × ସତ୍ ପୂର୍ବୋଽସ୍ମାତ୍ ସର୍ବସ୍ମାତ୍ ସର୍ବାନ୍ ପାପ୍ମନ ଔଷତ୍ତସ୍ମାତ୍ ପୁରୁଷଃ" । ବୃ: ଆ: ୧-୪-୧ । ପ୍ରଥମେ ଆତ୍ମା ପୁରୁଷରୂପରେ ଥିଲେ । ତାଙ୍କୁ ପୁରୁଷ ବୋଲି କହିବାର ଅର୍ଥ ଏହି ଯେ, ସେ ପ୍ରଥମେ ଆବିର୍ଭୂତ ହୋଇ ଅନ୍ୟ ସମସ୍ତଙ୍କର ପାପ ଦହନ କରିଥିଲେ । ଏହି ପୁରୁଷ ସାଂଖ୍ୟଦର୍ଶନୋକ୍ତ ପ୍ରଧାନ ପୁରୁଷ ନୁହନ୍ତି । ଅଦ୍ୱିତୀୟ ପରମାତ୍ମାଙ୍କୁ ଉତ୍ତମ ପୁରୁଷ କୁହାଯାଏ ।

ଉପର୍ଯ୍ୟୁକ୍ତ ଶ୍ରୁତିର ଭାଷ୍ୟରେ ଶଙ୍କରାଚାର୍ଯ୍ୟ ଲେଖିଛନ୍ତି—"ପୁରୁଷବିଧଃ ପୁରୁଷପ୍ରକାରଃ ଶିରଃ ପାଣ୍ୟାଦିଲକ୍ଷଣୋ ବିରାଟ୍ ସ ଏବ ପ୍ରଥମଃ ସମ୍ଭୂତଃ । ସ ଚ ପ୍ରଜାପତିରତିକ୍ରାନ୍ତଜନ୍ମନି ସମ୍ୟକ୍ କର୍ମଜ୍ଞାନଭାବନାନୁଷ୍ଠାନୈଃ ସାଧକାବସ୍ଥାୟାଂ ଯଦ୍ ଯସ୍ମାତ୍ କର୍ମଜ୍ଞାନଭାବନାନୁଷ୍ଠାନୈଃ ପ୍ରଜାପତିତ୍ୱଂ ପ୍ରତିପିତ୍ସୂନାଂ ପୂର୍ବଃ ପ୍ରଥମଃ ସନ୍ ଅସ୍ମାତ୍ ପ୍ରଜାପତିତ୍ୱଂ ପ୍ରତିପିତ୍ସୁସମୁଦାୟାତ୍ ସର୍ବସ୍ମାତ୍ ଆଦୌ ଔଷତ୍ ଅଦହତ୍ । କିମ୍ ? ଆସଙ୍ଗାଜ୍ଞାନ—ଲକ୍ଷଣାନ୍ ସର୍ବାନ୍ ପାପ୍ମନଃ ପ୍ରଜାପତିତ୍ୱପ୍ରତିବନ୍ଧକକାରଣଭୂତାନ୍ ।"

ଅର୍ଥାତ୍ ସେହି ପରମାତ୍ମା ପୁରୁଷବିଧ ଥିଲେ । ଅର୍ଥାତ୍ ସେ ହସ୍ତପଦାଦିବିଶିଷ୍ଟ ଗୋଟିଏ ପୁରୁଷ ପରି ଥିଲେ । ଶିର-ହସ୍ତାଦିଯୁକ୍ତ ବିରାଟ୍ ପୁରୁଷ ସେହି କେବଳ ପ୍ରଥମେ ଉତ୍ପନ୍ନ ହେଲେ । ପୂର୍ବଜନ୍ମରେ ପ୍ରଜାପତିତ୍ୱ ଲାଭନିମନ୍ତେ ସାଧନ କରୁଥିବା ସମୟରେ କର୍ମଜ୍ଞାନାଦି ସାଧନାଦ୍ୱାରା ପ୍ରଜାପତି ହେବା ନିମନ୍ତେ ଚେଷ୍ଟା କରୁଥିବା ଅନ୍ୟ ସାଧକମାନଙ୍କୁ ଅତିକ୍ରମ କରି ସେ ପ୍ରଥମ ପ୍ରଜାପତି ହୋଇଥିଲେ ଓ ସର୍ବପ୍ରଥମେ ପ୍ରଜାପତିତ୍ୱର ପ୍ରତିବନ୍ଧକ—ଆସକ୍ତି-ଅଜ୍ଞାନପ୍ରଭୃତି ସମସ୍ତ ପାପ ଦହନ କରିଥିଲେ । ସେଥି ନିମନ୍ତେ ସେ ପୁରୁଷପଦବାଚ୍ୟ । ପୁର୍—ପ୍ରଥମେ । ଔଷ—ଦହନ । ଏହାର ତାତ୍ପର୍ଯ୍ୟ ଏହି ଯେ—ଅଦ୍ୱିତୀୟ ପରମାତ୍ମାଙ୍କ ସ୍ୱସ୍ୱରୂପିକ ମହିମାରୁ ବିରାଟ୍ ପୁରୁଷ ପ୍ରଥମେ ସମ୍ଭୂତ ହେବାରୁ ପରମାତ୍ମାଙ୍କର ଉତ୍ତମପୁରୁଷ ନାମ ହୋଇଅଛି । ଏହା ଲିଙ୍ଗାଦିଯୁକ୍ତ ପୁରୁଷ ପ୍ରକୃତିର ଆଖ୍ୟାରେ ବା ନାମରୂପାଦିରେ କଥିତ ନୁହେଁ ।

ମଧ୍ୟ ଅଛନ୍ତି, ସେ କି ପରମାତ୍ମା । ସେହି ଅବ୍ୟୟ ପରମାତ୍ମା ତିନିଲୋକରେ ପ୍ରବେଶ କରି ସମସ୍ତ ଧାରଣ କରିଛନ୍ତି । ସେହି ପରମାତ୍ମା କ୍ଷରରୁ ଅତୀତ ଏବଂ ଅକ୍ଷରରୁ ମଧ୍ୟ ଉତ୍ତମ । ଅତଏବ ସେ ଲୋକରେ ଓ ବେଦରେ ପୁରୁଷୋତ୍ତମ ବା ପରମାତ୍ମାନାମରେ ଖ୍ୟାତ । ପୁନଶ୍ଚ ଶ୍ୱେତାଶ୍ୱତର ଉପନିଷଦ୍‌ରେ ଉକ୍ତ ଅଛି—

**"ସଂଯୁକ୍ତମେତତ୍ କ୍ଷରମକ୍ଷରଂ ଚ ବ୍ୟକ୍ତାବ୍ୟକ୍ତଂ ଭରତେ ବିଶ୍ୱମୀଶ୍ୱରଃ ।" ୧।୮**
**"କ୍ଷରଂ ପ୍ରଧାନମ୍ ଅମୃତାକ୍ଷରଂ ହରଃ କ୍ଷରାତ୍ମାନୌ ଈଶତେ ଦେବ ଏକଃ" ୧।୧୦**

ଏହି ବ୍ୟକ୍ତ ଓ ଅବ୍ୟକ୍ତ, କ୍ଷର ଓ ଅକ୍ଷର, ପ୍ରକୃତି ଓ ପୁରୁଷ ପରସ୍ପର ନିତ୍ୟ ସମ୍ବନ୍ଧରେ ଜଡ଼ିତ । ପରମେଶ୍ୱର ଏହି ବିଶ୍ୱ ପାଳନ କରନ୍ତି । କ୍ଷର ପ୍ରଧାନ ( ପ୍ରକୃତି ); ଅକ୍ଷର ଅମୃତ (ପୁରୁଷ) ; ଏକ ଓ ଅଦ୍ୱିତୀୟ ପରମେଶ୍ୱର ଏହି ପ୍ରକୃତି ଓ ପୁରୁଷର ଅଧୀଶ୍ୱର ଅଟନ୍ତି ।

**୦—ଏକ ଅଦ୍ୱିତୀୟ ପରଂତତ୍ତ୍ୱପରମାତ୍ମାଙ୍କର ଶରଣରେ ଜୀବର ମୋକ୍ଷ । ପୁନଶ୍ଚ—**

**ଯସ୍ମାତ୍ ପରଂ ନାପରମସ୍ତି କିଞ୍ଚିତ୍ ଯସ୍ମାନ୍ନାଣୀୟୋ ନ ଜ୍ୟାୟୋଽସ୍ତି କଶ୍ଚିତ୍ ।**
**ବୃକ୍ଷ ଇବ ସ୍ତବ୍ଧୋ ଦିବି ତିଷ୍ଠତ୍ୟେକ ସ୍ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବମ୍ ।**

ଶ୍ୱେତାଶ୍ୱତରୋପନିଷଦ୍ : ୩ । ୯ ।

ଯେହେତୁରୁ ସେହି ପରମପୁରୁଷ ପରମାତ୍ମାଙ୍କଠାରୁ ଉତ୍କୃଷ୍ଟ ନିତ୍ୟ ପୁରୁଷ ଆଉ ଅନ୍ୟ କେହି ନାହାଁନ୍ତି । ସେହି ଜଗତର ଅତି ସୂକ୍ଷ୍ମ ଓ ସର୍ବପ୍ରଧାନ ଏବଂ ବୃକ୍ଷତୁଲ୍ୟ ନିଶ୍ଚଳ । ଅଥଚ ସ୍ୱୀୟ ମହିମାବଳରେ ସର୍ବତ୍ର ବ୍ୟାପ୍ତ ଅଛନ୍ତି । ସେ ପୂର୍ଣ୍ଣ ଓ ଅଦ୍ୱିତୀୟ; ଏହି ଅଖିଳ ଜଗତ୍‌ରେ କୌଣସି ସ୍ଥାନରେ ମଧ୍ୟ ତାଙ୍କର ଅଭାବ ନାହିଁ ; ସର୍ବତ୍ର ସେ ପୂର୍ଣ୍ଣରୂପରେ ଅବସ୍ଥିତ ।

**"ସ୍ୱେ ମହିମ୍ନି ତିଷ୍ଠତ୍ୟେକୋଽଦ୍ୱିତୀୟଃ ପରମାତ୍ମା"** ଶଙ୍କରଭାଷ୍ୟ ।

ଏ ସମ୍ବନ୍ଧରେ ବାଦରାୟଣ କହିଛନ୍ତି—

**ତଥାନ୍ୟପ୍ରତିଷେଧାତ୍ ।** ବେ: ସୂ: ୩ । ୨ । ୩୬ ।

ଶ୍ରୁତିରେ ଏହା ସ୍ପଷ୍ଟଭାବେ କୁହାଯାଇଛି ଯେ, ବ୍ରହ୍ମବ୍ୟତୀତ ଅନ୍ୟ କିଛି ନାହିଁ । ସୁତରାଂ **ବ୍ରହ୍ମ ଅପେକ୍ଷା ଶ୍ରେଷ୍ଠ ଅନ୍ୟ କିଛି ଥାଇପାରେ ନାହିଁ ।**

"ବ୍ରହ୍ମ ଏବ ଇଦଂ ସର୍ବଂ ନେହ ନାନାସ୍ତି କଞ୍ଚନ ॥"

ଅର୍ଥାତ୍ ଏହି ପରିଦୃଶ୍ୟମାନ ସମସ୍ତ ହିଁ ବ୍ରହ୍ମ, ତଦ୍‌ଭିନ୍ନ "ନାନାବସ୍ତୁ" କିଛି ନାହିଁ ।

"ଯସ୍ମାତ୍‌ପରଂ ନାପରମସ୍ତି କଞ୍ଚିତ୍ ॥"

ଅର୍ଥାତ୍ ଯାହାଙ୍କ ଅପେକ୍ଷା ଉତ୍କୃଷ୍ଟ ଅନ୍ୟ କୌଣସି ବସ୍ତୁ ନାହିଁ ।

"ଅପୂର୍ବମ୍ ଅନପରମ୍ ଅନନ୍ତପରମ୍ ଅବାହ୍ୟମ୍ ॥"

ଅର୍ଥାତ୍ ବ୍ରହ୍ମଙ୍କର କୌଣସି କାରଣ ନାହିଁ ; ବ୍ରହ୍ମ ଭିନ୍ନ ଅନ୍ୟ ବସ୍ତୁ ନାହିଁ; ବ୍ରହ୍ମଙ୍କର ଭିତରେ ବା ବାହାରେ ଅନ୍ୟ ବସ୍ତୁ ନାହିଁ ।

**ଅନେନ ସର୍ବଗତତ୍ୱ ମାୟାମଶବ୍ଦାଦଭ୍ୟଃ ।**　　ବେ: ସୂ: ୩।୨।୩୭ ।

ଅନେକ (ବ୍ରହ୍ମ ଭିନ୍ନ ଅନ୍ୟ ବସ୍ତୁର ପ୍ରତିଷେଧଦ୍ୱାରା) ସର୍ବଗତତ୍ୱମ୍ (ବ୍ରହ୍ମଙ୍କର ସର୍ବଗତତ୍ୱ ସିଦ୍ଧ ହୁଏ) ଆୟାମଶବ୍ଦାଦଭ୍ୟଃ (ବ୍ୟାପ୍ତିବାଚକ ଶବ୍ଦପ୍ରଭୃତି ହେତୁରୁ) । ଅର୍ଥାତ୍ ଯେଉଁ ହେତୁରୁ ବ୍ରହ୍ମ ବ୍ୟତିରିକ୍ତ ଅନ୍ୟ କୌଣସି ବସ୍ତୁ ନାହିଁ, ସକଳ ବସ୍ତୁ ବ୍ରହ୍ମଙ୍କର ଅନ୍ତର୍ଗତ, ସେଥିରୁ ସ୍ପଷ୍ଟ ହୁଏ—ବ୍ରହ୍ମ ସର୍ବଗତ । ବ୍ରହ୍ମଙ୍କର ସର୍ବତ୍ର ଅବସ୍ଥାନ ବ୍ୟାପିତ୍ୱବାଚକ ଶବ୍ଦଦ୍ୱାରା ପ୍ରତିପନ୍ନ ହୁଏ । "ଆକାଶବତ୍ ସର୍ବଗତଶ୍ଚ ନିତ୍ୟଃ"—ଅର୍ଥାତ୍ ବ୍ରହ୍ମ ଆକାଶତୁଲ୍ୟ ସର୍ବଗତ ଓ ନିତ୍ୟ । "ନିତ୍ୟଃ ସର୍ବଗତଃ ସ୍ଥାଣୁଃ"—ଅର୍ଥାତ୍ ନିତ୍ୟ, ସର୍ବଗତ ଏବଂ ସ୍ଥିର ।

ପୁନଶ୍ଚ—

**ପଞ୍ଚରୂପପରିତ୍ୟାଗାଦର୍ଥରୂପପ୍ରହାଣତଃ ।**
**ଅଧିଷ୍ଠାନଂ ପରଂ ତତ୍ତ୍ୱମେକଂ ସଚ୍ଛିଷ୍ୟତେ ମହତ୍ ॥**

ମହାବାକ୍ୟ ରତ୍ନାବଳୀ ପ୍ର ୧୮।୩୧।୩୨ ।

ଅର୍ଥାତ୍ ପରଂବ୍ରହ୍ମ ଭିନ୍ନ କୌଣସି ପଦାର୍ଥ ନାହିଁ । ଏହି ଜ୍ଞାନଦ୍ୱାରା ଗୁଣମୟ ରୂପ (ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଈଶ୍ୱର, ସଦାଶିବ) ପରିତ୍ୟାଗ କରି ଏବଂ ଭୂତଭୌତିକରୂପ ଅର୍ଥ ସମସ୍ତ ତ୍ୟାଗ କରି ସକଳ ପ୍ରପଞ୍ଚର ଅଧିଷ୍ଠାନ ମହତ୍ ପରଂତତ୍ତ୍ୱସ୍ୱରୂପ ଏବଂ ସତ୍ ସ୍ୱରୂପ ବ୍ରହ୍ମ ହିଁ ଅବଶିଷ୍ଟ ରୂପରେ ରହନ୍ତି । ଏହି ଏକତତ୍ତ୍ୱ ବିଷୟରେ ଶଙ୍କରାଚାର୍ଯ୍ୟ କହିଛନ୍ତି—

ଏହି ବିଶୁଦ୍ଧ ଅଦ୍ୱିତୀୟ ତତ୍ତ୍ୱ ଜ୍ଞାତ ନ ହେବା ପର୍ଯ୍ୟନ୍ତ କୋଟିକଳ୍ପରେ ମଧ୍ୟ ଜୀବର ସଦ୍‌ଗତି ଲାଭ ହୁଏ ନାହିଁ ।

ଚିତ୍ତପ୍ରସାଦେନ ବିନାଽବଗନ୍ତୁଂ ବନ୍ଧଂ ନ ଶକ୍ନୋତି ପରମାତ୍ମତତ୍ତ୍ୱମ୍ ।
ତତ୍ତ୍ୱି ବିଗତ୍ୟା ତୁ ବିନା ବିମୁକ୍ତିର୍ନସିଦ୍ଧ୍ୟତି ବ୍ରହ୍ମ ସହସ୍ରକୋଟିଷୁ ॥

ସର୍ବବେଦାନ୍ତସିଦ୍ଧାନ୍ତ ସାରସଂଗ୍ରହ—୩୭୪ ।

ଅର୍ଥାତ୍ ଚିତ୍ତପ୍ରସନ୍ନତା ବ୍ୟତୀତ (କେହି) ବନ୍ଧନ ବା ପରମାତ୍ମାଙ୍କର ସ୍ୱରୂପ ଅବଗତ ହୋଇ ପାରନ୍ତି ନାହିଁ । ତତ୍ତ୍ୱଜ୍ଞାନ ବ୍ୟତୀତ ସହସ୍ର କୋଟିବାର ବ୍ରହ୍ମା ହେଲେ ମଧ୍ୟ ମୁକ୍ତିଲାଭ କରିବାକୁ ସମର୍ଥ ହୁଅନ୍ତି ନାହିଁ । ଏ ସମ୍ବନ୍ଧରେ ଉପନିଷଦ୍ ମଧ୍ୟ କହେ—

ଯଥୈବ ବିମ୍ବଂ ମୃଦୟୋପଲିପ୍ତଂ
ତେଜୋମୟଂ ଭ୍ରାଜତେ ତତ୍ ସୁଧାତମ୍ ।
ତଦ୍ୱାତ୍ମତତ୍ତ୍ୱଂ ପ୍ରସମୀକ୍ଷ୍ୟ ଦେହୀ
ଏକଃ କୃତାର୍ଥୋ ଭବତେ ବୀତଶୋକଃ ॥
ଯଦାତ୍ମତତ୍ତ୍ୱେନ ତୁ ବ୍ରହ୍ମତତ୍ତ୍ୱଂ
ଦୀପୋପମେନେହ ଯୁକ୍ତଃ ପ୍ରପଶ୍ୟେତ୍ ।
ଅଜଂ ଧ୍ରୁବଂ ସର୍ବତତ୍ତ୍ୱୈର୍ବିଶୁଦ୍ଧଂ
ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାଶୈଃ ॥

ଶ୍ୱେତାଶ୍ୱତର ଉ : ୨।୧୪।୧୫ ।

ଯେପରି ସୁବର୍ଣ୍ଣରଜତ ଆଦି ସମୁଜ୍ଜ୍ୱଳ ପଦାର୍ଥ ସକଳ ମୃତ୍ତିକାଦିଦ୍ୱାରା ବିଲିପ୍ତ ହେଲେ ସେମାନଙ୍କର ଉଜ୍ଜ୍ୱଳ ଜ୍ୟୋତି ପ୍ରକାଶ ପାଏ ନାହିଁ; କିନ୍ତୁ ଜଳରେ ଧୌତ ଓ ଅଗ୍ନିରେ ତାପିତ ହେଲେ ସେମାନଙ୍କର ସ୍ୱାଭାବିକ ତେଜ ପ୍ରକାଶିତ ହୁଏ ; ସେହିପରି ମନୁଷ୍ୟମାନେ (ବ୍ରହ୍ମନିଷ୍ଠ ଗୁରୁଙ୍କ ଅନୁସରଣରେ) ବ୍ରହ୍ମତତ୍ତ୍ୱ ଅନୁସନ୍ଧାନଦ୍ୱାରା ଆତ୍ମାକୁ ସମୁଜ୍ଜ୍ୱଳ କରି ମନୁଷ୍ୟଜନ୍ମର ସଫଳତା ସମ୍ପାଦନପୂର୍ବକ ନିଖିଳ ଶୋକସନ୍ତାପରୁ ବିମୁକ୍ତ ହୋଇ ମୋକ୍ଷପଦବୀରେ ପଦାର୍ପଣ କରିବାକୁ କ୍ଷମ ହୁଅନ୍ତି । ଯେଉଁ ସମୟରେ ସ୍ୱୀୟ ଆତ୍ମା ପ୍ରକାଶିତ ହୋଇ ବ୍ରହ୍ମତତ୍ତ୍ୱ ଦର୍ଶନ କରେ, ସେହି ସମୟରେ ଜୀବ ଅଜ୍ଞାନଜନିତ ସଂସାରମାୟାବିହୀନ ସନାତନ ପରାତ୍ପର ଅଦ୍ୱିତୀୟ ପରଂବ୍ରହ୍ମଙ୍କୁ ଜାଣିପାରି ଭବବନ୍ଧନରୁ ବିମୁକ୍ତି ଲାଭ କରେ ।”

ଏହି ଅନୁପାଦରେ ବେଦବେଦାନ୍ତ-ନ୍ୟାୟ-ସାଂଖ୍ୟ-ବୈଶେଷିକ ଓ ବୈଜ୍ଞାନିକପ୍ରଭୃତି ଦର୍ଶନ ଆଦିର ସମସ୍ତ ତତ୍ତ୍ୱବିଷୟ ଆଲୋଚନା କରିବାଦ୍ୱାରା ଏହା ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ସେହି ସମସ୍ତ ତତ୍ତ୍ୱରୁ ପରମାତ୍ମା ପରଂବ୍ରହ୍ମ ଯେ ସ୍ୱତନ୍ତ୍ର ଏକ ଅଦ୍ୱିତୀୟ ବିଶୁଦ୍ଧତତ୍ତ୍ୱ ଓ ସେହି ବିଶୁଦ୍ଧତତ୍ତ୍ୱ ଅଲେଖପରଂବ୍ରହ୍ମଙ୍କ ମହିମାରୁ ବିଶ୍ୱତତ୍ତ୍ୱର ଆବିର୍ଭାବ ଓ ତିରୋଭାବ ସଂଘଟିତ ହେଉଅଛି ଏବଂ ତାହାଙ୍କ ବ୍ୟତୀତ ଦ୍ୱିତୀୟ ପାରମାର୍ଥିକ ତତ୍ତ୍ୱ ନାହିଁ— ଏ କଥା ଆପ୍ତପ୍ରମାଣଦ୍ୱାରା ଯୁକ୍ତିଯୁକ୍ତ ଭାବରେ ପ୍ରଦର୍ଶିତ ହେଲା ।

ଏହି ବିଶୁଦ୍ଧ ତତ୍ତ୍ୱ ଅଲେଖପରଂବ୍ରହ୍ମଙ୍କୁ ଭକ୍ତିଯୁକ୍ତ ବିବେକଜ୍ଞାନଦ୍ୱାରା ଅବଗତ ହୋଇ ପାରିଲେ ଐହିକ ସଂସାର ବନ୍ଧନରୁ ମୁକ୍ତିପାଇବାର ଦ୍ୱାର ଉନ୍ମୁକ୍ତ ହୁଏ । ଏହା ହିଁ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ସ୍ଥିରତର ସିଦ୍ଧାନ୍ତ ।

ପ୍ରଥମପାଦସ୍ୟ ତୃତୀୟାନୁପାଦ ସମ୍ପୂର୍ଣ୍ଣ



ସର୍ବବେଦବେଦାନ୍ତସାରତତ୍ତ୍ୱଶିରୋମଣିଃ

# ଅଲେଖ ପରଂବ୍ରହ୍ମ ଦର୍ଶନ

## ପ୍ରଥମ ପାଦସ୍ୟ ଚତୁର୍ଥାନୁପାଦଃ

## ସଗୁଣ-ନିର୍ଗୁଣତତ୍ତ୍ୱ ବିଶ୍ଳେଷଣ ଯୋଗ

ପୂର୍ବ ଅନୁପାଦମାନଙ୍କରେ ସମ୍ୟକ୍ ବିଚାରଦ୍ୱାରା ସିଦ୍ଧାନ୍ତ ପ୍ରତିପାଦିତ ହୋଇଅଛି ଯେ, ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମ କେବଳ ବିଶୁଦ୍ଧ ତତ୍ତ୍ୱ ଏବଂ ସେହି ତତ୍ତ୍ୱଜ୍ଞାନ କେବଳ ମୋକ୍ଷପ୍ରାପ୍ତିର ଉପାୟ । ବର୍ତ୍ତମାନ ସେହି ଅଦ୍ୱିତୀୟ ପରଂବ୍ରହ୍ମ ସଗୁଣ ବା ନିର୍ଗୁଣ ଏପରି ଅନ୍ୟାନ୍ୟ ମତବାଦୀଙ୍କ ବିଭିନ୍ନ ବିବଦମାନ ମତ ନିରାକରଣ ନିମନ୍ତେ ଏହି ଅନୁପାଦ ଆରମ୍ଭ କରାଯାଉଛି ।

୦—ବ୍ରହ୍ମ ଦ୍ୱିବିଧ

ଉପନିଷଦ୍‌ମୂଳକ ବେଦାନ୍ତଦର୍ଶନ ଅନୁସାରେ ବ୍ରହ୍ମର ଦ୍ୱିବିଧତ୍ତ୍ୱ କଳ୍ପନା କରାଯାଇଛି—

"ଏତଦ୍‌ବୈ ସତ୍ୟକାମ । ପରଞ୍ଚାପରଞ୍ଚ ବ୍ରହ୍ମ" ॥ ପ୍ରଶ୍ନ : ଉ: ୫।୨ ।

ଅର୍ଥାତ୍—ହେ ସତ୍ୟକାମ ! ଏହି ବ୍ରହ୍ମ ପର ଓ ଅପର ।

"ଦ୍ୱେ ବାବ ବ୍ରହ୍ମଣି ଅଭିଧ୍ୟେୟେ ଶବ୍ଦଶ୍ଚାଶବ୍ଦଶ୍ଚ ଶବ୍ଦବ୍ରହ୍ମ ପରଞ୍ଚ ଯତ୍ ॥ ମୈତ୍ରୀ ଉ : ୬।୨୨ ।

ଅର୍ଥାତ୍—ବ୍ରହ୍ମର ଦ୍ୱିବିଧ ଆକାର—ଶବ୍ଦ ଓ ଅଶବ୍ଦ ଏବଂ ଏହି ଦୁଇପ୍ରକାର ବ୍ରହ୍ମ ଉପାସ୍ୟ । ଅପର ନାମ ଶବ୍ଦବ୍ରହ୍ମ ଓ ପରଂବ୍ରହ୍ମ । ପୁନଶ୍ଚ—

"ଦ୍ୱେ ବାବ ବ୍ରହ୍ମଣୋ ରୂପେ ମୂର୍ତ୍ତଂ ଚୈବା ମୂର୍ତ୍ତଂ ଚ,
ମର୍ତ୍ତ୍ୟଂ ଚାମୃତଂ ଚ ସ୍ଥିତଂ ଚ ଯଚ୍ଚ ସଚ୍ଚ ତ୍ୟଚ୍ଚ ॥"

ବୃହ: ଉ: ୨।୩।୧ ।

ଅର୍ଥାତ୍ ବ୍ରହ୍ମ ଦ୍ୱିବିଧ—ମୂର୍ତ୍ତ ଓ ଅମୂର୍ତ୍ତ, ମର୍ତ୍ତ୍ୟ ଓ ଅମୃତ, ସ୍ଥିର ଓ ଅସ୍ଥିର, ସତ୍ ଓ ତ୍ୟତ୍ ।

"ଦ୍ୱେ ବାବ ଖଲେ୍ୱତେ ବ୍ରହ୍ମଜ୍ୟୋତଷୋ ରୂପକେ" ॥

ମୈତ୍ରାୟଣୀ ଉ: ୬।୩୬ ।

ଅର୍ଥାତ୍ ବ୍ରହ୍ମ ଜ୍ୟୋତିର ଦ୍ୱିବିଧରୂପ । ଏହି ନିୟମାନୁସାରେ ପୁରାଣାଦିରେ ମଧ୍ୟ ସଗୁଣ ଓ ନିର୍ଗୁଣରୂପକ ବ୍ରହ୍ମ ପ୍ରକଟିତ ହୋଇଅଛି । "ସଗୁଣୋ ନିର୍ଗୁଣୋ ବିଷ୍ଣୁଃ"—ବିଷ୍ଣୁ ସଗୁଣ ଓ ନିର୍ଗୁଣ ମଧ୍ୟ ।

"ଲୀଳୟା ବାପି ଯୁଞ୍ଜେରନ୍ ନିର୍ଗୁଣସ୍ୟ ଗୁଣାଃ କ୍ରିୟାଃ" ।

ଭାଗବତ— ୩-୭-୨ ।

ଅର୍ଥାତ୍ ନିର୍ଗୁଣ ବ୍ରହ୍ମ ଲୀଳାବଶତଃ ସଗୁଣ ଓ କ୍ରିୟାଯୁକ୍ତ ହୁଅନ୍ତି ।

"ସର୍ବଂ ତ୍ୱମେବ ସଗୁଣୋ ବିଗୁଣଶ୍ଚ ଭୂମନ୍" ।

ଭାଗବତ—୭-୯-୪୮ ।

ଅର୍ଥାତ୍ ହେ ସର୍ବବ୍ୟାପିନ୍ । ତୁମେ ସଗୁଣ ଓ ନିର୍ଗୁଣ, ତୁମେ ସମସ୍ତ ପଦାର୍ଥ । ଭାଗବତର ଅନ୍ୟ ସ୍ଥାନରେ ମଧ୍ୟ ଏ ସମ୍ବନ୍ଧରେ ଏହିପରି କଥିତ ଅଛି ।

ବଦନ୍ତି ତତ୍ ତତ୍ତ୍ୱବିଦସ୍ତତ୍ତ୍ୱଂ ଯଦ୍‌ଜ୍ଞାନମଦ୍ୱୟମ୍

ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ । ଭାଗ: ୧।୨।୧ ।

ସେହି ଅଦ୍ୱିତୀୟ ତତ୍ ବସ୍ତୁକୁ ତତ୍ତ୍ୱଜ୍ଞାନୀମାନେ ତତ୍ତ୍ୱାଖ୍ୟା ପ୍ରଦାନ କରନ୍ତି । କିନ୍ତୁ ସେହି କେବଳ ପରମାତ୍ମା ଓ ସେହି କେବଳ ଭଗବାନ୍ (ସଗୁଣ ବ୍ରହ୍ମ ବା ମହେଶ୍ୱର) । ଏହି ସମ୍ବନ୍ଧରେ ବିଷ୍ଣୁପୁରାଣରେ କଥିତ ହୋଇଛି—

ଯଦକ୍ଷରଂ ବ୍ରହ୍ମ ଯ ଈଶ୍ୱରଃ ପୁମାନ୍ ଗୁଣୋର୍ମିସୃଷ୍ଟିସ୍ଥିତିକାଳସଂଲୟଃ ।

୧ । ୧ । ୨ ।

ଅର୍ଥାତ୍—ଯେ ପ୍ରକୃତିର କ୍ଷୋଭଜନିତ ସୃଷ୍ଟି, ସ୍ଥିତି, ପ୍ରଳୟର ହେତୁଭୂତ ପୁରୁଷ-ଈଶ୍ୱର, ସେହି କେବଳ ସତ୍ ଅକ୍ଷର ବ୍ରହ୍ମ । ଏହିପରି ପୁରାଣାଦିରେ ସଗୁଣ-ନିର୍ଗୁଣଭାବ କଥିତ ଅଛି । ଉପନିଷଦ୍ ମଧ୍ୟ "ତତ୍" ଶବ୍ଦଦ୍ୱାରା ଏହି ନିର୍ବିଶେଷ ବ୍ରହ୍ମରୂପ ନିର୍ଗୁଣବ୍ରହ୍ମଙ୍କର ନିର୍ଦ୍ଦେଶ କରିଛି ଏବଂ ସବିଶେଷ ବ୍ରହ୍ମ ବା ସଗୁଣ ବ୍ରହ୍ମଙ୍କୁ "ସଃ" ଶବ୍ଦଦ୍ୱାରା ନିର୍ଦ୍ଦିଷ୍ଟ କରାଯାଇଛି । ଉପନିଷଦ୍‌ରେ ଏହି ସବିଶେଷ ଓ ନିର୍ବିଶେଷରେ ଭେଦ ନିର୍ଦ୍ଦେଶ କରିବାସକାଶେ ବ୍ୟାକରଣଗତ ଚିହ୍ନବିଶିଷ୍ଟ ବ୍ରହ୍ମ ଶବ୍ଦର ବ୍ୟବହାର କରାଯାଇଛି । ଯଥା—ନିର୍ବିଶେଷଭାବବିଶିଷ୍ଟ ବ୍ରହ୍ମ ଶବ୍ଦ କ୍ଲୀବଲିଙ୍ଗ ଓ ସବିଶେଷଭାବବିଶିଷ୍ଟ ଶବ୍ଦ ପୁଂଲିଙ୍ଗ ରୂପରେ ନିର୍ଦ୍ଦିଷ୍ଟ ହୋଇଛି ।

ନିର୍ବିଶେଷ ବ୍ରହ୍ମର ବିଶେଷଣ—

**ଅସ୍ଥୂଳଂ, ଅନଣୁ, ଅହ୍ରସ୍ୱଂ—ଅଦୀର୍ଘମ୍—ଇତ୍ୟାଦି ।**

କିନ୍ତୁ ସବିଶେଷ ବ୍ରହ୍ମବିଷୟରେ ସର୍ବକର୍ମା-ସର୍ବକାମଃ-ସର୍ବଗନ୍ଧଃ-ସର୍ବରସଃ-ଇତ୍ୟାଦି ପୁଂଲିଙ୍ଗପ୍ରୟୋଗ ଦେଖାଯାଏ ।

କିନ୍ତୁ ଉପନିଷଦ୍‌ରେ ଏହି ଲିଙ୍ଗଭେଦର ବ୍ୟତିକ୍ରମ ମଧ୍ୟ ଦେଖାଯାଏ । ପର ଅପର ବ୍ରହ୍ମ ଏକ ବସ୍ତୁ—ଏହା ନିର୍ଗୁଣ—ଉଭୟ ବ୍ରହ୍ମବିଷୟରେ ମଧ୍ୟ କୁହାଯାଇଛି । ଏଥିରୁ ପ୍ରତିପନ୍ନ ହୁଏ ଯେ, ବସ୍ତୁସ୍ଥିତ୍ୟା ଉଭୟ ବିଷୟରେ କୌଣସି ପ୍ରକାର ଭେଦ ନାହିଁ । ଅତଏବ ଉପନିଷଦ୍‌ର କୌଣସି କୌଣସି ସ୍ଥଳରେ ଏକ ମନ୍ତ୍ରରେ ପୁଂଲିଙ୍ଗ ଓ କ୍ଳୀବଲିଙ୍ଗ—ଉଭୟ ବାଚକ ବ୍ରହ୍ମଶବ୍ଦର ଉଲ୍ଲେଖଥିବା ଦେଖାଯାଏ ।

**ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।**
**କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂର୍ଯାଥାତଥ୍ୟତୋଽର୍ଥାନ୍**
**ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ।** ଈଶ ଉ: ୮ ।

ପରମାତ୍ମା ଶୁଦ୍ଧ ଓ ଅକ୍ଷତ—କାରଣ ସେ ସୂକ୍ଷ୍ମ ଓ ସ୍ଥୂଳ-ଶରୀରଶୂନ୍ୟ, ବିଶୁଦ୍ଧ ଧର୍ମାଧର୍ମ ବର୍ଜିତ (ଏହା ନିର୍ବିଶେଷ ଲକ୍ଷଣ, ଅତଏବ କ୍ଳୀବଲିଙ୍ଗ) । ସେ ସର୍ବଦର୍ଶୀ, ସର୍ବଜ୍ଞ ସର୍ବୋପରି ବର୍ତ୍ତମାନ ଓ ସ୍ୱୟଂଭୂ । ସେ ସମସ୍ତ ପଦାର୍ଥ ବ୍ୟାପିକରି ରହିଅଛନ୍ତି ଏବଂ ସମ୍ବତ୍ସରାଧିପତି ଶାଶ୍ୱତ—ପ୍ରଜାପତିଗଣଙ୍କୁ ଯଥୋପଯୁକ୍ତ ସକଳ କର୍ତ୍ତବ୍ୟ ବିଷୟ ପ୍ରଦାନ କରିଅଛନ୍ତି । (ଏହା ସବିଶେଷ ଲକ୍ଷଣ ଅତଏବ ପୁଂଲିଙ୍ଗ) । ସେହିପରି—

**ଯତ୍ତଦଦ୍ରେଶ୍ୟମଗ୍ରାହ୍ୟମଗୋତ୍ରମବର୍ଣ୍ଣମଚକ୍ଷୁଃ ଶ୍ରୋତ୍ରଂ**
**ତଦପାଣିପାଦଂ ନିତ୍ୟଂ ବିଭୁଂ ସର୍ବଗତଂ ସୁସୂକ୍ଷ୍ମଂ**
**ତଦବ୍ୟୟଂ—ଯଦ୍‌ଭୂତଯୋନିଂ ପରିପଶ୍ୟନ୍ତି ଧୀରାଃ ।** ମୁଣ୍ଡକ ଉ: ୧।୧।୬

ଅର୍ଥାତ୍—ସେହି ବ୍ରହ୍ମ ଅଦୃଶ୍ୟ ବା ଚକ୍ଷୁରାଦିଜ୍ଞାନେନ୍ଦ୍ରିୟର ଅଗୋଚର । ଅଗ୍ରାହ୍ୟ, ଅର୍ଥାତ୍ ବାକ୍ ପ୍ରଭୃତି କର୍ମେନ୍ଦ୍ରିୟର ଅପ୍ରାପ୍ୟ ଏବଂ ସେ ଗୋତ୍ରରହିତ, ଶୁକ୍ଳ-କୃଷ୍ଣାଦି ଗୁଣରହିତ ଏବଂ ଚକ୍ଷୁପ୍ରଭୃତି ଜ୍ଞାନେନ୍ଦ୍ରିୟରହିତ । ସେ ହସ୍ତ-ପଦପ୍ରଭୃତି କର୍ମେନ୍ଦ୍ରିୟରହିତ, ବିନାଶଶୂନ୍ୟ—ଏହା ସବୁ ନିର୍ବିଶେଷ ବ୍ରହ୍ମର ବିଶେଷଣ ଅତଏବ କ୍ଳୀବଲିଙ୍ଗର ନିର୍ଦ୍ଦେଶ ।

ଯେଉଁ ବ୍ରହ୍ମ ସକଳ ଜଗତ୍‌ସ୍ୱରୂପ ହୋଇ ସର୍ବତ୍ର ବ୍ୟାପ୍ତରୂପରେ ବିଦ୍ୟମାନ ଏବଂ ସେ ଅତି ସୂକ୍ଷ୍ମ ଓ ବ୍ୟୟରହିତ, ବିବେକୀ ବ୍ୟକ୍ତିମାନେ ସେହି ବ୍ରହ୍ମଙ୍କୁ ସକଳଭୂତର କାରଣ ବା

ହେତୁସ୍ୱରୂପ ବୋଲି ଜାଣନ୍ତୁ । (ଏଠାରେ ସବିଶେଷ ବ୍ରହ୍ମଙ୍କ ବିଷୟରେ କଥିତ ଅତଏବ ଏଠାରେ ପୁଂଲିଙ୍ଗର ପ୍ରୟୋଗ କରାଯାଇଛି) । ଅର୍ଥାତ୍ ଏହି ଅବିନାଶୀ ବ୍ରହ୍ମଙ୍କ ଜ୍ଞାନସକାଶେ ଯେଉଁ ବିଦ୍ୟାର ଆବଶ୍ୟକତା, ତାହାର ନାମ ପରା ବିଦ୍ୟା । ଏହିପରି ଏକ-ଅଦ୍ୱୟ ବ୍ରହ୍ମଙ୍କର ଦ୍ୱିବିଧ ଆକାର ଶ୍ରୁତିମାନଙ୍କରେ ଉଲ୍ଲିଖିତଥିବା ଦେଖାଯାଏ ।

ନିର୍ଗୁଣ ବ୍ରହ୍ମଙ୍କ ଆଲୋଚନାରୁ ଜଣାଯାଏ ଯେ ଯାହାଙ୍କର ଭାବଲକ୍ଷଣ, ଚିହ୍ନ, ଲେଖ ଆଦି କୌଣସି ବିଶେଷଣ ନାହିଁ ତାଙ୍କୁ ହିଁ ପରଂବ୍ରହ୍ମ କୁହାଯାଏ । ଏହି ନିର୍ବିଶେଷ, ନିର୍ବିକଳ୍ପ, ନିରୁପାଧି ଓ ନିର୍ଗୁଣ ପରଂବ୍ରହ୍ମ ଯେତେବେଳେ ମାୟା-ଉପାଧି ସ୍ୱୀକାର କରନ୍ତି, ସେତେବେଳେ ସେ ମାୟା-ଉପାଧିଦ୍ୱାରା ସ୍ୱୟଂ ସଂକୁଚିତ ହେବାରୁ ନିଜେ ସବିଶେଷ, ସୋପାଧିକ ଓ ସଗୁଣ ହୁଅନ୍ତି । ସେହି ସମୟରେ ସୀମାହୀନ ଚିଦାକାଶରେ ଚନ୍ଦ୍ରାତପର ଉଦୟ ହୁଏ । ଅଖଣ୍ଡମଣ୍ଡଳ ବୃତ୍ତାକାର ହୋଇ ତନ୍ମଧ୍ୟରେ ଯେଉଁ କେନ୍ଦ୍ର ବିନ୍ଦୁର ଅବଭାସ ହୁଏ, ବ୍ରହ୍ମଙ୍କର ଏହି ବିଭାବକୁ ଅପର ବ୍ରହ୍ମ ବା ମହେଶ୍ୱର କୁହାଯାଏ । ଏ ସମ୍ବନ୍ଧରେ ଉପନିଷଦ୍‌ରେ ମଧ୍ୟ ବର୍ଣ୍ଣିତ ହୋଇଛି—

"ମାୟିନନ୍ତୁ ମହେଶ୍ୱରମ୍" । ଶ୍ୱେତ: ୪।୧୦ ।

ଅର୍ଥାତ୍ ସଗୁଣ ବ୍ରହ୍ମ ହିଁ ମହେଶ୍ୱର । ସେ ମାୟୀ, ଅର୍ଥାତ୍ ମାୟା—ଉପାଧି ଉପହିତ ଅଟନ୍ତି । ଆହୁରି ମଧ୍ୟ—

ଯସ୍ତୂର୍ଣ୍ଣନାଭଇବତନ୍ତୁଭିଃ ପ୍ରଧାନଜୈଃ ।
ସ୍ୱଭାବତୋଦେବ ଏକଃ ସ୍ୱମାବୃଣୋତ୍ × । ଶ୍ୱେତାଶ୍ୱତର ଉ: ୬।୧୦ ।

ଅର୍ଥାତ୍ ଊର୍ଣ୍ଣନାଭ ଯେପରି ନିଜ ଜାଲ ରଚନା କରି ନିଜକୁ ଆବୃତ କରେ, ସେହିପରି ସ୍ୱଭାବତଃ ଅଦ୍ୱିତୀୟବ୍ରହ୍ମ ପ୍ରଧାନ ଜାଲରେ ଆପଣାକୁ ଆବୃତ କରିଅଛନ୍ତି । ଯେପରି ଦୁର୍ନିରୀକ୍ଷ ତେଜୋମଣ୍ଡଳକୁ ଫାନୁସ୍‌ଦ୍ୱାରା ଆବୃତ କଲେ ତାହାର ତେଜ କିଛି ସଂକୁଚିତ ହୋଇଯାଏ, ସେପରି ପରଂବ୍ରହ୍ମ ମଧ୍ୟ ମାୟାରୂପକ ଯବନିକାଦ୍ୱାରା ଆବୃତ ହୁଅନ୍ତି; ଅତଏବ ମାୟା ବ୍ରହ୍ମଙ୍କର ତିରସ୍କରଣୀ * । ଭାଗବତରେ ଉକ୍ତ ଅଛି—

ନାରାୟଣେ ଭଗବତ ତଦିଦଂ ବିଶ୍ୱମାହିତମ୍ ।
ଗୃହୀତ ମାୟୋରୁଗୁଣଃ ସର୍ଗାଦାବଗୁଣଃ ସ୍ୱତଃ । ଭାଗ ୨।୬।୩୦ ।

* "ଯବନିକାମାୟାଜଗନ୍ମୋହିନୀ"—ରାମାନୁଜ ।
"ମାୟାଯବନିକାଚ୍ଛନ୍ନମ୍"—ଭାଗବତ-୧ । କୁନ୍ତୀସ୍ତବ ।
"ଭଗବତ୍ସ୍ୱରୂପତିରୋଧାନକାରୀ"—ରାମାନୁଜ ।

ଏହି ଜଗତ ପରମେଶ୍ୱର ନାରାୟଣଙ୍କଠାରେ ନିହିତ ଥାଏ; ସେ ସ୍ୱଭାବତଃ ନିର୍ଗୁଣ; କିନ୍ତୁ ସୃଷ୍ଟିର ପ୍ରାରମ୍ଭରେ ମାୟା-ଉପାଧି ଅଙ୍ଗୀକାର କରି ସଗୁଣ ହୁଅନ୍ତି ।

## ଠ—ବ୍ରହ୍ମ ଏକ, ଭାବ-ଦ୍ୱିବିଧ : ସଗୁଣ ଓ ନିର୍ଗୁଣ ।

ବସ୍ତୁତଃ ଦେଖିବାକୁ ଗଲେ ଅନନ୍ତସାଗର ଯେପରି ନିର୍ବାତ, ନିଷ୍କମ୍ପ, ପ୍ରଶାନ୍ତ ଓ ନିସ୍ତବ୍ଧ, ନିର୍ଗୁଣ ବ୍ରହ୍ମଙ୍କ ଅବସ୍ଥା ମଧ୍ୟ ସେହିପରି । ସମୁଦ୍ର ଯେପରି ଲହରୀସଙ୍କୁଳ ଓ ବିକ୍ଷୁବ୍ଧ ହେଉଥିବାରୁ ଫେଣଯୁକ୍ତ, ସଗୁଣ ବ୍ରହ୍ମଙ୍କର ଅବସ୍ଥା ମଧ୍ୟ ତଦ୍ରୂପ । ଏକ ହିଁ ସମୁଦ୍ର ଯେପରି କୌଣସି ଏକ ସମୟରେ ପ୍ରଶାନ୍ତ ଏବଂ ଅନ୍ୟ ସମୟରେ ବିକ୍ଷୁବ୍ଧ, ସେପରି ଏକ ହିଁ ବ୍ରହ୍ମ ଭାବନା-ଅନୁସାରେ କେତେବେଳେ ନିର୍ଗୁଣ ଏବଂ କେତେବେଳେ ସଗୁଣ ମଧ୍ୟ । ପ୍ରଶାନ୍ତ ସମୁଦ୍ର ଯେପରି ବିକ୍ଷୁବ୍ଧ ହୋଇ ପୁନଶ୍ଚ ପ୍ରଶାନ୍ତଭାବ ଧାରଣ କରେ, ସେପରି ପରଂବ୍ରହ୍ମ ମଧ୍ୟ ମାୟା-ଯବନିକାର ଆବରଣରେ ସଗୁଣ ଓ ସଂକୁଚିତ ହୁଅନ୍ତି । ଅଥଚ ମାୟା-ଆବରଣ ତିରୋହିତ ହେଲେ ନିର୍ଗୁଣନିସ୍ତରଙ୍ଗ ରୂପ ଧାରଣ କରନ୍ତି । ଯେପରି ମହାସମୁଦ୍ରର ପର୍ଯ୍ୟାୟକ୍ରମେ ଏହି ଅବସ୍ଥାଦ୍ୱୟ ଦେଖାଯାଏ, ବ୍ରହ୍ମଙ୍କର ମଧ୍ୟ ପର୍ଯ୍ୟାୟବଶତଃ ଏହି ଦୁଇ ବିଭାଗ ଅନୁଭୂତ ହୁଏ । ତିରସ୍କରଣୀର ଆବରଣରେ ବ୍ରହ୍ମଜ୍ୟୋତି କେତେବେଳେ ସଙ୍କୀର୍ଣ୍ଣ-ସସୀମ ହୁଏ, ପୁନଶ୍ଚ ତିରସ୍କରଣୀର ତିରୋଧାନରେ ସେହି ବ୍ରହ୍ମଜ୍ୟୋତି ଅସୀମ, ଅନନ୍ତ ଅନାବୃତଭାବରେ ବୋଧଗମ୍ୟ ହୁଅନ୍ତି । ବିଶୁଦ୍ଧ ଏକ ଅଦ୍ୱୟବ୍ରହ୍ମ କେବଳ ଦ୍ୱିବିଧ ଲକ୍ଷଣସ୍ୱରୂପ; ତଟସ୍ଥ ବିଗ୍ରହରେ ସଗୁଣ-* ରୂପରେ ପ୍ରତୀୟମାନ ହୁଅନ୍ତି । ଏହି ହେତୁରୁ ଏକ ପରଂବ୍ରହ୍ମ କେବଳ ଜଗତର କାରଣ, ଅନ୍ୟ କେହି କାରଣ ନୁହନ୍ତି । ଏ ବିଷୟରେ ବାଦରାୟଣଙ୍କ ଉକ୍ତି—

**ଗତିସାମାନ୍ୟାତ୍ । ବେ: ସୂ: ୧।୧।୧୦ ।**

ସର୍ବତ୍ର ଗତି ସମାନ । ଅର୍ଥାତ୍ ଉପନିଷଦ୍‌ମାନଙ୍କରେ ସୃଷ୍ଟି ବିଷୟକ ଯେ ସକଳବାକ୍ୟ ଦେଖାଯାଏ, ସେଥିରୁ ସ୍ପଷ୍ଟ ହୁଏ ଯେ, ବ୍ରହ୍ମହିଁ ଜଗତର ଏକମାତ୍ର କାରଣ; ଅତଏବ ତଦନୁସାରେ ଏଠାରେ ମଧ୍ୟ ଉପନିଷଦ୍ ବାକ୍ୟର ସେହି ଅର୍ଥ କରିବାକୁ ହେବ, ନୋଚେତ୍ ଭିନ୍ନ ଭିନ୍ନ

---

* ବ୍ରହ୍ମୈକଂ ମୂର୍ତ୍ତିଭେଦସ୍ତୁ ଗୁଣଭେଦେନ ସମ୍ମତମ୍,
ତଦ୍‌ବ୍ରହ୍ମ ଦ୍ୱିବିଧଂ ବସ୍ତୁ ସଗୁଣଂ ନିର୍ଗୁଣଂ ଶିବମ୍ ।
ମାୟାଶ୍ରିତୋ ଯଃ ସଗୁଣୋ ମାୟାତୀତଶ୍ଚ ନିର୍ଗୁଣଃ ॥
ବ୍ରହ୍ମବୈବର୍ତ୍ତ ପୁରାଣ । ଶ୍ରୀକୃଷ୍ଣଙ୍କ ଜନ୍ମଖଣ୍ଡ—୪୨ ଅ: ।

ଅର୍ଥାତ୍ ସଗୁଣ ଓ ନିର୍ଗୁଣଭେଦରେ ବ୍ରହ୍ମ ଦ୍ୱିବିଧ । ସଚ୍ଚିଦାନନ୍ଦ ବ୍ରହ୍ମ ହିଁ ନିର୍ଗୁଣ ଓ ଜଗତରେ ସୃଷ୍ଟି-ଅଧିକାରକ ବ୍ରହ୍ମ ସଗୁଣ । ଏକ ବ୍ରହ୍ମ ଗୁଣଭେଦରେ ଦ୍ୱିବିଧ । ସଗୁଣ ଓ ନିର୍ଗୁଣ । ମାୟାଶ୍ରିତ ବ୍ରହ୍ମ ସଗୁଣ ଏବଂ ମାୟାତୀତ ବ୍ରହ୍ମ ନିର୍ଗୁଣ ।

ଉପନିଷଦ୍ ବାକ୍ୟରେ ବିଭିନ୍ନ ଗତି * ହୋଇପାରେ, ଯାହାକି ଦୋଷାବହ । ତାର୍କିକମାନଙ୍କ ଶାସ୍ତ୍ରରେ ଜଗତର କାରଣ † ଯେପରି ଭିନ୍ନ ଭିନ୍ନ ସ୍ୱରୂପରେ ବର୍ଣ୍ଣିତ ହୋଇଅଛି, ବେଦାନ୍ତଶାସ୍ତ୍ରରେ କିନ୍ତୁ ସେପରି ବିଭିନ୍ନକାରଣ ପ୍ରତିପାଦିତ ନୁହେଁ । ସର୍ବତ୍ର ହିଁ ଚେତନବ୍ରହ୍ମ ଏକରୂପ, ବ୍ରହ୍ମର ସଗୁଣନିର୍ଗୁଣଭେଦ ଏକସ୍ୱରୂପରେ ମାୟାକଳ୍ପିତ ପ୍ରକାରମାତ୍ର । ବିଶୁଦ୍ଧନିର୍ଗୁଣ ପରମାତ୍ମା ପରଂବ୍ରହ୍ମଙ୍କର ସ୍ୱୟଂସିଦ୍ଧମହିମାର ଲକ୍ଷଣରୂପ; ତଚ୍ଛକ୍ତିର ବିକ୍ଷେପଜନିତ ଓ ମାୟାପ୍ରତିବିମ୍ବିତ ପ୍ରକାଶ ହିଁ ସଗୁଣବ୍ରହ୍ମ ଓ ଏହି ବ୍ରହ୍ମର ପ୍ରକାଶ ହିଁ ଜଗତ୍ । ସୁତରାଂ ସେହି ସର୍ବଶକ୍ତିମାନ୍ ମହାମହିମାନ୍ୱିତ ପରଂବ୍ରହ୍ମ ହିଁ ଜଗତର ଏକମାତ୍ର କାରଣ । ତଦ୍‌ଭିନ୍ନ ଅନ୍ୟ କିଛି ନୁହେଁ ।

## ଶ୍ରୁତତ୍ୱାଚ । ବେଃ ସୂ: ୧।୧।୧୧ ।

ବ୍ରହ୍ମ କେବଳ ଜଗତର ଏକମାତ୍ର କାରଣ—ଏହା ବେଦରେ ସ୍ପଷ୍ଟଭାବେ ଶ୍ରୁତ ବା ଆମ୍ନାତ ହୋଇଅଛି । ଶ୍ୱେତାଶ୍ୱତର ଉପନିଷଦ୍‌ରେ କଥିତ ଅଛି—

**ସ କାରଣଂ କରଣାଧିପାଧିପଃ ନ ଚାସ୍ୟ କଶ୍ଚିଦ୍ ଜନିତା ନଚାଧିପଃ ।**

ଅର୍ଥାତ୍ ସେହି ବ୍ରହ୍ମ ଜଗତ୍‌ର କାରଣ । କରଣାଧିପ, ଅର୍ଥାତ୍ ଜୀବବ୍ରହ୍ମ (କରଣ= ଇନ୍ଦ୍ରିୟ, ସେମାନଙ୍କର ଅଧିପ, ଅର୍ଥାତ୍ ପ୍ରଭୁ—ଜୀବ) କରଣାଧିପାଧିପ—ଅର୍ଥାତ୍ ସକଳଜୀବର ପ୍ରଭୁ । ଏହାଙ୍କର (ବ୍ରହ୍ମଙ୍କର) ଜନିତା (ଉତ୍ପାଦକ) କେହି ନାହିଁ । ଏହାଙ୍କର ଅଧିପ ବା ପ୍ରଭୁ ମଧ୍ୟ କେହି ନାହିଁ ।

ବ୍ରହ୍ମ ସଗୁଣ ଓ ନିର୍ଗୁଣ-ବିଷୟରେ ଶାଙ୍କରଭାଷ୍ୟରେ କଥିତ ଅଛି—

---

* ଗତି ଅବଗତିଃ । ଅସ୍ୟାଃ ସାମାନ୍ୟଂ ସମାନତା ତସ୍ମାତ୍ । ଯସ୍ମାତ୍ ସର୍ବେଷ୍ୱପି ବେଦାନ୍ତ-ବାକ୍ୟେଷୁ ସମାନା ଚେତନକାରଣାବଗତିଃ ତସ୍ମାତ୍ ଚେତନ ଏବ ଜଗତ୍‌କାରଣଂ ନାନ୍ୟଦିତି ସୂତ୍ରାର୍ଥଃ । ଅର୍ଥାତ୍— ଯେଉଁହେତୁରୁ ସମୁଦାୟ ସୃଷ୍ଟିବୋଧକ ବେଦାନ୍ତ-ବାକ୍ୟରେ ସମାନରୂପରେ ଚେତନର ହିଁ ଜଗତ୍‌କାରଣତା ପ୍ରତୀତ ହୁଏ, ସେହିହେତୁରୁ ଚେତନ ବ୍ରହ୍ମ ହିଁ ଜଗତ୍‌କାରଣ ଅନ୍ୟ କୌଣସି ( ପ୍ରଧାନ ବା ପରମାଣୁପ୍ରଭୃତି ) ନୁହେଁ ।

† ତାର୍କିକଙ୍କ ମତରେ କୌଣସିଠାରେ ଚେତନ ପରମେଶ୍ୱର, ଅନ୍ୟତ୍ର ଅଚେତନ ପ୍ରଧାନ ଜଗତର କାରଣ ; ଅନ୍ୟ କୌଣସି ସ୍ଥାନରେ ଅଚେତନ ପରମାଣୁ ମଧ୍ୟ ଜଗତ୍‌କାରଣ-ରୂପରେ ବର୍ଣ୍ଣିତ ହୋଇଅଛି ।

"ଦ୍ୱିରୂପଂ ହି ବ୍ରହ୍ମାବଗମ୍ୟତେ ନାମରୂପବିକାରଭେଦୋପାଧିବିଶିଷ୍ଟଂ, ତଦ୍ ବିପରୀତଞ୍ଚ ସର୍ବୋପାଧିବିବର୍ଜିତମ୍ ।" "ଯତ୍ର ହି ଦ୍ୱୈତମିବ ଭବତି ତଦିତରମିତରଂ ପଶ୍ୟତି, ଯତ୍ର ତ୍ୱସ୍ୟ ସର୍ବମାତ୍ମୈବାଭୂତ୍, ତତ୍ କେନ କଂ ପଶ୍ୟେତ୍" ।

ଅର୍ଥାତ୍ ଶ୍ରୁତିମାନଙ୍କରେ ଦ୍ୱିବିଧ ବ୍ରହ୍ମ ଅଭିହିତ ହେବା ଦେଖାଯାଏ । ଏକ ସଗୁଣ, ଅପର ନିର୍ଗୁଣ । ଯାହା ନାମ-ରୂପାତ୍ମକ ବିକାରବିଶେଷରେ ଉପହିତ, ସେହି ସଗୁଣ ଏବଂ ତାହାର ବିପରୀତ ବା ଉପାଧିସମ୍ବନ୍ଧରହିତକୁ ନିର୍ଗୁଣ କୁହାଯାଏ । ଯେତେବେଳେ ଦ୍ୱୈତତୁଲ୍ୟ ( କଳ୍ପିତଭେଦ ବା ଉପାଧିଯୁକ୍ତ ) ହୁଏ, ସେତେବେଳେ ପରସ୍ପର ଅନ୍ୟ ଅନ୍ୟକୁ ଦେଖେ; କିନ୍ତୁ ଯେତେବେଳେ ଏହି ସମୁଦାୟ ଆତ୍ମଭୂତ ହୁଏ ବା ଆତ୍ମା ହିଁ ଅନୁଭୂତ ହୁଏ, ସେତେବେଳେ କିଏ କାହାକୁ କ'ଣ ବା ଦେଖି ପାରିବ ?

ବିଶିଷ୍ଟତଃ—ବେଦାନ୍ତପ୍ରତିପାଦିତ ବ୍ରହ୍ମ ପ୍ରକୃତିରେ କ'ଣ ସବିଶେଷ ନା ନିର୍ବିଶେଷ, ସବିକଳ୍ପ ବା ନିର୍ବିକଳ୍ପ, ସୋପାଧିକ କି ନିରୁପାଧିକ, ସଗୁଣ ବା ନିର୍ଗୁଣ—ଇତ୍ୟାଦି ପ୍ରଶ୍ନ ଉତ୍ଥିତ ହୁଏ । ଅର୍ଥାତ୍ ବ୍ରହ୍ମଙ୍କୁ ଲକ୍ଷଣରେ ଲକ୍ଷିତ, ଚିହ୍ନରେ ଚିହ୍ନିତ, ବିଶେଷଣରେ ବିଶେଷିତ ଓ ଉପାଧିରେ ଉପହିତ କରାଯାଇ ପାରିବ କି ନାହିଁ ? ଏହି ସମସ୍ୟା ବେଦାନ୍ତଦର୍ଶନରେ ଜାଗରିତ ହୁଏ । ଶ୍ରୀ ଶଙ୍କରାଚାର୍ଯ୍ୟ ନିଜ ଭାଷ୍ୟରେ କହିଛନ୍ତି—

"ସର୍ବତ୍ରୈବ ହି ବ୍ରହ୍ମସ୍ୱରୂପପ୍ରତିପାଦନପରେଷୁ ବାକ୍ୟେଷୁ ଅପାସ୍ତସମସ୍ତ ବିଶେଷମେବ ବ୍ରହ୍ମ ଉପଦିଶ୍ୟତେ ।"

ଅର୍ଥାତ୍ ଉପନିଷଦ୍ ଆଦିରେ ବ୍ରହ୍ମଙ୍କର ସ୍ୱରୂପ ପ୍ରତିପାଦନ ଅବସରରେ ବ୍ରହ୍ମଙ୍କୁ ସମସ୍ତବିଶେଷ-ରହିତ ବା ନିର୍ବିଶେଷ ବୋଲି କୁହାଯାଇଛି । ରାମାନୁଜ ମଧ୍ୟ—

"ନିର୍ବିଶେଷବ୍ରହ୍ମଣି ନ କିମପି ପ୍ରମାଣମସ୍ତି ।"

ଅର୍ଥାତ୍ ନିର୍ବିଶେଷବ୍ରହ୍ମ ବିଷୟରେ କୌଣସି ପ୍ରମାଣ ନାହିଁ ବୋଲି ବର୍ଣ୍ଣନା କରିଛନ୍ତି । ଆଚାର୍ଯ୍ୟମାନଙ୍କର ଏହିପରି ପରସ୍ପର ବିରୁଦ୍ଧବାକ୍ୟ ଥିବାରୁ ବ୍ରହ୍ମସୂତ୍ରରେ ଏ ବିଷୟରେ କି ସିଦ୍ଧାନ୍ତ ହୋଇଅଛି—ଏ କଥା ଲକ୍ଷ୍ୟ କରିବାନିମନ୍ତେ କୁହାଯାଉଅଛି—ବ୍ରହ୍ମବିଷୟରେ ଦ୍ୱିବିଧ ଶ୍ରୁତିବାକ୍ୟ ଦୃଷ୍ଟହେବା କଥା ପ୍ରଥମରୁ ଉଲ୍ଲିଖିତ ହୋଇ ଆସୁଅଛି । ଆହୁରି ମଧ୍ୟ ଶଙ୍କରାଚାର୍ଯ୍ୟ କହିଛନ୍ତି—

"ସନ୍ତି ଉଭୟଲିଙ୍ଗାଃ ଶ୍ରୁତୟୋ ବ୍ରହ୍ମବିଷୟାଃ । ସର୍ବକର୍ମା, ସର୍ବକାମଃ, ସର୍ବଗନ୍ଧଃ, ସର୍ବରସ ଇତ୍ୟେବମାଦ୍ୟାଃ ସବିଶେଷଲିଙ୍ଗାଃ ଅସ୍ଥୂଲମ୍, ଅନଣୁ, ଅହ୍ରସ୍ୱମ୍, ଅଦୀର୍ଘମିତ୍ୟେବମାଦୟଶ୍ଚ ନିର୍ବିଶେଷଲିଙ୍ଗାଃ ।"

ଅର୍ଥାତ୍ ବ୍ରହ୍ମବିଷୟରେ ଦୁଇ ପ୍ରକାର ଶ୍ରୁତିବାକ୍ୟ ଦେଖାଯାଏ—ଏକ ସବିଶେଷ ଲିଙ୍ଗଶ୍ରୁତି—ଯଥା, ସର୍ବକାମ, ସର୍ବଗନ୍ଧ, ସର୍ବରସ ଇତ୍ୟାଦି । ଅନ୍ୟ ନିର୍ବିଶେଷ ଲିଙ୍ଗଶ୍ରୁତି; ଯେପରି—ସେହି ବ୍ରହ୍ମ ସ୍ଥୂଳ ନୁହନ୍ତି ସୂକ୍ଷ୍ମ ବା ହ୍ରସ୍ୱ ଓ ଦୀର୍ଘ ମଧ୍ୟ ନୁହନ୍ତି ଇତ୍ୟାଦି । ନିର୍ବିଶେଷ ବ୍ରହ୍ମ ବିଷୟରେ ଶ୍ରୁତିବାକ୍ୟ "ନେତି ନେତି" ଭାବରେ ସ୍ମରଣ କରାଏ । ଅର୍ଥାତ୍ "ଆଦେଶୋ ନେତି ନେତି"—ସେ ଏହା ନୁହନ୍ତି, ସେ ଏହା ନୁହନ୍ତି—ତାଙ୍କ ସମ୍ବନ୍ଧରେ ଏତିକିମାତ୍ର କୁହାଯାଏ । ବସ୍ତୁତଃ ଏଥିରୁ ଦେଖାଯିବ ଯେ ନିର୍ବିଶେଷବ୍ରହ୍ମଙ୍କ ବିଷୟରେ କେବଳ ଶ୍ରୁତିବାକ୍ୟ ନଞ୍ଥର୍ଦ୍ଧକ ବହୁଳ ପ୍ରୟୋଗ କରିଅଛନ୍ତି । ଏହି ବିଷୟ ନିମନ୍ତେ କେବଳ ଉପନିଷଦ୍‌ମାନଙ୍କରେ କଥିତ ଅଛି ।

"ଅସ୍ଥୂଲମନଣ୍ୱହ୍ରସ୍ୱମଦୀର୍ଘମ"—ବୃ: ଆରଣ୍ୟକ ଉ: ୩।୮।୮ ।
"ଅଶବ୍ଦମସ୍ପର୍ଶମରୂପମବ୍ୟୟମ୍"—କଠ ଉ: ୩।୧୫ ।
ତଦେତଦ୍ ବ୍ରହ୍ମାପୂର୍ବମନପରମନାନ୍ତରମବାହ୍ୟମ୍ ।
ବୃ: ଆ: ଉ: ୨।୫।୧୯ ।

ଅର୍ଥାତ୍—ବ୍ରହ୍ମ ସ୍ଥୂଳ ଓ ସୂକ୍ଷ୍ମ ନୁହନ୍ତି, ହ୍ରସ୍ୱ ବା ଦୀର୍ଘ ନୁହନ୍ତି । ତାହାଙ୍କର ଶବ୍ଦ ନାହିଁ, ସ୍ପର୍ଶ ନାହିଁ, ରୂପ ଓ କ୍ଷୟ ମଧ୍ୟ ନାହିଁ । ବ୍ରହ୍ମଙ୍କର ପୂର୍ବରେ ବା ପରେ, ଆଭ୍ୟନ୍ତର ବା ବାହ୍ୟରେ ମଧ୍ୟ ଅନ୍ୟ କିଛି ନାହିଁ ।

"ଏତସ୍ମିନ୍ନଦୃଶ୍ୟେଽନାତ୍ମ୍ୟେଽନିରୁକ୍ତେ" । ତୈତ୍ତିରୀୟ ୨।୭।୩୪ ।
ନୈବ ବାଚା ନ ମନସା ପ୍ରାପ୍ତୁଂ ଶକ୍ୟୋ ନ ଚକ୍ଷୁଷା । କଠ: ଉ: ୬।୧୨ ।

ସେହି ନିମିତ୍ତ ସେ ଅନିର୍ଦ୍ଦେଶ୍ୟ, ଅନିରୁକ୍ତ, ଅବାଚ୍ୟ—ଇତ୍ୟାଦି ନାମରେ ଅଭିହିତ ହୁଅନ୍ତି । ସେ ବାକ୍ୟ, ମନ ଓ ଇନ୍ଦ୍ରିୟରୁ ଅଜ୍ଞାତ ।

"ଅନ୍ୟଦେବ ତଦ୍‌ବିଦିତାଦଥୋ ଅବିଦିତାଦଧି । କେନ: ଉ: ୧—୩ ।

ଅର୍ଥାତ୍ ସେ ବିଦିତ ଓ ଅବିଦିତ ; ସମସ୍ତ ପଦାର୍ଥରୁ ମଧ୍ୟ ଭିନ୍ନ ।

ଯତ୍ତଦଦ୍ରେଶ୍ୟମଗ୍ରାହ୍ୟମଗୋତ୍ରମବର୍ଣ୍ଣ—
ମଚକ୍ଷୁଃ ଶ୍ରୋତ୍ରଂ ତଦପାଣିପାଦମ୍ । ମୁଣ୍ଡକ ଉ: ୧।୧।୬ ।
ନାନ୍ତଃପ୍ରଜ୍ଞଂ ନ ବହିଃପ୍ରଜ୍ଞଂ ନୋଭୟତଃ ପ୍ରଜ୍ଞମ୍ । ମାଣ୍ଡୂକ୍ୟ—୭ ।

ଅର୍ଥାତ୍ ଯେ ଅଦୃଶ୍ୟ, ଅଗ୍ରାହ୍ୟ, ଅଗୋତ୍ର, ଅବର୍ଣ୍ଣ ଏବଂ ଯାହାଙ୍କର ଚକ୍ଷୁ, କର୍ଣ୍ଣ, ହସ୍ତ ଓ ପଦ ନାହିଁ; ଯାହାଙ୍କର ପ୍ରଜ୍ଞା ବହିର୍ମୁଖ ବା ଉଭୟମୁଖ ନୁହେଁ ।

ଏହିପରି ବିଶିଷ୍ଟ ଉପନିଷଦ୍‌ବାକ୍ୟ କେବଳ ନିର୍ବିଶେଷବ୍ରହ୍ମ ବିଷୟରେ ବର୍ଣ୍ଣନା କରେ । ଅନ୍ୟପକ୍ଷରେ ଉପନିଷଦ୍‌ମାନଙ୍କରେ ସବିଶେଷ ବ୍ରହ୍ମବିଷୟରେ ନାନା ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବର୍ଣ୍ଣନା ମଧ୍ୟ ଦେଖାଯାଏ ।

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାଽସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ॥ ଶ୍ୱେତାଶ୍ୱତର ୩।୧୯ ।

ଅର୍ଥାତ୍ ଯାହାଙ୍କର ହସ୍ତ ନାହିଁ, ଅଥଚ ସେ ଗ୍ରହଣ କରିପାରନ୍ତି; ପାଦ ଓ ଚକ୍ଷୁ ନାହିଁ; କିନ୍ତୁ ଗମନ ଓ ଦର୍ଶନ କରନ୍ତି । ତାଙ୍କର କର୍ଣ୍ଣ ନାହିଁ, କିନ୍ତୁ ଶୁଣିପାରନ୍ତି, ସେ ସର୍ବଜ୍ଞ; କିନ୍ତୁ ତାଙ୍କର ଜ୍ଞାତବ୍ୟ ବିଷୟ କିଛି ନାହିଁ ।—ତାଙ୍କୁ ହିଁ କେବଳ ମହାନ ପୁରୁଷ କୁହାଯାଏ ।

"ଏଷ ସର୍ବେଶ୍ୱର ଏଷ ସର୍ବଜ୍ଞ ଏଷୋଽନ୍ତର୍ଯ୍ୟାମ୍ୟେଷ ଯୋନିଃ ସର୍ବସ୍ୟ ପ୍ରଭବାପ୍ୟୟୌ ହି ଭୂତାନାମ୍ । ମାଣ୍ଡୂକ୍ୟ—୬ ।

ଏହି ପରମାତ୍ମା ସର୍ବେଶ୍ୱର, ସର୍ବଜ୍ଞ, ସର୍ବାନ୍ତର୍ଯ୍ୟାମୀ ଓ ସେ କେବଳ ବିଶ୍ୱର କାରଣ । ଭୂତମାନଙ୍କର ସେହି କେବଳ ଉତ୍ପତ୍ତି ଓ ପ୍ରଳୟର ସ୍ଥାନ । ଆହୁରି ମଧ୍ୟ—

"ସର୍ବସ୍ୟ ବଶୀ ସର୍ବସ୍ୟେଶାନଃ ସର୍ବସ୍ୟାଧିପତି ସ ନ ସାଧୁନା କର୍ମଣା ଭୂୟାନ୍ନୋ ଏବାସାଧୁନା କର୍ମଣା କନୀୟାନେଷ ସର୍ବେଶ୍ୱର ଏଷ ଭୂତାଧିପତିରେଷ ଭୂତପାଳ ଏଷ ସେତୁର୍ବିଧରଣ ଏଷାଂ ଲୋକାନାମସମ୍ଭେଦାୟ ।"

ବୃହଦାରଣ୍ୟକ ଉ:୪—୪—୨୨ ।

ସେହି ସମସ୍ତଙ୍କର ପ୍ରଭୁ, ସମସ୍ତଙ୍କର ଈଶ୍ୱର, ସମସ୍ତଙ୍କର ଅଧିପତି । ସାଧୁକର୍ମଦ୍ୱାରା ଏହାଙ୍କର ଉପଚୟ ବା ଅସାଧୁ କର୍ମଦ୍ୱାରା ଅପଚୟ ହୁଏ ନାହିଁ । ସେ ସର୍ବେଶ୍ୱର, ଭୂତାଧିପତି ଓ ଭୂତପାଳ; ସେ ଲୋକ ସମୂହର ବିଭାଜକ ଓ ଧାରକ— ସେତୁସ୍ୱରୂପ ।

**"ନିତ୍ୟୋ ନିତ୍ୟାନାଂ ଚେତନଶ୍ଚେତନାନାମ୍" ।** କଠ ୫।୧୩ ।

ଅର୍ଥାତ୍ ସେ ନିତ୍ୟର ନିତ୍ୟ ଚେତନର ଚେତୟିତା ମଧ୍ୟ ।

**"ଅଣୋରଣୀୟାନ୍ ମହତୋ ମହୀୟାନ୍ ।**

ସେ ଅଣୁ ଅପେକ୍ଷା ଅଣୁ ଓ ମହାନ୍ ଅପେକ୍ଷା ମହତ୍ତର ।

**"ଏଷ ଆତ୍ମାଽପହତପାପ୍ମା ବିଜରୋ ବିମୃତ୍ୟୁଃ ବିଶୋକ ବିଜିଘତ୍ସୋଽପିପାସଃ ସତ୍ୟକାମଃ ସତ୍ୟସଂକଳ୍ପଃ ।** ଛାନ୍ଦୋଗ୍ୟ ୮।୧।୫ ।

ଏହି ଆତ୍ମା ଅପାପବିଦ୍ଧ, ଜରାହୀନ, ମୃତ୍ୟୁହୀନ ଓ କ୍ଷୁଧା ତୃଷା ରହିତ । ଆତ୍ମା ସତ୍ୟକାମ ଓ ସତ୍ୟ ସଂକଳ୍ପ ।

ଏହିପରି ସବିଶେଷଲିଙ୍ଗ ଓ ନିର୍ବିଶେଷଲିଙ୍ଗ ଶ୍ରୁତିବାକ୍ୟସମୂହକୁ ଲକ୍ଷ୍ୟ କରି ବାଦରାୟଣ ସୂତ୍ର ରଚନା କରିଅଛନ୍ତି—

**ନ ସ୍ଥାନତୋଽପି ପରସ୍ୟ ଉଭୟଲିଙ୍ଗଂ ସର୍ବତ୍ର ହି ।।** ବେ: ସୂ: ୩-୨-୧୧ ।

"ପରସ୍ୟ (ପରମାତ୍ମାଙ୍କର) ନ ଉଭୟଲିଙ୍ଗ ସବିଶେଷ ଓ ନିର୍ବିଶେଷରୂପକ ଉଭୟ ଲକ୍ଷଣ ହୋଇପାରେ ନାହିଁ), ସର୍ବତ୍ର ହି (ଉପନିଷଦ୍‌ରେ) ଯେଉଁଠାରେ ବ୍ରହ୍ମଙ୍କର ସ୍ୱରୂପ ନିର୍ଦ୍ଦେଶ କରାହୋଇଅଛି, ସେଠାରେ ନିର୍ବିଶେଷରୂପରେ ହିଁ ବ୍ରହ୍ମଙ୍କର ସ୍ୱରୂପ ନିର୍ଦ୍ଦେଶ କରାହୋଇଅଛି । ଅତଏବ ବ୍ରହ୍ମଙ୍କର ସ୍ୱରୂପ ନିର୍ବିଶେଷ ।" ଏହାର ଉତ୍ତରରେ ବାଦରାୟଣ କହିଛନ୍ତି—

**ନ ଭେଦାଦିତି ଚେନ୍ନ ପ୍ରତ୍ୟେକମତଦ୍‌ବଚନାତ୍ ।।**
**ଅପି ଚୈବମେକେ ।।** ବେ: ସୂ: ୩।୨। ୧୨-୧୩ ।

ନ ( ବ୍ରହ୍ମ ନିର୍ବିଶେଷ—ଏହି ସିଦ୍ଧାନ୍ତ ଯଥାର୍ଥ ନୁହେଁ ) ଭେଦାତ୍ ( ଉପନିଷଦ୍‌ରେ ବ୍ରହ୍ମଙ୍କର ରୂପଭେଦ, ଅର୍ଥାତ୍ ବ୍ରହ୍ମ ଚତୁଷ୍ପାଦ ବା ଷୋଡ଼ଶକଳାଯୁକ୍ତ ଇତ୍ୟାଦି କୁହାଯାଇଛି)— ଇତି ଚେନ୍, ଅର୍ଥାତ୍ ଏହି ମତ ଠିକ୍ ନୁହେଁ । ପ୍ରତ୍ୟେକଂ ଅତଦ୍‌ବଚନାତ୍ (ପ୍ରତି ଉପାଧିଭେଦ-ମଧ୍ୟରେ ସେହି ଏକ ବ୍ରହ୍ମ ହିଁ ଅବସ୍ଥାନ କରନ୍ତି—ଏହି ଶ୍ରୁତିବାକ୍ୟ ବିଦ୍ୟମାନ; କିନ୍ତୁ ତାହାର

ଅର୍ଥ ଏହି ଯେ, କେବଳ ଉପାସନା ନିମନ୍ତେ ସେପରି ଭେଦର କଳ୍ପନା କରାଯାଇଛି । ସ୍ୱରୂପତଃ ବ୍ରହ୍ମର ଭେଦ ନାହିଁ । ସ୍ୱରୂପତଃ ବ୍ରହ୍ମ ଏକ ଓ ଅଦ୍ୱିତୀୟ । ଏକେ ( ବେଦର କୌଣସି ଏକମତାବଲମ୍ବୀ) ଏବଂ (ଏହିପରି) ଶ୍ରୁତିବାକ୍ୟ ପାଠ କରିଥାନ୍ତି—ଭେଦଦର୍ଶନ ନିନ୍ଦନୀୟ । କେବଳ ଅଭେଦଦର୍ଶନ ହିଁ ସତ୍ୟ ।

"ନେହ ନାନାସ୍ତି କିଞ୍ଚନ
ମୃତ୍ୟୋଃ ସ ମୃତ୍ୟୁମାପ୍ନୋତିଷ ଇହ ନାନା ଇବ ପଶ୍ୟତି" ॥

କ: ଉ: ୪।୧୧ ।

ଅର୍ଥାତ୍ ଜଗତରେ ନାନା ବସ୍ତୁ ନାହିଁ । ଯେ ନାନା ବସ୍ତୁ ଦେଖେ, ସେ ବାରମ୍ବାର ମୃତ୍ୟୁମୁଖରେ ପତିତ ହୁଏ ।

**ଠ—ପରଂବ୍ରହ୍ମ ବିଶୁଦ୍ଧ ନିର୍ଗୁଣସ୍ୱରୂପ ଅଟନ୍ତି ।**

**ଅରୂପବଦେବ ହି ତତ୍ ପ୍ରଧାନତ୍ୱାତ୍ ॥** ବେ: ସୂ: ୩-୨-୧୪ ।

ଶାଙ୍କର ଭାଷ୍ୟ—

**ରୂପାଦ୍ୟାକାରରହିତମେବ ହି ବ୍ରହ୍ମାବଧାରୟିତବ୍ୟଂ**
**ନ ରୂପାଦିମତ୍ ××× ନିରାକାରମେବ ବ୍ରହ୍ମାବଧାରିତବ୍ୟମ୍ ॥**

ଅର୍ଥାତ୍—ବ୍ରହ୍ମ ରୂପାଦିବର୍ଜିତ । କାରଣ, ବ୍ରହ୍ମସ୍ୱରୂପ ପ୍ରତିପାଦକପର—ଶ୍ରୁତିବଚନମାନଙ୍କରେ ଅରୂପବ୍ରହ୍ମ ପ୍ରଧାନ ଭାବରେ ବ୍ୟାଖ୍ୟା କରାଯାଇଛି । ଅର୍ଥାତ୍ ଶ୍ରୁତିବାକ୍ୟମାନଙ୍କରେ ନିର୍ଗୁଣ ବ୍ରହ୍ମଙ୍କ ପ୍ରତିପାଦନ କରାଯାଇଛି । ଅତଏବ ବ୍ରହ୍ମଙ୍କୁ ରୂପାଦିବିହୀନ ନିରାକାର ବୋଲି ନିଶ୍ଚୟ କରିବା ଉଚିତ । ତାଙ୍କର ଉପାଧି ସମ୍ବନ୍ଧ ଥିଲେ ମଧ୍ୟ ସେ ସାକାର ନୁହନ୍ତି । କାରଣ, ତାଙ୍କର ଉପାଧି ସ୍ୱେଚ୍ଛାକୃତ । ତେବେ ସବିଶେଷ ଲିଙ୍ଗଶ୍ରୁତିର ଅର୍ଥ କ'ଣ ? ଏହାର ଉତ୍ତରରେ ବାଦରାୟଣ କହିଛନ୍ତି—

**"ପ୍ରକାଶବଚ୍ଚାବୈୟର୍ଥ୍ୟାତ୍" ॥** ବେଦାନ୍ତ ସୂ: ୩।୨।୧୫ ।

ଅବୈୟର୍ଥ୍ୟାତ୍ (ସବିଶେଷ ବ୍ରହ୍ମବୋଧକ ଶ୍ରୁତିବାକ୍ୟ ନିରର୍ଥକ ନୁହେଁ) ଶ୍ରୁତିବାକ୍ୟ ସର୍ବଦା ସାର୍ଥକ । ପ୍ରକାଶବତ୍—ଅର୍ଥାତ୍ ସୂର୍ଯ୍ୟଙ୍କ ଆଲୋକ ସର୍ବତ୍ର ପରିବ୍ୟାପ୍ତ ଭାବରେ ଅବସ୍ଥିତ । କେବଳ ସେହି ଆଲୋକ ଅଙ୍ଗୁଳି ଅବଲମ୍ବନରେ ଅବସ୍ଥିତ ଥିବା ସମୟରେ ଅଙ୍ଗୁଳି ସରଳ ବା ବକ୍ର ଯଦି ହୋଇଥାଏ, ତେବେ ସୂର୍ଯ୍ୟକିରଣ ମଧ୍ୟ ସରଳ ବା ବକ୍ରଭାବରେ ଥିବା ଅନୁଭୂତ ହୁଏ । ସେହିପରି ବ୍ରହ୍ମ ସର୍ବବ୍ୟାପୀ ହେଲେ ମଧ୍ୟ ପୃଥିବୀ ପ୍ରଭୃତି ଉପାଧିଯୋଗରେ ତଦାକାରାକାରିତଭାବେ ପ୍ରତୀତ ହୁଏ ।

**"ଅତଏବ ଚୋପମା ସୂର୍ଯ୍ୟକାଦବତ୍" । ୩।୨।୧୮ ।**

ସେହି ହେତୁରୁ—

**"ସୂର୍ଯ୍ୟକାଦବତ୍" ।**

ଅର୍ଥାତ୍ ସୂର୍ଯ୍ୟ-ପ୍ରତିବିମ୍ବ ସହିତ ବ୍ରହ୍ମଙ୍କ ତୁଳନା କରାଯାଇଛି । ବିଭିନ୍ନ ଜଳାଶୟରେ ସୂର୍ଯ୍ୟଙ୍କର ପ୍ରତିବିମ୍ବ ପଡ଼ି ସୂର୍ଯ୍ୟ ନାନାଭାବରେ ଦେଖା ଗଲେ ମଧ୍ୟ ସୂର୍ଯ୍ୟ ଏକ । ସେହିପରି ବ୍ରହ୍ମ ଏକ ହେଲେ ମଧ୍ୟ ବିଭିନ୍ନ ଉପାଧି ଅନୁସାରେ ବିଭିନ୍ନ ବୋଲି ପ୍ରଖ୍ୟାତ ହୁଅନ୍ତି । ଏଠାରେ ଏହି ଆପତ୍ତି ହୋଇପାରେ କି—ଜଳରେ ସୂର୍ଯ୍ୟଙ୍କ ପ୍ରତିବିମ୍ବ ସହିତ ବୁଦ୍ଧିରେ ବ୍ରହ୍ମଙ୍କ ପ୍ରତିବିମ୍ବର ତୁଳନା କରିବା ଠିକ୍ ନୁହେଁ । ଉଭୟସ୍ଥଳରେ ଏକରୂପତା ନାହିଁ । ସୂର୍ଯ୍ୟ ଓ ଜଳ ଭିନ୍ନ ଦେଶରେ ଅବସ୍ଥିତ । ଅତଏବ ସୂର୍ଯ୍ୟଙ୍କ ପ୍ରତିବିମ୍ବ ଜଳରେ ପଡ଼ିପାରେ; କିନ୍ତୁ ବ୍ରହ୍ମ ସର୍ବବ୍ୟାପକ ସୁତରାଂ ବ୍ରହ୍ମଙ୍କର ପ୍ରତିବିମ୍ବ ବୁଦ୍ଧିରେ ପଡ଼ିବା ଅନୁଭବବିରୁଦ୍ଧ ।

ଏହାର ସମାଧାନ ବିଷୟରେ ବେଦାନ୍ତସୂତ୍ର—

**"ବୃଦ୍ଧିହ୍ରାସଭାକ୍ତ୍ୱମନ୍ତର୍ଭାବାଦୁଭୟସାମଞ୍ଜସ୍ୟାଦେବମ୍" ।**

ବେ: ସୂ: ୩।୨।୨୦

ଅର୍ଥାତ୍ ପୂର୍ବୋକ୍ତ ଦୃଷ୍ଟାନ୍ତ ନ୍ୟାଯ୍ୟ; କାରଣ, କେବଳ ବିବକ୍ଷିତାଂଶର ସାରୂପ୍ୟ ନେଇ ଦୃଷ୍ଟାନ୍ତ ଦିଆଯାଏ, ଏଠାରେ ମଧ୍ୟ ତାହା ବିଦ୍ୟମାନ । ଦୃଷ୍ଟାନ୍ତ ଦାର୍ଷ୍ଟାନ୍ତିକର ସର୍ବ-ସାରୂପ୍ୟ ଅର୍ଥାତ୍ ସର୍ବାଂଶରେ ସମାନତା କଦାପି ସମ୍ଭବ ନୁହେଁ । ସର୍ବାଂଶରେ ସମାନ ହେଲେ ସ୍ୱରୂପ ନ ହୋଇ ଏକ ହୋଇଯିବ । ଦୃଷ୍ଟାନ୍ତ ଦାର୍ଷ୍ଟାନ୍ତିକର ଭେଦ ରହିବ ନାହିଁ । ଭେଦ ନ ଥିଲେ ସାରୂପ୍ୟ ପ୍ରତିପାଦନ ଅଯୋଗ୍ୟ । ଏଠାରେ ମଧ୍ୟ ଜଳସ୍ଥ ସୂର୍ଯ୍ୟରୂପକ ଦୃଷ୍ଟାନ୍ତ ଶାସ୍ତ୍ର-ପ୍ରସିଦ୍ଧ । ଅତଏବ ବ୍ରହ୍ମସୂତ୍ରରେ କୁହାଯାଇଛି ଯେ—ବୃଦ୍ଧିହ୍ରାସଭାକ୍ତ୍ୱମ୍- ଅର୍ଥାତ୍ ଜଳ ବଢ଼ିଲେ ଜଳସ୍ଥ ସୂର୍ଯ୍ୟପ୍ରତିବିମ୍ବ ବୃଦ୍ଧିପ୍ରାପ୍ତ ହୁଏ; ଜଳହ୍ରସ୍ୱ ବା ଅଳ୍ପ ହେଲେ ପ୍ରତିବିମ୍ବ ହ୍ରାସ ହୁଏ । ଜଳର କମ୍ପନରେ କମ୍ପିତ ଓ ଜଳର ନାନାକାରରେ ପ୍ରତିବିମ୍ବ ମଧ୍ୟ ନାନା ବା ଅନେକ ଦେଖାଯାଏ । ଏହିପରି ସୂର୍ଯ୍ୟ ବିମ୍ବ ଜଳଧର୍ମାନୁଯାୟୀ ହେଲେ ମଧ୍ୟ ପରମାର୍ଥତଃ ସେ ଏକ ଓ ଯଥାପୂର୍ବ ଥାଏ । ମୌଳିକ ଆକାଶସ୍ଥ ସୂର୍ଯ୍ୟଙ୍କର କୌଣସି ଭେଦ ସ୍ୱତଃ ନାହିଁ । ଏହି ଦୃଷ୍ଟାନ୍ତ ଅନୁସାରେ ପରମାର୍ଥତଃ ବ୍ରହ୍ମ ଏକ ଓ ଅବିକୃତ ହେଲେ ମଧ୍ୟ ଦେହାଦି ଉପାଧି ଅଧ୍ୟୁଷିତ ହୋଇ ଉପାଧି-ଧର୍ମର ହ୍ରାସବୃଦ୍ଧି ଆଦି ଭଜନ୍ତି । ଏହିପରି ଦୃଷ୍ଟାନ୍ତ ଦାର୍ଷ୍ଟାନ୍ତିକର ସାମଞ୍ଜସ୍ୟରେ କୌଣସି ବିରୋଧ ଅନୁଭୂତ ହୁଏ ନାହିଁ ।

**"ଦର୍ଶନାଚ୍ଚ" ।**          ବେ: ସୂ: ୩।୨।୨୧ ।

ଅର୍ଥାତ୍ ଶ୍ରୁତିବାକ୍ୟ ଅନୁସାରେ ପରଂବ୍ରହ୍ମର ଦେହାଦି ଉପାଧିଯୁକ୍ତତ୍ୱ ପ୍ରଦର୍ଶିତ ହୋଇ ଅଛି । ଯଥା—

"ଅନେନ ଜୀବେନାତ୍ମନାଅନୁପ୍ରବିଶ୍ୟ" ॥

ଅର୍ଥାତ୍ ଜୀବ ବା ଆତ୍ମ ରୂପରେ ଅନୁପ୍ରବେଶପୂର୍ବକ-ଇତ୍ୟାଦି । ଏହି ଅନୁପ୍ରବେଶ-ଶବ୍ଦରୁ ସୂର୍ଯ୍ୟପ୍ରତିବିମ୍ବ ସହିତ ବ୍ରହ୍ମଙ୍କ ତୁଳନା ସଙ୍ଗତ ହୁଏ । ଶ୍ରୁତିବାକ୍ୟ ଅନୁସାରେ ବ୍ରହ୍ମ ନିର୍ଗୁଣ ଓ ନିର୍ବିଶେଷ । ସେ ସବିଶେଷ ଓ ନିର୍ବିଶେଷ—ଉଭୟଲିଙ୍ଗଯୁକ୍ତ ହୋଇପାରନ୍ତି ନାହିଁ । ଏ ସମ୍ବନ୍ଧରେ ବାଦାରାୟଣ କହିଛନ୍ତି—

"ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତି ।
ତତୋ ବ୍ରବୀତି ଚ ଭୂୟଃ" ॥ ବେ: ସୂ: ୩।୨।୨୨ ।

ଉପନିଷଦ୍‌ରେ ଏହିପରି କୁହାଯାଇଛି—

"ଦ୍ୱେବାବ ବ୍ରହ୍ମଣୋରୂପେ, ମୂର୍ତ୍ତଂ ଚୈବା ମୂର୍ତ୍ତଂ ସ୍ଥିତଂ ଚ ଯତ୍ ଚ, ସତ୍ ଚ ତ୍ୟଚ ।" ବୃହଦାରଣ୍ୟକ ୨।୩।୧ ।

ଅର୍ଥାତ୍ ବ୍ରହ୍ମଙ୍କର ଦୁଇ ଗୋଟି ରୂପ—ଏକ ମୂର୍ତ୍ତ (ଯାହା ଦର୍ଶନଯୋଗ୍ୟ) ଓ ଅନ୍ୟଟି ଅମୂର୍ତ୍ତ ବା ଦେଖାଯାଏ ନାହିଁ । ତା'ପରେ କୁହାଯାଇଛି—

ଅଥାତ୍ ଆଦେଶୋ ନେତି ନେତି ନ ହି ଏତସ୍ମାଦ୍ ଇତି ନ ଇତି ଅନ୍ୟତ୍ ପରଂ ଅସ୍ତି × × × । ବୃହଦାରଣ୍ୟକ ୨।୩।୬ ।

ଅର୍ଥାତ୍ ସେହିହେତୁରୁ ଉପଦେଶ ଦିଆଯାଇଛି—ଏହା ନୁହେଁ, ଏହା ନୁହେଁ । ଏଠାରେ ଏହା ନୁହେଁ—ଏପରି କହିବାର ଉଦ୍ଦେଶ୍ୟ ଏହି ଯେ—ବ୍ରହ୍ମର ରୂପ ଦୁଇଟି ସତ୍ୟ ନୁହେଁ; "ଅନ୍ୟତ୍ ପରମ୍" ଅର୍ଥାତ୍ ଶ୍ରେଷ୍ଠବସ୍ତୁ ବ୍ରହ୍ମ ହିଁ ସତ୍ୟ ।

"ଅଥ ନାମଧେୟଂ ସତ୍ୟସ୍ୟସତ୍ୟମିତି, ପ୍ରାଣା ବୈ ସତ୍ୟମ୍, ତେଷାମେଷସତ୍ୟମ୍" । ବୃହଦାରଣ୍ୟକ ୨-୩-୬ ।

ଅର୍ଥାତ୍ ଏହିହେତୁରୁ ବ୍ରହ୍ମଙ୍କର ନାମ ସତ୍ୟର ସତ୍ୟ । ପ୍ରାଣ ସମସ୍ତ ସତ୍ୟ, ବ୍ରହ୍ମ ପ୍ରାଣ ସକଳଠାରୁ ସତ୍ୟ ମଧ୍ୟ । ଏହି ଭାବକୁ ଲକ୍ଷ୍ୟ କରି ଶଙ୍କରାଚାର୍ଯ୍ୟ ନିର୍ବିଶେଷ ବା ନିର୍ଗୁଣ ବ୍ରହ୍ମ କେବଳ ଶ୍ରୁତିର ପ୍ରତିପାଦ୍ୟ ବୋଲି ନିଜ ମତ ସ୍ଥାପନ କରି ସବିଶେଷ ବା ସଗୁଣ ବ୍ରହ୍ମର ପ୍ରତ୍ୟାଖ୍ୟାନ କରିଅଛନ୍ତି ।

"ଅତଶ୍ଚାନ୍ୟତରଲିଙ୍ଗପରିଗ୍ରହେଽପି ସମସ୍ତବିଶେଷରହିତଂ ନିର୍ବିକଳ୍ପକମେବ ବ୍ରହ୍ମସ୍ୱରୂପପ୍ରତିପାଦନପରେଷୁ ବାକ୍ୟେଷୁ ଅଶବ୍ଦମସ୍ପର୍ଶମରୂପମବ୍ୟୟମ୍" ଇତ୍ୟେବମାଦିଷ୍ୱପାସ୍ତ ସମସ୍ତବିଶେଷମେବ ବ୍ରହ୍ମୋପଦିଶ୍ୟତେ" । ବ୍ର: ସୂ: ଶାଙ୍କରଭାଷ୍ୟ ୩-୨-୧୧ ।

ଅର୍ଥାତ୍ "ଉଭୟ ଲିଙ୍ଗନିର୍ଦ୍ଦେଶ ଥିଲେ ମଧ୍ୟ ସମସ୍ତବିଶେଷରହିତ ନିର୍ବିକଳ୍ପକ ବ୍ରହ୍ମ ହିଁ (ଶ୍ରୁତିର) ପ୍ରତିପାଦ୍ୟ । ତଦ୍‌ବିପରୀତ (ସବିଶେଷ ସଗୁଣବ୍ରହ୍ମ) ପ୍ରତିପାଦ୍ୟ ନୁହେଁ । କାରଣ, ଉପନିଷଦ୍ ବାକ୍ୟରେ ଯେଉଁସ୍ଥାନରେ ବ୍ରହ୍ମଙ୍କ ସ୍ୱରୂପ ପ୍ରତିପାଦନ କରି ହୋଇଅଛି (ଯଥା- ଅଶବ୍ଦ, ଅସ୍ପର୍ଶ, ଅରୂପ, ଅବ୍ୟୟ ଇତ୍ୟାଦି) ସେହି ସ୍ଥାନମାନଙ୍କରେ ବ୍ରହ୍ମ ସମୁଦାୟ ବିଶେଷ-ରହିତ—ଏହି ଉପଦେଶ ହିଁ ଦୃଷ୍ଟ ହୁଏ । ପୁନଶ୍ଚ, ଏହି ସବିଶେଷ ବା ସଗୁଣବ୍ରହ୍ମଙ୍କୁ ଉପନିଷଦ୍-ମାନଙ୍କରେ ଯାହା ମହେଶ୍ୱର ବୋଲି କୁହାଯାଇଛି; ଅଦ୍ୱୈତବାଦୀଙ୍କ ମତରେ ସେହି ସଗୁଣ ବା ମହେଶ୍ୱର ମାୟାର ବିଜୃମ୍ଭଣ ମାତ୍ର । ଏହାର ପାରମାର୍ଥିକ ସତ୍ତା ନାହିଁ । ଏହା ଉପାଧିର କାଳ୍ପନିକ ବିଳାସ ଭିନ୍ନ ଅନ୍ୟ କିଛି ନୁହେଁ । ପଞ୍ଚଦଶୀରେ ଉକ୍ତ ଅଛି—

**ମାୟାଖ୍ୟାୟାଃ କାମଧେନୋର୍ବତ୍ସୌ ଜୀବେଶ୍ୱରାବୁଭୌ ।**
**ଯଥେଚ୍ଛଂ ପିବତାଂ ଦ୍ୱୈତଂ ତତ୍ତ୍ୱଂ ତ୍ୱଦ୍ୱୈତମେବ ହି ॥**

ପଞ୍ଚ: ୬-୨୩୬ ।

ଅର୍ଥାତ୍-ମାୟାରୂପୀ କାମଧେନୁଙ୍କର ବତ୍ସ ଜୀବ ଓ ଈଶ୍ୱର ଉଭୟ ହିଁ ମାୟିକ ବସ୍ତୁ । ତଦ୍ଦ୍ୱାରା ଦ୍ୱୈତସିଦ୍ଧ ହେଲେ ମଧ୍ୟ ଅଦ୍ୱୈତ ହିଁ ପ୍ରକୃତତତ୍ତ୍ୱ । ଯେପରି ବ୍ରହ୍ମ ମାୟା-ଉପାଧି ସହିତ ହୋଇ ନିଜେ ଈଶ୍ୱର ବୋଲି ପ୍ରଖ୍ୟାତ ହୁଅନ୍ତି, ସେପରି ଅବିଦ୍ୟା-ଉପାଧିଦ୍ୱାରା ସେ ଜୀବ ବୋଲି ପ୍ରଖ୍ୟାୟମାନ ହୁଅନ୍ତି; କିନ୍ତୁ ଏହି ପ୍ରଖ୍ୟାତି ଅଳୀକ ।

**ସତ୍ୟଂ ଜ୍ଞାନମନନ୍ତଂ ଯଦ୍‌ବ୍ରହ୍ମ ତଦ୍ ବସ୍ତୁ ତସ୍ୟ ତତ୍ ।**
**ଈଶ୍ୱରତ୍ୱନ୍ତୁ ଜୀବତ୍ୱମ୍ ଉପାଧିଦ୍ୱୟକଳ୍ପିତମ୍ ॥** ପ: ଦ: ୩-୩୭ ।

ଅର୍ଥାତ୍ ସଚ୍ଚିଦାନନ୍ଦ ବ୍ରହ୍ମ କେବଳ ବସ୍ତୁ, ଈଶ୍ୱର ଓ ଜୀବ ଉପାଧିକଳ୍ପିତ (ଅବସ୍ତୁ) । ଉପାଧି ପରିହାର କଲେ ଅଖଣ୍ଡ ସଚ୍ଚିଦାନନ୍ଦ ବ୍ରହ୍ମ ଭିନ୍ନ ଅନ୍ୟ କିଛି ରହେ ନାହିଁ ।

**ମାୟାବିଦ୍ୟେ ବିହାୟୈବଂ ଉପାଧୀ ପରଜୀବୟୋଃ**
**ଅଖଣ୍ଡଂ ସଚ୍ଚିଦାନନ୍ଦଂ ପରଂ ବ୍ରହ୍ମୈବ ଲକ୍ଷ୍ୟତେ ॥**

ଅଧ୍ୟାତ୍ମୋପନିଷଦ୍ ୩୨ । ଓ ପ: ୩-୩୮ ।

ବ୍ରହ୍ମ ବସ୍ତୁତଃ ନିରୂପାଧିକ । ଯେତେବେଳେ ତାଙ୍କଠାରେ ମାୟାଶକ୍ତିରୂପକ ଉପାଧି ସଂଯୁକ୍ତ ହୁଏ, ସେତେବେଳେ ସେ ଈଶ୍ୱର ଏବଂ ଯେତେବେଳେ ତାହାଙ୍କଠାରେ କୋଷ-ଉପାଧି ଯୁକ୍ତ ହୁଏ ସେତେବେଳେ ସେ ଜୀବପଦବାଚ୍ୟ । ଏହି ଉଭୟ-ମାୟା ଓ ଅବିଦ୍ୟା ବ୍ରହ୍ମଙ୍କର ବିଶିଷ୍ଟ ଅଂଶ ଓ ତାହା ପରିତ୍ୟାଗ କଲେ ଅପରିଚ୍ଛିନ୍ନ-ନିତ୍ୟଜ୍ଞାନ-ଆନନ୍ଦସ୍ୱରୂପ ପରଂବ୍ରହ୍ମ କେବଳ ଲକ୍ଷିତ ହୁଅନ୍ତି । ଏହି ପରଂବ୍ରହ୍ମ-ପରମାତ୍ମାଙ୍କ ବିଷୟରେ ଗୌଡ଼ପାଦକାରିକାରେ କୁହାଯାଇଛି—

"ଅଜମନିଦ୍ରମସ୍ୱପ୍ନମନାମକମରୂପକମ୍ ।
ସକୃଦ୍ ବିଭାତଂ ସର୍ବଜ୍ଞଂ ନୋପଚାରଃ କଥଞ୍ଚନ ॥"
ମାଣ୍ଡୁକ୍ୟକାରିକା ୩-୩୬ ।

ପରମାତ୍ମା ଅଜ, ଅର୍ଥାତ୍ ଅବିଦ୍ୟାଜନିତ ଜନ୍ମାଦିରୁ ରହିତ; ଯେଉଁହେତୁରୁ ଅଜ, ସେହି କାରଣରୁ ଅନିଦ୍ର ମଧ୍ୟ; ଅର୍ଥାତ୍ ଅବିଦ୍ୟା-ଲକ୍ଷଣମାୟାରୁ ଅତୀତ । ପରମାତ୍ମା ଅଦ୍ୱୟସ୍ୱରୂପ, ଅତଏବ ସଦା ପ୍ରବୁଦ୍ଧ, ଅର୍ଥାତ୍ ଚୈତନ୍ୟମୟ । ସେ ଅସ୍ୱପ୍ନ—କୌଣସି ରୂପ-ନାମଦ୍ୱାରା ଅଭିହିତ ନୁହନ୍ତି; ଅର୍ଥାତ୍ ନାମ-ରୂପାଦିଦ୍ୱାରା ତାହାଙ୍କୁ ନିରୂପଣ କରାଯାଏ ନାହିଁ । ଅତଏବ ସେ ଆବିର୍ଭାବତିରୋଭାବବର୍ଜିତ ଓ ସଦା ପ୍ରକାଶମାନ । ସେ ସର୍ବମୟ ଓ ଜ୍ଞାନସ୍ୱରୂପ । ତାହାଙ୍କୁ ଉପଚାର ବା ଆତ୍ମବ୍ୟତିରିକ୍ତ ଭାବାନ୍ତରଦ୍ୱାରା ଈଦୃଶ ବୋଲି ନିରୂପଣ କରି ହୁଏ ନାହିଁ ।

ସର୍ବାଭିଲାଷବିଗତଃ ସର୍ବଚିନ୍ତା ସମୁତ୍ଥିତଃ ।
ସୁପ୍ରଶାନ୍ତଃ ସକୃଦ୍‌ଜ୍ୟୋତିଃ ସମାଧିରଚଳୋଽଭୟଃ ॥
ଗ୍ରହୋ ନ ତତ୍ର ନୋତ୍ସର୍ଗଶ୍ଚିନ୍ତା ଯତ୍ର ନ ବିଦ୍ୟତେ ।
ଆତ୍ମସଂସ୍ଥନ୍ତଦା ଜ୍ଞାନମଜାତିସମତାଂ ଗତମ୍ ॥ ମାଣ୍ଡୁକ୍ୟ କା: ୩୭-୩୮ ।

ଅର୍ଥାତ୍—କୌଣସି ପ୍ରକାର ବାକ୍ୟ ବା ମନଦ୍ୱାରା ତାହାଙ୍କୁ ବ୍ୟକ୍ତ କରାଯାଇ ପାରେ ନାହିଁ । ସେ ବୁଦ୍ଧ୍ୟାଦି-ଅନ୍ତଃକରଣରହିତ; କାରଣ, ଶ୍ରୁତିମାନଙ୍କରେ ସେ ଅପ୍ରାଣ, ଅମନାଃ ଓ ଶୁଭ୍ର ବୋଲି ଆଖ୍ୟାତ ହୋଇ ଅଛନ୍ତି । ସେ ସୁପ୍ରଶାନ୍ତ ; କାରଣ, ସର୍ବପ୍ରକାର ଇନ୍ଦ୍ରିୟମାନଙ୍କଦ୍ୱାରା ସେ ଅଗ୍ରାହ୍ୟ ଓ ବିଷୟବର୍ଜିତ । ସେ ଚୈତନ୍ୟ ସ୍ୱରୂପରେ ନିତ୍ୟ ଜ୍ୟୋତିର୍ମୟ , ଏକମାତ୍ର ମନନସମ ଚୈତନ୍ୟଜନିତ ପ୍ରଜ୍ଞାଦ୍ୱାରା ବିଜ୍ଞେୟ । ଅତଏବ ସେ ସମାଧି ଏବଂ ବିକାରଶୂନ୍ୟ ହୋଇ ଅଚଳ ନାମରେ ଆଖ୍ୟାତ ହୁଅନ୍ତି ।

ସେହି ବ୍ରହ୍ମଙ୍କର ଉପାଦାନ ବା ଉତ୍ସର୍ଗ ନାହିଁ; କାରଣ, ସେ ନିର୍ବିକାର ଓ ନିରବୟବ; ସେହିହେତୁରୁ ତାହାଙ୍କର ଉପାଦାନ ସମ୍ଭବ ହୁଏ ନାହିଁ । ସେ ଅମନା ବୋଲି ପୂର୍ବରୁ କୁହାଯାଇଛି; ଅତଏବ ତାଙ୍କଠାରେ କୌଣସି ପ୍ରକାର ଚିନ୍ତାର ଅବକାଶ ନାହିଁ । ଯେତେବେଳେ ଜ୍ଞାନରୂପରେ ଆତ୍ମା-ସତ୍ତ୍ୱର ଅବବୋଧ ଜାତ ହୁଏ, ସେତେବେଳେ ନିଜେ ନିଜ ଆତ୍ମାରେ ସଂସ୍ଥିତ ରହେ । ଯେପରି ଅଗ୍ନିର ଉଷ୍ଣତା ଅଭିନ୍ନଭାବରେ ଅଗ୍ନିରେ ଅବସ୍ଥାନ କରେ, ସେହିପରି ଜାତିରହିତ ଆତ୍ମା ସମତା ଲାଭ କରେ; ଅର୍ଥାତ୍—ସେ କେବଳ ନିଜେ ନିଜେ ପ୍ରକାଶିତ ହୁଅନ୍ତି ।

**ଠ—ବ୍ରହ୍ମ ଇନ୍ଦ୍ରିୟର ଅଗମ୍ୟ, କେବଳ ବିଶୁଦ୍ଧବୁଦ୍ଧିଦ୍ୱାରା ଜ୍ଞାତ ।**

ଏହିପରି ଉପନିଷଦ୍‌ରେ ଉକ୍ତ ଅଛି ଯେ, ସେହି ଏକପରମାତ୍ମାଙ୍କୁ କେବଳ ସୂକ୍ଷ୍ମ ବିବେକ ବୁଦ୍ଧିଦ୍ୱାରା ସାଧକ ଜାଣିପାରେ । ଏତଦ୍‌ଭିନ୍ନ ସେ ଅନ୍ୟ କୌଣସି ଇନ୍ଦ୍ରିୟଦ୍ୱାରା ଗ୍ରାହ୍ୟ ନୁହନ୍ତି ।

ନ ସଂଦୃଶେ ତିଷ୍ଠତି ରୂପମସ୍ୟ ନ ଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ ।
ହୃଦା ମନୀଷୀ ମନସାଽଭିକ୍ଳୃପ୍ତୋ ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତି ॥
କଠ: ୨-୩-୯ ।

ପରମାତ୍ମା ଅଦୃଶ୍ୟ ଓ ଅଲିଙ୍ଗ ହେଲେ, ତାଙ୍କର ଦର୍ଶନଲାଭ କିପରି ହୋଇପାରେ— ଏହି ଆଶଙ୍କା ନିରାକରଣ ସକାଶେ ଶ୍ରୁତି କହେ କି—ପରମାତ୍ମାଙ୍କ ରୂପ ଦର୍ଶନ-ବିଷୟ ନୁହେଁ । ସୁତରାଂ କେହି ପରମାତ୍ମାଙ୍କୁ ଚକ୍ଷୁଦ୍ୱାରା ଦର୍ଶନ କରିବାନିମନ୍ତେ ସମର୍ଥ ନୁହେଁ ; କେବଳ ସ୍ଥିର ବୁଦ୍ଧି ଦ୍ୱାରା ମନ ସାହାଯ୍ୟରେ ସେ ହୃଦୟ ଭିତରେ ପ୍ରକାଶିତ ହୁଅନ୍ତି ; ଅର୍ଥାତ୍ ଯେତେବେଳେ ବୁଦ୍ଧି ସଂକଳ୍ପାଦିଶୂନ୍ୟ ହୋଇ ନିର୍ମଳଭାବ ଧାରଣ କରେ, ସେତେବେଳେ ସେହି ନିର୍ମଳ ବିବେକ-ବୁଦ୍ଧିରେ ଆତ୍ମା ପ୍ରକାଶିତ ହୁଅନ୍ତି । ଯେଉଁ ବ୍ୟକ୍ତି ସେହି ଆତ୍ମାଙ୍କୁ ଜାଣିପାରନ୍ତି ସେ ଅମୃତତ୍ୱ ଲାଭ କରନ୍ତି ।

ଏଷ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନ ପ୍ରକାଶତେ ।
ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ ॥ କଠ: ୧-୩-୧୨ ।

ଅର୍ଥାତ୍—ଏହି ପରମାତ୍ମା ପୁରୁଷ ବ୍ରହ୍ମାଦି ସ୍ତମ୍ଭ ପର୍ଯ୍ୟନ୍ତ ଭୂତରେ ବିରାଜିତ ଥିଲେ ମଧ୍ୟ ଅବିଦ୍ୟାଦ୍ୱାରା ସମାଚ୍ଛନ୍ନରୂପକ ନିବନ୍ଧନ ହେତୁରୁ ପ୍ରକାଶିତ ହୁଅନ୍ତି ନାହିଁ । ଅର୍ଥାତ୍ ସମସ୍ତେ ତାହାଙ୍କୁ ଦେଖିପାରନ୍ତି ନାହିଁ; କିନ୍ତୁ ଯେଉଁମାନେ ସୂକ୍ଷ୍ମଦର୍ଶୀ ସେମାନେ ଏକାଗ୍ରତାସମ୍ପନ୍ନ ସଂସ୍କାରିତ ବୁଦ୍ଧି ଦ୍ୱାରା ପରମାତ୍ମା ଦର୍ଶନ କରିପାରନ୍ତି ।

"ତଂ ଦୁର୍ଦର୍ଶଂ ଗୂଢ଼ମନୁପ୍ରବିଷ୍ଟଂ ଗୁହାହିତଂ ଗହ୍ୱରେଷ୍ଠଂ ପୁରାଣମ୍ ।
ଅଧ୍ୟାତ୍ମଯୋଗାଧିଗମେନ ଦେବଂ ମତ୍ୱା ଧୀରୋ ହର୍ଷଶୋକୌ ଜହାତି ॥
କଠ: ୧-୨-୧୨ ।

ହେ ନଚିକେତଃ ! ଆତ୍ମା ଅତି ସୂକ୍ଷ୍ମ, ସୁତରାଂ ଦୁର୍ଜ୍ଞେୟ ଓ ଅଳ୍ପବୁଦ୍ଧି ଲୋକଙ୍କ ପକ୍ଷରେ ପ୍ରଚ୍ଛନ୍ନଭୂତ । ସେ ପ୍ରାଣୀମାନଙ୍କ ଅଭ୍ୟନ୍ତରରେ ଥାଆନ୍ତି ଓ ସମସ୍ତଙ୍କର ବୁଦ୍ଧିରୂପ ଗୁହାରେ ଅବସ୍ଥାନ କରନ୍ତି, ଅର୍ଥାତ୍ ବୁଦ୍ଧିରେ ଅଭିବ୍ୟକ୍ତ ହୁଅନ୍ତି । ତାଙ୍କୁ ଜାଣିବାକୁ ହେଲେ ବହୁ ଅନର୍ଥ ଓ ସଙ୍କଟ ଅତିକ୍ରମ କରିବାକୁ ହୁଏ । ସେ ନିତ୍ୟ ଓ ପ୍ରକାଶସ୍ୱରୂପ । ଯେଉଁ ବ୍ୟକ୍ତି ଅଧ୍ୟାତ୍ମଯୋଗ * ଦ୍ୱାରା ତାହାଙ୍କୁ ଜାଣିପାରନ୍ତି, ସେହି ଧୀର ବ୍ୟକ୍ତି କେବଳ ହର୍ଷ ଓ ଶୋକ ଦୂର କରିବାକୁ ସମର୍ଥ ହୁଅନ୍ତି ।

* ବିଷୟମାନଙ୍କରୁ ଚିତ୍ତକୁ ବିବେକ ବୈରାଗ୍ୟଦ୍ୱାରା ଆକୃଷ୍ଟ କରି ଆତ୍ମବସ୍ତୁରେ ସଂଯୋଗ କରିବାର ନାମ ଅଧ୍ୟାତ୍ମଯୋଗ ।

## ଠ—ବ୍ରହ୍ମଙ୍କର ଆତ୍ମସ୍ୱରୂପରେ ଶରୀର-ପ୍ରବେଶ ଓ ଅବସ୍ଥାଭେଦରେ ଶରୀର ମଧ୍ୟରେ ତାଙ୍କର ସ୍ଥାନ ନିର୍ଣ୍ଣୟ ।

ଉପରବର୍ଣ୍ଣିତ ଶ୍ରୁତିରୁ ବ୍ରହ୍ମ ଯେ ଏକ ଅଦ୍ୱିତୀୟ, ଅଦୃଶ୍ୟ, ଅତୀନ୍ଦ୍ରିୟ ଓ ଅଖଣ୍ଡାକାର-ରୂପରେ ବିଦ୍ୟମାନ—ଏହା ସ୍ପଷ୍ଟ ପ୍ରତୀୟମାନ ହେଉଅଛି । ଆହୁରି ମଧ—

ସର୍ବୋପାଧିବିନିର୍ମୁକ୍ତଂ ସଚ୍ଚିଦାନନ୍ଦମଦ୍ୱୟମ୍ ।
ନିର୍ବିଶେଷଂ ନିରାଭାସମତାଦୃଶମନୀଦୃଶମ୍ ॥
ଅନିର୍ଦ୍ଦେଶ୍ୟମନାଦ୍ୟନ୍ତମନନ୍ତଂ ଶାନ୍ତମଚ୍ୟୁତମ୍ ।
ଅପ୍ରତର୍କ୍ୟମବିଜ୍ଞେୟଂ ନିର୍ଗୁଣଂ ବ୍ରହ୍ମ ଶିଷ୍ୟତେ ॥

ସ: ବେ: ସି: ସାର ସଂଗ୍ରହ ୭୬୧-୭୬୨ ।

ଅର୍ଥାତ୍—ସମସ୍ତ ଉପାଧିରହିତ, ସଚ୍ଚିଦାନନ୍ଦସ୍ୱରୂପ, ଅଦ୍ୱିତୀୟ, ବିଶେଷଣଶୂନ୍ୟ, ଆଭାସ ବା ପ୍ରତିଫଳନରହିତ, ସତ୍ ବା ଇଦଂ ଶବ୍ଦ-ଅବାଚ୍ୟ, ନିର୍ଦ୍ଦେଶ-ଅଯୋଗ୍ୟ, ଆଦି ଓ ବିନାଶରହିତ, ବ୍ୟାପକ, ଶାନ୍ତ, କୂଟସ୍ଥ, ତର୍କର ଅବିଷୟ, ଜ୍ଞାନର ଅଗୋଚର ନିର୍ଗୁଣ ବ୍ରହ୍ମ ହିଁ ଅବଶିଷ୍ଟ ଥାନ୍ତି ।

କିନ୍ତୁ ତୈତ୍ତିରୀୟ ଶ୍ରୁତି ଅନୁସାରେ ଜଗତରେ ବ୍ରହ୍ମଙ୍କ ଅନୁପ୍ରବେଶ ଏହିପରି ଭାବରେ ବର୍ଣ୍ଣିତ—

**ସୋଽକାମୟତ, ବହୁ ସ୍ୟାଂ ପ୍ରଜାୟେୟେତି, ସ ତପୋଽତପ୍ୟତ, ସ ତପସ୍ତପ୍ତ୍ୱା ଇଦଂ ସର୍ବଂ ଅସୃଜତ, ଯଦିଦଂ କିଞ୍ଚ, ତତ୍ ସୃଷ୍ଟ୍ୱା, ତଦେବାନୁପ୍ରାବିଶତ୍, ତଦନୁପ୍ରବିଶ୍ୟ, ସଚ୍ଚତ୍ୟଚ୍ଚ ଅଭବତ୍, ନିରୁକ୍ତଂ ଚାନିରୁକ୍ତଂ ଚ, ନିଲୟନଂ ଚାନିଲୟନଂ ଚ, ବିଜ୍ଞାନଂ ଚାବିଜ୍ଞାନଂ ଚ, ସତ୍ୟଂ ଚାନୃତଂ ଚ, ସତ୍ୟମଭବତ୍ ଯଦିଦଂ କିଂ ଚ, ତତ୍ ସତ୍ୟମିତ୍ୟାଚକ୍ଷତେ, ତଦପ୍ୟେଷ ଶ୍ଳୋକୋ ଭବତି ।** ତୈତ୍ତିରୀୟ ଉ: ୨-୬-୨ ।

ଅର୍ଥାତ୍ ଯାହାଙ୍କଠାରୁ ଆକାଶ ସମୁତ୍ପନ୍ନ ହୋଇଅଛି, ସେହି ଆତ୍ମା ସଂକଳ୍ପ କଲେ—ଆମ୍ଭେ ବହୁରୂପରେ ଉତ୍ପନ୍ନ ହେବୁ । ସେ ଏହିପରି ସଂକଳ୍ପ କରି ଜ୍ଞାନର ଆଲୋଚନା କଲେ ଏବଂ ଜ୍ଞାନ ବିଷୟ—ଆଲୋଚନାଦ୍ୱାରା ଏହି ସମସ୍ତ ଜଗତ୍ ସୃଷ୍ଟି କଲେ । ଏହି ପ୍ରତ୍ୟକ୍ଷଗୋଚର ସକଳ ସୃଷ୍ଟି କରି ସେଥିରେ ସ୍ୱୟଂ ଅନୁପ୍ରବିଷ୍ଟ ହେଲେ ଓ ଅନୁପ୍ରବିଷ୍ଟ ହୋଇ ମୂର୍ତ୍ତ ଓ

ଅମୃତରୂପରେ ପରିଣତ ହେଲେ ଓ ମୃତ ଏବଂ ନିରୁକ୍ତ—ଅର୍ଥାତ୍ ସମାନଜାତି ଓ ସମାନଜାତୀୟ ପଦାର୍ଥଠାରୁ ପୃଥକ୍‌ଭାବରେ ଦେଶ ଓ କାଳବିଶେଷରୂପରେ ରହି "ଏହାହିଁ ସେହି ପଦାର୍ଥ"— ଏପରିଭାବରେ ଯେ କଥିତ ହୁଏ । ଯେପରି ସେ ଅମୂର୍ତ୍ତ ଓ ଅନିରୁକ୍ତ, ସେହିପରି ବ୍ରହ୍ମ ମୂର୍ତ୍ତିନିଳୟନ ବା ଗୃହପ୍ରାସାଦ ମୂର୍ତ୍ତିମଦ୍ ଦ୍ରବ୍ୟ ସଦୃଶ । ଅମୂର୍ତ୍ତ ଓ ଅନିଳୟନ ବା ତାହାର ବିପରୀତ, ଅର୍ଥାତ୍ ଅବସ୍ଥିତିସ୍ଥାନ-ବିଶେଷରହିତ । ସେହି ପରମାର୍ଥ ସତ୍ୟବ୍ରହ୍ମ ଚେତନ ଓ ଅଚେତନ, ଅର୍ଥାତ୍ ପାଷାଣାଦି ବ୍ୟାବହାରିକ—ସତ୍ୟରୂପରେ ଓ ଅନୃତ—ମୃଗତୃଷ୍ଣାଦିରୂପରେ ପରିଣତ ହୋଇଛନ୍ତି । ସେଥି ନିମନ୍ତେ ବ୍ରହ୍ମବିଦ୍‌ଗଣ ବ୍ରହ୍ମଙ୍କୁ କେବଳ ଏକମାତ୍ର ସତ୍ୟ ବୋଲି ନିଶ୍ଚୟ କରିଥାନ୍ତି । ଏ ବିଷୟରେ ଶ୍ରୁତିବାକ୍ୟ ମିଳେ ।

**"ସ ଈକ୍ଷତ କଥଂ ନ୍ୱିଦଂ ମଦୃତେ ସ୍ୟାଦିତି; ସ ଈକ୍ଷତ କତରେଣ ପ୍ରପଦ୍ୟ ଇତି, ସ ଈକ୍ଷତ ଯଦି ବାଚାଽଭିବ୍ୟାହୃତଂ ଯଦି ପ୍ରାଣେନାଭିପ୍ରାଣିତଂ ଯଦି ଚକ୍ଷୁଷା ଦୃଷ୍ଟଂ ଯଦି ଶ୍ରୋତ୍ରେଣ ଶ୍ରୁତଂ ଯଦି ତ୍ୱଚା ସ୍ପୃଷ୍ଟଂ ଯଦି ମନସା ଧ୍ୟାତଂ ଯଦ୍ୟପାନେନାଭ୍ୟପାନିତଂ ଯଦି ଶିଶ୍ନେନ ବିସୃଷ୍ଟମଥ କୋଽହମିତି ।**

ଐତରେୟ ଉ: ୧-୩ ୪ ।

ଅର୍ଥାତ୍ ପରମେଶ୍ୱର ବିଚାର କଲେ—ଏହି ଦେହ ଓ ଇନ୍ଦ୍ରିୟ ତାହାର ଅଭିମାନୀ ଦେବ ଏବଂ ସେମାନଙ୍କର ଭୋଗାଦିରୂପ କାର୍ଯ୍ୟକାରଣ ସମବାୟୀପରିକ ହୋଇ ଆମ୍ଭ ବ୍ୟତୀତ କିପରି କାର୍ଯ୍ୟକାରୀ ହେବେ । ସେ ପୁନର୍ବାର ଆଲୋଚନା କଲେ—ଏଥିରେ ପ୍ରବେଶ କରିବା-ନିମନ୍ତେ ଦୁଇଟି ମାତ୍ର ଦ୍ୱାର ଅଛି—ଆମ୍ଭେ କେଉଁ ପଥରେ ଜୀବରୂପରେ ଏଥିରେ ପ୍ରବେଶ କରିବୁ ? ସେ ପୁନଶ୍ଚ ଭାବିଲେ—ଆମ୍ଭଙ୍କୁ ଅପେକ୍ଷା ନ କରି ଯଦି ବାଗିନ୍ଦ୍ରିୟ ବାକ୍ୟପ୍ରୟୋଗ କରିବାନିମନ୍ତେ ସମର୍ଥ ହୁଏ, ପ୍ରାଣେନ୍ଦ୍ରିୟ ପଦାର୍ଥଗ୍ରହଣ କରିପାରେ, ଚକ୍ଷୁରିନ୍ଦ୍ରିୟ ଦର୍ଶନ କରିପାରେ, ଶ୍ରୋତ୍ରେନ୍ଦ୍ରିୟ ଶ୍ରବଣ କରିପାରେ, ତ୍ୱଗିନ୍ଦ୍ରିୟ ସ୍ପର୍ଶାନୁଭବ କରିପାରେ, ମନ ଚିନ୍ତା-ସମର୍ଥ ହୁଏ, ଅପାନ ନିଜର ତ୍ୟାଗକ୍ରିୟା କରିପାରେ ଓ ଶିଶ୍ନ ମଧ୍ୟ ରେତଃ ପରିତ୍ୟାଗନିମନ୍ତେ ସମର୍ଥ ହୁଏ, ତାହାହେଲେ ଆମ୍ଭେ କିଏ ?

ଅର୍ଥାତ୍ ଦେହ ସହିତ ଆମ୍ଭର ସମ୍ପର୍କ କ'ଣ ? ଆମ୍ଭ ବ୍ୟତିରେକେ ଏହାସବୁ ନିଜ କାର୍ଯ୍ୟକରଣରେ ସମର୍ଥ, ତେବେ ଆମ୍ଭେ କିଛି ନୋହୁଁ । ( ଅତଏବ ଏହି ଦେହରେ ପ୍ରବେଶ କରିବା ଉଚିତ )—ଏହିପରି ଅବଧାରଣ କରିବା ପରେ ଦେହମଧ୍ୟରେ ପ୍ରବେଶ କରିବା ସ୍ଥିର କଲେ । ଏହାର ତାତ୍ପର୍ଯ୍ୟ ଏହି ଯେ ଯଦି ଇନ୍ଦ୍ରିୟାଦି ସ୍ୱୟଂ କାର୍ଯ୍ୟ କରିବାକୁ ସମର୍ଥ ହୁଅନ୍ତି, ତାହାହେଲେ ଦେହାଦିବ୍ୟତିରିକ୍ତ ପରଂବ୍ରହ୍ମସ୍ୱଭାବ ଆତ୍ମାର ସଦ୍ଭାବବିଷୟ କେହି ଜାଣି ପାରିବେ ନାହିଁ । ତା'ପରେ ଶ୍ରୁତି କହନ୍ତି—

ସ ଏତମେବ ସୀମାନଂ ବିଦାର୍ୟ୍ୟୈତୟା ଦ୍ୱାରା ପ୍ରାପଦ୍ୟତ, ସୈଷା ବିଦୃତିର୍ନାମ ଦ୍ୱାସ୍ତଦେତନ୍ନାନ୍ଦନମ୍ * ।

ତସ୍ୟ ତ୍ରୟ ଆବସଥାସ୍ତ୍ରୟଃ ସ୍ୱପ୍ନା ଅୟମାବସଥୋଽୟ-ମାବସଥୋଽୟମାବସଥ ଇତି । ଐତରେୟ ୧-୩-୫-୭ ।

ଅର୍ଥାତ୍ ଏହିପ୍ରକାରେ ଆଲୋଚନା ପରେ ପରମେଶ୍ୱର ସ୍ଥିର କଲେ ଯେ, ଆମ୍ଭର ସବୁକର୍ମରେ ଅଧିକାରୀ ଭୃତ୍ୟସ୍ଥାନୀୟ ପ୍ରାଣ ଯେଉଁ ପଥରେ ପ୍ରବେଶ କରିଅଛି, ସେହି ନିମ୍ନତମ ପାଦାଗ୍ରଭାଗ—ଦ୍ୱାରରେ ପ୍ରବେଶ କରିବୁ ନାହିଁ । ଏହି ହେତୁରୁ ପାଦାଗ୍ରଦେଶ ତ୍ୟାଗ କରି ମୂର୍ଦ୍ଧାଦେଶର ମଧ୍ୟଭାଗସ୍ଥ ସ୍ଥାନକୁ ବିଦୀର୍ଣ୍ଣ କରି ସେହି ପଥରେ ଦେହଭିତରେ ପ୍ରବେଶ କଲେ । ବିଦାରଣପୂର୍ବକ ପ୍ରବେଶ କରିଥିବାରୁ ଏହି ଦ୍ୱାରର ନାମ ବିଦୃତି—ଏହି ଦ୍ୱାରରେ କେବଳ ପରମେଶ୍ୱର ଜୀବରୂପରେ ପ୍ରବେଶ କଲେ) । ବ୍ରହ୍ମପ୍ରବେଶର ଏହି ଦ୍ୱାର ହେବାରୁ ମୃତ୍ୟୁକାଳରେ ଜୀବ ଏହି ଦ୍ୱାରରେ ନିର୍ଗତ ହେଲେ ବ୍ରହ୍ମଲୋକପ୍ରାପ୍ତିରୂପକ ଆନନ୍ଦ ଅନୁଭବ କରେ । ଏଥିନିମନ୍ତେ ଏହି ଦ୍ୱାରକୁ ନାନ୍ଦନ କୁହାଯାଏ । ଏହିପରି ଦେହପ୍ରବିଷ୍ଟ—ପରମେଶ୍ୱରଙ୍କର ତିନୋଟି ଆବାସସ୍ଥାନ ନିର୍ଦ୍ଦିଷ୍ଟ ହୋଇଅଛି :—ଜାଗ୍ରତକାଳରେ ଦକ୍ଷିଣଚକ୍ଷୁ, ସ୍ୱପ୍ନକାଳରେ ମନର ସ୍ଥାନ କଣ୍ଠ ଏବଂ ସୁଷୁପ୍ତିକାଳରେ ହୃଦୟାକାଶ । ଅଥବା ଜାଗରିତ, ସ୍ୱପ୍ନ, ସୁଷୁପ୍ତି—ଏହି ତ୍ରିବିଧ ଅବସ୍ଥା ମଧ୍ୟରେ ସଂସାରୀ ଜୀବ "ନିଜେ ଆତ୍ମସ୍ୱରୂପ" ଏ କଥା ପରମାର୍ଥରୂପରେ ଉପଲବ୍ଧି କରି ପାରେ ନାହିଁ ଏବଂ ସ୍ୱପ୍ନାବସ୍ଥାପରି ଜାଗରଣ ଅବସ୍ଥାରେ ମଧ୍ୟ ଅସଦ୍‌ବସ୍ତୁ କଳ୍ପନା କରେ । ସେଥିପାଇଁ ଏହି ତ୍ରିବିଧ ଅବସ୍ଥା କେବଳ ସ୍ୱପ୍ନାବସ୍ଥାର ଅନ୍ତର୍ଭୁକ୍ତ । ଏହି କେବଳ ଆବାସସ୍ଥାନ ବୋଲି ନେଇ, କଣ୍ଠ ଓ ହୃଦୟକୁ ନିର୍ଦ୍ଦେଶ କରି ଅଛନ୍ତି ।

ଅନ୍ୟ ଉପନିଷଦ୍-ଶ୍ରୁତିବାକ୍ୟରେ ଶରୀରରେ ବ୍ରହ୍ମଙ୍କର ଚାରିଗୋଟି ଆବାସ ସ୍ଥାନ ମଧ୍ୟ ନିର୍ଦ୍ଦିଷ୍ଟ କରାଯାଇଛି—

ଅଥାସ୍ୟ ପୁରୁଷସ୍ୟ ଚତ୍ୱାରି ସ୍ଥାନାନି ଭବନ୍ତି—ନାଭି-ହୃଦୟଂ କଣ୍ଠଂ ମୂର୍ଦ୍ଧେତି, ତତ୍ର ଚତୁଷ୍ପାଦଂ ବ୍ରହ୍ମ ବିଭାତି, ଜାଗରିତଂ ସ୍ୱପ୍ନଂ ସୁଷୁପ୍ତଂ ତୁରୀୟମିତି, ଜାଗରିତେ ବ୍ରହ୍ମା ସ୍ୱପ୍ନେ ବିଷ୍ଣୁଃ ସୁଷୁପ୍ତେ ରୁଦ୍ରଃ ତୁରୀୟେ ପରମାକ୍ଷରମ୍, ସ ଆଦିତ୍ୟଶ୍ଚ ବିଷ୍ଣୁଶ୍ଚେଶ୍ୱରଶ୍ଚ ସ ପୁରୁଷଃ ସ ପ୍ରାଣଃ ସ

* ନନ୍ଦତି ଅନେନ ଦ୍ୱାରେଣ ଗତ୍ୱା ପରସ୍ମିନ୍ ବ୍ରହ୍ମଣି ବାଢ ନାନ୍ଦନମ୍ ।

**ଜୀବଃ, ସୋଽଗ୍ନିଃ ସ ଈଶ୍ୱରଶ୍ଚ ଜାଗ୍ରତ୍ତେଷାଂ ମଧ୍ୟେ ଯତ୍ ପରଂ ବ୍ରହ୍ମ ବଭାତ ।**

ବ୍ରହ୍ମୋପନିଷଦ ୧୬-୧୭ ।

ଯେଉଁ ପରମପୁରୁଷଙ୍କ ବ୍ୟାଖ୍ୟା କରାଗଲା, ଉକ୍ତ ପୁରୁଷଙ୍କ ଚାରିଗୋଟି ସ୍ଥାନ ଅଛି । ଯଦ୍ୟପି ସେ ସର୍ବତ୍ର ବିଦ୍ୟମାନ, ତଥାପି ବକ୍ଷ୍ୟମାଣ ଚାରିଗୋଟି ସ୍ଥାନରେ ଆଶୁ ବା ଶୀଘ୍ର ଅଭିବ୍ୟକ୍ତ ହୁଅନ୍ତି । ଏହିହେତୁରୁ ନିର୍ଦ୍ଦିଷ୍ଟ ଚାରିଗୋଟି ସ୍ଥାନ ଏହିପରି—ପ୍ରଥମେ ନାଭି ବା ମଣିପୁରଚକ୍ର; ହୃଦୟ ବା ଅନାହତଚକ୍ର; କଣ୍ଠ ବା ବିଶୁଦ୍ଧଚକ୍ର ଓ ମସ୍ତକ ବା ଆଜ୍ଞାଚକ୍ର । ମୂଳାଧାରାଦି ଅନ୍ୟଚକ୍ର ପ୍ରକାଶସ୍ଥାନ ହେଲେ ମଧ୍ୟ ଏହି ଚାରିଗୋଟି କେବଳ ଅଧିକ ପ୍ରଶସ୍ତ, ଅତଏବ ଏମାନଙ୍କର ଉଲ୍ଲେଖ କରାଗଲା ।

ପୂର୍ବୋକ୍ତ ନାଭିପ୍ରଭୃତି ସ୍ଥାନ ଚତୁଷ୍ଟୟରେ ଚତୁଷ୍ପାଦବ୍ରହ୍ମ ପ୍ରକାଶିତ ହୁଅନ୍ତି । ଅର୍ଥାତ୍ ତାହା ବିବେକ, ବୈରାଗ୍ୟ, ବିଚାର ଓ ଧ୍ୟାନଯୋଗରେ ଉପଲବ୍ଧ ହୁଏ । ଜାଗ୍ରତ୍, ସ୍ୱପ୍ନ, ସୁଷୁପ୍ତି ଏବଂ ତୁରୀୟ—ଏହା ପାଦଚତୁଷ୍ଟୟ । ଜାଗ୍ରଦବସ୍ଥାପନ୍ନ ଆତ୍ମାଙ୍କୁ ବ୍ରହ୍ମା; ସ୍ୱପ୍ନାବସ୍ଥାପନ୍ନ ଆତ୍ମାଙ୍କୁ ବିଷ୍ଣୁ; ସୁଷୁପ୍ତାବସ୍ଥାପନ୍ନ ଆତ୍ମାଙ୍କୁ ରୁଦ୍ର ଏବଂ ତୁରୀୟ ବା ଏତଦବସ୍ଥାବ୍ୟତିରିକ୍ତ ଅବସ୍ଥାପନ୍ନ ଆତ୍ମାଙ୍କୁ ପରମ ଅକ୍ଷର, ଅର୍ଥାତ୍ ପରମାତ୍ମା କୁହାଯାଏ । ଏହି ଆଦିତ୍ୟ, ବିଷ୍ଣୁ, ବ୍ରହ୍ମା, ପୁରୁଷ, ପ୍ରାଣ, ଜୀବ, ଅଗ୍ନି ଏବଂ ଈଶ୍ୱରନାମରେ ଅଭିହିତ ହୁଅନ୍ତି । ଏହି ସମସ୍ତ ଅବସ୍ଥାରେ ପରମାତ୍ମା ପ୍ରକାଶିତ ହୁଅନ୍ତି ।

ଆହୁରି ମଧ୍ୟ ଅବସ୍ଥା ଅନୁସାରେ ସ୍ଥାନ ନିର୍ଣ୍ଣୟ—

**ନେତ୍ରସ୍ଥଂ ଜାଗ୍ରତଂ ବିଦ୍ୟାତ୍ କଣ୍ଠେ ସ୍ୱପ୍ନଂ ବିନିର୍ଦ୍ଦିଶେତ୍ ।**
**ସୁଷୁପ୍ତଂ ହୃଦୟସ୍ଥଂ ତୁ ତୁରୀୟଂ ମୂର୍ଦ୍ଧ୍ନି ସଂସ୍ଥିତମ୍ ॥**

ବ୍ରହ୍ମୋପ: ୩୩ ।

ଅର୍ଥାତ୍—ଆତ୍ମା ନେତ୍ରସ୍ଥ ହେଲେ ତାହାଙ୍କୁ ଜାଗ୍ରଦବସ୍ଥାପନ୍ନ କୁହାଯାଏ; କଣ୍ଠସ୍ଥ ହେଲେ ସ୍ୱପ୍ନାବସ୍ଥା ହୃଦୟସ୍ଥ ହେଲେ ସୁଷୁପ୍ତ୍ୟବସ୍ଥା ଓ ଶିରସ୍ଥିତ ହେଲେ ତୁରୀୟାବସ୍ଥା କୁହାଯାଏ ।

**୦—ପରଂବ୍ରହ୍ମ ବିଶ୍ୱଶରୀରାଦିରେ ପ୍ରବିଷ୍ଟ ହେଲେ ମଧ୍ୟ ବିଶୁଦ୍ଧ ନିର୍ଗୁଣ-ଭାବରେ ସର୍ବ-ଊର୍ଦ୍ଧ୍ୱରେ ବିରାଜିତ :—**

ଉପର୍ଯ୍ୟୁକ୍ତ ଶ୍ରୁତିରୁ ସ୍ପଷ୍ଟ ପ୍ରତୀୟମାନ ହେଉ ଅଛି ଯେ, ପରଂବ୍ରହ୍ମ ସ୍ୱୟଂ ସୃଷ୍ଟି କରି ସେଥିରେ ପ୍ରବେଶ କଲେ । ଏପରିସ୍ଥଳେ ଆପତ୍ତି ହୋଇପାରେ ଯେ, ବ୍ରହ୍ମ ଯଦି ସ୍ୱସୃଷ୍ଟ

ଜଗତରେ ବ୍ୟଷ୍ଟି ବା ସମଷ୍ଟି ଭାବରେ ଅନୁପ୍ରବେଶ କରିଛନ୍ତି, ତେବେ ସ୍ୱସୃଷ୍ଟ ପ୍ରପଞ୍ଚ ଓ ଶରୀରରୁ ପୃଥକ୍ ହୋଇ ସେ ବିଦ୍ୟମାନ ଅଛନ୍ତି କି ନାହିଁ ? କିନ୍ତୁ ଏହାର ଉତ୍ତରରେ ଶ୍ରୁତିବାକ୍ୟ ପ୍ରମାଣିତ କରେ ଯେ, ପରଂବ୍ରହ୍ମ ସ୍ୱମହିମାରେ ସୃଷ୍ଟି କରି ସେଥିରେ ଅନୁପ୍ରବିଷ୍ଟ ହୋଇ ବିଶ୍ୱାନୁଗ ହେଲେ ମଧ୍ୟ ସେ ବିଶ୍ୱାତିଗ ବିଶୁଦ୍ଧ ନିର୍ଗୁଣ ଓ ଅଦ୍ୱିତୀୟଭାବରେ ସତତ ବିଦ୍ୟମାନ । ଉପନିଷଦ୍ ପ୍ରଥମେ ପରମେଶ୍ୱରଙ୍କର ବିଶ୍ୱାନୁଗଭାବ ବର୍ଣ୍ଣନା କରି ପରେ ବିଶ୍ୱାତିଗଭାବ ଦର୍ଶାଇ ଅଛନ୍ତି । ପୂର୍ବେ ବିଶ୍ୱାନୁଗଭାବ ବର୍ଣ୍ଣିତ ହୋଇଥିଲେ ମଧ୍ୟ ପୁନଶ୍ଚ ସଂକ୍ଷେପରେ ସେହି ବିଷୟ ଏଠାରେ ବର୍ଣ୍ଣନା କରାଯାଉଛି ।

**"ସ ତପସ୍ତପ୍ତ୍ୱା । ଇଦଂ ସର୍ବମସୃଜତ । ଯଦିଦଂ କିଞ୍ଚ । ତତ୍ ସୃଷ୍ଟ୍ୱା । ତ ଦେବାନୁ ପ୍ରାବିଶତ୍ ।"** ତୈତ୍ତିରେୟ: ୬—୬ ।

ଅର୍ଥାତ୍ ସେହି ପରମାତ୍ମା ତପସ୍ୟାଦ୍ୱାରା ଏ ସମସ୍ତ ସୃଷ୍ଟି କଲେ; ଜଗତ୍ ସୃଷ୍ଟି କରି ସେଥିରେ ଅନୁପ୍ରବିଷ୍ଟ ହେଲେ ।

**ସ ନାରମତ ସୋଽମନ୍ୟତୈତାସାଂ ପ୍ରତିବୋଧନାୟାଭ୍ୟନ୍ତରଂ ବିବଶାମି । ସ ବାୟୁରିବାତ୍ମାନଂ କୃତ୍ୱାଽଭ୍ୟନ୍ତରଂ ପ୍ରାବିଶତ୍ ।** ମୈତ୍ରୀ ୨ । ୫୬ ।

ବିଚାର କଲେ ଏମାନଙ୍କ ବୋଧ ନିମନ୍ତେ ଭୂତଗଣଙ୍କ ଅଭ୍ୟନ୍ତରରେ ପ୍ରବେଶ କରିବି । ତତ୍ପରେ ସେ ନିଜେ ପ୍ରାଣବାୟୁସ୍ୱରୂପ ଧାରଣ କରି ଅଭ୍ୟନ୍ତରରେ ପ୍ରବେଶ କଲେ ।

ଏହି ଉକ୍ତିରୁ ଜଣାଗଲା ଯେ ଜଗତ୍ ତାହାଙ୍କୁ ଆବୃତ କଲା, ଅର୍ଥାତ୍ ସେ ଜଗତ ମଧ୍ୟରେ ଗୁପ୍ତ ହୋଇ ରହିଲେ । "ତଦେବାତ୍ମ ଶକ୍ତିସ୍ୱଗୁଣୈର୍ନିଗୂଢ଼ାମ୍ ।" ପରମେଶ୍ୱର ଶକ୍ତି ସ୍ୱଗୁଣରେ ନିଗୂଢ଼ ହୋଇଗଲେ ।

**ସ ଏଷ ଇହ ପ୍ରବିଷ୍ଟଃ । ଆନଖାଗ୍ରେଭ୍ୟୋ ଯଥା କ୍ଷୁରଃ କ୍ଷୁରଧାନେଽବହିତଃ ସ୍ୟାତ୍ ବିଶ୍ୱମ୍ଭରୋ ବା ବିଶ୍ୱମ୍ଭରକୁଳାୟେ । ତାନ୍ନ ପଶ୍ୟନ୍ତି ॥**

ବୃହ. ୧।୪।—୭—

ଅର୍ଥାତ୍ ସେ ଜଗତ ମଧ୍ୟରେ ପ୍ରବେଶ କଲେ । ନଖାଗ୍ର ପର୍ଯ୍ୟନ୍ତ ଅନୁପ୍ରବିଷ୍ଟ ହେଲେ କ୍ଷୁର ଯେପରି କ୍ଷୁରଧାରରେ ପ୍ରବିଷ୍ଟ ଥାଏ, ଅଗ୍ନି ଯେପରି ଅରଣୀ (କାଠ) ମଧ୍ୟରେ ପ୍ରଚ୍ଛନ୍ନ ଥାଏ, ସେପରି ତାହାଙ୍କୁ କେହି ପ୍ରଚ୍ଛନ୍ନ ଥିବାରୁ ଦେଖି ପାରିଲେ ନାହିଁ । ତା ପରେ—

**ସ ଯଥା ସୈନ୍ଧବଖିଲ୍ୟ ଉଦକେ ପ୍ରାସ୍ତ ଉଦକମେବାନବିଲୀୟେତ ନ ହାସ୍ୟୋଦ୍ଗ୍ରହଣାୟେବ ସ୍ୟାତ୍ ।** ବୃହ. ୨-୪-୧୨ ।

ସଲିଳ ମଧ୍ୟରେ ଯେପରି ଲବଣଖଣ୍ଡ ମିଶ୍ରିତ ହେଲେ ଲୀନ ହୋଇଯାଏ, ସେହିପରି ସେ ଜଗତ ମଧ୍ୟରେ ବିଲୀନ ହୋଇଗଲେ ଅନୁସନ୍ଧାନ କରି ତାହାଙ୍କୁ କେହି ପାଇ ପାରନ୍ତି ନାହିଁ । ସେହି ହେତୁରୁ ଶ୍ୱେତାଶ୍ୱତର ଶ୍ରୁତିରେ ଉଲ୍ଲେଖ ଅଛି—

**ଯସ୍ତୂର୍ଣ୍ଣନାଭ ଇବ ତନ୍ତୁଭିଃ ପ୍ରଧାନଜୈଃ ସ୍ୱଭାବତୋ ଦେବ ଏକ ସ୍ୱମାବୃଣୋତ୍ ।**

ବୁଢ଼ିଆଣୀ ଯେପରି ଜାଲ ରଚନା କରି ନିଜକୁ ଆବୃତ କରେ, ସେହିପରି ସେ ପ୍ରାକୃତିକ ଜଗତ୍-ଜାଲ ରଚନା କରି ନିଜକୁ ଆବୃତ କଲେ ।

କିନ୍ତୁ ଉପର୍ଯ୍ୟୁକ୍ତ ଯୁକ୍ତିଦ୍ୱାରା ବ୍ରହ୍ମ ଏକ, ଅଦ୍ୱୟ, ବିଶୁଦ୍ଧ ଓ ନିର୍ଗୁଣ କିପରି—ଏହା ସମୀଚୀନଭାବରେ ବୋଧଗମ୍ୟ ହେଉ ନାହିଁ । କାରଣ, ଦୁଧ ଦହିରୂପରେ ବିକୃତ ହେଲେ ଆଉ ଦୁଧରୂପ ରହେ ନାହିଁ ; ମେଘ ମଧ୍ୟ ବୃଷ୍ଟିରେ ପରିଣତ ହେଲେ ମେଘରୂପ ଆଉ ରହେ ନାହିଁ । ସେପରି ବ୍ରହ୍ମ ଜଗତରୂପରେ ପରିଣତ ବା ମିଳିତ ହୋଇଗଲେ ତାଙ୍କର ନିଜ ସତ୍ତା କିପରି ରହିପାରେ । ଏହି ଯୁକ୍ତିର ଖଣ୍ଡନ ନିମନ୍ତେ ଉପନିଷଦ୍ ବାକ୍ୟ କହେ—ବ୍ରହ୍ମ ବିଶ୍ୱାନୁଗ, ଅଥଚ ବିଶ୍ୱାତିଗ—ସେ ଜଗତର ଅନ୍ତରରେ ଅଥଚ ବାହାରେ ମଧ୍ୟ ଅଛନ୍ତି ।

**ଭୂତେଷୁ ଚରତି ପ୍ରବିଷ୍ଟଃ । ସ ଭୂତାନାମଧିପତିର୍ବଭୂବ ।**
**ଇତ୍ୟସୌ ଆତ୍ମା ଅନ୍ତର୍ବହିଶ୍ଚ ଅନ୍ତର୍ବହିଶ୍ଚ ।**　　ମୈତ୍ରୀ ଉ: ୫।୨ ।

ଅର୍ଥାତ୍ ସେହି ପରମାତ୍ମା ଭୂତ ମଧ୍ୟରେ ପ୍ରବିଷ୍ଟ ହେଲେ । ସେ ଭୂତର ଅଧିପତି ହେଲେ । ସେହି ପରମାତ୍ମା ଭୂତର ଅନ୍ତରରେ ଓ ବାହାରେ ବିଦ୍ୟମାନ । ସେଥିହେତୁରୁ ତୈତ୍ତିରୀୟ ଉପନିଷଦ୍‌ରେ ମଧ୍ୟ ବ୍ରହ୍ମଙ୍କର ଏହି ଉଭୟ ବିଷୟ ବର୍ଣ୍ଣିତ ହୋଇଅଛି ।

**ତତ୍ସୃଷ୍ଟ୍ୱା । ତଦେବାନୁପ୍ରାବିଶତ୍ । ତଦନୁପ୍ରବିଶ୍ୟ ସଚ୍ଚ ତ୍ୟଚ୍ଚ ଅଭବତ୍ ।"**

ଅର୍ଥାତ୍ ବ୍ରହ୍ମ ଜଗତରେ ଅନୁପ୍ରବିଷ୍ଟ ହୋଇ ବିଶ୍ୱାନୁଗ ହେଲେ ଓ ତା' ସହିତ ବିଶ୍ୱାତିଗ ହୋଇ ମଧ୍ୟ ରହିଲେ । ଯଜୁର୍ବେଦର ଈଶୋପନିଷଦ୍‌ରେ ମଧ୍ୟ ଉକ୍ତ ଅଛି—

**ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ ।**
**ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ।**
ଯଜୁ ୪୦।୫, ଈଶ ୫ ।

ଅର୍ଥାତ୍—ପରମାତ୍ମା ସ୍ୱଭାବତଃ କ୍ରିୟାହୀନ ଓ ନିଶ୍ଚଳ ; କିନ୍ତୁ ଉପାଧିକ୍ରିୟାଦ୍ୱାରା ତାହାଙ୍କର କ୍ରିୟାର ପ୍ରକାଶ ହେବା ହେତୁରୁ ସେ ସଚଳ ମଧ୍ୟ । ସେ ଅତି ଦୂରରେ ଉପାଧିଶୂନ୍ୟ ଚିନ୍ମୟସ୍ୱରୂପରେ ଅବସ୍ଥିତ ଏବଂ ଅନ୍ତରାତ୍ମାରେ ମଧ୍ୟ ପ୍ରକାଶିତ ।

ଆତ୍ମା ସର୍ବବ୍ୟାପକ, ଅତଏବ ଜଗତର ଦୃଶ୍ୟ ଓ ଅଦୃଶ୍ୟ—ସକଳବସ୍ତୁ ଅନ୍ତର ଓ ବାହ୍ୟ ସର୍ବତ୍ର ସେ ଅବସ୍ଥାନ କରନ୍ତି । ଏହି କାରଣରୁ ସେ ବିଶ୍ୱାନୁଗ ଓ ବିଶ୍ୱାତିଗ ମଧ୍ୟ । ଗୀତାରେ ମଧ୍ୟ ଉକ୍ତ ଅଛି—

"ବହିରନ୍ତଶ୍ଚ ଭୂତାନାମଚରଂ ଚରମେବ ଚ ।"

ପରମାତ୍ମା ଚରାଚର ଭୂତମାନଙ୍କର ଅନ୍ତର ଓ ବାହାର-ଉଭୟତ୍ର ବିଦ୍ୟମାନ । ସେହି ହେତୁରୁ ଶ୍ରୁତିମଧ୍ୟ କହନ୍ତି—

ତ୍ରିଷ୍ୱେକପାଚ୍ଚରେଦ୍ ବ୍ରହ୍ମ ତ୍ରିପାଚ୍ଚରତ ଚୋତ୍ତରେ ।
ସତ୍ୟାନୃତୋପଭୋଗାର୍ଥୋ ଦ୍ୱୈତୀଭାବୋ ମହାତ୍ମନଃ ॥

ମୈତ୍ରୀ ୭।୧୧ ।

ତ୍ରିଲୋକ ମଧ୍ୟରେ ବ୍ରହ୍ମଙ୍କର ଏକପାଦମାତ୍ର; ତାହାର ଉତ୍ତରରେ ଅମୃତ ତ୍ରିପାଦ ଅବସ୍ଥିତ । ଇଦଂ ବା ଏହା କହିଲେ ଯାହା ବୁଝାଯାଏ, ତଦତିରିକ୍ତ ଚିଦାତ୍ମରୂପ ହିଁ ସତ୍ୟ । ପ୍ରତ୍ୟେକ ତତ୍ତ୍ୱ ଭିନ୍ନ; 'ଇଦଂ' ଶବ୍ଦର ବିଷୟୀଭୂତ ବାହ୍ୟ ବା ପରାକ୍ ରୂପହିଁ ଅସତ୍ୟ, ପରଂପରାରେ ଅଧ୍ୟାରୋପିତ ସେହି ସତ୍ୟ ଏବଂ ଅନୃତଦ୍ୱାରା ବ୍ୟବହାରସକାଶେ ପୂର୍ଣ୍ଣ ପରଂବ୍ରହ୍ମଙ୍କର ନାନାଭାବ କଳ୍ପିତ ହୋଇଅଛି । ଏହି ନାନାଭାବ ବାସ୍ତବିକ ନୁହେଁ । ନାରାୟଣ ଉପନିଷଦ୍‌ରେ ମଧ୍ୟ ବର୍ଣ୍ଣିତ ଅଛି—

"ଯଚ୍ଚ କିଂଚିଦ୍ ଜଗତ୍ ସର୍ବଂ ଦୃଶ୍ୟତେ ଶ୍ରୂୟତେଽପି ବା
ଅନ୍ତର୍ବହିଶ୍ଚ ତତ୍ ସର୍ବଂ ବ୍ୟାପ୍ୟ ନାରାୟଣଃ ସ୍ଥିତଃ ॥

୧୩ଶ ଅନୁବାକ ।

ଅର୍ଥାତ୍ ଜଗତରେ ଯାହା କିଛି ଦୃଷ୍ଟ ବା ସୃଷ୍ଟ ହୋଇଅଛି, ସେ ସମସ୍ତଙ୍କର ଅନ୍ତରରେ ନାରାୟଣ ବ୍ୟାପି କରି ରହିଅଛନ୍ତି ଏବଂ ସେ ସବୁର ବାହାରେ ମଧ୍ୟ ନାରାୟଣ ବିଦ୍ୟମାନ ।

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସ ଭୂମିଂ ସର୍ବତଃ ସ୍ପୃଷ୍ଟ୍ୱାଽତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ ॥ ଯଜୁ: ୩୧।୧ ।

ଯାହାଙ୍କର ମସ୍ତକ ଅସଂଖ୍ୟ, ନେତ୍ର ଓ ପାଦ ମଧ୍ୟ ଅସଂଖ୍ୟ, ସେହି ପରମାତ୍ମା ବିଶ୍ୱର ସର୍ବତ୍ର ବ୍ୟାପକ ହୋଇ ପଞ୍ଚ ସ୍ଥୂଳଭୂତ ଓ ପଞ୍ଚ ସୂକ୍ଷ୍ମଭୂତରେ ଗଠିତ ଜଗତକୁ ଅତିକ୍ରମ

କରି ଅବସ୍ଥାନ କରିଅଛନ୍ତି * । ପରଂବ୍ରହ୍ମ ପରମାତ୍ମାଙ୍କର ବିଶ୍ୱାନୁଗ, ବିଶ୍ୱାତିଗ ସଗୁଣ ଓ ନିର୍ଗୁଣଭାବ କଠୋପନିଷଦ୍‌ରେ ଶ୍ଲୋକଦ୍ୱୟରେ ଅତି ସୁନ୍ଦରଭାବରେ ବିବୃତ ହୋଇଅଛି :—

ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ।
ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ॥
ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁର୍ନ ଲିପ୍ୟତେ ଚାକ୍ଷୁଷୈର୍ବାହ୍ୟଦୋଷୈଃ
ଏକସ୍ତଥା ସର୍ବଭୂତାନ୍ତରାତ୍ମା ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ ॥
କଠ ୨।୨।୯।୧୧ ।

ଏକ ଅଗ୍ନି ଯେପରି ଅଖିଳ ବ୍ରହ୍ମାଣ୍ଡମଧ୍ୟରେ ରହି କାଷ୍ଠାଦି ବାହ୍ୟ ପଦାର୍ଥଭେଦରେ ବହୁରୂପ ଧାରଣ କରେ, ସେହିପରି ସକଳଭୂତର ଅନ୍ତରସ୍ଥ ଆତ୍ମା ଏକ ହୋଇ ମଧ୍ୟ ଦେହ-ଭେଦରେ ବିଭିନ୍ନରୂପରେ ପ୍ରତୀୟମାନ ହୁଅନ୍ତି । ବସ୍ତୁତଃ ସେ କଦାପି ବିକୃତ ହୁଅନ୍ତି ନାହିଁ । କାରଣ ତାଙ୍କର ସ୍ୱଭାବ ଅବିକୃତ । ବାହାରେ ଅର୍ଥାତ୍ ଉପାଧିସଂପର୍କଶୂନ୍ୟ ହୋଇ ଆକାଶ ପରି ସ୍ୱୀୟ ଅବିକୃତ ରୂପରେ ହିଁ ଅବସ୍ଥିତ ରହିଛନ୍ତି । ଏକ ହିଁ ବାୟୁ ଯେପରି ଜଗତ୍ ମଧ୍ୟରେ ବିଭିନ୍ନ ବାୟୁରୂପରେ ପ୍ରକାଶିତ ହୁଏ, ସେହିପରି ଏକ ହିଁ ଆତ୍ମା ସକଳ ଜୀବର ଅନ୍ତରରେ ରହି ଶରୀରଭେଦରେ ବିଭିନ୍ନ ରୂପରେ ପ୍ରକାଶିତ ହୁଏ । ବସ୍ତୁତଃ ସେ କଦାପି ବିକୃତ ନୁହନ୍ତି । ବାହାରରେ ସେ ସ୍ୱୀୟ ଅବିକୃତ ରୂପରେ ହିଁ ଅବସ୍ଥିତ ରହିଛନ୍ତି । ଏକହିଁ ସୂର୍ଯ୍ୟ ଯେପରି ସର୍ବ ଲୋକର ଚକ୍ଷୁଃସ୍ୱରୂପ ହୋଇ ମଧ୍ୟ ଅନ୍ୟମାନଙ୍କର ଚାକ୍ଷୁଷ ବା ବାହ୍ୟ ଦୋଷରେ ଲିପ୍ତ ହୁଅନ୍ତି ନାହିଁ (ଅର୍ଥାତ୍ ସୂର୍ଯ୍ୟଙ୍କ ଆଲୋକ ପାଇ ଚକ୍ଷୁ ଦେଖିପାରେ, ଅତଏବ ସୂର୍ଯ୍ୟ ସମସ୍ତଙ୍କର ଚକ୍ଷୁ । ସେହି ଚକ୍ଷୁରେ ଲୋକେ ଅପବିତ୍ର ବସ୍ତୁ ମଧ୍ୟ ଦର୍ଶନ କରନ୍ତି, ତଦ୍ୱାରା ଯେଉଁମାନଙ୍କର ମନମଧ୍ୟରେ

---

* ଏ ବିଷୟରେ ଆଗମରେ ମଧ୍ୟ ଏହିପରି ଉକ୍ତ ଅଛି :—
ଆତ୍ମା ସାକ୍ଷୀ ବିଭୁଃ ପୂର୍ଣ୍ଣଃ ସତ୍ୟାଦ୍ୱୈତଃ ପରାତ୍ପରଃ ।
ଦେହସ୍ଥୋଽପି ନ ଦେହସ୍ଥୋଜ୍ଞାତ୍ୱୈବଂ ମୁକ୍ତିଭାକ୍ ଭବେତ୍ ॥ ମହାନିର୍ବାଣଅ :—୮ ॥

ଅର୍ଥାତ୍ ଅବସ୍ଥାତ୍ରୟର ସାକ୍ଷୀସ୍ୱରୂପ ସର୍ବବ୍ୟାପୀ, ପୂର୍ଣ୍ଣ, ସତ୍ୟ, ଅଦ୍ୱୈତ, ପରାତ୍ପର ବ୍ରହ୍ମ ଏହି ଦେହସ୍ଥ ହୋଇ ମଧ୍ୟ ଦେହାନ୍ତରରେ ବିଦ୍ୟମାନ ଅଛନ୍ତି । ଏହିରୂପରେ ଯେ ପରମାତ୍ମାଙ୍କୁ ଜାଣନ୍ତି, ସେ ମୋକ୍ଷପ୍ରାପ୍ତ ହୁଅନ୍ତି ।

ଯେଉଁ ପାପର ଉଦୟ ହୁଏ, ତାହାକୁ ଏଠାରେ ଲୋକଦୁଃଖ ପାପ ଦୋଷ; ପୁନଶ୍ଚ ସେହି ଅପବିତ୍ର ବସ୍ତୁର ସଂସ୍ପର୍ଶଜନିତ ଯେଉଁ ଦୋଷ, ତାହା ଏଠାରେ ବାହ୍ୟଦୋଷ ଧରାଯିବ।) ସେହିପରି ସର୍ବଭୂତର ଅନ୍ତରାତ୍ମା ଏକ ହୋଇ ମଧ୍ୟ ଲୋକଦୁଃଖରେ ଦୁଃଖିତ ହୁଅନ୍ତି ନାହିଁ ; କାରଣ ସେ ବାହ୍ୟ, ଅର୍ଥାତ୍ ବିଶ୍ୱାତୀତ।

ଏସମ୍ବନ୍ଧରେ ଆଚାର୍ଯ୍ୟ ଶଙ୍କରଙ୍କର ଉକ୍ତି—

**ଏକୋ ଭାନୁସ୍ତଦସ୍ତପ୍ରତଫଳନବଶାତ୍ ଯସ୍ତ୍ୱନେକୋଦକାନ୍ତଃ**
**ନାନାତ୍ୱଂ ଯାତ୍ୟୁପାଧିସ୍ଥିତଗତସମତାଂ ଚାପି ତଦ୍‌ବତ୍ ପରାତ୍ମା।**
**ଭୂତେଷ୍ୱୁଚ୍ଚାବଚେଷୁ ପ୍ରତଫଳିତ ଇବାଭାତ ତାବତ୍ ସ୍ୱଭାବା-**
**ବଚ୍ଛିନ୍ନୋ ଯଃ ପରନ୍ତୁ ସ୍ଫୁଟମନୁପହୃତୋ ଭାସତେ ତୈଃ ସ୍ୱଭାବୈଃ॥**

ବେଦାନ୍ତକେଶରୀ—୫୬।

ଅର୍ଥାତ୍ ଏକ ହିଁ ସୂର୍ଯ୍ୟ ଆକାଶରେ ରହି ମଧ୍ୟ ନିଜର କିରଣମାନଙ୍କର ପ୍ରତିଫଳନ-ହେତୁରୁ ଅନେକ ଜଳାଧାରରେ ପ୍ରତିବିମ୍ବିତ ହୋଇ ନାନାତ୍ୱ ପ୍ରାପ୍ତ ହୁଅନ୍ତି; ଅର୍ଥାତ୍ ଉପାଧିର ଗତି ଓ ସ୍ଥିତି ସହିତ ସମତ୍ୱ ପ୍ରାପ୍ତ ହୁଅନ୍ତି। ସେହି ପ୍ରକାରେ ପରମାତ୍ମା ମଧ୍ୟ ନାନାରୂପ ଭୂତ-ଉପାଧିରେ ପ୍ରତିଫଳିତ ହୋଇ ସେମାନଙ୍କର ସ୍ୱଭାବଦ୍ୱାରା ପରିଚ୍ଛିନ୍ନ ହୁଅନ୍ତି; କିନ୍ତୁ ବାସ୍ତବରେ ସେହି ସମସ୍ତ ସ୍ୱଭାବରେ ପରିସ୍ଫୁଟ ହେଲେ ମଧ୍ୟ ନିଜେ ସେହି ସେହି ନାନାଭୂତ-ଉପାଧିରୁ ଅସମ୍ବଦ୍ଧ ଓ ଅବିଚ୍ଛିନ୍ନରୂପରେ ବିରାଜମାନ ରହିଛନ୍ତି।

ନିରଂଶ ବ୍ରହ୍ମଙ୍କର ଅଂଶକଳ୍ପନା କେବଳ ଜ୍ଞାନସୁଗମତା ନିମନ୍ତେ ଗୃହୀତ। ଅର୍ଥାତ୍ ପରଂବ୍ରହ୍ମ ମାୟାଉପହିତ ହେଲେ ମଧ୍ୟ ପ୍ରପଞ୍ଚର ସସୀମତାରେ ତାହାଙ୍କର ସସୀମତା ନିମଜ୍ଜିତ ହୁଏ ନାହିଁ। ସେ ବିଶ୍ୱାନୁଗ ହେଲେ ମଧ୍ୟ ବିଶ୍ୱାତୀତ ହୋଇ ରହିଥାନ୍ତି। କାରଣ, ବ୍ରହ୍ମଜ୍ୟୋତିର ପାଦାଂଶ ହିଁ ବିଶ୍ୱର ସୃଷ୍ଟି, ସ୍ଥିତି ଓ ସଂହାର କାର୍ଯ୍ୟସକାଶେ ପର୍ଯ୍ୟାପ୍ତ ହୁଏ। ଏହି କାରଣରୁ ଜଗତ୍ ବା ସୃଷ୍ଟିକୁ ତାହାଙ୍କର ନିଃଶ୍ୱାସ ବୋଲି କୁହାଯାଇଅଛି।

**"ଅସ୍ୟ ମହତ୍ ଭୂତସ୍ୟ ନିଃଶ୍ୱସିତମ୍**॥ ବୃହ: ୨।୪।୧୦।

ଅର୍ଥାତ୍ ଯେପରି ଅନାୟାସରେ ଜୀବ ନିଃଶ୍ୱାସ ପ୍ରଶ୍ୱାସ କରେ, ସୃଷ୍ଟି ସେହିପରି ପରଂ-ବ୍ରହ୍ମଙ୍କ ମହିମାର ଆୟାସହୀନ ବ୍ୟାପାର ମାତ୍ର। ଏ ବିଷୟରେ ପରଂବ୍ରହ୍ମଙ୍କର କୌଣସି ଆୟାସର ପ୍ରୟୋଜନ ହୁଏ ନାହିଁ।

ଏହିପରି ମହିମାଧର୍ମର ପ୍ରବ୍ୟୋତକ ପ୍ରଭୁଙ୍କଠାରୁ ମହିମାସ୍ୱାମୀ ମଧ୍ୟ ଆଦେଶ କରିଅଛନ୍ତି ଯେ, ଏକ ଅଲେଖ ପରଂବ୍ରହ୍ମଙ୍କ ଅଦ୍ଭୁତ ମହିମାରୁ ବିଶ୍ୱ ସୃଷ୍ଟି ହୋଇଅଛି । ସେହି ପରଂବ୍ରହ୍ମ ସର୍ବଦା ବିଶୁଦ୍ଧ, ଏକ ଓ ଅଦ୍ୱିତୀୟଭାବରେ ବିଶ୍ୱାତୀତ ହୋଇ ବିରାଜମାନ ଅଛନ୍ତି । ଏହି ବିଷୟ ପୂର୍ବୋକ୍ତ ବେଦାନ୍ତ ଓ ଶ୍ରୁତିବାକ୍ୟର ତାତ୍ପର୍ଯ୍ୟ ଅନୁସାରେ ପ୍ରଦର୍ଶିତ ହେଲା ଓ ଏହା କେବଳ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ସିଦ୍ଧାନ୍ତ ।

**ଠ—ପରମାତ୍ମାଙ୍କର ଆଭାସ ହିଁ ଜୀବାତ୍ମାନାମରେ ଖ୍ୟାତ ।**

ବର୍ତ୍ତମାନ ଅନ୍ୟ ଏକ ଆପତ୍ତି ଉତ୍ଥିତ ହୁଏ—ଯଦି ବିଶୁଦ୍ଧ ଅଦ୍ୱିତୀୟ ନିର୍ଗୁଣ ପରଂବ୍ରହ୍ମ ନିଜର ଈକ୍ଷଣରୂପ ମହିମାଦ୍ୱାରା ବିଶ୍ୱସୃଷ୍ଟି କରି ତନ୍ମଧ୍ୟରେ ପ୍ରବିଷ୍ଟ ହେଲେ ଓ ସେଥିରେ ରହି ମଧ୍ୟ ସେଥିରୁ ଭିନ୍ନଭାବରେ ନିର୍ଲିପ୍ତ ରହି ବିଶ୍ୱାତୀତ ହୋଇପାରିଲେ, ତେବେ କ'ଣ ସେହି ପରମାତ୍ମାଙ୍କର ଅଂଶ କେବଳ ଜୀବାତ୍ମା । ଅଥବା ଜୀବାତ୍ମାର ଅନ୍ୟ କୌଣସି କାରଣ ଅଛି ? ଏ ବିଷୟରେ ବିଭିନ୍ନ ଶ୍ରୁତିରେ ଭିନ୍ନ ମତ ଦେଖାଯାଏ । ବାଦରାୟଣ କହିଛନ୍ତି—

**ନାତ୍ମାଽଶ୍ରୁତେର୍ନିତ୍ୟତ୍ୱାଚ୍ଚ ତାଭ୍ୟଃ ।**　ବେ: ସୂ: ୨।୩।୧୭ ।

"ନ ଆତ୍ମା"—ଜୀବ ବ୍ରହ୍ମଙ୍କଠାରୁ ଉତ୍ପନ୍ନ ହୋଇ ନାହିଁ । "ଅଶ୍ରୁତେଃ"—ଅର୍ଥାତ୍ ଶ୍ରୁତିରେ ଏହାର ଉଲ୍ଲେଖ ନାହିଁ । "ତାଭ୍ୟଃ"—ସେହି ସମସ୍ତ ଶ୍ରୁତିବାକ୍ୟରୁ : "ନିତ୍ୟତ୍ୱାତ୍ ଚ" —ଜୀବର ନିତ୍ୟତ୍ୱ ଜଣାଯାଏ । * ଏହି ସୂତ୍ରର ଭାଷ୍ୟ ଶଙ୍କର ଏହିପରି କରିଛନ୍ତି—

**"ସର୍ବେ ଏତତ୍ ଆତ୍ମାନୋ ବ୍ୟୁଚ୍ଚରନ୍ତି । ଇତି ଭୋକ୍ତୃଣାମାତ୍ମନାଂ ପୃଥକ୍ ସୃଷ୍ଟିଂ ଶାସ୍ତି :—**

**ଯଥା ସୁଦୀପ୍ତାତ୍ ପାବକାତ୍ ବିସ୍ଫୁଲିଙ୍ଗାଃ ସହସ୍ରଶଃ ପ୍ରଭବନ୍ତି ସ୍ୱରୂପାଃ ।**
**ତଥା କ୍ଷରାଦ୍ ବିବିଧାଃ ସୌମ୍ୟଭାବାଃ ପ୍ରଜାୟନ୍ତେ ତତ୍ର ଚୈବାପି ଯନ୍ତି ॥**
**ଇତି ଚ ଜୀବାତ୍ମନାଂ ଉତ୍ପତ୍ତିପ୍ରଳୟାବୁଚ୍ୟେତେ, ସରୂପବଚନାତ୍ ।**
**ଜୀବାତ୍ମନୋ ହି ପରମାତ୍ମନା ସରୂପା ଭବନ୍ତି, ଚୈତନ୍ୟଯୋଗାତ୍ ॥"**

---

* ଆତ୍ମା ଜୀବୋ ନୋତ୍ପଦ୍ୟତେ । କସ୍ମାତ୍ ? ଅଶ୍ରୁତେଃ ଉତ୍ପତ୍ତିପ୍ରକରଣେ ହ୍ୟସ୍ୟୋତ୍ପତ୍ତିଶ୍ରବଣଂ ନାସ୍ତି ଅପିଚ ତାଭ୍ୟଃ ଶ୍ରୁତିଭ୍ୟଃ ଅଜତ୍ୱାଦି—ଶବ୍ଦେଭ୍ୟଶ୍ଚ ତସ୍ୟ ନିତ୍ୟତ୍ୱମବଗମ୍ୟତେ । —ଅର୍ଥାତ୍ ଆତ୍ମା ଆକାଶାଦିପରି ଉତ୍ପନ୍ନ ପଦାର୍ଥ ନୁହନ୍ତି । କାରଣ 'ଉତ୍ପତ୍ତି ପ୍ରକାରରେ ଆତ୍ମାର ଉତ୍ପତ୍ତି- ବର୍ଣ୍ଣନ କରାନାହାନ୍ତି । ପ୍ରଯୁକ୍ତ, "ଅଜ"—ଜନ୍ମରହିତ—ଇତ୍ୟାଦିବାକ୍ୟରେ ତାହାଙ୍କର ନିତ୍ୟତା ହିଁ ବର୍ଣ୍ଣନ କରିଅଛନ୍ତି ।

ଶ୍ରୁତି ଏହିପରି ଜୀବଭୋଗ୍ୟ ପ୍ରାଣାଦିର ସୃଷ୍ଟି ବିଷୟରେ ଉପଦେଶ ଦେଇଛନ୍ତି । ଏହି ସକଳ ଆତ୍ମା ତାହାଙ୍କଠାରୁ ବ୍ୟୁଚ୍ଚରିତ ହୁଏ ; ଶ୍ରୁତିର ଏହି ଉକ୍ତିରେ ଭୋକ୍ତା ଆତ୍ମାମାନଙ୍କର ସୃଷ୍ଟି ଉପଦିଷ୍ଟ ହୋଇଅଛି । ଯେପରି ପ୍ରଦୀପ୍ତ ପାବକରୁ ସହସ୍ର ସ୍ଫୁଲିଙ୍ଗ ଜନ୍ମେ ସେହିପରି ଏହି ଅକ୍ଷର-ବ୍ରହ୍ମଙ୍କଠାରୁ ଅକ୍ଷର-ସମାନରୂପୀ ବିବିଧ ପଦାର୍ଥ ଜନ୍ମେ ; ପୁନଶ୍ଚ ଅକ୍ଷରରେ ହିଁ ଲୟପ୍ରାପ୍ତ ହୁଏ ।

ଏହି ଶ୍ରୁତିରେ "ସମାନରୂପୀ"—ଶବ୍ଦ ଥିବାରୁ ଜୀବାତ୍ମାର ଉତ୍ପତ୍ତି ଓ ବିନାଶ କଥିତ ହୋଇଅଛି—ଏ କଥା ବୁଝିବାକୁ ହେବ । ସ୍ଫୁଲିଙ୍ଗ ବା ଅଗ୍ନି ସମାନରୂପୀ ଜୀବାତ୍ମା ମଧ୍ୟ ପରମାତ୍ମାଙ୍କ ସମାନରୂପୀ (ଉଭୟ ହିଁ ଚେତନ, ଅତଏବ ସମାନରୂପୀ) ।

ଛାନ୍ଦୋଗ୍ୟ ଶ୍ରୁତିରେ ଅଛି—

**"ସନ୍‌ମୂଳାଃ ସୋମ୍ୟେମାଃ ପ୍ରଜାଃ" ଇତ୍ୟାଦି ।**

ଅର୍ଥାତ୍ ପ୍ରଜା ବା ଜୀବସମୂହ ବ୍ରହ୍ମରୁ ଉତ୍ପନ୍ନ; କାରଣ, ଏକ ବିଜ୍ଞାନରୁ ସର୍ବବିଜ୍ଞାନର ଉତ୍ପତ୍ତି ଇତ୍ୟାଦି ।

ଏଠାରେ ଏପରି ସଂଶୟ ହୁଏ ଯେ, ଚିଜ୍ଜଡ଼ାତ୍ମକ ଜଗତର କାର୍ଯ୍ୟସ୍ୱରୂପତ୍ୱ ଅବଗମ୍ୟ ହେବା ହେତୁରୁ ଜୀବର ଉତ୍ପତ୍ତି ସ୍ୱୀକାର କରାଯାଏ କି ନାହିଁ ? କାରଣ, ଜଗତରେ କାର୍ଯ୍ୟ-ବସ୍ତୁର କେବଳ ଉତ୍ପତ୍ତି ସ୍ୱୀକୃତ; କିନ୍ତୁ ଏହି ପ୍ରଶ୍ନ ଠିକ୍ ନୁହେଁ । କାରଣ ଜୀବର ଜନ୍ମବିଷୟରେ କୌଣସି ଶ୍ରୁତିବାକ୍ୟ ନାହିଁ । ଶ୍ରୁତିମାନଙ୍କରେ ଜୀବର ନିତ୍ୟତ୍ୱ ହିଁ ଉପଲବ୍‌ଧ ହୁଏ ।

**"ନ ଜାୟତେ ମ୍ରିୟତେ ବା ବିପଶ୍ଚି-**
**ନ୍ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍ ।**
**ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ**
**ନ ହନ୍ୟତେ ହନ୍ୟମାନେ ଶରୀରେ ॥"**

କଠ: ୧।୨।୧୮ ।

ଅର୍ଥାତ୍ ଜୀବାତ୍ମାର ଜନ୍ମ ବା ମୃତ୍ୟୁ ନାହିଁ । ସେ ଦେହରେ ଲିପ୍ତ ନୁହନ୍ତି । ଜନ୍ମମୃତ୍ୟୁ ଦେହର ଧର୍ମ; ଦେହର ଧ୍ୱଂସରେ ଜୀବାତ୍ମାର ଧ୍ୱଂସ ହୁଏ ନାହିଁ, ଅତଏବ ଜୀବାତ୍ମା ନିତ୍ୟ ଓ ଜନ୍ମରହିତ । ତେବେ ଜୀବ କ'ଣ ? ଏହି ପ୍ରଶ୍ନର ଉତ୍ତରରେ କୁହାଯାଇଛି—

**"ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ ।"**

ଅର୍ଥାତ୍ ଏକ ପରମାତ୍ମା ହିଁ ସର୍ବଭୂତମାନଙ୍କରେ ଜୀବାତ୍ମାସ୍ୱରୂପରେ ଗୂଢ଼ ଅଛନ୍ତି । ତେବେ ତୈତ୍ତିରୀୟ ଶ୍ରୁତିରେ ଜୀବର କାର୍ଯ୍ୟସ୍ୱରୂପତ୍ୱ ବର୍ଣ୍ଣନାର ଅଭିପ୍ରାୟ କ'ଣ ? ଏହାର ଉତ୍ତରରେ ବେଦାନ୍ତୀ କହନ୍ତି ଯେ, ଜଗତରେ ସୃଷ୍ଟି କାରଣୀ ଓ ବ୍ରହ୍ମଶକ୍ତିରୂପିଣୀ ମାୟା କେବଳ ପରମାତ୍ମାଙ୍କଠାରୁ "ପ୍ରସୃଷ୍ଟ" ହୋଇ ଅର୍ଥାତ୍ ଉପାଧିରୂପରେ ଅଭିବ୍ୟକ୍ତ ହୋଇ ଜୀବାଦି ସୃଷ୍ଟି କରେ । ଅତଏବ ଜଗତ୍ ବା ଜୀବାଦି ମାୟାଜନିତ ଉପାଧିର ଅଭିବ୍ୟକ୍ତି ମାତ୍ର । ନିଜେ ବସ୍ତୁ ନୁହେଁ, ପରମାତ୍ମା କେବଳ ଏକମାତ୍ର ନିତ୍ୟବସ୍ତୁ । ଜୀବାଦି ତାହାଙ୍କର ଉପାଧିଭୂତ ବ୍ୟାବହାରିକ ଆଶ୍ରୟ ମାତ୍ର । ଅତଏବ ଆତ୍ମା ନିତ୍ୟ । ଆତ୍ମାର ଜୀବତ୍ୱରୂପକ ଶରୀର-ଉପାଧି ନେଇ ଶ୍ରୁତିରେ ଜୀବର ଉତ୍ପତ୍ତି ବୋଲି କଥିତ ହୋଇଛି ।

ଏ ବିଷୟରେ ବାଦରାୟଣ କହୁଛନ୍ତି—

**ଜ୍ଞୋଽତଏବ ।**   ବେ: ସୂ: ୨।୩।୧୮ ।

ଅର୍ଥାତ୍—ଆତ୍ମା ନିତ୍ୟ ଚୈତନ୍ୟସ୍ୱରୂପ; ତାଙ୍କର ଉତ୍ପତ୍ତି ନାହିଁ । ଅତଏବ ସେ ପରମାତ୍ମାଙ୍କଠାରୁ ଭିନ୍ନ ନୁହନ୍ତି ।*

"ଯୋ ବିଜ୍ଞାନେ ତିଷ୍ଠନ୍" ଓ "ସୁଖମହମସ୍ୱାପ୍ସମ୍ ନ କିଞ୍ଚିଦବେଦିଷମ୍"

ଇତ୍ୟାଦି ଶ୍ରୁତିରୁ ବୁଝାଯାଏ ଯେ, ଜୀବ ଜ୍ଞାନରୂପୀ ବା ଚୈତନ୍ୟସ୍ୱରୂପୀ ଓ ସୁଖସ୍ୱରୂପୀ । "ଅହଂ" ପଦବାଚ୍ୟ ନିତ୍ୟୋପଲବ୍ଧିରେ ଜାଗ୍ରତ୍‌ରୂପରେ ସୁଷୁପ୍ତି ପ୍ରଭୃତି ସର୍ବାବସ୍ଥାର ସାକ୍ଷୀ । ସୁତରାଂ ଆତ୍ମା ନିତ୍ୟ ଚୈତନ୍ୟସ୍ୱରୂପୀ । ଅତଏବ ସେ ଉତ୍ପତ୍ତିମାନ୍ ନୁହନ୍ତି ।

ଏହାପରେ ଆତ୍ମାର ଅଣୁତ୍ୱାଦିଭାବ ନିରାସ କରି ବାଦରାୟଣ କହୁଅଛନ୍ତି :—

**ଅଂଶୋ ନାନାବ୍ୟପଦେଶାଦନ୍ୟଥା ଚାଽପି ଦାଶ-କିତବାଦି-ତ୍ୱମଧୀୟତ ଏକେ ।**   ବେ: ସୂ: ୨-୩-୪୩ ।

* ଅତଏବ ଉକ୍ତାଦେବ ହେତୋଃ ଆତ୍ମା ଜ୍ଞଃ ନିତ୍ୟଚୈତନ୍ୟସ୍ୱରୂପଃ । ଯସ୍ମାନ୍ନୋତ୍ପଦ୍ୟତେ ପରମେବ ବ୍ରହ୍ମାବିକୃତମୁପାଧିସମ୍ପର୍କାତ୍ ଜୀବଭାବେନାବତିଷ୍ଠତେ । ତସ୍ମାଦେବ କାରଣାଦାତ୍ମା ଜ୍ଞଃ ନିତ୍ୟୋଦିତଚୈତନ୍ୟରୂପ ଇତ୍ୟର୍ଥଃ ।। ଅର୍ଥାତ୍ ଯେଉଁ ହେତୁରୁ ଆତ୍ମାର ଉତ୍ପତ୍ତି ବା ପ୍ରଳୟ ନାହିଁ, ଅତଏବ ଅବିକୃତ ବ୍ରହ୍ମହିଁ ଉପାଧିବଶରୁ ଜୀବଭାବ ପ୍ରାପ୍ତ ହୁଏ । ଆତ୍ମା ନିତ୍ୟ ଓ ଚୈତନ୍ୟ-ସ୍ୱରୂପୀ । ଆଗନ୍ତୁକ ଚୈତନ୍ୟ ନୁହେଁ ।

ବହୁ କାରଣରୁ ଜୀବ ଈଶ୍ୱରାଂଶ ; କୌଣସି ମତରେ ଈଶ୍ୱର ଓ ଜୀବର ସ୍ୱାମୀ ଭୃତ୍ୟ ସମ୍ବନ୍ଧ ଯୁକ୍ତ ନୁହେଁ । "ଦାଶକିତବାଦବ୍ରହ୍ମ"—ଏହି ଆଥର୍ବଣ ଉକ୍ତି ଓ "ତତ୍ତ୍ୱମସି" ଇତ୍ୟାଦି ବାକ୍ୟଦ୍ୱାରା ମଧ୍ୟ ଅନ୍ୟ ପ୍ରକାରର ଜୀବର ବ୍ରହ୍ମତ୍ୱ ନିର୍ଣ୍ଣୀତ ହୋଇପାରେ । ଅତଏବ ଶ୍ରୁତିରେ ଭେଦ ଓ ଅଭେଦରୂପକ ଉପଦେଶ ବା ବ୍ୟବହାର ଥିବାରୁ ଜୀବ ଓ ବ୍ରହ୍ମର ଅଂଶାଂଶୀଭାବ ପ୍ରତୀତ ହୁଏ * । "ଦ୍ୱାସୁପର୍ଣ୍ଣା"—ଇତ୍ୟାଦି ଶ୍ରୁତି-ବାକ୍ୟରେ ଏକ ଈଶ୍ୱର ଓ ଦ୍ୱିତୀୟ ଜୀବ—ଅର୍ଥାତ୍ ଜୀବ ଓ ବ୍ରହ୍ମର ଦ୍ୱୈତଭାବ ପ୍ରତୀତ ହୁଏ ; କିନ୍ତୁ ପୂର୍ବୋକ୍ତ ଶ୍ରୁତିବର୍ଣ୍ଣନାରୁ ଏପରି ସନ୍ଦେହ ହୋଇପାରେ ଯେ—ମାୟା-ପରିଚ୍ଛିନ୍ନ ବ୍ରହ୍ମ କେବଳ ଜୀବ ବା ଜୀବ-ବ୍ରହ୍ମଙ୍କଠାରୁ ପୃଥକ୍‌ଭାବରେ ଅବସ୍ଥିତ; ତୃତୀୟ ପକ୍ଷରେ ବ୍ରହ୍ମଙ୍କ ସମ୍ବନ୍ଧୀ ଅଂଶ କ'ଣ ଜୀବ ? କାରଣ, ଶ୍ରୁତିରେ ନାନା ହେତୁ କଥିତ ହୋଇଥିବାରୁ ଜୀବ ବ୍ରହ୍ମଙ୍କର ଅଂଶ ବୋଲି କୁହାଯାଇପାରେ; କିନ୍ତୁ ଏହି ସବୁ ନାନା ପ୍ରକାର ସଂଶୟ ଯୁକ୍ତିଯୁକ୍ତ ନୁହେଁ । ମାୟାପରିଚ୍ଛିନ୍ନ ବ୍ରହ୍ମହିଁ ଜୀବ—ଏ ବିଷୟରେ ଉପନିଷଦ୍ ବାକ୍ୟ ସକଳ ସନ୍ଦେହ ନିରାକରଣ କରେ ।

ଘଟସଂବୃତମାକାଶଂ ନୀୟମାନେ ଘଟେ ଯଥା ।
ଘଟୋ ନୀୟେତ ନାଽକାଶଂ ତଦ୍‌ବଜ୍ଜୀବୋ ନଭୋପମଃ ॥

ବ୍ରହ୍ମବିନ୍ଦୁ ଉପଃ ୧୩ ।

ଯଦିଚ ଏପରି ଆପାତତଃ ପ୍ରତୀତ ହୁଏ ଯେ, ଘଟ ସ୍ଥାନାନ୍ତରିତ ହେବାଦ୍ୱାରା ଘଟାବସ୍ଥିତ ଆକାଶ ମଧ୍ୟ ସ୍ଥାନାନ୍ତରିତ ହେଉଛି, ଅତଏବ ଉପାଧିର ବିନାଶରେ ଜୀବ ମଧ୍ୟ ବିନଷ୍ଟ ହୁଏ, କିନ୍ତୁ ଏହା ଠିକ୍ ନୁହେଁ । କାରଣ ଘଟର ବିନାଶରେ ପ୍ରକୃତରେ ଘଟାବସ୍ଥିତ ଆକାଶର ବିନାଶ ହେଉ ନାହିଁ । ସେହିପରି ଉପାଧିର (ଦେହର) ବିନାଶ ହେଲେ ଜୀବର ବିନାଶ ସମ୍ଭବପର ନୁହେଁ । ଆକାଶ ଓ ଆତ୍ମା (ଜୀବାତ୍ମା) ଉଭୟ ହିଁ ଅପରସୀମ ; ସୁତରାଂ ଦେହାବସ୍ଥିତ ଆତ୍ମା ଓ ଘଟାବସ୍ଥିତ ଆକାଶ—ଉଭୟର ବିନାଶ ଅସମ୍ଭବ । "ତତ୍ତ୍ୱମସି—ବାକ୍ୟଦ୍ୱାରା ମଧ୍ୟ ଜୀବ ଓ ବ୍ରହ୍ମଙ୍କର ଅଭେଦ ସମ୍ବନ୍ଧ ବୁଝାଯାଏ । ଆହୁରି ମଧ୍ୟ—

* ଜୀବୋ ବ୍ରହ୍ମଣୋଽଂଶୋ ଭବିତୁମର୍ହତ୍ୟଗ୍ନି ର୍ବିସ୍ଫୁଲିଙ୍ଗ ଇବୈତତ୍ପ୍ର ତିଜ୍ଞା । ଅତ ହେତୁର୍ନାନ୍ୟେତି । ଭବତି ହି ଭେଦେ ନୋପଦେଶୋ ଜୀବପରମଯୋଃ । "ସୋଽନ୍ୱେଷ୍ଟବ୍ୟଃ" ଇତ୍ୟାଦୌ । ଅନ୍ୟଥାଽପି ପ୍ରକାରାନ୍ତରେଣ ଚ । ଏକେ ଶାଖିନଃ ତସ୍ୟ ଦାସକିତବାଦିଭାବମଧୀୟତେ ବିସ୍ତରସ୍ତୁ ଭାଷ୍ୟେ ।" ଅର୍ଥାତ୍—ଜୀବେଶ୍ୱର ସମ୍ବନ୍ଧ କିପରି ? ସେବ୍ୟସେବକସମ୍ବନ୍ଧ ବା ଅଗ୍ନି ଓ ବିସ୍ଫୁଲିଙ୍ଗ ତୁଲ୍ୟ ଅଂଶାଂଶୀଭାବସମ୍ବନ୍ଧ ? ଏହାର ସିଦ୍ଧାନ୍ତ ଏହିପରି—ଜୀବ ପରଂବ୍ରହ୍ମଙ୍କର ଅଂଶ । କାରଣ, ଶ୍ରୁତିରେ ବ୍ରହ୍ମ ଓ ଜୀବର ଭେଦକଥନ ଅନ୍ୟପ୍ରକାର, ଅର୍ଥାତ୍ ଭେଦ ଓ ଅଭେଦ ଉଭୟ ପ୍ରକାର ଶ୍ରୁତିବାକ୍ୟ ମିଳେ । କୌଣସି କୌଣସି ଶାଖାରେ ବ୍ରହ୍ମ ଦାସାଦିଭାବରେ ବର୍ଣ୍ଣିତ ହୋଇଅଛନ୍ତି—ଅର୍ଥାତ୍ ଦାସାଦି ମଧ୍ୟ ବ୍ରହ୍ମ ଏପରି କଥନ ଅଛି ।

ଘଟେ ଭିନ୍ନେ ଯଥାକାଶଃ ସ୍ୟାତ୍ ଯଥାପରଃ ।
ଏବଂ ଦେହେ ମୃତେ ଜୀବୋ ବ୍ରହ୍ମ ସଂପଦ୍ୟତେ ତତଃ ।।

ଇତ୍ୟାଦି ଶ୍ରୁତିଦ୍ୱାରା ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ ଜୀବ ଓ ବ୍ରହ୍ମ ଅଭିନ୍ନ, ଏ ବିଷୟରେ ଆହୁରି ମଧ୍ୟ ସଂଶୟ ହୁଏ—ଜୀବ ଓ ବ୍ରହ୍ମର ସ୍ୱାମୀ-ଭୃତ୍ୟସମ୍ବନ୍ଧ ପ୍ରତିପନ୍ନ । କାରଣ ଅଂଶୁମାନ୍ ସୂର୍ଯ୍ୟଙ୍କର ଅଂଶୁ ଯେପରି ଅଂଶ, ଜୀବ ମଧ୍ୟ ବ୍ରହ୍ମଙ୍କର ସେପରି ଅଂଶବିଶେଷ । ସୁବାଳ ଉପନିଷଦ୍‌ରେ ଉକ୍ତ ଅଛି—

"ଉଭବୋ ସମ୍ଭବୋ ଦିବ୍ୟୋ ଏକୋ ନାରାୟଣୋ
ମାତା ପିତା ଭ୍ରାତା ନିବାସଃ ଶରଣଂ ସୁହୃଦ୍‌ଗତିପରାୟଣଃ ।।"

ଏଥିରୁ ମଧ୍ୟ ଉଭୟଙ୍କର ସ୍ୱାମୀଭୃତ୍ୟସମ୍ବନ୍ଧ ପ୍ରତିପନ୍ନ ହୁଏ, କିନ୍ତୁ ଏହି ମତ ଠିକ୍ ନୁହେଁ । ଜୀବ ଓ ବ୍ରହ୍ମର ସମ୍ବନ୍ଧ ଅନ୍ୟପ୍ରକାର ନିର୍ଣ୍ଣୀତ ହୋଇଅଛି । ପୂର୍ବୋକ୍ତ ଆଥର୍ବଣ-ଉକ୍ତି, "ତତ୍ତ୍ୱମସି"-ବଚନ, ଦାସବ୍ରହ୍ମ, କିତବବ୍ରହ୍ମ, ବ୍ରହ୍ମଦାସା ବ୍ରହ୍ମମେ କିତବା ଇତି"—ଇତ୍ୟାଦି ବଚନ-ଜାତରୁ ସ୍ପଷ୍ଟ ଜଣାଯାଏ ଯେ, ସମୁଦାୟ ଜୀବ ବ୍ରହ୍ମସ୍ୱରୂପ, ଅଂଶାଂଶୀଭାବ ନୁହେଁ । ଏହି ଅଂଶାଶୀଭାବ ବା ସ୍ୱାମୀଭୃତ୍ୟସମ୍ବନ୍ଧରେ ବାଦରାୟଣ ସୂତ୍ର କହେ—

**ମନ୍ତ୍ର ବର୍ଣ୍ଣାଚ ।** ବେ· ସୂ· ୨।୩।୪୪ ।

ଅର୍ଥାତ୍ ଏପରି ଶଙ୍କା କରାଯାଇପାରେ ଯେ, ବେଦର ମନ୍ତ୍ର ବର୍ଣ୍ଣରେ ଅଂଶାଂଶୀଭାବ କଳ୍ପନା କରାଯାଇଛି । "ଏତାବାନସ୍ୟ ମହିମା", "ପାଦୋଽସ୍ୟ ସର୍ବଭୂତାନି"—ଅର୍ଥାତ୍ ଏହି ସମୁଦାୟ ବିଶ୍ୱ ପରଂବ୍ରହ୍ମଙ୍କର ମହିମା ଭୂତଗଣ ସେହି ବ୍ରହ୍ମଙ୍କର ପାଦ ବା ଅଂଶ—ଇତ୍ୟାଦି ବେଦବାକ୍ୟରୁ ମଧ୍ୟ ଭୂତଗଣ ବା ଜୀବବ୍ରହ୍ମଙ୍କର ଅଂଶ ବୋଲି ଆପାତତଃ ପ୍ରତୀତ ହେଉଛି ।

**ଅପିଚ ସ୍ମର୍ଯ୍ୟତେ ।** ବେ: ସୂ: ୨।୩।୪୫ ।

କେବଳ ବର୍ଣ୍ଣରେ କାହିଁକି, ଗୀତାରେ ମଧ୍ୟ ଜୀବର ଅଂଶତ୍ୱକଳ୍ପନା ବୋଧହୁଏ :—

ମମୈବାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।
ମନଃ ଷଷ୍ଠାନୀନ୍ଦ୍ରିୟାଣି ପ୍ରକୃତିସ୍ଥାନି କର୍ଷତି　　ଗୀତା ୧୫ । ୭ ।

ଅର୍ଥାତ୍ ଏହି ସନାତନ ବା ମାୟାବଶତଃ ସଦା ସଂସାରରୂପରେ ପ୍ରସିଦ୍ଧ ଜୀବ ଆମ୍ଭର ଅଂଶ କେବଳ । ପ୍ରକୃତିରେ ଅବସ୍ଥିତ ମନ, ପଞ୍ଚ ଇନ୍ଦ୍ରିୟଙ୍କୁ ଜୀବଲୋକରେ ସଂସାର ଉପଭୋଗ ନିମନ୍ତେ ଆକର୍ଷଣ କରେ । ପୂର୍ବରୁ ମଧ୍ୟ ଗୀତାରେ ଉକ୍ତ ହୋଇଛି—

"ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ।"
ଗୀତା ୧୦-୪୨ ।

ବିଶେଷ କହିବା ନିଷ୍ପ୍ରୟୋଜନ—ଆମ୍ଭେ ଏକାଂଶରେ ସର୍ବ ଜଗତ୍‌କୁ ବ୍ୟାପୀ ରହିଅଛୁ ଇତ୍ୟାଦି । ଏହିସବୁ ବର୍ଣ୍ଣନାରୁ ଜୀବ ବ୍ରହ୍ମଙ୍କର ଅଂଶ ବୋଲି ପ୍ରତୀତ ହେବା ସମ୍ଭବ ହୋଇପାରେ; କିନ୍ତୁ ଏହା ଠିକ୍ ନୁହେଁ । ବାଦରାୟଣ କହିଛନ୍ତି—

"ପ୍ରକାଶାଦିବନ୍ନୈବଂ ପରଃ" ।। ବେ: ସୂ: ୨।୩।୪୬ ।

ଯାପର ଆଲୋକଭଳି ଜୀବ ଗୁଣଯୋଗରେ ଉପାଧିମାନ୍ ହୁଏ; କିନ୍ତୁ ପରମାତ୍ମା ସେପରି ନୁହଁନ୍ତି । ଅତଏବ ଜୀବର ଅଂଶତ୍ୱ ଔପାଧିକ ବା ବ୍ୟାବହାରିକ ମାତ୍ର । *

ପୂର୍ବୋକ୍ତ ଶଙ୍କାର ନିରାକରଣ ଏପରି—ପ୍ରଥମେ ନିୟନ୍ତାଦ୍ୱାରା ନିୟମ୍ୟ ନିୟମିତ ବା ଶାସିତ ହେବାକୁ ହେଲେ, ନିୟନ୍ତାଙ୍କର ଶକ୍ତିର ମହିମା ବା ଅଦ୍ଭୁତ ଶକ୍ତିଦ୍ୱାରା ନିୟମ୍ୟର ପ୍ରଶାନ୍ତିକୁ ଶାସନ କୁହାଯାଏ ନାହିଁ । ସେହି ଅଦ୍ଭୁତ ଶକ୍ତି କ୍ରିୟାଯୋଗରେ ସେହି ଶାସନ ପରିଚାଳିତ କରିପାରେ; ସେଥିନିମନ୍ତେ ଅନବଚ୍ଛିନ୍ନ ଏକରସାତ୍ମକ ପଦାର୍ଥସତ୍ତା ଆବଶ୍ୟକ । ଅତଏବ ଅଂଶରୂପୀ ଜୀବ ଅଂଶୀ-ବ୍ରହ୍ମଙ୍କଠାରୁ ପୃଥକ୍ ନୁହେଁ । ପାର୍ଥକ୍ୟ ଏହି ଯେ, ସେହି ଅନବଚ୍ଛିନ୍ନ ଏକରସାତ୍ମକ ବ୍ରହ୍ମପଦାର୍ଥ ଜୀବରୂପରେ ଅବିଦ୍ୟାକଳ୍ପିତ ଉପାଧିଦ୍ୱାରା ବିଶେଷିତ ହୁଏ; ଅର୍ଥାତ୍ ଅବିଦ୍ୟୋପାଧିକ ପରମାତ୍ମା କେବଳ ଜୀବରୂପରେ ଅଭିବ୍ୟକ୍ତ ହୁଅନ୍ତି ।

ଜୀବାତ୍ମା ସୁଖଦୁଃଖାଦିଦ୍ୱାରା ଉପାଧିଯୁକ୍ତ ହୋଇ ଇୟତ୍ତାପରିଚ୍ଛିନ୍ନ ବା ଔପଚାରିକ-ରୂପରେ ପ୍ରତୀତ ହୁଏ । ସେହି କାରଣରୁ ସେଥିରେ ଅଂଶତ୍ୱ ଆରୋପିତ ହୋଇଥାଏ । * *

* ଯଥା ଜୀବସ୍ତଥାପରଃ ପରମେଶ୍ୱରୋ ନ ଭବତି । ପ୍ରକାଶାଦିବଦିତି ଦୃଷ୍ଟାନ୍ତଃ । ଯଥା ପ୍ରକାଶଃ ସୌର୍ଯ୍ୟୋଷ୍ଣାଦିମୟୋ ବା ପରମାର୍ଥତସ୍ତଦ୍ଭାବ ନ ପ୍ରତିପଦ୍ୟତେ, ତଥେତି ଯୋଜନା । ଆଦିଶବ୍ଦାଦାକାଶାଦି ଦୃଷ୍ଟାନ୍ତୋ ଗ୍ରାହ୍ୟଃ—ଅର୍ଥାତ୍ ଯେପରି ସୌରାଲୋକପ୍ରଭୃତି ଅଙ୍ଗୁଲ୍ୟାଦି ଉପାଧିଦ୍ୱାରା ବକ୍ରାଦିଭାବ ପ୍ରାପ୍ତ ହେଲେ ମଧ୍ୟ ସେମାନଙ୍କର ପ୍ରକୃତ ସ୍ୱରୂପରେ ସେ ସକଳର ଅଭାବ ବିଦ୍ୟମାନ; ସେହିପରି ବୁଦ୍ଧି ଆଦି ଉପାଧିସଂସର୍ଗରେ ଜୀବାଂଶର ଦୁଃଖ ହେବା ପରିଦୃଷ୍ଟ ହେଲେ ମଧ୍ୟ ସେହି ଦୁଃଖଦ୍ୱାରା ଅଂଶୀ ପରମାତ୍ମାଙ୍କର ଦୁଃଖ ହୁଏ ନାହିଁ । ପରମାତ୍ମାଙ୍କର ସ୍ୱରୂପରେ ଦୁଃଖର ଅଭାବ ହେଲେ ମଧ୍ୟ ଭ୍ରାନ୍ତଜୀବର କେବଳ ଭ୍ରମବଶତଃ ଦୁଃଖ ହେବା ଦେଖାଯାଏ ।

* * ଗୀତାରେ ଯେଉଁ ଅଂଶ କଥା କୁହାଯାଇଛି, ତାହା ଜୀବର ସ୍ୱରୂପ ବୁଝାଇବାନିମନ୍ତେ କେବଳ । ପ୍ରକୃତରେ ତାହାଙ୍କର ଅଂଶ ରହିପାରେ ନାହିଁ । କାରଣ, ଅଂଶବୋଲି କହିଲେ

ପ୍ରକୃତରେ ଜୀବାତ୍ମା ପରମାତ୍ମାଙ୍କଠାରୁ ଭିନ୍ନ ନୁହେଁ । ନିରୁପାଧିକ ଦୁଃଖିତ୍ୱାଦିଗୁଣ ମୂଳତଃ ସେଥିରେ ନାହିଁ । କେବଳ ଅବିଦ୍ୟାବଶତଃ ଜୀବ ସଂସାରୀ ହୋଇ ଦେହାଦିବିଗ୍ରହସଂଯୋଗରେ ଅଭିମାନାତ୍ମକ ଆତ୍ମଭାବାପନ୍ନ ସୁଖ-ଦୁଃଖାଦି ଅନୁଭବ କରେ । ଜୀବ ଯଦି ପରମାତ୍ମାଙ୍କର "ସ୍ୱପରିଣାମଭୂତ" ଅଂଶ ହୁଅନ୍ତା, ତାହାହେଲେ ଜୀବର ବ୍ୟଥାରେ ପରମେଶ୍ୱର ମଧ୍ୟ ବ୍ୟଥିତ ହୁଅନ୍ତେ । ତେବେ ମୋକ୍ଷାଦିର ପ୍ରୟୋଜନ ଆଉ ରହନ୍ତା ନାହିଁ । ପରମେଶ୍ୱର "ଗୌଣ" ବୋଲି ସିଦ୍ଧ ହୁଅନ୍ତେ; କିନ୍ତୁ ପ୍ରକୃତରେ ଜୀବ ବ୍ରହ୍ମଙ୍କର ପ୍ରତିବିମ୍ବମାତ୍ର, ସ୍ୱପରିମାଣଭୂତ ଅଂଶ ନୁହେଁ । ସୂର୍ଯ୍ୟ ଓ ଚନ୍ଦ୍ରର ଆଲୋକ ଯେପରି ଅଙ୍ଗୁଳିପ୍ରଭୃତି ଉପାଧିଦ୍ୱାରା ବକ୍ରାଦିଭାବ ପ୍ରାପ୍ତ ହୁଏ ଓ ସରୋବରସ୍ଥଜଳର କମ୍ପନରେ ଯେପରି ପ୍ରତିବିମ୍ବ ମଧ୍ୟ କମ୍ପିତ ହୁଏ, ସେହିପରି ବୁଦ୍ଧିଯୋଗବଶତଃ ବୁଦ୍ଧିବୃତ୍ତିରେ ଚିତ୍ପ୍ରତିବିମ୍ବରୂପୀ ଜୀବ ସେହି ବୁଦ୍ଧିର କମ୍ପନରେ ସୁଖଦୁଃଖାଦିରୂପ ଅନୁଭୂତିରେ କମ୍ପିତ ହୁଏ । ଅର୍ଥାତ୍ ବୁଦ୍ଧିଭେଦରେ ନାନାରୂପ ବିକାରାଦିଗ୍ରସ୍ତ ହୁଏ । ଅତଏବ ଜୀବର ଦୁଃଖାଦିଗୁଣ ଅବିଦ୍ୟାଜନିତ ଉପାଧି ମାତ୍ର, ପାରମାର୍ଥିକ ନୁହେଁ । ଏହି ଉପାଧିଯୋଗରୁ ଜୀବରେ ଅଂଶତ୍ୱ ଆରୋପିତ ହୁଏ; କିନ୍ତୁ ବସ୍ତୁତଃ ସେ ଅଂଶ ନୁହେଁ । ନିରୁପାଧିକ ନିର୍ଗୁଣ ପରମାତ୍ମାଙ୍କଠାରୁ ଅଭିନ୍ନ ଜୀବ ସନାତନ ପଦାର୍ଥ ।

ସ୍ମରନ୍ତି ଚ ।  ବେ: ସୂ: ୨।୩।୪୭ ।

ସ୍ମରନ୍ତି ଚ ବ୍ୟାସାଦୟୋ ଯଥା ନୈବେନ ଦୁଃଖେନ ନ ପରମାତ୍ମା ଦୁଃଖାୟତେ ଇତି ।

"ତତ୍ର ଯଃ ପରମାତ୍ମା ହି ସ ନିତ୍ୟୋ ନିର୍ଗୁଣଃ ସ୍ମୃତଃ ।
ନ ଲିପ୍ୟତେ ଫଳୈଶ୍ଚାପି ପଦ୍ମପତ୍ରମିବାମ୍ଭସା ॥
କର୍ମାତ୍ମା ତ୍ୱପରୋ ଯୋଽସୌ ମୋକ୍ଷବନ୍ଧୈଃ ସ ଯୁଜ୍ୟତେ ।
ସ ସପ୍ତଦଶକେନାପି ରାଶିନା ଯୁଜ୍ୟତେ ପୁନଃ । ଇତି ।
ଚ ଶବ୍ଦାତ୍ ସମାମନନ୍ତି ଚେତି ବାକ୍ୟଶେଷଃ ।

---

ବ୍ରହ୍ମ ସସୀମ ହୋଇଯିବେ । ପୂର୍ଣ୍ଣ ବା ଅସୀମ ମଧ୍ୟ କହିଲେ ବ୍ରହ୍ମ ପରିଚ୍ଛିନ୍ନ ହୋଇଯିବେ । ସେ "ନ ଚ ପୂର୍ଣ୍ଣୋ ନ ଚାଂଶକଃ" । ଯେପରି ଜଳ ଏକ ହେଲେ ମଧ୍ୟ ଆଧାରଭେଦରେ ସମୁଦ୍ର, ନଦୀ ବା ପୁଷ୍କରିଣୀର ଜଳ ବୋଲି ଅଭିହିତ ହୁଏ; କିନ୍ତୁ ଆଧାର ବାଦ୍ ଦେଲେ କେବଳ ଜଳହିଁ ରହେ, ସେହିପରି ଜୀବ ବ୍ରହ୍ମଭିନ୍ନ ଅନ୍ୟ କିଛି ନୁହେଁ ।

"ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ୟନଶ୍ନନ୍ନନ୍ୟୋଽଭି ଚାକଶୀତ।ଇତି।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ନ-ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ ।।

ଇତି ଚ—ଶାଙ୍କର ଭାଷ୍ୟ ।

ବ୍ୟାସାଦି ଋଷିଗଣ ମଧ୍ୟ ସ୍ମରଣ କରିଅଛନ୍ତି । ଅର୍ଥାତ୍ କହିଛନ୍ତି ଯେ, ଜୀବର ଦୁଃଖ ହେତୁରୁ ପରମାତ୍ମାଙ୍କର ମଧ୍ୟ ଦୁଃଖ ହେବା କଥା ଠିକ୍ ନୁହେଁ । ତନ୍ମଧ୍ୟରେ ଯେଉଁ ପରମାତ୍ମା ବିଦ୍ୟମାନ ସେ ନିତ୍ୟ ଓ ନିର୍ଗୁଣ । ପଦ୍ମପତ୍ରରେ ଯେପରି ଜଳ ଲିପ୍ତ ହୁଏ ନାହିଁ, ସେପରି ଗୁଣାତୀତ ପରମାତ୍ମା ମଧ୍ୟ କର୍ମଫଳରେ ଲିପ୍ତ ହୁଅନ୍ତି ନାହିଁ । ଯେ କେବଳ କର୍ମାତ୍ମା ଅର୍ଥାତ୍ କର୍ମାଶ୍ରୟୀ ଜୀବ, ତାହାର ହିଁ ବନ୍ଧନ ବା ମୋକ୍ଷ ହୋଇପାରେ । ଜୀବ ସପ୍ତଦଶ-ସଂଖ୍ୟକ ଇନ୍ଦ୍ରିୟାଦିଦ୍ୱାରା ସମ୍ମିଳିତ, ଅର୍ଥାତ୍ ଲିଙ୍ଗଶରୀରବିଶିଷ୍ଟ (୧୦ ଇନ୍ଦ୍ରିୟ, ୫ ପ୍ରାଣ, ୧ ମନ, ୧ ବୁଦ୍ଧି ସମୁଦାୟ ସପ୍ତଦଶ) । ସୂତ୍ରରେ "ଯେତ" ଶବ୍ଦଦ୍ୱାରା "ଶ୍ରୁତିବାକ୍ୟ ପ୍ରମାଣ" ଏପରି ଅର୍ଥ ଉହ୍ୟସ୍ୱରୂପରେ ଗୃହୀତ ହେବ । ଶ୍ରୁତି-ବାକ୍ୟ ଅନୁସାରେ "ସେହି ଦୁଇ ମଧ୍ୟରେ ଏକ ସୁସ୍ୱାଦୁ ଜ୍ଞାନରେ କର୍ମଫଳ ଭୋଗ କରେ, ଅନ୍ୟ ଏକ ଭୋଗ ନ କରି ସାକ୍ଷୀରୂପରେ ପ୍ରତ୍ୟକ୍ଷ କରନ୍ତି ।" ଏହିପରି ସମସ୍ତ ପ୍ରାଣୀମାନଙ୍କ ଅନ୍ତରାତ୍ମା ସେହି ଏକ, ଅର୍ଥାତ୍ ବିଶ୍ୱସ୍ୱରୂପ ବସ୍ତୁ, ଅସଙ୍ଗ ସ୍ୱଭାବତାହେତୁରୁ ଲୋକର ଦୁଃଖରେ ଦୁଃଖିତ (ଦୁଃଖଲିପ୍ତ) ହୁଅନ୍ତି ନାହିଁ । ଅର୍ଥାତ୍ ଜୀବକୃତ ଦୁଃଖ ତାହାଙ୍କୁ ସ୍ପର୍ଶ କରେ ନାହିଁ ।

"ଋତଂ ପିବନ୍ତୌ ସୁକୃତସ୍ୟ ଲୋକେ
ଗୁହାଂ ପ୍ରବିଷ୍ଟୌ ପରମେ ପରାର୍ଦ୍ଧେ ।
ଛାୟାତପୌ ବ୍ରହ୍ମବିଦୋ ବଦନ୍ତି ।। କଠ: ଉ: ୧।୩।୧ ।

ଅର୍ଥାତ୍ ବ୍ରହ୍ମବିତ୍‌ମାନେ କହନ୍ତି—ଜୀବ ଓ ପରମାତ୍ମା ଉଭୟ ହିଁ ନିଜ ନିଜ କର୍ମଫଳ ଭୋଗ କରନ୍ତି; କିନ୍ତୁ ପରମାତ୍ମା ସ୍ୱୟଂ ଭୋଗ ନ କରି ମଧ୍ୟ ଜୀବର ସମ୍ବନ୍ଧବଶତଃ ଭୋକ୍ତାବତ୍ (ଅର୍ଥାତ୍ ନିଜେ ଯେପରି ଭୋଗ କରୁଛନ୍ତି, ସେହିପରି ଭାବରେ) ଅନୁଭୂତ ହୁଅନ୍ତି । ଉଭୟ ହିଁ ବୁଦ୍ଧିରୂପଗୁହା ବ୍ରହ୍ମ ବା ସୋପଯୋଗ୍ୟ ଉତ୍କୃଷ୍ଟ ହୃଦୟାକାଶରେ ଅବସ୍ଥିତ । ଅନ୍ଧକାର ଓ ଆଲୋକ ଯେପରି ପରସ୍ପର ବିରୋଧିସ୍ୱଭାବସମ୍ପନ୍ନ, ସେହିପରି ଜୀବ ଓ ପରମାତ୍ମା ବିରୁଦ୍ଧ-ଧର୍ମବିଶିଷ୍ଟ । ଅର୍ଥାତ୍ ଜୀବ ସଂସାରୀ ଓ ପରମାତ୍ମା ଅସଂସାରୀ ।

ଏହିପରି ଜୀବାତ୍ମା ବିଷୟରେ ଆଲୋଚନା କରିବାପରେ ତାହାର ଚରମ ସିଦ୍ଧାନ୍ତରେ ବାଦରାୟଣ ଏହିପରି ଉପନୀତ ହୋଇଛନ୍ତି :—

ଆଭାସ ଏବ ଚ ।   ବେ: ସୂ: ୨।୩।୫୦ ।

ଅର୍ଥାତ୍ ଜୀବ ପରମାତ୍ମାଙ୍କର ଆଭାସ ବା ପ୍ରତିବିମ୍ବ, ପରମାତ୍ମାଙ୍କଠାରୁ ଭିନ୍ନ ନୁହେଁ । * ଜଳରେ ଯେପରି ସୂର୍ଯ୍ୟଙ୍କର ପ୍ରତିବିମ୍ବ, ସେହିପରି ବୁଦ୍ଧିରେ ପରମାତ୍ମାଙ୍କର ଆଭାସ ବା ପ୍ରତିବିମ୍ବ ଜୀବରୂପରେ ପ୍ରତିଭାତ । ଅତଏବ ଏହା ପରମାତ୍ମାଙ୍କଠାରୁ ଭିନ୍ନବସ୍ତୁ ନୁହେଁ । ଏକପାତ୍ରରେ ପଡ଼ିଥିବା ପ୍ରତିବିମ୍ବର କମ୍ପନରେ ଯେପରି ଅନ୍ୟପାତ୍ରର ପ୍ରତିବିମ୍ବ କମ୍ପିତ ହୁଏ ନାହିଁ ; ସେହିପରି ଏକ ଜୀବର କର୍ମଫଳ ଅପର ଜୀବର କର୍ମଫଳରୂପରେ ସମ୍ବନ୍ଧ ହୁଏ ନାହିଁ । ଅତଏବ ଏତଦ୍ଦ୍ୱାରା "ବ୍ୟତିକର" ଦୋଷ ନିବାରିତ ହୁଏ । ସାଂଖ୍ୟ ଓ ବୈଶେଷିକଙ୍କ ମତରେ କର୍ମଫଳ ସାଂକର୍ଯ୍ୟ ବା ବ୍ୟତିକର-ଦୋଷାପତ୍ତି ହୁଏ । ଶଙ୍କରାଚାର୍ଯ୍ୟ ନିଜ ରଚିତ ଗ୍ରନ୍ଥରେ ଜୀବାତ୍ମାର ସ୍ୱରୂପ ନିର୍ଣ୍ଣୟ ସକାଶେ ନିମ୍ନଲିଖିତ ଶ୍ଳୋକ ବର୍ଣ୍ଣନା କରିଛନ୍ତି—

"ମୁଖାଭାସକୋ ଦର୍ପଣେ ଦୃଶ୍ୟମାନୋ
ମୁଖତ୍ୱାତ୍ ପୃଥକ୍ତ୍ୱେନ ନୈବାସ୍ତି ଜାତୁ ।
ଚିଦାଭାସକୋ ଧୀଷୁ ଜୀବୋଽପି ତଦ୍ବତ୍
ସ ନିତ୍ୟୋପଲବ୍ଧିସ୍ୱରୂପୋଽହମାତ୍ମା ॥
ଯଥା ଦର୍ପଣାଭାବ ଆଭାସହାନୌ
ମୁଖଂ ବିଦ୍ୟତେ କଳ୍ପନାହୀନମେକମ୍ ।
ତଥା ଧୀ ର୍ବିୟୋଗେ ନିରାଭାସକୋ
ଯଃ ସ ନିତ୍ୟୋପଲବ୍ଧିସ୍ୱରୂପୋଽହମାତ୍ମା" ॥

ହସ୍ତାମଲକ ୫-୬ ।

ଅର୍ଥାତ୍—ଦର୍ପଣରେ ଯେଉଁ ମୁଖର ପ୍ରତିବିମ୍ବ ଦୃଷ୍ଟ ହୁଏ, ତାହା ମୁଖଠାରୁ ଯେପରି ପୃଥକ୍ ନୁହେଁ, ସେହିପରି ବୁଦ୍ଧିରୂପ ଦର୍ପଣରେ ପ୍ରତିବିମ୍ବିତ ପରମାତ୍ମା—ଆମ୍ଭେହିଁ ସେହି ନିତ୍ୟବୋଧସ୍ୱରୂପ ଜୀବାଖ୍ୟ-ଆତ୍ମା । ଦର୍ପଣର ଅଭାବରେ ଯେପରି ପ୍ରତିବିମ୍ବର ଅଭାବ ଓ ସେହି ଅଭାବଜନ୍ୟ ଏକମାତ୍ର ମୁଖ ଯେପରି ଅବଶିଷ୍ଟ ରହେ, ସେହିପରି ବୁଦ୍ଧିର ବିୟୋଗରେ ବ୍ରହ୍ମଙ୍କ ପ୍ରତିବିମ୍ବ-ହୀନତାଜନ୍ୟ ସେହି ନିତ୍ୟବୋଧସ୍ୱରୂପ କେବଳ ସ୍ୱୟଂ ଆତ୍ମା ବିଦ୍ୟମାନ ।

* ସ ଏବ ଜୀବଃ ପରମାତ୍ମନଃ (ନ କେବଳମଂଶଃ) ଆଭାସପ୍ରତିବିମ୍ବ ଏବ ଚ ।

ଆତ୍ମ ତତ୍ତ୍ୱ ନିର୍ଣ୍ଣୟ ବିଷୟକ ଉପନିଷଦ୍ ଶ୍ରୁତିବାକ୍ୟ ମଧ୍ୟ ଏହି କଥା ପ୍ରମାଣିତ କରେ—

"କତମୋ ଆତ୍ମେତିଯୋଽୟଂ ବିଜ୍ଞାନମୟଃ
ପ୍ରାଣେଷୁ ହୃଦ୍ୟନ୍ତର୍ଜ୍ୟୋତିଃ ପୁରୁଷଃ" ॥ ବୃହ. ୩।୪।୭ ।

ଅର୍ଥାତ୍— ଆତ୍ମା କିଏ ? ଯେ ଚିନ୍ମୟ ଅନ୍ତର୍ଯ୍ୟାମୀ ପୁରୁଷ, ପ୍ରାଣସମୂହ ମଧ୍ୟରେ ହୃଦୟରେ ବିରାଜିତ ହୋଇ ଅଛନ୍ତି, ସେହି ପୁରୁଷ ଆତ୍ମା ।

**ଠ—ଜୀବାତ୍ମାର ପୁରୁଷ ନାମକରଣ ଓ ଶରୀରରେ ଦେବଗଣ ସହ ଆତ୍ମାର ଅଧିଷ୍ଠାନ :—**

ଜୀବାତ୍ମାକୁ ପୁରୁଷ କହିବା ଅର୍ଥ ଏହି—ଦେହକୁ ପୁର କୁହାଯାଏ ଏବଂ ସେହି ଦେହରୂପ ପୁରରେ ଯେ ବାସ କରେ ସେ ପୁରୁଷ ନାମରେ ଅଭିହିତ । ଅତଏବ ଦେହୀ (ଜୀବ)କୁ ପୁରୁଷ କୁହାଯାଏ—

"ପୁରେ ବସତ ଶେତେ ଇତ ପୁରୁଷଃ" ॥

ଗୀତାରେ ମଧ୍ୟ ଉକ୍ତ ଅଛି—

"ନବଦ୍ୱାରେ ପୁରେ ଦେହୀ" ॥

ଅର୍ଥାତ୍ ଚକ୍ଷୁ, କର୍ଣ୍ଣ, ନାସା, ମୁଖ ପ୍ରଭୃତି ନ'ଗୋଟି ଦ୍ୱାରଯୁକ୍ତ ଦେହରୂପ ପୁରରେ ଦେହୀ ବା ଜୀବର ଅବସ୍ଥାନର କଥା ପୂର୍ବେ କୁହାଯାଇଛି । ଅନ୍ୟତ୍ର ଏକାଦଶ ଦ୍ୱାରର ଉଲ୍ଲେଖ ଏହିପରି ଅଛି—

"ପୁରମେକାଦଶଦ୍ୱାରମଜସ୍ୟାବକ୍ରଚେତସଃ ।
ଅନୁଷ୍ଠାୟ ନ ଶୋଚତ ବିମୁକ୍ତଶ୍ଚ ବିମୁଚ୍ୟତେ । ଏତଦ୍ୱୈ ତଦ୍ ॥"
କଠ: ୨।୨।୧ ।

ଅର୍ଥାତ୍—ଆତ୍ମା ଜନ୍ମଜରାଦି ବିକାରରହିତ ଏବଂ ଅବକ୍ରଚିତ୍ତ, ଅର୍ଥାତ୍ ଆଦିତ୍ୟପ୍ରକାଶ ପରି ନିତ୍ୟ ଅବସ୍ଥିତ । ଏହି ଏକାଦଶ ଦ୍ୱାରବିଶିଷ୍ଟ * ପୁରସଦୃଶ ଶରୀରରେ ସେହି ଆତ୍ମା

* ଚକ୍ଷୁ ଦ୍ୱୟ, ନାସାଦ୍ୱୟ, କର୍ଣ୍ଣଦ୍ୱୟ, ମୁଖ, ନାଭି, ଉପସ୍ଥ, ଗୁହ୍ୟ ଏବଂ ବ୍ରହ୍ମରନ୍ଧ୍ର—ଏହି ଏକାଦଶ ସ୍ଥାନ କେବଳ ଶରୀରର ଏକାଦଶ ଦ୍ୱାର ।

ରାଜାଙ୍କ ପରି ଅବସ୍ଥିତ ଅଛନ୍ତି । ଯେଉଁ ବ୍ୟକ୍ତି ଏହି ପୁରର ସ୍ୱାମୀ ଆତ୍ମାଙ୍କୁ ଧ୍ୟାନ କରିପାରନ୍ତି, ସେ ଶୋକାଦିଦ୍ୱାରା ଅଭିଭୂତ ହୁଅନ୍ତି ନାହିଁ । ଶରୀରରେ ଥିଲେ ମଧ୍ୟ ଅବିଦ୍ୟାକୃତ ବାସନା ଓ କର୍ମାଦିରୁ ବିମୁକ୍ତ ହୁଅନ୍ତି । ପୁନର୍ବାର ଶରୀର ଧାରଣ କରନ୍ତି ନାହିଁ ।

"ନବଦ୍ୱାରେ ପୁରେ ଦେହୀ ହଂସୋ ଲୀଳାୟତେ ବହିଃ ।
ବଶୀ ସର୍ବସ୍ୟ ଲୋକସ୍ୟ ସ୍ଥାବରସ୍ୟ ଚରସ୍ୟ ଚ" ।।

ଶ୍ୱେତାଶ୍ୱତର ୩।୧୮ ।

ଚକ୍ଷୁଦ୍ୱୟ, ନାସିକାଦ୍ୱୟ, କର୍ଣ୍ଣଦ୍ୱୟ, ମୁଖ, ଗୁହ୍ୟ ଓ ଉପସ୍ଥ—ଏହି ନବଦ୍ୱାରବିଶିଷ୍ଟ ଦେହସ୍ୱରୂପ ପୁରୀରେ ଜୀବରୂପ ହଂସ ବିଜ୍ଞାନମୟ ଆତ୍ମସ୍ୱରୂପରେ ବାସ କରିଅଛନ୍ତି । ସେହି ଆତ୍ମାପୁରୁଷ ସକଳ ଭୁବନର ଅଧୀଶ୍ୱର ଏବଂ ଚରାଚର ଜଗତର ବାହ୍ୟ ଓ ଆଭ୍ୟନ୍ତରରେ ସେ ବାସ କରି ଅଛନ୍ତି ।

କେବଳ ମନୁଷ୍ୟରୂପୀ ଜୀବର ସେହି ପୁର ବାସଗୃହ—ଏତିକ ନୁହେଁ; ପଶୁ ପକ୍ଷୀ, କୀଟ, ପତଙ୍ଗ—ସର୍ବବିଧ ଜୀବର ଦେହକୁ ମଧ୍ୟ ପୁର କୁହାଯାଇଛି—

"ପୁରଶ୍ଚକ୍ରେ ଦ୍ୱିପଦଃ ପୁରଶ୍ଚକ୍ରେ ଚତୁଷ୍ପଦଃ ।
ପୁରଃ ସ ପକ୍ଷୀ ଭୂତ୍ୱା ପୁରଃ ପୁରୁଷ ଆବିଶତ୍" ।। ବୃହ. ୨।୫।୧୮ ।

ଅର୍ଥାତ୍—ପରମାତ୍ମା ଶରୀରସମଷ୍ଟି ସୃଷ୍ଟି କରି ଅବ୍ୟକ୍ତର ବ୍ୟକ୍ତାଭାବ-ପ୍ରକ୍ରିୟା ଦେଖାଇ ଅଛନ୍ତି । ସେ ଅବ୍ୟକ୍ତର ନାମ ଓ ଆକୃତି ବ୍ୟକ୍ତ କରିବାନିମନ୍ତେ ପ୍ରଥମେ ଭୂ—ଆଦି ଚତୁର୍ଦ୍ଦଶଭୁବନ ସୃଷ୍ଟି କରି କ୍ରମେ ଦ୍ୱିପଦପୁର ନିର୍ମାଣ କଲେ ଓ ଚତୁଷ୍ପଦପୁର ମଧ୍ୟ ନିର୍ମାଣ କଲେ । ସେ ପକ୍ଷୀ (ସୂକ୍ଷ୍ମାକାର) ହୋଇ ପୂର୍ବସୃଷ୍ଟ ସକଳ ଶରୀରରେ ପୁରୁଷ ବା ଜୀବରୂପରେ ପ୍ରବେଶ କଲେ ।

ଐତରେୟ ଉପନିଷଦ୍‌ରେ ମଧ୍ୟ ଏହି ବିଷୟ ଉଲ୍ଲିଖିତ ହୋଇଛି—

ସୋଽଦ୍ଭ୍ୟ ଏବ ପୁରୁଷଂ ସମୁଦ୍ଧୃତ୍ୟାଽମୂର୍ଚ୍ଛୟତ୍ ତମଭ୍ୟତପତ୍ତସ୍ୟାଭିତପ୍ତସ୍ୟ ମୁଖଂ ନିରଭିଦ୍ୟତ । ନାସିକେ ନିରଭିଦ୍ୟେତାମ୍, ଅକ୍ଷିଣୀ ନିରଭିଦ୍ୟେତାମ୍ । କର୍ଣ୍ଣୌ ନିରଭିଦ୍ୟେତାମ୍ । ତ୍ୱଙ୍ ନିରଭିଦ୍ୟତ ହୃଦୟଂ ନିରଭିଦ୍ୟତ—ନାଭିର୍ନିରଭିଦ୍ୟତ—ଶିଶ୍ନଂ ନିରଭିଦ୍ୟତ—— ।

ଐତରେୟ ଉ: ୧-୪ । ୫-୭

"ଅଗ୍ନିର୍ବାକ୍ ଭୂତ୍ୱା ମୁଖଂ ପ୍ରାବିଶତ୍, ବାୟୁଃ ପ୍ରାଣୋ ଭୂତ୍ୱା ନାସିକେ ପ୍ରାବିଶଦାଦିତ୍ୟଶ୍ଚକ୍ଷୁର୍ଭୂତ୍ୱାଽକ୍ଷିଣୀ ପ୍ରାବିଶଦ୍ଦିଶଃ ଶ୍ରୋତ୍ରଂ ଭୂତ୍ୱା କର୍ଣ୍ଣୌ ପ୍ରାବିଶନ୍ନୋଷଧିବନସ୍ପତୟୋ ଲୋମାନି ଭୂତ୍ୱା ତ୍ୱଚଂ ପ୍ରାବିଶଂଶ୍ଚନ୍ଦ୍ରମା ମନୋ ଭୂତ୍ୱାହୃଦୟଂ ପ୍ରାବିଶନ୍ମୃତ୍ୟୁରପାନୋ ଭୂତ୍ୱା ନାଭିଂ ପ୍ରାବିଶଦାପୋ ରେତୋ ଭୂତ୍ୱା ଶିଶ୍ନଂ ପ୍ରାବିଶନ୍ ।" ଐତରେୟ ୧।୨।୩ ।

"ସ ଈକ୍ଷତ କଥଂ ନ୍ୱିଦଂ ମଦୃତେ ସ୍ୟାଦିତି । ସ ଈକ୍ଷତ କତରେଣ ପ୍ରପଦ୍ୟା ଇତି । ସ ଏତମେବ ସୀମାନଂ ବିଦାର୍ୟୈତୟା ଦ୍ୱାରା ପ୍ରାପଦ୍ୟତ, ସୈଷା ବିଦୃତିର୍ନାମ ।" ସ ଏତମେବ ପୁରୁଷଂ ବ୍ରହ୍ମ ତତମମପଶ୍ୟଦିଦମଦର୍ଶମିତି । ଐତ ୧-୩-୪-୬।୧୨ ।

ସେହି ପରମାତ୍ମା ସଲିଳରୁ ପୁରୁଷମୂର୍ତ୍ତି ଉଦ୍ଧୃତ କରି ତାହାକୁ ସମ୍ମୂର୍ଚ୍ଛିତ କଲେ, ତାହାକୁ ଅଭିତପ୍ତ କଲେ । ସେହି ଅଭିତପ୍ତ ମୂର୍ତ୍ତିର ମୁଖ ନିର୍ଭିନ୍ନ ହେଲା । ନାସିକା, ଚକ୍ଷୁ, କର୍ଣ୍ଣ, ତ୍ୱକ୍, ହୃଦୟ, ନାଭି, ଶିଶ୍ନ—ସବୁ ନିର୍ଭିନ୍ନ ହେଲା । ସେହି ସମୟରେ ଇନ୍ଦ୍ରିୟାଧିଷ୍ଠିତ ଦେବତାଗଣ ସେହି ମୂର୍ତ୍ତି ମଧ୍ୟରେ ପ୍ରବେଶ କଲେ । ଅଗ୍ନି ବାଗିନ୍ଦ୍ରିୟରୂପରେ ମୁଖରେ ପ୍ରବେଶ କଲେ ; ବାୟୁ ପ୍ରାଣରୂପରେ ନାସିକାରେ, ସୂର୍ଯ୍ୟ ଚକ୍ଷୁରୂପରେ ଅକ୍ଷିରେ, ଦିକ୍ ଶ୍ରୋତ୍ରରୂପରେ କର୍ଣ୍ଣରେ ପ୍ରବେଶ କଲେ । ଓଷଧି ଓ ବନସ୍ପତି ଲୋମରୂପରେ ତ୍ୱକ୍‌ରେ, ଚନ୍ଦ୍ରମା ମନରୂପରେ ହୃଦୟରେ ପ୍ରବେଶ କଲେ । ମୃତ୍ୟୁ ଅପାନରୂପରେ ନାଭିରେ ଓ ଅପ୍ ରେତଃରୂପରେ ଶିଶ୍ନରେ ପ୍ରବେଶ କଲେ । ତା'ପରେ ପରମାତ୍ମା ଦେଖିଲେ—ଆମ୍ଭଭିନ୍ନ ଏହି ଦେହ କି ପ୍ରକାରେ ରହିପାରେ ? ଦେହ ଭିତରେ କି ପ୍ରକାର ପ୍ରବେଶ କରିବେ—ଏହି କଥା ଭାବି ଭାବି ଶେଷରେ ସୀମାନ ବା ମସ୍ତକ ବିଦାରଣ କରି ସେହି ଦ୍ୱାରରେ ପ୍ରବେଶ କଲେ । ଏହି ଦ୍ୱାରର ନାମ ବିଦୃତି (ବ୍ରହ୍ମରନ୍ଧ୍ର) ଶରୀର ମଧ୍ୟରେ ସେହି ପୁରୁଷବ୍ରହ୍ମଙ୍କୁ ଅବସ୍ଥିତ ଥିବା ଦେଖି ପାରିଲେ ।

ଉପର୍ଯ୍ୟୁକ୍ତ ବିବରଣରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ବ୍ରହ୍ମ କେବଳ ଜୀବରୂପରେ ପୁରମଧ୍ୟରେ ପ୍ରବେଶ କରିଛନ୍ତି । ସେ ପୁରସ୍ୱାମୀ, ଏହାଦ୍ୱାରା ଜୀବ ଓ ଈଶ୍ୱରଙ୍କର ତାତ୍ତ୍ୱିକୈକ୍ୟ ପ୍ରତିପନ୍ନ ହୁଏ ।

**ଠ – ଜୀବ ବ୍ରହ୍ମଙ୍କର ପ୍ରତିବିମ୍ବ, କେବଳ ଉପାଧିଭେଦରେ ନାନାଭାବରେ ପ୍ରତିଭାତ ।**

ଜୀବାତ୍ମା ବ୍ରହ୍ମଙ୍କର ପ୍ରତିବିମ୍ବ—ଏକଥା ପୂର୍ବରୁ ବର୍ଣ୍ଣିତ ହୋଇଆସୁଅଛି, ବର୍ତ୍ତମାନ ଉପନିଷଦ୍ ବାକ୍ୟ ଉଦ୍ଧରଣ ପୂର୍ବକ ସେହି ମତର ପୁଷ୍ଟିସାଧନ କରାଯାଉଅଛି ।

"ଏକ ଏବ ହି ଭୂତାତ୍ମା ଭୂତେ ଭୂତେ ବ୍ୟବସ୍ଥିତଃ ।
ଏକଧା ବହୁଧା ଚୈବ ଦୃଶ୍ୟତେ ଜଳଚନ୍ଦ୍ରବତ୍" ॥

ବ୍ରହ୍ମବିନ୍ଦୁ ଉ: ୧୨ ॥

ଏକହିଁ ଅଦ୍ୱିତୀୟ ଭୂତାତ୍ମା ପ୍ରତିଭୂତରେ ଅବସ୍ଥିତ ରହିଅଛନ୍ତି । ଜଳରେ ଚନ୍ଦ୍ରର ପ୍ରତିବିମ୍ବ ପରି ସେ ଏକ ହୋଇ ବହୁ ରୂପରେ ଦୃଷ୍ଟ ହେଉଅଛନ୍ତି । ଏହି ଭାବକୁ ସମର୍ଥନ କରି ବାଦରାୟଣ କହିଛନ୍ତି—

**ଅତଏବ ଚୋପମା ସୂର୍ଯ୍ୟକାଦିବତ୍ ॥** ୩-୨-୧୮ ॥

ଅର୍ଥାତ୍ ଜଳରେ ଯେପରି ସୂର୍ଯ୍ୟର ପ୍ରତିବିମ୍ବ ପଡ଼େ, ସେପରି ବୁଦ୍ଧିରେ ଚିଦାତ୍ମା ପ୍ରତିବିମ୍ବିତ ହୁଏ । ସେହି ପ୍ରତିବିମ୍ବ କେବଳ ଜୀବ ।

ଉକ୍ତ ସୂତ୍ରଭାଷ୍ୟରେ ଆଚାର୍ଯ୍ୟ ଶଙ୍କର କହିଅଛନ୍ତି—

**"ଉପାଧିତନ୍ତ୍ରୋ ଜୀବଃ × × ଆଭାସ ଏବ ଚୈଷ ଜୀବଃ ପରସ୍ୟାତ୍ମନୋ ଜଳସୂର୍ଯ୍ୟକାଦିବତ୍ ପ୍ରତିପତ୍ତବ୍ୟଃ × × × ଏବଂ ପରମାର୍ଥତଃ ଅବିକୃତମ୍ ଏକରୂପମପି ସଦ୍ ବ୍ରହ୍ମ ଦେହାଦି-ଉପାଧ୍ୟନ୍ତର୍ଭାବାତ୍ ଭଜତ ଇବ ଉପାଧିଧର୍ମାନ୍ ବୃଦ୍ଧିହ୍ରାସାଦୀନ୍ ।"**

ଅର୍ଥାତ୍ ଜୀବ ଉପାଧିତନ୍ତ୍ର । ଯେପରି ଜଳରେ ସୂର୍ଯ୍ୟଙ୍କର ପ୍ରତିବିମ୍ବ ପଡ଼େ, ସେହିପରି ବୁଦ୍ଧିରେ ବ୍ରହ୍ମଙ୍କର ପ୍ରତିବିମ୍ବ ଜୀବରୂପରେ ଆଭାସ । ବ୍ରହ୍ମ ନିର୍ବିକାର, କୂଟସ୍ଥ, ଏକରୂପରେ ରହିଅଛି; କିନ୍ତୁ ଦେହାଦି ଉପାଧିଯୋଗରେ ସେ ଯେପରି ଦେହଧର୍ମ ବୃଦ୍ଧିହ୍ରାସାଦି ସଂଯୁକ୍ତ ହୁଅନ୍ତି—

**ଚୈତନ୍ୟଂ ଯଦଧିଷ୍ଠାନଂ ଲିଙ୍ଗଦେହଶ୍ଚ ଯଃ ପୁନଃ ।
ଚିଚ୍ଛାୟା ଲିଙ୍ଗଦେହସ୍ଥା ତତ୍ ସଂଘୋ ଜୀବ ଉଚ୍ୟତେ ॥**

ପ: ଦଶୀ ୪ । ୧୦ ।

ସର୍ବାଧିଷ୍ଠାନଭୂତ ସର୍ବବ୍ୟାପୀ ପରଂବ୍ରହ୍ମ ଚୈତନ୍ୟ ଓ ପୂର୍ବୋକ୍ତ ଇନ୍ଦ୍ରିୟ, ପ୍ରାଣ, ମନ ଓ ବୁଦ୍ଧିର ସମଷ୍ଟିରୂପ ଲିଙ୍ଗଶରୀର ଏବଂ ସେହି ଲିଙ୍ଗଦେହରେ ସ୍ଥିତ ଚୈତନ୍ୟ-ପ୍ରତିବିମ୍ବ—ଏହି ସମୁଦାୟ ସମଷ୍ଟି ଜୀବ-ଶବ୍ଦଦ୍ୱାରା ଅଭିହିତ; କିନ୍ତୁ ପ୍ରକୃତ ପକ୍ଷରେ ଆତ୍ମା ଏକ ଓ ଅଦ୍ୱୟ-ଭାବରେ ଓତପ୍ରୋତ ହୋଇ ସର୍ବତ୍ର ବିରାଜିତ ଥିବାରୁ ତାହାଙ୍କର ନାନାତ୍ୱ-କଳ୍ପନା-ରୂପକ-ମତ ଖଣ୍ଡିତ ହୋଇଅଛି । ବାଦରାୟଣ କହିଛନ୍ତି—

ପ୍ରଦେଶାଦିତିଚେନ୍ନାନ୍ତର୍ଭାବାତ୍ । ବେ: ସୂ: ୨।୩।୫୩ ।

ବୈଶେଷିକାଦିମାନଙ୍କ ଆତ୍ମାର ପ୍ରାଦେଶବାଦ ଯୁକ୍ତିଯୁକ୍ତ ନୁହେଁ ; କାରଣ, ଆତ୍ମା ସର୍ବ ଶରୀରରେ ଓତପ୍ରୋତଭାବରେ ପରିବ୍ୟାପ୍ତ । ଆତ୍ମା ସର୍ବଗତ ହେଲେ ମଧ୍ୟ ଦେହର କୌଣସି ପରିଚ୍ଛିନ୍ନ ପ୍ରଦେଶରେ ଅବସ୍ଥିତ ଥିବାରୁ ଚୈତନ୍ୟ-ଜ୍ଞାନାଦି ଉତ୍ପନ୍ନହେବା କଥା ସ୍ୱୀକାର୍ଯ୍ୟ ନୁହେଁ । କାରଣ, ଆତ୍ମା ସର୍ବଗତ ରୂପରେ ଚିନ୍ମାତ୍ର ହେଲେ ମଧ୍ୟ ପ୍ରତ୍ୟେକ ଦେହରେ ଚିଦାଭାସ-ସ୍ୱରୂପରେ ଓତପ୍ରୋତ ହୋଇ ବିରାଜିତ ଅଛନ୍ତି, ଦେହର କୌଣସି ଏକ ପରିଚ୍ଛିନ୍ନ ପ୍ରଦେଶରେ ନୁହେଁ । ଅତଏବ ଆତ୍ମାର ପରିବ୍ୟାପକତ୍ୱ ସିଦ୍ଧ ହୁଏ । କେବଳ ଏକ ପରଂ-ବ୍ରହ୍ମଙ୍କର ଆଭାସ କୋଷୋପାଧିଯୋଗରେ ଜୀବାତ୍ମା-ନାମରେ ଅଭିହିତ ହୋଇଅଛି । ଏ ବିଷୟରେ ଶଙ୍କରାଚାର୍ଯ୍ୟ ଅନ୍ୟ ଏକ ଶ୍ରୁତିପ୍ରସଙ୍ଗରେ କହିଅଛନ୍ତି—

"ଯଥା ହ୍ୟୟଂ ଜ୍ୟୋତିରାତ୍ମା ବିବସ୍ୱାନ୍
ଅପୋ ଭିନ୍ନା ବହୁଧୈକୋଽନୁଗଚ୍ଛନ୍
ଉପାଧିନା କ୍ରିୟତେ ଭେଦରୂପୋ
ଦେବଃ କ୍ଷେତ୍ରେ ଷ୍ୱେବମ୍ ଅଜୋଽୟମାତ୍ମା ।

ଅର୍ଥାତ୍ ଯେପରି ଜ୍ୟୋତିଃସ୍ୱରୂପ ସୂର୍ଯ୍ୟ ଏକ ହୋଇ ମଧ୍ୟ ଭିନ୍ନ ଭିନ୍ନ ଜଳାଶୟରେ ବହୁ ରୂପରେ ପ୍ରକାଶିତ ହୁଅନ୍ତି, ସେହିପରି ଦ୍ୟୁତିମାନ୍ ଅନାଦି ପରମାତ୍ମା କ୍ଷେତ୍ରଭେଦରେ (ଉପାଧିକୃତ ଭେଦଦ୍ୱାରା) ବହୁ ବୋଲି ପ୍ରତୀୟମାନ ହୁଅନ୍ତି । ଉପାଧି-ଦେହ, ବେଦାନ୍ତରେ ଯାହାର ନାମ କୋଷ, ସେ ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ; ଏହି କୋଷରୂପ ଉପାଧିଦ୍ୱାରା ହିଁ ଜୀବର ଜୀବତ୍ୱ । ଏ ବିଷୟରେ ପଞ୍ଚଦଶୀକାର କହିଅଛନ୍ତି—

କୋଷୋପାଧିବିବକ୍ଷାୟାଂ ଯାତି ବ୍ରହ୍ମୈବ ଜୀବତାମ୍ ।
ପିତା ପିତାମହଶ୍ଚୈକଃ ପୁତ୍ରପୌତ୍ରୌ ଯଥା ପ୍ରତି ॥
ପୁତ୍ରାଦେରବିବକ୍ଷାୟାଂ ନ ପିତା ନ ପିତାମହଃ ।
ତଦ୍ୱନ୍ନେଶୋ ନାପି ଜୀବଃ ଶକ୍ତିକୋଷାବିବକ୍ଷଣେ ॥
ଯ ଏବଂ ବ୍ରହ୍ମ ବେଦୈଷ ବ୍ରହ୍ମୈବ ଭବତି ସ୍ୱୟମ୍ ।
ବ୍ରହ୍ମଣୋ ନାସ୍ତି ଜନ୍ମାତଃ ପୁନରେଷ ନ ଜାୟତେ । ୩ । ୪୧ । ୪୩ ।

ଅର୍ଥାତ୍—ବ୍ରହ୍ମ କେବଳ ପଞ୍ଚକୋଷରୂପକ ଉପାଧିବିବକ୍ଷାଦ୍ୱାରା ଜୀବ ପଦବାଚ୍ୟ ହୁଏ । ଯେପରି ଏକବ୍ୟକ୍ତି ଲୌକିକ ସମ୍ବନ୍ଧ ବ୍ୟବହାର ନେଇ ଭିନ୍ନ ଭିନ୍ନ ନାମଗ୍ରହଣ କରେ

ସେହିପରି । ଅର୍ଥାତ୍—କେବଳ ଜଣେ ଲୋକ ପୁତ୍ର ଅପେକ୍ଷା ପିତା ଓ ପୌତ୍ରଙ୍କୁ ନେଇ ପିତାମହ ବୋଲି କଥିତ ହୁଏ, ସେହିପରି ପରଂବ୍ରହ୍ମଙ୍କ ଚୈତନ୍ୟ ଯେତେବେଳେ ପୂର୍ବୋକ୍ତ ପଞ୍ଚକୋଷ ରୂପକ ଉପାଧିବିଶିଷ୍ଟ ହୁଏ, ସେତେବେଳେ ତାହାଙ୍କୁ ଜୀବଶବ୍ଦଦ୍ୱାରା ବ୍ୟବହାର କରାଯାଏ । ଲୋକରେ ମଧ୍ୟ ପୁତ୍ର ବା ପୌତ୍ର ଅଭାବରେ ଯେପରି କୌଣସି ବ୍ୟକ୍ତି ପିତା ବା ପିତାମହ ହୋଇ ନ ପାରନ୍ତି; ସେହିପରି ଏକ ପରଂବ୍ରହ୍ମ ଚୈତନ୍ୟ ମାୟାଶକ୍ତିର ଉପାଧିଦ୍ୱାରା ଈଶ୍ୱର ଓ ପଞ୍ଚକୋଷ ଉପାଧିଦ୍ୱାରା ଜୀବ ହୁଏ, କିନ୍ତୁ ଉପାଧିଅଭାବରେ ନିରୁପାଧିକ ପରଂବ୍ରହ୍ମ କେବଳ ଚୈତନ୍ୟସ୍ୱରୂପରେ ରହିଥାନ୍ତି । ଏହି ପୂର୍ବୋକ୍ତ ପ୍ରକାରରେ ଯେଉଁ ବ୍ୟକ୍ତି ପଞ୍ଚକୋଷ—ବିବେକଦ୍ୱାରା ପରଂବ୍ରହ୍ମଙ୍କୁ ଜାଣିପାରନ୍ତି, ସେ ବ୍ରହ୍ମାନନ୍ଦ ଲାଭ କରନ୍ତି । ଦେହାନ୍ତର ବା ପୁନର୍ଜନ୍ମ ତାଙ୍କର ଆଉ ହୁଏ ନାହିଁ । ଅର୍ଥାତ୍, ନିତ୍ୟବସ୍ତୁ ପରଂବ୍ରହ୍ମଙ୍କୁ ଯେ ତଦ୍‌ଗତଚିତ୍ତ ହୋଇ ଧ୍ୟାନ କରେ, ସେ ଜନ୍ମମରଣରୂପ ସଂସାରମାର୍ଗରେ ଆଉ ପରିବର୍ତ୍ତିତ ହୁଏ ନାହିଁ, ସେ ମୁକ୍ତ ହୁଏ ।

## ଠ—ପରଂବ୍ରହ୍ମଙ୍କ ତେଜରେ ସର୍ବପ୍ରକାଶିତ ଓ ସେହି ବ୍ରହ୍ମ କୋଷାତୀତ ହୋଇ ବିରାଜମାନ—

ଶାସ୍ତ୍ରରେ ପଞ୍ଚକୋଷ ବିଷୟ ସମ୍ବନ୍ଧ ଉଲ୍ଲିଖିତ ଥିଲେ ମଧ୍ୟ ଉପନିଷଦମାନଙ୍କରେ ହିରଣ୍ମୟନାମକ କୋଷରେ ବ୍ରହ୍ମ ବିଦ୍ୟମାନ ଓ ତାଙ୍କ ଆଶ୍ରାରେ ସମସ୍ତ ଆଶ୍ରିତ—ଏପରି ପ୍ରତିପାଦିତ ହୋଇଛି ।

**ହିରଣ୍ମୟେ ପରେ କୋଷେ ବିରଜଂ ବ୍ରହ୍ମ ନିଷ୍କଳମ୍ ।**
**ତଚ୍ଛୁଭ୍ରଂ ଜ୍ୟୋତିଷାଂ ଜ୍ୟୋତିସ୍ତଦ୍‌ଯଦାତ୍ମବିଦୋ ବିଦୁଃ ॥**

ମୁଣ୍ଡକ ୨ । ୨ । ୯ ।

ଅର୍ଥାତ୍, ଏହି ବ୍ରହ୍ମ ହିରଣ୍ମୟ (ଜ୍ୟୋତିର୍ମୟ) ପରକୋଷରେ ପ୍ରତିଷ୍ଠିତ ଅଛନ୍ତି । ସେ ସତ୍ତ୍ୱାଦିଗୁଣସମ୍ପର୍କରହିତ, ନିଷ୍କଳ, ଅର୍ଥାତ୍ ମାୟା ବିରହିତ ଏବଂ ସ୍ୱଚ୍ଛବସ୍ତୁ । ସେହି ବ୍ରହ୍ମ ସର୍ବପ୍ରକାଶକ, ସୂର୍ଯ୍ୟାଦିର ମଧ୍ୟ ପ୍ରକାଶକ । ଆତ୍ମବିତ୍‌ମାନେ ବହୁଆୟାସପୂର୍ବକ ସେହି ସର୍ବପ୍ରକାଶକଙ୍କୁ ଜାଣିପାରିଛନ୍ତି ।

**ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି, କୁତୋଽୟମଗ୍ନିଃ । ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି ।** ମୁଣ୍ଡକ ୬ । ୨ । ୧୦ ।

ସେହି ବ୍ରହ୍ମ ପଦାର୍ଥକୁ ସୂର୍ଯ୍ୟ ପ୍ରକାଶିତ କରିପାରେ ନାହିଁ; ଚନ୍ଦ୍ର, ତାରାଗଣ, ବିଦ୍ୟୁତ୍ ଓ ଅଗ୍ନି ମଧ୍ୟ ତାହାଙ୍କୁ ପ୍ରକାଶିତ କରିବାକୁ ସମର୍ଥ ନୁହନ୍ତି । ଆଉ ଅଧିକ କ'ଣ କହିବା, ଏହି ଜଗତ୍

ସେହି ଆତ୍ମାଙ୍କୁ ଲକ୍ଷ୍ୟ କରି ପ୍ରକାଶ ପାଏ; ତାହାଙ୍କର ପ୍ରକାଶଦ୍ୱାରା ସମସ୍ତ ଜଗତ୍ ଅନୁପ୍ରକାଶିତ ହୁଏ । ବେଦରେ ମଧ୍ୟ ଉକ୍ତ ଅଛି—

**ଆଦିତ୍ ପ୍ରତ୍ନସ୍ୟ ରେତସୋ ଜ୍ୟୋତିଃ ପଶ୍ୟନ୍ତି ବା, ରସମ୍ ।**
**ପରୋ ଯଦିଧ୍ୟତେ ଦିବା ।** ଋକ୍ ୮ । ୬ । ୩୦ । ସାମ: ପୂର୍ବାର୍ଚ୍ଚିକ: ୧।୨।୧୦ ।

"ଦ୍ୟୁଲୋକରେ ଯାହା ପ୍ରକାଶମାନ ଓ ଦିବସରେ ଯାହା ସୂର୍ଯ୍ୟରୂପରେ ଦେଖାଯାଏ, ତାହା ସବୁ ସେହି ବୀର୍ଯ୍ୟବାନ୍ ପ୍ରଭୁ ପରମାତ୍ମାଙ୍କ ତେଜରେ ପ୍ରକାଶିତ ।" ଉପର୍ଯ୍ୟୁକ୍ତ ଶ୍ରୁତିବାକ୍ୟ-ସମୂହରୁ ଏହା ପ୍ରମାଣିତ ହୁଏ ଯେ, ଏହି ନିଖିଳ ବିଶ୍ୱ ସେହି ଏକ ଅଦ୍ୱିତୀୟ ବିଶୁଦ୍ଧ ପରଂବ୍ରହ୍ମଙ୍କ ମହିମାରେ ପ୍ରକାଶିତ ହୋଇଛି ଓ ତାହାଙ୍କର ଆଭାସ ଜୀବାତ୍ମାରୂପରେ ଉପାଧିଗତ ହୋଇ ପ୍ରକାଶିତ ହୁଏ; କିନ୍ତୁ ସେ ନିତ୍ୟ ଓ ନିର୍ଲିପ୍ତଭାବରେ ବିଶ୍ୱାତୀତ ହୋଇ ସତତ ବିଦ୍ୟମାନ ଅଛନ୍ତି ।

ଗୀତାରେ ମଧ୍ୟ ତ୍ରିବିଧପୁରୁଷର ବର୍ଣ୍ଣନା ତିନୋଟି ଶ୍ଳୋକରେ ଦେଖାଯାଏ—

**ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।**
**କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥**
**ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ ।**
**ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ॥**
**ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।**
**ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।**

ଗୀତା ୧୫ । ୧୬ । ୧୮ ।

କ୍ଷର ଓ ଅକ୍ଷରନାମକ ଦୁଇ ପୁରୁଷଙ୍କ ମଧ୍ୟରୁ ସମସ୍ତ ଭୂତ କ୍ଷର ପୁରୁଷ ଏବଂ କୂଟସ୍ଥ ଅକ୍ଷର ପୁରୁଷ । ଏତଦ୍‌ଭିନ୍ନ ଅନ୍ୟ ଏକ ପୁରୁଷୋତ୍ତମ ଅଛନ୍ତି, ଯାହାଙ୍କୁ ପରମାତ୍ମା କୁହାଯାଏ । ସେହି ପରମାତ୍ମା ଅବ୍ୟୟ ଈଶ୍ୱର, ଲୋକତ୍ରୟରେ ଅନୁପ୍ରବିଷ୍ଟ ହୋଇ ସକଳ ଜଗତ୍ ପ୍ରତିପାଳନ କରୁଅଛନ୍ତି । ଯେଉଁ ହେତୁରୁ ସେ କ୍ଷରରୁ ଅତୀତ ଏବଂ ଅକ୍ଷରରୁ ମଧ୍ୟ ଉତ୍ତମ; ସେଥିନିମନ୍ତେ ଲୋକ ଓ ବେଦରେ ତାହାଙ୍କୁ ପୁରୁଷୋତ୍ତମ କୁହାଯାଏ । ଅତଏବ ଗୀତାମତରେ ତିନପ୍ରକାର ପୁରୁଷ—କ୍ଷର, ଅକ୍ଷର ଓ ଉତ୍ତମ ପୁରୁଷ । ଉତ୍ତମ ପୁରୁଷଦ୍ୱାରା ପରମାତ୍ମା ପରମେଶ୍ୱର ବୁଝାଯାନ୍ତି । ଅକ୍ଷର ପୁରୁଷ = ପ୍ରତ୍ୟଗାତ୍ମା, କୂଟସ୍ଥ । କ୍ଷରପୁରୁଷ = ଜୀବାତ୍ମା, ସର୍ବଭୂତ, ଉତ୍ତମ ପୁରୁଷ ଚିଦାକାଶ । ଅକ୍ଷର ପୁରୁଷ = ଚିଦ୍ଭାନ । କ୍ଷର ପୁରୁଷ = ଚିଦାଭାସ ।

ଉତ୍ତମ ପୁରୁଷ ସିନ୍ଧୁସଦୃଶ; ଅକ୍ଷର ପୁରୁଷ ବା ଚିଦାଭାସ ତାହାର ବିନ୍ଦୁସ୍ୱରୂପ । ସିନ୍ଧୁ ଓ ବିନ୍ଦୁ ମଧ୍ୟରେ ସ୍ୱରୂପତଃ କୌଣସି ଭେଦ ନାହିଁ । ଯେତେଦିନଯାଏ ଜୀବ ପରମାତ୍ମାଙ୍କୁ ଓ ପ୍ରତ୍ୟଗାତ୍ମାଙ୍କୁ ଅଭିନ୍ନ ବୋଲି ଜାଣି ନଥାଏ, ସେତେଦିନ ପର୍ଯ୍ୟନ୍ତ ତାହାର ଶୋକ, ମୋହ-ରୂପକ ସଂସାର-ଚକ୍ରରେ ଆବର୍ତ୍ତିତ ହେଉଥାଏ; କିନ୍ତୁ ସେ ଆପଣାକୁ ବ୍ରହ୍ମଙ୍କର ହୃଦୟରେ ସ୍ଥିତ ଚୈତନ୍ୟ ବୋଲି ଜାଣିପାରିଲେ ତାହାର ସଂସାରବନ୍ଧନ ଛିନ୍ନ ହୋଇଯାଏ ।

## ୦—ପରଂବ୍ରହ୍ମଙ୍କ ତେଜ ବେନି ପକ୍ଷୀରୂପରେ ଶରୀରରେ ବିରାଜିତ ଓ ପରଂବ୍ରହ୍ମଙ୍କ ବିଜ୍ଞାନରେ ଜୀବର ମୁକ୍ତି—

ଏ ବିଷୟରେ ଋଗ୍‌ବେଦ ଓ ଉପନିଷଦ୍‌ରେ କୁହାଯାଇଛି—

**ଦ୍ୱା ସୁପର୍ଣ୍ଣା ସ ଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ ।**
**ତୟୋରନ୍ୟଃ ପିପ୍‌ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନ୍ନନ୍ୟୋଽଭିଚାକଶୀତି ॥**

ଋକ୍ ୧ । ୧୪୬ । ୨୦-୨୧ ।

**ସମାନେ ବୃକ୍ଷେ ପୁରୁଷୋ ନିମଗ୍ନୋଽନୀଶୟା ଶୋଚତି ମୁହ୍ୟମାନଃ ।**
**ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶମସ୍ୟ ମହିମାନମିତି ବୀତଶୋକଃ ।**

ମୁଣ୍ଡକ: ୩ । ୧ । ୧ । ୨ ।

ଅର୍ଥାତ୍ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷରେ ବାସ କରିଛନ୍ତି; ସେମାନେ ପରସ୍ପର ମିତ୍ର ମଧ୍ୟ । * ସେ ଉଭୟଙ୍କ ମଧ୍ୟରେ ଜଣେ ସୁସ୍ୱାଦୁ ଫଳ ଭକ୍ଷଣ କରେ; ଅର୍ଥାତ୍ ଦେହରୂପକ ବୃକ୍ଷ—ଆଶ୍ରିତ ଜୀବ ପିପ୍ପଳ, ଅର୍ଥାତ୍ କର୍ମଦ୍ୱାରା ନିଷ୍ପନ୍ନ ଅନେକବିଧ ସୁଖ-ଦୁଃଖରୂପକ ଫଳ ଅବିବେକବଶତଃ ଉପଭୋଗ କରେ । ଅପର କିଛି ଭକ୍ଷଣ କରେ ନାହିଁ; ଅର୍ଥାତ୍ ମୁକ୍ତ-ସ୍ୱଭାବ, ସର୍ବଜ୍ଞ, ସତ୍ତ୍ୱଗୁଣ-ଉପାଧିକ ଈଶ୍ୱର କର୍ମଫଳର ଭୋକ୍ତା ନୁହଁନ୍ତି । ସେ କେବଳ ଦର୍ଶନ କରୁଥାନ୍ତି । ଏକ ବୃକ୍ଷରେ ଏକଜଣ (ଜୀବ) ଅବିଦ୍ୟା, କାମନା, ଓ କର୍ମଫଳ-ଅନୁରାଗାଦିଦ୍ୱାରା ଗୁରୁତର ଭାରାକ୍ରାନ୍ତ ହୋଇ ଦେହ ସହିତ ତାଦାତ୍ମ୍ୟସମ୍ବନ୍ଧାବଚ୍ଛିନ୍ନ ରହେ । ସେ ସମୟରେ ସେ ସଂସାର-ସମୁଦ୍ରରେ ଅଲାବୁ ତୁଲ୍ୟ ଭାସୁଥାଏ । "ମୋର ପୁତ୍ର ଆଦି, ମୁଁ କର୍ତ୍ତା, ମୁଁ ସ୍ଥୂଳ, ମୁଁ ଗୁଣବାନ, ମୁଁ ନିର୍ଗୁଣ, ମୁଁ ସୁଖୀ, ମୁଁ ଦୁଃଖୀ"—ଇତ୍ୟାଦି ପ୍ରତ୍ୟୟଯୁକ୍ତ ହୋଇ ବନ୍ଧୁବାନ୍ଧବଙ୍କ ସହିତ କେତେବେଳେ ସଂଯୋଗ, କେତେବେଳେ

* ଗୀତାରେ ବର୍ଣ୍ଣିତ କ୍ଷର-ଅକ୍ଷର ପୁରୁଷଦ୍ୱୟ ଉପନିଷଦ୍ ଭାଷାରେ ଶରୀରାଧିଷ୍ଠିତ ବେନି ପକ୍ଷୀରୂପେ ବର୍ଣ୍ଣିତ ।

ବା ବିଚ୍ଛେଦ ଅନୁଭବ କରେ । "ମୋର ପୁତ୍ର ନଷ୍ଟ ହେଲା, ମୋର ଭାର୍ଯ୍ୟା ମୃତ, ଅତଏବ ମୋ ଜୀବନରେ କି ଫଳ"—ଇତ୍ୟାଦି ରୂପରେ ଦୀନତା ପ୍ରାପ୍ତ ହୁଏ ଏବଂ ଅବିବେକତାବଶତଃ ଅନେକ ଅନର୍ଥ ଚିନ୍ତାକୁଳ ହୋଇ ଶୋକ କରେ । ଏହି ପ୍ରକାର ପ୍ରେତ, ତିର୍ଯ୍ୟକ ଓ ମନୁଷ୍ୟାଦି-ଯୋନିରେ ଜନ୍ମଲାଭ କରି ଅନେକ ଜନ୍ମ ପରେ କଦାଚିତ୍ ଶୁଦ୍ଧଧର୍ମ ସଞ୍ଚୟ କରିବାଦ୍ୱାରା କୌଣସି ପରମକାରୁଣିକ ଗୁରୁଙ୍କଦ୍ୱାରା ସତ୍ୟତତ୍ତ୍ୱ ବିଷୟରେ ଉପଦିଷ୍ଟ ହୋଇ ଜୀବଠାରୁ ବିଲକ୍ଷଣ ବ୍ରହ୍ମଙ୍କୁ ଦର୍ଶନ କରେ । ସେ ସମୟରେ ତାହାଙ୍କର ମହିମା ଅନୁଭବ କରି ଶୋକସାଗରରୁ ବିମୁକ୍ତ ହୋଇ ନିଜକୁ କୃତ୍ୟକୃତ୍ୟ ମନେକରେ । ଆହୁରି ମଧ—

**ଯଦା ପଶ୍ୟଃ ପଶ୍ୟତେ ରୁକ୍ମବର୍ଣ୍ଣଂ**
**କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍ ।**
**ତଦା ବିଦ୍ୱାନ୍ ପୁଣ୍ୟପାପେ ବିଧୂୟ**
**ନିରଞ୍ଜନଃ ପରମଂ ସାମ୍ୟମୁପୈତି ॥**

ମୁଣ୍ଡକ ୩ । ୧ । ୧ । ୩ ।

ଅର୍ଥାତ୍ ଯେଉଁ ସମୟରେ ବିଦ୍ୱାନ୍ ସାଧକ ସ୍ୱୟଂ ଜ୍ୟୋତିଃସ୍ୱରୂପ ସମସ୍ତ ଜଗତର ପରମେଶ୍ୱର, ପରମପୁରୁଷ ଓ ନିଖିଳ ବ୍ରହ୍ମାଣ୍ଡର ଉତ୍ପତ୍ତିସ୍ଥାନ ପରଂବ୍ରହ୍ମଙ୍କୁ ସାକ୍ଷାତ୍କାର ଲାଭ କରନ୍ତି, ସେହି ସମୟରେ ସେହି ବିଦ୍ୱାନ୍ ସାଧକ ବନ୍ଧନର କାରଣଭୂତ ପାପ ଓ ପୁଣ୍ୟସମୂହକୁ ସମୂଳେ ଦଗ୍ଧ କରି ଅବିଦ୍ୟାଦି କ୍ଳେଶ-ପରିହାରପୂର୍ବକ ନିରତିଶୟ ଅଦ୍ୱିତୀୟ ନିରଞ୍ଜନରୂପରେ ନିଜେ ପ୍ରତିଷ୍ଠିତ ହୁଅନ୍ତି ।

ପଞ୍ଚଦଶୀକାର ଏହି ବିଷୟରେ ନିମ୍ନୋକ୍ତ ବର୍ଣ୍ଣନା କରିଛନ୍ତି—

**ମାହେଶ୍ୱରୀ ତୁ ଯା ମାୟା ତସ୍ୟା ନିର୍ମାଣଶକ୍ତିବତ୍ ।**
**ବିଦ୍ୟତେ ମୋହଶକ୍ତିଶ୍ଚ ତଂ ଜୀବଂ ମୋହୟତ୍ୟସୌ ॥**
**ମୋହାଦନୀଶତାଂ ପ୍ରାପ୍ୟ ମଗ୍ନୋ ବପୁଷି ଶୋଚତି ।**
**ଈଶସୃଷ୍ଟମିଦଂ ଦ୍ୱୈତଂ ସର୍ବମୁକ୍ତଂ ସମାସତଃ ॥**

ପଞ୍ଚଦ ୪ । ୧୧-୧୨ ।

ଯଦ୍ୟପି ସର୍ବଶକ୍ତିମାନ୍ ପରଂବ୍ରହ୍ମଙ୍କ ଚୈତନ୍ୟ ହିଁ ସର୍ବବ୍ୟାପକ ଭାବରେ ସର୍ବଶରୀରରେ ପ୍ରବିଷ୍ଟ ହୋଇ ଜୀବରୂପରେ ପ୍ରସିଦ୍ଧ, ତଥାପି ଜୀବବ୍ରହ୍ମ ସୁଖଦୁଃଖାଦିର ଅନୁଭବ କରିବାର କାରଣ ଏହି କି— ପରମେଶ୍ୱରଙ୍କ ମାୟାଶକ୍ତି ଯେପରି ଜଗତ୍ ନିର୍ମାଣ ବିଷୟରେ ସମର୍ଥ, ସେପରି ସେହି ମାୟାଶକ୍ତିର ମୋହିକାଶକ୍ତି ସୁଖ-ଦୁଃଖାଦି ଅନୁଭବ ପ୍ରତି ହେତୁ ମଧ । ସେହି ଶକ୍ତିଦ୍ୱାରା ଜୀବ ମୁଗ୍ଧ ହୋଇ ସାଂସାରିକ ସୁଖ ଓ ଦୁଃଖ ପ୍ରାପ୍ତ ହୁଏ । ଏହିପରି ପୂର୍ବୋକ୍ତ ବର୍ଣ୍ଣନା ଅନୁସାରେ ଈଶ୍ୱରସୃଷ୍ଟ ଦ୍ୱୈତ ସମୁଦାୟ ସଂକ୍ଷେପରେ ବର୍ଣ୍ଣିତ ହେଲା । ଅଷ୍ଟାବକ୍ର ସଂହିତାରେ ଏହିପରି ବର୍ଣ୍ଣିତ ହୋଇଅଛି—

ଆତ୍ମଜ୍ଞାନାଦ୍ ଜଗଦ୍ ଭାତ ଆତ୍ମଜ୍ଞାନାନ୍ନ ଭାସତେ ।
ରଜ୍ଜ୍ୱଜ୍ଞାନାଦହିର୍ଭାତି ତଦ୍ଜ୍ଞାନାଦ୍ ଭାସତେ ନ ହି ॥
ଅହୋ ବିକଳ୍ପିତଂ ବିଶ୍ୱମଜ୍ଞାନାନ୍ମୟି ଭାସତେ ।
ରୂପ୍ୟଂ ଶୁକ୍ତୌ ଫଣୀ ରଜ୍ଜୌ ବାରି ସୂର୍ଯ୍ୟକରେ ଯଥା ॥

ଅ:ଗ: ୨ । ୭ ।-୯ ।

ଅର୍ଥାତ୍ ଏହି ଜଗତ୍ ଆତ୍ମାବିଷୟକ ଅଜ୍ଞାନରୁ ପ୍ରତିଭାତ ହୁଏ ; ଏବଂ ଆତ୍ମଜ୍ଞାନ ହେଲେ ତାହା ଅନ୍ତର୍ହିତ ହୋଇଯାଏ । ଯେପରି ରଜ୍ଜୁରେ ଅଜ୍ଞାନବଶତଃ ସର୍ପଭ୍ରମ ହୁଏ ଏବଂ ରଜ୍ଜୁବିଷୟକ ଜ୍ଞାନ ହେଲେ ତାହା ତିରୋହିତ ହୁଏ । ଶୁକ୍ତିରେ ରଜତଜ୍ଞାନ, ରଜ୍ଜୁରେ ସର୍ପ ଓ ସୂର୍ଯ୍ୟକିରଣରେ ସଲିଳଜ୍ଞାନ କେବଳ ଅଜ୍ଞାନକଳ୍ପିତ, ସେହିପରି ପରଂବ୍ରହ୍ମଙ୍କଠାରେ ଏହି ବିଶ୍ୱ ବା ଜାଗତିକ ଜ୍ଞାନ ଜୀବର ଅଜ୍ଞାନବଶତଃ ଭାସମାନ ହେଉଅଛି । ଅଜ୍ଞାନ ତିରୋହିତ ହେଲେ ପରଂବ୍ରହ୍ମଙ୍କ କଳ୍ପିତ ବିଶ୍ୱଜ୍ଞାନ ମଧ୍ୟ ତିରୋହିତ ହୁଏ । ଶଙ୍କରାଚାର୍ଯ୍ୟ କହିଛନ୍ତି—

**କଳ୍ପିତ ପରମାର୍ଥଂ ହି ଆଲମ୍ବ୍ୟ ଅପରମାର୍ଥଃ ପ୍ରତିସିଦ୍ଧ୍ୟତ, ଯଥା ରଜ୍ଜ୍ୱାଦିଷୁସର୍ପାଦୟଃ । ତସ୍ମାତ୍ ପ୍ରପଞ୍ଚମେବ ବ୍ରହ୍ମଣି କଳ୍ପିତଂ ପ୍ରତିଷେଧତି ପରିଶିନଷ୍ଟି ବ୍ରହ୍ମେତି ନିର୍ଣ୍ଣୟଃ ॥**

ଅର୍ଥାତ୍ ରଜ୍ଜୁରେ ଅଧ୍ୟାସିତ ସର୍ପ-ଭ୍ରମ ବାଧିତ ହେଲେ ଯେପରି ରଜ୍ଜୁଜ୍ଞାନ କେବଳ ଅବଶିଷ୍ଟ ରହେ, ସେହିପରି ଅସଦ୍ରୂପ ଜଗତ୍ ବାଧିତ ହେଲେ ସତ୍ୟସ୍ୱରୂପ ବ୍ରହ୍ମ ଅବାଧିତ ରହନ୍ତି । ଉପନିଷଦ ମଧ୍ୟ ଏହି କଳ୍ପିତ ବିଶ୍ୱକୁ ଅଜ୍ଞାନଜନିତ ମନେକରି ବ୍ରହ୍ମଙ୍କୁ କେବଳ ସତ୍ ବୋଲି ପ୍ରତିପାଦନ କରେ ।

**ଠ—ମାୟା-ଅଜ୍ଞାନର ବିବରଣୀ ।**

ଯେଉଁ ମାୟାର ପ୍ରଭାବରେ ଅଘଟନ-ଘଟନ ସଂସାଧିତ ହୁଏ ଏବଂ ଯାହାର ବଳରେ ବ୍ରହ୍ମଙ୍କଠାରେ ଏହି ଜଗତ୍‌ପ୍ରପଞ୍ଚ ଅଧ୍ୟାସିତ ହୁଏ, ସେହି ମାୟାର ସ୍ୱରୂପ କ'ଣ ? ବେଦାନ୍ତୀଙ୍କ ମତରେ ଏହି ଅଘଟନଘଟନପଟୀୟସୀ ମାୟାର ସ୍ୱରୂପ ନିର୍ଣ୍ଣୟ କରିବା ଦୁରୂହ ବ୍ୟାପାର । କାରଣ, ମାୟାଶବ୍ଦର ରୂଢ଼ାର୍ଥ ଅନୁସାରେ—ଯାହା ଅଛି ଓ ଯାହା ନାହିଁ, ଏପରି ପରସ୍ପର ବିରୁଦ୍ଧାର୍ଥକ ଉଭୟ ଅର୍ଥ ଜ୍ଞାତ ହୁଏ । ଶଙ୍କର କହିଛନ୍ତି—

**ଅବ୍ୟକ୍ତା ହି ସା ମାୟା, ତତ୍ତ୍ୱାନ୍ୟତ୍ୱନିରୂପଣସ୍ୟାଶକ୍ୟତ୍ୱାତ୍ ।**

ବେ: ସୂ: ୧ । ୪ । ୩ ।

ଅର୍ଥାତ୍ ମାୟାର ସ୍ୱରୂପ ଅନିର୍ବଚନୀୟ ; ଏହା ସତ୍ୟ କି ମିଥ୍ୟା—କିଛି ନୁହେଁ । ଅତଏବ ବେଦାନ୍ତୀଙ୍କ ମତରେ—

ସଦସଦ୍‌ଭ୍ୟାମନିର୍ବାଚ୍ୟାମିଥ୍ୟାଭୂତା ସନାତନୀ ।

ସଦସଦ୍‌ଭ୍ୟାମନିର୍ବଚନୀୟଂ ତ୍ରିଗୁଣାତ୍ମକଂ ଜ୍ଞାନବିରୋଧିଭାବରୂପଂ ଯତ୍‌କିଞ୍ଚିତ୍ ଇତି ବଦନ୍ତି । ବେଦାନ୍ତସାର-୨୫ ।

ଅଜ୍ଞାନର ବ୍ୟାଖ୍ୟା ଅନୁସାରେ ଅସତ୍ ପଦାର୍ଥ କେବେହେଁ କୌଣସି ପଦାର୍ଥର କାରଣ ହୋଇ ପାରେ ନାହିଁ । ଆକାଶପୁଷ୍ପ ବା ଶଶଶୃଙ୍ଗ କୌଣସି ପଦାର୍ଥ ନୁହେଁ, ଅତଏବ ସେ କୌଣସି କାର୍ଯ୍ୟ ପ୍ରତି କାରଣ ହୋଇ ପାରେ ନାହିଁ । ସେହିପରି ଅଜ୍ଞାନକୁ ଅସତ୍ ପଦାର୍ଥ ବୋଲି ମାନିଲେ ତଦ୍ୱାରା ଜଗତ୍-ପ୍ରପଞ୍ଚ ତାହାର କାର୍ଯ୍ୟ କିପରି ହୋଇପାରିବ ; ଅତଏବ ଅଜ୍ଞାନରୂପିଣୀ ମାୟା ଅସତ୍ ବା ସତ୍ ପଦାର୍ଥ ନୁହେଁ । ତାହା ଅନିର୍ବଚନୀୟ ପଦାର୍ଥ ।

ଅସ୍ୟାଜ୍ଞାନସ୍ୟାବରଣବିକ୍ଷେପନାମକଂ ଶକ୍ତିଦ୍ୱୟମସ୍ତି ।

ବେ: ସା: ୩୫ ।

ଏହି ଅଜ୍ଞାନର ଦୁଇଟି ଶକ୍ତି ଅଛି—ଗୋଟିଏ ଆବରଣ ଶକ୍ତି ଓ ଅପରଟି ବିକ୍ଷେପ ଶକ୍ତି । ଏ ବିଷୟରେ ବେଦାନ୍ତ କହେ—

ଆବୃତ୍ତି ସ୍ତମସଃ ଶକ୍ତିସ୍ତଦ୍ଧ୍ୟାବରଣକାରଣମ୍ ।
ମୂଳାବିଦ୍ୟେତି ସା ପ୍ରୋକ୍ତା ଯୟା ସଂମୋହିତଂ ଜଗତ୍ ॥

ସର୍ବବେଦାନ୍ତସିଦ୍ଧାନ୍ତସାର ସଂଗ୍ରହ । ୪୯୦ .

[ ଅବିଦ୍ୟାର ସତ୍ତ୍ୱ, ରଜଃ ଓ ତମଃ—ଏହି ତିନୋଟି ଶକ୍ତି ଅଛି ] ତନ୍ମଧ୍ୟରେ ତମୋଗୁଣର ଶକ୍ତି ଆବରଣ ଓ ସେହି ତମୋଗୁଣ କେବଳ ସକଳ ଆବରଣର ହେତୁ । ତାହାକୁ ମୂଳ-ଅବିଦ୍ୟା କୁହାଯାଏ, ଯଦ୍ୱାରା ଏହି ସଂସାର ମୋହିତ ହୋଇଅଛି ।

ବିବେକବାନପ୍ୟତିଯୌକ୍ତିକୋଽପି
ଶ୍ରୁତାତ୍ମତତ୍ତ୍ୱୋଽପି ଚ ପଣ୍ଡିତୋଽପି ।
ଶକ୍ତ୍ୟା ଯୟା ସଂବୃତବୋଧଦୃଷ୍ଟି-
ରାତ୍ମାନମାତ୍ମସ୍ଥମିମଂ ନ ବେଦ ॥
ବିକ୍ଷେପନାମ୍ନୀ ରଜସସ୍ତୁ ଶକ୍ତିଃ
ପ୍ରବୃତ୍ତିହେତୁଃ ପୁରୁଷସ୍ୟ ନିତ୍ୟମ୍ ।
ସ୍ଥୂଳାଦିଲିଙ୍ଗାନ୍ତମଶେଷମେତଦ୍
ଯୟା ସଦାତ୍ମନ୍ୟସଦେବ ସୂୟତେ ॥

ନିଦ୍ରା ଯଥା ପୁରୁଷମପ୍ରମତ୍ତଂ
　　ସମାବୃଣୋତୀୟମପି ପ୍ରତୀଚମ୍ ।
ତଥାବୃଣୋତ୍ୟାବୃତ୍ତିଶକ୍ତିରନ୍ତ-
　　ର୍ବିକ୍ଷେପଶକ୍ତିଂ ପରିଜୃମ୍ଭୟନ୍ତୀ ॥

ତତ୍ରୈବ ୪୯୧-୪୯୩ ।

ଅର୍ଥାତ୍— ବିବେକୀ, ତାର୍କିକ, ଆତ୍ମତତ୍ତ୍ୱବିତ୍ ବା ଉତ୍ତମ ପଣ୍ଡିତ ହେଲେ ମଧ୍ୟ ସେମାନଙ୍କର ଜ୍ଞାନଚକ୍ଷୁ ଅଜ୍ଞାନରୂପକ-ଆବରଣ-ଶକ୍ତିଦ୍ୱାରା ଆବୃତ ହୋଇଥିବାରୁ ସେମାନଙ୍କ ହୃଦୟରେ ସୁପ୍ରତିଷ୍ଠିତ ଆତ୍ମାକୁ ସେମାନେ ଜାଣିପାରନ୍ତି ନାହିଁ । ରଜୋଗୁଣର ବିକ୍ଷେପିକା ଶକ୍ତି ପୁରୁଷର ନାନାବିଧ ପ୍ରବୃତ୍ତିର ସର୍ବଦା କାରଣ ହୁଏ । ଏହି ଶକ୍ତି ସର୍ବଦା ଆତ୍ମାଠାରେ ଦେହାଦି ସ୍ଥୂଳ ବସ୍ତୁଠାରୁ ବୁଦ୍ଧି ପର୍ଯ୍ୟନ୍ତ ସକଳ ମିଥ୍ୟା ବସ୍ତୁ ଅଧ୍ୟାରୋପିତ କରେ । ଯେପରି ନିଦ୍ରାଶକ୍ତି ଅତି ସାବଧାନ ପୁରୁଷକୁ ମଧ୍ୟ ଅଜ୍ଞାନ-ଆବରଣ କରିପକାଏ, ସେହିପରି ଏହି ଆବରଣଶକ୍ତି ଅନ୍ତଃକରଣରେ ବିକ୍ଷେପଶକ୍ତିକୁ ବର୍ଦ୍ଧିତ କରି ଆତ୍ମାକୁ ମଧ୍ୟ ଆବୃତ୍ତ କରେ ।

ଶକ୍ତ୍ୟା ମହତ୍ୟାଽବରଣାଭିଧାନୟା
　　ସମାବୃତେ ସତ୍ୟମଲସ୍ୱରୂପେ ।
ପୁମାନନାତ୍ମନ୍ୟହମେଷ ଏବେ-
　　ତ୍ୟାତ୍ମତ୍ୱବୁଦ୍ଧିଂ ବିଦଧାତି ମୋହାତ୍ ॥
ଯଥା ପ୍ରସୁପ୍ତି ପ୍ରତିଭାସଦେହେ
　　ସ୍ୱାତ୍ମତ୍ୱଧୀରେଷ ତଥା ହ୍ୟନାତ୍ମନଃ ॥
ଜନ୍ମାପ୍ୟୟକ୍ଷୁଦ୍‌ଭୟତୃଟ୍‌ଶ୍ରମାଦୀ
　　ନାରୋପୟତ୍ୟାତ୍ମନି ତସ୍ୟ ଧର୍ମାନ୍ ॥
ବିକ୍ଷେପଶକ୍ତ୍ୟା ପରିଚେଦ୍ୟମାନଃ
　　କରୋତି କର୍ମାଣ୍ୟୁଭୟାତ୍ମକାନି ।
ଭୁଞ୍ଜାନ ଏତତ୍ ଫଳମପ୍ୟୁପାତ୍ତଂ
　　ପରିଭ୍ରମତ୍ୟେବ ଭବାମ୍ବୁରାଶୌ ॥ ତତ୍ରୈବ ୪୯୪-୪୯୭ ।

ଅର୍ଥାତ୍ ମହାନ୍ ଆବରଣ-ଶକ୍ତିଦ୍ୱାରା ସ୍ୱଚ୍ଛସ୍ୱଭାବ ଆତ୍ମା ସମାବୃତ ହେଲେ ପୁରୁଷ ଅଜ୍ଞାନବଶତଃ ଅନାତ୍ମ-ଦେହ ପ୍ରଭୃତିରେ "ଅହଂଜ୍ଞାନ" ରୂପକ ଆତ୍ମଜ୍ଞାନ ସ୍ଥାପନ କରେ ।

ଯେପରି ସୁଷୁପ୍ତି କାଳରେ ଦେହରେ ଅନାତ୍ମଜ୍ଞାନ ଥାଏ, ସେହିପରି ପୁରୁଷ ଆତ୍ମାଠାରେ ଜନ୍ମ, ନାଶ, କ୍ଷୁଧା, ଭୟ, ତୃଷା, ଶ୍ରମ ପ୍ରଭୃତି ଅନାତ୍ମ-ଧର୍ମସମୂହ ଆରୋପ କରିଥାଏ । ଆତ୍ମା ବିକ୍ଷେପଶକ୍ତିଦ୍ୱାରା ପ୍ରେରିତ ହୋଇ ସାଧୁ ଓ ଅସାଧୁ—ଉଭୟବିଧ କର୍ମର ଅନୁଷ୍ଠାନ କରେ, ଏବଂ କର୍ମ ଓ କର୍ମରୁ ପ୍ରାପ୍ତ ଫଳ ଭୋଗ କରି ସଂସାର-ପାରାବାରରେ ବିଚରଣ କରେ ।

ଅଧ୍ୟାସଦୋଷାତ୍ ସମୁପାଗତୋଽୟଂ
ସଂସାରବନ୍ଧଃ ପ୍ରବଳପ୍ରତୀଚଃ ।
ଯଦ୍‌ଯୋଗତଃ କ୍ଲିଶ୍ୟତି ଗର୍ଭବାସ
ଜନ୍ମାପ୍ୟୟକ୍ଲେଶଭୟୈରଜସ୍ରମ୍ ॥
ଅଧ୍ୟାସୋ ନାମ ଖଲ୍ୱେଷ ବସ୍ତୁନୋ ଯୋଽନ୍ୟଥାଗ୍ରହଃ ।
ସ୍ୱାଭାବିକଭ୍ରାନ୍ତିମୂଳଂ ସଂସୃତେରାଦିକାରଣମ୍ ॥
ସର୍ବାନର୍ଥସ୍ୟ ତଦ୍‌ବୀଜଂ ଯୋଽନ୍ୟଥାଗ୍ରହ ଆତ୍ମନଃ ।
ତତଃ ସଂସାରସଂପାତଃ ସତତକ୍ଲେଶଲକ୍ଷଣଃ ॥
ଅଧ୍ୟାସାଦେବ ସଂସାରୋ ନଷ୍ଟେଽଧ୍ୟାସେ ନ ଦୃଶ୍ୟତେ ।
ତଦେତଦୁଭୟଂ ସ୍ପଷ୍ଟଂ ପଶ୍ୟ ତ୍ୱଂ ବଦ୍ଧମୁକ୍ତୟୋଃ ॥

ଚୂଡ଼ାମଣି ବି—୪୯୭-୫୦୦ ।

ଅର୍ଥାତ୍—ଅଧ୍ୟାସଦୋଷରୁ ବଳବାନ୍, ଅର୍ଥାତ୍ ନିତ୍ୟଜ୍ଞାନସ୍ୱରୂପ ଆତ୍ମାର ଏହି ସଂସାରବନ୍ଧନ ଘଟିଅଛି ଏବଂ ସେହି ଆତ୍ମାର ସମ୍ବନ୍ଧରୁ ଜନ୍ମ, ନାଶ, ଦୁଃଖ ଓ ଭୟଦ୍ୱାରା ନିୟତ କ୍ଲେଶ ଅନୁଭବ କରୁଥାଏ । ରଜ୍ଜୁରେ ସର୍ପଜ୍ଞାନକୁ ଅଧ୍ୟାସ କୁହାଯାଏ । ଭ୍ରମଜ୍ଞାନ କେବଳ ଏହାର ହେତୁ ଏବଂ ଏହା କେବଳ ସଂସାରର ମୂଳକାରଣ । ଆତ୍ମାକୁ ଅନ୍ୟରୂପରେ, ଅର୍ଥାତ୍ ସୁଖୀ, ଦୁଃଖୀରୂପରେ ଜାଣିବାହିଁ ସକଳ ଅନର୍ଥର କାରଣ । ଏହି ଆତ୍ମାର ଅନ୍ୟଥାଜ୍ଞାନଦ୍ୱାରା ସର୍ବଦା କ୍ଲେଶରୂପ ସଂସାରରେ ଆତ୍ମା ପ୍ରବେଶ କରିଥାଏ । ଅଧ୍ୟାସହେତୁରୁ ସଂସାର ଓ ଅଧ୍ୟାସର ନାଶରେ ସଂସାର ଦେଖାଯାଏ ନାହିଁ । ଏହି ହେତୁରୁ ବଦ୍ଧ ଓ ମୁକ୍ତର ଉଭୟବିଧ ଅବସ୍ଥା ( ବଦ୍ଧଜୀବର ସଂସାରପ୍ରବେଶ ଓ ମୁକ୍ତଜୀବର ସଂସାରାଭାବ ) ସ୍ପଷ୍ଟଭାବରେ ନିରୀକ୍ଷଣ କର । ଉପର୍ଯ୍ୟୁକ୍ତ ବର୍ଣ୍ଣନାରୁ ମାୟାର ସ୍ୱରୂପ ଅନିର୍ବଚନୀୟ ହେଲେ ମଧ୍ୟ, ତାହାର ପ୍ରଣାଳୀ କଥଞ୍ଚିତ୍ ହୃଦୟଙ୍ଗମ କରିବା ଅସମ୍ଭବ ନୁହେଁ । ସଂକ୍ଷେପରେ କହିବାକୁ ଗଲେ ବେଦାନ୍ତୀ ବ୍ରହ୍ମଙ୍କର ମାୟାଶକ୍ତି ଓ ଆବରଣ ବିକ୍ଷେପରୂପକ ତାହାର ଶକ୍ତିଦ୍ୱୟର ସାମର୍ଥ୍ୟ ମଧ୍ୟ ବର୍ଣ୍ଣନା କରି ଅଛନ୍ତି । ସେଥିରୁ ବୁଝାଯାଏ ଯେ ଆବରଣଫଳରେ ଜୀବ ନିଜେ

ବ୍ରହ୍ମଙ୍କ ସତ୍ତ୍ୱସ୍ୱରୂପ ହୋଇ ମଧ୍ୟ ନିଜକୁ ବ୍ରହ୍ମଠାରୁ ସ୍ୱତନ୍ତ୍ର ଓ ପୃଥକ୍ ମନେ କରେ, ଓ ତଦ୍ଦ୍ୱାରା ଅବିଦ୍ୟା ବା ଶୋକ ମୋହର ଅଧୀନ ହୁଏ । ପୁନଶ୍ଚ ବିକ୍ଷେପବଳରେ ଜୀବର ଚିତ୍ତରେ ଏହି ଜଗଦ୍‌ଭ୍ରମ ସମ୍ଭୂତ ହୁଏ । ଏହି ବିକ୍ଷେପ-ଶକ୍ତି ଅନେକ ପରିମାଣରେ ସଂକଳ୍ପ ଶକ୍ତିର ଅନୁରୂପ । ସଙ୍କଳ୍ପଶକ୍ତିର ଇନ୍ଦ୍ରଜାଲକ୍ରୀଡ଼ା ସହିତ ଏହି ଶକ୍ତିର ଅଳ୍ପାଧିକ ପରିଚୟ ଥିବା ଦେଖାଯାଏ । ଐନ୍ଦ୍ରଜାଲିକ ଯେଉଁ ସମୟରେ ଦର୍ଶକମାନଙ୍କ ନିକଟରେ ତାହାର ଇନ୍ଦ୍ରଜାଲମାୟା ବିସ୍ତାର କରେ, ସେ ସମୟରେ ଦର୍ଶକଙ୍କ ମନରେ ଦୃଢ଼ ପ୍ରତୀତି ହୁଏ ଯେ, ସେହିସବୁ ଦୃଷ୍ଟ ବା ଶ୍ରୁତ ପଦାର୍ଥଗୁଡ଼ିକ ସତ୍ୟ; କିନ୍ତୁ ପ୍ରକୃତରେ ସେହିସବୁ ଦୃଷ୍ଟ ଓ ଶ୍ରୁତ ସକଳପଦାର୍ଥ କେବଳ ସଂକଳ୍ପ, ଅର୍ଥାତ୍ : ପ୍ରକୃତରେ ଦେଖିବା ବା ଶୁଣିବା ପଦାର୍ଥ ସେଠାରେ କିଛି ନାହିଁ । ଏହି ଅଘଟନ ଘଟନରୂପକ ସକଳ ଭ୍ରମଜନିତ ପଦାର୍ଥ ଐନ୍ଦ୍ରଜାଲିକର ମାୟାଶକ୍ତିରୁ ସିଦ୍ଧ, ଅତଏବ ଐନ୍ଦ୍ରଜାଲିକକୁ ମାୟାବୀ କହନ୍ତି । *

## ୦—ଜଗତ୍ ସୃଷ୍ଟିର କାରଣ ଓ କର୍ତ୍ତା କେବଳ ସେହି ପରମେଶ୍ୱର ଓ ପରମାତ୍ମ-ଜ୍ଞାନରେ ଜୀବର ମୁକ୍ତିଲାଭ ସମ୍ଭବ ।

* ସଂସ୍କୃତ ସାହିତ୍ୟର ବହୁସ୍ଥାନରେ ଏହି ଇନ୍ଦ୍ରଜାଲର ବର୍ଣ୍ଣନା ଦେଖାଯାଏ । ରାମାୟଣରେ ବର୍ଣ୍ଣିତ ହୋଇଛି—ମାୟାବୀ ରାବଣ ଇନ୍ଦ୍ରଜାଲ-ଶକ୍ତିପ୍ରଭାବରେ ରାମଙ୍କର ମାୟାମୁଣ୍ଡ ଓ ମାୟାଧନୁର ଭ୍ରମ ଉତ୍ପାଦନ କରି ସୀତାଙ୍କୁ ପ୍ରଲୋଭନ କରିବା ନିମନ୍ତେ ଚେଷ୍ଟା କରିଥିଲା । ମାରୀଚ ରାକ୍ଷସ ମଧ୍ୟ ରାମ ଓ ସୀତାଙ୍କ ନିକଟରେ ମାୟାମୃଗ ରୂପରେ ଏହି ସଂକଳ୍ପଶକ୍ତିର ପରିଚୟ ଦେଇଥିଲା । ଆଜିକାଲି ପାଶ୍ଚାତ୍ୟ ଦେଶରେ ହିପ୍‌ନଟିଜମ୍ (hypnotism) ବିଦ୍ୟାର ଯେଉଁ ବିସ୍ତାର ଦେଖିବାକୁ ମିଳେ, ତାହା ଭାରତର ଏହି ପ୍ରାଚୀନକାଳରୁ ଆଗତ ଯାଦୁବିଦ୍ୟାର ରୂପାନ୍ତର ମାତ୍ର । କୌଣସି ବ୍ୟକ୍ତିକୁ (hypnotise) ମାୟାଜନିତ ନିଦ୍ରାଚ୍ଛନ୍ନ କରି ଯାଦୁକର ନିଜର ସଂକଳ୍ପଶକ୍ତିଦ୍ୱାରା ଅତିସହଜରେ ତାହାର ଭ୍ରମ (hallucination) ଜାତ କରିପାରେ । ଦେଖାଯାଇଛି, ଯାଦୁକର ଏହିପରି ନିଦ୍ରାଚ୍ଛନ୍ନ ବ୍ୟକ୍ତିକୁ କହିଲା— ତୁମକୁ ଗ୍ରାସକରିବାକୁ ଏକ ଭୟଙ୍କର ସିଂହ ଆସୁଛି । ଏହା ଶୁଣିବା ମାତ୍ରେ ଉକ୍ତ ବ୍ୟକ୍ତି ତତ୍‌କ୍ଷଣାତ୍ ଭୟରେ ଥରିଲା । ଏହିପରି ପରେ ଅତି ଗ୍ରୀଷ୍ମ ହେଉଥିବା ସମୟରେ କହିଲା— ଆଜି ବହୁତ ଶୀତ ହେଉଛି । ଏହା ଶୁଣିବାମାତ୍ରେ ଉକ୍ତ ବ୍ୟକ୍ତି ଶୀତରେ ଥରିଲା । ଆହୁରିମଧ୍ୟ ଇନ୍ଦ୍ରଜାଲିକ ଆକାଶରେ ମେଘ ନ ଥିଲେ ମଧ୍ୟ ମୂଷଳଧାରାରେ ବର୍ଷାକରି ଦେଖାଇଲା । ଏହାସବୁ ସଂକଳ୍ପ-ଶକ୍ତିର ଅଘଟନପଟୀୟସୀ କେବଳ । ପ୍ରକୃତ ଯାଦୁକର ଦର୍ଶକକୁ (hypnotise) ବା ନିଦ୍ରାଛନ୍ନ କରି ତାହାର ମନରେ ଭ୍ରମ ଉତ୍ପାଦନ କରିପାରେ । କେବଳ ଜଣକମନରେ ନୁହେଁ, ସମସ୍ତ ଦର୍ଶକମଣ୍ଡଳୀଙ୍କ ମନରେ ସର୍ବସାଧାରଣ ଭ୍ରମ (collective hallucination) ଉତ୍ପାଦନ କରିଥିବା ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ବର୍ତ୍ତମାନ ମଧ୍ୟ ଦେଖାଯାଇଛି ଯେ, ବାଜିକରମାନେ ଶୂନ୍ୟମାର୍ଗରେ ସ୍ୱଚ୍ଛନ୍ଦକ୍ରୀଡ଼ା କରି ନାନାପ୍ରକାର ଅଦ୍ଭୁତ ଯାଦୁକର-ବିଦ୍ୟା ଲୋକଙ୍କୁ ଦେଖାଇଛନ୍ତି । ଏହା ସବୁ ଯେପରି କାଳ୍ପନିକ, ଏହିପରି ଦୃଶ୍ୟମାନ ସଂସାର ମଧ୍ୟ କାଳ୍ପନିକ ବୋଲି ବୁଝିବାକୁ ହେବ ।

ବେଦାନ୍ତୀ କହେ ଯେ ଏହି ସଙ୍କଳ୍ପଦ୍ୱାରା ବ୍ରହ୍ମ ନିଜର ମାୟା-ଶକ୍ତିଦ୍ୱାରା (Collective hallucination) ଜୀବଜଗତ୍ ସୃଷ୍ଟି କରି ସେମାନଙ୍କର ଜଗଦ୍‌ଭ୍ରମ ମଧ୍ୟ ସାଧିତ କରିଅଛନ୍ତି । ଅତଏବ ପରମାତ୍ମା ଐନ୍ଦ୍ରଜାଲିକର ଚୂଡ଼ାମଣି । ସେ ସେହି ବିକ୍ଷେପରୂପକ ଇନ୍ଦ୍ରଜାଲ ବିସ୍ତାର କରି ଜୀବମାନଙ୍କୁ ମୋହିତ କରନ୍ତି । ଏ ବିଷୟରେ ଉପନିଷଦ୍ କହେ—

"ଯ ଏକୋ ଜାଲବାନୀଶିତ ଈଶନୀଭିଃ
ସର୍ବାଁଲ୍ଲୋକାନୀଶିତ ଈଶନୀଭିଃ ।
ଯ ଏବୈକ ଉଦ୍ଭବେ ସମ୍ଭବେ ଚ
ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତି । ଶ୍ୱେତାଶ୍ୱତର—୩ । ୧ ।

ଅର୍ଥାତ୍—ଯେ ସର୍ବଶକ୍ତିମାନ୍ ଅଦ୍ୱିତୀୟ ପରମାତ୍ମା, ସେହି କେବଳ ଜଗତ୍‌ସ୍ୱରୂପ ଓ ଜଗତ୍‌କର୍ତ୍ତା । ସେ ସ୍ୱୀୟଶକ୍ତି-ବଳରେ ମାୟାଦ୍ୱାରା ଅନନ୍ତବ୍ରହ୍ମାଣ୍ଡ ସୃଷ୍ଟି କରିଅଛନ୍ତି । ସେ ସ୍ୱୀୟବଳରେ ସମସ୍ତ ଲୋକ ଶାସନ କରୁଅଛନ୍ତି । ସଂସାରର ଉତ୍ପତ୍ତି, ସ୍ଥିତି ଓ ସଂହାର ସଂଘଟିତ ହେଉଅଛି; କିନ୍ତୁ ସେ ଅବିକୃତରୂପରେ ରହି ଅଛନ୍ତି । ଯେଉଁମାନେ ସେହି ସର୍ବ-ଶକ୍ତିମାନ, ଏକ ଓ ଅଦ୍ୱିତୀୟ ପରମାତ୍ମାଙ୍କୁ ଜାଣିପାରନ୍ତି, ସେମାନେ ଅମୃତତ୍ତ୍ୱଲାଭ କରି ଜୀବନ୍ମୁକ୍ତ ହୁଅନ୍ତି ।

ଉପର୍ଯ୍ୟୁକ୍ତ ସୂକ୍ତସମୂହରୁ ଏହା ପ୍ରତିପାଦିତ ହୁଏ ଯେ, ଯେତେବେଳେ ଜୀବର ଆବରଣରୂପକ ମୋହ ଅପସାରିତ ହୁଏ, ସେ ସମୟରେ ଜୀବ ପରମାତ୍ମାଙ୍କ ସ୍ୱରୂପ ଅବଧାରଣ କରିବାକୁ ସମର୍ଥ ହୁଏ ଓ ବ୍ରହ୍ମଙ୍କ ସହିତ ନିଜର ଅଭେଦ ଉପଲବ୍‌ଧି କରି ବ୍ରହ୍ମରେ ମିଳିତ ହୁଏ । ଅର୍ଥାତ୍ ବ୍ରହ୍ମସାକ୍ଷାତ୍‌କାର ଲାଭ କରେ, ସେତେବେଳେ ତାହାର ନାମରୂପ ବିଲୀନ ହୋଇ କେବଳ ଏକାକାର ବ୍ରହ୍ମ ଉପଲବ୍‌ଧ ହୁଏ । ସେ ସମୟରେ ଜଗଦ୍‌ଭ୍ରମ ତିରୋହିତ ହୋଇଯାଏ । ଉପନିଷଦ୍ ମଧ୍ୟ କହେ—

ଭିଦ୍ୟେତେ ତାସାଂ ନାମରୂପେ ସମୁଦ୍ର ଇତ୍ୟେବଂ ପ୍ରୋଚ୍ୟତେ ॥
ପ୍ରଶ୍ନ ୬ । ୫ ।

ଶ୍ୱେତାଶ୍ୱତର ଶ୍ରୁତି ମଧ୍ୟ ଏ ବିଷୟରେ ବର୍ଣ୍ଣନା କରିଛି—

ସଂଯୁକ୍ତମେତତ୍ କ୍ଷରମକ୍ଷରଞ୍ଚ ବ୍ୟକ୍ତାବ୍ୟକ୍ତଂ ଭରତେ ବିଶ୍ୱମୀଶଃ
ଅନୀଶଶ୍ଚାତ୍ମା ବଧ୍ୟତେ ଭୋକ୍ତୃଭାବାଜ୍‌ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାଶୈଃ ॥
ଜ୍ଞାଜ୍ଞୌ ଦ୍ୱାବଜାବୀଶାନୀଶାବଜା ହ୍ୟେକା ଭୋକ୍ତୃ ଭୋଗାର୍ଥ ଯୁକ୍ତା ।
ଅନନ୍ତଶ୍ଚାତ୍ମା ବିଶ୍ୱରୂପୋ ହ୍ୟକର୍ତ୍ତା ତ୍ରୟଂ ଯଦା ବିନ୍ଦତେ ବ୍ରହ୍ମମେତତ୍ ।
୧ । ୮ । ୯ ।

ଏକମାତ୍ର ବ୍ରହ୍ମ କେବଳ ସ୍ୱୀକୃତ ହୋଇଅଛନ୍ତି, ଏ କଥା ପୂର୍ବରୁ କୁହାଯାଇଛି । ଏହା ପ୍ରତିପାଦିତ ହୋଇଛି ଯେ, ଜୀବାତ୍ମା ଓ ପରମାତ୍ମାଙ୍କର ଅଭେଦଜ୍ଞାନ ଲାଭ କଲେ ମନୁଷ୍ୟ ମୁକ୍ତିଲାଭ କରେ । ପ୍ରକୃତରେ ଜୀବ ଓ ପରମଙ୍କର ଭେଦଜ୍ଞାନ କେବଳ ଉପାଧିଗତ, ତଦ୍‌ଭିନ୍ନ ଅନ୍ୟ କିଛି ପାର୍ଥକ୍ୟ ନାହିଁ । ସେହି ପରମେଶ୍ୱର ବ୍ୟକ୍ତ ଓ ଅବ୍ୟକ୍ତ କାର୍ଯ୍ୟକାରଣସ୍ୱରୂପ ବିଶ୍ୱର ଭରଣକର୍ତ୍ତା । ଅନୀଶ୍ୱର ଜୀବ ଭୋଗାସକ୍ତ ହୋଇ ଅବିଦ୍ୟାପ୍ରଭାବରେ ଇନ୍ଦ୍ରିୟମାନଙ୍କର ଅଧୀନ ହୋଇ ରହିଅଛି । ପରନ୍ତୁ ଉପାଧିବିଶିଷ୍ଟ ଜୀବ ଓ ନିରୁପାଧିକ ପରମାତ୍ମାଙ୍କର ଅଭେଦ ଜ୍ଞାନ ଲାଭଦ୍ୱାରା ଜୀବ ଭବ-ବନ୍ଧନରୁ ମୁକ୍ତ ହୋଇପାରେ । ପୂର୍ବ ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ଯେ, ପରମେଶ୍ୱର ବ୍ୟକ୍ତାବ୍ୟକ୍ତ ବିଶ୍ୱର ଭରଣକର୍ତ୍ତା । ଜୀବାତ୍ମା ଇନ୍ଦ୍ରିୟମାନଙ୍କର ବଶ ହୋଇ ରହିଅଛି । କେବଳ ଏତିକି ମାତ୍ର ଜୀବ ଓ ପରମର ଭେଦ ନୁହେଁ ; ଏମାନଙ୍କର ବିଶେଷ ବୈଲକ୍ଷଣ୍ୟ ମଧ୍ୟ ଦୃଷ୍ଟ ହୁଏ, ପରମାତ୍ମା ସର୍ବଜ୍ଞ ଓ ଜୀବ ଅଜ୍ଞ । ପରନ୍ତୁ ସର୍ବଜ୍ଞ ଈଶ୍ୱର ଓ ଅଜ୍ଞ ଅନୀଶ୍ୱର ଜୀବ—ଉଭୟ ହିଁ ଅଜନ୍ମା । ଅବିଜ୍ଞେୟ ଓ ନିତ୍ୟ ପ୍ରକୃତିର ଆଶ୍ରୟରେ ଆତ୍ମା ଜୀବୋପାଧି ଧାରଣ କରି ଭୋଗକର୍ତ୍ତା ହୁଏ । ଭୋଗ୍ୟବସ୍ତୁ ସକଳ ପ୍ରକୃତିର ବିକାରସ୍ୱରୂପ । ଆତ୍ମା ଅନନ୍ତ ଓ ଏହି ଅଖିଳ ଜଗତ୍ ତାହାଙ୍କର ସ୍ୱରୂପ କେବଳ । ସେ ଅକର୍ତ୍ତା, ଅର୍ଥାତ୍ ସଂସାର-ଧର୍ମରେ ସେ ଲିପ୍ତ ରହନ୍ତି ନାହିଁ । ଯେଉଁମାନେ ପରମାତ୍ମା, ଜୀବ ଓ ପ୍ରକୃତି * ଏହି ପଦାର୍ଥତ୍ରୟ ବିଶେଷଭାବେ ଜାଣିପାରନ୍ତି, ସେହିମାନେ ପରଂବ୍ରହ୍ମଙ୍କ ଜ୍ଞାନରେ ଅଧିକାରୀ ହୋଇ ପ୍ରକୃତିରୁ ମୁକ୍ତିଲାଭ କରନ୍ତି ।

ଏହି ଅଭିପ୍ରାୟରେ ବାଦରାୟଣ ବ୍ରହ୍ମସୂତ୍ରରେ କହିଅଛନ୍ତି—

**ଭୋକ୍ତ୍ରାପତ୍ତେରବିଭାଗଶ୍ଚେତ୍, ସ୍ୟାଲ୍ଲୋକବତ୍ ।** ୨ । ୧ । ୧୩

ଅର୍ଥାତ୍ ଯଦି ବ୍ରହ୍ମଙ୍କୁ କେବଳ ବିଶ୍ୱର କାରଣ ବୋଲି କୁହାଯିବ, ତେବେ ଭୋକ୍ତା ଓ ଭୋଗ୍ୟର ବିଭାଗଜ୍ଞାନ ଲୁପ୍ତ ହୋଇଯିବ । ଏହି ଶଙ୍କାର ସମାଧାନ ସ୍ୱରୂପ ବାଦରାୟଣ କହୁଛନ୍ତି—ସ୍ୟାତ୍ ଲୋକବତ୍ ; ଅର୍ଥାତ୍ ବ୍ରହ୍ମଙ୍କୁ ବିଶ୍ୱର କାରଣ କହିବା ଲୋକପ୍ରଚଳିତ ଦୃଷ୍ଟାନ୍ତରୁ ସିଦ୍ଧ ହୋଇପାରେ । ଲୋକରେ ଯେପରି ସମୁଦ୍ରୋତ୍‌ଥିତ ଫେନ, ବୁଦ୍‌ବୁଦ୍, ତରଙ୍ଗପ୍ରଭୃତି ପରସ୍ପର ଭିନ୍ନ ହେଲେ ମଧ୍ୟ ସମୁଦ୍ର ଜଳରୁ ଅଭିନ୍ନ ଓ ଫେନ ତରଙ୍ଗ ପ୍ରଭୃତି ସମୁଦ୍ରଜଳାତ୍ମକ, ସେହିପରି ବ୍ରହ୍ମ ଓ ବିଶ୍ୱ ପ୍ରକୃତରେ ଭୋକ୍ତା ଓ ଭୋଗ୍ୟ ପରସ୍ପରରୁ ଅଭିନ୍ନ । ଭୋକ୍ତା ଓ ଭୋଗ୍ୟ—ପ୍ରକୃତି ଓ ପୁରୁଷ ଉଭୟ ବ୍ରହ୍ମାତ୍ମକ; କିନ୍ତୁ ବିଶ୍ୱ ବ୍ରହ୍ମଙ୍କ ସହିତ ଅଭିନ୍ନ ହେଲେ ମଧ୍ୟ ସେମାନଙ୍କର ପରସ୍ପର ଭେଦ ବିଲୁପ୍ତ ହୁଏ ନାହିଁ । ଅତଏବ ବାଦରାୟଣଙ୍କ ମତରେ ବ୍ରହ୍ମ କେବଳ ବିଶ୍ୱର ଏକମାତ୍ର କାରଣ । ଜଡ଼ ଓ ଚିତ୍, ପ୍ରକୃତି ଓ ପୁରୁଷ, ଭୋକ୍ତା ଓ

* ଏହି ଆଲୋଚନାଫଳରେ ଜଣାଯାଏ ଯେ, ପ୍ରତ୍ୟକ୍ ଭାବରେ ଯାହା ମାୟା, ପରାକ୍-ଭାବରେ ତାହାର ନାମ ପ୍ରକୃତି । ଅତଏବ ଉପନିଷଦ୍‌ରେ କୁହାଯାଇଛି 'ମାୟାଂ ତୁ ପ୍ରକୃତିଂ ବିଦ୍ୟାତ୍' ॥

ଯୋଗ୍ୟ—ଏହା ସବୁ ତାଙ୍କର ବିଭାଗ ବା ବିଧାମାତ୍ର । ଅତଏବ ଯେଉଁଭାବରେ କହିଲେ ମଧ୍ୟ, ଅର୍ଥାତ୍ ମାୟାଶକ୍ତିଦ୍ୱାରା ନାନା ଭେଦ ଦେଖାଗଲେ ମଧ୍ୟ ଈଶ୍ୱର ବିବିଧ ବୈଚିତ୍ର୍ୟକୁ ବ୍ରହ୍ମଙ୍କର ପ୍ରକୃତି ବା ପ୍ରକାର କୁହାଯାଏ; ପରଂବ୍ରହ୍ମ କିନ୍ତୁ ଏକମାତ୍ର ସତ୍ୟ । ନିଷ୍କର୍ଷ ଏହା— "ଏକମେବାଦ୍ୱିତୀୟଂ ବ୍ରହ୍ମ" । ଅତଏବ ବେଦାନ୍ତ ମତରେ "ସର୍ବଂ ଖଳ୍ୱିଦଂ ବ୍ରହ୍ମ" ବ୍ରହ୍ମୈବେଦଂ ସର୍ବମ୍", "ନେହ ନାନାସ୍ତି କିଂଚନ" "ତଦିଦଂ ସର୍ବଂ ଅସୃଜତ୍"—ଇତ୍ୟାଦି ସେହି ପରଂବ୍ରହ୍ମଙ୍କୁ ଏକ ଓ ଅଦ୍ୱିତୀୟ ବୋଲି କୁହାଯାଇଛି । ସେହି ଏକ ବିଶୁଦ୍ଧ ମହିମା ବର୍ଣ୍ଣନାତୀତ । କେବଳ ତାହାଙ୍କର ଅଦ୍‌ଭୁତ ମହିମାରୁ ଈଶ୍ୱର ଜୀବ ଓ ଜଡ଼ଜଗତ୍ ସୃଷ୍ଟି ହୋଇଅଛି । ଏହା କେବଳ ବେଦାନ୍ତର ଚରମ ସିଦ୍ଧାନ୍ତ । ଏହା ସବୁ ବିଶେଷ ଭାବରେ ପୂର୍ବ ଅନୁପାଦରେ ବର୍ଣ୍ଣିତ ହୋଇଅଛି ।

## ଠ—ପରାପର, କ୍ଷର ଓ ଅକ୍ଷର, ପ୍ରକୃତି ଓ ପୁରୁଷ-ପ୍ରଭୃତିର ଆଧାର କେବଳ ଏକ ପ୍ରଭୁ ପରଂବ୍ରହ୍ମ ।

ଉପନିଷଦ୍‌ରେ କୁହାଯାଇଛି—ସେହି ଏକ ଅଦ୍ୱିତୀୟ ଦେବ କେବଳ ପ୍ରଧାନ କ୍ଷେତ୍ରଜ୍ଞ ଓ ପତି—

**କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ କ୍ଷରାତ୍ମାନୌ ଈଶତେ ଦେବ ଏକଃ ।**

ଶ୍ୱେତାଶ୍ୱତର—୧ । ୧୦ ।

ଅର୍ଥାତ୍ ଏକ ଅଦ୍ୱିତୀୟ ଦେବ (ପରମାତ୍ମା) **କ୍ଷର ଓ** ଅକ୍ଷରଙ୍କୁ (ପ୍ରଧାନ ଓ ଜୀବ) ଶାସନ କରନ୍ତି । ଏ ବିଷୟରେ ଗୀତାରେ ମଧ୍ୟ କୁହାଯାଇଛି—"କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ" । ଅର୍ଥାତ୍ ସମସ୍ତ କ୍ଷେତ୍ରର ସେହି କ୍ଷେତ୍ରଜ୍ଞରୂପରେ ବିରାଜିତ । ଆହୁରି ମଧ୍ୟ ଗୀତାରେ ଭଗବାନ୍ ନିଜର ପରା-ଅପରା ନାମକ ପ୍ରକୃତିଦ୍ୱୟର ଉଲ୍ଲେଖ କରିଅଛନ୍ତି—

**ଏତଦ୍‌ଯୋନୀନି ଭୂତାନି ସର୍ବାଣୀତ୍ୟୁପଧାରୟ ।** ୭ । ୬ ।

ଅର୍ଥାତ୍ ସମସ୍ତ ଭୂତ ଏହି ଉଭୟ ପ୍ରକୃତିରୁ କେବଳ ଉତ୍ପନ୍ନ । ଏହି ଅପରା ପ୍ରକୃତିକୁ ସାଂଖ୍ୟଦର୍ଶନରେ ପ୍ରଧାନ ଓ ପରାକୁ ପୁରୁଷ ବୋଲି ବର୍ଣ୍ଣନା କରାଯାଇଛି । ଆହୁରି ମଧ୍ୟ ଗୀତାର ଅନ୍ୟ ସ୍ଥାନରେ ଏହି ଉଭୟ ପ୍ରକୃତିକୁ କ୍ଷର ଓ ଅକ୍ଷର-ପୁରୁଷରୂପରେ ନିର୍ଦ୍ଦେଶ କରାଯାଇଛି; କିନ୍ତୁ ପରମାତ୍ମା ଏ ସମସ୍ତର ମୂଳବୀଜ ହେଲେ ମଧ୍ୟ ଏ ସମସ୍ତରୁ ଅତୀତ ବା ପୃଥକ୍‌ଭାବରେ ବିଦ୍ୟମାନ । ସେ ପୁରୁଷ ବା ପ୍ରକୃତି ନୁହଁନ୍ତି, କୌଣସି ଲିଙ୍ଗର ଅନ୍ତର୍ଗତ ନୁହଁନ୍ତି । ସେ ସର୍ବଦା ସତ୍-ଚିତ୍‌ସ୍ୱରୂପରେ ବିଦ୍ୟମାନ ।

ଉପନିଷଦ୍‌ମାନଙ୍କର ନାନାସ୍ଥାନରେ ଏହି ପ୍ରକୃତି ଓ ପୁରୁଷ ନାନା ସଂଜ୍ଞାରେ ପରିଚିତ । କେଉଁଠାରେ ଏମାନଙ୍କର ନାମ କ୍ଷେତ୍ର ଓ କ୍ଷେତ୍ରଜ୍ଞ । ଅନ୍ୟତ୍ର ମୂଳପ୍ରକୃତି ଓ ପ୍ରତ୍ୟଗାତ୍ମା; ଅଥବା ଅନ୍ନ ଓ ଅନ୍ନାଦ । ଅନ୍ୟସ୍ଥାନରେ ଏମାନଙ୍କୁ ରୟି ଓ ପ୍ରାଣ, ଅପ ଓ ମାତରିଶ୍ୱା-ଇତ୍ୟାଦି ବିବିଧ ନାମରେ କୁହାଯାଇଛି; କିନ୍ତୁ ଏହିପରି ନାନା ନାମରେ କୁହାଗଲେ ମଧ୍ୟ ଏ ଦୁହେଁ ଚରମତତ୍ତ୍ୱ ନାମରେ କେଉଁଠାରେ ହେଲେ ମଧ୍ୟ ସ୍ୱୀକୃତ ନୁହଁନ୍ତି ।

**ଏତାବତ୍ ବା ଇଦଂ ସର୍ବଂ । ଅନ୍ନଂ ଚୈବାନ୍ନାଦଶ୍ଚ । ବୃହ: ଦା: ୧-୪-୩ ।**

ଅର୍ଥାତ୍-ଅନ୍ନ ଓ ଅନ୍ନାଦ-ଏହି ଉଭୟ ସଂଯୋଗରେ ସମସ୍ତ ଜଗତ୍ ସୃଷ୍ଟି ।

**ପ୍ରଜାକାମୋ ବୈପ୍ରଜାପତିଃ　× × × ସ ମିଥୁନ-ମୁତ୍ପାଦୟତେ ରୟିଂ ଚ ପ୍ରାଣଂ ଚେତ୍ୟେତୌ ମେ ବହୁଧା ପ୍ରଜାଃ କରିଷ୍ୟତ ଇତି ।**　　ପ୍ରଶ୍ନ— ୧ । ୪ ।

ଅର୍ଥାତ୍ ପ୍ରଜାପତି ପ୍ରଜା କାମନା କରି ରୟି ଓ ପ୍ରାଣ-ଏହି ଦୁଇଟି ଉତ୍ପାଦନ କଲେ । ଏମାନେ ସୃଷ୍ଟିର ବୃଦ୍ଧି ନିମନ୍ତେ ବହୁବିଧ ପ୍ରଜା ଉତ୍ପନ୍ନ କରିବେ । "ତସ୍ମିନ୍ ଅପୋ ମାତରିଶ୍ୱା ଦଧାତି ।" ଈଶ-୪ ମାତରିଶ୍ୱା (ପ୍ରାଣ) ତହିଁରେ (ବ୍ରହ୍ମରେ) ଅପ୍ ନିହିତ କଲେ । ଅପ୍‌କାରଣାର୍ଣ୍ଣବ, ଅବ୍ୟକ୍ତ ପ୍ରକୃତି । ମାତରିଶ୍ୱା-ପ୍ରାଣ, ପୁରୁଷ । ପ୍ରଳୟକାଳରେ ଉକ୍ତ ପ୍ରକୃତି ଓ ପୁରୁଷ ପରମାତ୍ମାଙ୍କଠାରେ ବିଲୀନ ହୁଅନ୍ତି । ବିଷ୍ଣୁପୁରାଣରେ ଉଲ୍ଲେଖ ଅଛି —

**ପ୍ରକୃତିର୍ଯା ମାୟାଽଽଖ୍ୟାତା ବ୍ୟକ୍ତାବ୍ୟକ୍ତସ୍ୱରୂପିଣୀ ।**
**ପୁରୁଷଶ୍ଚାପ୍ୟୁଭାବେତୌ ଲୀୟେତେ ପରମାତ୍ମନି ॥**

ବିଷ୍ଣୁ ପୁ: ୬-୪-୩୮ ।

ଅର୍ଥାତ୍ ବ୍ୟକ୍ତ ଓ ଅବ୍ୟକ୍ତସ୍ୱରୂପ ପ୍ରକୃତି ଓ ପୁରୁଷ ପରମାତ୍ମାଙ୍କଠାରେ ବିଲୀନ ହୁଅନ୍ତି । ଉପନିଷଦ୍‌ରେ ମଧ୍ୟ ଉକ୍ତ ଅଛି—

**ଅକ୍ଷରଂ ତମସି ଲୀୟତେ, ତମଃ ପରେ ଦେବେ ଏକୀଭବତି ।**

ଅର୍ଥାତ୍ ଅକ୍ଷର ତମସ୍‌ରେ ଲୀନ ହୁଏ । ତମଃ ପରମାତ୍ମାରେ ଏକୀଭୂତ ହୁଏ ।

ସୃଷ୍ଟିର ପୂର୍ବେ ଯେପରି ପରମାତ୍ମା "ଏକମେବାଦ୍ୱିତୀୟମ୍" ସ୍ୱରୂପରେ ଥାନ୍ତି, ସେହିପରି ସୃଷ୍ଟିଲୟରେ ମଧ୍ୟ ସେହି ସ୍ୱରୂପରେ ପରମାତ୍ମା ବିଦ୍ୟମାନ ରହନ୍ତି । "ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।"

ଏହି ଅନୁପାଦର ପ୍ରଥମରୁ ସେହି ଏକ ପରଂବ୍ରହ୍ମତତ୍ତ୍ୱ ସଗୁଣ ଓ ନିର୍ଗୁଣ, ସବିଶେଷ ଓ ନିର୍ବିଶେଷ ଇତ୍ୟାଦି ତାଙ୍କର ବିବିଧ ସ୍ୱରୂପ ଆଲୋଚିତ ହୋଇ ଆସୁଅଛି । ବର୍ତ୍ତମାନ ସେହି ଏକତତ୍ତ୍ୱର ସଗୁଣ ଓ ନିର୍ଗୁଣଭାବ ବିଶିଷ୍ଟ ଭାବରେ ବିଚାର କରାଯାଉଛି—

ଦ୍ୱୈତ ଓ ଅଦ୍ୱୈତମତ ଅନୁସାରେ ସବିଶେଷ ଓ ନିର୍ବିଶେଷ ବ୍ରହ୍ମଭାବ ଯାହା ସ୍ୱୀକୃତ ହୁଏ, ବିଶୁଦ୍ଧାଦ୍ୱୈତ ମତରେ ତାହା ଏକତତ୍ତ୍ୱ ବା ତତ୍ତ୍ୱାନ୍ତର—ଏପରି ଶଙ୍କା ଜାତ ହୁଏ; କିନ୍ତୁ ଏହାର ସମାଧାନସ୍ୱରୂପ କୁହାଯାଇପାରେ ଯେ, ବିଶୁଦ୍ଧବ୍ରହ୍ମବାଦ-ମତ ଅନୁସାରେ ସବିଶେଷ ଓ ନିର୍ବିଶେଷ ସଗୁଣ ଓ ନିର୍ଗୁଣ ଭିନ୍ନତତ୍ତ୍ୱ ନୁହେଁ । ଏହା ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କର ବିଭିନ୍ନ ବିଭାଗମାତ୍ର । ବାଦରାୟଣ କହିଛନ୍ତି—

**ପ୍ରକାଶାଦିବଚ୍ଚାବୈଶେଷ୍ୟଂ ପ୍ରକାଶଶ୍ଚ କର୍ମଣ୍ୟଭ୍ୟାସାତ୍ ।**

ବେ: ସୂ: ୩ । ୨ । ୨୫ ।

ଆରାଧ୍ୟ-ଆରାଧକ ଭାବ ବା ସେବ୍ୟ-ସେବକ ଭାବ ସ୍ୱୀକାର କରିବାକୁ ହେଲେ ଜୀବ ଓ ପରମାତ୍ମାଙ୍କର ଭେଦ ସ୍ୱୀକାର କରିବାକୁ ହେବ କି ନାହିଁ—ଏହି ପ୍ରଶ୍ନର ଉତ୍ତରରେ ସୂତ୍ରକାର କହୁଛନ୍ତି ଯେ ସେପରି ଭେଦ ସ୍ୱୀକାର କରିବା ବିଧେୟ ନୁହେଁ । ଯେପରି ଅଙ୍ଗୁଳୀଗୃଳନ ଓ କରକାପାତ୍ରରୂପକ ଉପାଧିଦ୍ୱାରା ପ୍ରକାଶସ୍ୱଭାବ ସୌରକିରଣର ବିଭିନ୍ନାକାର ଦେଖାଯାଏ, କିନ୍ତୁ ପ୍ରକୃତରେ ସୂର୍ଯ୍ୟଙ୍କର ସ୍ୱାଭାବିକ ଏକରୂପତା ପରିତ୍ୟକ୍ତ ହୁଏ ନାହିଁ ସେହିପରି ଆତ୍ମା ଉପାଧିଭେଦରେ ଭିନ୍ନ ରୂପ ଦେଖାଗଲେ ମଧ୍ୟ ତାହାର ଏକତ୍ୱ ସ୍ୱାଭାବିକ ଓ ସ୍ୱତଃସିଦ୍ଧ । ଆତ୍ମାର ସେହି ସ୍ୱାଭାବିକ ଐକାତ୍ମ୍ୟସିଦ୍ଧି ନିମନ୍ତେ ବେଦାନ୍ତରେ ଅଭ୍ୟାସ (ପୁନଃ ପୁନଃ କଥନ) ଶବ୍ଦ ଓ ତତ୍ତ୍ୱମସି ବାକ୍ୟଦ୍ୱାରା ଜୀବାତ୍ମାପରମାତ୍ମାର ଅଭେଦ ପ୍ରତିପାଦିତ ହୋଇଅଛି । ପରବର୍ତ୍ତୀ ବେଦାନ୍ତସୂତ୍ରରେ ମଧ୍ୟ ଏହି କଥା ଦର୍ଶାଯାଇଛି —

**ବିକାରାବର୍ତ୍ତି ଚ ତଥା ହି ସ୍ଥିତିମାହ ।** ବେ: ସୂ: ୪ । ୪ । ୧୯ ।

"ବିକାରାବର୍ତ୍ତି"—ପରମାତ୍ମା କେବଳ ବିକାରଶୀଳ ଜଗତ୍‌ରୂପରେ ଅବସ୍ଥାନ କରନ୍ତି ନାହିଁ, ସେ ଜଗତର ବାହାରେ ମଧ୍ୟ ଅବସ୍ଥାନ କରନ୍ତି । "ତଥାହି ସ୍ଥିତିମାହ"—ପରମାତ୍ମା ଏହି ଦୁଇ ରୂପରେ ଅବସ୍ଥାନ କରିବାକଥା ବେଦରେ କୁହାଯାଇଛି—

**ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ।**

ଛାନ୍ଦୋଗ୍ୟ: ୩-୧୨-୩୬ ।

ଅର୍ଥାତ୍ ଜଗତର ଯାବତୀୟ ପ୍ରାଣୀ ସେହି ପରମାତ୍ମାଙ୍କର ଅଂଶ ; ତାହାଙ୍କର ତିନି ଅଂଶ ନିତ୍ୟ, ମୁକ୍ତ, ନିର୍ଗୁଣ ଓ ଅମୃତସ୍ୱରୂପରେ ସର୍ବୋର୍ଦ୍ଧ୍ୱରେ ଅବସ୍ଥାନ କରନ୍ତି । ଆହୁରି ମଧ୍ୟ ବେଦରେ ଉକ୍ତ ଅଛି—

ଅନନ୍ତବିତତଂ ପୁରୁତ୍ରାନନ୍ତବଚ ସମନ୍ତେ । ତେନାକପାଳ ଶ୍ଚରତି ବିଚିନ୍ୱନ୍ ବିଦ୍ୱାନ୍ ଭୂତ ଭୂତ ଭବ୍ୟମସ୍ୟ ।  ଅଥର୍ବ ୧୦-୮-୧୨ ।

ଅର୍ଥାତ୍ ଚତୁର୍ଦ୍ଦିଗରେ ଏକ ଅନନ୍ତ ବସ୍ତୁ ହୋଇ ରହିଅଛି । ଚତୁର୍ଦ୍ଦିଗରେ ଅନନ୍ତ ଏବଂ ଅନ୍ତବନ୍ତ ଉଭୟ ଅଛି । ଯେ ସ୍ୱର୍ଗଲୋକର ପ୍ରତିପାଳକ ଅନନ୍ତ ବ୍ରହ୍ମ, ସେ ସର୍ବଜ୍ଞ; ସେ ଏହି ବିଶ୍ୱର ଭୂତ ଓ ଭବିଷ୍ୟତ୍ ଜାଣି ସର୍ବତ୍ର ବିଚରଣ କରୁଅଛନ୍ତି । ଏହି ଲକ୍ଷ୍ୟରେ ବାଦରାୟଣ କହିଛନ୍ତି—

ଅତୋଽନନ୍ତେନ ତଥା ହି ଲିଙ୍ଗମ୍ ।  ବେ: ସୂ: ୩ ୨-୨୬ ।

ଅତଃ (ଅତଏବ, ଅର୍ଥାତ୍ ଯେଉଁ ହେତୁରୁ ଜୀବ ଓ ବ୍ରହ୍ମଙ୍କ ମଧ୍ୟରେ ବସ୍ତୁତଃ କୌଣସି ପ୍ରଭେଦ ନାହିଁ) ଅନନ୍ତେନ (ଅର୍ଥାତ୍ ଏହି ହେତୁରୁ ମୋକ୍ଷ ଲାଭ କଲେ ଜୀବ ଅନନ୍ତ ବ୍ରହ୍ମଙ୍କ ସହିତ ଏକ ହୋଇଯିବା ହେତୁରୁ) ତଥା ହି ଲିଙ୍ଗମ୍ (ଏହିପରି ଚିହ୍ନ ବା ବର୍ଣ୍ଣନା ଉପନିଷଦ୍‌ରେ ଦେଖାଯାଏ ) ଯଥା—

ବ୍ରହ୍ମ ବେଦ ବ୍ରହ୍ମ ଏବ ଭବତି ।  ମୁଣ୍ଡକ ୩-୨୯ ।
ବ୍ରହ୍ମ ଏବ ସନ୍ ବ୍ରହ୍ମ ଆପ୍ନୋତି ।  ବୃହଦାରଣ୍ୟକ ୪-୪-୬ ।

ଏହି ସବୁ ବର୍ଣ୍ଣନାରୁ ଜଣାଯାଏ ଯେ, ସଗୁଣ ଓ ନିର୍ଗୁଣ ସବିଶେଷ ଓ ନିର୍ବିଶେଷ—ଭିନ୍ନ ଭିନ୍ନ ତତ୍ତ୍ୱ ନୁହେଁ । ବାଦରାୟଣସୂତ୍ରରେ ଦୃଷ୍ଟାନ୍ତ ସହ ଏ ବିଷୟ ବିଶଦ ଭାବରେ ବର୍ଣ୍ଣିତ ହୋଇଛି —

ଉଭୟବ୍ୟପଦେଶାତ୍ ତ୍ୱହିକୁଣ୍ଡଳବତ୍ ।  ୩-୨-୨୭ ।

ଉଭୟ ବ୍ୟପଦେଶାତ୍ (ବେଦରେ କୌଣସି ସ୍ଥାନରେ ଜୀବ ଓ ବ୍ରହ୍ମର ଭେଦ ଥିବା ଓ କୌଣସି ସ୍ଥାନରେ ଭେଦ ନ ଥିବା ଏପରି ଉଭୟ କଥାର ଉଲ୍ଲେଖ ଥିବାରୁ) ଅହିକୁଣ୍ଡଳବତ୍ (ସର୍ପର କୌଣସି ଅଂଶ ବଳୟାକାର ଓ ଅନ୍ୟ ଏକ ଅଂଶ ଉଦ୍ୟତ୍ ଫଣାବିଶିଷ୍ଟ; କିନ୍ତୁ ସକଳ ଅଂଶ ସର୍ପ, ସେହିପରି ବ୍ରହ୍ମଙ୍କର କୌଣସି ଅଂଶ ଜୀବ ସହିତ ଅଭିନ୍ନ ଓ ଅନ୍ୟ କୌଣସି ଅଂଶ ଭିନ୍ନ) ।

ବାଦରାୟଣ ଉକ୍ତ ଭେଦାଭେଦରୂପକ—ସଗୁଣ ଓ ନିର୍ଗୁଣ, ସବିଶେଷ ଓ ନିର୍ବିଶେଷ-ଭାବ ପରିସ୍ଫୁଟ କରିବା ନିମନ୍ତେ ପୁନଶ୍ଚ କହିଛନ୍ତି—

**ପ୍ରକାଶାଶ୍ରୟବଦ୍‌ବା ତେଜସ୍ତ୍ୱାତ୍ । ପୂର୍ବବଦ୍‌ବା ।** ବେ: ସୂ: ୩-୨-୨୮-୨୯ ।

ଯେଉଁ ହେତୁରୁ ବ୍ରହ୍ମ ତେଜଃସ୍ୱରୂପ, ସେହି ହେତୁରୁ ଜ୍ୟୋତିଃରୂପକ ଦୃଷ୍ଟାନ୍ତରେ ମଧ୍ୟ ସବିଶେଷ-ନିର୍ବିଶେଷ ଉପାଧିଗତ ଭେଦ ଓ ସ୍ୱରୂପଗତ ଅଭେଦ ପ୍ରତିପନ୍ନ ହୁଏ । ସୂର୍ଯ୍ୟର ପ୍ରକାଶ ଓ ପ୍ରକାଶର ଆଶ୍ରୟଭୂତ ସୂର୍ଯ୍ୟ—ଉଭୟ ମଧ୍ୟରେ ଯେପରି ସମ୍ବନ୍ଧ, ଜୀବ ଓ ବ୍ରହ୍ମଙ୍କ ମଧ୍ୟରେ ସେହିପରି ସମ୍ବନ୍ଧ; ତେଜସ୍ତ୍ୱାତ୍—ଉଭୟ ହିଁ ତେଜୋରୂପ ବସ୍ତୁ । ଆତ୍ମରମଧ୍ୟ ଶୁଭ୍ରଜ୍ୟୋତି ଯେପରି ରଙ୍ଗିନକାଚ ସଂଯୋଗରେ ରକ୍ତ ବା ପୀତବର୍ଣ୍ଣ ଧାରଣ କରେ, ଅଥବା ପ୍ରକାଶଗତ ଆଧାର-ଭେଦରେ ଯେପରି ଋଜୁ ବକ୍ରତା ଧାରଣ କରେ, ଉପାଧିଭେଦରେ ବ୍ରହ୍ମଙ୍କର ମଧ୍ୟ ସେହି ଅବସ୍ଥା ଅନୁଭୂତ ହୁଏ । ସେ ବସ୍ତୁତଃ ଅସୀମ କେବଳ ସୋପାଧିକ ହେଲେ ତାହାଙ୍କୁ ସସୀମ ମନେ କରାଯାଏ । ସେ ସ୍ୱରୂପତଃ ନିର୍ଗୁଣ; କିନ୍ତୁ ସମସ୍ତ ଭେଦରେ ତାହାଙ୍କୁ ସଗୁଣ ମନେ କରାଯାଏ । ସେ ପ୍ରକୃତରେ ନିଷ୍କ୍ରିୟ, କେବଳ ଅବସ୍ଥାଭେଦରେ ସକ୍ରିୟ ବୋଲି ମନେହୁଅନ୍ତି; କିନ୍ତୁ ପ୍ରକୃତରେ ଶାସ୍ତ୍ର ଏହି ସଗୁଣ ଓ ନିର୍ଗୁଣ, ସବିଶେଷ ଓ ନିର୍ବିଶେଷରୂପକ ଭେଦର ସର୍ବଥା ନିଷେଧ କରେ । ଯଥା—

**ପ୍ରତିଷେଧାଚ୍ଚ ।** ବ୍ର: ସୂ: ୩-୨-୩୦ ।

ଏ ବିଷୟରେ ବାଦରାୟଣଙ୍କ ଅନ୍ୟ ପ୍ରବଳ ଯୁକ୍ତି—

**ଅକ୍ଷରଧିୟାଂ ତ୍ୱବରୋଧଃ ସାମାନ୍ୟତଦ୍ ଭାବାଭ୍ୟାମୌପସଦବତ୍ ତଦୁକ୍ତମ୍ ।** ବେ: ସୂ: ୩-୩-୩୩ ।

ଉପନିଷଦ୍‌ର ନାନା ସ୍ଥାନରେ ଅକ୍ଷର-ବ୍ରହ୍ମଙ୍କ ଉଲ୍ଲେଖ ଅଛି ।

**ଏତଦ୍ ବୈ ତଦକ୍ଷରଂ ଗାର୍ଗି ବ୍ରାହ୍ମଣା ଅଭିବଦନ୍ତି ଅସ୍ଥୂଳଂ ଅନଣୁ ଅହ୍ରସ୍ୱଂ ଅଦୀର୍ଘମ୍ ।** ବୃହଦାରଣ୍ୟକ ୩ । ୮ । ୮ ।

ଅର୍ଥାତ୍ ହେ ଗାର୍ଗି, ଏହା ସେହି ଅକ୍ଷର-ବ୍ରହ୍ମ, ଯାହାଙ୍କ ସମ୍ବନ୍ଧରେ ବ୍ରହ୍ମବିଦ୍‌ଗଣ କହିଛନ୍ତି—ସେ ସ୍ଥୂଳ ନୁହଁନ୍ତି, ଅଣୁ ନୁହଁନ୍ତି, ହ୍ରସ୍ୱ ନୁହଁନ୍ତି ଓ ଦୀର୍ଘ ମଧ୍ୟ ନୁହଁନ୍ତି ।

ପୁନଶ୍ଚ—

**ଅଥ ପରା ଯୟା ତଦ୍ ଅକ୍ଷରଂ ଅଧିଗମ୍ୟତେ ଯତ୍ ତଦ୍ ଅଦ୍ରେଶ୍ୟଂ, ଅଗ୍ରାହ୍ୟଂ, ଅଗୋତ୍ରଂ, ଅବର୍ଣ୍ଣମ୍ ।** ମୁଣ୍ଡକ ଉ: ୧ । ୧ । ୬ ।

ଅର୍ଥାତ୍ ଅପରାବିଦ୍ୟା ପରେ ପରାବିଦ୍ୟା, ଯାହାଦ୍ୱାରା ଅକ୍ଷର (ବ୍ରହ୍ମଙ୍କୁ) ଲାଭ କରାଯାଏ । ଯେଉଁ ଅକ୍ଷରକୁ ଦର୍ଶନ କରାଯାଏ ନାହିଁ ଓ ଗ୍ରହଣ ମଧ୍ୟ କରାଯାଏ ନାହିଁ, ଯାହାର ଗୋତ୍ର ବା ବର୍ଣ୍ଣ ନାହିଁ । ପ୍ରଥମ ବାକ୍ୟରେ ଅକ୍ଷର ସମ୍ବନ୍ଧରେ କେତୋଟି ଗୁଣର ପ୍ରତିଷେଧ କରାଗଲା । ଦ୍ୱିତୀୟରେ ଅକ୍ଷରର ଅନ୍ୟ କେତୋଟି ଗୁଣର ପ୍ରତିଷେଧ କରାଯାଇଛି, ଏଠାରେ ଗୁଣର ପ୍ରତିଷେଧ କେବଳ ସର୍ବତ୍ର ଗୃହୀତ ହେବ ।

**ଅକ୍ଷରଧିୟାଂ ତୁ ଅବରୋଧଃ—**

ଅର୍ଥାତ୍ ଅକ୍ଷରବାଚକ ବାକ୍ୟସମୂହ ସର୍ବତ୍ର ଗୃହୀତ ।

**ସାମାନ୍ୟ ତଦ୍ଭାବାଭ୍ୟାମ୍—**

ଅର୍ଥାତ୍, ସକଳପ୍ରକାର ବିଶେଷ ଲକ୍ଷଣର ନିଷେଧ କରି ନିର୍ବିଶେଷ ବ୍ରହ୍ମ ପ୍ରତିପାଦନ କରିବା ପ୍ରଣାଳୀ ଏହି ସକଳ ବାକ୍ୟରେ ସମାନ । ଯେଉଁ ବସ୍ତୁ ପ୍ରତିପାଦନ କରାହେଉଅଛି, ସେହି ବ୍ରହ୍ମ-ବସ୍ତୁ ସର୍ବତ୍ର ଏକ ।

**ଔପସଦବତ୍ତଦୁକ୍ତମ୍ ।**

ଅର୍ଥାତ୍ ପୁରୋଡ଼ାଶପ୍ରଦାନସମ୍ବନ୍ଧି ମନ୍ତ୍ର ଉଦ୍‌ଗାତା ସମ୍ବନ୍ଧରେ ଉକ୍ତ ହେଲେ ମଧ୍ୟ ଅଧ୍ୱର୍ଯ୍ୟୁଙ୍କ ସମ୍ବନ୍ଧରେ ଗୃହୀତ । ଅର୍ଥାତ୍ ପୁରୋଡ଼ାଶ ଉଦ୍‌ଗାତୃଙ୍କଦ୍ୱାରା ପ୍ରଦତ୍ତ ନ ହୋଇ ଅଧ୍ୱର୍ଯ୍ୟୁଙ୍କଦ୍ୱାରା ପ୍ରଦତ୍ତ ହୁଏ । କାରଣ ବେଦାଙ୍ଗକର୍ମ ସକଳ ଯଜ୍ଞ କାର୍ଯ୍ୟର ପ୍ରଧାନ ଅଧ୍ୱର୍ଯ୍ୟୁଙ୍କ ଅଧୀନ, ସେହି କାରଣରୁ ଅଧ୍ୱର୍ଯ୍ୟୁଙ୍କ ସହିତ ସକଳ କାର୍ଯ୍ୟ ସଂପୃକ୍ତ । ଅର୍ଥାତ୍ ଯଜ୍ଞକାର୍ଯ୍ୟରେ ଅଧ୍ୱର୍ଯ୍ୟୁ ହିଁ ସର୍ବତ୍ର ପୁରୋଡ଼ାଶ ପ୍ରଦାନ ମନ୍ତ୍ରପାଠ କରନ୍ତି । ଏହି ହେତୁରୁ ଯେପରି ସାମବେଦର ପୁରୋଡ଼ାଶପ୍ରଦାନମନ୍ତ୍ର କେବଳ ଯଜୁର୍ବେଦୀୟ ଅଧ୍ୱର୍ଯ୍ୟୁଙ୍କଦ୍ୱାରା ପଠିତ ହେବା ସାର୍ବତ୍ରିକ, ସେହିପରି ଅନ୍ୟତ୍ର ବର୍ଣ୍ଣିତ ଅକ୍ଷର (ବ୍ରହ୍ମ)ର ବିଶେଷଣଗୁଡ଼ିକ ସାର୍ବତ୍ରିକ, ଅର୍ଥାତ୍ ଅକ୍ଷର-ତତ୍ତ୍ୱତା ହେତୁରୁ ସର୍ବତ୍ର ହିଁ ଅକ୍ଷର ସହିତ ସମ୍ବନ୍ଧ ରହେ ।

## ଠ—ପରଂବ୍ରହ୍ମ କେବଳ ବିଶୁଦ୍ଧ ନିର୍ଗୁଣ ସ୍ୱରୂପରେ ସ୍ୱମହିମାରେ ବିରାଜମାନ—

ଉପର୍ଯ୍ୟୁକ୍ତ ସୂକ୍ତସମୂହରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ପରଂବ୍ରହ୍ମ ସର୍ବଦା ବିଶୁଦ୍ଧ-ନିର୍ଗୁଣ-ଅଲେଖ-ନିରଞ୍ଜନ ସ୍ୱରୂପରେ ଉପାଧିଶୂନ୍ୟ ହୋଇ ବିରାଜମାନ ଅଛନ୍ତି । ପରଂବ୍ରହ୍ମଙ୍କ

ବିଷୟରେ ସଗୁଣ-ସକ୍ରିୟ-ସବିଶେଷଭାବ-ଉପାଧିସମୂହ କଳ୍ପିତ ମାତ୍ର । କେବଳ ତାହାଙ୍କ ମହିମାରେ ଜୀବ ଓ ଜଡ଼ ଜଗତ୍ର ସ୍ଥିତି, ଉତ୍ପତ୍ତି ଓ ଲୟମାର୍ଗକୁ ପ୍ରାପ୍ତ ହୁଏ । ଶ୍ରୁତି ମଧ୍ୟ ଏତତ୍ସ୍ୱରୂପ ପରଂବ୍ରହ୍ମଙ୍କ ଲକ୍ଷଣ ବର୍ଣ୍ଣନା କରନ୍ତି ।

ସାବୟବସ୍ୟ କ୍ଷୀରାଦେର୍ବସ୍ତୁନଃ ପରିଣାମିନଃ ।
ଯେନ କେନ ବିକାରତ୍ୱଂ ସ୍ୟାନ୍ନୋ ନିଷ୍କର୍ମବସ୍ତୁନଃ ॥
ନିଷ୍କଲଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍ ।
ଇତ୍ୟେବ ବସ୍ତୁନଃ ତତ୍ତ୍ୱଂ ଶ୍ରୁତଯୁକ୍ତିବ୍ୟବସ୍ଥିତମ୍ ॥
ତସ୍ମାନ୍ନକର୍ମ ସାଧ୍ୟତ୍ୱଂ ବ୍ରହ୍ମଣୋଽସ୍ତି କୁତଶ୍ଚନ ।
କର୍ମସାଧ୍ୟଂ ତ୍ୱନିତ୍ୟଂ ହି ବ୍ରହ୍ମ ନିତ୍ୟଂ ସନାତନମ୍ ॥

ସର୍ବବେଦାନ୍ତସିଦ୍ଧାନ୍ତସାରସଂଗ୍ରହ ୧୭୨-୧୭୪ ।

ଅର୍ଥାତ୍—ଅବୟବବିଶିଷ୍ଟ, ଅତଏବ ପରିବର୍ତ୍ତନସ୍ୱଭାବ ଦୁଗ୍ଧାଦିବସ୍ତୁର କୌଣସି ବସ୍ତୁଦ୍ୱାରା ବିକାର ବା ଅବସ୍ଥାନ୍ତର ପ୍ରାପ୍ତି ହୋଇଥାଏ; କିନ୍ତୁ ଆତ୍ମା ନିଷ୍କ୍ରିୟ, ଅତଏବ ନିରବୟବ ବସ୍ତୁ—ଏହି କାରଣରୁ ଆତ୍ମାର ବିକାର ହୋଇପାରେ ନାହିଁ । ନିରବୟବ କ୍ରିୟାହୀନ ସର୍ବୋପଦ୍ରବଶୂନ୍ୟ, ନିର୍ଦ୍ଦୋଷ ଓ ନିର୍ଲିପ୍ତ—ଏହି ସବୁ ବିଶେଷଣଦ୍ୱାରା ପରମାତ୍ମ-ତତ୍ତ୍ୱ ଶ୍ରୁତିମାନଙ୍କରେ ଯୁକ୍ତିପୂର୍ବକ ବର୍ଣ୍ଣିତ ହୋଇଅଛି । ଅତଏବ ବ୍ରହ୍ମଙ୍କର କୌଣସିପ୍ରକାର "କର୍ମସାଧ୍ୟତ୍ୱ" ନାହିଁ, ଯାହା କର୍ମସାଧ୍ୟ ସେ କେବଳ ବିନାଶୀ । ବ୍ରହ୍ମ ସନାତନ, ଅତଏବ ନିତ୍ୟ ଓ ଅବିନାଶୀ ।

ସେହି ଏକ ପରମାତ୍ମା ହିଁ ବିଶୁଦ୍ଧ ନିର୍ଗୁଣନାମରେ ଅଭିହିତ; ଉପନିଷଦ୍‌ମାନଙ୍କରେ ଏହି ବିଶୁଦ୍ଧ ପରମାତ୍ମା ପ୍ରତିପାଦିତ । ଏ ବିଷୟରେ ଶ୍ରୁତିବାକ୍ୟ ପ୍ରମାଣ ଏହିପରି—

ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।
କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ ॥

ଶ୍ୱେତାଶ୍ୱତର ଉ: ୬-୧୧-ବ୍ରହ୍ମ ଉ: ୨୯ ।

ଅର୍ଥାତ୍—ସେହି ପରମପିତା ପରମାତ୍ମାଙ୍କ ଜ୍ଞାନର ଅଭାବରେ ଅନ୍ୟ କୌଣସିପ୍ରକାର ପରମାର୍ଥ ପ୍ରାପ୍ତି ହୁଏ ନାହିଁ । ସେହି ଅଦ୍ୱିତୀୟ ଦେବାଧିଦେବ* ଜଗତ୍ପିତା ସର୍ବଭୂତ-

* ଦିବ୍‌ଧାତୁରୁ ଦେବଶବ୍ଦସିଦ୍ଧ; ଦିବ୍ ଧାତୁର ଜ୍ୟୋତି ପ୍ରଦାନ କରିବା ଅନ୍ୟତମ ଅର୍ଥ । ଅତଏବ ଦେବଶବ୍ଦର ଅର୍ଥ—ଉଜ୍ଜ୍ୱଳ, ଜ୍ୟୋତିଃପଦାର୍ଥ ବା ସତ୍ତ୍ୱଗୁଣବିଶିଷ୍ଟ ବସ୍ତୁ । ଅବଶ୍ୟ ପାଣିନିଙ୍କ କଥନ ଅନୁସାରେ ଦିବ୍‌ଧାତୁର ୧୦ ଗୋଟି ଅର୍ଥ ନିର୍ଦ୍ଦିଷ୍ଟ ହୋଇଅଛି—ଦିବୁ କ୍ରୀଡ଼ା—

ମାନଙ୍କରେ ଗୂଢ଼ଭାବରେ ବିଦ୍ୟମାନ ଅଛନ୍ତି । ସେ ସର୍ବବ୍ୟାପୀ ଓ ସର୍ବପ୍ରାଣୀମାନଙ୍କର ଅନ୍ତରାତ୍ମାସ୍ୱରୂପ; ଆମ୍ଭେମାନେ ଯାହା କରିଅଛୁଁ, ସେ ସବୁ ସେ ଜାଣିପାରନ୍ତି । ସେ ସର୍ବଭୂତରେ ବାସ କରିଅଛନ୍ତି । ପ୍ରାଣୀମାନେ ଯାହା କିଛି କରନ୍ତି, ସେହିସବୁ କାର୍ଯ୍ୟର ସେ ଅଧିଷ୍ଠାତା । ସେ ଜୀବକୁ ଚୈତନ୍ୟ ପ୍ରଦାନ କରିଅଛନ୍ତି । ସେ ସାକ୍ଷୀ, ଚୈତନ୍ୟସ୍ୱରୂପ ହୋଇ କେବଳ ନିର୍ଗୁଣଭାବରେ ସର୍ବତ୍ର ବିଦ୍ୟମାନ, ଏହି ରୂପରେ ପରମାତ୍ମାଙ୍କୁ ଜାଣିପାରିଲେ ଜୀବ ମୁକ୍ତିଲାଭ କରେ ।

ଭାଗବତରେ ମଧ୍ୟ ପରଂବ୍ରହ୍ମଙ୍କର ଏହି ନିର୍ଗୁଣଭାବ ପ୍ରତିପାଦିତ ହୋଇଅଛି—

**ବିଶୁଦ୍ଧଂ କେବଳଂ ଜ୍ଞାନଂ ପ୍ରତ୍ୟକ୍ ସମ୍ୟଗବସ୍ଥିତମ୍ ।**
**ସତ୍ୟଂ ପୂର୍ଣ୍ଣମନାଦ୍ୟନ୍ତଂ ନିର୍ଗୁଣଂ ନିତ୍ୟମଦ୍ୱୟମ୍ ।।** ଭା: ୨-୬-୩୯ ।

ଅର୍ଥାତ୍ ପରଂବ୍ରହ୍ମ ସର୍ବତ୍ର ସମଭାବରେ ଅବସ୍ଥିତ ଥିଲେ ମଧ୍ୟ ସେ କେବଳ ବିଶୁଦ୍ଧ ଓ ଜ୍ଞାନସ୍ୱରୂପ । ସତ୍ୟ, ପୂର୍ଣ୍ଣ, ଅନାଦି, ଅନନ୍ତ, ନିର୍ଗୁଣ ନିତ୍ୟ ଓ ଅଦ୍ୱୟସ୍ୱରୂପରେ ବିଦ୍ୟମାନ ସେହି ପରମାତ୍ମା । ଗୀତାରେ ମଧ୍ୟ ପରଂବ୍ରହ୍ମଙ୍କ ଲକ୍ଷଣ ବର୍ଣ୍ଣନା ଅବସରରେ କୁହାଯାଇଛି ।

**ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।**
**ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ।।** ଗୀତା: ୧୩·୧୪ ।

ଅର୍ଥାତ୍ ପରଂବ୍ରହ୍ମ ସର୍ବପ୍ରକାର ଇନ୍ଦ୍ରିୟବର୍ଜିତ ହେଲେ ମଧ୍ୟ ସକଳଇନ୍ଦ୍ରିୟ ଓ ସେମାନଙ୍କର ବିଷୟସମୂହର ପ୍ରକାଶକ । ସେ ଆସକ୍ତିଶୂନ୍ୟ ହୋଇ ମଧ୍ୟ ସର୍ବଜଗତର ଧାରକ; ଗୁଣପାଳକ ହୋଇ ସୁଦ୍ଧା ଗୁଣାତୀତ ବା ନିର୍ଗୁଣ ।

ଆହୁରି ମଧ୍ୟ—

**ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍ ପରମାତ୍ମାୟମବ୍ୟୟଃ ।**
**ଶରୀରସ୍ଥୋଽପି କୌନ୍ତେୟ ନ କରୋତି ନ ଲିପ୍ୟତେ ।।**

ଗୀତା ୧୩–୩୧ ।

---

ବିଜିଗୀଷା–ବ୍ୟବହାର– ସ୍ତୁତି– ମୋହ–ମଦ– ସ୍ୱପ୍ନ–କାନ୍ତି– ଦ୍ୟୁତି– ଗତିଷୁ" । ବୈଦିକଶବ୍ଦ-ଶାସ୍ତ୍ରବେତ୍ତା ଯାସ୍କଋଷି କହିଅଛନ୍ତି—ଦେବୋ ଦାନାଦ୍ ବା, ଦୀପନାଦ୍ୱା, ଦ୍ୟୋତନାଦ୍ୱା-ଦ୍ୟୁସ୍ଥାନେ ଭବତି ବା—(ନିରୁକ୍ତ-୭-୧୫) । ଅର୍ଥାତ୍ ଯାହା ଦାନକରେ, ଯାହା ସ୍ୱତଃ ଉଜ୍ଜ୍ୱଳ ଏବଂ ଯାହା ଅନ୍ୟ ବସ୍ତୁକୁ ଉଜ୍ଜ୍ୱଳ କରେ ବା ଯାହା ଜ୍ୟୋତିର ଆବାସସ୍ଥାନ ତାହାହିଁ ଦେବ । ଦେବଶବ୍ଦର ଏହି ଅର୍ଥକରଣରୁ ଏହା ନିଷ୍ପନ୍ନ ହୁଏ ଯେ, ଏକ ଦେବ କେବଳ ସେହି ଅଦ୍ୱିତୀୟ ପରମାତ୍ମା ଅଟନ୍ତି ।

ଏହି ପରଂବ୍ରହ୍ମ ପରମାତ୍ମା ଅନାଦି ଓ ନିର୍ଗୁଣହେତୁରୁ ଅବ୍ୟକ୍ତ ଏବଂ ସେ ଶରୀରରେ ଥିଲେ ସୁଦ୍ଧା କୌଣସି କର୍ମ କରନ୍ତି ନାହିଁ ଓ କେଉଁଥିରେ ଲିପ୍ତ ହୁଅନ୍ତି ନାହିଁ ।

ଏ ସମ୍ବନ୍ଧରେ ଯୋଗବାଶିଷ୍ଠରେ ମଧ୍ୟ ଉକ୍ତ ଅଛି—

**ନିର୍ଭାଗାବୟବା ସୂକ୍ଷ୍ମା ବ୍ୟୋମ୍ନଃ ଶୂନ୍ୟତରୈବ ଯତ୍ ।**
**ସୈବାହଂ ଜଗଦାକାରା ସତୀ କିଂ ତଦ୍ଭିଧୀୟତେ ॥**

ଯୋ: ସୂ: ଅ: ୩୬-୩ ।

ବ୍ରହ୍ମ ନିରବୟବ, ତାହାଙ୍କର କୌଣସି ଅଂଶ ବା ଅବୟବ ନାହିଁ, ସେ ଆକାଶ ଅପେକ୍ଷା ମଧ୍ୟ ଶୂନ୍ୟତର ପଦାର୍ଥ । ଏହି ଯେ ନିଖିଳ ଜଗତ୍ ତାହାଙ୍କର ପ୍ରତିଭାସମାତ୍ର ତଦ୍‌ଭିନ୍ନ ଅନ୍ୟ କିଛି ନୁହେଁ ।

ଆହୁରି ମଧ୍ୟ—

**ଶାନ୍ତଂ ସମଂ ସମୁଦାୟାସ୍ତମୟୈର୍ବିହୀନମାକାରମୁକ୍ତମଜମମ୍ବରମଚ୍ଛମେକମ୍ ।**
**ସର୍ବଂ ସଦା ସଦସଦେକତୟୋଦିତାତ୍ମନିର୍ବାଣ ମାଦ୍ୟମିଦମୁତ୍ତମବୋଧରୂପମ୍ ।**

ତତ୍ରୈବ ଉ: ଅ: ୫୩-୨୧ ।

ଅର୍ଥାତ୍ ଯାହା କ୍ଷୟରହିତ, ଉଦୟରହିତ, ଯାହାଙ୍କର କୌଣସି ପ୍ରକାର ଆକାର ନାହିଁ, ଯେ ସ୍ୱଚ୍ଛ, ଶାନ୍ତ, ଅଦ୍ୱୟ, ଚିଦାକାଶ ରୂପରେ ସଦସତ୍ ଉଭୟଭିନ୍ନି ଏକରୂପରେ ପରିଲକ୍ଷିତ ଏବଂ ଯେ ନିୟତ ସର୍ବସ୍ୱରୂପରେ ଅବସ୍ଥିତ, ସେହି କେବଳ ଉତ୍ତମଜ୍ଞାନମୟ ବ୍ରହ୍ମ । ସେହି ବ୍ରହ୍ମ କେବଳ ଜଗତରେ ଅବଶିଷ୍ଟ ଅଛନ୍ତି । ସେହି କେବଳ ସର୍ବଜଗତର ଆଦି, ସକଳ ପଦାର୍ଥର ନିର୍ମାତା ଓ ସେହି କେବଳ ସର୍ବତ୍ର ବିଦ୍ୟମାନ । ତାହାଙ୍କ ଭିନ୍ନ ଅପର କିଛି ବସ୍ତୁଭାବ ଆଦି ନାହିଁ । ବେଦାନ୍ତଦର୍ଶନର ଏହି ସିଦ୍ଧାନ୍ତ ଲକ୍ଷ୍ୟ କରି ଆଚାର୍ଯ୍ୟ ଶଙ୍କର ବ୍ରହ୍ମଙ୍କର ନିର୍ଗୁଣଭାବ ବିଷୟରେ କହିଅଛନ୍ତି—

**ସୋପାଧିଶ୍ଚୈବମାତ୍ମୋକ୍ତୋ ନିରୁପାଖ୍ୟୋଽନୁପାଧିକଃ ।**
**ନିଷ୍କଳୋ ନିର୍ଗୁଣଃ ଶୁଦ୍ଧସ୍ତଂ ମନୋ ବାକ୍ ଚ ନାପ୍ନୁତଃ ॥**

ଉପଦେଶସାହସ୍ରୀ ୧୫-୨୯ ।

ବୁଦ୍ଧ୍ୟାଦି ଉପାଧିବିଶିଷ୍ଟ ଆତ୍ମାର ବିଷୟ ପୂର୍ବେ କୁହାଯାଇଛି; ଯାହାର ଉଲ୍ଲେଖ କରି ହୁଏ ନାହିଁ, ସେହି ପରମାତ୍ମା ଉପାଧିଶୂନ୍ୟ, ଅଂଶରହିତ, ନିର୍ଗୁଣ ଓ ବିଶୁଦ୍ଧ; "ମନୋବାକ୍" ତାହାଙ୍କୁ ପ୍ରାପ୍ତ କରି ପାରନ୍ତି ନାହିଁ ।

**ଅପ୍ରାପ୍ୟୈବ ନିବର୍ତ୍ତନ୍ତେ ବାଚୋ ଧୀଭିଃ ସହୈବ ତୁ ।**
**ନିର୍ଗୁଣତ୍ୱାତ୍ କ୍ରିୟାଭାବାତ୍ ବିଶେଷାଣାମଭାବତଃ ॥**

ତତ୍ରୈବ ୧୫-୩୧ ।

ଅର୍ଥାତ୍ ପରମାତ୍ମାଙ୍କର ନିର୍ଗୁଣତ୍ୱ ଓ କ୍ରିୟାରହିତ୍ୟହେତୁରୁ ବିଶେଷର ଅଭାବପ୍ରଯୁକ୍ତ ଶବ୍ଦସମୂହ ମନସହିତ ପରମାତ୍ମାଙ୍କୁ ପ୍ରାପ୍ତ ନ ହୋଇ ନିବୃତ୍ତ ହୁଅନ୍ତି ।

ଶ୍ରୁତ୍ୟନ୍ତରରେ ମଧ୍ୟ ଉକ୍ତ ହୋଇଛି—

**ସ ଏଷ ନେତି ନେତ୍ୟାତ୍ମାଽଗୃହ୍ୟୋ ନ ହି ଗୃହ୍ୟତେଽଶୀର୍ଯ୍ୟୋ ନହି ଶୀର୍ଯ୍ୟତେଽସଙ୍ଗୋ ନ ହି ସଜ୍ଜତେଽସିତୋ ନ ବ୍ୟଥ୍ୟତେ ନ ରିଷ୍ୟତି ।**

ମହାବାକ୍ୟରତ୍ନାବଳୀ ୧୨ । ୫ ।

ଅର୍ଥାତ୍ ବ୍ରହ୍ମଙ୍କଠାରେ ସମସ୍ତ ପଦାର୍ଥର ନିଷେଧ ହୋଇ ଏକମାତ୍ର ବ୍ରହ୍ମଙ୍କ ସତ୍ତା କେବଳ ଅବଶିଷ୍ଟଥିବା ପ୍ରତିପାଦିତ । ସେହି ପରମାତ୍ମା ଅଗ୍ରାହ୍ୟ, କାରଣ ତାହାଙ୍କୁ କେହି ଗ୍ରହଣ କରିପାରେ ନାହିଁ । ସେ ଅଶୀର୍ଯ୍ୟ, ଅର୍ଥାତ୍ ଶୀର୍ଣ୍ଣ ହୁଅନ୍ତି ନାହିଁ । ସେ ଅମୃତ; ବନ୍ଧନରହିତ ହେତୁରୁ ଅସିତ ବା ବନ୍ଧନ ବର୍ଜିତ ; ସେ କୌଣସି ପ୍ରକାରେ ବ୍ୟଥିତ ହୁଅନ୍ତି ନାହିଁ; ବା କୌଣସି ରୂପରେ ବିନଷ୍ଟ ହୁଅନ୍ତି ନାହିଁ— ।

**ଏକମେବାଦ୍ୱିତୀୟଂ ସନ୍ନାମରୂପବର୍ଜିତମ୍ ।**　ତତ୍ରୈବ ୬-୧୮ ।

ସେହି ବ୍ରହ୍ମ ଏକ, ଅଦ୍ୱିତୀୟ । ସତ୍‌ସ୍ୱରୂପ ଓ ନାମରୂପାଦି ବର୍ଜିତ । ଏ ବିଷୟରେ ଗୌଡ଼ପାଦାଚାର୍ଯ୍ୟ କହିଛନ୍ତି—

**ନ କଶ୍ଚିଜ୍ଜାୟତେ ଜୀବଃ ସମ୍ଭବୋଽସ୍ୟ ନ ବିଦ୍ୟତେ ।**
**ତଦେତଦୁତ୍ତମଂ ସତ୍ୟଂ ଯତ୍ର କିଞ୍ଚିନ୍ନଜାୟତେ ॥**

ଗୌଡ଼ପାଦକାରିକା ୩-୪୮ ।

ଅତଏବ ପୂର୍ବୋକ୍ତ ଯୁକ୍ତିଦ୍ୱାରା ଏହା ପ୍ରତିପନ୍ନ ହୁଏ ଯେ, ଯେ ପରମାର୍ଥ ସତ୍ୟ, ସେ କେବେହେଲେ କର୍ତ୍ତା, ଭୋକ୍ତା ଓ ସ୍ୱରୂପଧାରୀ ସାଧାରଣ ଜୀବସ୍ୱରୂପରେ ଉତ୍ପନ୍ନ ହୁଅନ୍ତି ନାହିଁ । ସେ ସ୍ୱଭାବତଃ ଅଜ; ତାହାଙ୍କର ଉତ୍ପତ୍ତିର ଏକାନ୍ତ ଅଭାବ ହେତୁରୁ ସେ କେବେ ହେଲେ ଉତ୍ପନ୍ନ ହେବା ସମ୍ଭବ ନୁହେଁ । ଏକମାତ୍ର ସତ୍ୟହିଁ ଶ୍ରେଷ୍ଠ ପଦାର୍ଥ ; ଯାହା କିଛି ଜଗତରେ ଉତ୍ପନ୍ନ ହୁଏ, ସେ ସମସ୍ତ ସତ୍ୟ ନୁହେଁ । ଏକମାତ୍ର ବ୍ରହ୍ମହିଁ ସତ୍ୟ । ସତ୍ୟସ୍ୱରୂପ ବ୍ରହ୍ମ ଭିନ୍ନ ଅନ୍ୟ ସବୁ ଅଳୀକ । ସେହି ସତ୍ୟସ୍ୱରୂପ ବ୍ରହ୍ମରେ କିଛି ହେଲେ ଭେଦ ଉତ୍ପନ୍ନ ହୁଏ ନାହିଁ ।

ସେହି ପରଂବ୍ରହ୍ମ କେବଳ ସ୍ୱମହିମାରେ ବିରାଜମାନ—

ଏଷ ଶୁଦ୍ଧଃ ପୂତଃ ଶୂନ୍ୟଃ ଶାନ୍ତୋଽପ୍ରାଣୋଽନୀଶାତ୍ମାଽନନ୍ତୋଽକ୍ଷଯ୍ୟଃ ।
ସ୍ଥିରଃ ଶାଶ୍ୱତୋଽଜଃ ସ୍ୱତନ୍ତ୍ରଃ ସ୍ୱେ ମହମ୍ନି ତଷ୍ଠତ ॥
ମହାବାକ୍ୟରତ୍ନାବଳୀ ୧୨-୮ ।

ସେହି ପରଂବ୍ରହ୍ମ ପରମାତ୍ମା ସ୍ୱଭାବତଃ **ଶୁଦ୍ଧ ଏବଂ ପବିତ୍ର,** ଅନ୍ତଃକରଣଶୂନ୍ୟ ; କର୍ମ, ଜ୍ଞାନେନ୍ଦ୍ରିୟ ଓ ପଞ୍ଚପ୍ରାଣାଦି ରହିତହେତୁରୁ ସେ ସର୍ବଦା ଶାନ୍ତସ୍ୱରୂପ । ସେ ସ୍ୱାଭାବିକ ମୋକ୍ଷ-ସ୍ୱରୂପ ; ପ୍ରାଣର ଅଭାବବଶତଃ ସେ ଅପ୍ରାଣ; ଜୀବରୂପରେ ଅସ୍ୱତନ୍ତ୍ରହେତୁରୁ ସେ ଅମାଣ ; ଅପରିଚ୍ଛିନ୍ନହେତୁରୁ ସେ ଅନନ୍ତ ; ଷଡ୍ ଭାବ-ବିକାରରହିତହେତୁରୁ ସେ ଅକ୍ଷୟ , ସତ୍‌ସ୍ୱରୂପହେତୁରୁ ସେ ସ୍ଥିର, ଚିରନ୍ତନହେତୁରୁ ସେ ଶାଶ୍ୱତ (ନିତ୍ୟ), ଦେହାଦିରହିତ-ହେତୁରୁ ସେ ଅଜ ଏବଂ ଆତ୍ମ ସ୍ୱରୂପହେତୁରୁ ସେ ସ୍ୱତନ୍ତ୍ର । ସେ ସର୍ବଦା ନିର୍ବିଶେଷ ସ୍ୱୀୟ ସ୍ୱରୂପ ମହିମାରେ ବିରାଜିତ ।

ଏହି ପର୍ଯ୍ୟନ୍ତ ସଗୁଣ ନିର୍ଗୁଣ ତତ୍ତ୍ୱବିଚାର ଯୋଗରେ ବର୍ଣ୍ଣିତ ପରଂବ୍ରହ୍ମଙ୍କର ସଗୁଣ ନିର୍ଗୁଣ ବା ସବିଶେଷ ନିର୍ବିଶେଷଭାବ ନାନାଯୁକ୍ତିଦ୍ୱାରା ପ୍ରମାଣିତ କରାଗଲା ଯେ, ଏକ ଓ ଅଦ୍ୱିତୀୟ ଅଲେଖପରଂବ୍ରହ୍ମ କେବଳ ବିଶୁଦ୍ଧ ନିର୍ଗୁଣ ନିରଞ୍ଜନ ପରଂତତ୍ତ୍ୱ । ସେ ସତତ ପ୍ରତିଷ୍ଠିତ ହୋଇ ସ୍ୱମହିମାରେ ବିରାଜମାନ ହୋଇ ଅଛନ୍ତି । ସେ ସ୍ୱୟଂ ନିର୍ବିଶେଷ ବା ଗୁଣାନ୍ୱିତ ନୁହଁନ୍ତି; ସଗୁଣାଦିଭାବ ତାହାଙ୍କର ଅଦ୍ଭୁତ ମହିମାର ପ୍ରକାଶମାତ୍ର; ସେ ସର୍ବକାରଣର କାରଣ— ଏହା କେବଳ ଏହି ୪ର୍ଥ ଅନୁପାଦରେ ସମ୍ୟକ୍ ପ୍ରଦର୍ଶିତ ହୋଇ ସ୍ଥିରତରରୂପରେ ସିଦ୍ଧାନ୍ତିତ କରାଗଲା ।

ପ୍ରଥମ ପାଦସ୍ୟ ଚତୁର୍ଥାନୁପାଦଃ ସମାପ୍ତଃ ।



## ସର୍ବବେଦବେଦାନ୍ତସାରତତ୍ତ୍ୱଶିରୋମଣିଃ

# ଅଲେଖ ପରଂବ୍ରହ୍ମ-ଦର୍ଶନ

### ଦ୍ୱିତୀୟ ପାଦସ୍ୟ ପ୍ରଥମାନୁପାଦଃ

## ମହାବାକ୍ୟାଦି ତତ୍ତ୍ୱନିରୂପଣ ଯୋଗଃ

ପୂର୍ବ ଅନୁପାଦମାନଙ୍କରେ ଏକ-ବିଶୁଦ୍ଧ-ନିର୍ଗୁଣ ପରଂବ୍ରହ୍ମଙ୍କର ତତ୍ତ୍ୱ ଶ୍ରୁତିବାକ୍ୟ ଉଦ୍ଧାରଣପୂର୍ବକ ଯୁକ୍ତିଯୁକ୍ତଭାବରେ ସିଦ୍ଧାନ୍ତ କରାଯାଇଛି । ବର୍ତ୍ତମାନ ସେହି ଅଦ୍ୱିତୀୟ ତତ୍ତ୍ୱ ବେଦାନ୍ତ ଓ ଅନ୍ୟାନ୍ୟ ଶ୍ରୁତିଗ୍ରନ୍ଥର ମହାବାକ୍ୟମାନଙ୍କରେ ଯେଉଁପ୍ରକାରେ ବର୍ଣ୍ଣିତ ହୋଇଛି, ତାହାର ସୁବିସ୍ତୃତ ଆଲୋଚନା ଏହି ଅନୁପାଦରେ କରି ଯାଉଅଛି ।

### ୦—"ଅଧ୍ୟାରୋପ ଓ ଅପବାଦ" ବିଚାର—

ଶ୍ରୁତିରେ ଅଧ୍ୟାରୋପ-ଅପବାଦ ଯୁକ୍ତି ଅନୁସାରେ ବିଶୁଦ୍ଧାତ୍ମତତ୍ତ୍ୱନିରୂପଣ କରାଯାଇ ମହାବାକ୍ୟ ବଚନ ଅନୁସାରେ ଉପଦେଶ ଗୃହୀତ ହୋଇଛି । ସେହିହେତୁରୁ ପ୍ରଥମେ "ଅଧ୍ୟାରୋପଅପବାଦର ବ୍ୟାଖ୍ୟା କରାଯାଉଅଛି—ଅଧ୍ୟାରୋପ-ଅପବାଦ ସମ୍ବନ୍ଧରେ ଯାଜ୍ଞବଲ୍‌କ୍ୟଙ୍କର ଉକ୍ତି—

ପ୍ରାକ୍‌କର୍ମ ଫଳପାକେନାବର୍ତ୍ତାନ୍ତରକୀଟବଦ୍ ବିଶ୍ରାନ୍ତିଂ ନୈବ ଗଚ୍ଛତି । ସତ୍‌କର୍ମପରିପାକତୋ ବହୂନାଂ ଜନ୍ମନାମନ୍ତେ ନୃଣାଂ ମୋକ୍ଷେଚ୍ଛା ଜାୟତେ । ତଦା ସଦ୍‌ଗୁରୁମାଶ୍ରିତ୍ୟ ଚିରକାଳସେବୟା ବନ୍ଧଂ ମୋକ୍ଷଂ କଶ୍ଚିତ୍ ପ୍ରୟାତି । ଅବିଚାରକୃତୋ ବନ୍ଧୋ ବିଚାରାନ୍‌ମୋକ୍ଷୋ ଭବତି ॥ ତସ୍ମାତ୍ ସଦା ବିଚାରୟେତ୍ । ଅଧ୍ୟାରୋପାପବାଦତଃ ସ୍ୱରୂପଂ ନିଶ୍ଚୟୀକର୍ତ୍ତୁଂ ଶକ୍ୟତେ । ତସ୍ମାତ୍ ସଦା ବିଚାରୟେଜ୍ଜୀବପରମାତ୍ମନୋର୍ଜୀବଭାବଜଗଦ୍‌ଭାବବାଧେ ପ୍ରତ୍ୟଗଭିନ୍ନଂ ବ୍ରହ୍ମୈବାବଶିଷ୍ୟତେ ।

ପୈଙ୍ଗଳୋପନିଷଦ୍—ଅ-୨ ।

ଅର୍ଥାତ୍ ପୂର୍ବ ଜନ୍ମାନୁଷ୍ଠିତ କର୍ମଫଳର ପରିପାକବଶତଃ ନଦୀର ସ୍ରୋତାବର୍ତ୍ତ-ମଧ୍ୟବର୍ତ୍ତୀ କୀଟ ତୁଲ୍ୟ ଜୀବ କଦାପି ବିଶ୍ରାମ ପ୍ରାପ୍ତ ହୁଏ ନାହିଁ । ସତ୍କର୍ମର ପରିପାକବଶତଃ ବହୁ ଜନ୍ମର ଅବସାନ ପରେ ମନୁଷ୍ୟର ମୋକ୍ଷଲାଭ ନିମନ୍ତେ ଇଚ୍ଛା ହୁଏ । ସେହି ସମୟରେ ମହା ସଦ୍‌ଗୁରୁଙ୍କ ଆଶ୍ରୟ ଗ୍ରହଣ କରି ଚିରକାଳ ତାଙ୍କର ଶୁଶ୍ରୂଷାଦ୍ୱାରା କୌଣସି ବ୍ୟକ୍ତିର ବନ୍ଧନରୁ ମୋକ୍ଷଲାଭ କରିବା ସମ୍ଭବ ହୋଇପାରେ । ଆତ୍ମା ବିଷୟରେ ଯଥାର୍ଥ ଜ୍ଞାନର ଅଭାବରୁ ଜୀବର ବନ୍ଧନ ହୋଇଥାଏ; କିନ୍ତୁ ଆତ୍ମଜ୍ଞାନ ବା ଆତ୍ମବିଷୟରେ ଯଥାର୍ଥ ଜ୍ଞାନଲାଭ ଦ୍ୱାରା ଜୀବ ମୋକ୍ଷଲାଭ କରେ । ଅତଏବ ଜୀବ ଆତ୍ମଜ୍ଞାନ ବିଷୟରେ ସର୍ବଦା ତତ୍ପର ହେବ ।

ଅଧ୍ୟାରୋପ ଓ ଅପବାଦଦ୍ୱାରା ଆତ୍ମାର ସ୍ୱରୂପ ନିଶ୍ଚୟ କରାଯାଏ । ରଜ୍ଜୁରେ ଅଜ୍ଞାନ-ବଶତଃ ସର୍ପଜ୍ଞାନର ଆରୋପ ପରି, ପରମାର୍ଥ ବସ୍ତୁ ବ୍ରହ୍ମଙ୍କଠାରେ ଅବସ୍ତୁ-ଜଗତର ଆରୋପର ନାମ ଅଧ୍ୟାରୋପ ଏବଂ "ଏହା ରଜ୍ଜୁ, ସର୍ପ ନୁହେଁ"—ଏପରି ବୋଧଜ୍ଞାନ ପରି "ଅଦ୍ୱିତୀୟ ବ୍ରହ୍ମଙ୍କଠାରେ କଳ୍ପିତ ଜଗତର ସତ୍ତା ନାହିଁ, ଏହି ଜଗତ ମିଥ୍ୟା"—ଏହିପରି ଜ୍ଞାନର ନାମ ଅପବାଦ । ଏହାଦ୍ୱାରା ଏହି ସିଦ୍ଧାନ୍ତରେ ପହଞ୍ଚିବାକୁ ହୁଏ ଯେ—ଜଗତ୍, ଜୀବ ଓ ପରମାତ୍ମାର ଏବଂ ଜଗତ୍ ଜୀବରୂପ ଭାବର ବାଧ—ଅର୍ଥାତ୍ ତ୍ରୈକାଳିକ ନିଷେଧରୂପ ମିଥ୍ୟାତ୍ୱ ନିଶ୍ଚିତ ହେଲେ ଜୀବାତ୍ମା ସହିତ ଅଭିନ୍ନ ବ୍ରହ୍ମମାତ୍ର ବିଦ୍ୟମାନ ରହନ୍ତି ।

ଏହି ମତ ବ୍ୟାଖ୍ୟା କରି ଆଚାର୍ଯ୍ୟ ଶଙ୍କର କହିଅଛନ୍ତି—

**ଅଧ୍ୟାରୋପାପବାଦକ୍ରମମନୁସରତୀ ଦେଶିକେନାଥ ବେତ୍ତା**
**ବାକ୍ୟାର୍ଥେ ବୋଧ୍ୟମାନେ ସତି ସପଦି ସତଃ ଶୁଦ୍ଧବୁଦ୍ଧେରମୁଷ୍ୟ ॥**
**ନିତ୍ୟାନନ୍ଦାଦ୍ୱିତୀୟଂ ନିରୁପମମମଳଂ ଯତ୍ ପରଂ ତତ୍ତ୍ୱମେକଂ ।**
**ତଦ୍ ବ୍ରହ୍ମୈବାହମସ୍ମୀତ୍ୟୁଦୟତି ପରମାଖଣ୍ଡତାକାର ବୃତ୍ତିଃ ॥**

ସର୍ବବେଦାନ୍ତ-ସିଦ୍ଧାନ୍ତସାରସଂଗ୍ରହ—୭୯୮ ।

ଅର୍ଥାତ୍ ଅଧ୍ୟାରୋପ (ରଜ୍ଜୁରେ ସର୍ପଭ୍ରାନ୍ତି) ଏବଂ ଅପବାଦ (ରଜ୍ଜୁରେ ସର୍ପଭ୍ରାନ୍ତି ଦୂର କରି ଯଥାର୍ଥ ରଜ୍ଜୁଜ୍ଞାନ) ରୀତି ଅବଲମ୍ବନକାରୀ ଜ୍ଞାନୀ ଉପଦେଶକର୍ତ୍ତୃକ "ତତ୍ତ୍ୱମସି"—ବାକ୍ୟର ଅର୍ଥ ଜ୍ଞାତ ହେଲେ ତତ୍‌କ୍ଷଣାତ୍ ନିର୍ମଳାନ୍ତଃକରଣ ଏହି ପୁରୁଷର ନିତ୍ୟ ସୁଖସ୍ୱରୂପ, ଅଦ୍ୱିତୀୟ, ଉପମାରହିତ, ନିର୍ମଳ, ଉତ୍କୃଷ୍ଟ, ଏକ ବସ୍ତୁ—ସେହି ବ୍ରହ୍ମ ହିଁ ଆମ୍ଭେ—ଏବଂବିଧ ପରମ ଅଖଣ୍ଡାକାର ଚିତ୍ତବୃତ୍ତି ସମୁଦିତ ହୁଏ । ଏ ବିଷୟରେ ପଞ୍ଚଦଶୀରେ କଥିତ ଅଛି—

ଅଧ୍ୟାରୋପାପବାଦାଭ୍ୟାଂ ନିଷ୍ପ୍ରପଞ୍ଚଃ ପ୍ରପଞ୍ଚ୍ୟତେ ।
ନାନ୍ୟତ୍ର କାରଣାତ୍ କାର୍ଯ୍ୟଂ ନ ଚେତ୍ତତ୍ର କ୍ୱ ତଦ୍ଭବେତ୍ ।
ଇତି ନ୍ୟାୟେନାଖଣ୍ଡୈକରସତ୍ୱ ପ୍ରତିପାଦନାୟୈତ ନ
ବୈୟର୍ଥ୍ୟଂ ଶ୍ରୁତି ।।

ବିବରଣପ୍ରମେୟସଂଗ୍ରହ, ଖ୍ଣ: ୪ । ପୃ: ୯ ।

ଅର୍ଥାତ୍ ଅଧ୍ୟାରୋପ-ଅପବାଦଦ୍ୱାରା ନିଷ୍ପ୍ରପଞ୍ଚ ବ୍ରହ୍ମବସ୍ତୁର ପ୍ରତିପାଦନ କରାଯାଏ । କାରଣ, କାରଣଠାରୁ କାର୍ଯ୍ୟ ପୃଥକ ନ ରହିଲେ କାର୍ଯ୍ୟର ଅବସ୍ଥିତି ପ୍ରଶ୍ନ ହେବ ନାହିଁ । ଏହି ନ୍ୟାୟରେ ବ୍ରହ୍ମଙ୍କର ଅଖଣ୍ଡୈକରସତ୍ତ୍ୱ ପ୍ରତିପାଦନ ନିମନ୍ତେ ଶ୍ରୁତିବଚନପ୍ରବୃତ୍ତ, ଅତଏବ ଶ୍ରୁତିବଚନ କଦାପି ବ୍ୟର୍ଥ ହେବନାହିଁ । ଏ ବିଷୟରେ ପୁନଶ୍ଚ ଶ୍ରୁତି କହେ—

ଅସର୍ପଭୂତେ ରଜ୍ଜୌ ସର୍ପାରୋପବତ୍
ବସ୍ତୁନ୍ୟବସ୍ତ୍ୱାରୋପଃ ଅଧ୍ୟାରୋପଃ ।
ବସ୍ତୁ ସଚ୍ଚିଦାନନ୍ଦମଦ୍ୱୟଂ ବ୍ରହ୍ମ ।
ଅଜ୍ଞାନାଦସକଳ ଜଡ଼ସମୂହଃ ଅବସ୍ତୁ ।। ବେଦାନ୍ତସାର—୨୫ ।

ପ୍ରକୃତବସ୍ତୁରେ ଭ୍ରାନ୍ତିହେତୁରୁ ଯେଉଁ ଅପ୍ରକୃତ ବସ୍ତୁର ଆରୋପ ହୁଏ, ତାହାକୁ ଅଧ୍ୟାରୋପ କୁହାଯାଏ । କାରଣ, ଯେଉଁ ସମୟରେ ରଜ୍ଜୁରେ ସର୍ପଭ୍ରମ ହୁଏ, ପ୍ରକୃତରେ ସେତେବେଳେ ସେଠାରେ ସର୍ପ ନ ଥାଏ; କିନ୍ତୁ ଲୋକ ବ୍ୟବହାର ନେଇ ତତ୍କାଳୀନ ରଜ୍ଜୁକୁ ସର୍ପ କୁହାଯାଏ । ବାସ୍ତବରେ ଭ୍ରମହେତୁରୁ ପ୍ରକୃତ ରଜ୍ଜୁରେ ଅପ୍ରକୃତ ସର୍ପର ଆରୋପ ହୁଏ ବୋଲି ତାହାକୁ ଅଧ୍ୟାରୋପ କହନ୍ତି । ସେହିପରି ବ୍ରହ୍ମ ହିଁ କେବଳ ବସ୍ତୁ ବା ସତ୍ୟ, ତାଙ୍କ ଛଡ଼ା ଆଉ ସମସ୍ତ ଅବସ୍ତୁ, ଅର୍ଥାତ୍ ଭ୍ରମକଳ୍ପିତ ମିଥ୍ୟାଜ୍ଞାନ । ଅତଏବ ସତ୍ୟସ୍ୱରୂପ ବ୍ରହ୍ମଙ୍କଠାରେ ମିଥ୍ୟାଭୂତ ଭ୍ରାନ୍ତି ପ୍ରଦର୍ଶିତ ଜଗତର ଆରୋପହେତୁରୁ ତାହାକୁ ଅଧ୍ୟାରୋପ କୁହାଯାଏ । ଅଜ୍ଞ ବ୍ୟକ୍ତିଗଣ ବିଶୁଦ୍ଧଜ୍ଞାନାର୍ଜନ ଅଭାବରୁ ଅପବାଦଦ୍ୱାରା ଭ୍ରାନ୍ତି-ଜ୍ଞାନକୁ ଉପଯୁକ୍ତ ବିବେକ-ବିଚାରଦ୍ୱାରା ଅପହୃତ ନ କରି ଅନାତ୍ମାରେ ଆତ୍ମଜ୍ଞାନ ଓ ଅନିତ୍ୟରେ ନିତ୍ୟଜ୍ଞାନପ୍ରଭୃତି ଭ୍ରାନ୍ତଧାରଣାବଶତଃ ଅବିଦ୍ୟାରୂପକ ତିମିରରେ ନିମଗ୍ନ ରହି ନିଜ ନିଜର କଳ୍ପନା ଅନୁସାରେ ସଂସାରିକ ସକଳ ବସ୍ତୁରେ ଆତ୍ମତ୍ତ୍ୱ ଆରୋପ କରନ୍ତି ବା ସଂସାରିକ ସକଳ ବସ୍ତୁକୁ ସତ୍ ମନେକରନ୍ତି । ଯେଉଁ ବିବେକୀ ସାଧକ ଗୁରୁଙ୍କ ଉପଦେଶରୁ ଓ ଶାସ୍ତ୍ରାଧ୍ୟୟନରୁ ବିଶୁଦ୍ଧ ଆତ୍ମତତ୍ତ୍ୱଜ୍ଞାନ ଲାଭ କରେ, ତାଙ୍କର ଭ୍ରମଜ୍ଞାନ ନଷ୍ଟ ହୋଇ ବିଶୁଦ୍ଧ ଆତ୍ମଜ୍ଞାନ ପ୍ରକାଶିତ ହୁଏ । ଏହିହେତୁରୁ ସେ ସେହି ଅଦ୍ୱିତୀୟ ବ୍ରହ୍ମ ବସ୍ତୁ ବ୍ୟତୀତ ଅନ୍ୟ ବସ୍ତୁକୁ ନିତ୍ୟ ଆତ୍ମଜ୍ଞାନ-ରୂପରେ ଗ୍ରହଣ କରେ ନାହିଁ । ଏ ବିଷୟରେ ବେଦାନ୍ତଦର୍ଶନ କହେ—

ଅସ୍ମିନ୍ନାତ୍ମନ୍ୟନାତ୍ମତ୍ୱମନାତ୍ମନ୍ୟାତ୍ମତାଂ ପୁନଃ ।
ବିପରୀତତୟାଧ୍ୟସ୍ୟ ସଂସରନ୍ତି ବିମୋହିତଃ ॥ ସ: ବେ: ସା: ସ: ୪୭୨ ।

ଅର୍ଥାତ୍ ଲୋକସକଳ ମୋହବଶତଃ ଆତ୍ମାଠାରେ ଦେହ, ଇନ୍ଦ୍ରିୟ, ମନ, ବୁଦ୍ଧି-ପ୍ରଭୃତି ଅନାତ୍ମବିଷୟକୁ ଏବଂ ବିପରୀତଭାବରେ ଅନାତ୍ମାଠାରେ ଆତ୍ମାକୁ ଆରୋପ କରି ଜନ୍ମମରଣପ୍ରବାହରେ ନିପତିତ ହୁଅନ୍ତି । ଏହାର ଜ୍ୱଳନ୍ତ ପ୍ରମାଣ ଶ୍ରୁତିବଚନ ନିମ୍ନଲିଖିତ-ଭାବରେ ବର୍ଣ୍ଣନା କରେ—

୦—ପୁତ୍ରାତ୍ମବାଦଃ—

ଅତ୍ୟନ୍ତପାମରଃ କଶ୍ଚିତ୍ ପୁତ୍ରଆତ୍ମେତିମନ୍ୟତେ । ସ: ସି: ସା: ୫୬୩ ।

କେହି କେହି ଅତ୍ୟନ୍ତ ପାମର ବ୍ୟକ୍ତି ପୁତ୍ରକୁ ଆତ୍ମା ବୋଲି ମନେ କରେ ।

ଆତ୍ମନୀବ ସ୍ୱପୁତ୍ରେଽପି ପ୍ରବଳ ପ୍ରୀତିଦର୍ଶନାତ୍ ।
ପୁତ୍ରେ ତୁ ପୁଷ୍ଟେ ପୁଷ୍ଟୋଽହଂ ନଷ୍ଟେ ନଷ୍ଟୋଽହମିତ୍ୟତଃ ॥
ଅନୁଭୂତିବଲାଚ୍ଚାପି ଯୁକ୍ତିତୋଽପି ଶ୍ରୁତେରପି ।
ଆତ୍ମା ବୈ ପୁତ୍ରନାମାସୀତ୍ୟେବଂ ଚ ବଦତି ଶ୍ରୁତିଃ ॥

ସ: ସି: ସା: ୫—୨୪ । ୨୫ ।

ଅତ୍ୟନ୍ତ ପାମର ବ୍ୟକ୍ତିମାନେ ପୁତ୍ରକୁ ଆତ୍ମା ବୋଲି କାହିଁକି କହନ୍ତି, ତାହାର କାରଣ ଏପରି କୁହାଯାଇଛି—ପୁତ୍ର ପୁଷ୍ଟ ହେଲେ ମୁଁ ପୁଷ୍ଟ ହେଲି, ପୁତ୍ର ନଷ୍ଟ ହେଲେ ମୁଁ ନଷ୍ଟ ହେଲି—ଏହିପରି ଅନୁଭବ ବଳରୁ, ଯୁକ୍ତିବଳ ଓ ଶ୍ରୁତିପ୍ରମାଣରୁ ମଧ୍ୟ ଅଧମ-ବ୍ୟକ୍ତିମାନେ ପୁତ୍ରକୁ ଆତ୍ମା ବୋଲି ମନେ କରନ୍ତି, ପୁତ୍ରର ନାମ ଆତ୍ମା ଏ କଥା ଶ୍ରୁତିରେ ମଧ୍ୟ ଉକ୍ତ ଅଛି ।

ଦୀପାଦ୍ଦୀପୋ ଯଥା ତଦ୍ବତ୍ ପିତୁଃ ପୁତ୍ରଃ ପ୍ରଜାୟତେ ।
ପିତୁର୍ଗୁଣାନାଂ ତନୟେ ବୀଜାଙ୍କୁରବଦୀକ୍ଷଣାତ୍ ।
ଅତୋଽୟଂ ପୁତ୍ର ଆତ୍ମେତି ମନ୍ୟତେ ଭ୍ରାନ୍ତମତ୍ତମଃ ॥

ସ: ସି: ସା: ୫୨୬ ।

ଅର୍ଥାତ୍—ଗୋଟିଏ ଦୀପରୁ ଅନ୍ୟ ଦୀପ ଲଗିଲା ଭଳି ପିତାଠାରୁ ପୁତ୍ର ଉତ୍ପନ୍ନ ହୁଏ । ଅଙ୍କୁରରେ ବୀଜର ଗୁଣସମୂହ ଥିଲା ଭଳି ପୁତ୍ରଠାରେ ପିତାର ଗୁଣରାଜି ଦୃଷ୍ଟ ହୁଏ; ସେହି କାରଣରୁ ଅତ୍ୟନ୍ତ ଭ୍ରାନ୍ତ ବ୍ୟକ୍ତି ପୁତ୍ରକୁ ଆତ୍ମା ବୋଲି ମନେ କରନ୍ତି ।

ଠ—ଦେହାତ୍ମବାଦଃ

ତନ୍ମତଂ ଦୂଷୟତ୍ୟନ୍ୟଃ ପୁତ୍ର ଆତ୍ମା କଥଂ ତ୍ୱିତ । ସ. ସି. ସା. ୫୨୭ ।

ଅର୍ଥାତ୍ ପୁତ୍ର ଆତ୍ମା କପରି ହୋଇପାରେ—ଏହା କହି ଅନ୍ୟ ମତବାଦୀ ପୁତ୍ରାତ୍ମ-ବାଦରେ ଦୋଷାରୋପ କରେ ।

ପ୍ରୀତମାବାତ୍ କଥଂ ପୁତ୍ର ଆତ୍ମା ଭବତୁମର୍ହତ ।
ଅନ୍ୟତ୍ରାପୀକ୍ଷ୍ୟତେ ପ୍ରୀତଃ କ୍ଷେତ୍ରପାତ୍ରଧନାଦଷୁ । ସ: ସି: ସା: ୫୨୮ ।

ଅର୍ଥାତ୍—ପୁତ୍ର ଅତ୍ୟନ୍ତ ପ୍ରିୟ ହୁଏ ବୋଲି ପୁତ୍ର କପରି ଆତ୍ମା ହୋଇପାରେ ? ପୁତ୍ର ଭିନ୍ନ ଭୂମି, ପାତ୍ର ଏବଂ ଧନପ୍ରଭୃତିରେ ମଧ୍ୟ ପ୍ରୀତି ଦେଖାଯାଏ ।

ପୁତ୍ରାଦ୍ ବଶିଷ୍ଟା ଦେହେଽସ୍ମିନ୍ ପ୍ରାଣିନାଂ ପ୍ରୀତରିଷ୍ୟତେ ।
ପ୍ରଦୀପ୍ତେ ଭବନେ ପୁତ୍ରଂ ତ୍ୟକ୍ତ୍ୱା ଜନ୍ତୁଃ ପଳାୟତେ ॥
ତଂ ବକ୍ରୀଣାତ ଦେହାର୍ଥଂ ପ୍ରତକୂଳଂ କହନ୍ତ ଚ ।
ତସ୍ମାଦାତ୍ମା ତୁ ତନୟୋ ନ ଭବେଚ୍ଚ କଦାଚନ ॥
ଗୁଣରୂପାଦସାଦୃଶ୍ୟଂ ଦୀପବନ୍ନ ସୁତେ ପିତୁଃ ।
ଅବ୍ୟଙ୍ଗାଜ୍ଜାୟତେ ବ୍ୟଙ୍ଗଃ ସୁଗୁଣାଦପି ଦୁର୍ଗୁଣଃ ॥
ଆତ୍ମସମାବାତ୍ସାଃ ସର୍ବା ଯୁକ୍ତ୍ୟୋଽପ୍ୟୁକ୍ତ୍ୟୋଽପିଚ ।
ପୁତ୍ରସ୍ୟ ପିତୃବଦ୍ ଗେହେ ସର୍ବକାର୍ଯ୍ୟେଷୁ ବସ୍ତୁଷୁ ।
ସ୍ୱାମିତ୍ୱଦେଶାତନାୟାସ୍ମିନ୍ନାତ୍ମତ୍ୱମୁପଚର୍ଯ୍ୟତେ ।
ଶ୍ରୁତ୍ୟା ତୁ ମୁଖ୍ୟୟା ବୃତ୍ତ୍ୟା ପୁତ୍ର ଆତ୍ମେତ ନୋଚ୍ୟତେ ॥
ସ: ସି: ସା: ୫୨୯-୫୩୩ ।

ଅର୍ଥ—ମନୁଷ୍ୟର ପୁତ୍ର ଅପେକ୍ଷା ଦେହ ପ୍ରତି ଅଧିକ ପ୍ରୀତି ଦେଖାଯାଏ; କାରଣ ଗୃହ ଅଗ୍ନି ସଂଯୁକ୍ତ ହେଲେ ପୁତ୍ରକୁ ତ୍ୟାଗ କରି ଜୀବ ସେହି ଗୃହରୁ ପଳାୟନ କରେ । ଆହୁରି ମଧ୍ୟ ଦେହରକ୍ଷା ନିମନ୍ତେ ଲୋକ ପୁତ୍ରକୁ ବିକ୍ରୟ କରେ, ପୁତ୍ର ପ୍ରତିକୂଳ ହେଲେ ତାହାର ବିନାଶ ସାଧନ ମଧ୍ୟ କରେ । ଅତଏବ ପୁତ୍ର କଦାପି ଆତ୍ମା ହୋଇ ପାରେ ନାହିଁ । ଏକ ଦୀପରୁ ଉତ୍ପନ୍ନ ଅନ୍ୟ ଦୀପ ଯେପରି ପୂର୍ବଦୀପ ସଦୃଶ ରୂପଗୁଣଯୁକ୍ତ ହୁଏ, ସେହିପରି ପୁତ୍ରଠାରେ ପିତାର ରୂପଗୁଣାଦ

ସାଦୃଶ୍ୟ ନ ଦେଖାଯିବା ଅଧିକ ସମ୍ଭବ । କାରଣ, ଅବିକଳାଙ୍ଗ ପିତାଠାରୁ ବିକଳାଙ୍ଗ ଓ ଗୁଣବାନ୍ ପିତାଠାରୁ ଦୁର୍ଗୁଣ ପୁତ୍ର ଉତ୍ପନ୍ନ ହେବା ଦେଖାଯାଏ । ପିତାପୁତ୍ରର ଆତ୍ମବିଷୟକ ପୂର୍ବୋକ୍ତ ଯୁକ୍ତିସମୂହ ପ୍ରକୃତ ଯୁକ୍ତି ନ ହୋଇ କେବଳ ଯୁକ୍ତିର ଆଭାସ ମାତ୍ର । ପ୍ରକୃତରେ ପିତାର ଯେପରି ଗୃହରେ ସମସ୍ତ କାର୍ଯ୍ୟରେ ଓ ସମସ୍ତ ସମ୍ପତ୍ତିବିଷୟରେ ପ୍ରଭୁତ୍ୱ ଅଛି, ପୁତ୍ରର ସେହିପରି ପ୍ରଭୁତ୍ୱ ସୂଚନା ନିମନ୍ତେ ପୁତ୍ରଠାରେ ଆତ୍ମା ଶବ୍ଦର ଉପଚାର (ଗୌଣ ପ୍ରୟୋଗ) କରାଯାଏ । ଶ୍ରୁତି ମଧ୍ୟ ମୁଖ୍ୟବୃତ୍ତି ବା ବାଚ୍ୟାର୍ଥ ଅନୁସାରେ 'ପୁତ୍ର'-ଶବ୍ଦରେ 'ଆତ୍ମା'-ଶବ୍ଦର ପ୍ରୟୋଗ କରିନାହିଁ ।

ଔପଚାରିକମାତ୍ମତ୍ୱଂ ପୁତ୍ରେ ତସ୍ମାନ୍ନମୁଖ୍ୟତଃ ।
ଅହଂପଦପ୍ରତ୍ୟୟାର୍ଥୋ ଦେହ ଏବ ନ ଚେତରଃ ॥
ପ୍ରତ୍ୟକ୍ଷଃ ସର୍ବଜନ୍ତୂନାଂ ଦେହୋଽହମିତି ନିଶ୍ଚୟଃ ।
ଏଷ ପୁରୁଷୋଽନ୍ନରସମୟ ଇତ୍ୟପି ଚ ଶ୍ରୁତଃ ॥
ପୁରୁଷତ୍ୱଂ ବଦତ୍ୟସ୍ୟ ସ୍ୱାମ୍ୟା ହି ପୁରୁଷସ୍ତତଃ ।
ଆତ୍ମାୟଂ ଦେହ ଏବେତି ଚାର୍ବାକେଣ ବିନିଶ୍ଚିତମ୍ ॥

ସ: ସି: ସା: ୫୩୪-୫୩୬ ।

ଅତଏବ ପୁତ୍ରଠାରେ ଯେଉଁ ଆତ୍ମା ଶବ୍ଦର ବ୍ୟବହାର, ତାହା ଗୌଣ, ମୁଖ୍ୟ ନୁହେଁ; ଏକମାତ୍ର ଦେହ ହିଁ ଅହଂଜ୍ଞାନର ବିଷୟ, ପୁତ୍ରାଦି ନୁହେଁ । ଦେହ ହିଁ ମୁଁ ବା ଅହଂପଦବାଚ୍ୟ —ଏପରି ସମସ୍ତ ପ୍ରାଣୀମାନଙ୍କର ପ୍ରତ୍ୟକ୍ଷ ଜ୍ଞାନ ନିଶ୍ଚିତ୍ତଭାବରେ ଅନୁଭୂତ ହୁଏ; ଏହି ପୁରୁଷ (ଦେହ) ଅନ୍ନ-ସାରାଂଶର ବିକାରଭୂତ ବୋଲି ଶ୍ରୁତିରେ ଉଲ୍ଲେଖ ଅଛି । ଶ୍ରୁତି ଏହି ଶରୀରକୁ ପୁରୁଷ ବୋଲି କହେ । ଅତଏବ ପୁରୁଷ ହିଁ ଆତ୍ମା—ଏହି ଦୃଶ୍ୟମାନ ଶରୀର ହିଁ ଆତ୍ମା—ଏହା ଚାର୍ବାକକର୍ତ୍ତୃକ * ନିଶ୍ଚିତ ହୋଇଛି ।

---

## ନାସ୍ତିକ—ଚାର୍ବାକମତ—

* ନାସ୍ତିକଚାର୍ବାକ ଦେହାତିରିକ୍ତ ଆତ୍ମା ସ୍ୱୀକାର କରନ୍ତି ନାହିଁ । ଚାର୍ବାକଦର୍ଶନରେ ଉକ୍ତ ଅଛି—"ଦେହାତିରିକ୍ତେ ଆତ୍ମନି ପ୍ରମାଣାଭାବାତ୍" । ସେମାନେ ପଞ୍ଚ ମହାଭୂତ ସ୍ୱୀକାର କରନ୍ତି ନାହିଁ । "ଚତୁର୍ଭ୍ୟଃଖଲୁ ଭୂତେଭ୍ୟଃ ଚୈତନ୍ୟମୁପଜାୟତେ" । କ୍ଷିତି, ଅପ୍, ତେଜ ଓ ମରୁତ୍, ଏହି ଚାରି ମହାଭୂତ ମିଳିତ ହେଲେ ଦେହ ରଚିତ ହୁଏ । ଅଚେତନରୁ ସଚେତନ କିପରି ସମ୍ଭବ— ଏହି ଆଶଙ୍କାର ଉତ୍ତରରେ ସେମାନେ କହନ୍ତି ଯେ, "କିଣ୍ୱାଦିଭ୍ୟୋ ମଦଶକ୍ତିବତ୍ ଚୈତନ୍ୟମୁପଜାୟତେ" । ଅର୍ଥାତ୍—ଅଚେତନ-

## ଇନ୍ଦ୍ରିୟାତ୍ମବାଦଃ

ତନ୍ମତଂ ଦୂଷୟତ୍ୟନ୍ୟୋଽସହମାନଃ ପୃଥଗ୍ ଜନଃ ।
ଦେହ ଆତ୍ମା କଥଂ ନୁ ସ୍ୟାତ୍ ପରତନ୍ତ୍ରୋହ୍ୟ ଚେତନଃ ॥
ଇନ୍ଦ୍ରିୟୈଶ୍ଚାଲ୍ୟମାନୋଽୟଂ ଚେଷ୍ଟତେ ନ ସ୍ୱତଃ କ୍ୱଚିତ୍ ।
ଆଶ୍ରୟଶ୍ଚକ୍ଷୁରାଦୀନାଂ ଗୃହବଦ ଗୃହମେଧିନାମ୍ ॥
ବାଲ୍ୟାଦନାନାବସ୍ଥାବାନ୍ ଶୁକ୍ରଶୋଣିତସମ୍ଭବଃ ।
ଅତଃ କଦାପି ଦେହସ୍ୟ ନାତ୍ମତ୍ୱମୁପପଦ୍ୟତେ ॥

---

ଭୂତସକଳ ମିଳିତ ହୋଇ ଦେହରୂପରେ ପରିଣତ ହେଲେ ସେଥିରୁ ଚୈତନ୍ୟ ଜନ୍ମେ । ଏହିପରି ସଂଜାତ ଚୈତନ୍ୟ ହିଁ ଆତ୍ମା—"ସଏବାତ୍ମା ନ ତତ୍ପରଃ" । ଏମାନଙ୍କ ମତରେ ଦେହର ନାଶ ସହିତ ଆତ୍ମାର ବିନାଶ ହୁଏ । ଅତଏବ ସେମାନେ କହନ୍ତି—"ଦେହୋ-ଚ୍ଛେଦୋ ମୋକ୍ଷଃ" । ଚାର୍ବାକ ଇହସର୍ବସ୍ୱ ଓ ତାଙ୍କ ଦୃଷ୍ଟିରେ ସ୍ୱର୍ଗ, ନରକ, ପରଲୋକ, ପୁନର୍ଜନ୍ମ ଆଦି କିଛି ନାହିଁ—ନ ସ୍ୱର୍ଗୋ ନାପବର୍ଗୋ ବା ନୈବାତ୍ମା ପାରଲୌକିକଃ" । ଅତଏବ ସେମାନେ କହନ୍ତି—ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ" । ସ୍ୱର୍ଗ ତ ନାହିଁ, ପୁଣି ନରକ କେଉଁଠାରେ ? ପ୍ରକୃତରେ "କଣ୍ଟକାଦିଜନ୍ୟଂ ଦୁଃଖମେବ ନରକମ୍" । ଆଉ ଧର୍ମ-ଅଧର୍ମ କ'ଣ ? ସେ ସବୁ ଉନ୍ମତ୍ତର ପ୍ରଲାପୋକ୍ତି । ଯାହା ଅନୁକୂଳ ବେଦନୀୟ ତାହା ହିଁ ଉପାଦେୟ ଏବଂ ଯାହା କିଛି ପ୍ରତିକୂଳବେଦନୀୟ ସେ ସବୁ ହେୟ । ଧର୍ମ ବା ଅଧର୍ମ ବୋଲି କିଛି ନାହିଁ, ଅତଏବ ତଜ୍ଜନିତ ଅଦୃଷ୍ଟ ମଧ୍ୟ କିଛି ନାହିଁ ।" ଅତଃ ତତ୍ସାଧନ-ମଦୃଷ୍ଟାଦିକମପି ନାସ୍ତି" । ଶଙ୍କା ହୁଏ—ଯଦି ଅଦୃଷ୍ଟ ନାହିଁ ତେବେ ଏହି ବିଚିତ୍ର ବିଶ୍ୱର ବ୍ୟବସ୍ଥା କିପରି ହେଲା ? ଏହା କଣ ଆକସ୍ମିକ ? କିନ୍ତୁ ଏ ବିଷୟରେ ଚାର୍ବାକଙ୍କର ଉତ୍ତର ଅତି ସହଜ—"ସ୍ୱଭାବବତ୍ ତଦ୍‌ବ୍ୟବସ୍ଥିତିଃ", "ଅଗ୍ନିରୁଷ୍ଣୋ ଜଳଂ ଶୀତଂ ଶୀତ-ସ୍ପର୍ଶସ୍ତଥାନିଳଃ । କେନେଦଂ ଚିତ୍ରିତଂ ତସ୍ମାତ୍ ସ୍ୱଭାବାତ୍ ତଦ୍‌ବ୍ୟବସ୍ଥିତିଃ" । ଅଗ୍ନିର ଉଷ୍ଣତା ଜଳର ଶୀତଳତା ଓ ବାୟୁର ଶୀତଳସ୍ପର୍ଶତୁଲ୍ୟ ଜଗଦ୍‌ବୈଚିତ୍ର୍ୟ ମଧ୍ୟ ସ୍ୱାଭାବିକ । ଜଗତ୍‌ଦୁଃଖପୂର୍ଣ୍ଣ—ଏକଥା ସତ; କିନ୍ତୁ ସେହି ଦୁଃଖଭୟରେ ସୁଖ ତ୍ୟାଗ କରିବା ଭୀରୁତା ବା ମୂର୍ଖତାର ଚିହ୍ନ । ତସ୍ମାଦ୍ଦୁଃଖଭୟାତ୍ ନାନୁକୂଳବେଦନୀୟଂ ସୁଖଂ ତ୍ୟକ୍ତୁଂ ଉଚିତମ୍ + + ଯଦି କଶ୍ଚିଦ୍ ଭୀରୁଃ ଦୃଷ୍ଟଂ ସୁଖଂ ତ୍ୟଜେତ୍; ତର୍ହି ସ ପଶୁବତ୍ ମୂର୍ଖୋ ଭବେତ୍ ।" ଅତଏବ—"ଯାବଜ୍ଜୀବେତ୍ ସୁଖଂ ଜୀବେତ୍ ଋଣଂ କୃତ୍ୱା ଘୃତଂ ପିବେତ୍" ଇତ୍ୟାଦି ଚାର୍ବାକଙ୍କର ମତ । ବିଶେଷତଃ ମୃତ୍ୟୁ ସଙ୍ଗେ ସଙ୍ଗେ ସକଳ ବିଷୟର ଉଚ୍ଛେଦହେତୁରୁ ଜୀବିତାବସ୍ଥାରେ ଯଥେ-ଚ୍ଛାଚାରକର୍ମରେ ରତ ହୋଇ ଭୌତିକସୁଖରେ ଆସକ୍ତ ହେବାରେ କୌଣସି ବାଧା ନାହିଁ । ଚାର୍ବାକ୍ ଆହୁରି କହେ—ଯାବଜ୍ଜୀବଂ ସୁଖଂ ଜୀବେତ୍ ନାସ୍ତି ମୃତ୍ୟୋରଗୋଚରଃ ।"—ସୁଖଭୋଗହିଁ ଜୀବର ଲକ୍ଷ୍ୟ, ଏଣୁ ସମସ୍ତସୁଖ ମଧ୍ୟରେ ଅଙ୍ଗନାଲିଙ୍ଗନ ଚରମସୁଖ ବା ପରମ-

ବଧିରୋଽହଂ ଚ କାଣୋଽହଂ ମୂକଇତ୍ୟନୁଭୂତତଃ ।
ଇନ୍ଦ୍ରିୟାଣି ଭବନ୍ତ୍ୟାତ୍ମା ଯେଷାମସ୍ତ୍ୟର୍ଥବେଦନମ୍ ॥
ଇନ୍ଦ୍ରିୟାଣାଂ ଚେତନତ୍ୱଂ ଦେହେ ପ୍ରାଣାଃ ପ୍ରଜାପତମ୍ ।
ଏତମେତେତ୍ୟତ୍ୟୁଚୁରିତ ଶ୍ରୁତ୍ୟେବ ପ୍ରତିପାଦ୍ୟତେ ॥
ଯତସ୍ତସ୍ମାଦିନ୍ଦ୍ରିୟାଣାଂ ଯୁକ୍ତମାତ୍ମତ୍ୱମିତ୍ୟମୁମ୍ ।
ନଶ୍ଚୟଂ ଦୂଷୟନ୍ତ୍ୟନ୍ୟେ ସହମାନଃ ପୃଥଗ୍‌ଜନଃ ॥

ସ: ସି: ସା:-୫୩୭-୫୪୨ ।

ଅର୍ଥାତ୍—ଅପର ଅଜ୍ଞଲୋକ ଦେହାତ୍ମବାଦୀର ମତ ସହ୍ୟ କରି ନ ପାରି ସେଥିରେ ଦୋଷାରୋପ କରେ—ଇନ୍ଦ୍ରିୟର ଅଧୀନ ଜଡ଼ ଦେହ କପରି ଆତ୍ମା ହୋଇପାରେ ? ଏହି ଦେହ ଇନ୍ଦ୍ରିୟଗଣକର୍ତ୍ତୃକ ପରିଚାଳିତ ହୋଇ କ୍ରିୟା ସମ୍ପାଦନ କରେ; ନଜେ କୌଣସିଠାରେ ବ୍ୟାପୃତ ହୁଏ ନାହିଁ । ଗୃହ ଯେପରି ଗୃହସ୍ଥମାନଙ୍କର ଆଶ୍ରୟ, ସେହିପରି ଦେହ ମଧ୍ୟ ଇନ୍ଦ୍ରିୟ-ମାନଙ୍କର ଆଶ୍ରୟ । ଏହି ଶରୀର ବାଲ୍ୟଯୌବନାଦି ବିବିଧ ଅବସ୍ଥାଯୁକ୍ତ ଏବଂ ପିତାଙ୍କ ବୀର୍ଯ୍ୟ ଓ ମାତୃ ଶୋଣିତରୁ ଉତ୍ପନ୍ନ; ଅତଏବ କେବେହେଲେ ଦେହ ଆତ୍ମା ହୋଇ ନ ପାରେ ।

---

ପୁରୁଷାର୍ଥ । ଅଙ୍ଗନାଲିଙ୍ଗନାଦିଜନ୍ୟଂ ସୁଖମେବ ପୁରୁଷାର୍ଥଃ ।” ବେଦାଦି ଧର୍ମଶାସ୍ତ୍ର ଅବଶ୍ୟ ବିଧି-ନିଷେଧଦ୍ୱାରା ସମସ୍ତଙ୍କ ଜୀବନ ନିୟନ୍ତ୍ରିତ କରିବାକୁ ଚାହେଁ; କିନ୍ତୁ ବେଦବଚନର ପ୍ରମାଣ କ’ଣ ? “ତ୍ରୟୋ ବେଦସ୍ୟ କର୍ତ୍ତାରୋ ଭଣ୍ଡଧୂର୍ତ୍ତନିଶାଚରାଃ”—ଭଣ୍ଡ, ଧୂର୍ତ୍ତ ଓ ଆସୁରୀ ପ୍ରକୃତିର ଲୋକମାନେ ବେଦର ରଚକ । ଅତଏବ ବେଦବଚନ କାହିଁକି ମାନିବାକୁ ହେବ । ବେଦର ଅପର ନାମ ଆଗମ; କିନ୍ତୁ ବେଦ ବା ଆଗମ କେହି ପ୍ରମାଣସିଦ୍ଧ ନୁହେଁ । ଚାର୍ବାକଙ୍କ ମତରେ ପ୍ରତ୍ୟକ୍ଷ ବ୍ୟତିରିକ୍ତ ଅନ୍ୟ ପ୍ରମାଣ କିଛି ନାହିଁ । ଅନୁମାନ ମଧ୍ୟ ଅସିଦ୍ଧ, ଆଗମ ଦୂରର କଥା । “ପ୍ରତ୍ୟକ୍ଷୈକପ୍ରମାଣବାଦିତୟା ଅନୁମାନାଦେରଙ୍ଗୀକାରେ ପ୍ରମାଣାଭାବାତ୍”—ଇତ୍ୟାଦି ରମଣୀୟ ଚାର୍ବାକ ମତ ଅତି ରୋଚକ ।

“ବହୂନାଂ ପ୍ରାଣିନାମନୁଗ୍ରହାର୍ଥଂ ଚାର୍ବାକମତଂ ଆଶ୍ରୟଣୀୟମିତି ରମଣୀୟମ୍ । ସର୍ବ:ଦ:ସ ॥

ଚାର୍ବାକ-ମତର ଅନ୍ୟ ନାମ ଲୋକାୟତ । ସର୍ବଦର୍ଶନକାରଙ୍କ ମତରେ ଏହି ନାମ ସାର୍ଥକ—ଲୋକାୟତଂ ଇତ୍ୟନ୍ୱର୍ଥମପରଂ ନାମଧେୟମ୍ ।” ଏହି ନାସ୍ତିକ ମତ ସମସ୍ତଙ୍କ ଚିତ୍ତର ଆକର୍ଷଣକାରୀ । ପ୍ରାଚୀନକାଳରୁ ଲୋକାୟତ ମତ ଲୋକସମାଜରେ ପ୍ରଚଳିତ ଥିବା ଅନୁମାନ କରାଯାଏ । ବାଲ୍ମୀକି ରାମାୟଣର ଅଯୋଧ୍ୟାକାଣ୍ଡରେ ଜଣେ ଚାର୍ବାକ ରାମଚନ୍ଦ୍ରଙ୍କୁ ଧର୍ମ-ଭାବରୁ ବଞ୍ଚିତ କରାଇବା ନିମନ୍ତେ ଯଥେଷ୍ଟ ଚେଷ୍ଟା କରିଥିବା ବର୍ଣ୍ଣନା କରାଯାଇଛି; କିନ୍ତୁ ରାମଚନ୍ଦ୍ରଙ୍କର ଆସ୍ତିକ୍ୟ ଭାବ ଦୃଢ଼ ଥିବାରୁ ଚାର୍ବାକର ଚେଷ୍ଟା ବିଫଳ ହୋଇଥିଲା । ବୌଦ୍ଧ ଗ୍ରନ୍ଥରେ ମଧ୍ୟ ଚାର୍ବାକମତର ଖଣ୍ଡନ ଦେଖାଯାଏ ।

ମୁଁ ବଧିର (ଶ୍ରବଣଶକ୍ତି-ରହିତ), ମୁଁ କାଣ (ନେତ୍ର ବହୀନ); ମୁଁ ମୂକ (ବାକ୍‌ଶକ୍ତି-ବହୀନ)—ଏହିପରି ଅନୁଭବରୁ ଇନ୍ଦ୍ରିୟଗଣ ଆତ୍ମା ହୋଇ ପାରନ୍ତି । କାରଣ, ଇନ୍ଦ୍ରିୟ-ମାନଙ୍କର ବିଷୟଜ୍ଞାନ ବିଦ୍ୟମାନ । ଶରୀରସ୍ଥିତ ଇନ୍ଦ୍ରିୟମାନେ ପ୍ରଜାପତିଙ୍କ ସମୀପକୁ ଯାଇ ଏହିପରି କହିଥିଲେ—ଏହି ଶ୍ରୁତି-ବଚନଦ୍ୱାରା ଇନ୍ଦ୍ରିୟମାନଙ୍କର ଚୈତନ୍ୟ ପ୍ରତିପାଦିତ ହେଉଅଛି । ଦ୍ୱିତୀୟତଃ ଏହି ପ୍ରତିପାଦନରୁ ଇନ୍ଦ୍ରିୟମାନଙ୍କର ଆତ୍ମତ୍ୱ ଯୁକ୍ତିଯୁକ୍ତ । ଅନ୍ୟ ମୂର୍ଖଲୋକ ଏହି ପ୍ରତିପାଦନରେ ଅସନ୍ତୁଷ୍ଟ ହୋଇ ଦୋଷ ଆରୋପ କରେ ।

## ପ୍ରାଣାତ୍ମବାଦ ।

"ଇନ୍ଦ୍ରିୟାଣି କଥଂ ତ୍ୱାତ୍ମା କରଣାନ କୁଠାରବତ୍ ।
କରଣସ୍ୟ କୁଠାରାଦେଶ୍ଚେତନତ୍ୱଂ ନ ହୀକ୍ଷ୍ୟତେ ॥
ଶ୍ରୁତ୍ୟାଧିଦେବତାବାଦ ଇନ୍ଦ୍ରିୟେଷୂପଚର୍ଯତେ ।
ନ ତୁ ସାକ୍ଷାଦନ୍ଦ୍ରିୟାଣାଂ ଚେତନତ୍ୱମୁଦୀୟତେ ॥
ଅଚେତନସ୍ୟ ଦୀପାଦେରର୍ଥାଵସକତା ଯଥା ।
ତଥୈବଚକ୍ଷୁରାଦୀନାଂ ଜଡ଼ାନାମପି ସିଦ୍ଧ୍ୟତ ॥
ଇନ୍ଦ୍ରିୟାଣାଂ ଚେଷ୍ଟୟିତା ପ୍ରାଣୋଽୟଂ ପଞ୍ଚବୃତ୍ତିକଃ ।
ସର୍ବାବସ୍ଥାସ୍ୱବସ୍ଥାବାନ୍ ସୋଽୟମାତ୍ମତ୍ୱମର୍ହତ ।
ଅହଂ କ୍ଷୁଧାବାନ୍ ତୃଷ୍ଣାବାନ୍‌ଇତ୍ୟାଦ୍ୟନୁଭବାଦପି ॥
ଶ୍ରୁତ୍ୟାନ୍ୟୋଽନ୍ତର ଆତ୍ମା ପ୍ରାଣମୟ ଇତୀର୍ଯ୍ୟତେ ଯସ୍ମାତ୍ ।
ତସ୍ମାତ୍ ପ୍ରାଣସ୍ୟାତ୍ମତ୍ୱଂ ଯୁକ୍ତଂ ନୋ କରଣସଂଜ୍ଞାନାଂ କ୍ୱାପି ॥

ସ: ସି: ସାର—୫୪୩—୫୪୭ ।

ଅର୍ଥାତ୍ ଇନ୍ଦ୍ରିୟସମୂହ ଆତ୍ମା କିପରି ହେବେ ? କରଣଗୁଡ଼ିକ କୁଠାରପରି ଜଡ଼; କୁଠାରପ୍ରଭୃତି କରଣର ଚୈତନ୍ୟ କୁହାପି ପରିଲକ୍ଷିତ ହୁଏ ନାହିଁ । ଶ୍ରୁତିମାନଙ୍କରେ ଯେଉଁ ଇନ୍ଦ୍ରିୟମାନଙ୍କର ଉକ୍ତି-ପ୍ରତ୍ୟୁକ୍ତି ବିଷୟ ବର୍ଣ୍ଣିତ ହୋଇଛି, ତାହା ସାକ୍ଷାତ୍ ଇନ୍ଦ୍ରିୟମାନଙ୍କର ନୁହେଁ । ସେହି ସେହି ଇନ୍ଦ୍ରିୟମାନଙ୍କର ଅଧିଷ୍ଠାତ୍ରୀ ଦେବତାମାନଙ୍କର ଉକ୍ତି-ପ୍ରତ୍ୟୁକ୍ତି ଇନ୍ଦ୍ରିୟମାନଙ୍କ ଉପରେ ଆରୋପ କରାଯାଇଛି । ଶ୍ରୁତିରେ ଇନ୍ଦ୍ରିୟମାନଙ୍କର ଚୈତନ୍ୟର ସାକ୍ଷାତ୍ ବର୍ଣ୍ଣନା ଦେଖାଯାଏ ନାହିଁ । ବିଷୟଜ୍ଞାନ ଥିବାରୁ ଇନ୍ଦ୍ରିୟ ଆତ୍ମା ହୋଇପାରେ—ଏହି ଯୁକ୍ତି ମଧ୍ୟ ଠିକ୍ ନୁହେଁ । କାରଣ, ଅଚେତନ ପ୍ରଦୀପରେ ପ୍ରକାଶଶକ୍ତି ଅଛି ବୋଲି ତାହା

ସଚେତନ ହୋଇ ନ ପାରେ—ଏହି ଯୁକ୍ତି ଅନୁସାରେ ଇନ୍ଦ୍ରିୟମାନଙ୍କର ବିଷୟ-ପ୍ରକାଶକତ୍ୱ ଶକ୍ତି ଥିଲେ ମଧ୍ୟ ସେମାନେ ଆତ୍ମାପରି ସଚେତନ ବା ଜ୍ଞାନବିଶିଷ୍ଟ ହୋଇ-ପାରିବେ ନାହିଁ ।

ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ—ଏହି ପଞ୍ଚବୃତ୍ତି ବିଶିଷ୍ଟ ମୁଖ୍ୟ ପ୍ରାଣ ଇନ୍ଦ୍ରିୟମାନଙ୍କର ବ୍ୟାପାରର ହେତୁ; ବାଲ୍ୟ, ଯୌବନପ୍ରଭୃତି ସକଳ ଅବସ୍ଥାରେ ଅବସ୍ଥିତ ଏହି ପ୍ରାଣ ଆତ୍ମା ହୋଇପାରେ । ମୁଁ କ୍ଷୁଧାର୍ତ୍ତ, ମୁଁ ପିପାସାତୁର—ଏହି ଅନୁଭବ ବଳରେ ପ୍ରାଣକୁ ଆତ୍ମା କୁହାଯାଏ । 'ଅନ୍ନମୟ କୋଷଠାରୁ ପୃଥକ୍‌ଭାବରେ ସ୍ଥିତ ପ୍ରାଣମୟ କୋଷ ହିଁ ଆତ୍ମା'—ଏ କଥା ଶ୍ରୁତିରେ ପ୍ରତିପାଦିତ ହୋଇଅଛି । ଅତଏବ ପ୍ରାଣହିଁ ଆତ୍ମା, ଇନ୍ଦ୍ରିୟସମୂହ ଆତ୍ମା ନୁହଁନ୍ତି ।

### ମନ-ଆତ୍ମବାଦ ।

ଇତି ନିଶ୍ଚିତ୍ୟମେତସ୍ୟ ଦୂଷୟତ୍ୟପରୋ଼ଜଡ଼ଃ ।
ଭବତ୍ୟାତ୍ମା କଥଂ ପ୍ରାଣୋ ବାୟୁରେବୈଷ ଆତ୍ମନଃ ॥
ବହିର୍ଯାତ୍ୟନ୍ତରାୟାତି ଭସ୍ତ୍ରିକା ବାୟୁବନ୍ମୁହୁଃ ।
ନ ହିତଂ ବାହିତଂ ବା ସ୍ୱମନ୍ୟଦ୍ ବା ବେଦ କିଞ୍ଚନ ॥
ଜଡ଼ସ୍ୱଭାବଶ୍ଚପଳଃ କର୍ମ୍ମଯୁକ୍ତଶ୍ଚ ସର୍ବଦା ।
ପ୍ରାଣସ୍ୟ ଭାନଂ ମନସି ସ୍ଥିତେ ସୁପ୍ତେ ନ ଦୃଶ୍ୟତେ ॥
ମନସ୍ତୁ ସର୍ବଂ ଜାନାତି ସର୍ବବେଦନକାରଣମ୍ ।
ଯତ୍ ତସ୍ମାନ୍ମନ ଏବାତ୍ମା ପ୍ରାଣସ୍ତୁନ କଦାଚନ ॥
ସଂକଳ୍ପବାନହଂ ଚିନ୍ତାବାନହଞ୍ଚ ବିକଳ୍ପବାନ୍ ।
ଇତ୍ୟାଦ୍ୟନୁଭବାଦନ୍ୟୋଽନ୍ତର ଆତ୍ମା ମନୋମୟଃ ॥
ଇତ୍ୟାଦିଶ୍ରୁତିସଦ୍‌ଭାବାଦ୍‌ଯୁକ୍ତା ମନସ ଆତ୍ମତା ।
ଇତି ନିଶ୍ଚିତ୍ୟମେତସ୍ୟ ଦୂଷୟତ୍ୟପରୋ଼ ଜଡ଼ଃ ॥

ସ: ସି: ସା:—୫୪୮—୫୫୩ ।

ଅନ୍ୟ ଜଣେ ଅଜ୍ଞ ଜଡ଼ବ୍ୟକ୍ତି ପୂର୍ବୋକ୍ତ ପ୍ରାଣାତ୍ମବାଦୀର ନିଶ୍ଚୟ ବିଷୟରେ ଦୋଷାରୋପ କରନ୍ତି । ପ୍ରାଣ କିପରି ଆତ୍ମା ହୋଇପାରେ ? ପ୍ରାଣ ଆତ୍ମାଠାରୁ ଜାତ ବାୟୁ ମାତ୍ର; ନିଜେ ଆତ୍ମା ନୁହେଁ । କମାରଶାଳର ଭସ୍ତ୍ରାଜାତ ବାୟୁ ଯେପରି ଭସ୍ତ୍ରାରୁ ବାରମ୍ବାର ବାହାରକୁ ଆସେ ଓ ଭିତରକୁ ମଧ୍ୟ ଯାଇଥାଏ, ସେହିପରି ଏହି ଶରୀରସ୍ଥ ବାୟୁ ମଧ୍ୟ ଶରୀରର ବାହାର ଓ ଭିତରକୁ ବାରମ୍ବାର ଯାତାୟାତ କରୁଥାଏ । ଏହାର ପର ଆପଣା ବା ହିତାହିତ-

ଜ୍ଞାନ କିଛି ନ ଥାଏ । ପ୍ରାଣ ଅଚେତନ, ଚଞ୍ଚଳ ଏବଂ ସର୍ବଦା କ୍ରିୟାଶୀଳ; ସୁପ୍ତବ୍ୟକ୍ତିଠାରେ ମନ କେବଳ ବର୍ତ୍ତମାନ ଥାଏ । ପ୍ରାଣର ଜ୍ଞାନଶକ୍ତି ପରିଲକ୍ଷିତ ହୁଏ ନାହିଁ (କିମ୍ବା—ସୁପ୍ତ-ବ୍ୟକ୍ତିଠାରେ ମନ ବିଦ୍ୟମାନ ଥାଏ; କିନ୍ତୁ ପ୍ରାଣର ଅନୁଭବ ହୁଏ ନାହିଁ) । ମନ କେବଳ ସକଳ ବିଷୟ-ଜ୍ଞାନ କରେ ଓ ସକଳଜ୍ଞାନର କାରଣ; ଅତଏବ ମନ କେବଳ ଆତ୍ମା । ପ୍ରାଣ କଦାପି ଆତ୍ମା ହୋଇପାରେ ନାହିଁ । "ମୁଁ ଏହିପରି ସଂକଳ୍ପ କରୁଛି, ମୁଁ ବିଷୟ ଚିନ୍ତା କରୁଛି, ମୁଁ ଏହିପରି ବିକଳ୍ପ କରୁଅଛି"—ଇତ୍ୟାଦି ଅନୁଭବଦ୍ୱାରା "ପ୍ରାଣମୟ କୋଷଠାରୁ ମନୋମୟ କୋଷ ଅନ୍ତର-ଆତ୍ମା"—ଏହି ଶ୍ରୁତିବାକ୍ୟରୁ ମଧ୍ୟ ମନକୁ ଆତ୍ମା କହିବା ଯୁକ୍ତିସଂଗତ—ଏହିପରି ଅନ୍ୟ ମନ-ଆତ୍ମବାଦୀର ଏହିପରି ସିଦ୍ଧାନ୍ତରେ ମଧ୍ୟ ଦୋଷ ଅର୍ପଣ କରିଥାଏ ।

## ବୁଦ୍ଧି-ଆତ୍ମା-ବାଦ ।

କଥଂ ମନସ ଆତ୍ମତ୍ୱଂ କରଣସ୍ୟ ଦୃଗାଦିବତ୍ ।
କର୍ତ୍ତୃପ୍ରଯୋଜ୍ୟଂ କରଣଂ ନ ସ୍ୱୟଂ ତୁ ପ୍ରବର୍ତ୍ତତେ ।
କରଣପ୍ରୟୋକ୍ତା ଯଃ କର୍ତ୍ତା ତସ୍ୟୈବାତ୍ମତ୍ୱ ମର୍ହତି ।
ଆତ୍ମା ସ୍ୱତନ୍ତ୍ରଃ ପୁରୁଷୋ ନ ପ୍ରଯୋଜ୍ୟଃ କଦାଚନ ॥
ଅହଂ କର୍ତ୍ତାଽସ୍ମ୍ୟହଂ ଭୋକ୍ତା ସୁଖୀତ୍ୟନୁଭବାଦପି ।
ବୁଦ୍ଧିରାତ୍ମା ଭବତ୍ୟେବ ବୁଦ୍ଧିଧର୍ମୋ ହ୍ୟହଙ୍କୃତିଃ ॥
ଅନ୍ୟୋଽନ୍ତର ଆତ୍ମା ବିଜ୍ଞାନମୟ ଇତି ବଦତି ନିଗମଃ ।
ମନସୋଽପି ଚ ଭିନ୍ନଂ ବିଜ୍ଞାନମୟଂ କର୍ତ୍ତୃରୂପମାତ୍ମାନମ୍ ॥
ବିଜ୍ଞାନଂ ଯଜ୍ଞଂ ତନୁତେ କର୍ମାଣି ତନୁତେଽପି ଚ ।
ଇତ୍ୟସ୍ୟ କର୍ତ୍ତୃତା ଶ୍ରୁତ୍ୟା ମୁଖତଃ ପ୍ରତିପାଦ୍ୟତେ ।
ତସ୍ମାଦ୍ ଯୁକ୍ତାତ୍ମତା ବୁଦ୍ଧେରିତି ବୌଦ୍ଧେନ ବର୍ଣ୍ଣିତମ୍ ॥

ସ: ସି: ସା: ୫୬୫—୫୬୮ ॥

ଅର୍ଥାତ୍ ଚକ୍ଷୁରାଦି ଇନ୍ଦ୍ରିୟପରି ମନ ଆତ୍ମା କିପରି ହୋଇପାରେ ? କର୍ତ୍ତାଦ୍ୱାରା କରଣ କର୍ମରେ ନିୟୋଜିତ ହୋଇଥାଏ । ନିଜେ କାର୍ଯ୍ୟକରଣରେ ସମର୍ଥ ନୁହେଁ । ଯେ କରଣର ପ୍ରୟୋଜକ ଏବଂ କର୍ତ୍ତା, ତାହାକୁ ଆତ୍ମା କହିବା ଉଚିତ । ଆତ୍ମା ସ୍ୱତନ୍ତ୍ର ଓ ନିଜେ ପୁରୁଷ ପଦବାଚ୍ୟ, ସେ କେବେହେଲେ ପ୍ରୟୋଜ୍ୟ ହୋଇ ପାରନ୍ତି ନାହିଁ । ମୁଁ କର୍ତ୍ତା, ଭୋକ୍ତା ବା ସୁଖୀ—ଏହି ଅନୁଭବରୁ ବୁଦ୍ଧିକୁ ଆତ୍ମା କୁହାଯାଇ ପାରେ । କାରଣ, ଅହଙ୍କାର ବୁଦ୍ଧିର ହିଁ ଧର୍ମ । "ମନୋମୟ କୋଷଠାରୁ ଭିନ୍ନ ଅନ୍ତରାତ୍ମା ବିଜ୍ଞାନମୟ"—ଏହି ବଚନ ଅନୁସାରେ

ମନଠାରୁ ପୃଥକ୍ କର୍ତ୍ତାରୂପ ବିଜ୍ଞାନମୟ କୋଷକୁ ଆତ୍ମା ବୋଲି ବୁଝାଯାଇ ପାରେ । "ବୁଦ୍ଧି ସମ୍ପନ୍ନ କରେ, କର୍ମସମୂହ ନିଷ୍ପାଦନ କରେ"—ଏହି ଶ୍ରୁତିବଚନ ସ୍ପଷ୍ଟଭାବରେ ବୁଦ୍ଧିର କର୍ତ୍ତୃତ୍ୱ ପ୍ରତିପାଦନ କରୁଅଛି । ସେହି ହେତୁରୁ ବୁଦ୍ଧିକୁ ଆତ୍ମା କହିବା ଯୁକ୍ତିସଙ୍ଗତ—ଏହା ବୌଦ୍ଧ ଦର୍ଶନର ସିଦ୍ଧାନ୍ତ ।

### ଅଜ୍ଞାନାତ୍ମାବାଦ ।

ପ୍ରଭାକରସ୍ତାର୍କିକଶ୍ଚ ତାବୁଭାବପ୍ୟମର୍ଷିଣୌ ।
ତନ୍ମିଶ୍ଚୟଂ ଦୂଷୟତୋ ବୁଦ୍ଧିରାତ୍ମା କଥଂ ନ୍ୱିତ ॥
ବୁଦ୍ଧେରଜ୍ଞାନକାର୍ଯ୍ୟତ୍ୱାଦ୍ ବିନାଶିତ୍ୱାତ୍ ପ୍ରତିକ୍ଷଣମ୍ ।
ବୁଦ୍ଧ୍ୟାଦୀନାଂଚ ସର୍ବେଷାମଜ୍ଞାନେଲୟଦର୍ଶନାତ୍ ॥
ଅଜ୍ଞୋଽହମିତ୍ୟନୁଭବାତ୍ସ୍ତ୍ରୀବାଳାଦିଗୋଚରାତ୍ ।
ଭବତ୍ୟଜ୍ଞାନମେବାତ୍ମା ନ ତୁ ବୁଦ୍ଧିଃ କଦାଚନ ॥
ବିଜ୍ଞାନମୟାଦନ୍ୟଂ ତ୍ୱାନନ୍ଦମୟଂ ପରଂ ତଥାତ୍ମାନମ୍ ।
ଅନ୍ୟୋଽନ୍ତର ଆତ୍ମାନନ୍ଦମୟ ଇତି ବଦତି ବେଦୋଽପି ॥
ଦୁଃଖପ୍ରତ୍ୟୟଶୂନ୍ୟତ୍ୱାଦାନନ୍ଦମୟତା ମତା ।
ଅଜ୍ଞାନେ ସକଳଂ ସୁପ୍ତୌ ବୁଦ୍ଧ୍ୟାଦି ପ୍ରବିଲୀୟତେ ।
ଦୁଃଖିନୋଽପି ସୁଷୁପ୍ତୌ ତୁ ଆନନ୍ଦମୟତା ତତଃ ।
ସୁପ୍ତୌ କିଞ୍ଚିନ୍ନ ଜାନାମୀତ୍ୟନୁଭୂତଶ୍ଚ ଦୃଶ୍ୟତେ ॥
ଯତ ଏବମତୋ ଯୁକ୍ତା ହ୍ୟଜ୍ଞାନସ୍ୟାତ୍ମତାଧ୍ରୁବମ୍ ।
ଇତି ତନ୍ମିଶ୍ଚୟଂ ଭଟ୍ଟା ଦୂଷୟନ୍ତି ସ୍ୱଯୁକ୍ତିଭିଃ ॥

ସ: ସି: ସା:—୫୫୯—୫୬୫ ॥

ପ୍ରଭାକର ପକ୍ଷାବଲମ୍ବୀ ମୀମାଂସକ ଓ ନୈୟାୟିକ ଅସହିଷ୍ଣୁତାବଶତଃ ଏହି ବୁଦ୍ଧି-ଆତ୍ମ-ବାଦରେ ଦୋଷ ଅର୍ପଣ କରନ୍ତି । ବୁଦ୍ଧି କାହିଁକି ଆତ୍ମା ନୁହେଁ—ଏ ବିଷୟରେ କୁହାଯାଇଛି ଯେ, ବୁଦ୍ଧି ପ୍ରତିକ୍ଷଣରେ ବିନାଶୀ । ବୁଦ୍ଧି ପ୍ରଭୃତି ସକଳ ବସ୍ତୁ ଅଜ୍ଞାନରେ ଲୀନ ହୁଏ ଏବଂ "ମୁଁ ଅଜ୍ଞ" ଏହି ଅନୁଭବ ସ୍ତ୍ରୀ-ବାଳକଆଦି ସମସ୍ତଙ୍କର ଥିବା ହେତୁରୁ—ଅଜ୍ଞାନ ହିଁ ଆତ୍ମା ହୋଇପାରେ । ବୁଦ୍ଧି କଦାପି ଆତ୍ମା ହୋଇ ପାରିବ ନାହିଁ । "ଅନ୍ୟ ଅନ୍ତର (ଅଭ୍ୟନ୍ତରବର୍ତ୍ତୀ) ଆତ୍ମା ଆନନ୍ଦମୟ"—ଏହି ଶ୍ରୁତିବଚନରୁ ପ୍ରମାଣିତ ହୁଏ ଯେ—ବିଜ୍ଞାନମୟ କୋଷଠାରୁ ଭିନ୍ନ ଆନନ୍ଦମୟ କୋଷ ହିଁ ପରମାତ୍ମା । ଦୁଃଖ ଜ୍ଞାନର ଅଭାବରୁ ଆନନ୍ଦମୟ—

ରୂପତା ମଧ୍ୟ କୁହାଯାଇ ପାରିବ ନାହିଁ । କାରଣ, ସୁଷୁପ୍ତି କାଳରେ ବୁଦ୍ଧି ପ୍ରଭୃତି ସକଳ ବସ୍ତୁ ଅଜ୍ଞାନରେ ଲୟପ୍ରାପ୍ତ ହୁଏ । ସେଥିପାଇଁ ସୁଷୁପ୍ତି କାଳରେ ଦୁଃଖୀ ଲୋକର ମଧ୍ୟ ଆନନ୍ଦମୟତା ଥାଏ । "ମୁଁ କିଛି ଜାଣେ ନାହିଁ" ଏହି ଜ୍ଞାନ ସୁଷୁପ୍ତି କାଳରେ ମଧ୍ୟ ଦେଖାଯାଏ । ଏହିସବୁ ଯୁକ୍ତିରୁ ଅଜ୍ଞାନ-ଆତ୍ମବାଦ ଯୁକ୍ତିସଂଗତ ବୋଲି ମାନିଲେ ମଧ୍ୟ ଭଟ୍ଟମତାବଲମ୍ବୀ ମୀମାଂସକ ସେଥିରେ ଦୋଷାରୋପ କରେ ।

ଜ୍ଞାନାଜ୍ଞାନାତ୍ମବାଦ ।

କଥମଜ୍ଞାନମେବାତ୍ମା ଜ୍ଞାନଂ ଚାପ୍ୟୁପଲଭ୍ୟତେ ।
ଜ୍ଞାନାଭାବେ କଥଂ ବଦ୍ୟୁରଜ୍ଞୋଽହମିତି ଚାଜ୍ଞତାମ୍ ॥
ଅସ୍ୱାପ୍ସଂ ସୁଖମେବାହଂ ନ ଜାନାମ୍ୟତ୍ର କିଞ୍ଚନ ॥
ଇତ୍ୟଜ୍ଞାନମପି ଜ୍ଞାନଂ ପ୍ରବୁଦ୍ଧେଷୁ ପ୍ରଦୃଶ୍ୟତେ ।
ପ୍ରଜ୍ଞାନଘନ ଏବାନନ୍ଦମୟ ଇତ୍ୟପି ଚ ଶ୍ରୁତିଃ ॥
ପ୍ରବ୍ରବୀତ୍ୟୁଭୟାତ୍ମତ୍ୱମାତ୍ମନଃ ସ୍ୱୟମେବସା ।
ଆତ୍ମଚିଚ୍ଛକ୍ତିଜଡ଼ତନୁଃ ଖଦ୍ୟୋତ ଇବ ସମ୍ମତଃ ।

ସ: ସି: ସା: ୬୨୭—୬୨୮ ।

ଜ୍ଞାନାଜ୍ଞାନ ହିଁ ଆତ୍ମା—ଏହା ଭଟ୍ଟମତାବଲମ୍ବୀ ମୀମାଂସକଙ୍କର ମତ । ଜ୍ଞାନ ମଧ୍ୟ ଉପଲବ୍‌ଧ ହେଉଥିବାରୁ କେବଳ ଅଜ୍ଞାନ ଆତ୍ମା ନୁହେଁ । ଜ୍ଞାନ ଅଭାବ ବିଷୟରେ କୁହାଯାଏ ଯେ "ମୁଁ ଅଜ୍ଞ", ଏପରି ନିଜର ଅଜ୍ଞତା ମଧ୍ୟ ମନୁଷ୍ୟ ବୁଝି ପାରୁଛି । ମୁଁ ସୁଖରେ ନିଦ୍ରାଭିଭୂତ ଥିଲି; ସେ ସମୟରେ କିଛିମାତ୍ର ଜାଣିପାରିଲି ନାହିଁ—ଏପରି ଅଜ୍ଞାନବିଷୟକ ଜ୍ଞାନ ମନୁଷ୍ୟ-ଠାରେ ପରିଦୃଷ୍ଟ ହୁଏ । "ପ୍ରଜ୍ଞାନ ଘନ ହିଁ—ଆନନ୍ଦମୟ"—ଏହି ଶ୍ରୁତିବଚନରୁ ଆତ୍ମାର ଜ୍ଞାନାଜ୍ଞାନରୂପ ଉଭୟ ରୂପତା ପ୍ରଖ୍ୟାତ ହୁଏ । ଅତଏବ ଆତ୍ମା ଖଦ୍ୟୋତ * ତୁଲ୍ୟ ଚୈତନ୍ୟ ଓ ଜଡ଼ତ୍ୱନା—ସ୍ୱଭାବ ରୂପରେ ଅଭିପ୍ରେତ । ଏହି ମାର୍ଗକୁ ଲକ୍ଷ୍ୟ କରି ବେଦାନ୍ତସାରରେ ଉକ୍ତ ଅଛି :—

"ଅଜ୍ଞାନୋପହିତଚୈତନ୍ୟମାତ୍ମେତି ବଦତି ।"

---

* ଖଦ୍ୟୋତ ଅର୍ଥାତ୍ ଜୁଳୁଜୁଳିଆ ପୋକ ଯେପରି କିଛିକ୍ଷଣ ଆଲୋକ ପ୍ରଦାନ କରେ, ପରକ୍ଷଣରେ ଆଉ ଆଲୋକ ଦେଖାଯାଏ ନାହିଁ, ସେଠାରେ ଯେପରି ଚୈତନ୍ୟ ଓ ଜଡ଼ଭାବ ପରିଲକ୍ଷିତ ହୁଏ, ସେହିପରି ଜ୍ଞାନ ଓ ଅଜ୍ଞାନ ଅନୁଭୂତ ହେବା ହେତୁରୁ ଜ୍ଞାନାଜ୍ଞାନକୁ ଆତ୍ମା କହିବା ଉଚିତ୍ ।

୦—ଶୂନ୍ୟାତ୍ମବାଦ ।

ଅଜ୍ଞାନମପି ବିଜ୍ଞାନଂ ବୁଦ୍ଧିର୍ବାପି ଚ ତଦ୍‌ଗୁଣାଃ ।
ସୁଷୁପ୍ତୌ ନୋପଲଭ୍ୟନ୍ତେ ଯତ୍‌କିଞ୍ଚିଦପି ନ୍ୟପରମ୍ ॥
ମାନାଦିଲକ୍ଷଣଂ କିଂନୁ ଶୂନ୍ୟମେବୋପଲଭ୍ୟତେ ।
ସୁଷୁପ୍ତୌ ନାନ୍ୟଦସ୍ତ୍ୟେବ ନାହମପ୍ୟାସମିତ୍ୟନୁ ॥
ସୁପ୍ତୋତ୍‌ଥିତଜନୈଃ ସର୍ବୈଃ ଶୂନ୍ୟମେବାନୁସ୍ମର୍ଯ୍ୟତେ ।
ଯତ୍ ତତଃ ଶୂନ୍ୟମେବାତ୍ମା ନ ଜ୍ଞାନାଜ୍ଞାନଲକ୍ଷଣଃ ॥

ସ. ସି. ସା. ୫୭୨-୫୭୪ ।

"ମୁଁ ଜାଣେ ନାହିଁ"—ଏହିପରି ଅଜ୍ଞାନବିଷୟକ ଜ୍ଞାନ, (ଭାବବିଷୟକ) ଜ୍ଞାନ ଓ ତାହାର ଧର୍ମ (ଜ୍ଞାନର ଧର୍ମ ପ୍ରକାଶ, ଅଜ୍ଞାନର ଧର୍ମ ଆବରଣ) ସୁଷୁପ୍ତି କାଳରେ ଉପଲବ୍ଧ ହୁଏ ନାହିଁ; ଅନ୍ୟସବୁ ପ୍ରମାଣ, ପ୍ରମେୟ ଓ ପ୍ରମିତି ପ୍ରଭୃତି ଶୂନ୍ୟ ବୋଲି ପ୍ରତୀତ ହୁଏ । କାରଣ, ସୁଷୁପ୍ତି କାଳରେ ଅନ୍ୟ କୌଣସି ବସ୍ତୁଜ୍ଞାନ ହୁଏ ନାହିଁ, ମୁଁ ଥିଲି—ଏପରି ଜ୍ଞାନର ମଧ୍ୟ ଅଭାବ ସୁପ୍ତିରୁ ଉତ୍‌ଥିତ ହେବା ପରେ ସମସ୍ତେ ଜାଣନ୍ତି । ଅତଏବ ଶୂନ୍ୟ ହିଁ ଆତ୍ମା । ଜ୍ଞାନାଜ୍ଞାନ ବା ଅଜ୍ଞାନୋପହିତ ଚୈତନ୍ୟ ଆତ୍ମା ହୋଇ ପାରେ ନାହିଁ ।

ବେଦେନାପ୍ୟସଦେବେଦମଗ୍ର ଆସୀଦିତି ସ୍ଫୁଟମ୍ ।
ନିରୂପ୍ୟତେ ଯତସ୍ତସ୍ମାତ୍ ଶୂନ୍ୟସ୍ୟୈବାତ୍ମତାମତା ॥
ଅସନ୍ନେବ ଘଟଃ ପୂର୍ବଂ ଜାୟମାନଃ ପ୍ରଦୃଶ୍ୟତେ ।
ନ ହି କୁମ୍ଭଃ ପୁରୈବାନ୍ତଃ ସ୍ଥିତ୍ୱୋଦେତି ବହିର୍ମୁଖଃ ।
ଯତ୍‌ତସ୍ମାଦସତଃ ସର୍ବଂ ସଦିଦଂ ସମଜାୟତ ।
ତତଃ ସର୍ବାତ୍ମନା ଶୂନ୍ୟସ୍ୟୈବାତ୍ମତ୍ୱଂ ସମର୍ହିତ ॥

ସ: ସି: ସ: ୫୭୫-୫୭୭ ।

ଅର୍ଥାତ୍ କେବଳ ଯୁକ୍ତିଦ୍ୱାରା ଶୂନ୍ୟର ଆତ୍ମତ୍ୱ ନିରୂପିତ ହେଉନାହିଁ, ଅଧିକନ୍ତୁ ଶ୍ରୁତିବଚନରୁ ମଧ୍ୟ ଶୂନ୍ୟର ଆତ୍ମତ୍ୱ ବିଷୟରେ ପ୍ରମାଣ ମିଳେ—"ଏହି ଜଗତ୍ ଉତ୍ପନ୍ନ ହେବା ପୂର୍ବରୁ ଅସତ୍ ବା ଶୂନ୍ୟ ଥିଲା ।" ଏହି ବେଦବାକ୍ୟଦ୍ୱାରା ଶୂନ୍ୟର ଆତ୍ମତ୍ୱ ବିଶଦଭାବରେ ନିରୂପିତ ହେଉଅଛି । ଅତଏବ ଶୂନ୍ୟକୁ ହିଁ ଆତ୍ମା କହିବା ଉଚିତ । ଏପରି ଶଙ୍କା ହୋଇପାରେ ଯେ, ପୂର୍ବରୁ ଘଟ ନ ଥିଲା—ବର୍ତ୍ତମାନ ଉତ୍ପନ୍ନ ହେବା ଦୃଷ୍ଟିଗୋଚର ହୁଏ;

କିନ୍ତୁ ଉତ୍ପତ୍ତି ପୂର୍ବରୁ ଘଟ ମୃତ୍ତିକାର ଅଭ୍ୟନ୍ତରରେ ଥିଲା; କିନ୍ତୁ ପରେ ବାହାରେ ପ୍ରକାଶିତ ହେଲା—ଏ ମତ ଠିକ୍ ନୁହେଁ । କାରଣ ଘଟ ପ୍ରଥମେ ମୃତ୍ତିକା ଭିତରେ ଥାଇ ପରେ ପ୍ରକାଶିତ ହୁଏ ନାହିଁ, ଶୂନ୍ୟରୁ ହିଁ ଏହି ସମସ୍ତ ପରିଦୃଶ୍ୟମାନ ଘଟପଟାଦି ସକଳବସ୍ତୁ ଉତ୍ପନ୍ନ ହୁଏ ; ଅତଏବ ସର୍ବତୋଭାବରେ ଶୂନ୍ୟ ହିଁ ଆତ୍ମା ହୋଇ ପାରେ; କିନ୍ତୁ ଏହି ଶୂନ୍ୟ-ଆତ୍ମାବାଦ ମଧ୍ୟ ଠିକ୍ ନୁହେଁ—

୦—ପୁତ୍ରଠାରୁ ଶୂନ୍ୟପର୍ଯ୍ୟନ୍ତ କେହି ଆତ୍ମା ନୁହେଁ—

ଇତ୍ୟେବଂ ପଣ୍ଡିତଂମନ୍ୟୈଃ ପରସ୍ପରବରୋଧିଭିଃ ।
ତତ୍ତନ୍ମତାନୁରୂପାଲ୍ପଶ୍ରୁତଯୁକ୍ତ୍ୟନୁଭୂତଭିଃ ॥
ନିର୍ଣ୍ଣୀତମତଜାତାନି ଖଣ୍ଡିତାନ୍ୟେବ ପଣ୍ଡିତୈଃ ।
ଶ୍ରୁତଭିଶ୍ଚାପ୍ୟନୁଭବୈର୍ବାଧକୈଃ ପ୍ରତବାଦନାମ୍ ॥
ଯତସ୍ତସ୍ମାତ୍ ତୁ ପୁତ୍ରାଦେଃ ଶୂନ୍ୟାନ୍ତସ୍ୟ ବଶେଷତଃ ।
ସୁସାଧିତମନାତ୍ମତ୍ୱଂ ଶ୍ରୁତଯୁକ୍ତ୍ୟନୁଭୂତଭିଃ ॥

ସ: ସି: ସା: ୫୭୮-୫୮୦ ।

ଏହି ପ୍ରକାରେ ପରସ୍ପର କଳହକାରୀ ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ସେହି ସେହି ମତର ପୋଷକ ଅଳ୍ପକିଛି ଶ୍ରୁତିବାକ୍ୟ, ଯୁକ୍ତି ଓ ଅନୁଭବଦ୍ୱାରା ଯେଉଁସବୁ ନିଜ ନିଜ ମତ ନିର୍ଣ୍ଣୀତ କରିଅଛନ୍ତି, ପଣ୍ଡିତମାନେ ପ୍ରବଳତର ଶ୍ରୁତିବଚନ, ଯୁକ୍ତି, ଅନୁଭବ ଓ ବାଧକତର୍କବଳରେ ପ୍ରତିବାଦୀମାନଙ୍କର ସେହି ସମସ୍ତ ମତ ଖଣ୍ଡନ କରିଅଛନ୍ତି; ଏହି କାରଣରୁ ଶ୍ରୁତିବଚନ, ଯୁକ୍ତି ଓ ଅନୁଭବବଳରେ ପୂର୍ବୋକ୍ତ ପୁତ୍ରାତ୍ମା-ମତଠାରୁ ଆରମ୍ଭକରି ଶୂନ୍ୟବାଦ ପର୍ଯ୍ୟନ୍ତ ପଦାର୍ଥର ଅନାତ୍ମତ୍ୱ (ଆତ୍ମାଭାବ ଅର୍ଥ) ବଶେଷରୂପରେ ସାଧିତ ହୋଇଅଛି ।

"ନହି ପ୍ରମାଣାନ୍ତରବାଧିତସ୍ୟ ଯାଥାର୍ଥ୍ୟମଙ୍ଗୀକ୍ରିୟତେ ମହଦ୍ଭିଃ ।
ପୁତ୍ରାଦଶୂନ୍ୟାନ୍ତମନାତ୍ମତତ୍ତ୍ୱମିତ୍ୟେବ ବିସ୍ପଷ୍ଟମତଃ ସୁଜାତମ୍ ॥

ସ: ସି: ସା: ୫୮୧ ।

ମହାପୁରୁଷମାନେ ଅନ୍ୟ ପ୍ରମାଣଦ୍ୱାରା ବାଧିତ ବସ୍ତୁର ସତ୍ୟତା ସ୍ୱୀକାର କରନ୍ତି ନାହିଁ । ଅତଏବ ପୁତ୍ରଠାରୁ ଆରମ୍ଭକରି ଶୂନ୍ୟ ପର୍ଯ୍ୟନ୍ତ ସକଳ ବସ୍ତୁର ଅନାତ୍ମତ୍ୱ ସ୍ପଷ୍ଟରୂପରେ ନିର୍ଣ୍ଣୀତ ହେଲା ।

"ଏତେଷାଂ ପୁତ୍ରାଦୀନାଂ ଶୂନ୍ୟପର୍ଯ୍ୟନ୍ତାନାଂ ଅନାତ୍ମତ୍ୱମୁଚ୍ୟତେ ।"

ବେ: ସାର: ୭୨ ।

ଏହିସବୁ ପଦାର୍ଥ—ପୁତ୍ର, ଶରୀର, ଇନ୍ଦ୍ରିୟ, ପ୍ରାଣ, ମନ, ବୁଦ୍ଧି, ଅଜ୍ଞାନ, ଅଜ୍ଞାନ-ଉପହିତଚୈତନ୍ୟ ଓ ଶୂନ୍ୟ—ଏମାନେ କେହି ଆତ୍ମା ନୁହଁନ୍ତି । ଆହୁରି ମଧ୍ୟ—

"ଅନ୍ୟ ପ୍ରତ୍ୟଗସ୍ଥୂଲୋଽଚକ୍ଷୁରପ୍ରାଣୋଽମନାଽକର୍ତ୍ତା ଚୈତନ୍ୟଂ ଚିନ୍ମାତ୍ରଂ ସତ୍"—ଇତ୍ୟାଦି ପ୍ରବଳଶ୍ରୁତିବିରୋଧାତ୍ ଅସ୍ୟ ପୁତ୍ରାଦିଶୂନ୍ୟପର୍ଯ୍ୟନ୍ତସ୍ୟ ଜଡ଼ସ୍ୟ ଚୈତନ୍ୟଭାସ୍ୟତ୍ୱେନ ଘଟାଦିବଦନିତ୍ୟତ୍ୱାତ୍ ଅହଂ ବ୍ରହ୍ମେତିବିଦ୍ୱ-ଦନୁଭବପ୍ରାବଲ୍ୟାଚ ତତ୍ତଚ୍ଛ୍ରୁତିଯୁକ୍ତ୍ୟନୁଭବାଭାସାନାଂ ବାଧିତତ୍ୱାଦପି ପୁତ୍ରାଦି ଶୂନ୍ୟପର୍ଯ୍ୟନ୍ତମଖିଳମନାତ୍ମୈବ । ବେ: ସା: ର:—୬୦ ।

ଆହୁରି ମଧ୍ୟ ଶ୍ରୁତିବଚନ ମିଳେ ଯେ, ପ୍ରତ୍ୟଗାତ୍ମା ସ୍ଥୂଳ ନୁହଁନ୍ତି, ଚକ୍ଷୁରାଦି ଇନ୍ଦ୍ରିୟ ନୁହଁନ୍ତି, ପ୍ରାଣ ନୁହଁନ୍ତି, ମନ ବା କର୍ତ୍ତା ନୁହେଁ; ସେ କେବଳ ଚୈତନ୍ୟମାତ୍ର ସତ୍ସ୍ୱରୂପ । ଏହି ସବୁ ପ୍ରବଳ ଶ୍ରୁତିବାକ୍ୟ ପୂର୍ବ ଶ୍ରୁତିବାକ୍ୟର ବିରୋଧୀ । ବିଶେଷରେ ପୁତ୍ରାଦିଠାରୁ ଶୂନ୍ୟ ପର୍ଯ୍ୟନ୍ତ ସକଳ ପଦାର୍ଥ ଜଡ଼ ଓ ସେମାନେ ଚୈତନ୍ୟଦ୍ୱାରା ପ୍ରକାଶିତ ହେଲା ଭଳି ଦେଖାଯାନ୍ତି କିନ୍ତୁ ଘଟାଦିପରି ଅନିତ୍ୟ; ଦ୍ୱିତୀୟତଃ, "ମୁଁ ବ୍ରହ୍ମ" ରୂପକ ଜ୍ଞାନୀମାନଙ୍କର ପ୍ରବଳ ଅନୁଭବ ଓ ବିଶ୍ୱାସହେତୁରୁ ପୂର୍ବୋକ୍ତ ଶ୍ରୁତି, ଯୁକ୍ତି, ଅନୁଭବ ଓ ଆଭାସ—ଏହି ସକଳଦ୍ୱାରା ବାଧିତ ହେବାରୁ ଏହି ପୁତ୍ରାଦିଠାରୁ ଶୂନ୍ୟ ପର୍ଯ୍ୟନ୍ତ ସକଳ ପଦାର୍ଥ ଅନାତ୍ମା । ଅର୍ଥାତ୍ ଏମାନେ କେହି ଆତ୍ମା ନୁହଁନ୍ତି * ଏହା ସ୍ପଷ୍ଟରୂପରେ ଅନୁଭୂତ ହୁଏ । ଏ ବିଷୟରେ ଅଧିକ ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ ।

୦—ନିତ୍ୟସ୍ୱରୂପ ଆତ୍ମାର ନିରୂପଣ—

ଅତସ୍ତତ୍ ତଦ୍‌ଭାସକଂ ନିତ୍ୟଶୁଦ୍ଧବୁଦ୍ଧମୁକ୍ତସତ୍ୟସ୍ୱଭାବଂ ପ୍ରତ୍ୟକ୍-ଚୈତନ୍ୟମେବାତ୍ମତତ୍ତ୍ୱମିତି ବେଦାନ୍ତବିଦନୁଭବଃ ଏବମଧ୍ୟାରୋପଃ ।

ବେଦାନ୍ତସାର—୭୯ ।

* ଉପରିବର୍ଣ୍ଣିତ ପୁତ୍ରାଦିଠାରୁ ଶୂନ୍ୟପର୍ଯ୍ୟନ୍ତ ବସ୍ତୁମାନଙ୍କର ଶ୍ରୁତିବଚନ ଅନୁସାରେ ଯେପରି ଅନାତ୍ମଭାବ ପ୍ରଦର୍ଶିତ ହୋଇଅଛି, ସେହିପରି ଗୌତମବୁଦ୍ଧ ନିଜକୃତ ଗ୍ରନ୍ଥରେ, ଅର୍ଥାତ୍ ବୌଦ୍ଧ ମତ ଅନୁସାରେ ପଞ୍ଚଭୂତାତ୍ମାକୁ ଅଶାଶ୍ୱତରୂପରେ ନିର୍ଦ୍ଦେଶ କରିଅଛନ୍ତି । ସେହି ପଞ୍ଚଭୂତାତ୍ମାର ନାମ ପଞ୍ଚସ୍କନ୍ଧ (ପାଲି-ଖନ୍ଧ) । ବୌଦ୍ଧ ଦର୍ଶନ କହେ ଯେ, ପଞ୍ଚସ୍କନ୍ଧର ଉଦୟ ଓ ବ୍ୟୟ ଅଛି, ଉତ୍ପତ୍ତି ଓ ପ୍ରଳୟ ଅଛି—"ଖନ୍ଧାନାଂ ଉଦୟ-ବ୍ୟୟଂ" (ଧର୍ମପଦ), ଅତଏବ ଏମାନଙ୍କ ସମଷ୍ଟି ଭୂତାତ୍ମାଽନାତ୍ମମ୍ । ପଞ୍ଚସ୍କନ୍ଧ—ରୂପ ସ୍କନ୍ଧ, ବେଦନାସ୍କନ୍ଧ, ସଂଜ୍ଞାସ୍କନ୍ଧ, ସଂସ୍କାରସ୍କନ୍ଧ ଓ ବିଜ୍ଞାନସ୍କନ୍ଧ ।

ଅତଏବ ପୂର୍ବୋକ୍ତଠାରୁ ଶୂନ୍ୟ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରକାଶକ; ଅଥଚ ନିତ୍ୟ, ଶୁଦ୍ଧ, ବୁଦ୍ଧ (ବୋଧସ୍ୱରୂପ), ମୁକ୍ତ ଓ ସତ୍ୟସ୍ୱଭାବ ଯେଉଁ ପ୍ରତ୍ୟକ୍-ଚୈତନ୍ୟ ସେହି କେବଳ "ଆତ୍ମା"—ଏହା ବେଦାନ୍ତବିତ୍‌ମାନଙ୍କର ଅନୁଭବସିଦ୍ଧ । ଏହି ପ୍ରକାର ବସ୍ତୁରେ ଅବସ୍ତୁର ଅର୍ଥାତ୍ ଜଡ଼ ପ୍ରପଞ୍ଚର ଆରୋପକୁ ଅଧ୍ୟାରୋପ କହନ୍ତି ।

ପୁନଶ୍ଚ—

**ବସ୍ତୁନ୍ୟବସ୍ତ୍ୱାରୋପୋ ଯଃ ସୋଽଧ୍ୟାରୋପ ଇତୀର୍ଯ୍ୟତେ ।**
**ଅସର୍ପଭୂତେ ରଜ୍ଜ୍ୱାଦୌ ସର୍ପତ୍ୱାରୋପଣଂ ଯଥା ॥**
**ବସ୍ତୁ ତାବତ୍ ପରଂବ୍ରହ୍ମ ସତ୍ୟଜ୍ଞାନାଦିଲକ୍ଷଣମ୍ ।**
**ଇଦମାରୋପିତଂ ଯତ୍ର ଭାତି ଖେ ନୀଳତାଦିବତ୍ ॥**

ସ: ସି: ସା: ୨୯୯-୩୦୦ ।

ପ୍ରକୃତବସ୍ତୁରେ ମିଥ୍ୟାଭୂତ ବସ୍ତୁର ଆରୋପକୁ ପଣ୍ଡିତମାନେ ଅଧ୍ୟାରୋପ କହନ୍ତି । ପ୍ରକୃତରେ ରଜ୍ଜୁ ସର୍ପ ନୁହେଁ; କିନ୍ତୁ ଭ୍ରମବଶତଃ ଲୋକେ ସେଥିରେ ସର୍ପତ୍ୱର ଆରୋପ କରିଥାନ୍ତି । ପରଂବ୍ରହ୍ମ ପ୍ରକୃତବସ୍ତୁ; ସତ୍ୟ, ଜ୍ଞାନ ଓ ଆନନ୍ଦ ତାହାଙ୍କର ସ୍ୱରୂପଲକ୍ଷଣ । ଆକାଶର ବର୍ଣ୍ଣ ଯେପରି ନୀଳତ୍ୱଭାବରେ କଳ୍ପିତ, ସେହିପରି ବ୍ରହ୍ମଙ୍କଠାରେ ଆରୋପିତ ଜଗତ୍ ପ୍ରକାଶିତ ହୁଏ ।

୦—ଅପବାଦ ।

**"ଅପବାଦୋ ନାମ ରଜ୍ଜୁବିବର୍ତ୍ତସ୍ୟ ସର୍ପସ୍ୟ ରଜ୍ଜୁମାତ୍ରତ୍ୱବତ୍ ।**
**ବସ୍ତୁବିବର୍ତ୍ତସ୍ୟ ଅବସ୍ତୁନୋଽଜ୍ଞାନାଦେଃ ପ୍ରପଞ୍ଚସ୍ୟ ବସ୍ତୁମାତ୍ରତ୍ୱମ୍ ॥**

ବେଦାନ୍ତସାର-୬୨ ।

ଅପବାଦର ବ୍ୟାଖ୍ୟା—ଯେପରି ରଜ୍ଜୁବିବର୍ତ୍ତ ସର୍ପରେ ରଜ୍ଜୁଜ୍ଞାନମାତ୍ର ରହେ, ଅର୍ଥାତ୍ ପ୍ରଥମେ ରଜ୍ଜୁରେ ଭ୍ରମବଶତଃ ସର୍ପଜ୍ଞାନ ହୁଏ; କିନ୍ତୁ ପରେ ଭ୍ରମଜ୍ଞାନ ନଷ୍ଟ ହେଲେ କେବଳ ରଜ୍ଜୁଜ୍ଞାନ ମାତ୍ର ରହେ, ସେହିପରି ନିତ୍ୟ, ଶୁଦ୍ଧ ଓ ସଚ୍ଚିଦାନନ୍ଦ ବ୍ରହ୍ମବସ୍ତୁରେ ଅବସ୍ତୁରୂପ ଅଜ୍ଞାନାଦି ଜଡ଼ପ୍ରପଞ୍ଚର ଭ୍ରମଜ୍ଞାନ ହୋଇ ପଛେ ତାହାର ବିନାଶ ହେଲେ କେବଳ ବ୍ରହ୍ମମାତ୍ରବସ୍ତୁ ଅବଶିଷ୍ଟ ରହନ୍ତି ।

୦—ଅନ୍ୱୟବ୍ୟତିରେକଦ୍ୱାରା ଆତ୍ମାର ନିର୍ଣ୍ଣୟ—

ପଞ୍ଚଦଶୀକାର ଅନ୍ୱୟବ୍ୟତିରେକଦ୍ୱାରା ପରମାତ୍ମାଙ୍କର ଅବସ୍ଥିତି ବିଷୟ ନିମ୍ନଲିଖିତଭାବେ ବର୍ଣ୍ଣନା କରିଛନ୍ତି—

"ଅନ୍ୱୟବ୍ୟତିରେକାଭ୍ୟାଂ ପଞ୍ଚକୋଷବିବେକତଃ ।
ସ୍ୱାତ୍ମାନଂ ତତ ଉଦ୍ଧୃତ୍ୟ ପରଂବ୍ରହ୍ମ ପ୍ରପଦ୍ୟତେ ॥
ଅଭାନେ ସ୍ଥୂଳଦେହସ୍ୟ ସ୍ୱପ୍ନେ ଯତ୍ ଭାନମାତ୍ମନଃ ।
ସୋଽନ୍ୱୟୋ ବ୍ୟତିରେକସ୍ତଦ୍ ଭାନେଽନ୍ୟାନବଭାସନମ୍ ॥
ଲିଙ୍ଗାଭାନେ ସୁଷୁପ୍ତୌ ସ୍ୟାଦାତ୍ମନୋ ଭାନମନ୍ୱୟଃ ।
ବ୍ୟତିରେକସ୍ତୁ ତଦ୍‌ଭାନେ ଲିଙ୍ଗସ୍ୟାଭାନମୁଚ୍ୟତେ ।
ତଦ୍‌ବିବେକାଦ୍ ବିବିକ୍ତାଃସ୍ୟୁଃ କୋଷାଃ ପ୍ରାଣମନୋଧିୟଃ ।
ତେ ହି ତତ୍ର ଗୁଣାବସ୍ଥାଭେଦମାତ୍ରାତ୍ ପୃଥକ୍‌କୃତାଃ ॥"

ପଞ୍ଚଦଶୀ—୧ । ୩୭-୪୦ ।

ବକ୍ଷ୍ୟମାଣ ପ୍ରକାରରେ ଅନ୍ୱୟ ଓ ବ୍ୟତିରେକଦ୍ୱାରା ଅନ୍ନମୟାଦି ପଞ୍ଚକୋଷର ବିଚାର କରି ବିବେଚନାସହକାରେ ଆତ୍ମାକୁ ତାହାଠାରୁ ପୃଥକ କରି ନିତ୍ୟଜ୍ଞାନ ଆନନ୍ଦସ୍ୱରୂପ ଆତ୍ମାର ସ୍ୱରୂପକୁ ପରଂବ୍ରହ୍ମଙ୍କ ସହିତ ଐକ୍ୟ ପ୍ରତିପାଦିତ କରାଯାଉଛି । ଅନ୍ୱୟବ୍ୟତିରେକଦ୍ୱାରା ପଞ୍ଚକୋଷର ସ୍ୱରୂପ ନିମ୍ନଲିଖିତଭାବେ ଅବଗତ ହୁଏ—ସ୍ୱପ୍ନାବସ୍ଥାରେ ଅନ୍ନମୟକୋଷରୂପୀ ସ୍ଥୂଳଶରୀରବିଷୟକ ଜ୍ଞାନର ଅଭାବ ଓ ତାତ୍‌କାଳୀନ ସ୍ୱପ୍ନସାକ୍ଷୀ ରୂପରେ ପ୍ରକାଶମାନ ଆତ୍ମାର ଯେଉଁ ବିଦ୍ୟମାନତା, ତାହାକୁ ଏ ସ୍ଥଳରେ ଅନ୍ୱୟ କୁହାଯାଏ ଏବଂ ଆତ୍ମାର ବିଦ୍ୟମାନତା ଥିଲେ ମଧ୍ୟ ସ୍ଥୂଳଦେହବିଷୟକ ଜ୍ଞାନର ଯେଉଁ ଅଭାବ, ତାହାର ନାମ ବ୍ୟତିରେକ । ଏହି ଅନ୍ୱୟ ଓ ବ୍ୟତିରେକଦ୍ୱାରା ସ୍ପଷ୍ଟ ବୋଧ ହୁଏ ଯେ ସ୍ଥୂଳଶରୀର ଅନ୍ନମୟ କୋଷଠାରୁ ଆତ୍ମା ଭିନ୍ନ ଅଟନ୍ତି । ଏହିପରି ସ୍ଥୂଳ ଦେହର ଅନାତ୍ମତ୍ୱ ଅବଗତ କରିବା ପରେ ଲିଙ୍ଗ ଶରୀରର ଅନାତ୍ମତ୍ୱ ଏହିପରି ପ୍ରତିପନ୍ନ ହୁଏ—ସୁଷୁପ୍ତ୍ୟବସ୍ଥାରେ ଲିଙ୍ଗଶରୀରବିଷୟକ ଜ୍ଞାନର ଅଭାବ ହେଲେ ମଧ୍ୟ ସେହି ଅବସ୍ଥାରେ ସାକ୍ଷୀରୂପରେ ପ୍ରକାଶମାନ ଆତ୍ମାର ଯେଉଁ ବିଦ୍ୟମାନତା, ତାହାରି ନାମ ଅନ୍ୱୟ ଏବଂ ଆତ୍ମାର ବିଦ୍ୟମାନତା ସତ୍ତ୍ୱେ ଲିଙ୍ଗଶରୀରବିଷୟକ ଜ୍ଞାନର ଅଭାବକୁ ବ୍ୟତିରେକ କୁହାଯାଏ । ଲିଙ୍ଗଶରୀରର ବିଚାର ସହିତ ତାହାଙ୍କ ଅବୟବରୂପୀ ପ୍ରାଣମୟ, ମନୋମୟ ଓ ବିଜ୍ଞାନମୟ କୋଷତ୍ରୟର ବିଚାର ମଧ୍ୟ ନିଷ୍ପନ୍ନ ହେଲା । କାରଣ, ଉକ୍ତ କୋଷତ୍ରୟ ଲିଙ୍ଗଶରୀରରୁ ଭିନ୍ନ ନୁହେଁ; କେବଳ ନାମତଃ ପୃଥକ୍ ।"

ସୁଷୁପ୍ତ୍ୟଭାନେ ଭାନନ୍ତୁ ସମାଧାବାତ୍ମନୋଽନ୍ୱୟଃ ।
ବ୍ୟତିରେକସ୍ତ୍ୱାତ୍ମଭାନେ ସୁଷୁପ୍ତ୍ୟନବଭାସନମ୍ ॥

ଯଥା ମୁଞ୍ଜାଦଷୀକୈବମାତ୍ମା ଯୁକ୍ତ୍ୟା ସମୁଦ୍ଧୃତଃ ।
ଶରୀରତ୍ରିତୟାଦ୍ଧୀରୈଃ ପରଂ ବ୍ରହ୍ମୈବ ଜାୟତେ ॥

ପଞ୍ଚଦଶୀ ୧ । ୪୧—୪୨ ।

ଆନନ୍ଦମୟ କୋଷରୂପକାରଣଶରୀରର ବିବେଚନା ନିମନ୍ତେ ଉପାୟ ନିର୍ଦ୍ଧାରଣ ଏହି ପ୍ରକାରେ—ସମାଧି କାଳରେ ଆନନ୍ଦମୟ କୋଷ କାରଣଦେହରୂପୀ ଅଜ୍ଞାନ-ବିଷୟକ ଜ୍ଞାନର ଅଭାବ ହେଲେ ମଧ୍ୟ ସେହି ଅବସ୍ଥାରେ ସାକ୍ଷୀସ୍ୱରୂପ ପ୍ରକାଶମାନ ଆତ୍ମାର ବିଦ୍ୟମାନତାକୁ ଅନ୍ୱୟ କୁହାଯାଏ ଏବଂ ଆତ୍ମାର ବିଦ୍ୟମାନତା ସତ୍ତ୍ୱେ କାରଣଶରୀର-ବିଷୟକ ଜ୍ଞାନର ଅଭାବକୁ ବ୍ୟତିରେକ କହନ୍ତି । ଏହି ପ୍ରକାରରେ ଅନ୍ୱୟ ଓ ବ୍ୟତିରେକଦ୍ୱାରା ପଞ୍ଚକୋଷରୁ ପୃଥଗ୍‌ଭୂତ ଆତ୍ମାର ପରଂବ୍ରହ୍ମପ୍ରାପ୍ତି ନିରୂପଣ ଏହିପରି କରାଯାଏ—ଯେଉଁପରି ମୁଞ୍ଜନାମକ ତୃଣବୃକ୍ଷର ଗର୍ଭରୁ ଜାତ ନୂତନ କୋମଳ ପତ୍ରକୁ ତାହାର ଆବରକ ସ୍ଥୂଳପତ୍ରରୁ ପୃଥକ୍ କରି ଉଦ୍ଧୃତ କରାଯାଏ, ସେହିପରି ଅନ୍ୱୟ ଓ ବ୍ୟତିରେକଦ୍ୱାରା ଆତ୍ମାକୁ ତାହାର ଆବରକ ପଞ୍ଚକୋଷରୁ ଉଦ୍ଧୃତ କଲେ ପ୍ରକୃତ ଆତ୍ମାର ସ୍ୱରୂପର ଅଦ୍ୱୈଲକ୍ଷଣ୍ୟ ହେତୁରୁ ସତ୍ୟ-ଜ୍ଞାନ-ଆନନ୍ଦସ୍ୱରୂପ ପରଂବ୍ରହ୍ମଙ୍କ ପ୍ରାପ୍ତି ହୁଏ । ଏହି ଲକ୍ଷ୍ୟ ନେଇ ଶଙ୍କର କହିଛନ୍ତି—

ବପୁସ୍ତୁଷାଦିଭିଃ କୋଷୈର୍ଯୁକ୍ତଂ ଯୁକ୍ତ୍ୟବଘାତତଃ ।
ଆତ୍ମାନମନ୍ତରଂ ଶୁଦ୍ଧଂ ବିବିଚ୍ୟାତ୍ତଣ୍ଡୁଲଂ ଯଥା ॥

ଆତ୍ମବୋଧ—୧୫ ।

ଅବଘାତ ପ୍ରଣାଳୀଦ୍ୱାରା ତୁଷାବୃତ ଧାନ୍ୟକୁ ତୁଷପରି ମୁକ୍ତ କରି ତହିଁରୁ ଯେପରି ବିଶୁଦ୍ଧ ତଣ୍ଡୁଳ ବାହାର କରାଯାଏ, ସେହିପରି ଯୁକ୍ତିରୂପ ଅବଘାତଦ୍ୱାରା ଦେହାଦିକୋଷକୁ ନିର୍ମଳ କରି ଆତ୍ମାକୁ ବିଶୁଦ୍ଧ କରିବ, ଅର୍ଥାତ୍ ତହିଁରୁ ଆତ୍ମାକୁ ନିର୍ଗତ କରି ତାହାର ତତ୍ତ୍ୱ ଅବଗତ ହେବ ।

ଏହି ଆତ୍ମଜ୍ଞାନ ବିଷୟରେ ଉପନିଷଦ୍‌ବର୍ଣ୍ଣିତ ଇନ୍ଦ୍ରଙ୍କର ଏକବର୍ଷରପରିମିତ ବ୍ରହ୍ମଚର୍ଯ୍ୟ ପାଳନାନ୍ତେ ବ୍ରହ୍ମା ତାହାଙ୍କୁ ନିମ୍ନଲିଖିତଭାବରେ ଆତ୍ମଜ୍ଞାନ ପ୍ରଦାନ କରିଥିଲେ—

ମଘବନ୍ ମର୍ତ୍ତ୍ୟଂ ବା ଇଦମ୍ ଶରୀରମାତ୍ତଂ ମୃତ୍ୟୁନା ତଦସ୍ୟାମୃତସ୍ୟା । ଶରୀରସ୍ୟାତ୍ମନୋଧିଷ୍ଠାନମାତ୍ତୋ ବୈ ସଶରୀରଃ ପ୍ରିୟାପ୍ରିୟାଭ୍ୟାଂ ନ ବୈ ସଶରୀରସ୍ୟ ସତଃ ପ୍ରିୟାପ୍ରିୟୟୋରପହତିରସ୍ତ୍ୟଶରୀରଂ ବାବ ସନ୍ତଂ ନ ପ୍ରିୟାପ୍ରିୟେ ସ୍ପୃଶତଃ ॥   ଛାନ୍ଦୋଗ୍ୟ, ଅ ୮ । ଖ ୧୨ । ୧ ।

ଅର୍ଥାତ୍—ହେ ବତ୍ସ ଇନ୍ଦ୍ର ! ଆମ୍ଭମାନଙ୍କର ଏହି ଜଡ଼ ଦେହ ମରଣଶୀଳ; ମୃତ୍ୟୁ ଯେପରି ଅନବରତ ଏହାକୁ ଗ୍ରାସ କରିବା ନିମନ୍ତେ ତତ୍ପର; କିନ୍ତୁ ମୁଁ ଯେଉଁ ଆତ୍ମାର କଥା କହୁଅଛି, ସେ ଅମର; ମୃତ୍ୟୁ ତାହାକୁ ସ୍ପର୍ଶ ମଧ୍ୟ କରିପାରେ ନାହିଁ । ଆମ୍ଭମାନଙ୍କର ଏହି ଜଡ଼ ଦେହହିଁ ସେହି ଅଶରୀରୀ ଅମର ଆତ୍ମାର ଭୋଗଭୂମି । ଅଜ୍ଞାନବଶତଃ ଯେଉଁ ଅଜ୍ଞଲୋକ ଏହି ନଶ୍ୱର ଶରୀରକୁ କେବଳ ଆତ୍ମା ବୋଲି ମନେ କରେ, ସେ ସମ୍ପୂର୍ଣ୍ଣରୂପେ ସୁଖ-ଦୁଃଖର ଅଧୀନ ହୁଏ । କାରଣ, ନିଜ ଶରୀରବିଷୟରେ "ମୋର" ବୋଲି ଯେ ଅଭିମାନ କରେ, ଅଥବା ଏହି ଜଡ଼ ପିଣ୍ଡକୁହିଁ ଯେ "ମୁଁ" ବୋଲି ମନେ କରେ, ତାହାର କେବେ ହେଲେ ସୁଖ-ଦୁଃଖର ଅବସାନ ହୁଏ ନାହିଁ; କିନ୍ତୁ ଯେଉଁଲୋକ ଏହି ଶରୀରକୁ ଗୋଟିଏ ତୁଚ୍ଛ ଜଡ଼ପିଣ୍ଡ ବୋଲି ଜ୍ଞାନ କରେ ବା ଯାହା ବିଷୟରେ କୌଣସି ପ୍ରକାର ମିଥ୍ୟା ଅଭିମାନ ନାହିଁ, ତାଠାରେ ସୁଖ-ଦୁଃଖର ସ୍ପର୍ଶ ମଧ୍ୟ ହୋଇ ପାରେ ନାହିଁ ।

ଅଶରୀରୋ ବାୟୁରଭ୍ରଂ ବିଦ୍ୟୁତ୍ ସ୍ତନୟିତ୍ନୁରଶରୀରାଣ୍ୟେତାନି ତଦ୍ୟଥୈତାନ୍ୟମୁଷ୍ମାଦାକାଶାତ୍ ସମୁତ୍ଥାୟ ପରଂଜ୍ୟୋତିରୁପସମ୍ପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟନ୍ତେ ॥ ଛାନ୍ଦୋଗ୍ୟ ଅ ୮। ଖ ୧୨।୨ ।

ବାୟୁର କୌଣସି ଆକାର ନାହିଁ; ମେଘ, ମେଘଗର୍ଜନ ଓ ବିଦ୍ୟୁତ୍ ପ୍ରବାହର ମଧ୍ୟ କୌଣସି ନିର୍ଦ୍ଦିଷ୍ଟ ଓ ସ୍ଥାୟୀ ଆକାର ନାହିଁ । ଏମାନେ ଯେପରି କି ସେହି ଅନନ୍ତ ନିଭୋମଣ୍ଡଳ ମଧ୍ୟରେ ବିଲୀନ ହୋଇ ତା ସହିତ ଏକ ହୋଇ ଯାଇଛନ୍ତି । ଏହିପରି ନିଦାଘ ସମୟରେ ଯେତେବେଳେ ସୂର୍ଯ୍ୟକିରଣ ଖରତର ହୋଇ ଉଠେ, ସେତେବେଳେ ଯେପରି ଉତ୍ତପ୍ତପଦାର୍ଥ ସୁଦୂର ବ୍ୟୋମମଣ୍ଡଳର କୌଣସି ଏକ ପ୍ରାନ୍ତରୁ ନିର୍ଭୋଳୀନ ସୁପ୍ରବାୟୁ ପୃଥିବୀ ବକ୍ଷରେ ଛୁଟି ଆସେ; ନବନୀରଦମାଳା ନିଜ ବିପୁଳକାୟାରେ ଗଗନତଳ ଆଚ୍ଛାଦିତ କରିଦିଏ । ବିଦ୍ୟୁତ୍-ପ୍ରବାହ ଜ୍ୟୋତିର୍ମୟୀ ଲତାପରି ଚଞ୍ଚଳ ହୋଇ ଖେଳୁଥାଏ; ମେଘଗର୍ଜନ ଘନ ଘନ ବଜ୍ର-ନିନାଦରେ ଆକାଶ ପାତାଳ କମ୍ପମାନ କରିଦିଏ । ପ୍ରତ୍ୟେକେ ଯେପରି ନିଜ ନିଜ ବିଶିଷ୍ଟ ମୂର୍ତ୍ତି ନେଇ ଅଭିବ୍ୟକ୍ତ ହୋଇ ଉଠନ୍ତି । ସେହିପରି ସୁଷୁପ୍ତି କାଳରେ ଆମ୍ଭମାନଙ୍କ ହୃଦୟର ଅନ୍ତଃସ୍ଥଳରେ ନିଜମହିମା ପ୍ରକାଶ କରି ଯେ ଦୀପ୍ତ ହୋଇ ଉଠନ୍ତି, ସେହି ସଦାପ୍ରସନ୍ନ ଆନନ୍ଦମୟ ଅନ୍ତରାତ୍ମା ପ୍ରଥମେ କୌଣସି ଆକାର ବା ଚିହ୍ନ ଗ୍ରହଣ କରୁଥିବା ଆମ୍ଭେମାନେ ଅନୁଭବ କରିପାରୁ ନାହୁଁ । ଶରୀରଗୁହାରେ ବିଲୀନ ହୋଇ ସେ ଯେପରି ତାହା ସହିତ ଏକ ହୋଇଯାନ୍ତି । ତାହା ପରେ ସେହିଗୁହାରୁ ସେ ଯେତେବେଳେ ଉତ୍ଥିତ ହୁଅନ୍ତି, ଶରୀରସମ୍ବନ୍ଧୀ ମିଥ୍ୟା ମମତା ଯେତେବେଳେ ତାଙ୍କର ସମ୍ପୂର୍ଣ୍ଣ ତିରୋହିତ ହୋଇ ଯାଏ, ସେତେବେଳେ ସେ ପରମାତ୍ମାଙ୍କୁ ଲାଭ କରି ନିଜରୂପରେ ନିଜେ ପ୍ରକଟିତ ହୋଇ ଉଠନ୍ତି ।

"ଏବମେବୈଷ ସଂପ୍ରସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂ-ଜ୍ୟୋତିରୂପସମ୍ପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ ସ ଉତ୍ତମଃ ପୁରୁଷଃ ।"

ଛାନ୍ଦୋଗ୍ୟ—୮ । ୧୨ । ୩ ।

ଯେପରି ବାୟୁ ଆକାଶରେ ଲୀନ ହୋଇ ଆକାଶର ସାମ୍ୟ ପ୍ରାପ୍ତ ହୁଏ, ସେହିପରି ଏହି ସୁଷୁପ୍ତ ଜୀବାତ୍ମା ଏହି ଶରୀରରୁ ନିର୍ଗତ ହୋଇ ପରମାତ୍ମା-ସ୍ୱରୂପ ଲାଭ କରି ସେହି ଚିରବ୍ୟାପ୍ତ ପରଂବ୍ରହ୍ମଙ୍କ ସହିତ ମିଶିଯାଏ । ଅର୍ଥାତ୍ ଆକାଶ ମଧ୍ୟରେ ବାୟୁ ଅବସ୍ଥାନ କରିବା ସମୟରେ ତାହାର ପାର୍ଥକ୍ୟ ଅନୁଭୂତ ହୁଏ ନାହିଁ; କିନ୍ତୁ ସେ ଆକାଶରେ ପ୍ରବାହିତ ହେବାମାତ୍ରେ ତାହାର ପାର୍ଥକ୍ୟ ଅବଶ୍ୟ ଅନୁଭୂତ ହୁଏ । ସେହିପରି ଦେହାଭିମାନୀ ଜୀବ ଦେହରେ ଅଭିନ୍ନ-ଭାବରେ ଅବସ୍ଥାନ କରେ; କିନ୍ତୁ ଜୀବର ଯେତେବେଳେ ଜ୍ଞାନ ହୁଏ ଯେ, ସେ ଦେହଧର୍ମ ବା ଇନ୍ଦ୍ରିୟ ଧର୍ମବିଶିଷ୍ଟ ନୁହେଁ ଓ ସେ ସେହି ବ୍ରହ୍ମ, ସେତେବେଳେ ସେ ଦେହାତ୍ମବୋଧ ପରିତ୍ୟାଗ କରି ନିଜସ୍ୱରୂପ ପ୍ରାପ୍ତ ହୁଅନ୍ତି । ସେହି ସୁଷୁପ୍ତ ଜୀବାତ୍ମା ହିଁ ଉତ୍ତମ ପୁରୁଷ—ଇତ୍ୟାଦି । * ଏହି ଆତ୍ମନିର୍ଣ୍ଣୟ ସମ୍ପର୍କରେ ଶଙ୍କରାଚାର୍ଯ୍ୟ କହିଛନ୍ତି—

ପଞ୍ଚାନାମପି କୋଷାଣାଂ ନିଷେଧେ ଯୁକ୍ତିତଃ ଶ୍ରୁତେଃ ।
ତନ୍ନିଷେଧାବଧିଃ ସାକ୍ଷୀ ବୋଧରୂପୋଽବଶିଷ୍ୟତେ ॥
ଯୋଽୟମାତ୍ମା ସ୍ୱୟଂ ଜ୍ୟୋତିଃ ପଞ୍ଚକୋଷବିଲକ୍ଷଣଃ ।
ଅବସ୍ଥାତ୍ରୟସାକ୍ଷୀ ସନ୍ ନିର୍ବିକାରୋ ନିରଞ୍ଜନଃ ।
ସଦାନନ୍ଦଃ ସ ବିଜ୍ଞେୟଃ ସ୍ୱାତ୍ମତ୍ୱେନ ବିପଶ୍ଚିତା ॥

ବିବେକ ଚୂଡ଼ାମଣି—୨୧୨-୨୧୩ ।

---

* ଏ ସମ୍ବନ୍ଧରେ ନୈୟାୟିକ କହେ—

"ଆତ୍ମେନ୍ଦ୍ରିୟାଦ୍ୟଧିଷ୍ଠାତା କରଣଂ ହି ସକର୍ତ୍ତୃକମ୍ ।
ଶରୀରସ୍ୟ ନ ଚୈତନ୍ୟଂ ମୃତେଷୁ ବ୍ୟଭିଚାରତଃ ॥
ତଥାତ୍ୱଂ ଚେଦିନ୍ଦ୍ରିୟାଣାମୁପଘାତେ କଥଂ ସ୍ମୃତିଃ ।
ମନୋଽପି ନ ତଥା ଜ୍ଞାନାଦ୍ୟନଧ୍ୟକ୍ଷଂ ତଦା ଭବେତ୍ ॥
ଧର୍ମାଧର୍ମାଶ୍ରୟୋଽଧ୍ୟକ୍ଷୋ ବିଶେଷଗୁଣଯୋଗତଃ ।
ପ୍ରବୃତ୍ତ୍ୟାଦ୍ୟନୁମେୟୋଽୟଂ ରଥଗତ୍ୟେବ ସାରଥିଃ ॥
ଅହଙ୍କାରସ୍ୟାଶ୍ରୟୋଽୟଂ ମନୋମାତ୍ରସ୍ୟ ଗୋଚରଃ ॥　　ଭାଷାପରିଚ୍ଛେଦଃ । ୩୧ ।

ଅର୍ଥାତ୍ ଆତ୍ମା ଇନ୍ଦ୍ରିୟାଦିର ଅଧିଷ୍ଠାତା (ଚକ୍ଷୁ, କର୍ଣ୍ଣାଦି ଇନ୍ଦ୍ରିୟ ସକଳ ଓ ଶରୀରର ପରମ୍ପରା ସମ୍ପର୍କରେ ଚୈତନ୍ୟସଂପାଦକ), କାରଣ, କରଣ କର୍ତ୍ତା ବ୍ୟତୀରେକେ ଫଳୋପଧାୟକ ହୁଏ ନାହିଁ । ସକଳ ଇନ୍ଦ୍ରିୟମାନଙ୍କର କାର୍ଯ୍ୟ ଦର୍ଶନାଦି, କିନ୍ତୁ ପ୍ରକୃତରେ ଯେ ଦର୍ଶନ କରେ, ସେ

ଅର୍ଥାତ୍ ବେଦବାକ୍ୟ ଅନୁସାରେ ଏହି ପଞ୍ଚକୋଷ ପରମାତ୍ମାଙ୍କଠାରୁ ନିଷିଦ୍ଧ ହେଲେ ସେହି ପ୍ରତିଷେଧର କୋଷସୀମାସ୍ୱରୂପ ଯେ ସାକ୍ଷୀସ୍ୱରୂପରେ ଓ ଜ୍ଞାନସ୍ୱରୂପରେ ଅବଶିଷ୍ଟ ରହନ୍ତି, ସେହି କେବଳ ଆତ୍ମସ୍ୱରୂପରେ କଥିତ । ଏହି ଆତ୍ମା ସ୍ୱୟଂଜ୍ୟୋତିଃସ୍ୱରୂପ, ପଞ୍ଚକୋଷରୁ ପୃଥକ୍ ଲକ୍ଷଣବିଶିଷ୍ଟ, ଅବସ୍ଥାତ୍ରୟର ସାକ୍ଷୀସ୍ୱରୂପ, ଶାଶ୍ୱତ, ନିର୍ବିକାର ନିରଞ୍ଜନ ଓ ନିତ୍ୟାନନ୍ଦ-ମୟ । ମନୀଷୀମାନେ ତାହାଙ୍କୁ ନିଜ ଆତ୍ମା ରୂପରେ ହିଁ ଜ୍ଞାନ କରିଥାନ୍ତି ।

ସର୍ବେ ଯେନାନୁଭୂୟନ୍ତେ ଯଃ ସ୍ୱୟଂ ନାନୁଭୂୟତେ ।
ତମାତ୍ମାନଂ ବେଦିତାରଂ ବିଦ୍ଧି ବୁଦ୍ଧ୍ୟା ସୁସୂକ୍ଷ୍ମୟା ॥
ବି: ଚୂ: ୨୧୭ ।

ଯାହାଙ୍କୁ ଅନୁଭବ କରିବା ସକାଶେ କାହାର ସାମର୍ଥ୍ୟ ନାହିଁ; ଅଥଚ ଯାହାଙ୍କଠାରେ ସକଳ ପଦାର୍ଥ ଅନୁଭୂତ ହୁଏ, ସେହି ଅଖିଳବେତ୍ତା ଆତ୍ମା, ସୂକ୍ଷ୍ମବୁଦ୍ଧି ଯୋଗରେ ତାହାଙ୍କୁ ପରିଜ୍ଞାତ ହୁଅ । ଏ ବିଷୟରେ ଉପନିଷଦ୍‌ରେ ଉକ୍ତ ଅଛି—

"କତମ ଆତ୍ମେତି । ଯୋଽୟଂ ଶୁଦ୍ଧଃ ପୂତଃ ଶୂନ୍ୟଃ ଶାନ୍ତାଦିଲକ୍ଷଣଃ ସ୍ୱକୈର୍ଲିଙ୍ଗୈରୁପଗୃହ୍ୟଃ ॥ ମୈତ୍ରୀ ଉ: ଖ: ୩୧ ।

---

ଆତ୍ମା କେବଳ, "ଶରୀର କେବଳ ଦର୍ଶନ କରେ"—ଏହା କୁହାଯାଇ ପାରିବ ନାହିଁ, କାରଣ ଶରୀରର ଚୈତନ୍ୟ ନାହିଁ । ମୃତ ଶରୀରରେ ଦର୍ଶନାଦିର ବ୍ୟଭିଚାର ଦେଖାଯିବା ହେତୁରୁ ଶରୀରର ଚୈତନ୍ୟ ସ୍ୱୀକାର କରାଯାଏ ନାହିଁ । ଅତଏବ ଶରୀର କଦାପି କର୍ତ୍ତା ହୋଇପାରିବ ନାହିଁ । ଇନ୍ଦ୍ରିୟମାନଙ୍କୁ ମଧ୍ୟ କର୍ତ୍ତା କୁହାଯାଇ ପାରିବ ନାହିଁ; କାରଣ, କୌଣସି ଇନ୍ଦ୍ରିୟ ନଷ୍ଟ ହୋଇଯିବା ପରେ ମଧ୍ୟ ସେହି ଇନ୍ଦ୍ରିୟାନୁଭୂତ ବସ୍ତୁର ସ୍ମରଣ ହୋଇଥାଏ । ଯଦି ଇନ୍ଦ୍ରିୟ କର୍ତ୍ତା ହେବ, ତେବେ ଇନ୍ଦ୍ରିୟ ନଷ୍ଟ ହେବା ପରେ ତଜ୍ଜନ୍ୟ କାର୍ଯ୍ୟର ସ୍ମରଣ କିପରି ହେବ ?

ମନ ମଧ୍ୟ କର୍ତ୍ତା ହୋଇ ନ ପାରେ, ଯଦି କର୍ତ୍ତା ବୋଲି ସ୍ୱୀକାର କର, ତେବେ ମନ ଜ୍ଞାନାଦିର ମଧ୍ୟ ଆଶ୍ରୟ ହେବ ଓ ପ୍ରତ୍ୟକ୍ଷ ପ୍ରତି ଆଶ୍ରୟର ମହତ୍ତ୍ୱ କାରଣ; ମନ ଅଣୁ, ସେଥିରେ ମହତ୍ତ୍ୱ ନାହିଁ । ଅତଏବ ଜ୍ଞାନାଦିର ମଧ୍ୟ ପ୍ରତ୍ୟକ୍ଷ ହୋଇପାରେ ନାହିଁ । ଏହି କାରଣରୁ ସୁଖାଦିଜ୍ଞାନର ଆଶ୍ରୟ । ଇନ୍ଦ୍ରିୟାଦିର ଅଧିଷ୍ଠାତା ଶରୀର ଭିନ୍ନ ଅତିରିକ୍ତ ଆତ୍ମା ସ୍ୱୀକାର କରିବାକୁ ହେବ । ଆତ୍ମା ଧର୍ମାଧର୍ମର ଆଶ୍ରୟ, ଜ୍ଞାନ-ସୁଖପ୍ରଭୃତି ବିଶିଷ୍ଟ ଗୁଣର ସମ୍ବନ୍ଧରୁ ଆତ୍ମା ପ୍ରତ୍ୟକ୍ଷ ହୁଏ । ଯେପରି ରଥର ଗତି ଦେଖି ସେଥିରେ ସାରଥି ଥିବା ଅନୁମାନ କରାଯାଏ, ସେହିପରି ଚେଷ୍ଟା ପ୍ରଭୃତିଦ୍ୱାରା ପରଦେହସ୍ଥିତ ଆତ୍ମାର ଅନୁମାନ କରାଯାଏ । ଆତ୍ମା ଅହଂକାରର ଆଶ୍ରୟ ଓ ମାନସ ପ୍ରତ୍ୟକ୍ଷର କେବଳ ବିଷୟ ।

ଅର୍ଥାତ୍—ଯାହା ଗଗାଦମଳନତାବସ୍ଥାନ, ସମସ୍ତଙ୍କର ପଦକକର୍ତ୍ତ୍ତ, ଶଗୀଗଦ ପଞ୍ଚକୋଷଶୂନ୍ୟ ଓ ନର୍ବିକାରତା ପ୍ରଭୃତ ଚହ୍ନଦ୍ୱାଗ କେବଳ ନର୍ଦ୍ଦିଷ୍ଟ ନଜର ଅସାଧାରଣ ଚହ୍ନଦ୍ୱାଗ୍ କେବଳ ସ୍ୱରୂପସତ୍ତ୍ୱ ବଷୟରେ ଉପାସକମାନଙ୍କଦ୍ୱାଗ ଗୃହୀତ ହୁଅନ୍ତ, ସେ କେବଳ ଆତ୍ମା । ଦ୍ୱିତ୍ତୀୟତଃ ସଂଯୋଗାତ୍ମକ ପଦାର୍ଥ ରୂପଶଗୀଗଦରୁ ପୃଥକ୍ ହୋଇ ମଧ୍ଯ ଅଚେତନ ଶଗୀଗଦକୁ ସଙ୍କସମ୍ପନ୍ନ କଣ ସେମାନଙ୍କର ସାକ୍ଷୀସ୍ୱରୂପରେ ଯେ ପ୍ରକାଶିତ ରହନ୍ତ, ସେହ କେବଳ ଆତ୍ମା ।

## ଠ—ପ୍ରଣବ ଓ ପ୍ରଣବାତୀତବଶୁଦ୍ଧାତ୍ମନରୂପଣ ।

ଉପରବର୍ଣ୍ଣିତ ଶ୍ରୁତବାକ୍ୟ ଓ ଯୁକ୍ତସମୂହରୁ ଏହା ପ୍ରତପନ୍ନ ହୁଏ ଯେ, ଦେହ, ଇନ୍ଦ୍ରିୟ ଓ ପ୍ରାଣ ଆଦ ସକଳ ସଂଯୋଗାତ୍ମକ, ଅତଏବ ସେମାନେ ବଶୁଦ୍ଧାତ୍ମା ନୁହଁନ୍ତ । ଅକ୍ଷୟ, ଚନ୍ମାତ୍ର, ସମ୍ବିଦ୍‌ବସ୍ତୁ ପରଂବ୍ରହ୍ମ କେବଳ ଆତ୍ମାପଦବାଚ୍ୟ । ଏହ ଆତ୍ମା ପ୍ରଣବାକ୍ଷର ସହ ସଂଯୁକ୍ତ ଓ ବଯୁକ୍ତଭାବରେ ମଧ୍ଯ ଯେପର ରହଅଛନ୍ତ, ସେକଥା ତଳେ ବବୃତ ହେଉଛୁ—ବଭନ୍ନ ମତବାଦୀମାନେ ଓଁ କାରକୁ (ପ୍ରଣବ) ଏକାକ୍ଷର ବ୍ରହ୍ମସ୍ୱରୂପରେ ଉପାସନା କରନ୍ତ; କନ୍ତୁ ବଶୁଦ୍ଧାଦ୍ୱୈତବ୍ରହ୍ମବାଦର ପ୍ରବର୍ତ୍ତକ ମହମା ସମାଜର ପ୍ରତଷ୍ଠାତା ପ୍ରବୁଦ୍ଧଗୁରୁ ମହମା-ସ୍ୱାମୀଙ୍କ ମତରେ ଓଁକାର ନରୂପିତ ହୋଇନାହିଁ । ସମସ୍ତ ଶ୍ରୁତ ଓ ଶାସ୍ତ୍ରମାନଙ୍କରେ ଓଁକାର ମୁଖ୍ୟ ଉପାସ୍ୟଭାବରେ ନରୂପିତ ହୋଇଥିଲେ ମଧ୍ଯ ବଶୁଦ୍ଧାତ୍ମଜ୍ଞାନ-ଅଲେଖବ୍ରହ୍ମଦର୍ଶନରେ ତାହା ସ୍ୱୀକୃତ ହୋଇ ନାହିଁ ।

ଉପନଷଦ୍ ବର୍ଣ୍ଣନା ଅନୁସାରେ ବ୍ରହ୍ମାଙ୍କ ଧ୍ୟାନବଳରୁ ଓଁକାରର ଜନ୍ମ—

"ପ୍ରଜାପତର୍ଲୋକାନଭ୍ୟତପତ୍ତେଭ୍ୟୋଽଭିତପ୍ତେଭ୍ୟସ୍ତ୍ରୟୀ ବଦ୍ୟା-ସଂପ୍ରାସବତ୍ତାମଭ୍ୟତପତ୍ତସ୍ୟା ଅଭିତପ୍ତାୟା ଏତାନ୍ୟକ୍ଷରାଣି ସଂପ୍ରାସ୍ରବନ୍ତ ଭୂର୍ଭୁବଃ ସ୍ୱରତ ।। ତାନ୍ୟଭ୍ୟତପତ୍ତେଭ୍ୟୋଽଭିତପ୍ତେଭ୍ୟ ଓଁକାରଃ ସଂପ୍ରାସ୍ରବତ୍ତଦ୍ ଯଥା ଶଙ୍କୁନା ସର୍ବାଣି ପର୍ଣ୍ଣାନ ସଂତୃଣ୍ଣାନ୍ୟେବମୋଂ-କାରେଣ ସର୍ବା ବାକ୍ ସଂତଣ୍ଣୋଙ୍କାର ଏବେଦଂସର୍ବମୋଂକାର ଏବେଦଂ ସର୍ବମ୍ ।।　　　ଛାନ୍ଦୋଗ୍ୟ–୨-୨୩ । ୨-୩ ।

ଅର୍ଥ—ବରାଟ ପୁରୁଷ ପ୍ରଜାପତ ତ୍ରିଲୋକ ଉଦ୍ଦେଶ୍ୟରେ ଧ୍ୟାନ କରୁଥିଲେ । ଧ୍ୟାନ କରୁ କରୁ ପ୍ରଜାପତଙ୍କ ମନ ମଧ୍ଯରେ ଜଗତର ସାରଭୂତ ବେଦବଦ୍ୟା ସ୍ୱୟଂ ପ୍ରତଭାତ ହୋଇ ଉଠିଲା । ସେତେବେଳେ ସେ ପୁନର୍ବାର ସେହ ବେଦବଦ୍ୟା ଉଦ୍ଦେଶ୍ୟରେ ଧ୍ୟାନ କରବାକୁ ଲଗିଲେ । ତାଙ୍କଦ୍ୱାରା ଅନୁଧ୍ୟାତ, ସେହ ବେଦବଦ୍ୟାରୁ "ଭୂଃ ଭୁବଃ, ସ୍ୱଃ"—ଏହ

ଅକ୍ଷରଦ୍ୱୟ ପ୍ରାଦୁର୍ଭୂତ ହେଲ । ସେ ପୁନଶ୍ଚ ସେହି ଅକ୍ଷରମାନଙ୍କ ବିଷୟରେ ଧ୍ୟାନ କରିବାକୁ ଆରମ୍ଭ କଲେ, ତାଙ୍କଦ୍ୱାରା ଅନୁଧ୍ୟାତ ସେହି ଅକ୍ଷରସମୂହରୁ ଓଁକାର ନିଃସୃତ ହେଲ । ଯେପରି ଗୋଟିଏ ବୃକ୍ଷର ପତ୍ରର ସମସ୍ତ ଅଂଶ ତାହାର ଶିରାପ୍ରଶିରାଦ୍ୱାରା ବ୍ୟାପ୍ତ ହୋଇଥାଏ, ସେହିପରି ସମସ୍ତ ବାଙ୍‌ମୟ ଜଗତ୍ ଏକହିଁ ଓଁକାରଦ୍ୱାରା ପରିବ୍ୟାପ୍ତ ହୋଇ ରହିଅଛି । ଏହିପରି ଦୃଶ୍ୟମାନ ସମସ୍ତ ଜଗତ୍ ଓଁକାରସ୍ୱରୂପ ଅଟେ । ଓଁକାରର ଉପରିବର୍ଣ୍ଣିତ ଜନ୍ମବୃତ୍ତାନ୍ତରୁ ଉପନିଷଦ୍ ତାହାକୁ ଏକାକ୍ଷର ବା ଶବ୍ଦବ୍ରହ୍ମନାମରେ ଅଭିହିତ କରିଅଛନ୍ତି । ତାହାର ମାହାତ୍ମ୍ୟ ସେହି ଉପନିଷଦ୍‌ରେ ଏହିପରି ବର୍ଣ୍ଣିତ ହୋଇଅଛି ।

ଓଁ ଏକାକ୍ଷରଂ ତ୍ୱକ୍ଷରେଽତ୍ରାସ୍ତି ସୋମେ ସୁଷୁମ୍ନାୟାଂ ଚେହ ଦୃଢ଼ୀ ସ ଏକଃ ।" ଏକାକ୍ଷର ଉ: ୧ ।

ଅକାର, ଉକାର ଓ ମକାରରୂପ ବର୍ଣ୍ଣନାତ୍ମକ ଓଁକାର (ପ୍ରଣବରୂପ) ଏକ ଅକ୍ଷର ବ୍ରହ୍ମବାଚକ । ବାଚ୍ୟ ଓ ବାଚକର ଅଭେଦ ସମ୍ବନ୍ଧରୁ ବ୍ରହ୍ମ ସହିତ ଏହା ଅଭିନ୍ନ । ଏହି ପ୍ରଣବାତ୍ମକ ବ୍ରହ୍ମହିଁ ଜଗତ୍‌ରୂପରେ ବିବର୍ତ୍ତିତ ହୋଇଥାନ୍ତି । ଏହି ଏକ ଅକ୍ଷର (ଓଁକାରରୂପୀ ପ୍ରଣବ) ନିତ୍ୟବ୍ରହ୍ମରେ ଅଭେଦରୂପରେ ବିଦ୍ୟମାନ ଅଛନ୍ତି । ସେହି ଏକ ଶବ୍ଦବ୍ରହ୍ମ ହିଁ ଇଡ଼ାନାଡ଼ୀର ଅଧିଷ୍ଠାତା, ଚନ୍ଦ୍ର ଓ ସୁଷୁମ୍ନା ନାଡ଼ୀର ଅଧିଷ୍ଠାତ୍ରୀ ଦେବତାଠାରେ ଅଥବା ସେହି ସେହି ନାଡ଼ୀରେ ଉପଲବ୍ଧ ହୋଇ ଅଭିନ୍ନଭାବରେ ଦୃଢ଼ଭାବେ ଅବସ୍ଥାନ କରୁଅଛନ୍ତି ।

ଏହି ଓଁକାର ପ୍ରଣବାତ୍ମକ ତତ୍ତ୍ୱବିଚାର ମାଣ୍ଡୁକ୍ୟ ଉପନିଷଦ୍‌ରେ ସବିସ୍ତାର ବର୍ଣ୍ଣିତ ହୋଇଥିବାରୁ ତାହା'ର ସଂକ୍ଷିପ୍ତ ସୂଚନା ଏଠାରେ ଦିଆଯାଉଛି—

ଓଁ ଇତ୍ୟେତଦକ୍ଷରମିଦଂ ସର୍ବମ୍—୧ ।

ଏହିପରି ଦୃଶ୍ୟମାନ ସକଳ ଜଗତ୍ ଓଁକାରମୟ ବା ଓଁକାରରୁ ଅଭିନ୍ନ ।

ସୋଽୟମାତ୍ମା ଅଧ୍ୟକ୍ଷରମୋଁକାରୋଽଧିମାତ୍ରଂ ପାଦାମାତ୍ରାମାତ୍ରାଶ୍ଚ ପାଦା ଅକାରଉକାରମକାର ଇତି । ମାଣ୍ଡୁକ୍ୟ ୮ ।

ସେହି ଓଁକାରମୟ ଆତ୍ମା ଅକ୍ଷରସ୍ୱରୂପରେ ବର୍ଣ୍ଣିତ ହୋଇଅଛି । ସେହି ଓଁକାରକୁ ବିଭକ୍ତ କଲେ ଅଧିମାତ୍ର ହୁଏ ବା ଓଁକାର ମାତ୍ରାତ୍ରୟବିଶିଷ୍ଟ ହୁଏ । ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ରୂପକ ଆତ୍ମାର ଅବସ୍ଥାତ୍ରୟ କେବଳ ଓଁକାରର ତିନିମାତ୍ରା—ଅକାର, ଉକାର ଓ ମକାରରୂପରେ ବର୍ଣ୍ଣିତ ।

"ଜାଗରିତସ୍ଥାନୋ ବୈଶ୍ୱାନରୋଽକାରଃ ପ୍ରଥମା ମାତ୍ରା ।"
"ସ୍ୱପ୍ନସ୍ଥାନସ୍ତୈଜସ ଉକାରୋ ଦ୍ୱିତୀୟା ମାତ୍ରା ।"
"ସୁଷୁପ୍ତିସ୍ଥାନଃ ପ୍ରାଜ୍ଞୋ ମକାରସ୍ତୃତୀୟା ମାତ୍ରା ।"

ମାଣ୍ଡୁକ୍ୟ-୯-୧୧ ।

ଅର୍ଥାତ୍—ଓଁକାରର ପ୍ରଥମମାତ୍ରା ଅକାର ଦ୍ୱାରା ବୈଶ୍ୱାନର, ଦ୍ୱିତୀୟମାତ୍ରା (ଉକାର) ଦ୍ୱାରା ସ୍ୱପ୍ନସ୍ଥାନ ତୈଜସ ଓ ତୃତୀୟମାତ୍ରା ମକାରଦ୍ୱାରା ସୁଷୁପ୍ତିସ୍ଥାନ ପ୍ରାଜ୍ଞରୂପକ ଅର୍ଥ ପ୍ରକଟିତ ହୁଏ । * ଏହି ପ୍ରଣବର ସ୍ୱରୂପ ଦୁଇପ୍ରକାର—ପରମାର୍ଥ ଓ ଅପରମାର୍ଥ । ଯେପରି ଆତ୍ମା ଉପାଧିଭେଦରେ ଜୀବ ଓ ଈଶ୍ୱରରୂପରେ କଳ୍ପିତ, ସେହିପରି ପ୍ରଣବ ମଧ୍ୟ ଅକ୍ଷରତ୍ରୟଯୁକ୍ତ ହେଲେ ଅପରମାର୍ଥ ଓ ଅକ୍ଷରମୁକ୍ତ ଓ ଅମାତ୍ରସ୍ୱରୂପ ହେଲେ ପରମାର୍ଥରୂପରେ କଥିତ ହୁଏ ।

ଉପର୍ଯ୍ୟୁକ୍ତ ମାତ୍ରାତ୍ରୟସଂଯୁକ୍ତ ଓଁକାର ଜଗତ୍ରୂପକ ବିରାଟ ସ୍ୱରୂପରେ ଅବସ୍ଥିତ ଥିବାହେତୁରୁ ତାହାର ଅବସ୍ଥାଭେଦ ଅନୁସାରେ ପାଦନିର୍ଣ୍ଣୟ କରାଯାଇଛି ଓ ସେଥିରେ ଅଧିପତିରୂପରେ ଚୈତନ୍ୟ ଅବସ୍ଥିତ—ଏପରି ବ୍ୟାଖ୍ୟା କରାଯାଇଛି; କିନ୍ତୁ ବିଶୁଦ୍ଧ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ଏ ସମସ୍ତରୁ ଅତୀତସ୍ୱରୂପରେ ବିଦ୍ୟମାନ ।

**"ଜାଗରିତସ୍ଥାନୋ ବହିଃପ୍ରଜ୍ଞଃ + + ସ୍ଥୂଳଭୁକ୍ ବୈଶ୍ୱାନରଃ ପ୍ରଥମଃ ପାଦଃ । ସ୍ୱପ୍ନସ୍ଥାନୋଽନ୍ତଃ ପ୍ରଜ୍ଞଃ + + ପ୍ରବିବିକ୍ତଭୁକ୍ ତୈଜସୋ ଦ୍ୱିତୀୟଃ ପାଦଃ । + + ସୁଷୁପ୍ତିସ୍ଥାନ ଏକୀଭୂତଃ ପ୍ରଜ୍ଞାନଘନ ଏବାନନ୍ଦମୟୋହ୍ୟାନନ୍ଦଭୁକ୍ ଚେତୋମୁଖଃ ପ୍ରାଜ୍ଞସ୍ତୃତୀୟଃ ପାଦଃ"** । ମାଣ୍ଡୁକ୍ୟ-୩-୫ ।

ଅର୍ଥାତ୍—ଆର୍ଯ୍ୟ ଋଷିମାନେ ଜଗତ୍କୁ ପ୍ରଧାନତଃ ତିନିଭାଗରେ ବିଭକ୍ତ କରିଅଛନ୍ତି—ସ୍ଥୂଳ, ସୂକ୍ଷ୍ମ ଓ କାରଣଭୂତ । ଜାଗ୍ରତ୍ ଅବସ୍ଥାରେ ଜଗତର ଯେଉଁ ସାକ୍ଷାତ୍କାର ଅନୁଭୂତ ତାହା ସ୍ଥୂଳ ଜଗତ୍, ଏହି ଅବସ୍ଥାର ଅଭିମାନୀ ଆତ୍ମାକୁ "ବିଶ୍ୱବୈଶ୍ୱାନର" କୁହାଯାଏ । ସୂକ୍ଷ୍ମଜଗତର ଅନୁଭବୋପଯୋଗୀ ସୂକ୍ଷ୍ମ ଦେହ ଅଛି, ସ୍ୱପ୍ନାବସ୍ଥାରେ ସେହି ଅବସ୍ଥା ଅନୁଭୂତ ହୁଏ । ଅର୍ଥାତ୍ ପୂର୍ବ ସଂସ୍କାରାଧୀନ ବିଷୟସମୂହ ମନ ଅନୁଭବ କରେ, ଏହିହେତୁରୁ ସ୍ୱପ୍ନର

* "ଅକାରମାତ୍ରଂ ବିଶ୍ୱଂ ସ୍ୟାଦୁକାରସ୍ତୈଜସଃ ସ୍ମୃତଃ
ପ୍ରାଜ୍ଞୋ ମକାର ଇତ୍ୟେବଂ ପରିପଶ୍ୟେତ୍ କ୍ରମେଣ ତୁ" ॥ ପଞ୍ଚୀକରଣବାର୍ତ୍ତିକ, ୪୭ ।
ସର୍ବେଶ୍ୱରାଚାର୍ଯ୍ୟ ଦର୍ଶାଇ ଅଛନ୍ତି—ଅକାର ହିଁ ବିଶ୍ୱ, ଉକାର ତୈଜସ ଓ ମକାର ପ୍ରାଜ୍ଞ—ଏହିରୂପରେ ଓଁକାରର ସ୍ୱରୂପ ଭାବନା କରିବ ।

ଅଧିଷ୍ଠାତା ଆତ୍ମାକୁ "ପ୍ରବିବିକ୍ତଭୁକ୍" କୁହାଯାଏ; ଏହି ଅବସ୍ଥାରେ ଅଭିମାନୀ ଆତ୍ମାକୁ ତୈଜସ କହନ୍ତି । କାରଣ ଜଗତ୍ ଏହା ଅପେକ୍ଷା ସୂକ୍ଷ୍ମତର; ସୁଷୁପ୍ତି ଅବସ୍ଥାରେ କେହି କେହି କାରଣ-ଜଗତର ଅନୁଭବ କରିପାରନ୍ତି । ଯେପରି ନାନାଆକାରବିଶିଷ୍ଟ ବସ୍ତୁସମୂହ ଏକାକାର ପ୍ରତୀତ ହୁଏ, ସେହିପରି ବିଶ୍ୱସୁଷୁପ୍ତି ଅବସ୍ଥାରେ ସକଳ ଜଗତ୍ ଏକୀଭୂତ ହୋଇଯାଏ । ସୁଷୁପ୍ତିର ଅଧିଷ୍ଠାତାକୁ ପ୍ରଜ୍ଞାନଘନ କୁହାଯାଏ । ଆହୁରି ମଧ୍ୟ, ସୁଷୁପ୍ତିର ଅଧିଷ୍ଠାତାକୁ ଆନନ୍ଦମୟ ବା ଆନନ୍ଦଭୁକ୍, ଅର୍ଥାତ୍ ସୁଖର ଭୋକ୍ତା ବୋଲି କୁହାଯାଏ । ଏହି ଅବସ୍ଥାରେ ଚୈତନ୍ୟକୁ ଚେତୋମୁଖ ବା ଚେତନମୟ କୁହାଯାଏ । ଏହି ଅଧିଷ୍ଠାତା ନିରୁପାଧିକ ଜ୍ଞାନମୟ, ଅତଏବ ଏହାର ନାମ ପ୍ରାଜ୍ଞ । ଏହି ବିଷୟ ଅନ୍ୟ ଏକ ଉପନିଷଦ୍‌ରେ ମଧ୍ୟ ବର୍ଣ୍ଣିତ ହୋଇଛି—

"ଓମିତି ବ୍ରହ୍ମେତି ବ୍ୟଷ୍ଟିସମଷ୍ଟିପ୍ରକାରେଣ । କା ବ୍ୟଷ୍ଟିଃ କା ସମଷ୍ଟିଃ ସଂହାରପ୍ରଣବଃ ସୃଷ୍ଟିପ୍ରଣବଶ୍ଚାନ୍ତର୍ବହିଶ୍ଚୋଭୟାତ୍ମକତ୍ୱାତ୍ ତ୍ରିବିଧୋ ବ୍ରହ୍ମପ୍ରଣବଃ । ଅନ୍ତଃପ୍ରଣବୋ ବ୍ୟାବହାରିକପ୍ରଣବଃ । ବାହ୍ୟ-ପ୍ରଣବଃ ଆର୍ଷପ୍ରଣବଃ । ଉଭୟାତ୍ମକୋ ବିରାଟ୍ ପ୍ରଣବଃ । ସଂହାରପ୍ରଣବୋ ବ୍ରହ୍ମପ୍ରଣବୋଽର୍ଦ୍ଧମାତ୍ରା ପ୍ରଣବଃ । ଓମିତି ବ୍ରହ୍ମ । ଓମିତ୍ୟେକାକ୍ଷରମନ୍ତଃ ପ୍ରଣବଂ ବିଦ୍ଧି । ସ ଚାଷ୍ଟଧା ଭିଦ୍ୟତେ ଅକାରୋକାରମକାରାର୍ଦ୍ଧମାତ୍ରା ନାଦବିନ୍ଦୁକଳାଶକ୍ତିଶ୍ଚେତି । ତତ୍ର ଚତ୍ୱାରଃ ଅକାରଶ୍ଚାୟୁତାବୟବାନ୍ୱିତ ଉକାରଃ ସହସ୍ରାବୟବାନ୍ୱିତୋ ମକାରଃ ଶତାବୟବୋପେତୋଽର୍ଦ୍ଧ-ମାତ୍ରାପ୍ରଣବୋଽନନ୍ତାବୟବାକାରଃ । ସଗୁଣୋ ବିରାଟ୍ ପ୍ରଣବଃ ସଂହାରୋ ନିର୍ଗୁଣପ୍ରଣବ ଉଭୟାତ୍ମକୋତ୍ପତ୍ତିପ୍ରଣବୋ ଯଥାପ୍ଲୁତୋ ବିରାଟ୍ ପ୍ଲୁତଃ ପ୍ଲୁତସଂହାରୋ ବିରାଟ୍ ପ୍ରଣବଃ ଷୋଡ଼ଶମାତ୍ରାତ୍ମକଃ ଷଟ୍‌ତ୍ରିଂଶତ୍ତତ୍ତ୍ୱାତୀତଃ । ଷୋଡ଼ଶମାତ୍ରାତ୍ମକତ୍ୱଂ କଥମିତ୍ୟୁଚ୍ୟତେ । ଅକାରଃ ପ୍ରଥମୋକାରୋ ଦ୍ୱିତୀୟା ମକାରସ୍ତୃତୀୟାର୍ଦ୍ଧମାତ୍ରା ଚତୁର୍ଥୀ ନାଦଃ ପଞ୍ଚମୀ ବିନ୍ଦୁଃ ଷଷ୍ଠୀ କଳା ସପ୍ତମୀ କଳାତୀତାଷ୍ଟମୀ ଶାନ୍ତିର୍ନବମୀ ଶାନ୍ତ୍ୟତୀତା ଦଶମୀ ଉନ୍ମନ୍ୟେକାଦଶୀ ମନୋନ୍ମନୀ ଦ୍ୱାଦଶୀ ପୁରୀ ତ୍ରୟୋଦଶୀ ମଧ୍ୟମା ଚତୁର୍ଦ୍ଦଶୀ ପଶ୍ୟନ୍ତୀ ପଞ୍ଚଦଶୀ ପରା ଷୋଡ଼ଶୀ ॥"

ନାରଦପରିବ୍ରାଜକୋପନିଷଦ୍; ଅଧ୍ୟାୟ ୮ । ୧ ।

ବ୍ୟଷ୍ଟି ଓ ସମଷ୍ଟି ରୂପକ ଓଁକାର କେବଳ ବ୍ରହ୍ମ; କିନ୍ତୁ ଏହା ବ୍ୟଷ୍ଟି ଓ ସମଷ୍ଟି-ଭେଦରେ ଦ୍ୱିବିଧ । ପୁନର୍ବାର ଏହି ଦ୍ୱିବିଧପ୍ରଣବଠାରୁ ଅନ୍ତର ଓ ବାହ୍ୟଭେଦରେ ଭିନ୍ନ ଅନ୍ୟ ଏକ ପ୍ରଣବକୁ ମିଶାଇ ପ୍ରଣବ ତିନିପ୍ରକାର । ଏହି ସବୁର ନାମ ବ୍ରହ୍ମପ୍ରଣବ । ବ୍ୟାବହାରିକ ପ୍ରଣବର ନାମ ଅନ୍ତଃପ୍ରଣବ, ଆର୍ଷର ନାମ ବାହ୍ୟପ୍ରଣବ ଏବଂ ଏହି ଉଭୟାତ୍ମକ ପ୍ରଣବର ନାମ ବିରାଟପ୍ରଣବ । ଯାହା ସଂହାରପ୍ରଣବ ସେ କେବଳ ବ୍ରହ୍ମପ୍ରଣବ, ଏହାର ଅପର ନାମ ଅର୍ଦ୍ଧମାତ୍ରାପ୍ରଣବ । ଓଁକାର ହିଁ ବ୍ରହ୍ମ । ଓଁ ଏହି ଏକାକ୍ଷରର ନାମ ଅନ୍ତଃପ୍ରଣବ । ଏହା ଅଷ୍ଟଭାଗରେ ବିଭକ୍ତ—ଅକାର, ଉକାର, ମକାର, ଅର୍ଦ୍ଧମାତ୍ରା, ନାଦ, ବିନ୍ଦୁ କଳା ଓ ଶକ୍ତି । ଏଥିରୁ ପ୍ରଥମ ଚାରି ଅର୍ଥାତ୍ ଅକାରାଦି ମଧ୍ୟରୁ ଅକାର ଅୟୁତ ଅବୟବଯୁକ୍ତ; ଉକାର ସହସ୍ର ଅବୟବଯୁକ୍ତ, ମକାର ଶତଅବୟବଯୁକ୍ତ ଓ ଅର୍ଦ୍ଧମାତ୍ରା ପ୍ରଣବ ଅନନ୍ତ ଅବୟବର ଆକାର । ବିରାଟପ୍ରଣବ ସଗୁଣ, ସଂହାର ପ୍ରଣବ ନିର୍ଗୁଣ ଏବଂ ଉତ୍ପତ୍ତିପ୍ରଣବ ଉଭୟାତ୍ମକ । ସୃଷ୍ଟିପ୍ରଣବ ବିରାଟପ୍ରଣବ ସଂହାରପ୍ରଣବ ପ୍ଳୁତସ୍ୱର ବିଶିଷ୍ଟ । ବିରାଟପ୍ରଣବ ଷୋଡ଼ଶମାତ୍ରାଯୁକ୍ତ ଏବଂ ଷଟ୍ତ୍ରିଂଶତ୍ ତତ୍ତ୍ୱରୁ ଅତୀତ । ଏହା ଷୋଡ଼ଶମାତ୍ରାଯୁକ୍ତ କିପରି ତାହା ନିମ୍ନରେ କୁହାଗଲା—ଅକାର ପ୍ରଥମ ମାତ୍ରା, ଉକାର ଦ୍ୱିତୀୟ, ମକାର ତୃତୀୟ, ଅର୍ଦ୍ଧମାତ୍ରା ଚତୁର୍ଥ, ନାଦ ପଞ୍ଚମ, ବିନ୍ଦୁ ଷଷ୍ଠ, କଳା ସପ୍ତମ, କଳାତୀତ ଅଷ୍ଟମ, ଶାନ୍ତି ନବମ, ଶାନ୍ତ୍ୟତୀତ ଦଶମ, ଉନ୍ମନୀ ଏକାଦଶ, ମନୋନ୍ମନୀ ଦ୍ୱାଦଶ, ପୁରୀ ତ୍ରୟୋଦଶ, ମଧ୍ୟମା ଚତୁର୍ଦ୍ଦଶ, ପଶ୍ୟନ୍ତୀ ପଞ୍ଚଦଶ ଓ ପରା ଷୋଡ଼ଶ । ଆହୁରି ମଧ୍ୟ—

"ପ୍ରକୃତିପୁରୁଷଦ୍ୱେ ବିଧ୍ୟମାସାଦ୍ୟାଷ୍ଟାବିଂଶତ୍ୟୁତ୍ତରଭେଦମାତ୍ରା
ସ୍ୱରୂପମାସାଦ୍ୟ ।"    ନା: ପ: ଉ: ଅ: ୮ ।

ଅର୍ଥାତ୍—ଅଷ୍ଟବିଂଶତି ଅଧିକମାତ୍ରା ଭେଦସ୍ୱରୂପ ଲାଭ କରି ସେହି ଷୋଡ଼ଶମାତ୍ରାତ୍ମକ ବ୍ରହ୍ମପ୍ରଣବ ପ୍ରକୃତି-ପୁରୁଷଭେଦରେ ଦୁଇପ୍ରକାର ହୁଏ । ଉପନିଷତ୍ ଶ୍ରୁତିରେ ଓଁକାର ବା ପ୍ରଣବକୁ ହଂସପକ୍ଷୀରୂପରେ ବର୍ଣ୍ଣନା କରାଯାଇଛି ।

"ଓଁକାରେ ଦକ୍ଷିଣଃ ପକ୍ଷଃ ଉକାରସ୍ତୂତ୍ତରଃ ସ୍ମୃତଃ ।
ମକାରସ୍ତସ୍ୟ ପୁଚ୍ଛଂ ବା ଅର୍ଦ୍ଧମାତ୍ରା ଶିରସ୍ତଥା ॥
ପାଦୌ ରଜସ୍ତମସ୍ତସ୍ୟ ଶରୀରଂ ସତ୍ତ୍ୱମୁଚ୍ୟତେ ।
ଧର୍ମଶ୍ଚ ଦକ୍ଷିଣଂ ଚକ୍ଷୁରଧର୍ମଶ୍ଚୋତ୍ତରଂ ସ୍ମୃତମ୍ ॥
ଭୂର୍ଲୋକଃ ପାଦୟୋସ୍ତସ୍ୟ ଭୁବର୍ଲୋକସ୍ତୁଜାନୁନୋଃ ।
ସ୍ୱର୍ଲୋକଃ କଟୀଦେଶସ୍ତୁ ନାଭିଦେଶେ ମହର୍ଜଗତ୍ ॥
ଜନଲୋକସ୍ତୁ ହୃଦୟେ କଣ୍ଠଦେଶେ ତପସ୍ତତଃ ।
ଭ୍ରୁବୋର୍ଲଲାଟମଧ୍ୟେ ତୁ ସତ୍ୟଲୋକୋ ବ୍ୟବସ୍ଥିତଃ ॥

ସହସ୍ରାର୍ଣ୍ଣମତୀବାଣ ମନ୍ତ୍ର ଏଷ ପ୍ରଦର୍ଶିତଃ ।
ଏବମେନଂ ସମାରୂଢ଼ୋ ହଂସଂ ଯୋଗବିଚକ୍ଷଣଃ " ॥

ନାଦବିନ୍ଦୁ ଉ: ୧—୫ ।

ଓଁକାରର ସ୍ୱରୂପ ଅକାର, ଉକାର, ମକାର ଓ ଅର୍ଦ୍ଧମାତ୍ରା ନାଦବିନ୍ଦୁ; ଏହି ହଂସରୂପୀ ଓଁକାରର ଆକାର ଦକ୍ଷିଣପକ୍ଷସ୍ୱରୂପ, ମକାର ପୁଚ୍ଛସ୍ୱରୂପ, ଉକାର ବାମପକ୍ଷସ୍ୱରୂପ ଓ ଅର୍ଦ୍ଧମାତ୍ରା ମସ୍ତକସ୍ୱରୂପ । ହଂସରୂପୀ ପ୍ରଣବର ରଜଃ ଓ ତମୋଗୁଣ ପାଦସ୍ୱରୂପ, ସତ୍ତ୍ୱଗୁଣ ଶରୀରସ୍ୱରୂପ । ଧର୍ମ ଦକ୍ଷିଣ ନେତ୍ର ଓ ଅଧର୍ମ ବାମନେତ୍ର । ଏହାର ପାଦଦେଶରେ ଭୂର୍ଲୋକ ଅବସ୍ଥିତ, ଜାନୁଦେଶରେ ଭୁବର୍ଲୋକ, କଟୀଦେଶରେ ସ୍ୱର୍ଲୋକ ଓ ନାଭିଦେଶରେ ମହର୍ଲୋକ, ହୃଦୟଦେଶରେ ଜନଲୋକ, କଣ୍ଠଦେଶରେ ତପଲୋକ ଏବଂ ଭ୍ରୂ ଓ ଲଲାଟର ମଧ୍ୟଦେଶରେ ସତ୍ୟଲୋକ ଅବସ୍ଥିତ ଅଛି । ଓଁକାରରୂପକ ମନ୍ତ୍ର ଅନ୍ୟାନ୍ୟ ସହସ୍ରସଂଖ୍ୟକ ମନ୍ତ୍ର ଅପେକ୍ଷା ଶ୍ରେଷ୍ଠ, ଅର୍ଥାତ୍ ଅନ୍ୟ ମନ୍ତ୍ରର ଉପାସନାଦ୍ୱାରା ଯେଉଁ ଫଳ ଲାଭ ହୁଏ, ତାହା ଅପେକ୍ଷା ଏହି ମନ୍ତ୍ର ଉପାସନାରେ ଅତ୍ୟଧିକ ଫଳଲାଭ ହୁଏ । ଯେଉଁମାନେ ଯୋଗସାଧନାରେ ଓଁକାରକୁ ହଂସରୂପରେ କଳ୍ପନା କରି ନିଜ ଯୋଗସିଦ୍ଧିରେ ବ୍ରତୀ ହୁଅନ୍ତି, ସେମାନେ ପୂର୍ବୋକ୍ତ ପ୍ରକାରରେ ପ୍ରଣବର ଧ୍ୟାନଦ୍ୱାରା ସ୍ୱର୍ଗାଦିଲୋକକୁ ଗମନ କରନ୍ତି । *

ବର୍ତ୍ତମାନ ଓଁକାରର ଦେବତାତ୍ତ୍ୱକଳ୍ପନା ବିଷୟରେ ଉପନିଷଦ୍ ବଚନ—

"ଆଗ୍ନେୟୀ ପ୍ରଥମା ମାତ୍ରା ବାୟବ୍ୟୈଷା ବଶାନୁଗା ।
ଭାନୁମଣ୍ଡଳସଙ୍କାଶା ଭବେନ୍ମାତ୍ରା ତଥୋତ୍ତରା
ପରମା ଚାର୍ଦ୍ଧମାତ୍ରା ଯା ବାରୁଣୀଂ ତାଂ ବିଦୁର୍ବୁଧାଃ ॥ ନା: ଉ: ୬ । ୭ ।

---

* ବାୟୁପୁରାଣରେ ମଧ୍ୟ ଉକ୍ତ ଅଛି ଯେ, ଓଁକାର ହିଁ ତ୍ରିଦେବ, ତ୍ରିଲୋକ, ଅଗ୍ନିତ୍ରୟ, ଋକ୍-ସାମ-ଯଜୁଃରୂପକ ବେଦତ୍ରୟୀ, ତ୍ରିବିକ୍ରମଙ୍କର ପଦତ୍ରୟସ୍ୱରୂପ । ପ୍ରକୃତପକ୍ଷରେ ଏହି ଓଁକାରର ଚାରୋଟି ମାତ୍ରା । ଯୋଗୀ ଉକ୍ତ ଓଁକାର ସାଧନାରେ ରତ ହେଲେ ସାଲୋକ୍ୟ ମୁକ୍ତିଲାଭ କରେ— ।

"ଓଁ ଇତ୍ୟେତତ୍ତ୍ରୟୋ ବେଦାସ୍ତ୍ରୟୋ ଲୋକାସ୍ତ୍ରୟୋଽଗ୍ନୟଃ ।
ବିଷ୍ଣୁକ୍ରମାସ୍ତ୍ରୟସ୍ତ୍ୱେତେ ଋକ୍ସାମାନି ଯଜୂଂଷି ଚ ॥
ମାତ୍ରାଶ୍ଚାତ୍ର ଚତସ୍ରସ୍ତୁ ବିଜ୍ଞେୟାଃ ପରମାର୍ଥତଃ ।
ତତ୍ରଯୁକ୍ତସ୍ୟ ଯୋ ଯୋଗୀ ତସ୍ୟ ସାଲୋକ୍ୟତାଂ ବ୍ରଜେତ୍" ॥

ବାୟୁ ପୁ: ୨୦ । ୭-୮ ।

ଓଁକାର ମାତ୍ରାଚତୁଷ୍ଟୟର ଦେବତା ଏହିପରି— ଓଁକାରର ପ୍ରଥମମାତ୍ରାର ଦେବତା ଅଗ୍ନି, ଦ୍ୱିତୀୟମାତ୍ରା ପ୍ରଥମ ଓ ଦ୍ୱିତୀୟର ବଶକାରିଣୀହେତୁରୁ ଏହାର ଦେବତା ବାୟୁ, ତୃତୀୟମାତ୍ରା ପ୍ରକାରର ଦେବତା ସୂର୍ଯ୍ୟ ଏବଂ ଉତ୍କୃଷ୍ଟ ଅର୍ଦ୍ଧମାତ୍ରାର ଦେବତାରୂପରେ ବରୁଣଙ୍କୁ ଜ୍ଞାନୀମାନେ ନିର୍ଦ୍ଦେଶ କରିଛନ୍ତି ।

"ଓଁକାର * ଏବେଦଂ ସର୍ବମ୍ ॥

ମହାବାକ୍ୟ ରତ୍ନାବଳୀ: ୧୬ । ୧ ।

ଏହିପରି ଦୃଶ୍ୟମାନ ସକଳପ୍ରପଞ୍ଚ, ଯାହା ଇଦଂପଦବାଚ୍ୟ ବା ଅଭିଧାନ ଓ ଅଭିଧେୟରୂପକ ଅବିଦ୍ୟା ଓ ତତ୍‌କାର୍ଯ୍ୟ ଓଁକାର-ପଦବାଚ୍ୟ ।

## ୦—ପ୍ରଣବରୁ ଅତୀତ ବିଶୁଦ୍ଧାତ୍ମସ୍ୱରୂପର ନିରୂପଣ ।

ପ୍ରଣବରୁ ଅତୀତ ହୋଇ ସର୍ବୋର୍ଦ୍ଧ୍ୱରେ ଅମାତ୍ରନାମରେ ଗୋଟିଏ ପାଦ ଅଛି, ଯାହା ଅଜ୍ଞେୟ-ଅମେୟ ପରଂବ୍ରହ୍ମଙ୍କ ସୂଚକ ।

--- 

* ସ୍ୱାମୀ ଶ୍ରୀବିଶୁଦ୍ଧାନନ୍ଦ ସରସ୍ୱତୀ ସ୍ୱରଚିତ କପିଳ-ଗୀତା ନାମକ ଗ୍ରନ୍ଥରେ ଏହି ପ୍ରଣବର ବିଶଦ ବ୍ୟାଖ୍ୟା କରି ପ୍ରଣବକୁ ଏକାଧାରରେ ସର୍ବଜନ୍ମେଷ୍ଟ ବୋଲି ବର୍ଣ୍ଣନା କରିଅଛନ୍ତି । ଅଧିକନ୍ତୁ— ପଞ୍ଚବ୍ରହ୍ମ, ପଞ୍ଚଦେବ, ପଞ୍ଚସ୍ଥାନ, ପଞ୍ଚମାତୃକା, ପଞ୍ଚଶରୀର, ପଞ୍ଚଦେହ, ପଞ୍ଚବେଦ, ପଞ୍ଚଭୂତ, ପଞ୍ଚନିଷ୍ଠା, ପଞ୍ଚଶୂନ୍ୟ, ପଞ୍ଚକଳା, ପଞ୍ଚମୁଦ୍ରା, ପଞ୍ଚନାଦ, ପଞ୍ଚବିନ୍ଦୁ—ଏହିସବୁ ପ୍ରଣବରେ ସନ୍ନିବିଷ୍ଟ ; କିନ୍ତୁ ପରଂବ୍ରହ୍ମ ପରମାତ୍ମା ପ୍ରଣବାତୀତ ହୋଇ ରହିଛନ୍ତି । ଏ ବିଷୟରେ ବିଶୁଦ୍ଧାନନ୍ଦଙ୍କ ଅଧିକବ୍ୟାଖ୍ୟା ଏହିପରି—

"ତାରକଂ ଦଣ୍ଡକଂ ଚୈବ କୁଣ୍ଡଳଂ ଚାର୍ଦ୍ଧଚନ୍ଦ୍ରକମ୍ ।
ପଞ୍ଚମଂ ବିନ୍ଦୁସଙ୍କାଶଂ ପଞ୍ଚବ୍ରହ୍ମସନାତନମ୍ ॥
ବ୍ରହ୍ମା ବିଷ୍ଣୁଶ୍ଚ ରୁଦ୍ରଶ୍ଚ ଈଶ୍ୱରଶ୍ଚ ସଦାଶିବଃ ।
ପଞ୍ଚଦେବନ୍ତୁ ବିଖ୍ୟାତଂ ପଞ୍ଚବ୍ରହ୍ମସ୍ୱରୂପବତ୍ ॥
ଅକାରଶ୍ଚ ଉକାରଶ୍ଚ ମକାରଶ୍ଚ ତ୍ରିମାତୃକମ୍ ।
ଇକାରଶ୍ଚୈବ ଏକାରଃ ପଞ୍ଚକଂ ମାତୃସଞ୍ଜ୍ଞିତମ୍ ॥
ଅଧଃଶୂନ୍ୟଂ ତାରକଞ୍ଚ ଊର୍ଦ୍ଧ୍ୱଶୂନ୍ୟଞ୍ଚ ଦଣ୍ଡକମ୍ ।
କୁଣ୍ଡଳ୍ୟଂ ମଧ୍ୟଶୂନ୍ୟଞ୍ଚ ସର୍ବଶୂନ୍ୟାର୍ଦ୍ଧଚନ୍ଦ୍ରକମ୍ ॥
ବିନ୍ଦୁଶ୍ଚୈବ ମହାଶୂନ୍ୟଂ ପ୍ରଣବୋ ବିଶ୍ୱତୋମୁଖଃ ।
ଶୂନ୍ୟାତୀତଃ ପରାତ୍ପରେ ଅକ୍ଷରଂ ବ୍ରହ୍ମ ଉଚ୍ୟତେ ॥
ପ୍ରଣବଃ ପରରୂପୋଽୟଂ କାରଣଂ ବ୍ରହ୍ମଧାରଣମ୍ "

ଅ: ୩ । ୨୮—୩୦ ।

"ଅମାତ୍ରଶ୍ଚତୁର୍ଥଃ ଅବ୍ୟବହାର୍ଯ୍ୟଃ ପ୍ରପଞ୍ଚୋପଶମଃ ଶିବୋଽଦ୍ୱୈତଃ ।"
ମାଣ୍ଡୂକ୍ୟ ୧୨ ।

ଅର୍ଥାତ୍ ଓଁକାରର ଚତୁର୍ଥମାତ୍ରା ଅମାତ୍ର ଓ ଅବ୍ୟବହାର୍ଯ୍ୟ; ସେଠାରେ ପ୍ରପଞ୍ଚର ଉପଶମ ହୋଇଥାଏ । ସେ ସର୍ବଦା ମଙ୍ଗଳମୟ ଅଦ୍ୱୈତ ଅଟନ୍ତି; ଏହାହିଁ ପରଂପଦ ।

ପୁନଶ୍ଚ—

"ନାନ୍ତଃପ୍ରଜ୍ଞଂ ନ ବହିଃପ୍ରଜ୍ଞଂ ନୋଭୟତଃ ପ୍ରଜ୍ଞଂ ନ ପ୍ରଜ୍ଞାନଘନଂ ନ ପ୍ରଜ୍ଞଂ ନାପ୍ରଜ୍ଞମଦୃଷ୍ଟମବ୍ୟବହାର୍ଯ୍ୟମଗ୍ରାହ୍ୟମଲକ୍ଷଣମଚିନ୍ତ୍ୟମବ୍ୟପଦେଶ୍ୟମେକାତ୍ମପ୍ରତ୍ୟୟସାରଂ ପ୍ରପଞ୍ଚୋପଶମଂ ଶାନ୍ତଂ ଶିବମଦ୍ୱୈତଂ ଚତୁର୍ଥଂ ମନ୍ୟନ୍ତେ ସ ଆତ୍ମା ସ ବିଜ୍ଞେୟଃ" ॥ ମାଣ୍ଡୂକ୍ୟ ଉ:-୭ ।

ଅର୍ଥାତ୍—ସେ ଅନ୍ତଃପ୍ରଜ୍ଞ ନୁହଁନ୍ତି; କାରଣ, ତୈଜସହିଁ ଅନ୍ତଃପ୍ରଜ୍ଞ, ଅର୍ଥାତ୍ ଅନ୍ତଃସ୍ଥ ସୂକ୍ଷ୍ମବିଷୟଭୋଗୀ । ବହିଃପ୍ରଜ୍ଞ ମଧ୍ୟ ନୁହଁନ୍ତି ; କାରଣ ବିଶ୍ୱହିଁ ବାହ୍ୟ ବିଷୟସମୂହ ଭୋଗ କରେ । ସେ ଉଭୟପ୍ରଜ୍ଞ ନୁହଁନ୍ତି; ଅର୍ଥାତ୍ ଜାଗ୍ରତ ଓ ସ୍ୱପ୍ନାବସ୍ଥାର ମଧ୍ୟବର୍ତ୍ତୀ ଅବସ୍ଥା ତାଙ୍କଠାରେ ନାହିଁ । ସେ ପ୍ରକୃଷ୍ଟ ଜ୍ଞାନମୂର୍ତ୍ତି ନୁହଁନ୍ତି; କାରଣ, ସୁଷୁପ୍ତି କାଳରେ ଜ୍ଞାନର ଉତ୍କର୍ଷ ହୁଏ, ଅତଏବ ଏହି ସୁଷୁପ୍ତି ଅବସ୍ଥା ତାଙ୍କଠାରେ ନାହିଁ, ଅର୍ଥାତ୍ ସେ ପ୍ରାଜ୍ଞ ନୁହଁନ୍ତି । ସେ ଯୁଗପତ୍ ସର୍ବବିଷୟଜ୍ଞ ନୁହଁନ୍ତି, ଅଚେତନ ଓ ଦର୍ଶନେନ୍ଦ୍ରିୟର ଅବିଷୟ, ଅବ୍ୟବହାର୍ଯ୍ୟ; ଯାହାଙ୍କୁ କର୍ମେନ୍ଦ୍ରିୟଗଣ ଗ୍ରହଣ କରିପାରନ୍ତି ନାହିଁ; ସେ ଅନୁମାନର ଅଗୋଚର, ମନର ମଧ୍ୟ ଅଗମ୍ୟ, ଶବ୍ଦ ଯାହାଙ୍କୁ ନିର୍ଦ୍ଦେଶ କରିବାକୁ ସମର୍ଥ ନୁହେଁ । "ସେହି ଆତ୍ମା ଜାଗ୍ରଦାଦି ଅବସ୍ଥାମାନଙ୍କରେ ଏକ ଓ ଅଭିନ୍ନ"—ଏହିପରି ଅବ୍ୟଭିଚାରୀ ଜ୍ଞାନଦ୍ୱାରା ସେ ଲଭ୍ୟ । ଯାହାଙ୍କଠାରେ ଜାଗ୍ରଦାଦିପ୍ରପଞ୍ଚ ନିବୃତ୍ତ ହୋଇଅଛି ; ସେ ରାଗଦ୍ୱେଷାଦିଶୂନ୍ୟ ବିଶୁଦ୍ଧଜ୍ଞାନସ୍ୱରୂପ ଓ ତାଙ୍କଠାରେ ଦ୍ୱୈତଭାବ ରହିପାରେ ନାହିଁ । ଯାହାଙ୍କୁ ବ୍ରହ୍ମବିଦ୍‌ଗଣ "ଚତୁର୍ଥ" ବା ତୁରୀୟ ବୋଲି କହନ୍ତି ସେହି ପରଂବ୍ରହ୍ମ ପରମାତ୍ମାଙ୍କୁ ସମ୍ୟକ୍‌ରୂପରେ ଜାଣିବାକୁ ହେବ, ଅର୍ଥାତ୍ ସେହି କେବଳ ଏକମାତ୍ର ଅବଲମ୍ବନୀୟ ।

ଆହୁରି ମଧ୍ୟ—

ତଦଲକ୍ଷଣମଗ୍ରାହ୍ୟଂ ଯଦ୍‌ବ୍ୟବହାର୍ଯ୍ୟମଚିନ୍ତ୍ୟମବ୍ୟପଦେଶ୍ୟ—ମେକାତ୍ମପ୍ରତ୍ୟୟସାରଂ ପ୍ରପଞ୍ଚୋପଶମଂ ଶିବଂ ଶାନ୍ତମଦ୍ୱୈତଂ ଚତୁର୍ଥଂ ମନ୍ୟନ୍ତେ ॥ ନାରଦପରିବ୍ରାଜକୋପନିଷଦ୍ ୮ । ୨୧ ॥

ଅର୍ଥାତ୍ ସେହି ପ୍ରଣବାଖ୍ୟାତ ଆତ୍ମାଙ୍କର କୌଣସି ଲକ୍ଷଣ ନାହିଁ, ଏହାଙ୍କୁ ବ୍ୟବହାର୍ଯ୍ୟ-ରୂପରେ ଗ୍ରହଣ କରାଯାଏ ନାହିଁ; ସେ ଅଚିନ୍ତ୍ୟ, ଅବ୍ୟପଦେଶ୍ୟ, ଏକମାତ୍ର ଆତ୍ମପ୍ରତ୍ୟୟ ସାର । ସେହି ଆତ୍ମା ଜଗତ୍-ପ୍ରପଞ୍ଚରୁ ଅତୀତ; ସେହି କେବଳ ମଙ୍ଗଳମୟ, ଅଦ୍ୱୈତ ଓ ତୁରୀୟ ବୋଲି ପରିଜ୍ଞାତ ।

ଏହି ପରମାତ୍ମାଙ୍କୁ ଲକ୍ଷ୍ୟ କରି ବେଦାନ୍ତୀ କହେ—

ନିବୃତ୍ତେଃ ସର୍ବଦୁଃଖାନାମୀଶାନଃ ପ୍ରଭୁରବ୍ୟୟମ୍ ।
ଅଦ୍ୱୈ ତଃ ସର୍ବଭାବାନାଂ ଦେବସ୍ତୁର୍ଯ୍ୟୋ ବିଭୁଃ ସ୍ମୃତଃ ॥
କାର୍ଯ୍ୟକାରଣବଦ୍ଧୌ ତାବିଷ୍ୟେତେ ବିଶ୍ୱତୈଜସୌ ।
ପ୍ରାଜ୍ଞଃ କାରଣବଦ୍ଧସ୍ତୁ ଦ୍ୱୌ ତୌ ତୁର୍ଯ୍ୟେ ନ ସିଦ୍ଧ୍ୟତଃ ॥
ନାତ୍ମାନଂ ନାପରାଂଶ୍ଚୈବ ନ ସତ୍ୟଂ ନାଽପି ଚାନୃତମ୍ ।
ପ୍ରାଜ୍ଞଃ କିଞ୍ଚନ ସଂବେତ୍ତି ତୁର୍ଯ୍ୟଂ ତତ୍ ସର୍ବଦୃକ୍ ସଦା ॥
ଦ୍ୱୈ ତସ୍ୟାଗ୍ରହଣଂ ତୁଲ୍ୟମୁଭୟୋଃ ପ୍ରାଜ୍ଞତୁର୍ଯ୍ୟୟୋଃ ।
ବୀଜନିଦ୍ରାଯୁତଃ ପ୍ରାଜ୍ଞଃ ସା ଚ ତୁର୍ଯ୍ୟେ ନ ବିଦ୍ୟତେ ।
ସ୍ୱପ୍ନନିଦ୍ରାଯୁତାବାଦ୍ୟୌ ପ୍ରାଜ୍ଞସ୍ତ୍ୱସ୍ୱପ୍ନନିଦ୍ରୟା ।
ନ ନିଦ୍ରାଂ ନୈବ ଚ ସ୍ୱପ୍ନଂ ତୁର୍ଯ୍ୟେ ପଶ୍ୟନ୍ତି ନିଶ୍ଚିତା ॥

ଗୌଡ଼ପାଦକାରିକା ୧ । ୧୦-୧୪ ।

ଯେ ମାତ୍ରାରହିତସ୍ୱରୂପ—ଓଁକାରରୁ ଅତୀତ ଓ ଚତୁର୍ଥ ପାଦସ୍ୱରୂପ ପରମାତ୍ମା, ସେହି କେବଳ ସର୍ବପ୍ରକାର ଦୁଃଖନିବୃତ୍ତିର ହେତୁ; ସେହି ପରମାତ୍ମାହିଁ ବୈଶ୍ୱାନର, ତୈଜସ ଓ ପ୍ରାଜ୍ଞମାନଙ୍କର ମଧ୍ୟ ସର୍ବପ୍ରକାର ଦୁଃଖ ନିବାରଣ କରନ୍ତି । ଅର୍ଥାତ୍ ସେହି ପ୍ରଣବାଖ୍ୟାତ ପରମାତ୍ମା ସାଧକର ଜ୍ଞାନବିଷୟ ହେଲେ ସକଳପ୍ରକାର ଦୁଃଖର ନିବୃତ୍ତି ହୋଇଯାଏ । ସେ ଅବ୍ୟୟ, ଅର୍ଥାତ୍ ତାଙ୍କର ସ୍ୱରୂପର କେବେ ହେଲେ ଅନ୍ୟଥାଭାବ ହୁଏ ନାହିଁ; ସେହି ପରମାତ୍ମା ସର୍ବଦା ଏକସ୍ୱରୂପରେ ବିଦ୍ୟମାନ । ସେ ସର୍ବତୋଭାବେ ଅଦ୍ୱୈତ । ଯେପରି ରଜ୍ଜୁରେ ସର୍ପଭ୍ରମ ହେଲେ ମଧ୍ୟ କୌଣସିପ୍ରକାରେ ରଜ୍ଜୁ ସର୍ପବୋଲି ଗୃହୀତ ହୁଏନାହିଁ; ସେପରି ଭ୍ରମବଶତଃ ଜଗତ୍ ସତ୍ୟରୂପରେ ଆଭାସ ହେଲେ ମଧ୍ୟ ସେହି ପରମାତ୍ମାହିଁ ପ୍ରକୃତରେ ସତ୍ୟରୂପରେ ପ୍ରକାଶିତ ହେଉ ଅଛନ୍ତି । ଦାର୍ଶନିକ ଭାଷାରେ ସେହି ପରମାତ୍ମା ହିଁ ତୁରୀୟପଦ ବୋଲି ଉଦ୍‌ଘୋଷିତ ହୁଅନ୍ତି । ପରମାତ୍ମାଙ୍କ ତୁରୀୟପାଦ ନିର୍ଣ୍ଣୟ ସକାଶେ ବୈଶ୍ୱାନର, ତୈଜସ ଓ ପ୍ରାଜ୍ଞମାନଙ୍କର ଏପରି ବିଶେଷଭାବରେ ନିରୂପଣ କରାଯାଏ—ବୈଶ୍ୱାନର—ଆନ୍ତର ଅବାନ୍ତର

ବିଶେଷ ନିରୂପଣଦ୍ୱାରା ସେହି ପରମାତ୍ମାଙ୍କର ପରିଜ୍ଞାନ ବ୍ୟକ୍ତ ହୁଏ । ବୈଶ୍ୱାନର ଓ ତୈଜସ— ଏମାନେ କାର୍ଯ୍ୟକାରଣ ଭାବରେ ପରସ୍ପର ଆବଦ୍ଧ ରହିଛନ୍ତି ଏବଂ ପ୍ରାଜ୍ଞ ମଧ୍ୟ କାରଣ ରୂପରେ ଆବଦ୍ଧ ରହିଅଛି; କିନ୍ତୁ ତୁରୀୟପରମାତ୍ମା ବୀଜଭାବରେ ଅବସ୍ଥିତ ଅର୍ଥାତ୍ ଉକ୍ତ କାର୍ଯ୍ୟକାରଣ-ଭାବରୁ ରହିତ ।

ପ୍ରାଜ୍ଞ କାର୍ଯ୍ୟକାରଣ ସଂବଦ୍ଧ; କିନ୍ତୁ ତୁରୀୟବ୍ରହ୍ମ ତଦ୍‌ବିହୀନ ବା ବୀଜରୂପ— ଏ ବିଷୟର ଏହିପରି ନିରୂପଣ କରିଯାଏ—ପ୍ରାଜ୍ଞଆତ୍ମା ପରସତ୍ୟ ଓ ମିଥ୍ୟା କିଛି ଜାଣନ୍ତି ନାହିଁ; କିନ୍ତୁ ତୁରୀୟ ପରମାତ୍ମା ସର୍ବଦା ସକଳ ବିଷୟ ଜାଣି ପାରନ୍ତି, କାରଣ ସେ ସକଳ ପଦାର୍ଥ ସର୍ବଦା ଦର୍ଶନ କରି ପାରନ୍ତି । ସେ ସର୍ବଦୃକ୍, ତାଙ୍କର କୌଣସି ପଦାର୍ଥ ଅଗୋଚର ନୁହେଁ । ଯେପରି ଆକାଶସ୍ଥ ସୂର୍ଯ୍ୟ ସର୍ବଦୃକ୍ ଓ ସକଳ ପଦାର୍ଥ ପ୍ରକାଶ କରେ, ସେପରି ତୁରୀୟବ୍ରହ୍ମ ମଧ୍ୟ ସର୍ବଦ୍ରଷ୍ଟା; ତାଙ୍କର ସେହି ଦୃଷ୍ଟିଶକ୍ତିର କଦାପି ବିଲୋପ ହୁଏ ନାହିଁ । ଯେପରି ତୁରୀୟବ୍ରହ୍ମଙ୍କର ଦ୍ୱୈତଜ୍ଞାନ ହୁଏ ନାହିଁ, ସେପରି ପ୍ରାଜ୍ଞର ମଧ୍ୟ ଦ୍ୱୈତଜ୍ଞାନର ଅଭାବ ଥାଏ; ଏହି ଦୃଷ୍ଟିରେ ଉଭୟ କାରଣ—ଆବଦ୍ଧ ହେବା ସମ୍ଭାବନା କରାଯାଇ ପାରେ । କିନ୍ତୁ ଭେଦ ଏହି ଯେ, ପ୍ରାଜ୍ଞ ବୀଜନିଦ୍ରାଯୁକ୍ତ; କିନ୍ତୁ ତୁରୀୟବ୍ରହ୍ମଙ୍କର ସେହି ବୀଜନିଦ୍ରା ନାହିଁ । ପ୍ରାଜ୍ଞତତ୍ତ୍ୱ ଅପ୍ରତିବୋଧ ନିଦ୍ରାଦ୍ୱାରା ଅଭିଭୂତ ଥାଏ, ଅତଏବ ତାହାର ବିଶିଷ୍ଟରୂପରେ ପ୍ରତିବୋଧ ହୋଇପାରେ ନାହିଁ; କିନ୍ତୁ ତୁରୀୟ ବ୍ରହ୍ମଙ୍କର ସେହି ଅପ୍ରତିବୋଧ ନିଦ୍ରା ନାହିଁ । ସୁତରାଂ ତାହାର ବିଶିଷ୍ଟ ପ୍ରତିବୋଧ ପ୍ରକାଶେ କୌଣସି ପ୍ରତିବନ୍ଧକ ରହେ ନାହିଁ । ଅତଏବ ପ୍ରାଜ୍ଞ କେବଳ କାରଣବଦ୍ଧ; କିନ୍ତୁ ତୁରୀୟ ବ୍ରହ୍ମ କାରଣବଦ୍ଧ ନୁହନ୍ତି । ଏହିସବୁ କାରଣରୁ ପୂର୍ବୋକ୍ତ ଆଶଙ୍କା ଅସମୀଚୀନ ।

ରଜ୍ଜୁରେ ସର୍ପଭ୍ରମ ପରି ଏକପଦାର୍ଥରେ ଅପର ପଦାର୍ଥର ଜ୍ଞାନର ନାମ ସ୍ୱପ୍ନ; କିନ୍ତୁ ତତ୍ତ୍ୱର ଅପ୍ରତିବୋଧର ନାମ ନିଦ୍ରା । ବୈଶ୍ୱାନର ଓ ତୈଜସ—ଉଭୟ ସ୍ୱପ୍ନ ଓ ନିଦ୍ରାଯୁକ୍ତ । ଅତଏବ ସେହି ବୈଶ୍ୱାନର ଓ ତୈଜସ କାର୍ଯ୍ୟକାରଣବଦ୍ଧ । ପ୍ରାଜ୍ଞର ସ୍ୱପ୍ନ ନାହିଁ; କେବଳ ନିଦ୍ରାଦ୍ୱାରା ଅଭିଭୂତ । ଏଥିପ୍ରକାଶେ ସେହି ପ୍ରାଜ୍ଞ କାରଣାବଦ୍ଧ; କିନ୍ତୁ ତୁରୀୟ ବ୍ରହ୍ମରେ ସ୍ୱପ୍ନ ନାହିଁ; ନିଦ୍ରାର ମଧ୍ୟ ଅଭାବ ପ୍ରଶିତ ହୁଏ । ଅତଏବ ତାହାଙ୍କୁ କାର୍ଯ୍ୟକାରଣାବଦ୍ଧ ବା କେବଳ କାରଣାବଦ୍ଧ ମଧ୍ୟ କୁହାଯାଏ ନାହିଁ ।

ଅନ୍ୟଥା ଗୃହ୍ଣତଃ ସ୍ୱପ୍ନୋ ନିଦ୍ରାତତ୍ତ୍ୱମଜାନତଃ ।
ବିପର୍ଯ୍ୟାସେ ତୟୋଃ କ୍ଷୀଣେ ତୁରୀୟଂ ପଦମଶ୍ନୁତେ ॥
ଅନାଦିମାୟୟା ସୁପ୍ତୋ ଯଦା ଜୀବଃ ପ୍ରବୁଧ୍ୟତେ ।
ଅଜମନିଦ୍ରମସ୍ୱପ୍ନମଦ୍ୱୈତଂ ବୁଧ୍ୟତେ ତଦା ॥

ମାଣ୍ଡୁକ୍ୟ-ଗୌଡ଼ପାଦ କାରିକା, ୧।୧୫।୧୬ ।

ଯେପରି ରଜ୍ଜୁରେ ସର୍ପଭ୍ରମ ହେଲେ ରଜ୍ଜୁଠାରେ ରଜ୍ଜୁଜ୍ଞାନର ସମ୍ପୂର୍ଣ୍ଣ ବିଲୋପ—ସାଧିତ ହୁଏ; ସେହିପରି ଯେତେବେଳେ ମନୁଷ୍ୟ ସ୍ୱପ୍ନ ଓ ଜାଗରଣ—ଏହି ଉଭୟର ତତ୍ତ୍ୱଗ୍ରହଣ କରିପାରେ ନାହିଁ, ସେହି ସମୟରେ ସ୍ୱପ୍ନ ହୋଇଥାଏ; ଏବଂ ଯେଉଁ ସମୟରେ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି—ଏହି ଅବସ୍ଥାତ୍ରୟର ତତ୍ତ୍ୱନିର୍ଣ୍ଣୟ ମନୁଷ୍ୟ କରିପାରେ ନାହିଁ ଓ ଅବସ୍ଥାତ୍ରୟ ତୁଳ୍ୟ-ଭାବରେ ଜ୍ଞାତ ହୁଏ, ସେହି ଅବସ୍ଥାର ନାମ ନିଦ୍ରା । ସ୍ୱପ୍ନ ଓ ନିଦ୍ରା—ଏହି ଉଭୟର ବିପର୍ଯ୍ୟାସ କ୍ଷୀଣ ହେଲେ ତୁରୀୟପାଦ ନିର୍ଣ୍ଣିତ ହୋଇଥାଏ । ସ୍ୱପ୍ନ ଓ ନିଦ୍ରା—ଉଭୟ ତୁଲ୍ୟ ହେତୁରୁ ବୈଶ୍ୱାନର ଓ ତୈଜସ—ଏ ଦୁହିଁଙ୍କର ମଧ୍ୟ ଏକତ୍ୱବୋଧ ହୁଏ । ଯେତେବେଳେ ପରମାର୍ଥ-ତତ୍ତ୍ୱର ପ୍ରତିବୋଧ ହୋଇ କାର୍ଯ୍ୟ-କାରଣ ଭାବ କ୍ଷୟପ୍ରାପ୍ତ ହୁଏ, ସେତେବେଳେ ସେହି ତୁରୀୟ ବ୍ରହ୍ମଙ୍କର ନିର୍ଣ୍ଣିତ ଜ୍ଞାନ ହୁଏ । ଯେତେବେଳେ ସଂସାରୀ ଜୀବ ଅନାଦିମାୟାଦ୍ୱାରା ପ୍ରସୁପ୍ତ ହୋଇ ପରେ ପ୍ରତିବୋଧ ଲାଭ କରେ, ସେତେବେଳେ ଅଜ, ଅନିଦ୍ର, ଅସ୍ୱପ୍ନ ଓ ଅଦ୍ୱୈତ ତୁରୀୟବ୍ରହ୍ମଙ୍କୁ ଜାଣିପାରେ । ଯେଉଁ ସମୟରେ ଜୀବ ସଂସାରମଧ୍ୟରେ ଥାଏ, ସେ ସମୟରେ ଅନାଦିମାୟା-ସ୍ୱରୂପ ସ୍ୱପ୍ନ (ଅର୍ଥାତ୍ ମୋର ପିତା, ମୋର ପୁତ୍ର, ମୋର ପଶୁ, ଏମାନଙ୍କ ସୁଖରେ ମୁଁ ସୁଖୀ ଓ ଏମାନଙ୍କ ଦୁଃଖରେ ମୁଁ ଦୁଃଖୀ—ଇତ୍ୟାଦି ସ୍ୱପ୍ନ) ଦର୍ଶନ କରି ଜାଗ୍ରତ ଓ ସ୍ୱପ୍ନା-ବସ୍ଥାରେ ସେ ସୁଷୁପ୍ତ ଥାଏ; ଅର୍ଥାତ୍ ପୁତ୍ରକଳତ୍ରାଦିମାୟାସମାଚ୍ଛନ୍ନ ହୋଇ ତତ୍ତ୍ୱ ପର୍ଯ୍ୟାଲୋଚନା କରିପାରେ ନାହିଁ । ପରନ୍ତୁ ବେଦାନ୍ତତତ୍ତ୍ୱପାରଦର୍ଶୀ ପରମହିତୈଷୀ କରୁଣାମୟ ଗୁରୁ ଉକ୍ତ ପୁତ୍ରାଦିର ଅସାରତ୍ୱ ପ୍ରତିପାଦନପୂର୍ବକ "ତତ୍ତ୍ୱମସି" ଇତ୍ୟାଦି ବାକ୍ୟ ଉପଦେଶ ଦେଇ ସେହି ସଂସାରୀ ଜୀବକୁ ପ୍ରକୃତ ଜ୍ଞାନ ଦିଅନ୍ତି, ସେ ସମୟରେ ସେହି ସଂସାରୀ ଜୀବ ପ୍ରତିବୋଧିତ ହୁଏ ଏବଂ ସେହି ତୁରୀୟବ୍ରହ୍ମଙ୍କୁ ଜାଣିପାରେ । ସେହି ବ୍ରହ୍ମଜ୍ଞାନ ଲାଭଦ୍ୱାରା ତୁରୀୟବ୍ରହ୍ମଙ୍କର ବାହ୍ୟ ବା ଅଭ୍ୟନ୍ତର ବିକାରରୂପକ ଜନ୍ମାଦି ଲାଭ କରେ ନାହିଁ ।

ପୁନଶ୍ଚ—

"ଓଁକାରବାଚ୍ୟହୀନାତ୍ମା ସର୍ବବାଚ୍ୟବିବର୍ଜିତଃ ।
ସର୍ବବ ପୂର୍ଣ୍ଣରୂପାତ୍ମା ସର୍ବବାତ୍ମାବଶେଷକଃ ।।
ଶୁଦ୍ଧଚୈତନ୍ୟରୂପାତ୍ମା ସର୍ବସିଦ୍ଧି ବିବର୍ଜିତଃ ।
ଆନନ୍ଦାତ୍ମା ପ୍ରିୟୋହ୍ୟାତ୍ମା ମୋକ୍ଷାତ୍ମା ବନ୍ଧବର୍ଜିତଃ" ।।

ମହାବାକ୍ୟରତ୍ନାବଳୀ ୧୫ । ୨୫ । ୨୮ ।

ସେହି ବ୍ରହ୍ମ ବଚନରୁ ଅତୀତ, ଅତଏବ ଓଁକାରବାଚ୍ୟହୀନ ଓ ବିଶ୍ୱ, ବିରାଟ୍ ବା ଈଶାଦି ଭାବରହିତ । ସେ ଶାନ୍ତ ଓ ମଙ୍ଗଳସ୍ୱରୂପ ହେତୁରୁ ସକଳପ୍ରକାର ବାଚ୍ୟରୁ ଅତୀତ । ସେ ସର୍ବୋତଭାବରେ ଓ ପୂର୍ଣ୍ଣରୂପରେ ବିରାଜିତ । ସେ ସାର୍ବହିକ— ଆତ୍ମାସ୍ୱରୂପରେ ନିତ୍ୟସିଦ୍ଧ

ହେତୁରୁ ଅଣିମାଦିସମସ୍ତ ସିଦ୍ଧିରହିତ; ସେ ଆନନ୍ଦ-ସ୍ୱରୂପ, ପ୍ରିୟ ଓ ବନ୍ଧନରହିତ ମୋକ୍ଷ ସ୍ୱରୂପ ।

"ଶୂନ୍ୟାତ୍ମା ସୂକ୍ଷ୍ମରୂପାତ୍ମା ବିଶ୍ୱାତ୍ମା ବିଶ୍ୱହୀନକଃ ।
ସତ୍ତାମାତ୍ରସ୍ୱରୂପାତ୍ମା ନାନ୍ୟତ୍ କିଞ୍ଚିତ୍ ଜଗଦ୍ଭୟମ୍ ॥
ଅପରିଚ୍ଛିନ୍ନରୂପାତ୍ମା ଅଣୁସ୍ଥୂଳାଦିବର୍ଜିତଃ ।
ନାମରୂପବିହୀନାତ୍ମା ପରସଂବିତ୍ ସୁଖାତ୍ମକଃ ॥
ସାକ୍ଷ୍ୟସାକ୍ଷିତ୍ୱହୀନାତ୍ମା କିଞ୍ଚିତ୍ କିଞ୍ଚିନ୍ନକିଞ୍ଚନ ॥
ମୁକ୍ତାମୁକ୍ତସ୍ୱରୂପାତ୍ମା ମୁକ୍ତାମୁକ୍ତ ବିବର୍ଜିତଃ" ॥

ମହାବାକ୍ୟରତ୍ନାବଳୀ—୧୫ । ୨୧-୩୪ ।

ସ୍ୱାତିରିକ୍ତ ପ୍ରପଞ୍ଚରହିତହେତୁରୁ ସେ ଶୂନ୍ୟାତ୍ମା; ସର୍ବବ୍ୟାପକହେତୁରୁ ସୂକ୍ଷ୍ମସ୍ୱରୂପରେ ସେ ବିଶ୍ୱାତ୍ମା; କିନ୍ତୁ ପ୍ରପଞ୍ଚରହିତହେତୁରୁ ସେ ବିଶ୍ୱରହିତ । ସ୍ୱାତିରିକ୍ତ ପ୍ରପଞ୍ଚର ଅଭାବ ହେତୁରୁ ସେ ସତ୍‌ସ୍ୱରୂପ । ତାଙ୍କଠାରେ ଭୟର ହେତୁ କିଛି ନାହିଁ । ସେ ପରିଚ୍ଛେଦ ରହିତ, ଅଣୁ ଏବଂ ସ୍ଥୂଳଭାବବର୍ଜିତ । ସେ ନାମ-ରୂପବିହୀନ ପରମଜ୍ଞାନସ୍ୱରୂପ ଏବଂ ଆନନ୍ଦସ୍ୱରୂପ । ସେ ପ୍ରତିଯୋଗୀ ସହିତ ନିର୍ବିଶେଷ, ଅତଏବ ସାକ୍ଷୀ ଏବଂ ଅସାକ୍ଷୀରୂପକ ଉଭୟଭାବରହିତ, ଅତଏବ ସେହି ବ୍ରହ୍ମଠାରୁ ଅତିରିକ୍ତ କୌଣସି ବସ୍ତୁ ନାହିଁ । ମୁକ୍ତ ଓ ଅମୁକ୍ତ ଆତ୍ମାଠାରୁ ସେ ପରମାର୍ଥଦୃଷ୍ଟିରେ ମୁକ୍ତ-ଅମୁକ୍ତ ବିବର୍ଜିତ ଅଟନ୍ତି, ଅର୍ଥାତ୍ ବିଶୁଦ୍ଧ ନିର୍ବିଶେଷ । ଏହିପରି ଉପର୍ଯ୍ୟୁକ୍ତ ପରମାତ୍ମତତ୍ତ୍ୱ କେବଳ ସକଳବେଦ ଓ ବେଦାନ୍ତର ଚରମତତ୍ତ୍ୱ ଅଟେ ।

ଏହି ଗୁହ୍ୟ ଆତ୍ମତତ୍ତ୍ୱଜ୍ଞାନଦ୍ୱାରା ପରମଶାନ୍ତିରୂପକ ମୁକ୍ତିଲାଭ ସମ୍ଭବ ହୁଏ ।

ଶଙ୍କରାଚାର୍ଯ୍ୟ କହିଛନ୍ତି—

"ଅନ୍ତଃକରଣତଦ୍‌ବୃତ୍ତିଦ୍ରଷ୍ଟୃନିତ୍ୟମବିକ୍ରିୟମ୍ ।
ଚୈତନ୍ୟଂ ଯତ୍ତଦାତ୍ମେତି ବୁଦ୍ଧ୍ୟା ବୁଧ୍ୟସ୍ୱ ସୂକ୍ଷ୍ମୟା ॥
ଏଷ ପ୍ରତ୍ୟକ୍ ସ୍ୱପ୍ରକାଶୋ ନିରଂଶୋଽସଙ୍ଗଃ ଶୁଦ୍ଧଃ ସର୍ବଦୈକସ୍ୱଭାବଃ ।
ନିତ୍ୟାଖଣ୍ଡାନନ୍ଦରୂପୋ ନିରୀହଃ ସାକ୍ଷୀ ଚେତାଃ କେବଳୋ ନିର୍ଗୁଣଶ୍ଚ" ॥

ସ: ସି: ସା: ୪୫୮-୪୫୯ ॥

ଅନ୍ତଃକରଣ ଓ ଅନ୍ତଃକରଣବୃତ୍ତିର ଦ୍ରଷ୍ଟା (ସାକ୍ଷୀ) ନିତ୍ୟ ବିକାରଶୂନ୍ୟ—

ଚୈତନ୍ୟ ହିଁ ଆତ୍ମା । ତାହାଙ୍କୁ ସୂକ୍ଷ୍ମବୁଦ୍ଧିଦ୍ୱାରା ଅବଗତ ହୁଅ । ଏହି ଆତ୍ମା ସ୍ୱୟଂପ୍ରକାଶ, ଅଂଶରହିତ, ସଙ୍ଗଶୂନ୍ୟ, ଶୁଦ୍ଧ, ସର୍ବଦା ଏକରୂପ, ଅବିନଶ୍ୱର, ଅଖଣ୍ଡ ଆନନ୍ଦସ୍ୱରୂପ, ନିର୍ବ୍ୟାପାର, ସାକ୍ଷୀ, ଜ୍ଞାନସ୍ୱରୂପ, କେବଳ ଏବଂ ନିର୍ଗୁଣ ।

"ଅତସ୍ତୌ ମାୟୟା କ୍ଳୃପ୍ତୌ ବନ୍ଧମୋକ୍ଷୌ ନ ଚାତ୍ମନି ।
ନିଷ୍କଳେ ନିଷ୍କ୍ରିୟେ ଶାନ୍ତେ ନିରବଦ୍ୟେ ନିରଞ୍ଜନେ ॥
ଅଦ୍ୱିତୀୟେ ପରେ ତତ୍ତ୍ୱେ ବ୍ୟୋମବତ୍ କଳ୍ପନା କୁତଃ ॥

ବିବେକଚୂଡ଼ାମଣି—୫୭୫ ।

ଅତଏବ ବୁଝାଗଲା ଯେ, ବନ୍ଧ ଓ ମୋକ୍ଷ ମାୟାକଳ୍ପିତ, ଆତ୍ମାଠାରେ ଏହାର ସମ୍ଭାବନା ନାହିଁ । ପରଂବ୍ରହ୍ମସ୍ୱରୂପ ଆତ୍ମା ନିଷ୍କଳ, ନିଷ୍କ୍ରିୟ, ଶାନ୍ତ, ନିରବଦ୍ୟ, ନିରଞ୍ଜନ, ଅଦ୍ୱୟ ଓ ଆକାଶ ବା ଶୂନ୍ୟସ୍ୱରୂପ; ତାଙ୍କଠାରେ ବନ୍ଧମୋକ୍ଷ କଳ୍ପନା କିପରି ସମ୍ଭବ ହେବ ?

"ସକଳନିଗମଚୂଡ଼ାସ୍ୱାନ୍ତସିଦ୍ଧାନ୍ତଗୁହ୍ୟଂ ।
ପରମିଦମତିଗୁହ୍ୟଂ ଦର୍ଶିତଂ ତେ ମୟାଦ୍ୟ ॥
ଅପଗତକଳିଦୋଷଂ କାମନିର୍ମୁକ୍ତବୁଦ୍ଧିଂ ।
ତ୍ୱମନୁବଦ ସକୃତ୍ୟଂ ଭାବୟିତ୍ୱା ମୁମୁକ୍ଷୁମ୍" ॥

ବିବେକଚୂଡ଼ାମଣି—୫୭୭ ।

ଏହି ପରମାତ୍ମ ତତ୍ତ୍ୱଜ୍ଞାନ ବେଦର ଚୂଡ଼ାସ୍ୱରୂପ ଓ ବେଦାନ୍ତର ନିଗୂଢ଼ସିଦ୍ଧାନ୍ତର ରହସ୍ୟ, ସୁତରାଂ ପରମ ଗୁହ୍ୟବିଷୟ । ଆଜି ତୁମ୍ଭ ନିକଟରେ ଏହା ବ୍ୟକ୍ତ କଲୁ ଯେ, ତୁମ୍ଭେ କଳିଦୋଷଶୂନ୍ୟ ଓ ଭୋଗବାସନା ବିଷୟରେ ନିସ୍ପୃହ ମୁମୁକ୍ଷୁ ନିକଟରେ ନିଜେ କୃତକୃତ୍ୟ ହୋଇ ଆତ୍ମତତ୍ତ୍ୱ ବ୍ୟକ୍ତ କର । ଏହି ଆତ୍ମତତ୍ତ୍ୱବିଷୟ ଆଦିତ୍ୟପୁରୁଷ ଯାଜ୍ଞବଲ୍କ୍ୟଙ୍କୁ ଉପଦେଶ ଦେଇଅଛନ୍ତି—

ଅଥ ହ ଯାଜ୍ଞବଲ୍କ୍ୟ ଆଦିତ୍ୟମଣ୍ଡଳପୁରୁଷଂ ପପ୍ରଚ୍ଛ ଭଗବନ୍ନ-ନ୍ତର୍ଲକ୍ଷ୍ୟାଦିକଂ ବହୁଧୋକ୍ତମ୍ । ମୟା ତନ୍ନଜ୍ଞାତମ୍ । ତଦ୍‌ବ୍ରୂହି ମହ୍ୟମ୍ । ତଦୁହୋବାଚ ପଞ୍ଚଭୂତକାରଣଂ ତଡ଼ିତ୍‌କୂଟାଭଂ ତଦ୍‌ବଚ୍ଚତୁଃପୀଠମ୍ । ତନ୍ମଧ୍ୟେ ତତ୍ତ୍ୱପ୍ରକାଶୋ ଭବତି । ସୋଽତିଗୂଢ଼ଃ ଅବ୍ୟକ୍ତଶ୍ଚ । ତଜ୍‌ଜ୍ଞାନ-ପ୍ଳବାଧିରୂଢ଼େନ ଜ୍ଞେୟମ୍ । ତଦ୍‌ବାହ୍ୟାଭ୍ୟନ୍ତର୍ଲକ୍ଷ୍ୟମ୍ । ତନ୍ମଧ୍ୟେ ଜଗଲ୍ଲୀନମ୍ । ତନ୍ନାଦବିନ୍ଦୁକଳାତୀତମଖଣ୍ଡମଣ୍ଡଳମ୍ । ତତ୍ ସଗୁଣନିର୍ଗୁଣ-ସ୍ୱରୂପମ୍ । ତଦ୍‌ବେତ୍ତା ବିମୁକ୍ତଃ ।　　ମଣ୍ଡଳବ୍ରାହ୍ମଣୋପନିଷଦ୍—୧୦ ।

ଅର୍ଥାତ୍ ଯାଜ୍ଞବଲ୍କ୍ୟ ଆଦିତ୍ୟମଣ୍ଡଳସ୍ୱରୂପ ନାରାୟଣଙ୍କୁ ଜିଜ୍ଞାସା କଲେ—ଭଗବନ ! ଆପଣ ଯେଉଁ ଅନ୍ତର୍ଲକ୍ଷ୍ୟର କଥା ବହୁପ୍ରକାରରେ କହିଲେ, ତାହା ମୁଁ କିଛି ବୁଝି ପାରୁନାହିଁ । ମୋତେ ପ୍ରକାଶପୂର୍ବକ କହନ୍ତୁ । ଯାଜ୍ଞ୍ୟବଲ୍କ୍ୟ ଉତ୍ତର ଦେଲେ—ସେହି ଅନ୍ତର୍ଲକ୍ଷ୍ୟ ବ୍ରହ୍ମ ବିଦ୍ୟୁତ୍‌ପୁଞ୍ଜସଦୃଶ; ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟସ୍ୱରୂପକ ଅବସ୍ଥାଚତୁଷ୍ଟୟ ତାହାଙ୍କର ତେଜୋମୟପୀଠ । ସେଥିରେ ତାଙ୍କର ତତ୍ତ୍ୱ ପ୍ରକାଶିତ ହୁଏ । ସେହି ତତ୍ତ୍ୱ ଅତିଗୂଢ଼ ଓ ଅବ୍ୟକ୍ତ (ସେହି ହେତୁରୁ ସମସ୍ତଙ୍କୁ ଦୃଶ୍ୟ ହୁଏ ନାହିଁ) । ଯେଉଁମାନେ ଜ୍ଞାନରୂପ-ଭେଳାର ଆଶ୍ରୟୀ, ସେହିମାନେ କେବଳ ତାହାଙ୍କୁ ଜାଣି ପାରନ୍ତି । ଅର୍ଥାତ୍ ଅଜ୍ଞାନସାଗର ଉତ୍ତୀର୍ଣ୍ଣ ନ ହେଲେ ସେହି ତତ୍ତ୍ୱର ଅଧିଗମ ହୁଏ ନାହିଁ । ତାହା ବାହ୍ୟ ଓ ଅଭ୍ୟନ୍ତରର ଲକ୍ଷ୍ୟ, ଅତଏବ ସେଥି ମଧ୍ୟରେ ଏହି ଜଗତ୍ ଲୀନ ହୋଇଅଛି । ସେହିହେତୁରୁ ଏହାଙ୍କୁ ସବିଶେଷ କୁହାଯାଏ ନାହିଁ । କାରଣ, ସେ ନାଦ, ବିନ୍ଦୁ ଓ କାଳରୁ ଅତୀତ । ସେ ଜଗତର ସୃଷ୍ଟିକାଳରେ ସଗୁଣରୂପରେ ପ୍ରତିଭାତ ହେଲେ ମଧ୍ୟ ପରମାର୍ଥରୂପରେ ସେ ନିର୍ଗୁଣସ୍ୱରୂପ ବିଦ୍ୟମାନ । ଏହିରୂପରେ ସେହି ପରମାତ୍ମାଙ୍କୁ ଯେ ଜାଣିପାରେ, ସେ ପ୍ରକୃତରେ ବିମୁକ୍ତ ପୁରୁଷ ।

"ସର୍ବଂ ପ୍ରଶାନ୍ତମଜମେକମନାଦିମଧ୍ୟଂ
ଭାସ୍ୱନ୍ତଂ (?) ସ୍ୱଦନମାତ୍ରମଚୈତ୍ୟଚିହ୍ନମ୍ ।
ସର୍ବଂ ପ୍ରଶାନ୍ତମିତ ଶବ୍ଦମୟୀ ଚ ଦୃଷ୍ଟି-
ର୍ବୋଧାର୍ଥମେବ ହି ମୁଧୈବ ତଦୋମିତୀଦମ୍" ।

ମହା: ରତ୍ନାବଳୀ, ୧୬ । ୩୮ । ୩୯ ।

ଅର୍ଥାତ୍—ବିକଳ୍ପଶୂନ୍ୟ, ଅଜ, ଏକ, ଆଦିମଧ୍ୟବର୍ଜିତ, ଜ୍ୟୋତିଃସ୍ୱରୂପ, ସ୍ୱାଦ୍ୟ-ସ୍ୱାଦକଭାବରହିତ, ଅସ୍ୱାଦନମାତ୍ର ଜ୍ଞାନସ୍ୱରୂପ, ଚରଭ୍ରାନ୍ତିରହିତ ନିର୍ଗୁଣ ପରଂବ୍ରହ୍ମଙ୍କର ଅବବୋଧନ ନିମନ୍ତେ ଯେଉଁ ଶବ୍ଦମୟ ଓଁକାରୋପଦେଶ, ତାହା ମଧ୍ୟ ପରଂବ୍ରହ୍ମଙ୍କ ନ ଆହରଣ-ସକାଶେ ଅସମର୍ଥ; କାରଣ, ପରଂବ୍ରହ୍ମ ଶବ୍ଦଦ୍ୱାରା ଅବାଚ୍ୟ ଅଟନ୍ତି । ଏହିସବୁ କାରଣରୁ ପୂର୍ବୋକ୍ତ ଅଧ୍ୟାରୋପ-ଅପବାଦ ଓ ଅନ୍ୱୟବ୍ୟତିରେକଆଦି ଯୁକ୍ତିଦ୍ୱାରା ଏକ ବିଶୁଦ୍ଧ ଅଦ୍ୱିତୀୟ ପରମାତ୍ମାଙ୍କର ଅସ୍ତିତ୍ୱ ସ୍ୱୀକୃତ ହୋଇ ତଦ୍‌ବ୍ୟତିରିକ୍ତ ଅନ୍ୟ ସକଳର ଅନିତ୍ୟତ୍ୱ ପ୍ରତିପାଦିତ ହେଲା । ସେହିପରି ପ୍ରଣବ ବା ଓଁକାର ବିଚାର ଅବସରରେ ମଧ୍ୟ କେବଳ ବିଶୁଦ୍ଧାତ୍ମା ଅମାତ୍ର-ଅଲେଖ-ନିର୍ଗୁଣ-ପରମାତ୍ମା ପରଂବ୍ରହ୍ମ ପ୍ରଣବାଶ୍ରିତ ସତ୍ୟ ଓ ନିତ୍ୟସ୍ୱରୂପରେ ସର୍ବାଶ୍ରୟ ହୋଇ ସତତ ବିଦ୍ୟମାନ ଅଛନ୍ତି ।

"ଚୈତନ୍ୟମେବ ତୁ ନିରନ୍ତରମସ୍ୟ ସ୍ୱରୂପମ୍" ।

ପରମାତ୍ମା ପରଂବ୍ରହ୍ମଙ୍କର ସର୍ବକାଳକସ୍ୱରୂପ ଅବଚ୍ଛିନ୍ନ ଚନ୍ମୟମାତ୍ର । ଏହା କେବଳ ପୂର୍ବବର୍ଣ୍ଣିତ ଶ୍ରୁତିବାକ୍ୟ ଓ ଯୁକ୍ତିସମୂହରୁ ନିର୍ଣ୍ଣିତରୂପେ ପ୍ରତିପାଦିତ ହେଲା ।

**୦—ଷଡ଼ବିଧ ଚୈତନ୍ୟର ବ୍ୟାଖ୍ୟା ଓ ବ୍ୟଷ୍ଟି-ସମଷ୍ଟି-ଭାବ ନିର୍ଣ୍ଣୟ ।**

ବର୍ତ୍ତମାନ ସେହି ପରମାତ୍ମାଙ୍କର ଆଶ୍ରୟଚୈତନ୍ୟ ଉପରେ ବିଶ୍ୱବ୍ରହ୍ମାଣ୍ଡରେ ଅଭିବ୍ୟକ୍ତ ହୋଇଅଛି—ତାହା ଏଠାରେ ବର୍ଣ୍ଣିତ ହେଉଛି—ପରମାତ୍ମାଙ୍କର ଆଶ୍ରୟରେ ଜଗତ୍ ଆଶ୍ରିତ ହେଉଛି, ଅତଏବ ଉପନିଷଦ୍ କହେ—

**"ସର୍ବଂ ହ୍ୟେତଦ୍ ବ୍ରହ୍ମ ଅୟମାତ୍ମା ବ୍ରହ୍ମ ।"**

ମାଣ୍ଡୂକ୍ୟ-୨ ।

ଦୃଶ୍ୟମାନ ସମସ୍ତ ଜଗତ୍ ବ୍ରହ୍ମସ୍ୱରୂପ, ଏହି ଆତ୍ମା (ଜୀବ) ମଧ୍ୟ ବ୍ରହ୍ମସ୍ୱରୂପ । ଯେପରି ଆତ୍ମାର ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି—ଏହି ଅବସ୍ଥାତ୍ରୟରେ ସ୍ଥୂଳ, ସୂକ୍ଷ୍ମ ଓ କାରଣ ଉପାଧିକୁ ଲକ୍ଷ୍ୟ କରି ବିଶ୍ୱ, ତୈଜସ ଓ ପ୍ରାଜ୍ଞ ନାମାଦି ହୁଏ, ସେହିପରି ପରମାତ୍ମାଙ୍କର ମଧ୍ୟ ସ୍ଥୂଳ, ସୂକ୍ଷ୍ମ ଓ କାରଣ— ଏହି ଉପାଧିତ୍ରୟ ପ୍ରତି ଲକ୍ଷ୍ୟ ରଖି ନାମ ହୋଇଅଛି—ବିରାଟ୍ ହିରଣ୍ୟଗର୍ଭ ବା ସୂତ୍ରାତ୍ମା ଓ ଈଶ୍ୱର । ଯଥା—

**ବିଶ୍ୱଶ୍ଚ ତୈଜସଶ୍ଚୈବ ପ୍ରାଜ୍ଞଶ୍ଚେତି ଚ ତେ ତ୍ରୟଃ ।**
**ବିରାଟ୍ ହିରଣ୍ୟଗର୍ଭଶ୍ଚ ଈଶ୍ୱରଶ୍ଚେତି ତେ ତ୍ରୟଃ ॥**

ଯୋଗକୁଣ୍ଡଲ୍ୟୁପନିଷଦ୍-ଅ ୩ । ୨୨ ।

ବ୍ୟଷ୍ଟି ଓ ସମଷ୍ଟିର ଭେଦ ବୁଝାଇବା ନିମନ୍ତେ ବେଦାନ୍ତୀ ସାଧାରଣତଃ ବନ ଓ ବୃକ୍ଷର ଏବଂ ଜଳ ଓ ଜଳାଶୟର ଦୃଷ୍ଟାନ୍ତ ଦେଇଥାଏ । ସେହି ଦୃଷ୍ଟାନ୍ତର ସଂକ୍ଷିପ୍ତ ବିବରଣ ଏହିପରି—

**ଇଦମଜ୍ଞାନଂ ବ୍ୟଷ୍ଟିସମଷ୍ଟ୍ୟଭିପ୍ରାୟେଣ**
**ଣୈକମନେକମିତି ଚ ବ୍ୟବହ୍ରିୟତେ ।**

**ତଥାହି ଯଥା ବୃକ୍ଷାଣାଂ ସମଷ୍ଟ୍ୟଭିପ୍ରାୟେଣ**
**ବନମିତ୍ୟେକତ୍ୱବ୍ୟପଦେଶଃ ॥**

**ଯଥା ବା ଜଳାନାଂ ସମଷ୍ଟ୍ୟଭିପ୍ରାୟେଣ**
**ଜଳାଶୟ ଇତି ତଥା ନାନାତ୍ୱେନ**

ପ୍ରତିଭାସମାନଜୀବଗତାଜ୍ଞାନାନାଂ

ସମଷ୍ଟ୍ୟଭିପ୍ରାୟେଣ ତଦେକତ୍ୱ-ବ୍ୟପଦେଶଃ ॥

"ଅଜାମେକାମ୍"—ଇତ୍ୟାଦଶ୍ରୁତେଃ । ଇୟଂ ସମଷ୍ଟିରୁତ୍କୃଷ୍ଟୋପାଧି ତୟା ବିଶୁଦ୍ଧସତ୍ତ୍ୱପ୍ରଧାନା । ଏତଦୁପହିତଂ ଚୈତନ୍ୟଂ ସର୍ବଜ୍ଞତ୍ୱ-ସର୍ବେଶ୍ୱରତ୍ୱ-ସର୍ବନିୟନ୍ତୃତ୍ୱାଦିଗୁଣକଂ ସଦସଦବ୍ୟକ୍ତଂ ଅନ୍ତର୍ଯ୍ୟାମୀ ଜଗତ୍-କାରଣଂ ଈଶ୍ୱର ଇତି ଚ ବ୍ୟପଦିଶ୍ୟତେ । ସକଳାଜ୍ଞାନାବଭାସକତ୍ୱାତ୍ ଅସ୍ୟ ସର୍ବଜ୍ଞତ୍ୱମ୍ । "ଯଃ ସର୍ବଜ୍ଞଃ ସର୍ବବିଦ୍"—ଇତି ଶ୍ରୁତେଃ ।

ବେଦାନ୍ତସାର-୨୭ ।

ଅର୍ଥାତ୍ ବନଭୂଲ୍ୟ ସମଷ୍ଟିଭାବ ସ୍ୱୀକାର କଲେ ଏହି ଅଜ୍ଞାନ ଏକ ବୋଲି ଗୃହୀତ ହୁଏ ଓ ବୃକ୍ଷତୁଲ୍ୟ ବ୍ୟଷ୍ଟିଭାବ ସ୍ୱୀକାରରେ ଏହା ଅନେକ ବୋଲି ନିର୍ଦ୍ଦିଷ୍ଟ ହୁଏ । ଯେପରି କୌଣସି ବନରେ ବହୁବୃକ୍ଷ ଥିଲେ ମଧ୍ୟ 'ବନ' ଶବ୍ଦଦ୍ୱାରା ସକଳ ବୃକ୍ଷର ଜ୍ଞାନ ହୁଏ ଏବଂ ବହୁ ନଦନଦୀର ସମଷ୍ଟି ହେଲେ ମଧ୍ୟ ଯେପରି 'ଜଳାଶୟ' କହିବାଦ୍ୱାରା ସେହି ନଦନଦୀମାନଙ୍କର ପୃଥକ୍ ଜ୍ଞାନ ନ ହୋଇ କେବଳ ସମଷ୍ଟିଜ୍ଞାନ ହୁଏ, ସେହିପରି ପ୍ରତ୍ୟେକ ଜୀବଗତ ଅଜ୍ଞାନ ଅନ୍ତଃକରଣୋପାଧିଭେଦରେ ବହୁବିଧ ହେଲେ ସୁଦ୍ଧା ସମଷ୍ଟିଦ୍ୱାରା ଏକ ଓ ବ୍ୟଷ୍ଟିସ୍ୱୀକାରରେ ଅନେକ ବୋଲି ନିର୍ଦ୍ଦିଷ୍ଟ ଓ ବ୍ୟବହୃତ ହୁଏ । ସମଷ୍ଟିଜ୍ଞାନ ବିଷୟରେ ଶ୍ରୁତିବଚନ ମଧ୍ୟ କହେ ଯେ, ଈଶ୍ୱର ନାନାପ୍ରକାର ମାୟାଦ୍ୱାରା ବହୁବିଧ ସୃଷ୍ଟି କରନ୍ତି । ସମଷ୍ଟି ଓ ବ୍ୟଷ୍ଟିଭେଦରେ ଅଜ୍ଞାନକୁ ଦୁଇଭାଗରେ ବିଭକ୍ତ କରାଯାଇଅଛି । ଦ୍ୱିତୀୟତଃ ଏହି ଅଜ୍ଞାନ ଆହୁରି ମଧ୍ୟ ଦୁଇ ଅଂଶରେ ବିଭକ୍ତ—ବିଶୁଦ୍ଧସତ୍ତ୍ୱପ୍ରଧାନ ଓ ମଳିନସତ୍ତ୍ୱପ୍ରଧାନ; ମଳିନସତ୍ତ୍ୱପ୍ରଧାନ ଅଜ୍ଞାନରେ ଚୈତନ୍ୟ ପ୍ରତିଫଳିତ ହେଲେ ଅସର୍ବଜ୍ଞ ଓ ଅନୀଶ୍ୱର ଜୀବରୂପରେ ପରିଗଣିତ ହୁଏ; କିନ୍ତୁ ସେହି ଚୈତନ୍ୟ ବିଶୁଦ୍ଧସତ୍ତ୍ୱପ୍ରଧାନ ଅଜ୍ଞାନରେ ପ୍ରତିଫଳିତ ହେଲେ ସର୍ବଜ୍ଞ ଈଶ୍ୱର ବୋଲି ନିର୍ଦ୍ଦିଷ୍ଟ ହୁଏ । ଏହି ଅଜ୍ଞାନସମଷ୍ଟି ଯେତେବେଳେ ଉତ୍କୃଷ୍ଟୋପାଧିକ ହୁଏ, ସେତେବେଳେ ସେ ବିଶୁଦ୍ଧସତ୍ତ୍ୱପ୍ରଧାନ ହୋଇଥାଏ । ବିଶୁଦ୍ଧସତ୍ତ୍ୱପ୍ରଧାନ-ଅଜ୍ଞାନସମଷ୍ଟିରେ ଚୈତନ୍ୟ ଉପହିତ ହେଲେ ତାହାଙ୍କୁ ସର୍ବଜ୍ଞତା, ସର୍ବେଶ୍ୱରତା ଓ ସର୍ବନିୟନ୍ତୃତ୍ୱପ୍ରଭୃତି ଗୁଣସମ୍ପନ୍ନ ଓ ସର୍ବବିଦେଦୀପ୍ୟମାନ, ସର୍ବଜୀବପ୍ରବର୍ତ୍ତକ ଅନ୍ତର୍ଯ୍ୟାମୀ ଓ ଜଗତର କାରଣରୂପୀ ଈଶ୍ୱର ବୋଲାଯାଏ, ଈଶ୍ୱର ସମୁଦାୟ ଅଜ୍ଞାନର ପ୍ରକାଶକ, ସେଥି ନିମନ୍ତେ ତାହାଙ୍କୁ ସର୍ବଜ୍ଞ ବୋଲାଯାଏ । ଏ ବିଷୟରେ ଶ୍ରୁତିପ୍ରମାଣ ଅଛି ଯେ, ଯେ ସାମାନ୍ୟ ଓ ବିଶେଷରୂପରେ ସମୁଦାୟ ପଦାର୍ଥ ଜ୍ଞାତ ହୁଅନ୍ତି, ସେ ଅନ୍ତର୍ଯ୍ୟାମୀ ଓ ଯେ ସମସ୍ତଙ୍କର ଅନ୍ତରାତ୍ମା ସେହି କେବଳ ପରମାତ୍ମା ।

**ଇୟଂ ବ୍ୟଷ୍ଟିର୍ନିକୃଷ୍ଟୋପାଧିତୟା ମଳିନସତ୍ତ୍ୱପ୍ରଧାନା । ଏତଦୁପହିତଚୈତନ୍ୟମଲ୍ପଜ୍ଞତ୍ୱାନୀଶ୍ୱରତ୍ୱାଦିଗୁଣକଂ ପ୍ରାଜ୍ଞ ଇତ୍ୟୁଚ୍ୟତେ । ଏକାଜ୍ଞାନାବଭାସକତ୍ୱାଦସ୍ୟ ପ୍ରାଜ୍ଞତ୍ୱଂ ଅସ୍ପଷ୍ଟୋପାଧିତୟା ଅନତିପ୍ରକାଶକତ୍ୱମ୍ ।**

ବେ: ସାର: । ୨୮ ।

ଅର୍ଥାତ୍ ଯେତେବେଳେ ଏହି ଅଜ୍ଞାନ ବ୍ୟଷ୍ଟିଭାବରେ ନିକୃଷ୍ଟୋପାଧିକ ହୁଏ, ସେତେବେଳେ ମଳିନସତ୍ତ୍ୱପ୍ରଧାନ ଓ ଜ୍ଞାନର ପ୍ରତିବନ୍ଧକ ହେତୁରୁ ଜୀବଶବ୍ଦରେ ଅଭିହିତ ହୁଏ । କାରଣ, ବ୍ୟଷ୍ଟିଭାବରେ ପ୍ରତ୍ୟେକ ଜୀବଗତ ହେବାରୁ ଜୀବ ରଜୋଗୁଣ ଓ ତମୋଗୁଣଦ୍ୱାରା ଅଭିଭୂତ ହୁଏ ଓ ତଜ୍ଜନ୍ୟ ମଳିନସତ୍ତ୍ୱଗୁଣପ୍ରଧାନ ହୁଏ । ସତ୍ତ୍ୱଗୁଣରେ ଚୈତନ୍ୟଙ୍କର ସ୍ୱଚ୍ଛ ପ୍ରତିବିମ୍ବ ପ୍ରକାଶିତ ହୁଏ; କିନ୍ତୁ ରଜୋଗୁଣ ଓ ତମୋଗୁଣର ଅସ୍ୱଚ୍ଛତାହେତୁରୁ ଚୈତନ୍ୟଙ୍କର ପ୍ରତିବିମ୍ବ ସେପରି ପ୍ରକାଶିତ ହୁଏ ନାହିଁ । ବିଶୁଦ୍ଧସତ୍ତ୍ୱଗୁଣ-ପ୍ରତିବିମ୍ବିତ ଚୈତନ୍ୟ 'ଈଶ୍ୱର' ଶବ୍ଦବାଚ୍ୟ ଏବଂ ମଳିନସତ୍ତ୍ୱଗୁଣ-ପ୍ରତିବିମ୍ବିତ ଚୈତନ୍ୟ ଜୀବ ଶବ୍ଦବାଚ୍ୟ ହୁଏ । ଏହି ମଳିନସତ୍ତ୍ୱପ୍ରଧାନ-ଅଜ୍ଞାନପ୍ରତିବିମ୍ବିତ ଚୈତନ୍ୟଙ୍କୁ ଅଳ୍ପଜ୍ଞତା—ଅନୀଶ୍ୱରତାପ୍ରଭୃତି ଗୁଣହେତୁରୁ ପ୍ରାଜ୍ଞ * ଅର୍ଥାତ୍ ନିକୃଷ୍ଟଗୁଣସମ୍ପନ୍ନ ବୋଲିଯାଏ ।

ଏହିପରି—

**ଅତ୍ରାପ୍ୟଖିଳସୂକ୍ଷ୍ମଶରୀରମେକ ବୁଦ୍ଧି ବିଷୟତୟା ବନବଜ୍ଜଳାଶୟବଦ୍ ବା ସମଷ୍ଟିଃ ଅନେକବୁଦ୍ଧିବିଷୟତୟା ବୃକ୍ଷବଜ୍ଜଳବଦ୍ ବା ବ୍ୟଷ୍ଟିଶ୍ଚ ଭବତି । ଏତତ୍ସମଷ୍ଟ୍ୟୁପହିତଂ ଚୈତନ୍ୟଂ ସୂତ୍ରାତ୍ମା ହିରଣ୍ୟଗର୍ଭଃ ପ୍ରାଣ ଇତି ଚୋଚ୍ୟତେ ସର୍ବାନୁସ୍ୟୂତତ୍ୱାତ୍ । ଜ୍ଞାନେଚ୍ଛାକ୍ରିୟାଶକ୍ତିମଦପଞ୍ଚୀକୃତପଞ୍ଚମହାଭୂତାଭିମାନିତ୍ୱାଚ ॥**

ବେଦାନ୍ତସାର-୨୮ ।

ଏ ବିଷୟରେ ସମସ୍ତ ସୂକ୍ଷ୍ମଶରୀର ଏକବୁଦ୍ଧିବିଷୟ ହେଲେ ବନ ବା ଜଳାଶୟର ଉଦାହରଣ ତୁଲ୍ୟ ସମଷ୍ଟି ଓ ଅନେକ-ବୁଦ୍ଧିବିଷୟ ହେଲେ ବୃକ୍ଷ ବା ଜଳରେ ଉଦାହରଣ ତୁଲ୍ୟ ବ୍ୟଷ୍ଟି ହୋଇଥାନ୍ତି । ଏହି ସୂକ୍ଷ୍ମଶରୀର-ସମଷ୍ଟିରେ ଉପହିତ ଚୈତନ୍ୟଙ୍କୁ ସୂତ୍ରାତ୍ମା, ହିରଣ୍ୟଗର୍ଭ ଓ ପ୍ରାଣ ବୋଲିଯାଏ । କାରଣ, ସୂତ୍ରାତ୍ମା ନିଖିଳସୂକ୍ଷ୍ମ ଶରୀରରେ ସୂତ୍ରତୁଲ୍ୟ (ପରିବ୍ୟାପ୍ତ) ଓ

* —ପ୍ର—ଅଜ୍ଞ, ଅର୍ଥାତ୍ ପ୍ରାୟ ଅଜ୍ଞ ।

ଅନୁପ୍ରବିଷ୍ଟ ଅଛନ୍ତି ଏବଂ ସେ ଜ୍ଞାନଶକ୍ତି, ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିସମ୍ପନ୍ନ ଓ ଅପଞ୍ଚୀକୃତ ପଞ୍ଚମହାଭୂତାଭିମାନୀ; ଆହୁରି ମଧ୍ୟ ସେ ସବୁଙ୍କ ମାଳାନ୍ତର୍ଗତ ସୂତ୍ରତୁଲ୍ୟ ପରିବ୍ୟାପ୍ତ, ଅତଏବ ତାଙ୍କର ଅପରନାମ ସୂତ୍ରାତ୍ମା; ସେ ଜ୍ଞାନଶକ୍ତିସମ୍ପନ୍ନ ଅନ୍ତଃକରଣରେ ଉପହିତ ହୋଇଅଛନ୍ତି, ଅତଏବ 'ହିରଣ୍ୟଗର୍ଭ' ଶବ୍ଦଦ୍ୱାରା ସେ ଅଭିହିତ ହୁଅନ୍ତି; ସେ କ୍ରିୟାଶକ୍ତିସମ୍ପନ୍ନ ପ୍ରାଣର ଅଧିଦେବତା, ଅତଏବ ପ୍ରାଣଶବ୍ଦଦ୍ୱାରା ମଧ୍ୟ ସେ ଅଭିହିତ ।

"ଏତଦ୍‌ବ୍ୟଷ୍ଟ୍ୟୁପହିତଂ ଚୈତନ୍ୟଂ ତୈଜସୋ ଭବତି ତେଜୋମୟାନ୍ତଃକରଣୋପହିତତ୍ୱାତ୍ ।"

ବେଦାନ୍ତସାର-୪୯ ।

ଅର୍ଥାତ୍ ଏହି ସୂକ୍ଷ୍ମଶରୀରର ବ୍ୟଷ୍ଟିରେ ଅର୍ଥାତ୍ ପ୍ରତ୍ୟେକ ସୂକ୍ଷ୍ମଶରୀରରେ ଯେଉଁ ଚୈତନ୍ୟ ପୃଥକ୍‌ଭାବରେ ଉପହିତ ହୁଅନ୍ତି, ତାହାଙ୍କୁ ତୈଜସ ବୋଲାଯାଏ । ଏହାଙ୍କୁ 'ତୈଜସ' କହିବା କାରଣ ଏହି ଯେ, ସେ ତେଜୋମୟ ଅନ୍ତଃକରଣରେ ପ୍ରତିଫଳିତ ହୁଅନ୍ତି ।

ତା'ପରେ—

ଅତ୍ରାପି ଚତୁର୍ବିଧସ୍ଥୂଳଶରୀରମ୍ । ଏକାନେକବୁଦ୍ଧିବିଷୟତୟା ବନବଦ୍ ଜଳାଶୟବଦ୍ ବା ସମଷ୍ଟିଃ ବୃକ୍ଷବଦ୍ ଜଳବଦ୍ ବା ବ୍ୟଷ୍ଟିରପି ଭବତି । ଏତତ୍ ସମଷ୍ଟ୍ୟୁପହିତଂ ଚୈତନ୍ୟଂ ବୈଶ୍ୱାନରୋ ବିରାଡ଼ିତି ଚୋଚ୍ୟତେ । ସର୍ବନରାଭିମାନିତ୍ୱାଦ୍ ବିବିଧଂ ରାଜମାନତ୍ୱାଚ୍ଚ ଅସ୍ୟୈଷା ସମଷ୍ଟିଃ ସ୍ଥୂଳଶରୀରଂ ଅନ୍ନବିକାରତ୍ୱାଦନ୍ନମୟକୋଷଃ । ସ୍ଥୂଳଭୋଗାୟତନତ୍ୱାଜ୍ଜାଗ୍ରଦିତି ଚୋଚ୍ୟତେ । ବେଦାନ୍ତସାର ୫୭ ।

ଯେପରି ବନ ବୃକ୍ଷସମୂହର ସମଷ୍ଟି ଓ ପ୍ରତ୍ୟେକ ବୃକ୍ଷ ବନର ବ୍ୟଷ୍ଟି ହୁଏ ଏବଂ ଜଳାଶୟ ଜଳର ସମଷ୍ଟି ଓ ଜଳ ମଧ୍ୟ ଜଳାଶୟର ବ୍ୟଷ୍ଟି, ସେହିପରି ଏହି ଚତୁର୍ବିଧ ସ୍ଥୂଳଶରୀର ଏକବୁଦ୍ଧିବିଶିଷ୍ଟ ହେଲେ ସମଷ୍ଟି, କିନ୍ତୁ ଭିନ୍ନ ଭିନ୍ନ ବୁଦ୍ଧିବିଶିଷ୍ଟ ହେଲେ ବ୍ୟଷ୍ଟି କୁହାଯାନ୍ତି । ଏହି ସ୍ଥୂଳଶରୀର-ସମଷ୍ଟିରେ ଉପହିତ ଚୈତନ୍ୟ ସମୁଦାୟ ଦେହର ଅଭିମାନୀ ହେତୁରୁ ବୈଶ୍ୱାନର; କିନ୍ତୁ ଅନେକ ଦେହରେ ପ୍ରକାଶମାନ ହେତୁରୁ ବିରାଟଶବ୍ଦଦ୍ୱାରା କଥିତ ହୁଅନ୍ତି । ଏହି ସମଷ୍ଟିରୂପ ସ୍ଥୂଳଶରୀରରେ ଅନ୍ନବିକାରହେତୁରୁ ତାହାଙ୍କୁ ଅନ୍ନମୟ କୋଷ ମଧ୍ୟ କୁହାଯାଏ; ସ୍ଥୂଳଭୋଗର ଆୟତନହେତୁରୁ ଏହାଙ୍କୁ ଜାଗ୍ରତ-ଅବସ୍ଥା ମଧ୍ୟ କହନ୍ତି ।

"ଏତଦ୍‌ବ୍ୟଷ୍ଟ୍ୟୁପହିତଂ ଚୈତନ୍ୟଂ ବିଶ୍ୱ ଇତ୍ୟୁଚ୍ୟତେ । ସୂକ୍ଷ୍ମ-ଶରୀରାଭିମାନମପରିତ୍ୟଜ୍ୟ ସ୍ଥୂଳଶରୀରାଦପ୍ରବେଷ୍ଟୃତ୍ୱାତ୍ ।।"

ବେଦାନ୍ତସାର-୫୮ ।

ଅର୍ଥାତ୍—ଏହି ବ୍ୟଷ୍ଟୀଭୂତ ସ୍ଥୂଳଶରୀରରେ, ଅର୍ଥାତ୍ ପୃଥକ୍ ପୃଥକ୍ ପ୍ରତ୍ୟେକ ସ୍ଥୂଳଶରୀରରେ ଉପହିତ ଚୈତନ୍ୟଙ୍କୁ ବିଶ୍ୱ ବୋଲିଯାଏ । କାରଣ, ଏହି ଚୈତନ୍ୟ ସୂକ୍ଷ୍ମଶରୀରାଭିମାନ ପରିତ୍ୟାଗ ନ କରି ସ୍ଥୂଳଶରୀରରେ ଅନୁପ୍ରବିଷ୍ଟ ହେବା ହେତୁରୁ ଏହାଙ୍କୁ ବିଶ୍ୱ କହନ୍ତି । ଏହିପରି ବ୍ୟଷ୍ଟି ସମଷ୍ଟି ଭାବରେ ଷଡ଼୍‌ବିଧ ଉପହିତ ଚୈତନ୍ୟର ବ୍ୟାଖ୍ୟା କରାଗଲା । ବନ, ବୃକ୍ଷ, ଜଳ ଓ ଜଳାଶୟର ଉଦାହରଣଦ୍ୱାରା ଓ ବ୍ୟଷ୍ଟି ସମଷ୍ଟି ରୂପକ ଉପମାଦ୍ୱାରା ମଧ୍ୟ ଏହି କଥା ସ୍ପଷ୍ଟ କରିବାପାଇଁ ଚେଷ୍ଟା କରାଗଲେ ମଧ୍ୟ ପ୍ରକୃତ ବିଷୟ ବିଶଦ ହୋଇପାରୁ ନାହିଁ ; କାରଣ, ବୃକ୍ଷରୁ ସ୍ୱତନ୍ତ୍ର ବନର ଅଥବା ଜଳରୁ ସ୍ୱତନ୍ତ୍ର ଜଳାଶୟର କୌଣସି ଅସ୍ତିତ୍ୱ ଅନୁଭୂତ ହୁଏ ନାହିଁ, ଅତଏବ ଏହିସବୁ ଉଦାହରଣର ତାତ୍ପର୍ଯ୍ୟ ବୁଝାଯାଏ ନାହିଁ ।

କିନ୍ତୁ ପାଶ୍ଚାତ୍ୟଦର୍ଶନରେ ଏ ବିଷୟରେ ଏକ ଯୋଗ୍ୟତର ଉଦାହରଣ ଦେଖାଯାଏ । ସେମାନଙ୍କ ମତରେ ସମଷ୍ଟି କେବଳ ଏକ କାଳ୍ପନିକ ପଦାର୍ଥ ବ୍ୟକ୍ତିର ରୂପକାଦର୍ଶ (Idealization) ମାତ୍ର ମଧ୍ୟ ନୁହେଁ । ସମଷ୍ଟିର ସ୍ୱତନ୍ତ୍ର ଅସ୍ତିତ୍ୱ ଅଛି । ଏହି ଦୃଷ୍ଟାନ୍ତ ସେଥିରେ କୋଷାଣୁ (Cell) ବିଷୟରେ ଦିଆଯାଇଛି । ଅର୍ଥାତ୍ କୋଷାଣୁସମଷ୍ଟି ମିଶି ସ୍ଥୂଳଶରୀର ନିର୍ମିତ ହୋଇଅଛି । ପ୍ରତ୍ୟେକ କୋଷାଣୁର ସ୍ୱତନ୍ତ୍ର ଓ ସ୍ୱାଧୀନ ଅସ୍ତିତ୍ୱ ଅଛି । ଅଥଚ କୋଷାଣୁ ସମଷ୍ଟି ଦେହର ଅସ୍ତିତ୍ୱ ହେଲେ ମଧ୍ୟ ସେହି ଅସ୍ତିତ୍ୱ କୋଷାଣୁ ଠାରୁ ସ୍ୱତନ୍ତ୍ର ଓ ସ୍ୱାଧୀନ । ଯେପରି କୋଷାଣୁର ସମଷ୍ଟିରେ ଶରୀର ନିର୍ମିତ ହୋଇଅଛି, ସେହିପରି ସମସ୍ତ ବ୍ୟଷ୍ଟୀଭୂତ ସ୍ଥୂଳ ଶରୀରର ସମଷ୍ଟି ମିଳି ବିରାଟ୍, ସମସ୍ତ ବ୍ୟଷ୍ଟୀଭୂତ ସୂକ୍ଷ୍ମଦେହର ସମଷ୍ଟି ନେଇ ହିରଣ୍ୟଗର୍ଭ ଏବଂ ସମସ୍ତବ୍ୟଷ୍ଟି-କାରଣ ଦେହର ସମଷ୍ଟି ମିଶି ସୂତ୍ରାତ୍ମା-ଶରୀର ଗଠିତ ହୋଇଅଛି । ଏହାଦ୍ୱାରା ପରମେଶ୍ୱରଙ୍କୁ ଶରୀରୀ କୁହାଗଲା ନାହିଁ ।

ଏହାର ଭାବାର୍ଥ ଏହି ଯେ—ଯେତେବେଳେ ଈଶ୍ୱର ସ୍ଥୂଳଜଗତ୍ ନିର୍ମାଣ କରନ୍ତି, ସେତେବେଳେ ସେହି ସ୍ଥୂଳଉପାଧିକୁ ଲକ୍ଷ୍ୟ କରି ତାଙ୍କର ସମ୍ବିତ୍‌ର ନାମ ହୁଏ ବିରାଟ୍ ; ଯେତେବେଳେ ସେ ସୂକ୍ଷ୍ମଜଗତ୍‌ର ନିର୍ମାଣତତ୍ପର, ସେତେବେଳେ ସୂକ୍ଷ୍ମଉପାଧିକୁ ଲକ୍ଷ୍ୟ କରି ତାଙ୍କ ସମ୍ବିତ୍‌ର ନାମ ହୁଏ ହିରଣ୍ୟଗର୍ଭ ଏବଂ ଯେତେବେଳେ କାରଣ-ଜଗତ୍‌ର କ୍ରିୟା କରନ୍ତି, ସେତେବେଳେ କାରଣ-ଉପାଧିକୁ ଲକ୍ଷ୍ୟ କରି, ତାଙ୍କ ସମ୍ବିତ୍‌ର ନାମ ହୁଏ ସୂତ୍ରାତ୍ମା । ଅର୍ଥାତ୍ ସ୍ଥୂଳଜଗତ୍‌ର କର୍ମ କରିବା ସମୟରେ ଈଶ୍ୱରଙ୍କର କରଣ ହୁଏ ଜୀବପୁଞ୍ଜର

ସ୍ଥୂଳଦେହସମଷ୍ଟି ; ଆଉ କାରଣଜଗତର କର୍ମ କରିବା ସମୟରେ ଈଶ୍ୱରଙ୍କର କରଣ ହୁଏ ଜୀବପୁଞ୍ଜର କାରଣ-ଦେହସମଷ୍ଟି ।

ସାଧାରଣ ଜୀବଠାରେ କାରଣଦେହ ପରିସ୍ଫୁଟ ହୁଏ ନାହିଁ । କାରଣଦେହର ପୂର୍ଣ୍ଣ ବିକଶିତ ଜୀବନ୍ମୁକ୍ତ ପୁରୁଷଠାରେ କେବଳ ସମ୍ଭବ । ବସ୍ତୁତଃ ମୁକ୍ତଜୀବମାନଙ୍କର କାରଣ ଦେହସମଷ୍ଟି ନେଇ ଈଶ୍ୱରଙ୍କର କାରଣଶରୀର । ସେମାନେ ପ୍ରତ୍ୟେକେ ଯେପରି ଈଶ୍ୱରଙ୍କର କାରଣଶରୀରର ଏକ ଏକ କୋଷାଣୁ (Cell) । ଯେପରି ସ୍ଥୂଳଦେହର କେନ୍ଦ୍ର ହୃଦୟରୁ ନାନାଦିଗରେ ପ୍ରବାହିତ ଧମନୀସମୂହଦେଇ ଜୀବଶରୀରରେ ରକ୍ତ ସଞ୍ଚାରିତ ହୁଏ, ସେହିପରି ବିଶ୍ୱଦେହର କେନ୍ଦ୍ରସ୍ୱରୂପ ଈଶ୍ୱରଙ୍କଠାରୁ ଧମନୀସ୍ଥାନୀୟ ମୁକ୍ତ ପୁରୁଷମାନଙ୍କର କାରଣଦେହ-ସହଯୋଗରେ ଜଗତ୍‌ସ୍ଥ ତାହାଙ୍କର କରୁଣାରାଶି ବିତରିତ ହୁଏ । ଜୀବନ୍ମୁକ୍ତ ପୁରୁଷ ପରମାତ୍ମାଙ୍କଠାରେ ସମ୍ପୂର୍ଣ୍ଣଭାବରେ ଆତ୍ମସମର୍ପଣ କରିଥାନ୍ତି ଏବଂ ତାଙ୍କର ଯାହାକିଛି ଅଛି, ତାହାସବୁ ସେହି ପରମାତ୍ମାଙ୍କଠାରେ ନିବେଦନ କରନ୍ତି । ଫଳତଃ, ଯେପରି ସ୍ଥୂଳଦେହର ପ୍ରତ୍ୟେକ କୋଷାଣୁ ନିଜର ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ଅକ୍ଷୁର୍ଣ୍ଣରଖି ସ୍ଥୂଳ ଦେହର ପୁଷ୍ଟି ଓ ଉନ୍ନତି ନିମନ୍ତେ ଆତ୍ମସମର୍ପଣ କରେ, ସେହିପରି ପ୍ରତ୍ୟେକ ଜୀବନ୍ମୁକ୍ତ ପୁରୁଷ ନିଜ ନିଜ ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ଅକ୍ଷୁର୍ଣ୍ଣରଖି ସର୍ବତୋଭାବରେ ପରମାତ୍ମାଙ୍କଠାରେ ଆତ୍ମସମର୍ପଣ କରି ଏବଂ ବାହ୍ୟଜଗତର ସକଳ ବ୍ୟାପାରରୁ ବିରତିପୂର୍ବକ ନିଜର କ୍ଷୁଦ୍ରସ୍ୱାର୍ଥ ପରମାତ୍ମାଙ୍କ ଶୁଭ କାର୍ଯ୍ୟରେ ମିଶାଇ ଦେଇ ଜଗତର ମଙ୍ଗଳ ନିମନ୍ତେ ଈଶ୍ୱରଙ୍କର ପ୍ରତିଭୂସ୍ୱରୂପ ପୃଥିବୀରେ ବିଚରଣ କରନ୍ତି । ସେହିମାନେ ହିଁ ଈଶ୍ୱରଙ୍କର ଅଙ୍ଗପ୍ରତ୍ୟଙ୍ଗ । ସେମାନଙ୍କର କାରଣଶରୀର ସମଷ୍ଟିରୂପ ଉପାଧିଯୋଗ ହିଁ ଈଶ୍ୱରଙ୍କର କାରଣ ଦେହ । ଏହିପରି ପରମାତ୍ମାଙ୍କର ଆଭାସ ବ୍ୟଷ୍ଟି ସମଷ୍ଟି ଭାବରେ ଷଡ଼୍‌ବିଧ ଚୈତନ୍ୟ ଆକାରରେ ଶ୍ରୁତିରେ ଅନୁମୋଦିତ ହୋଇଅଛି; କିନ୍ତୁ ସେ ସ୍ୱୟଂ ଅନୁପହିତ ବିଶୁଦ୍ଧ ଭାବରେ ବିଦ୍ୟମାନ ଅଛନ୍ତି । କେବଳ ତାଙ୍କର ପ୍ରତିବିମ୍ବ ଜୀବ ଆକାରରେ ପ୍ରତିଫଳିତ ହୋଇଅଛି—

**ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।**
**କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂର୍ଯାଥାତଥ୍ୟତୋଽର୍ଥାନ୍ ବ୍ୟଦଧାତ୍ ।।**

ଶାଶ୍ୱତୀଭ୍ୟଃ ସମାଭ୍ୟଃ ଈଶ: ଉ: ୮ ।

ଅର୍ଥାତ୍—ଆତ୍ମା ଶୁଭ୍ର, ଅକ୍ଷତ, କାରଣଭୂତ, ସୂକ୍ଷ୍ମ ଓ ସ୍ଥୂଳଶରୀରଶୂନ୍ୟ, ନିର୍ମଳ, ଧର୍ମାଧର୍ମବର୍ଜିତ, ସର୍ବଦର୍ଶୀ, ସର୍ବଜ୍ଞ, ସର୍ବୋପରି ବର୍ତ୍ତମାନ ଓ ସ୍ୱୟମ୍ଭୂ । ସେ ସକଳପଦାର୍ଥ-ମାନଙ୍କରେ ବ୍ୟାପି କରି ଅଛନ୍ତି ଏବଂ ସମ୍ବତ୍ସରାଧିପତି ଶାଶ୍ୱତ ପ୍ରଜାପତିଗଣଙ୍କୁ ସକଳ କର୍ତ୍ତବ୍ୟ ବିଷୟ ପ୍ରଦାନ କରି ଅଛନ୍ତି ।

ସେହି ପରମାତ୍ମାଙ୍କ ଚୈତନ୍ୟପ୍ରତିବିମ୍ବିତ କେବଳ ଆତ୍ମାସ୍ୱରୂପରେ ଆଖ୍ୟାତ—

"ଯୋ ବିମ୍ବଭୂତ ଆନନ୍ଦଃ ସ ଆତ୍ମାନନ୍ଦଲକ୍ଷଣଃ ।
ଶାଶ୍ୱତୋ ନିର୍ଦ୍ୱୟଃ ପୂର୍ଣ୍ଣୋ ନିତ୍ୟ ଏକୋଽପି ନିର୍ଭୟଃ ॥
ଲକ୍ଷ୍ୟତେ ପ୍ରତିବିମ୍ବେନାତ୍ମସାନନ୍ଦେନ ବିମ୍ବବତ୍ ।
ପ୍ରତିବିମ୍ବୋ ବିମ୍ବମୂଲୋ ବିନା ବିମ୍ବଂ ନ ସିଧ୍ୟତି ॥
ଯତ୍ ତତୋ ବିମ୍ବ ଆନନ୍ଦଃ ପ୍ରତିବିମ୍ବେନ ଲକ୍ଷ୍ୟତେ ।
ଯୁକ୍ତ୍ୟୈବ ପଣ୍ଡିତଜନୈର୍ନ କଦାପ୍ୟନୁ ଭୂୟତେ" ॥

ସର୍ବବେଦାନ୍ତ ସିଦ୍ଧାନ୍ତସାରସଂଗ୍ରହ—୬୫୭-୬୫୮ ।

ଯାହା ବିମ୍ବରୂପ ଆନନ୍ଦ, ସେହି କେବଳ ସୁଖସ୍ୱରୂପ ଆତ୍ମା; ତାହାଙ୍କର କ୍ଷୟ ନାହିଁ; ସେ ଦ୍ୱୈତଶୂନ୍ୟ, ପୂର୍ଣ୍ଣ ନିତ୍ୟ ଏବଂ ଏକ ହୋଇ ମଧ୍ୟ ସର୍ବଦା ଭୟଶୂନ୍ୟ । ସେହି ବିମ୍ବଭୂତ-ଆନନ୍ଦ, ଆତ୍ମସାନନ୍ଦରୂପ-ପ୍ରତିବିମ୍ବଦ୍ୱାରା ଲକ୍ଷିତ ହୁଏ । ପ୍ରତିବିମ୍ବ ବିମ୍ବମୂଳକ, ବିମ୍ବବ୍ୟତୀତ ପ୍ରତିବିମ୍ବ ହୋଇପାରେ ନାହିଁ । ଅତଏବ ଯେଉଁ ବିମ୍ବଭୂତ ଆନନ୍ଦ ପ୍ରତିବିମ୍ବରୂପରେ ଲକ୍ଷିତ ହୁଏ, ପଣ୍ଡିତମାନେ ଯୁକ୍ତିଦ୍ୱାରା ସେହିରୂପକୁ ଅନୁଭବ କରି ପାରନ୍ତି ନାହିଁ । ଏହି ପ୍ରତିବିମ୍ବ-ବିଷୟ ପୂର୍ବପାଦରେ

"ଆଭାସ ଏବଚ"

ପ୍ରଭୃତି ଶ୍ରୁତିବଚନଦ୍ୱାରା ବିଶଦୀକୃତ ହୋଇଅଛି । ସେ ବିଷୟ ପୁନରୁଦ୍ଧାର କରିବା ନିଷ୍ପ୍ରୟୋଜନ । ମୁଖ୍ୟତଃ ଉପର୍ଯ୍ୟୁକ୍ତ ଯୁକ୍ତିସମୂହରୁ ସ୍ପଷ୍ଟ ବୁଝା ଯାଉଅଛି ଯେ, ଏକ ଅଦ୍ୱିତୀୟ ଅଲେଖ ନିର୍ଗୁଣ ପରଂବ୍ରହ୍ମ—ପରମାତ୍ମାଙ୍କର ଉପହିତ ଆଭାସ ଚୈତନ୍ୟ ବିଶ୍ୱସୃଷ୍ଟିର ଭେଦାନୁସାରେ ବିଶ୍ୱ, ବୈଶ୍ୱାନର, ତୈଜସ, ହିରଣ୍ୟଗର୍ଭ, ପ୍ରାଜ୍ଞ ଓ ଈଶ୍ୱର—ଏହିପରି ଷଡ଼୍ବିଧାକାରରେ ଅଭିହିତ ହୁଏ । ଏତଦ୍ଭିନ୍ନ ଆଭାସଚୈତନ୍ୟ ଓ କୂଟସ୍ଥ ଚୈତନ୍ୟ ମିଶ୍ରିତ ହୋଇ ଅଷ୍ଟବିଧ ଉପହିତ ଚୈତନ୍ୟ ବୋଲି ପ୍ରତିପନ୍ନ ହୁଅନ୍ତି କିନ୍ତୁ ଅଲେଖ ପରଂବ୍ରହ୍ମ ପରମାତ୍ମା କେବଳ ଅନୁପହିତ ସଚ୍ଚିଦ୍ଘନସ୍ୱାକାରରେ ନିରୁପାଧିକ ହୋଇ ବିଶୁଦ୍ଧ ଭାବରେ ବିଦ୍ୟମାନ ଅଛନ୍ତି ।

## ୦—ତତ୍ତ୍ୱମସି-ପ୍ରଭୃତି ମହାବାକ୍ୟନିରୂପଣ ।

ତତ୍ତ୍ୱମସି—ଆଦିଶ୍ରୁତି ବଚନଦ୍ୱାରା ସେହି ପରଂବ୍ରହ୍ମ-ପରମାତ୍ମା କିପରି ଅବଗତ ହୁଅନ୍ତି, ସେ ବିଷୟ ବର୍ତ୍ତମାନ କୁହାଯାଉଛି—

"ଏତେଷାଂ ସ୍ଥୂଳସୂକ୍ଷ୍ମକାରଣଶରୀରପ୍ରପଞ୍ଚାନାଂ ସମଷ୍ଟିରେକୋ ମହାନ୍ ପ୍ରପଞ୍ଚୋ ଭବତ—ଯଥା ଅବାନ୍ତରବନାନାଂ ସମଷ୍ଟିରେକଂ ମହଦ୍‌ବନମ୍ । ଯଥା ବା ଅବାନ୍ତରଜଳାଶୟାନାଂ ସମଷ୍ଟିରେକୋ ମହାନ୍ ଜଳାଶୟଃ । ତଦୁପହିତଂ ବିଶ୍ୱବୈଶ୍ୱାନରାଦୀଶ୍ୱରପର୍ଯ୍ୟନ୍ତଂ ଚୈତନ୍ୟମପି ଅବାନ୍ତରବନାବଚ୍ଛିନ୍ନାକାଶବଦବାନ୍ତରଜଳାଶୟଗତ-ପ୍ରତିବିମ୍ବାକାଶବଚ୍ଚ ଏକମେବ" ॥

ବେଦାନ୍ତସାର-୭୧ ।

ଏହି ସ୍ଥୂଳ, ସୂକ୍ଷ୍ମ ଓ କାରଣଶରୀର ପ୍ରପଞ୍ଚ ସମୁଦାୟର ସମଷ୍ଟିକୁ ଏକତ୍ର ଏକ ମହାନ୍ ପ୍ରପଞ୍ଚ ବୋଲାଯାଏ । ଯେପରି ଧବ-ଖଦିର-ପଲାଶାଦିର ସମଷ୍ଟି ଏକ ମହାବନ ହୁଏ ଏବଂ ବାପୀ, କୂପ, ତଡ଼ାଗାଦିର ସମଷ୍ଟି ଏକ ମହାନ୍ ଜଳାଶୟ ବୋଲି ପରିଗଣିତ ହୁଏ ; ସେହିପରି ଏହି ମହାନ୍ ଜଗତ୍ ମଧ୍ୟ ତଦ୍ରୂପ । ଏହି ମହାପ୍ରପଞ୍ଚରେ ଉପହିତ ବିଶ୍ୱ ଓ ବୈଶ୍ୱାନର, ତୈଜସ ଓ ହିରଣ୍ୟଗର୍ଭ, ପ୍ରାଜ୍ଞ ଓ ଈଶ୍ୱର— ଏହି ସମୁଦାୟର ଚୈତନ୍ୟ ମଧ୍ୟ ଏକ । ଯେପରି ଧବ-ଖଦିର-ପଲାଶାଦିବନାନ୍ତର୍ଗତ ଭିନ୍ନ ଭିନ୍ନ ବୃକ୍ଷରେ ଅବଚ୍ଛିନ୍ନ ଆକାଶ ଓ ସେ ସମୁଦାୟର ସମଷ୍ଟିରୂପ ସମସ୍ତ ବନାବଚ୍ଛିନ୍ନ ଆକାଶ—ଉଭୟ ଏକ ଓ ଅଭିନ୍ନ ଆକାଶ କେବଳ ; ଅଥବା ଯେପରି ବାପୀ-କୂପ-ତଡ଼ାଗାଦି ପ୍ରତ୍ୟେକ ଜଳାଶୟର ପରିବ୍ୟାପ୍ତ ଆକାଶ ଓ ପୂର୍ବୋକ୍ତ କୂପ-ତଡ଼ାଗାଦିସମଷ୍ଟି ରୂପରେ ଅବଚ୍ଛିନ୍ନ ଆକାଶ ଏକ ଅଭିନ୍ନ, ସେହିପରି ଉକ୍ତ ଭିନ୍ନ ଭିନ୍ନ ଶରୀରଗତ ଚୈତନ୍ୟ ସମୁଦାୟ ମଧ୍ୟ ଏକ ଅର୍ଥାତ୍ ଅଭିନ୍ନ ଅଟନ୍ତି ।

"ଆଭ୍ୟାଂ ମହାପ୍ରପଞ୍ଚତଦୁପହିତଚୈତନ୍ୟାଭ୍ୟାଂ ତପ୍ତାୟଃପିଣ୍ଡ-ବଦବିଭକ୍ତଂ ସତ୍ ଅନୁପହିତଂ ଚୈତନ୍ୟଂ "ସର୍ବଂ ଖଲ୍ୱିଦଂ ବ୍ରହ୍ମୈବ" ଇତି ମହାବାକ୍ୟସ୍ୟ ବାଚ୍ୟଂ ଭବତି, ବିବିକ୍ତଂ ସଲ୍ଲକ୍ଷ୍ୟମପି ଭବତି" ॥

ବେଦାନ୍ତସାର—୭୨ ।

ଅର୍ଥାତ୍ ଯେପରି ତପ୍ତ ଲୌହରେ ଅଗ୍ନି ଅଭିନ୍ନରୂପରେ ଥିବାରୁ "ଅୟୋଦହତି" ଏହି ବାକ୍ୟର ଅଗ୍ନି ବାଚ୍ୟାର୍ଥ ହୁଏ; କିନ୍ତୁ ଅଗ୍ନି ଲୁହାଠାରୁ ପୃଥକ୍‌ଭାବରେ ରହିଲେ ଅଗ୍ନି ସେହି ବାକ୍ୟର ଲକ୍ଷ୍ୟାର୍ଥ ହୁଏ; ସେହିପରି ମହାପ୍ରପଞ୍ଚ ଉପହିତ ଚୈତନ୍ୟ ଏହି ମହତ୍ ପ୍ରପଞ୍ଚର ଅଭିନ୍ନରୂପ ଥିବାରୁ "ସର୍ବଂ ଖଲ୍ୱିଦଂ ବ୍ରହ୍ମ" ଅର୍ଥାତ୍ ଏହି ଅଖିଳ ବିଶ୍ୱ ବ୍ରହ୍ମମୟ —ଏହି ମହାବାକ୍ୟର ବାଚ୍ୟାର୍ଥ ହୁଏ ; କିନ୍ତୁ ସେହି ଚୈତନ୍ୟ ଯେତେବେଳେ ପ୍ରପଞ୍ଚରୁ ପୃଥକ୍‌ଭାବେ ରହେ, ସେତେବେଳେ ଏହି ମହାବାକ୍ୟର ସେ ଲକ୍ଷ୍ୟାର୍ଥ ହୁଏ ।

"× ତତ୍ତ୍ୱମସି", "× ଅୟମାତ୍ମାବ୍ରହ୍ମ", "× ଅହଂ ବ୍ରହ୍ମାସ୍ମି" ଓ "× ପ୍ରଜ୍ଞାନଂ ବ୍ରହ୍ମ"—ଚାରି ବେଦର ଏହା ଚାରି ମହାବାକ୍ୟ ବା ଚରମ ଉପଦେଶ । ଏହି ବାକ୍ୟ ସମନ୍ୱୟରେ ଜୀବବ୍ରହ୍ମଙ୍କର ଅଭେଦ ପ୍ରତିପନ୍ନ ହୁଏ * । ଏ ସମ୍ବନ୍ଧରେ ଉପନିଷଦ୍‌ର ବର୍ଣ୍ଣନା ଏହିପରି—

**"ଅଥ ମହାବାକ୍ୟାନି ଚତ୍ୱାରି—୧—× ପ୍ରଜ୍ଞାନଂ ବ୍ରହ୍ମ; ୨—× ଅହଂ ବ୍ରହ୍ମାସ୍ମି ; ୩—× ତତ୍ତ୍ୱମସି; ୪—× ଅୟମାତ୍ମା ବ୍ରହ୍ମ"** ।

ଶୁକରହସ୍ୟୋପନିଷଦ୍ ୧ ଖ ।

ମହାବାକ୍ୟ ଚାରିପ୍ରକାର, ଯଥା—(୧) × ପ୍ରଜ୍ଞାନଂ ବ୍ରହ୍ମ (ଅର୍ଥାତ୍ ବୁଦ୍ଧି କେବଳ ବ୍ରହ୍ମ), (୨) × ଅହଂ ବ୍ରହ୍ମାସ୍ମି (ମୁଁ ବ୍ରହ୍ମ ଅଟେ), (୩) × ତତ୍ତ୍ୱମସି (ତୁମ୍ଭେ ସେହି ବ୍ରହ୍ମ) (୪) × ଅୟମାତ୍ମା ବ୍ରହ୍ମ (ଏହି ଜୀବାତ୍ମା ହିଁ ବ୍ରହ୍ମ) । ଏହାର ବିଶେଷ ବିବରଣ ଏହିପରି—

**ପ୍ରଜ୍ଞାନ ବ୍ରହ୍ମ :—ଅଥ ରହସ୍ୟୋପନିଷଦ୍ ବିଭାଗଶୋ ବାଚ୍ୟାର୍ଥ ଶ୍ଳୋକାଃ ପ୍ରୋଚ୍ୟନ୍ତେ ।**

**"ଯେନେକ୍ଷତେ ଶୃଣୋତୀଦଂ ଜିଘ୍ରତ ବ୍ୟାକରୋତି ଚ ।**
**ସ୍ୱାଦ୍ୱସ୍ୱାଦୁ ବିଜାନାତି ତତ୍ ପ୍ରଜ୍ଞାନମୁଦୀରିତମ୍ ।**
**ଚତୁର୍ମୁଖେନ୍ଦ୍ରଦେବେଷୁ ମନୁଷ୍ୟାଶ୍ୱଗବାଦିଷୁ ।**
**ଚୈତନ୍ୟମେକଂ ବ୍ରହ୍ମାତଃ ପ୍ରଜ୍ଞାନଂ ବ୍ରହ୍ମ ମୟ୍ୟପି" ।।**

ଶୁକରହସ୍ୟୋପନିଷଦ୍ ୪ ୧ । ୨ ।
ପଞ୍ଚଦଶୀ ମହା : ୫ । ୧ । ୨ ।

* ଏହି ବାକ୍ୟମାନଙ୍କର ସାର୍ଥ ଏହିପରି—ଏହି ଚାରି ମହାବାକ୍ୟମାନଙ୍କରୁ ପ୍ରଥମଟି ଉପଦେଶ ବାକ୍ୟ, ଅପର ତିନୋଟି ଅନୁଭବବାକ୍ୟ । ୧—'ତତ୍ତ୍ୱମସି'—ଏହା ସାମବେଦାନ୍ତର୍ଗତ ଛାନ୍ଦୋଗ୍ୟଉପନିଷଦରେ ବର୍ଣ୍ଣିତ । ୨—'ଅୟମାତ୍ମା ବ୍ରହ୍ମ'—ଏହା ଅଥର୍ବବେଦାନ୍ତର୍ଗତ ମାଣ୍ଡୂକ୍ୟଉପନିଷଦ୍‌ରେ କଥିତ ଅଛି । ୩—'ଅହଂ ବ୍ରହ୍ମାସ୍ମି'—ଏହା ଯଜୁର୍ବେଦାନ୍ତର୍ଗତ ବୃହଦାରଣ୍ୟକ ଉପନିଷଦ୍‌ରେ ବର୍ଣ୍ଣିତ । ୪—'ପ୍ରଜ୍ଞାନଂ ବ୍ରହ୍ମ'—ଏହା ଋଗ୍‌ବେଦାନ୍ତର୍ଗତ-ଐତରେୟ ଉପନିଷଦ୍‌ରେ କଥିତ ଅଛି । ଏହି ବାକ୍ୟଚତୁଷ୍ଟୟର ସଂକ୍ଷିପ୍ତ ସାର୍ଥ ଯେପରି ପ୍ରତିପାଦିତ ହୋଇଅଛି ତାହା ଏହିପରି—୧—ତତ୍ତ୍ୱମସିର ଅର୍ଥ—ମାୟା, ମାୟାରେ ଅବସ୍ଥିତ ଆଭାସ ଓ ମାୟା-ଅଧିଷ୍ଠାନ ଚେତନ—ଏହା କେବଳ ସର୍ବଶକ୍ତି-ସର୍ବଜ୍ଞତା-ଆଦି ଧର୍ମବିଶିଷ୍ଟ ଈଶ୍ୱର, ତାହା କେବଳ ଏଠାରେ 'ତତ୍'ପଦବାଚ୍ୟ କିନ୍ତୁ ବ୍ୟଷ୍ଟି ଅବିଦ୍ୟା, ତହିଁର ଆଭାସ ଓ ତାହାର ଅଧିଷ୍ଠାନ ଚେତନ—ଏହା ଅଳ୍ପଶକ୍ତି-ଅଳ୍ପଜ୍ଞତ୍ୱ ଆଦି ଧର୍ମବିଶିଷ୍ଟ ଜୀବ ;ଏହା କେବଳ 'ତ୍ୱମ୍' ପଦବାଚ୍ୟ ।

ଅନନ୍ତର ଶୁକରହସ୍ୟୋପନିଷଦରୁ ଅଂଶତଃ ସଂଗ୍ରହ କରି ମହାବାକ୍ୟ ସମୂହର ଅର୍ଥ-ଜ୍ଞାପକ ଶ୍ଳୋକସମୂହ କଥିତ ହେଉଅଛି ; ଅର୍ଥାତ୍ ଋକ୍‌ବେଦାନ୍ତର୍ଗତ ଐତରେୟ-ଉପନିଷଦ୍‌ସ୍ଥ 'ପ୍ରଜ୍ଞାନଂ ବ୍ରହ୍ମ' ଏହି ବାକ୍ୟସ୍ଥ ପ୍ରଜ୍ଞାନ ଶବ୍ଦର ଅର୍ଥ ନିରୂପିତ ହେଉଅଛି—ଜୀବାତ୍ମା ଯାହାଦ୍ୱାରା ଏହି ଦୃଶ୍ୟ ଜଗତର ବିଷୟ ଦର୍ଶନ ଓ ମନନ କରେ, ଶ୍ରବଣ ଓ ଆଘ୍ରାଣ କରେ, ନିଶ୍ଚୟ-ରୂପରେ ପ୍ରକାଶ ଓ ଗ୍ରହଣ କରେ ଏବଂ ସ୍ୱାଦୁ ବା ଅସ୍ୱାଦୁ ବୋଧ କରେ, ତାହାକୁ ପ୍ରଜ୍ଞାନ ବୋଲି କଥିତ, (ଅର୍ଥାତ୍ ଜୀବାତ୍ମା ସର୍ବ ପଶ୍ଚାତ୍ ଋହି ବୁଦ୍ଧିଦ୍ୱାରା ଦୃଶ୍ୟାଦୃଶ୍ୟ ସମସ୍ତ ପଦାର୍ଥର ଜ୍ଞାନ ଲାଭ କରେ । ଏଥିନିମନ୍ତେ ଏହି ବୁଦ୍ଧିରୂପ ଚୈତନ୍ୟକୁ 'ପ୍ରଜ୍ଞାନ' ବୋଲାଯାଏ) ବ୍ରହ୍ମା, ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ଏବଂ ମନୁଷ୍ୟ, ଅଶ୍ୱ, ଗୋ-ଇତ୍ୟାଦି ସର୍ବପ୍ରାଣୀଙ୍କ

---

ଉକ୍ତ ମହାବାକ୍ୟରୁ ଏହି ଉଭୟର ଏକତା ବୁଝାଯାଉଛି; କିନ୍ତୁ ସେହି ଏକତା ପରସ୍ପର ବିରୋଧୀ ପରି ଜଣାଯାଏ । ଏହି ହେତୁରୁ ଆଭାସ ସହିତ ମାୟା ଓ ମାୟାକୃତ ସର୍ବଶକ୍ତି-ସର୍ବଜ୍ଞତ୍ୱାଦି ଧର୍ମ—ତତ୍‌ପଦର ଏହି ବାଚ୍ୟଭାଗକୁ ପରିତ୍ୟାଗ କରି ଚେତନାଭାଗରେ ତତ୍‌ପଦର ଭାଗତ୍ୟାଗଲକ୍ଷଣା କରାଯାଏ । ସେହିପରି ଆଭାସ ସହିତ ଅବିଦ୍ୟା ଅଂଶ ଓ ଅବିଦ୍ୟାକୃତ ଅଳ୍ପଶକ୍ତି-ଅଳ୍ପଜ୍ଞତ୍ୱାଦି ଧର୍ମ 'ତ୍ୱମ୍' ପଦର ବାଚ୍ୟଭାଗକୁ ପରିତ୍ୟାଗ କରି ଚେତନାଭାଗରେ 'ତ୍ୱମ୍' ପଦର ଭାଗତ୍ୟାଗଲକ୍ଷଣା । ଏହିପରି ଭାଗତ୍ୟାଗଲକ୍ଷଣାଦ୍ୱାରା ଈଶ୍ୱର ଓ ଜୀବର ସ୍ୱରୂପ ଲକ୍ଷ୍ୟାର୍ଥ ଧରାଯାଏ, ଅର୍ଥାତ୍ ଚେତନଭାଗ ତା'ର କେବଳ ଏକତ୍ୱ 'ତତ୍ତ୍ୱମସି'—ମହାବାକ୍ୟଦ୍ୱାରା ବୁଝାଯାଏ । ୨—'ଅୟମାତ୍ମା ବ୍ରହ୍ମ'—ଏହି ମହାବାକ୍ୟରେ ମଧ୍ୟ ଆତ୍ମା-ପଦର ବାଚ୍ୟାର୍ଥ ଜୀବ ଓ ବ୍ରହ୍ମର ବାଚ୍ୟାର୍ଥ ଈଶ୍ୱର (ଅର୍ଥାତ୍ ଶୁଦ୍ଧବ୍ରହ୍ମ ଭିନ୍ନ) । ପୂର୍ବୋକ୍ତ ପ୍ରକାରରେ ଏହି ଦୁଇ ପଦର ଲକ୍ଷଣା କରିବାକୁ ହୁଏ ।

ଏଠାରେ ଲକ୍ଷ୍ୟାର୍ଥ ପରୋକ୍ଷ ନୁହେଁ—ଏ କଥା ବୁଝାଇବା ନିମନ୍ତେ ଅୟମ୍-ଶବ୍ଦର ପ୍ରୟୋଗ କରାଯାଇଛି । ଅର୍ଥାତ୍ ସକଳର ଅପରୋକ୍ଷ ଆତ୍ମା ବ୍ରହ୍ମ—ଏହାହିଁ ମହାବାକ୍ୟର ଅର୍ଥ । ଏହି ଅପରୋକ୍ଷତାର ଅର୍ଥ—ଆତ୍ମା ସ୍ୱୟଂ ପ୍ରକାଶିତ ହେତୁରୁ ବୁଦ୍ଧିରୂପ ଜ୍ଞାନର ବିଷୟ ଯେଉଁ ଆତ୍ମାର ସ୍ୱରୂପ, ତାହା କେବଳ ଅପରୋକ୍ଷ । ମହାବାକ୍ୟର ଯାହା ଅପରୋକ୍ଷତା ସାଧନ ଅର୍ଥ ଉପଲବ୍ଧ ହୁଏ, ତାହାର ଅର୍ଥ ଏହିପରି—"ଆମ୍ଭେ ହିଁ ସ୍ୱପ୍ରକାଶ ଆତ୍ମା"—ଏହିରୂପରେ ବୁଦ୍ଧିଦ୍ୱାରା ଅବଲୋକନ କରିବା । ପ୍ରଥମ ପ୍ରକାରର ଅପରୋକ୍ଷତା ସ୍ୱତଃସିଦ୍ଧ । ଦ୍ୱିତୀୟ ପ୍ରକାରର ଅପରୋକ୍ଷତା ବୁଦ୍ଧିବୃତ୍ତିରୂପରେ କଦାଚିତ୍ ଅନିତ୍ୟ ହୁଏ । ୩- ଅହଂ ବ୍ରହ୍ମାସ୍ମି—ଏହି ବାକ୍ୟରେ ଅହଂପଦର ବାଚ୍ୟାର୍ଥ ଜୀବ, ବ୍ରହ୍ମପଦର ବାଚ୍ୟାର୍ଥ ଈଶ୍ୱର, ଉଭୟ ପଦାର୍ଥର ଚେତନଭାଗରେ ଲକ୍ଷଣା । "ଆମ୍ଭେ ଅଟୁଁ ବ୍ରହ୍ମ'—ଏହା ହିଁ ମହାବାକ୍ୟର ଅର୍ଥ । ୪—'ପ୍ରଜ୍ଞାନମାନନ୍ଦଂ ବ୍ରହ୍ମ"—ଏହି ମହାବାକ୍ୟରେ ପ୍ରଜ୍ଞାନପଦର ବାଚ୍ୟାର୍ଥ ଜୀବ, 'ବ୍ରହ୍ମ' ପଦର ଈଶ୍ୱର । ଲକ୍ଷଣା ପୂର୍ବପ୍ରକାରେ ଧରାଯିବ । ବ୍ରହ୍ମାତ୍ମା-ରୂପକ ଲକ୍ଷ୍ୟାର୍ଥ ଆନନ୍ଦଗୁଣବିଶିଷ୍ଟ ନୁହେଁ; କିନ୍ତୁ ଆନନ୍ଦରୂପ ଅର୍ଥ—ଏହା ବୁଝାଇବା ନିମନ୍ତେ ଏଠାରେ ଆନନ୍ଦଶବ୍ଦର ପ୍ରୟୋଗ କରାଯାଇଛି । ବ୍ରହ୍ମ ଆତ୍ମାଠାରୁ ଅଭିନ୍ନ; ତାହା ଆନନ୍ଦ-ସ୍ୱରୂପ—ଏହା କେବଳ ମହାବାକ୍ୟର ଅର୍ଥ ।

ମଧ୍ୟରେ ଯେ ଏକ ଅଭିନ୍ନ ଚୈତନ୍ୟ ଅଛି, ତାହା ବ୍ରହ୍ମସ୍ୱରୂପ; ଅତଏବ ଆମ୍ଭ ମଧ୍ୟରେ ଯେଉଁ ପ୍ରଜ୍ଞାନ ନାମକ ଚୈତନ୍ୟ ଅଛି, ତାହା ମଧ୍ୟ ବ୍ରହ୍ମ । (ଏହି ଦୁଇ ଶ୍ଳୋକଦ୍ୱାରା "ପ୍ରଜ୍ଞାନଂବ୍ରହ୍ମ" ଏହି ମହାବାକ୍ୟର ଅର୍ଥ ପ୍ରକଟିତ ହେଲା) ।

ପୁନଶ୍ଚ—

"ପରିପୂର୍ଣ୍ଣଃ ପରାତ୍ମାଽସ୍ମିନ୍ ଦେହେ ବିଦ୍ୟାଧିକାରିଣି ।
ବୁଦ୍ଧେଃ ସାକ୍ଷିତୟା ସ୍ଥିତ୍ୱା ସ୍ଫୁରନ୍ନହମିତୀର୍ଯ୍ୟତେ ॥
ସ୍ୱତଃ ପୂର୍ଣ୍ଣଃ ପରାତ୍ମାତ୍ର ବ୍ରହ୍ମଶବ୍ଦେନ ବର୍ଣ୍ଣିତଃ ।
ଅସ୍ମୀତ୍ୟୈକ୍ୟ ପରାମର୍ଶସ୍ତେନ ବ୍ରହ୍ମ ଭବାମ୍ୟହମ୍ ॥

ଶୁକରହସ୍ୟୋପନିଷଦ୍ ୨ । ୩ । ୪ ।

ଯଜୁର୍ବେଦୀୟ ବୃହଦାରଣ୍ୟକ ଉପନିଷଦ୍‌ସ୍ଥିତ "ଅହଂ ବ୍ରହ୍ମାଽସ୍ମି" ବାକ୍ୟର ଅର୍ଥ ପୂର୍ବୋକ୍ତ ଉପନିଷଦ୍‌ରେ ଏହିପରି କରାଯାଇଛି— ବିଦ୍ୟାଲାଭର ଯୋଗ୍ୟ ଏହି ଦୃଶ୍ୟ-ଦେହରେ ପରିପୂର୍ଣ୍ଣ ପରମାତ୍ମା ବୁଦ୍ଧିର ସାକ୍ଷୀରୂପରେ ଯେଉଁ ପର୍ଯ୍ୟନ୍ତ ଅବସ୍ଥାନ କରି ସ୍ଫୁରିତ ହୁଅନ୍ତି, ସେ ପର୍ଯ୍ୟନ୍ତ ସେ 'ଅହଂ' ବୋଲି କଥିତ । ସ୍ଫୁରଣ (କିଞ୍ଚିତ୍ ଚଳନ ବା ପ୍ରକାଶନ)ର ନାଶ ହେଲେ କେବଳ 'ଅହଂ' ନଷ୍ଟ ହୁଏ । ଏହି ଦେହ ବିଦ୍ୟା, ଅର୍ଥାତ୍ ପୂର୍ଣ୍ଣଜ୍ଞାନଲାଭ ନିମନ୍ତେ ସମର୍ଥ ; କିନ୍ତୁ ବିଦେହଦଶା ପୂର୍ବେ ଏହାର ପୂର୍ଣ୍ଣପ୍ରତିଷ୍ଠା ଲାଭ ହୁଏ ନାହିଁ । ପୂର୍ଣ୍ଣ ପରମାତ୍ମା ଅପୂର୍ଣ୍ଣ ଦେହରେ ରହି 'ଅହଂ' ରୂପରେ ପରିଣତ ହୁଅନ୍ତି—ଏହି ସବୁ ଏକ ଶ୍ଳୋକଦ୍ୱୟର ଅର୍ଥ । ଏହି

---

ଭାଗତ୍ୟାଗଲକ୍ଷଣା—ଏହା କେବଳ ମହାବାକ୍ୟରେ ହୋଇଥାଏ-ଏପରି ନୁହେଁ; ଶ୍ରୁତିସ୍ଥ ଅନ୍ୟବାକ୍ୟମାନଙ୍କରେ ମଧ୍ୟ ଲକ୍ଷ୍ୟାର୍ଥ ବୋଧ ହେବା ଦେଖାଯାଏ । ସତ୍ୟଂ, ଜ୍ଞାନଂ ଓ ଆନନ୍ଦମ୍—ଏହା ପଦମାନଙ୍କର ଭାଗତ୍ୟାଗଲକ୍ଷଣା ହେବାଦ୍ୱାରା ଏମାନଙ୍କର ଅର୍ଥ ବିଶୁଦ୍ଧବ୍ରହ୍ମ; ଏହି ଅର୍ଥ ଶକ୍ତିଗମ୍ୟ ବାଚ୍ୟାର୍ଥ ହୋଇ ନ ପାରେ, କାରଣ ବିଶୁଦ୍ଧ ବ୍ରହ୍ମରୂପକ ଅର୍ଥ କୌଣସି ପଦର ବାଚ୍ୟାର୍ଥ ନୁହେଁ ଏହି ହେତୁରୁ ବସ୍ତୁବୋଧକ ସକଳ ପଦରେ ବିଶୁଦ୍ଧାର୍ଥ ଲକ୍ଷ୍ୟାର୍ଥଭାବରେ ଧରାଯାଏ । ମାୟାଦ୍ୱାରା ସାପେକ୍ଷ୍ୟ ସତ୍ୟତା ଏବଂ ଚେତନର ନିରପେକ୍ଷ ସତ୍ୟତା ମିଳିତ ହୋଇ ସତ୍ୟ ପଦର ମୌଳିକ ଅର୍ଥ ବାଚ୍ୟ; କିନ୍ତୁ ନିରପେକ୍ଷ ସତ୍ୟ ତାହାର ଲକ୍ଷ୍ୟାର୍ଥ ଧରାଯାଏ । ସେହିପରି ବୃତ୍ତିରୂପଜ୍ଞାନ ଓ ସ୍ୱୟଂପ୍ରକାଶଜ୍ଞାନ— ଉଭୟରେ ମିଳିତ ହୋଇ ପ୍ରଜ୍ଞାନପଦର ବ୍ୟାଚ୍ୟାର୍ଥ ଏବଂ ସ୍ୱୟଂପ୍ରକାଶ ଭାଗ ତାହାର ଲକ୍ଷ୍ୟାର୍ଥ ହୁଏ । ବିଷୟ ସମ୍ବନ୍ଧ ହେତୁରୁ ସୁଖାକାର ସାତ୍ତ୍ୱିକ ଅନ୍ତକରଣବୃତ୍ତି ଓ ପରମପ୍ରେମର ଆସ୍ପଦସ୍ୱରୂପ ସୁଖ ଏହି ଉଭୟ ମିଳିତ ହୋଇ 'ଆନନ୍ଦ' ଅର୍ଥକୁ ବୁଝାନ୍ତି— ଏହି ବୃତ୍ତିଭାଗ ତ୍ୟାଗ କଲେ ସ୍ୱରୂପଭାଗ ତାହାର ଲକ୍ଷ୍ୟାର୍ଥ ହୁଏ । ଏହି ସମସ୍ତ ପଦର ଲକ୍ଷ୍ୟାର୍ଥ କେବଳ ବିଶୁଦ୍ଧ ବ୍ରହ୍ମ ।—ସଂକ୍ଷେପ ଶାରୀରକମ୍—

ଅହଂ ବ୍ରହ୍ମାସ୍ମି—ବାକ୍ୟର 'ବ୍ରହ୍ମ' ଶବ୍ଦରେ ସ୍ୱତଃ ପୂର୍ଣ୍ଣ ପରମାତ୍ମା ବୁଝାଯାନ୍ତି । ଅସ୍ମି ପଦ ଅହଂ ଓ ବ୍ରହ୍ମ—ଏହି ଦୁଇ ପଦର ଏକତା କ୍ଷପନମନନ ଓ ସ୍ମରଣ କରାଯାଏ । ଅତଏବ 'ମୁଁ ବ୍ରହ୍ମ' ଏହାହିଁ 'ଅହଂ ବ୍ରହ୍ମାସ୍ମି' ବାକ୍ୟର ଅର୍ଥ ।

ଆହୁରି ମଧ୍ୟ—

"ଏକମେବାଦ୍ୱିତୀୟଂ ସନ୍ନାମରୂପବିବର୍ଜିତମ୍ ।
ସୃଷ୍ଟେଃ ପୁରାଧୁନାପ୍ୟସ୍ୟ ତାଦୃକ୍ ତ୍ୱଂ ତଦତୀର୍ଯ୍ୟତେ ॥
ଶ୍ରୋତୁର୍ଦେହେନ୍ଦ୍ରିୟାତୀତଂ ବସ୍ତ୍ୱେବ ତ୍ୱଂପଦେରିତମ୍ ।
ଏକତା ଗ୍ରାହ୍ୟତେଽସୀତ ତଦୈକ୍ୟମନୁଭୂୟତାମ୍ ॥

ଶୁକରହସ୍ୟ ଉ. ୫ । ଗ୍ର—ପ ୫ । ୭ । ୭ ।

ସାମବେଦୀୟ ଛାନ୍ଦୋଗ୍ୟ ଉପନିଷଦ୍‌ର "ତତ୍ତ୍ୱମସି"—ମହାବାକ୍ୟର ଅର୍ଥ ପ୍ରକାଶ କରିବା ନିମନ୍ତେ ପ୍ରଥମେ ସେହି ବାକ୍ୟସ୍ଥ ତତ୍‌ପଦର ଅର୍ଥ ନିରୂପଣ ଏହିପରି କରାଯାଏ— ପ୍ରତ୍ୟକ୍ଷ ଦେଖାଯାଉଥିବା ନାମରୂପାତ୍ମକ ଜଗତର ଉତ୍ପତ୍ତି ପୂର୍ବେ କେବଳ ଏକମାତ୍ର ନାମ-ରୂପ— ବିବର୍ଜିତ ସର୍ବବ୍ୟାପୀ ଅଦ୍ୱିତୀୟ ସତ୍‌ସ୍ୱରୂପ ପରଂବ୍ରହ୍ମ ଥିଲେ ଏବଂ ବର୍ତ୍ତମାନ ମଧ୍ୟ ସେ ସେହିରୂପରେ ବିଦ୍ୟମାନ ଅଛନ୍ତି । ସେହି 'ତତ୍' ଶବ୍ଦର ବାଚ୍ୟରୂପରେ ଧରାଯାନ୍ତି । ଉକ୍ତ ବାକ୍ୟସ୍ଥ 'ତ୍ୱଂ' ଶବ୍ଦର ତାତ୍‌ପର୍ଯ୍ୟାର୍ଥ ପ୍ରକାଶପୂର୍ବକ ତଦୁଭୟର ଐକ୍ୟ ନିରୂପିତ ହେଉଅଛି— ସମସ୍ତ ପ୍ରାଣୀମାନଙ୍କର ଦେହେନ୍ଦ୍ରିୟାଦିଠାରୁ ଭିନ୍ନ ଯେଉଁ ଅନ୍ତଃକରଣସ୍ଥିତ ଚୈତନ୍ୟ, ସେହି କେବଳ ତ୍ୱମ୍‌ପଦବାଚ୍ୟାର୍ଥ ଓ 'ଅସି' ଏହି ପଦଦ୍ୱାରା ପୂର୍ବଶ୍ଳୋକସ୍ଥିତ 'ତତ୍' ଏବଂ ଏହି ଶ୍ଳୋକରେ ଥିବା 'ତ୍ୱଂ' ଏହି ଉଭୟର ଐକ୍ୟ ପ୍ରତିପାଦିତ ହେଉଅଛି । ଅତଏବ ସେହି ଉଭୟର ଐକ୍ୟ ଅନୁଭବ କରିବା କର୍ତ୍ତବ୍ୟ ।

"ସ୍ୱପ୍ରକାଶାପରୋକ୍ଷତ୍ୱମୟମିତ୍ୟୁକ୍ତିତୋ ମତମ୍ ।
ଅହଂକାରାଦିଦେହାନ୍ତଂ ପ୍ରତ୍ୟଗାତ୍ମେତି ଗୀୟତେ ॥
ଦୃଶ୍ୟମାନସ୍ୟ ସର୍ବସ୍ୟ ଜଗତସ୍ତତ୍ତ୍ୱମୀର୍ଯ୍ୟତେ ।
ବ୍ରହ୍ମଶବ୍ଦେନ ତଦ୍ ବ୍ରହ୍ମ ସ୍ୱପ୍ରକାଶାତ୍ମରୂପକମ୍" ॥

ଶୁ. ର. ଉ. ୭ । ୮ ॥
ପଞ୍ଚଦଶୀ—୫ । ୭ । ୮ ॥

ବର୍ତ୍ତମାନ ଅଥର୍ବବେଦୀୟ ମାଣ୍ଡୂକ୍ୟ ଉପନିଷଦ୍‌ସ୍ଥିତ "ଅୟମାତ୍ମା ବ୍ରହ୍ମ" ଏହି ମହାବାକ୍ୟର ଅର୍ଥ ବ୍ୟାଖ୍ୟା କରିବା ଅଭିପ୍ରାୟରେ ପ୍ରଥମତଃ "ଅୟଂ ଓ ଆତ୍ମା" ଏହି ଉଭୟ

ଶବ୍ଦର ତାତ୍ପର୍ଯ୍ୟାର୍ଥ ନିରୂପିତ ହେଉଅଛି—ସ୍ୱୟଂପ୍ରକାଶସ୍ୱରୂପ ଅପରୋକ୍ଷ ଜୀବ-ଚୈତନ୍ୟ 'ଅୟଂ' ଶବ୍ଦବାଚ୍ୟ ଏବଂ ଅହଂକାରାଦି ଦେହ ପର୍ଯ୍ୟନ୍ତ ସମୁଦାୟର ଅଭ୍ୟନ୍ତରରେ ଯାହା ବର୍ତ୍ତମାନ—ପ୍ରଯୁକ୍ତ, 'ସେହି ଆତ୍ମା' ଶବ୍ଦଦ୍ୱାରା କଥିତ ହୁଅନ୍ତି; ଅତଏବ ଏହି ଉଭୟ ଶବ୍ଦଦ୍ୱାରା ଜୀବଚୈତନ୍ୟ ଉକ୍ତ ହେଲା । ବର୍ତ୍ତମାନ ଉକ୍ତ ବାକ୍ୟସ୍ଥ ବ୍ରହ୍ମଶବ୍ଦର ଅର୍ଥାବିଷ୍କରଣପୂର୍ବକ ଜୀବ ଓ ପରଂବ୍ରହ୍ମଙ୍କର ଐକ୍ୟ ଏହିପରି ପ୍ରତିପାଦିତ ହୁଏ—ଏହି ସମୁଦାୟ ଦୃଶ୍ୟମାନ ଜଗତର ମୂଳାଧାର ଏକ କାରଣସ୍ୱରୂପ ପରଂବ୍ରହ୍ମ ଚୈତନ୍ୟ 'ବ୍ରହ୍ମ' ଶବ୍ଦଦ୍ୱାରା କଥିତ ହୁଅନ୍ତି । ସେହି ବ୍ରହ୍ମ ସ୍ୱୟଂପ୍ରକାଶସ୍ୱରୂପ; ଅତଏବ ପୂର୍ବୋକ୍ତ ଜୀବ ଓ ବ୍ରହ୍ମ--ଉଭୟଙ୍କର ସ୍ୱରୂପଗତ ଅଭିନ୍ନତା ହେତୁରୁ ଐକ୍ୟ ପ୍ରତିପାଦିତ ହେଲା ।

ଆହୁରି ମଧ୍ୟ ଏହି ମହାବାକ୍ୟ-ନିରୂପିତ ତତ୍ତ୍ୱର ଉପଦେଶ ସାମବେଦୀୟ ଛାନ୍ଦୋଗ୍ୟ ଶ୍ରୁତିରେ ଋଷି ଉଦ୍ଦାଳକ ନିଜ ଶିଷ୍ୟ ଶ୍ୱେତକେତୁଙ୍କୁ ଏହିପରି ଦେଇ ଅଛନ୍ତି—

**"ସ ଯ ଏଷୋଽଣିମୈତଦାତ୍ମ୍ୟମିଦଲ୍ଂ ସର୍ବଂ ତତ୍ ସତ୍ୟଲ୍ଂ ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ ଇତି ଭୂୟ ଏବ ମା ଭଗବାନ୍ ବିଜ୍ଞାପୟତ୍ୱିତି ତଥା ସୋମ୍ୟେତି ହୋବାଚ" ।।**

ଛାନ୍ଦୋଗ୍ୟ—ଅ ୬ । ଖ ୮ । ୭ ।

ବର୍ତ୍ତମାନ ସୁଦ୍ଧା ସର୍ବବ୍ୟାପୀ ସୂକ୍ଷ୍ମ ଚେତନ ଶକ୍ତିର ମହିମା ବର୍ଣ୍ଣନ କଲୁଁ । ହେ ବତ୍ସ ! ସେହି ଶକ୍ତିର ମହିମାଦ୍ୱାରା ଏହି ବିପୁଳ ବିଶ୍ୱ ବିଧୃତ ହୋଇ ସ୍ଥିତିଲାଭ କରୁଅଛି । ତାହାଙ୍କ ମଧ୍ୟରେ ଏହି ବିଶ୍ୱ ଓତପ୍ରୋତଭାବରେ ରହି ତନ୍ମୟ ହୋଇ ପ୍ରକାଶ ଲାଭ କରୁଅଛି । ତାହାହିଁ ସତ୍ୟ ଓ ତାହା କେବଳ ଆତ୍ମା । ହେ ଶ୍ୱେତକେତୁ, ତୁମ୍ଭେ ମଧ୍ୟ ସେହି କେବଳ । ତା'ପରେ ଶ୍ୱେତକେତୁ କହିଲେ—ଦେବ ! ମୁଁ ଆପଣଙ୍କ ବଚନ ଭଲଭାବରେ ବୁଝିପାରିଲି ନାହିଁ । ଯଦି ଆତ୍ମ ନିଜେ ଆତ୍ମା, ତେବେ ସୁଷୁପ୍ତି କାଳରେ ମଧ୍ୟ ନିତ୍ୟସ୍ୱରୂପ ସେହି ପରମାତ୍ମ-ଜ୍ୟୋତିରେ ମିଳିତ ହୋଇ ମଧ୍ୟ ଜାଗରଣାବସ୍ଥାରେ ତାହା କାହିଁକି ବୁଝିପାରୁ ନାହୁଁ ? ଅତଏବ ଆପଣ ଏହା ପୁନର୍ବାର ବୁଝାଇ ଦିଅନ୍ତୁ । ତା'ପରେ ପିତା ଏ ବିଷୟରେ ସମ୍ମତ ହୋଇ କହିଲେ, "ବତ୍ସ ! ପୁନଶ୍ଚ ଏହି ତତ୍ତ୍ୱ ଦୃଷ୍ଟାନ୍ତଦ୍ୱାରା ଭଲଭାବେ ପରିସ୍ଫୁଟ କରି ତୁମ୍ଭଙ୍କୁ ବୁଝାଇ ଦେଉଛି, ଏହା ଶୁଣ ।" ଋଷି ଏହିପରି ବାରମ୍ବାର ନଅବାର ଉଲ୍ଲେଖ କରି "ତତ୍ତ୍ୱମସି" ମହାବାକ୍ୟର ତତ୍ତ୍ୱ ଶ୍ୱେତକେତୁଙ୍କୁ ବୁଝାଉ ଅଛନ୍ତି । ପରିଶେଷରେ ଆତ୍ମତତ୍ତ୍ୱର ଉପଦେଶ ଏହିପରି—

**"ପୁରୁଷଂ ସୋମ୍ୟୋତ ହସ୍ତଗୃହୀତମାନୟନ୍ତ୍ୟପହାର୍ଷୀତ୍ ସ୍ତେୟ-ମକାର୍ଷୀତ୍ ପରଶୁମସ୍ମୈ ତପତେତ । ସ ଯଦି ସତ୍ୟ କର୍ତ୍ତା ଭବତି ତତ-**

ଏବାନୃତମାତ୍ମାନଂ କୁରୁତେ, ସୋଽନୃତାଭିସନ୍ଧୋଽନୃତେନାତ୍ମାନମନ୍ତର୍ଧାୟ ପରଶୁଂ ତପ୍ତଂ ପ୍ରତିଗୃହ୍ଣାତି ସ ଦହ୍ୟତେଽଥ ହନ୍ୟତେ । ଅଥ ଯଦି ତସ୍ୟାଃ କର୍ତ୍ତା ଭବତି, ତତ ଏବ ସତ୍ୟମାତ୍ମାନଂ କୁରୁତେ ସ ସତ୍ୟାଭିସନ୍ଧଃ ସତ୍ୟେନାତ୍ମାନମନ୍ତର୍ଧାୟ ପରଶୁଂ ତପ୍ତଂ ପ୍ରତିଗୃହ୍ଣାତି, ସ ନ ଦହ୍ୟତେଽଥ ମୁଚ୍ୟତେ । ସ ଯଥା ତତ୍ର ନାଦାହ୍ୟେତୈତଦାତ୍ମ୍ୟମିଦଂ ସର୍ବଂ ତତ୍ ସତ୍ୟଂ ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ ଇତି ତଦ୍ଧାସ୍ୟ ବିଜଜ୍ଞାବିତି ବିଜଜ୍ଞାବିତି ।" ଛାନ୍ଦୋଗ୍ୟ—୬ । ଖ ୧୬ । ୧—୩ ।

ହେ ବତ୍ସ ! ଚୌର୍ଯ୍ୟ ବିଷୟରେ କାହାଠାରେ ସନ୍ଦେହ ହେଲେ ରାଜକର୍ମଚାରୀମାନେ ସେହି ଲୋକକୁ ବନ୍ଧନପୂର୍ବକ ବିଚାରକଙ୍କ ନିକଟକୁ ଆଣି କହନ୍ତି—ଏହି ବ୍ୟକ୍ତି ଅମୁକଲୋକର ଧନ ଅପହରଣ କରିଅଛି, ଅଥଚ କୌଣସି ପ୍ରକାରେ ସ୍ୱୀକାର କରୁନାହିଁ । ଅତଏବ ଗୋଟିଏ କୁଠାର ଉତ୍ତପ୍ତ କରାଯାଉ ଓ ଏହି ବ୍ୟକ୍ତି ସେହି ଉତ୍ତପ୍ତ କୁଠାର ନିଜ ହସ୍ତରେ ଧାରଣପୂର୍ବକ ସମସ୍ତଙ୍କ ସମକ୍ଷରେ ନିଜର ନିରପରାଧିତା ପ୍ରମାଣ କରୁ । ଯଦି ପ୍ରକୃତରେ ଚୋରି କରି କେବଳ ଦଣ୍ଡଭୟରେ ସତ୍ୟକଥା ଗୋପନ କରିବା ନିମନ୍ତେ ଚେଷ୍ଟା କରୁଛି, ତେବେ ସେହି ମିଥ୍ୟା ପ୍ରତି ଅତ୍ୟଧିକ ଆସକ୍ତ ହେତୁରୁ ସେ ମନେ କରୁଛି ଯେ, "ମୁଁ ଏହି ମିଥ୍ୟାକୁ ଆଶ୍ରୟ କରି ମିଥ୍ୟା ସାହାଯ୍ୟରେ ବଞ୍ଚିଯିବି ।" ଅତଏବ ମିଥ୍ୟାକୁ ଯେ ଜୀବନର ଏକମାତ୍ର ଅବଲମ୍ବନ ବୋଲି ବରଣ କରି ନେଇଛି, ସେହି ମିଥ୍ୟାଦ୍ୱାରା ହିଁ ଜଡ଼ିତ ହୋଇ ମୋହଗ୍ରସ୍ତ ହୁଏ ଏବଂ ଉତ୍ତପ୍ତ ଲୌହକୁଠାର ଗ୍ରହଣ କରେ; ଫଳତଃ ତଦ୍ଦ୍ୱାରା ସେ ଦଗ୍ଧ ହୁଏ । ରାଜପୁରୁଷମାନେ ସେହିପରି ଚୋର ଓ ମିଥ୍ୟାବାଦୀକୁ ନାନାପ୍ରକାର ଭର୍ତ୍ସନାପୂର୍ବକ ନିଗ୍ରହ କରନ୍ତି; କିନ୍ତୁ ପ୍ରକୃତରେ ଯଦି ସେହି ବ୍ୟକ୍ତି ଚୋରି ନ କରିଥାଏ, ତେବେ ଦୋଷ ନ କରିଥିବାରୁ "ମୁଁ ଚୋରି କରିନାହିଁ" କହିବାଦ୍ୱାରା ସେ ନିଜର ସତ୍ୟବାଦିତା ହିଁ ପ୍ରମାଣ କରେ । ଅତଏବ ସେ ସତ୍ୟ ପ୍ରତି ଶ୍ରଦ୍ଧାଶୀଳ ଓ ସତ୍ୟକୁ ହିଁ ଜୀବନର ଏକମାତ୍ର ଅବଲମ୍ବନ ବୋଲି ବରଣ କରି ନେଇଛି, ସେହି ଲୋକ ସତ୍ୟରୂପକ ବର୍ମଦ୍ୱାରା ଆବୃତ ହୋଇ ତପ୍ତଲୌହ କୁଠାରକୁ ମଧ୍ୟ ଗ୍ରହଣ କରି ଦଗ୍ଧ ହୁଏ ନାହିଁ । ଅତଏବ ରାଜପୁରୁଷମାନେ ସେହି ଲୋକକୁ ସାଧୁ ଓ ସତ୍ୟବାଦୀ ବୋଲି ବନ୍ଧନରୁ ମୁକ୍ତ କରି ଦିଅନ୍ତି ।

ବତ୍ସ ! ସତ୍ୟନିଷ୍ଠ ସତ୍ୟ ପ୍ରତି ଶ୍ରଦ୍ଧାଶୀଳ ସେହି ବ୍ୟକ୍ତି ଯେପରି ସତ୍ୟରୂପ ବର୍ମଦ୍ୱାରା ଆବୃତ ହୋଇ ଉତ୍ତପ୍ତ-ଲୋହିତବର୍ଣ୍ଣ ଲୌହକୁଠାର ସ୍ପର୍ଶ କରି ମଧ୍ୟ ଦଗ୍ଧ ହେଲା ନାହିଁ, ସେହିପରି ତୁମେ ବୁଝିବ ଯେ, ବ୍ରହ୍ମଜ୍ଞ ଓ ବ୍ରହ୍ମଙ୍କୁ ନ ଜାଣିଥିବା ବ୍ୟକ୍ତି—ଉଭୟେ ମୃତ୍ୟୁକାଳରେ ପରମାତ୍ମଜ୍ୟୋତିରେ ଲୀନ ହେଲେ ମଧ୍ୟ ଯେଉଁ ଲୋକ ଜୀବନମଧ୍ୟରେ ଚେଷ୍ଟା କରି ବ୍ରହ୍ମଜ୍ଞାନ ଲାଭ କରିପାରିଛି ଓ ବ୍ରହ୍ମଙ୍କୁ ହିଁ ସତ୍ୟ ବୋଲି ବିଶ୍ୱାସ କରିଛି, ସେହି କେବଳ ମୁକ୍ତପୁରୁଷ ।

କିନ୍ତୁ ଯେଉଁ ଲୋକ ବ୍ରହ୍ମଜ୍ଞାନ ଲାଭ କରି ନାହାଁନ୍ତି, ମିଥ୍ୟା ବା ମାୟାମୟ ନିତ୍ୟବିନାଶୀ ନଶ୍ୱର ବିଷୟଗୁଡିକୁ ହିଁ ସତ୍ୟ ବୋଲି ବିଶ୍ୱାସ କରିଅଛି, ସେହି ଲୋକକୁ ପରମାତ୍ମଜ୍ୟୋତିଃରୁ ଉଦ୍ଭୂତ ହେଲେ ମଧ୍ୟ ବିଶ୍ୱର ବନ୍ଧନାଗାରକୁ ଫେରି ଆସିବାକୁ ହୁଏ । ବତ୍ସ ! ଏତଦ୍‌ବିଧି ଯେଉଁ ସଦ୍‌ରୂପ ସୂକ୍ଷ୍ମ ଚୈତନ୍ୟଶକ୍ତିର ବର୍ଣ୍ଣନା କରି ଆସିଲୁ, ତୁମେ ବୁଝିବ ଏହି ବିପୁଳ ବିଶ୍ୱ ତାଙ୍କଦ୍ୱାରା ହିଁ ବିଧୃତ ହୋଇ ସ୍ଥିତିଲାଭ କରୁଅଛି । ତାହାଙ୍କ ମଧ୍ୟରେ ଏହା ଓତପ୍ରୋତ ହୋଇ ଅବସ୍ଥାନ କରୁଅଛି; ନିତ୍ୟ ତନ୍ମୟ ହୋଇ ପ୍ରକାଶ ପାଉଅଛି । ହେ ବତ୍ସ, ଶ୍ୱେତକେତୁ ! ତୁମେ ମଧ୍ୟ ସେହି ତନ୍ମୟ ପ୍ରକାଶ ।" ବର୍ତ୍ତମାନ ପୁତ୍ର ଶ୍ୱେତକେତୁ ପିତାଙ୍କ ପୂର୍ବୋକ୍ତ ସକଳ ଉପଦେଶ ଭଲଭାବେ ବୁଝିପାରିଲେ । ଏ ବିଷୟରେ ଅନ୍ୟ ଉପନିଷଦ୍‌ରେ ମଧ୍ୟ ଏହିପରି ଉଲ୍ଲେଖ ଅଛି—

"ମାୟୋପାଧିର୍ଜଗଦ୍‌ଯୋନିଃ ସର୍ବଜ୍ଞତ୍ୱାଦିଲକ୍ଷଣଃ ।
ପରୋକ୍ଷଶବଳଃ ସତ୍ୟାଦ୍ୟାତ୍ମକସ୍ତତ୍‌ପଦାଭିଧଃ ।
ଆଲମ୍ବନତୟା ଭାତି ଯୋଽସ୍ମତ୍‌ପ୍ରତ୍ୟୟଶବ୍ଦୟୋଃ ।
ଅନ୍ତଃକରଣସଂଭିନ୍ନବୋଧଃ ସ ତ୍ୱଂ-ପଦାଭିଧଃ ।
ମାୟାବିଦ୍ୟେ ବିହାୟୈବ ଉପାଧୀ ପରଜୀବୟୋଃ ।
ଅଖଣ୍ଡଂ ସଚ୍ଚିଦାନନ୍ଦଂ ପରଂ ବ୍ରହ୍ମ ବିଲକ୍ଷ୍ୟତେ" ॥

ଅଧ୍ୟାତ୍ମୋପନିଷଦ୍ ୩୦—୩୨ ।

ବର୍ତ୍ତମାନ ପରମପରମୋକ୍ଷସାଧନ ବୈରାଗ୍ୟାଦି ପ୍ରତିପାଦନ କରି ସାକ୍ଷାତ୍ ଅବିଦ୍ୟା-ନିବୃତ୍ତିଦ୍ୱାରା ମୋକ୍ଷଜନକ "ତତ୍ତ୍ୱମସି" ବାକ୍ୟ ଅନ୍ତର୍ଗତ 'ତତ୍' ଓ 'ତ୍ୱଂ' ପଦର ଶୋଧନ ନିମନ୍ତେ ପ୍ରଥମତଃ 'ତତ୍' ଶବ୍ଦର ବାଚ୍ୟାର୍ଥ ନିରୂପଣ କରୁଅଛନ୍ତି । ମାୟା ଅର୍ଥାତ୍ ତ୍ରିଗୁଣାତ୍ମକ ସତ୍ ବା ଅସତ୍ ରୂପରେ ନିର୍ବଚନର ଅଯୋଗ୍ୟ ଜଗତର ଉପାଦାନଭୂତ ଭାବରୂପ ଶକ୍ତିବିଶେଷବିଶିଷ୍ଟ ଅନନ୍ତ ବିଶ୍ୱର ଜନକ ସର୍ବଜ୍ଞତ୍ୱାଦି-ଧର୍ମବିଶିଷ୍ଟ ଇନ୍ଦ୍ରିୟାଗୋଚର ସତ୍ୟଜ୍ଞାନ ଓ ଆନନ୍ଦସ୍ୱରୂପ ଈଶ୍ୱର ଅର୍ଥାତ୍ ମାୟାବଚ୍ଛିନ୍ନ ଚୈତନ୍ୟ ହିଁ 'ତତ୍'-ଶବ୍ଦଜାତ । ଯାହା (ଯେ ଜୀବଚୈତନ୍ୟ) ଅହଂ ବା ମୁଁ ଏହି ଶବ୍ଦ ବ୍ୟବହାର ଓ ଜ୍ଞାନର ବିଷୟରୂପରେ ପ୍ରକାଶ ପାଏ । ସେହି ଅନ୍ତଃକରଣାବଚ୍ଛିନ୍ନ ଚୈତନ୍ୟ ହିଁ 'ତ୍ୱଂ' (ତୁମ୍ଭେ) ଶବ୍ଦର ଅଭିଧେୟ ।

ପରମାତ୍ମା ବା ଈଶ୍ୱରଙ୍କର ଉପାଧୀଭୂତ ମାୟା ଏବଂ ଜୀବର ଉପାଧି ଅବିଦ୍ୟା ପରିତ୍ୟାଗ କରି କେବଳ ଅଖଣ୍ଡ, ସତ୍, ଚିତ୍ ଓ ଆନନ୍ଦସ୍ୱରୂପ ବ୍ରହ୍ମ-ଚୈତନ୍ୟ ହିଁ ତତ୍ ଓ ତ୍ୱଂ

ପଦର ଲକ୍ଷ୍ୟ । ଅର୍ଥାତ୍ ତତ୍, ତ୍ୱଂ ଶବ୍ଦଦ୍ୱାରା ପ୍ରଥମ ସର୍ବଜ୍ଞତ୍ୱ ଓ ଅସର୍ବଜ୍ଞତ୍ୱାଦିବିଶିଷ୍ଟ ଚୈତନ୍ୟର ବୋଧ ହୁଏ । କାରଣ, ଶବ୍ଦ-ବିଶିଷ୍ଟରୂପରେ କେବଳ ବାଚକ ହୁଏ । ପରେ ଲକ୍ଷଣାବୃତ୍ତିଦ୍ୱାରା ସର୍ବଜ୍ଞ-ଅସର୍ବଜ୍ଞତ୍ୱାଦି ଧର୍ମଶୂନ୍ୟ ନିରବଚ୍ଛିନ୍ନ ଚୈତନ୍ୟ ସ୍ୱରୂପବ୍ରହ୍ମଙ୍କର ଜ୍ଞାନ ହୋଇଥାଏ ।

ଆହୁରି ମଧ୍ୟ ଏହି ମହାବାକ୍ୟ ଲକ୍ଷ୍ୟରେ ସର୍ବୋପନିଷଦ୍ ସାରରେ ଏହିପରି ଉକ୍ତ ହୋଇଅଛି—

"ତ୍ୱଂ-ପଦାର୍ଥାଦୌପାଧିକାତ୍ ତତ୍ପଦାର୍ଥାଦୌପାଧିକାତ୍ ବିଲକ୍ଷଣ ଆକାଶବତ୍ ସର୍ବଗତଃ ସୂକ୍ଷ୍ମଃ କେବଳସତ୍ତାମାତ୍ରୋଽସିପଦାର୍ଥଃ ସ୍ୱୟଂ ଜ୍ୟୋତିରାତ୍ମେତ୍ୟୁଚ୍ୟତେ ତତ୍ପଦାର୍ଥଶ୍ଚାତ୍ମେତ୍ୟୁଚ୍ୟତେ" ॥

ସ: ଉ: ସା: ୪ ।

ଔପାଧିକ 'ତ୍ୱଂ' ପଦାର୍ଥ ଏବଂ ଔପାଧିକ ତତ୍ପଦାର୍ଥଠାରୁ ଯାହା ବିଲକ୍ଷଣ (ଭିନ୍ନ), ଆକାଶତୁଲ୍ୟ ସର୍ବବ୍ୟାପୀ, ସୂକ୍ଷ୍ମ, ଶୁଦ୍ଧ, ସତ୍ତାମାତ୍ର, ତାହା କେବଳ 'ତତ୍ତ୍ୱମସି' ବାକ୍ୟର 'ଅସି' ପଦ ପ୍ରତିପାଦ୍ୟ; ସ୍ୱପ୍ରକାଶ ସେହି ଆତ୍ମା ବିଶୁଦ୍ଧବ୍ରହ୍ମ ବୋଲି କଥିତ ହୁଅନ୍ତି ।

ପୁନଶ୍ଚ ଶିବ ଶୁକଙ୍କୁ ଏହି ମହାବାକ୍ୟତତ୍ତ୍ୱର ରହସ୍ୟ ଉତ୍ତମରୂପେ ବୁଝାଉ ଅଛନ୍ତି—

"ବାଚ୍ୟଂ ଲକ୍ଷ୍ୟମିତି ଦ୍ୱିଧାର୍ଥସରଣୀ ବାଚ୍ୟସ୍ୟ ହି ତ୍ୱଂ ପଦେ ।
ବାଚ୍ୟଂ ଭୌତିକମିନ୍ଦ୍ରିୟାଦିରପି ଯଲ୍ଲକ୍ଷ୍ୟଂ ତ୍ୱମର୍ଥଶ୍ଚ ସଃ ॥
ବାଚ୍ୟଂ ତତ୍ପଦମୀଶତାକୃତମତଲ୍ଲକ୍ଷ୍ୟଂ ତୁ ସଚ୍ଚିତ୍ ସୁଖା-
ନନ୍ଦ ବ୍ରହ୍ମ ତଦର୍ଥ ଏବ ଚ ତୟୋରୈକ୍ୟଂ ତ୍ୱସୀଦଂ ପଦମ୍ ॥
ତ୍ୱମିତି ତଦିତି କାର୍ଯ୍ୟେ କାରଣେ ସତ୍ୟୁପାଧୌ ।
ଦ୍ୱିତୟମିତରଥୈକଂ ସଚ୍ଚିଦାନନ୍ଦରୂପମ୍ ॥
ଉଭୟବଚନହେତୂ ଦେଶକାଲୌ ଚ ହିତ୍ୱା ।
ଜଗତି ଭବତି ସୋଽୟଂ ଦେବଦତ୍ତୋ ଯଥୈକଃ ॥
କାର୍ଯ୍ୟୋପାଧିରୟଂ ଜୀବଃ କାରଣୋପାଧିରୀଶ୍ୱରଃ ।
କାର୍ଯ୍ୟକାରଣତାଂ ହିତ୍ୱା ପୂର୍ଣ୍ଣବୋଧୋଽବଶିଷ୍ୟତେ" ॥

ଶୁକରହସ୍ୟୋପନିଷଦ୍ ୬ ୧୦-୧୨ ।

(ପୁନର୍ବାର 'ତତ୍ତ୍ୱମସି'-ବାକ୍ୟର ବ୍ୟାଖ୍ୟା କରାଯାଉଛି) ବାଚ୍ୟ ଏବଂ ଲକ୍ଷ୍ୟ—ଏହି ଦୁଇ ଶକ୍ତିଦ୍ୱାରା ପଦମାନଙ୍କର ଅର୍ଥ ବୋଧଗମ୍ୟ ହୁଏ । ବାଚ୍ୟାର୍ଥ ଅନୁସାରେ 'ତ୍ୱଂ' ପଦର ଅର୍ଥ ପଞ୍ଚଭୂତାତ୍ମକ ସ୍ଥୂଳଦେହ ଓ ଇନ୍ଦ୍ରିୟପ୍ରଭୃତି; କିନ୍ତୁ ଲକ୍ଷ୍ୟାର୍ଥ ଅନୁସାରେ 'ତ୍ୱଂ' ପଦର ଅର୍ଥ ଦେହେନ୍ଦ୍ରିୟାଶ୍ରିତ ଚୈତନ୍ୟରୂପ ବସ୍ତୁ । ସେହିପରି ତତ୍ପଦର ବାଚ୍ୟାର୍ଥ—ବିରାଟ ଈଶ୍ୱର ବା ଚୈତନ୍ୟ; କିନ୍ତୁ ଲକ୍ଷ୍ୟାର୍ଥ—ସଚ୍ଚିତ୍ସୁଖାନନ୍ଦବ୍ରହ୍ମ ଓ ପୂର୍ବୋକ୍ତ ଅଦ୍ୱିତୀୟ 'ସତ୍' ନାମ ରୂପବର୍ଜିତ ପୂର୍ବାପର-ଏକରୂପ ବସ୍ତୁ । ଯେଉଁ ପର୍ଯ୍ୟନ୍ତ କାର୍ଯ୍ୟକାରଣ ଉପାଧି ବିଦ୍ୟମାନ ଥାଏ, ସେ ପର୍ଯ୍ୟନ୍ତ ତ୍ୱଂ ଓ ତତ୍—ଏହି ଦୁଇବସ୍ତୁ ପୃଥକ୍‌ଭାବରେ ରହିଥାଏ । ଅନ୍ୟଥା ଉପାଧି-ରହିତ ହେଲେ ଉଭୟେ ସଚ୍ଚିଦାନନ୍ଦସ୍ୱରୂପୀ ଏକ ବସ୍ତୁରୂପରେ ଜ୍ଞାତ । ଯେପରି "ସେହି ଏହି ଦେବଦତ୍ତ"—ଇତ୍ୟାଦି ବାକ୍ୟରେ ବଚନ ଓ ହେତୁ—ଅର୍ଥାତ୍ ବାଚ୍ୟ ଓ ଲକ୍ଷ୍ୟାର୍ଥ ଓ ଦେଶକାଳତ୍ୟାଗପୂର୍ବକ ସେହି ଓ ଏହି—ଦୁଇପଦ ଏକ ଦେବଦତ୍ତଙ୍କୁ ହିଁ ବୁଝାନ୍ତି, ସେହିପରି ତତ୍ତ୍ୱମସି—ଏହି ବୈଦିକ ବାକ୍ୟରେ ମଧ୍ୟ ତ୍ୱଂ ଓ ତତ୍ପଦ ଏକ ସତ୍ ନିର୍ବିକାର ବ୍ରହ୍ମଙ୍କୁ କେବଳ ବୁଝାନ୍ତି । ଜୀବ କାର୍ଯ୍ୟୋପାଧିବିଶିଷ୍ଟ ଓ ଈଶ୍ୱର କାରଣୋପାଧିବିଶିଷ୍ଟ * (ଅର୍ଥାତ୍ ଯେ କାରଣରୂପରେ ସୃଷ୍ଟି କରନ୍ତି, ସେହି ଈଶ୍ୱର ଏବଂ ଯେ କାର୍ଯ୍ୟରୂପରେ ସୃଷ୍ଟ ହୁଏ ସେହି ଜୀବ । ଏହି ଉପାଧିଦ୍ୱୟ କେବଳ ଜୀବ ଓ ଈଶ୍ୱରଙ୍କର ଭେଦର ହେତୁ ) । ଏହି କାର୍ଯ୍ୟ-କାରଣଭାବ ତ୍ୟାଗ କଲେ ଜୀବ ଓ ଈଶ୍ୱର ଏକ ହୁଅନ୍ତି ଏବଂ ପୂର୍ଣ୍ଣବୋଧସ୍ୱରୂପ ବ୍ରହ୍ମ ଅବଶିଷ୍ଟ ରହନ୍ତି । ଉପରବର୍ଣ୍ଣିତ ଉପନିଷଦ୍ ବାକ୍ୟସମୂହରୁ ଏହା ପ୍ରତିପାଦିତ ହେଲା ଯେ, 'ତତ୍ତ୍ୱମସି' ପ୍ରଭୃତି ମହାବାକ୍ୟର ବ୍ୟାଖ୍ୟା ଅନୁସାରେ ଏକ ଅଦ୍ୱିତୀୟ ବିଶୁଦ୍ଧ ପରମାତ୍ମା ପରଂବ୍ରହ୍ମ କେବଳ ଲକ୍ଷ୍ୟବସ୍ତୁ ଓ ତଦ୍‌ଭିନ୍ନ ଉପାଧିକୃତ ଜୀବେଶ୍ୱରରୂପକ ବାଚ୍ୟାର୍ଥ ଭେଦଦ୍ୱାରା ଜଗତ୍ ବିରଚିତ —ଏକଥା ବେଦାନ୍ତଦର୍ଶନର ସାରସିଦ୍ଧାନ୍ତଭାବେ ଜଣାଯାଏ । ଦ୍ୱୈତାଦ୍ୱୈତପ୍ରଭୃତି ମତବାଦୀମାନେ ମହାବାକ୍ୟ-ତତ୍ତ୍ୱବିଚାର ଭିନ୍ନ-ଭିନ୍ନଭାବରେ ନିର୍ଦ୍ଦେଶ କରିଛନ୍ତି; କିନ୍ତୁ ଉପନିଷଦ୍‌ରେ ମହାବାକ୍ୟଦ୍ୱାରା ଯେପରି ବିଶୁଦ୍ଧ ପରମାତ୍ମା ଅବଗତ ହୁଅନ୍ତି—ତାହା ଉପର୍ଯ୍ୟୁକ୍ତ ଶ୍ରୁତିବାକ୍ୟସମୂହରୁ ପ୍ରତିପାଦିତ ହେଲା । ଏହା ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ସିଦ୍ଧାନ୍ତ ଅଟେ ।

---

* ନିରାଲମ୍ବ ଉପନିଷଦ୍‌ରେ ଉପରିବର୍ଣ୍ଣିତ କାର୍ଯ୍ୟୋପାଧି ଜୀବ ଓ କାରଣୋପାଧି ଈଶ୍ୱର ଏହିପରି ଉକ୍ତ ହୋଇଛନ୍ତି—ଈଶ୍ୱର ଇତି ଚ ।
"ବ୍ରହ୍ମୈବ ସ୍ୱଶକ୍ତିଂ ପ୍ରକୃତ୍ୟଭିଧେୟାମାଶ୍ରିତ୍ୟ ଲୋକାନ୍ ସୃଷ୍ଟ୍ୱା ପ୍ରବିଶ୍ୟାନ୍ତର୍ଯ୍ୟାମିତ୍ୱେନ ବ୍ରହ୍ମାଦୀନାଂ ବୁଦ୍ଧୀନ୍ଦ୍ରିୟନିୟନ୍ତୃତ୍ୱାଦୀଶ୍ୱରଃ ।।
ଜୀବ ଇତି ଚ । ବ୍ରହ୍ମ ବିଷ୍ଣ୍ୱୀଶାନେନ୍ଦ୍ରାଦୀନାଂ ନାମରୂପଦ୍ୱାରା ସ୍ଥୂଲୋଽହମିତି ମିଥ୍ୟାଧ୍ୟାସ-ବଶାଜ୍ଜୀବଃ ।। ସୋଽହମେକୋଽପି ଦେହାରମ୍ଭଭେଦବଶାଦ୍ ବହୁଜୀବଃ ।"
ନିରାଲମ୍ବୋପନିଷଦ୍—୭ । ୭ ।
ଅର୍ଥାତ୍ ବ୍ରହ୍ମଙ୍କର ଆଶ୍ରିତ ସ୍ୱଶକ୍ତି ପ୍ରକୃତି-ଆଶ୍ରୟପୂର୍ବକ ସମୂହ ସୃଷ୍ଟି କରି ସେଥିରେ ପ୍ରବେଶ କରିବା ପରେ ଅନ୍ତର୍ଯ୍ୟାମୀରୂପରେ ବ୍ରହ୍ମା ଆଦି ସକଳପ୍ରାଣୀମାନଙ୍କର ବୁଦ୍ଧି ଓ ଇନ୍ଦ୍ରିୟସମୂହର

ଆଧୁନିକ ବେଦାନ୍ତୀଆଦି ଦାର୍ଶନିକମାନେ ଏହି ମହାବାକ୍ୟସମୂହର ଯେପରି ବ୍ୟାଖ୍ୟା କରିଛନ୍ତି, ତାହା ସଂକ୍ଷେପରେ ଏଠାରେ ବର୍ଣ୍ଣନା କରାଯାଇଛି । ଏ ବିଷୟରେ ଶଙ୍କରାଚାର୍ଯ୍ୟଙ୍କ ଯଥାର୍ଥ ବଚନ—

"ସ୍ୟାତ୍ ତତ୍-ତ୍ୱଂପଦୟୋଃ ସ୍ୱାମିନ୍
ଅର୍ଥଃ କତିବିଧୋ ମତଃ ।
ପଦୟୋଃ କୋ ନୁ ବାଚ୍ୟାର୍ଥୋ
ଲକ୍ଷ୍ୟାର୍ଥ ଉଭୟୋଶ୍ଚ କଃ ॥
ବାକ୍ୟୈକତ୍ୱବିବକ୍ଷାୟାଂ ବିରୋଧଃ କଃ ପ୍ରତୀୟତେ ।
ଲକ୍ଷ୍ୟାର୍ଥୟୋରଭିନ୍ନତ୍ୱେ ସ କଥଂ ବିନିବର୍ତ୍ତତେ ॥
ଏକତ୍ୱକଥନେ କା ବା ଲକ୍ଷଣାଙ୍ଗୀକୃତା ।
ଏତତ୍ ସର୍ବଂ କରୁଣୟା ସମ୍ୟକ୍ ତ୍ୱଂ ପ୍ରତିପାଦୟ" ॥

ସର୍ବବେଦାନ୍ତସାର ସଂଗ୍ରହ ୭୦୧-୭୦୩ ।

---

(ବୁଦ୍ଧିରୂପୀ ଇନ୍ଦ୍ରିୟମାନଙ୍କର) ନିୟନ୍ତା ହେବା ହେତୁରୁ ଈଶ୍ୱର ବୋଲି ଖ୍ୟାତ ହୁଅନ୍ତି । ଜୀବ କିଏ—ଏ ପ୍ରଶ୍ନର ଉତ୍ତର ଏହିପରି—ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ର ପ୍ରଭୃତିଙ୍କ ନାମ ଓ ରୂପଦ୍ୱାରା ମୁଁ ସ୍ଥୂଳ—ଏହି ମିଥ୍ୟାଜ୍ଞାନର ଅଧ୍ୟାସ ବା ଆରୋପହେତୁରୁ ସେହି ବ୍ରହ୍ମଙ୍କ ଆଭାସ ଜୀବରୂପରେ ପରିଣତ ହୁଏ ।

ବ୍ରହ୍ମଙ୍କ ସ୍ୱରୂପ ଯଦି ଏକ, ତଥାପି ସାତ୍ତ୍ୱିକ, ରାଜସିକ ଓ ତାମସ-ଅହଂକାରରୂପକ ଦେହୋତ୍ପତ୍ତିର କାରଣଭେଦରେ ବହୁବିଧ ଜୀବସ୍ୱରୂପରେ ଅଭିବ୍ୟକ୍ତ ହୁଏ ।

ଅନାତ୍ମବୁଦ୍ଧିଶୈଥିଲ୍ୟବିବେକନିଦ୍ରାମହଂ ମମ ସ୍ୱପ୍ନଗତିଂ ଗତୋଽହମ୍ ।
ସ୍ୱରୂପସୂର୍ଯ୍ୟେଽଭ୍ୟୁଦିତେ ସ୍ଫୁଟୋକ୍ତୈର୍ଗୁରୋର୍ମହାବାକ୍ୟପଦୈଃ ପ୍ରବୁଦ୍ଧଃ" ॥

ଶୁକରହସ୍ୟୋପନିଷଦ୍—ଜ ୯ ।

ଗୁରୁଙ୍କ ଉପଦେଶ ଲାଭ କରି ଶିଷ୍ୟ ଯେପରି ଅନୁଭବ କରେ, ତାହା ଏଠାରେ କୁହାଯାଇଛି-ଆତ୍ମା-ଦର୍ଶନ ନ ହେବା ପର୍ଯ୍ୟନ୍ତ ମୁଁ ଅବିବେକୀ ରୂପରେ ନିଦ୍ରାଭିଭୂତ ଥିଲି, ମୋର ଅଭିମାନ ଜନ୍ମିଥିଲା—"ଏହା ମୋର ନୁହେଁ", ଏହିପରି ରାଗଦ୍ୱେଷପୂର୍ଣ୍ଣ ମମତ୍ୱ ମୋତେ ଅଧିକାର କରିଥିଲା, ଆଉ ମୁଁ ସ୍ୱପ୍ନାଭିଭୂତ ହୋଇଥିଲି (ଅର୍ଥାତ୍ ସ୍ୱପ୍ନରେ ଯେପରି ଅସତ୍ୟ ସତ୍ୟ ବୋଲି ପ୍ରତୀତ ହୁଏ, ସେହିପରି ଅଜ୍ଞାନରେ ଜଗତ୍ ସତ୍ୟ ବୋଲି ବୋଧହୁଏ, ମୋର ସେହି ଅବସ୍ଥାନ ଥିଲା); କିନ୍ତୁ ବର୍ତ୍ତମାନ ସ୍ୱରୂପ ସୂର୍ଯ୍ୟ ଉଦିତ ହେବାରୁ (ଅର୍ଥାତ୍ ସ୍ୱରୂପ ଲାଭକାଳ ଉପସ୍ଥିତ ହେବାରୁ) ଏବଂ ଗୁରୁ ସ୍ପଷ୍ଟରୂପରେ ମହାବାକ୍ୟର ଅର୍ଥ ବୁଝାଇ ଦେବାରୁ ମୁଁ ପ୍ରବୁଦ୍ଧ ହେଲି ।

ଶିଷ୍ୟ କହିଲେ—ହେ ପ୍ରଭୋ ! ତ୍ୱଂପଦ ଓ ତତ୍ପଦର ଅର୍ଥ କେଉଁପ୍ରକାର, ଉଭୟ ପଦର ବାଚ୍ୟାର୍ଥ କ'ଣ, ଲକ୍ଷ୍ୟାର୍ଥ ବା କ'ଣ ହୋଇପାରେ; ବାଚ୍ୟାର୍ଥ ଦ୍ୱୟର ଅଭିନ୍ନତ୍ୱ ବିବକ୍ଷା ହେଲେ କପର ବିରୋଧ ପ୍ରଶମିତ ହୁଏ; ଲକ୍ଷ୍ୟାର୍ଥ ଦ୍ୱୟର ଐକ୍ୟ ହେଲେ ସେହି ବିରୋଧର ନିବାରଣ କପର ହୁଏ; ତତ୍ତ୍ୱମସି ସ୍ଥଳରେ ଅଭିନ୍ନତ୍ୱ ପ୍ରତିପାଦନ ବିଷୟରେ କପର ଲକ୍ଷଣା ସ୍ୱୀକୃତ ହୋଇଅଛି—ଆପଣ ଦୟାପରବଶ ହୋଇ ଏହା ସମସ୍ତ ପ୍ରତିପାଦନ କରନ୍ତୁ—

"ଶୃଣୁଷ୍ୱାବହିତୋ ବିଦ୍ୱନ୍ ଅଦ୍ୟ ତେ ଫଳିତଂ ତପଃ ।
ବାକ୍ୟାର୍ଥଶ୍ରୁତିମାତ୍ରେଣ ସମ୍ୟଗ୍ ଜ୍ଞାନଂ ଭବିଷ୍ୟତି ॥
ଯାବନ୍ନ ତତ୍ତ୍ୱଂ-ପଦୟୋରର୍ଥଃ ସମ୍ୟଗ୍ ବିଚାର୍ଯ୍ୟତେ ।
ତାବଦେବ ନୃଣାଂ ବନ୍ଧୋ ମୃତ୍ୟୁସଂସାରଲକ୍ଷଣଃ ॥
ଅବସ୍ଥା ସଚ୍ଚିଦାନନ୍ଦାଖଣ୍ଡୈକରସରୂପିଣୀ ॥
ମୋକ୍ଷଃ ସିଧ୍ୟତି ବାକ୍ୟାର୍ଥାପରୋକ୍ଷଜ୍ଞାନତଃ ସତାମ୍ ॥
ବାକ୍ୟାର୍ଥ ଏବ ଜ୍ଞାତବ୍ୟୋ ମୁମୁକ୍ଷୋର୍ଭବମୁକ୍ତୟେ ।
ତସ୍ମାଦବହିତୋ ଭୂତ୍ୱା ଶୃଣୁ ବକ୍ଷ୍ୟେ ସମାସତଃ" ॥

ସର୍ବ: ବେ: ସି: ସାରସଂଗ୍ରହ ୭୦୪-୭୦୭ ॥

ଶିଷ୍ୟଙ୍କର ପ୍ରଶ୍ନ ଶୁଣି ଗୁରୁ କହିଲେ—ହେ ବିଦ୍ୱନ୍ ! ତୁମେ ମନୋଯୋଗପୂର୍ବକ ଶ୍ରବଣ କର, ଆଜି ତୁମର ତପସ୍ୟା ଫଳବତୀ ହୋଇଅଛି । ତତ୍ତ୍ୱମସି—ବାକ୍ୟର ଅର୍ଥ ଶ୍ରବଣମାତ୍ରେ ହିଁ ତୁମ୍ଭର ସମୀଚୀନ ଜ୍ଞାନ (ତତ୍ତ୍ୱଜ୍ଞାନ) ଉତ୍ପନ୍ନ ହେବ । ଯେ ପର୍ଯ୍ୟନ୍ତ ମାନବ ସଂସାରାସକ୍ତ ହୋଇ "ତତ୍ତ୍ୱମସି"ର ଅର୍ଥାବବୋଧପୂର୍ବକ ଈଶ୍ୱରସାକ୍ଷାତ୍କାର ନ କରନ୍ତି, ସେ ପର୍ଯ୍ୟନ୍ତ ମରଣ ଓ ପୁନର୍ଜନ୍ମରୂପକ ସଂସାର-ବନ୍ଧନରେ ବଦ୍ଧ ହୋଇ ରହିଥିବ । ତତ୍ତ୍ୱମସି ବାକ୍ୟର ପ୍ରତ୍ୟକ୍ଷ ଜ୍ଞାନରେ ସାଧୁମାନଙ୍କର ସଚ୍ଚିଦାନନ୍ଦ ଅଖଣ୍ଡ ଏକରସସ୍ୱରୂପ ମୋକ୍ଷାବସ୍ଥା ପ୍ରାପ୍ତ ହୁଏ । ମୁକ୍ତିକାମୀ ପୁରୁଷର ସଂସାରବନ୍ଧନରୁ ମୁକ୍ତିଲାଭ ନିମନ୍ତେ "ତତ୍ତ୍ୱମସି" ବାକ୍ୟର ଅର୍ଥ ଜାଣିବା ଉଚିତ୍ । ଅତଏବ ସେ ବିଷୟ ସଂକ୍ଷେପରେ ଏଠାରେ ବର୍ଣ୍ଣନା କରାଯାଉଛି, ତୁମ୍ଭେ ଅବହିତ ଚିତ୍ତରେ ଶ୍ରବଣ କର—

"ଅର୍ଥା ବହୁବିଧାଃ ପ୍ରୋକ୍ତା ବ୍ୟାକ୍ୟାନାଂ ପଣ୍ଡିତୋତ୍ତମୈଃ ।
ବାଚ୍ୟଲକ୍ଷ୍ୟାଦିଭେଦେନ ପ୍ରସ୍ତୁତଂ ଶ୍ରୂୟତାଂ ତ୍ୱୟା" ॥

ସ: ସି: ସା: ୭୦୮ ।

ଉତ୍ତମ ପଣ୍ଡିତମାନେ ବାକ୍ୟାର୍ଥ ଓ ଲକ୍ଷ୍ୟାର୍ଥଭେଦରେ ବାକ୍ୟସମୂହର ନାନାପ୍ରକାର ଅର୍ଥ କରିଅଛନ୍ତି, ବର୍ତ୍ତମାନ ତୁମ୍ଭେ ପ୍ରସଙ୍ଗ ପ୍ରାପ୍ତ ଅର୍ଥ ଶ୍ରବଣ କର—

"ବାକ୍ୟେ ତତ୍ତ୍ୱମସୀତ୍ୟେବ ବିଦ୍ୟତେ ଯତ୍ ପଦତ୍ରୟମ୍ ।
ତତ୍ରାଦୌ ବିଦ୍ୟମାନସ୍ୟ ତତ୍ ପଦସ୍ୟ ନିଗଦ୍ୟତେ" ॥

ସ: ସି: ସା: ୬୦୯ ।

ଅର୍ଥାତ୍ ତତ୍ତ୍ୱମସି—ଏହି ବାକ୍ୟରେ (ତତ୍—ତ୍ୱଂ, ଅସି) ତିନୋଟି ପଦ ବିଦ୍ୟମାନ । ତା ମଧ୍ୟରେ ପ୍ରଥମସ୍ଥିତ ତତ୍ପଦର ଅର୍ଥ କଥିତ ହେଉଅଛି—

"ଶାସ୍ତ୍ରାର୍ଥକୋବିଦୈରର୍ଥୌ । ବାଚ୍ୟୋ ଲକ୍ଷ୍ୟ ଇତି ଦ୍ୱିଧା ।
ବାଚ୍ୟାର୍ଥଂ ତେ ପ୍ରବକ୍ଷ୍ୟାମି ପଣ୍ଡିତୈର୍ଯ ଉଦୀରିତଃ ॥" —୬୧୦ ।

ଶାସ୍ତ୍ରାର୍ଥଜ୍ଞାନସମ୍ପନ୍ନ ପଣ୍ଡିତମାନେ ବାଚ୍ୟ ଏବଂ ଲକ୍ଷ୍ୟ—ଏହି ଦୁଇପ୍ରକାର ଅର୍ଥ କହିଅଛନ୍ତି; ଆମ୍ଭେ ତୁମ୍ଭଙ୍କୁ ବାଚ୍ୟାର୍ଥ କହୁଅଛୁଁ—

"ସମଷ୍ଟିରୂପମଜ୍ଞାନଂ ସାଭାସଂ ସତ୍ତ୍ୱବୃଂହିତମ୍ ।
ବିୟଦାଦିବିରାଡ଼ନ୍ତଂ ସ୍ୱକାର୍ଯ୍ୟେଣ ସମନ୍ୱିତମ୍ ॥
ଚୈତନ୍ୟଂ ତଦବଚ୍ଛିନ୍ନଂ ସତ୍ୟଜ୍ଞାନାଦିଲକ୍ଷଣମ୍ ।
ସର୍ବଜ୍ଞତ୍ୱେଶ୍ୱରତ୍ୱାନ୍ତର୍ଯ୍ୟାମୀତ୍ୱାଦିଗୁଣୈର୍ଯୁତମ୍ ॥
ଜଗତ୍ସ୍ରଷ୍ଟୃତ୍ୱପାତୃତ୍ୱସଂହର୍ତ୍ତୃତ୍ୱାଦିଧର୍ମକମ୍ ।
ସର୍ବାତ୍ମନା ଭାସମାନଂ ଯଦମେୟଂ ଗୁଣୈଶ୍ଚ ତତ୍ ॥
ଅବ୍ୟକ୍ତମପରଂ ବ୍ରହ୍ମ ବାଚ୍ୟାର୍ଥ ଇତି କଥ୍ୟତେ ।
ନୀଳମୁତ୍ପଳମିତ୍ୟେବ ଯଥା ବାକ୍ୟାର୍ଥସଂଗତଃ ॥
ତଥା ତତ୍ତ୍ୱମସୀତ୍ୟେବ ନାସ୍ତି ବାକ୍ୟାର୍ଥସଂଗତଃ ।
ପଟାଦ୍ ବ୍ୟାବର୍ତ୍ତିତେ ନୀଳ ଉତ୍ପଳେ ନ ବିଶେଷିତଃ ॥
ଶୌକ୍ଲ୍ୟାଦ୍ ବ୍ୟାବର୍ତ୍ତିତେ ନୀଳେନୋତ୍ପଳଂ ତୁ ବିଶେଷିତମ୍ ।
ଇତ୍ଥମନ୍ୟୋନ୍ୟଭେଦସ୍ୟ ବ୍ୟାବର୍ତ୍ତକତୟା ତୟୋଃ ॥

ବିଶେଷଣବିଶେଷ୍ୟତ୍ୱସଂସର୍ଗସ୍ୟେତରସ୍ୟ ବା ।
ବାକ୍ୟାର୍ଥତ୍ୱେ ପ୍ରମାଣାନ୍ତରବିରୋଧୋ ନ ବିଦ୍ୟତେ ॥
ସର୍ବ: ସି: ସାର—୭୧୧-୭୧୭ ।

ଅର୍ଥାତ୍—ସ୍ୱକୀୟ କାର୍ଯ୍ୟ ସହିତ ଯୁକ୍ତ ଶବ୍ଦାଶ୍ରୟସମନ୍ୱିତ ଆକାଶଠାରୁ ବିରାଟ ପର୍ଯ୍ୟନ୍ତ, ସର୍ବତ୍ର ସ୍ଥିତ ସମଷ୍ଟିରୂପ ଅଜ୍ଞାନ ବର୍ତ୍ତମାନ ଅଛି; ସେହି ଅଜ୍ଞାନାବଚ୍ଛିନ୍ନ ସତ୍ୟ, ଜ୍ଞାନ, ଆନନ୍ଦରୂପ ଚୈତନ୍ୟ ସର୍ବଜ୍ଞତ୍ୱ, ଈଶ୍ୱରତ୍ୱ ଓ ଅନ୍ତର୍ଯ୍ୟାମିତ୍ୱାଦିଗୁଣସମୂହ-ସମନ୍ୱିତ, ଜଗତର ସୃଷ୍ଟିକର୍ତ୍ତୃତ୍ୱ, ସ୍ଥିତି ଓ ପ୍ରଳୟକର୍ତ୍ତୃତ୍ୱ ପ୍ରଭୃତି ଧର୍ମବିଶିଷ୍ଟ ଏବଂ ଅପରିମିତ ଗୁଣସମୂହଦ୍ୱାରା ସମନ୍ୱିତ ଓ ସର୍ବାତ୍ମଭାବରେ ପ୍ରକାଶମାନ ହୋଇ ଅପରବ୍ରହ୍ମ ନାମ ଧାରଣ କରନ୍ତି, ସେହି ବାଚ୍ୟାର୍ଥ ବୋଲି କଥିତ ହୁଅନ୍ତି; ନୀଳଉତ୍ପଳସ୍ଥଳରେ ଯେପରି ବାକ୍ୟାର୍ଥସଂଗତି, ସେପରି 'ତତ୍ତ୍ୱମସି' ସ୍ଥାନରେ ବାକ୍ୟାର୍ଥସଂଗତି ହୁଏ ନାହିଁ । ଅର୍ଥାତ୍ ନୀଳ ପଦାର୍ଥଦ୍ୱାରା ଉତ୍ପଳ ପଦାର୍ଥ ବିଶେଷିତ ହୋଇ ଶୁକ୍ଳ ପଟଠାରୁ ବ୍ୟାବୃତ୍ତ ହୁଏ । ଅର୍ଥାତ୍ ନୀଳ ଓ ଉତ୍ପଳରୂପକ ଦୁଇ ପଦାର୍ଥ ପରସ୍ପର ଭେଦର ବ୍ୟାବର୍ତ୍ତକତ୍ୱ (ନିବାରକତ୍ୱ) ବିଧାନ କରନ୍ତି । ଅତଏବ ବିଶେଷଣ-ବିଶେଷ୍ୟଭାବ, ସଂସର୍ଗ କିମ୍ବା ଅନ୍ୟ କିଛି ସମ୍ବନ୍ଧ ବାକ୍ୟାର୍ଥ ହେଲେ ପ୍ରତ୍ୟକ୍ଷାଦି ପ୍ରମାଣ ସହିତ କୌଣସି ବିରୋଧ ରହେ ନାହିଁ ।

ଅତଃ ସଂଗଚ୍ଛତେ ସମ୍ୟଗ୍ ବାକ୍ୟାର୍ଥେ ବାଧବର୍ଜିତଃ ।
ଏବଂ ତତ୍ତ୍ୱମସୀତ୍ୟଦ୍ର ବାକ୍ୟାର୍ଥୋ ନ ସମଞ୍ଜସଃ ॥
ତଦର୍ଥସ୍ୟ ପରୋକ୍ଷତ୍ୱାଦିବିଶିଷ୍ଟଚେତେରପି ।
ତ୍ୱମର୍ଥସ୍ୟାପରୋକ୍ଷତ୍ୱାଦିବିଶିଷ୍ଟଚେତେରପି ॥
ତଥୈବାନ୍ୟୋନ୍ୟଭେଦସ୍ୟ ବ୍ୟାବର୍ତ୍ତକତୟା ତୟୋଃ ।
ବିଶେଷଣ-ବିଶେଷ୍ୟସ୍ୟ ସଂସର୍ଗସ୍ୟେତରସ୍ୟ ବା ॥
ବାକ୍ୟାର୍ଥତ୍ୱେ ବିରୋଧୋଽସ୍ତି ପ୍ରତ୍ୟକ୍ଷାଦିକୃତସ୍ତତଃ ।
ସଂଗଚ୍ଛତେ ନ ବାକ୍ୟାର୍ଥସ୍ତଦ୍‌ବିରୋଧଂ ଚ ବକ୍ଷ୍ୟତେ ॥
ସ: ସି: ସା: ୭୧୮—୭୨୧ ।

ଯେପରି ନୀଳୋତ୍ପଳ କହିଲେ ଅବାଧିତ ବାକ୍ୟାର୍ଥ ଉତ୍ତମରୂପେ ସଙ୍ଗତ ହୁଏ, ଅର୍ଥାତ୍ ଶୁକ୍ଳତ୍ୱାଦିବ୍ୟାବର୍ତ୍ତକ ଉତ୍ପଳର ଜ୍ଞାନ ହୁଏ, ସେପରି 'ତତ୍ତ୍ୱମସି' ଶ୍ରୁତିବଚନରେ ଇତରାର୍ଥ ବ୍ୟାବର୍ତ୍ତକରୂପ ଅର୍ଥ ସଙ୍ଗତ ହୁଏ ନାହିଁ । ନୀଳୋତ୍ପଳ ଭଳି ଏଠାରେ ବାକ୍ୟାର୍ଥସଂଗତି ନ ହେବାର କାରଣ ଏହିପରି—'ତତ୍ତ୍ୱମସି' ବାକ୍ୟରେ 'ତତ୍'ପଦାର୍ଥ ପରୋକ୍ଷତ୍ୱାଦିଯୁକ୍ତ ଚୈତନ୍ୟକୁ

ବୁଝାଏ; କିନ୍ତୁ 'ତ୍ୱଂ' ପଦାର୍ଥ ଅପରୋକ୍ଷତ୍ୱାଦିଯୁକ୍ତ ଚୈତନ୍ୟକୁ ବୁଝାଏ । ଅତଏବ ତତ୍ ଓ ତ୍ୱଂ ଏହି ଦୁଇଟି ପରସ୍ପର ଭେଦର (ଅନ୍ୟୋନ୍ୟାଭାବର) ବ୍ୟାବର୍ତ୍ତକ ବା ବିବର୍ତ୍ତକ ହୋଇ ବିଶେଷଣ-ବିଶେଷ୍ୟଭାବ । ସଂସର୍ଗ (ସମ୍ବନ୍ଧବିଶେଷ) କିମ୍ବା ଅନ୍ୟ ବାକ୍ୟାର୍ଥ ହୁଏ; ତାହାହେଲେ ପ୍ରତ୍ୟକ୍ଷପ୍ରଭୃତି ସହିତ ବିରୋଧ ହୁଏ, ଅତଏବ ବାକ୍ୟାର୍ଥ ସଙ୍ଗତ ହୁଏ ନାହିଁ । ବିରୋଧ କିପରି, ସେ ବିଷୟରେ କୁହାଯାଉଛି—

ସର୍ବେଶତ୍ୱସ୍ୱତନ୍ତ୍ରତ୍ୱସର୍ବଜ୍ଞତ୍ୱାଦିଭିର୍ଗୁଣୈଃ ।<br>
ସର୍ବୋତ୍ତମଃ ସତ୍ୟକାମଃ ସତ୍ୟସଂକଳ୍ପ ଈଶ୍ୱରଃ ॥<br>
ତତ୍ ପଦାର୍ଥସ୍ତ୍ୱମର୍ଥସ୍ତୁ କିଞ୍ଚିଜ୍‌ଜ୍ଞୋ ଦୁଃଖଜୀବନଃ ।<br>
ସଂସାର୍ଯ୍ୟୟଂ ତଦ୍‌ଗତକୋ ଜୀବଃ ପ୍ରାକୃତଲକ୍ଷଣଃ ॥<br>
କଥମେକତ୍ୱମନୟୋର୍ଘଟତେ ବିପରୀତୟୋଃ ।<br>
ପ୍ରତ୍ୟକ୍ଷେଣ ବିରୋଧୋଽୟମୁଭୟୋରୁପଲଭ୍ୟତେ ॥

ସ: ସି: ସା: ୭୨୨-୭୨୪ ।

ସର୍ବେଶ୍ୱରତ୍ୱ, ସ୍ୱତନ୍ତ୍ରତ୍ୱ ଓ ସର୍ବଜ୍ଞତ୍ୱାଦି ଗୁଣସମୂହଦ୍ୱାରା ସକଳର ଉତ୍କୃଷ୍ଟ, ସତ୍ୟକାମ ଓ ସତ୍ୟସଙ୍କଳ୍ପ ପରମେଶ୍ୱର ତତ୍‌ପଦର ବାଚ୍ୟାର୍ଥ; ଅଳ୍ପଜ୍ଞ, ଦୁଃଖରେ ଜୀବନଯାପନକାରୀ, ସଂସାରଶ୍ରୟୀ ପ୍ରାକୃତରୂପୀ ଏହି ସଂସାରୀ ଜୀବ 'ତ୍ୱଂ' ପଦବାଚ୍ୟ । ଈଶ୍ୱର ଏବଂ ଜୀବ—ଏହି ଦୁଇ ବିରୁଦ୍ଧ ପଦାର୍ଥର ଏକତ୍ୱ କିପରି ସମ୍ଭବ ହୋଇପାରେ, ପ୍ରତ୍ୟକ୍ଷପ୍ରମାଣଦ୍ୱାରା ଉଭୟର ଏହି ବିରୋଧ ଉପଲବ୍‌ଧ ହେଉଛି ।

ବିରୁଦ୍ଧଧର୍ମାକ୍ରାନ୍ତତ୍ୱାତ୍ ପରସ୍ପରବିଲକ୍ଷଣୌ ।<br>
ଜୀବେଶୌ ବହ୍ନିତୁହିନାବିବ ଶବ୍ଦାର୍ଥତୋଽପି ଚ ॥<br>
ପ୍ରତ୍ୟକ୍ଷାଦିବିରୋଧଃ ସ୍ୟାଦତୈ୍ୟକ୍ୟେତୟୋଃ ପରତ୍ୟକ୍ତେ ।<br>
ଶ୍ରୁତିବଚନବିରୋଧୋ ଭବତି ମହାନ୍ ସ୍ମୃତିବଚନବିରୋଧଶ୍ଚ ॥<br>
ଶ୍ରୁତ୍ୟାପ୍ୟେକତ୍ୱମନୟୋସ୍ତାତ୍ପର୍ଯ୍ୟେଣ ନିଗଦ୍ୟତେ ।<br>
ମୁହୁସ୍ତତ୍ତ୍ୱମସୀତ୍ୟସ୍ମାଦଙ୍ଗୀକାର୍ଯ୍ୟଂ ଶ୍ରୁତେର୍ବଚଃ ॥

ବାକ୍ୟାର୍ଥତ୍ୱେ ବିଶିଷ୍ଟସ୍ୟ ସଂସର୍ଗସ୍ୟ ଚ ବା ପୁନଃ ।
ଅଯଥାର୍ଥ ତୟା ସୋଽୟଂ ବାକ୍ୟାର୍ଥୋ ନ ମତଃ ଶ୍ରୁତେଃ ॥

ସ: ସି: ସା: ୭୨୫—୭୨୮ ।

ବିରୁଦ୍ଧ ଧର୍ମସମନ୍ୱିତ ହୋଇଥିବା ହେତୁରୁ ଅଗ୍ନି ଓ ହିମତୁଲ୍ୟ ଜୀବ ଓ ଈଶ୍ୱର ପରସ୍ପର ବିଲକ୍ଷଣ ସ୍ୱଭାବବିଶିଷ୍ଟ; ଶବ୍ଦାର୍ଥଦ୍ୱାରା ମଧ୍ୟ ପ୍ରତ୍ୟକ୍ଷ ପ୍ରମାଣ ସହିତ ବିରୋଧ ଘଟେ । ଯଦି ଉଭୟଙ୍କର ଐକ୍ୟ ପରିତ୍ୟକ୍ତ ହୁଏ, ତାହାହେଲେ ଶ୍ରୁତି-ବଚନ ଓ ସ୍ମୃତିବଚନସମୂହର ବିରୋଧ ଜାତ ହୁଏ । ଶ୍ରୁତି ମଧ୍ୟ ଜୀବ ଏବଂ ପରମେଶ୍ୱରଙ୍କର ଏକତା ପ୍ରତିପାଦନ କରିଅଛି । ଅତଏବ ନଅ ବାର ତତ୍ତ୍ୱମସି ଶ୍ରୁତିବଚନ ଆବୃତ୍ତ ହୋଇଛି । ତତ୍ତ୍ୱମସି ବାକ୍ୟାର୍ଥ ଯଦି ବିଶେଷଣବିଶିଷ୍ଟ ବା ସଂସର୍ଗବିଶିଷ୍ଟ ହେବ, ତେବେ ସେହି ବାକ୍ୟର ଯଥାର୍ଥଭାବରେ ଅର୍ଥ ପ୍ରତିପାଦିତ ହୋଇ ପାରିବ ନାହିଁ; ହିଁ ଗସ୍ୱତଃ ଏପରି ବାକ୍ୟାର୍ଥ ଶ୍ରୁତିର ଅଭିପ୍ରେତ ନୁହେଁ ।

ଅଖଣ୍ଡୈକରସତ୍ୱେନ ବାକ୍ୟାର୍ଥଃ ଶ୍ରୁତସମ୍ମତଃ ।
ସ୍ଥୂଳସୂକ୍ଷ୍ମପ୍ରପଞ୍ଚସ୍ୟ ସନ୍ମାତ୍ରତ୍ୱଂ ପୁନଃପୁନଃ ॥
ଦର୍ଶୟିତ୍ୱା ସୁଷୁପ୍ତୌ ତଦ୍‌ବ୍ରହ୍ମାଭିନ୍ନତ୍ୱମାତ୍ମନଃ ।
ଉପପାଦ୍ୟ ସଦେକତ୍ୱଂ ପ୍ରଦର୍ଶୟିତୁମିଚ୍ଛୟା ॥
ଐତଦାତ୍ମ୍ୟମିଦଂ ସର୍ବମିତ୍ୟୁକ୍ତ୍ୱୈବ ସଦାତ୍ମନୋଃ ।
ବ୍ରବୀତ ଶ୍ରୁତରେକତ୍ୱଂ ବ୍ରହ୍ମଣୋଽଦ୍ୱୈତସିଦ୍ଧୟେ ॥
ସତ ପ୍ରପଞ୍ଚେ ଜୀବେ ବାଦ୍ୱୈତତ୍ୱଂ ବ୍ରହ୍ମଣଃ କୁତଃ ।
ଅତସ୍ତୟୋରଖଣ୍ଡତ୍ୱମେକତ୍ୱଂ ଶ୍ରୁତସମ୍ମତମ୍ ॥
ବିରୁଦ୍ଧାଂଶପରତ୍ୟାଗାତ୍ ପ୍ରତ୍ୟକ୍ଷାଦର୍ନ ବାଧତେ ।
ଅବିରୁଦ୍ଧାଂଶଗ୍ରହଣାନ୍ନ ଶ୍ରୁତ୍ୟାପି ବିରୁଧ୍ୟତେ ॥

ସ: ସି: ସା: ୭୨୯-୭୩୩ ।

ଯଦି ତତ୍ତ୍ୱମସି-ଶ୍ରୁତି ବାକ୍ୟରେ ବିଶିଷ୍ଟ କିମ୍ବା ସଂସର୍ଗ-ସମ୍ବନ୍ଧରେ ବାକ୍ୟାର୍ଥ ନ ହେବ, ତେବେ ପ୍ରକୃତରେ ବାକ୍ୟାର୍ଥ କ'ଣ—ଏହି ପ୍ରଶ୍ନର ଉତ୍ତରରେ କୁହାଯାଉଛି କି ଅଖଣ୍ଡ ଓ ଏକରସରୂପୀ ବସ୍ତୁ ହିଁ ଶ୍ରୁତିସମ୍ମତ ବାକ୍ୟାର୍ଥ; କାରଣ ଶ୍ରୁତିବାକ୍ୟ ବାରମ୍ବାର ବ୍ରହ୍ମ ଏବଂ ଆତ୍ମାର ଅଭିନ୍ନତ୍ୱ ପ୍ରତିପାଦନ କରିଛି ; ଅର୍ଥାତ୍ ସ୍ଥୂଳ ଓ ସୂକ୍ଷ୍ମ-ପ୍ରପଞ୍ଚର (ଜଗତର) ବ୍ରହ୍ମସ୍ୱରୂପତ୍ୱ ପ୍ରତିପାଦନ କରି ସୁଷୁପ୍ତି ସମୟରେ ବ୍ରହ୍ମ ସହିତ ଆତ୍ମାର ଅଭିନ୍ନତ୍ୱ ଉପପାଦନ

କରି ବ୍ରହ୍ମର ଏକତ୍ୱ ପ୍ରତିପାଦନ ଉଦ୍ଦେଶ୍ୟରେ ସକଳ ଦୃଶ୍ୟମାନ ପଦାର୍ଥ ଆତ୍ମାତିରିକ୍ତ ନୁହେଁ —ଏହା କଥନପୂର୍ବକ ବ୍ରହ୍ମର ଅଦ୍ୱିତୀୟତ୍ୱ ସିଦ୍ଧି ନିମନ୍ତେ ବ୍ରହ୍ମ ଏବଂ ଆତ୍ମାର ଐକ୍ୟ ଓ ଅଭିନ୍ନତ୍ୱ ବହୁବାର ଶ୍ରୁତି ପ୍ରତିପାଦନ କରିଛି । (ତତ୍ତ୍ୱମସି ସ୍ଥଳରେ ତତ୍‌ପଦର ଅର୍ଥ ପରୋକ୍ଷତ୍ୱବିଶିଷ୍ଟ ଚୈତନ୍ୟ ଏବଂ ତ୍ୱଂ ପଦର ଅର୍ଥ ଅପରୋକ୍ଷତ୍ୱବିଶିଷ୍ଟ ଚୈତନ୍ୟ; କିନ୍ତୁ ପରୋକ୍ଷତ୍ୱ-ଅପରୋକ୍ଷତ୍ୱ ଆଦି) ବିରୁଦ୍ଧଭାବ ପରିତ୍ୟାଗ କଲେ ପ୍ରତ୍ୟକ୍ଷ ପ୍ରଭୃତି ପ୍ରମାଣର ବାଧ ହୁଏ ନାହିଁ , ଅବିରୁଦ୍ଧ ଚୈତନ୍ୟାଂଶ ଗ୍ରହଣ କଲେ ଶ୍ରୁତିବିରୋଧ ମଧ୍ୟ ଘଟେ ନାହିଁ ।

ଲକ୍ଷଣା ହ୍ୟୁପଗନ୍ତବ୍ୟା ତତୋ ବାକ୍ୟାର୍ଥସିଦ୍ଧୟେ ।
ବାଚ୍ୟାର୍ଥାନୁପପତ୍ତ୍ୟୈବ ଲକ୍ଷଣାଭ୍ୟୁପଗମ୍ୟତେ ॥
ସମ୍ବନ୍ଧାନୁପପତ୍ତ୍ୟା ଚ ଲକ୍ଷୟେତ ଜଗୁର୍ବୁଧାଃ ।
ଗଙ୍ଗାୟାଂ ଘୋଷ ଇତ୍ୟାଦୌ ଯା ଜହଲ୍ଲକ୍ଷଣା ମତା ॥
ନ ସା ତତ୍ତ୍ୱମସୀତ୍ୟେବ ବାକ୍ୟ ଏଷା ପ୍ରବର୍ତ୍ତତେ ।
ଗଙ୍ଗାୟା ଅପି ଘୋଷସ୍ୟାଧାରାଧେୟତ୍ୱଲକ୍ଷଣମ୍ ॥
ସର୍ବୋ ବିରୁଦ୍ଧବାକ୍ୟାର୍ଥସ୍ତତ୍ର ପ୍ରତ୍ୟକ୍ଷତସ୍ତତଃ ।
ଗଙ୍ଗାସମ୍ବନ୍ଧବତ୍ତୀରେ ଲକ୍ଷଣା ସଂପ୍ରବର୍ତ୍ତତେ ॥
ତଥା ତତ୍ତ୍ୱମସୀତ୍ୟେବ ଚୈତନୈ୍ୟକତ୍ୱଲକ୍ଷଣେ ।
ବିବକ୍ଷିତେ ତୁ ବାକ୍ୟାର୍ଥେଽପରୋକ୍ଷତ୍ୱାଦିଲକ୍ଷଣଃ ॥
ବିରୁଧ୍ୟତେ ଭାଗମାତ୍ରୋ ନ ତୁ ସର୍ବୋ ବିରୁଧ୍ୟତେ ।
ତସ୍ମାଜ୍ଜହଲ୍ଲକ୍ଷଣାୟାଃ ପ୍ରବୃତ୍ତିର୍ନୈବ ଯୁଜ୍ୟତେ ॥
ବାଚ୍ୟାର୍ଥସ୍ୟ ତୁ ସର୍ବସ୍ୟ ତ୍ୟାଗେ ନ ଫଲମୀକ୍ଷତେ ।
ନାରିକେଳଫଳସ୍ୟେବ କଠିନତ୍ୱଧିୟା ନୃଣାମ୍ ॥

ସ: ସି: ସା: ୭୩୪—୭୪୦ ।

ବାକ୍ୟାର୍ଥ-ସିଦ୍ଧି ନିମନ୍ତେ ଅବଶ୍ୟ ଲକ୍ଷଣା ସ୍ୱୀକାର କରିବାକୁ ହେବ । ବାଚ୍ୟାର୍ଥଦ୍ୱାରା ଯେଉଁଠାରେ ବାକ୍ୟର ଅର୍ଥ ଅସଙ୍ଗତ ହୁଏ, ସେଠାରେ ଲକ୍ଷଣା ସ୍ୱୀକାର୍ଯ୍ୟ । ପଣ୍ଡିତମାନେ ସମ୍ବନ୍ଧର ଅନୁପପତ୍ତିକୁ ଅର୍ଥାତ୍ ବାକ୍ୟରେ ବୋଧାର୍ଥର ସମ୍ବନ୍ଧ ଅନୁପପନ୍ନ ହୋଇ ଶାବ୍ଦବୋଧ ନ ହୋଇପାରିଲେ, ଲକ୍ଷଣାଦ୍ୱାରା ଭିନ୍ନାର୍ଥ ପ୍ରତିପାଦନ କରି ଶାବ୍ଦବୋଧ କରନ୍ତି । ଗଙ୍ଗାରେ ଘୋଷ ବା ଗୋପପଲ୍ଲୀ ଅଛି କହିଲେ ଉକ୍ତାର୍ଥ ଅସମ୍ଭବ ହେତୁରୁ ଜହଲ୍ଲକ୍ଷଣା ବା ସ୍ୱାର୍ଥତ୍ୟାଗ-

ପୂର୍ବକ ପରାର୍ଥୋପପାଦନରୂପକ ଲକ୍ଷଣାଦ୍ୱାରା ଗଙ୍ଗାରେ ରୂପକ ଅର୍ଥ ପ୍ରତିପନ୍ନ ହୁଏ; କିନ୍ତୁ 'ତତ୍ତ୍ୱମସି'ଠାରେ ସେପରି ଜହଲ୍ଲକ୍ଷଣା ସଙ୍ଗତ ହେବନାହିଁ । କାରଣ, ଯେପରି ଗଙ୍ଗା ଓ ଘୋଷର ଆଧାରାଧେୟଭାବ-ସମ୍ବନ୍ଧ ପ୍ରତିପନ୍ନ, ସେପରି ସମ୍ବନ୍ଧ ତତ୍ତ୍ୱମସି-ବାକ୍ୟରେ ସମ୍ଭବ ନୁହେଁ । ଗଙ୍ଗାରେ ଘୋଷ କହିଲେ ପ୍ରତ୍ୟକ୍ଷ ପ୍ରମାଣଦ୍ୱାରା ଗଙ୍ଗାର ( ଅର୍ଥାତ୍ ସ୍ରୋତ ) ସର୍ବାଂଶରେ ଘୋଷର ଅବସ୍ଥିତି ବିରୁଦ୍ଧ ଜଣାଯାଏ; କିନ୍ତୁ ତତ୍ତ୍ୱମସି ବାକ୍ୟରେ ଏକତ୍ୱରୂପ ଚୈତନ୍ୟ ହିଁ ଯଦି ବାକ୍ୟାର୍ଥରୂପେ ବିବକ୍ଷିତ ହୁଏ, ତେବେ ପ୍ରତ୍ୟକ୍ଷତ୍ୱରୂପ ଏକ ଅଂଶମାତ୍ର ବିରୁଦ୍ଧ ହୁଏ; ସର୍ବାଂଶରେ ବିରୋଧ ହୁଏ ନାହିଁ । ଅତଏବ "ଗଙ୍ଗାୟାଂ ଘୋଷଃ" ଭଳି ତତ୍ତ୍ୱମସି ବାକ୍ୟରେ ଜହଲ୍ଲକ୍ଷଣା ହୁଏ ନାହିଁ । ଯେପରି ନାରିକେଳ ଫଳ କଠିନ ମନେକରି ତାହାର ସମସ୍ତ ଅଂଶ ତ୍ୟାଗ କରିବା ନିଷ୍ଫଳ, ସେପରି ତତ୍ତ୍ୱମସି ବାକ୍ୟାର୍ଥରେ ଏକାଂଶ ବିରୁଦ୍ଧ ହେତୁରୁ ସମସ୍ତ ଭାଗ ତ୍ୟାଗ କରିବା ଆବଶ୍ୟକ ନୁହେଁ ।

ଗଙ୍ଗାପଦଂ ଯଥା ସ୍ୱାର୍ଥଂ ତ୍ୟକ୍ତ୍ୱା ଲକ୍ଷୟତେ ତଟମ୍ ।
ତତ୍ ପଦଂ ତ୍ୱଂପଦଂ ବାପି ତ୍ୟକ୍ତ୍ୱା ସ୍ୱାର୍ଥଂ ତଥାଖିଳମ୍ ॥
ତଦର୍ଥଂ ବା ତ୍ୱମର୍ଥଂ ବା ଯଦି ଲକ୍ଷୟତ ସ୍ୱୟମ୍ ।
ତଦା ଜହଲ୍ଲକ୍ଷଣାୟାଃ ପ୍ରବୃତ୍ତିରୁପପଦ୍ୟତେ ॥
ନ ଶଙ୍କନୀୟମିତ୍ୟାର୍ଯୈ ର୍ଜ୍ଞାତାର୍ଥେ ନ ହି ଲକ୍ଷଣା ।
ତତ୍ ପଦଂ ତ୍ୱଂପଦଂ ବାପି ଶ୍ରୂୟତେ ଚ ପ୍ରତୀୟତେ ॥

ସ: ସି: ସା: ୭୪୧—୭୪୩ ।

ଗଙ୍ଗାୟାଂ ଘୋଷଃ—ବାକ୍ୟରେ ଯେପରି ଗଙ୍ଗାପଦ ନିଜର ପ୍ରବାହରୂପ ଅର୍ଥକୁ ତ୍ୟାଗ କରି ଲକ୍ଷଣା-ବୃତ୍ତିଦ୍ୱାରା ତୀର ଅର୍ଥକୁ ବୁଝାଉଛି, ସେହିପରି 'ତତ୍'ପଦ କିମ୍ବା 'ତ୍ୱଂ' ପଦ ନିଜର ସମସ୍ତ ଅର୍ଥକୁ ପରିତ୍ୟାଗ କରି ଯଦି 'ତତ୍'ପଦ ଓ 'ତ୍ୱଂ'ପଦଦ୍ୱାରା ଅନ୍ୟ କିଛି ଅର୍ଥକୁ ଲକ୍ଷଣାଦ୍ୱାରା ବୁଝାଉଥାଆନ୍ତା, ତେବେ ସେଠାରେ ଜହଲ୍ଲକ୍ଷଣା ହେବାର ସମ୍ଭାବନା ରହନ୍ତା; କିନ୍ତୁ ପ୍ରକୃତରେ ସେପରି ସ୍ୱାର୍ଥକୁ ସମ୍ପୂର୍ଣ୍ଣତଃ କୌଣସି ପଦ ତ୍ୟାଗ କରେ ନାହିଁ, ଅତଏବ ଏଠାରେ ଲକ୍ଷ୍ୟାର୍ଥବୋଧନିମନ୍ତେ ଚେଷ୍ଟାସକଳ ବ୍ୟର୍ଥ । ତତ୍‌ପଦ ଏବଂ ତ୍ୱଂପଦ ଏଠାରେ ଶ୍ରୁତ ଏବଂ ପ୍ରଜ୍ଞାତ ଅର୍ଥକୁ ବୁଝାଇବା ନିଶ୍ଚିତ ।

ତଦର୍ଥେ ଚ କଥଂ ତତ୍ର ସଂପ୍ରବର୍ତ୍ତେତ ଲକ୍ଷଣା ।
ଅତ୍ର ଶୋଣୋ ଧାବତୀତି ବାକ୍ୟବନ୍ନ ପ୍ରବର୍ତ୍ତତେ ॥

ଅଜହଲ୍ଲକ୍ଷଣା ବାପି ସା ଜହଲ୍ଲକ୍ଷଣା ଯଥା ।
ଗୁଣସ୍ୟ ଗମନଂ ଲୋକେ ବିରୁଦ୍ଧଂ ଦ୍ରବ୍ୟମନ୍ତରା ॥

ସ. ସି. ସା. ୭୪୪—୭୪୫ ।

ତତ୍ତ୍ୱମସି—ବାକ୍ୟରେ "ଗଙ୍ଗାୟାଂ ଘୋଷଃ" ଭଳି ଜହଲ୍ଲକ୍ଷଣା ନ ହୋଇପାରିବା କଥା ପୂର୍ବେ କୁହାଯାଇଛି । ବର୍ତ୍ତମାନ "ଶୋଣୋ ଧାବତି" ବା ଲାଲବର୍ଣ୍ଣ ଦଉଡ଼ୁଛି—ଏଠାରେ ଯେପରି ଅଜହଲ୍ଲକ୍ଷଣା ହୁଏ, ସେପରି ଅଜହଲ୍ଲକ୍ଷଣା 'ତତ୍ତ୍ୱମସି'ଠାରେ ହେବା ଅସମ୍ଭବ; କାରଣ ଦ୍ରବ୍ୟ ବ୍ୟତୀତ କେବଳ ଗୁଣର ଗତି ହେବା ଅସମ୍ଭବ । ଅତଏବ 'ଶୋଣୋ ଧାବତି'ଠାରେ ଲକ୍ଷଣା କରିବା ନିମନ୍ତେ ବାଧ ହେଲେ ମଧ୍ୟ 'ତତ୍ ତ୍ୱଂ ଅସି' ଏଠାରେ କେବଳ ଗୁଣବାଚକ ଶବ୍ଦ ନାହିଁ । ଅତଏବ ଏଠାରେ କୌଣସି ପ୍ରକାର ଲକ୍ଷଣା ହେବ ନାହିଁ ।

ଅତସ୍ତମପରିତ୍ୟଜ୍ୟ ତଦ୍‌ଗୁଣାଶ୍ରୟଲକ୍ଷଣଃ ।
ଲକ୍ଷ୍ୟାଦର୍ଲକ୍ଷ୍ୟତେ ତତ୍ର ଲକ୍ଷଣାସୌ ପ୍ରବର୍ତ୍ତିତେ ॥
ବାକ୍ୟେ ତତ୍ତ୍ୱମସୀତ୍ୟତ୍ର ବ୍ରହ୍ମାତ୍ମୈକତ୍ୱବୋଧକେ ।
ପରୋକ୍ଷତ୍ୱାପରୋକ୍ଷତ୍ୱାଦିବିଶିଷ୍ଟଶତୋର୍ଦ୍ୱୟୋଃ ॥
ଏକତ୍ୱରୂପବାକ୍ୟାର୍ଥେ । ବିରୁଦ୍ଧାଂଶବିବର୍ଜ୍ଜନାତ୍ ।
ନ ସିଧ୍ୟତି ଯତସ୍ତସ୍ମାନ୍ନାଜହଲ୍ଲକ୍ଷଣା ମତା ॥

ସ. ସି. ସା. ୭୪୬—୭୪୮ ।

ଅତଏବ କେବଳ ଗୁଣର ଗମନ ଅସମ୍ଭବ ହେତୁରୁ ଗୁଣକୁ ପରିତ୍ୟାଗ ନ କରି ସେହି ରକ୍ତଗୁଣ ଗୁଣାଶ୍ରୟ କୌଣସି ଲକ୍ଷ୍ୟବସ୍ତୁକୁ ଲକ୍ଷିତ କରୁଅଛି, ଅତଏବ ଏହା ଲକ୍ଷଣାର ବିଷୟ; କିନ୍ତୁ ବ୍ରହ୍ମ ଓ ଆତ୍ମାର ଏକତ୍ୱପ୍ରତିପାଦକ ତତ୍ତ୍ୱମସି—ବାକ୍ୟରେ ପରୋକ୍ଷତ୍ୱବିଶିଷ୍ଟ ଓ ଅପରୋକ୍ଷତ୍ୱବିଶିଷ୍ଟ ଚୈତନ୍ୟ—ଉଭୟଙ୍କର ବିରୁଦ୍ଧଭାବ ( ପରୋକ୍ଷତ୍ୱ ଓ ଅପରୋକ୍ଷତ୍ୱ ) ତ୍ୟାଗ କରି ଏକତ୍ୱରୂପ ବାକ୍ୟାର୍ଥ ସମ୍ପନ୍ନ ହୁଏ ନାହିଁ, ଅତଏବ ଏହା ଅଜହଲ୍ଲକ୍ଷଣାର ବିଷୟ ନୁହେଁ ।

ତତ୍‌ପଦଂ ତ୍ୱଂପଦଂ ବାପି ସ୍ୱକୀୟାର୍ଥ ବିରୋଧିନମ୍ ।
ଅଂଶଂ ସମ୍ୟକ୍ ପରିତ୍ୟଜ୍ୟ ସ୍ୱାବିରୁଦ୍ଧାଂଶ ସଂଯୁତମ୍ ॥
ତଦର୍ଥଂ ବା ତ୍ୱମର୍ଥଂ ବା ସମ୍ୟଗ୍‌ଲକ୍ଷୟତଃ ସ୍ୱୟମ୍ ।
ଭାଗଲକ୍ଷଣୟା ସାଧ୍ୟଂ କିମସ୍ତୀତି ନ ଶଙ୍କ୍ୟତାମ୍ ॥

ଅବରୁଦ୍ଧଂ ପଦାର୍ଥାନ୍ତରାଂଶଂ ସ୍ୱାଂଶଞ୍ଚ ତତ୍ କଥମ୍ ।
ଏକଂ ପଦଂ ଲକ୍ଷଣୟା ସଂଲକ୍ଷୟିତୁମର୍ହତି ।।
ପଦାନ୍ତରେଣ ସିଦ୍ଧାୟାଂ ପଦାର୍ଥପ୍ରମିତୌ ସ୍ୱତଃ ।
ତଦର୍ଥପ୍ରତ୍ୟୟାପେକ୍ଷା ପୁନର୍ଲକ୍ଷଣୟା କୁତଃ ।।
ସ: ସି: ସା: ୭୪୯—୭୫୨ ।

ଯଦି "ତତ୍ତ୍ୱମସି" ବାକ୍ୟରେ 'ତତ୍'ପଦ ବା 'ତ୍ୱଂ'ପଦ ନିଜ ନିଜ ଅର୍ଥର ବିରୋଧୀ ଅଂଶକୁ ପରିତ୍ୟାଗ କରି ନିଜ ନିଜ ଅବିରୋଧୀ ଅଂଶବିଶିଷ୍ଟ 'ତତ୍'ପଦ ପ୍ରତିପାଦ୍ୟ ବା 'ତ୍ୱଂ' ପଦ ପ୍ରତିପାଦ୍ୟ ଅର୍ଥକୁ ପ୍ରକୃତରେ ଲକ୍ଷିତ କରେ, ତେବେ ଭାଗଲକ୍ଷଣା କରିବାର ପ୍ରୟୋଜନ କ'ଣ ?—ଏପରି ଆଶଙ୍କା କରିବା ଠିକ୍ ନୁହେଁ । (ଦୁଇ ପଦରେ ଲକ୍ଷଣା ନ କରି ଏକ ପଦରେ, ଅର୍ଥାତ୍ ତତ୍ ବା ତ୍ୱଂ ପଦରେ କେବଳ ଲକ୍ଷଣା କାହିଁକି ନ କରାଯିବ) ଏହି ଆଶଙ୍କାର ସମାଧାନ ସ୍ୱରୂପ କୁହାଯାଏ ଯେ, ଗୋଟିଏ ପଦ ଅବିରୋଧୀ ଅନ୍ୟ ପଦାର୍ଥର ଅଂଶକୁ ଏବଂ ନିଜର ଅଂଶକୁ ଲକ୍ଷଣାଦ୍ୱାରା କିପରି ଲକ୍ଷିତ କରିପାରେ । ଯଦି ଅନ୍ୟ ପଦଦ୍ୱାରା ଅନ୍ୟ ପଦାର୍ଥର ଜ୍ଞାନ ସ୍ୱତଃ ହୋଇଯାଏ, ତେବେ ଲକ୍ଷଣାଦ୍ୱାରା ସେହି ପଦର ଅର୍ଥଜ୍ଞାନର ଆବଶ୍ୟକତା କାହିଁକି ? *

---

* ଏହାର ତାତ୍ପର୍ଯ୍ୟ ଏହି ପ୍ରକାର—ଲକ୍ଷଣା ତିନି ପ୍ରକାର— ଜହଲ୍ଲକ୍ଷଣା, ଅଜହଲ୍ଲକ୍ଷଣା ଓ ଜହଦଜହଲ୍ଲକ୍ଷଣା । ଜହତ୍ତ୍ୱଶବ୍ଦର ଅର୍ଥ ତ୍ୟାଗକରିବା, ଅଜହତ୍ତ୍ୱର ଅତ୍ୟାଗ ଏବଂ ଜହଦଜହତ୍ତ୍ୱର ଅର୍ଥ ତ୍ୟାଗକରିବା ଓ ନ କରିବା । ଗଙ୍ଗାୟାଂ ଘୋଷଃ—ସ୍ଥଳରେ ଗଙ୍ଗାପଦର ମୁଖ୍ୟ ଅର୍ଥ ଭଗୀରଥଖାତାବଚ୍ଛିନ୍ନ ଜଳପ୍ରବାହ; କିନ୍ତୁ ପ୍ରବାହରେ ଘୋଷର ବସତି ସମ୍ଭବ ହୋଇପାରେ ନାହିଁ, ଅତଏବ ସେଠାରେ ଲକ୍ଷଣାଦ୍ୱାରା ତୀର ଅର୍ଥ ବୁଝାଯାଏ । ସେଠାରେ ଗଙ୍ଗାପଦ ନିଜର ଜଳପ୍ରବାହରୂପ ଅର୍ଥକୁ ତ୍ୟାଗ କରୁଅଛି, ଅତଏବ ଜହଲ୍ଲକ୍ଷଣାର ବିଷୟ । "ଶୋଣୋ ଧାବତି" ବା ରକ୍ତବର୍ଣ୍ଣ ଧାବିତ ହେଉଛି—ସ୍ଥଳରେ ଗୁଣର ଗମନ ଅସମ୍ଭବ ବୋଲି ସେହି ରକ୍ତଗୁଣବାଚକ ଶବ୍ଦ ନିଜର ରକ୍ତବର୍ଣ୍ଣରୂପ ଅର୍ଥତ୍ୟାଗ ନ କରି ତାହାର ଆଶ୍ରୟ ଅଶ୍ୱପ୍ରଭୃତି ଦ୍ରବ୍ୟକୁ ବୁଝାଉ ଅଛି । ଏହା ଅଜହଲ୍ଲକ୍ଷଣାର ବିଷୟ, କିନ୍ତୁ "ତତ୍ତ୍ୱମସି" ବାକ୍ୟରେ କୌଣସି ପ୍ରକାର ଲକ୍ଷଣା ହେବା ସମ୍ଭବ ନୁହେଁ; କାରଣ, ଏଠାରେ ତତ୍ତ୍ୱପଦପ୍ରତିପାଦ୍ୟ ଅର୍ଥ ପରୋକ୍ଷତ୍ୱବିଶିଷ୍ଟ ଚୈତନ୍ୟ ଏବଂ ତ୍ୱଂପଦର ଅର୍ଥ ଅପରୋକ୍ଷତ୍ୱ ବିଶିଷ୍ଟ ଚୈତନ୍ୟ, ଅତଏବ ଏଠାରେ ତତ୍ତ୍ୱ ଓ ତ୍ୱଂର ଗୋଟିଏ ଅଂଶ, ଅର୍ଥାତ୍ ପରୋକ୍ଷତ୍ୱବିଶିଷ୍ଟ ଓ ଅପରୋକ୍ଷତ୍ୱବିଶିଷ୍ଟ କେବଳ ତ୍ୟକ୍ତ ହୁଏ; ଅପର ଅଂଶ ଚୈତନ୍ୟ ତ୍ୟକ୍ତ ନୁହେଁ । ଅତଏବ ଏଠାରେ କୌଣସି ଗୋଟିଏ ଅଂଶର ତ୍ୟାଗ ଓ ଅନ୍ୟ ଏକ ଅଂଶର ଅତ୍ୟାଗ ହେବା ହେତୁରୁ ଏହା ଜହଦଜହଲ୍ଲକ୍ଷଣାର ବିଷୟ । ଏହାର ଅପର ନାମ ଭାଗଲକ୍ଷଣା ବା ଭାଗତ୍ୟାଗଲକ୍ଷଣା ।

ତସ୍ମାତ୍ ତତ୍ତ୍ୱମସୀତ୍ୟତ୍ର ଲକ୍ଷଣା ଭାଗଲକ୍ଷଣା ।
ବାକ୍ୟାର୍ଥ ସତ୍ତ୍ୱ-ଖଣ୍ଡୈକରସତାସିଦ୍ଧୟେ ମତା ॥
ଭାଗଂ ବିରୁଦ୍ଧଂ ସନ୍ତ୍ୟଜ୍ୟାବିରୋଧୋ ଲକ୍ଷ୍ୟତେ ଯଦା ।
ସା ଭାଗଲକ୍ଷଣେତ୍ୟାହୁର୍ଲକ୍ଷଣଜ୍ଞା ବିଚକ୍ଷଣାଃ ॥

ସ: ସି: ସା: ୬୫୩—୬୫୪

ଅତଏବ ଏହି ପଣ୍ଡିତମାନେ ତତ୍ତ୍ୱମସି—ବାକ୍ୟରେ ସତ୍ତ୍ୱର ଅଖଣ୍ଡରୂପ ଏକ ବସ୍ତୁ ସିଦ୍ଧି ନିମନ୍ତେ ଭାଗଲକ୍ଷଣା ସ୍ୱୀକାର କରିଛନ୍ତି । ଯେତେବେଳେ ବିରୁଦ୍ଧ ଅଂଶ ପରିତ୍ୟାଗ କରି ଅବିରୁଦ୍ଧ ଅଂଶ କେବଳ ଲକ୍ଷିତ ହୁଏ, ସେତେବେଳେ ଲକ୍ଷଣାବିତ୍ ପଣ୍ଡିତମାନେ ତାହାକୁ ଭାଗଲକ୍ଷଣା ବୋଲି କହିଛନ୍ତି ।

ସୋଽୟଂ ଦେବଦତ୍ତ ଇତ ବାକ୍ୟଂ ବାକ୍ୟାର୍ଥ ଏବ ବା ।
ଦେବଦତ୍ତୈକ୍ୟରୂପସ୍ୟ ବାକ୍ୟାର୍ଥା ନବ ବୋଧକମ୍ ॥
ଦେଶକାଳାଦବୈଶିଷ୍ଟ୍ୟଂ ବିରୁଦ୍ଧାଂଶଂ ନିରସ୍ୟ ଚ ।
ଅବିରୁଦ୍ଧଂ ଦେବଦତ୍ତଦେହମାତ୍ରଂ ସ୍ୱଲକ୍ଷଣମ୍ ॥
ଭାଗଲକ୍ଷଣୟା ସମ୍ୟଗ୍ ଲକ୍ଷୟତ୍ୟନୟା ଯଥା ।
ତଥା ତତ୍ତ୍ୱମସୀତ୍ୟତ୍ର ବାକ୍ୟଂ ବାକ୍ୟାର୍ଥ ଏବ ବା ॥

---

ବର୍ତ୍ତମାନ ଆଶଙ୍କା ହୁଏ ଯେ, ସର୍ବତ୍ର ଗୋଟିଏ ପଦରେ କେବଳ ଲକ୍ଷଣା ହୁଏ; କିନ୍ତୁ 'ତତ୍ତ୍ୱମସି ବାକ୍ୟରେ ସମୁଦାୟର ଲକ୍ଷଣା ନ ହୋଇ ତତ୍ ଓ ତ୍ୱମ୍—ଉଭୟ ପଦରେ ଲକ୍ଷଣା କରିବାର ପ୍ରୟୋଜନ କ'ଣ ? ଅର୍ଥାତ୍ କେବଳ ତତ୍‌ପଦରେ ଲକ୍ଷଣା କରି ତଦ୍,- ପଦ ପ୍ରତିପାଦ୍ୟ ଅର୍ଥର ବିରୁଦ୍ଧାଂଶ ପରିତ୍ୟାଗ କରି ତାହାର ଅବିରୁଦ୍ଧ ଭାଗଯୁକ୍ତ ତତ୍‌ପଦର ଅର୍ଥକୁ ଲକ୍ଷିତ କରାଯାଉ, ଅଥବା ତ୍ୱଂପଦରେ ଲକ୍ଷଣା କରି ତ୍ୱଂପଦ ପ୍ରତିପାଦ୍ୟ ଅର୍ଥର ବିରୁଦ୍ଧାଂଶ ତ୍ୟାଗ କରି ତାହାର ଅବିରୁଦ୍ଧଭାଗଯୁକ୍ତ ତ୍ୱଂ-ପଦପ୍ରତିପାଦ୍ୟ ଅର୍ଥକୁ ଲକ୍ଷଣାଦ୍ୱାରା ବୁଝାଯାଉ । ଏହିପରି ଏକପଦରେ ଲକ୍ଷଣା କଲେ ଯଦି ଚଳିଯିବ, ତେବେ ଦୁଇପଦରେ ଲକ୍ଷଣା କରିବା ପ୍ରୟୋଜନ କ'ଣ ? ବିଶେଷତଃ ଏକପଦରେ କେବଳ ଲକ୍ଷଣା ହେବା ଦେଖାଯାଏ; କିନ୍ତୁ ଏ ପ୍ରଶ୍ନର ଉତ୍ତରରେ ଏହା କୁହାଯାଇପାରେ—ଏକମାତ୍ର ପଦ ନିଜର ଅଂଶ ଓ ଅନ୍ୟ ପଦାର୍ଥର ଅଂଶକୁ କିପରି ଲକ୍ଷିତ କରିବ ? ଏକପଦର ପଦାର୍ଥଜ୍ଞାନ ହେଲେ ଲକ୍ଷଣା ବ୍ୟତୀତ ମଧ୍ୟ ଅର୍ଥ ପ୍ରତୀତ ହୋଇପାରେ, ସୁତରାଂ ଲକ୍ଷଣାର ମଧ୍ୟ ପ୍ରୟୋଜନ ରହେ ନାହିଁ । ଅତଏବ ଦୁଇଟି ପଦର ଅଂଶ ତ୍ୟାଗ କରି ଏକମାତ୍ର ଚୈତନ୍ୟକୁ ବୁଝାଇବାପାଇଁ ଦୁଇଟି ପଦରେ ଲକ୍ଷଣା ସ୍ୱୀକାର କରାଯାଇଛି ।

ପରୋକ୍ଷତ୍ୱାପରୋକ୍ଷତ୍ୱାଦିବିଶିଷ୍ଟଚିତୋର୍ଦ୍ୱୟୋଃ ।
ଏକତ୍ୱରୂପବାକ୍ୟାର୍ଥ ବିରୁଦ୍ଧାଂଶମୁପସ୍ଥିତମ୍ ॥
ପରୋକ୍ଷତ୍ୱାପରୋକ୍ଷତ୍ୱସର୍ବଜ୍ଞତ୍ୱାଦିଲକ୍ଷଣମ୍ ।
ବୁଦ୍ଧ୍ୟାଦିସ୍ଥୂଳପର୍ଯ୍ୟନ୍ତମାବିଦ୍ୟକମନାତ୍ମକମ୍ ॥
ପରିତ୍ୟଜ୍ୟାବିରୁଦ୍ଧାଂଶଂ ଶୁଦ୍ଧଚୈତନ୍ୟଲକ୍ଷଣମ୍ ।
ବସ୍ତୁ କେବଳସନ୍ମାତ୍ରଂ ନିର୍ବିକଳ୍ପଂ ନିରଞ୍ଜନମ୍ ।
ଲକ୍ଷୟତ୍ୟନୟା ସମ୍ୟଗ୍ଭାଗଲକ୍ଷଣୟା ତତଃ" ॥

ସ: ସି: ସା: ୨୫୫—୨୬୦ ।

"ସେହି ଏହି ଦେବଦତ୍ତ"—ଏହି ବାକ୍ୟ ବା ବାକ୍ୟାର୍ଥ ଦେବଦତ୍ତର ଏକରୂପ ସ୍ୱକୀୟ ବାଚ୍ୟାର୍ଥର ଅପ୍ରକାଶକ ଦେଶକାଳାଦି ବୈଶିଷ୍ଟ୍ୟରୂପ ବିରୁଦ୍ଧାଂଶ ତ୍ୟାଗ କରି ଲକ୍ଷଣା-ଦ୍ୱାରା ଯେପରି ଅବିରୋଧୀ ଦେବଦତ୍ତ-ବ୍ୟକ୍ତିମାତ୍ରକୁ ଲକ୍ଷିତ କରେ, ସେହିପରି 'ତତ୍ତ୍ୱମସି' ସ୍ଥଳରେ ମଧ୍ୟ ବାକ୍ୟ କିମ୍ବା ବାକ୍ୟାର୍ଥ ପରୋକ୍ଷତ୍ୱବିଶିଷ୍ଟ ଚୈତନ୍ୟ ଏବଂ ଅପରୋକ୍ଷତ୍ୱବିଶିଷ୍ଟ ଚୈତନ୍ୟ—ଏହି ଉଭୟର ଉପସ୍ଥିତ ବିରୁଦ୍ଧଭାଗ ଏକତ୍ୱରୂପ ବାକ୍ୟାର୍ଥ ଏବଂ ପରୋକ୍ଷତ୍ୱ, ଅପରୋକ୍ଷତ୍ୱ, ସର୍ବଜ୍ଞତ୍ୱ ଅଳ୍ପଜ୍ଞତ୍ୱରୂପ ବୁଦ୍ଧିଠାରୁ ସ୍ଥୂଳଭୂତ ପର୍ଯ୍ୟନ୍ତ ଅବିଦ୍ୟା-କଳ୍ପିତ ଅନାତ୍ମବସ୍ତୁ ପରିତ୍ୟାଗ କରି ଅବିରୁଦ୍ଧ ଶୁଦ୍ଧ ଚୈତନ୍ୟରୂପ କେବଳ ସତ୍ତ୍ୱସ୍ୱରୂପ ନିର୍ବିକଳ୍ପ—ନିରଞ୍ଜନ ବ୍ରହ୍ମଙ୍କୁ ଭାଗ-ଲକ୍ଷଣାଦ୍ୱାରା ସମ୍ୟକ୍ ରୂପରେ ଲକ୍ଷିତ କରିଥାଏ ।

ଉପର୍ଯ୍ୟୁକ୍ତ ବେଦାନ୍ତାଦିଶ୍ରୁତି-ବାକ୍ୟମାନଙ୍କରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଏକ ଅଦ୍ୱିତୀୟ ବିଶୁଦ୍ଧ ନିର୍ଗୁଣ ପରଂବ୍ରହ୍ମ ଆଦି, ମଧ୍ୟ ଓ ଅନ୍ତରେ ସଚ୍ଚିଦାନନ୍ଦସ୍ୱରୂପରେ ସତତ ବିଦ୍ୟମାନ ଅଛନ୍ତି । ତାହାଙ୍କର ଆଭାସ—ମାୟା ଓ ଅବିଦ୍ୟାରେ ଉପହିତ ଈଶ୍ୱର ଓ ଜୀବ ନାମରେ କଳ୍ପିତ ଅଟେ । ବିଶୁଦ୍ଧ ବିଜ୍ଞାନଦ୍ୱାରା ମାୟା ଓ ଅବିଦ୍ୟା ନଷ୍ଟ ହେଲେ ଜୀବ ପରମାତ୍ମପଦ ଲାଭ କରେ । ଏତିକି କେବଳ ଅଦ୍ୱୈତବାଦ ସହିତ ବିଶୁଦ୍ଧାଦ୍ୱୈତବ୍ରହ୍ମବାଦର ମତୈକ୍ୟ ବିଦ୍ୟମାନ; କିନ୍ତୁ ଏତକ ଛଡ଼ା ଅଦ୍ୱୈତବାଦରେ 'ଶିବୋଽହଂ', 'ବ୍ରହ୍ମାହଂ'—ଇତ୍ୟାଦି ଯେଉଁ ସବୁ ବାକ୍ୟ ଦେଖାଯାଏ, ତଦ୍ଦ୍ୱାରା 'ମୁଁ ବ୍ରହ୍ମ', 'ମୁଁ ପରମାତ୍ମା'—ଇତ୍ୟାଦି ଅଭିମାନ କରୁଥିବା ଜ୍ଞାନ-ଭକ୍ତି-ବୈରାଗ୍ୟ ସାଧନରୁ ବଞ୍ଚିତ ଅଳ୍ପଜ୍ଞ ତଥା ଅନଧିକାରୀ ମନୁଷ୍ୟ ପ୍ରକାରାନ୍ତରେ ନିଜର ନାସ୍ତିକତାର ପରିଚୟ ଦିଏ । ଏହା ବିଶୁଦ୍ଧାଦ୍ୱୈତ-ବ୍ରହ୍ମବାଦ ମତରେ ଗ୍ରହଣୀୟ ନୁହେଁ ।

'ତତ୍ତ୍ୱମସି'—ବାକ୍ୟକୁ ଅଦ୍ୱୈତବାଦୀମାନେ ବ୍ୟାଖ୍ୟା କରନ୍ତି—'ତୁମ୍ଭେ ସେହି ବ୍ରହ୍ମ' ଏବଂ ଏହି ବାକ୍ୟାର୍ଥର ତାତ୍ପର୍ଯ୍ୟ ନ ବୁଝି ଅଳ୍ପଜ୍ଞ ତଥା ଅନୁପଯୁକ୍ତ ବ୍ୟକ୍ତିମାନେ ଭ୍ରାନ୍ତିରେ

ପଡ଼ନ୍ତି । ଏପରି ଭ୍ରାନ୍ତ ଲୋକମାନେ ସେହି ବାକ୍ୟର ଯଥାର୍ଥ ଅର୍ଥ ନ ଜାଣି ସମାଜରେ କଠୋରତା, ଦାମ୍ଭିକତା, ନାସ୍ତିକତା ଓ ଆଧ୍ୟାତ୍ମିକ ସ୍ୱାର୍ଥପରତା ପ୍ରଭୃତି ବହୁ ବିଭ୍ରାଟ୍ ସୃଷ୍ଟି କରନ୍ତି । ଏହି ସକଳ ବିଡ଼ମ୍ବନା ଶୁଣି କୌଣସି କୌଣସି ଦ୍ୱୈତବାଦୀ ମଧ୍ୟ ଅଦ୍ୱୈତବାଦୀମାନଙ୍କୁ "ତତ୍ତ୍ୱମସି"ର ଅର୍ଥ ବିଷୟରେ ଅଜ୍ଞ ବୋଲି ସେମାନଙ୍କୁ ଆକ୍ରୋଶ କରନ୍ତି । ପ୍ରକୃତରେ କହିବାକୁ ଗଲେ "ତତ୍ତ୍ୱମସି" ବାକ୍ୟରେ ଷଷ୍ଠୀସମାସ ଅଭିପ୍ରେତ; ଏହାର ଅର୍ଥ 'ତସ୍ୟ ତ୍ୱଂ ଅସି'— ଅର୍ଥାତ୍ ତାହାଙ୍କର ତୁମ୍ଭେ ଅଟ । ଏହାର ତାତ୍ପର୍ଯ୍ୟ ଏହି ଯେ ଜୀବ ପରମେଶ୍ୱରଙ୍କର ନିତ୍ୟଦାସ । ବିଶିଷ୍ଟାଦ୍ୱୈତବାଦୀ ବିପରୀତ ପଥରେ ଯାଇ କହିଅଛନ୍ତି—'ତତ୍ତ୍ୱମସି' ପ୍ରଭୃତି ବାକ୍ୟରେ 'ତତ୍'ଶବ୍ଦଦ୍ୱାରା ଯେପରି ବ୍ରହ୍ମ ବୁଝାଯାନ୍ତି, ତ୍ୱଂ-ଶବ୍ଦରେ ମଧ୍ୟ ସେହିପରି ବ୍ରହ୍ମ କେବଳ ବୁଝାଯାନ୍ତି । ବ୍ରହ୍ମ ଅନ୍ୟ ବ୍ରହ୍ମ ସହିତ ଅଭିନ୍ନ—ଏଥିରେ ବୈଚିତ୍ର୍ୟ କ'ଣ ?

ତତ୍ତ୍ୱମସି ଅୟମାତ୍ମା ବ୍ରହ୍ମ ଇତ୍ୟାଦିଷୁ ତଚ୍ଛବ୍ଦଲବ୍ଧ ବ୍ରହ୍ମଶବ୍ଦବତ୍-ତ୍ୱମ୍-ଅୟମାତ୍ମଶବ୍ଦୋଽପି ଜୀବଶରୀରକବ୍ରହ୍ମବାଚକତ୍ୱେନ ଏକାର୍ଥାଭିଧାୟିତ୍ୱାତ୍ ।

ବେଦାନ୍ତତତ୍ତ୍ୱସାର ।

ତଥାହି ତତ୍‌ପଦଂ ଜଗଦୁଦୟବିଭବଲୟଲୀଳଂ ବ୍ରହ୍ମ ପ୍ରତିପାଦୟତି × × ତ୍ୱଂପଦଂ ବା ଚିଦ୍‌ବିଶିଷ୍ଟଂ ଜୀବଶରୀରଂ ବ୍ରହ୍ମାଚଷ୍ଟେ, ପ୍ରକାରଦ୍ୱୟବିଶିଷ୍ଟୈକବସ୍ତୁପରତ୍ୱାତ୍ ସାମାନାଧିକରଣ୍ୟସ୍ୟ ।।

ସର୍ବଦର୍ଶନସଂଗ୍ରହ ।

ଅର୍ଥାତ୍ 'ତତ୍ତ୍ୱମସି'-ବାକ୍ୟରେ 'ତତ୍'ପଦ ଜଗତର ସୃଷ୍ଟି ସ୍ଥିତି ଲୟ ଯାହାଙ୍କର ଲୀଳାବିଳାସ, ସେହି ବ୍ରହ୍ମଙ୍କୁ ବୁଝାଏ, 'ତ୍ୱଂ' ପଦ ଚିଦ୍‌ବିଶିଷ୍ଟ ଜୀବ ଯାହାଙ୍କ ଶରୀର ସେପରି ବ୍ରହ୍ମଙ୍କୁ ବୁଝାଏ । କାରଣ, ବସ୍ତୁ ଏକ ହେଲେ ସୁଦ୍ଧା ତାହାର ପ୍ରକାରଭେଦ ଅଛି—ଏକଥା ସାମାନାଧିକରଣ୍ୟ ଦ୍ୱାରା ସୂଚିତ ହୁଏ ।

## ଠ—"ତତ୍ତ୍ୱମସି" ମହାବାକ୍ୟ ସମ୍ବନ୍ଧରେ ବିଭିନ୍ନମତବାଦୀଙ୍କ ସମାଲୋଚନା ।

ବିଭିନ୍ନ ଭାରତୀୟ-ଧର୍ମମତବାଦୀମାନେ ନିମ୍ନଲିଖିତ ଭାବରେ ମହାବାକ୍ୟର ଅର୍ଥ କରନ୍ତି— ଅଦ୍ୱୈତବାଦୀ 'ତତ୍ତ୍ୱମସି'-ମହାବାକ୍ୟରେ ଜୀବ ଓ ବ୍ରହ୍ମର ଆତ୍ୟନ୍ତିକ ଅଭେଦ ପ୍ରଦର୍ଶନ କରନ୍ତି; କାରଣ ତତ୍‌ତ୍ୱମ୍— ଏହି ପଦଦ୍ୱୟରେ ସାମାନାଧିକରଣ୍ୟ ବା ଏକବିଭକ୍ତିତ୍ୱ-ଭାବରେ ନିର୍ଦ୍ଦେଶ କେବଳ ଅଭେଦ ଅର୍ଥ ବୁଝାଉଛି । ସର୍ବତ୍ର ଏକବିଭକ୍ତିତ୍ୱ ବା ସାମାନାଧିକରଣ୍ୟ ଥିଲେ ପଦାର୍ଥର ପରସ୍ପର ଅଭେଦ ଅର୍ଥ ପ୍ରତିପନ୍ନ ହୁଏ— ଯେପରି 'ନୀଳଃ ଘଟଃ' ବା 'ସୋଽୟଂ ଦେବଦତ୍ତଃ' । ଏହି ଉଦାହରଣ ମାନଙ୍କରେ ନୀଳ ଓ ଘଟର ଏବଂ ସେହି ଓ ଦେବଦତ୍ତର ଅଭେଦ

ଅର୍ଥ ସାକ୍ଷାତ୍ ପ୍ରତିପନ୍ନ ହୁଏ। ପ୍ରକୃତ ଅର୍ଥରେ 'ତତ୍' ଓ 'ତ୍ୱଂ' ପଦଦ୍ୱୟର ସାମାନାଧିକରଣ୍ୟ ଥିବାରୁ ସେଠାରେ ମଧ୍ୟ ଅଭେଦ ଅର୍ଥ ପ୍ରଶସ୍ତ ହେବା ସ୍ୱାଭାବିକ। ଏହା ଅଦ୍ୱୈତବାଦୀଙ୍କର ସିଦ୍ଧାନ୍ତ ଅଟେ।

କିନ୍ତୁ, ପୂର୍ବପକ୍ଷୀ, କହନ୍ତି ଯେ, ଅଦ୍ୱୈତବାଦୀର ଏପରି ଅର୍ଥପ୍ରତିପାଦନ ଯୁକ୍ତିଯୁକ୍ତ ନୁହେଁ। କାରଣ, ତତ୍ତ୍ୱମସି ଆଦି ବେଦବାକ୍ୟ ଓ ବେଦରେ ବିଭକ୍ତିସମୂହ ଯଥାଶ୍ରୁତ ଅର୍ଥରେ ସର୍ବଦା ପ୍ରଯୁକ୍ତ ହୋଇ ନ ଥାନ୍ତି; "ଋଜବଃ ସନ୍ତୁ ପନ୍ଥାଃ" ଏହି ଶ୍ରୁତିବାକ୍ୟରେ ସମାନବିଭକ୍ତିକତ୍ୱର ଅଭାବ ପରିଲକ୍ଷିତ ହୁଏ, ଅଥଚ ବହୁବଚନାନ୍ତ—ଋଜବଃ—ଏହା ପନ୍ଥାଃ-ରୂପ ଏକବଚନାନ୍ତର ବିଶେଷଣ ହୋଇ ଦୁହିଁଙ୍କର ଅଭେଦ ବୋଧ ପ୍ରତିପନ୍ନ ହେଉଛି। ସେହି ନିମନ୍ତେ 'ପନ୍ଥାଃ' ପଦର ଏକବଚନ ବହୁବଚନରେ ପରିଣତ କରିବାକୁ ହେବ। ଆହୁରି ମଧ୍ୟ—

"ଗାୟତ୍ରୀଂ ଛନ୍ଦସାଂ ମାତା"

ଅର୍ଥାତ୍ ଗାୟତ୍ରୀ ସକଳ ଛନ୍ଦର ମାତା—ଏହି ବାକ୍ୟରେ ଗାୟତ୍ରୀପଦସ୍ଥ ଦ୍ୱିତୀୟା ବିଭକ୍ତିକୁ ପ୍ରଥମାନ୍ତ ବୋଲି ବୁଝିବାକୁ ହେବ। କାରଣ, ଛନ୍ଦୋମାତା ଓ ଗାୟତ୍ରୀ ଦୁହେଁ ଅଭିନ୍ନ ବସ୍ତୁ। ସେହିପରି 'ତତ୍ତ୍ୱମସି'—ଇତ୍ୟାଦି ବାକ୍ୟରେ ମଧ୍ୟ ତତପଦର ପ୍ରଥମାବିଭକ୍ତିକୁ ଚତୁର୍ଥୀ ବୋଲି ବୁଝିବାକୁ ହେବ।

ଏଠାରେ ଚତୁର୍ଥୀ ବିଭକ୍ତି ଅର୍ଥରେ ପ୍ରଥମାନ୍ତ ହୋଇଅଛି ବୋଲି ମଧ୍ୟ କୁହାଯାଇପାରେ।

"ବ୍ରହ୍ମଣେ ତ୍ୱା ମହସ ଓଁ ଇତ୍ୟାତ୍ମାନଂ ଯୁଞ୍ଜୀତ"

ବୈଦିକ ବାକ୍ୟର ଅର୍ଥ—ବ୍ରହ୍ମରୂପ ତେଜର ଉଦ୍ଦେଶ୍ୟରେ ଓଁ ଶବ୍ଦ ଉଚ୍ଚାରଣ କରି ନିଜକୁ ନିଯୁକ୍ତ କରିବ; ଏହି ଶ୍ରୁତିବାକ୍ୟରେ ମଧ୍ୟ ଯେପରି ଚତୁର୍ଥୀ ବିଭକ୍ତ୍ୟନ୍ତର ପ୍ରୟୋଗ, ତତ୍ତ୍ୱମସି ବାକ୍ୟରେ ମଧ୍ୟ ପ୍ରଥମାର ଅର୍ଥ ଚତୁର୍ଥୀ ବୁଝିବାକୁ ହେବ। ତତ୍‌ପଦର ଚତୁର୍ଥ୍ୟର୍ଥ ପ୍ରତିପନ୍ନ ହେବାରୁ ତତ୍ତ୍ୱମସି-ବାକ୍ୟର ଅର୍ଥ; "ତାହାଙ୍କ ନିମନ୍ତେ ତୁମ୍ଭେ ହୁଅ" ଅର୍ଥାତ୍, ଜୀବ ପରମେଶ୍ୱରଙ୍କ ସେବା ନିମନ୍ତେ ନିଯୁକ୍ତ ହେବ—ଏପରି ତତ୍ତ୍ୱମସି ବାକ୍ୟର ଅର୍ଥ ଭକ୍ତିବାଦ ଅନୁସାରେ ବ୍ୟାଖ୍ୟା କରାଯାଏ। ଅଥବା 'ତତ୍ତ୍ୱମସି' ମହାବାକ୍ୟର ତତ୍‌ପଦରେ ଯେଉଁ ପ୍ରଥମା ବିଭକ୍ତି ଅଛି ତାହା ପଞ୍ଚମୀ ଅର୍ଥରେ ମଧ୍ୟ ପ୍ରଯୁକ୍ତ ଏହା କୁହାଯାଇପାରେ; ଅତଏବ 'ତତ୍ତ୍ୱମସି'ର ଅର୍ଥ—"ତସ୍ମାତ୍ ତ୍ୱଂ ଅସି", ଅର୍ଥାତ୍ ତାହାଙ୍କଠାରୁ ତୁମ୍ଭେ ହୋଇଅଛ—ଏପରି ବାକ୍ୟାର୍ଥ ଧରାଯିବ। ପଞ୍ଚମୀ ଅର୍ଥରେ ପ୍ରଥମାନ୍ତର ପ୍ରୟୋଗ ବେଦରେ ଅନ୍ୟତ୍ର ଦେଖାଯାଏ—

"ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି, ଯତ୍ ପ୍ରୟନ୍ତି ଅଭିସଂବିଶନ୍ତି"—

ଅର୍ଥାତ୍ ଯାହାଙ୍କଠାରୁ ପ୍ରାଣୀସମୂହ ଜନ୍ମଗ୍ରହଣ କରନ୍ତି, ଯାହାଙ୍କୁ ଆଶ୍ରୟ କରି ଜୀବିତ ରହନ୍ତି

ଏବଂ ପ୍ରଳୟକାଳରେ ଯହିଁରେ ପ୍ରବିଷ୍ଟ ହୋଇ ଲୀନ ହୋଇ ଯାଆନ୍ତି—ଇତ୍ୟାଦି ତୈତ୍ତିରୀୟ-ଶ୍ରୁତିରୁ ବୁଝାଯାଏ ଯେ, ଜୀବ ବ୍ରହ୍ମଙ୍କଠାରୁ ଆବିର୍ଭୂତ ହୋଇଅଛି । ଅତଏବ ତତ୍ତ୍ୱମସି ବାକ୍ୟରେ ମଧ୍ୟ ପଞ୍ଚମ୍ୟର୍ଥ କଳ୍ପନାଦ୍ୱାରା ସେହି ଅର୍ଥ ପ୍ରତିପାଦିତ ବୋଲି ଶୁଦ୍ଧାଦ୍ୱୈତବାଦୀମାନେ ବ୍ୟାଖ୍ୟା କରନ୍ତି । ଆହୁରି ମଧ୍ୟ ତତ୍ତ୍ୱମସି ବାକ୍ୟରେ ଷଷ୍ଠୀ ଅର୍ଥରେ ମଧ୍ୟ ତତ୍‌ପଦ ପ୍ରଥମାନ୍ତ ହୋଇଅଛି—ବୋଲି କୁହାଯାଇପାରେ । ତତ୍ତ୍ୱମସିର ଏହିପ୍ରକାରେ ଅର୍ଥ ହେବ—ତସ୍ୟ ତ୍ୱଂ ଅସି—ଅର୍ଥାତ୍ ତାହାଙ୍କର ତୁମ୍ଭେ ହୁଅ—ସେ ସ୍ୱାମୀ ଓ ତୁମ୍ଭେ ତାହାଙ୍କର ଭୃତ୍ୟ । ଯେପରି ରାଜାଙ୍କ ଲୋକ କହିଲେ ରାଜାଙ୍କ ଭୃତ୍ୟକୁ ବୁଝାଏ, ସେହିପରି ଈଶ୍ୱରଙ୍କର ତୁମ୍ଭେ—ଏପରି କହିଲେ ଜୀବ ଈଶ୍ୱରଙ୍କର ଭୃତ୍ୟ—ଏହି ଅର୍ଥ କେବଳ ପ୍ରତିପାଦିତ ହେବ । ଏଠାରେ ଷଷ୍ଠ୍ୟର୍ଥ ବୋଧ ନିମନ୍ତେ ଶ୍ରୁତ୍ୟନ୍ତର ପ୍ରମାଣ ମଧ୍ୟ ଦେଖାଯାଏ—

"ସ କାରଣଃ କାରଣାଧିପଃ"

ଅର୍ଥାତ୍ ସେ କାରଣ ଓ କାରଣର ଅଧିପତି ବା ସମସ୍ତଙ୍କର ସ୍ୱାମୀ । 'ତତ୍ତ୍ୱମସି' ଶ୍ରୁତିବାକ୍ୟ ସହିତ ଏହି ଶ୍ୱେତାଶ୍ୱତର ଶ୍ରୁତିର ଏକବାକ୍ୟତା ରକ୍ଷା କରିବାକୁ ହେଲେ ତତ୍‌ପଦସ୍ଥ ପ୍ରଥମା ବିଭକ୍ତିକୁ ଷଷ୍ଠ୍ୟର୍ଥରେ ପରିଣତ କରିବାକୁ ହେବ । ଏହିପରି ଦ୍ୱୈତବାଦୀ ମଧ୍ୱସମ୍ପ୍ରଦାୟର ବିଦ୍ୱାନ୍‌ମାନେ ଷଷ୍ଠ୍ୟର୍ଥ କଳ୍ପନା କରି କହନ୍ତି ଯେ, ଏହାଦ୍ୱାରା ଜୀବ ଓ ବ୍ରହ୍ମର ଆତ୍ୟନ୍ତିକ ଅଭେଦ ସିଦ୍ଧ ହୁଏ ନାହିଁ ଓ ମୁକ୍ତିପ୍ରାପ୍ତି ପୂର୍ବେ ଦେହାଦିରୂପ ଉପାଧି ନିମନ୍ତେ ଆତ୍ମାଠାରେ ଦୁଃଖ ବିଦ୍ୟମାନ ଥାଏ ଓ ତଦ୍ଦ୍ୱାରା ଆତ୍ମା ସଦାମୁକ୍ତ କହିବାର ଆବଶ୍ୟକତା ମଧ୍ୟ ନାହିଁ ।

ଅଥବା ତତ୍ତ୍ୱମସି ବାକ୍ୟରେ ତତ୍‌ପଦସ୍ଥ ପ୍ରଥମା ବିଭକ୍ତି ସପ୍ତମ୍ୟର୍ଥରେ ପ୍ରଯୁକ୍ତ ଏବଂ ତାହାର ଅର୍ଥ ହେବ—'ତହିଁରେ ତୁମ୍ଭେ ଅଛ'; ଅନ୍ୟତ୍ର ବେଦମନ୍ତ୍ରରେ ମଧ୍ୟ ସପ୍ତମ୍ୟର୍ଥରେ ପ୍ରଥମାନ୍ତର ପ୍ରୟୋଗ ଦେଖାଯାଏ—

"ପ୍ରାଣବନ୍ଧନଂ ହି ସୋମ୍ୟ ମନଃ"

ଅର୍ଥାତ୍ ପ୍ରାଣ ବା ପରମାତ୍ମାଙ୍କଠାରେ ମନଃ ବା ଜୀବ ବଦ୍ଧ ଅଛି; ପରମାତ୍ମାଙ୍କଠାରେ ଆଶ୍ରୟ ଲାଭ କରି ଜୀବ ବର୍ତ୍ତମାନ ଥାଏ ଇତ୍ୟାଦି । ଏହା ମଧ୍ୟ ଏକପ୍ରକାର ଦ୍ୱୈତବାଦୀଙ୍କ ବ୍ୟାଖ୍ୟା । ଅଥବା ତତ୍ତ୍ୱମସି ବାକ୍ୟରେ 'ତତ୍'ପଦର ପ୍ରଥମା ବିଭକ୍ତିକୁ ବିଶିଷ୍ଟାଦି ଯେକୌଣସି ଅର୍ଥରେ କଳ୍ପନା କଲେ ମଧ୍ୟ, ତାହା ଜୀବ ଓ ବ୍ରହ୍ମର ଆତ୍ୟନ୍ତିକ ଅଭେଦ-ବୋଧର କାରଣ ହୁଏ ନାହିଁ । କେବଳ ଜୀବ ଓ ବ୍ରହ୍ମଙ୍କର ଦେହ-ଦେହୀଭାବରୂପକ ଏକପ୍ରକାର ଅଭେଦର ବୋଧକ; ଯେପରି "ତୁମ୍ଭେ ବ୍ରାହ୍ମଣ" "ତୁମ୍ଭେ ମନୁଷ୍ୟ"—କହିଲେ ଜୀବବ୍ରହ୍ମଙ୍କ ଦେହ ଓ ସେହି ଦେହରୂପୀ

ଜୀବର ଆତ୍ମା କେବଳ ପରମାତ୍ମା-ଅଥ ବୋଧଗମ୍ୟ ହୁଏ । ଏ ବିଷୟରେ ପ୍ରମାଣ ବୃହଦାରଣ୍ୟକ ଶ୍ରୁତିରେ ଦେଖାଯାଏ—

"ଯସ୍ୟ ଆତ୍ମା ଶରୀରମ୍"—

ଯେଉଁ ପରମାତ୍ମାଙ୍କର ଆତ୍ମା ବା ଜୀବାତ୍ମା ହିଁ ଶରୀର ଇତ୍ୟାଦି ବାକ୍ୟରେ ଜୀବ ଓ ବ୍ରହ୍ମର ଦେହଦେହୀଭାବ ଅଭେଦ କେବଳ ବୁଝାଯାଉଛି । ଏହିପରି ରାମାନୁଜ ସ୍ୱାମୀ ବ୍ୟାଖ୍ୟା କରନ୍ତି ଓ ଏହା ପୂର୍ବପକ୍ଷୀଙ୍କ ଶଙ୍କାର ଅନୁକୂଳ ମତ ।

ଅଥବା 'ତତ୍ତ୍ୱମସି' ମହାବାକ୍ୟରେ ତତ୍‌ପଦର ପ୍ରଥମା ମୁଖ୍ୟାର୍ଥରେ ପ୍ରଯୁକ୍ତ; କିନ୍ତୁ ତତ୍‌ଶବ୍ଦ ପୂର୍ବେ ଅକାରର ଲୋପ ହୋଇଅଛି । ପ୍ରକୃତ ବାକ୍ୟ—ଅତତ୍ତ୍ୱମସି, ଅର୍ଥାତ୍ ତୁମ୍ଭେ ତାହା ନୁହଁ । ମୂଳ ବାକ୍ୟରେ ଅଛି—

"ସ ଯ ଏଷୋଽଣିମୈତଦାତ୍ମ୍ୟମିଦଂ ସର୍ବଂ ତତ୍ ସତ୍ୟଂ ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ ଇତି ଭୂୟ ଏବ ମା ଭଗବାନ୍ ବିଜ୍ଞାପୟ-ତ୍ୱିତି ତଥା, ସୋମ୍ୟେତି ହୋବାଚ"—　　ଛାନ୍ଦୋଗ୍ୟ—୬ । ୮ । ୭ ।

ଏଠାରେ "—ସ ଆତ୍ମା ତତ୍ତ୍ୱମସି" ଏପରି ଥିବାରୁ "ଅତତ୍ତ୍ୱମସି" ପାଠ ମଧ୍ୟ ଅସଙ୍ଗତ ନୁହେଁ । ଏପରି ପାଠ କରିବା ବିଷୟରେ ଶ୍ୱେତାଶ୍ୱେତର ଶ୍ରୁତିବଚନ ପ୍ରମାଣ ହୋଇପାରେ—

"ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା"

ଅର୍ଥାତ୍ ଏକ ଦେହରୂପ ବୃକ୍ଷରେ ଦୁଇଗୋଟି ପକ୍ଷୀ (ଆତ୍ମା) ଅଛନ୍ତି । ସେଥିରୁ ଜଣେ ଭୋକ୍ତା ଓ ଅପରଟି କେବଳ ଦ୍ରଷ୍ଟା । ଭୋକ୍ତା ଜୀବ ଓ ଦ୍ରଷ୍ଟା ଈଶ୍ୱର । ଅତଏବ ଏହି ଶ୍ରୁତିବାକ୍ୟରୁ ଜଣାଯାଏ ଯେ, ଜୀବ ଓ ବ୍ରହ୍ମଙ୍କର ଆତ୍ୟନ୍ତିକ ଅଭେଦ-ଅର୍ଥ ଶ୍ରୁତିର ଅଭିପ୍ରେତ ନୁହେଁ । ଅତଏବ ମୁକ୍ତି ପୂର୍ବେ ଆତ୍ମାର ଦେହାଦିରୂପ ଉପାଧି ସମ୍ବନ୍ଧବଶତଃ ଦୁଃଖାଦି ଥାଏ—ଏପରି ପୂର୍ବୋକ୍ତ ପ୍ରକାରରେ ନୈୟାୟିକମାନେ ଅର୍ଥ କରନ୍ତି ।

## ଠ—ତତ୍ତ୍ୱମସି ମହାବାକ୍ୟରେ ବିଶୁଦ୍ଧାଦ୍ୱୈତବାଦୀଙ୍କ ମତ—

ପୂର୍ବୋକ୍ତ ବର୍ଣ୍ଣନା ଅନୁସାରେ ତତ୍ତ୍ୱମସି—ମହାବାକ୍ୟର ବ୍ୟାଖ୍ୟା ବିଭିନ୍ନ ମତବାଦୀଙ୍କଦ୍ୱାରା ନାନାପ୍ରକାରରେ କରାଗଲା । ବର୍ତ୍ତମାନ ସତ୍ୟମହିମାଧର୍ମ-ବିଶୁଦ୍ଧାଦ୍ୱୈତବ୍ରହ୍ମ-ବାଦ-ମତର ଅନୁକୂଳ ବ୍ୟାଖ୍ୟା ପୂର୍ବୋକ୍ତ ବର୍ଣ୍ଣନାପ୍ରକାରେ ଏହିପରି—ଏକ ଅଦ୍ୱିତୀୟ ପରଂବ୍ରହ୍ମ କେବଳ 'ତଂ' ପଦ ଓ 'ତତ୍'ପଦର, ଅର୍ଥାତ୍ ଜୀବ ଓ ଈଶ୍ୱରବାଚକ ପଦର ମୂଳାଧାର ବା ଆଶ୍ରୟ ଅଟନ୍ତି । ଏହି ଲକ୍ଷ୍ୟାର୍ଥ ତ୍ୟାଗ କରି ଅନ୍ୟ ବ୍ୟାଖ୍ୟାତୃବର୍ଗ ଜୀବେଶ୍ୱର

ସମ୍ବନ୍ଧକୁ ଲକ୍ଷ୍ୟ କରି ବର୍ଣ୍ଣନା କରିଛନ୍ତି, ତାହା ଏହି ମତର ଅନୁକୂଳ ନୁହେଁ କାରଣ ଜୀବ କେବଳ ଐକାନ୍ତିକଭାବେ ଏକ ପରଂବ୍ରହ୍ମଙ୍କ ଅଭୟପଦରେ ଶରଣାପନ୍ନ ହୋଇ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗରେ ନିମଜ୍ଜିତ ହେଲେ ବ୍ରହ୍ମାତ୍ମୈକ୍ୟର ସ୍ଥିତି ତଥା ପୂର୍ଣ୍ଣତ୍ୱ ଲାଭ କରେ । ଏହାଦ୍ୱାରା ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ମତର ଉତ୍କର୍ଷ ପ୍ରକାଶ କରୁଅଛି ।

( ଏହାର ବିଶେଷ ବିବରଣ ଷଷ୍ଠାନୁପାଦରେ ବର୍ଣ୍ଣିତ )

ଯେ ଏକ ଓ ଅଦ୍ୱିତୀୟ ପରଂବ୍ରହ୍ମ, ତାଙ୍କରି ଆଶ୍ରୟମାତ୍ର ଉପାଧିଭେଦରେ ଜୀବେଶ୍ୱର ରୂପରେ କଳ୍ପିତ ଅଟେ । ଉପନିଷଦ୍‌ରେ ମଧ୍ୟ ଏହା ସାରତତ୍ତ୍ୱଭାବରେ ପ୍ରମାଣିତ ହୋଇଅଛି—

**"ତ୍ୱଂପଦାର୍ଥଦୌପାଧିକାତ୍ ତତ୍ପଦାର୍ଥାଦୌପାଧିକାଦ୍ ବିଲକ୍ଷଣ ଆକାଶବତ୍ ସର୍ବଗତଃ ସୂକ୍ଷ୍ମକେବଲଃ ସତ୍ତାମାତ୍ରୋଽସିପଦାର୍ଥଃ ସ୍ୱୟଂ ଜ୍ୟୋତିରାତ୍ମେତ୍ୟୁଚ୍ୟତେଽତତ୍ପଦାର୍ଥଶ୍ଚାତ୍ମେତ୍ୟୁଚ୍ୟତେ ।"**

ସର୍ବୋପନିଷତ୍‌ସାର—

ଅର୍ଥାତ୍ ଯାହା ଔପାଧିକ 'ତ୍ୱଂ' ଓ ତତ୍ ପଦାର୍ଥରୁ ବିଲକ୍ଷଣ, ଆକାଶ ତୁଲ୍ୟ ସର୍ବବ୍ୟାପୀ ସୂକ୍ଷ୍ମ ଓ କେବଳ ସତ୍ତା * ମାତ୍ର ବସ୍ତୁ 'ଅସି' ପଦାର୍ଥ ସେହି ପରଂଜ୍ୟୋତିର୍ମୟ ଆତ୍ମା, ଅର୍ଥାତ୍ ବିଶୁଦ୍ଧ ବ୍ରହ୍ମ ବୋଲି ଅଭିହିତ ହୁଅନ୍ତି । ସେହି 'ଅସି' ପଦ 'ତତ୍' ଓ ତ୍ୱଂ' ପଦର ଆଶ୍ରୟ ପରଂବ୍ରହ୍ମସ୍ୱରୂପ ବୋଲି ବୁଝିବାକୁ ହେବ । ସେହି ପରଂବ୍ରହ୍ମ କେବଳ ଏହି ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ଆଶ୍ରୟ ଓ ସର୍ବଦା ଉପାସ୍ୟ । ଉପର୍ଯ୍ୟୁକ୍ତ ସକଳ ବିଷୟ, ଯାହା ଶ୍ରୁତିବାକ୍ୟ ଓ ଯୁକ୍ତିଦ୍ୱାରା ମୀମାଂସିତ ହେଲା, ବ୍ରହ୍ମସୂତ୍ରରେ ମଧ୍ୟ ସେ ସବୁର ପ୍ରମାଣ ମିଳେ—

**ଅଧିକନ୍ତୁ ଭେଦନିର୍ଦ୍ଦେଶାତ୍ ॥** ବେ: ସୂ: ୨ । ୧ । ୨୨ ।

ଅର୍ଥାତ୍—ଜୀବଠାରୁ ଅଧିକ ଯେ ବ୍ରହ୍ମ, ସେହି କେବଳ ଜଗତର ସ୍ରଷ୍ଟା, ଜୀବ ସ୍ରଷ୍ଟା ନୁହେଁ ।

**ଭେଦନିର୍ଦ୍ଦେଶାତ୍—**

* ବେଦାନ୍ତମତରେ ସତ୍ତା ଚାରି ପ୍ରକାର—୧ମ—ପରମାର୍ଥ ସତ୍ତା; ଅର୍ଥାତ୍ ଯାହାର ବାଧ କେବେ ହୁଏ ନାହିଁ, ଏପରି କେବଳ ପରଂବ୍ରହ୍ମ ସତ୍ତାର ନାମ; ୨ୟ—ବ୍ୟାବହାରିକସତ୍ତା, ବ୍ରହ୍ମଜ୍ଞାନ ଭିନ୍ନ ଅନ୍ୟ ଯେ କୌଣସି ଜ୍ଞାନଦ୍ୱାରା ଯେ ବାଧିତ ହୁଏ ନାହିଁ; ଯଥା—ଘଟପଟାଦି ସତ୍ତା ବା ଈଶ୍ୱରସୃଷ୍ଟ ସକଳ ପଦାର୍ଥର ସତ୍ତା । ୩ୟ—ପ୍ରାତିଭାସିକ ସତ୍ତା; ଅର୍ଥାତ୍ ଯାହା ବ୍ରହ୍ମଜ୍ଞାନ ବ୍ୟତୀତ ଅନ୍ୟ କୌଣସି ପ୍ରକାର ଲୌକିକ ଜ୍ଞାନଦ୍ୱାରା ବାଧିତ ହୁଏ; ଯେପରି ଶୁକ୍ତିରେ ରୌପ୍ୟସତ୍ତା ଅଥବା ଜୀବ କଳ୍ପିତ ବସ୍ତୁର ସତ୍ତା । ୪ର୍ଥ—ତୁଚ୍ଛ ସତ୍ତା, ଅର୍ଥାତ୍ କୌଣସି ପ୍ରକାରେ ନିଃସ୍ୱରୂପତା; ଉକ୍ତ ତ୍ରିବିଧ ସତ୍ତାଶୂନ୍ୟ ଦୃଷ୍ଟାନ୍ତସ୍ୱରୂପ ଗଗନ-କୁସୁମସତ୍ତା ଏହାର ଉଦାହରଣ ।

କାରଣ ଶ୍ରୁତିରେ ଜୀବ ଓ ବ୍ରହ୍ମର ଭେଦ ନିର୍ଦ୍ଦିଷ୍ଟ ହୋଇଅଛି । ଯଥା, "ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ"—ଅର୍ଥାତ୍ ଆତ୍ମା (ପରମାତ୍ମା)ଙ୍କୁ ଦର୍ଶନ କରିବାକୁ ହେବ ; ଯେ ଦର୍ଶନ କରିବ ସେ ଜୀବ, ଯାହାକୁ (ଆତ୍ମା) ଦର୍ଶନ କରିବ, ତାହା ବ୍ରହ୍ମ "ସତା ସୋମ୍ୟ ତଦା ସମ୍ପନ୍ନୋ ଭବତି"—ସୁଷୁପ୍ତି ସମୟରେ ଜୀବ ସତ୍‌ର (ବ୍ରହ୍ମର) ସହିତ ଏକ ହୋଇଯାଏ । ଏହି ଦୁଇ ବାକ୍ୟରୁ ଜଣାଯାଏ ଯେ, ବ୍ରହ୍ମ ଜୀବଠାରୁ ଭିନ୍ନ । ଏହି ପ୍ରକାର ଶ୍ରୁତିବାକ୍ୟରୁ ଜଣାଯାଏ ଯେ, ବ୍ରହ୍ମ ଜୀବ ଅପେକ୍ଷା ଅଧିକ । ପୁନଶ୍ଚ—"ଯଥାଗ୍ନେଃ କ୍ଷୁଦ୍ରାଃ ବିସ୍ଫୁଲିଙ୍ଗାଃ ।" "ଅଂଶୋ ନାନା-ବ୍ୟପଦେଶାତ୍"—ଇତ୍ୟାଦି ଶ୍ରୁତିବାକ୍ୟରେ ଜୀବ ଯାହା ବ୍ରହ୍ମଙ୍କଠାରୁ କ୍ଷରିତ, ତାହା ମଧ୍ୟ ପ୍ରତିପାଦିତ ହୋଇଅଛି । ଉପର୍ଯ୍ୟୁକ୍ତ ତତ୍ତ୍ୱମସିପ୍ରଭୃତି ବ୍ରହ୍ମବିଷୟକ ତାତ୍ପର୍ଯ୍ୟ ଅବଧାରଣ କରି "ତୁମ୍ଭେ ସେହି ପରଂବ୍ରହ୍ମଙ୍କଠାରୁ ଆସିଅଛ । ତାଙ୍କର ତୁମ୍ଭେ ହୁଅ; ତାଙ୍କଠାରେ ସତତ ଭକ୍ତି କରି ତାଙ୍କଠାରୁ ଅବିଭକ୍ତ ହୋଇ ରହ"—ଏହିପରି ଶ୍ରବଣ, ମନନ, ନିଦିଧ୍ୟାସନାଦି ସାଧନ-ଭଜନଦ୍ୱାରା ମହାବାକ୍ୟ ପ୍ରତିପାଦିତ ପରଂବ୍ରହ୍ମ ପଦ ଉପଲବ୍ଧ ହୁଏ ।

### ଠ—ଜୀବେଶ୍ୱର ଅନିତ୍ୟ; କେବଳ ପରଂବ୍ରହ୍ମ ସତ୍ୟ ଓ ନିତ୍ୟ—

ମାୟାଭାସେନ ଜୀବେଶୌ କରୋତୀତି ଶ୍ରୁତତ୍ୱତଃ ।
ମାୟିକାବେବ ଜୀବେଶୌ ସ୍ୱଚ୍ଛୌ ତୌ କାଚକୁମ୍ଭବତ୍ ॥
ଅନ୍ନଜନ୍ୟଂ ମନୋଦେହାତ୍ ସ୍ୱଚ୍ଛଂ ଯଦ୍‌ବତ୍ତଥୈବ ତୌ ।
ମାୟିକାବପି ସର୍ବସ୍ମାଦନ୍ୟସ୍ମାତ୍ ସ୍ୱଚ୍ଛତାଂ ଗତୌ ॥
ଚିଦ୍ରୂପତ୍ୱଞ୍ଚ ସମ୍ଭାବ୍ୟଂ ଚିତ୍ତ୍ୱେନୈବ ପ୍ରକାଶନାତ୍ ।
ସର୍ବକଳ୍ପନଶକ୍ତାୟା ମାୟାୟା ଦୁଷ୍କରଂ ନ ହି ॥

ପଞ୍ଚଦଶୀ ୮ । ୫୯-୬୧ ।

ଯେପରି ପାର୍ଥିବ ରୂପରେ ଅବଶେଷ ହେଲେ ମଧ୍ୟ ମୃତ୍‌କୁମ୍ଭଠାରୁ କାଚକୁମ୍ଭ ସ୍ୱଚ୍ଛ ହୁଏ, ଅଥବା ଅନ୍ନ ବିକାର ରୂପରେ ସମାନ ହେଲେ ମଧ୍ୟ ଦେହଠାରୁ ମନ ସ୍ୱଚ୍ଛ ହୁଏ, ସେହିପରି ମାୟିକ ହେଲେ ମଧ୍ୟ ଜୀବ ଓ ଈଶ୍ୱର ଯଦ୍ୟପି ଅନ୍ୟ ସମସ୍ତ ମାୟିକ ପଦାର୍ଥଠାରୁ ସ୍ୱଚ୍ଛ, ତଥାପି ମାୟା ଆଭାସ-ଚୈତନ୍ୟଦ୍ୱାରା ଜୀବ ଓ ଈଶ୍ୱରଙ୍କ ସ୍ୱରୂପ କଳ୍ପନା କରେ; ଏହି ଶ୍ରୁତି ବାକ୍ୟଦ୍ୱାରା ସେମାନଙ୍କର ମାୟିକତ୍ୱ ସିଦ୍ଧ ହେବାଦ୍ୱାରା କୂଟସ୍ଥ ଚୈତନ୍ୟ ସେମାନଙ୍କଠାରୁ ଅତିରିକ୍ତଭାବରେ ଅବସ୍ଥିତ । ଯଦିଓ ଜୀବ ଓ ଈଶ୍ୱରଙ୍କର ମାୟିକତ୍ୱ ବର୍ତ୍ତମାନ, ତଥାପି ଚୈତନ୍ୟରୂପରେ ପ୍ରକାଶିତ ହେବାରୁ ସେମାନଙ୍କର ଚୈତନ୍ୟସ୍ୱରୂପ ମଧ୍ୟ ସିଦ୍ଧ ହୁଏ, ଏହା ଅନୁଭବସିଦ୍ଧ । କାରଣ, ସର୍ବ କଳ୍ପନାସମର୍ଥ ମାୟାର କୌଣସି କର୍ମ ଦୁଷ୍କର ନୁହେଁ । ଏହି ହେତୁରୁ କେବଳ ଜୀବେଶ୍ୱର ମାୟାର ଅଧୀନ ।

ମାୟାଖ୍ୟାୟାଃ କାମଧେନୋର୍ବତ୍ସୌ ଜୀବେଶ୍ୱରାବୁଭୌ ।
ଯଥେଚ୍ଛଂ ପିବତାଂ ଦ୍ୱୈତଂ ତତ୍ତ୍ୱନ୍ତ୍ୱଦ୍ୱୈତମେବ ହି ॥
କୂଟସ୍ଥ ବ୍ରହ୍ମଣୋର୍ଭେଦୋ ନାମମାତ୍ରାଦୃତେ ନ ହି ।
ଘଟାକାଶ ମହାକାଶୌ ବିୟୁଜ୍ୟେତେ ନ ହି କ୍ୱଚିତ୍ ॥
ଯଦଦ୍ୱୈତଂ ଶ୍ରୁତଂ ସୃଷ୍ଟେଃ ପ୍ରାକ୍ ତଦେବାଦ୍ୟ ଚୋପରି ।
ମୁକ୍ତାବପି ବୃଥା ମାୟା ଭ୍ରାମୟତ୍ୟାଖିଳାନ୍ ଜନାନ୍ ॥

ପଞ୍ଚଦଶୀ—୬ । ୨୩୬—୨୩୮ ।

ମାୟାରୂପ କାମଧେନୁର ଦୁଇଟି ବତ୍ସସ୍ୱରୂପ ଯେଉଁ ଜୀବ ଓ ଈଶ୍ୱର, ସେମାନେ ଯଥେଚ୍ଛଭାବରେ ଦ୍ୱୈତରୂପ-ଦୁଗ୍ଧକୁ ପାନ କରନ୍ତୁ; କିନ୍ତୁ ତଦ୍ୱାରା ଅଦ୍ୱୈତତତ୍ତ୍ୱର କୌଣସି ହାନି ହୁଏ ନାହିଁ । କେବଳ ନାମଗତ ଭେଦ ଛଡ଼ା କୂଟସ୍ଥ ଓ ବ୍ରହ୍ମର ସ୍ୱରୂପତଃ ଅନ୍ୟ କିଛି ଭେଦ ରହେ ନାହିଁ; ଯେପରି ଉପାଧିଭେଦ ବ୍ୟତିରେକେ ଘଟାକାଶ ଓ ମହାକାଶର ସ୍ୱରୂପତଃ କୌଣସି ଭେଦ ରହେ ନାହିଁ । ଶ୍ରୁତିବର୍ଣ୍ଣିତ ଅଦ୍ୱୈତତତ୍ତ୍ୱ ସୃଷ୍ଟି ପୂର୍ବରେ ଯେପରି ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ରହିଅଛି ଏବଂ ଭବିଷ୍ୟତରେ ଜୀବର ମୁକ୍ତିକାଳରେ ମଧ୍ୟ ସେହିପରି ସମାନଭାବରେ ରହିଥିବ, ଏ କଥା ଅସନ୍ଦିଗ୍ଧ; କିନ୍ତୁ ମାୟା କେବଳ ଅଖିଳ ବ୍ରହ୍ମାଣ୍ଡକୁ ବୃଥା ଭ୍ରମଣ କରାଉଅଛି । କେବଳ ଏକମାତ୍ର ପରଂବ୍ରହ୍ମ ପଦାର୍ଥକୁ ବୁଝାଇବା ଉଦ୍ଦେଶ୍ୟରେ ନାନା ସ୍ଥାନରେ ଜୀବେଶ୍ୱରଭାବ କଥିତ ହୋଇଅଛି । ବସ୍ତୁତଃ ପରଂବ୍ରହ୍ମ କେବଳ ବିଶୁଦ୍ଧ ଚୈତନ୍ୟ, ସେ ଜୀବେଶ୍ୱରରୂପ କଳ୍ପନାରୁ ଅତୀତ ।

ଅବାଙ୍ମନସଗମ୍ୟନ୍ତଂ ଶ୍ରୁତବୋଧୟିତୁଂ ସଦା ।
ଜୀବମୀଶଂ ଜଗଦ୍‌ବାପି ସମାଶ୍ରିତ୍ୟାବବୋଧୟେତ୍ ॥

ପଞ୍ଚଦଶୀ ୮ । ୭୧ ।

ବାକ୍ୟ ଓ ମନର ଅଗୋଚର ସେହି କୂଟସ୍ଥ ଚୈତନ୍ୟଙ୍କର କେବଳ ସ୍ୱରୂପ ଅବଗତ କରାଇବା ନିମନ୍ତେ ଶ୍ରୁତି ଜୀବ, ଈଶ୍ୱର ଓ ଜଗତକୁ ଆଶ୍ରୟ କରି ବ୍ୟାଖ୍ୟା କରେ ।

ମେଘାକାଶମହାକାଶୌ ବିବିଚ୍ୟେତେ ନ ପାମରୈଃ ।
ତଦ୍ୱଦ୍ ବ୍ରହ୍ମେଶୟୋରୈକ୍ୟଂ ପଶ୍ୟନ୍ତ୍ୟାପାତଦର୍ଶିନଃ ।

ପଞ୍ଚଦଶୀ ୬ । ୧୯୪ ।

ଯେପରି ମେଘାକାଶ ଓ ମହାକାଶ—ଏହି ଉଭୟର ପ୍ରଭେଦ ସାମାନ୍ୟ-ବୁଦ୍ଧିରେ ପ୍ରତିଭାତ ହୁଏ ନାହିଁ; ସେହିପରି ଅଦୂରଦର୍ଶୀମାନେ କେବଳ ପରଂବ୍ରହ୍ମ ଓ ଈଶ୍ୱରଙ୍କର ଐକ୍ୟ ଅନୁଭବ କରନ୍ତି । ଏ ବିଷୟରେ ଶଙ୍କରାଚାର୍ଯ୍ୟ କହିଅଛନ୍ତି—

ଅବିଦ୍ୟୋପାଧିକୋ ଜୀବୋ ମାୟୋପାଧିକ ଈଶ୍ୱରଃ ।
ମାୟାଽବିଦ୍ୟାଗୁଣାତୀତଃ ଇତ ବେଦାନ୍ତଡିଣ୍ଡିମଃ ॥

ଅର୍ଥାତ୍ ଜୀବର ଅବିଦ୍ୟା ଉପାଧି, ଈଶ୍ୱରଙ୍କର ମାୟା ଉପାଧି ଓ ମାୟା ଅବିଦ୍ୟାଦି ତ୍ରିଗୁଣ—ଏମାନଙ୍କଠାରୁ ଅତୀତ ବ୍ରହ୍ମ--ଏହା ବେଦାନ୍ତଦର୍ଶନ ଡିଣ୍ଡିମ ଭଳି ଉଦ୍‌ଘୋଷଣା କରେ ।

ଯତସ୍ତତୋ ବ୍ରହ୍ମ ସଦା ଦ୍ୱିତୀୟଂ ବିକଳ୍ପଶୂନ୍ୟଂ ନିରୁପାଧି ନିର୍ମଳମ୍ ।
ନିରନ୍ତରାନନ୍ଦଘନଂ ନିରୀହଂ ନିରାସ୍ପଦଂ କେବଳମେକମେବ ॥
ନୈବାସ୍ତି କାଚନ ଭିଦା ନ ନ ଗୁଣପ୍ରତୀତ
ର୍ନୋ ବାକ୍ ପ୍ରବୃତ୍ତିରପି ବା ନ ମନଃପ୍ରବୃତ୍ତିଃ ।
ଯତ୍ କେବଳଂ ପରମଶାନ୍ତମନନ୍ତମାଦ୍ୟ-
ମାନନ୍ଦମାତ୍ରମବଭାତ ସଦଦ୍ୱିତୀୟମ୍ ॥
ଯଦିଦଂ ପରମଂ ସତ୍ୟଂ ତତ୍ତ୍ୱଂ ସଚ୍ଚିତ୍ ସୁଖାତ୍ମକମ୍ ।
ଅଜରାମରଣଂ ନିତ୍ୟଂ ସତ୍ୟମେତଦ୍‌ବଚୋ ମମ ॥

· ସ: ସି: ସା: ୭୭୧-୭୭୩ ।

ଶ୍ରୁତିରେ ବ୍ରହ୍ମଙ୍କର ଦ୍ୱୈତକଳ୍ପନା ନାହିଁ, ଅତଏବ ବ୍ରହ୍ମ ସଦା ଅଦ୍ୱିତୀୟ, ବିକଳ୍ପ-ରହିତ, ଉପାଧିଶୂନ୍ୟ, ଶୁଦ୍ଧ, ଆନନ୍ଦପୂର୍ଣ୍ଣ, ନିଚେଷ୍ଟ, ସ୍ୱପ୍ରତିଷ୍ଠ ଏବଂ ଏକମାତ୍ର । ବ୍ରହ୍ମଙ୍କଠାରେ କୌଣସି ରୂପଗତ ଭେଦ ନାହିଁ ; ତାଙ୍କଠାରେ ସୁଖଦୁଃଖାଦି ଗୁଣର ପ୍ରତୀତି ହୁଏ ନାହିଁ; ସେଥିରେ ବାକ୍ୟ ବା ମନର ବ୍ୟାପାର ନାହିଁ, ସେ ସର୍ବଦା ଶାନ୍ତ, ବିଭୁ ଓ ସମସ୍ତଙ୍କ ପୂର୍ବରୁ ବିଦ୍ୟମାନ ଏହିପରି ଅଦ୍ୱିତୀୟ ଆନନ୍ଦରୂପତା ହିଁ ସର୍ବଦା ଅବଭାସମାନ ହୁଏ । ଯେଉଁ ବ୍ରହ୍ମ ଜରାମରଣ-ବିରହିତ, ସତ୍, ଚିତ୍ ଓ ଆନନ୍ଦସ୍ୱରୂପ, ପରମ ସତ୍ୟବସ୍ତୁ, ତାହାଙ୍କୁ ନିତ୍ୟ ବୋଲି ବୁଝିବ, ଏହା ଆମର ଯଥାର୍ଥ ବଚନ ।

ନ ତୁ ତଦ୍‌ଦ୍ୱିତୀୟମସ୍ତି । ନାତ୍ର କାଚନ ଭିଦାସ୍ତି, ନୈବ ତତ୍ର କାଚନ ଭିଦାସ୍ତି । ସର୍ବଂ ବିକାରଜାତଂ ମାୟାମାତ୍ରଂ; ସର୍ବତ୍ର ନହ୍ୟସ୍ତି ଦ୍ୱୈତସିଦ୍ଧିଃ । ନାସ୍ତି ଦ୍ୱୈତଂ କୁତୋ ମର୍ତ୍ତ୍ୟମ୍ । ପ୍ରପଞ୍ଚୋ ଯଦି ଭିଦ୍ୟେତ ନିବର୍ତ୍ତେତ ନ ସଂଶୟଃ ॥ ମହାବାକ୍ୟରତ୍ନାବଳୀ—୪ । ୪—୯ ।

ଅର୍ଥାତ୍ ବ୍ରହ୍ମଙ୍କଠାରୁ ପୃଥକ୍ ଆଉ ଦ୍ୱିତୀୟ କେହି ନାହିଁ, ବ୍ରହ୍ମଙ୍କଠାରେ କୌଣସି ପ୍ରକାର ଭେଦ ମଧ୍ୟ ନାହିଁ, ଅର୍ଥାତ୍ ସେ ସଜାତୀୟ-ବିଜାତୀୟ ବା ସ୍ୱଗତ-ଭେଦରହିତ । ସକଳ ବିକାରଗ୍ରସ୍ତ ବସ୍ତୁ ମାୟାଜନିତ । ଅର୍ଥାତ୍ ମିଥ୍ୟା । ବ୍ରହ୍ମଙ୍କର ଦ୍ୱୈତସିଦ୍ଧି କଦାପି ନାହିଁ । ଯେତେବେଳେ ଅଖଣ୍ଡ ଏବଂ ଏକରସ ବ୍ରହ୍ମଙ୍କଠାରେ ଜଗତ୍ ଓ ଜୀବାଦିଭେଦଯୁକ୍ତ ଦ୍ୱୈତରୂପ ଜଗତ୍‌ର ଅଭାବ, ସେତେବେଳେ ଅବାସ୍ତବ ଭେଦରୂପ ମନୁଷ୍ୟାଦି ବା ତାଙ୍କଠାରେ ସମ୍ଭବ ହୋଇପାରେ । ଶଶଶୃଙ୍ଗ ପରି ଅଳୀକ ପ୍ରପଞ୍ଚ ଯଦି ସମ୍ଭବ ହୋଇପାରେ, ତେବେ "ବ୍ରହ୍ମଭିନ୍ନ ଅନ୍ୟ କିଛି ସତ୍ୟ ନୁହେଁ" ଏହି ଜ୍ଞାନଦ୍ୱାରା ନିଶ୍ଚୟ ପ୍ରପଞ୍ଚଜ୍ଞାନର ନିବୃତ୍ତି ହେବ ।

## ୦—ପରଂବ୍ରହ୍ମଙ୍କଠାରେ କୌଣସି ପ୍ରକାର ଭେଦ ବା ବାଧ ନାହିଁ—

ଉପର୍ଯ୍ୟୁକ୍ତ ଅଦ୍ୱୈତବାଦ ସମ୍ବନ୍ଧରେ ଯୁକ୍ତି ସମୂହ ଉପନିଷତ୍‌ସମ୍ମତ ।

### "ସ ଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍"—

ଏହି ମହାବାକ୍ୟ ଅନୁସରଣ କରି ଅଦ୍ୱୈତବାଦସମ୍ପୃକ୍ତ ଶ୍ରୁତିସମୂହ ପୂର୍ବେ ବର୍ଣ୍ଣିତ ହୋଇଅଛି । ଉପନିଷଦ୍ ବର୍ଣ୍ଣନା ଅନୁସାରେ ଏହି ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ନକ୍ଷତ୍ରଖଚିତ ନଦ-ନଦୀ-ଭୂଧରସମାକୁଳ ବିପୁଳ ବିଶ୍ୱ ଅଭିବ୍ୟକ୍ତ ହେବା ପୂର୍ବରୁ କେବଳ ଏକମାତ୍ର ସତ୍‌ସ୍ୱରୂପ ପରମାର୍ଥରୂପରେ ହିଁ ବିଦ୍ୟମାନ ଥିଲି । ଏଠାରେ ବ୍ରହ୍ମଙ୍କଠାରେ 'ଏକ'ପଦଦ୍ୱାରା ସ୍ୱଗତଭେଦ, 'ଏବ' ପଦଦ୍ୱାରା ସଜାତୀୟଭେଦ ଏବଂ ଅଦ୍ୱିତୀୟ-ପଦଦ୍ୱାରା ବିଜାତୀୟଭେଦ ନିବାରିତ ହୋଇଅଛି । କେବଳ ସେହି ଅଖଣ୍ଡ ଏକରସ ବିଶୁଦ୍ଧ ବ୍ରହ୍ମ ଅଦ୍ୱିତୀୟ ଅଟନ୍ତି ।

ପଞ୍ଚଦଶୀରେ ଏ କଥା ନିର୍ଣ୍ଣୀତ ହୋଇଅଛି—

"ବୃକ୍ଷସ୍ୟ ସ୍ୱଗତୋ ଭେଦଃ ପତ୍ରପୁଷ୍ପଫଳାଦିଭିଃ ।
ବୃକ୍ଷାନ୍ତରାତ୍ ସଜାତୀୟୋ ବିଜାତୀୟଃ ଶିଳାଦିତଃ ।
ତଥା ସଦ୍‌ବସ୍ତୁନୋ ଭେଦତ୍ରୟଂ ପ୍ରାପ୍ତଂ ନିବାର୍ଯ୍ୟତେ ।
ଐକ୍ୟାବଧାରଣଦ୍ୱୈତପ୍ରତିଷେଧୈସ୍ତ୍ରିଭିଃ କ୍ରମାତ୍ ।।
ସତୋ ନାବୟବାଃ ଶଙ୍କ୍ୟାସ୍ତଦଂଶସ୍ୟାନିରୂପଣାତ୍ ।
ନାମରୂପେ ନ ତସ୍ୟାଂଶୌ ତୟୋରଦ୍ୟାପ୍ୟନୁଦ୍‌ଭବାତ୍ ।।
ନାମରୂପୋଦ୍‌ଭବସ୍ୟୈବ ସୃଷ୍ଟିତ୍ୱାତ୍ ସୃଷ୍ଟିତଃ ପୁରା ।
ନ ତୟୋରୁଦ୍‌ଭବସ୍ତସ୍ମାତ୍ ସନ୍ନିରଂଶଂ ଯଥା ବିୟତ୍ ।।
ସଦନ୍ତରଂ ସଜାତୀୟଂ ନ ବୈଲକ୍ଷଣ୍ୟବର୍ଜ୍ଜନାତ୍ ।
ନାମରୂପୋପାଧିଭେଦଂ ବିନା ନୈବ ସତୋଭିଦା ।।
ବିଜାତୀୟମସତ୍ତତ୍ତୁ ନ ଖଲ୍ୱସ୍ତୀତି ଗମ୍ୟତେ ।

ନାସ୍ୟାତଃ ପ୍ରତଯୋଗିତ୍ୱଂ ବଜାତୀୟାଦ୍‌ଭିଦା କୁତଃ ॥
ଏକମେବାଦ୍ୱିତୀୟଂ ସତ୍ ସିଦ୍ଧମତ୍ର ତୁ କେଚନ ।

× × × ×

ପଞ୍ଚଦଶୀ—୨ । ୧୯—୨୧ ।

ପୂର୍ବେ ବର୍ଣ୍ଣିତ ହୋଇଛି ଯେ, ପରମାତ୍ମା ସ୍ୱଗତ, ସଜାତୀୟ ଓ ବଜାତୀୟରୂପକ ଭେଦତ୍ରୟରହିତ । ବର୍ତ୍ତମାନ ଦୃଷ୍ଟାନ୍ତ ସହ ସେହି ପରମାତ୍ମାଙ୍କର ସ୍ୱରୂପନିରୂପଣ ଅଭିପ୍ରାୟରେ ସେହି ଭେଦତ୍ରୟର ବର୍ଣ୍ଣନା କରାଯାଉଛି । ଯେପରି ବୃକ୍ଷର ପତ୍ର-ପୁଷ୍ପ-ଫଳପ୍ରଭୃତି ସହିତ ସ୍ୱଗତଭେଦ, ବୃକ୍ଷାନ୍ତର ସହିତ ସଜାତୀୟଭେଦ ଏବଂ ଶିଳାଦି ସହିତ ବଜାତୀୟଭେଦ ଦୃଷ୍ଟ ହୁଏ, ସେହିପରି ସନ୍ମାତ୍ର ପରମାତ୍ମାଙ୍କର ଉକ୍ତ ଭେଦତ୍ରୟ ତିନୋଟି ବଶେଷଣଦ୍ୱାରା—ଅର୍ଥାତ୍ ଏକ ଏବ ଓ ଅଦ୍ୱିତୀୟରୂପକ ପଦତ୍ରୟଦ୍ୱାରା, ଅର୍ଥାତ୍ ଐକ୍ୟ, ଅବଧାରଣ ଓ ଦ୍ୱୈତନିଷେଧ-ଦ୍ୱାରା ନବାରିତ ହୁଏ ।

ପରଂବ୍ରହ୍ମଙ୍କ ସ୍ୱରୂପର କୌଣସି ଅବୟବ ନାହିଁ, ଅତଏବ ତାହାଙ୍କ ସ୍ୱରୂପର ସ୍ୱଗତଭେଦ, ଅର୍ଥାତ୍ ଅବୟବର ବଭାଗ ସମ୍ଭବ ହୁଏ ନାହିଁ—ଏହା ଏଠାରେ ଅଭିବ୍ୟକ୍ତ ହୁଏ । କାରଣ, ସଦ୍‌ବସ୍ତୁ ପରଂବ୍ରହ୍ମ ସ୍ୱରୂପର କୌଣସି ଅବୟବ ନରୂପିତ ହୁଏ ନାହିଁ । ସେହିହେତୁରୁ ତାଙ୍କଠାରେ କୌଣସି ଅବୟବର ଆଶଙ୍କା କରିବା ସମ୍ଭବ ନୁହେଁ ଏବଂ ନାମ ବା ରୂପ ମଧ୍ୟ ତାହାଙ୍କ ସ୍ୱରୂପର ଅଂଶ ହୋଇ ପାରନ୍ତି ନାହିଁ । କାରଣ, ନାମ ଓ ରୂପର ଉତ୍ପତ୍ତି ପୂର୍ବେ ନତ୍ୟ ସିଦ୍ଧ ପରଂବ୍ରହ୍ମ କେବଳ ବର୍ତ୍ତମାନ ଥିଲେ । ନାମ ଓ ରୂପ—ଉତ୍ପତ୍ତିର ନାମ ସୃଷ୍ଟି । ସୃଷ୍ଟି-ପୂର୍ବରୁ ନାମରୂପର ସତ୍ତା କୌଣସିମତେ ସମ୍ଭବ ନୁହେଁ; ଅତଏବ ଆକାଶ ପରି ପରଂବ୍ରହ୍ମଙ୍କର ମଧ୍ୟ ସ୍ୱଗତଭେଦ ସମ୍ଭବ ନୁହେଁ ।

ପରଂବ୍ରହ୍ମଙ୍କର ସଜାତୀୟ ଭେଦ, ଅର୍ଥାତ୍ ସମାନଜାତୀୟ ଅନ୍ୟବସ୍ତୁର ସତ୍ତା ମଧ୍ୟ ଏହିପରି ନବାରିତ ହୁଏ—ଯେଉଁହେତୁରୁ ନତ୍ୟ-ଜ୍ଞାନ-ଆନନ୍ଦସ୍ୱରୂପ ପରଂବ୍ରହ୍ମଙ୍କର ସ୍ୱରୂପ ବବଧ ପ୍ରକାର ନୁହେଁ । ଅତଏବ ତାହାଙ୍କର ସମାନଜାତୀୟ ଅନ୍ୟ କୌଣସି ପଦାର୍ଥର ସତ୍ତା ଜଗତରେ ସମ୍ଭବ ହୁଏ ନାହିଁ ଏବଂ ନାମୋପାଧି ବ୍ୟତିରେକେ ପରଂବ୍ରହ୍ମଙ୍କର ସ୍ୱରୂପର ପ୍ରଭେଦ ମଧ୍ୟ ହୁଏ ନାହିଁ, ନାମରୂପ ଉପାଧିଦ୍ୱାରା ଯେଉଁ ପ୍ରଭେଦ ବୁଦ୍ଧିଗମ୍ୟ, ତାହା ସ୍ୱରୂପର ନୁହେଁ; ତାହା ଉପାଧିର ବଭିନ୍ନତା ମାତ୍ର ।

ଏହି ସଦ୍‌ବସ୍ତୁ ପରଂବ୍ରହ୍ମଙ୍କର ବଜାତୀୟଭେଦ, ଅର୍ଥାତ୍ ତାଙ୍କଠାରୁ ଭିନ୍ନଜାତୀୟ ଅନ୍ୟ କୌଣସି ବସ୍ତୁର ସତ୍ତା ଜଗତରେ ନାହିଁ—ଏହା ପ୍ରତିପାଦିତ କରାଯାଉଛି—ପରଂବ୍ରହ୍ମ ସଦ୍‌ବସ୍ତୁ, ତାହାଙ୍କର ବଜାତୀୟ, ଅର୍ଥାତ୍ ବପରୀତଜାତୀୟ ବସ୍ତୁ ଅସତ୍ ବା ତାହାର ବ୍ୟବହାର ନାସ୍ତିରୂପରେ କରାଯାଏ ଏବଂ ଯାହାକୁ ଅସତ୍ କୁହାଯାଏ, ତାହାର ସ୍ୱରୂପ ରହିବା ଅସମ୍ଭବ ।

ଅତଏବ ତଦ୍ଦ୍ୱାରା ସତ୍‌ସ୍ୱରୂପ ପରଂବ୍ରହ୍ମଙ୍କର ପ୍ରଭେଦ ହୋଇପାରେ ନାହିଁ । ଏହି ପ୍ରକାର ପୂର୍ବ-ବର୍ଣ୍ଣିତ ସୂକ୍ତସମୂହଦ୍ୱାରା ନିତ୍ୟଜ୍ଞାନ ଆନନ୍ଦସ୍ୱରୂପ ଅଦ୍ୱିତୀୟ ପରଂବ୍ରହ୍ମ ଏକମାତ୍ର—ଏହା ସିଦ୍ଧ ହୁଏ ।

ଆହୁରି ମଧ୍ୟ—

"ଶ୍ରୁତ୍ୟୈବ ନ ତତସ୍ତେଷାଂ ଗୁଣତ୍ୱମୁପପଦ୍ୟତେ ।
ଉଷ୍ଣତ୍ୱଞ୍ଚ ପ୍ରକାଶଶ୍ଚ ଯଥା ବହ୍ନେସ୍ତଥାତ୍ମନଃ ॥
ସତ୍ତ୍ୱ-ଚିତ୍ତ୍ୱାନନ୍ଦତାଦସ୍ୱରୂପମିତ କୀର୍ତ୍ତିତମ୍ ।
ଅତଏବ ସଜାତୀୟବିଜାତୀୟାଦିଲକ୍ଷଣଃ ॥
ଭେଦୋ ନ ବିଦ୍ୟତେ ବସ୍ତୁନ୍ୟଦ୍ୱିତୀୟେ ପରାତ୍ମନି ।
ପ୍ରପଞ୍ଚସ୍ୟାପବାଦେନ ବିଜାତୀୟକୃତା ଭିଦା" ॥

ନେଷ୍ୟତେ × × × ସ: ବେ: ସି: ସା: ୬୬୭—୬୭୧ ।

ଶ୍ରୁତିପ୍ରମାଣଦ୍ୱାରା ମଧ୍ୟ, ସତ୍ତ୍ୱ ଚିତ୍ତ୍ୱ ଓ ଆନନ୍ଦର ଗୁଣତ୍ୱ ଉପପନ୍ନ ହୁଏ ନାହିଁ ; ଯେପରି ଉଷ୍ଣତା ଓ ପ୍ରକାଶ ଅଗ୍ନିର ସ୍ୱରୂପ, ସେହିପରି ସତ୍ତ୍ୱ, ଚିତ୍ତ୍ୱ ଓ ଆନନ୍ଦ ବ୍ରହ୍ମଙ୍କର ସ୍ୱରୂପ—ଏହା କେବଳ କୀର୍ତ୍ତିତ । ଅତଏବ ଅଦ୍ୱିତୀୟ ବସ୍ତୁ ପରମାତ୍ମାଙ୍କର ସଜାତୀୟ, ବିଜାତୀୟପ୍ରଭୃତି ଭେଦ ନାହିଁ । ପ୍ରପଞ୍ଚର ଅପବାଦ (ବାଧ) ବଶତଃ ବିରୁଦ୍ଧଜାତୀୟ ବସ୍ତୁଜନିତ ଭେଦସ୍ୱୀକାର କରାଯାଏ ନାହିଁ । ଏକମାତ୍ର ଅବାଙ୍ମନସଗୋଚର ଚିଦେକରସଘନ ପରମାତ୍ମା କେବଳ ବିଦ୍ୟମାନ । ସେହି ପରଂବ୍ରହ୍ମ ଏକ ଓ ଅଦ୍ୱିତୀୟ, ଅତଏବ ଯଥାର୍ଥତଃ ସର୍ବଭେଦାତୀତ ଅବାଧବ୍ରହ୍ମ ବିଶୁଦ୍ଧାଦ୍ୱୈତସିଦ୍ଧାନ୍ତ ଓ ବେଦାନ୍ତର ଚରମ ଉପଦେଶ ।

## ୦—ଶ୍ରବଣ, ମନନ ଓ ନିଦିଧ୍ୟାସନ ।

କେବଳ ପରମାତ୍ମାଙ୍କ ସ୍ୱରୂପ ନିରୂପଣଦ୍ୱାରା ତାଙ୍କଠାରେ ଅଚଳା ଭକ୍ତି ରହିପାରେ ନାହିଁ, ସେହିନିମନ୍ତେ ଉପଯୁକ୍ତ ସାଧନ, ଭଜନ, ସ୍ମରଣପ୍ରଭୃତି ଆବଶ୍ୟକ । ଏହି ହେତୁରୁ ଉପନିଷଦ୍‌ର ଋଷି ତଦୁପଯୋଗୀ ଶ୍ରବଣ, ମନନ ଓ ନିଦିଧ୍ୟାସନ ମୁମୁକ୍ଷୁବ୍ୟକ୍ତିର ଅନୁଷ୍ଠେୟ ବୋଲି ବ୍ୟାଖ୍ୟା କରିଅଛନ୍ତି ।

"ଶ୍ରବଣଂ ତୁ ଗୁରୋଃ ପୂର୍ବଂ ମନନଂ ତଦନନ୍ତରମ୍ ।
ନିଦିଧ୍ୟାସନମିତ୍ୟେତତ୍ ପୂର୍ଣ୍ଣବୋଧସ୍ୟ କାରଣମ୍" ॥

ଶୁକରହସ୍ୟୋପନିଷଦ୍—୧୩ ।

ପ୍ରଥମେ ଶ୍ରବଣ, ପରେ ମନନ ଓ ନିଦିଧ୍ୟାସନ—ଏହି ସକଳ ପୂର୍ଣ୍ଣବୋଧଲାଭର ଉପାୟ ।

ଆହୁରି ମଧ୍ୟ—

"ଇତ୍ଥଂ ବାକ୍ୟୈସ୍ତଦର୍ଥାନୁସନ୍ଧାନଂ ଶ୍ରବଣଂ ଭବେତ୍ ।
ଯୁକ୍ତ୍ୟା ସମ୍ଭାବିତତ୍ୱାନୁସନ୍ଧାନଂ ମନନନ୍ତୁ ତତ୍ ॥
ତାଭ୍ୟାଂ ନିର୍ବିଚିକିତ୍ସେଽର୍ଥେ ଚେତସଃ ସ୍ଥାପିତସ୍ୟ ଯତ୍ ।
ଏକତାନତ୍ୱମେତଦ୍ଧି ନିଦିଧ୍ୟାସନମୁଚ୍ୟତେ ॥

ଅଧ୍ୟାତ୍ମୋପନିଷଦ୍ ୩୩-୩୪ । ପଞ୍ଚ: ୧ । ୫୩-୫୪ ।

ଏହି ପ୍ରକାରେ ବେଦାନ୍ତବର୍ଣ୍ଣିତ ବିଗ୍ରହଦ୍ୱାରା "ତତ୍ତ୍ୱମସି" ଆଦି ମହାବାକ୍ୟର ଅର୍ଥ ଅନୁସନ୍ଧାନ କାର୍ଯ୍ୟକୁ ପରଂବ୍ରହ୍ମ ବିଷୟକ ଶ୍ରବଣ ବୋଲାଯାଏ । ବେଦାନ୍ତବିଚାରର ଅନୁକୂଳ ପରଂବ୍ରହ୍ମଙ୍କର ନିତ୍ୟ, ଜ୍ଞାନ, ଆନନ୍ଦରୂପକ ସ୍ୱରୂପ ନିର୍ଣ୍ଣିତ ହେଲେ ପୂର୍ବୋକ୍ତ ଯୁକ୍ତିବଳରେ ସର୍ବଦା ତାହାଙ୍କର ଅନୁସନ୍ଧାନକୁ ପରଂବ୍ରହ୍ମବିଷୟକ ମନନ ବୋଲାଯାଏ । ପୂର୍ବୋକ୍ତ ଶ୍ରବଣ ଓ ମନନଦ୍ୱାରା ଅସନ୍ଦିଗ୍ଧଭାବରେ ଅବବୁଦ୍ଧ ପରଂବ୍ରହ୍ମଙ୍କର ନିତ୍ୟ, ଜ୍ଞାନ ଓ ଆନନ୍ଦସ୍ୱରୂପରେ ସଂସ୍ଥାପିତ ଅନ୍ତଃକରଣର ସେହି ବିଷୟରେ ଏକପ୍ରକାର ବୃତ୍ତିପ୍ରବାହ ଅର୍ଥାତ୍ ଅବିରାମ ତୈଳଧାରା ତୁଲ୍ୟ ଏକଧାରା ପ୍ରବାହ—ତାହାକୁ ନିଦିଧ୍ୟାସନ ବୋଲାଯାଏ । *

ଉପରିବର୍ଣ୍ଣିତ ଯୁକ୍ତିସମୂହରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ଜୀବ ପରଂବ୍ରହ୍ମଙ୍କୁ ସାକ୍ଷାତ୍ କରିବାର ପ୍ରଧାନ ସୋପାନ ହେଉଛି—ଶ୍ରବଣ, ମନନ-ଆଦି । ତଦ୍ୱାରା ଆତ୍ମଜ୍ଞାନୀ ସଂସାର-ଦୁଃଖ ଅତିକ୍ରମ କରେ । ଏହି ସବୁ ଆପ୍ତ ବାକ୍ୟ ପ୍ରମାଣରୁ ଏବଂ ତଦନୁକୂଳ ଯୁକ୍ତିସମୂହରୁ ପ୍ରତିପନ୍ନ ହୁଏ ଯେ, ବ୍ରହ୍ମଜ୍ଞାନ ବ୍ୟତିରେକେ ଦୁଃଖନିବୃତ୍ତି ହେବାର ଅନ୍ୟ କୌଣସି ଉପାୟ ନାହିଁ । ଅତଏବ, ସେହି ଜ୍ଞାନଲାଭର ପ୍ରଧାନ ଉପାୟ—ଶ୍ରବଣ, ମନନ ଓ ନିଦିଧ୍ୟାସନ ଅନୁସରଣ କରିବା ପ୍ରଧାନତଃ ବିଧେୟ । କେବଳ ଶାସ୍ତ୍ରବଚନ ଶୁଣିବାଦ୍ୱାରା ଶ୍ରବଣ ହୁଏ ନାହିଁ, ପରମାତ୍ମନିଷ୍ଠ ଆତ୍ମଜ୍ଞାନୀ ଗୁରୁଙ୍କ ମୁଖରୁ ଶାସ୍ତ୍ରୀୟସାର ଉପଦେଶ ଶୁଣି, ମନ ମଧ୍ୟରେ ତାହାର ବିସ୍ତୃତ ଅର୍ଥ ଧାରଣ କରି ଓ ସାକ୍ଷାତ୍ ବା ପରମ୍ପରାରେ ହେଉ, ବ୍ରହ୍ମପ୍ରତିପାଦନ କେବଳ ସମୁଦାୟ ଶାସ୍ତ୍ରମାନଙ୍କର ସାରତତ୍ତ୍ୱ—ଏ ବିଷୟରେ ଦୃଢ଼ ବିଶ୍ୱାସ ସ୍ଥାପନ ।

---

* ଶ୍ରୋତବ୍ୟଃ ଶ୍ରୁତିବାକ୍ୟେଭ୍ୟୋ ମନ୍ତବ୍ୟଶ୍ଚୋପପତ୍ତିଭିଃ ।
ମତ୍ୱା ଚ ସତତଂ ଧ୍ୟେୟ ଏତେ ଦର୍ଶନହେତବଃ ॥
ତତ୍ର ତାବନ୍ମୁନିଶ୍ରେଷ୍ଠାଃ ଶ୍ରବଣଂ ନାମ କେବଳମ୍ ।
ଉପକ୍ରମାଦିଭିର୍ଲିଙ୍ଗୈଃ ଶକ୍ତିତାତ୍ପର୍ଯ୍ୟନିର୍ଣ୍ଣୟଃ ॥

ଏହି ସକଳ ବିଷୟରେ ଦୃଢ଼ ଧାରଣା ହେଲେ ତାହା ଶ୍ରବଣ ବୋଲି ଗଣ୍ୟ ହୁଏ । ଏହାହିଁ ପ୍ରକୃତ ଶ୍ରବଣ, ଅନ୍ୟ ସବୁ ଶ୍ରବଣପଦବାଚ୍ୟ ନୁହେଁ । ଏହିହେତୁରୁ ଶ୍ରବଣର ଷଡ଼୍ ବିଧ ଲିଙ୍ଗ ବର୍ଣ୍ଣିତ ହୋଇଛି--ଉପକ୍ରମ, ଉପସଂହାର, ଅଭ୍ୟାସ, ଅପୂର୍ବତା, ଫଳବର୍ଣ୍ଣନ, ଅର୍ଥବାଦ ଓ ଉପପତ୍ତି, ଏହା ଶାସ୍ତ୍ରମାନଙ୍କରେ ଉତ୍ତମଭାବରେ ପ୍ରତିପାଦିତ ହୋଇଛି ।

"ଏବଂଭୂତସ୍ୱ-ସ୍ୱରୂପଚୈତନ୍ୟସାକ୍ଷାତ୍କାରପର୍ଯ୍ୟନ୍ତଂ ଶ୍ରବଣ-ମନନନିଦିଧ୍ୟାସନସମାଧ୍ୟନୁଷ୍ଠାନସ୍ୟାପ୍ୟପେକ୍ଷିତତ୍ୱାତ୍ତେଽପି ପ୍ରଦର୍ଶ୍ୟନ୍ତେ । ଶ୍ରବଣଂ ନାମ ଷଡ଼୍ ବିଧଲିଙ୍ଗୈରଶେଷବେଦାନ୍ତାନାମଦ୍ୱିତୀୟବସ୍ତୁନି ତାତ୍ପର୍ଯ୍ୟାବଧାରଣମ୍ । ଲିଙ୍ଗାନି ତୁ ଉପକ୍ରମୋପସଂହାରାଭ୍ୟାସା-ପୂର୍ବତାଫଲାର୍ଥବାଦୋପପତ୍ତ୍ୟାଖ୍ୟାନି" । ତଦୁକ୍ତଂ—

"ଉପକ୍ରମୋପସଂହାରୌ ବଭ୍ୟାସୋଽପୂର୍ବତାଫଲମ୍ ।
ଅର୍ଥବାଦୋପପତ୍ତୀ ଚ ଲିଙ୍ଗଂତାତ୍ପର୍ଯ୍ୟନିର୍ଣ୍ଣୟେ" ।

ବେଦାନ୍ତସାର--୮୯ ।

---

"ସର୍ବବେଦାନ୍ତବାକ୍ୟାନାମାଚାର୍ଯ୍ୟମୁଖ୍ୟତଃ ପ୍ରିୟ୍ୟାତ୍ ।
ବାକ୍ୟାନୁଗ୍ରାହକନ୍ୟାୟଶୀଳନଂ ମନନଂ ଭବେତ୍ ।।
ନିଦିଧ୍ୟାସନମୈକାଗ୍ର୍ୟଂ ଶ୍ରବଣେ ମନନେଽପି ଚ ।
ନିଦିଧ୍ୟାସନସଂଜ୍ଞଂ ଚ ମନନଂ ଚ ଦ୍ୱୟଂ ବୁଧାଃ ।।
ଫଲୋପକାରକାଂଗସ୍ୟାତ୍ତେନାସମ୍ଭାବନା ତଥା ।
ବିପରୀତା ଚ ନିର୍ମୂଲଂ ପ୍ରବିନଶ୍ୟନ୍ତି ସତ୍ତମାଃ" ।। ମାନବ-ଉପପୁରାଣ—ଅ ୪ । ୧ -୫ ।

ଅର୍ଥାତ୍ ଶ୍ରୁତି ବାକ୍ୟରୁ ଆତ୍ମା ଶ୍ରବଣ କରିବ, ଯୁକ୍ତିପୂର୍ବକ ତାହା ମନନ କରିବ, ଏହିପରି ମନନ କରି ସର୍ବଦା ସେହି ଆତ୍ମାର ଧ୍ୟାନ କରିବ । ଏହି ଶ୍ରବଣ, ମନନ ଓ ନିଦିଧ୍ୟାସନ ଆତ୍ମା ସାକ୍ଷାତ୍କାରର ହେତୁ । ହେ ଶ୍ରେଷ୍ଠ ମୁନିଗଣ ! ଉପକ୍ରମପ୍ରଭୃତି ଷଡ଼୍ ବିଧ ହେତୁଦ୍ୱାରା ବେଦାନ୍ତବାକ୍ୟର ଶକ୍ତି ଓ ତାତ୍ପର୍ଯ୍ୟର ନିର୍ଣ୍ଣୟ 'ଶ୍ରବଣ' ଶବ୍ଦର ଅର୍ଥ । ପ୍ରିୟ ଆଚାର୍ଯ୍ୟ ଗୁରୁଙ୍କ ମୁଖରୁ ସକଳ ବେଦାନ୍ତବାକ୍ୟର ପରଂବ୍ରହ୍ମବିଷୟରେ ତାତ୍ପର୍ଯ୍ୟ ଓ ଜ୍ଞାନର ଅନୁକୂଳ ଯୁକ୍ତିସମୂହ ଶ୍ରବଣ କରି ସେହି ସମସ୍ତ ଯୁକ୍ତିର ବାରମ୍ବାର ଅନୁଶୀଳନ ହିଁ 'ମନନ' ଅଟେ । ବେଦାନ୍ତବାକ୍ୟର ଶ୍ରବଣ ଓ ତାହାର ଅର୍ଥ ମନନରେ ଚିତ୍ତର ଏକାଗ୍ରତାକୁ 'ନିଦିଧ୍ୟାସନ' ବୁଝାଯାଏ । ନିଦିଧ୍ୟାସନ ଓ ମନନ ବ୍ରହ୍ମଜ୍ଞାନବିଷୟରେ ବହୁ ଉପକାରୀ । ହେ ପଣ୍ଡିତଗଣ ! ସେହି ମନନ ନିଦିଧ୍ୟାସନବଳରେ ବ୍ରହ୍ମତତ୍ତ୍ୱବିଷୟକ ସକଳ ଅସମ୍ଭାବନା ବା ବିପରୀତ ଜ୍ଞାନ ମୂଳରହିତ ଓ ଉଚ୍ଛିନ୍ନ ହୋଇଯାଏ ।

ଏହିପରି ସ୍ୱସ୍ୱରୂପର ( ପ୍ରତ୍ୟକ୍ ଚୈତନ୍ୟରୁ ଅଭିନ୍ନ ପରମାନନ୍ଦ ଅଖଣ୍ଡ ଚୈତନ୍ୟ-ସ୍ୱରୂପୀ ପରଂବ୍ରହ୍ମଙ୍କର ) ସାକ୍ଷାତ୍କାର ହେବା ପର୍ଯ୍ୟନ୍ତ ଶ୍ରବଣ, ମନନ, ନିଦିଧ୍ୟାସନ ଓ ସମାଧି ଅନୁଷ୍ଠାନର ଆବଶ୍ୟକତା ଥିବାରୁ ସେହି ସମସ୍ତ ପ୍ରଦର୍ଶିତ ହେଉଅଛି । ତାତ୍ପର୍ଯ୍ୟନିର୍ଣ୍ଣାୟକ ଛ'ପ୍ରକାର ଲିଙ୍ଗସାଧନଦ୍ୱାରା ଅଦ୍ୱିତୀୟ ବ୍ରହ୍ମ-ବସ୍ତୁ ବିଷୟରେ ସକଳ ବେଦାନ୍ତବାକ୍ୟର ତାତ୍ପର୍ଯ୍ୟକୁ ଅନ୍ତଃକରଣରେ ଲକ୍ଷ୍ୟ କରି ଧାରଣ କରିବାର ନାମ ଶ୍ରବଣ । ଲିଙ୍ଗ ଛ' ପ୍ରକାର —ଉପକ୍ରମ ଓ ଉପସଂହାର, ଅଭ୍ୟାସ, ଅପୂର୍ବତା, ଅର୍ଥବାଦ ଓ ଉପପତ୍ତି, ଏହି ଛ' ପ୍ରକାର ଲିଙ୍ଗ ବାକ୍ୟର ତାତ୍ପର୍ଯ୍ୟ ନିର୍ଣ୍ଣୟ କରେ ।

ତତ୍ର ପ୍ରକରଣପ୍ରତିପାଦ୍ୟସ୍ୟାର୍ଥସ୍ୟ ତଦାଦ୍ୟନ୍ତୟୋରୁପାଦାନଂ ଉପକ୍ରମୋପସଂହାରୌ । ଯଥା ଛାନ୍ଦୋଗ୍ୟେ ଷଷ୍ଠେ ପ୍ରପାଠକେ ପ୍ରକରଣ ପ୍ରତିପାଦ୍ୟସ୍ୟାଦ୍ୱିତୀୟବସ୍ତୁନଃ । "ଏକମେବାଦ୍ୱିତୀୟମ୍" ଇତ୍ୟାଦୌ ଏତଦାତ୍ମ୍ୟମିଦଂ ସର୍ବଂ—ଇତ୍ୟନ୍ତେ ଚ ପ୍ରତିପାଦନମ୍ । ପ୍ରକରଣ-ପ୍ରତିପାଦ୍ୟସ୍ୟ ବସ୍ତୁନଃ ତନ୍ମଧ୍ୟେ ପୌନଃପୌନ୍ୟେନ ପ୍ରତିପାଦନ-ମଭ୍ୟାସଃ । ଯଥା ତତ୍ରୈବାଦ୍ୱିତୀୟବସ୍ତୁନୋ ମଧ୍ୟେ ତତ୍ତ୍ୱମସୀତି ନବକୃତ୍ୱଃ ପ୍ରତିପାଦନମ୍ । ପ୍ରକରଣ-ପ୍ରତିପାଦ୍ୟସ୍ୟ ବସ୍ତୁନଃ ପ୍ରମାଣାନ୍ତରେଣା-ବିଷୟୀକରଣମପୂର୍ବତ୍ୱମ୍ । ଯଥା ତତ୍ରୈବାଦ୍ୱିତୀୟବସ୍ତୁନୋ ମାନାନ୍ତରା-ବିଷୟୀକରଣମ୍ । ଫଳଂ ତୁ ପ୍ରକରଣ-ପ୍ରତିପାଦ୍ୟସ୍ୟାତ୍ମଜ୍ଞାନସ୍ୟ ତଦନୁ-ଷ୍ଠାନସ୍ୟ ବା ତତ୍ର ତତ୍ର ଶ୍ରୂୟମାଣଂ ପ୍ରୟୋଜନଂ ଯଥା ତତ୍ରୈବ "ଆଚାର୍ଯ୍ୟବାନ୍ ପୁରୁଷୋ ବେଦ, ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷେ, ଅଥ ସମ୍ପତ୍ସ୍ୟେ" ଇତ୍ୟଦ୍ୱିତୀୟବସ୍ତୁଜ୍ଞାନସ୍ୟ ତତ୍ପ୍ରାପ୍ତିଃ ପ୍ରୟୋଜନଂ ଶ୍ରୂୟତେ । ପ୍ରକରଣପ୍ରତିପାଦ୍ୟସ୍ୟ ତତ୍ର ତତ୍ର ପ୍ରଶଂସନମର୍ଥବାଦଃ । ଯଥା ତତ୍ରୈବ ଉତ ତମାଦେଶମପ୍ରାକ୍ଷ୍ୟୋ ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମିତ୍ୟଦ୍ୱିତୀୟବସ୍ତୁପ୍ରଶଂସନମ୍ । ପ୍ରକରଣ-ପ୍ରତିପାଦ୍ୟାର୍ଥସାଧନେ ତତ୍ର ତତ୍ର ଶ୍ରୟମାଣା ଯୁକ୍ତିଃ ଉପପତ୍ତିଃ । ଯଥା ତତ୍ରୈବ—ଯଥା ସୋମ୍ୟ ଏକେନ ମୃତ୍ପିଣ୍ଡେନ ସର୍ବଂ ମୃଣ୍ମୟଂ ବିଜ୍ଞାତଂ ସ୍ୟାତ ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବ ସତ୍ୟମ୍" ଇତ୍ୟାଦାବଦ୍ୱିତୀୟବସ୍ତୁସାଧନେ ବିକାରସ୍ୟ ବାଚାରମ୍ଭଣ-ମାତ୍ରତ୍ୱେ ଯୁକ୍ତିଃ ଶ୍ରୂୟତେ ॥ ବେଦାନ୍ତସାର—୯୦ ।

ଅର୍ଥାତ୍ ଯେଉଁ ପ୍ରକରଣରେ ଯେଉଁ ବିଷୟ ପ୍ରତିପାଦିତ ହେବ, ସେହି ପ୍ରକରଣର ଆଦି ଓ ଅନ୍ତରେ ସେହି ବିଷୟର କୀର୍ତ୍ତନକୁ ଯଥାକ୍ରମେ ଉପକ୍ରମ ଓ ଉପସଂହାର କୁହାଯାଏ । ଏ ବିଷୟ ଛାନ୍ଦୋଗ୍ୟ ଉପନିଷଦର ଷଷ୍ଠ ପ୍ରପାଠକ ଆଦିରେ ଏପରି ପ୍ରତିପାଦିତ—"ଏକମେବାଦ୍ୱିତୀୟଂ ବ୍ରହ୍ମ" (ଅଦ୍ୱିତୀୟ ବ୍ରହ୍ମ ଏକ) ଏହାଦ୍ୱାରା ଏବଂ ଶେଷରେ "ଏତଦାତ୍ମ୍ୟମିଦଂ ସର୍ବମ୍" (ଏହି ଆତ୍ମା ସର୍ବ ଜଗନ୍ମୟ) ଏହି ବାକ୍ୟଦ୍ୱାରା ମଧ୍ୟ ଏହି ପ୍ରକରଣରେ ପ୍ରତିପାଦ୍ୟ ପରଂବ୍ରହ୍ମଙ୍କର କେବଳ ପ୍ରତିପାଦନ କରାଯାଏ । ଅତଏବ ଏହାକୁ ଉପକ୍ରମ ଓ ଉପସଂହାର କୁହାଯାଏ ।

ଅଭ୍ୟାସ—ଯେଉଁ ପ୍ରକରଣରେ ପ୍ରତିପାଦ୍ୟବସ୍ତୁର ପୁନଃ ପୁନଃ କୀର୍ତ୍ତନ ପ୍ରତିପାଦନ କରିବାକୁ ହୁଏ, ତାହାର ନାମ 'ଅଭ୍ୟାସ' । ପ୍ରଚଳିତ ପ୍ରକରଣରେ 'ତତ୍ତ୍ୱମସି'—ଏହି ବାକ୍ୟ ପ୍ରତିପାଦ୍ୟ ଅଦ୍ୱିତୀୟ ବ୍ରହ୍ମବସ୍ତୁର ନ'ଥର ଲକ୍ଷଣାଦ୍ୱାରା ପ୍ରତିପାଦନ କରାଯାଇଛି; ଅତଏବ ଏହା 'ଅଭ୍ୟାସ'ର ଉତ୍କୃଷ୍ଟ ଉଦାହରଣ । ଅପୂର୍ବତା—ଯେଉଁ ପ୍ରକରଣରେ ଯେଉଁ ବସ୍ତୁ ପ୍ରତିପାଦ୍ୟ, ସେହି ବସ୍ତୁର ଉପନିଷଦ୍ ବା ଅନ୍ୟ ପ୍ରମାଣଦ୍ୱାରା ପ୍ରତିପାଦନ କରିବାର ନାମ 'ଅପୂର୍ବତା' । ଫଳ—ବେଦାନ୍ତସାରର ଷଷ୍ଠାଧ୍ୟାୟରେ କେବଳ ଉପନିଷଦ୍ ପ୍ରମାଣଦ୍ୱାରା ଯେ ପ୍ରକାରରେ ଅଦ୍ୱିତୀୟ ବ୍ରହ୍ମଙ୍କ ପ୍ରତିପାଦନ କରାଯାଇଛି, ସେ ବିଷୟରେ ଅନ୍ୟ ପ୍ରମାଣର ଉଲ୍ଲେଖ ନ କରି, କେବଳ ଯେଉଁ ପ୍ରକରଣରେ ଯେଉଁ ବସ୍ତୁ ପ୍ରତିପାଦ୍ୟ, ସେହି ପ୍ରକରଣରେ ସେହି ବସ୍ତୁର ପ୍ରତିପାଦନଯୋଗ୍ୟ ଅନୁଷ୍ଠାନ ଶ୍ରବଣର ନାମ 'ଫଳ' ।

ଅର୍ଥବାଦ—ଯେଉଁ ପ୍ରକରଣରେ ଯେଉଁ ବସ୍ତୁ ପ୍ରତିପାଦନଯୋଗ୍ୟ, ସେହି ବସ୍ତୁର ପ୍ରଶଂସାର ନାମ 'ଅର୍ଥବାଦ' ଯଥା—ଏହି ପ୍ରପାଠକରେ ।

"ଉତ ତମାଦେଶମପ୍ରାକ୍ଷୋ ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତମ୍ ।"

ଅର୍ଥାତ୍ ହେ ଶିଷ୍ୟ ! ତୁମ୍ଭେ ଆମ୍ଭଙ୍କୁ ଯେଉଁ ପ୍ରଶ୍ନ କରିଅଛ, ତାହା ଜାଣିଲେ ଅଶ୍ରୁତ ପଦାର୍ଥ ଶ୍ରୁତ ହୁଏ, ଅସ୍ମୃତର ସ୍ମରଣ ଓ ଅଜ୍ଞାତପଦାର୍ଥର ଜ୍ଞାନ ହୁଏ—ଏହିରୂପ ଅଦ୍ୱିତୀୟ ବସ୍ତୁର ପ୍ରଶଂସା ପରିବ୍ୟଞ୍ଜିତ ହୁଏ ବୋଲି ଏହାକୁ ଅର୍ଥବାଦ କହନ୍ତି ।

ଉପପତ୍ତି—ଯେଉଁ ପ୍ରକରଣରେ ଯେଉଁ ବସ୍ତୁ ପ୍ରତିପାଦନଯୋଗ୍ୟ, ସେହି ପ୍ରକରଣରେ ସେହି ବସ୍ତୁର ପ୍ରତିପାଦନ କରିବା ଯୁକ୍ତିର ନାମ 'ଉପପତ୍ତି' । ଯେପରି ପୂର୍ବୋକ୍ତ ଷଷ୍ଠାଧ୍ୟାୟରେ କୁହାଯାଇଛି—ହେ ଶିଷ୍ୟ ! ଏକ ମୃତ୍ତିକାପିଣ୍ଡର ଜ୍ଞାନ ହେବା ପରେ ସମ୍ପୂର୍ଣ୍ଣ ମୃତ୍ତିକା-ପାତ୍ରାଦିର ଆକୃତିର ଜ୍ଞାନ ହୁଏ, କାରଣ ପାତ୍ରାଦି ମୃତ୍ତିକାର ବିକାରଜ ନାମଭେଦ । ପ୍ରକୃତରେ ଏହା ମୃତ୍ତିକା କେବଳ । ସେହିପରି ଏକ ଅଦ୍ୱିତୀୟ ବ୍ରହ୍ମଙ୍କର ଜ୍ଞାନ ହେଲେ ଅନ୍ୟ ଯାହା ସବୁ ବ୍ରହ୍ମବସ୍ତୁରେ ଆରୋପିତ ସକଳ ବିକାରର ସ୍ୱତଃ ଜ୍ଞାନ ହୋଇଯାଏ ।

ପ୍ରକୃତରେ ଏହି ଆରୋପିତ ନାମ ସବୁ ଅନର୍ଥ୍ୟ ବାଗ୍ଜାଳମାତ୍ର ମାତ୍ର । କେବଳ ପରଂବ୍ରହ୍ମ ହିଁ ସତ୍ୟ—ଏହି ପ୍ରକାର ମନୋବୃତ୍ତିର ନାମ ଉପପତ୍ତି । ଉପର୍ଯ୍ୟୁକ୍ତ ନିୟମାନୁମୋଦିତ ଶ୍ରବଣ ପ୍ରକୃତରେ ଶ୍ରବଣପଦବାଚ୍ୟ । ଯେଉଁ ଶ୍ରବଣଦ୍ୱାରା ମନନ, ନିଦିଧ୍ୟାସନପ୍ରଭୃତି ଅନୁଷ୍ଠାନ ହୋଇପାରେ ନାହିଁ, ତାହା କଦାପି ଶ୍ରବଣଜନିତ ଫଳ ପ୍ରସବ କରେ ନାହିଁ * । ଶ୍ରବଣ ଅପେକ୍ଷା ମନନ ଓ ମନନ ଅପେକ୍ଷା ନିଦିଧ୍ୟାସନ ଶ୍ରେୟସ୍କର । ଏହି ଭାବକୁ ଲକ୍ଷ୍ୟ କରି ଶଙ୍କରାଚାର୍ଯ୍ୟ କହିଅଛନ୍ତି—

"ଶ୍ରୁତେଃ ଶତଗୁଣଂ ବିଦ୍ୟାନ୍ମନନଂ ମନନାଦପି ।
ନିଦିଧ୍ୟାସଂ ଲକ୍ଷ ଗୁଣମନନ୍ତଂ ନିର୍ବିକଳ୍ପକମ୍ ॥

ବିବେକଚୂଡ଼ାମଣି—୩୬୨ ।

ଅର୍ଥାତ୍ ମନନ ଶ୍ରବଣ ଅପେକ୍ଷା ଶତଗୁଣ ଓ ନିଦିଧ୍ୟାସନ ମନନ ଅପେକ୍ଷା ଲକ୍ଷଗୁଣ ଏବଂ ନିର୍ବିକଳ୍ପଭାବ ନିଦିଧ୍ୟାସନ ଅପେକ୍ଷା ଅନନ୍ତଗୁଣ ଶ୍ରେଷ୍ଠ । ଏହି ଅନୁପାଦରେ "ଅଧ୍ୟାରୋପ-ଅପବାଦ", "ଅନ୍ୱୟ ବ୍ୟତିରେକ" ଓ ପ୍ରଣବ-ବିଚାର ପ୍ରଭୃତି ଶ୍ରୁତିବାକ୍ୟ ବ୍ୟାଖ୍ୟାଦ୍ୱାରା ଯେପରି ଏକ ଅଦ୍ୱିତୀୟ ବିଶୁଦ୍ଧାତ୍ମତତ୍ତ୍ୱ ନିରୂପିତ ହୋଇଅଛି, ସେହିପରି

* ଶୁଣାଯାଏ ଯେ ଶତ ଶତ ଲୋକ ବେଦାନ୍ତଶାସ୍ତ୍ର ଅଭ୍ୟାସପୂର୍ବକ 'ତତ୍ତ୍ୱମସି' ଆଦି ମହାବାକ୍ୟ ଶ୍ରବଣ କରି ଓ ତାହାର ଭାବାର୍ଥ ବୁଝି ମଧ୍ୟ ବ୍ରହ୍ମତତ୍ତ୍ୱଜ୍ଞାନରୁ ବଞ୍ଚିତ ରହନ୍ତି, ଆହୁରି ମଧ୍ୟ ଦେଖାଯାଏ ଯେ, ଅନେକ ଲୋକ ବେଦାନ୍ତଦର୍ଶନ ଆଦି ଅଧ୍ୟୟନ ବା ମହାବାକ୍ୟାଦି ଶ୍ରବଣ ନ କରି ମଧ୍ୟ ବ୍ରହ୍ମତତ୍ତ୍ୱ-ଜ୍ଞାନ ସାଧନ ଓ ଭଜନରେ ତତ୍ପର ଥାନ୍ତି । ଶାସ୍ତ୍ରରୁ ଶୁଣାଯାଏ—କପିଳ, ଶୁକଦେବ ଓ ବାମଦେବପ୍ରଭୃତି ମହର୍ଷିମାନେ ଆଜନ୍ମ ଜ୍ଞାନୀ; ଅତଏବ ଶ୍ରବଣର ଫଳ ତତ୍ତ୍ୱଜ୍ଞାନ ବା ତତ୍ତ୍ୱଜ୍ଞାନ ଶ୍ରବଣରେ କାର୍ଯ୍ୟ—ଏ କଥାର ନିର୍ଣ୍ଣୟ କିପରି ହେବ ? କିନ୍ତୁ ପ୍ରକୃତ କାରଣ ଏହି ଯେ, ଚିତ୍ତର ଅନିର୍ମଳତା ଓ ଜନ୍ମାନ୍ତରୀୟ ପାପପ୍ରଭୃତି ପ୍ରତିବନ୍ଧକତା ହେତୁରୁ ଶ୍ରବଣର ଫଳ ତତ୍ତ୍ୱଜ୍ଞାନ ଅବରୁଦ୍ଧ ଥାଏ । ଯେପରି ଅଗ୍ନି ସଂଯୋଗ କଲେ ମଧ୍ୟ କୌଣସି ମନ୍ତ୍ରାଦି ଦ୍ରବ୍ୟସଂଯୋଗରୂପକ ପ୍ରତିବନ୍ଧକଦ୍ୱାରା ଦାହକାର୍ଯ୍ୟ ଅବରୁଦ୍ଧ ଥାଏ, ସେହିପରି ଶ୍ରବଣର ଫଳ ତତ୍ତ୍ୱଜ୍ଞାନ ନାନା ପ୍ରତିବନ୍ଧକଦ୍ୱାରା ଅବରୁଦ୍ଧ ଥାଏ, କେବଳ ପ୍ରତିବନ୍ଧକର କ୍ଷୟ ହେଲେ ତାହାର ଉଦୟ ଓ ବିକାଶ ହୁଏ । ବାମଦେବାଦି ଋଷିମାନଙ୍କର ତାହା କେବଳ ଘଟିଥିଲା । ସେମାନଙ୍କ ପୂର୍ବଜନ୍ମର ଶ୍ରବଣ ଇହ ଜନ୍ମରେ ପ୍ରତିବନ୍ଧକଶୂନ୍ୟ ହୋଇ ତତ୍ତ୍ୱଜ୍ଞାନ ବିକାଶରେ କାରଣ ହୋଇଥିଲା । ସେଥିନିମନ୍ତେ ପୁନର୍ବାର ଏହି ଜନ୍ମରେ ସେମାନେ ଶ୍ରବଣକୁ ଅପେକ୍ଷା ନ କରି କେବଳ ମନନ ଓ ନିଦିଧ୍ୟାସନଦ୍ୱାରା ତତ୍ତ୍ୱଜ୍ଞାନ ଲାଭ କରିଥିଲେ । ନିଦିଧ୍ୟାସନ କେବଳ ତତ୍ତ୍ୱଜ୍ଞାନ ପ୍ରାପ୍ତିର ମୁଖ୍ୟ ହେତୁ ଏବଂ ଅନ୍ୟ ଦୁଇଟି (ଶ୍ରବଣ ଓ ମନନ) ତାହାର ସହାୟକ ବୋଲି ବୁଝିବାକୁ ହେବ ।

ମହାବାକ୍ୟାଦିତତ୍ତ୍ୱ ବିଚାରରେ ସେହି ଏକ ଅଦ୍ୱିତୀୟ ନିର୍ଗୁଣ-ପରଂବ୍ରହ୍ମ ପରମାତ୍ମା ଯେ ଏକମାତ୍ର ଲକ୍ଷ୍ୟ ବସ୍ତୁ, ତାହା ପ୍ରତିପାଦିତ ହେଲା । ସେହି ଲକ୍ଷ୍ୟବସ୍ତୁ ଉକ୍ତ ଶ୍ରବଣ-ମନନ ନିଦିଧ୍ୟାସନାଦିଦ୍ୱାରା କେବଳ ଲଭ୍ୟ—ଏହା ମଧ୍ୟ ଏହି ଅନୁପାଦରେ ସୂଚିତ କରାଗଲା । ଏହାର ସବିଶେଷ ବିବରଣ ପରବର୍ତ୍ତୀ ଅନୁପାଦରେ କରାଯିବ ।

**ଦ୍ୱିତୀୟପାଦସ୍ୟ ପ୍ରଥମାନୁପାଦଃ ଶେଷଃ ।**



# ସର୍ବବେଦବେଦାନ୍ତସାରତତ୍ତ୍ୱଶିରୋମଣିଃ

# ଅଲେଖ ପରଂବ୍ରହ୍ମ-ଦର୍ଶନ

## ଦ୍ୱିତୀୟ ପାଦସ୍ୟ ଦ୍ୱିତୀୟାନୁପାଦଃ

## ବିଶୁଦ୍ଧାତ୍ମଜ୍ଞାନ—ଭକ୍ତିଯୋଗ

**୦—ଶ୍ରୁତିର ସମଗ୍ର ସାର ଗ୍ରହଣ କରି ପରଂବ୍ରହ୍ମଙ୍କ ପ୍ରତି ଭକ୍ତିପରାୟଣ ହୁଅ ।**

ପୂର୍ବ ଅନୁପାଦରେ ମହାବାକ୍ୟପ୍ରଭୃତିଦ୍ୱାରା ଅଦ୍ୱିତୀୟ ପରଂବ୍ରହ୍ମଙ୍କ ତତ୍ତ୍ୱ ନିରୂପିତ ହୋଇଅଛି । କେବଳ ସେହି ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମାଙ୍କୁ ସର୍ବତୋଭାବରେ ସ୍ମରଣ, ଚିନ୍ତନ ଓ ଭଜନ କଲେ ଚିର ପରମଶାନ୍ତିପଦ ଲାଭ ହୁଏ—ଏସବୁ ବିଷୟ ପର୍ଯ୍ୟାଲୋଚନା-ଦ୍ୱାରା ସ୍ୱୀକୃତ ହେଲା * । ଯଦି କେହି କର୍ତ୍ତବ୍ୟପାଳନରେ ପରାଙ୍‌ମୁଖ ହୋଇ କେବଳ ଯୁକ୍ତିବାଦରେ କାଳାତିପାତ କରେ, ତେବେ ତାହାର ସକଳ ଯୁକ୍ତି ଓ ଆଲୋଚନା ବିଫଳ ଓ ନିଷ୍ପ୍ରୟୋଜନ । ଯେପରି ଧାନକୁ କୁଟି ତୁଷବର୍ଜନପୂର୍ବକ ଆହାରାର୍ଥ ରନ୍ଧନ ଓ ଗ୍ରହଣ କରିବା ବୁଦ୍ଧିମାନ ବ୍ୟକ୍ତିର କାର୍ଯ୍ୟ, କିନ୍ତୁ ସେହି ଧାନକୁ ତୁଷ ସହିତ ବାରମ୍ବାର ଘାତପ୍ରତିଘାତ କରିବାଦ୍ୱାରା ତାହା କୌଣସି କାର୍ଯ୍ୟରେ ଆସେ ନାହିଁ, ସେହିପରି ଆତ୍ମଜ୍ଞାନ ଭକ୍ତିଯୋଗ କର୍ମହୀନ ବ୍ୟକ୍ତିଙ୍କର କେବଳ ଯୁକ୍ତି-ବହୁଳତାର ଆଶ୍ରୟ କରିବାଦ୍ୱାରା ଜୀବର କୌଣସି ସାଫଲ୍ୟଜନକ କାର୍ଯ୍ୟ ସିଦ୍ଧ ହୁଏ ନାହିଁ । ଅତଏବ କେବଳ ଆତ୍ମଜ୍ଞାନ, ଭକ୍ତି, ସାଧନ-ଭଜନ ଦ୍ୱାରା ଆତ୍ମାର ଯେପରି ସଦ୍‌ଗତି ହେବ—ସେଥିର ବିସ୍ତୃତ କେବଳ ଏହି ଅନୁପାଦର ବିଷୟ ।

ଶାସ୍ତ୍ରଆଲୋଚନା ସଙ୍ଗେ ସଙ୍ଗେ ବ୍ରହ୍ମଭକ୍ତିପରାୟଣ ହେବା ମନୁଷ୍ୟର ବିଧେୟ—

"ଗ୍ରନ୍ଥମଭ୍ୟସ୍ୟ ମେଧାବୀ ଜ୍ଞାନବିଜ୍ଞାନତତ୍‌ପରଃ ।
ପଲାଲମିବ ଧାନ୍ୟାର୍ଥୀ ତ୍ୟଜେତ୍‌ ଗ୍ରନ୍ଥମଶେଷତଃ ॥

---

* ଗ୍ରନ୍ଥର ପର୍ଯ୍ୟାଲୋଚନା ଦୁଇ ପ୍ରକାର ହୋଇଥାଏ—ଅନ୍ତରଙ୍ଗ ଓ ବହିରଙ୍ଗ ପର୍ଯ୍ୟାଲୋଚନା । ସମସ୍ତ ଗ୍ରନ୍ଥ ପ୍ରତ୍ୟକ୍ଷ କରି ଓ ମର୍ମ-ରହସ୍ୟ ମନ୍ଥନପୂର୍ବକ ପ୍ରମେୟାର୍ଥ ଗ୍ରହଣ କରି ଓ କର୍ତ୍ତବ୍ୟ ସାଧନାରେ ନିଯୁକ୍ତ ହେବାର ନାମ ଅନ୍ତରଙ୍ଗ ପର୍ଯ୍ୟାଲୋଚନା । ତା ଛଡ଼ା ଗ୍ରନ୍ଥର ଭାଷା, ମାଧୁର୍ଯ୍ୟ ଓ ପ୍ରସାଦଗୁଣ, ଶବ୍ଦରଚନା, ବ୍ୟାକରଣଶୁଦ୍ଧି ଅଥବା ଆର୍ଷ-ପ୍ରୟୋଗ,

ତମେବ ଧୀରୋ ବିଜ୍ଞାୟ ପ୍ରଜ୍ଞାଂ କୁର୍ବୀତ ବ୍ରାହ୍ମଣଃ ।
ନାନୁଧ୍ୟାୟାତ୍ ବହୂଂଛବ୍ଦାନ୍ ବାଚୋ ବିଗ୍ଲାପନଂ ହି ତତ୍ ।।
ତମେବୈକଂ ବିଜାନୀଥ ହ୍ୟନ୍ୟା ବାଚୋ ବିମୁଞ୍ଚଥ ।
ଯଚ୍ଛେଦ୍ ବାଙ୍ମନସୀ ପ୍ରାଜ୍ଞ ଇତ୍ୟାଦ୍ୟାଃ ଶ୍ରୁତୟଃ ସ୍ଫୁଟାଃ" ।।

ପଞ୍ଚଦଶୀ—୪ । ୪୫-୪୭ ।

ଅର୍ଥାତ୍ ଯେପରି ଧାନ୍ୟାର୍ଥୀ କୃଷକ ଧାନ୍ୟପ୍ରାପ୍ତି ନିମନ୍ତେ ପ୍ରଥମେ ପଲାଳ ଗ୍ରହଣ କରେ, କିନ୍ତୁ ଧାନ୍ୟପ୍ରାପ୍ତି ପରେ ତାହା ପରିତ୍ୟାଗ କରେ, ସେହିପରି ବୁଦ୍ଧିମାନ୍ ବ୍ୟକ୍ତି କେବଳ ଅଦ୍ୱୈତ ପରମାତ୍ମଜ୍ଞାନଲାଭ ସକାଶେ ବେଦାନ୍ତ ଆଦି ସକଳ ଆଧ୍ୟାତ୍ମିକ ଗ୍ରନ୍ଥ ଅଭ୍ୟାସ କରେ; କିନ୍ତୁ ଗ୍ରନ୍ଥାର୍ଥ ସମାଲୋଚନା ଓ ଶାସ୍ତ୍ରଜ୍ଞାନ ପରେ ପରମାତ୍ମଜ୍ଞାନ ଲାଭ କରି ସକଳଗ୍ରନ୍ଥ ପରିତ୍ୟାଗ କରେ । ବ୍ରହ୍ମଜିଜ୍ଞାସୁ ଧୀର ବ୍ୟକ୍ତି ସେହି ଅଦ୍ୱୈତ ପରଂବ୍ରହ୍ମଙ୍କୁ ଜାଣିବା ନିମନ୍ତେ ସେହି ଜ୍ଞାନବିଷୟରେ କେବଳ ତତ୍ପର ରହେ, ଅଧିକ ଶବ୍ଦ-ଆଡ଼ମ୍ବରପୂର୍ବକ ଶାସ୍ତ୍ର ଆଲୋଚନାରେ ଲାଗି ରହେ ନାହିଁ; କାରଣ, ଅଧିକ ଶବ୍ଦାଡ଼ମ୍ବର କେବଳ ବାକ୍ୟର ଗ୍ଲାନି, ତଦ୍ଦ୍ୱାରା ଜ୍ଞାନଲାଭବିଷୟକ କୌଣସି ଫଳ ମିଳେ ନାହିଁ । ବଚନ ଓ ମନର ସଂଯମ ଆଚରଣ କରି ସେହି ଅଦ୍ୱିତୀୟ ପରଂବ୍ରହ୍ମଙ୍କୁ ଜ୍ଞାତ ହୁଅ । ବୃଥା ବଚନ ପରିତ୍ୟାଗ କର—ଏ ବିଷୟରେ ଅସନ୍ଦିଗ୍ଧ ଶ୍ରୁତ୍ୟୁପଦେଶ ଦେଖିବାକୁ ମିଳେ ।

"ଇଦଂ ଜ୍ଞାନମିଦଂ ଜ୍ଞେୟଂ ତତ୍ ସର୍ବଂ ଜ୍ଞାତୁମିଚ୍ଛତି ।
ଅପି ବର୍ଷସହସ୍ରାୟୁଃ ଶାସ୍ତ୍ରାନ୍ତଂ ନାଧିଗଚ୍ଛତି ।।
ବିଜ୍ଞେୟୋଽକ୍ଷରତନ୍ମାତ୍ରୋ ଜୀବିତଂ ବାପି ଚଞ୍ଚଳମ୍ ।
ବିହାୟ ଶାସ୍ତ୍ରଜାଲାନି ଯତ୍ ସତ୍ୟଂ ତଦୁପାସ୍ୟତାମ୍" ।।

ପୈଙ୍ଗଳୋପନିଷଦ୍ ଅ ୪ । ୧୬-୧୭ ।

---

ସ୍ଥୂଳ ବା ବ୍ୟକ୍ତିର ଉଲ୍ଲେଖ—ଇତ୍ୟାଦି ବିଗ୍ରହ ଓ ଗ୍ରନ୍ଥର କାଳ ନିର୍ଣ୍ଣୟପ୍ରଭୃତି ବାହ୍ୟ ବିଗ୍ରହ ଧାରିକୁ ବହିରଙ୍ଗ ପର୍ଯ୍ୟାଲୋଚନା କୁହାଯାଏ । ଯେପରି ଗୋଟିଏ ଫୁଲ ଦେଖି ତାହାର ସୁଗନ୍ଧ, ସୁନ୍ଦର ବର୍ଣ୍ଣ ଓ ସୌନ୍ଦର୍ଯ୍ୟରେ ମୁଗ୍ଧ ହେବା ପରିବର୍ତ୍ତେ କେବଳ ତାହାର ପାଖୁଡ଼ା ଗଣନା କରିବା ଅଥବା ମଧୁପୂର୍ଣ୍ଣ ମହୁଫେଣା ହସ୍ତରେ ଧରି ତା'ର ମଧୁ ଆସ୍ୱାଦନ ନ କରି କେବଳ ତାହାର କେତେକ ମଧୁଚ୍ଛିଦ୍ର ଗଣିବା କାର୍ଯ୍ୟ ବୃଥା ସମୟ କ୍ଷେପଣ ମାତ୍ର, ସେହିପରି ସୁଶାସ୍ତ୍ର ପାଇ ବୃଥା ସମାଲୋଚନା ନ କରି ଗୁରୁବାକ୍ୟଦ୍ୱାରା ଆଲୋଚନା ଓ ସାର ସତ୍ୟ ଧର୍ମତତ୍ତ୍ୱ ଗ୍ରହଣପୂର୍ବକ ତାହାର ଅନୁଶୀଳନରେ ରତ ହେବା ବୁଦ୍ଧିମାନ୍ ବ୍ୟକ୍ତିର କର୍ତ୍ତବ୍ୟ ।

ଶାସ୍ତ୍ର ଅଧ୍ୟୟନ କରି ଜ୍ଞାନ ଓ ଜ୍ଞେୟ ଆଦି ସକଳ ବୁଝିବା ସକାଶେ ଯେଉଁ ଲୋକ ଇଚ୍ଛା କରେ, ସେ ସହସ୍ର ବର୍ଷ ଆୟୁଃ ଲାଭ କଲେ ମଧ୍ୟ ଶାସ୍ତ୍ରର ଶେଷ ସୀମାରେ ପହଞ୍ଚି ପାରେ ନାହିଁ । ମନୁଷ୍ୟର ଜୀବନ ଅତି ଚଞ୍ଚଳ ହେବାରୁ ଅକ୍ଷର-ଚନ୍ଦ୍ରାଦି ଶାସ୍ତ୍ର ଦୁର୍ବିଜ୍ଞେୟ; ଅତଏବ ଶାସ୍ତ୍ରଜାଲ ପରିତ୍ୟାଗ କରି ଯେ ସତ୍ୟସ୍ୱରୂପ ବ୍ରହ୍ମ, ତାହାଙ୍କର ଉପାସନା କର ।

ଗୁରୁବାକ୍ୟସମୁଦ୍‌ଭୂତସ୍ୱାନୁଭୂତ୍ୟାଦିଶୁଦ୍ଧୟା ।
ଯସ୍ୟାଭ୍ୟାସେନ ତେନାତ୍ମା ସତତଂ ତ୍ୱବଲୋକ୍ୟତେ ॥
ବିନଷ୍ଟଦିଗ୍‌ଭ୍ରମସ୍ୟାପି ଯଥାପୂର୍ବଂ ବିଭାତି ଦିକ୍ ।
ତଥା ବିଜ୍ଞାନବିଧ୍ୱସ୍ତଂ ଜଗନ୍ନାସ୍ତୀତି ଭାବୟ ” ॥

ମହୋପନିଷଦ୍—ଅ ୪ । ୨୨—୨୭ ।

ଯେଉଁ ପୁରୁଷର ଅଭ୍ୟାସ ଓ ଗୁରୁ-ଉପଦେଶସମ୍ଭୂତ ଅନୁଭବଦ୍ୱାରା ତତ୍ତ୍ୱଜ୍ଞାନ ଜନ୍ମେ, ସେ ସର୍ବଦା ଆତ୍ମାର ସାକ୍ଷାତ୍‌କାର ଲାଭ କରେ । ଯାହାର ଅପରୋକ୍ଷ ଜ୍ଞାନଦ୍ୱାରା ଦିଗ୍‌ଭ୍ରମ ନଷ୍ଟ ହୋଇଅଛି, ତା ନିକଟରେ ଯେପରି ପୂର୍ବବତ୍ ଦିଗ ପ୍ରକାଶିତ ହୁଏ, ସେହିପରି ତତ୍ତ୍ୱଜ୍ଞାନର ଉଦୟ ହେଲେ, ଜଗତର ଅସ୍ତିତ୍ୱ ରହେ ନାହିଁ—ଏହା ଚିନ୍ତା କର ।

ପୁନଶ୍ଚ—

“ସ୍ୱାନୁଭୂତେଶ୍ଚ ଶାସ୍ତ୍ରସ୍ୟ ଗୁରୋଶ୍ଚୈବୈକବାକ୍ୟତା ।
ଯସ୍ୟାଭ୍ୟାସେନ ତେନାତ୍ମା ସତତଂ ତ୍ୱବଲୋକ୍ୟତେ” ॥

ମହୋପନିଷତ୍ ଅ ୪ । ୫ ।

ଅଭ୍ୟାସ ଓ ଅନୁଭୂତିଦ୍ୱାରା ଯାହାର ଶାସ୍ତ୍ର ଓ ଗୁରୁବାକ୍ୟରେ ଏକତା ଜନ୍ମିଅଛି, ଅର୍ଥାତ୍ ଶାସ୍ତ୍ରର ତାତ୍ପର୍ଯ୍ୟ ଓ ଗୁରୁଙ୍କ ଉପଦେଶ ଏକଭାବରେ ଯେ ଉପଲବ୍ଧି କରିଛି, ସେ ସର୍ବଦା ପରମାତ୍ମାଙ୍କୁ ଦର୍ଶନ କରିପାରେ ।

## ଠ—ମହିମାଧର୍ମର ଉପଦେଶ ଓ ଅଲେଖ ପରଂବ୍ରହ୍ମ ପରମାତ୍ମାଙ୍କ ସ୍ୱରୂପନିରୂପଣ ଏବଂ ତାଙ୍କ ଆଶ୍ରୟରେ ଜୀବର ସଦ୍‌ଗତି—

ସତ୍ୟ ମହିମାଧର୍ମର ପ୍ରବର୍ତ୍ତକ ଶ୍ରୀମଦ୍‌ପ୍ରଭୁ ଗୁରୁ ମହିମାସ୍ୱାମୀ ଯେଉଁ ଭାବରେ ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ପ୍ରଚାର କରିଛନ୍ତି, ତାହା ପ୍ରମାଣଭୂତ ଶ୍ରୁତି ଓ ଶାସ୍ତ୍ରସମୂହର ଯୁକ୍ତ ଅନୁକୂଳ ଗଛାରମ୍ଭରୁ ପ୍ରତିପାଦିତ ହୋଇ ଆସୁଅଛି ଏବଂ ସେହି ପ୍ରଭୁଙ୍କ ପ୍ରଚାରିତ ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ହିଁ ସମସ୍ତଙ୍କର ଉପାସ୍ୟ—ଏହି ସିଦ୍ଧାନ୍ତରେ କୌଣସି ପ୍ରକାର ଭ୍ରମ-ପ୍ରମାଦ ଆଦି ଦୋଷ ନାହିଁ । ମାନବିକ ବଚନ ପ୍ରାୟ ଭ୍ରମ, ପ୍ରମାଦ, ବିପ୍ରଲିପ୍‌ସା *

* ବିପ୍ରଲିପ୍‌ସା—ବିରୋଧୋକ୍ତି, ଯେଉଁ କଥାରୁ ନିର୍ଦ୍ଦିଷ୍ଟ ଓ ଉଦ୍ଦିଷ୍ଟ ଅର୍ଥ ସୂଚିତ ହୁଏ ନାହିଁ ।

ତଥା କରଣାପାଟବ (ଇନ୍ଦ୍ରିୟ ଅପାଟବ୍ୟ)—ଏହି ଚାରି ଦୋଷରେ ଦୂଷିତ ହୋଇଥାଏ; କିନ୍ତୁ ଶ୍ରୁତିର ସାର ସିଦ୍ଧାନ୍ତସ୍ୱରୂପ ଗୁରୁ ମହିମାସ୍ୱାମୀଙ୍କ ସତ୍ୟମହିମାଧର୍ମ-ଉପଦେଶରେ ସେହି ସବୁ ଦୋଷ ଲେଶମାତ୍ର ନାହିଁ ।

ଶ୍ରୀମଦ୍‌ପ୍ରବୁଦ୍ଧଗୁରୁ ମହିମାସ୍ୱାମୀଙ୍କର ବିଶ୍ୱମାନବ ଜାତି ପ୍ରତି ଶୁଭାଦେଶ ଏହି ଯେ, "ସକଳ ନାମ-ରୂପାତ୍ମକ ବିବିଧ ଭେଦମାର୍ଗ, ଦେବଦେବୀ-ମୂର୍ତ୍ତିପୂଜା, ସଗୁଣ ଭାବ—ଆଦି ସକଳ ତ୍ୟାଗ କରି ଏକ ବିଶୁଦ୍ଧ ନିର୍ଗୁଣ ମହାମହିମା ଅଲେଖ ପରଂବ୍ରହ୍ମ ପରମାତ୍ମାଙ୍କ ଅଭୟ ପଦରେ କାୟମନୋବାକ୍ୟରେ ଆତ୍ମ ସମର୍ପଣ କରି ଶରଣାଗତ ହୁଅ ।" ଆଜୀବନ ଦୃଢ଼ନିଷ୍ଠା ସହକାରେ ଏକ ଅଦ୍ୱିତୀୟ ପ୍ରଭୁ ପରମାତ୍ମାଙ୍କଠାରେ ଶରଣାଗତ ହୋଇ ଜୀବନଯାପନ କଲେ ଜୀବ ନିଶ୍ଚୟ ମୋହ-ମାୟାମୟ-ଅନିତ୍ୟ ସଂସାରରୁ ମୁକ୍ତ ହୋଇ ନିତ୍ୟ ମହିମାମୟ ଅଭୟ ପରମଧାମକୁ ପ୍ରାପ୍ତ ହେବ, ଏହା ହିଁ ଶ୍ରୀମଦ୍‌ଗୁରୁ ମହିମାସ୍ୱାମୀଙ୍କର ସୁନିଶ୍ଚିତ ପବିତ୍ରବାଣୀ । ଏହି ପବିତ୍ର ଗୁରୁଙ୍କ ଆଜ୍ଞାକୁ ଲକ୍ଷ୍ୟ କରି ବର୍ତ୍ତମାନ ଶ୍ରୁତିବଚନ, ଯୁକ୍ତି ଓ ଅନୁଭବ ସହ ସେହି ବାଣୀ ପ୍ରଦର୍ଶିତ ହେଉଅଛି । ପୂର୍ବ ଅନୁପାଦମାନଙ୍କରେ ଯେଉଁ ମହିମାବିଷୟ ବର୍ଣ୍ଣିତ ହୋଇଅଛି, ସେ ସବୁ ପୁନର୍ବାର ଏଠାରେ ବିଶ୍ଳେଷିତ କରି ଯାଉଅଛି—ପୁଂଲିଙ୍ଗ ଇମନ୍‌ତ ପ୍ରତ୍ୟୟାନ୍ତ 'ମହିମନ୍' ଶବ୍ଦର ପ୍ରଥମା ବିଭକ୍ତିରେ 'ମହିମା' ଶବ୍ଦ ହୁଏ । ଏହି 'ମହିମା' ଶବ୍ଦ ଉଚ୍ଚାରଣ କରିବାମାତ୍ରେ ସେହି ଅଲେଖ ପରଂବ୍ରହ୍ମଙ୍କର ଏକାଧାରରେ ସ୍ୱରୂପ ଓ ତଟସ୍ଥ ଲକ୍ଷଣ ସମ୍ପୂର୍ଣ୍ଣଭାବେ ପ୍ରକାଶିତ ହୋଇଯାଏ । ଏହି ମହିମା ପରଂବ୍ରହ୍ମଙ୍କଠାରୁ କୌଣସିରୂପେ ପୃଥକ୍ ଭେଦ ସ୍ୱୀକାର କରେ ନାହିଁ । ଯେପରି ଅଗ୍ନିର ଉଷ୍ଣତା, ଜଳର ଶୀତଳତା, ବାୟୁର ଗତିଶୀଳତା ଓ ସୂର୍ଯ୍ୟଙ୍କର ପ୍ରକାଶନ ସ୍ୱଭାବସିଦ୍ଧ, ସେହିପରି 'ମହିମା' ଶବ୍ଦ ଉଚ୍ଚାରଣ କରିବାମାତ୍ରେ ସେହି ଅଲେଖ ଅବ୍ୟକ୍ତ ପରଂବ୍ରହ୍ମଙ୍କ ବିଶୁଦ୍ଧ ଲକ୍ଷଣ ଜାଗ୍ରତ ହେବା ସ୍ୱଭାବସିଦ୍ଧ— ଏ କଥା ମୁମୁକ୍ଷୁମାନେ ଅବଗତ ହୋଇପାରନ୍ତି । ଏହି ସବୁ କାରଣରୁ 'ମହିମା' ଶବ୍ଦ ସହିତ ଅଲେଖ ବ୍ରହ୍ମଙ୍କ ନାମ ଉଚ୍ଚାରଣ କରାଯାଇ ସେହି ପ୍ରଭୁଙ୍କ ସ୍ମରଣ, ଭଜନ, ଦର୍ଶନ ଆଦି କରାହୁଏ । * ବ୍ରହ୍ମଙ୍କର ଯାହା ସବୁ ଅଖଣ୍ଡତା, ଚିଦେକରସତା, ପ୍ରଜ୍ଞାନଘନତା ଓ ବିଜ୍ଞାନାନନ୍ଦ,

* ଏ ବିଷୟ ଭକ୍ତ ଭୀମଭୋଇ କହିଛନ୍ତି—"ମହିମା ଅଲେଖ ଅନନ୍ତ ଭାବୁଛି",
"ଅଶେଷ ମହିମା ତିନି ଭୁବନେ ଖ୍ୟାତ,
ନରଦେହ ବହି କେହି କଳିବ ଅନ୍ତ" ।
"ଡାକ ମୁଖେ ସ୍ୱାମୀ ନିଜ ମହିମା ନାମକୁ,"
"ଚହ୍ଲାଇ କହୁଛି ଭଲ କରି ଚହ୍ନ
ମହିମା ନାମଟି ଅନନ୍ତ ଭୁବନ,"
"କୋଟି କୋଟି ଜାତ କୋଟି କୋଟି ହତ,
ସେ ମହିମା ପଦ ନୁହଇ ବର୍ଣ୍ଣିତ,
ପ୍ରଳୟ ସମସ୍ତେ ଅଟନ୍ତି ଯମ,
ଅବନା ମନ୍ଦିରରେ ମହିମା ସାଗର ବ୍ରହ୍ମସୁଖି" ଇତ୍ୟାଦି ।

ଆଦି ବିଶୁଦ୍ଧ ଧର୍ମ, ନିର୍ଗୁଣତା ଏବଂ ସର୍ବଜ୍ଞତା, ସର୍ବକର୍ମ-ଅସର୍ବକର୍ମ ଓ ସର୍ବରସତା-ଆଦି ଭାବ ବିଦ୍ୟମାନ, ସେ ସବୁ ସ୍ୱୟଂସିଦ୍ଧ ମହିମା କେବଳ ସ୍ୱତଃ ପ୍ରକାଶ କରୁଅଛି ।

ଏହି ଲକ୍ଷ୍ୟରେ ମହର୍ଷି ବଶିଷ୍ଠଦେବ କହି ଅଛନ୍ତି—

"ତୈରେବ ରହିତଂ ଶାନ୍ତଂ ଚିଦାତ୍ମାନମୁପାଗତଃ ।
ଆକାଶକୋଷବିଶଦଂ ସର୍ବଲୋକସ୍ୟ ରଞ୍ଜନମ୍ ॥
ରଞ୍ଜନଂ ନୈବ ଚୈକାଶଂ ଚିଦାତ୍ମାନମୁପାଗତଃ ।
ମହାମହିମ୍ନା ସହିତଂ ରହିତଂ ସର୍ବଭୂତଭିଃ ॥
କର୍ତ୍ତୃତ୍ୱେ ବାପ୍ୟକର୍ତ୍ତାରଂ ଚିଦାତ୍ମାନମୁପାଗତଃ ।

ଯୋଗବାଶିଷ୍ଠ୍ୟ, ନି: ପ: ୧୧ । ୧୧୦-୧୧୧ ।

ଚିଦାତ୍ମା କେବଳ ଶବ୍ଦସ୍ପର୍ଶାଦିର ଅଭିବ୍ୟଞ୍ଜକ ଓ ଏହି ସକଳଠାରେ ଆଶ୍ରିତ ଚିଦାତ୍ମା ଆକାଶ ଅପେକ୍ଷା ବିଶଦ ଓ ସକଳ ଲୋକର ରଞ୍ଜନ; ବସ୍ତୁତଃ ଏ ରଞ୍ଜନ ମଧ୍ୟ ନୁହନ୍ତି, ରଞ୍ଜନା ମଧ୍ୟ ନୁହନ୍ତି, ସେ ଆକାଶ ମଧ୍ୟ ନୁହନ୍ତି; ଏହା ମହାମହିମା, ଅଥଚ ସର୍ବୈଶ୍ୱର୍ଯ୍ୟରୁ ଅଶ୍ରିତ । ସେ କୌଣସି ପ୍ରପଞ୍ଚ ଆଦି କର୍ମର କର୍ତ୍ତା ମଧ୍ୟ ନୁହଁନ୍ତି । ଏ ବିଷୟରେ ଋଷି ଯାଜ୍ଞବଲ୍କ୍ୟ କହିଅଛନ୍ତି—

"ତଦେତଦୃଚାଭ୍ୟୁକ୍ତମେଷ ନିତ୍ୟୋ-ମହିମା" ।

ବୃହଦାରଣ୍ୟକ—୪-୪-୨୩ ।

ଏହି 'ନେତି ନେତି'—ଶ୍ରୁତ୍ୟୁକ୍ତ ମହିମା ନିତ୍ୟସ୍ୱରୂପ; ଏତଦ୍ଭିନ୍ନ ଯାହାକିଛି ମହିମା, ସେ ସବୁ କର୍ମକୃତ— ଏହି ହେତୁରୁ ଏହା ସବୁ ଅନିତ୍ୟ । ଏହି ନିରବଚ୍ଛିନ୍ନ ନିତ୍ୟ ଚିନ୍ମୟ ମହିମା ସାଧାରଣ ବୁଦ୍ଧିର ଅଗମ୍ୟ । ଯୋଗୀମାନେ ସିଦ୍ଧିଲାଭ ପରେ ତାହାଙ୍କୁ ଅବଲୋକନ କରି ମୋକ୍ଷ ଲାଭ କରନ୍ତି ।

"ତାଲ୍ୱଧ୍ୟଗ୍ରଂ ପରିବର୍ତ୍ତ୍ୟ ଚେନ୍ଦ୍ରିୟାଣ୍ୟସଂଯୋଜ୍ୟ ମହିମା ମହିମାନଂ ନିରୀକ୍ଷେତ, ତତୋ ନିରାତ୍ମକତ୍ୱମେତ, ନିରାତ୍ମକତ୍ୱାନ୍ନ ସୁଖ-ଦୁଃଖଭାଗ୍ ଭବତ, କେବଳତ୍ୱଂ ଲଭତା ଇତ୍ୟେବଂ ହ୍ୟାହ" ॥

ମୈତ୍ର୍ୟୁପନିଷଦ—୬ । ଖ ୨୧ ।

ତାଲୁର ଉପରିଭାଗରେ ଜିହ୍ୱାର ଅଗ୍ରଭାଗ ସଞ୍ଚାରିତ କରି ଇନ୍ଦ୍ରିୟସମୂହର ଆତ୍ମିତନସ୍ୱରୂପ ଶରୀରର ଅବୟବ ସମସ୍ତ ପ୍ରାଣ ଏବଂ ମନ ସହିତ ସମ୍ବନ୍ଧ ପରିତ୍ୟାଗ କରି

ଊର୍ଦ୍ଧ୍ୱ ଦେଶିଙ୍କୁ ଗମନ କରନ୍ତି । ଏହାପରେ ଊର୍ଦ୍ଧ୍ୱ ଗମନଦ୍ୱାରା ମୂର୍ତ୍ତିମତ୍ତ୍ୱ ମହିମାଙ୍କୁ ଅନୁଭବ କରିବ । ସେହି ଅନୁଭବରୁ ଉପାସକ ଇନ୍ଦ୍ରିୟରହିତ, ମନଃଶୂନ୍ୟ ଓ ଶରୀରହୀନ ହୋଇ ରହେ । ଉକ୍ତ ରୂପରେ ଇନ୍ଦ୍ରିୟାଦିର ବିନାଶ ହେଲେ ଆଉ ସୁଖ ବା ଦୁଃଖଭାଗ୍ ହେବାକୁ ହୁଏ ନାହିଁ; ଉପାସକ ସେତେବେଳେ ମୋକ୍ଷଲାଭ କରେ । ଏହାର ତାତ୍ପର୍ଯ୍ୟ ଏହି ଯେ ପୂର୍ବୋକ୍ତ ପ୍ରକାରରେ ବ୍ରହ୍ମୋପାସକ ଯୋଗସାମର୍ଥ୍ୟରୁ କିଛି ପରିମାଣରେ ପରମାତ୍ମତତ୍ତ୍ୱ ଅବଗତ ହୁଅନ୍ତି, ତା'ପରେ "ଉନ୍ମନୀଭାବ" ବା ଯୋଗର ଅବସ୍ଥାବିଶେଷଦ୍ୱାରା ପରମମୁକ୍ତିର ଅନାୟାସଲଭ୍ୟତ୍ତ୍ୱ ଅବଗତ ହୋଇ ସେହି ଅବସ୍ଥାରେ ଯାବଜ୍ଜୀବନ ବ୍ରହ୍ମମୟ ହୋଇ ଅବସ୍ଥାନ କରନ୍ତି । ଅନନ୍ତର କର୍ମକ୍ଷୟ ହେବାଦ୍ୱାରା ଦେହର ବିନାଶ ଘଟିଲେ ପରମମୁକ୍ତି-ସ୍ୱରୂପ ପରମ ମହିମାଙ୍କୁ ପ୍ରାପ୍ତ ହୁଅନ୍ତି ।

ଆହୁରି ମଧ୍ୟ ଏ ବିଷୟରେ ଉପନିଷଦ୍‌ରେ ଉକ୍ତ ଅଛି ଯେ, ସିଦ୍ଧ ଯୋଗୀମାନେ ବିଦେହ ଅବସ୍ଥାରେ ସୂର୍ଯ୍ୟମଣ୍ଡଳ ଅତିକ୍ରମ କରି ସ୍ୱମହିମାରେ ପ୍ରତିଷ୍ଠିତ ପରଂବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି ।

**"ସର୍ବାପରଂ ଧାମ ସତ୍ୟକାମସର୍ବଜ୍ଞତ୍ୱସଂଯୁକ୍ତଂ ସ୍ୱତନ୍ତ୍ରଂ ଚୈତନ୍ୟଂ ସ୍ୱେ ମହିମ୍ନି ତିଷ୍ଠମାନଂ ପଶ୍ୟତି ।**

ମୈତ୍ର୍ୟୁପନିଷତ୍—୬୭—୩୮ କ ।

ଅର୍ଥାତ୍ ତତ୍ତ୍ୱଜ୍ଞାନୀ ଯୋଗୀମାନେ ସର୍ବୋତ୍କୃଷ୍ଟ କାରଣ, ସତ୍ୟକାମ, ସର୍ବଜ୍ଞତ୍ୱ-ସଂଯୁକ୍ତ, ସ୍ୱତନ୍ତ୍ର ଏବଂ ସ୍ୱମହିମାରେ ଅବସ୍ଥିତ ପରଂବ୍ରହ୍ମଙ୍କର ସାକ୍ଷାତ୍କାର ଲାଭ କରନ୍ତି, ଅର୍ଥାତ୍ ମୁକ୍ତ ହୁଅନ୍ତି । * ଉପର୍ଯ୍ୟୁକ୍ତ ଶ୍ରୁତିବାକ୍ୟରୁ ପ୍ରତିପନ୍ନ ହୁଏ ଯେ, ସେହି ଚିଦେକରସଘନ ପରମାତ୍ମା—ମହିମା ସ୍ୱୟଂପ୍ରକାଶ—ଏହା ଅବିସଂବାଦୀ ସତ୍ୟ । ସ୍ୱୟଂ ପ୍ରକାଶ କହିଲେ—ଆପଣାଦ୍ୱାରା ଆପେ ସ୍ୱତଃ ସିଦ୍ଧ ଭାବେ ପ୍ରକାଶିତ; ଏହିପରି ପରମସତ୍ତ୍ୱ ଆପେ ଆପଣାର ସ୍ୱୟଂପ୍ରକାଶତ୍ତ୍ୱରେ ସ୍ୱତଃସିଦ୍ଧ ଭାବରେ ବିଦ୍ୟମାନ । ସୂର୍ଯ୍ୟ ଯେପରି ନିଜେ ସ୍ୱତଃସିଦ୍ଧଭାବରେ ପ୍ରକାଶିତ, ଚିତ୍‌ସ୍ୱରୂପ ପରମାତ୍ମା ମଧ୍ୟ ସେହିପରି ଆପେ ଆପେ ସ୍ୱତଃସିଦ୍ଧଭାବେ ବିଦ୍ୟମାନ । ଅତଏବ ଅଲେଖ ପରଂବ୍ରହ୍ମ ପରମାତ୍ମା ନିଜପ୍ରକାଶଦ୍ୱାରା ନିଜେ ପ୍ରକାଶିତ-ମହିମା ଓ ନିଜେ ଅଭିନ୍ନ । ପ୍ରକାଶ ହିଁ ତାହାଙ୍କର ସ୍ୱରୂପ ଓ ସେହି ସ୍ୱରୂପ ହିଁ ତାଙ୍କର ମହିମା । ଏହି ସ୍ୱରୂପ ଓ ମହିମା—ଛାନ୍ଦୋଗ୍ୟଶ୍ରୁତିର ଭୂମା ପ୍ରକରଣରେ

---

* ଏ ବିଷୟରେ ଭାଗବତରେ ଉକ୍ତ ଅଛି—

"ଆତ୍ମାନମନ୍ୟ ପୁରୁଷୋଽବ୍ୟବଧାନମେକମ୍
ଅନ୍ୱୀକ୍ଷତେ ପ୍ରତିନିବୃତ୍ତଗୁଣପ୍ରବାହଃ
ସୋଽପ୍ୟେତୟା ଚରମୟା ମନସୋ ନିବୃତ୍ତ୍ୟା
ତସ୍ମିନ୍ ମହିମ୍ନ୍ୟବସିତଃ ସୁଖ ଦୁଃଖବାହ୍ୟେ ॥ ଭାଗ: ୩ । ୨୮ । ୩୫ ॥

"ସ୍ୱମହମ୍ନି ପ୍ରତିଷ୍ଠିତଃ, ଯଦି ବା ନ ମହମ୍ନୀତି"

ଇତ୍ୟାଦି ବାକ୍ୟରେ ପ୍ରତିପାଦିତ ହୋଇଅଛି ।

ପୁନଶ୍ଚ—ଶ୍ୱେତାଶ୍ୱତର ଶ୍ରୁତିରେ ବର୍ଣ୍ଣିତ ଅଛି ଯେ, ବିଷୟସଙ୍ଗରହିତ ଜୀବ ପରଂବ୍ରହ୍ମ ପରମାତ୍ମାଙ୍କର ମହିମା ଦର୍ଶନ କରି ପରମାନନ୍ଦ ଭୋଗ କରେ—

**ଅଣୋରଣୀୟାନ୍ ମହତୋମହୀୟା-**
**ନାତ୍ମା ଗୁହାୟାଂ ନିହିତୋଽସ୍ୟ ଜନ୍ତୋଃ**
**ତମକ୍ରତୁଂ ପଶ୍ୟତି ବୀତଶୋକୋ**
**ଧାତୁଃ ପ୍ରସାଦାନ୍ମହିମାନମୀଶମ୍ ॥**
**ବେଦାହମେତମଜରଂ ପୁରାଣଂ**
**ସର୍ବାତ୍ମାନଂ ସର୍ବଗତଂ ବିଭୁତ୍ୱାତ୍ ।**
**ଜନ୍ମନିରୋଧଂ ପ୍ରବଦନ୍ତି ଯସ୍ୟ**
**ବ୍ରହ୍ମବାଦିନୋ ହି ପ୍ରବଦନ୍ତି ନିତ୍ୟମ୍ ॥**

ଶ୍ୱେତାଶ୍ୱତର ଉପ. ଅ ୩ । ୨୦—୨୧ ।
ନାରଦ ପରିବ୍ରାଜକ ଉ: ୯ । ୧୩ ।

ପରମପିତା ପରଂବ୍ରହ୍ମ ସୂକ୍ଷ୍ମରୁ ସୂକ୍ଷ୍ମତର ଏବଂ ମହତ୍ତରୁ ମହତ୍ତର; ସେ ବ୍ରହ୍ମାଦିସ୍ତମ୍ବ-ପର୍ଯ୍ୟନ୍ତ ପ୍ରାଣିସମୂହର ହୃଦୟ-ଗୁହାରେ ଆତ୍ମସ୍ୱରୂପରେ ନିହିତ ଅଛନ୍ତି । ଯେଉଁ ବ୍ୟକ୍ତି ବିଷୟଭୋଗସଂଗରହିତ ହୋଇ ସେହି ଅଦ୍ୱିତୀୟ ମହାମହିମା ପ୍ରଭୁଙ୍କୁ ଜାଣନ୍ତି, ସେହି ବ୍ୟକ୍ତି କରୁଣାମୟଙ୍କ ପ୍ରସାଦରୁ ଶୋକମୋହାଦିରୁ ମୁକ୍ତ ହୋଇ ଅନନ୍ତକାଳ ପର୍ଯ୍ୟନ୍ତ ପରମାନନ୍ଦ ଭୋଗ କରନ୍ତି । ସେହି ନିର୍ବିକାର ପୁରାତନ ପରମପୁରୁଷ ସମସ୍ତଙ୍କର ଆତ୍ମାସ୍ୱରୂପ ଓ ଆକାଶ ତୁଲ୍ୟ ସର୍ବବ୍ୟାପୀ ପ୍ରଭୁ । ଯେଉଁ ବ୍ୟକ୍ତି ଏହି ରୂପରେ ପରମାତ୍ମାଙ୍କୁ ଜାଣି, ଜନ୍ମ ନିବାରଣ କରି ପାରେ, ବ୍ରହ୍ମବିତ୍ ପଣ୍ଡିତମାନେ ତାହାଙ୍କୁ ହିଁ ନିତ୍ୟପୁରୁଷ ବୋଲି କହନ୍ତି । ସେହି ଅଦ୍ୱିତୀୟ ମହିମାକୁ ଜାଣିପାରି ଭକ୍ତ ପ୍ରହ୍ଲାଦ କହିଛନ୍ତି—

---

ଯେଉଁ ଅବସ୍ଥାରେ ପ୍ରକୃତିର ପ୍ରବାହ ନିବୃତ୍ତ ହୁଏ, ପୁରୁଷ ସେ ସମୟରେ ଅଖଣ୍ଡ, ଅବ୍ୟବଧାନ (ଧ୍ୟାତା ଓ ଧ୍ୟେୟର ଭେଦ ଜ୍ଞାନ) ଆତ୍ମାକୁ ଦର୍ଶନ କରେ; ଏବଂ ଚିତ୍ତବୃତ୍ତିର ଚରମ ନିବୃତ୍ତିରେ ସୁଖ ଦୁଃଖରୁ ଅତୀତ ମହିମା (ବ୍ରହ୍ମ ସ୍ୱରୂପ) ପ୍ରତିଷ୍ଠିତ ହୁଏ ।

**ପରମାର୍ଥସ୍ତ୍ୱମେବୈକୋ ନାନ୍ୟୋଽସ୍ତି ଜଗତଃପତେ !**
**ତବୈଷ ମହିମା ଯେନ ବ୍ୟାପ୍ତମେତଚ୍ଚରାଚରମ୍ ॥**

ବିଷ୍ଣୁପୁରାଣ ୧ । ୪ । ୩୮ ।

**ଅର୍ଥାତ୍** ହେ ଜଗତ୍‌ପତେ ! ଏକହିଁ ତୁମ୍ଭେ କେବଳ **ପରମାର୍ଥସ୍ୱରୂପ,** ଅନ୍ୟ କେହି ନାହିଁ । **ତୁମ୍ଭର** ମହିମାଦ୍ୱାରା ଏହି ଚରାଚର ଜଗତ୍ ପରିବ୍ୟାପ୍ତ ହୋଇଅଛି ।

ସେହି ଏକ ମହାମହିମାନ୍ୱିତ ପରଂବ୍ରହ୍ମ, ଅଲେଖ, ଅବ୍ୟକ୍ତ, ଅରୂପ, ଅକ୍ଷୟ, ଅନାମ, ନିର୍ଲିପ୍ତ, ନିର୍ଗୁଣ, ଅଣାକ୍ଷର, ମହାଶୂନ୍ୟସ୍ଥିତ, ସଚ୍ଚିଦାନନ୍ଦ, ସର୍ବାନ୍ତର୍ଯାମୀ, ବିଶୁଦ୍ଧ ପରମାତ୍ମସ୍ୱରୂପଙ୍କୁ ଭାବନା କରି ସର୍ବତୋଭାବରେ ତାହାଙ୍କଠାରେ ଶରଣ ପଶି ଐକାନ୍ତିକ ଭକ୍ତିଯୋଗରେ ତନ୍ନିଷ୍ଠ ଓ ତନ୍ମୟ ହେଲେ ସେହି ଅଭୟ ପରମପଦ ପ୍ରାପ୍ତ ହେବାକୁ ହୁଏ ।

ଏ ବିଷୟରେ ଶ୍ରୁତି ମଧ୍ୟ କହେ—

**ସର୍ବଂ ଖଲ୍ୱିଦଂ ବ୍ରହ୍ମ ତଜ୍ଜଲାନିତି ଶାନ୍ତ ଉପାସୀତାଥ ଖଳୁ କ୍ରତୁମୟଃ ପୁରୁଷୋ ଯଥା କ୍ରତୁରସ୍ମିଁଲ୍ଲୋକେ ପୁରୁଷୋ ଭବତି ତଥେତଃ ପ୍ରେତ୍ୟ ଭବତି ସ କ୍ରତୁଂ କୁର୍ବୀତ ।** ଛାନ୍ଦୋଗ୍ୟ—ଅ ୩ । ଖ ୧୪ । ୧ ।

ଅର୍ଥାତ୍ ବ୍ରହ୍ମମୟ ସକଳ ଜଗତ୍ (ସ୍ଥୂଳ, ସୂକ୍ଷ୍ମ; କାରଣଶରୀରାଦିମୟ); ଯେଉଁ ହେତୁରୁ ତଜ୍ଜଲାନ୍ ଇତି—ତଜ୍ଜ, ତଲ୍ଲ ଓ ତଦନ୍, ଅର୍ଥାତ୍ ଜଗତ୍ ସେହି ବ୍ରହ୍ମଙ୍କଠାରୁ ଜାତ ତାହାଙ୍କଠାରେ ସ୍ଥିତ ଏବଂ ଅନ୍ତିମକାଳରେ ତାହାଙ୍କଠାରେ ହିଁ ଲୟ ପ୍ରାପ୍ତ ହେବ; ସେହି ହେତୁରୁ ଉପାସକ ଶାନ୍ତଭାବ ଅବଲମ୍ବନ କରି (ଇନ୍ଦ୍ରିୟମାନଙ୍କର ବୃତ୍ତିକୁ ସଂଯତ କରି) ତାହାଙ୍କର ଉପାସନା କରିବ ।

ଜୀବ ସଂକଳ୍ପାତ୍ମକ, ଅତଏବ ମୋକ୍ଷଲାଭ ନିମନ୍ତେ ସଂକଳ୍ପ କରି **ଉପାସନା କରିବ,** କାରଣ, ଇହଲୋକର ସଂକଳ୍ପ ଅନୁସାରେ ପରଜନ୍ମ ଗ୍ରହଣ ବା ଲାଭ କରେ । ଅତଏବ ମୋକ୍ଷପ୍ରାପ୍ତି ନିମନ୍ତେ ଇହ ଜୀବନରେ ପରମାତ୍ମାଙ୍କ ଉପାସନା ରୂପକ ଆତ୍ମସଂକଳ୍ପ କରିବା ବାଞ୍ଛନୀୟ । ଅତଏବ ପରେ ଯେଉଁ ସଂକଳ୍ପାତ୍ମକ ଉପାସନା ବିଷୟ କୁହାଯିବ, ଜୀବ ତାହା ଅନୁଷ୍ଠାନ କରିବା ବିଧେୟ ।

**ମନୋମୟଃ ପ୍ରାଣଶରୀରୋ ଭାରୂପଃ ସତ୍ୟ ସଂକଳ୍ପ ଆକାଶାତ୍ମା ସର୍ବକର୍ମା ସର୍ବକାମଃ ସର୍ବଗନ୍ଧଃ ସର୍ବରସଃ ସର୍ବମିଦମଭ୍ୟା-ତ୍ତୋଽବାକ୍ୟନାଦରଃ ।** ଛାନ୍ଦୋଗ୍ୟ—ଅ ୩ । ଖ ୧୪ । ୨ ।

ଆମ୍ଭମାନଙ୍କର ହୃଦୟର ଅନ୍ତଃସ୍ଥଳରେ ଯେଉଁ ନିତ୍ୟ ଶୁଦ୍ଧ ଆତ୍ମା ଅବସ୍ଥାନ କରୁଅଛନ୍ତି, ସେ ସ୍ୱୟଂ ଉଦାସୀନ, ଅତଏବ ଆମ୍ଭମାନଙ୍କର ମନର ପ୍ରବୃତ୍ତି ଓ ନିବୃତ୍ତିରେ ହିଁ ତାହାଙ୍କର ପ୍ରବୃତ୍ତି ଓ ନିବୃତ୍ତି ହୁଏ ଏବଂ ଆମ୍ଭମାନଙ୍କର ପ୍ରାଣର ଜ୍ଞାନଶକ୍ତି ଓ କ୍ରିୟାଶକ୍ତିରେ ସେ ମଧ୍ୟ ଜ୍ଞାନଶକ୍ତି ଓ ପ୍ରାଣଶକ୍ତିବିଶିଷ୍ଟ ହୋଇଥାନ୍ତି । ସେ ଚିନ୍ମୟ । ତାହାଙ୍କର ସଙ୍କଳ୍ପ ଅମୋଘ । ସେ ଆକାଶ ତୁଲ୍ୟ ନିର୍ଲିପ୍ତ । ସୂକ୍ଷ୍ମ ଓ ରୂପାଦିବିହୀନ । ଏହି ବିଚିତ୍ର ବିଶ୍ୱ ତାହାଙ୍କର ହିଁ କାର୍ଯ୍ୟ । ଏହି ଜଗତର ସମସ୍ତ ପବିତ୍ର କାମନା, ପୂତଗନ୍ଧ, ସୁଖକର ରସ ତାହାଙ୍କର ଅଟେ । ସେ ଏହି ନିଖିଳ ବିଶ୍ୱକୁ ଅଭିବ୍ୟାପ୍ତ କରି ଅବସ୍ଥାନ କରୁଅଛନ୍ତି, ଅଥଚ ତାହାଙ୍କର କୌଣସି ଇନ୍ଦ୍ରିୟ ନାହିଁ । ସେ ନିଜର ପୂର୍ଣ୍ଣ ସ୍ୱରୂପରେ (ସ୍ୱମହିମାରେ) ସର୍ବଦା ଅବସ୍ଥାନ କରୁଅଛନ୍ତି, ଅତଏବ କୌଣସି ବାହ୍ୟବସ୍ତୁ ଲାଭ ନିମନ୍ତେ ତାହାଙ୍କର କିଞ୍ଚିନ୍ମାତ୍ର ଆଗ୍ରହ ନାହିଁ ।

**"ଏଷ ମ ଆତ୍ମାନ୍ତର୍ହୃଦୟେଽଣୀୟାନ୍ ବ୍ରୀହେର୍ବା ଯବାଦ୍ ବା ସର୍ଷପାଦ୍‌ବା ଶ୍ୟାମାକାଦ୍‌ବା ଶ୍ୟାମାକତଣ୍ଡୁଲାଦ୍‌ବା ଏଷ ମ ଆତ୍ମାନ୍ତର୍ହୃଦୟେ ଜ୍ୟାୟାନ୍ ପୃଥିବ୍ୟା ଜ୍ୟାୟାନନ୍ତରୀକ୍ଷାଦ୍ ଜ୍ୟାୟାନ୍ ଦିବୋ ଜ୍ୟାୟାନେଭ୍ୟୋ ଲୋକେଭ୍ୟଃ" ।।**　　ଛାନ୍ଦୋଗ୍ୟ—ଅ ୩ । ଖ ୧୪ । ୩ ।

ଅର୍ଥାତ୍ ଆମ୍ଭମାନଙ୍କର ହୃଦୟ-ପଦ୍ମରେ ଅବସ୍ଥିତ ଏହି ଆତ୍ମା ଧାନ୍ୟଠାରୁ ଯବ, ସର୍ଷପ ଓ ଶ୍ୟାମାକ ଧାନ୍ୟଠାରୁ, ଏପରି କି ଅତି କ୍ଷୁଦ୍ର ଶ୍ୟାମାକଧାନ୍ୟର ତଣ୍ଡୁଳଠାରୁ ମଧ୍ୟ କ୍ଷୁଦ୍ର । ପୁନର୍ବାର ଏହି ପୃଥିବୀଠାରୁ ଗଗନମଣ୍ଡଳ ଓ ଦ୍ୟୁଲୋକଠାରୁ ଏବଂ ସମସ୍ତ ଲୋକଠାରୁ ମଧ୍ୟ ଏହା ମହତ୍ତର ।

**ସର୍ବକର୍ମା ସର୍ବକାମଃ ସର୍ବଗନ୍ଧଃ ସର୍ବରସଃ ସର୍ବମିଦମଭ୍ୟାତ୍ତୋଽବାକ୍ୟନାଦର ଏଷ ମ ଆତ୍ମାନ୍ତର୍ହୃଦୟେ ଏତଦ୍‌ବ୍ରହ୍ମୈତମିତଃ ପ୍ରେତ୍ୟାଭିସମ୍ଭବିତାସ୍ମୀତି ଯସ୍ୟ ସ୍ୟାଦଦ୍ଧାନ ବିଚିକିତ୍ସାସ୍ତୀତି ହ ସ୍ମାହ ଶାଣ୍ଡିଲ୍ୟଃ ଶାଣ୍ଡିଲ୍ୟଃ" ।।**　　ଛାନ୍ଦୋଗ୍ୟ ୩ । ଖ ୧୪ । ୪ ।

ଏହି ବିଶ୍ୱ ସଂସାର ତାହାଙ୍କର ହିଁ କାର୍ଯ୍ୟ, ଇହ ଜଗତର ସକଳ ପବିତ୍ର କାମନା, ପୂତଗନ୍ଧ, ସୁଖକର ରସ ଆଦି ତାଙ୍କର କେବଳ ପ୍ରତିଭାତ । ସେ ଏହି ନିଖିଳ ବିଶ୍ୱରେ ପରିବ୍ୟାପ୍ତ ହୋଇ ଅବସ୍ଥାନ କରୁଅଛନ୍ତି । ତାଙ୍କର କୌଣସି ଇନ୍ଦ୍ରିୟ ନାହିଁ । ସେ ନିଜ ପରିପୂର୍ଣ୍ଣ ସ୍ୱରୂପରେ ସ୍ୱମହିମାରେ ସର୍ବଦା ଅବସ୍ଥାନ କରୁଅଛନ୍ତି, ଅତଏବ କୌଣସି ବାହ୍ୟବସ୍ତୁ ଲାଭ କରିବା ନିମନ୍ତେ ତାହାଙ୍କର ଲେଶମାତ୍ର ଆଗ୍ରହ ହୁଏ ନାହିଁ । ଏହି ପରମାତ୍ମାଙ୍କ ଉପାସନା ସମ୍ବନ୍ଧରେ ବୃହଦାରଣ୍ୟକ ଶ୍ରୁତି କହେ—

"ଆନଖାଗ୍ରେଭ୍ୟୋ ଯଥା କ୍ଷୁରଃ କ୍ଷୁରଧାନେଽବହିତଃ ସ୍ୟାଦ୍‌ବିଶ୍ୱମ୍ଭରୋ ବା ବିଶ୍ୱମ୍ଭରକୁଳାୟେ ତନ୍ନ ପଶ୍ୟନ୍ତି । ଅକୃତ୍ସ୍ନୋ ହି ସ ପ୍ରାଣନ୍ନେବ ପ୍ରାଣୋ ନାମ ଭବତି । ବଦନ୍ ବାକ୍ ପଶ୍ୟଁଶ୍ଚକ୍ଷୁଃ ଶୃଣ୍ୱନ୍ ଶ୍ରୋତ୍ରଂ ମନ୍ୱାନୋ ମନସ୍ତାନ୍ୟସ୍ୟୈତାନି କର୍ମନାମାନ୍ୟେବ । ସ ଯୋଽତ ଏକୈକମୁପାସ୍ତେ ନ ସ ବେଦାକୃତ୍ସ୍ନୋ ହ୍ୟେଷୋଽତ ଏକୈକେନ ଭବତ୍ୟାତ୍ମେତ୍ୟେବୋପାସୀତାତ୍ର ହ୍ୟେତେ ସର୍ବ ଏକଂ ଭବନ୍ତି । ତଦେତତ୍ ପଦନୀୟମସ୍ୟ ସର୍ବସ୍ୟ ଯଦୟମାତ୍ମାନେନ ହ୍ୟେତତ୍ ସର୍ବଂ ବେଦ । ଯଥା ହ ବୈ ପଦେନାନୁବିନ୍ଦେଦେବଂ କୀର୍ତ୍ତିଂ ଶ୍ଳୋକଂ ବିନ୍ଦତେ ଯ ଏବଂ ବେଦ" ।

ବୃହଦାରଣ୍ୟକ—ଅ ୧ । ବ୍ରା ୪ । ୭ ।

ଯେପରି କ୍ଷୁର କ୍ଷୁରଧାରିର ଅଭ୍ୟନ୍ତରରେ ପ୍ରବିଷ୍ଟ ହୋଇ ଅବସ୍ଥିତ, ଅଥବା ଅଗ୍ନି କାଷ୍ଠ ମଧ୍ୟରେ ଅନ୍ତର୍ହିତଭାବରେ ଅବସ୍ଥାନ କରିଥାଏ, ସେହିପରି ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସତ୍ୟ-ସ୍ୱରୂପ ପରମାତ୍ମା ବ୍ରହ୍ମାଦିସ୍ଥାବର ପର୍ଯ୍ୟନ୍ତ ପ୍ରାଣୀମାନଙ୍କର ନଖାଗ୍ରଠାରୁ ସକଳ ଅବୟବରେ ବ୍ୟାପ୍ତ ହୋଇ ସୂର୍ଯ୍ୟାଦିପ୍ରତିବିମ୍ବ ତୁଲ୍ୟ ପ୍ରବିଷ୍ଟ ହୋଇ ଅଛନ୍ତି । ସେ ସକଳ ପଦାର୍ଥରେ ଅନ୍ତର୍ନିହିତ ଥିଲେ ମଧ୍ୟ ଅଜ୍ଞମାନେ ତାହାଙ୍କୁ ଦେଖି ପାରେ ନାହିଁ, କାରଣ, ସେ ପ୍ରାଣାଦିର ସମ୍ବନ୍ଧରୁ ପ୍ରାଣନ-ଆଦି କ୍ରିୟାବିଶିଷ୍ଟ ବୋଲି ପ୍ରକାଶିତ ହୁଅନ୍ତି । (ବସ୍ତୁତଃ ସେ ଅପରିଚ୍ଛିନ୍ନ ଓ ସୂକ୍ଷ୍ମ, ଅତଏବ ସ୍ଥୂଳଦୃଷ୍ଟି ଦ୍ୱାରା ଦର୍ଶନୀୟ ନୁହନ୍ତି) ଯେପରି ପ୍ରାଣନକ୍ରିୟା ସମ୍ପାଦନ କରିବା ହେତୁରୁ ସେ ପ୍ରାଣ ନାମରେ ଆଖ୍ୟାତ, ସେହିପରି ଦର୍ଶନବ୍ୟାପାରରେ ଚକ୍ଷୁ, ବାଗିନ୍ଦ୍ରିୟବ୍ୟାପାରରେ ବାକ୍, ଶ୍ରବଣବ୍ୟାପାରରେ ଶ୍ରୋତ୍ର ଏବଂ ସଂକଳ୍ପ-ବିକଳ୍ପପ୍ରଭୃତି ମାନସିକବ୍ୟାପାର ନେଇ ମନ-ନାମରେ ଅଭିହିତ ହୋଇ ଅଛନ୍ତି । ବସ୍ତୁତଃ ପରମାତ୍ମାଙ୍କର ପ୍ରାଣାଦି ନାମ ସେହି ସେହି କର୍ମାନୁସାରେ ବୁଝିବାକୁ ହେବ । ଅତଏବ ଯେଉଁମାନେ ପ୍ରାଣନାଦିକ୍ରିୟାବିଶିଷ୍ଟ ପ୍ରାଣାଦିର ଗୋଟିଏ ଗୋଟିଏ ଗୁଣ ଆତ୍ମାଙ୍କଠାରେ ଆରୋପ କରି ଏକ ଏକ ଗୁଣକୁ ଆତ୍ମାଙ୍କ ଗୁଣବୋଲି ଉପାସନା କରନ୍ତି, ସେମାନେ ପରମାତ୍ମାଙ୍କର ସ୍ୱରୂପ ଅବଗତ ହୋଇ ପାରନ୍ତି ନାହିଁ । କାରଣ, ଆତ୍ମା ପ୍ରାଣନାଦି କ୍ରିୟାଦ୍ୱାରା ବିଶିଷ୍ଟ ହୋଇ କେବଳ ପ୍ରକାଶିତ ହୋଇ ଅଛନ୍ତି । ଅତଏବ ଗୁଣେତରଙ୍କ ବିଶୁଦ୍ଧ ପରମାତ୍ମାଙ୍କର ଉପାସନା କରିବ । ଯେଉଁହେତୁରୁ ବିଶୁଦ୍ଧ-ବ୍ରହ୍ମରୂପୀ ଆତ୍ମାଠାରେ ଉକ୍ତପ୍ରାଣନାଦି ସମୁଦାୟ କ୍ରିୟାରୂପଗୁଣ ଏକ ଆତ୍ମାଠାରେ ଏକରୂପରେ ଅବସ୍ଥିତ, ସେହି ହେତୁରୁ ସକଳ ଜାଗତିକ ଦୃଶ୍ୟ ପଦାର୍ଥରେ ଅବସ୍ଥିତ ଆତ୍ମା ସାକ୍ଷାତ୍ କରଣୀୟ । ସେହି ଆତ୍ମାର ସ୍ୱରୂପ କ'ଣ ? ଏହି ପ୍ରଶ୍ନର ଉତ୍ତରସ୍ୱରୂପ କୁହାଯାଇ ପାରେ ଯେ, ସେ ଏହିପରି ଦୃଶ୍ୟମାନ ସମୁଦାୟ ପଦାର୍ଥସ୍ୱରୂପ; କାରଣ, ତାହାଙ୍କୁ ଜାଣିବାଦ୍ୱାରା ଏହି ସମସ୍ତ

ଜାଗତିକ ବସ୍ତୁ ଜ୍ଞାତ ହୁଏ । ଯେପରି ଅନ୍ୱେଷଣଦ୍ୱାରା ପଶୁପଦାଙ୍କିତ ସ୍ଥାନ ଦେଖି ପଶୁକୁ ଜାଣିବାକୁ ହୁଏ, ସେହିପରି ବିଶେଷବିଶିଷ୍ଟ ଆତ୍ମାକୁ ଜାଣି ପାରିଲେ, ସକଳ ଜାଗତିକ ପଦାର୍ଥର ସ୍ୱରୂପ ଜ୍ଞାତ ହେବାକୁ ହୁଏ; ତା ସଙ୍ଗେ ସଙ୍ଗେ କ୍ରମଶଃ ବିଶୁଦ୍ଧ ଚିତ୍ସ୍ୱରୂପ ପରମାତ୍ମାଙ୍କ ସ୍ୱରୂପଲାଭ ମଧ୍ୟ କରାଯାଇ ପାରେ । ଯେଉଁମାନେ ଏହିପ୍ରକାରେ ଆତ୍ମତତ୍ତ୍ୱ ଅବଗତ ହୁଅନ୍ତି, ସେମାନେ ପରମାତ୍ମାଙ୍କ ସହିତ ଐକ୍ୟଭାବ ବା ମୁକ୍ତି ଲାଭକରନ୍ତି ।

ଆହୁରି ମଧ୍ୟ—

"ଯତ୍ର ବିନ୍ଦୁଶ୍ଚ ନାଦଶ୍ଚ ସୋମସୂର୍ଯ୍ୟାଗ୍ନିବାୟବଃ ।
ଇନ୍ଦ୍ରିୟାଣି ଚ ସର୍ବାଣି ଲୟଂ ଗଚ୍ଛନ୍ତି ସୁବ୍ରତ ॥
ବାୟବୋ ଯତ୍ର ଲୀୟନ୍ତେ ମନୋ ଯତ୍ର ବିଲୀୟତେ ।
ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ ॥
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାପି ବିଚାଲ୍ୟତେ ।
ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା ॥
ଯତ୍ର ଚୈବାତ୍ମନାତ୍ମାନଂ ପଶ୍ୟନ୍ନାତ୍ମନି ତୁଷ୍ୟତି ।
ସୁଖମାତ୍ୟନ୍ତିକଂ ଯତ୍ତଦ୍ ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍ ॥
ଏତଦ୍ କ୍ଷରାକ୍ଷରାତୀତମନକ୍ଷରମିତୀର୍ଯ୍ୟତେ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋକ୍ଷର ଉଚ୍ୟତେ ॥
ଅକ୍ଷରଂ ପରମଂ ବ୍ରହ୍ମ ନିର୍ବିଶେଷଂ ନିରଞ୍ଜନମ୍ ।
ଅଲକ୍ଷଣମଲକ୍ଷ୍ୟଂ ତଦପ୍ରତର୍କ୍ୟମନୂପମମ୍ ॥
ଅପାରପାରମଚ୍ଛେଦ୍ୟମଚିନ୍ତ୍ୟମତିନିର୍ମଳମ୍ ।
ଆଧାରଂ ସର୍ବଭୂତାନାମନାଧାରମନାମୟମ୍ ॥
ଅପ୍ରମାଣମନିର୍ଦ୍ଦେଶ୍ୟମପ୍ରମେୟମତୀନ୍ଦ୍ରିୟମ୍ ।
ଅସ୍ଥୂଳମନଣ୍ୱହ୍ରସ୍ୱ ମଦୀର୍ଘମଜରମବ୍ୟୟମ୍ ॥
ଅଶବ୍ଦସ୍ପର୍ଶ ରୂପମଚକ୍ଷୁଃଶ୍ରୋତ୍ରନାମକମ୍ ।
ସର୍ବଜ୍ଞଂ ସର୍ବଗଂ ଶାନ୍ତଂ ସର୍ବେଷାଂ ହୃଦୟେ ସ୍ଥିତମ୍ ।
ସୁସଂବେଦ୍ୟଂ ଗୁରୁମତାତ୍ ସୁଦୁର୍ବୋଧମଚେତସାମ୍ ॥
ନିଷ୍କଳଂ ନିର୍ଗୁଣଂ ଶାନ୍ତଂ ନିର୍ବିକାରଂ ନିରାଶ୍ରୟମ୍ ।
ନିର୍ଲେପକଂ ନିରପାୟଂ କୂଟସ୍ଥମଚଳଂ ଧ୍ରୁବମ୍ ॥

ଜ୍ୟୋତିଷାମପି ତଜ୍ଜ୍ୟୋତିସ୍ତମଃପାରେ ପ୍ରତିଷ୍ଠିତମ୍ ।।
ଭାବାଭାବବିନିର୍ମୁକ୍ତଂ ଭାବନାମାତ୍ରଗୋଚରମ୍ ।”

ଯୋଗଶିଖୋପନିଷତ୍—ଅ ୩ । ୧୨—୨୨ ।

ଅର୍ଥ—ହେ ତପଃପରାୟଣ ବ୍ରହ୍ମନ୍ ! ଯାହାଙ୍କଠାରେ ବିନ୍ଦୁ, ନାଦ, ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ବାୟୁ ଏବଂ ସମସ୍ତ ଇନ୍ଦ୍ରିୟ ଲୟପ୍ରାପ୍ତ ହୁଏ; ଯାହାଙ୍କଠାରେ ପ୍ରାଣାଦି ପଞ୍ଚବାୟୁ ଲୀନ ହୁଏ, ଯାହାଙ୍କଠାରେ ମନ ବିଲୟ ପ୍ରାପ୍ତ ହୁଏ, ଯାହାଙ୍କୁ ଲାଭ କଲେ ଅପର କୌଣସି ଲାଭ ତାହାଠାରୁ ଅଧିକ ବୋଲି ସ୍ୱୀକୃତ ହୁଏ ନାହିଁ, ଯହିଁରେ ଅବସ୍ଥାନ କଲେ ଦୁଃସହ ଦୁଃଖରେ ମଧ୍ୟ ବିଚଳିତ ହେବାକୁ ହୁଏ ନାହିଁ, ସମାଧି-ଯୋଗଦ୍ୱାରା ଯାହାଙ୍କଠାରେ ଚିତ୍ତ ନିରୁଦ୍ଧ ହେଲେ ଚିତ୍ତ ଶାନ୍ତ ହୁଏ, ଯାହାଙ୍କୁ ଉପଲବ୍ଧି କରିବାଦ୍ୱାରା ଯୋଗୀ ଆତ୍ମପ୍ରଯତ୍ନରେ (କେବଳ ଶ୍ରବଣଦ୍ୱାରା ନୁହେଁ) ସେହି ପରମାତ୍ମାଙ୍କୁ ଦେଖି ଦେଖି (ଅର୍ଥାତ୍ ଅନୁଭବ କରି) ପାରମାର୍ଥିକ ପରିତୋଷ ଲାଭ କରେ ଓ ବିଷୟ ପ୍ରତି ଆଉ ମନ ଧାବିତ ହୁଏ ନାହିଁ, ଯେଉଁ ପରମାତ୍ମା ପରମ ସୁଖସ୍ୱରୂପ—ସେହି ପରଂବ୍ରହ୍ମ ଆତ୍ମା କେବଳ ବୁଦ୍ଧିଗ୍ରାହ୍ୟ, ଇନ୍ଦ୍ରିୟଗୋଚର ନୁହନ୍ତି । ସେ କ୍ଷର ଓ ଅକ୍ଷରରୁ ଅତୀତ, ଅଣକ୍ଷର କୁହାଯାନ୍ତି । କ୍ଷର-ଶବ୍ଦଦ୍ୱାରା ସମସ୍ତ ଜାତ ହୋଇଥିବା ବସ୍ତୁ ବୁଝାଯାଏ ଓ ଅକ୍ଷର ସୂତ୍ରାତ୍ମା ବୋଲି କଥିତ । [ପୁରୁଷ ତ୍ରିବିଧ—କ୍ଷର, ଅକ୍ଷର ଓ ଅଣକ୍ଷର] ଜାଗତିକ ସକଳ ବସ୍ତୁ, ସ୍ଥୂଳ ଦେହ, ସୂକ୍ଷ୍ମ ଦେହ ଓ ତଦୁପହିତ ଆତ୍ମା—କ୍ଷର ବୋଲି କଥିତ ; କାରଣ, ଏହା କ୍ଷଣସ୍ଥାୟୀ; ପ୍ରଳୟ ବା ମହାପ୍ରଳୟ ପର୍ଯ୍ୟନ୍ତ ସ୍ଥିତିଶୀଳ ହୁଏ, ତା’ପରେ ନଷ୍ଟ ହୋଇ ଯାଏ । ଯାହା ମଣିମାଳାର ସୂତ୍ରପରି ସମସ୍ତ ଆତ୍ମାକୁ ଗ୍ରଥିତ କରି ଧାରଣ ଓ ଗ୍ରନ୍ଥନ କରେ, ସେହି ତେଜଃସ୍ୱରୂପ ସୂକ୍ଷ୍ମ ସର୍ବବ୍ୟାପୀ ଚୈତନ୍ୟକୁ ସୂତ୍ରାତ୍ମା କୁହାଯାଏ । ମହାପ୍ରଳୟର ପୂର୍ବ ସମୟ ପର୍ଯ୍ୟନ୍ତ ଏହା ବିନାଶ ପ୍ରାପ୍ତ ହୁଏ ନାହିଁ, ଅତଏବ ଏହାକୁ ଅକ୍ଷର କୁହାଯାଏ, କିନ୍ତୁ ଯାହା ଅକ୍ଷରଠାରୁ ଶ୍ରେଷ୍ଠ (ଅର୍ଥାତ୍ ମହାପ୍ରଳୟରେ ମଧ୍ୟ ଯାହାଙ୍କର ନାଶ ନାହିଁ ଓ ପରେ ମଧ୍ୟ ଯେ ଅବସ୍ଥାନ କରନ୍ତି), ତାହାଙ୍କ ନାମ ଅଣକ୍ଷର । ଅଣକ୍ଷର ପୁରୁଷଙ୍କୁ ନିର୍ବିଶେଷ, ନିରଞ୍ଜନ, ଅଲକ୍ଷଣ, ଓ ଅଲକ୍ଷ୍ୟ ବା ଅଲେଖ ପରଂବ୍ରହ୍ମ କହନ୍ତି । ସେ ଅପ୍ରତର୍କ୍ୟ; ଉପମାହୀନ, ଅପାର ପାର (ଯାହାର ପାର ବା ଶେଷଭାବ ଲବ୍ଧ ହୁଏନାହିଁ), ଅଚ୍ଛେଦ୍ୟ, ଅଚିନ୍ତ୍ୟ, ଅତିନିର୍ମଳ, ସର୍ବଭୂତର ଆଧାର ଅଥଚ ଅନାଧାର ମଧ୍ୟ ଅନାମୟ, ଅପ୍ରମାଣ, ଅନିର୍ଦ୍ଦେଶ୍ୟ, ଅପ୍ରମେୟ; ଅତୀନ୍ଦ୍ରିୟ, ଅସ୍ଥୂଳ, ଅଥଚ ଅନଣୁ, ଅହ୍ରସ୍ୱ ଅଥଚ ଅଦୀର୍ଘ, ଅଜ, ଅବ୍ୟୟ, ଅଶବ୍ଦ, ଅସ୍ପର୍ଶ, ଅରୂପ, ଅଚକ୍ଷୁ, ଅଶ୍ରୋତ୍ର, ସର୍ବଜ୍ଞ, ସର୍ବଗାମୀ, ଶାନ୍ତ ( ଉଗ୍ରତାହୀନ ), ସର୍ବହୃଦୟସ୍ଥିତ ଗୁରୁ-ଉପଦେଶଦ୍ୱାରା କେବଳ ସମ୍ୟକ୍ ଅବଗମ୍ୟ, ଅସମାହିତଚିତ୍ତବ୍ୟକ୍ତି ପକ୍ଷରେ ଅତ୍ୟନ୍ତ ଦୁର୍ବୋଧ । ନିଷ୍କଳ, ନିର୍ଗୁଣ, ଶାନ୍ତ (ଚିତ୍ତଗୃଞ୍ଜଳାହୀନ), ନିର୍ବିକାର, ନିରାଶ୍ରୟ, ନିର୍ଲିପ୍ତ, ନିରୁପାୟ (ଅବିନାଶୀ), କୂଟସ୍ଥ (ସର୍ବକାଳରେ ଏକଭାବେ ସ୍ଥିତ), ଅଚଳ ଓ ଧ୍ରୁବ । ସେ

ଜ୍ୟୋତିସମୂହର ମଧ୍ୟ ଜ୍ୟୋତି (ଅର୍ଥାତ୍ ସର୍ବଶ୍ରେଷ୍ଠ ଜ୍ୟୋତି), ତମସ୍‌ର ଅପରପାରରେ ପ୍ରତିଷ୍ଠିତ (ଅର୍ଥାତ୍ ଅଜ୍ଞାନରୂପ ଅନ୍ଧକାରରୁ ଅତୀତ), ଭାବାଭାବବନ୍ଧନମୁକ୍ତ ଏବଂ କେବଳ ଭାବନା (ଅର୍ଥାତ୍ ସତତ ସ୍ମରଣ, ଦର୍ଶନ, ଭଜନ ଓ ଶବ୍ଦନାଦ) ଦ୍ୱାରାହିଁ ବନ୍ଦନୀୟ ।

ଏହାପରେ ଅତିଗୋପନୀୟ ନିର୍ଗୁଣବ୍ରହ୍ମ ଜ୍ଞାନ-ଭକ୍ତିଯୋଗ ଭଗବାନ୍ ନାରାୟଣ ନାରଦଙ୍କୁ ଉପଦେଶ ଦେଇଥିଲେ ଓ ଭୀଷ୍ମ ମୋକ୍ଷଧର୍ମ-ପର୍ବରେ ରାଜର୍ଷି ଯୁଧିଷ୍ଠିରଙ୍କ ଗୂଢ଼ପ୍ରଶ୍ନର ଉତ୍ତରରେ ଏହା କହି ଏହି ମୁଖ୍ୟ ଆଖ୍ୟାନଟି ବ୍ୟକ୍ତ କରିଅଛନ୍ତି । ଯୁଧିଷ୍ଠିରଙ୍କ ପ୍ରଶ୍ନ ଏହି ଯେ, କେଉଁ ପରମ ଦେବତାଙ୍କୁ ଆରାଧନା କଲେ ଜୀବ ଅନାବୃତ୍ତି ମୁକ୍ତି ପ୍ରାପ୍ତ ହେବ । ଏହାର ଉତ୍ତରରେ ଭୀଷ୍ମଦେବ କହିଲେ—"ଏହା ଅତିଗୋପନୀୟ କଥା, ତଥାପି ତୁମ୍ଭେ ଧର୍ମାତ୍ମା ହୋଇ-ଥିବାରୁ ତୁମ୍ଭଙ୍କୁ ଏହି ବିଷୟ କହୁଅଛୁଁ । ସ୍ୱାୟଂଭୁବମନୁଙ୍କ ସତ୍ୟଯୁଗରେ ଭଗବାନ୍ ନାରାୟଣ ବଦରିକାଶ୍ରମରେ ରହି ତପସ୍ୟା କରୁଥିଲେ । ଏକଦା ମହର୍ଷିନାରଦ ମହାମେରୁପର୍ବତରୁ ଅବତରଣ କରି ଓ ଗନ୍ଧମାଦନ ପର୍ବତ ପର୍ଯ୍ୟନ୍ତ ଭ୍ରମଣ କରି ବଦରିକାଶ୍ରମରେ ଉପସ୍ଥିତ ହୋଇ ଦେଖିଲେ ଯେ, ଭଗବାନ୍ ନାରାୟଣ ତପସ୍ୟା କରୁଅଛନ୍ତି । ତାହା ଦେଖି ନାରଦ ଚକିତ ହୋଇ ନାରାୟଣଙ୍କୁ ନମସ୍କାର କରି ଭକ୍ତିସହ ପ୍ରଶ୍ନ କଲେ—

"ବେଦେଷୁ ସପୁରାଣେଷୁ ସାଙ୍ଗୋପାଙ୍ଗେଷୁ ଗୀୟସେ ।
ତ୍ୱମଜଃ ଶାଶ୍ୱତୋ ଧାତା ମାତାଽମୃତମନୁତ୍ତମମ୍ ।
ପ୍ରତିଷ୍ଠିତଂ ଭୂତଭବ୍ୟଂ ତ୍ୱୟି ସର୍ବମିଦଂ ଜଗତ୍ ।
ଚତ୍ୱାରୋ ହ୍ୟାଶ୍ରମାଦେବ ସର୍ବେ ଗାର୍ହସ୍ଥ୍ୟମୂଳକାଃ ॥
ଯଜନ୍ତେ ତ୍ୱାମହରହର୍ନାନା ମୂର୍ତ୍ତିସମାସ୍ଥିତମ୍ ।
ପିତା ମାତା ଚ ସର୍ବସ୍ୟ ଜଗତଃ ଶାଶ୍ୱତୋ ଗୁରୁଃ ॥
କଂ ତ୍ୱଦ୍ୟ ଯଜସେ ଦେବଂ ପିତରଂ କଂ ନ ବିଦ୍ମହେ" ।

ଶାନ୍ତିପର୍ବ ୩୩୪।୨୫-୨୭ ।

ନାରଦ ମୁନି କହିଲେ—ହେ ଦେବ ! ସମସ୍ତ ପୁରାଣ ଓ ସାଙ୍ଗୋପାଙ୍ଗ ସକଳ ବେଦରେ ଆପଣ ଅଜ, ନିତ୍ୟ, ଧାତା ଓ ଅନୁତ୍ତମ ଅମୃତରୂପରେ ସମ୍ମତ ଓ ବର୍ଣ୍ଣିତ ହୋଇଅଛ; ଭୂତ, ଭବିଷ୍ୟତ୍ ଓ ଏହି ସମସ୍ତ ଜଗତ୍ ତୁମ୍ଭଠାରେ ପ୍ରତିଷ୍ଠିତ ହୋଇଅଛି । ଗାର୍ହସ୍ଥ୍ୟମୂଳକ ଚାରି ଆଶ୍ରମବାସୀ ବହୁମୂର୍ତ୍ତିସ୍ୱରୂପ ଆପଣଙ୍କୁ ପୂଜା କରୁଅଛନ୍ତି । ତୁମ୍ଭେ ସମସ୍ତ ଜଗତର ପିତା, ମାତା ଓ ଶାଶ୍ୱତ ଗୁରୁ ଅଟ । ବର୍ତ୍ତମାନ ଆପଣ କେଉଁ ଦେବତା ଓ କେଉଁ ପିତାଙ୍କୁ ଉପାସନା କରୁଅଛନ୍ତି—ଏହା ମୁଁ ଜାଣିବାକୁ ଇଚ୍ଛେ । ଶ୍ରୀଭଗବାନ୍ କହିଲେ—

"ଅବାଚ୍ୟମେତଦ୍ ବକ୍ତବ୍ୟମାତ୍ମଗୁହ୍ୟଂ ସନାତନମ୍ ।
ତବ ଭକ୍ତିମତୋ ବ୍ରହ୍ମନ୍ ବକ୍ଷ୍ୟାମି ତୁ ଯଥାତଥମ୍ ॥
ଯତ୍ତୁସୂକ୍ଷ୍ମମବିଜ୍ଞେୟମବ୍ୟକ୍ତମଚଳଂ ଧ୍ରୁବମ୍ ।
ଇନ୍ଦ୍ରିୟୈରିନ୍ଦ୍ରିୟାର୍ଥୈଶ୍ଚ ସର୍ବଭୂତୈଶ୍ଚ ବର୍ଜିତମ୍ ॥
ସ ହ୍ୟନ୍ତରାତ୍ମା ଭୂତାନାଂ କ୍ଷେତ୍ରଜ୍ଞଶ୍ଚେତି କଥ୍ୟତେ ।
ତ୍ରିଗୁଣବ୍ୟତିରିକ୍ତୋ ବୈ ପୁରୁଷଶ୍ଚେତି କଳ୍ପିତଃ ॥
ତସ୍ମାଦବ୍ୟକ୍ତମୁତ୍ପନ୍ନଂ ତ୍ରିଗୁଣଂ ଦ୍ୱିଜସତ୍ତମ ।
ଅବ୍ୟକ୍ତାବ୍ୟକ୍ତଭାବସ୍ଥା ଯା ସା ପ୍ରକୃତିରବ୍ୟୟା ॥
ତାଂ ଯୋନିମାବୟୋର୍ବିଦ୍ଧି ଯୋଽସୌ ସଦସଦାତ୍ମକଃ ।
ଆବାଭ୍ୟାଂ ପୂଜ୍ୟତେ ଯୋହି ଦୈବେ ପିତ୍ର୍ୟେ ଚ କଳ୍ପ୍ୟତେ ॥
ନାସ୍ତି ତସ୍ମାତ୍ ପରୋଽନ୍ୟୋ ହି ପିତା ଦେବୋଽଥବା ଦ୍ୱିଜ ।
ଆତ୍ମା ହି ନଃ ସ ବିଜ୍ଞେୟସ୍ତତସ୍ତଂ ପୂଜୟାବହେ ॥

ମହାଭାରତ ଶାନ୍ତିପର୍ବ ୩୩୪ । ୨୮—୩୩

ଶ୍ରୀ ଭଗବାନ୍ କହିଲେ—ହେ ବ୍ରହ୍ମନ୍ ! ଏହି ଆତ୍ମଗୋପ୍ୟ ସନାତନ ବିଷୟ ଅବାଚ୍ୟ ହେଲେ ମଧ୍ୟ ତୁମ୍ଭର ଭକ୍ତିମତ୍ତାରେ ପ୍ରୀତ ହୋଇ କହିବା ଉଚିତ ମନେ କରି ତୁମ୍ଭ ସମୀପରେ ଯଥାର୍ଥଭାବେ ବର୍ଣ୍ଣନା କରୁଅଛି । ଯେଉଁ ପରଂବ୍ରହ୍ମ ଦୁର୍ଲକ୍ଷ୍ୟ, ଅବିଜ୍ଞେୟ, ଅବ୍ୟକ୍ତ, ଅଚଳ ଓ ଶାଶ୍ୱତ ଅଟନ୍ତି ଓ ଯେ ଇନ୍ଦ୍ରିୟାଗମ୍ୟ ଓ ସର୍ବଭୂତମାନଙ୍କଠାରୁ ଅତିରିକ୍ତଭାବରେ ବିଦ୍ୟମାନ, ସେହି କେବଳ ଜୀବମାନଙ୍କର ଅନ୍ତରାତ୍ମା ଓ କ୍ଷେତ୍ରଜ୍ଞସ୍ୱରୂପରେ ବର୍ଣ୍ଣିତ ଏବଂ ତ୍ରିଗୁଣାତୀତ ପୁରୁଷରୂପରେ କଳ୍ପିତ ହୋଇଅଛନ୍ତି । ହେ ଦ୍ୱିଜସତ୍ତମ ! ତାଙ୍କଠାରୁହିଁ ତ୍ରିଗୁଣାତ୍ମକ ଅବ୍ୟକ୍ତର ଉତ୍ପତ୍ତି ହୋଇଅଛି । ଯାହା ବ୍ୟକ୍ତ ନ ହୋଇ ମଧ୍ୟ ବ୍ୟକ୍ତଭାବରେ ବର୍ତ୍ତମାନ, ସେହି ଅବ୍ୟୟ, ଅର୍ଥାତ୍ ଅପରିଣାମବିଶିଷ୍ଟ ପ୍ରକୃତିନାମରେ ଆଖ୍ୟାତ । ଯେଉଁ ସତ୍ତ୍ୱ ସ୍ୱୟଂ ଅବ୍ୟକ୍ତ, ଅର୍ଥାତ୍ ଘଟପଟାଦି ବ୍ୟକ୍ତ ପଦାର୍ଥରେ ସତ୍-ସ୍ୱରୂପରେ ବିଦ୍ୟମାନ, ତାହା ପ୍ରକୃତି । ତାହାକୁହିଁ ଆମ୍ଭ ଦୁହିଁଙ୍କର ଉତ୍ପତ୍ତିର କାରଣ ବୋଲି ଜାଣ ଓ ଯେଉଁ ସଦସଦାତ୍ମକ, ଅର୍ଥାତ୍ ନିଷ୍କଳଭାବରେ ସତ୍ ଓ ଅସତ୍ କାର୍ଯ୍ୟର କାରଣ କଳ୍ପନାର ଅଧିଷ୍ଠାନତ୍ୱନିବନ୍ଧନ ତଦାତ୍ମକ ଅଟନ୍ତି, ତାହାଙ୍କୁହିଁ ଆମ୍ଭେ ଦୈବ ଓ ପିତୃକଳ୍ପନା କରି ପୂଜା କରୁଅଛୁଁ । ହେ ଦ୍ୱିଜ ! ତାଙ୍କଠାରୁ ଶ୍ରେଷ୍ଠ ହୋଇ ପରମ ଦେବ ତଥା ପରମପିତା ଆଉ ବିଶିଷ୍ଟ କେହି ନାହିଁ, ସେହି ଆମ ସମସ୍ତ ଲୋକଙ୍କର ଆତ୍ମା ଅଟନ୍ତି, ଏହି ହେତୁରୁ ତାଙ୍କୁ ଆମେ ଉପାସନା କରୁଅଛୁଁ ।

ସ୍ୱର୍ଗସ୍ଥା ଅପି ଯେ କେଚତ୍ତାନ୍ନମସ୍ୟନ୍ତି ଦେହିନଃ ।
ତେ ତତ୍ ପ୍ରସାଦାଦ୍‌ଗଚ୍ଛନ୍ତି ତେନାଦଷ୍ଟଫଳାଂ ଗତମ୍ ॥
ଯେ ହୀନାଃ ସପ୍ତଦଶଭିର୍ଗୁଣୈଃ କର୍ମଭିରେବ ଚ ।
କଲାଃ ପଞ୍ଚଦଶ ତ୍ୟକ୍ତାସ୍ତେ ମୁକ୍ତା ଇତ ନିଶ୍ଚୟଃ ॥

ଛନ୍ଦୈବ । ୩୯ । ୪୦ ।

ସ୍ୱର୍ଗବାସୀ ଶରୀରଧାରୀ ଜୀବ ମଧ୍ୟ ତାହାଙ୍କୁ ନମସ୍କାର କରୁଅଛନ୍ତି ଓ ସେମାନେ ତାହାଙ୍କ କୃପାରେ ତାହାଙ୍କ ଆଦିଷ୍ଟ ଗତିକୁ ପ୍ରାପ୍ତ ହୁଅନ୍ତି । ଯେଉଁ ଲୋକ ପଞ୍ଚପ୍ରାଣ ମନ, ବୁଦ୍ଧି ତଥା ଦଶ ଇନ୍ଦ୍ରିୟ—ଏହି ସପ୍ତଦଶ ଗୁଣ ଓ କର୍ମରୁ ରହିତ, ସେ ପଞ୍ଚଦଶ କଳା, ଅର୍ଥାତ୍ ସ୍ଥୂଳ ଶରୀର ପରିତ୍ୟାଗ କରି ନିଶ୍ଚୟ ମୁକ୍ତିଲାଭ କରେ ।

"ମୁକ୍ତାନାଂ ତୁ ଗତର୍ବ୍ରହ୍ମନ୍ କ୍ଷେତ୍ରଜ୍ଞ ଇତ କଳ୍ପିତା ।
ସ ହି ସର୍ବଗୁଣୈଶ୍ଚୈବ ନିର୍ଗୁଣଶ୍ଚୈବ କଥ୍ୟତେ ॥
ଦୃଶ୍ୟତେ ଜ୍ଞାନଯୋଗେନ ଆବାଂ ଚ ପ୍ରସୃତୌ ତତଃ ।
ଏବଂ ଜ୍ଞାତ୍ୱା ତମାତ୍ମାନଂ ପୂଜୟାବଃ ସନାତନମ୍ ॥
ତଂ ବେଦାଶ୍ଚାଶ୍ରମାଶ୍ଚୈବ ନାନାମତସମାସ୍ଥିତାଃ ।
ଭକ୍ତ୍ୟା ସଂପୂଜୟନ୍ତ୍ୟାଶୁ ଗତଂ ଚୈଷାଂ ଦଦାତ ସଃ ॥
ଯେ ତୁ ତଦ୍ଭାବିତା ଲୋକେ ହ୍ୟେକାନ୍ତିତ୍ୱଂ ସମାସ୍ଥିତାଃ ।
ଏତଦଭ୍ୟଧିକଂ ତେଷାଂ ଯତ୍ତେ ତଂ ପ୍ରବିଶନ୍ତ୍ୟୁତ ॥
ଇତ ଗୁହ୍ୟସମୁଦ୍ଦେଶସ୍ତବ ନାରଦ କୀର୍ତ୍ତିତଃ ।
ଭକ୍ତ୍ୟା ପ୍ରେମ୍ଣା ଚ ବିପ୍ରର୍ଷେ ଅସ୍ମଦ୍‌ଭକ୍ତ୍ୟା ଚ ତେ ଶ୍ରୁତଃ ॥

ଛନ୍ଦୈବ । ୪୧—୪୫ ।

ହେ ବ୍ରହ୍ମନ୍ ! ମୁକ୍ତ ମନୁଷ୍ୟର ଗତି କ୍ଷେତ୍ରଜ୍ଞ ଅଟେ, ସେ ସର୍ବଗୁଣଯୁକ୍ତ ହେଲେ ମଧ୍ୟ ନିର୍ଗୁଣରୂପରେ କଥିତ ହୁଅନ୍ତି ଓ ଜ୍ଞାନଯୋଗଦ୍ୱାରା କେବଳ ଦୃଶ୍ୟ ହୁଅନ୍ତି । ଆମ୍ଭେ ଦୁହେଁ ତାହାଙ୍କଠାରୁ ଉତ୍ପନ୍ନ ହୋଇଅଛୁଁ । ଯଦି ବୈଦିକମତରେ ଆଶ୍ରମବାସୀମାନେ ଭକ୍ତିପୂର୍ବକ ତାହାଙ୍କର ଉପାସନା କରନ୍ତି, ତାହାହେଲେ ସେହି ପରମାତ୍ମା ଉପାସକ ବ୍ୟକ୍ତିମାନଙ୍କୁ ଶୀଘ୍ର ସଦ୍‌ଗତି ପ୍ରଦାନ କରନ୍ତି । ଇହଲୋକରେ ଯେଉଁ ଲୋକ ସଦ୍‌ଭାବରେ (ସଦାଗ୍ରହଯୁକ୍ତ ହୋଇ) ପରମାତ୍ମାଙ୍କଠାରେ ଐକାନ୍ତିକୀ ଭକ୍ତି କରେ, ସେ ପରିଣାମରେ ତାହାଙ୍କଠାରେ ପ୍ରବେଶ କରେ, ଅର୍ଥାତ୍ ତାହାଙ୍କଠାରେ ଲୀନ ହୋଇଯାଏ । ହେ ନାରଦ ! ଏହି ଗୁପ୍ତ ବୃତ୍ତାନ୍ତ ତୁମ୍ଭ ସମୀପରେ କହିଲୁଁ । ହେ ବିପ୍ରର୍ଷେ ! ତୁମ୍ଭର ଭକ୍ତିରେ ପ୍ରୀତ ହୋଇ ଏହା କହିବାରୁ ତୁମ୍ଭେ ସହଜରେ ଶୁଣିପାରିଲ ।

ଆତୁର ମଧ୍ୟ ଏହି ଗୋପନୀୟ ବିଷୟ ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ଅନୁଗୀତା ପର୍ବରେ ଅର୍ଜ୍ଜୁନଙ୍କୁ କହିଅଛନ୍ତି—

"ସୁରହସ୍ୟମିଦଂ ପ୍ରୋକ୍ତଂ ଦେବାନାଂ ଭରତର୍ଷଭ !
କଚ୍ଚିନେଦଂ ଶ୍ରୁତଂ ପାର୍ଥ ମନୁଷ୍ୟେଣେହ କର୍ହିଚିତ୍ ॥
ନ ହ୍ୟେତଚ୍ଛ୍ରୋତୁମର୍ହୋଽନ୍ୟୋ ମନୁଷ୍ୟସ୍ତ୍ୱାମୃତେଽନଘ ।
ନୈତଦଦ୍ୟ ସୁବିଜ୍ଞେୟଂ ବ୍ୟାମିଶ୍ରେଣାନ୍ତରାତ୍ମନା ॥
କ୍ରିୟାବଦ୍ଭିର୍ହି କୌନ୍ତେୟ ଦେବଲୋକଃ ସମାବୃତଃ ।
ନ ଚୈତଦିଷ୍ଟଂ ଦେବାନାଂ ମର୍ତ୍ତ୍ୟରୂପ ନିବର୍ତ୍ତନମ୍ ॥
ପରା ହି ସା ଗତିଃ ପାର୍ଥ ଯତ୍ତଦ୍‌ବ୍ରହ୍ମ ସନାତନମ୍ ।
ଯତ୍ରାମୃତତ୍ୱଂ ପ୍ରାପ୍ନୋତି ତ୍ୟକ୍ତ୍ୱା ଦେହଂ ସଦା ସୁଖୀ" ॥

ମହାଭାରତ ଆଶ୍ୱ: ୧୯ । ୫୭—୬୦ ।

ଅର୍ଥ—ହେ ଭରତଶ୍ରେଷ୍ଠ ! ମୁଁ ତୁମ୍ଭଙ୍କୁ ଯାହା କହିଥିଲି, ତାହା ଦେବତାମାନଙ୍କ ନିକଟରେ ମଧ୍ୟ ଗୋପନୀୟ ଅଟେ । ଇହଲୋକରେ କାହାଠାରୁ କେବେହେଲେ ମଧ୍ୟ ଏହା ଶୁଣାଯାଇ ନାହିଁ । ହେ ଅନଘ ! ତୁମ ବ୍ୟତୀତ ଅନ୍ୟ କେହି ମନୁଷ୍ୟ ଏହା ଶୁଣିବାକୁ ଉପଯୁକ୍ତ ନୁହଁନ୍ତି । ଯାହାର ଅନ୍ତରାତ୍ମା ଅତ୍ୟନ୍ତ ବ୍ୟଗ୍ର; ସେହି ପୁରୁଷ ଉତ୍ତମରୂପରେ ଏହା ଜାଣିପାରେ ନାହିଁ । ହେ କୁନ୍ତୀନନ୍ଦନ ! ଦେଖ କ୍ରିୟାବାନ୍ ବା ସର୍ବଦା କାର୍ଯ୍ୟନିରତ ମନୁଷ୍ୟମାନଙ୍କଦ୍ୱାରା ଦେବଲୋକ ପୂର୍ଣ୍ଣ ହୋଇଅଛି; କିନ୍ତୁ ଏହି ଦେବତାମାନେ ପୁନର୍ବାର ମର୍ତ୍ତ୍ୟରୂପ ଧାରଣପୂର୍ବକ ମର୍ତ୍ତ୍ୟଲୋକକୁ ନିବର୍ତ୍ତନ ସକାଶେ ଅଭିଳାଷ କରନ୍ତି ନାହିଁ । ମନୁଷ୍ୟ-ଦେହ ତ୍ୟାଗ କରିବା ପରେ ଯାହାଙ୍କଠାରେ ଅମରତ୍ୱଲାଭ କରି ସର୍ବଦା ସୁଖଭୋଗ କରେ, ସେହି ସନାତନ ପରଂବ୍ରହ୍ମ କେବଳ ପରମଗତି ଓ ପରମଧ୍ୟେୟ ଅଟନ୍ତି ।

ଏ ସମ୍ବନ୍ଧରେ ବ୍ୟାସଦେବ ଶୁକଦେବଙ୍କୁ ଉପଦେଶ ଦେଇଅଛନ୍ତି—

"ଅଶବ୍ଦସ୍ପର୍ଶରୂପଂ ତଦରସାଽଗନ୍ଧମବ୍ୟୟମ୍ ।
ଅଶରୀରଂ ଶରୀରେଷୁ ନିରୀକ୍ଷେତ ନିରିନ୍ଦ୍ରିୟମ୍ ॥
ଅବ୍ୟକ୍ତଂ ସର୍ବଦେହେଷୁ ମର୍ତ୍ତ୍ୟେଷୁ ପରମାର୍ଚ୍ଚିତମ୍ ।
ଯୋଽନୁପଶ୍ୟତି ସ ପ୍ରେତ୍ୟ କଳ୍ପ୍ୟତେ ବ୍ରହ୍ମଭୂୟସେ ॥

ମହାଭାରତ ଶାନ୍ତିପର୍ବ ୨୩୯ । ୧୭—୧୮ ।

ପରଂବ୍ରହ୍ମ ଶବ୍ଦ ନୁହଁନ୍ତି, ଅର୍ଥାତ୍ ତାଙ୍କୁ ଶବ୍ଦଦ୍ୱାରା ଗ୍ରହଣ କରାଯାଏ ନାହିଁ; ସେ ସ୍ପର୍ଶ ନୁହଁନ୍ତି ଅର୍ଥାତ୍ ତାଙ୍କୁ ସ୍ପର୍ଶଦ୍ୱାରା ଗ୍ରହଣ କରାଯାଏ ନାହିଁ; ସେ

ରୂପ ନୁହଁନ୍ତି ଅର୍ଥାତ୍ ତାଙ୍କୁ ରୂପଦ୍ୱାରା ଗ୍ରହଣ କରିଯାଏ ନାହିଁ; ସେ ରସ ବା ଗନ୍ଧ ନୁହଁନ୍ତି; କାରଣ, ସେ ଅବ୍ୟୟ ଓ ଇନ୍ଦ୍ରିୟ ରହିତ; ତାଙ୍କର ସ୍ଥୂଳ, ସୂକ୍ଷ୍ମ ଓ କାରଣ-ଶରୀର ନାହିଁ; ତଥାପି ତାଙ୍କୁ ତାଙ୍କ ନିଜ ଶରୀରରେ ପ୍ରତ୍ୟକ୍ଷ କରି । ମରଣଧର୍ମୀ ସକଳ ଶରୀରରେ ଯେ ଅବ୍ୟକ୍ତ ରୂପରେ ନିବାସ କରିଅଛନ୍ତି । ତାହାଙ୍କୁ ଯେଉଁ ପୁରୁଷ ଗୁରୁବଚନ ବା ଶ୍ରୁତିବାକ୍ୟ ଅନୁସାରେ ଅବଲୋକନ କରେ, ଶରୀରତ୍ୟାଗ ପରେ ସେ ବ୍ରହ୍ମଙ୍କ ସଙ୍ଗରେ ନିର୍ବିଶେଷ ଭାବ ଲାଭ କରେ । ଉପନିଷଦ୍ ମଧ୍ଯ କହେ—

"କମପ୍ୟବ୍ୟପଦେଶାତ୍ମା ପୂର୍ଣ୍ଣାତ୍ ପୂର୍ଣ୍ଣତରାକୃତଃ ।
ନ ସନ୍ନାସନ୍ନ ସଦସନ୍ନ ଭାବୋ ଭାବନଂ ନ ଚ ॥
ଚିନ୍ମାତ୍ରଂ ଚୈତ୍ୟରହିତମନନ୍ତମଜରଂ ଶିବମ୍ ।
ଅନାଦିମଧ୍ୟପର୍ଯ୍ୟନ୍ତଂ ଯଦନାଦି ନିରାମୟମ୍ ॥

ମହୋପନିଷଦ୍ ଅ ୧-୬୭—୬୮ ।

ଅର୍ଥାତ୍ ସେହି ଆତ୍ମା ଅନିର୍ବଚନୀୟ ଓ ଅବ୍ୟପଦେଶ୍ୟ, ଅର୍ଥାତ୍ ବଚନରେ ଅପ୍ରକାଶ୍ୟ; ସେ ପୂର୍ଣ୍ଣରୁ ପୂର୍ଣ୍ଣତର, ତାହାଙ୍କର ଆକୃତି ସତ୍ ନୁହେଁ, ଅସତ୍ ମଧ୍ଯ ନୁହେଁ; ସଦସତ୍ ନୁହେଁ ସେ ଭାବ ବା ଭାବନା ନୁହେଁ । ଆତ୍ମା ଜ୍ଞାନ ସ୍ୱରୂପ, ଚିତ୍ତ ସମ୍ବନ୍ଧଶୂନ୍ୟ, ଅନ୍ତଃଶୂନ୍ୟ, ଜରାରହିତ, ମଙ୍ଗଳମୟ, ଆଦି, ମଧ୍ଯ ଓ ଅନ୍ତରହିତ, ଅନାଦି ଓ ନିରାମୟ ଅଟନ୍ତି ।

ଉପାଧିରହିତଂ ସ୍ଥାନଂ ବାଙ୍ମନୋଽତୀତଗୋଚରମ୍ ।
ସ୍ୱଭାବଭାବନାଗ୍ରାହ୍ୟଂ ସଂଘାତୈକପଦୋଜ୍ଝିତମ୍ ॥
ଆନନ୍ଦଂ ନନ୍ଦନାତୀତଂ ଦୁଷ୍ପ୍ରେକ୍ଷ୍ୟମଜମବ୍ୟୟମ୍ ।
ଚିତ୍ତବୃତ୍ତିବିନିର୍ମୁକ୍ତଂ ଶାଶ୍ୱତଂ ଧ୍ରୁବମଚ୍ୟୁତମ୍ ॥
ତଦ୍ ବ୍ରହ୍ମଣଂ ତଦାଧ୍ୟାତ୍ମଂ ତନ୍ନିଷ୍ଠା ତତ୍ପରାୟଣମ୍ ।
ଅଚିତ୍ତଚିତ୍ତମାତ୍ମାନଂ ତଦ୍‌ବ୍ୟୋମ ପରମଂ ସ୍ଥିତମ୍ ॥
ଅଶୂନ୍ୟଂ ଶୂନ୍ୟଭାବଂ ଚ ଶୂନ୍ୟାତୀତମବସ୍ଥିତମ୍ ।
ନ ଧ୍ୟାନଂ ନ ଚ ବା ଧ୍ୟାତା ନ ଧ୍ୟେୟୋ ଧ୍ୟେୟ ଏବ ଚ ॥
ସର୍ବଂ ତତ୍ ପରମଂ ଶୂନ୍ୟଂ ନ ପରଂ ପରମାତ୍ ପରମ୍ ।
ଅଚିନ୍ତ୍ୟମପ୍ରବୁଦ୍ଧଂ ଚ ନ ଚ ସତ୍ୟଂ ନ ସଂବିଦୁଃ ॥
ମୁନୀନାଂ ତତ୍ତ୍ୱଯୁକ୍ତଂ ତୁ ନ ଦେବା ନ ପରଂ ବିଦୁଃ ।

ତେଜୋବିନ୍ଦୁ ଉ. ୫।୧୧ ।

ଯେ ସ୍ୱୟଂ ଅଙ୍ଗହୀନ, ଅଥଚ ସକଳ ପଦାର୍ଥର ଆଶ୍ରୟ, ଯେ ବାକ୍ୟ ଓ ମନର ଅଗୋଚର, ସମୁଦାୟ ବସ୍ତୁର ଜ୍ଞାତା, ମିଥ୍ୟାସଂସ୍କାର ରହିତ ସ୍ୱଭାବସିଦ୍ଧ ଓ ବିଶୁଦ୍ଧ ଭାବନାଦ୍ୱାରା ଯାହାଙ୍କୁ ଅବଗତ ହେବାକୁ ହୁଏ, ସେହି ବଚନାତୀତ ଓ ଗୁଣାତୀତ ବ୍ରହ୍ମ କେବଳ ଏକମାତ୍ର ଧ୍ୟେୟ । ଜନ୍ମ ଓ କ୍ଷୟ ଯାହାଙ୍କୁ ସ୍ପର୍ଶ କରିପାରେ ନାହିଁ ; ଯେ ସ୍ୱୟଂ ଆନନ୍ଦସ୍ୱରୂପ, ଅଥଚ ଜୀବ ଯାହାଙ୍କୁ ଆନନ୍ଦିତ କରିପାରେ ନାହିଁ ; ଯେ ସମୁଦାୟ ଚିତ୍ତବୃତ୍ତିରହିତ—ସେହି ଦୁର୍ଦ୍ଧର୍ଷ, ସ୍ଥିରତାପନ୍ନ, ନିତ୍ୟ ଓ ଆତ୍ମରୂପୀ ବ୍ରହ୍ମ ଅଟନ୍ତି । ସେହି ବ୍ରହ୍ମ ହିଁ ପରମାତ୍ମା ; ଏହି ପରମାତ୍ମା ହିଁ ନିଷ୍ଠା, ଅର୍ଥାତ୍ ଅଖିଳ ବ୍ରହ୍ମାଣ୍ଡର ଏକମାତ୍ର ଆଶ୍ରୟ । ଅତଏବ ତଦାଶ୍ରିତ ସର୍ବଜ୍ଞ ଆତ୍ମା ପରମାକାଶ ରୂପରେ, ଅର୍ଥାତ୍ ଅଭିନ୍ନ ବ୍ରହ୍ମରୂପରେ ଅବସ୍ଥିତ । ଅତଏବ ବ୍ରହ୍ମ ହିଁ ଏକମାତ୍ର ଉପାସ୍ୟ । ବ୍ରହ୍ମ ପୂର୍ଣ୍ଣ ହେଲେ ମଧ ତାହାଙ୍କୁ ଶୂନ୍ୟରୂପରେ କଳ୍ପନା କରାଯାଏ । ବସ୍ତୁତଃ ସେ ଭାବରୂପରେ ପୂର୍ଣ୍ଣ ଅତଏବ ପୂର୍ଣ୍ଣସ୍ୱରୂପରେ ଅବସ୍ଥିତ । ଯେଉଁ ସମୟରେ ସେ ପୂର୍ଣ୍ଣସ୍ୱରୂପରେ ଭାସମାନ ହୁଅନ୍ତି, ସେ ସମୟରେ କ୍ରିୟା-କାରକାଦିର ଅଭାବହେତୁରୁ ଧ୍ୟାନ, ଧ୍ୟାତା ଏବଂ ଧ୍ୟେୟ ବୋଲି ପୃଥଗ୍‌ଭାବରେ ଉପଲବ୍‌ଧ ହୁଅନ୍ତି ନାହିଁ । ଅଥଚ ସେ ସମୟରେ ମଧ ସେ ଧ୍ୟେୟ । ବୁଦ୍ଧିମାନ ବ୍ୟକ୍ତି କେବଳ ତାହାଙ୍କର ଧ୍ୟାନ କରନ୍ତି । ସେହି ବ୍ରହ୍ମ ସର୍ବାତ୍ମକ ଓ ଭାବରୂପୀ; ସେ ଶୂନ୍ୟପରି ଅଦୃଶ୍ୟ ବୋଲି ନିଜେ ଶୂନ୍ୟ ; କିନ୍ତୁ ଅଭାବବଶତଃ ଶୂନ୍ୟ ନୁହଁନ୍ତି । ବିଷୟ ଅପେକ୍ଷା ଶ୍ରେଷ୍ଠ ଇନ୍ଦ୍ରିୟାଦି ତାହାଙ୍କର ସ୍ୱରୂପ ନୁହଁନ୍ତି । ଯେଉଁହେତୁରୁ ସେ ଆକାଶାଦି-ଠାରୁ ଶ୍ରେଷ୍ଠ ଏବଂ ଜାଗ୍ରଦାଦି-ଅବସ୍ଥାବିହୀନ, ସେହିହେତୁରୁ ଲୋକମାନେ ଏହି ଅଚିନ୍ତ୍ୟମୟ ସତ୍ୟସ୍ୱରୂପ ବ୍ରହ୍ମଙ୍କୁ ଜାଣିପାରନ୍ତି ନାହିଁ, ତାହା ନୁହେଁ ; ଅଭ୍ୟାସ, ବୈରାଗ୍ୟ, ବିବେକ, ଜ୍ଞାନ ଓ ଭକ୍ତି ପ୍ରଭୃତିଦ୍ୱାରା ତାହାଙ୍କୁ ଜାଣିବାକୁ ହୁଏ । ମୁନିମାନଙ୍କର ତତ୍ତ୍ୱଭାବ ବା ସ୍ୱାତ୍ମଭାବଦ୍ୱାରା ବ୍ରହ୍ମ ଆଦରଣୀୟ । ସେମାନଙ୍କର ବ୍ରହ୍ମତତ୍ତ୍ୱଜ୍ଞାନ ଉତ୍ପନ୍ନ ହୋଇଥିବାହେତୁରୁ ବ୍ରହ୍ମ ସେମାନଙ୍କର ପ୍ରିୟବସ୍ତୁ ; କିନ୍ତୁ ଦେବଗଣ ଯେ ଜାଣିପାରିବେ ନାହିଁ, ତାହା ନୁହେଁ ; ସେମାନେ ମଧ ତତ୍ତ୍ୱଜ୍ଞାନ ସାହାଯ୍ୟରେ ଜାଣି ପାରନ୍ତି ।

ଏହିପରି ମହାଶୂନ୍ୟ ଅଲେଖବ୍ରହ୍ମଙ୍କ ପ୍ରତି ଲକ୍ଷ୍ୟ କରି ଯୋଗବାଶିଷ୍ଠ ରାମାୟଣ ନିମ୍ନଲିଖିତ ଭାବରେ ବର୍ଣ୍ଣନା କରେ—

"ସର୍ବଂ ଶାନ୍ତଂ ନିରାଲମ୍ବଂ ଜଗତ୍ତ୍ୱଂ ଶାଶ୍ୱତଂ ଶିବମ୍ ।
ଅନାମୟ ମନାଭାସମନାମ କମକାରଣମ୍ ॥
ନ ସନ୍ନାସନ୍ନମଧ୍ୟାନ୍ତଂ ନ ସର୍ବଂ ସର୍ବମେବ ଚ ।
ମନୋବାଚୋଭିରଗ୍ରାହ୍ୟଂ ଶୂନ୍ୟାଚ୍ଛୂନ୍ୟଂ ସୁଖାତ୍ ସୁଖମ୍" ॥

ଯୋଗବାଶିଷ୍ଠ—ଉ. ୧୧୯।୨୧-୨୨ ।

ସମସ୍ତ ଜଗତ୍ କଳ୍ପନାପ୍ରସୂତ ; କେବଳ ସର୍ବଶାନ୍ତ ପରମାତ୍ମା ଜ୍ଞାନସ୍ୱରୂପରେ ବିଦ୍ୟମାନ ; ସେହି ପରମାତ୍ମା ନିରାଲମ୍ବ । ଅନାମ ବା ଅନାମକ, ସଦସତ୍‌ମଧ୍ୟାନ୍ତବର୍ଜିତ, ଏକ, ଅଦ୍ୱୟ, ବାକ୍ୟ ଓ ମନର ଅଗୋଚର, ଶୂନ୍ୟଠାରୁ ଶୂନ୍ୟ *, ସ୍ଥୂଳଠାରୁ ସ୍ଥୂଳତର ଓ ସୂକ୍ଷ୍ମଠାରୁ ମଧ୍ୟ ସୂକ୍ଷ୍ମତର ।

ଆହୁରି ମଧ୍ୟ—

"ମନୋମାର୍ଗାଦତୀତତ୍ୱାଦ୍ ଯୋଽସୌ ଶୂନ୍ୟମିବ ସ୍ଥିତଃ ।
ତତ୍ କଥଂ ନାମ ଦୁଃଖୈର୍ବା ସୁଖୈର୍ବା ପରିଗୃହ୍ୟତେ ॥
ଯତ୍ୟଂ ଭବତୁ ତେନ ତ୍ୱଂ ମା ମୋହମନୁଭବତୁ ।
ନିରିଚ୍ଛସ୍ୟାତ୍ମନୋ ନେଚ୍ଛା କାଚିଦପ୍ୟନଘାକୃତେଃ ॥

ଯୋଗବାଶିଷ୍ଠ : ଉ : ଅ : ୧୨୨।୪୫ ଓ ୪୮ ॥

* ଉପର୍ଯ୍ୟୁକ୍ତ ଶ୍ରୁତିରେ ଯେଉଁ ଶୂନ୍ୟଠାରୁ ଶୂନ୍ୟ ବା ମହାଶୂନ୍ୟର କଥା ଉଲ୍ଲିଖିତ ହୋଇଛି, ତାହା କେବଳ ପ୍ରପଞ୍ଚର ଅଭାବହେତୁରୁ ଶୂନ୍ୟ; କିନ୍ତୁ ଅକ୍ଷୟ ତତ୍ତ୍ୱ ସତ୍ତ୍ୱସ୍ୱରୂପ ଅଭାବରୁ ଶୂନ୍ୟ ନୁହେଁ । ମହାଶୂନ୍ୟରେ ଅଲେଖ-ବ୍ରହ୍ମଙ୍କର ସ୍ଥିତି, ଅତଏବ ସାଧାରଣଭାବରେ ସ୍ଥୂଳତଃ ଶୂନ୍ୟଶବ୍ଦର ପ୍ରୟୋଗ ଏଠାରେ କରାଯାଇଛି । ଏହି ଶୂନ୍ୟଭାବକୁ ଲକ୍ଷ୍ୟ କରି ଭକ୍ତ ଭୀମ ଭୋଇ ବ୍ରହ୍ମ-ନିରୂପଣରେ ଲେଖିଛନ୍ତି—

"ମହାଶୂନ୍ୟ ଶୂନ୍ୟ ସେ ଯେ ନିର୍ଗୁଣ ଶରୀର ।
ଏକାକ୍ଷର ନ ବସଇ ବସେ ଅଣାକ୍ଷର ॥ ୧-୫୨
ଶୂନ୍ୟେ ଭ୍ରମଣ କରନ୍ତି ଅନାମିକା ଯୋଗୀ ।
ଦୁଃଖ-ପୀଡ଼ା ନାହିଁ ଯୋଗୀ ଯୁଗାନ୍ତ ନିରୋଗୀ ॥
ଶୂନ୍ୟରେ ଗୁଲୁ ଅଛନ୍ତି ଅଲେଖ ପୁରୁଷ ।
ଅଚେତାରେ ହଜାରର ହୁଅଇ ପ୍ରକାଶ ॥
ଶୂନ୍ୟ ଛବି ଆସନରେ କରଇ ଆସନ ।
ଅଙ୍ଗେ କଳଙ୍କ ନ ଲାଗେ ଅମୂଲ୍ୟ ରତନ" । ୫ । ୮ ୨-୮୮ ॥

ଆହୁରି ମଧ୍ୟ—

ଶୂନ୍ୟ ମନ୍ଦିରେ ଅଛନ୍ତି ଅଲେଖ ବୈରାଗୀ । ୮ । ଇତ୍ୟାଦି

ଏହିପରି ତାଙ୍କର ଭଜନମାଳାରେ ମଧ୍ୟ—

"ଶୂନ୍ୟେ ଶୂନ୍ୟେ ଯିବା ଆସିବା ହେଉଛି, ଶୂନ୍ୟ ମନ୍ଦିରେ ବିହାର ।
ମହାଶୂନ୍ୟ ପୂର୍ଣ୍ଣବ୍ରହ୍ମ କର୍ତ୍ତାପୁରୁଷ । ଇତ୍ୟାଦି" ।

ଅର୍ଥାତ୍, ତଦାତ୍ମା ମନୋମାର୍ଗରୁ ଅଜ୍ଞାତ, ଅତଏବ ଶୂନ୍ୟପର ନିର୍ଲେପରେ ଅବସ୍ଥିତ । ସୁଖଦୁଃଖ କୌଣସିପ୍ରକାରେ ତାହାଙ୍କୁ ସ୍ପର୍ଶ କରି ପାରିବ ନାହିଁ । ଅତଏବ କୁହାଯାଇଛି ଯେ, ତୁମ୍ଭେ ସତ୍ୟବ୍ରହ୍ମଙ୍କୁ ଭାବନା କର, ଆଉ ମୋହ ଅନୁଭବ କର ନାହିଁ । ଇଚ୍ଛାଶୂନ୍ୟ ନିଷ୍ପାପ ପରମାତ୍ମାଙ୍କର ଇଚ୍ଛା ନାହିଁ—ଏହା ଅବଧାରଣ କର ।

## ୦—ବିଶୁଦ୍ଧ ପରମାତ୍ମା ପରଂବ୍ରହ୍ମ କେବଳ ଜୀବର ଉପାସ୍ୟ ଅନ୍ୟଜୀବ ନୁହେଁ ।

ଉଲ୍ଲିଖିତ ଯୋଗଶିକ୍ଷା—ଶ୍ରୁତିରେ କ୍ଷର, ଅକ୍ଷର ଓ ଅଣାକ୍ଷର ଏପରି ତ୍ରିବିଧ ପୁରୁଷର ବିଭାଗପୂର୍ବକ ଅଣାକ୍ଷର ଅଲେଖ ପରଂବ୍ରହ୍ମ କେବଳ ଜୀବର ଆରାଧ୍ୟ— ଇତ୍ୟାଦି ପ୍ରଦର୍ଶିତ ହୋଇଅଛି । ସେହିପରି ଆତ୍ମୋପନିଷଦ୍‌ରେ ମଧ୍ୟ ମହର୍ଷି ଅଙ୍ଗିରା ବାହ୍ୟ-ଆତ୍ମା, ଅନ୍ତରାତ୍ମା ଓ ପରମାତ୍ମାର ନିର୍ଦ୍ଦେଶ କରି, ପରମାତ୍ମା କେବଳ ଉପାସ୍ୟ—ଏ କଥା ନିଶ୍ଚିତଭାବରେ କହିଛନ୍ତି—

**ଅଥୈବାଙ୍ଗିରା ତ୍ରିବିଧପୁରୁଷସ୍ତଦ୍ ଯଥା ବାହ୍ୟାତ୍ମାଽନ୍ତରାତ୍ମା ପରମାତ୍ମା ଚେତି, ତ୍ୱଗସ୍ଥିମଜ୍ଜାମାଂସରୋମାଙ୍ଗୁଲ୍ୟଙ୍ଗୁଷ୍ଠପୃଷ୍ଠବସାନ-**

---

ମହାଶୂନ୍ୟ ଭୁବନରେ ଅଲେଖ ପରଂବ୍ରହ୍ମଙ୍କର ଆସ୍ଥାନ ହେତୁରୁ ଶୂନ୍ୟ ଓ ମହାଶୂନ୍ୟ ଶବ୍ଦର ପ୍ରୟୋଗ ମହିମାଧର୍ମ-ସମାଜରେ ମହିମାସ୍ୱାମୀଙ୍କର ଆଦେଶରେ ପ୍ରଚଳିତ ହୋଇଅଛି । ଏହିପରି ମହାତ୍ମା ବୁଦ୍ଧଦେବ ମଧ୍ୟ ଶୂନ୍ୟରେ ଅକ୍ଷୟସତ୍ତା ସ୍ୱୀକାର କରିଥିବା ପ୍ରମାଣ ମିଳେ । ଯଥା—

"ତେଯନ୍ତି ଅଚ୍ଚୁତଂ ଠାଣଂ ଯତ୍ଥ ଗନ୍ତ୍ୱା ନ ସୋଚରେ ॥ ଧମ୍ମପଦ—କୋଧବଗ୍‌ଗୋ ।

"ସଙ୍ଖାରାଣଂ ଖୟଂ ଞ୍ଚାତ୍ୱା ଅକତଞ୍ଞୁସି ବ୍ରାହ୍ମଣ" ॥ ବ୍ରାହ୍ମଣବଗ୍‌ଗୋ ।

ଅର୍ଥାତ୍ ଯେ ସେହି ଅଜାତ, ଅଭୂତ, ଅକୃତ, ଅସଂଖ୍ୟାତ ସତ୍ତାରେ ସୁସ୍ଥିତ ଏବଂ ଯେ "ଅସ୍ତଂଗତ"; ସେ ମଧ୍ୟ ସେହି ସତ୍ତା ତୁଲ୍ୟ ଲୋକୋତ୍ତର ଅପ୍ରମେୟ, ଅସ୍ତିନାସ୍ତିରୁ ଅତୀତ ଅଚ୍ୟୁତ ସ୍ଥାନ ପ୍ରାପ୍ତ ହୁଏ । ଆହୁରି ମଧ୍ୟ ଯାହା ସର୍ବ ନୁହେଁ ବା ଅସର୍ବ, ତାହା କେବଳ ଶୂନ୍ୟ । ଏଥିରୁ ବୁଝାଯାଏ ଯେ, ସେହି ଅଜାତ, ଅଭୂତ, ଅକୃତ ଓ ଅସଂଖ୍ୟାତ ସତ୍ତାକୁ ବୁଦ୍ଧଦେବ ଶୂନ୍ୟ କହିଅଛନ୍ତି । ପରେ 'ଶୂନ୍ୟ' ଶବ୍ଦଦ୍ୱାରା କେବଳ ନାସ୍ତିତ୍ୱ ବୁଝାଯାଏ । ସେଥିନିମନ୍ତେ ସେହି ଶୂନ୍ୟର ନାମାନ୍ତର ଅକ୍ଷୟ ବୋଲି ସ୍ୱୀକାର କରିଛନ୍ତି । "ଯେ ଚ ସୁଞ୍ଞତେ, ଶୂନ୍ୟା ଅକ୍ଷୟା ଅପି ତେ" । ଅତଏବ ବୁଦ୍ଧଙ୍କ ମତରେ ଶୂନ୍ୟ ଅନିତ୍ୟ ନୁହେଁ, ତାହା ନିତ୍ୟ ଓ ଅକ୍ଷୟ । ଯାହାର କ୍ଷୟ ବା ବ୍ୟୟ ନାହିଁ, ଉପଚୟ ବା ଅପଚୟ ନାହିଁ, ତାହା ଅକ୍ଷୟ, ଅଜର, ଅମର ଓ ଅକ୍ଷର ମଧ୍ୟ । ଯେଉଁ ମୁକ୍ତମାନେ ଶୂନ୍ୟ ସିଦ୍ଧି ବା ନିର୍ବାଣ ପ୍ରାପ୍ତ, ସେ ଅକ୍ଷୟ ଶାନ୍ତି, ଅକ୍ଷୟ ସ୍ୱସ୍ତି ଓ ଅକ୍ଷୟ ସୁଖରେ ପ୍ରତିଷ୍ଠିତ, ସେହି ପରମାତ୍ମାଙ୍କଠାରେ ଅଧିଗତ ଓ ଅଗାଧ ଅମୃତରେ ପରିନିଷ୍ପନ୍ନ । "ତେ ପଟିପତ୍ତା ଅମୃତଂ (ଅ-ମୃତଂ) ବିଗୟ୍ହ ଲଦ୍ଧା ମୁଧା ନିର୍ବାଣଂ ଭୁଞ୍ଜମାନା ।" ସୁତ୍ତନିପାତ ।

ଖଗୁଲ୍‌ଫୋଦରନାଭିମେଢ୍ରକଂଟ୍ୟୂରୁକପୋଳ ଭ୍ରୂଲଲାଟବାହୁପାର୍ଶ୍ୱ ଶିରୋ- ଧମନୀ କାକ୍ଷିଣୀ ଶ୍ରୋତ୍ରାଣି ଭବନ୍ତି ଜାୟନ୍ତେ ମ୍ରିୟତେ ଇତ୍ୟେଷ ବାହ୍ୟାତ୍ମା ନାମ । ୧ ।

ଶ୍ରୁତିବର୍ଣ୍ଣିତ ଆତ୍ମାର ଉପାସନା ବିଷୟରେ ଆତ୍ମାର ସ୍ୱରୂପ ଓ ବିଭାଗ କ'ଣ ଓ କିପରି—ଏ ବିଷୟରେ ଅଙ୍ଗିର କହୁଅଛନ୍ତି—ଆତ୍ମା ତ୍ରିବିଧ—ବାହ୍ୟାତ୍ମା, ଅନ୍ତରାତ୍ମା ଓ ପରମାତ୍ମା । ତ୍ୱକ୍, ଅସ୍ଥି, ମଜ୍ଜା, ମାଂସ, ଲୋମ, ଅଙ୍ଗୁଷ୍ଠ, ଅଙ୍ଗୁଳି, ପୃଷ୍ଠି (କଟିର ଊର୍ଦ୍ଧ୍ୱଭାଗ), ବସା, ନଖ, ଗୁଲ୍‌ଫ, ଉଦର, ନାଭି, ମେଢ୍ର, କଟୀ, ଊରୁ, କପୋଳ, ଭ୍ରୂଲଲାଟ, ବାହୁ, ପାର୍ଶ୍ୱଦେଶ, ଶିର, ଶିରା, ଚକ୍ଷୁ, ଶ୍ରୋତ୍ର—ଏସବୁ ବିଷୟରେ ମୁଁ ବୋଲି ଅଭିମାନ ହୁଏ ଏବଂ ସେହି ଅଭିମାନ ବାହ୍ୟ; ଏହାର ଉତ୍ପତ୍ତି ଓ ବିନାଶ ଅଛି ବୋଲି ଏହାକୁ ବାହ୍ୟାତ୍ମା ବୋଲାଯାଏ ।

ଅଥାନ୍ତରାତ୍ମା ନାମ ପୃଥିବ୍ୟପ୍‌ତେଜୋବାୟ୍ୱାକାଶ-ଇଚ୍ଛାଦ୍ୱେଷ- ସୁଖଦୁଃଖକାମମୋହବିକଳ୍ପନାଦିଭିଃ ଶ୍ରୁତିଲିଙ୍ଗମ୍ । ଉଦାତ୍ତାନୁଦାତ୍ତ- ହ୍ରସ୍ୱଦୀର୍ଘପ୍ଲୁତସ୍ଖଳିତଗର୍ଜିତସ୍ଫୁଟିତମୁଦିତନୃତ୍ୟଗୀତବାଦିତ୍ରପ୍ରଳୟବିଜୃମ୍ଭି- ତାଦିଭିଃ ଶ୍ରୋତା, ଘ୍ରାତା, ରସୟିତା, ମନ୍ତା, ବୋଦ୍ଧା, କର୍ତ୍ତା ବିଜ୍ଞାନାତ୍ମା ପୁରୁଷଃ । ପୁରାଣଂ ନ୍ୟାୟୋ ମୀମାଂସାଧର୍ମଶାସ୍ତ୍ରାଣୀତି ଶ୍ରବଣଘ୍ରାଣାକର୍ଷଣ- କର୍ମବିଶେଷଣଂ କରୋତ୍ୟେଷୋଽନ୍ତରାତ୍ମା ନାମ ।। ୨ ।।

ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, କାମ, ମୋହ, ବିକଳ୍ପ-ପ୍ରଭୃତି ବିଷୟରେ ଆତ୍ମା ଅଭିମାନବଶତଃ ସଂସ୍କାରପୁଞ୍ଜ ସଞ୍ଚୟ କରି ସଂସ୍କାରମୟ ଓ ସ୍ମୃତିମୟ ବୋଲି ବିଖ୍ୟାତ ଏବଂ ଉଦାତ୍ତ, ଅନୁଦାତ୍ତ, ସ୍ୱରିତ, ହ୍ରସ୍ୱ, ଦୀର୍ଘ, ପ୍ଲୁତ, ସ୍ଖଳିତ, ଗର୍ଜିତ, ସ୍ଫୁଟିତ, ମୁଦିତ, ନୃତ୍ୟ, ଗୀତ, ବାଦିତ୍ର, ପ୍ରଳୟ, ବିଜୃମ୍ଭିତ-ପ୍ରଭୃତି କାର୍ଯ୍ୟ କରି ସେହି ସକଳ କାର୍ଯ୍ୟଦ୍ୱାରା ଶ୍ରୋତା, ଘ୍ରାତା, ରସୟିତା, ମନ୍ତା, ବୋଦ୍ଧା ଓ କର୍ତ୍ତାରୂପରେ ବିଦିତ ହୁଅନ୍ତି । ଏହି ହେତୁରୁ ଆତ୍ମା 'ବିଜ୍ଞାନମୟ' ବା 'ବିଜ୍ଞାନାତ୍ମା' ନାମରେ ବିଦିତ ହୋଇଛନ୍ତି । ପୁରାଣ, ନ୍ୟାୟ, ମୀମାଂସା ଧର୍ମଶାସ୍ତ୍ରପ୍ରଭୃତି ଏହାର ପ୍ରମାଣ, ଅର୍ଥାତ୍ ଏହାର ସ୍ୱରୂପ ପ୍ରତିପାଦନ କରନ୍ତି । ଶ୍ରବଣ ଓ ଘ୍ରାଣପ୍ରଭୃତି ବା ଇନ୍ଦ୍ରିୟ ସକଳର ବ୍ୟାପାରଦ୍ୱାରା ଏହି ଆକର୍ଷଣ ବା ଗ୍ରହଣକ୍ରିୟା ସମ୍ପାଦନ କରନ୍ତି ବୋଲି ଏହାଙ୍କୁ ଅନ୍ତରାତ୍ମା କୁହାଯାଏ ।

ଅଥ ପରମାତ୍ମା ନାମ ଯଥାକ୍ଷରମୁପାସନୀୟଃ ସ ଚ ପ୍ରାଣାୟାମ- ପ୍ରତ୍ୟାହାର ସମାଧିଯୋଗାନୁମାନାଧ୍ୟାତ୍ମ ଚିନ୍ତନମ୍, ବଟକଣିକାଶ୍ୟାମାକ- ତଣ୍ଡୁଲୋ ବାଲାଗ୍ରଶତସହସ୍ରବିକଳ୍ପନାଦିଭିର୍ନଲଭ୍ୟତେ ନୋପଲଭ୍ୟତେ ।

ନ ଜାୟତେ ମ୍ରିୟତେ ନ ଶୁଷ୍ୟତ ନ ଦହ୍ୟତେ ନ କମ୍ପତେ ନ ଭିଦ୍ୟତେ ନ ଛିଦ୍ୟତେ ନିର୍ଗୁଣଃ ସାକ୍ଷୀଭୂତଃ । ଶୁଦ୍ଧୋନିରବୟବାତ୍ମା କେବଲଃ ସୂକ୍ଷ୍ମୋ ନିଷ୍କଲୋ ନିରଞ୍ଜନୋ ନିରଭିମାନଃ ଶବ୍ଦସ୍ପର୍ଶରସରୂପଗନ୍ଧବର୍ଜିତୋ ନିର୍ବିକଳ୍ପୋ ନିରାକାଙ୍କ୍ଷଃ ସର୍ବବ୍ୟାପୀ ସୋଽଚିନ୍ତ୍ୟୋଽବର୍ଣ୍ଣଶ୍ଚ ପୁନାତ୍ୟ-ଶୁଦ୍ଧାନ୍ୟପୂତାନି ନିଷ୍କ୍ରିୟଃ । ସଂସ୍କାରୋ ନାସ୍ତି ସଂସ୍କାରୋ ନାସ୍ତ୍ୟେବ ପରମାତ୍ମା ପୁରୁଷୋ ନାମ । ଇତ୍ୟଥର୍ବବେଦାନ୍ତର୍ଗତାତ୍ମୋପନିଷତ୍ ସମାପ୍ତ ।। ୩ ।।

ଗୁରୁ-ଉପଦେଶ ଓ ଶାସ୍ତ୍ରୀୟ ଉପଦେଶ ଅନୁସାରେ ପରମାତ୍ମାଙ୍କର ଉପାସନା କର୍ତ୍ତବ୍ୟ । ସେହି ପରମାତ୍ମା ସର୍ବସାଧାରଣଙ୍କ ପ୍ରତ୍ୟକ୍ଷ ନ ହେଲେ ମଧ୍ୟ ବଟବୀଜ ବା ଶ୍ୟାମାକତଣ୍ଡୁଳ ଯେପରି ଅତିକ୍ଷୁଦ୍ର ହେଲେ ମଧ୍ୟ ପ୍ରକାଣ୍ଡ ବଟବୃକ୍ଷ ବା ଧାନ୍ୟଗୁଚ୍ଛ ଉତ୍ପାଦନ କରେ, ସେହିପରି ଅତୀନ୍ଦ୍ରିୟ ପରମାତ୍ମା ଏହି ବିରାଟ ବିଶ୍ୱ ରଚନା କରିଅଛନ୍ତି । ପ୍ରାଣାୟାମ, ପ୍ରତ୍ୟାହାର, ସମାଧି ଓ ଯୋଗରୂପକ ବଳବତ୍ ପ୍ରମାଣ, ଶାସ୍ତ୍ରବଚନ ଏବଂ ଆଚାର୍ଯ୍ୟଙ୍କ ଉପଦେଶ ସାହାଯ୍ୟରେ ଯେ ଆଧ୍ୟାତ୍ମିକ ଚିନ୍ତା କରିପାରନ୍ତି, ପରମାତ୍ମା ତାହାଙ୍କୁ ବରଣ କରନ୍ତି, ଅର୍ଥାତ୍ ତାହାଙ୍କୁ ନିଜସ୍ୱରୂପ ପ୍ରତ୍ୟକ୍ଷ କରାନ୍ତି ।

ବାଳର ଅଗ୍ରଭାଗକୁ ଶତଭାଗ କରି ପୁନଶ୍ଚ ଏକ ଏକ ଭାଗକୁ ସହସ୍ରଭାଗରେ ବିଭକ୍ତ କଲେ କେଶର ଯେପରି ଅତି ସୂକ୍ଷ୍ମଭାବ ହୁଏ, ସେହିପରି ଆତ୍ମା ମଧ୍ୟ ଅତି ସୂକ୍ଷ୍ମ ପଦାର୍ଥ । ତାହାଙ୍କୁ କର୍ମେନ୍ଦ୍ରିୟ ବା ଜ୍ଞାନେନ୍ଦ୍ରିୟ ସାହାଯ୍ୟରେ ଉପଲବ୍ଧି କରାଯାଇ ପାରେ ନାହିଁ । ଆତ୍ମାର ଜନ୍ମ ନାହିଁ, ଅତଏବ ମୃତ୍ୟୁ ମଧ୍ୟ ନାହିଁ ; ସେ ଶୁଷ୍କ ବା ଦଗ୍ଧ ହୁଅନ୍ତି ନାହିଁ । ଘାତ ପ୍ରତିଘାତ ହେଲେ ମଧ୍ୟ କମ୍ପିତ ହୁଅନ୍ତି ନାହିଁ । ଶାସ୍ତ୍ରାଦିଦ୍ୱାରା ଛିନ୍ନ ବା ଭିନ୍ନ ହୁଅନ୍ତି ନାହିଁ । ସେ ନିର୍ଗୁଣ, ତଥାପି ସକଳ ବିଷୟର ସାକ୍ଷୀ । ଏହି ହେତୁରୁ ପରମାତ୍ମା ଏକ ସ୍ୱତଃସିଦ୍ଧ ପଦାର୍ଥ । ସେ ସିଦ୍ଧ ପଦାର୍ଥ ଅଥଚ ନୈୟାୟିକମାନଙ୍କ କଳ୍ପିତ ସିଦ୍ଧ ପଦାର୍ଥ ଭଳି ଅଶୁଦ୍ଧ ନୁହନ୍ତି । କୌଣସି ପ୍ରକାର ସ୍ୱାଭାବିକ ମଳ ତାହାଙ୍କଠାରେ ନ ଥିବା ହେତୁରୁ ସେ ଶୁଦ୍ଧ । ତାହାଙ୍କର କୌଣସି ଅବୟବ ନାହିଁ; ସେ କେବଳ ଆତ୍ମସ୍ୱରୂପୀ; ଅର୍ଥାତ୍, ତାହାଙ୍କର ଆତ୍ମଭାବ ଭିନ୍ନ ଅନ୍ୟ କୌଣସି ଭାବ ନାହିଁ । ଏହି ହେତୁରୁ ତାଙ୍କଠାରେ ସଜାତୀୟ ବା ବିଜାତୀୟ ଭେଦ ନାହିଁ । ସେ ଦୁର୍ଲକ୍ଷ୍ୟ ବୋଲି ସୂକ୍ଷ୍ମ ଆତ୍ମାଙ୍କୁ ବୁଝାଇବା ନିମନ୍ତେ ଶ୍ରୁତିରେ ଯେଉଁ ଷୋଡ଼ଶବିଧ କଳାର (ଅବୟବର) କଥା କୁହାଯାଇଛି, ପରମାତ୍ମାଙ୍କଠାରେ ତାହା କିଛି ନାହିଁ । ସେଥିପାଇଁ ସେ ନିଷ୍କଳ ବା ନିଶ୍ଚଳ—କହିଲେ ମଧ୍ୟ କୌଣସି ପ୍ରକାର ମଳ ତାଙ୍କୁ ଦୂଷିତ କରିପାରେ ନାହିଁ । ଯଦ୍ୟପି ବହୁପ୍ରକାର ଅଭାବଦ୍ୱାରା ଆତ୍ମାର ସ୍ୱରୂପ ନିର୍ଦ୍ଦେଶ କରାଯାଇଛି, ତଥାପି ସେଥିରେ ସେ ଅଭିମାନ କରନ୍ତି ନାହିଁ । ସେହି ହେତୁରୁ ସେ ସାଂଖ୍ୟଦର୍ଶନପରିକଳ୍ପିତ ଅହଂକାର-ତତ୍ତ୍ୱବର୍ଜିତ । କେବଳ ସେତିକି ନୁହେଁ, ଶବ୍ଦ, ସ୍ପର୍ଶ; ରୂପ, ରସ ଓ ଗନ୍ଧ ମଧ୍ୟ ତାହାଙ୍କଠାରେ

ନାହିଁ, ଅତଏବ ଆକାଶ, ବାୟୁ, ତେଜ, ଜଳ ଓ ପୃଥିବୀର କୌଣସି ସମ୍ବନ୍ଧ ତାହାଙ୍କଠାରେ ନାହିଁ । ସେ ଏପରି ବା ସେପରି—ଇତ୍ୟାଦି ବିକଳ୍ପର ବିଷୟ ମଧ୍ୟ ନୁହଁନ୍ତି । ସେ ନିରାକାଙ୍କ୍ଷ୍ୟ, ଅଥଚ ସର୍ବବ୍ୟାପୀ, ଅତଏବ ସକଳ ବିଷୟ ସର୍ବଦା ତାହାଙ୍କର ଅଧିକୃତ ଅଟେ । ଏହି ହେତୁରୁ କୌଣସି ବିଷୟରେ ଅଭାବଜନିତ ପ୍ରାପ୍ତିର ଆକାଙ୍କ୍ଷା ତାହାଙ୍କଠାରେ ନାହିଁ । ସେ ଅଶୁଦ୍ଧ, ପାପୀ, ଚଣ୍ଡାଳ ଆଦି ପ୍ରାଣୀମାନଙ୍କୁ ପବିତ୍ର କରନ୍ତି; କିନ୍ତୁ ସେ ନିଜେ ପବିତ୍ର ହେବା ନିମନ୍ତେ ଅନ୍ୟ କିଛି ପ୍ରୟୋଜନ ନାହିଁ; କାରଣ, ସେ ନିତ୍ୟ ଓ ପବିତ୍ର । ସେ ସ୍ୱୟଂ ନିଷ୍କ୍ରିୟ, ଅତଏବ କୌଣସିପ୍ରକାର ସଂସ୍କାରକର୍ମ ତାହାଙ୍କୁ ସଂସ୍କାରିତ କରିପାରେ ନାହିଁ । କେବଳ ସେତିକି ନୁହେଁ, ଶ୍ରବଣମନନ ପ୍ରଭୃତି କର୍ମ ମଧ୍ୟ ଆତ୍ମାର କୌଣସି ସଂସ୍କାର ଜନ୍ମାଇ ପାରେ ନାହିଁ । (କାରଣ, ଶ୍ରବଣଦ୍ୱାରା ଅସମ୍ଭାବନା ଦୋଷ ଓ ମନନରୁ ବିପରୀତ ଭାବନା ଦୋଷ ନିବୃତ୍ତି ହୁଏ ସତ; କିନ୍ତୁ ତାହା ବୁଦ୍ଧିର ଦୋଷ । ସେହି ଦୋଷଦ୍ୱୟ ଅପସାରିତ ହେଲେ ସମାଧିକାଳରେ ଆତ୍ମାର ନିତ୍ୟ-ସିଦ୍ଧ ଶୁଦ୍ଧ-ବୁଦ୍ଧ-ମୁକ୍ତସ୍ୱଭାବ ପ୍ରତ୍ୟକ୍ଷ ହୁଏ) ସେହି ପରମାତ୍ମା ପରମପୁରୁଷ ଜୀବର ଆରାଧ୍ୟ ଓ ଆଶ୍ରୟ ଅଟନ୍ତି । ଏ ବିଷୟ କୈବଲ୍ୟଶ୍ରୁତିରେ ମଧ୍ୟ ଉକ୍ତ ଅଛି—

"ଅଚିନ୍ତ୍ୟମବ୍ୟକ୍ତମନନ୍ତରୂପଂ ଶିବଂ ପ୍ରଶାନ୍ତମମୃତଂ ବ୍ରହ୍ମଯୋନିମ୍ ।
ତଥାଦିମଧ୍ୟାନ୍ତବିହୀନମେକଂ ବିଭୁଂ ଚିଦାନନ୍ଦମରୂପମଦ୍ଭୁତମ୍ ॥
(ବ୍ରହ୍ମ ଧ୍ୟାୟେତ୍) । କୈବଲ୍ୟୋପନିଷତ୍ ଖ ୧ । ୬ ।

ଅର୍ଥାତ୍—ଯେ ବାକ୍ୟ ଓ ମନର ଅଗୋଚର, ଅବ୍ୟକ୍ତ ଓ ଅନନ୍ତରୂପ, ଯେ ମଙ୍ଗଳମୟ ଓ ପ୍ରଶାନ୍ତ, ତ୍ରିକାଳାତୀତ ଏବଂ ନିଖିଳବ୍ରହ୍ମାଣ୍ଡର ଉତ୍ପତ୍ତିହେତୁ, ଯାହାଙ୍କର ଆଦି, ମଧ୍ୟ ଓ ଅନ୍ତ କିଛିହିଁ ନାହିଁ, ଯେ ଏକ, ଅଦ୍ୱିତୀୟ, ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ନିତ୍ୟ, ଚୈତନ୍ୟ, ସୁଖସ୍ୱରୂପ ଏବଂ ରୂପାଦିବିହୀନ, ଅରୂପ, ସେହି ଅଦ୍ଭୁତ ପରମାତ୍ମାଙ୍କୁ ଧ୍ୟାନ କରିବ । ଏବଂବିଧ ପରମାତ୍ମତତ୍ତ୍ୱଜ୍ଞାନକୁ ଲକ୍ଷ୍ୟ କରି ମହାମୁନି ବାଦରାୟଣ ଆଚାର୍ଯ୍ୟ—ଜୈମିନିଙ୍କ ବେଦୋକ୍ତ ଯଜ୍ଞାଦି କର୍ମକାଣ୍ଡକୁ ନିଷେଧ କରି ସୂତ୍ର ରଚନା କରିଅଛନ୍ତି—

"ଅଧିକୋପଦେଶାତ୍ତୁ ବାଦରାୟଣସ୍ୟୈବଂ ତଦ୍ଦର୍ଶନାତ୍ ।"
ବେ: ଦ: ୩ । ୪ । ୮ ।

ଅର୍ଥ— ତୁ (କିନ୍ତୁ, ଅର୍ଥାତ୍ ପୂର୍ବୋକ୍ତ ବୈଦିକ ଯଜ୍ଞାଦି କର୍ମକାଣ୍ଡ ମତ ଯଥାର୍ଥ ନୁହେଁ) ଅଧିକୋପଦେଶାତ (ଜୀବ ଅପେକ୍ଷା ଅଧିକ, ଅର୍ଥାତ୍ ଶ୍ରେଷ୍ଠ ବସ୍ତୁ ପରମାତ୍ମାଙ୍କର ଉପଦେଶରୁ) ଏବଂ ବାଦରାୟଣସ୍ୟ (ଏହିପରି ବାଦରାୟଣଙ୍କ ମତ), ତଦଦର୍ଶନାତ୍ (ଅର୍ଥାତ୍ ପରମାତ୍ମା ଜୀବ ଅପେକ୍ଷା ଶ୍ରେଷ୍ଠ; ଏକଥା ବେଦରେ ଉକ୍ତ ହୋଇଥିବାରୁ ତାହା ଉକ୍ତ ହୋଇଅଛି) । ନିମ୍ନଲିଖିତ

ଶ୍ରୁତିବାକ୍ୟମାନଙ୍କରେ ପରମାତ୍ମା ଜୀବ ଅପେକ୍ଷା ଶ୍ରେଷ୍ଠ—ଏ ବିଷୟରେ ଉପଦେଶ ଦିଆଯାଇଛି—

**ଯଃ ସର୍ବଜ୍ଞଃ ସର୍ବବିତ୍ ।** (ମୁଣ୍ଡକ ଉ: ୧ । ୧ । ୯)

**ଭୀଷା ଅସ୍ମାଦ୍ ବାତଃ ପାବତେ ।** (ତୈତ୍ତିରୀୟ-୨ । ୮ । ୧)

ତାହାଙ୍କ, ଅର୍ଥାତ୍ ପରମାତ୍ମାଙ୍କ ଭୟରେ ବାୟୁ ପ୍ରବାହିତ ହୁଏ ଇତ୍ୟାଦି । ଏତାଦୃଶ ପରମାତ୍ମା ପରମେଶ୍ୱରଙ୍କୁ ଜାଣିବା ପରେ କାହାରି ମଧ୍ୟ କର୍ମ ବିଷୟରେ ପ୍ରବୃତ୍ତି ହୁଏ ନାହିଁ ; କାରଣ, ସ୍ୱର୍ଗଲାଭ ନିମନ୍ତେ କର୍ମରେ ପ୍ରବୃତ୍ତି ହେବା କଥା; କିନ୍ତୁ ପରମାତ୍ମାଙ୍କୁ ଜାଣିବା ପରେ ସ୍ୱର୍ଗସୁଖ ତୁଚ୍ଛ ବୋଲି ବୋଧ ହୁଏ । ଆତ୍ମଜ୍ଞାନ-ଲାଭଦ୍ୱାରା ପରମାତ୍ମାଙ୍କୁ ଲାଭ କରାଯାଏ—ଏହା ଶ୍ରୁତିରେ ଉକ୍ତ ହୋଇଅଛି । ଅତଏବ ପରମାତ୍ମଲାଭ ନିମନ୍ତେ ଆତ୍ମଜ୍ଞାନ ଛଡ଼ା ଅନ୍ୟ କୌଣସି କର୍ମର ପ୍ରୟୋଜନୀୟତା ନ ଥାଏ ।

ପୂର୍ବୋକ୍ତ "ଅଧିକୋପଦେଶାତ୍" ଇତ୍ୟାଦି ବେଦାନ୍ତସୂତ୍ରର ଶାଙ୍କରଭାଷ୍ୟ ଏହିପରି—ତୁଦୋତ୍ ପକ୍ଷୋ ବିପରିବର୍ତ୍ତିତେ ।

**ଯଦୁକ୍ତଂ "ଶେଷତ୍ୱାତ୍ ପୁରୁଷାର୍ଥବାଦଃ" ଇତି ।** (ବେ: ସୂ: ୩-୪-୨ )

**"ତନ୍ନୋପପଦ୍ୟତେ । କସ୍ମାତ୍ । ଅଧିକୋପଦେଶାତ୍ । ଯଦି ସଂସାର୍ୟେବାତ୍ମା ଶାରୀରଃ କର୍ତ୍ତା ଭୋକ୍ତା ଚ ଶରୀରମାତ୍ରବ୍ୟତିରେକେଣ ବେଦାନ୍ତେଷୂପଦିଷ୍ଟଃ ସ୍ୟାତ୍, ତତସ୍ତତୋ ବର୍ଣ୍ଣିତେନ ପ୍ରକାରେଣ ଫଳଶ୍ରୁତେ-ରର୍ଥବାଦତ୍ୱଂ ସ୍ୟାତ୍ । ଅଧିକଂ ତୁ ଶାରୀରାଦାତ୍ମନୋଽସଂସାରୀଶ୍ୱରଃ କର୍ତ୍ତୃତ୍ୱାଦସଂସାରଧର୍ମରହିତୋଽପହତପାପ୍ମତ୍ୱାଦିବିଶେଷଣକଃ ପରମାତ୍ମା ବେଦ୍ୟତ୍ୱେନୋପଦିଶ୍ୟତେ ବେଦାନ୍ତେଷୁ ।।"**

ଅର୍ଥ—ସୂତ୍ରସ୍ଥ ତୁ ଶବ୍ଦ ପ୍ରୋକ୍ତ ପୂର୍ବପକ୍ଷର (ଉତ୍ଥାପିତ ଆପତ୍ତିର) ନିବାରକ । ଅର୍ଥାତ୍ ଆତ୍ମତତ୍ତ୍ୱଜ୍ଞାନ କର୍ମର ଅନ୍ୟତମ ଅଙ୍ଗ ଓ ତଦୁପଲକ୍ଷ୍ୟରେ କଥିତ ଫଳବାକ୍ୟ ତାହାର ଅର୍ଥବାଦ ବୋଲି ଯାହା ପୂର୍ବେ କୁହାଯାଇଛି, ସେ କଥା ସତ୍ୟ ନୁହେଁ ବା ସେକଥା ଉପପନ୍ନ ହୁଏ ନାହିଁ । କାରଣ, ଅଧିକ ଉପଦେଶ ଦୃଷ୍ଟ ହୁଏ । (ଯଦି···ଇତ୍ୟନ୍ତ)—ବେଦାନ୍ତରେ ଯଦି ସକଳ ଦେହାତିରିକ୍ତ କର୍ତ୍ତା ଓ କର୍ମଫଳ ଭୋକ୍ତା ସଂସାରୀ ଆତ୍ମା ଉପଦିଷ୍ଟ ହୋଇଥାନ୍ତେ

ତାହାହେଲେ ଅବଶ୍ୟ ସେହି ସେହି ଫଳଶ୍ରୁତିକୁ ଉକ୍ତ ପ୍ରକାରରେ ଅର୍ଥବାଦ-ବାକ୍ୟ ବୋଲି କୁହାଯାଇଥାନ୍ତା; କିନ୍ତୁ ପ୍ରକୃତରେ ସେଡକ କେବଳ ଅଭିହିତ ନୁହେଁ । ବେଦାନ୍ତଦର୍ଶନରେ କେବଳ ଅସଂସାରୀ ପରମାତ୍ମାହିଁ ବେଦ୍ୟ ବା ବିଜ୍ଞେୟ ବୋଲି ଉପଦିଷ୍ଟ ହୋଇଅଛନ୍ତି । ସେହି ଅନୁସାରେ ତାହାଙ୍କୁ କର୍ତ୍ତୃତ୍ୱାଦି ସର୍ବଧର୍ମରହିତ ନିଷ୍ପାପ, ନିର୍ଲିପ୍ତ, ଉଦାସୀନ ଓ ପରମାତ୍ମା ବୋଲି ଜାଣିବାକୁ ହେବ । ଏହା ପ୍ରକୃତରେ ବେଦାନ୍ତର ଉପଦେଶ ।

ଆହୁରି ମଧ୍ୟ—

"ସର୍ବତ୍ର ପ୍ରସିଦ୍ଧୋପଦେଶାତ୍ ।"

ବେ: ସ: । ୧ । ୨ । ୧ ।।

ଅର୍ଥ—ସକଳ ବେଦାନ୍ତଶାସ୍ତ୍ରରେ ବ୍ରହ୍ମଙ୍କର ଆଲମ୍ବନସ୍ୱରୂପ ପରମାତ୍ମା କେବଳ ପ୍ରସିଦ୍ଧ ବୋଲି ଉପଦିଷ୍ଟ ହୋଇଅଛନ୍ତି । ଅତଏବ ପରମାତ୍ମା କେବଳ ଉପାସ୍ୟ, ଜୀବ ନୁହେଁ * । କାରଣ, ସକଳ ବେଦାନ୍ତଦର୍ଶନରେ ଜଗତ୍‌ଜନ୍ମାଦିର ହେତୁରୂପରେ ପ୍ରସିଦ୍ଧ ବ୍ରହ୍ମୈକାନ୍ତ ଧର୍ମସମୂହ, ପୂର୍ବବାକ୍ୟରେ

"ତଜ୍ଜଲାନ୍" "ସର୍ବଂ ଖଳ୍ୱିଦଂ ବ୍ରହ୍ମ ।"

—ଇତ୍ୟାଦି ଶ୍ରୁତିବାକ୍ୟଦ୍ୱାରା ବ୍ରହ୍ମଶବ୍ଦର ଆଲମ୍ବନରୂପରେ ପରମାତ୍ମାଙ୍କଠାରେ କେବଳ ଲକ୍ଷ୍ୟ କରା ହୋଇଅଛି । ଏଠାରେ ଆତ୍ମା ମନୋମୟତ୍ୱାଦି ଧର୍ମଦ୍ୱାରା ବିଶିଷ୍ଟରୂପରେ କଥିତ ହୋଇ, ପୁନଶ୍ଚ "ବ୍ରହ୍ମ" ବୋଲି ଆଖ୍ୟାତ ହୋଇ ଅଛନ୍ତି । ଅତଏବ ସେ ଜୀବାତ୍ମା ନୁହଁନ୍ତି ; କିନ୍ତୁ ପରମାତ୍ମା । ଅତଏବ ଏଠାରେ ପରମାତ୍ମା କେବଳ ଉପାସ୍ୟ ବୋଲି ଉପଦିଷ୍ଟ ହୋଇଅଛନ୍ତି ।

ଆହୁରି ମଧ୍ୟ—ଏହି ଉକ୍ତିର ଲକ୍ଷ୍ୟ ପରିତ୍ୟାଗରୂପକ 'ପ୍ରକୃତହାନି' ବା ଅବିଷୟର ପ୍ରତିପାଦନରୂପକ 'ଅପ୍ରକୃତ ପ୍ରକ୍ରିୟା'—ଦୋଷ ହୋଇ ନ ପାରେ । କାରଣ, ଏଠାରେ ମନୋମୟତ୍ୱାଦିଧର୍ମକୁ ଆତ୍ମାର 'ଉପାଧି' ମାତ୍ର କୁହା ହୋଇଅଛି; ପରିଣାମୀ ଗୁଣ ନୁହେଁ । ସୁତରାଂ ମନୋମୟତ୍ୱାଦି ଧର୍ମବିଶିଷ୍ଟ ଆତ୍ମା କେବଳ ପରମାତ୍ମା ।

* ସର୍ବତ୍ର ସର୍ବେଷ୍ୱେ ବେଦାନ୍ତେଷୁ ପ୍ରସିଦ୍ଧବ୍ରହ୍ମୋପଦେଶାତ୍ ବେଦାନ୍ତବେଦ୍ୟସ୍ୟ ବ୍ରାହ୍ମଣ ଏବ ଉପଦେଶାତ ଛାନ୍ଦୋଗ୍ୟବାକ୍ୟେଽପି ବ୍ରହ୍ମୋପଦେଶୋ ନିଶ୍ଚୀୟତେ । ତଥାଚ୍ଚ ନ ଜୀବ ଉପାସ୍ୟ ଇତି ବର୍ତ୍ତିତାର୍ଥଃ । ଅର୍ଥାତ୍—ଛାନ୍ଦୋଗ୍ୟ ଉପନିଷଦ୍‌ରେ 'ଏହି ସମସ୍ତ ବ୍ରହ୍ମ' ଇତ୍ୟାଦିକ୍ରମରେ ଯେଉଁ ଉପାସନା ଅଭିହିତ ହୋଇଅଛି, ତାହା ବ୍ରହ୍ମଙ୍କର ଉପାସନା, ଜୀବର ନୁହେଁ । କାରଣ ଏହି ଯେ, ସକଳ ବେଦାନ୍ତଶାସ୍ତ୍ରରେ ପ୍ରସିଦ୍ଧ ବ୍ରହ୍ମ କେବଳ ଉପାସ୍ୟରୂପରେ ଉପଦିଷ୍ଟ ହେବା ଦେଖାଯାଏ ।

"ସର୍ବତ୍ର ପ୍ରସିଦ୍ଧୋପଦେଶାତ୍ ।"

ବ୍ରହ୍ମଙ୍କର ଯେଉଁ ସକଳ ଉପଦେଶ ସର୍ବତ୍ର ସକଳ ବେଦାନ୍ତଶାସ୍ତ୍ରରେ) ପ୍ରସିଦ୍ଧ, ସେହି ସକଳ ଗୁଣ ଏଠାରେ ଉପଦିଷ୍ଟ ହୋଇଅଛି । ବ୍ରହ୍ମ ହିଁ ଜଗତର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ—ଏହା ସକଳ ବେଦାନ୍ତଶାସ୍ତ୍ରରେ ପ୍ରସିଦ୍ଧ । ଯେଉଁ ଶ୍ରୁତିବାକ୍ୟ ଏହା ପୂର୍ବରୁ ଉଦ୍ଧୃତ କରାଗଲା, ସେଥିରେ "ତଜ୍ଜଲାନ୍" ଶବ୍ଦରେ ବ୍ରହ୍ମଙ୍କର ଏହି ଗୁଣ ଲକ୍ଷ୍ୟ କରାହୋଇଅଛି । ତଜ୍ଜ ( ତତ୍ + ଜ ) ଅର୍ଥାତ୍ ତାହାଙ୍କଠାରୁ ଜାତ, ତଲ୍ଲ ( ତତ୍ + ଲ ) ଅର୍ଥାତ୍ ତାହାଙ୍କଠାରେ ବିଲୀନ, ତଦନ (ତତ୍ + ଅନ) ଅର୍ଥାତ୍ ତାହାଙ୍କଠାରୁ ହିଁ ଚେଷ୍ଟାଯୁକ୍ତ । ତଜ୍ଜ ତଲ୍ଲ ଓ ତଦନ—ଏହି ତିନଗୋଟି ଶବ୍ଦର ମେଳନ ଏବଂ ତନ୍ମଧ୍ୟବର୍ତ୍ତୀ ତତ୍ ଶବ୍ଦର ଲୋପରୁ "ତଜ୍ଜଲାନ"—ଶବ୍ଦ ସିଦ୍ଧ ହୁଏ । "ତଜ୍ଜଲାନମ୍" ଶବ୍ଦ କେବଳ ବୈଦିକଭାଷା ଅନୁସାରେ "ତଜ୍ଜଲାନ୍" ଶବ୍ଦଦ୍ୱାରା କଥିତ ହୋଇଅଛି । ଉପରଲିଖିତ ଶ୍ରୁତିବାକ୍ୟର ପ୍ରାରମ୍ଭରେ ଯେଉଁ ବ୍ରହ୍ମଙ୍କର ଉଲ୍ଲେଖ କରାଯାଇଛି, ସେହି କେବଳ ମନୋମୟାଦି ଧର୍ମବିଶିଷ୍ଟ ବୋଲି ପ୍ରତିପାଦିତ ମନୋମୟ ପ୍ରଭୃତି ଶବ୍ଦ ସହଗୃହୀତଭାବରେ ବ୍ରହ୍ମଙ୍କ ଉଲ୍ଲେଖ ଥିବାରୁ ସେହି ସକଳ ଶବ୍ଦଦ୍ୱାରା ବ୍ରହ୍ମ କେବଳ ଲକ୍ଷିତ ବୋଲି ବୁଝିବାକୁ ହେବ । ଆହୁରି ମଧ୍ୟ, ଏଠାରେ ଜୀବର କୌଣସି ଉଲ୍ଲେଖ ନାହିଁ । ଅତଏବ ଜୀବକୁ ଲକ୍ଷ୍ୟ କରିବା ସଙ୍ଗତ ନୁହେଁ ।

"ବିବକ୍ଷିତ ଗୁଣୋପପତ୍ତେଶ୍ଚ ।" ବେ: ସ: ୧ । ୨ । ୨ ।

ଉପାସନାର ଉପାଦେୟରୂପରେ ବିବକ୍ଷିତ ସତ୍ୟ ସଙ୍କଳ୍ପାଦି ଗୁଣ କେବଳ ପରମାତ୍ମାଙ୍କଠାରେ ପ୍ରଯୋଜ୍ୟ, ଅତଏବ ପରମାତ୍ମା ହିଁ ଉପାସ୍ୟ । ଉପାସ୍ୟ ବା

"ଶାସ୍ତ୍ରଯୋନି"

ପରମାତ୍ମା କେବଳ ଆଦି ବିଦ୍ୟାରୂପରେ ମୂଖ୍ୟ ବିବେକସ୍ୱରୂପ; 'ବେଦ' ଶବ୍ଦବାଚ୍ୟ ସାଂକେତିକ ଅର୍ଥଯୁକ୍ତ, ସ୍ୱୟଂସିଦ୍ଧ ଅଭିପ୍ରାୟାତ୍ମକ ମୁକ୍ତଜ୍ଞାନ ବା ନିର୍ଗୁଣଭାବ । ସେହି ସ୍ୱୟଂସିଦ୍ଧ ଚରମଲଭ୍ୟ ବସ୍ତୁ ପରମ ଉପାସ୍ୟ; ସେହି ଆନନ୍ଦମୟ ବିବେକଜ୍ଞାନ ସେହି ପରମାତ୍ମାଙ୍କର ଲକ୍ଷଣ ବା ମୁଖ୍ୟପ୍ରାଣ । ସେହି ଚିଦ୍‌ରୂପକ ମନ୍ତ୍ରମାର ବିକ୍ଷେପ ଯୋଗରେ 'ବିବକ୍ଷା' ଯୁକ୍ତ ହୋଇ, ଅର୍ଥାତ୍ ଇଚ୍ଛାଯୁକ୍ତ ଅହଂଭାବାତ୍ମକ ସଙ୍କଳ୍ପଗୁଣ ବା ଉପାଧିଯୁକ୍ତ ହୋଇ ଯାହା ଉପାଦେୟତ୍ୱରୂପରେ ଉପଦିଷ୍ଟ ହୋଇଛି, ତାହା ପରମାତ୍ମାଙ୍କଠାରେ ହିଁ ଉପପନ୍ନ ହୁଏ । କାରଣ, ତାଙ୍କର ଏହି ମୁଖ୍ୟଜ୍ଞାନ ସ୍ୱରୂପତ୍ୱର ସତ୍ୟ-ସଙ୍କଳ୍ପାଦି ଗୁଣର ବା ଉପାଧିର ଅଭିବ୍ୟକ୍ତିରୁ ସୃଷ୍ଟିର ପ୍ରକାଶ ହୁଏ (?) ଅର୍ଥାତ୍ ପରମାତ୍ମାଙ୍କର ଯେତେବେଳେ ଯାହା ଇଚ୍ଛା ହୁଏ, ସେତେବେଳେ କେବଳ ତାହା ସଙ୍ଘଟିତ ହୁଏ ।

"ଆକାଶାତ୍ମା"

ଅର୍ଥାତ୍ ଆକାଶ ତୁଲ୍ୟ ଆତ୍ମା ଯାହାଙ୍କର ସେହି ପରଂବ୍ରହ୍ମ ( ଅର୍ଥାତ୍ ଆକାଶ ଯେପରି ସର୍ବତ୍ର ଅବସ୍ଥିତ, ଅଥଚ ନିର୍ଲେପକ, ପରଂବ୍ରହ୍ମ ମଧ୍ୟ ସେହିପରି ସର୍ବତ୍ର ଅବସ୍ଥିତ ଓ ନିର୍ଲେପକ) ଏହିପରି ଅପର ସକଳ ଗୁଣ ପରଂବ୍ରହ୍ମଙ୍କର କେବଳ ଅଛି, ଜୀବର ନାହିଁ । ଏହି ସବୁ ବିବକ୍ଷିତ ଗୁଣ ଉପପନ୍ନ ହେତୁରୁ ପରମାତ୍ମା କେବଳ ଉପାସ୍ୟ * ଜୀବ ନୁହେଁ ।

"ଅନୁପପତ୍ତେସ୍ତୁ ନ ଶାରୀରଃ ।" ବେ: ସୂ: ୧ । ୨ । ୩ ।

ଅର୍ଥ—ଅନୁପପତ୍ତେଃ ( ଯୁକ୍ତିଯୁକ୍ତ ନୁହେଁ—ସେହି କାରଣରୁ ) ତୁ ( ନିଶ୍ଚୟ ) ନ ଶାରୀରଃ (ଜୀବ ହୋଇପାରେ ନାହିଁ) । ପୂର୍ବସୂତ୍ରରେ କୁହାଯାଇଅଛି ଯେ, ଶ୍ରୁତିରେ ଯେଉଁ ଗୁଣାବଳୀର ଉଲ୍ଲେଖ ହୋଇଅଛି, ସେ ସବୁ ବ୍ରହ୍ମଙ୍କ ସମ୍ବନ୍ଧରେ କେବଳ ଯୁକ୍ତିଯୁକ୍ତ ହୋଇପାରେ । ବର୍ତ୍ତମାନ ଏହି ସୂତ୍ରରେ ବର୍ଣ୍ଣନା କରାଯାଉଛି ଯେ, ସେହିସବୁ ଗୁଣ ଜୀବସମ୍ବନ୍ଧରେ ପ୍ରୟୋଗ କରିବା ଯୁକ୍ତିଯୁକ୍ତ ନୁହେଁ । ଯେ ଶରୀରରେ ରହେ ସେ ଶାରୀର ଅର୍ଥାତ୍ ଜୀବ । ବ୍ରହ୍ମ ମଧ୍ୟ ଶରୀରରେ ରହନ୍ତି; କିନ୍ତୁ ସେ ଶରୀର ଭିତରେ କେବଳ ନୁହେଁ, ବାହାରେ ମଧ୍ୟ ରହିଥାନ୍ତି । ଜୀବ ଶରୀରଭିତରେ କେବଳ ରହେ; ଅତଏବ ବ୍ରହ୍ମଙ୍କୁ ଶାରୀର ବୋଲି କୁହାଯାଇ ନାହିଁ । ଜୀବ କେବଳ ଶାରୀର ।

"କର୍ମ କର୍ତ୍ତୃବ୍ୟପଦେଶାଚ୍ଚ ।" ବେ: ସୂ: ୧ । ୨ । ୪ ।

ବ୍ରହ୍ମ, କର୍ମ ଓ ଜୀବ କର୍ତ୍ତା ଏପରି ବ୍ୟପଦେଶ ବା ଉଲ୍ଲେଖ ଅଛି (ଏହି ହେତୁରୁ ମନୋମୟ ପ୍ରଭୃତି ଗୁଣଯୁକ୍ତ ବସ୍ତୁ ଜୀବ ହୋଇ ପାରେ ନାହିଁ, ଏହା ବ୍ରହ୍ମ) । ଏହି ଆଲୋଚନାବିଷୟକ ଶ୍ରୁତିବାକ୍ୟ ଉପରେ କଥିତ ଅଛି—

"ଏତଂ ଇତଃ ପ୍ରେତ୍ୟ ଅଭିସମ୍ଭବିତା ଅସ୍ମି ।"

ଏତଂ ଅର୍ଥାତ୍ ମନୋମୟତ୍ୱ ପ୍ରଭୃତି ଗୁଣଯୁକ୍ତ ଏହି ବସ୍ତୁ ବା ବ୍ରହ୍ମଙ୍କୁ, ଇତଃ ପ୍ରେତ୍ୟ; ଅର୍ଥାତ୍, ଏହି ପୃଥିବୀରୁ ପରଲୋକକୁ ପ୍ରୟାଣ କରିବା ସମୟରେ, ଅଭିସମ୍ଭବିତା ଅସ୍ମି—ପ୍ରାପ୍ତ ହେବି । ଜୀବ ଏହି ବସ୍ତୁକୁ ପ୍ରାପ୍ତ ହେବ ବୋଲି ଉଲ୍ଲେଖ ଥିବାରୁ ଏହି ପ୍ରାପ୍ତ ବସ୍ତୁ ଜୀବ ହୋଇ ପାରିବ ନାହିଁ ।

* ବିବକ୍ଷିତା ଉପାସନାର୍ଥମୁପାଦେୟତ୍ୱେନାଭିହିତା ଗୁଣାଃ ସତ୍ୟସଂକଳ୍ପତ୍ୱାଦୟଃ ତେଷାମୁପପତ୍ତିଃ ସଙ୍ଗତିଃ ବ୍ରହ୍ମଣ୍ୟେବ ଯତୋ ଭବତି, ତତୋ ବ୍ରହ୍ମୈବୋପାସ୍ୟମିତ୍ୟୁକ୍ତୋସ୍ମି । ଅର୍ଥାତ୍ ଯେଉଁ କାରଣରୁ ଉପାସନାର୍ଥେ ସମାଦେୟ ସତ୍ୟସଂକଳ୍ପାଦି ଗୁଣ କେବଳ ପରଂବ୍ରହ୍ମଙ୍କଠାରେ ସଙ୍ଗତ ହୁଏ, ସେହି ହେତୁରୁ ପରଂବ୍ରହ୍ମ କେବଳ ଉପାସ୍ୟ ।

"ଶବ୍ଦବିଶେଷାତ୍ ।" ବେ: ସୂ: ୧ । ୨ । ୫ ।

ଶତପଥ ବ୍ରାହ୍ମଣରେ ଏହି ପ୍ରକରଣ ଉପଲକ୍ଷ୍ୟରେ ଉଲ୍ଲେଖ ଅଛି—

**"ଯଥା ବ୍ରୀହିର୍ବା ଯବୋ ବା ଶ୍ୟାମାକୋ ବା ଶ୍ୟାମାକତଣ୍ଡୁଲୋ ବା ଏବଂ ଅୟଂ ଅନ୍ତରାତ୍ମନ୍ ପୁରୁଷୋ ହିରଣ୍ମୟଃ ଯଥା ଜ୍ୟୋତିରଧୂମମ୍ ॥"**

ଅର୍ଥାତ୍—ଧାନ, ଯବ ଶ୍ୟାମାକ ବା ଶୁଆଁ, ଅଥବା ଶ୍ୟାମାକଧାନ୍ୟର ତଣ୍ଡୁଳ ଯେପରି ସୂକ୍ଷ୍ମ, ସେହିପରି ଜୀବାତ୍ମା-ମଧ୍ୟରେ (ଅନ୍ତରାତ୍ମନ୍) ହିରଣ୍ମୟ ପୁରୁଷ ଧୂମହୀନ ଜ୍ୟୋତିପରି ଉଜ୍ଜ୍ୱଳ । ଅନ୍ତରାତ୍ମନ, ଅର୍ଥାତ୍ ଆତ୍ମାମଧ୍ୟରେ (ବୈଦିକ ନିୟମ ଅନୁସାରେ ଏଠାରେ ସପ୍ତମୀବିଭକ୍ତିର ଲୋପ ହୋଇଛି) । ଜୀବାତ୍ମାକୁ ବୁଝାଇବା ସକାଶେ ସପ୍ତମ୍ୟନ୍ତ— ଅନ୍ତରାତ୍ମନ ଶବ୍ଦ ଏଠାରେ ବ୍ୟବହୃତ ହୋଇଅଛି ଏବଂ ମନୋମୟତ୍ୱ-ପ୍ରଭୃତି ଗୁଣଯୁକ୍ତ ପୁରୁଷଙ୍କୁ ବୁଝାଇବା ସକାଶେ ପ୍ରଥମାବିଭକ୍ତିଯୁକ୍ତ ପୁରୁଷଶବ୍ଦ ବ୍ୟବହୃତ ହୋଇଛି । ଏହିସ୍ଥଳରେ ଦୁଇଟି ଭିନ୍ନ ଭିନ୍ନ ଶବ୍ଦର ବ୍ୟବହାର ହେତୁରୁ (ଶବ୍ଦ ବିଶେଷାତ୍) ବୁଝିବାକୁ ହୁଏ ଯେ, ମନୋମୟ ପ୍ରଭୃତି ଗୁଣଯୁକ୍ତ ପୁରୁଷ ଜୀବାତ୍ମାଠାରୁ ଭିନ୍ନ ।

"ସ୍ମୃତେଶ୍ଚ ।" ବେ: ସୂ: ୧ । ୨ । ୬ ।

ପୁରାଣ, ଇତିହାସ ଓ ସ୍ମୃତିଗ୍ରନ୍ଥମାନଙ୍କରେ ଉକ୍ତ ଅଛି ଯେ, ଜୀବ ଓ ବ୍ରହ୍ମ ଭିନ୍ନ । ଜୀବ ଉପାସକ ଓ ବ୍ରହ୍ମ ଉପାସ୍ୟ । ଗୀତାରେ ଉକ୍ତ ଅଛି—

**ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।**
**ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ॥** ୧୮ । ୬୧ ।

ଅର୍ଥାତ୍, ଈଶ୍ୱର ସକଳପ୍ରାଣୀମାନଙ୍କ ହୃଦୟରେ ଅବସ୍ଥାନ କରି ମାୟାଦ୍ୱାରା ସକଳପ୍ରାଣୀଙ୍କୁ ଯନ୍ତ୍ରଗୃହୀତ ଭଳି ଭ୍ରମଣ କରାନ୍ତି । ପୁନଶ୍ଚ—

**"କ୍ଷେତ୍ରଜ୍ଞଞ୍ଚାପି ମାଂ ବିଦ୍ଧି ସର୍ବକ୍ଷେତ୍ରେଷୁ ଭାରତ ।"**

ଅର୍ଥାତ୍ ସମସ୍ତ କ୍ଷେତ୍ରରେ (ଶରୀରରେ) ମୋତେ କ୍ଷେତ୍ରଜ୍ଞ ବା ଆତ୍ମା ବୋଲି ଜାଣ ।

**ଇତରବ୍ୟପଦେଶାଦ୍ଧିତାକରଣାଦିଦୋଷପ୍ରସକ୍ତିଃ ।**

ବେ: ସ: ୨ । ୧ । ୨୧ ।

ଜୀବର ବ୍ରହ୍ମ—ଅନନ୍ୟତ୍ୱ କଥନ ହେତୁରୁ ବ୍ରହ୍ମଙ୍କଠାରେ ହିତାକରଣାଦି—ଦୋଷ ହୋଇପାରେ । କୌଣସି ଶ୍ରୁତିରେ ଅଛି—

"ତତ୍ସୃଷ୍ଟ୍ୱା ତଦନୁପ୍ରାବିଶତ୍ ।"

ଅନ୍ୟତ୍ର ଦେଖାଯାଏ—

"ଜୀବାଦ୍ ଭବନ୍ତି ଭୂତାନି"—

ଏହିସବୁ ବାକ୍ୟରୁ ବୁଝାଯାଏ ଯେ, କେହି କେବଳ ପରମେଶ୍ୱରଙ୍କୁ କର୍ତ୍ତା ବୋଲି କହିଛନ୍ତି ଏବଂ ଅନ୍ୟ କେହି—ଜୀବଠାରୁ ଭୂତାଦି ଉତ୍ପନ୍ନ ବୋଲି କହିଛନ୍ତି । ଏହିପରି ନାନାମତଭେଦ ଦେଖାଯାଏ, ତାହାର ନିରାକରଣ କିପରି ହେବ ? ପୁନଶ୍ଚ ଜୀବ ଓ ବ୍ରହ୍ମଙ୍କୁ ଅନନ୍ୟ ବୋଲି ସ୍ୱୀକାର କଲେ ବ୍ରହ୍ମଙ୍କର କର୍ତ୍ତୃତ୍ୱ ଓ ଜୀବର କର୍ତ୍ତୃତ୍ୱ ଏକ ହେବାର ସମ୍ଭାବନା । ଅତଏବ ବ୍ରହ୍ମଙ୍କଠାରେ ଅହିତକରଣାଦି ଦୋଷ ପ୍ରସଙ୍ଗ ହେବ—ଏହିସବୁ ଶଙ୍କାର ସମାଧାନନିମିତ୍ତ ଏହି— ଜୀବର ଜଗତ୍କର୍ତ୍ତୃତ୍ୱ ସ୍ୱୀକାର କଲେ ପରିଶ୍ରମାଦିରୂପ ଅହିତକରଣ ଦୋଷର ପ୍ରସକ୍ତି ହେବ; ଅର୍ଥାତ୍, ଜୀବ ଯଦି କର୍ତ୍ତା ହୁଏ, ତେବେ ସେ ନିଜର ଶ୍ରମଦ୍ୱାରା ନିଜର ହିଁ ଅହିତକର ବନ୍ଧନାଗାର ନିର୍ମାଣ କରି ସେଥିରେ ପ୍ରବେଶ କରିବ ଓ ସ୍ୱୟଂ ନିର୍ମଳପ୍ରକୃତି ହୋଇ ମଧ୍ୟ ମଳିନ ଶରୀର ଆଶ୍ରୟ କରିବ; କିନ୍ତୁ ଅସମ୍ଭବ; କାରଣ କୌଣସି ସ୍ୱାଧୀନପ୍ରକୃତି ବୁଦ୍ଧିମାନ୍ ବ୍ୟକ୍ତି ତାହା କରିବ ନାହିଁ । ପୁନଶ୍ଚ, ସେ ଇଚ୍ଛା କଲେହେଁ ନିଜର ହିତକାର୍ଯ୍ୟ କରି ପାରିବ ନାହିଁ । ଅତଏବ ଜଗତନିର୍ମାଣ କାର୍ଯ୍ୟ ତା'ର ଇଚ୍ଛାର ଅଧୀନ ନୁହେଁ । ଏହି ଇଚ୍ଛା ଶକ୍ତି ଜୀବର ସ୍ୱୟଂସିଦ୍ଧ ନୁହେଁ । ଏହା ତାହାର ଗୌଣକାର୍ଯ୍ୟରୂପରେ ବ୍ରହ୍ମଙ୍କଠାରୁ ପ୍ରାପ୍ତ ସେହି ପରଂବ୍ରହ୍ମଙ୍କର ସତ୍ୟସଂକଳ୍ପରୂପକ ଅଦ୍ଭୁତ ମହିମାରୁ ବ୍ୟାବହାରିକ ଉପାଧିସ୍ୱରୂପରେ, ଅର୍ଥାତ୍ ଜୈବପ୍ରଜ୍ଞା ଉପଲବ୍ଧିରୂପରେ ଜଗତର ଉପାଦାନ କାରଣ ହୁଏ; ମୁଖ୍ୟକର୍ତ୍ତା ବା ନିମିତ୍ତକାରଣ ହୋଇ ପାରେ ନାହିଁ । ଏହା କେବଳ ପୂର୍ବୋକ୍ତ ଶ୍ରୁତିବାକ୍ୟର ଅର୍ଥ । ବର୍ତ୍ତମାନ ବିଷୟ ଆଶଙ୍କା ଏହି ଯେ, ଯଦି ବ୍ରହ୍ମ ପ୍ରକୃତରେ କର୍ତ୍ତା ହୁଅନ୍ତି, ତେବେ ପୂର୍ବୋକ୍ତ ଦୋଷସବୁ ବ୍ରହ୍ମଙ୍କଠାରେ ବି ପ୍ରବୃତ୍ତ ହୋଇପାରେ; ସେହିପରି ଚେତନବ୍ରହ୍ମ ଜଗତର କର୍ତ୍ତା ନ ହୋଇ ସାଂଖ୍ୟଦର୍ଶନର ପ୍ରଧାନ କେବଳ କର୍ତ୍ତା ହେବା କଥା କୁହାଯାଇ ପାରେ । ଏହି ଆଶଙ୍କାର ସମାଧାନସ୍ୱରୂପ ବାଦରାୟଣଙ୍କ ଉକ୍ତି—

ଅଧିକନ୍ତୁଭେଦନିର୍ଦ୍ଦେଶାତ୍ ।  ବେ: ସୂ: ୬ । ୧ । ୬୬ ।

ଅର୍ଥାତ୍ ଭେଦନିର୍ଦ୍ଦେଶଥିବା ହେତୁରୁ ବ୍ରହ୍ମ ଜୀବଠାରୁ ଅଧିକ (ଶ୍ରେଷ୍ଠ ବା ଉପରିସ୍ଥ) । ଅତଏବ

"ଆତ୍ମା ବା ଅରେ ଦ୍ରଷ୍ଟବ୍ୟ ।"

ଇତ୍ୟାଦି ଶ୍ରୁତିବାକ୍ୟ-ଅନୁସାରେ ଜୀବ ଓ ବ୍ରହ୍ମଙ୍କଠାରେ କ୍ରମଶଃ, କର୍ମ ଓ କର୍ତ୍ତୃତ୍ୱରୂପକ ଭେଦର ନିର୍ଦ୍ଦେଶ କରିଯାଇଅଛି । ଅର୍ଥାତ୍ ଜୀବ ଚେତନବ୍ରହ୍ମଙ୍କର କର୍ମଭୂତ ଉପାଧିରୂପରେ

ଜଗତର ନିର୍ମାଣରେ ହେତୁ ହେବାରୁ ବ୍ରହ୍ମଙ୍କଠାରୁ ଏହାର ଏହିପ୍ରକାର ବ୍ୟାବହାରିକ ଭେଦ ଅଛି । ଏହା ବାସ୍ତବିକ ଭେଦ ନୁହେଁ, କେବଳ ଅବିଦ୍ୟାକୃତ କାଳ୍ପନିକ ବା ବ୍ୟାବହାରିକ ଭେଦମାତ୍ର * ! ଅତଏବ ହିତକରଣାଦି ଅବିଦ୍ୟାକୃତ ଜୀବରୂପ ଉପାଧିର କେବଳ ଅଟେ, ବ୍ରହ୍ମଙ୍କର ନୁହେଁ; କାରଣ, ବ୍ରହ୍ମ ଉପାଧିରେ ନିର୍ଲିପ୍ତ । ମୁଣ୍ଡକ ଉପନିଷଦ୍‌ରେ ମଧ୍ୟ ଅଛି—

ସମାନେ ବୃକ୍ଷେ ପୁରୁଷୋ ନିମଗ୍ନୋଽ-
ନୀଶୟା ଶୋଚତି ମୁହ୍ୟମାନଃ ।
ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶ-
ମସ୍ୟମହିମାନମିତି ବୀତଶୋକଃ ॥

ଅର୍ଥାତ୍ ଜୀବ ଓ ବ୍ରହ୍ମ ପରମାର୍ଥରୂପରେ ଏକ ଦେହ ଆଶ୍ରୟ କରିଥିଲେ ମଧ୍ୟ, ଅବିଦ୍ୟାଶ୍ରିତ ଥିବା ହେତୁରୁ ଜୀବ ପରିଚ୍ଛିନ୍ନସ୍ୱରୂପ ଅଭିମାନର ବଶବର୍ତ୍ତୀ ହୋଇ ବ୍ରହ୍ମଙ୍କଠାରୁ ନିଜକୁ ଭିନ୍ନ ବୋଲି ଜ୍ଞାନ କରେ । ଯେତେବେଳେ ବ୍ରହ୍ମଜ୍ଞାନଦ୍ୱାରା ଆପଣାଠାରୁ ଅନ୍ୟ ଈଶଙ୍କୁ, ଅର୍ଥାତ୍ ନିଜଠାରୁ ବ୍ୟାବହାରିକ ଭେଦସ୍ୱରୂପରେ ବର୍ତ୍ତମାନ ବ୍ରହ୍ମଙ୍କୁ ଦର୍ଶନ କରେ, ସେତେବେଳେ ଅବିଦ୍ୟା ମୁକ୍ତିବଶତଃ ବ୍ରହ୍ମଙ୍କର ପ୍ରକୃତମହିମା ପ୍ରାପ୍ତ ହୁଏ । ସେହିହେତୁରୁ ତାହାର ଶୋକ ବା ଅଭିମାନ ଦୂରହୁଏ; ଅର୍ଥାତ୍ ତାହାର ବ୍ରହ୍ମଙ୍କଠାରେ ଅଭେଦ ଜ୍ଞାନ ଜାତହୁଏ । ଏହି କାରଣରୁ ଉକ୍ତରୂପ ଅବିଦ୍ୟାଜନିତ ଉପାଧି ଥିବାହେତୁରୁ ବ୍ରହ୍ମଙ୍କଠାରୁ ଅନନ୍ୟ ଜୀବଠାରେ ହିତ, ଅହିତ, ଶୋକ, ଅଭିମାନ, ଉତ୍ପତ୍ତି, ଲୟ ଆଦି ବ୍ୟବହାର ହୋଇଥାଏ । ଅତଏବ ବ୍ରହ୍ମଙ୍କଠାରେ ହିତାକରଣାଦି ଦୋଷପ୍ରସଙ୍ଗ ଲାଗିପାରେ ନାହିଁ । କ୍ଷର —ଅଚେତନ ପ୍ରକୃତି ଓ ଅକ୍ଷର—ଭୋକ୍ତା ବା ପ୍ରମାତାଜୀବ—ଏହି ଉଭୟରୁ ଅନ୍ୟ, ଅର୍ଥାତ୍ ବିଲକ୍ଷଣ, ଅଥବା ବ୍ୟାବହାରିକ ଭେଦସ୍ୱରୂପରେ କ୍ଷରାକ୍ଷର ଉପାଧିଦ୍ୱୟର ଦୋଷଦ୍ୱାରା ଅସ୍ପୃଷ୍ଟ ନିତ୍ୟବୁଦ୍ଧ ମୁକ୍ତସ୍ୱଭାବ, ଉତ୍ତମ ବା ଅଧିକ ପରଂବ୍ରହ୍ମ ପରମାତ୍ମା ଅଟନ୍ତି ।

"ଅଶ୍ମାଦିବଚ୍ଚ ତଦନୁପପତ୍ତିଃ ।" ବେ: ସୂ: ୨ । ୧ । ୨୩ ।

* ଅଧିକନ୍ତୁ—ଇତ୍ୟାଦି ବେ: ସୂ ର ବ୍ୟାଖ୍ୟା—ତୁଶବ୍ଦଃ ପୂର୍ବପକ୍ଷନିରାସାର୍ଥଃ । ଭେଦନିର୍ଦ୍ଦେଶାତ୍ ଭିନ୍ନତଯ୍ୟା ବ୍ରହ୍ମଣୋଽଭିଧାନାତ୍ ଜୀବାଦଧିକଂ ବ୍ରହ୍ମ । ତତୋ ନ ପୂର୍ବୋକ୍ତପୂର୍ବପକ୍ଷାବସର ଇତ୍ୟର୍ଥଃ । ଶ୍ରୁତି ବ୍ରହ୍ମଙ୍କୁ ଜୀବଭିନ୍ନ ବୋଲି ବର୍ଣ୍ଣନା କରେ, ଅତଏବ ସେ ଜୀବଠାରୁ ଅଧିକ । ଯେଉଁ ହେତୁରୁ ବ୍ରହ୍ମ ଜୀବଠାରୁ ଅଧିକ, ସେହି କାରଣରୁ ସେହି ସକଳ ଦୋଷ (ହିତକରଣାଦି) ହୁଏ ନାହିଁ । ଯଦି ଜୀବ ନିଜେ ସ୍ରଷ୍ଟା ବୋଲି କୁହା ଯାଆନ୍ତା, ତେବେ ସେହି ଦୋଷର ସମ୍ଭାବନା ରହନ୍ତା; କିନ୍ତୁ ପ୍ରକୃତରେ ବ୍ରହ୍ମହିଁ ସୃଷ୍ଟି କର୍ତ୍ତା ଓ ସେ ଜୀବଠାରୁ ଭିନ୍ନ । ଜୀବଠାରେ କାଳ୍ପନିକ ଧର୍ମ ଅଛି; କିନ୍ତୁ ବ୍ରହ୍ମଙ୍କଠାରେ ତାହା ନାହିଁ; ସେହିହେତୁରୁ ବ୍ରହ୍ମବାଦରେ ହିତକରଣାଦି ଦୋଷ ହୋଇପାରେ ନାହିଁ ।

ପ୍ରସ୍ତର ଦୃଷ୍ଟାନ୍ତରେ ମଧ୍ୟ ଉକ୍ତ ଦୋଷ ଉପପନ୍ନ ହୁଏ ନାହିଁ । ଯେପରି ପୃଥିବୀର ବିକାର ପ୍ରସ୍ତର, ସମସ୍ତ ପ୍ରସ୍ତରରେ ପୃଥିବୀତ୍ୱ ଅଛି, ଅଥଚ କୌଣସି ପ୍ରସ୍ତର ମହାମୂଲ୍ୟ ଓ ମହାଗୁଣ, ଅନ୍ୟ ମଧ୍ୟମ ଗୁଣର ଓ କେତେକ ପ୍ରସ୍ତରର କୌଣସି ମୂଲ୍ୟ ନାହିଁ । ଆହୁରି ମଧ୍ୟ ଗୋଟିଏ ବୀଜ ଉଦ୍ଭିଦରୂପରେ ପୃଥିବୀରୁ ଜାତ ହୋଇ ପତ୍ର, ପୁଷ୍ପ, ଫଳ ଓ ରସବସ୍ତୁ ଯୁକ୍ତ ହୋଇ ଶୋଭା ପାଏ । ଆହୁରି ମଧ୍ୟ ଏକ ଅନ୍ନ-ରସରୁ ଶରୀରର ରକ୍ତ, ଶ୍ଳେଷ୍ମ ଆଦି ପରିଣାମରେ ନାନାପ୍ରକାର ହେବା ଦେଖାଯାଏ । ଏହି ଦୃଷ୍ଟାନ୍ତ-ଅନୁସାରେ ଏକହିଁ ବ୍ରହ୍ମଙ୍କର ଜୀବ ପ୍ରାଜ୍ଞଭେଦ ଓ ଅନ୍ୟାନ୍ୟ ବୈଚିତ୍ର୍ୟ ଉପପନ୍ନ ହୁଏ । ଅତଏବ ସେଥିରେ ପରିକଳ୍ପିତ ଦୋଷର ଅନୁପପତ୍ତି ଅର୍ଥାତ୍ ବେଦାନ୍ତମତରେ ପରିକଳ୍ପିତ ଦୋଷ ଆଦୌ ସ୍ଥାନ ପାଏ ନାହିଁ ।

ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କ ମହିମାରୁ ଚେତନଜଡ଼ାତ୍ମକ ସକଳ ଜଗତ୍ ସୃଷ୍ଟି ହୋଇଅଛି । ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ହିଁ ଜୀବର ଏକମାତ୍ର ନିତ୍ୟ ଆରାଧ୍ୟ ବା ଉପାସ୍ୟ ଅଟନ୍ତି । ଏହା ସକଳ ବେଦାନ୍ତଦର୍ଶନର ମୁଖ୍ୟ ତାତ୍ପର୍ଯ୍ୟ ବା ଚରମ ରହସ୍ୟ ଅଟେ । ଉପରି ବର୍ଣ୍ଣିତ ଶ୍ରୁତିବାକ୍ୟସମୂହରୁ ତିନିପ୍ରକାର ଆତ୍ମାର ଅସ୍ତିତ୍ୱ ଉପଲବ୍‌ଧ ହୁଏ । ଏକ ଜୀବ, ଦ୍ୱିତୀୟ ଈଶ୍ୱର ଏବଂ ତୃତୀୟ ପରଂବ୍ରହ୍ମ ପରମାତ୍ମା । ସେଥିମଧ୍ୟରୁ ପ୍ରଥମୋକ୍ତ ବ୍ୟକ୍ତିଗତ ଜୀବ କର୍ତ୍ତା, ଭୋକ୍ତା ଓ ସଂସାରୀ ବୋଲି ସକଳ ଲୋକରେ ଓ ଶାସ୍ତ୍ରରେ ମଧ୍ୟ ପ୍ରସିଦ୍ଧ । ଯେପରି ନଗର ବା ପ୍ରାସାଦ-ନିର୍ମାଣ ଦେଖି ତାହାର କର୍ତ୍ତା—ନିର୍ମାଣଦକ୍ଷ ସୂତ୍ରଧାରର ଅନୁମାନ କରାଯାଏ, ସେହିପରି ଜୀବର ଦେହ ନିର୍ମାଣ ଓ କର୍ମଫଳ ଅନୁସାରେ ସ୍ୱର୍ଗାଦି ସୁଖଭୋଗରୂପ କାର୍ଯ୍ୟଦ୍ୱାରା ତାହାର ହେତୁଭୂତ ସର୍ବଜ୍ଞଚେତନରୂପକ କର୍ତ୍ତା ମଧ୍ୟ ଅନୁମିତ ହୁଅନ୍ତି । ସେହି ଦ୍ୱିତୀୟ ଆତ୍ମା ସମଷ୍ଟିଗତ ଈଶ୍ୱର । ତା'ପରେ ଅବାଙ୍ମନସଗୋଚର ଓ "ନେତିନେତି" ବୋଲି ଉପନିଷଦ୍‌ରେ ବ୍ୟାଖ୍ୟାତ ଯେଉଁ ପରମପୁରୁଷ ବା ପରଂବ୍ରହ୍ମ, ସେ ହେଉଛନ୍ତି ତୃତୀୟ, ବ୍ୟଷ୍ଟିସମଷ୍ଟିର ଏକମାତ୍ର ଆଶ୍ରୟପ୍ରଦ । ଜ୍ଞାନ-ସାଧନ-ଭଜନରୂପକ ଭକ୍ତିଯୋଗଦ୍ୱାରା ପରଂବ୍ରହ୍ମ-ମହିମା ଦର୍ଶନରେ ନିମଗ୍ନ ହେଲେ ଆତ୍ମୋତ୍କର୍ଷର ସକଳ ବିରୋଧ ଅନ୍ତର୍ହିତ ହୁଏ— ଏହାହିଁ ଶ୍ରୁତିର ଅଭିପ୍ରାୟ ।

## ଠ—ପରଂବ୍ରହ୍ମ ପରମାତ୍ମା କେବଳ ସର୍ବାନ୍ତର୍ଯ୍ୟାମୀରୂପରେ ନିତ୍ୟ ଉପାସ୍ୟ ।

ପରଂବ୍ରହ୍ମ ଏକମାତ୍ର ସତ୍ୟ, ତଦ୍‌ଭିନ୍ନ ସକଳ ଦୃଶ୍ୟଜଗତ୍ ତାହାର ବିକାରମାତ୍ର । ଏହି ସମ୍ବନ୍ଧରେ ଶ୍ୱେତକେତୁ ପିତା ଆରୁଣିଙ୍କୁ ପ୍ରଶ୍ନ କଲେ—

**"ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମିତି କଥଂ ନୁ ଭଗବଃ ସ ଆଦେଶୋ ଭବତୀତି ।"**

ଛାନ୍ଦୋଗ୍ୟ ଉ: ଅ ୬ । ଖ ୧ । ୩ ।

ହେ ଭଗବନ୍ ! ଯଦ୍ୱାରା ଅଶ୍ରୁତ ଶ୍ରୁତ, ଅମତ ମତ ଓ ଅବିଜ୍ଞାତ ଜ୍ଞାତ ହୁଏ— ସେହି ଆଦେଶ ବା ରହସ୍ୟମୟ ଉପଦେଶ କପରି ? ଆରୁଣି ଦୃଷ୍ଟାନ୍ତ ସହ ଏହାର ଉତ୍ତର ଦେଲେ—

"ଯଥା ସୋମ୍ୟୈକେନ ମୃତ୍ପିଣ୍ଡେନ ସର୍ବଂ ମୃଣ୍ମୟଂ ବିଜ୍ଞାତଂ-ସ୍ୟାଦ୍ ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବ ସତ୍ୟମ୍ ।।"

"ଯଥା ସୋମ୍ୟୈକେନ ଲୋହମଣିନା ସର୍ବଂ ଲୋହମୟଂ ବିଜ୍ଞାତଂ ସ୍ୟାଦ୍‌ବାଚାରମ୍ଭଣଂ ବିକାରୋ ନାମଧେୟଂ ଲୋହମିତ୍ୟେବ ସତ୍ୟମ୍ ।।"

"ଯଥା ସୋମ୍ୟୈକେନ ନଖନିକୃନ୍ତନେନ ସର୍ବଂ କାର୍ଷ୍ଣାୟସଂ ମତ୍ୟେବ ବିଜ୍ଞାତଂ ସ୍ୟାଦ୍‌ବାଚାରମ୍ଭଣଂ ବିକାରୋ ନାମଧେୟଂ କୃଷ୍ଣାୟସମିତ୍ୟେବ ସତ୍ୟମେବଂ ସୋମ୍ୟ ସ ଆଦେଶୋ ଭବତୀତି ।।"

ଛା: ୬-୧ । ୪-୬ ।

ପିତା କହିଲେ—ବତ୍ସ ଶ୍ୱେତକେତୁ ! ଯେପରି ଜଗତରେ ଦେଖାଯାଏ ଯେ ମୃତ୍ତିକାବିଷୟକ ଜ୍ଞାନ ହେବାଦ୍ୱାରା ତତ୍‌ସୃଷ୍ଟ ସକଳ ମୃତ୍‌ପାତ୍ର ବିଷୟରେ ଲୋକର ଜ୍ଞାନ ହୁଏ ଯେ, ତାହାସବୁ ମୃତ୍ତିକାର ବିକାରମାତ୍ର; ଅର୍ଥାତ୍ ପାତ୍ରସବୁ ମୃତ୍ତିକାର ରୂପାନ୍ତର, ସେଥିରୁ ଭିନ୍ନ ନୁହେଁ । ବାହାରର ଭେଦ କେବଳ ନାମ ଓ ରୂପକୁ ନେଇ, ସେହି ନାମ ଓ ରୂପ କେବଳ ଶବ୍ଦଭେଦ ବ୍ୟତିରେକେ ଅନ୍ୟ କିଛି ନୁହେଁ । ସେହିପରି ବତ୍ସ ! ସୁବର୍ଣ୍ଣପିଣ୍ଡରୁ ସୃଷ୍ଟ ସକଳ ଅଳଙ୍କାର ମୂଳସୁବର୍ଣ୍ଣରୁ ଭିନ୍ନ ନୁହେଁ, କେବଳ ସୁବର୍ଣ୍ଣ ବିଷୟ ଜାଣିଲେ ତତ୍‌ସୃଷ୍ଟ ସକଳ ଅଳଙ୍କାରର ମୂଳ ପଦାର୍ଥର ଜ୍ଞାନ ହୁଏ । ଭେଦ କେବଳ ନାମ ଓ ରୂପରେ; ନାମ ମଧ୍ୟ କେତେକ ଶବ୍ଦଭିନ୍ନ ଆଉ କିଛି ନୁହେଁ । ପୁନଶ୍ଚ, ଗୋଟିଏ ନହୁରୁଣୀ ନିର୍ମାଣ ସକାଶେ ଅଳ୍ପ ପରିମାଣ ଲୌହର ଜ୍ଞାନ ହେବାଦ୍ୱାରା ତଜ୍ଜନିତ ସକଳ ପ୍ରକାର ଅସ୍ତ୍ର ଶସ୍ତ୍ର ମଧ୍ୟ ଜାଣି ହୁଏ; କାରଣ ସେହିସବୁ ଅସ୍ତ୍ର-ଆଦି ପଦାର୍ଥ ଲୌହରୁ କୌଣସି ପ୍ରକାରେ ଭିନ୍ନ ନୁହେଁ; ଭେଦ କେବଳ ନାମରେ ଭିନ୍ନ ଶବ୍ଦଦ୍ୱାରା । ବତ୍ସ ଶ୍ୱେତକେତୁ ! ମୁଁ ଯେଉଁ ପରଂବ୍ରହ୍ମ କଥା କହୁଅଛି; ତାହା ଠିକ୍ ଏହିପରି ଅର୍ଥାତ୍ ଏହି ଯେ ବିବିଧ ବୈଚିତ୍ର୍ୟମୟ ବିଶାଳ ଜଗତ୍ ପ୍ରତ୍ୟକ୍ଷ ହୁଏ, ତାହା ପରଂବ୍ରହ୍ମ ପରମାତ୍ମାଙ୍କର ସ୍ୱୟଂସିଦ୍ଧମହିମାରୁ ଉତ୍ପନ୍ନ । ଏହା ବାକ୍ୟର ଯୋଜନା, ନାମର ରଚନା ବା ରୂପର ପ୍ରସ୍ତାବନା ମାତ୍ର । ଯଥାର୍ଥତଃ ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା କେବଳ ସତ—

"ସଦେବ ସୋମ୍ୟେଦମଗ୍ର ଆସୀଦେକମେବାଦ୍ୱିତୀୟମ୍ ।......"

ଛାନ୍ଦୋଗ୍ୟ... ।

ଅର୍ଥାତ୍ ହେ ସୋମ୍ୟ ! ସୃଷ୍ଟିର ପୂର୍ବେ ଏକ ଅଦ୍ୱିତୀୟ ପରଂବ୍ରହ୍ମ ସତ୍‌ସ୍ୱରୂପରେ ବିଦ୍ୟମାନ ଥିଲେ ଏବଂ ବର୍ତ୍ତମାନ ଜଗତରେ ମଧ୍ୟ ସେହି ସର୍ବାନ୍ତର୍ଯାମୀ ହୋଇ ସର୍ବାତ୍ମକରୂପରେ ବିଦ୍ୟମାନ ଅଛନ୍ତି । ଏ ବିଷୟରେ ବୃହଦାରଣ୍ୟକ ଶ୍ରୁତିରେ ମଧ୍ୟ ଉକ୍ତ ଅଛି —

"ଯଃ ପୃଥିବ୍ୟାଂ ତିଷ୍ଠନ୍ ପୃଥିବ୍ୟା ଅନ୍ତରୋ ଯଂ ପୃଥିବୀ ନ ବେଦ ଯସ୍ୟ ପୃଥିବୀ ଶରୀରଂ ଯଃ ପୃଥିବୀମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ । "ଯୋଽପ୍ସୁ ତିଷ୍ଠନ୍ନଦ୍ଭ୍ୟୋଽନ୍ତରୋ ଯମାପୋ ନ ବିଦୁର୍ଯସ୍ୟାପଃ ଶରୀରଂ ଯୋଽପୋଽନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯୋଽଗ୍ନୌ ତିଷ୍ଠନ୍ନଗ୍ନେରନ୍ତରୋ ଯମଗ୍ନିର୍ନ ବେଦ ଯସ୍ୟାଗ୍ନିଃ ଶରୀରଂ ଯୋଽଗ୍ନିମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯୋଽନ୍ତରୀକ୍ଷେ ତିଷ୍ଠନ୍ନନ୍ତରୀକ୍ଷାଦନ୍ତରୋ ଯମନ୍ତରୀକ୍ଷଂ ନ ବେଦ ଯସ୍ୟାନ୍ତରୀକ୍ଷଂ ଶରୀରଂ ଯୋଽନ୍ତରୀକ୍ଷମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯୋ ବାୟୌ ତିଷ୍ଠନ୍ ବାୟୋରନ୍ତରୋ ଯଂ ବାୟୁର୍ନ ବେଦ ଯସ୍ୟ ବାୟୁଃ ଶରୀରଂ ଯୋ ବାୟୁମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯୋ ଦିବି ତିଷ୍ଠନ୍ ଦିବୋଽନ୍ତରୋ ଯଂ ଦ୍ୟୌର୍ନ ବେଦ ଯସ୍ୟ ଦ୍ୟୌଃ ଶରୀରଂ ଯୋ ଦିବମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯ ଆଦିତ୍ୟେ ତିଷ୍ଠନ୍ନାଦିତ୍ୟାଦନ୍ତରୋ ଯମାଦିତ୍ୟୋ ନ ବେଦ ଯସ୍ୟାଦିତ୍ୟଃ ଶରୀରଂ ଯ ଆଦିତ୍ୟମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

ଯାଜ୍ଞବଲ୍କ୍ୟ ଗୌତମଙ୍କଦ୍ୱାରା ପୃଷ୍ଟ ହୋଇ କହୁଅଛନ୍ତି—ଯେ ପୃଥିବୀରେ ଅବସ୍ଥାନ କରିଛନ୍ତି, ସେ ଅନ୍ତର୍ଯାମୀ—କହିଲେ "ପୃଥିବୀରେ ଅବସ୍ଥିତ ସକଳ ପଦାର୍ଥ ଅନ୍ତର୍ଯାମୀ ସଂଜ୍ଞା ଲାଭ କରିପାରେ; କିନ୍ତୁ ତାହାର ନିବାରଣ ନିମନ୍ତେ

ପୃଥିବୀରେ ଅବସ୍ଥିତ ଥିବା ବଶିଷ୍ଟରୂପରେ ନିର୍ଦ୍ଦିଷ୍ଟ ଅଭ୍ୟନ୍ତରବର୍ତ୍ତୀଙ୍କୁ ଅନ୍ତର୍ଯ୍ୟାମୀ କୁହାଯାଏ—ଏହାର ବ୍ୟାଖ୍ୟା ଦୃଷ୍ଟାନ୍ତ ସହ କରାଯାଉଛି । ପ୍ରଶ୍ନ ହୋଇପାରେ ଯେ, କ'ଣ ପୃଥିବୀର ଅଧିଷ୍ଠାତ୍ରୀ ଦେବତା ଅନ୍ତର୍ଯ୍ୟାମୀ ! କିନ୍ତୁ ପ୍ରକୃତରେ ଏହା ନୁହେଁ । ପୃଥିବୀର ଦେବତା ମଧ୍ୟ ଯାହାଙ୍କୁ ଜାଣେ ନାହିଁ—ଅର୍ଥାତ୍ ମୋ ମଧ୍ୟରେ ଜଣେ ବର୍ତ୍ତମାନ ଅଛନ୍ତି ଯାହାଙ୍କୁ ମୁଁ ଜାଣେ ନାହିଁ, କିନ୍ତୁ ଯାହାଙ୍କ ଆଦେଶରେ ମୁଁ ଶୃଙ୍ଖଳିତ—ସେହି କେବଳ ଅନ୍ତର୍ଯ୍ୟାମୀ । ଆହୁରି ମଧ୍ୟ ପୃଥିବୀ ଯାହାର ଶରୀର, ଯେ ପୃଥିବୀର ଅଭ୍ୟନ୍ତରରେ ଥାଇ ପୃଥିବୀକୁ ଏବଂ ପୃଥିବୀ-ଅଭିମାନିନୀ ଦେବତାଙ୍କୁ ନିୟମିତ ଭାବରେ ଯେ ପରିଚାଳିତ କରନ୍ତି, ସେହି ଅନ୍ତର୍ଯ୍ୟାମୀ ଏବଂ ସେହି କେବଳ ସକଳ ଭୂତରେ ଅମୃତ, ଅର୍ଥାତ୍ ଅମରଧର୍ମୀ ଅନ୍ତର୍ଯ୍ୟାମୀ ଆତ୍ମା ।

ସେହିପରି ଯେ ଜଳରେ ଥାଇ ମଧ୍ୟ ଜଳଠାରୁ ଅନ୍ୟ; ଜଳାଭିମାନିନୀ ଦେବତା ମଧ୍ୟ ଯାହାଙ୍କୁ ଜାଣେ ନାହିଁ, ଅଥଚ ଜଳ ଯାହାର ଶରୀର ଏବଂ ଯେ ଜଳର ଅଭ୍ୟନ୍ତରରେ ଥାଇ ଜଳାଭିମାନିନୀ ଦେବତା ଏବଂ ଜଳକୁ ନିୟମିତ ଭାବରେ ପରିଚାଳିତ କରୁଅଛନ୍ତି, ସେହି କେବଳ ସର୍ବଭୂତର ଅମୃତ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଜ୍ୟୋତିର୍ମୟ ଅଗ୍ନିରେ ଅବସ୍ଥିତ ଓ ଅଗ୍ନିର ଅଭ୍ୟନ୍ତରରେ ଥିଲେ ମଧ୍ୟ ଅଗ୍ନି ଯାହାଙ୍କର ସ୍ୱରୂପ ଜାଣିପାରେ ନାହିଁ ; ଅଥଚ ଅଗ୍ନି ଯାହାଙ୍କର ଶରୀର ଓ ଇନ୍ଦ୍ରିୟ-ସମୂହ, ଅଭ୍ୟନ୍ତରସ୍ଥିତ ହୋଇ ଯେ ଅଗ୍ନିକୁ ସ୍ୱକାର୍ଯ୍ୟରେ ନିଯୁକ୍ତ ଓ ନିୟମିତ କରି ରଖିଅଛନ୍ତି, ସେହି କେବଳ ଭୂତମାନଙ୍କରେ ଅବିନଶ୍ୱର ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଅନ୍ତରୀକ୍ଷ (ଆକାଶ) ମଧ୍ୟରେ ଅବସ୍ଥିତ ଥିଲେ ମଧ୍ୟ ଅନ୍ତରୀକ୍ଷର ଅଗୋଚର ; ଅନ୍ତରୀକ୍ଷ ଯାହାଙ୍କୁ ଜାଣିପାରେ ନାହିଁ, ଅଥଚ ଅନ୍ତରୀକ୍ଷ ଯାହାଙ୍କର ଶରୀର ଓ ଇନ୍ଦ୍ରିୟସମୂହ ଏବଂ ଯେ ଅନ୍ତରୀକ୍ଷରେ ଥାଇ ତାକୁ ନିଜ କାର୍ଯ୍ୟରେ ନିଯୁକ୍ତ ଓ ନିୟମିତ କରୁଅଛନ୍ତି, ସେହି ଅନ୍ୟାନ୍ୟ ଭୂତବର୍ଗର ଅବିନାଶୀ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଚଞ୍ଚଳସ୍ୱଭାବ ବାୟୁରେ ଥିଲେ ମଧ୍ୟ ବାୟୁର ଅଜ୍ଞାତ, ଅଥଚ ବାୟୁର ଅଧିଷ୍ଠାତ୍ରୀ ଦେବତା ଯାହାଙ୍କୁ ଜାଣିପାରେ ନାହିଁ; ବାୟୁ ଯାହାଙ୍କର ଶରୀର ଓ ଇନ୍ଦ୍ରିୟସମୂହ ଏବଂ ଯାହାଙ୍କ ନିୟମାନୁସାରେ ବାୟୁ ଅହରହଃ କ୍ରିୟା କରୁଅଛି, ସେହି କେବଳ ସକଳଭୂତ-ବର୍ଗର ଅମୃତ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଦ୍ୟୁଲୋକର ଅଭ୍ୟନ୍ତରରେ ବର୍ତ୍ତମାନ ଥିଲେ ମଧ୍ୟ ଦ୍ୟୁଲୋକ ଯାହାଙ୍କର ସ୍ୱରୂପ ଅବଗତ ନୁହେଁ; ଅଥଚ ଏହି ଦ୍ୟୁଲୋକହିଁ ଯାହାଙ୍କର ଶରୀର ଓ ଇନ୍ଦ୍ରିୟ; ଅଭ୍ୟନ୍ତରରେ ଥାଇ ଯେ ଦ୍ୟୁଲୋକକୁ ସ୍ୱୀୟକାର୍ଯ୍ୟରେ ନିୟମିତ କରୁଅଛନ୍ତି, ସେ କେବଳ ସକଳ ଭୂତବର୍ଗର ଅବିନାଶୀ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଆଦିତ୍ୟମଣ୍ଡଳରେ ଅବସ୍ଥାନ କରନ୍ତି ବା ସୂର୍ଯ୍ୟଙ୍କର ଅଭ୍ୟନ୍ତରବର୍ତ୍ତୀ; ଅଥଚ ଆଦିତ୍ୟ ଯାହାଙ୍କୁ ଜାଣନ୍ତି ନାହିଁ କେବଳ ଆଦିତ୍ୟ ଯାହାଙ୍କର ଶରୀର ଓ ଇନ୍ଦ୍ରିୟବର୍ଗ ଯେ ଆଦିତ୍ୟଙ୍କ ଅଭ୍ୟନ୍ତରରେ ଥାଇ ଆଦିତ୍ୟଙ୍କୁ ନିଜ କର୍ତ୍ତବ୍ୟରେ ନିୟମିତ ଭାବରେ ପ୍ରେରଣ କରୁଅଛନ୍ତି—ସେହି କେବଳ ତୁମ୍ଭର, ଆମ୍ଭର ଓ ସକଳ ଭୂତବର୍ଗଙ୍କର ନିତ୍ୟସିଦ୍ଧ ଅମୃତ ଅନ୍ତର୍ଯ୍ୟାମୀ ଆତ୍ମା ।

"ଯୋ ଦିକ୍ଷୁ ତିଷ୍ଠନ୍ ଦିଗ୍‌ଭ୍ୟୋଽନ୍ତରୋ ଯଂ ଦିଶୋ ନ ବିଦୁର୍ଯସ୍ୟ ଦିଶଃ ଶରୀରଂ ଯୋ ଦିଶୋଽନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯଶ୍ଚନ୍ଦ୍ରତାରକେ ତିଷ୍ଠଁଶ୍ଚନ୍ଦ୍ରତାରକାଦନ୍ତରୋ ଯଞ୍ଚନ୍ଦ୍ରତାରକଂ ନ ବେଦ ଯସ୍ୟ ଚନ୍ଦ୍ରତାରକଂ ଶରୀରଂ ଯଶ୍ଚନ୍ଦ୍ରତାରକମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯ ଆକାଶେ ତିଷ୍ଠନ୍ନାକାଶାଦନ୍ତରୋ ଯମାକାଶୋ ନ ବେଦ ଯସ୍ୟାକାଶଃ ଶରୀରଂ ଯ ଆକାଶମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯଃ ତମସି ତିଷ୍ଠଁସ୍ତମସୋଽନ୍ତରୋ ଯଂ ତମୋ ନ ବେଦ ଯସ୍ୟ ତମଃ ଶରୀରଂ ଯସ୍ତମୋଽନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯସ୍ତେଜସି ତିଷ୍ଠଁସ୍ତେଜସୋଽନ୍ତରୋ ଯଂ ତେଜୋ ନ ବେଦ ଯସ୍ୟ ତେଜଃ ଶରୀରଂ ଯସ୍ତେଜୋଽନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତ ।।" ଇତ୍ୟଧିଦୈବତମ୍ ।

ଯେ ନାନା ଦିଗରେ ଅବସ୍ଥିତ ହୋଇ ମଧ୍ୟ ସକଳ ଦିଗର ଅଭ୍ୟନ୍ତରରେ ଅନ୍ତର୍ହିତ; ଦିକ୍‌ସକଳ ଯାହାଙ୍କର ତତ୍ତ୍ୱ ଜାଣନ୍ତି ନାହିଁ; ଅଥଚ ସକଳ ଦିଗ ଯାହାଙ୍କର ଶରୀର ଓ ଇନ୍ଦ୍ରିୟ; ଯେ ଦିଙ୍ମଣ୍ଡଳର ଅଭ୍ୟନ୍ତରରେ ଥାଇ ସକଳ ଦିଗମାନଙ୍କୁ ସ୍ଥିରଭାବରେ ରଖି ଅଛନ୍ତି, ସେହି ନିତ୍ୟ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଏହି ଚନ୍ଦ୍ର ଓ ତାରକାମାନଙ୍କରେ ଅବସ୍ଥିତ ହୋଇ ମଧ୍ୟ ଚନ୍ଦ୍ର ଓ ନକ୍ଷତ୍ର-ମଣ୍ଡଳରୁ ବ୍ୟବହିତ; ଚନ୍ଦ୍ରାଭିମାନିନୀ ଓ ନକ୍ଷତ୍ରାଭିମାନିନୀ ଦେବତା ମଧ୍ୟ ଯାହାଙ୍କୁ ଜାଣନ୍ତି

ନାହିଁ, ଚନ୍ଦ୍ର ଓ ତାରକା ଯାହାର ଦେହ; ଯେ ଚନ୍ଦ୍ର, ଓ ନକ୍ଷତ୍ରସମୂହ ମଧ୍ୟରେ ଥାଇ ସେମାନଙ୍କୁ ନିଜ କର୍ତ୍ତବ୍ୟରେ ନିୟମିତ କରିଅଛନ୍ତି, ସେହି ତୁମ୍ଭର, ଆମ୍ଭର ଓ ସକଳ ଭୂତବର୍ଗଙ୍କର ଅମୃତ ଅନ୍ତର୍ଯାମୀ ଆତ୍ମା ।

ଯେ ଆକାଶରେ ଥାଇ ମଧ୍ୟ ଆକାଶଠାରୁ ସମ୍ପୂର୍ଣ୍ଣ ଅନ୍ତର୍ହିତ, ତଥାପି ଆକାଶ ଦେବତା ଯାହାଙ୍କୁ ଜାଣିପାରେ ନାହିଁ, ଆକାଶ ଯାହାଙ୍କର ଶରୀର ପ୍ରଭୃତି, ସେହି ଅନ୍ତର୍ଯାମୀ ସକଳ ଭୂତବର୍ଗର ଅମୃତସ୍ୱରୂପ ଆତ୍ମା ।

ଯେ ସକଳବସ୍ତୁ-ଆବରକ ଅନ୍ଧକାରରେ ଅବସ୍ଥିତ, ଅଥଚ ଅନ୍ଧକାରରୁ ବ୍ୟାବୃତ ବା ବ୍ୟବହୃତ; ଅନ୍ଧକାରର ଅଧିଷ୍ଠାତ୍ରୀ ଦେବତା ମଧ୍ୟ ଯାହାଙ୍କୁ ଜାଣିପାରେ ନାହିଁ, ଅଥଚ ଏହି ଅନ୍ଧକାର କେବଳ ଯାହାଙ୍କର ଶରୀର; ଯେ ଅନ୍ଧକାର ଅନ୍ତର୍ଗତ ହୋଇ ତାହାକୁ ଶାସନ କରୁଅଛନ୍ତି, ସେହି କେବଳ ତୁମ୍ଭ ଓ ଭୂତବର୍ଗର ଅନ୍ତର୍ଯାମୀ ନିତ୍ୟ ଆତ୍ମା ।

ଯେ ପ୍ରକାଶଶୀଳ ତେଜରେ ଅବସ୍ଥିତ ହୋଇ ତେଜର ଅବିଜ୍ଞାତଭାବରେ ତା'ର ଅଭ୍ୟନ୍ତରରେ ବିଲୀନ ହୋଇ ରହିଛନ୍ତି; ତେଜର ଅଧିଷ୍ଠାତ୍ରୀ ଦେବତା ମଧ୍ୟ ଯାହାଙ୍କୁ ଜାଣନ୍ତି ନାହିଁ; କିନ୍ତୁ ତେଜ ଯାହାଙ୍କର ଶରୀର ଓ ଇନ୍ଦ୍ରିୟସମୂହ ଏବଂ ଯାହାଙ୍କର ଶାସନରେ ତେଜ ଚିରନ୍ତନ ସମାନଭାବରେ ପରିଚାଳିତ, ସେହି ସକଳ ଭୂତବର୍ଗର ଅମରଣଶୀଳ ଅନ୍ତର୍ଯାମୀ ଆତ୍ମା ।

ଏ ପର୍ଯ୍ୟନ୍ତ ସକଳ ଦେବତାମାନଙ୍କର ଅନ୍ତର୍ଯାମୀଭାବରେ ପରମାତ୍ମାଙ୍କର ଅବସ୍ଥିତି ବିଷୟ ବର୍ଣ୍ଣିତ ହେଲା । ବର୍ତ୍ତମାନ ସକଳ ଭୌତିକ ସୃଷ୍ଟିରେ ମଧ୍ୟ ତାହାଙ୍କର ଅନ୍ତର୍ଯାମୀ ରୂପରେ ଅସ୍ତିତ୍ୱ ଦେଖାଇ ଆଧିଭୌତିକ ଅନ୍ତର୍ଯାମୀ ବିଜ୍ଞାନ ପ୍ରଦର୍ଶିତ ହେଉଛି—

**"ଯଃ ସର୍ବେଷୁ ଭୂତେଷୁ ତିଷ୍ଠନ୍ ସର୍ବେଭ୍ୟୋ ଭୂତେଭ୍ୟୋଽନ୍ତରୋ ଯଂ ସର୍ବାଣି ଭୂତାନି ନ ବିଦୁର୍ଯସ୍ୟ ସର୍ବାଣି ଭୂତାନି ଶରୀରଂ ଯଃ ସର୍ବାଣି ଭୂତାନ୍ୟନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ॥"** ଇତ୍ୟଧିଭୂତମ୍ ।

ଯେ ସକଳ ଭୂତରେ ଅବସ୍ଥିତି କରନ୍ତି ଓ ସର୍ବଭୂତମାନଙ୍କରୁ ଅନ୍ତର ବା ଭିନ୍ନ; ସକଳ ଭୂତ ଯାହାଙ୍କୁ ଜାଣିବାକୁ ସମର୍ଥ ହୁଅନ୍ତି ନାହିଁ; ସର୍ବ ଭୂତବର୍ଗ ଯାହାଙ୍କର ଶରୀର; ଯେ ସର୍ବଭୂତର ଅଭ୍ୟନ୍ତରରେ ଥାଇ ନିଜ କାର୍ଯ୍ୟରେ ସେମାନଙ୍କୁ ନିୟମିତ କରି ରଖି ଅଛନ୍ତି ସେହି ତୁମ୍ଭର ଅନ୍ତର୍ଯାମୀ ଆତ୍ମା ।

ଏ ପର୍ଯ୍ୟନ୍ତ ବ୍ରହ୍ମାଦିସ୍ତମ୍ଭ ପର୍ଯ୍ୟନ୍ତ ସମସ୍ତ ଭୂତମାନଙ୍କର ଅନ୍ତର୍ଯାମୀ ବିଜ୍ଞାନ କଥିତ ହେଲା । ବର୍ତ୍ତମାନ ଅଧ୍ୟାତ୍ମ, ଅର୍ଥାତ୍ ଶରୀର ବିଷୟରେ ଅନ୍ତର୍ଯାମୀ ବିଜ୍ଞାନ ବର୍ଣ୍ଣିତ ହେଉଅଛି ।

"ଅଥାଧ୍ୟାତ୍ମଂ—ଯଃ ପ୍ରାଣେ ତିଷ୍ଠନ୍ ପ୍ରାଣାଦନ୍ତରୋ ଯଂ ପ୍ରାଣୋ ନ ବେଦ ଯସ୍ୟ ପ୍ରାଣଃ ଶରୀରଂ ଯଃ ପ୍ରାଣମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯୋ ବାଚି ତିଷ୍ଠନ୍ ବାଚୋଽନ୍ତରୋ ଯଂ ବାଙ୍ନ ବେଦ ଯସ୍ୟ ବାକ୍ ଶରୀରଂ ଯୋ ବାଚମନ୍ତରୋ ଯମୟତ୍ୟେଷ ତଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯଶ୍ଚକ୍ଷୁଷି ତିଷ୍ଠଁଶ୍ଚକ୍ଷୁଷୋଽନ୍ତରୋ ଯଂ ଚକ୍ଷୁର୍ନ ବେଦ ଯସ୍ୟ ଚକ୍ଷୁଃ ଶରୀରଂ ଯଶ୍ଚକ୍ଷୁରନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯଃ ଶ୍ରୋତ୍ରେ ତିଷ୍ଠଁଚ୍ଛ୍ରୋତ୍ରାଦନ୍ତରୋ ଯନ୍ତ୍ର ଶୋତ୍ରଂ ନ ବେଦ ଯସ୍ୟ ଶ୍ରୋତ୍ରଂ ଶରୀରଂ ଯଃ ଶ୍ରୋତ୍ରମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

"ଯୋ ମନସି ତିଷ୍ଠନ୍ମନସୋଽନ୍ତରୋ ଯଂ ମନୋ ନ ବେଦ ଯସ୍ୟ ମନଃ ଶରୀରଂ ଯୋ ମନୋଽନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯ୍ୟାମ୍ୟମୃତଃ ।।"

ଅର୍ଥ—ଯେ ପ୍ରାଣରେ ଅବସ୍ଥିତ; କିନ୍ତୁ ପ୍ରାଣଠାରୁ ଅନ୍ତର ବା ଭିନ୍ନ; ଏହି ପ୍ରାଣହିଁ ଯାହାଙ୍କର ଶରୀର ଏବଂ ଯେ ପ୍ରାଣରେ ଥାଇ ତାହାକୁ ପ୍ରେରଣା ଦେଉଅଛନ୍ତି—ସେହି ନିତ୍ୟ ପୁରୁଷ କେବଳ ତୁମ୍ଭର ଜିଜ୍ଞାସ୍ୟ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ବାଗିନ୍ଦ୍ରିୟରେ ବର୍ତ୍ତମାନ, ଅଥଚ ବାଗିନ୍ଦ୍ରିୟଠାରୁ ଅନ୍ତର ବା ପୃଥକ୍, ବାଗିନ୍ଦ୍ରିୟ ଦେବତା ଯାହାଙ୍କୁ ଜାଣିପାରନ୍ତି ନାହିଁ ; କିନ୍ତୁ ବାଗିନ୍ଦ୍ରିୟ ଯାହାଙ୍କର ଶରୀରବତ୍; ବାଗିନ୍ଦ୍ରିୟର ଅଭ୍ୟନ୍ତରରେ ଥାଇ ଯେ ଆତ୍ମାକୁ ସଂଯତ କରୁଅଛନ୍ତି, ସେହି କେବଳ ସକଳ ଭୂତବର୍ଗର ଅମୃତ ଅନ୍ତର୍ଯ୍ୟାମୀ ଆତ୍ମା ।

ଯେ ଚକ୍ଷୁରେ ଅଛନ୍ତି; କିନ୍ତୁ ଚକ୍ଷୁର ଅଗୋଚର, ଚକ୍ଷୁ ଯାହାଙ୍କର ଶରୀର, ସେ ଅଭ୍ୟନ୍ତରରେ ରହି ତାହାର ସଂଯମନକାରୀ; ସେହି ନିତ୍ୟ ପୁରୁଷହିଁ ତୁମ୍ଭର ଜିଜ୍ଞାସ୍ୟ ଆତ୍ମା ।

ଯେ ଶ୍ରବଣ ଇନ୍ଦ୍ରିୟରେ ଅଧିଷ୍ଠିତ, ଅଥଚ ଶ୍ରବଣେନ୍ଦ୍ରିୟରୁ ଅନ୍ତର ବା ଭିନ୍ନ;

ଅଭ୍ୟନ୍ତରରେ ଥିଲେ ମଧ୍ୟ ଯାହାଙ୍କୁ ଶ୍ରବଣେନ୍ଦ୍ରିୟ ଦେବତା ଜାଣିପାରେ ନାହିଁ; ଶ୍ରବଣେନ୍ଦ୍ରିୟ ଯାହାଙ୍କର ଶରୀର; ଯେ ସେହି ଶ୍ରବଣେନ୍ଦ୍ରିୟର ଅନ୍ତର୍ଗତ ନିୟନ୍ତା; ସେହି ନିତ୍ୟପୁରୁଷହିଁ ତୁମ୍ଭର ଅନ୍ତର୍ଯାମୀ ଆତ୍ମା ।

ଯେ ମନମଧ୍ୟରେ ଥାଇ ମଧ୍ୟ ମନଠାରୁ ବ୍ୟବହିତ; ମନୋଭିମାନିନୀ ଦେବତା ଯାହାଙ୍କୁ ଜାଣନ୍ତି ନାହିଁ; ମନ ଯାହାଙ୍କର ଶରୀର, ଯେ ମନର ଅଭ୍ୟନ୍ତରରେ ଥାଇ ମନକୁ ନିୟମିତ କରୁଅଛନ୍ତି, ସେହି ତୁମ୍ଭର ଅନ୍ତର୍ଯାମୀ ଅମୃତ ଆତ୍ମା ।

"ଯସ୍ତ୍ୱଚି ତିଷ୍ଠଁସ୍ତ୍ୱଚୋଽନ୍ତରୋ ଯଂ ତ୍ୱଙ୍‌ନ ବେଦ ଯସ୍ୟ ତ୍ୱକ୍ ଶରୀରଂ ଯସ୍ତ୍ୱଚମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯୋ ବିଜ୍ଞାନେ ତିଷ୍ଠନ୍‌ ବିଜ୍ଞାନାଦନ୍ତରୋ ଯଂ ବିଜ୍ଞାନଂ ନ ବେଦ ଯସ୍ୟ ବିଜ୍ଞାନଂ ଶରୀରଂ ଯୋ ବିଜ୍ଞାନମନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତଃ ।।"

"ଯୋ ରେତସି ତିଷ୍ଠନ୍ ରେତସୋଽନ୍ତରୋ ଯଂ ରେତୋ ନ ବେଦ ଯସ୍ୟ ରେତଃ ଶରୀରଂ ଯୋ ରେତୋଽନ୍ତରୋ ଯମୟତ୍ୟେଷ ତ ଆତ୍ମାଽନ୍ତର୍ଯାମ୍ୟମୃତୋଽଦୃଷ୍ଟୋ ଦ୍ରଷ୍ଟାଽଶ୍ରୁତଃ ଶ୍ରୋତାଽମତୋ ମନ୍ତାଽବିଜ୍ଞାତୋ ବିଜ୍ଞାତା ନାନ୍ୟୋଽତୋଽସ୍ତି ଦ୍ରଷ୍ଟା ନାନ୍ୟୋଽତୋଽସ୍ତି ଶ୍ରୋତା ନାନ୍ୟୋଽତୋଽସ୍ତି ମନ୍ତା ନାନ୍ୟୋଽତୋଽସ୍ତି ବିଜ୍ଞାତୈଷ ତ ଆତ୍ମାଽନ୍ତର୍ଯାମ୍ୟମୃତୋଽତୋଽନ୍ୟଦାର୍ତ୍ତଂ ତତୋ ହୋଦ୍ଦାଳକ ଆରୁଣିରୁପରରାମ ।।"

ବୃହଦାରଣ୍ୟକ ଉ: ଅ ୩ । ବ୍ରା: ୭ । ୩-୨୩ ।

ଯେ ତ୍ୱଗିନ୍ଦ୍ରିୟରେ ଥାଇ ମଧ୍ୟ ତ୍ୱଗିନ୍ଦ୍ରିୟ ନୁହନ୍ତି; ତ୍ୱଗିନ୍ଦ୍ରିୟାଭିମାନିନୀ ଦେବତା ଯାହାଙ୍କୁ ଜାଣିପାରେ ନାହିଁ; ତ୍ୱଗିନ୍ଦ୍ରିୟ ଯାହାଙ୍କର ଶରୀର; ଯେ ତ୍ୱଗିନ୍ଦ୍ରିୟର ଅଭ୍ୟନ୍ତରରେ ଥାଇ ତ୍ୱଗିନ୍ଦ୍ରିୟକୁ ନିୟନ୍ତ୍ରିତ କରୁଅଛନ୍ତି ସେହି ତୁମ୍ଭର ଅନ୍ତର୍ଯାମୀ ଅବିନାଶୀ ଆତ୍ମା ।

ଯେ ବୁଦ୍ଧି ବା ବିଜ୍ଞାନରେ ଥାଇ ମଧ୍ୟ ବୁଦ୍ଧି ନୁହନ୍ତି; ବୁଦ୍ଧ୍ୟଭିମାନିନୀ ଦେବତା ଯାହାଙ୍କୁ ଜାଣିପାରେ ନାହିଁ; ବୁଦ୍ଧି ଯାହାଙ୍କର ଶରୀର, ଯେ ବୁଦ୍ଧିର ଅଭ୍ୟନ୍ତରରେ ଥାଇ ବୁଦ୍ଧିକୁ ନିୟନ୍ତ୍ରିତ କରନ୍ତି, ସେହି ତୁମ୍ଭର ଅନ୍ତର୍ଯାମୀ ଅମୃତ ଆତ୍ମା ।

ଯେ ପ୍ରଜନନଶକ୍ତିସମ୍ପନ୍ନବୀର୍ଯ୍ୟରେ ଥାଇ ମଧ୍ୟ ବୀର୍ଯ୍ୟରୁ ବ୍ୟବହିତ; ବୀର୍ଯ୍ୟାଭିମାନୀ ଦେବତା ଯାହାଙ୍କୁ ଜାଣି ପାରେ ନାହିଁ, ବୀର୍ଯ୍ୟ ଯାହାଙ୍କର ଶରୀର; ଯେ ବୀର୍ଯ୍ୟର ଅଭ୍ୟନ୍ତରରେ ଥାଇ ବୀର୍ଯ୍ୟର ପ୍ରଜନନଶକ୍ତିକୁ ନିୟମିତ କରନ୍ତି, ସେହି କେବଳ ଏକମାତ୍ର ସମସ୍ତଙ୍କର ଅନ୍ତର୍ଯ୍ୟାମୀ ଅମୃତଆତ୍ମା । ପୃଥିବ୍ୟାଦି ଦେବତାଗଣ ସର୍ବଜ୍ଞାନ ଓ ଶକ୍ତିସମ୍ପନ୍ନ ହେଲେ ମଧ୍ୟ କେଉଁ କାରଣରୁ ସାଧାରଣ ମନୁଷ୍ୟଙ୍କ ପରି ଅଭ୍ୟନ୍ତରରେ ସ୍ଥିତ ସେହି ଅନ୍ତର୍ଯ୍ୟାମୀଙ୍କୁ ଜାଣି ପାରନ୍ତି ନାହିଁ, ତାହାର କାରଣ ଏହିପରି— ସେହି ଅନ୍ତର୍ଯ୍ୟାମୀ ଚକ୍ଷୁର ପ୍ରତ୍ୟକ୍ଷ ବିଷୟ ନୁହଁନ୍ତି, ଅଥଚ ସ୍ୱୟଂ ଚକ୍ଷୁରେ ଅଧିଷ୍ଠିତ; ଏହିହେତୁରୁ ସର୍ବପଦାର୍ଥର ଦ୍ରଷ୍ଟା; ତାହାଙ୍କର ଶ୍ରବଣଶକ୍ତି ଅକ୍ଷୁଣ୍ଣ; କାରଣ, ସମସ୍ତଙ୍କର କର୍ଣ୍ଣରେ ସେ ବିଦ୍ୟମାନ; କିନ୍ତୁ ତାହାଙ୍କୁ କେହି ଶୁଣି ପାରେ ନାହିଁ । ତାହାଙ୍କୁ କେହି ମନର ବିଷୟ ବା ମନରେ ଭାବନାଦ୍ୱାରା ଅଧିକୃତ କରି ପାରନ୍ତି ନାହିଁ; କାରଣ, ମନର କାର୍ଯ୍ୟ ସଂକଳ୍ପ ଓ ବିକଳ୍ପ; ସେ ସେହି ମାନସିକ ସଂକଳ୍ପାଦିର ବିଷୟ ନୁହଁନ୍ତି; କାରଣ, ଜୀବ ସାଧାରଣତଃ ଯାହା ଦେଖେ ବା ଶୁଣେ, ସେହି ବିଷୟରେ କେବଳ ସଂକଳ୍ପ କରେ । ପରମାତ୍ମା ଶ୍ରୁତ ବା ଦୃଷ୍ଟ ମଧ୍ୟ ନୁହଁନ୍ତି, କାର୍ଯ୍ୟତଃ ମନର ବିଷୟ ନୁହଁନ୍ତି; କିନ୍ତୁ ସେ ସକଳଙ୍କ ମନରେ ସନ୍ନିହିତ ଓ ଅକ୍ଷୁଣ୍ଣ, ମନନଶକ୍ତିସମ୍ପନ୍ନ; ଏହିହେତୁରୁ ସକଳ ବିଷୟରେ ମନନକାରୀ । ଏହିପରି ସେ ମନୁଷ୍ୟମାନଙ୍କର ରୂପ ବା ସୁଖଜ୍ଞାନପରି ନିଶ୍ଚିତଭାବରେ ଜ୍ଞାନବିଷୟ ହୁଅନ୍ତି ନାହିଁ । ସେ ଅଲୁପ୍ତ ବିଜ୍ଞାନ-ମହିମାବଳରେ ସ୍ୱୟଂ ସକଳର ନିଶ୍ଚୟକାରୀ ।

ଏହି ସକଳ ଉକ୍ତିରୁ ଏପରି ଆଶଙ୍କା ହୋଇପାରେ ଯେ ପୃଥିବୀପ୍ରଭୃତିର ବିଜ୍ଞାତାଙ୍କଠାରୁ ଅନ୍ତର୍ଯ୍ୟାମୀ ନିୟନ୍ତା ସ୍ୱତନ୍ତ୍ର ବା ଭିନ୍ନ; କିନ୍ତୁ ଏହା ଠିକ୍ ନୁହେଁ; କାରଣ, ସେହି ଅନ୍ତର୍ଯ୍ୟାମୀଙ୍କ ଭିନ୍ନ ଅନ୍ୟ କେହି ଦ୍ରଷ୍ଟା, ଶ୍ରୋତା, ମନ୍ତା ବା ବିଜ୍ଞାତା ଆଉ ନାହାନ୍ତି; ଅନ୍ତର୍ଯ୍ୟାମୀ ସକଳ ସାଂସାରିକ ଧର୍ମରୁ ଅଲିପ୍ତ, ଅଥଚ ସକଳ ସଂସାରୀ ଜୀବର କର୍ମଫଳର ବିଧାନକାରୀ । ହେ ଉଦ୍ଦାଳକ, ଏହି ତୁମ୍ଭର ଜିଜ୍ଞାସିତ ଅନ୍ତର୍ଯ୍ୟାମୀ, ଏହି ଅମୃତ ଓ ନିତ୍ୟ, ଏତଦ୍‌ଭିନ୍ନ ଅନ୍ୟସବୁ ଆର୍ତ୍ତ—ନଶ୍ୱର ବା ବିନାଶଶୀଳ । ଏହାପରେ ଅରୁଣତନୟ ଉଦ୍ଦାଳକ ନିଜ ଜ୍ଞାତବ୍ୟ ବିଷୟର ଉତ୍ତର ପାଇ ବିରତ ହେଲେ ।

ଉପରି ବର୍ଣ୍ଣିତ ଅନ୍ତର୍ଯ୍ୟାମୀ-ବିଷୟକୁ ସମର୍ଥନ କରି ବାଦରାୟଣ କହୁଛନ୍ତି—

"ଅନ୍ତର୍ଯ୍ୟାମ୍ୟଧିଦୈବାଦିଷୁ ତଦ୍ଧର୍ମବ୍ୟପଦେଶାତ୍" ॥

ବେ: ସୂ: ୧।୨।୧୮ ॥

ବୃହଦାରଣ୍ୟକ ଉପନିଷଦ୍‌ରେ ଅଛି—

"ଯ ଇମଂ ଚ ଲୋକଂ ପରଂ ଚ ଲୋକଂ
ସର୍ବାଣି ଚ ଭୂତାନି ଅନ୍ତରୋ ଯମୟତି" ॥ ଇତ୍ୟାଦି

ଅର୍ଥାତ୍ ଯେ ଇହଲୋକ, ପରଲୋକ ଏବଂ ସକଳ ପ୍ରାଣୀମାନଙ୍କ ମଧ୍ୟରେ ରହି, ସେମାନଙ୍କୁ ନିଜ ଅଧୀନରେ ରଖି ନିୟମିତଭାବରେ ପରିଚାଳିତ କରୁଅଛନ୍ତି । ଏହି ଭାବରେ ପୃଥିବୀପ୍ରଭୃତିର ଅଧିଷ୍ଠାତୃ-ଦେବତା ମଧ୍ୟରେ (ଅଧିଦୈବାଦିଷୁ) ଅନ୍ତର୍ଯାମୀ-ରୂପରେ ଯାହାଙ୍କୁ ଉଲ୍ଲେଖ କରାଯାଇଅଛି, ସେହି କେବଳ ବ୍ରହ୍ମ । କାରଣ, "ତଦ୍ଧର୍ମ"— ତାହାଙ୍କର ଧର୍ମ ବ୍ରହ୍ମଙ୍କର ଧର୍ମ ବୋଲି ଉଲ୍ଲେଖ ଅଛି । ସକଳପ୍ରାଣୀମାନଙ୍କ ମଧ୍ୟରେ ଅବସ୍ଥାନ କରି ସେମାନଙ୍କୁ ନିଜ ଅଧୀନରେ ରଖିବା ବ୍ରହ୍ମଙ୍କର ହିଁ ଧର୍ମ । ସେହି ଧର୍ମର କେବଳ ଏଠାରେ ଉଲ୍ଲେଖ କରାଯାଇଛି । ଅତଏବ ବୁଝିବାକୁ ହେବ ଯେ, ଏହା ବ୍ରହ୍ମଙ୍କ ପ୍ରସଙ୍ଗରେ କୁହାଯାଇଛି । ବ୍ରହ୍ମଙ୍କଦ୍ୱାରା ନିୟନ୍ତ୍ରିତ କହିଲେ, ବ୍ରହ୍ମ ତାହାର ଇନ୍ଦ୍ରିୟବର୍ଗଦ୍ୱାରାହିଁ ତାହାକୁ ଦମନ କରନ୍ତି— ଏ କଥା ସ୍ପଷ୍ଟ ପ୍ରତୀତ ହୁଏ ।

ଆହୁରି ମଧ୍ୟ—

"ଜ୍ଞାତୃଜ୍ଞେୟଜ୍ଞାନାନାଂ ଆବିର୍ଭାବତିରୋଭାବଂ ଜ୍ଞାତ୍ୱା ସ୍ୱୟମେବ ତିରୋଭାବହୀନଃ ସ୍ୱୟଂଜ୍ୟୋତିଃ ସ ସାକ୍ଷୀତ୍ୟୁଚ୍ୟତେ । ବ୍ରହ୍ମାଦିପିପୀଲିକା-ପର୍ଯ୍ୟନ୍ତଂ ସର୍ବପ୍ରାଣୀ ବୁଦ୍ଧିଷ୍ୱବିଶିଷ୍ଟତୟୋ ଉପଲଭ୍ୟମାନଃ ସର୍ବପ୍ରାଣି ବୁଦ୍ଧିସ୍ଥୋ ଯଦା ତଦା କୂଟସ୍ଥ ଇତ୍ୟୁଚ୍ୟତେ । କୂଟସ୍ଥାଦ୍ୟୁପହିତଭେଦାନାଂ ସ୍ୱରୂପଲାଭହେତୁର୍ଭୂତ୍ୱା ମଣିଗଣସୂତ୍ରମିବ ସର୍ବକ୍ଷେତ୍ରେଷ୍ୱନୁସ୍ୟୂତତ୍ୱେନ ଯଦା ପ୍ରକାଶିତ ଆତ୍ମା ତଦାନ୍ତର୍ଯାମୀତ୍ୟୁଚ୍ୟତେ" ॥ ସର୍ବୋପନିଷତ୍ସାର ୩ ॥

ଅର୍ଥ—ଯେଉଁ ଚୈତନ୍ୟ ଜ୍ଞାତୃ-ଜ୍ଞାନ, ଅର୍ଥାତ୍ ଚିତ୍ତବୃତ୍ତି ଓ ବିଷୟରୁ ଉତ୍ପତ୍ତି ଓ ବିଷୟ ଉପଲବ୍ଧି କରନ୍ତି, ଯେ ନିଜେ ଉତ୍ପତ୍ତି ଓ ବିଲୟରହିତ ଏବଂ ସ୍ୱୟଂ ଜ୍ୟୋତିଃସ୍ୱରୂପ, ତାହାଙ୍କୁ ସାକ୍ଷୀ କୁହାଯାଏ; ଏହି ସାକ୍ଷାତ୍‌ସମ୍ବନ୍ଧରେ ସମସ୍ତଙ୍କର ଦ୍ରଷ୍ଟା, ଅତଏବ ଏହାଙ୍କର ନାମ ସାକ୍ଷୀ । ଯେତେବେଳେ ଚୈତନ୍ୟ ବ୍ରହ୍ମଙ୍କଠାରୁ ପିପୀଲିକା ପର୍ଯ୍ୟନ୍ତ ସକଳପ୍ରାଣୀମାନଙ୍କ ବୁଦ୍ଧିରେ ଅବିଶିଷ୍ଟରୂପରେ, ଅର୍ଥାତ୍ ବିଶେଷରହିତ କେବଳ ଚୈତନ୍ୟାକାରରେ ପ୍ରକାଶମାନ ହୁଅନ୍ତି ଏବଂ ସମସ୍ତ ପ୍ରାଣୀଙ୍କର ବୁଦ୍ଧିବୃତ୍ତି ଅବଲମ୍ବନରେ ଅବସ୍ଥିତ ରହନ୍ତି; ତାଦୃଶ ଚୈତନ୍ୟକୁ କୂଟସ୍ଥ ବୋଲାଯାଏ । ସୂତାରେ ମଣିଗୁଡିକ ଯେପରି ଗ୍ରଥିତ ହୋଇ ରହନ୍ତି, ସର୍ବଶରୀରରେ ଚୈତନ୍ୟ ମଧ୍ୟ ସେହିପରି ଅନୁସ୍ୟୂତ ହୋଇ ରହିଛନ୍ତି; ଯେ କୂଟସ୍ଥାଦି ସମସ୍ତ ଉପାଧିଯୁକ୍ତ ବିଶିଷ୍ଟ ଅବସ୍ଥାର ସ୍ୱରୂପଲାଭରେ କାରଣ, ସେହି ଅବସ୍ଥାରେ ସ୍ଥିତ ଆତ୍ମାଙ୍କୁ ଅନ୍ତର୍ଯାମୀ କୁହାଯାଏ । ଉପର୍ଯ୍ୟୁକ୍ତ ଶ୍ରୁତିବାକ୍ୟସମୂହରୁ ପ୍ରତିପନ୍ନ ହେଲା ଯେ, ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା କେବଳ ସର୍ବାନ୍ତର୍ଯାମୀରୂପରେ ସର୍ବାଶ୍ରୟରୂପରେ ଅଭିହିତ ଏବଂ ସେହି ଏକ ଅଦ୍ୱିତୀୟ ପରମାତ୍ମାଙ୍କ ଅଦ୍ଭୁତ ମହିମାବଳରେ ଅନନ୍ତକୋଟି ଜୀବଜଗତ୍

ପରିବୃଳତ ହୋଇଅଛନ୍ତି; ତାହାଙ୍କ ଆଶ୍ରୟରେ ସର୍ବେ ଚେତନାବାନ୍; ସୁତରାଂ ସେହି ଏକ ପରଂବ୍ରହ୍ମହିଁ ସମସ୍ତଙ୍କର ଉପାସ୍ୟ ।

ବର୍ତ୍ତମାନ ଏଠାରେ ଆଶଙ୍କା ହୁଏ ଯେ ଏହି "ଯମୟିତା" ପ୍ରଧାନ, ଜୀବ ନା ପରମାତ୍ମା । କାରଣ, ପ୍ରଧାନ ମଧ୍ୟ କାରଣରୂପରେ ପୃଥିବୀର ଆଦି ଓ ଅନ୍ତରେ ସ୍ଥିତ ବୋଲି ପ୍ରଖ୍ୟାତ ହୋଇଛି ଏବଂ ଏହି କାରଣ-କାର୍ଯ୍ୟରେ ଅନୁସ୍ୟୁତ ଥିବା ହେତୁରୁ ତାହାର ନିୟନ୍ତା ମଧ୍ୟ ହୋଇଥାଏ । ଆକର୍ଷକତ୍ୱରୂପ କାରଣରୁ ଆତ୍ମତ୍ୱ ଏବଂ ଆତ୍ମୋପଚାରସ୍ୱରୂପ ବ୍ୟାପ୍ତି ଯୋଗ-ହେତୁରୁ ନିତ୍ୟତ୍ୱ ଓ ଅମୃତତ୍ତ୍ୱ ଇତ୍ୟାଦି ଧର୍ମସମୂହ ମଧ୍ୟ ତହିଁରେ ସମ୍ଭବ ହୋଇପାରେ । ଆହୁରି ମଧ୍ୟ—ଜୀବ ମଧ୍ୟ ଯୋଗବଳରେ (ବା ପ୍ରଧାନକର୍ତ୍ତୃକ ଆକୃଷ୍ଟ ହୋଇ) ଅନ୍ତର୍ଯ୍ୟାମୀ ହୋଇପାରେ ଇତ୍ୟାଦି ।

ଏହିସବୁ ଆଶଙ୍କାର ନିବାରଣସ୍ୱରୂପ କୁହାଯାଉଛି ଯେଉଁ ଧର୍ମସକଳ ଦୈବ ପଦାର୍ଥର ଉପରିସ୍ଥ ବା ଶ୍ରେଷ୍ଠ ଓ ସର୍ବନିୟନ୍ତୃ ରୂପରେ ଦୈବଗୁଣ ଅଧିକାର କରି ବର୍ତ୍ତମାନ, ଯାହାଙ୍କୁ ପୃଥିବୀ ଜାଣେ ନାହିଁ—ଏପରି ଦୁର୍ବିଜ୍ଞେୟତ୍ୱ ବା ଅଖଣ୍ଡ ସୃଷ୍ଟ୍ୟାଦିଧର୍ମ, ଅମୃତତ୍ତ୍ୱ, ସର୍ବାନ୍ତଃସ୍ଥତ୍ୱ ବିଭୁ-ବିଜ୍ଞାନାନନ୍ଦତ୍ୱ ଆଦି ସକଳଧର୍ମ ଏକମାତ୍ର ପରମାତ୍ମାଙ୍କଠାରେ ସମ୍ଭବ, ପ୍ରଧାନ ବା ଜୀବଠାରେ ନୁହେଁ ।

ଆହୁରି ମଧ୍ୟ ବାଦରାୟଣ କହିଛନ୍ତି—

"ନ ଚ ସ୍ମାର୍ତ୍ତମତଦ୍ଧର୍ମାଭିଳାପାତ୍ ॥
ଶାରୀରଶ୍ଚୋଭୟେଽପି ହି ଭେଦେନୈନମଧୀୟତେ" ॥
ବେ: ସୂ: ୧।୨।୧୯।୨୦ ।

ଅର୍ଥାତ୍, ସ୍ମାର୍ତ୍ତ (ସାଂଖ୍ୟୋକ୍ତ ଅଚେତନ ପ୍ରଧାନ) ମଧ୍ୟ ଅନ୍ତର୍ଯ୍ୟାମୀ ନୁହେଁ, କାରଣ ତାଙ୍କଠାରେ ତଦ୍ଧର୍ମର (ଅର୍ଥାତ୍ ଦ୍ରଷ୍ଟୃତ୍ୱାଦି—ଚୈତନ୍ୟଗୁଣକ ଧର୍ମର) କଥନ ନାହିଁ । ଯଦ୍ୟପି ପ୍ରଧାନର ଅଦୃଷ୍ଟତ୍ୱାଦିଧର୍ମ ସମ୍ଭବ ହୋଇପାରେ ତଥାପି ସେଥିରେ ଦର୍ଶନକର୍ତ୍ତୃତ୍ୱ ସମ୍ଭବ ନୁହେଁ; କାରଣ ପ୍ରଧାନ ଅଚେତନରୂପରେ କଥିତ । ଉଲ୍ଲିଖିତ କାରଣରୁ ପ୍ରଧାନ ଅନ୍ତର୍ଯ୍ୟାମୀ ହୋଇପାରେ ନାହିଁ । (କାରଣ)

"ଅଦୃଷ୍ଟୋ ଦ୍ରଷ୍ଟା ଅଶ୍ରୁତଃ ଶ୍ରୋତା ଅମତୋ ମନ୍ତା ଅବିଜ୍ଞାତୋ ବିଜ୍ଞାତା ନାନ୍ୟୋଽସ୍ତି ଦ୍ରଷ୍ଟା × × × ଏଷ ତ ଆତ୍ମା ଅନ୍ତର୍ଯ୍ୟାମୀ ଅମୃତ" ।

ଇତ୍ୟାଦି ବର୍ଣ୍ଣିତ ଚୈତନ୍ୟସୁଲଭ ଧର୍ମସମୂହ ବା 'ଆତ୍ମତ୍ୱ ଜଡ଼ସ୍ୱଭାବ ପ୍ରଧାନଠାରେ ସମ୍ଭବ ହୋଇ ନ ପାରେ ।

ଶରୀର ଜୀବ ମଧ୍ୟ ଅନ୍ତର୍ଯ୍ୟାମୀ ନୁହଁ, କାରଣ, ଶୁକ୍ଳଯଜୁର୍ବେଦର କାଣ୍ୱ ଓ ମଧ୍ୟନ୍ଦିନ—ଉଭୟ ଶାଖାରେ ନିୟମ୍ୟ ଜୀବ ଓ ନିୟନ୍ତା ଅନ୍ତର୍ଯ୍ୟାମୀ ପରମାତ୍ମାରୂପରେ ଉଭୟର ଭେଦ ବର୍ଣ୍ଣିତ ହୋଇଛି । ଏହିସବୁ କାରଣରୁ ଶାରୀର ବା ଯୋଗୀ ଜୀବ ମଧ୍ୟ, ଅର୍ଥାତ୍ ଯୋଗ-ଜାତଧର୍ମବଳବଶିଷ୍ଟ ଜୀବ ମଧ୍ୟ ଅନ୍ତର୍ଯ୍ୟାମୀ ବୋଲି ଅଭିହିତ ହୋଇ ପାରେ ନାହିଁ । କାରଣ, ପୂର୍ବୋକ୍ତ କାଣ୍ୱ ଓ ମାଧ୍ୟନ୍ଦିନ * ଉଭୟ ଶାଖାରେ ପରମାତ୍ମାଙ୍କୁ ନିୟନ୍ତା ଓ ଜୀବକୁ ନିୟମ୍ୟ ବୋଲି ଜୀବ ଓ ପରମାତ୍ମାଙ୍କର ଭେଦ ନିର୍ଦ୍ଦିଷ୍ଟ ହୋଇଛି । କାଣ୍ୱଶାଖାରେ ଅଛି—

"ଯୋ ବିଜ୍ଞାନେ ତିଷ୍ଠନ୍ ବିଜ୍ଞାନମନ୍ତରୋ ଯମୟତି" ॥

ଏହିପରି ମାଧ୍ୟନ୍ଦିନରେ ମଧ୍ୟ—

"ଯୋ ଆତ୍ମନି ତିଷ୍ଠନ୍ ଆତ୍ମନମନ୍ତରୋ ଯମୟତି" ॥

ଇତ୍ୟାଦି ଉଭୟଶାଖାରେ ପରମାତ୍ମାଙ୍କର ଓ ବିଜ୍ଞାନ ଏବଂ ଆତ୍ମଶବ୍ଦବାଚ୍ୟ ଜୀବର ନିୟନ୍ତା-ନିୟମ୍ୟଭାବରୂପକ ଭେଦ ବର୍ଣ୍ଣିତହେଉଛି ଜୀବ ଅନ୍ତର୍ଯ୍ୟାମୀ ହୋଇ ପାରେ ନାହିଁ; କିନ୍ତୁ ଶଙ୍କା ହୁଏ ଯେ,

"ନାନ୍ୟୋଽସ୍ତି ଦ୍ରଷ୍ଟା" ॥

ଏହି ବାକ୍ୟଦ୍ୱାରା ଜୀବର ଦ୍ରଷ୍ଟୃତ୍ୱ ପ୍ରଖ୍ୟାତ ହେବାରୁ ଜୀବ ଅନ୍ତର୍ଯ୍ୟାମୀ କାହିଁକି ନ ହେବ । କିନ୍ତୁ ଏପରି ଆଶଙ୍କା କରିବା ଠିକ୍ ନୁହେଁ; ଅବିଦ୍ୟାଦ୍ୱାରା ଉପସ୍ଥାପିତ କାର୍ଯ୍ୟକାରଣୋପାଧି ନିମନ୍ତେ ଜୀବଠାରେ ଏହିପରି କଳ୍ପିତ କର୍ତ୍ତୃତ୍ୱାଦି ଉପଚରିତ ହୋଇଥାଏ । ସୁତରାଂ ସେ ପାରମାର୍ଥିକସ୍ୱରୂପରେ ଅନ୍ତର୍ଯ୍ୟାମୀ ହୋଇ ପାରେ ନାହିଁ । ଫଳତଃ ପରମାତ୍ମାହିଁ ଅନ୍ତର୍ଯ୍ୟାମୀ, ଜୀବ ନୁହେଁ । ସେହି ପରମାତ୍ମା ବିଶ୍ୱର ଅନ୍ତରରେ ଥାଇ ବିଶ୍ୱକୁ ନିୟନ୍ତ୍ରଣ କରୁଅଛନ୍ତି ।

ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମାଙ୍କ ଚିତ୍‌ସ୍ୱରୂପ ମହିମା ପ୍ରକାଶରେ ଜୀବର ପ୍ରକାଶ । ସୂର୍ଯ୍ୟ ଓ ତାଙ୍କର ପ୍ରତିବିମ୍ବପରି ପରମାତ୍ମାଙ୍କ ଆଭାସହିଁ ଜୀବନାମରେ କଥିତ । ଅବଶ୍ୟ ସୂର୍ଯ୍ୟ ଜଡ଼ପଦାର୍ଥ ଓ ତାଙ୍କର ଜ୍ୟୋତି ମଧ୍ୟ ଜଡ଼; କିନ୍ତୁ ପରମାତ୍ମା ଚିତ୍‌ସ୍ୱରୂପ ଏବଂ ଚେତନ କେବଳ ତାହାଙ୍କର ଜ୍ୟୋତି ବା ମହିମା । ସୂର୍ଯ୍ୟ ଓ ପରମାତ୍ମାଙ୍କର ସ୍ୱ-ପ୍ରକାଶକତ୍ୱରେ ଏହାହିଁ ଭେଦ । ସୂର୍ଯ୍ୟ ଆପଣା ଆପେ ପ୍ରକାଶିତ; କିନ୍ତୁ ତାହା ପରାର୍ଥ ପ୍ରକାଶ, ଅର୍ଥାତ୍

* ଶୁକ୍ଳଯଜୁର୍ବେଦର ଦୁଇଟି ଶାଖାର ନାମ କାଣ୍ୱ ଓ ମାଧ୍ୟନ୍ଦିନ ।

ଅଚେତନତ୍ୱ ହେତୁରୁ ସୂର୍ଯ୍ୟ ଆପଣା ଆଲୋକରେ ନିଜେ ପ୍ରକାଶିତ ହେଲେ ମଧ୍ୟ ନିଜକୁ ଜାଣି ପାରେ ନାହିଁ; କିନ୍ତୁ ଚେତନ—ପ୍ରକାଶ ସ୍ୱାର୍ଥପ୍ରକାଶ, ଅର୍ଥାତ୍ ନିଜଦ୍ୱାରା ନିଜେ ନିତ୍ୟ-ସ୍ୱରୂପରେ ବିଜ୍ଞାତ । ଚେତନର ସ୍ୱପ୍ରକାଶତ୍ୱ ବୁଝିବାକୁ ହେଲେ ଏତଦ୍‌ଭିନ୍ନ ଅନ୍ୟ କିଛି କହିବାର ଉପାୟ ନାହିଁ । ବସ୍ତୁତଃ, ଚିଦ୍‌ଜ୍ୟୋତି ମହିମା କହିଲେ କୌଣସି ଜଡ଼ ଆଲୋକପରି ପରମାର୍ଥ-ପ୍ରକାଶଧର୍ମୀ ପଦାର୍ଥ ବୁଝାଏ ନାହିଁ, କେବଳ ସ୍ୱାର୍ଥପ୍ରକାଶ ବୁଝାଏ । ଏହିପରି ସ୍ୱପ୍ରକାଶ ଚିତ୍‌ସ୍ୱରୂପ ସର୍ବାନ୍ତର୍ଯ୍ୟାମୀ କେବଳ ପରଂବ୍ରହ୍ମ ପରମାତ୍ମାଙ୍କର ବିଷୟ ଶ୍ରୁତିଦ୍ୱାରା ପ୍ରତିପାଦିତ ହୋଇଅଛି । ସକଳ ଭେଦରହିତ ଚିଦ୍ରସୈକଘନସ୍ୱରୂପ ପରମାତ୍ମା ପରଂବ୍ରହ୍ମ ସର୍ବଜଗତର ଏକମାତ୍ର କାରଣ—ଏହା ଅସନ୍ଦିଗ୍‌ଧଭାବରେ କଥିତ ହୋଇ ଆସୁଅଛି । ଏହି ଅମୃତ ଅନ୍ତର୍ଯ୍ୟାମୀ ପ୍ରଭୁ ପରଂବ୍ରହ୍ମ କେବଳ ସର୍ବ ଜୀବ-ଜଗତରେ ଉତ୍କୃଷ୍ଟ ଓ ସର୍ବାଶ୍ରୟ ବିଶୁଦ୍ଧସ୍ୱରୂପ ଅଟନ୍ତି ।

୦୦୦—ନିର୍ଗୁଣ ଅଲେଖ ପରଂବ୍ରହ୍ମ ନିରୂପଣ ଓ ତାହାଙ୍କର ଆରାଧନାରୂପକ ନିତ୍ୟ ସ୍ମରଣ ଭଜନ ଦର୍ଶନ କରିବା ଜୀବର ମୁଖ୍ୟ କର୍ତ୍ତବ୍ୟ ।

"ଅତଃପରଂ ନାନ୍ୟଦଣୀୟସଂ ହି ପରାତ୍‌ପରଂ ଯନ୍ମହତୋମହାନ୍ତମ୍ ।
ଯଦେକମବ୍ୟକ୍ତମନନ୍ତରୂପଂ ବିଶ୍ୱଂ ପୁରାଣଂ ତମସଃ ପରସ୍ତାତ୍ ॥"

ନାରାୟଣୋପନିଷଦ୍—ଖ ୫ ।

ବ୍ରହ୍ମ ହିରଣ୍ୟଗର୍ଭାଦି ଅପେକ୍ଷା ଉତ୍କୃଷ୍ଟ, ଆକାଶାଦି ମହତ୍‌ବସ୍ତୁଠାରୁ ମହତ୍ତର । ସ୍ୱଗତ—ସଜାତୀୟ—ବିଜାତୀୟ ଭେଦଶୂନ୍ୟ, ଇନ୍ଦ୍ରିୟସମୂହର ଅବିଷୟ; ଦେଶ, କାଳ ଓ ବସ୍ତୁଦ୍ୱାରା ପରିଚ୍ଛେଦଶୂନ୍ୟ ଓ ବିଶ୍ୱାତ୍ମକ । ଅବିଦ୍ୟାରୁ ଭିନ୍ନ; ଏହିସବୁ କାରଣରୁ ବ୍ରହ୍ମଠାରୁ ଅନ୍ୟ ଉତ୍କୃଷ୍ଟବସ୍ତୁ ନାହିଁ । ଏହି ପରମାତ୍ମଭାବକୁ ଲକ୍ଷ୍ୟ କରି ମହର୍ଷି ଯାଜ୍ଞବଲ୍‌କ୍ୟ ବାରମ୍ବାର ଉଲ୍ଲେଖ କରି ଅଛନ୍ତି—

"ସ ହୋବାଚୈତଦ୍‌ବୈ ଯଦକ୍ଷରଂ ଗାର୍ଗିବ୍ରାହ୍ମଣା ଅଭିବଦନ୍ତ୍ୟ-
ସ୍ଥୂଲମନଣ୍ୱ ହ୍ରସ୍ୱମଦୀର୍ଘମଲୋହିତମସ୍ନେହମଚ୍ଛାୟମତମୋଽବାୟ୍ୱନାକାଶ-
ମସଙ୍ଗମରସ-ମଗନ୍ଧ-ମଚକ୍ଷୁଷ୍କ-ମଶ୍ରୋତ୍ରମବାଗମନୋଽତେଜସ୍କ-ମପ୍ରାଣମ-
ମୁଖମମାତ୍ର-ମନନ୍ତର-ମବାହ୍ୟଂ ନ ତଦଶ୍ନାତି କଞ୍ଚନ ନ ତଦଶ୍ନାତି କଶ୍ଚନ ॥"

ବୃ: ଆ: ୩ । ୮ । ୮ ।

ଅର୍ଥାତ୍—ହେ ଗାର୍ଗି ! ବ୍ରହ୍ମବିଦ୍‌ମାନେ ଉକ୍ତ ଆକାଶର ଆଧାରକୁ ହିଁ ଅକ୍ଷର ବୋଲି ନିର୍ଦ୍ଦେଶ କରିଅଛନ୍ତି । ସେ ଅକ୍ଷର ଶବ୍ଦଦ୍ୱାରା ଅଭିହିତ । ସେ ସ୍ଥୂଳ ନୁହନ୍ତି, ଅଣୁ, ହ୍ରସ୍ୱ ବା ଦୀର୍ଘ ନୁହନ୍ତି ; ଲୋହିତ, ସ୍ନେହ ବା ଛାୟା ନୁହନ୍ତି; ତମଃ, ବାୟୁ ବା ଆକାଶ ନୁହଁନ୍ତି; ସେ ରସ, ଗନ୍ଧ ବା ଶବ୍ଦ ନୁହନ୍ତି; ଚକ୍ଷୁ ବା ଶ୍ରୋତ୍ର ନୁହନ୍ତି; ସଙ୍ଗ, ବାକ୍ୟ ବା ମନଃ ନୁହନ୍ତି; ତେଜ, ପ୍ରାଣ, ମୁଖ ବା ମାତ୍ରା ନୁହେଁ; ଅନ୍ତର ବା ବାହ୍ୟ ନୁହେଁ; ଅତଏବ ନେତି ନେତି ବୋଲି ତାଙ୍କର ଆଦେଶ ଉପନିଷଦ୍‌ରେ ଉକ୍ତ ହୋଇଛି ।

"ଅଥା ଆଦେଶୋ ନେତ ନେତ ।।" ବୃ: ଆ: ୩ । ୨ । ୬ ।

ଆହୁରି ମଧ୍ୟ—

......"ସ ଏଷ ନେତ ନେତ୍ୟାତ୍ମାଽଗୃହ୍ୟୋ ନ ହି ଗୃହ୍ୟତେଽଶୀର୍ଯ୍ୟୋ ନ ହି ଶୀର୍ଯ୍ୟତେଽସଙ୍ଗୋ ନ ହି ସଜ୍ଜତେଽସିତୋ ନ ବ୍ୟଥତେ ନ ରିଷ୍ୟତ......।।"

ବୃ: ଆ: ଉ: ୩ । ୯-୨୬ । ୪ । ୨ । ୪ । ୪ । ୪ । ୨୨ । ୪ । ୫ । ୧୫ ।

ଅର୍ଥ—ଏହି ଆତ୍ମା ନ ଇତି, ଅର୍ଥାତ୍ ସକଳପ୍ରକାରେ ନିଷିଦ୍ଧ; ଏହା ଅଗୃହ୍ୟ, ଅର୍ଥାତ୍ ଏହାଙ୍କୁ ଗ୍ରହଣ କରି ଯାଇ ପାରେ ନାହିଁ; ଏହା ଅଶୀର୍ଯ୍ୟ—ଶୀର୍ଣ୍ଣ ହୁଅନ୍ତି ନାହିଁ । ଏ ଅସଙ୍ଗ, କୌଣସିଠାରେ ସକ୍ତ ହୁଅନ୍ତି ନାହିଁ । ଏ ଅବଦ୍ଧ, କୌଣସିଠାରେ ବ୍ୟଥାପ୍ରାପ୍ତ ହୁଅନ୍ତି ନାହିଁ । ସେ ହିଂସିତ ହୁଅନ୍ତି ନାହିଁ । ଏହିପରି ବାକ୍ୟସମୂହ ବୃହଦାରଣ୍ୟକରେ ବାରମ୍ବାର ଉକ୍ତ ହୋଇଅଛି ।

ସକଳ ବେଦାନ୍ତଶାସ୍ତ୍ରରେ ଏହିପରି ଅଭାବାର୍ଥକ ନଞ୍‌ଦ୍ୱାରା କେବଳ ପରଂବ୍ରହ୍ମ ପରମାତ୍ମାଙ୍କର ସ୍ୱରୂପ ନିର୍ଦ୍ଦିଷ୍ଟ ହୋଇଅଛି । ଯଥା—

"ଅଶବ୍ଦମସ୍ପର୍ଶମରୂପମବ୍ୟୟଂ ତଥାଽରସଂ ନିତ୍ୟମଗନ୍ଧବଚ୍ଚ ଯତ୍......।।"

କଠ-୩ । ୧୫ ।

"ଯତ୍ତଦଦ୍ରେଶ୍ୟମଗ୍ରାହ୍ୟମଗୋତ୍ରମବର୍ଣ୍ଣମଚକ୍ଷୁଃଶ୍ରୋତ୍ରଂ ତଦପାଣିପାଦମ୍...।।"

ମୁଣ୍ଡକ-୧ । ୬ ।

ଅର୍ଥାତ୍ ବ୍ରହ୍ମ ଶବ୍ଦବିହୀନ, ସ୍ପର୍ଶ ବା ରୂପହୀନ, ରସ, ଗନ୍ଧ ବା ବ୍ୟୟଶୂନ୍ୟହୀନବସ୍ତୁ; ସେ ଅଦୃଶ୍ୟ, ଅଗ୍ରାହ୍ୟ, ଅଗୋତ୍ର ଓ ଅବର୍ଣ୍ଣ; ତାହାଙ୍କର ଚକ୍ଷୁ, କର୍ଣ୍ଣ, ହସ୍ତ ବା ପଦ ନାହିଁ । ମଣ୍ଡୂକଶ୍ରୁତିରେ ମଧ୍ୟ ଉକ୍ତ ଅଛି—

"ନାନ୍ତଃପ୍ରଜ୍ଞଂ ନ ବହିଃପ୍ରଜ୍ଞଂ ନୋଭୟତଃ ପ୍ରଜ୍ଞମ୍...... ॥"

ଇତ୍ୟାଦି—ଏହିପରି ବ୍ରହ୍ମଙ୍କୁ ଉପନିଷଦ୍ ପ୍ରତିପାଦନ କରିଅଛନ୍ତି । କେନ-ଉପନିଷଦ୍ ମଧ୍ୟ ଏହାଙ୍କୁ ପ୍ରତିପାଦନ କରେ ।

..."ଅନ୍ୟଦେବ ତଦ୍ବିଦିତାଦଥୋ ଅବିଦିତାଦଧି...॥" କେନ-୧ । ୩ ।

ଅର୍ଥାତ୍ ଜଗତର ସକଳ ଜ୍ଞାତ ବା ଜ୍ଞାତବ୍ୟ ବସ୍ତୁରୁ ବ୍ରହ୍ମ ଭିନ୍ନ ଅଟନ୍ତି ଏବଂ ଅବିଦିତ ବା ସୂକ୍ଷ୍ମ ହେତୁରୁ ଯାହା ଜ୍ଞାନଗୋଚର ହୁଏ ନାହିଁ, ସେଥିରୁ ମଧ୍ୟ ବ୍ରହ୍ମ ଭିନ୍ନ । ଏହି ହେତୁରୁ ସେ ଅଲେଖ ପରଂବ୍ରହ୍ମ—କ୍ଷରାକ୍ଷରଶୂନ୍ୟ ଅଶାକ୍ଷର ଅଲକ୍ଷ୍ୟ ବୋଲି ଯୋଗଶିଖଶ୍ରୁତି ଅନୁସାରେ ପୂର୍ବେ ପ୍ରତିପାଦିତ କରାଯାଇଛି ।

ପୁନଶ୍ଚ—ଏ ସମ୍ବନ୍ଧରେ ଯୋଗବାଶିଷ୍ଠକାର କହିଛନ୍ତି—

"ଏକଂ ଚିନ୍ମାତ୍ରମସ୍ତୀହ ଶୁଦ୍ଧଂ ସୌମ୍ୟମଲକ୍ଷିତମ୍ ।
ସୂକ୍ଷ୍ମାତ୍ସୂକ୍ଷ୍ମତରଂ ଶାନ୍ତଂ ନ ଜଗନ୍ନଜଗତ୍ କ୍ରିୟା ॥"

ଯୋ: ବା: ନି: ୮୨ । ୧୫ ।

ଏହି ସଂସାରରେ ସୂକ୍ଷ୍ମରୁ ସୂକ୍ଷ୍ମତର ଅଲକ୍ଷ୍ୟ, ନିର୍ଦ୍ଦୋଷ ଓ ପ୍ରଶାନ୍ତରୂପକ ଏକ ଚିତ୍ କେବଳ ସତ୍ । ଜଗତ୍ ବା ଜଗତ୍ର ପରିସ୍ପନ୍ଦ କୌଣସିମତେ ସତ୍ ନୁହେଁ ।

"ସ୍ୱୟମେବ ବିଚାରସ୍ଥ ସ୍ୱତ ଉତ୍ଥଂ ସ୍ୱକଂ ବପୁଃ ।
ନାଶୟିତ୍ୱା କରୋତ୍ୟାଶୁ ପ୍ରତ୍ୟକ୍ଷଂ ପରମଂ ମହତ୍ ॥
ବିଚାରବାନ୍ ବିଚାରୋଽପି ଆତ୍ମାନମବଗଚ୍ଛତ ।
ଯଦା ତଦା ନିରୁଲ୍ଲେଖଂ ପରମେବାବଶିଷ୍ୟତେ ॥"

ଯୋଗ: ୧୯ । ୨୩ । ୨୪ ।

ସ୍ୱୟଂ ବିଚାରଦ୍ୱାରା ବୁଝିବାକୁ ହେବ ଯେ, ଜଗତ୍ ଆତ୍ମପ୍ରକୃତି ଅଜ୍ଞାନର ବପୁ ବା ଶରୀର ଏବଂ ଅଜ୍ଞାନ ଓ ଅଜ୍ଞାନଜ ଶରୀର-ଜଗତ୍—ଉଭୟ ଅଭିନ୍ନ । ବିଚାର, ଅର୍ଥାତ୍ ଆତ୍ମାର ପ୍ରକାଶବିଶେଷ, ତାହା ଆତ୍ମାରେ ଆବିର୍ଭୂତ ହୋଇ ଅବିଚାର, ଅର୍ଥାତ୍ ଜଗଦ୍-ବପୁ ଅଜ୍ଞାନର ବିନାଶ କରେ । ସେଥିନିମନ୍ତେ ସେହି ଅବସ୍ଥାରେ ବିଚାରବାନ୍ ପୁରୁଷ ପରମମହତ୍ (ମହିମା) ବା ଅପରିଚ୍ଛିନ୍ନ ପ୍ରତ୍ୟକ୍ଷକୁ ଅବଗତ ହୁଅନ୍ତି । ସେହି ସମୟରେ ସେହି ବିଚାରବାନ୍ ପୁରୁଷ ଆପଣାକୁ ଜାଣିପାରେ ଏବଂ ତାହାର ବିଚାର ମଧ୍ୟ ନିବୃତ୍ତ ହୁଏ, ଅର୍ଥାତ୍ ସେ ସମୟରେ

ବଗୃର ନରୁଲ୍ଲେଖ୍ୟ ଅର୍ଥାତ୍ ଯାହା ଲେଖି ହୁଏ ନାହିଁ—ଏପରି ଶବ୍ଦାବର ଅବଷୟୀଭୂତ ଏକମାତ୍ର ଅଲେଖ * ପରଂବ୍ରହ୍ମରୂପରେ ପର୍ଯ୍ୟବସିତ ରହେ । ଆହୁରି ମଧ୍ୟ—

"ଉଲ୍ଲେଖମାତ୍ରଂ ନ ହି ଭିନ୍ନମୁଚ୍ଚୈରୁଲ୍ଲେଖମାତ୍ରଂ ନ ତିରୋହିତଂ ବୈ ॥"

ଅବଧୂତଗୀତା ୪ । ୧୩ ।

ଅର୍ଥାତ୍ ସେହି ପରମାତ୍ମା ଉଲ୍ଲେଖମାତ୍ର ନୁହଁନ୍ତି, ଅର୍ଥାତ୍ ତାହାଙ୍କ ସମ୍ବନ୍ଧରେ କିଛି ଲେଖା ବା ବର୍ଣ୍ଣନା କରିଯାଇ ନ ପାରେ, ଲେଖିବା ବା ବର୍ଣ୍ଣନା କରିବାଦ୍ୱାରା ତାଙ୍କ ବିଷୟ ଜ୍ଞାତ ହୁଏ ନାହିଁ । ପରନ୍ତୁ ବେଦର ଯେଉଁ ଉଚ୍ଚ ସ୍ତରର ଲେଖା, ସେଥିରେ ସେ ଲୁଚିକରି ରହି ଅଛନ୍ତି; ଅର୍ଥାତ୍ ଅଜ୍ଞାତ, ଅଥଚ ରହସ୍ୟମୟ ଭାବରେ ସେ ରହିଅଛନ୍ତି ।

ଭକ୍ତ ଭୀମଭୋଇ ଅଲେଖ ପରଂବ୍ରହ୍ମଙ୍କ ବିଷୟରେ ଏ ପରି ବର୍ଣ୍ଣନା କରିଛନ୍ତି—

"ଅଣଅକ୍ଷର ଅଲେଖ ପୁରୁଷ ଅଟଇ,
ଅନାମ ଅରୂପ ବ୍ରହ୍ମ ତାହାଙ୍କୁଟି କହି ॥ ବ୍ରହ୍ମ: ନି: ୩ । ୧୦ ।
ଅଲେଖବ୍ରହ୍ମର ପଦ ଗୁରିଯୁଗେ ସତ ।
ପୂର୍ବର ସୁକୃତ ଥିଲେ ଲଭିବ ସେ ପଥ ॥ ବ୍ରହ୍ମ: ନି: ୫ । ୩ ।

---

* ମହିମାଧର୍ମସମାଜରେ ଅଲେଖବ୍ରହ୍ମ-ନାମ କେବଳ ସ୍ମରଣପୂର୍ବକ ଉଚ୍ଚାରଣ କରିବା ମଧ୍ୟ ଉପଦିଷ୍ଟ ହୋଇଅଛି । କାରଣ, ଲେଖ (ବ୍ୟକ୍ତ) ଶବ୍ଦରୂପନାମାଦି କଳ୍ପିତ ଦେବାଦେବୀଙ୍କଠାରେ ପ୍ରଯୁଜ୍ୟ ହୁଏ; କିନ୍ତୁ ଅରୂପ, ଅନାମ, ଅବ୍ୟକ୍ତବ୍ରହ୍ମ ଲେଖମଣ୍ଡଳର ଊର୍ଦ୍ଧ୍ୱଦେଶ ମହାଶୂନ୍ୟପୁରରେ ଅବସ୍ଥିତ ସେହି ହେତୁରୁ ତାଙ୍କର ନାମ ଅଲେଖ ପରଂବ୍ରହ୍ମ । ଦେବତାମାନଙ୍କର ଲେଖ ନାମ ଥିବା ପୁରାଣମାନଙ୍କରେ ଦେଖାଯାଏ – ଯଥା,

"ଲେଖାଂସ୍ତଥା ପ୍ରବକ୍ଷ୍ୟାମି ବ୍ରୁବତୋ ମେ ନିବୋଧତ ।
ମନୋଜବଃ ପ୍ରଘାସସ୍ତୁ ପ୍ରଚେତାସ୍ତୁ ମହାଯଶାଃ ॥
ବାତୋ ଧ୍ରୁବଃ ଛିଦ୍ରଶ୍ଚୈବ ଅଭୂ ତଶ୍ଚୈବ ବୀର୍ଯ୍ୟବାନ୍ ।
ଅବନୋ ବୃହସ୍ପତଶ୍ଚୈବ ଲେଖାଃ ସଂପରିକୀର୍ତ୍ତିତାଃ ॥" ବାୟୁପୁରାଣ ୬୨ । ୬୩ ।୬୪ ।

ଅର୍ଥ—ବର୍ତ୍ତମାନ ଲେଖନାମକ ଦେବତାମାନଙ୍କ ନାମ କହୁଅଛୁଁ, ଶୁଣ—ମନୋଜବ, ପ୍ରଘାସ, ମହାଯଶା, ପ୍ରଚେତା, ବାତ, ଧ୍ରୁବ, ଛିଦ୍ର, ବୀର୍ଯ୍ୟବାନ, ଅଦ୍ଭୁତ, ଅବନ୍ ଓ ବୃହସ୍ପତ—ଏମାନେ ଲେଖଗଣରେ ନିର୍ଦ୍ଦିଷ୍ଟ ହୋଇଅଛନ୍ତି । "ଲେଖ ଅଦିତିନନ୍ଦନାଃ" ଅମର କୋଷ । ପ୍ରକୃତରେ ଯାହାସବୁ ଜାତ ଓ ମୃତ୍ୟୁଶୀଳ—ବ୍ରହ୍ମାଦି ପର୍ଯ୍ୟନ୍ତ ଦ୍ୱୈତବସ୍ତୁ—ସେସବୁ ଲେଖ ନାମରେ କଥିତ; କିନ୍ତୁ ଅଜାତ ଅଶ୍ରୁତ, ଅମୃତ, ବିଶୁଦ୍ଧାଦ୍ୱୈତ ବସ୍ତୁସକଳ ଅଗଣିତ-ଅଲେଖ-ଅନାମ ନାମରେ କଥିତ ହୁଅନ୍ତି ।

ଅଲେଖ ବୋଲିବା ଯେବଣ ଶବଦ,
ବ୍ରହ୍ମଜ୍ଞାନୀ ଜନେ କର୍ଣ୍ଣେ ଶୁଣି ଭେଦ ।
ଗୁରୁମୁଖେ କହି ଲେଖି ନ ପାରିଲେ,
ଅଲେଖ ବୋଲିଣ ନାମ ତହୁଁ ଦେଲେ ।
ଅଲେଖ ପୁରୁଷନାମ ଲେଖି ନୁହଁଇ,
କେତୁ ପାରିବ କହି ।—ଇତ୍ୟାଦି ”।

ଉପର୍ଯ୍ୟୁକ୍ତ ଉପନିଷଦ୍ ବାକ୍ୟକୁ ଲକ୍ଷ୍ୟ କରି ବାଦରାୟଣ କହୁଛନ୍ତି—

“ଅରୂପବଦେବ ହି ତତ୍ପ୍ରଧାନତ୍ୱାତ୍ ” ।   ବେ: ସୂ: ୩ । ୨ । ୧୪ ॥

ଅର୍ଥ—ଅରୂପବତ୍ (ବ୍ରହ୍ମ ରୂପହୀନ), ଏବହି (ଏହାହିଁ ନିଶ୍ଚିତ), ତତ୍ ପ୍ରଧାନତ୍ୱାତ୍ (ଯେଉଁ ସକଳ ବାକ୍ୟ ବ୍ରହ୍ମଙ୍କୁ ଅରୂପ ବୋଲି କହେ, ତାହା ସବୁ ବ୍ରହ୍ମଙ୍କର ସ୍ୱରୂପ ପ୍ରତିପାଦନ-ବିଷୟରେ ଉଦ୍ଦିଷ୍ଟ) । ଅର୍ଥାତ୍ ସାକାରକୁ ପରିହାର କରି ଅରୂପକୁ ସ୍ଥିର କରିବା ବିଧେୟ; କାରଣ, ବ୍ରହ୍ମପ୍ରତିପାଦକ ସେହି ସେହି ବାକ୍ୟନିଚୟ ତତ୍ପ୍ରଧାନ, ଅର୍ଥାତ୍ ଅଣାକ୍ଷର, ଅରୂପ, ଅଲେଖବ୍ରହ୍ମ ପ୍ରଧାନ, ସେ ସକଳ ବାକ୍ୟ ଅରୂପ ବ୍ରହ୍ମଙ୍କୁହିଁ ମୁଖ୍ୟରୂପେ ପ୍ରତିପାଦନ କରେ ।

“ଆହ ଚ ତନ୍ମାତ୍ରମ୍” ।   ବେ: ସୂ: ୩ । ୨ : ୧୬ ॥

ଅର୍ଥ—ଆହଚ ( ଶ୍ରୁତି ମଧ୍ୟ କହେ ) ତନ୍ମାତ୍ରମ୍ (ପରମାତ୍ମାଙ୍କର ଅନ୍ତର-ବାହ୍ୟ ନାହିଁ, ଚୈତନ୍ୟ ଭିନ୍ନ ଅନ୍ୟରୂପ ବା ଆକାର ନାହିଁ, ନିରବଚ୍ଛିନ୍ନ-ଚୈତନ୍ୟ କେବଳ ପରମାତ୍ମାଙ୍କର ସାର୍ବକାଳିକ ରୂପ) ।

“ସ ଯଥା ସୈନ୍ଧବଘନଃ ଅନନ୍ତରଃ ଅବାହ୍ୟଃ କୃତ୍ସ୍ନଃ-ରସଘନ ଏବ, ଏବଂ ବା ଅରେ ଅୟମାତ୍ମାଅନନ୍ତରଃ ଅବାହ୍ୟଃ କୃତ୍ସ୍ନଃ ପ୍ରଜ୍ଞାଘନ ଏବ...” ॥   ବୃ: ଆ: ଉ: ୪ । ୫ । ୧୩ ।

ଅର୍ଥାତ୍ ଖଣ୍ଡେ ସୈନ୍ଧବ ଲବଣ ଯେପରି ଭେଦହୀନ, ବାହ୍ୟହୀନ, ସମଗ୍ର ଓ ଘନୀଭୂତ ଲବଣରସସ୍ୱରୂପ, ସେହିପରି ବ୍ରହ୍ମ ମଧ୍ୟ ଭେଦହୀନ, ବାହ୍ୟହୀନ; ସମଗ୍ର ଘନୀଭୂତ ଚୈତନ୍ୟ ମାତ୍ର । ପୁନଶ୍ଚ—ଏହି ଅରୂପ ଅବ୍ୟକ୍ତ ବ୍ରହ୍ମ ନିରୂପିତ ହେବାପରେ ସେହି କେବଳ ଉପାସ୍ୟ ବୋଲି ବର୍ଣ୍ଣିନା କରାଯାଇଛି—

"ପ୍ରକୃତୈତାବତ୍ତ୍ୱଂ ହି ପ୍ରତିଷେଧତି ତତୋ ବ୍ରବୀତି ଚ ଭୂୟଃ" ॥

ବେ: ସୂ: ୩ । ୨ । ୨୨ ।

ଶ୍ରୁତିରେ ପରଂବ୍ରହ୍ମଙ୍କର ପ୍ରସ୍ତାବିତ ଦ୍ୱୈତାଦ୍ୱୈତ ରୂପକୁ (ମୂର୍ତ୍ତ ଓ ଅମୂର୍ତ୍ତ) ନିଷେଧ କରି କହିଅଛନ୍ତି—"ବ୍ରହ୍ମ ଏହାଠାରୁ ଅତିରିକ୍ତ" ଅର୍ଥାତ୍, ଅବାଙ୍ମନସଗୋଚର । ଏହିସବୁ କାରଣରୁ ଏହା ସ୍ଥିର ଭାବରେ ଜଣାଯାଏ ଯେ, ପରମାର୍ଥକଳ୍ପରେ ସେହି ବ୍ରହ୍ମଙ୍କର ରୂପ ଆଦି କିଛି ନାହିଁ । ସେ ସତ୍‌ଚିତ୍‌ସ୍ୱରୂପ—

"ଦ୍ୱେ ବାବ ବ୍ରହ୍ମଣୋ ରୂପେ, ମୂର୍ତ୍ତଂ ଚୈବ ଅମୂର୍ତ୍ତଂ ଚ, ମର୍ତ୍ତ୍ୟଞ୍ଚାମୃତଞ୍ଚ ସ୍ଥିତଂ ଚ ଯତ୍ ଚ, ସତ୍ ଚ ତ୍ୟତ୍ ଚ"— ବୃ: ଆ: ଉ: ୨ । ୩ । ୧ ॥

ଅର୍ଥାତ୍ ବ୍ରହ୍ମଙ୍କର ଦୁଇଟି ରୂପ, ଏକ ମୂର୍ତ୍ତ (ଯାହା ଦେଖାଯାଏ), ଅନ୍ୟ ଏକ ଅମୂର୍ତ୍ତ (ଯାହା ଦେଖାଯାଏ ନାହିଁ); ଏକ ସ୍ଥିର, ଦ୍ୱିତୀୟ ଗତିଶୀଳ, ଏକ ସ୍ଥୂଳ ଓ ଅନ୍ୟ ସୂକ୍ଷ୍ମ । ତାହାପରେ ମଧ୍ୟ କୁହାଯାଇଛି—

ଅର୍ଥାତ୍..."ଆଦେଶୋ ନେତି ନେତି, ନ ହି ଏତସ୍ମାତ୍ ଇତି ନ ଇତି ଅନ୍ୟତ୍ ପରଂ ଅସ୍ତି..." ॥ ବୃ: ଆ: ୨ । ୩ । ୬ ॥

ଅର୍ଥାତ୍ ଏଥିନିମନ୍ତେ ଉପଦେଶ ଦିଆଯାଇଅଛି ଯେ, ଏହା ନୁହେଁ ଏହା ନୁହେଁ ।" ଏଠାରେ ଏହା ନୁହେଁ—କହିବାର ଉଦ୍ଦେଶ୍ୟ ଏହି ଯେ, ବ୍ରହ୍ମଙ୍କର ଦୁଇଟି ରୂପ ସତ୍ୟ ନୁହେଁ, "ଅନ୍ୟତ୍ ପରମ୍"—ଅର୍ଥାତ୍ ଶ୍ରେଷ୍ଠ ବସ୍ତୁ ବ୍ରହ୍ମହିଁ ସତ୍ୟର ସତ୍ୟ ।

ତଦବ୍ୟକ୍ତମାହ ହି, ଅପିଚ ସଂରାଧନେ ପ୍ରତ୍ୟକ୍ଷାନୁମାନାଭ୍ୟାମ୍ ।

ବେ: ସୂ: ୩ । ୨ । ୨୩—୨୪ ॥

* ତତ (ସେହି ବ୍ରହ୍ମ), ଅବ୍ୟକ୍ତମ୍ (ଇନ୍ଦ୍ରିୟଗ୍ରାହ୍ୟ ନୁହଁନ୍ତି), ଆହ ହି (ସେହି କଥା ଶ୍ରୁତି ଓ ସ୍ମୃତିମାନଙ୍କରେ ବ୍ରହ୍ମଙ୍କୁ ଅବ୍ୟକ୍ତ ବୋଲି କୁହାଯାଇଛି) । ନିଷିଦ୍ଧମାନ ପ୍ରପଞ୍ଚରୁ ବ୍ରହ୍ମ ଅତିରିକ୍ତ; ସେ ଯଦି ଅଛନ୍ତି, ତେବେ ଇନ୍ଦ୍ରିୟମାନଙ୍କର ଗ୍ରାହ୍ୟ ବା ଜ୍ଞାନର ବିଷୟ କାହିଁକି ହେଉ ନାହାଁନ୍ତି—ଏହାର ଉତ୍ତରରେ କୁହାଯାଏ ଯେ, ସେ ଅବ୍ୟକ୍ତ ବା ଇନ୍ଦ୍ରିୟଗ୍ରାହ୍ୟ ନୁହଁନ୍ତି; ଇନ୍ଦ୍ରିୟଗ୍ରାହ୍ୟ ନ ହେଲେ ମଧ୍ୟ ଇନ୍ଦ୍ରିୟାତିରିକ୍ତ ପ୍ରମାଣ ଗ୍ରାହ୍ୟ, ସେ ଭଜନଜନ୍ୟ ଦର୍ଶନ, ଶ୍ରବଣ ଓ ମନନାଦିଦ୍ୱାରା ସଂସ୍କୃତ ମାନସର ଗୋଚର ହୁଅନ୍ତି ।

"...କଶ୍ଚିଦ୍ ଧୀରଃ ପ୍ରତ୍ୟଗାତ୍ମାନଂ ଐକ୍ଷତ
ଆବୃତ୍ତଚକ୍ଷୁଃ ଅମୃତତ୍ୱମିଚ୍ଛନ୍ ॥　　କଠ-୨ । ୧ ।

ଅର୍ଥାତ୍ ଧୀମାନ୍ ବ୍ୟକ୍ତି ଇନ୍ଦ୍ରିୟନିରୋଧ କରି ମୋକ୍ଷ ଲାଭ ନିମନ୍ତେ ବ୍ରହ୍ମଙ୍କୁ ଦର୍ଶନ କରି ପାରନ୍ତି ।

"...ଯମେବ ଏଷ ବୃଣୁତେ ତେନ ଲଭ୍ୟଃ
ତସ୍ୟ ଏଷ ଆତ୍ମା ବିବୃଣୁତେ ତନୂଂ ସ୍ୱାମ୍ ॥"　(ମୁଣ୍ଡକ ୨ । ୨ । ୩)

ଅର୍ଥାତ୍ ବ୍ରହ୍ମ ଯାହାକୁ ବରଣ କରନ୍ତି । ସେହି ବ୍ୟକ୍ତି ବ୍ରହ୍ମଙ୍କୁ ଲାଭ କରିପାରେ, ତାହା ନିକଟରେ ବ୍ରହ୍ମ ନିଜ ସ୍ୱରୂପ ପ୍ରକାଶ କରନ୍ତି ।

ଜ୍ଞାନୀମାନେ ସଂରାଧନ ବା ଆରାଧନା ସମୟରେ ଏହି ଅବ୍ୟକ୍ତ, ଅରୂପ, ଅନିର୍ଦ୍ଦେଶ୍ୟ ଅଲେଖ, ନିଷ୍ପ୍ରପଞ୍ଚ ପରମାତ୍ମାଙ୍କୁ ଜ୍ଞାନ-ଚକ୍ଷୁରେ ଦର୍ଶନ କରନ୍ତି । ବିଶୁଦ୍ଧ ଚିତ୍ତରେ ଭକ୍ତି ଓ ଧ୍ୟାନ-ଧାରଣାଦ୍ୱାରା ରାଗ ବିନଷ୍ଟ ହେଲେ ସେଥିରେ ପ୍ରକୃଷ୍ଟରୂପରେ ବ୍ରହ୍ମଭାବ ସ୍ଥାପନ କରିବା ନାମ ପ୍ରଣିଧାନ । ଭକ୍ତିପୂର୍ବକ ଧ୍ୟାନ ବା ପ୍ରଣିଧାନ ଓ ପ୍ରଭୁଙ୍କ ନାମ ସ୍ମରଣ, ଭଜନ, ଦର୍ଶନ-ପ୍ରଭୃତି ଅନୁଷ୍ଠାନର ନାମ ସଂରାଧନ ବା ଆରାଧନା । ଏହି ଅବ୍ୟକ୍ତ ପରଂବ୍ରହ୍ମ କେବଳ ଆରାଧନା ଯୋଗ୍ୟ; ଏହା ପ୍ରତ୍ୟକ୍ଷ ଓ ଅନୁମାନସିଦ୍ଧ * । ବେଦରେ ମଧ୍ୟ ଉକ୍ତ ଅଛି—

ଯ ଏକ ଇତ୍ ତମୁଷ୍ଟୁହି କୃଷ୍ଟୀନାଂ ବିଚର୍ଷଣିଃ ।
ପତିର୍ଜଜ୍ଞେ ବୃଷକ୍ରତୁଃ ॥　　ଋଗ୍‌ବେଦ-୬।୪୫।୧୬ ॥

ଯେ ଏକ ଅଦ୍ୱିତୀୟ, ଯେ ମନୁଷ୍ୟମାନଙ୍କର ସର୍ବଦ୍ରଷ୍ଟା, ଯେ ସର୍ବଶକ୍ତିମାନ୍ ଓ ପାଳକ, ତାହାଙ୍କୁ କେବଳ ସ୍ତୁତି ଓ ଜଣାଣ ସହ ଉପାସନା କର । ଆହୁରି ମଧ୍ୟ, ଉପନିଷଦ୍‌ରେ ଏକ ବ୍ରହ୍ମପରାୟଣ ହେବା ନିମନ୍ତେ ଉପଦେଶ ଦିଆଯାଇଛି—

* "ସଂରାଧନମାରାଧନମିତ୍ୟନର୍ଥାନ୍ତରମ୍ । ଆରାଧନକାଳେ ଏନମବ୍ୟକ୍ତଂ ପଶ୍ୟନ୍ତି ଯୋଗିନ ଇତି ପୂରଣୀୟମ୍ । ସ ଆତ୍ମା ଭକ୍ତ୍ୟା ନିପ୍ରଣିଧାନାଦ୍ୟନୁଷ୍ଠାନସଂସ୍କୃତମନସୈବଗୃହ୍ୟତେ ନ ତ୍ୱିନ୍ଦ୍ରିୟୈଃ । ଏତଚ୍ଚ ପ୍ରତ୍ୟକ୍ଷାନୁମାନ ଭ୍ୟାଂ ବିଜ୍ଞାୟତେ । ପ୍ରତ୍ୟକ୍ଷାନୁମାନାଭ୍ୟାଂ ଶ୍ରୁତିସ୍ମୃତିଭ୍ୟାମ୍ । ·ଏହି ନିଷ୍ପ୍ରପଞ୍ଚ ଆତ୍ମା ଇନ୍ଦ୍ରିୟଦ୍ୱାରା ଗୃହୀତ, ଅର୍ଥାତ୍ ବିଜ୍ଞାତ ହୁଅନ୍ତି ନାହିଁ । ଶ୍ରୁତି ଓ ସ୍ମୃତିରୁ ଜଣାଯାଏ ଯେ, ଏହି ପରମାତ୍ମାଙ୍କ ଆରାଧନା କାଳରେ ଆରାଧକର ଭକ୍ତ ପବିତ୍ର ଚିତ୍ତରେ ବିଜ୍ଞାତ, ଅର୍ଥାତ୍ ପ୍ରକାଶିତ ହୁଏ ।

"ବିଶେଷଂ ସଂପରିତ୍ୟଜ୍ୟ ସନ୍ମାତ୍ରଂ ଯଦଲେପକମ୍ ।
ଏକରୂପଂ ମହାରୂପଂ ସତ୍ତାୟାସ୍ତତ୍ ପଦଂ ବିଦୁଃ ।।
କାଳସତ୍ତା କଳାସତ୍ତା ବସ୍ତୁସତ୍ତେୟମିତ୍ୟପି ।
ବିଭାଗକଳନାଂ ତ୍ୟକ୍ତ୍ୱା ସନ୍ମାତ୍ରୈକପରୋ ଭବ ।।
ସତ୍ତାସାମାନ୍ୟମେବୈକଂ ଭାବୟନ୍ କେବଳଂ ବିଭୁଃ ।
ପରିପୂର୍ଣ୍ଣଃ ପରାନନ୍ଦୀ ତିଷ୍ଠ ଆପୂରିତଦିଗନ୍ତରଃ ।।
ସତ୍ତାସାମାନ୍ୟପର୍ଯ୍ୟନ୍ତେ ଯତ୍ତତ୍କଳନୟୋଜ୍‌ଝିତମ୍ ।
ପଦମାଦ୍ୟମନାଦ୍ୟନ୍ତଂ ତସ୍ୟ ବୀଜଂ ନ ବିଦ୍ୟତେ ।।
ଯତ୍ର ସଂଲୀୟତେ ସଂବିନ୍ନିର୍ବିକଳ୍ପଂ ଚ ତିଷ୍ଠତି ।
ଭୂୟୋ ନ ବର୍ତ୍ତତେ ଦୁଃଖେ ତତ୍ର ଲବ୍ଧପଦଃ ପୁମାନ୍ ।।
ତଦ୍ଧେତୁଃ ସର୍ବଭୂତାନାଂ ତସ୍ୟ ହେତୁର୍ନ ବିଦ୍ୟତେ ।
ସ ସାରଃ ସର୍ବସାରାଣାଂ ତସ୍ମାତ୍ ସାରୋ ନ ବିଦ୍ୟତେ" ।।

ଅନ୍ନପୂର୍ଣ୍ଣୋପନିଷଦ୍—ଅ ୪ । ୭୫-୭୦ ।

ମୁନିଶ୍ରେଷ୍ଠ ଋଭୁ ନିଦାଘଙ୍କୁ ଉପଦେଶ ଦେଇ ଅଛନ୍ତି—ବିଶିଷ୍ଟରୂପ ପରିତ୍ୟାଗ କରି ଲେପହୀନ, ଏକରୂପ ବ୍ୟାପକ ଯେଉଁ ସନ୍ମାତ୍ରଚୈତନ୍ୟ, ତାହାହିଁ ସର୍ବାନୁଗତ ବ୍ରହ୍ମରୂପ ସତ୍ତ୍ୱସ୍ୱରୂପ—ଏହା ଆତ୍ମଜ୍ଞ ପଣ୍ଡିତମାନେ ଜାଣନ୍ତି । ଏହା କାଳର ସତ୍ତ୍ୱ ଓ କଳା ବା ଅଂଶ-ଭୂତବସ୍ତୁର ସତ୍ତ୍ୱ; ଏହା ଅବୟବୀବସ୍ତୁର ସତ୍ତ୍ୱ—ଏହିପରି ବିଶେଷ-ବିଶେଷସତ୍ତ୍ୱ ପରିତ୍ୟାଗ କରି ଏକମାତ୍ର ସର୍ବାନୁଗତ ସତ୍ତ୍ୱରୂପକ ବ୍ରହ୍ମନିଷ୍ଠ ହେବା ବିଧେୟ । ଅଦ୍ୱିତୀୟ ସତ୍ତ୍ୱସାମାନ୍ୟ ଭାବନା କରି ବିଭୁ, ପରିପୂର୍ଣ୍ଣ ଓ ବ୍ରହ୍ମାନନ୍ଦବିଶିଷ୍ଟ ହୋଇ ସକଳଦିଗକୁ ସ୍ୱସତ୍ତ୍ୱଦ୍ୱାରା ପୂର୍ଣ୍ଣକରି ଅବସ୍ଥାନ କର । ସତ୍ତ୍ୱସାମାନ୍ୟରୂପରେ ପର୍ଯ୍ୟବସିତ ବ୍ରହ୍ମସ୍ୱରୂପରେ ଯତ୍ତତ୍‌ପଦର ଅବାଚ୍ୟ ହୋଇ ଯେ ଅପରିଚ୍ଛିନ୍ନ ଓ ସମସ୍ତଙ୍କର ଆଦିରେ ବିଦ୍ୟମାନ, ଯେ ଆଦି ଓ ଅନ୍ତଶୂନ୍ୟ ସେହି ପଦର କାରଣ ନାହିଁ; ଯହିଁରେ ବିଶେଷବିଜ୍ଞାନ ଲୀନ ହୁଏ ଏବଂ ଯାହା ନିର୍ବିକଳ୍ପରୂପରେ ଅବସ୍ଥିତ, ତାଙ୍କର ସ୍ୱରୂପଲାଭ କଲେ ପୁରୁଷ ଆଉ ଦୁଃଖପ୍ରାପ୍ତ ହୁଏ ନାହିଁ । ସେହି କେବଳ ସକଳ—ପ୍ରାଣୀଙ୍କର ହେତୁ; କିନ୍ତୁ ତାଙ୍କର କୌଣସି ହେତୁ ନାହିଁ; ତାହା ସମସ୍ତ ସାରବସ୍ତୁର ସାର, ତାହାଙ୍କଠାରୁ ଭିନ୍ନ ସାରବସ୍ତୁ ବିଦ୍ୟମାନ ନୁହେଁ ।

"ତସ୍ମିଂଶ୍ଚିଦ୍‌ଦର୍ପଣେ ସ୍ଫାରେ ସମସ୍ତା ବସ୍ତୁଦୃଷ୍ଟୟଃ ।
ଇମାସ୍ତାଃ ପ୍ରତିବିମ୍ବନ୍ତି ସରସୀବ ତଟଦ୍ରୁମାଃ ।।

ତଦମଲମଜରଂ ତଦାତ୍ମତତ୍ତ୍ୱଂ
ତଦବଗତାବୁପଶାନ୍ତମେତ ଚେତଃ ।
ଅବଗତବତତୈକ ତତ୍ ସ୍ୱରୂପେ
ଭବଭୟମୁକ୍ତପଦୋଽସି ସମ୍ୟଗେବ ।।
ଏତେଷାଂ ଦୁଃଖବୀଜାନାଂ ପ୍ରୋକ୍ତଂ ଯଦ୍ ଯନ୍ମୟୋତ୍ତରମ୍ ।
ତସ୍ୟ ତସ୍ୟ ପ୍ରୟୋଗେଣ ଶୀଘ୍ରଂ ତତ୍ ପ୍ରାପ୍ୟତେ ପଦମ୍" ।।

ଅନ୍ନପୂର୍ଣ୍ଣୋପନିଷଦ୍ । ୪ । ୨୧—୨୩ ।

ସେହି ପରିଦୃଷ୍ଟ ସ୍ୱୟଂପ୍ରକାଶ ଚୈତନ୍ୟରୂପ ଦର୍ପଣରେ ଏହି ପରିଦୃଶ୍ୟମାନ ସକଳ ବସ୍ତୁଜ୍ଞାନ ସବୈବରଣ୍ଡରସ୍ଥ ବୃକ୍ଷଭଳି ପ୍ରତିବିମ୍ବିତ ହୋଇ ପ୍ରକାଶିତ ହୁଏ । ସେହି ଆତ୍ମତତ୍ତ୍ୱ ଅବିଦ୍ୟାଦି ଦୋଷଶୂନ୍ୟ ଏବଂ ଅବିନାଶୀ । ତାହାଙ୍କର ସ୍ୱରୂପ ଅବଗତ ହେଲେ ଚିତ୍ତ ଶାନ୍ତିଲାଭ କରେ । ତୁମ୍ଭେ ମଧ୍ୟ ସର୍ବାନୁଗତ ଅଦ୍ୱିତୀୟ ସେହି ବ୍ରହ୍ମସ୍ୱରୂପ ଅବଗତ ହେଲେ ଯଥାର୍ଥରୂପରେ ସଂସାରଭୟରହିତ ସେହି ବ୍ରହ୍ମ ସ୍ୱରୂପତା ଲାଭ କରିବ; ଏହି ସକଳ ଦୁଃଖ-ବୀଜର ଉପଶାନ୍ତି ନିମନ୍ତେ ଆମ୍ଭେ ଯେଉଁ ସମସ୍ତ ଉପାୟ କହିଅଛୁ, ତାହାର ଅନୁଷ୍ଠାନ ଦ୍ୱାରା ଶୀଘ୍ର ସେହି ବ୍ରହ୍ମପଦ ଲାଭ କରିବ ।

ବ୍ରହ୍ମ-ଉପାସନା ବିଷୟରେ ତୈତ୍ତିରୀୟଶ୍ରୁତି ଏହି ଉପଦେଶ ଦିଏ—

"...ଆକାଶଶରୀରଂ ବ୍ରହ୍ମ । ସତ୍ୟାତ୍ମପ୍ରାଣାରାମଂ ମନ ଆନନ୍ଦମ୍ । ଶାନ୍ତିସମୃଦ୍ଧମମୃତମ୍ । ଇତି ପ୍ରାଚୀନ ଯୋଗ୍ୟୋପାସ୍ସ୍ୱ" ।।

ତୈ: ଅ: ୨ । ୬ । ୧୭ ।

ଆକାଶ ତୁଲ୍ୟ ଶରୀର ଯାହାର, ସତ୍ୟସ୍ୱରୂପ, ପ୍ରାଣାରାମ (ପ୍ରାଣରେ ଆରାମ, ସମ୍ୟକ୍ ରମଣ ବା କ୍ରୀଡ଼ା ଯାହାର) ଏବଂ ଆନନ୍ଦମନା ଶାନ୍ତିସମୃଦ୍ଧ ଓ ଅମୃତସ୍ୱରୂପ ଯେଉଁ ବ୍ରହ୍ମ, ହେ ପ୍ରାଚୀନ ଯୋଗ୍ୟ ! ତୁମ୍ଭେ ସେହି ବ୍ରହ୍ମଙ୍କର ଉପାସନା କର ।

ଏହି ବ୍ରହ୍ମୋପାସନା ବିଷୟରେ ଶ୍ୱେତାଶ୍ୱତରଶ୍ରୁତିରେ ଏପରି ବର୍ଣ୍ଣନା ଦେଖାଯାଏ—

"ଉଦ୍‌ଗୀତମେତତ୍ ପରମଂ ତୁ ବ୍ରହ୍ମ
ତସ୍ମିଂସ୍ତ୍ରୟଂ ସୁପ୍ରତିଷ୍ଠାଽକ୍ଷରଂ ଚ ।
ଅତ୍ରାନ୍ତରଂ ବ୍ରହ୍ମବିଦୋ ବିଦିତ୍ୱା
ଲୀନା ବ୍ରହ୍ମଣି ତତ୍ପରା ଯୋନିମୁକ୍ତାଃ ।।"

ଶ୍ୱେତାଶ୍ୱ: ୧ । ୭-ନାରଦ ସୂ: ୯ । ୫ ।

ଅର୍ଥାତ୍ ଯାହାଙ୍କ ଅନୁଗ୍ରହରେ ଜୀବ ମୁକ୍ତିଲାଭ କରେ, ସେହି ବ୍ରହ୍ମଙ୍କ ବିଷୟରେ କୁହାଯାଇଛି—ଏହି ପରମବ୍ରହ୍ମ ସକଳ ବେଦମାନଙ୍କରେ ସର୍ବାଗ୍ରେ କୀର୍ତ୍ତିତ ହୋଇଅଛନ୍ତି ।

ଅବିଦ୍ୟାବସ୍ଥାରେ ତାହାଙ୍କଠାରେ ବେଦସମୂହ ଏବଂ ଓଁକାର ପ୍ରତିଷ୍ଠିତ ରହେ । ବ୍ରହ୍ମବିଦ୍‌ଗଣ ଅବିଦ୍ୟାପ୍ରପଞ୍ଚରୁ ଭିନ୍ନଭାବରେ, ଅର୍ଥାତ୍ ପୃଥକ୍‌ରୂପରେ କେବଳ ପରଂବ୍ରହ୍ମଙ୍କୁ ଅବଗତ ହୋଇ ଐକାନ୍ତିକ ଆତ୍ମଜ୍ଞାନ ଭକ୍ତିଯୋଗରେ ତାଙ୍କଠାରେ ମନୋନିବେଶ କରି ଓ ତତ୍‌ପରାୟଣ ହୋଇ ସଂସାରଭୟରୁ ମୁକ୍ତ ହୁଅନ୍ତି । ସେହି ନିର୍ଗୁଣ ପରଂବ୍ରହ୍ମଙ୍କଠାରେ ଅନନ୍ତଜଗତ୍ ପ୍ରତିଷ୍ଠିତ; କିନ୍ତୁ ସେ ସର୍ବପାପରୁ ନିର୍ଲିପ୍ତ, ଅଚଳ, କୂଟସ୍ଥ ଓ ନିତ୍ୟଭାବରେ ବିଦ୍ୟମାନ । ବ୍ରହ୍ମବିଦ୍ ପଣ୍ଡିତମାନେ ସେହି ନିର୍ଗୁଣ ବ୍ରହ୍ମପରାୟଣ ହୋଇ ଜନ୍ମ, ଜରା, ମରଣ ଆଦି ସାଂସାରିକ ମାୟାରୁ ବିମୁକ୍ତ ହୋଇ ପରଂବ୍ରହ୍ମରେ ଲୀନ ହୁଅନ୍ତି; ସେମାନଙ୍କୁ ପୁନର୍ବାର ଯୋନିଜାତନା ଭୋଗ କରିବାକୁ ହୁଏ ନାହିଁ ।

ମୀମାଂସକଶ୍ରୁତି—ମହୋପନିଷଦ୍‌ରେ ମଧ୍ୟ ଦେଖାଯାଏ—

"ଶରୀରମସ୍ଥିମାଂସଞ୍ଚ ତ୍ୟକ୍ତ୍ୱା ରକ୍ତାଦ୍ୟଶୋଭନମ୍ ।
ଭୂତମୁକ୍ତାବଳୀତନ୍ତୁଂ ଚିନ୍ମାତ୍ରମବଲୋକୟେତ୍ ।।
ଉପାଦେୟାନୁପତନଂ ହେୟୈକାନ୍ତବିସର୍ଜନମ୍ ।
ଯଦେତନ୍ମନସୋ ରୂପଂ ତଦ୍‌ବାହ୍ୟଂ ବିଦ୍ଧି ନେତରତ୍" ।।

ମହୋପନିଷଦ୍—ଅ: ୪ । ୨୩—୨୪ ।

ଅଶୋଭନ ଅସ୍ଥିମାଂସ ଓ ରକ୍ତାଦିମୟ ଶରୀରକୁ ପରିତ୍ୟାଗ କରି ଭୂତାନ୍ତରିକ୍ତ ଜଗତ୍‌କାରଣ ଚିନ୍ମାତ୍ରପରଂବ୍ରହ୍ମଙ୍କୁ ଦର୍ଶନ କରିବ । ଗ୍ରାହ୍ୟବସ୍ତୁର ଅନୁସରଣ ଏବଂ ହେୟବସ୍ତୁର ପରିତ୍ୟାଗ ବିବେକୀମନର ସ୍ୱଭାବ; ଏହାହିଁ ବାହ୍ୟ (ଅସଙ୍ଗ), ଅର୍ଥାତ୍ ନିଷ୍କାମବିଧି ବୋଲି ଜାଣିବାକୁ ହେବ, ଅନ୍ୟ କେହି ନୁହେଁ ।

"ଦୀର୍ଘସ୍ୱପ୍ନମିଦଂ ଯତ୍ତଦ୍ଦୀର୍ଘଂ ବା ଚିତ୍ତବିଭ୍ରମମ୍ ।
ଦୀର୍ଘଂ ବାଽପି ମନୋରାଜ୍ୟଂ ସଂସାରଂ ଦୁଃଖସାଗରମ୍ ।।
ସୁପ୍ତେରୁତ୍‌ଥାୟ ସୁପ୍ତ୍ୟନ୍ତଂ ବ୍ରହ୍ମୈକଂ ପ୍ରବିଚିନ୍ତ୍ୟତାମ୍" ।

ବରାହୋପନିଷତ୍—ଅ: ୨ । ୭୪ ।

ଏହି ପ୍ରତ୍ୟକ୍ଷ ଦୃଶ୍ୟମାନ ଜଗତ୍ ଦୀର୍ଘସ୍ୱପ୍ନତୁଲ୍ୟ; ଅଥବା ଚିତ୍ତରେ ବର୍ତ୍ତମାନ ଦୀର୍ଘକାଳସ୍ଥାୟୀ ଭ୍ରମ; ଅଥବା ଦୀର୍ଘକାଳ ପର୍ଯ୍ୟନ୍ତ ମନରେ କଳ୍ପିତ ରାଜ୍ୟତୁଲ୍ୟ; ଏହାକୁ ଅନିତ୍ୟ, ଅଥଚ ଦୁଃଖସମୂହ ଜ୍ଞାନପରି ସୁଷୁପ୍ତିରୁ ଉତ୍‌ଥିତ ହୋଇ ସୁଷୁପ୍ତିପରେ ସେହି ଅଦ୍ୱିତୀୟ ବ୍ରହ୍ମଙ୍କୁ ଚିନ୍ତା କର ।

ଏହି ସ୍ଥାନରେ ବଶିଷ୍ଠ ରାମଚନ୍ଦ୍ରଙ୍କୁ ମଧ୍ୟ ଉପଦେଶ ଦେଇଅଛନ୍ତି—

**"ନ ତ୍ୱଂ ଭାବେଷୁ ନୋ ଭାବାସ୍ତ୍ୱୟି ତାମରସେକ୍ଷଣ !**
**ଶୁଦ୍ଧବୁଦ୍ଧସ୍ୱଭାବସ୍ତମାତ୍ମାନ୍ତଂ ସୁସ୍ଥିରୋ ଭବ ॥**
**ତ୍ୱଂ ବ୍ରହ୍ମ ହ୍ୟମଳଂ ଶୁଦ୍ଧଂ ତ୍ୱଂ ସର୍ବାତ୍ମା ଚ ସର୍ବକୃତ୍ ।**
**ସର୍ବଂ ଶାନ୍ତମଜଂ ବିଶ୍ୱଂ ଭାବୟନ୍ ବୈ ସୁଖୀ ଭବ" ॥**

ଯୋଗବା : ସ୍ଥି : ୧୫ । ୪୭-୪୮ ॥

ହେ କମଳଲୋଚନ ! ତୁମ୍ଭେ ଦୃଶ୍ୟବସ୍ତୁର ଅଭ୍ୟନ୍ତରରେ ଅବସ୍ଥାନ କର ନାହିଁ ଏବଂ ଦୃଶ୍ୟବସ୍ତୁ ମଧ୍ୟ ତୁମ୍ଭଠାରେ ସେପରି ଅବସ୍ଥାନ ନ କରେ । ତୁମ୍ଭେ ସ୍ୱୀୟ ଅନ୍ତଃକରଣରେ ବିଶୁଦ୍ଧଜ୍ଞାନ ଉଦୟ କରି ସୁସ୍ଥିର ହୁଅ ଏବଂ ସେହି ଅମଳସ୍ୱରୂପ-ସ୍ୱଭାବ ସର୍ବାତ୍ମା ପରମଶାନ୍ତ ଅଜ—ବିଶ୍ୱପତି ପରଂବ୍ରହ୍ମଙ୍କୁ ଭାବନା କରି ସୁଖୀ ହୁଅ ।

"ଯଦରୁଚ୍ଛମନାୟାସମନୁପାଧିଗତଭ୍ରମମ୍ ।
ଯତ୍ନାତ୍ ତଦନୁସନ୍ଧାନଂ କୁରୁ ତତ୍ତାମବାପ୍ସ୍ୟସି" ॥

ଯୋଗବା : ସ୍ଥିତି : ୨୦ । ୮ ।

ଅତଏବ, ହେ ରାଘବ ! ଯାହା ଅତୁଚ୍ଛ, ଅନାୟାସସିଦ୍ଧ, ଅନୁପାଧି ଓ ଭ୍ରମାତୀତ, ତୁମେ ଯତ୍ନପୂର୍ବକ ସେହି ବ୍ରହ୍ମଙ୍କର ଅନୁସନ୍ଧାନ କର । ତାହାହେଲେ ତୁମ୍ଭେ ତାହାଙ୍କୁ ପ୍ରାପ୍ତ ହେବ ।

ପୁନଶ୍ଚ—

**"ଅହଙ୍କାରସ୍ୟ ଦେହସ୍ୟ ସଂସାରସ୍ୟାପ୍ଲବସ୍ୟ ଚ ।**
**ସ୍ୱବଚ୍ଚରମଳଂକୃତ୍ୟ ସତ୍ୟମେବାବଲୋକୟେତ୍ ॥**
**ଶରୀରମସ୍ଥିରମପି ସନ୍ତ୍ୟକ୍ତ୍ୱା ( ? ) ଘନଶୋଭନମ୍ ।**
**ବୀତମୁକ୍ତାବଳୀତନ୍ତୁଂ ତନ୍ମାତ୍ରମବଲୋକୟେତ୍" ।**

ଯୋଗବା : ସ୍ଥି : ୭୧ । ୧୫ । ୧୭ ॥

ଅହଂକାର ଓ ଦେହ ସଂସାରାଦିବିଷୟକ ବ୍ୟର୍ଥଜ୍ଞାନ ପରିତ୍ୟାଗ କରି ଯାହା ସତ୍ୟ, ତାହାଙ୍କ ଦର୍ଶନରେ (ବ୍ରହ୍ମଦର୍ଶନରେ) ନିମଗ୍ନ ହେବା ବିଧେୟ । ଅନିତ୍ୟ ଦେହର ଭାବନା ପରିତ୍ୟାଗ କରି ନିତ୍ୟ ଚିନ୍ମାତ୍ରସ୍ୱରୂପର ଭାବନା କରିବା ଶ୍ରେୟସ୍କର ଅଟେ ।

ଏହି ଶ୍ରୁତିବାକ୍ୟକୁ ଲକ୍ଷ୍ୟ କରି ଶଙ୍କରାଚାର୍ଯ୍ୟ କହିଛନ୍ତି—

**"ଅଚକ୍ଷୁଷ୍ଟ୍ୱାଦି ଶାସ୍ତ୍ରୋକ୍ତଂ ସ ବାହ୍ୟାଭ୍ୟନ୍ତରଂ ତ୍ୱଜମ୍ ।**
**ନିତ୍ୟମୁକ୍ତମିହାତ୍ମାନଂ ମୁମୁକ୍ଷୁଶ୍ଚେତ୍ ସଦା ସ୍ମରେତ୍" ।**

ଉପଦେଶ ସାହସ୍ରୀ—୧୩ । ୧୧ ।

ଏହି ସଂସାରରେ ଯେ ମୁକ୍ତିଲାଭ ନିମନ୍ତେ ଇଚ୍ଛା କରିବ, ସେ ଅଚକ୍ଷୁଷ୍ଟ୍ୱ, ଅଶ୍ରୋତ୍ର, ଅବାକ୍, ଅମନଃ—ଇତ୍ୟାଦି ଶ୍ରୁତ୍ୟୁକ୍ତ ବିଶେଷଣବିଶିଷ୍ଟ, ବାହ୍ୟ ଓ ଆଭ୍ୟନ୍ତର-ଭାବରେ (ସହିତ) ବର୍ତ୍ତମାନ, ଜନ୍ମରହିତ, ନିତ୍ୟମୁକ୍ତ ସେହି ପରମାତ୍ମାଙ୍କୁ ସର୍ବଦା ସ୍ମରଣ କରିବ ।

ଏହିପରି ଏକ ଓ ଅଦ୍ୱିତୀୟ ପରଂବ୍ରହ୍ମଙ୍କ ଉପାସନା ସକଳ ବେଦ ଓ ବେଦାନ୍ତ ଶାସ୍ତ୍ରର ମୁଖ୍ୟ ତାତ୍ପର୍ଯ୍ୟରୂପରେ ବର୍ଣ୍ଣିତ ହୋଇଛି । ଏ ସମ୍ବନ୍ଧରେ ବାଦରାୟଣ କହିଛନ୍ତି—

**"ସର୍ବବେଦାନ୍ତପ୍ରତ୍ୟୟଂ ଚୋଦନାଦ୍ୟବିଶେଷାତ୍" ।**

ବେ : ସୂ : ୩ । ୩ । ୧ ॥

ଏକନାମର ଉପାସନା ସକଳ ବେଦାନ୍ତଶାସ୍ତ୍ରର ବିଷୟ; ଅର୍ଥାତ୍ ଏକ, ଅବିଶେଷ (ନିର୍ଗୁଣ) ପରଂବ୍ରହ୍ମଙ୍କର ଉପାସନା ସକଳ ବେଦାନ୍ତଦର୍ଶନର ପ୍ରତିପାଦ୍ୟ ବିଷୟ ଭାବରେ ଜ୍ଞାତ ହୁଏ । ଏହି ଏକ ପରଂବ୍ରହ୍ମଙ୍କ ଉପାସନା ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଛି—

**"ଦଶମସ୍ୟ ବିଶୁଦ୍ଧ୍ୟର୍ଥଂ ନବାନାମିହ ଲକ୍ଷଣମ୍ ॥** ଭାଗବତ ୨-୧୦-୨ ॥
**ସ ଆଶ୍ରୟଃ ପରଂବ୍ରହ୍ମ ପରମାତ୍ମେତି ଶବ୍ଦ୍ୟତେ "** ॥ ଭାଗବତ ୨-୧-୭ ॥

ଭାଗବତରେ ମୁକ୍ତି ନିମନ୍ତେ ନ ପ୍ରକାର ମାର୍ଗ କଥିତ ହୋଇଛି; କିନ୍ତୁ ଦଶମ ମାର୍ଗ ହେଉଛି—ବିଶୁଦ୍ଧ ପରମାତ୍ମାଙ୍କ ଉପାସନା । ଏକମାତ୍ର ସେହି ପରଂବ୍ରହ୍ମ ପରମାତ୍ମା ସର୍ବାଶ୍ରୟ-ପଦରେ କଥିତ । *

---

* ଅନ୍ୟ ଧର୍ମଗ୍ରନ୍ଥରେ ମଧ୍ୟ ଏହିପରି ମାନାଯାଏ—
God is a spirit and they that worship Him must worship Him in spirit and in truth.—John IV 24.

## ଠ—ଆଶ୍ରୟ ପ୍ରଭୁ ପରଂବ୍ରହ୍ମଙ୍କୁ ଶରଣ ଦର୍ଶନ କରିବା ବିଧାନ—

ଶ୍ରୀମଦ୍‌ପ୍ରବୁଦ୍ଧ ଜଗଦ୍‌ଗୁରୁମହିମାସ୍ୱାମୀ ଯେପରି ଏକ ଅଦ୍ୱିତୀୟ ଅଲେଖପରଂବ୍ରହ୍ମଙ୍କୁ ଶରଣ, ଭଜନ, ଚିନ୍ତନ ଓ ଦର୍ଶନ କରିବା ନିମନ୍ତେ ଆଦେଶ ଦେଇ ଅଛନ୍ତି, ସେହି ସମସ୍ତ ସାରଭୂତ ଆଦେଶ ବା ଉପଦେଶ ସମସ୍ତ ବେଦ ଓ ବେଦାନ୍ତ ଶାସ୍ତ୍ରରେ ଗ୍ରାହ୍ୟଭାବରେ ପ୍ରତିପାଦିତ ହୋଇଅଛି— ଏ କଥା ପୂର୍ବୋକ୍ତ ବର୍ଣ୍ଣନାମାନଙ୍କରୁ ପ୍ରମାଣିତ ହେଲା । କେବଳ ଏହି ବାକ୍ୟ ଅଧ୍ୟୟନ ବା ଶ୍ରବଣ କଲେ ବିଶୁଦ୍ଧ ଆତ୍ମଜ୍ଞାନ ଭକ୍ତିଯୋଗ ସମ୍ପନ୍ନ ହେବ ନାହିଁ; ତାହା କେବଳ ଶ୍ରବଣର ତାତ୍ପର୍ଯ୍ୟରୂପେ ଗୃହୀତ ବୋଲି ବୁଝିବାକୁ ହେବ । ଯେପରି ବିଶୁଦ୍ଧାତ୍ମଜ୍ଞାନର ଭକ୍ତିଯୋଗ ସାଧିତ ହୋଇପାରିବ ଏବଂ ତଦ୍ଦ୍ୱାରା ଜୀବ ପରମାତ୍ମା ପରଂବ୍ରହ୍ମଙ୍କ ପଦରେ ଉପନୀତ ହେବ, ତାହାର ପ୍ରକୃଷ୍ଟ ପନ୍ଥା ଗୁରୁମହିମାସ୍ୱାମୀ ଉଦ୍‌ଘାଟନ କରି ଅଛନ୍ତି—

ଶ୍ରୀମଦ୍‌ଗୁରୁ ମହିମାସ୍ୱାମୀଙ୍କର ଶ୍ରୀମୁଖନିଃସୃତ ଅମୂଲ୍ୟ ପବିତ୍ର ବାଣୀ ଏହି ଯେ, ବିବେକୀ ମୁମୁକ୍ଷୁମାନେ ସୂର୍ଯ୍ୟାସ୍ତପରେ ରାତ୍ରିରେ ଚତୁର୍ବିଧ ଆହାର ଭୋଜନ ପାନ କରିବେ ନାହିଁ । ପ୍ରତିନିତ୍ୟ ବ୍ରାହ୍ମମୁହୂର୍ତ୍ତ ସମୟରେ ଶଯ୍ୟା ତ୍ୟାଗ କରି ଅରୁଣୋଦୟ ପୂର୍ବରୁ ସ୍ନାନଶୌଚାଦି କର୍ମ

---

ଅର୍ଥାତ୍ ଈଶ୍ୱର ଚୈତନ୍ୟସ୍ୱରୂପ, ଯେଉଁମାନେ ତାହାଙ୍କର ଉପାସନା କରିବେ ସେମାନେ ସେହି ଚୈତନ୍ୟଙ୍କୁ ସତ୍ୟସ୍ୱରୂପରେ ଭାବଗଦ୍‌ଗଦ ହୋଇ ଉପାସନା କରିବେ ।

There is no God but He, the living, the self-subsisting, neither slumber, nor sleep seizeth Him, to Him belongth whatsoever is in Heaven and on earth, who is he that can intercede with him, but through His good ple3sure ? He knoweth that which is passed and that which is to come unto them, and they shall not comprehend anything of this knowledge, but so far as He pleaseth, His throne is extended over Heaven and earth, and the preservation of both is us burden unto Him, He is the High, the mighty, ( chapter ii Al koran') । ଅର୍ଥାତ୍— ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ଦେବତା ନାହାନ୍ତି । ସେ ଜୀବନ୍ତ ଓ ଅଟଳ । ସେ ତନ୍ଦ୍ରା ଓ ନିଦ୍ରାଦ୍ୱାରା ଆକ୍ରାନ୍ତ ନୁହନ୍ତି । ଦ୍ୟୁଲୋକ ବା ଭୂଲୋକରେ ଯାହାକିଛି ଅଛି, ସେ ସବୁ ତାହାଙ୍କର । ଏପରି କିଏ ଅଛି, ଯେ ତାହାଙ୍କର ଆଜ୍ଞା ବ୍ୟତୀତ ତାହାଙ୍କ ନିକଟରେ ସଙ୍ଘଟିତ ପାପର କ୍ଷମାନିମନ୍ତେ ଅନୁରୋଧ କରିବ । ଲୋକର ସମ୍ମୁଖରେ ଓ ପଶ୍ଚାତ୍‌ରେ ଯାହା କିଛି ଅଛି, ତାହା ସବୁ ସେ ଜାଣନ୍ତି । ତାଙ୍କର ଇଚ୍ଛା ନ ହେଲେ ତାହାଙ୍କର ଜ୍ଞାନର କୌଣସି ବିଷୟରେ ମନୁଷ୍ୟ ପ୍ରବେଶ କରି ପାରେ ନାହିଁ; ତାହାଙ୍କର ସିଂହାସନ ଦ୍ୟୁଲୋକ ଓ ଭୂଲୋକ ଅଧିକାର କରି ରହିଅଛି ଏବଂ ଏହି ଦୁଇର ସଂରକ୍ଷଣ ତାଙ୍କ ପକ୍ଷରେ ଭାରବହ ନୁହେଁ । ସେ ଉନ୍ନତ ଓ ମହାନ୍ ।

ସମାପନ କରି ଲୋକସମାଗମ ଓ ଜନଯାତାୟାତ ପଥର ଦୂରରେ ନିର୍ମଳ ଓ ନିଷ୍କଳ ସ୍ଥାନରେ ଗୃହକୁଟୀରବହିର୍ଭାଗ ଅନାବୃତ ସ୍ଥାନରେ ଓ ଅନନ୍ତ ମହାକାଶତଳେ ପୂର୍ବାଭିମୁଖରେ ଉଭା ହୋଇ କୌଣସି ଭୌତିକ ପଦାର୍ଥ ପ୍ରତି ଦୃକ୍‌ପାତ ନ କରି, ମୌନାବସ୍ଥାରେ ଓ ଏକାଗ୍ର-ଚିତ୍ତରେ ପିଣ୍ଡବ୍ରହ୍ମାଣ୍ଡର ଊର୍ଦ୍ଧ୍ୱ ମହାଶୂନ୍ୟ ଚିଦାକାଶ ପ୍ରତି ସୂକ୍ଷ୍ମ ଦୃଷ୍ଟି ନିକ୍ଷେପ କରି ନିଜ ମସ୍ତକ ଉପରେ ଦୁଇହାତ ଯୋଡ଼ି ମୁଖରେ "ମହାମହିମା ଅଲେଖପ୍ରଭୁ ପରଂବ୍ରହ୍ମ ଶରଣ"— ବାରମ୍ବାର ଉଚ୍ଚାରଣ କରି ପରଂବ୍ରହ୍ମଙ୍କୁ ସ୍ତୁତି ଜଣାଣ ପ୍ରାର୍ଥନା ସହ ସପ୍ତବାର ସାଷ୍ଟାଙ୍ଗ ଭୂମିଷ୍ଠ ପ୍ରଣାମ କରି ଅଲେଖପରଂବ୍ରହ୍ମଙ୍କୁ କାୟମନୋବାକ୍ୟରେ ଶରଣ-ଦର୍ଶନ କରିବ ।

ପ୍ରାର୍ଥନା—ହେ ପ୍ରଭୁ ମହାମହିମାମୟ ! ସର୍ବାନ୍ତର୍ଯ୍ୟାମୀ ନାଥ ! ତବ ମହିମାରେ ଅନନ୍ତକୋଟି ବ୍ରହ୍ମାଣ୍ଡ ପ୍ରକାଶିତ ହୋଇ ଓ ସେହି ମହିମାରେ ବିଧୃତ ହୋଇ ରହିଅଛି; ଏହି ଅନନ୍ତ କୋଟି ବ୍ରହ୍ମାଣ୍ଡ ତୁମ୍ଭର ମହିମାରେ ଚଳୁଅଛି । ହେ ମହିମାମୟ ପ୍ରଭୋ ! ଆପଣ ଅଧଃ, ଊର୍ଦ୍ଧ୍ୱ ଓ ସର୍ବତ୍ର ଓତପ୍ରୋତଭାବରେ ବ୍ୟାପ୍ତ ହୋଇ ମଧ୍ୟ ନିର୍ଲିପ୍ତ, ବିଶୁଦ୍ଧ ଓ ନିର୍ଗୁଣ ସ୍ୱରୂପରେ ସମସ୍ତଜଗତର ଊର୍ଦ୍ଧ୍ୱ ଅନନ୍ତମହାକାଶ ଓ ତଦୂର୍ଦ୍ଧ୍ୱ ମହାଶୂନ୍ୟ ଭୁବନରେ ସ୍ୱୟଂସିଦ୍ଧ-ମହିମାରେ ବିଦ୍ୟମାନ ରହିଅଛନ୍ତି । ହେ ପ୍ରଭୁ ପରଂବ୍ରହ୍ମ ପରମାତ୍ମନ୍ ! ଆପଣଙ୍କଠାରୁ ଏହି ଜୀବାତ୍ମା ସମ୍ଭୂତ ହୋଇଅଛି । ଅତଏବ ଆପଣ ଏହାର ଶରଣ ଓ ରକ୍ଷକ ଅଟନ୍ତି; ଆପଣଙ୍କ ବ୍ୟତୀତ ଏ ଜୀବର ତ୍ରାଣକର୍ତ୍ତା ଅନ୍ୟ କେହି ନାହିଁ । ହେ ପ୍ରଭୋ ! ତବ ଅଭୟ ପଦରେ ଏହି ପିଣ୍ଡ-ପ୍ରାଣ ଦେହଜୀବନ ଅର୍ପଣପୂର୍ବକ କାୟମନୋବାକ୍ୟରେ ଶରଣ ଗଲି; ଆପଣ ଏହି ଜୀବର ଶରଣରକ୍ଷା କରନ୍ତୁ । ହେ ମହାପ୍ରଭୁ ! ହେ ନିର୍ଗୁଣ ନିରବୟବ ଅଲେଖ ନିରଞ୍ଜନ ସଚ୍ଚିଦାନନ୍ଦମୟ ବିଭୁ ! ତବ ଜ୍ଞାନଜ୍ୟୋତିରେ ଏହି ଜୀବର ଐହିକ ଓ ପୂର୍ବଜନ୍ମର ଜ୍ଞାନ ବା ଅଜ୍ଞାନପୂର୍ବକ କୃତକର୍ମ-ଦୋଷ, ବା ଯାହାକିଛି କଳୁଷ ଅଛି, ତାହା ସବୁ ଧ୍ୱଂସ କରନ୍ତୁ । ହେ ପ୍ରଭୋ ! ତବ ଆଭା ଏହି ହୃଦୟରେ ସୁନିର୍ମଳଭାବେ ପ୍ରକାଶିତ ରହି ଅହରହ ତବ ଚିନ୍ମୟ ପରଂ ଜ୍ୟୋତିକୁ ଏହି ଜୀବ ଅନ୍ୱେଷଣ କରି ରହୁ । ହେ ପ୍ରଭୋ ! ଆପଣ ଅକ୍ଷୟ-ଅବ୍ୟୟ, ଅଜର-ଅମର-ଅଖଣ୍ଡିତ ପୂର୍ଣ୍ଣବ୍ରହ୍ମବାସୀ, ମହାଶୂନ୍ୟବାସୀ; ଏହି ଜୀବ ଅନ୍ୟ କୌଣସି ମାୟିକ ବସ୍ତୁରେ ଆସକ୍ତ ନ ହୋଇ ନିରାସକ୍ତଭାବରେ ସର୍ବଦା ଆପଣଙ୍କ ଅଭୟପଦକମଳକୁ ଭାବନା କରି ରହୁ । ହେ ପ୍ରଭୋ ! ମହିମା ଅଲେଖ, ଅରୂପ, ଅନାମ, ଅଦେହ, ଅଗନ୍ଧ, ଅସ୍ପର୍ଶ ଅଚିନ୍ତ୍ୟ, ଅବ୍ୟକ୍ତ, ପରଂବ୍ରହ୍ମ ! ଆପଣ ସ୍ୱମହିମାରେ ଅଶେଷ କୋଟିବ୍ରହ୍ମାଣ୍ଡକୁ ବ୍ୟକ୍ତ କରି ସ୍ୱୟଂ ଅଦ୍ଭୁତ ମହିମାରେ ଆପଣ ଅଦୃଶ୍ୟ, ଅଗମ୍ୟ, ଅଚିନ୍ତ୍ୟ, ଅନାମୟ, ଅଲେପକ ଓ ଅଲକ୍ଷ୍ୟ ହୋଇ ରହିଛନ୍ତି । ହେ ମହାପ୍ରଭୁ, ଅଲେଖ, ଅଣାକ୍ଷର ପରଂବ୍ରହ୍ମ ! ଆପଣ ଅବିନାଶୀ-ସ୍ୱରୂପରେ ସତତ ବିଦ୍ୟମାନ; ଆପଣ ଏହି ବିନାଶଶୀଳ ଜଗତମାୟାମୋହରୁ ଏ ଜୀବାତ୍ମାକୁ ଉଦ୍ଧାର କରନ୍ତୁ । ପ୍ରଭୋ ! ତବ ଅଭୟମହିମାତେଜରେ ସମସ୍ତ ନିଦାପାବ ଦଗ୍ଧ ହେଉ । ପ୍ରଭୋ ! ତୁମ ବିନା ଏ ଆତ୍ମାର ଦ୍ୱିତୀୟ ଲକ୍ଷ୍ୟବସ୍ତୁ କିଛି ନାହିଁ । ହେ ମହାପ୍ରଭୁ ! ଆପଣ ସମସ୍ତ ଉପାଧି-

ବିହୀନ ହୋଇ ବିଶୁଦ୍ଧ ସତ୍ୟ ଜ୍ଞାନ ଅନନ୍ତ ଆନନ୍ଦସ୍ୱରୂପରେ ନିତ୍ୟ ବିରାଜମାନ ହୋଇଅଛନ୍ତି । ଆପଣ ନିରାଧାର ହୋଇ ମଧ୍ୟ ସର୍ବାଧାର ଏବଂ ନିରାଶ୍ରୟ ହୋଇ ମଧ୍ୟ ସର୍ବାଶ୍ରୟ ଅଟନ୍ତି ; ସୁତରାଂ ଆପଣ କେବଳ ଏ ଜୀବନର ଜୀବନ । ହେ ପ୍ରଭୁ ସଚ୍ଚିଦାନନ୍ଦମୟ ପରଂବ୍ରହ୍ମ ପରମ ଗୁରୁଦେବ ସ୍ୱାମୀ ! ଆପଣ ବିଶୁଦ୍ଧ ଜ୍ଞାନ ଓ ଭକ୍ତି ପ୍ରଦାନ କରି ସୁନିଶ୍ଚଳ ସୁଦୃଢ଼ଭାବରେ ତବ ଅଭୟ ପଦଶରଣପଞ୍ଜରରେ ଏ ଜୀବାତ୍ମାର ଆଜୀବନ ଶରଣ ରକ୍ଷା କରନ୍ତୁ । ଏହାହିଁ ସତତ ଆପଣଙ୍କ ଶ୍ରୀଛାମୁରେ ଏ ଜୀବର ମାଗୁଣି । ହେ ପ୍ରଭୁ, ବିଶୁଦ୍ଧ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମ ପରମାତ୍ମା ପୂର୍ଣ୍ଣାନନ୍ଦ ସ୍ୱାମୀ ! ଆପଣ ସର୍ବଲିଙ୍ଗବିବର୍ଜିତ, ମାୟୋପାଧିଶୂନ୍ୟ ହୋଇ ମହାଶୂନ୍ୟ-ପୁରରେ ବିରାଜିତ ଅଛନ୍ତି; ଆପଣ ଅଜନ୍ମା, ଅଜାତ, ଅନାମୟ ପରଂବ୍ରହ୍ମ; ଆପଣଙ୍କ ଅଭୟପଦଶରଣପଞ୍ଜରରେ ଏ ଜୀବର ଶରଣ ଜନ୍ମଜନ୍ମାନ୍ତରେ ଏକୀଭୂତ ହୋଇ ରହୁ ।

ଏହାପରି ଦଣ୍ଡାୟମାନ ହୋଇ ଅଲେଖପରଂବ୍ରହ୍ମଙ୍କୁ ସ୍ତୁତି ଜଣାଣ କରି ଭୂପୃଷ୍ଠରେ ସପ୍ତବାର ସାଷ୍ଟାଙ୍ଗପ୍ରଣାମ କରି ଶରଣ-ଦର୍ଶନ କରିବାକୁ ହେବ । ତା'ପରେ ପୂର୍ବୋକ୍ତ ଗୁରୁ-ଆଜ୍ଞା ଅନୁସାରେ ସ୍ତୁତିଜଣାଣ-ପ୍ରାର୍ଥନାପୂର୍ବକ ହୃଦୟରେ ବେନିକରପଦ୍ମ ଜୋଡ଼ି ପ୍ରଭୁଙ୍କୁ ପ୍ରାର୍ଥନା କରିବ । ଅନନ୍ତର ଭୂମିଉପରେ ଆଣ୍ଠୁ ଭରାଦେଇ ଯୋଡ଼ହସ୍ତକୁ ବେନିବାହୁ ମୂଳରେ ଛନ୍ଦାକୃତିରେ ରଖି ଅଭୟପଦ ସ୍ମରଣ କରି "ପରଂବ୍ରହ୍ମପଦରେ ଶରଣ ଶରଣ"— ଉଚ୍ଚାରଣ କରି ମସ୍ତକ ଭୂମିରେ ଲଗାଇ ମସ୍ତକାଗ୍ରରେ ସରଳଭାବେ ବେନିକରପଦ୍ମ ଯୋଡ଼ି ସାଷ୍ଟାଙ୍ଗ ପ୍ରଣିପାତ କରି ପ୍ରଭୁଙ୍କ ନାମ ସ୍ମରଣ କରି କିଛିକ୍ଷଣ ଅତିବାହିତ କରିବାକୁ ହେବ । ଭୂମିରେ ବେନିପଦ, ବେନି ଆଣ୍ଠୁ ଓ ବେନିଜାନୁ; ହୃଦୟ, ନାସା, କପୋଳ, ବେନିହସ୍ତ ଯଥା-ନିୟମରେ ସଂଲଗ୍ନ କରିବ, କେବଳ କଟିର ନିମ୍ନଦେଶ ଭୂମିରେ ସଂଲଗ୍ନ କରିବ ନାହିଁ । ତାହାପରେ ଅଲେଖପ୍ରଭୁଙ୍କ ନାମ ସ୍ମରଣ କରି ବେନି ହସ୍ତକୁ ହୃଦୟଦେଶକୁ ଆଣି ମସ୍ତକ ଉତ୍ତୋଳନ କରି ପ୍ରଥମେ ମସ୍ତକସ୍ଥାପିତ ଭୂମିଉପରେ ମସ୍ତକ ସ୍ଥାପନ କରିବ; ପୁନଶ୍ଚ "ପ୍ରଭୁପାଦରେ ଶରଣ ଶରଣ"—ଶବ୍ଦ ଉଚ୍ଚାରଣ କରି ଦକ୍ଷିଣପାଦାଗ୍ରଭାଗ ବାମଜାନୁର ପଶ୍ଚାଦ୍‌ଭାଗରେ ଛନ୍ଦି ହସ୍ତ ସମୀପରେ ଉକ୍ତ ଆଣ୍ଠୁ ସ୍ଥାପନ କରି ପୁନର୍ବାର ଦ୍ୱିତୀୟସ୍ଥାନରେ ମସ୍ତକ ଲଗାଇବ । ତାହାପରେ ଦକ୍ଷିଣପାଦ ପୂର୍ବସ୍ଥାନକୁ ନେଇ ମସ୍ତକକୁ ପ୍ରଥମ ସ୍ଥାନକୁ ନେବ । ଏହାପରି ବାମପାଦ ଦକ୍ଷିଣ ଜାନୁରେ ଛନ୍ଦି ପୁନଶ୍ଚ "ଶରଣ ଶରଣ" ଉଚ୍ଚାରଣ କରିବାକୁ ହେବ । ତା'ପରେ ମସ୍ତକ ଲାଗିବା ସ୍ଥାନରୁ ଅଭୟ ପ୍ରଭୁପଦ ସ୍ମରଣ କରି ଭୂମିରୁ ହସ୍ତଦ୍ୱାରା ରେଣୁ ଗ୍ରହଣପୂର୍ବକ ବାରଂବାର ତାହା ମୁଖରେ ପାଇ ମସ୍ତକ ଓ ସର୍ବାଙ୍ଗରେ ବୋଳି ହେବ । ତା'ପରେ ପୂର୍ବପରି ଉଭାହୋଇ ପରଂବ୍ରହ୍ମ ପରମାତ୍ମାଙ୍କୁ ସ୍ତୁତି-ଜଣାଣ-ପ୍ରାର୍ଥନା କରିବ ।

ହେ ପ୍ରଭୁ ମହାମହିମାମୟ ଅଲେଖପରଂବ୍ରହ୍ମ ସ୍ୱାମୀ ! ହେ ସର୍ବାନ୍ତର୍ଯ୍ୟାମୀ ନାଥ ! ଆପଣ ଏ ଆତ୍ମାର ଏକମାତ୍ର ପିତା, ମାତା, ବନ୍ଧୁ ଓ ସଖା ଅଟନ୍ତି । ଆପଣଙ୍କ ବ୍ୟତୀତ ଅନ୍ୟ

ସମ୍ବନ୍ଧ ଆତ୍ମାରେ ଆରୋପିତ ନ ହେଉ । ଏ ଜୀବ ସର୍ବଦା ଆପଣଙ୍କର ସମ୍ବନ୍ଧଜନିତରେ ନିବଦ୍ଧ ରହୁ । ଆପଣ ବିଶ୍ୱାତୀତ ହୋଇ ବିଶୁଦ୍ଧଭାବରେ ଅବସ୍ଥାନ କରିଥିଲେ ମଧ୍ୟ ଆପଣ ସର୍ବାନ୍ତର୍ଯ୍ୟାମୀସ୍ୱରୂପରେ ସକଳ ଭୂତରେ ବିରାଜମାନ ହୋଇ ସକଳ ଜୀବଜଗତକୁ ନିୟମିତ-ଭାବରେ ପରିଚାଳିତ କରୁଅଛନ୍ତି । ହେ ନିର୍ବିକଳ୍ପସ୍ୱରୂପ ପରଂବ୍ରହ୍ମ ପରମାତ୍ମନ୍ ! ଏହି ଶରୀରଭିତରେ ମନ ଓ ତଦଧିଷ୍ଠିତ ଦେବ ସର୍ବଦା ଆତ୍ମାର ଅଧୀନ ହୋଇ ଶରଣ-ଦର୍ଶନ-ଭଜନ ବିଷୟରେ ତତ୍ପର ହୋଇ ଆପଣଙ୍କ ନିର୍ବିକଳ୍ପ ବ୍ରହ୍ମଭାବନାରେ ସୁଦୃଢ଼ ହେଉ, ଯେପରିକି ଅନ୍ୟ ମାୟାକଳ୍ପିତ ବସ୍ତୁରେ ଭୁଲି ନ ଯାଏ ।

ହେ ପ୍ରଭୁ ଅଲେଖ ନିରଞ୍ଜନ ! ବୁଦ୍ଧିବିବେକ-ଜ୍ଞାନଦାତା ! ଏ ଜୀବର ବୁଦ୍ଧି ଓ ସେଥିରେ ଅଧିଷ୍ଠିତ ଦେବ ଆପଣଙ୍କୁ ନିଶ୍ଚିତଭାବରେ ଭାବନା କରି ଶରଣ ଓ ଦର୍ଶନଦ୍ୱାରା ଆପଣଙ୍କ ପାଦପଦ୍ମରେ ନିଶ୍ଚଳ ରହୁ । ହେ ପ୍ରଭୋ ! ନିର୍ମମ ନିରହଙ୍କାର ବ୍ରହ୍ମ ! ଏହି ଅନ୍ତରସ୍ଥ ଅହଂକାର ଓ ତଦଧିପତି ଦେବ ପ୍ରତିକୂଳଭାବ ତ୍ୟାଗ କରି ଆତ୍ମାର ଶରଣଦର୍ଶନଭଜନ-ବିଷୟରେ ଏକୀଭୂତ ହୋଇ ଆପଣଙ୍କ ଏକ ଅଦ୍ୱିତୀୟ ଭାବନା କର୍ମରେ ଅଭିମାନୀ ହୋଇ ରହୁ । ହେ ପ୍ରଭୁ ସଚ୍ଚିଦାନନ୍ଦପରମାତ୍ମନ୍ ! ଏହି ଜୀବର ଚିତ୍ତ ଓ ତଦଧିପତି ଦେବ ସଂସାରର ସମସ୍ତ କୁଚିନ୍ତା ପରିତ୍ୟାଗ କରି ଆତ୍ମାର ଅଧୀନ ହୋଇ ଆପଣଙ୍କ ଶରଣଦର୍ଶନ ଓ ଭଜନରେ ଜାଗରୁକ ରହି ଅହର୍ନିଶ ତବ ସଚ୍ଚିନ୍ମୟସ୍ୱରୂପକୁ ଚିନ୍ତା କରୁ । ହେ ପ୍ରଭୋ ଅନ୍ତର୍ଯ୍ୟାମୀ ! ଏହି ଅନ୍ତଃକରଣରେ କୌଣସି ଅନିତ୍ୟ ଅସଦ୍‌ବସ୍ତୁର ଛାୟାପାତ ନ ହୋଇ କେବଳ ଆପଣଙ୍କୁ ଆତ୍ମସ୍ୱରୂପରେ ଉପଲବ୍ଧି କରିବା ନିମନ୍ତେ ଜ୍ଞାନଭକ୍ତିସାଧନ ନିଷ୍କାମକର୍ମରେ ଏହି ଅନ୍ତଃକରଣକୁ ସୁଦୃଢ଼ କରି ରଖନ୍ତୁ । ହେ ପ୍ରଭୁ ବିଶୁଦ୍ଧ ସତ୍ୟ ସର୍ବେନ୍ଦ୍ରିୟାତୀତ ପରଂବ୍ରହ୍ମ ! ଏହି ଶରୀରରେ ଥିବା ଇନ୍ଦ୍ରିୟଗଣ ଆପଣଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ଆପଣଙ୍କ ଶରଣ ଭଜନରେ ଭକ୍ତି କରି ଉଠନ୍ତୁ । ଶ୍ରୋତ୍ରେନ୍ଦ୍ରିୟ ଓ ତଦ୍ଦେବ ଆତ୍ମାର ଅଧୀନ ହୋଇ ତବ ସ୍ତୁତି ପ୍ରାର୍ଥନା ଶ୍ରବଣରେ ଅବିଚଳିତ ରହୁ, କୌଣସିପ୍ରକାର ପ୍ରପଞ୍ଚବାକ୍ୟ ଶ୍ରବଣ ନ କରୁ । ତ୍ୱଗିନ୍ଦ୍ରିୟ ଓ ତଦ୍ଦେବ ନିଷିଦ୍ଧ ପ୍ରପଞ୍ଚ ବିଷୟ ସ୍ପର୍ଶ ନ କରି ତବ ଅଭୟପଦରେଣୁ ସର୍ବାଙ୍ଗରେ ଲେପନ କରି ପବିତ୍ର ହେଉ । ହେ ପ୍ରଭୁ ପରଂବ୍ରହ୍ମ ! ତବ ମହିମାତେଜରେ ଅବିଦ୍ୟାତିମିର ବିଧ୍ୱଂସ ହେଉ । ଚକ୍ଷୁରିନ୍ଦ୍ରିୟ ଓ ତଦଧିପତି ଦର୍ଶନ ସମୟରେ ସର୍ବଲୋକବର୍ଜିତ ଊର୍ଦ୍ଧ୍ୱ ମହାଶୂନ୍ୟରେ ଆପଣଙ୍କର ଚିନ୍ମୟରୂପକୁ ନିରୀକ୍ଷଣ କରି ରହୁ, ନଶ୍ୱର ଅନିତ୍ୟ ରୂପରେ କଦାପି ଭୁଲି ନ ଯାଉ । ହେ ପ୍ରଭୁ ଚିଦେକରସଘନ ଅମୃତମୟ ଅନ୍ତର୍ଯ୍ୟାମୀ ! ରସନେନ୍ଦ୍ରିୟ ଓ ତଦ୍ଦେବ ଆତ୍ମାର ଶରଣ ଦର୍ଶନ ସମୟରେ ଆପଣଙ୍କ ସ୍ତୁତିପ୍ରାର୍ଥନା ସ୍ପଷ୍ଟଭାବେ ଉଚ୍ଚାରଣ କରି ସେହି ଭକ୍ତିରସାମୃତପାନରେ ତୃପ୍ତ ରହୁ; କୌଣସି ପ୍ରକାର ଇନ୍ଦ୍ରିୟ-ଉନ୍ମାଦକ ଆହାରନିମନ୍ତେ ଲାଳାୟିତ ନ ହେଉ । ହେ ପ୍ରଭୁ ସର୍ବବାସନାବର୍ଜିତ ପରଂବ୍ରହ୍ମ ! ଘ୍ରାଣେନ୍ଦ୍ରିୟ ଓ ତଦଧିଷ୍ଠାତା ଦେବ ! ସାଂସାରିକ କ୍ଷଣିକବାସନାରେ ଭୁଲି ନଯାଇ ସର୍ବଦା ବିଶୁଦ୍ଧ ଜ୍ଞାନଭକ୍ତିବାସନା

ଗ୍ରହଣ କରି ସ୍ଥିର ରହୁ । ଏହିପରି ଜ୍ଞାନେନ୍ଦ୍ରିୟଗଣ ତବ ଅଭୟ କୃପାବଳରେ ଜ୍ଞାନଲାଭ କରି ବିଶୁଦ୍ଧ ଆତ୍ମଜ୍ଞାନ ଭକ୍ତିଯୋଗରେ ସତତ ନିମଗ୍ନ ରହନ୍ତୁ—ଏହାହିଁ ଆପଣଙ୍କର ପଦାବ୍ଜରେ ଆମ୍ଭର ନିତ୍ୟ ପ୍ରାର୍ଥନା ।

ହେ ପ୍ରଭୁ ମହାବ୍ରହ୍ମ ! ସର୍ବାଧିପ, ସର୍ବଭୂତାଧିପତି, ସର୍ବଦେବଦେବ ଅନ୍ତର୍ଯ୍ୟାମୀ ! ବଚନେନ୍ଦ୍ରିୟ ଓ ବଚନାଧିପତି ଦେବ ସର୍ବଦା ତବ ମହିମାଗାୟନରେ ତତ୍ପର ରହୁ ଏବଂ ଏହି ଆମ୍ଭର ସ୍ତୁତି-ପ୍ରାର୍ଥନା-ଦର୍ଶନସମୟରେ ଯଥାନିୟମରେ ବାକ୍ୟ ପ୍ରକାଶ କରୁ ଏବଂ ସ୍ପଷ୍ଟ-ଭାବରେ ସତ୍ୟପ୍ରିୟ ବଚନଦ୍ୱାରା ଆପଣଙ୍କର ମହିମା ଜଗତରେ ପ୍ରକାଶ କରୁ, କଦାପି କଳୁଷିତ ଅସତ୍ୟ ପ୍ରପଞ୍ଚବଚନ ଭାଷଣ ନ କରୁ । ହେ ପ୍ରଭୁ ପରମାତ୍ମନ୍ ! ହସ୍ତେନ୍ଦ୍ରିୟ ଓ ତଦଧିପତିଦେବ ପ୍ରାତଃ ଓ ସାୟଂକାଳରେ ଶରଣ ଦର୍ଶନସମୟରେ ଯଥାନିୟମରେ କରପଦ୍ମ ଯୋଡ଼ି ସବିନୟ-ଭାବରେ ଶରଣଦର୍ଶନ—କର୍ମରେ ତତ୍ପର ରହୁ; ଅନୁଚିତ ବା ଅସଦ୍‌ବସ୍ତୁ ଧାରଣ ନ କରୁ । ସେହିପରି ପାଦେନ୍ଦ୍ରିୟ ଓ ତଦଧିଦେବ ଆପଣଙ୍କର ଅଭୟପଦାମ୍ବୁଜର ଶରଣ ଦର୍ଶନସମୟରେ ଶରୀରକୁ ସ୍ଥିରଭାବରେ ଦଣ୍ଡାୟମାନ ରଖି ଓ ସାଷ୍ଟାଙ୍ଗ ଶରଣ-ଦର୍ଶନକାଳରେ ଯଥାନିୟମରେ ନତଜାନୁଭାବରେ ସାହାଯ୍ୟ କରି ରହୁ । ଏହିପରି ସକଳ କର୍ମେନ୍ଦ୍ରିୟମାନଙ୍କୁ ଆପଣ ସଂଯତ କରି ଆପଣଙ୍କ ଆଜ୍ଞାଧୀନରେ ସର୍ବଦା ନିଯୁକ୍ତ କରି ରଖନ୍ତୁ । ହେ ପ୍ରଭୋ, କ୍ଷମାସାଗର ବ୍ରହ୍ମ ! ଇନ୍ଦ୍ରିୟମାନଙ୍କର ଯେଉଁସବୁ ପୂର୍ବାପରକୃତ ଦୋଷ ଅଛି ସେ ସକଳକୁ କ୍ଷମାଦାନ କରି ତବ ପବିତ୍ର ନାମାମୃତରେ ପବିତ୍ର କରନ୍ତୁ । ହେ ପ୍ରଭୁ ! ପ୍ରାଣଦାତା, ପ୍ରାଣର ପତି, ପ୍ରାଣବାୟୁ-ଆଦି ଓ ତଦଧିପତି ଦେବଗଣ ସ୍ୱ-ସ୍ୱକର୍ମରେ ଯଥାନିୟମରେ ନିଯୁକ୍ତ ରହି ଆପଣଙ୍କର ଶରଣ ଓ ଦର୍ଶନ ଭଜନରେ ଯଥୋପଯୁକ୍ତ ସାହାଯ୍ୟ ଦାନ କରନ୍ତୁ; ମନପ୍ରାଣ ଏକାଭୂତ ହୋଇ "ଅଜପାଭଜନ" ସୂତ୍ରଦ୍ୱାରା ତବ ଅଭୟପଦ ସ୍ମରଣ କରି ରହନ୍ତୁ । ହେ ପ୍ରଭୁ ମହିମା ଅନ୍ତର୍ଯ୍ୟାମୀ ! ଏହି ହୃଦୟମଧ୍ୟରୁ ସର୍ବକଳୁଷ ବିନାଶ କରି ହୃଦୟକୁ ସୁନିର୍ମଳ କରନ୍ତୁ; ଯେପରି ସର୍ବଦା ପବିତ୍ର ହୃଦୟରେ ଆପଣଙ୍କର ପବିତ୍ର ନାମ ସ୍ମରଣ କରି ପାରିବି, କ୍ଷଣକାଳ ନିମିତ୍ତ ଯେପରି ଆପଣଙ୍କ ଅଭୟପାଦ ଜୀବନରେ ବିସ୍ମରଣ ନ ଘଟେ ଏବଂ କୌଣସି ପ୍ରକାରେ ଯେପରି ଆଳସ୍ୟ ନ ଆସେ; ପ୍ରଭୋ ଏହାହିଁ ଆପଣଙ୍କ ଅଭୟପଦରେ ଏ ଜୀବାତ୍ମାର ସତତ ପ୍ରାର୍ଥନା । *

---

* ଶରଣଦର୍ଶନ ସମୟରେ ସନ୍ନ୍ୟାସୀମାନେ ଏକଖଣ୍ଡ କୌପୀନମାତ୍ର ଧାରଣ କରି ଜଟାକଳାପ ମସ୍ତକର ପଶ୍ଚାଦ୍‌ଭାଗରେ ରଖି ଶରଣ-ଦର୍ଶନ କରିବେ । ଗୃହସ୍ଥମାନେ ଅନ୍ୟାନ୍ୟ ବେଶଭୂଷା ତ୍ୟାଗକରି ଏକଖଣ୍ଡ ବିଶୁଦ୍ଧ ଗୈରିକବସ୍ତ୍ର ପରିଧାନ କରି ଶରଣଦର୍ଶନ କରିବେ । ସେହିପରି ମହିଳାମାନେ ମଧ୍ୟ କେବଳ ମସ୍ତକ ଉନ୍ମୁକ୍ତ ରଖି ଗୈରିକବସ୍ତ୍ର ପରିଧାନପୂର୍ବକ ଅନ୍ୟ ସକଳ ଅଙ୍ଗ ଆବୃତ କରି ଶରଣଦର୍ଶନ କରିବେ । ଏ ବିଷୟରେ କେହି କଦାପି ଅନ୍ୟଥା ଆଚରଣ କରିବେ ନାହିଁ । ଗୁରୁ-ଦର୍ଶନ ବିଷୟରେ

ହେ ପ୍ରଭୁ ଭବଭୟଭଞ୍ଜନକାରୀ ! ସର୍ବବନ୍ଧନନାଶକାରୀ, ତବ ସ୍ମରଣ ଭଜନ ଭକ୍ତିଦ୍ୱାରା ଦେବନରସୁରକୃତ-ବନ୍ଧନସକଳ ନିବାରିତ ହୋଇ ସୁପ୍ରାପ୍ତି ଜ୍ଞାନଭକ୍ତିର ଉଦ୍ଦୀପନ ହେଉ । ହେ ପ୍ରଭୁ ଜଗତ୍କର୍ତ୍ତା ଜଗତ୍‌ରକ୍ଷାକାରୀ, ଜଗତର ସର୍ବପ୍ରକାର ମଙ୍ଗଳ ବିଧାନ କରନ୍ତୁ, ଆପଣଙ୍କ ମହିମାଗାୟନରେ ଜଗତର ସୌଭାଗ୍ୟ ଉଦିତ ହେଉ ଇତ୍ୟାଦି— ଏହିପରି ଯଥାବିଧି ପ୍ରାତଃକାଳରେ ସାତବାର ସାଷ୍ଟାଙ୍ଗଭୂମିଷ୍ଠ ହୋଇ ଶରଣଦର୍ଶନ କରିବାକୁ ହେବ ଏବଂ ତଦନୁରୂପ ସୂର୍ଯ୍ୟାସ୍ତ ହେବା ମାତ୍ରେ ସାୟଂ ଓ ବ୍ରାହ୍ମମୁହୂର୍ତ୍ତିସମୟରେ ପଶ୍ଚିମାଭିମୁଖ ହୋଇ ପଞ୍ଚବାର ପୂର୍ବୋକ୍ତ ଚଉଷଠି ଛନ୍ଦବନ୍ଧନକ୍ରମରେ ବ୍ରହ୍ମଶରଣଦର୍ଶନ କରିବାକୁ ହେବ । ଉକ୍ତପ୍ରକାରେ ସପ୍ତପଞ୍ଚବାର ଦର୍ଶନାନ୍ତେ ଦୀର୍ଘସ୍ୱରରେ ପ୍ରଭୁନାମ ଉଚ୍ଚାରଣ କରି, ତିନିବାର କରତାଳି ଦେଇ ଦର୍ଶନ ସ୍ଥାନକୁ ହସ୍ତସଞ୍ଚାଳନ କରି ସେଠାରୁ ଚିହ୍ନ ଲୋପ କରି ଅଳ୍ପ ପଛକୁ ଅପସରି ଯାଇ ସଙ୍ଗେ ସଙ୍ଗେ ସିଦ୍ଧ ସାଧୁଗୁରୁଜନମାନଙ୍କ ଶରଣ ଓ ଗୁରୁଭ୍ରାତୃଶରଣ ଯଥାକ୍ରମରେ କରିବ । * ଦର୍ଶନସମୟରେ ଶିରରେ ଲାଗିଥିବା ରେଣୁ କୌଣସିମତେ ଲିଭାଇବାକୁ ହେବ ନାହିଁ । ସର୍ବଦା ସେହି ପ୍ରଭୁପଦରଜ ମସ୍ତକରେ ଧାରଣ କରି ରଖିବାକୁ ହେବ । ଦର୍ଶନସ୍ଥାନରେ ନିଜେ ଦଣ୍ଡାୟମାନ ହେବା ସ୍ଥାନ ବ୍ୟତୀତ ଅନ୍ୟତ୍ର ସ୍ୱପଦସ୍ପର୍ଶ କରିବାକୁ ହେବ ନାହିଁ । ପୁନଶ୍ଚ—ପ୍ରଭୁଙ୍କ ଦର୍ଶନ ଭଜନ ପରେ ବ୍ରାହ୍ମମୁହୂର୍ତ୍ତିଠାରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଏକାକୀ ବା ସମବେତ ଗୁରୁଜନ ଓ ଗୁରୁଭ୍ରାତୃଜନଙ୍କ ସହ ଏକାନ୍ତସ୍ଥାନରେ ବସି ପ୍ରଭୁଙ୍କ ଜଣାଣଭଜନ ଗାୟନ ଓ ମାନସିକ ଶରଣରେ ରତ ହେବାକୁ ହେବ । ସେହିପରି ସାୟଂଦର୍ଶନ ପରେ ରାତ୍ର ଏକଯାମ ପର୍ଯ୍ୟନ୍ତ ପ୍ରଭୁଙ୍କ ଜଣାଣ ଭଜନ ସମସ୍ତେ ଏକତାନରେ ଆନନ୍ଦମନରେ ଗାୟନ କରି ସୁଧାସ୍ୱାଦ ଆବୃତ୍ତି କରିବାକୁ ହେବ ଏବଂ ମାନସିକ ଶରଣରେ ପ୍ରଭୁଙ୍କୁ ସ୍ମରଣ କରି କରି ନିଦ୍ରାଗତ ହେବ । ଏହା ପରଂବ୍ରହ୍ମ ଶରଣଦର୍ଶନର ସୁନିଶ୍ଚିତ

---

ଆଗମଶାସ୍ତ୍ରରେ ଉକ୍ତ ଅଛି—

"ପାଦୁକାବସନଛତ୍ରଂ ଶୟନଂ ଭୂଷଣାଦିକମ୍ ।
ଦୃଷ୍ଟ୍ୱା ଗୁରୋର୍ନମସ୍କୁର୍ଯ୍ୟାତ୍ତୁ ଆତ୍ମଭୋଗଂ ନ କାରୟେତ୍ତୁ ॥
ପାଦୁକାମାସନଂ ଛତ୍ରଂ ବାହନଂ ବସ୍ତ୍ରଗୃହରେ ।
ଦୃଷ୍ଟ୍ୱା ଗୁରୋର୍ନମସ୍କୁର୍ଯ୍ୟାତ୍ତୁ ନାତ୍ମଭୋଗାୟ କଳ୍ପୟେତ୍ତୁ ॥"

ପ୍ରାଣତୋଷିଣୀତନ୍ତ୍ର । ୨ । ୧୦୨ ପୃ: ।

* ସତ୍ୟମହିମା ଧର୍ମର ଟୁଙ୍ଗୀଗୁରୁଦ୍ୱାର ଥିବା ସ୍ଥଳେ, ସେହି ଗୁରୁଦ୍ୱାର—ବେଢ଼ାମଧ୍ୟରେ ଦର୍ଶନ କରିବା ବିହିତ ଅଟେ । ଅନ୍ୟସ୍ଥାନରେ ଦର୍ଶନ କରିବା ନିୟମ ନୁହେଁ । ଟୁଙ୍ଗୀ ନ ଥିବା ସ୍ଥଳେ ଅନ୍ୟତ୍ର ସୁନିର୍ମଳ ପବିତ୍ର ସ୍ଥାନରେ ଦର୍ଶନ କରିବାକୁ ହେବ । କୌଣସି କାରଣରୁ ଯଦି ଦର୍ଶନ ପରେ ପଶିରସ୍ନାନ କରିବାକୁ ହୁଏ ତେବେ ପ୍ରଭୁଙ୍କଠାରେ ଆଉ ବାରେ ସାଷ୍ଟାଙ୍ଗଶରଣ ନେବାକୁ ହେବ । ଆଉ ମଧ୍ୟ ଶରଣଦର୍ଶନ ସମ୍ପୂର୍ତ୍ତି—ହେବା ସମୟରେ ଯେଉଁ ପ୍ରାର୍ଥନା କରାଯାଏ ତାହା କେବଳ

ସନ୍ନିଧାନ ଅଟେ । ଏହି ଶରଣଦର୍ଶନ ବସ୍ତୁତଃ ଜ୍ଞାନଭକ୍ତିଯୋଗର କେବଳ ମନନ-ନିଦିଧ୍ୟାସନ ବୋଲି ବୁଝିବାକୁ ହେବ । ବେଦବେଦାନ୍ତାଦିଶ୍ରୁତିରେ ଏହାହିଁ ପର୍ଯ୍ୟାଲୋଚିତ ହୋଇଅଛି । ଆଜୀବନ ନିଷ୍ଠାସହକାରେ ଅବିଚଳିତ ଭାବରେ ଉପର୍ଯ୍ୟୁକ୍ତ ଉପଦେଶ ଅନୁସାରେ ଅଲେଖ ପରଂବ୍ରହ୍ମଙ୍କଠାରେ ଶରଣପ୍ରାପ୍ତ ହୋଇ ରହିଲେ ଜୀବ ନିଶ୍ଚୟ ଅଭୟ ମୋକ୍ଷଧାମ ପ୍ରାପ୍ତ ହେବ ।

° °—ପରଂବ୍ରହ୍ମ ପରମାତ୍ମାଙ୍କଠାରେ ଶରଣାଗତ ହୋଇ ପ୍ରାର୍ଥନା କରିବା—ବିଷୟରେ ଶ୍ରୁତ୍ୟାଦି ପ୍ରମାଣ—

**ଯୁଜେ ବାଂ ବ୍ରହ୍ମପୂର୍ବ୍ୟଂ ନମୋଭି-ର୍ବିଶ୍ଲୋକା ଯନ୍ତି ପଥ୍ୟେବ ସୂରାଃ ।**
**ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟପୁତ୍ରା-ଆ ଯେ ଧାମାନି**
**ଦିବ୍ୟାନି ତସ୍ଥୁଃ ।।**

ଶ୍ୱେତାଶ୍ୱତର ଉପ : ୨ । ୫ ।।

ହେ ମନୁଷ୍ୟଗଣ ! ତୁମ୍ଭମାନଙ୍କ କାରଣସ୍ୱରୂପ—ପରଂବ୍ରହ୍ମଙ୍କଠାରେ ଯୁକ୍ତ ହୁଅ; ଅର୍ଥାତ୍ ସାଷ୍ଟାଙ୍ଗପ୍ରଣିପାତ ଆଦିଦ୍ୱାରା ବ୍ରହ୍ମରେ ଚିତ୍ତ ଅର୍ପଣ କର । ସେହି ପରାତ୍ପର ପରଂବ୍ରହ୍ମଙ୍କଠାରେ ନମସ୍କାରପୂର୍ବକ କାୟମନୋବାକ୍ୟ ସମର୍ପଣ କଲେ ତୁମ୍ଭମାନଙ୍କର ଅତୁଳ-କୀର୍ତ୍ତି ଅନନ୍ତକାଳସ୍ଥାୟୀ ହେବ । ଇନ୍ଦ୍ର, ଚନ୍ଦ୍ର, ବାୟୁ ଓ ବରୁଣ ପ୍ରଭୃତି ଦେବଗଣ ସେହି ଜଗତ୍‌କର୍ତ୍ତା ଜଗଦୀଶ୍ୱରଙ୍କର ପୁତ୍ର । ସେମାନେ ସେହି ପ୍ରଭୁଙ୍କ ମହିମାପ୍ରସାଦରେ ସ୍ୱର୍ଗଧାମରେ ସ୍ୱ-ସ୍ୱଆଧିପତ୍ୟ କରିଅଛନ୍ତି । ମାନବଜୀବନ ମଧ୍ୟ ସେହି ପରମାତ୍ମାଙ୍କର ଅଟେ ।

**ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।**
**ସର୍ବସ୍ୟ ପ୍ରଭୁମୀଶାନଂ ସର୍ବସ୍ୟ ଶରଣଂ ବୃହତ୍ ।।**
**ନବଦ୍ୱାରେ ପୁରେ ଦେହୀ ହଂସୋ ଲେଲାୟତେ ବହିଃ ।**
**ବଶୀ ସର୍ବସ୍ୟ ଲୋକସ୍ୟ ସ୍ଥାବରସ୍ୟ ଚରସ୍ୟ ଚ ।।**

ଶ୍ୱେତାଶ୍ୱତର : ଉ : —୩ । ୧୭-୧୮ ।।

---

ହୃଦୟରେ କରପଦ୍ମ ଯୋଡ଼ି ଦଣ୍ଡାୟମାନ ଅବସ୍ଥାରେ ପଢ଼ିବାକୁ ହେବ । ଶରୀର ଅସୁସ୍ଥ ହେବା ସମୟ ବ୍ୟତୀତ ଏହାର ଅନ୍ୟ ସମୟରେ ଅନ୍ୟଥା କରିବେ ନାହିଁ ଏବଂ ଶରଣଦର୍ଶନ ସମୟରେ ସମବେତ ସାଧୁଭକ୍ତ ସମବେତ ହୋଇ ଏକ ନିୟମରେ ସମସ୍ତେ ଏକକାଳରେ ପ୍ରଭୁଙ୍କଠାରେ ଶରଣାପନ୍ନ ହେବେ । ଏହା ଗୁରୁଙ୍କର ଆଦେଶ ।

ଜଗତ୍‌କର୍ତ୍ତା ଜଗଦୀଶ୍ୱର ପରମାତ୍ମାଙ୍କର ଚକ୍ଷୁ, କର୍ଣ୍ଣ, ନାସିକାପ୍ରଭୃତ୍ତି କୌଣସି ଇନ୍ଦ୍ରିୟ ନାହିଁ । ଅଥଚ ସମସ୍ତ ଇନ୍ଦ୍ରିୟର ସେ ଆଶ୍ରୟକ ଅଟନ୍ତି । ଅର୍ଥାତ୍ ସେ ସମସ୍ତ ଶୁଣି ପାରନ୍ତି, ସମସ୍ତ ଦେଖି ପାରନ୍ତି, ସମସ୍ତ ବସ୍ତୁର ଆସ୍ୱାଦନ ଜାଣିପାରନ୍ତି ଓ ସମସ୍ତ ପଦାର୍ଥର ଆଘ୍ରାଣ କରିପାରନ୍ତି । ତାଙ୍କଠାରେ ସମସ୍ତ ବସ୍ତୁର ପୂର୍ଣ୍ଣଜ୍ଞାନ ଅଛି । ସେ ନିର୍ଲିପ୍ତ, ସମସ୍ତଙ୍କର ପ୍ରଭୁ, ସମସ୍ତଙ୍କର ନିୟନ୍ତା ଓ ସମସ୍ତଙ୍କର ବୃହତ୍ ଶରଣରକ୍ଷାକାରୀ ବା ଆଶ୍ରୟଦାତା । ତାହାଙ୍କ ଭିନ୍ନ ଦ୍ୱିତୀୟ ପ୍ରଧାନ କେହି ନାହାଁନ୍ତି । ଚକ୍ଷୁଦ୍ୱୟ, ନାସିକାଦ୍ୱୟ, କର୍ଣ୍ଣଦ୍ୱୟ, ମୁଖ, ଗୁହ୍ୟ ଓ ଉପସ୍ଥ— ଏହି ନବଦ୍ୱାରବିଶିଷ୍ଟ ଦେହରୂପକ ପୁରରେ ସେ ବିଜ୍ଞାନମୟ ଆତ୍ମାସ୍ୱରୂପରେ ବାସ କରନ୍ତି । ସେ କେବଳ ସକଳ ଭୁବନର କର୍ତ୍ତା ଏବଂ ଚରାଚର ଜଗତର ଅନ୍ତର ଓ ବାହ୍ୟଦେଶରେ ବିଶୁଦ୍ଧ ଭାବରେ ସେହି ପରମପିତା ପରଂବ୍ରହ୍ମ ବାସ କରିଅଛନ୍ତି ।

ଆହୁରି ମଧ୍ୟ—

**ଯ ଏକୋଽବର୍ଣ୍ଣୋ ବହୁଧା ଶକ୍ତିଯୋଗାଦ୍**
**ବର୍ଣ୍ଣାନନେକାନ୍ନିହିତାର୍ଥୋ ଦଧାତି ।**
**ବିଚୈତି ଚାନ୍ତେ ବିଶ୍ୱମାଦୌ ସ ଦେବଃ**
**ସ ନୋ ବୁଦ୍ଧ୍ୟା ଶୁଭୟା ସଂଯୁନକ୍ତୁ ॥** ଶ୍ୱେତାଶ୍ୱତର : ଉ : -୪ । ୧ ॥

ଯେଉଁ ଏକ ଅଦ୍ୱିତୀୟ ପରମାତ୍ମାଙ୍କର ଜାତି ନାହିଁ ଓ ଯେ ଅନନ୍ତଶକ୍ତି ପ୍ରଭାବରେ ସ୍ୱାର୍ଥନିରପେକ୍ଷ ହୋଇ ଅନନ୍ତ ସଂସାର ସୃଷ୍ଟି କରି ଅଛନ୍ତି ଏବଂ ଅଶେଷ ଜଗତ୍‌କୁ ପରିପାଳନ କରି ଶେଷରେ ଲୟ କରୁଅଛନ୍ତି; ସେହିପରମାତ୍ମା ମହାନ୍ ପୁରୁଷ ଆମ୍ଭମାନଙ୍କୁ ଶୁଭମତି ପ୍ରଦାନ କରନ୍ତୁ । ଆମ୍ଭେମାନେ ଯେପରି ପୁନର୍ବାର ସଂସାର-ମାୟାପାଶରେ ଆବଦ୍ଧ ନ ହୋଇ ତାହାଙ୍କ ଅଭୟ ଚରଣରେ ହୃଦୟ ସମର୍ପଣ କରି ରହିବୁ । ତା'ପରେ ଶ୍ୱେତାଶ୍ୱତରରେ ଶରଣପ୍ରାପ୍ତିର ଉପସଂହାର କରାଯାଇଛି ।

**"ସ ବିଶ୍ୱକୃଦ୍‌ବିଶ୍ୱବିଦାତ୍ମଯୋନିର୍ଜ୍ଞଃ କାଳକାରୋ ଗୁଣୀ ସର୍ବବିଦ୍ ଯଃ ।**
**ପ୍ରଧାନକ୍ଷେତ୍ରଜ୍ଞପତିର୍ଗୁଣେଶଃ ସଂସାରମୋକ୍ଷସ୍ଥିତିବନ୍ଧହେତୁଃ ॥**
**ସ ତନ୍ମୟୋ ହ୍ୟମୃତ ଈଶସଂସ୍ଥୋ ଜ୍ଞଃ ସର୍ବଗୋ ଭୁବନସ୍ୟାସ୍ୟ ଗୋପ୍ତା ।**
**ଯ ଈଶେଽସ୍ୟ ଜଗତୋ ନିତ୍ୟମେବ ନାନ୍ୟୋ ହେତୁର୍ବିଦ୍ୟତେ ଈଶନାୟ ॥**
**ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ ।**
**ତଂ ହ ଦେବମାତ୍ମବୁଦ୍ଧି ପ୍ରକାଶଂ ମୁମୁକ୍ଷୁର୍ବୈ ଶରଣମହଂ ପ୍ରପଦ୍ୟେ ॥**

ଶ୍ୱେତାଶ୍ୱତର : ଉ :-୬ । ୧୬—୧୮

ସେହି କେବଳ ବିଶ୍ୱକର୍ତ୍ତା ଓ ବିଶ୍ୱବେତ୍ତା, ସେହି ସକଳର ଆତ୍ମା, ସମସ୍ତଙ୍କର କାରଣ; ସେହି କାଳକର୍ତ୍ତା, ତାଙ୍କର ହିଁ ନିୟମରେ ଶୀତବସନ୍ତ ଆଦି ଋତୁ ସକଳ, ସମ୍ବତ୍ସର ଓ ଯୁଗାଦି ଚଳୁଅଛି । ସେ ସତ୍ତ୍ୱାଦି ସର୍ବଗୁଣାଶ୍ରୟ, ସର୍ବଜ୍ଞ ଓ ଅବ୍ୟକ୍ତ । ସେହି କେବଳ ବିଜ୍ଞାନାତ୍ମା ଓ ଜୀବାତ୍ମାର ଅଧିପତି, ସତ୍ତ୍ୱାଦିଗୁଣସମୂହର ସେହି ଈଶ୍ୱର ଏବଂ ସେହି ପରମପୁରୁଷ ପରମାତ୍ମା କେବଳ ସଂସାରର ସ୍ଥିତି, ମୋକ୍ଷ ଓ ବନ୍ଧନର କାରଣ । ଅତଏବ ତାହାଙ୍କଠାରେ ଭକ୍ତି କଲେ ମୋକ୍ଷ ଓ ଭକ୍ତି ନ କଲେ ବନ୍ଧନ ସୁନିଶ୍ଚିତ । ସେହି ପରାତ୍ପର ପରମପିତା ଜ୍ୟୋତିର୍ମୟ, ତାହାଙ୍କର ପ୍ରଭାବରେ ଅନନ୍ତ ଜଗତ୍ ପ୍ରଦୀପ୍ତ ହେଉଅଛି । ସେ ଜନ୍ମମରଣରହିତ, ସମସ୍ତଙ୍କର ସ୍ୱାମୀରୂପରେ ବିଦ୍ୟମାନ, ସେ ସର୍ବଜ୍ଞ, ତାହାଙ୍କର ଅଗୋଚର କିଛି ନାହିଁ । ସେ ସର୍ବତ୍ର ଗମନ କରିପାରନ୍ତି, ଅତଏବ ତାଙ୍କର ଅଗମ୍ୟ ସ୍ଥାନ କିଛି ନାହିଁ । ସେ ଏହି ଅଖିଳ ଭୁବନ ପାଳନ କରୁଅଛନ୍ତି । ସେ ସର୍ବଦା ଏହି ଜଗତ୍‌କୁ ନିୟମିତ କରି ରଖି ଅଛନ୍ତି । ତାଙ୍କ ଭିନ୍ନ ଏହି ଅସୀମ ବ୍ରହ୍ମାଣ୍ଡର ଆଉ କିଏ ହେତୁ ହୋଇପାରେ ? ସେହି କେବଳ ଜଗତ୍ ସୃଷ୍ଟି ପୂର୍ବେ ବ୍ରହ୍ମାଙ୍କୁ ସୃଷ୍ଟି କରି ତାହାଙ୍କୁ ବେଦଜ୍ଞାନ ପ୍ରଦାନ କରି ଅଛନ୍ତି; ଆମ୍ଭେ (ଶ୍ୱେତାଶ୍ୱତର ମୁନି) ମୁକ୍ତିକାମ ହୋଇ ସ୍ୱୟଂପ୍ରକାଶ, ବୁଦ୍ଧିସାକ୍ଷୀ ସେହି ପରଂବ୍ରହ୍ମ ପରମାତ୍ମାଙ୍କର ଶରଣାପନ୍ନ ହେଉଅଛୁଁ ।

ତୈତ୍ତିରୀୟ ଶ୍ରୁତିରେ ମଧ୍ୟ ପରଂବ୍ରହ୍ମ-ଶରଣ ଉପାସନାର ନିୟମ ଏହିପରି କଥିତ ଅଛି—

**"ତନ୍ନମ ଇତ୍ୟୁପାସୀତ । ନମ୍ୟନ୍ତେଽସ୍ମୈ କାମାଃ । ତଦ୍‌ବ୍ରହ୍ମେତ୍ୟୁପାସୀତ । ବ୍ରହ୍ମବାନ୍ ଭବତି । ତଦ୍‌ବ୍ରହ୍ମଣଃ ପରିମର ଇତ୍ୟୁପାସୀତ । ପର୍ଯ୍ୟେଣଂ ମ୍ରିୟନ୍ତେ ଦ୍ୱିଷନ୍ତଃ ସପତ୍ନାଃ । ପରି ଯେଽପ୍ରିୟା ଭ୍ରାତୃବ୍ୟା । ସ ଯଶ୍ଚାୟଂ ପୁରୁଷେ । ଯଶ୍ଚାସାବାଦିତ୍ୟେ । ସ ଏକଃ ।"**

ତୈତ୍ତିରୀୟ ଉ: ଅ ୨-ଭୃଗୁବଲ୍ଲୀ-୧-୪-୫ ।

ସେହି ପରଂବ୍ରହ୍ମ ପରମାତ୍ମାଙ୍କୁ ନମସ୍କାର କରି ଉପାସନା କରିବ । ତାହା ଫଳରେ ସମସ୍ତ କାମ୍ୟ ବିଷୟ ତାହା ନିକଟରେ ଉପନତ ହୁଏ । ସେହି ବ୍ରହ୍ମଙ୍କୁ ପ୍ରଭୁଶକ୍ତି-ବିଶିଷ୍ଟ ରୂପରେ ଉପାସନା କରିବ । ତାହାଫଳରେ ଉପାସକ ବ୍ରହ୍ମବାନ୍ ହୁଅନ୍ତି । ତାହାଙ୍କୁ ବ୍ରହ୍ମ-ପରିମର-ଆକାଶରୂପରେ ଉପାସନା କରିବ । ତାହା ଫଳରେ ଉପାସକ ପ୍ରତି ବିଦ୍ୱେଷଭାବାପନ୍ନ ଶତ୍ରୁଗଣ ବିନଷ୍ଟ ହୁଅନ୍ତି ଏବଂ ଯେଉଁମାନେ ଶତ୍ରୁ ନ ଥାଇ ମଧ୍ୟ ଶତ୍ରୁଦଳ-ଭୁକ୍ତ, ସେମାନେ ମଧ୍ୟ ନଷ୍ଟ ହୁଅନ୍ତି । ସେହି ଏକ ଅଦ୍ୱିତୀୟ ପରମାତ୍ମାଙ୍କର ଆଭାସ ପୁରୁଷ-ମଧ୍ୟରେ ଓ ଆଦିତ୍ୟମଣ୍ଡଳରେ ଏକରୂପରେ ପ୍ରକାଶିତ ।

"ଉପାଦେୟଂ ତୁ ସର୍ବେଷାଂ ଶାନ୍ତଂ ପଦମକୃତ ମମ୍......।"

ଅର୍ଣ୍ଣପୂର୍ଣ୍ଣା: ଉଃ ୫-୫୧ ।

**ଅର୍ଥାତ୍** ସୁଖାତ୍ମକ ନିତ୍ୟବ୍ରହ୍ମପଦ ମୁମୁକ୍ଷୁମାନଙ୍କର ଉପାସନୀୟ । ଏହିପରି ଏକ ଅଦ୍ୱିତୀୟ ପରମାତ୍ମାଙ୍କର ଉପାସନାରୂପକ ଶରଣଦର୍ଶନ ଭଜନ ବୃହଦାରଣ୍ୟକଶ୍ରୁତିରେ ଉଲ୍ଲିଖିତ—ପ୍ରାଚୀନ ଭାରତରେ ପ୍ରଥମେ ଗାର୍ହସ୍ଥ୍ୟଧର୍ମ ସ୍ୱୀକାର କରିଥିବା ଯାଜ୍ଞବଲ୍କ୍ୟଋଷି ପରେ ବୈରାଗ୍ୟ ଜାତ ହେବାରୁ ଅତଃପରନ୍ତ ଓ ଉତ୍କୃଷ୍ଟ "ପାରିବ୍ରାଜ୍ୟ" ନାମକ ସନ୍ନ୍ୟାସ-ଆଶ୍ରମ ଗ୍ରହଣ ନିମନ୍ତେ ଦୃଢ଼ସଂକଳ୍ପ ହୋଇ ନିଜ ଭାର୍ଯ୍ୟା ମୈତ୍ରେୟୀଙ୍କୁ ସମ୍ବୋଧନ କରି କହିଲେ—

"ମୈତ୍ରେୟୀତି ହୋବାଚ ଯାଜ୍ଞବଲ୍କ୍ୟ ଉଦ୍‌ଯାସ୍ୟନ୍‌ବା ଅରେଽହମସ୍ମାତ୍ ସ୍ଥାନାଦସ୍ମି, ହନ୍ତ ତେଽନୟା କାତ୍ୟାୟନ୍ୟାଽନ୍ତଂ କରବାଣି ଇତି ।" ବୃ: ଆ: ଉ: ୬-୪-୧ ।

ଅରେ (ହେ) ମୈତ୍ରେୟୀ ! ବର୍ତ୍ତମାନ ଆମ୍ଭେ ଏହି ଗୃହସ୍ଥାଶ୍ରମଠାରୁ ଉତ୍କୃଷ୍ଟ ଆଶ୍ରମାନ୍ତର (ସନ୍ନ୍ୟାସ) ଅବଲମ୍ବନ କରିବାକୁ ଇଚ୍ଛା କରୁଅଛୁ; ଅତଏବ ତୁମ୍ଭର ଅଭିପ୍ରାୟ କ'ଣ—ଏ କଥା ଜାଣିବାକୁ ଇଚ୍ଛା କରେ । ଆହୁରି ମଧ୍ୟ—ଆମ୍ଭର ଦ୍ୱିତୀୟ ଭାର୍ଯ୍ୟା କାତ୍ୟାୟନୀଙ୍କ ସଙ୍ଗରେ ତୁମ୍ଭର ଯେଉଁ ସାପତ୍ନ୍ୟ ସମ୍ବନ୍ଧ ଥିଲା, ତାହାର ବିଚ୍ଛେଦ କରିବାକୁ ଇଚ୍ଛା କରୁଁ । ଅର୍ଥାତ୍ ଏକପତିତ୍ୱନିବନ୍ଧନ—ତୁମ୍ଭ ଉଭୟଙ୍କର ଯେଉଁ ପତିଙ୍କ ଧନରେ ସମାନ ଅଧିକାର ଅଛି, ଆମ୍ଭେ ସେ ସମସ୍ତ ଦ୍ରବ୍ୟ ବିଭାଗପୂର୍ବକ ତୁମ୍ଭଦୁହିଁଙ୍କୁ ଦେଇ, ପଛେ ସନ୍ନ୍ୟାସବ୍ରତ ଗ୍ରହଣ କରିବୁ ।

"ସା ହୋବାଚ ମୈତ୍ରେୟୀ ଯନ୍ନୁ ମ ଇୟଂ ଭଗୋଃ ସର୍ବା ପୃଥିବୀ ବିତ୍ତେନ ପୂର୍ଣ୍ଣା ସ୍ୟାତ୍ କଥଂ ତେନାମୃତା ସ୍ୟାମିତି ନେତି ହୋବାଚ ଯାଜ୍ଞବଲ୍କ୍ୟୋ ଯଥୈବୋପକରଣବତାଂ ଜୀବିତଂ ତଥୈବ ତେ ଜୀବିତଂ ସ୍ୟାଦମୃତତ୍ୱସ୍ୟ ତୁ ନାଶାଽସ୍ତି ବିତ୍ତେନେତି ।" ବୃ:ଆ:ଉ: ୬-୪-୨ ।

ଅନନ୍ତର ମୈତ୍ରେୟୀ ନିଜ ସ୍ୱାମୀଙ୍କଠାରୁ ଏପରି ବାକ୍ୟ ଶ୍ରବଣ କରି ସ୍ୱାମୀ ଯାଜ୍ଞ୍ୟବଲ୍କ୍ୟଙ୍କୁ ପ୍ରଶ୍ନଚ୍ଛଳରେ କହିଲେ—ହେ ଭଗବନ୍ ! ଏହି ସସାଗରା ପୃଥିବୀ ଯଦି କୌଣସି ରୂପରେ ଧନରତ୍ନାଦି ପରିପୂର୍ଣ୍ଣ ହୁଏ, ତେବେ ସେହି ପୃଥିବୀପୂର୍ଣ୍ଣ ଧନରେ ଅଗ୍ନିହୋତ୍ରାଦି ଯଜ୍ଞ ସାଧନ କରି ମୁଁ ଅମୃତତ୍ୱ (ମୁକ୍ତି) ଲାଭ କରି ପାରିବି କି ? ଏହି ପ୍ରଶ୍ନର ଉତ୍ତରରେ ଯାଜ୍ଞବଲ୍କ୍ୟ କହିଲେ, ନା, ଏହି ସୁବିଶାଳ ପୃଥିବୀ-ପୂର୍ଣ୍ଣ ଧନରେ ଅଗ୍ନିହୋତ୍ରାଦିକର୍ମ ସାଧନ

କରି ମଧ୍ୟ କଦାପି ଅମୃତ, ଅର୍ଥାତ୍ ମୁକ୍ତିଲାଭ କରି ପାରିବ ନାହିଁ; କିନ୍ତୁ ଏତିକିମାତ୍ର ହେବ ଯେ, ଯେପରି ନାନାବିଧ ଭୋଗୋପକରଣସମ୍ପନ୍ନ ଓ ସାହାଯ୍ୟବିଶିଷ୍ଟ ମନୁଷ୍ୟର ଜୀବନଯାତ୍ରା ସୁଖ ଓ ନିର୍ବିଘ୍ନରେ ସମ୍ପୂର୍ଣ୍ଣ ହୁଏ, ସେହିପରି ଏହି ସକଳ ବିତ୍ତସାଧ୍ୟ କର୍ମଦ୍ୱାରା ତୁମର ମଧ୍ୟ ଜୀବନ ସୁଖରେ ଅତିବାହିତ ହେବ; କିନ୍ତୁ ଏହି ଦ୍ୱାରା ଅମୃତତ୍ୱର (ମୁକ୍ତିର) ଆଶା ମନରେ କଳ୍ପନା ମଧ୍ୟ କରି ପାରିବ ନାହିଁ ।

ସା ହୋବାଚ ମୈତ୍ରେୟୀ ଯେନାହଂ ନାମୃତା ସ୍ୟାଂ କିମହଂ-ତେନ କୁର୍ଯ୍ୟାଂ ଯଦେବ ଭଗବାନ୍ ବେଦ ତଦେବ ମେ ବ୍ରୂହୀତି ।

ବୃ: ଆ: ଉ: ୨-୪-୩ ।

ଯାଜ୍ଞବଲ୍‌କ୍ୟଙ୍କର ଏହି ବାକ୍ୟ ଶ୍ରବଣ କରି ମୈତ୍ରେୟୀ ପୁନର୍ବାର ଯାଜ୍ଞବଲ୍‌କ୍ୟଙ୍କୁ କହିଲେ—ଭଗବନ୍ ! ଯଦି ତାହାହିଁ ହୁଏ, ତେବେ ମୁଁ ସେହି ସକଳ ଅକିଞ୍ଚିତ୍କର ବିତ୍ତଦ୍ୱାରା କି ଲାଭ ପାଇବି । ଆପଣ ଯାହା ମୋକ୍ଷର ସାଧନ ବୋଲି ଜାଣନ୍ତି, ସେ କଥା ହିଁ ଉପଦେଶ ଦିଅନ୍ତୁ । ତା'ପରେ ଯାଜ୍ଞବଲ୍‌କ୍ୟ ମୈତ୍ରେୟୀଙ୍କୁ ବିଶୁଦ୍ଧାଦ୍ୱୈତ ତତ୍ତ୍ୱ ଆତ୍ମଜ୍ଞାନ ଭକ୍ତିଯୋଗର ଉପଦେଶ ପ୍ରଦାନ କଲେ ।

ସ ହୋବାଚ—ନ ବା ଅରେ ପତ୍ୟୁଃ କାମାୟ ପତିଃ ପ୍ରିୟୋ ଭବତ୍ୟାତ୍ମନସ୍ତୁ କାମାୟ ପତିଃ ପ୍ରିୟୋ ଭବତି । ନ ବା ଅରେ ଜାୟାୟୈ କାମାୟ ଜାୟା ପ୍ରିୟା ଭବତ୍ୟାତ୍ମନସ୍ତୁ କାମାୟ ଜାୟା ପ୍ରିୟା ଭବତି । ନ ବା ଅରେ ପୁତ୍ରାଣାଂ କାମାୟ ପୁତ୍ରାଃ ପ୍ରିୟା ଭବନ୍ତ୍ୟାତ୍ମନସ୍ତୁ କାମାୟ ପୁତ୍ରାଃ ପ୍ରିୟା ଭବନ୍ତି । ନ ବା ଅରେ ବିତ୍ତସ୍ୟ କାମାୟ ବିତ୍ତଂ ପ୍ରିୟଂ ଭବତ୍ୟାତ୍ମନସ୍ତୁ କାମାୟ ବିତ୍ତଂ ପ୍ରିୟଂ ଭବତି । × × × ନ ବା ଅରେ ସର୍ବସ୍ୟ କାମାୟ ସର୍ବଂ ପ୍ରିୟଂ ଭବତ୍ୟାତ୍ମନସ୍ତୁ କାମାୟ ସର୍ବଂ ପ୍ରିୟଂ ଭବତି । ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟୋ ମୈତ୍ରେୟି ! ଆତ୍ମନୋ ବା ଅରେ ଦର୍ଶନେନ ଶ୍ରବଣେନ ମତ୍ୟା ବିଜ୍ଞାନେନେଦଂ ସର୍ବଂ ବିଦିତମ୍ ॥　　ବୃ: ଆ: ଉ: ୨।୪।୫ ॥

ଯାଜ୍ଞବଲ୍‌କ୍ୟ ମୋକ୍ଷର ଉପାୟ ବୈରାଗ୍ୟର ଉପଦେଶ କରିବା ଅଭିପ୍ରାୟରେ ପ୍ରଥମତଃ ସ୍ତ୍ରୀପୁତ୍ରାଦି ସକଳବିଷୟରୁ ମୈତ୍ରେୟୀଙ୍କର ବୈରାଗ୍ୟ ଉତ୍ପାଦନସକାଶେ ॥ ନ ବୈ ॥ ଇତ୍ୟାଦି ଶ୍ରୁତିର ଅବତାରଣା କରୁଅଛନ୍ତି । ଶ୍ରୁତିବାକ୍ୟରେ ଥିବା ॥ ବୈ ॥ ଶବ୍ଦଦ୍ୱାରା

ବକ୍ଷ୍ୟମାଣ ସକଳ ବିଷୟର ଲୌକିକ ପ୍ରସିଦ୍ଧି ଦେଖାଇ ଦିଆଯାଇଛି । ଯାଜ୍ଞବଲ୍‌କ୍ୟ କହିଲେ—ହେ ମୈତ୍ରେୟି ! ପତିଙ୍କର ପ୍ରୟୋଜନନିମନ୍ତେ କେହି ପତିପ୍ରିୟା ହୁଅନ୍ତି ନାହିଁ; କିନ୍ତୁ ଆତ୍ମସୁଖସାଧନରୂପକ ପ୍ରୟୋଜନସିଦ୍ଧିନିମନ୍ତେ ପତିଙ୍କର ପ୍ରିୟା ହୁଅନ୍ତି—ସେହିପରି ଭାର୍ଯ୍ୟାର ସୁଖସାଧନରୂପ ପ୍ରୟୋଜନ-ସିଦ୍ଧିନିମନ୍ତେ ଭାର୍ଯ୍ୟା କଦାପି ପତିର ପ୍ରିୟା ହୁଏ ନାହିଁ; କିନ୍ତୁ ଆତ୍ମପ୍ରୟୋଜନସିଦ୍ଧିନିମନ୍ତେ ପତ୍ନୀ ପତିର ପ୍ରିୟା ହୋଇଥାଏ । ନିଜ ଅଭୀଷ୍ଟସିଦ୍ଧିନିମନ୍ତେ ପୁତ୍ରମାନେ ପିତାର ପ୍ରିୟ ହୋଇ ଥାଆନ୍ତି । ଏହିପରି ଧନର ପ୍ରୟୋଜନସିଦ୍ଧି ନିମନ୍ତେ ମଧ୍ୟ ଧନ ଲୋକର ପ୍ରିୟ ହୁଏ ନାହିଁ; କିନ୍ତୁ ଆତ୍ମପ୍ରୟୋଜନସିଦ୍ଧି ନିମନ୍ତେ କେବଳ ଧନ ଲୋକର ପ୍ରିୟ ହୋଇଥାଏ । ହେ ମୈତ୍ରେୟି ! ଆଉ ଅଧିକ କ'ଣ କହିବି, ଯାହାପାଇଁ କେହି ପ୍ରିୟ ହୁଏ ନାହିଁ; କିନ୍ତୁ ସମସ୍ତଙ୍କର ଏକମାତ୍ର ଆତ୍ମାର ପ୍ରୀତିନିମନ୍ତେ ସମସ୍ତେ ପ୍ରୀତିର ପାତ୍ର ହୁଅନ୍ତି । ଅର୍ଥାତ୍ ଇହଲୋକରେ ଆତ୍ମା ଅପେକ୍ଷା ଆଉ ପ୍ରିୟ କିଛି ନାହିଁ । ଅତଏବ ମୁମୁକ୍ଷୁ ବ୍ୟକ୍ତି ପ୍ରିୟତମ ଆତ୍ମାଙ୍କୁ (ପରମାତ୍ମାଙ୍କୁ) ଦର୍ଶନ କରିବ ।

ଆତ୍ମାଙ୍କୁ ଦର୍ଶନ କରିବାର ଉପାୟ କ'ଣ—ଏ ବିଷୟରେ ଶ୍ରୁତି ତାହାର ଉପାୟ ନିର୍ଦ୍ଧାରଣ କରେ ଯେ—ଆତ୍ମବିଷୟକ କଥା ଶ୍ରବଣ କରିବ; ଅର୍ଥାତ୍ ପ୍ରଥମେ ଗୁରୁ-ମୁଖରୁ ଶ୍ରବଣ କରି ପଛେ ସ୍ୱୟଂ ଗୁରୁବାକ୍ୟ ଓ ବେଦାନ୍ତଶାସ୍ତ୍ରର ଉପଦେଶ ଅନୁଶୀଳନ କରିବ । ତ'ପରେ ଶ୍ରୁତ୍ୟୁକ୍ତ ଉପଦେଶସମୂହର ପ୍ରତିକୂଳ ତର୍କ ତ୍ୟାଗ କରି ଅନୁକୂଳତର୍କଦ୍ୱାରା ଆତ୍ମତତ୍ତ୍ୱ ସ୍ଥିରୀକରଣ ବା ମନନ କରିବାକୁ ହେବ । ଅବଶେଷରେ ସେହି ଉପଦିଷ୍ଟ ଆତ୍ମତତ୍ତ୍ୱ ସ୍ଥିରଚିତ୍ତରେ ଧାରଣା କରି ଏକାଗ୍ରତାସହକାରେ ସେହି ବ୍ରହ୍ମତତ୍ତ୍ୱର ଶରଣଚିନ୍ତନ-ଭଜନରୂପ ନିଦିଧ୍ୟାସନ କରିବ । ଉଲ୍ଲିଖିତ ଶ୍ରବଣ, ମନନ ଓ ନିଦିଧ୍ୟାସନ—ଏହି ତିନିଗୋଟି ସାଧନ ସିଦ୍ଧ ହୋଇ ଯେତେବେଳେ ଏକପରମାତ୍ମାଙ୍କ ଲକ୍ଷ୍ୟରେ ପର୍ଯ୍ୟବସିତ ହୁଏ, ସେତେବେଳେ ସମ୍ୟକ୍‌ରୂପରେ ଆତ୍ମଦର୍ଶନ ସମ୍ପନ୍ନ ହୁଏ, ଅର୍ଥାତ୍ ପୂର୍ବୋକ୍ତ ବିଶୁଦ୍ଧାଦ୍ୱୈତ ବ୍ରହ୍ମ ପ୍ରକାଶଲାଭ କରନ୍ତି । ନେତେତ୍, ଅର୍ଥାତ୍ ପ୍ରାଗୁକ୍ତ ସାଧନତ୍ରୟ ସୁସମ୍ପନ୍ନ ନ ହେଲେ ଆତ୍ମତତ୍ତ୍ୱ ଲାଭ ଅସମ୍ଭବ । ଏଥିନିମନ୍ତେ ମହର୍ଷି ଯାଜ୍ଞବଲ୍‌କ୍ୟ କହିଛନ୍ତି—ହେ ମୈତ୍ରେୟି ! ଉପର୍ଯ୍ୟୁକ୍ତଭାବରେ ଆତ୍ମାଙ୍କୁ ଦର୍ଶନ ଓ ମନନ କରିବାଦ୍ୱାରା ହିଁ ଜାଗତିକ ସକଳ ପଦାର୍ଥ ଦୃଷ୍ଟ, ଶ୍ରୁତ, ମତ—ଅର୍ଥାତ୍ ଚିନ୍ତିତ ଓ ବିଜ୍ଞାତ ହୁଏ । ଏହି ଉପନିଷଦ୍ ବାକ୍ୟକୁ ଲକ୍ଷ୍ୟ କରି ବାଦରାୟଣ କହିଛନ୍ତି—

"ଆବୃତ୍ତିରସକୃଦୁପଦେଶାତ୍ ।" ବେ: ସୂ: ୪ । ୧ । ୧ ॥

"ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ"—ଇତ୍ୟାଦି ବୃହଦାରଣ୍ୟକଶ୍ରୁତ୍ୟୁକ୍ତ ଆତ୍ମାଙ୍କୁ ଦର୍ଶନ, ଶ୍ରବଣ, ଚିନ୍ତା ଓ ଧ୍ୟାନ କରିବାକୁ ହେବ । ଉପର୍ଯ୍ୟୁକ୍ତ ବେଦାନ୍ତବାକ୍ୟସ୍ଥ ଶ୍ରବଣ ବା ଚିନ୍ତନର ଅର୍ଥ ବହୁବାର ଶ୍ରବଣ ବା ଚିନ୍ତନ; ଅତଏବ "ଅସକୃତ୍ ଆବୃତ୍ତିଃ"—ଅର୍ଥାତ୍ ବାରମ୍ବାର ଆବୃତ୍ତି ବୋଲି ବୁଝାଯାଇଛି । "ଉପଦେଶାତ୍"—ଏହିପରି ଶ୍ରୁତିରେ ଉପଦେଶ

ଦେଖିବାକୁ ମିଳେ । "ଦ୍ରଷ୍ଟବ୍ୟ" ଅର୍ଥାତ୍ ଯେଉଁ ପର୍ଯ୍ୟନ୍ତ ବ୍ରହ୍ମସାକ୍ଷାତ୍କାର ହୋଇ ନାହିଁ, ସେପର୍ଯ୍ୟନ୍ତ "ନିଦିଧ୍ୟାସିତବ୍ୟ"—ଅର୍ଥାତ୍ ବିଶୁଦ୍ଧ ଆତ୍ମଜ୍ଞାନର ସାଧନାଭୂତ ଭଜନ, ଶରଣ, ଦର୍ଶନ, ଉପାସନା ଆଜୀବନ ପ୍ରତିନିତ୍ୟ କରିବାକୁ ହେବ । ଏହିପରି ଉପନିଷଦ୍ ବାକ୍ୟକୁ ଲକ୍ଷ୍ୟ କରି ଗୀତାରେ ମଧ୍ୟ ଶରଣଦର୍ଶନ ସମ୍ବନ୍ଧରେ ଉଲ୍ଲେଖ ଅଛି ଯେ, ମହାତ୍ମାମାନେ ଦୈବୀପ୍ରକୃତିର ଆଶ୍ରୟରେ ଅବ୍ୟୟପରମାତ୍ମାଙ୍କଠାରେ ଶରଣପ୍ରାପ୍ତ ହୁଅନ୍ତି—

**"ମହାତ୍ମାନସ୍ତୁ ମାଂ ପାର୍ଥ ଦୈବୀଂ ପ୍ରକୃତିମାଶ୍ରିତାଃ ।**
**ଭଜନ୍ତ୍ୟନନ୍ୟମନସୋ ଜ୍ଞାତ୍ୱା ଭୂତାଦିମବ୍ୟୟମ୍ ॥**
**ସତତଂ କୀର୍ତ୍ତୟନ୍ତୋ ମାଂ ଯତନ୍ତଶ୍ଚ ଦୃଢ଼ବ୍ରତାଃ ।**
**ନମସ୍ୟନ୍ତଶ୍ଚ ମାଂ ଭକ୍ତ୍ୟା ନିତ୍ୟଯୁକ୍ତା ଉପାସତେ ।"**

ଗୀତା—୯ । ୧୩ । ୧୪ ।

ହେ ପାର୍ଥ ! ଦୈବୀପ୍ରକୃତି * ଯୁକ୍ତ ମହାତ୍ମାମାନେ ଅନନ୍ୟଚିତ୍ତ ହୋଇ ଆମ୍ଭର ଜଗତ୍କାରଣ ଓ ନିତ୍ୟ ଅବ୍ୟୟସ୍ୱରୂପକୁ ଜ୍ଞାତ ହୋଇ ଭଜନା କରନ୍ତି; ସେମାନେ ସର୍ବଦା ପ୍ରଭୁନାମ ଗାୟନ କରି ଦୃଢ଼ ନିୟମ ପାଳନପୂର୍ବକ ବହୁ ଯତ୍ନସହକାରେ ଭକ୍ତିସହ ପ୍ରଣାମ କରନ୍ତି ଓ ସେମାନେ ସର୍ବଦା ଅବହିତ ହୋଇ ଆମ୍ଭଙ୍କୁ (ପରମାତ୍ମାଙ୍କୁ) ଭଜନ କରନ୍ତି ।

**"ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ ନିବାସଃ ଶରଣଂ ସୁହୃତ୍ ॥**

**ପ୍ରଭବଃ ପ୍ରଳୟଃ ସ୍ଥାନଂ ନିଧାନଂ ବୀଜମବ୍ୟୟମ୍" ॥**

ଗୀତା—୯ । ୧୮ ।

ଅର୍ଥାତ୍ ସେହି ଅବ୍ୟକ୍ତସ୍ୱରୂପ ଜଗତର ଗତି, ପୋଷଣକର୍ତ୍ତା, ନିୟନ୍ତା, ଦ୍ରଷ୍ଟା, ଭୋଗସ୍ଥାନ, ରକ୍ଷକ, ହିତକର୍ତ୍ତା, ସ୍ରଷ୍ଟା, ସଂହର୍ତ୍ତା, ଆଧାର, ଲୟସ୍ଥାନ ଏବଂ ବୀଜ, ଅର୍ଥାତ୍ କାରଣ ଓ ଅବିନାଶୀ ଅଟନ୍ତି ।

---

* "ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବମ୍ ॥
ଅହିଂସାସତ୍ୟମକ୍ରୋଧସ୍ତ୍ୟାଗଃଶାନ୍ତିରପୈଶୁନମ୍ ।
ଦୟାଭୂତେଷ୍ୱଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଲମ୍ ॥
ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋନାତିମାନିତା ।
ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ" ॥

ଏହି ଷଡ଼୍ବିଂଶତିଗୁଣକୁ ଦୈବୀପ୍ରକୃତି ବୋଲଯାଏ । ଗୀତା—୧୬-୧-୩ ।

"ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିମ୍ ।
ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ ॥
ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।
ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍" ।

ଗୀତା—୮ । ୨୧ । ୨୨ ।

ଯେ ଅବ୍ୟକ୍ତ, ଅର୍ଥାତ୍ ଅତୀନ୍ଦ୍ରିୟ ଅକ୍ଷର ବୋଲି କଥିତ, ସେହି କେବଳ ପରମଗତି ବା ପରମପୁରୁଷାର୍ଥ ବୋଲି କୁହାଯାଏ । ଯାହା ପ୍ରାପ୍ତ ହେଲେ ପୁନର୍ବାର ଜୀବ ସଂସାରକୁ ପ୍ରତ୍ୟାବୃତ୍ତ ହୁଏ ନାହିଁ, ସେହି କେବଳ ପରମଧାମ । ହେ ପାର୍ଥ ! ଯାହାଙ୍କଠାରେ ସକଳ ଭୂତ ରହିଅଛନ୍ତି ଏବଂ ଯେ ଏହି ସକଳ ଭୁବନରେ ପରିବ୍ୟାପ୍ତ, ସେହି ପରମପୁରୁଷ ପରମାତ୍ମା ଏକାନ୍ତଭକ୍ତିଦ୍ୱାରା କେବଳ ପ୍ରାପ୍ତ ହୁଅନ୍ତି, ତାଙ୍କର ପ୍ରାପ୍ତି ନିମନ୍ତେ ଅନ୍ୟ କୌଣସି ସାଧନ ନାହିଁ । ଏହିପରି ପରମାତ୍ମାଙ୍କୁ ଧ୍ୟାନ ବା ଉପାସନା କରିବା ବିଷୟ ଗୀତାର ସ୍ଥାନେ ସ୍ଥାନେ ଉକ୍ତ ହୋଇଅଛି । ଉପସଂହାରରେ ଭଗବାନ୍ ଶ୍ରୀକୃଷ୍ଣ ପରମାତ୍ମାପରମେଶ୍ୱରଙ୍କଠାରେ ସମ୍ପୂର୍ଣ୍ଣ ଶରଣପ୍ରାପ୍ତି ନିମନ୍ତେ ଭକ୍ତଅର୍ଜୁନଙ୍କୁ ଉପଦେଶ ଦେଉଅଛନ୍ତି—

"ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ॥
ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ ।
ତତ୍ପ୍ରସାଦାତ୍ ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତମ୍ ॥
ଇତି ତେ ଜ୍ଞାନମାଖ୍ୟାତଂ ଗୁହ୍ୟାଦ୍ ଗୁହ୍ୟତରଂ ମୟା ।
ବିମୃଶ୍ୟୈତଦ୍‌ବିଶେଷେଣ ଯଥେଚ୍ଛସି ତଥା କୁରୁ" ॥

ଗୀତା—୧୮ । ୬୧-୬୩ ।

ହେ ଅର୍ଜୁନ ! ପରମାତ୍ମା ପରମେଶ୍ୱର ଦେହରୂପୀ ଯନ୍ତ୍ରରେ ଆରୂଢ଼ ସକଳ ଭୂତମାନଙ୍କୁ (ସୂତ୍ରଧାରତୁଲ୍ୟ) ସ୍ୱ ସ୍ୱ କର୍ମରେ ପ୍ରବର୍ତ୍ତିତ କରାଇ ସର୍ବଭୂତମାନଙ୍କ ହୃଦୟରେ ଅବସ୍ଥାନ କରି ଅଛନ୍ତି । ହେ ଭାରତ ! ସର୍ବତୋଭାବରେ, ଅର୍ଥାତ୍ କାୟମନୋବାକ୍ୟରେ ତାହାଙ୍କଠାରେ ଶରଣ ପଶ । ତାହାଙ୍କ ପ୍ରସାଦରେ ପରମଶାନ୍ତି ଓ ନିତ୍ୟଧାମ ପ୍ରାପ୍ତ ହେବ । ଏହି ଗୋପନୀୟଠାରୁ ଗୋପନୀୟତମ ଜ୍ଞାନ ଆମ୍ଭେ ତୁମ୍ଭଙ୍କୁ କହିଲୁ, ଏହା ବିଶେଷଭାବରେ ପର୍ଯ୍ୟାଲୋଚନା କରି ଯାହା ଇଚ୍ଛା ସେହିପରି କର (ଅର୍ଥାତ୍ ତେବେ ଯାଇ ତୁମ୍ଭର ମୋହ ନିବୃତ୍ତ ହେବ) ।

ଆହୁରି ମଧ୍ୟ—

**ସର୍ବଗୁହ୍ୟତମଂ ଭୂୟଃ ଶୃଣୁ ମେ ପରମଂ ବଚଃ ।
ଇଷ୍ଟୋଽସି ମେ ଦୃଢ଼ମିତି ତତୋ ବକ୍ଷ୍ୟାମି ତେ ହିତମ୍ ॥**

ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ ପ୍ରତଜାନେ ପ୍ରିୟୋଽସି ମେ ॥
ସର୍ବଧର୍ମାନ୍ ପରତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ" ॥

ଗୀତା—୧୮ । ୬୪-୬୬ ॥

ସର୍ବାପେକ୍ଷା ଗୁହ୍ୟତମ ଆମ୍ଭର ପରମବାକ୍ୟ ପୁନର୍ବାର ଶ୍ରବଣ କର, କାରଣ ତୁମ୍ଭେ ଆମ୍ଭର ଅତପ୍ରିୟ, ସେଥିପାଇଁ ତୁମ୍ଭର ହିତ କହୁଅଛୁଁ । ତୁମ୍ଭେ ମଚ୍ଚିତ୍ତ ଓ ଆମ୍ଭର ଭକ୍ତ ହୋଇ ଉପାସକ ହୁଅ; ଆମ୍ଭଙ୍କୁ ନମସ୍କାର କର, ତେବେ ଆମ୍ଭଙ୍କୁ ପାପ୍ତ ହେବ । ଏହା ତୁମ୍ଭଙ୍କୁ ସତ୍ୟ ପ୍ରତିଜ୍ଞା କରି କହୁଅଛୁଁ, କାରଣ ତୁମ୍ଭେ ଆମ୍ଭର ଅତ୍ୟନ୍ତ ପ୍ରିୟ । ସକଳଧର୍ମ ପରତ୍ୟାଗ କରି ଏକମାତ୍ର ଆମ୍ଭଠାରେ (ପରମାତ୍ମାଙ୍କଠାରେ) ଶରଣ ପଶ, ଆମ୍ଭେ * ତୁମ୍ଭଙ୍କୁ ସର୍ବପାପରୁ ମୁକ୍ତ କରିବୁ, ଶୋକ କର ନାହିଁ ।

ବ୍ରହ୍ମାଦି ଦେବତାମାନେ ମଧ୍ୟ ଭକ୍ତିଯୋଗ ଅବଲମ୍ବନରେ ଏକ ଅଦ୍ୱିତୀୟ ପରମାତ୍ମାଙ୍କଠାରେ ଶରଣପ୍ରାପ୍ତ ହୋଇଅଛନ୍ତି—

"ତମେବ ଦେବଂ ବୟମାତ୍ମା ଦୈବତଂ
　　ପରଂ ପ୍ରଧାନଂ ପୁରୁଷଂ ବିଶ୍ୱମନ୍ୟମ୍ ।
ବ୍ରଜାମ ସର୍ବେ ଶରଣଂ ଶରଣ୍ୟଂ
　　ସ୍ୱାନାଂ ସ ନୋ ଧାସ୍ୟତି ଶଂ ମାହାତ୍ମା" ॥

ଭାଗ: ୬ । ୯ । ୨୬ ॥

* ପୂର୍ବୋକ୍ତ ଗୀତା ବାକ୍ୟମାନଙ୍କରେ ଭଗବାନ୍ ଶ୍ରୀକୃଷ୍ଣ ସର୍ବତ୍ର ଅସ୍ମଦ୍‌ଶବ୍ଦର ଏକବଚନ ପ୍ରୟୋଗ କରିଛନ୍ତି; ଯଥା—ମାଂ ହୃପେତ୍ୟତୁ, ଅହଂ କ୍ରତୁଃ, ଅହଂ ହି, ମାଂ ହି ପାର୍ଥ, ମୟା ଅଧ୍ୟକ୍ଷେଣ, ମତ୍ତଃ ସ୍ମୃତଃ, ମତ୍ ଅନୁଗ୍ରହାୟ, ମମ ଦେହେ, ମମ ଏବ ଅଂଶଃ, ମୟି ଏବ, ମୟ୍ୟାବେଶ୍ୟ, ମନ୍ମନା ଭବ ମଦ୍‌ଭକ୍ତୋ ମଦ୍‌ଯାଜୀ ମାଂ ନମସ୍କୁରୁ—ଇତ୍ୟାଦି ସ୍ଥାନରେ ମୁଁ ଆଦି ଏକବଚନାନ୍ତ ଶବ୍ଦର ପ୍ରୟୋଗହେତୁ ଭଗବାନ୍ ନିଜେ ପରମାତ୍ମା ବୋଲି ପରିଚୟ ଦେଇଛନ୍ତି ; ଅତଏବ ଶ୍ରୀକୃଷ୍ଣ ନିଜେ ପରଂବ୍ରହ୍ମ କି ଏପରି ସନ୍ଦେହ ହୁଏ; କିନ୍ତୁ ଏହାର ସମାଧାନ ଏହିପରି—

ଶାସ୍ତ୍ରଦୃଷ୍ଟ୍ୟା ତୂପଦେଶୋ ବାମଦେବବତ୍ ॥ ବେ: ସ: ୧ । ୧-୩୦ ॥

ଅର୍ଥାତ୍ ଶାସ୍ତ୍ରଦୃଷ୍ଟି ଅନୁସାରେ ଉପଦେଶ ଦେଖାଯାଏ, ଯେପରି ବାମଦେବ ଋଷି ଉପଦେଶ ଦେଇଛନ୍ତି ; ଯଥା—ଇନ୍ଦ୍ର ନିଜେ ବ୍ରହ୍ମ ବୋଲି ଦେବତାମାନଙ୍କୁ ଉପଦେଶ ଦେଲେ ; କାରଣ, ଶାସ୍ତ୍ରରେ ଅଛି, ଯେଉଁ ବ୍ୟକ୍ତି ବ୍ରହ୍ମଙ୍କୁ ଜାଣିପାରେ, ସେ ବ୍ରହ୍ମ ହୁଏ ।

ଅଖିଳ ସଂସାରର କାରଣସ୍ୱରୂପ ଯେଉଁ ପ୍ରଧାନ ପୁରୁଷ ପରମାତ୍ମା, ସେହି ପରମାତ୍ମାଙ୍କଠାରେ ଆମ୍ଭେମାନେ ଶରଣ ପଶୁଅଛୁ; ସେ ଶରଣ ରକ୍ଷା କରି ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ଆହୁରି ମଧ୍ୟ—

"ଅହଂ ଭବୋ ଯୂୟମଥୋଽସୁରାଦୟୋ
ମନୁଷ୍ୟତର୍ଯ୍ୟଗ୍ ଦ୍ରୁମଘର୍ମଜାତୟଃ ।
ଯସ୍ୟାବତାରାଂଶକଳା ବିସର୍ଜିତା
ବ୍ରଜାମ ସର୍ବେ ଶରଣଂ ତମବ୍ୟୟମ୍ ।।

ଭାଗ: ୮ । ୫ । ୨୧ ।।

ବ୍ରହ୍ମା କହୁଅଛନ୍ତି—ହେ ଦେବଗଣ ! ମୁଁ, ସକଳସଂସାର, ଦେବ ଓ ଅସୁରାଦି—ତୁମ୍ଭେ ସକଳ ଏବଂ ମନୁଷ୍ୟ, ପଶୁ, ଲତା, ଗୁଳ୍ମପ୍ରଭୃତି ଯେଉଁ ପରମାତ୍ମାଙ୍କ ଅଂଶରେ ଜାତ ହୋଇ ଜୀବନଧାରଣ କରି ଅଛନ୍ତି ଏବଂ ଯାହାଙ୍କଠାରୁ ସକଳ ଅବତାର ସୃଷ୍ଟ ହୋଇଛି, ସେହି ଅବ୍ୟୟ ପରମାତ୍ମାଙ୍କଠାରେ ତୁମ୍ଭେମାନେ ଶରଣପ୍ରାପ୍ତ ହୁଅ ।

---

ଦ୍ୱିତୀୟତଃ, ଇନ୍ଦ୍ର ପ୍ରତର୍ଦ୍ଦନଙ୍କୁ ଉପଦେଶ ଦେବା ସମୟରେ ଏହିପରି ନିଜର ବ୍ରହ୍ମତ୍ୱଜ୍ଞାପନାର୍ଥେ ଅହଂଶବ୍ଦର ପ୍ରୟୋଗ କରିଛନ୍ତି । ବାମଦେବ ଋଷି ମଧ୍ୟ ବ୍ରହ୍ମଜ୍ଞାନଲାଭ କରି ନିଜେ ସର୍ବାତ୍ମକ ବ୍ରହ୍ମ ବୋଲି ଅନୁଭବ କରିଥିଲେ; "ତଦ୍ ଯୋ ଯୋ ଦେବାନାଂ ପ୍ରତ୍ୟବୁଧ୍ୟତ ସ ଏବ ତଦ୍‌ଭବତ୍" । (ବୃ: ୧ । ୮ । ୧୦), ଅର୍ଥାତ୍ ଦେବତାମାନଙ୍କ ମଧ୍ୟରେ ଯେଉଁମାନେ ବ୍ରହ୍ମଜ୍ଞାନ ଲାଭ କଲେ ସେମାନେ ନିଜେ ବ୍ରହ୍ମବୋଲି କୁହାଗଲେ ! "ତର୍ଦ୍ଧି ଏତତ୍ ପଶ୍ୟନ୍ ଋଷିର୍ବାମଦେବଃ ପ୍ରତିପେଦେ, ଅହଂ ମନୁରଭବଂ ସୂର୍ଯ୍ୟଶ୍ଚ" (ବୃ: ୧ । ୪ । ୧୦) ସେହି ବ୍ରହ୍ମଦର୍ଶନ କରି ବାମଦେବ ଋଷିଙ୍କର ବୋଧ ହେଲା—ମୁଁ ମନୁ ଓ ମୁଁ ନିଜେ ସୂର୍ଯ୍ୟ ମଧ୍ୟ ହେଲି । ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ କହୁଅଛନ୍ତି—"ବହୂନି ମେ ବ୍ୟତୀତାନି ଜନ୍ମାନି"—ମୋର ବହୁ ଜନ୍ମ ଅତୀତ ହୋଇଅଛି । "ତାନ୍ୟହଂ ବେଦ ସର୍ବାଣି"—ତାହା ସବୁ ମୁଁ ଜାଣେ । ଦ୍ୱିତୀୟତଃ—"ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍"—ମୁଁ ଆଦିତ୍ୟଙ୍କୁ ଏହି ଅବ୍ୟୟଯୋଗ କହିଥିଲି—ଇତ୍ୟାଦି । ଅହଂ, ମମ,—ପ୍ରଭୃତି ଶବ୍ଦ ସାଧାରଣତଃ ଜୀବାତ୍ମାସମ୍ବନ୍ଧରେ ପ୍ରଯୁକ୍ତ ହୁଏ, କିନ୍ତୁ ଯେତେବେଳେ ପରମାତ୍ମା ଜୀବାତ୍ମାର ମଧ୍ୟ ଆତ୍ମା, ସେତେବେଳେ (ଅର୍ଥାତ୍ ଆମ୍ଭେକହୁ ଯାହାଙ୍କର ସିଦ୍ଧ ହୋଇଅଛୁ ସେମାନେ "ଅହଂ, ମମ" ପ୍ରଭୃତିଶବ୍ଦଦ୍ୱାରା ନିଜେ ପରମାତ୍ମା ବୋଲି ପରିଚୟ ଦିଅନ୍ତି; କିନ୍ତୁ ଉପାଧିଗ୍ରସ୍ତ ବଶରୀରକୁ ଲକ୍ଷ୍ୟ କରନ୍ତି ନାହିଁ ଏହାହିଁ ବୁଝିବାକୁ ହେବ ।

ଏହିପରି ଶରଣପ୍ରାପ୍ତି ନିମନ୍ତେ ରାଜର୍ଷି ମୁଚୁକୁନ୍ଦ ବିଷ୍ଣୁଙ୍କୁ କହିଅଛନ୍ତି—

"ତସ୍ମାଦ୍ ବିସୃଜ୍ୟାଶିଷ ଈଶ ସର୍ବତୋ
ରଜସ୍ତମଃ ସତ୍ତ୍ୱଗୁଣାନୁବନ୍ଧନାଃ ।
ନିରଞ୍ଜନଂ ନିର୍ଗୁଣମଦ୍ୱୟଂ ପରଂ
ତ୍ୱାଂ ଜ୍ଞପ୍ତିମାତ୍ରଂ ପୁରୁଷଂ ବ୍ରଜାମ୍ୟହମ୍ ॥ ଭା: ୧୦ । ୫୧-୫୭ ॥

ଅର୍ଥାତ୍—ହେ ନାଥ ! ପରମେଶ୍ୱର ! ତୁମ୍ଭେ ମତେ ଯେଉଁ ବରଦାନ କରୁଅଛ, ସେ ବର ମୋର ଆବଶ୍ୟକ ନାହିଁ । କାରଣ, ତହିଁରେ ତ୍ରିଗୁଣରେ ବନ୍ଧନ ଅବଶ୍ୟମ୍ଭାବୀ । ସେହି ହେତୁରୁ ଯେ କେବଳ ନିର୍ଗୁଣ ନିରଞ୍ଜନ ପରମାତ୍ମା ଓ ଜ୍ଞାନସ୍ୱରୂପ, ତାହାଙ୍କଠାରେ ଶରଣ ପ୍ରାପ୍ତ ହେବି ।

ମହିମାସ୍ୱାମୀ ଏକ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମଙ୍କଠାରେ ଶରଣ ପ୍ରାପ୍ତ ହେବା ବିଷୟ ଯେପରି ଉପଦେଶ ଦେଇଅଛନ୍ତି, ତଦନୁରୂପ ବେଦବେଦାନ୍ତ—ଆଦି ଶ୍ରୁତି ଓ ସ୍ମୃତିର ତାତ୍ପର୍ଯ୍ୟ ଉଲ୍ଲେଖ କରାଗଲା । ପୁନଶ୍ଚ—ଅଥର୍ବ ବେଦରେ ମଧ୍ୟ ସେହି ପରଂବ୍ରହ୍ମଙ୍କ ବିଷୟ ବର୍ଣ୍ଣିତ ହୋଇଛି—

"ଯୋ ଭୂତଂ ଚ ଭବ୍ୟଂଚ ସର୍ବଂ ଯଶ୍ଚାଧିତିଷ୍ଠତି ।
ସ୍ୱର୍ଯ୍ୟସ୍ୟ ଚ କେବଳଂ ତସ୍ମୈ ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ" ॥
ଅଥର୍ବବେଦ ସଂ—୧୦ । ୮ । ସୂ ୧ ମ ।

ଯେ ନିଜେ ଭୂତ ଓ ଭବିଷ୍ୟତ୍‌କାଳ; ନିଖିଳ ଜଗତର ଯେ ଅଧିଷ୍ଠାତା, ସୁଖ କେବଳ ତାଙ୍କର ସ୍ୱରୂପ; ସେହି ସର୍ବଶ୍ରେଷ୍ଠ ପରମାତ୍ମାଙ୍କୁ ନମସ୍କାର ।

"ଯସ୍ୟ ଭୂମିଃ ପ୍ରମାନ୍ତରୀକ୍ଷମୁତୋଦରମ୍ ।
ଦିବଂ ଯଶ୍ଚକ୍ରେ ମୂର୍ଦ୍ଧାନଂ ତସ୍ମୈ ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ" ॥
ଅଥର୍ବ-୧୦ । ୭ । ୩୨ ॥

ଭୂମି ଯାହାଙ୍କର ପଦମୂଳ ସଦୃଶ; ଅନ୍ତରୀକ୍ଷ ଉଦର ଓ ଦ୍ୟୁଲୋକକୁ ଯେ ମସ୍ତକସଦୃଶ ସୃଷ୍ଟି କରିଅଛନ୍ତି, ସେହି ସର୍ବଶ୍ରେଷ୍ଠ ପରମାତ୍ମାଙ୍କୁ ନମସ୍କାର ।

"ଯସ୍ୟ ସୂର୍ଯ୍ୟଶ୍ଚକ୍ଷୁଶ୍ଚନ୍ଦ୍ରମାଶ୍ଚ ପୁନର୍ଣବଃ ।
ଅଗ୍ନିଂ ଯଶ୍ଚକ୍ରେ ଆସ୍ୟଂ ତସ୍ମୈ ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ" ॥
ଅଥର୍ବ-୧୦ । ୭ । ୩୩ ॥

ସୃଷ୍ଟିର ଆଦ୍ୟରେ ବାରମ୍ବାର ନବ ନବ ରୂପ ଧାରଣ କରି ଯେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ନିଜର ନେତ୍ରସଦୃଶ ଓ ଅଗ୍ନିଙ୍କୁ ମୁଖସଦୃଶ ସୃଷ୍ଟି କରି ଅଛନ୍ତି, ସେହି ଶ୍ରେଷ୍ଠ ପରମାତ୍ମା-ବ୍ରହ୍ମଙ୍କୁ ନମସ୍କାର ।

**"ଯସ୍ୟ ବାତଃ ପ୍ରାଣାପାନୌ ଚକ୍ଷୁରଙ୍ଗିରସୋଽଭବନ୍ ।**
**ଦିଶୋ ଯଶ୍ଚକ୍ରେ ପ୍ରଜ୍ଞାନୀ ତସ୍ମୈ-ଜ୍ୟେଷ୍ଠାୟ ବ୍ରହ୍ମଣେ ନମଃ" ॥**

ଅଥର୍ବ-୧୦ । ୭ । ୩୪ ॥

ବାୟୁ ଯାହାଙ୍କର ପ୍ରାଣ ଓ ଅପାନସଦୃଶ, ରଶ୍ମି ସମୂହ—ଯାହାଙ୍କର ଚକ୍ଷୁସଦୃଶ, ଦିକ୍‌ସମୂହ ଯାହାଙ୍କର ପ୍ରଜ୍ଞାସଦୃଶ, ସେହି ଶ୍ରେଷ୍ଠ—ପରମାତ୍ମା ପରବ୍ରହ୍ମଙ୍କୁ ନମସ୍କାର ।

**"ପ୍ରଜାପତିଶ୍ଚରତି ଗର୍ଭେ ଅନ୍ତରଜାୟମାନୋ ବହୁଧା ବିଜାୟତେ ।**
**ତସ୍ୟ ଯୋନିଂ ପରିପଶ୍ୟନ୍ତି ଧୀରାସ୍ତସ୍ମିନ୍‌ହ ତସ୍ଥୁର୍ଭୁବନାନି ବିଶ୍ୱା" ॥**

ଯଜୁର୍ବେଦ-୩୧ । ୧୯ ॥

ଏହି ପରମାତ୍ମା ପ୍ରଜାମାନଙ୍କର ପାଳକ ଏବଂ ଗର୍ଭ ବା ହିରଣ୍ୟଗର୍ଭର ଅଭ୍ୟନ୍ତରରେ ବ୍ୟାପକ ହୋଇ ବିଚରଣ କରନ୍ତି; ସେହି ପରମାତ୍ମା କେବେହେଲେ ଉତ୍ପନ୍ନ ହୁଅନ୍ତି ନାହିଁ; କିନ୍ତୁ ତାହାଙ୍କ ମହିମାରେ ବହୁତ ଓ ବିବିଧରୂପ ପ୍ରକଟ ହୋଇ ଅଛି । ସେହି ପରମକାରଣସ୍ୱରୂପ ପରମାତ୍ମାଙ୍କୁ ଧୀର ଓ ଧ୍ୟାନନିଷ୍ଠ ଯୋଗୀମାନେ ସାକ୍ଷାତ୍ କରନ୍ତି । ସେହି ମୂଳକାରଣ—ପରମାତ୍ମାଙ୍କଠାରେ ଏହି ସମସ୍ତ ଭୁବନ, ନାନାବ୍ରହ୍ମାଣ୍ଡ ଏବଂ ସୂର୍ଯ୍ୟାଦିଲୋକମାନ ଅବସ୍ଥିତ ରହି ଅଛନ୍ତି ।

**"ଯୋ ଦେବେଭ୍ୟ ଆତପତି ଯୋ ଦେବାନାଂ ପୁରୋହିତଃ ।**
**ପୂର୍ବୋ ଯୋ ଦେବେଭ୍ୟୋ ଜାତୋ ନମୋ ରୁଚାୟ ବ୍ରାହ୍ମୟେ" ॥**

ଯଜୁଃ-୩୧ । ୨୦ ।

ଯେଉଁ ଦିବ୍ୟଗୁଣସମ୍ପନ୍ନ ବ୍ରହ୍ମ ପୃଥିବୀ, ଜଳ, ଅଗ୍ନି, ବାୟୁ ଓ ଆକାଶ-ଆଦିର ଉତ୍ପତ୍ତିନିମନ୍ତେ ସ୍ୱୟଂ ସଙ୍କଳ୍ପ କରିଥିଲେ ଓ ଯେ ପୃଥିବୀ-ଆଦି ସମସ୍ତ ଲୋକର ପୂର୍ବ ମୂଳକାରଣରୂପରେ ବିଦ୍ୟମାନ ଅଛନ୍ତି; ଯେ ତେଜୋମୟ ସୂର୍ଯ୍ୟ-ଆଦି ପଦାର୍ଥମାନଙ୍କରେ ମଧ୍ୟ ହିରଣ୍ୟଗର୍ଭରୂପରେ ପ୍ରକଟ ହୁଅନ୍ତି; ସେହି ବ୍ରହ୍ମ ବେଦାଦିରେ ପ୍ରତିପାଦିତ, ଆମ୍ଭେ ସେହି ସ୍ୱୟଂ-ପ୍ରକାଶ ପରମାତ୍ମାଙ୍କୁ ନମସ୍କାର କରୁଅଛୁଁ ।

"ଯେନ ଦ୍ୟୌରୁଗ୍ରା ପୃଥିବୀ ଚ ଦୃଢ଼ା ଯେନ ସ୍ୱଃ ସ୍ତଭିତଂ ଯେନ ନାକଃ ।
ଯୋଽନ୍ତରୀକ୍ଷେ ରଜସୋ ବିମାନଃ କସ୍ମୈ ଦେବାୟ ହବିଷା ବିଧେମ" ॥
ଋକ୍—୧୦।୧୨୧।୫ । ଯଜୁ : ୩୨ । ୬ ।

ଯେଉଁ ପରମାତ୍ମା ଆକାଶକୁ ବିଶେଷ ବଳଶାଳୀ ଓ ବୃଷ୍ଟିଦାୟୀ କରି ସ୍ୱୟଂ ଧାରଣ କରିଅଛନ୍ତି ଓ ଯେ ପୃଥିବୀକୁ ଦୃଢ଼ରୂପେ ଗଢ଼ି ଧାରଣ କରିଅଛନ୍ତି, ଯେ ସମସ୍ତ ସୁଖ ବା ତେଜୋମୟ ଆଦିତ୍ୟଙ୍କୁ ଧାରଣ କରିଅଛନ୍ତି, ଯେ ଆନନ୍ଦମୟ ସର୍ବଦୁଃଖରହିତ ମୋକ୍ଷକୁ ଭକ୍ତନିମନ୍ତେ ଧାରଣ କରିଅଛନ୍ତି, ଯେ ଅନ୍ତରୀକ୍ଷରେ ବିଦ୍ୟମାନ ଓ ସମସ୍ତଲୋକଙ୍କୁ ବିଶେଷରୂପରେ ରଚନା କରି ଜାଣୁଅଛନ୍ତି, ସେହି ବିଶ୍ୱର ପତି ଆନନ୍ଦମୟ ପରମାତ୍ମାଙ୍କୁ ଭକ୍ତି ସହ ଅର୍ଚ୍ଚନା କରୁଅଛୁଁ ।

"ଯଂ କ୍ରନ୍ଦସି ଅବସା ତସ୍ତଭାନେ ଅଭ୍ୟୈକ୍ଷେତାଂ ମନସା ରେଜମାନେ ।
ଯତ୍ରାଧିସୁର ଉଦିତୋ ବିଭାତି କସ୍ମୈ ଦେବାୟ ହବିଷା ବିଧେମ" ॥
ଯଜୁଃ—୩୨ । ୭ ।

ଯାହାଙ୍କର ଆଶ୍ରୟରେ ଆକାଶ ଓ ପୃଥିବୀ ବର୍ତ୍ତମାନ, ଯାହାଙ୍କ ସାମର୍ଥ୍ୟରେ ସମସ୍ତ ଜଗତ୍ ସ୍ଥିର ରହିଅଛି ଏବଂ ଯେ ନିଜେ ସ୍ଥିର, ଯାହାଙ୍କ ଜ୍ଞାନବଳ ବା ପ୍ରମୂନ ସାମର୍ଥ୍ୟରେ ଆକାଶ ଓ ପୃଥିବୀ କମ୍ପିତ ବା ଚଳିତ, ଦୁହେଁ ସମ୍ମୁଖସ୍ଥ ହୋଇ ପରସ୍ପର ନିରୀକ୍ଷଣ କରୁଛନ୍ତି; ଯାହାଙ୍କ ମହିମାରେ ସୂର୍ଯ୍ୟ ଉଦିତ ହୋଇ ପ୍ରକାଶ କରୁଅଛନ୍ତି, ସେହି ସର୍ବସୁଖମୟ ଜଗତ୍‌କର୍ତ୍ତା ସର୍ବପ୍ରକାଶକ ଦେବାଦିଦେବ ପରମାତ୍ମାଙ୍କୁ ଭକ୍ତିସହ ଉପାସନା କରୁଅଛୁଁ ।

"ମ ମାହିଂସିଜ୍ଜନିତା ଯଃ ପୃଥିବ୍ୟା ଯୋବାଦିବଂ ସତ୍ୟଧର୍ମୋବ୍ୟାନଟ୍ ।
ଯଶ୍ଚାପଶ୍ଚନ୍ଦ୍ରାଃ ପ୍ରଥମୋ ଜଜାନ କସ୍ମୈ ଦେବାୟ ହବିଷା ବିଧେମ" ॥
ଯଜୁଃ—୧୨ । ୧୦୨ ।

ଯେଉଁ ପରମାତ୍ମା ପୃଥିବୀର ଉତ୍ପାଦକ ଓ ଯେ ସତ୍ୟବଳରେ ଜଗତ୍‌କୁ ଧାରଣ କରି ଦ୍ୟୁଲୋକ, ଆକାଶ ଓ ସୂର୍ଯ୍ୟପ୍ରଭୃତି ବିବିଧ ରୂପରେ ବ୍ୟାପ୍ତ ଅଛନ୍ତି, ଯେ ସର୍ବପ୍ରଥମେ ବିଦ୍ୟମାନ ବା ପ୍ରକାଶମାନ ହୋଇ ଜଳ, ବାୟୁ, ପ୍ରାଣ, ଜ୍ୟୋତିଷ୍ମାନ୍ ସୂର୍ଯ୍ୟ ଓ ଚନ୍ଦ୍ର ଆଦି ଲୋକମାନଙ୍କୁ ଉତ୍ପନ୍ନ କରିଛନ୍ତି, ସେହି ସୁଖମୟ ଓ ପ୍ରକାଶସ୍ୱରୂପ ପରମାତ୍ମାଙ୍କୁ ଭକ୍ତି ଓ ଶ୍ରଦ୍ଧାର ଉପାସନା କରୁଛୁଁ ।

"ଯସ୍ୟ ଵଶ୍ୱେ ହିମଵନ୍ତୋ ମହିତ୍ୱା ସମୁଦ୍ରେ ଯସ୍ୟ ରସାମିଦାହୁଃ ।
ଇମାଶ୍ଚ ପ୍ରଦିଶୋ ଯସ୍ୟ ବାହୂ କସ୍ମୈ ଦେବାୟ ହବିଷା ବିଧେମ ॥"

ଋ—୧୦ । ୧୨୭ । ୪ ॥ ଯଜୁଃ—୨୫ । ୧୨ ।

ଯାହାଙ୍କ ଅଦ୍‌ଭୁତ ମହିମାରେ ସମସ୍ତ ହିମାବୃତ ପର୍ବତ ସ୍ଥିର ରହିଅଛି ଓ ବିଶାଳ ସମୁଦ୍ରରେ ନଦୀସମୂହ ପ୍ରବେଶ କରୁଅଛନ୍ତି ଏବଂ ଯାହାଙ୍କ ଅଦ୍‌ଭୁତ ମହିମାରେ ସମୁଦ୍ର ଓ ଆକାଶଦ୍ୱାରା ପରିବେଷ୍ଟିତ ଏହି ଜଳମୟୀ ପୃଥ୍ୱୀ ସ୍ଥିର ରହିଅଛି, ଏହି ଅନନ୍ତ ଦିଗ୍‌ଦିଗ ଯାହାଙ୍କର ବାହୁରୂପରେ ସର୍ବତ୍ର ବ୍ୟାପ୍ତ ଓ ସମସ୍ତଙ୍କୁ ସ୍ଥିର କରି ରଖିଅଛି, ସେହି ମହାମହିମାମୟ ପ୍ରଭୁଙ୍କୁ ଆମେ ଭକ୍ତିସହକାରେ ଉପାସନା କରୁଅଛୁଁ ।

"ଯସ୍ୟ ଦ୍ୟୌରୁର୍ବୀ ପୃଥିବୀ ଚ ମହୀ ଯସ୍ମାଦ୍ ଉର୍ବନ୍ତରୀକ୍ଷମ୍ ।
ଯସ୍ୟାସୌ ସୁରୋ ବିତତୋ ମହିତ୍ୱା କସ୍ମୈ ଦେବାୟ ହବିଷା ବିଧେମ ॥"

ଋକ୍. ୧୧୧୨୧୫ । ଊ. ୧୦।୧୨୧।୨ ଯଜୁଃ—୩୨।୬ ।

ଯାହାଙ୍କ ଅଦ୍‌ଭୁତ ମହିମାରେ ବିଶାଳ ଦ୍ୟୁଲୋକ, ଆକାଶ ଓ ପୃଥିବୀ, ଅନ୍ତରୀକ୍ଷ ଓ ପୃଥିବୀର ମଧ୍ୟଭାଗ ପ୍ରସାରିତ ହୋଇ ସ୍ଥିର ରହିଅଛି; ଯାହାଙ୍କ ଅଦ୍‌ଭୁତ ମହିମାରେ ଏହି ଦୃଶ୍ୟମାନ ସୂର୍ଯ୍ୟ ବିଶେଷରୂପରେ ଅବସ୍ଥିତ ଅଛନ୍ତି, ସେହି ପରମାନନ୍ଦରୂପ ବିଶ୍ୱକର୍ତ୍ତା ପରମପ୍ରଭୁଙ୍କୁ ଆମେ ଭକ୍ତି ସହ ଉପାସନା କରୁଅଛୁଁ ।

"ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ ।
ସଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ॥"

ଶତ ୬।୨।୨।୫ । କୌଷୀ. ବ୍ରା ୫।୪ ଯଜୁଃ—୧୩-୪ ।

ଯେ ନିଜେ ଜ୍ୟୋତିଃସ୍ୱରୂପ ଏବଂ ଗ୍ରହନକ୍ଷତ୍ରାଦି ଜ୍ୟୋତିଷ୍କମଣ୍ଡଳକୁ ଗର୍ଭରେ ଧାରଣ କରିଅଛନ୍ତି; ଯେ ସମଗ୍ର ସୃଷ୍ଟ ଜଗତର ଏକମାତ୍ର ପ୍ରସିଦ୍ଧ ରକ୍ଷକ ଏବଂ ଯେ ଜଗତର ଉତ୍ପତ୍ତି ପୂର୍ବେ ବିରାଜିତ ଥିଲେ, ସେହି କେବଳ ଏହି ପୃଥିବୀ ଏବଂ ସୂର୍ଯ୍ୟାଦି ଲୋକମାନଙ୍କୁ ଧାରଣ କରିଅଛନ୍ତି । ଆମ୍ଭେମାନେ ସେହି ସୁଖସ୍ୱରୂପ ଶୁଦ୍ଧ ପରମାତ୍ମାଙ୍କୁ ଭକ୍ତି ଓ ପ୍ରେମ ସହିତ ଉପାସନା କରୁଅଛୁଁ ।

"ଯ ଆତ୍ମଦା ବଳଦା ଯସ୍ୟ ବିଶ୍ୱ ଉପାସତେ ପ୍ରଶିଷଂ ଯସ୍ୟ ଦେବାଃ ।
ଯସ୍ୟ ଛାୟାଽମୃତଂ ଯସ୍ୟ ମୃତ୍ୟୁଃ କସ୍ମୈ ଦେବାୟ ହବିଷା ବିଧେମ ॥"

ଯଜୁଃ—୨୫-୧୩ ।

ଯେଉଁ ପରମାତ୍ମା ପ୍ରାଣୀମାନଙ୍କ ଶରୀରରେ ଚେତନ-ଜୀବରୂପକ ଆତ୍ମାକୁ ପ୍ରଦାନ କରିଅଛନ୍ତି ଏବଂ ସମଗ୍ର ମନୁଷ୍ୟ ଓ ସୂର୍ଯ୍ୟାଦି ଦେବତା ଯାହାଙ୍କ ଆଜ୍ଞାକୁ ପାଳନ କରୁଅଛନ୍ତି, ଯାହାଙ୍କର ଆଶ୍ରୟ ଅଭୟ ଓ ମୋକ୍ଷଦାୟକ ଏବଂ ଯାହାଙ୍କୁ ଉପାସନା ନ କରିବା ମୃତ୍ୟୁ ଆଦିର ହେତୁ, ସେହି ସୁଖରୂପୀ ପ୍ରଜାପାଳକ ସର୍ବସୁଖଦାତା ପରମାତ୍ମାଙ୍କୁ ଜ୍ଞାନ ଓ ସ୍ତୁତିଦ୍ୱାରା ଉପାସନା କରୁଅଛୁଁ ।

"ଯଃ ପ୍ରଣତୋ ନିମିଷତୋ ମହିତ୍ୱୈକ ଇଦ୍ରାଜା ଜଗତୋ ବଭୂବ ।
ଯ ଈଶେ ଅସ୍ୟ ଦ୍ୱିପଦଶ୍ଚତୁଷ୍ପଦଃ କସ୍ମୈ ଦେବାୟ ହବିଷା ବିଧେମ ।।"

ଯଜୁଃ— ୨୩-୩ ।

ନିଜର ଅଦ୍‌ଭୁତ ମହିମାବଳରେ ଯେ ଚେତନ ଓ ଜଡ଼ଜଗତର ଏକମାତ୍ର ରାଜା, ଯେ ଦ୍ୱିପଦ ଓ ଚତୁଷ୍ପଦାଦି ପ୍ରାଣୀମାନଙ୍କୁ ଶାସନ କରୁଅଛନ୍ତି, ସେହି ଆନନ୍ଦସ୍ୱରୂପ ପରମାତ୍ମାଙ୍କୁ ଆମ୍ଭେମାନେ କାୟମନୋବାକ୍ୟରେ ଉପାସନା କରୁଅଛୁଁ ।

"ବିଶ୍ୱାନି ଦେବ ସବିତର୍ଦୁରିତାନି ପରାସୁବ ଯଦ୍‌ଭଦ୍ରଂ ତନ୍ନଽଆସୁବ ।।"

ଯଜୁଃ— ୩୦-୩ ।

ହେ ଜଗତର ଉତ୍ପତ୍ତିକର୍ତ୍ତା ଓ ସୁଖଦାତା ପରମାତ୍ମନ୍ ! ତୁମ୍ଭେ ଆମ୍ଭମାନଙ୍କର ଦୁଃଖ ଓ ଦୁର୍ଗୁଣସମୂହକୁ ଦୂର କରି ଯାହା ଶୁଭ ବା ମଙ୍ଗଳ, ତାହା ହିଁ ପ୍ରଦାନ କର ।

"ତେଜୋଽସି ତେଜୋ ମୟି ଧେହି ।
ବୀର୍ଯ୍ୟମସି ବୀର୍ଯ୍ୟଂ ମୟି ଧେହି ।
ମନ୍ୟୁରସି ମନ୍ୟୁଂ ମୟି ଧେହି ।
ସହୋଽସି ସହୋ ମୟି ଧେହି ।।"　　ଯଜୁଃ—୧୯ । ୯ ।

ହେ ପରମାତ୍ମନ୍ ! ଆପଣ ତେଜସ୍ୱୀ, ମୋଠାରେ ତେଜଃ ସ୍ଥାପନ କରନ୍ତୁ; ଆପଣ ବୀର୍ଯ୍ୟବାନ୍ ଓ ବଳବାନ୍, ଅତଏବ ମୋଠାରେ ବୀର୍ଯ୍ୟ ଓ ବଳ ସ୍ଥାପନ କରନ୍ତୁ; ଆପଣ ଓଜସ୍ୱୀ ମୋଠାରେ ଓଜ ସ୍ଥାପନ କରନ୍ତୁ; ଆପଣ ଅଧର୍ମର ଦଣ୍ଡଦାତା, ମୋଠାରେ ଅଧର୍ମ ଦମନର ଶକ୍ତି ସ୍ଥାପନ କରନ୍ତୁ । ଆପଣ ସହନଶୀଳ, ମୋତେ ସହନଶକ୍ତି ପ୍ରଦାନ କରନ୍ତୁ ।

"ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ଯୋ ନଃ ପ୍ରଚୋଦୟାତ୍ ।" ଋକ୍—୩ । ୫ । ୬୨ । ଯଜୁଃ—୩ । ୩୫-୩୦
ସାମବେଦ ଉତ୍ତରାର୍ଚ୍ଚିକ ୬ । ୩ । ୧୦ ।

ସେହି ଜଗଦୁତ୍ପାଦକ ଐଶ୍ୱର୍ଯ୍ୟ ପ୍ରଦାତା ପରମାତ୍ମା କେବଳ ବରଣଯୋଗ୍ୟ, ପାପ-ନାଶକ; ଅତଏବ ସେହି ଜ୍ୟୋତିଃସ୍ୱରୂପ ମହାତ୍ମାଙ୍କୁ ଆମ୍ଭେମାନେ ଧ୍ୟାନ କରୁଁ, ଯେ ଆମ୍ଭମାନଙ୍କର ବୁଦ୍ଧି ବୃତ୍ତିସମୂହକୁ ପ୍ରେରଣ କରିବେ ।

"ଯୋ ବିଶ୍ୱାଭି ବିପଶ୍ୟତି ଭୁବନା ସଂ ଚ ପଶ୍ୟତି ।
ସ ନଃ ପୁଷାବିତା ଭୁବତ୍ ॥" ଋକ୍—୩।୬୨।୯ ।

ଯେଉଁ ପ୍ରତିପାଳକ ପରମାତ୍ମା ସକଳ ଲୋକ ଓ ସମୁଦାୟ ଜଗତକୁ ବିଶେଷରୂପରେ ଦେଖୁଅଛନ୍ତି, ସେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

"ନ ତମଂହୋ ନ ଦୁରିତଂ କୁତଶ୍ଚନ ନାରାତୟସ୍ତିତିରୁର୍ନ ଦ୍ୱୟାବିନଃ ।
ବିଶ୍ୱା ଇଦସ୍ମାଦ୍ଧ୍ୱରସୋ ବିବାଧସେ ଯଂ ସୁଗୋପା ରକ୍ଷସି ବ୍ରହ୍ମଣସ୍ପତେ ॥"
ଋକ୍—୨ । ୨୩ । ୫ ।

ହେ ଜ୍ଞାନାଧିପତେ ! ତୁମ୍ଭେ ଯାହାଙ୍କୁ ରକ୍ଷାକର, ତାହାଙ୍କୁ ଦୁଃଖ ଓ ପାପ ସ୍ପର୍ଶ କରେ ନାହିଁ; ଶତ୍ରୁଗଣ ଓ ବଞ୍ଚକମାନେ କୌଣସି ସ୍ଥାନରେ ହିଂସା କରି ପାରନ୍ତି ନାହିଁ । ତୁମ୍ଭେ ସେହି ବଞ୍ଚକମାନଙ୍କଠାରୁ ଆମ୍ଭମାନଙ୍କୁ ଦୂରକୁ ଅପସାରିତ କର ।

"ଆ ତ୍ୱା ରମ୍ଭଂ ନ ଜିବ୍ରୟୋ ରରମ୍ଭା ଶବସସ୍ପତେ ।
ଉଶ୍ମସି ତ୍ୱା ସଧସ୍ଥ ଆ ॥" ଋକ୍—୮ । ୪୫ । ୨୦ ।

ହେ ସର୍ବଶକ୍ତିର ଅଧିପତି ପରମାତ୍ମନ୍ ! ବୃଦ୍ଧ ପୁରୁଷ ଯେପରି ଯଷ୍ଟିକୁ ଆଶ୍ରୟ କରି ଚଳେ, ଆମ୍ଭେମାନେ ସେହିପରି ଆପଣଙ୍କ ଶରଣ (ଆଶ୍ରୟ) ଗ୍ରହଣ କରିଅଛୁଁ । ଆପଣଙ୍କୁ ଆମ୍ଭମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ କରିବାକୁ ଚାହୁଁ ।

"ସୋମ ରାରନ୍ଧି ନୋ ହୃଦି ଗାବୋ ନ ଯବସେଷ୍ୱା ।
ମର୍ଯ୍ୟ ଇବ ସ୍ୱ ଓକ୍ୟେ ॥" ଋକ୍—୧ । ୮ । ୧୩ ।

ଧେନୁ ଶସ୍ୟକ୍ଷେତ୍ରରେ ଓ ମନୁଷ୍ୟ ସ୍ୱ-ଗୃହରେ ଯେପରି ଆନନ୍ଦରେ ବିଚରଣ କରେ, ହେ ପରମାତ୍ମନ୍ ! ଆପଣ ଆମ୍ଭମାନଙ୍କ ହୃଦୟରେ ସେହିପରି ରମଣ କରନ୍ତୁ ।

ଏହିପରି ଏକ ଅଦ୍ୱିତୀୟ ପ୍ରଭୁ ପରଂବ୍ରହ୍ମ ପରମାତ୍ମାଙ୍କୁ ସ୍ତୁତି ପ୍ରାର୍ଥନା ସହ ଉପାସନା କରିବା ବେଦରେ ପ୍ରତିପାଦିତ ହୋଇଅଛି ।

ପୂର୍ବୋକ୍ତପ୍ରକାରେ ଗୁରୁଙ୍କ ଆଜ୍ଞା ଓ ସତ୍ୟ ଉପରେ ଦୃଢ଼ ବିଶ୍ୱାସ ସ୍ଥାପନ କରି ଭକ୍ତିସହକାରେ କାୟମନୋବାକ୍ୟରେ ପ୍ରଭୁ ପରଂବ୍ରହ୍ମଙ୍କ ପଦରେ ଆତ୍ମ ନିବେଦନ କରିବାକୁ ହେବ । କୌଣସି କାରଣରୁ ତାହାଙ୍କ ପ୍ରତି ଭକ୍ତିଭାବର ବିସ୍ମରଣ ଯେପରି ନ ଘଟେ, ସେଥି-ନିମନ୍ତେ ଅନ୍ତଃକରଣରେ ତାହାଙ୍କର ମହିମା ଉପଲବ୍ଧି କରିବା ସର୍ବଦା ବିଧେୟ । ପୁନଶ୍ଚ— ସେହି ପରମାତ୍ମାଙ୍କ ସ୍ମରଣରେ ଆନନ୍ଦ ଅନୁଭବ କରି, ସେହି ସର୍ବାଧାର ସର୍ବାନ୍ତର୍ଯ୍ୟାମୀ ଚିନ୍ମୟ ପ୍ରଭୁ ପରମାତ୍ମାଙ୍କ ଅଭୟ ଶ୍ରୀଚରଣରେ ସର୍ବଦା ଶରଣ ପଶି ତାଙ୍କୁ ସତତ ସ୍ମରଣ କରିବ; ସେହି ପରଂବ୍ରହ୍ମ ସତ୍ୟରୂପରେ ସର୍ବତ୍ର ଓ ସର୍ବଦା ଅନୁସ୍ୟୂତ ଓ ସେ ଆମ୍ଭମାନଙ୍କର ଭୂମିଷ୍ଠ ଶରଣ ଗ୍ରହଣ କରନ୍ତୁ; ଆମ୍ଭେମାନେ ଯାହାକିଛି ବା ଅଜ୍ଞାନପୂର୍ବକ କାର୍ଯ୍ୟ କରୁଁ, ସେ ସକଳ କର୍ମ ସେହି ପରମାତ୍ମାଙ୍କୁ ସତତ ଗୋଚର; ସେ ଆମ୍ଭମାନଙ୍କର ଧାରଣକର୍ତ୍ତା, ପୋଷଣ ଓ ରକ୍ଷାକର୍ତ୍ତା; ଏହିପରି ପୂର୍ଣ୍ଣ ଆସ୍ତିକ୍ୟଜ୍ଞାନପୂର୍ବକ ପରମାତ୍ମାଙ୍କଠାରେ ଶରଣପ୍ରାପ୍ତ ହୋଇ ସତ୍ୟ ନିଷ୍ଠାବାନ୍ ହୋଇ ରହିବାକୁ ହେବ ।

କେବଳ ପ୍ରଭୁ ପରମାତ୍ମା ହିଁ ସତ୍ୟସ୍ୱରୂପ, ତଦ୍‌ବ୍ୟତୀତ ସକଳ ଚେତନାଚେତନ-ସ୍ୱରୂପୀ ଦୃଶ୍ୟ ଜଗତ୍ ଅନିତ୍ୟ—ଏହିପରି ଭାବି ପ୍ରଭୁ ପରମାତ୍ମା ସର୍ବାନ୍ତର୍ଯ୍ୟାମୀ ଅଲେଖପରଂବ୍ରହ୍ମଙ୍କୁ ବିଶୁଦ୍ଧ ସତ୍ୟସ୍ୱରୂପରେ ଧ୍ୟାନ କରି ଐକାନ୍ତିକ ଭକ୍ତିପ୍ରେମସହକାରେ ଭାବନା କରି ଗୁରୁଙ୍କ ଆଜ୍ଞା ଅନୁସାରେ, ପ୍ରାତଃ ବ୍ରାହ୍ମମୂହୂର୍ତ୍ତ ଓ ସାୟଂକାଳରେ ଶରଣ ଦର୍ଶନ କରିବାକୁ ହେବ ।

"ଯୋ ଦେବୋଽଗ୍ନୌ ଯୋଽପ୍‌ସୁ ଯୋ ବିଶ୍ୱଂ ଭୁବନମାବିବେଶ ।
ଯ ଓଷଧୀଷୁ ଯୋ ବନସ୍ପତିଷୁ ତସ୍ମୈ ଦେବାୟ ନମୋନମଃ ॥"

ଶ୍ୱେତାଶ୍ୱ—୨ । ୧୭ ।

ଯେ ସ୍ୱୟଂପ୍ରକାଶ ବ୍ରହ୍ମ, ଅଗ୍ନି, ଜଳ ଓ ସମସ୍ତ ଭୁବନରେ ଓଷଧି ଓ ବନସ୍ପତି-ମାନଙ୍କ ମଧ୍ୟରେ ପ୍ରବିଷ୍ଟ ହୋଇଛନ୍ତି ; ଯାହାଙ୍କୁ ଆଶ୍ରୟ କରି ଅନନ୍ତ ବ୍ରହ୍ମାଣ୍ଡ ଅବସ୍ଥାନ କରିଅଛି ; ସେହି ଚରାଚର ଜଗତର ଆଦିକାରଣ ପରମାତ୍ମା ପରଂବ୍ରହ୍ମଙ୍କୁ ପୁନଃ ପୁନଃ ନମସ୍କାର କରୁଅଛୁଁ ।

"ଯସ୍ମାଜ୍ଜାତଂ ଜଗତ୍‌ସର୍ବଂ ଯସ୍ମିନ୍ନେବ ବିଲୀୟତେ ।
ଯେନେଦଂ ଧାର୍ଯ୍ୟତେ ଚୈବ ତସ୍ମୈ ଜ୍ଞାନାତ୍ମନେ ନମଃ ॥"

ତୈତ୍ତିରୀୟ ଉ: ଶିକ୍ଷାବଲ୍ଲୀ—୧-୧ ।

ଏହି ଜଗତ୍ ଯାହାଙ୍କଠାରୁ ଉତ୍ପନ୍ନ, ଯାହାଙ୍କ ମହିମାରେ ବର୍ଦ୍ଧିତ ଏବଂ ପରିଶେଷରେ ଯାହାଙ୍କଠାରେ ବିଲୀନ ହୁଏ, ସେହି ସଦାତ୍ମମୟ ପରଂବ୍ରହ୍ମଙ୍କୁ ନମସ୍କାର ।

"ଯତଃ ସର୍ବାଣି ଭୂତାନି ପ୍ରତିଭାନ୍ତି ସ୍ଥିତାନି ଚ ।
ଯତ୍ରୈବୋପଶମଂ ଯାନ୍ତି ତସ୍ମୈ ସତ୍ୟାତ୍ମନେ ନମଃ ॥
ଜ୍ଞାତା ଜ୍ଞାନଂ ତଥା ଜ୍ଞେୟଂ ଦ୍ରଷ୍ଟା ଦର୍ଶନଦୃଶ୍ୟଭୂଃ ।
କର୍ତ୍ତା ହେତୁଃ କ୍ରିୟା ଯସ୍ମାତ୍ ତସ୍ମୈ ଜ୍ଞପ୍ତ୍ୟାତ୍ମନେ ନମଃ ॥
ସ୍ଫୁରନ୍ତି ଶୀକରା ଯସ୍ମାଦାନନ୍ଦସ୍ୟାମ୍ବରେ ବନୌ ।
ସର୍ବେଷାଂ ଜୀବନଂ ତସ୍ମୈ ବ୍ରହ୍ମାନନ୍ଦାତ୍ମନେ ନମଃ ॥"

ଯୋଗ ବା: ବୈ: ପ୍ର: ୧ । ୧ । ୩ ।

ସୃଷ୍ଟିକାଳରେ ଯାହାଙ୍କଠାରୁ ସମୁଦାୟ ଭୂତବର୍ଗ ଆବିର୍ଭୂତ ହୁଅନ୍ତି ଓ ସ୍ଥିତିଲାଭ କରି ପ୍ରଳୟକାଳରେ ଯାହାଙ୍କଠାରେ ବିଲୀନ ହୁଅନ୍ତି, ସେହି ସତ୍ୟସ୍ୱରୂପ ଅଦ୍ୱୟ ବ୍ରହ୍ମଙ୍କୁ ନମସ୍କାର । ଯେଉଁ ଚିଦେକରସ-ବ୍ରହ୍ମ ବସ୍ତୁଠାରୁ ଜ୍ଞାତା, ଜ୍ଞାନ, ଜ୍ଞେୟ, ଦ୍ରଷ୍ଟା, ଦର୍ଶନ, ଦୃଶ୍ୟ, କର୍ତ୍ତା, ହେତୁ ଓ କ୍ରିୟାରୂପକ ସକଳ ବ୍ୟାବହାରିକ ତତ୍ତ୍ୱ ପ୍ରାଦୁର୍ଭୂତ ହୋଇଅଛି, ସେହି ସାକ୍ଷାତ୍ ଜ୍ଞାନସ୍ୱରୂପୀ ପରଂବ୍ରହ୍ମଙ୍କୁ ନମସ୍କାର କରୁଅଛି ।

ଯେପରି ପୂର୍ଣ୍ଣନିରତିଶୟାନନ୍ଦମହୋଦଧିଠାରୁ ଆନନ୍ଦ-ଜଳକଣା ଆକାଶ ଓ ପୃଥିବୀରେ, ଅର୍ଥାତ୍ ବ୍ରହ୍ମଲୋକାବଧି ସ୍ୱର୍ଗଲୋକରେ ଓ ମନୁଷ୍ୟାଦି ସ୍ତମ୍ବ ପର୍ଯ୍ୟନ୍ତ ଜୀବଲୋକରେ ଉଚ୍ଚାବଚରୂପରେ ପ୍ରକାଶ ପାଉ ଅଛନ୍ତି ଓ ଯାହାଙ୍କ ଆନନ୍ଦକଣା ଜୀବର ଜୀବନ, ସେହି ଆନନ୍ଦସ୍ୱରୂପ ପରଂବ୍ରହ୍ମଙ୍କୁ ନମସ୍କାର ।

"ସଂହୃତି ସ୍ଥିତି-ସମ୍ଭୂତିଭେଦୈର୍ଯୋଽନେକଧା ସ୍ଥିତଃ ।
ଏକୋଽପି ସନ୍ନମସ୍ତସ୍ମୈ ସଚ୍ଚିଦାନନ୍ଦମୂର୍ତ୍ତୟେ ॥"

ଯୋଗ ବା: ନି: ୧୨୭ । ୭୨ ।

ଯେ ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା, ଏକ ଓ ଅଦ୍ୱିତୀୟ ହେଲେ ମଧ୍ୟ ଯେ ବହୁଧା ରୂପରେ ସ୍ଥିତ, ଆମ୍ଭେ ସେହି ସଚ୍ଚିଦାନନ୍ଦମୂର୍ତ୍ତି ପରଂବ୍ରହ୍ମଙ୍କୁ ନମସ୍କାର କରୁଅଛୁ ।

"ଯସ୍ମିନ୍ ସର୍ବଂ ଯତଃ ସର୍ବଂ ଯଃ ସର୍ବଂ ସର୍ବତଶ୍ଚ ଯଃ ।
ଯଶ୍ଚ ସର୍ବମୟୋ ନିତ୍ୟଂ ତସ୍ମୈ ସର୍ବାତ୍ମନେ ନମଃ ॥"

ଯୋଗବା. ନି: ୩୨ । ୧୮ ।

ହେ ମୁନିବର ! ଯାହାଙ୍କ ମଧ୍ୟମାରେ ଏହି ବିଶ୍ୱ ଧୃତ ହୋଇଅଛି, ଯାହାଙ୍କଠାରୁ ଏହି ବିଶ୍ୱ ଜାତ ହୋଇଅଛି ବା ହେଉଅଛି ଓ ଯେ ନିର୍ବିଶେଷରୂପରେ ସର୍ବବ୍ୟାପକ ହୋଇ ବିଦ୍ୟମାନ ଅଛନ୍ତି, ସେହି ସର୍ବାତ୍ମା ପରଂବ୍ରହ୍ମଙ୍କୁ ନମସ୍କାର କରୁଅଛୁଁ ।

"ଚୈତନ୍ୟସର୍ବଗଂ ସର୍ବଂ ସର୍ବଭୂତଗୁହାଶୟମ୍ ।
ଯତ୍ ସର୍ବବିଷୟାତୀତଂ ତସ୍ମୈ ସର୍ବବିଦେ ନମଃ ॥"

ଉପଦେଶସାହସ୍ରୀ ଉତ୍ତରାର୍ଦ୍ଧ । ୧ ।

ଯେ ସର୍ବବ୍ୟାପୀ, ସମସ୍ତ ବସ୍ତୁର ଉପାଦାନ କାରଣ, ସକଳ ପ୍ରାଣୀଙ୍କର ବୁଦ୍ଧିରୂପ ଗୁହାରେ ଅବସ୍ଥିତ ଏବଂ ଯେ ବିଷୟମାନଙ୍କଠାରୁ ଅତୀତ, ଜ୍ଞାନସ୍ୱରୂପ, ସେହି ସର୍ବଜ୍ଞ ବ୍ରହ୍ମଙ୍କୁ ନମସ୍କାର କରୁଅଛୁଁ ।

"ଆତ୍ମା ଜ୍ଞେୟଃ ପରେ ହ୍ୟାତ୍ମା ଯସ୍ମାଦନ୍ୟନ୍ନ ବିଦ୍ୟତେ ।
ସର୍ବଜ୍ଞଃ ସର୍ବଦୃକ୍ ଶୁଦ୍ଧସ୍ତସ୍ମୈ ଜ୍ଞେୟାତ୍ମନେ ନମଃ ॥"

ଉପଦେଶସାହସ୍ରୀ—ଉ: ୧୨-୧ ।

ଆତ୍ମା ଜ୍ଞାତବ୍ୟ, କାରଣ ଓ ଜ୍ଞେୟତ୍ୱାଦି ଧର୍ମ ରହିତ; କାରଣ ଆତ୍ମା-ଭିନ୍ନ ଅନ୍ୟ କୌଣସି ବସ୍ତୁ ନାହିଁ । ସେହି ଜ୍ଞେୟ ପରମାତ୍ମା ସର୍ବଜ୍ଞ, ସର୍ବଦର୍ଶୀ ଓ ଶୁଦ୍ଧ—ଅତଏବ ତାହାଙ୍କ ଉଦ୍ଦେଶ୍ୟରେ ନମସ୍କାର କରୁଅଛୁଁ ।

"ଜ୍ଞାନଂ ଜ୍ଞେୟଂ ତଥା ଜ୍ଞାତା ଯସ୍ମାଦନ୍ୟନ୍ନ ବିଦ୍ୟତେ ।
ସର୍ବଜ୍ଞଃ ସର୍ବଶକ୍ତି ର୍ଯସ୍ତସ୍ମୈ ଜ୍ଞାନାତ୍ମନେ ନମଃ ॥

ଉପଦେଶ ସାହସ୍ରୀ ଉ: ୧୨ । ୮

ଯାହାଙ୍କଠାରୁ ଅନ୍ୟ ଜ୍ଞାନ, ଜ୍ଞେୟ ବା ଜ୍ଞାତା କେହି ନାହିଁ, ସେ ସର୍ବଜ୍ଞ ଓ ସର୍ବ ଶକ୍ତିମାନ୍, ସଚ୍ଚିଦାନନ୍ଦସ୍ୱରୂପ—ଅତଏବ ସେହି ବ୍ରହ୍ମଙ୍କୁ ନମସ୍କାର ।

ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କ ବିଶ୍ୱାତ୍ମରୂପକୁ ଲକ୍ଷ୍ୟ କରି ଅର୍ଜୁନ ତାହାଙ୍କଠାରେ ଶରଣ ପଶି ଏହିପରି କହିଅଛନ୍ତି—

"ତ୍ୱମାଦିଦେବଃ ପୁରୁଷଃ ପୁରାଣସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ବେତ୍ତାସି ବେଦ୍ୟଞ୍ଚ ପରଞ୍ଚ ଧାମ ତ୍ୱୟା ତତଂ ବିଶ୍ୱମନନ୍ତରୂପମ୍ ॥
ବାୟୁର୍ଯମୋଽଗ୍ନିର୍ବରୁଣଃ ଶଶାଙ୍କଃ ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।
ନମୋନମସ୍ତେଽସ୍ତୁ ସହସ୍ରକୃତ୍ୱଃ ପୁନଶ୍ଚ ଭୂୟୋଽପି ନମୋନମସ୍ତେ ॥"

ଗୀତା—୧୧ । ୩୮ । ୩୯ ।

ହେ ଅନନ୍ତରୂପ ! ତୁମ୍ଭେ ଦେବଗଣଙ୍କର ଆଦି; କାରଣ ତୁମ୍ଭେ ଅନାଦି ପୁରୁଷ । ତୁମ୍ଭେ ଈଶ୍ୱର, ଲୟ ସ୍ଥାନ ଏବଂ ଜ୍ଞାତା, ଜ୍ଞାତବ୍ୟ ଓ ପରମଧାମ; ତୁମ୍ଭେ ବିଶ୍ୱରେ ବ୍ୟାପି କରି ରହିଅଛ । ତୁମ୍ଭେ ବାୟୁ, ଯମ, ଅଗ୍ନି, ବରୁଣ, ଶଶାଙ୍କ, ପ୍ରଜାପତି ଏବଂ ପ୍ରପିତାମହ; ତୁମ୍ଭଙ୍କୁ ସହସ୍ରବାର ନମସ୍କାର, ବାରମ୍ବାର ସହସ୍ରବାର ନମସ୍କାର ।

ଏହିପରି ଅର୍ଜୁନ ଯେ କେବଳ ବାକ୍ୟରେ ନମସ୍କାର କରି ନିବୃତ୍ତ ହେଲେ, ସେତିକି ନୁହେଁ, ଭୂମିଷ୍ଠ ହୋଇ ସାଷ୍ଟାଙ୍ଗ ପ୍ରଣାମ କରି କହୁ ଅଛନ୍ତି—

"ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ
ପ୍ରସାଦୟେ ତ୍ୱାମହମୀଶମୀଡ଼୍ୟମ୍ ।
ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ
ପ୍ରିୟଃ ପ୍ରିୟାୟାର୍ହସିଦେବ ସୋଢ଼ୁମ୍ ॥"

ଗୀତା—୧୧ । ୪୪ ।

ହେ ଦେବ ! ଅତଏବ ମୁଁ ଭୂମିରେ ସାଷ୍ଟାଙ୍ଗ ପ୍ରଣାମ କରି ସ୍ତୁତି କରୁଅଛି । ହେ ଈଶ୍ୱର ! ତୁମ୍ଭେ ମୋ ପ୍ରତି ଅନୁଗ୍ରହ କରି ମୋର ଅପରାଧ କ୍ଷମା କର । ପିତା ପୁତ୍ରର, ସଖା ମିତ୍ରର ଓ ପ୍ରିୟବ୍ୟକ୍ତି ଯେପରି ନିଜ ପ୍ରିୟବ୍ୟକ୍ତିର ଅପରାଧ କ୍ଷମା କରେ, ସେପରି ମୋ ପ୍ରତି ସଦୟ ହୁଅନ୍ତୁ । *

* ଗୀତାରେ ଯେଉଁ ପ୍ରଣାମ ବା ନମସ୍କାରବିଧାନ ବର୍ଣ୍ଣିତ ହୋଇଛି, ତାହା ଶରୀର ଓ ଇନ୍ଦ୍ରିୟ-ଯୁକ୍ତ ନାମରୂପାତ୍ମକ ଉପାଧିଯୁକ୍ତ ଆତ୍ମା ପ୍ରତି ନୁହେଁ; ନିରୂପାଧିକ ବିଶ୍ୱାତ୍ମା ପରଂବ୍ରହ୍ମ-ପରମାତ୍ମାଙ୍କ ଲକ୍ଷ୍ୟରେ ସେହି ନମସ୍କାର ବାରମ୍ବାର କଥିତ ହୋଇଛି । ଅଚେତନ ସାକାର-ମୂର୍ତ୍ତିରେ ଏହି ନମସ୍କାର କଦାପି ପ୍ରଯୁକ୍ତ ହୋଇ ନ ପାରେ ।

ଠ—ସାଷ୍ଟାଙ୍ଗ ପ୍ରଣାମବିଧି—

"ପଦ୍‌ଭ୍ୟାଂ କରାଭ୍ୟାଂ ଜାନୁଭ୍ୟାମୁରସା ଶିରସା ତଥା ।
ମନସା ବଚସା ଦୃଷ୍ଟ୍ୟା ପ୍ରଣାମୋଽଷ୍ଟାଙ୍ଗ ଉଚ୍ୟତେ ॥"

ସ୍କନ୍ଦ, ବିଷ୍ଣୁ ଖଣ୍ଡ—୧୦ ।

ପାଦଦ୍ୱୟ, କରଦ୍ୱୟ, ଜାନୁଦ୍ୱୟ, ବକ୍ଷ, ମସ୍ତକ, ମନ, ବାକ୍ୟ ଓ ଦୃଷ୍ଟି—ଏହି ଅଙ୍ଗମାନଙ୍କଦ୍ୱାରା ଯେଉଁ ପ୍ରଣାମ ହୁଏ, ତାହାକୁ ଅଷ୍ଟାଙ୍ଗ-ପ୍ରଣାମ କୁହାଯାଏ ।

ଆହୁରି ମଧ୍ୟ—

"ଦଣ୍ଡବତ୍ ପ୍ରଣିପତ୍ୟାଥ ଗଣ୍ଡାଭ୍ୟାଂ ଚବୁକେନ ଚ ।
ନାସୟା ଚ କପୋଲାଭ୍ୟାଂ ମନସା ବଚସା ତଥା ॥
ଅଷ୍ଟାଙ୍ଗକଃ ପ୍ରଣାମୋଽୟଂ ବ୍ରହ୍ମପ୍ରୀତପ୍ରଦାୟକଃ ॥"

ଶଙ୍କର ଗ୍ରନ୍ଥାବଳୀ ।

ଦଣ୍ଡବତ୍ ପ୍ରଣିପାତ ହୋଇ ଗଣ୍ଡଦ୍ୱୟ, ଚିବୁକ, ନାସା, କପୋଳ, ମନ ଓ ବାକ୍ୟଦ୍ୱାରା ଯେଉଁ ପ୍ରଣାମ ହୁଏ, ତାହାକୁ ଅଷ୍ଟାଙ୍ଗ-ପ୍ରଣାମ କହନ୍ତି । ଏହାଦ୍ୱାରା ପ୍ରଭୁ ପରମାତ୍ମା ପ୍ରୀତ ହୁଅନ୍ତି ।

"ପ୍ରଣମେଦ୍ ଦଣ୍ଡବଦ୍‌ଭୂମୌ ସପ୍ତ ଯଃ ପରମାତ୍ମନେ ।
ପାତକଂ ତଚ୍ଛରୀରସ୍ଥଂ ଭସ୍ମୀଭବତ ତତ୍‌କ୍ଷଣାତ୍ ॥"

ପଦ୍ମପୁରାଣ ୬ । ୧୦ । ୨୫ ।

ଯେଉଁ ବ୍ୟକ୍ତି ପରମାତ୍ମାଙ୍କୁ ସପ୍ତବାର ଭୂମିରେ ଦଣ୍ଡବତ୍ ପ୍ରଣାମ କରେ, ତାହାଙ୍କର ଶରୀରସ୍ଥ ପାତକ ଭସ୍ମୀଭୂତ ହୁଏ ।

ଠ—ପ୍ରଭୁଙ୍କ ପାଦରେଣୁର ମାହାତ୍ମ୍ୟ—

ସେହି ପ୍ରଭୁ ପରଂବ୍ରହ୍ମଙ୍କଠାରେ ଭକ୍ତି ଓ ବିନୟ ପ୍ରାର୍ଥନା ସହ ସାଷ୍ଟାଙ୍ଗପ୍ରଣାମ ଓ ଶରଣପ୍ରାପ୍ତିର ବିବରଣ ଉପର୍ଯ୍ୟୁକ୍ତ ଶ୍ରୁତିସ୍ମୃତି ଅନୁସାରେ ନିର୍ଣ୍ଣୀତ ହେଲା । ବର୍ତ୍ତମାନ ସେହି ପରଂବ୍ରହ୍ମଙ୍କଠାରେ ଶରଣପ୍ରାପ୍ତି ସମୟରେ ମସ୍ତକ ଲଗିବା ସ୍ଥାନରୁ ରେଣୁ ଗ୍ରହଣର ବିବରଣ ନିମ୍ନପ୍ରକାରେ ବର୍ଣ୍ଣିତ ହେଉଅଛି—

"ଯାବଦ୍‌ଭୀ ରେଣୁଭିର୍ନୃଣାଂ ଭୂଷିତଂ ସ୍ୟାତ୍ କଳେବରମ୍ ।
ତାବତ୍ କଳ୍ପସହସ୍ରାଣି ତଷ୍ଠନ୍ତି ବିଷ୍ଣୁସନ୍ନିଧୌ ॥"

ପଦ୍ମପୁରାଣ କ୍ରିୟା ୧୦ । ୧୨୮ ।

ବ୍ୟାସ କହିଅଛନ୍ତି—ଯେଉଁ ବ୍ୟକ୍ତି ପ୍ରଭୁ-ପାଦପଦ୍ମ-ରେଣୁ ସର୍ବାଙ୍ଗରେ ବିଭୂଷିତ ହୋଇଥାଏ, ସେ ସହସ୍ରକଳ୍ପ ପର୍ଯ୍ୟନ୍ତ ପରମାତ୍ମାଙ୍କ ସନ୍ନିଧାନରେ ଅବସ୍ଥାନ କରେ ।

ଆହୁରି ମଧ୍ୟ—

"ରେଣୁଗୁଣ୍ଠିତଗାତ୍ରସ୍ୟ ଯାବନ୍ତୋଽସ୍ୟ ରଜଃକଣାଃ
ତାବତ୍ ସହସ୍ରବର୍ଷାଣି ବ୍ରହ୍ମଲୋକେ ମହୀୟତେ ॥"

ସ୍କନ୍ଦପୁରାଣ । ରେବା ୧୫୭ ।

ଯେଉଁ ଲୋକ ସର୍ବପାପହରଣକାରୀ ବିଭୁଙ୍କ ଚରଣସରୋଜ-ରେଣୁଦ୍ୱାରା ସ୍ୱଦେହ ଆବୃତ କରି ମସ୍ତକରେ ଧାରଣ କରେ, ସେ ସେହି ରେଣୁପରିମାଣରେ ସହସ୍ର ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଲୋକରେ ବାସ କରେ ।

ସମସ୍ତ ବିଶ୍ୱର ଆତ୍ମା ପରଂବ୍ରହ୍ମ ବିଭୁ ସର୍ବତ୍ର ବିଦ୍ୟମାନ, ସେହି ହେତୁରୁ ସେହି ପରଂବ୍ରହ୍ମଙ୍କ ଅଭୟପଦରେ ଯେଉଁ ସ୍ଥାନରେ ଦୃଢ଼ଭକ୍ତି ସହ ମସ୍ତକ ଲୁଣ୍ଠିତ ହେବ, ସେହି ସ୍ଥାନର ଧୂଳିକଣା ଅତୀବ ପବିତ୍ର, ଏହାକୁ ପ୍ରଭୁପଦରଜ ବୋଲାଯାଏ । ଏହି ଅଭୟ ପଦରେଣୁ ଭକ୍ତର ସର୍ବାଙ୍ଗ ପବିତ୍ର କରେ ଏବଂ ଭବଭୟ-ବ୍ୟାଧିର ଏହା ମହୌଷଧିସ୍ୱରୂପ । ବିଶୁଦ୍ଧାତ୍ମଜ୍ଞମାନେ ଏହି ଧାରଣାରୁ ତିଳେମାତ୍ର ବିଚଳିତ ହେବେ ନାହିଁ ।

**ଠ—ପ୍ରଭୁପାଦ ସର୍ବତ୍ର ଦେଦୀପ୍ୟମାନ, ଶ୍ରୁତି ମହାନିର୍ଘୋଷରେ ଏହାର ସତ୍ୟତା ପ୍ରମାଣିତ କରିଛି । ଯଥା—**

"ସର୍ବତଃ ପାଣିପାଦଂ ତତ୍ ସର୍ବତୋଽକ୍ଷିଶିରୋମୁଖମ୍ ।
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥"

ଶ୍ୱେତାଶ୍ୱେତର—୩-୧୬ ଓ ଗୀତା—୧୩-୧୩ ।

ସର୍ବତ୍ର ସେହି ପରମାତ୍ମାଙ୍କ ହସ୍ତ ପ୍ରସାରିତ ଅଛି, ସକଳ ସ୍ଥାନରେ ତାହାଙ୍କର ପାଦ ବିଦ୍ୟମାନ ଏବଂ ସର୍ବ ପ୍ରଦେଶରେ ଓ ସର୍ବଦା ଜଗଦୀଶ୍ୱରଙ୍କର ଚକ୍ଷୁ, ମସ୍ତକ ଓ ମୁଖ ବିଦ୍ୟମାନ ଅଛି । ସେ ଅନନ୍ତ ବ୍ରହ୍ମାଣ୍ଡ ଆବରଣ କରି ରହି ଅଛନ୍ତି । ଏହି ଜଗତରେ ସେ

ନ ଥିବା—ଏପରି କୌଣସି ସ୍ଥାନ ନାହିଁ । ତାହାଙ୍କର କର୍ଣ୍ଣ ସର୍ବତ୍ର ବିଦ୍ୟମାନ, ଯେଉଁ ସ୍ଥାନରେ ଯାହା କିଛି କୁହାଯାଏ, ସମୁଦାୟ ସେ ଶୁଣି ପାରନ୍ତି; ଯେ ଯାହାକିଛି କରେ ସେ ସବୁ ଜାଣିପାରନ୍ତି । ତାହାଙ୍କର ଅଗୋଚର କିଛି ନାହିଁ ।

ଉପନିଷଦ୍‌ରେ ପରମାତ୍ମାଙ୍କର ବିଶ୍ୱରୂପ ବର୍ଣ୍ଣିତ ହୋଇ ପୃଥିବୀ ତାହାଙ୍କର ପାଦପୀଠ ବୋଲି ପ୍ରତିପାଦିତ ହୋଇଛି—

"ଅଗ୍ନିର୍ମୂର୍ଦ୍ଧା ଚକ୍ଷୁଷୀ ଚନ୍ଦ୍ରସୂର୍ଯ୍ୟୌ
ଦିଶଃ ଶ୍ରୋତ୍ରେ ବାଗ୍‌ବିବୃତାଶ୍ଚ ବେଦାଃ ।
ବାୟୁଃ ପ୍ରାଣୋ ହୃଦୟଂ ବିଶ୍ୱମସ୍ୟ
ପଦ୍‌ଭ୍ୟାଂ ପୃଥିବୀ ହ୍ୟେଷ ସର୍ବଭୂତାନ୍ତରାତ୍ମା ॥' ମୁଣ୍ଡକ ଉ : ୨ । ୪ ।

ଅର୍ଥାତ୍ ଏହି ପରମାତ୍ମାଙ୍କର ସ୍ୱର୍ଗଲୋକ ମସ୍ତକସ୍ୱରୂପ, ଚନ୍ଦ୍ର ଓ ସୂର୍ଯ୍ୟ ଚକ୍ଷୁସ୍ୱରୂପ, ସକଳ ଦିଗ ଶ୍ରବଣେନ୍ଦ୍ରିୟସ୍ଥାନୀୟ, ପ୍ରସିଦ୍ଧ ବେଦସମୂହ ବାକ୍ୟସ୍ୱରୂପ, ବାୟୁ ପ୍ରାଣ ସ୍ୱରୂପ ଏବଂ ସକଳ ଜଗତ୍ ତାହାଙ୍କର ଅନ୍ତଃକରଣସ୍ୱରୂପ । ପୃଥିବୀ ଏହାଙ୍କର ପାଦରୁ ଉତ୍ପନ୍ନ, ଅତଏବ ଏହା ପାଦସ୍ୱରୂପ; ସେ ଏହି ସମସ୍ତ ଭୂତମାନଙ୍କର ଅନ୍ତରାତ୍ମା ।

ଉପର୍ଯ୍ୟୁକ୍ତ ଶ୍ରୁତିବାକ୍ୟମାନଙ୍କରୁ ଏହା ପ୍ରତିପନ୍ନ ହୁଏ ଯେ, ପୃଥିବୀ ପରମାତ୍ମାଙ୍କର ପାଦସ୍ୱରୂପ । ପୁନଶ୍ଚ ଏ ସମ୍ବନ୍ଧରେ ଛାନ୍ଦୋଗ୍ୟଶ୍ରୁତିରେ ଅଗ୍ନି ସତ୍ୟକାମଙ୍କୁ ଉପଦେଶ ଦେଇଅଛନ୍ତି—

"ବ୍ରହ୍ମଣଃ ସୋମ୍ୟ ତେ ପାଦଂ ବ୍ରବାଣୀତ ବ୍ରବୀତୁ ମେ ଭଗବାନିତ ତସ୍ମୈ ହୋବାଚ ପୃଥିବୀ......"　　ଛାନ୍ଦୋଗ୍ୟ ୪ । ୬ । ୩ ।

ବତ୍ସ ! ଆମ୍ଭେ ତୁମ୍ଭଙ୍କୁ ପରମାତ୍ମାଙ୍କର ପାଦ ବିଷୟରେ ଉପଦେଶ ଦେବାକୁ ଇଚ୍ଛା କରୁଁ । 'ଦେବ, ମତେ କହନ୍ତୁ' ବୋଲି ଶିଷ୍ୟ କହିବାରୁ ଅଗ୍ନି କହିଲେ—ଏହି ଜୀବଧାରୀ ପୃଥିବୀ କେବଳ ପରମାତ୍ମାଙ୍କର ପାଦ ଅଟେ ।

ଏହିପରି ପରମାତ୍ମାଙ୍କର ବିରାଟ ସ୍ୱରୂପକୁ ଲକ୍ଷ୍ୟ କରି ଯୋଗବାଶିଷ୍ଠରେ ମଧ୍ୟ ବର୍ଣ୍ଣିତ ଅଛି—

"ତସ୍ୟାଗ୍ନିରାସ୍ୟଂ ଦ୍ୟୌର୍ମୂର୍ଦ୍ଧା ଖଂ ନାଭିଶ୍ଚରଣୌକ୍ଷିତଃ ।
ଚନ୍ଦ୍ରାର୍କୌ ଦୃଗ୍‌ଦିଶୌ ଶ୍ରୋତ୍ରେ କଳ୍ପନେତି ବିଜୃମ୍ଭିତା ॥"

ଯୋଗ ବା : ନି : ୧୭୩ । ୨୯ ।

ଅର୍ଥାତ୍ ମୁଖ ତାଙ୍କର ଅଗ୍ନି, ମୂର୍ଦ୍ଧା ସ୍ୱର୍ଗ, ନାଭି ଆକାଶ, ପାଦଦ୍ୱୟ ପୃଥିବୀ, ନୟନଦ୍ୱୟ ଚନ୍ଦ୍ର ଓ ସୂର୍ଯ୍ୟ ଏବଂ ପୂର୍ବ ପଶ୍ଚିମ ଉଭୟ ଦିଗ ତାହାଙ୍କର କର୍ଣ୍ଣଦ୍ୱୟ । ଏହିପରି ମାନସିକ କଳ୍ପନା ଅନୁସାରେ ବିରାଟ-ରୂପରେ ସେହି ପରମାତ୍ମା ବିଜୃମ୍ଭିତ ବା ମହାନ୍ ସ୍ୱରୂପରେ ବିଦ୍ୟମାନ ।

ଏହିପରି ପରମାତ୍ମାଙ୍କ ବିଶ୍ୱରୂପ ବର୍ଣ୍ଣନ ଅବସରରେ ପୃଥିବୀ ପାଦପୀଠ ଭାବରେ ଉପନିଷଦ୍‌ର ସ୍ଥାନେ ସ୍ଥାନେ ବର୍ଣ୍ଣିତ ହୋଇଛି । ବସ୍ତୁତଃ ପରମାତ୍ମା "ଅପାଣିପାଦୋ ଜବନ-ଗ୍ରହୀତଃ", "ଅରୂପମନିର୍ଦ୍ଦେଶ୍ୟଂ ଅଚିନ୍ତ୍ୟରୂପଂ"—ଏହାହିଁ ପ୍ରକୃତରେ ସେହି ଅଭୟ ପାଦର ସ୍ୱରୂପ । ସେହି ଅଭୟ ପାଦ ସ୍ମରଣରେ ମସ୍ତକ ଭୂମିରେ ଲୁଣ୍ଠିତ ହେଲେ "ଅଭୟପଦଶରଣ" ବୋଲି ଅଭିହିତ ହୁଏ ।

## ଠ—ପୂର୍ବ ଓ ପଶ୍ଚିମାଭିମୁଖ ହୋଇ ଶରଣ-ଦର୍ଶନ ବିଚାରଣ ଏହିପରି—

ପ୍ରାତଃକାଳରେ ପୂର୍ବାଭିମୁଖ ହୋଇ ଓ ସାୟଂକାଳରେ ପଶ୍ଚିମାଭିମୁଖ ହୋଇ ଯେଉଁ ଶରଣଦର୍ଶନ କରିଯାଏ, ତାହା ଆକାଶମଣ୍ଡଳର ଊର୍ଦ୍ଧ୍ୱଦେଶକୁ ଲକ୍ଷ୍ୟ କରି ସେହି ଅଦ୍ୱିତୀୟ ମହାଚିନ୍ମୟାକାଶସ୍ୱରୂପ ପରଂବ୍ରହ୍ମଙ୍କ କେବଳ ଶରଣଦର୍ଶନ ବୋଲି ଜ୍ଞାତ ହୁଅ । କୌଣସି ଦିଗର ଅଧିପତି ବା କୌଣସି ବିରାଟ ଗ୍ରହମଣ୍ଡଳଙ୍କ ଲକ୍ଷ୍ୟରେ ତାହା କରିଯାଏ ନାହିଁ । ଶ୍ରୁତିମାନଙ୍କରେ ପୂର୍ବ ପଶ୍ଚିମ ଆଦି ଦିଗକୁ ପରମାତ୍ମାଙ୍କର ମୁଖସ୍ୱରୂପ ଓ କୌଣସି ସ୍ଥାନରେ ପାଦସ୍ୱରୂପ କଳ୍ପନା କରିଯାଇଛି ।

**"ବ୍ରହ୍ମଣସ୍ତେ ପାଦଂ ବ୍ରବାଣୀତ ବ୍ରବୀତୁ ମେ ଭଗବାନିତ ତସ୍ମୈ ହୋବାଚ ପ୍ରାଚୀ ଦିକ୍‌କଳା ପ୍ରତୀଚୀ ଦିକ୍‌କଳା ଦକ୍ଷିଣା ଦିକ୍‌କଳୋଦୀଚୀ ଦିକ୍‌କଳୈଷ ବୈ ସୋମ୍ୟ ଚତୁଷ୍କଳଃ ପାଦୋ ବ୍ରହ୍ମଣଃ ପ୍ରକାଶବାନ୍ନାମ ॥**

ଛାନ୍ଦୋଗ୍ୟ—୪ । ୫ । ୨ ।

ସତ୍ୟକାମ କହିଲେ—ଅଗ୍ନିଦେବ ! ଆପଣ ମୋତେ ଉପଦେଶ ପ୍ରଦାନ କରନ୍ତୁ । ଏହାପରେ ଅଗ୍ନି ତାହାଙ୍କୁ କହିଲେ—"ଏହି ପୂର୍ବ ଦିଗ ସେହି ଚତୁଷ୍ପାଦବିଶିଷ୍ଟ ପରମାତ୍ମାଙ୍କର ଗୋଟିଏ ପାଦର ଗୋଟିଏ କେବଳ କଳା । ଏହିପରି ପଶ୍ଚିମ, ଦକ୍ଷିଣ ଓ ଉତ୍ତର—ଏହି ତିନିଗୋଟି ଦିଗ ମଧ୍ୟ ସେହି ପାଦର ଅନ୍ୟ ତିନିଗୋଟି କଳା । ବତ୍ସ, ସତ୍ୟକାମ । ସର୍ବଶୁଦ୍ଧ ଏହି ଚାରିଗୋଟି କଳା ବା ଅଂଶ ବ୍ରହ୍ମଙ୍କର ପ୍ରକାଶବାନ୍ ନାମକ ଗୋଟିଏ ପାଦମାତ୍ର ।

ଅନ୍ୟ ଶ୍ରୁତିରେ ବ୍ରହ୍ମ ସର୍ବ ଦିଗବିଦିଗରେ ପରିପୂର୍ଣ୍ଣଭାବେ ବିଦ୍ୟମାନ ବୋଲି ବର୍ଣ୍ଣିତ ହୋଇଛି ଯଥା—

"ଏଷ ହ୍ଲ ଦେବଃ ପ୍ରତଶୋଽନୁସର୍ବା।" ନାରାୟଣୋପନିଷଦ୍ । ଅ ୧ । ୧୩ ।

ଅର୍ଥାତ୍ ସ୍ୱପ୍ରକାଶ ପରମାତ୍ମା ପୂର୍ବାଦି ପ୍ରଧାନ ଦିଗସମୂହରେ ଓ ଆଗ୍ନେୟାଦି ଅପର ଦିଗସମୂହରେ ପ୍ରବେଶ କରି ଅବସ୍ଥାନ କରିଅଛନ୍ତି ।

"ବ୍ରହ୍ମୈବେଦମମୃତଂ ପୁରସ୍ତାଦ୍ ବ୍ରହ୍ମ ପଶ୍ଚାଦ୍ ବ୍ରହ୍ମ ଦକ୍ଷିଣତ-ଶ୍ଚୋତ୍ତରେଣ । ଅଧଶ୍ଚୋର୍ଦ୍ଧ୍ୱଞ୍ଚ ପ୍ରସୃତଂ ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠମ୍ ।।" ମୁଣ୍ଡକ ଉ: ୨ । ଖ ୨ । ୧୧ ।

"ବ୍ରହ୍ମୈବେଦମମୃତଂ ତତ୍ ପୁରସ୍ତାଦ୍ ବ୍ରହ୍ମାନନ୍ଦଂ ପରମଂ ଚୈବ ପଶ୍ଚାତ୍ ବ୍ରହ୍ମାନନ୍ଦଂ ପରମଂ ଦକ୍ଷିଣେ ଚ ବ୍ରହ୍ମାନନ୍ଦଂ ପରମଂ ଚୋତ୍ତରଞ୍ଚ ।।"
ପାଶୁପତ ବ୍ରହ୍ମୋପନିଷଦ—୩୦ ।

ଅର୍ଥାତ୍ ଏହି ଅମୃତସ୍ୱରୂପୀ ବ୍ରହ୍ମ ହିଁ ଅଗ୍ର, ପଶ୍ଚାତ୍, ଦକ୍ଷିଣ, ଉତ୍ତର, ଅଧଃ ଏବଂ ଊର୍ଦ୍ଧ୍ୱ ଭାଗରେ ଅବସ୍ଥିତ ରହିଅଛନ୍ତି । ଆଉ ଅଧିକ କ'ଣ କହିବା, ଏହି ସମସ୍ତ ଜଗତ୍ ବ୍ରହ୍ମମୟ—ଏ ବିଷୟରେ ଉଭୟ ଶ୍ରୁତି ଏକାର୍ଥବୋଧକ ।

ଉପର୍ଯ୍ୟୁକ୍ତ ଶ୍ରୁତିରୁ ପ୍ରତିପନ୍ନ ହେଲା ଯେ, ବ୍ରହ୍ମ ସର୍ବତ୍ର ପରିପୂର୍ଣ୍ଣରୂପରେ ବିରାଜମାନ ହୋଇଅଛନ୍ତି । ତେବେ ଦିଗ୍‌ବିଶେଷରେ ବ୍ରହ୍ମଙ୍କୁ କାହିଁକି ଉପାସନା କରାଯିବ ନାହିଁ—ଏହି ଶଙ୍କାର ନିରାକରଣସ୍ୱରୂପ କୁହାଯାଏ ଯେ, ବ୍ରହ୍ମ ସର୍ବତ୍ର ପରିପୂର୍ଣ୍ଣ ସତ; କିନ୍ତୁ ଦିଗମାନଙ୍କର ସ୍ୱତନ୍ତ୍ରତା କିଛି ନାହିଁ; କେବଳ କାର୍ଯ୍ୟର ବିଭିନ୍ନ ଉଦ୍ଦେଶ୍ୟ ନେଇ ବିଭିନ୍ନ ଦିଗ କଳ୍ପିତ ହୋଇଛି । ଅତଏବ ଉଭୟ କାଳର ବ୍ରାହ୍ମମୁହୂର୍ତ୍ତ ସମୟରେ ଯଥାକ୍ରମେ ପୂର୍ବ ପଶ୍ଚିମାଭିମୁଖ ହୋଇ ଏକ ପ୍ରଭୁ ପରମାତ୍ମାଙ୍କ ଲକ୍ଷ୍ୟରେ ଶରଣଦର୍ଶନ କରିବାକୁ ହେବ—ଏହା ଗୁରୁ ମହିମାସ୍ୱାମୀଙ୍କ ଆଦେଶ ।

୦—ପୂର୍ବପଶ୍ଚିମ ଦିଗ ନିର୍ଣ୍ଣୟ—

"ଦୂରାନ୍ତକାଦଧୀ ହେତୁରେକା ନିତ୍ୟା ଦିଗୁଚ୍ୟତେ ।
ଉପାଧିଭେଦାଦେକାପି ପ୍ରାଚ୍ୟାଦିବ୍ୟପଦେଶଭାକ୍ ।।" * ଭାଷାପରିଚ୍ଛେଦ—୩୦ ।

* ଦିଶଂ ନିରୂପୟତି—ଦୂରାନ୍ତିକେତି । ଦୂରତ୍ୱଂ ଅନ୍ତିକତ୍ୱଂ ଚ ଦୈଶିକଂ ପରତ୍ୱମପରତ୍ୱଂ ବୋଧ୍ୟମ୍ । ତଦ୍ ବୁଦ୍ଧେରସାଧାରଣଂ ବୀଜଂ ଦିଗେବ । ଦୈଶିକପରତ୍ୱାପରତ୍ୱୟୋରସମବାୟି କାରଣ—

ଦିଗ ଦୂର ଓ ନିକଟ—ଏହି ବୁଦ୍ଧିର ଅସାଧାରଣ କାରଣ ଏକ ଓ ନିତ୍ୟ; କିନ୍ତୁ ଉପାଧିଭେଦରେ ପୂର୍ବ ବା ପଶ୍ଚିମଭେଦରେ ଦିଗ ବ୍ୟବହୃତ ହୁଏ ।

"ପ୍ରାଚ୍ୟାଦିବ୍ୟବହାରହେତୁର୍ଦିକ୍ । ସା ଚୈକା ନିତ୍ୟା ବିଭ୍ୱୀ ଚ ॥"

ତର୍କସଂଗ୍ରହ—୧୭ ।

ଯେ ପ୍ରାଚୀ, ପ୍ରତୀଚୀପ୍ରଭୃତି ବ୍ୟବହାରର ହେତୁ ତାହାକୁ ଦିଗ କୁହାଯାଏ । ଉକ୍ତ ଦିକ୍ ଏକମାତ୍ର, ନାନା ନୁହେଁ । କେବଳ ଉଦୟାଚଳାଦି *ଉପାଧିଭେଦରେ ଏହାର ଭେଦ ବ୍ୟବହାର ହୋଇଥାଏ । ଏହା ବିଭୁ ଏବଂ ନିତ୍ୟ । ଭାସ୍କରାଚାର୍ଯ୍ୟଙ୍କର ଗୋଳାଧ୍ୟାୟରେ ବର୍ଣ୍ଣିତ ଅଛି—

"କପିତ୍ଥଫଳବଦ୍ ବିଶ୍ୱଂ ଦକ୍ଷିଣୋତ୍ତରୟୋଃ ସମମ୍ ।
ଚଳା ପୃଥ୍ୱୀ ସ୍ଥିରାଽପ୍ୟେତ ଭୂଗୋଳୋ ବ୍ୟୋମ୍ନି ତିଷ୍ଠତି ॥"

ଗୋଳାଧ୍ୟାୟ (ଭାସ୍କରାଚାର୍ଯ୍ୟ)

ଦିଗ୍ ମଧ୍ୟ କାର୍ଯ୍ୟ ପ୍ରତି ନିମିତ୍ତ କାରଣ । ଏହି ହେତୁରୁ କଠ ଶ୍ରୁତିରେ ବର୍ଣ୍ଣିତ ଅଛି—

"ଯତଶ୍ଚୋଦେତି ସୂର୍ଯ୍ୟୋଽସ୍ତଂ ଯତ୍ର ଚ ଗଚ୍ଛତି ।
ତଂ ଦେବାଃ ସର୍ବେ ଅର୍ପିତାସ୍ତଦୁ ନାତ୍ୟେତି କଶ୍ଚନ ॥
ଏତଦ୍ ବୈ ତତ୍ ॥"

କଠ—୨ । ୧ । ୯ ।

ଯେଉଁ ପ୍ରାଣସ୍ୱରୂପ ଆତ୍ମାରୁ ସୂର୍ଯ୍ୟ ଉଦିତ ହୁଅନ୍ତି, ପୁନଶ୍ଚ ଯେ ପ୍ରାଣସ୍ୱରୂପ ଆତ୍ମାରେ ଅସ୍ତ ହୁଅନ୍ତି, ସେହି ଆତ୍ମାରେ ସକଳ ଦେବଗଣ ସଂପ୍ରବିଷ୍ଟ ହୋଇଛନ୍ତି । କେହି ତାହାଙ୍କୁ ଅତିକ୍ରମ କରି ପାରନ୍ତି ନାହିଁ ଅର୍ଥାତ୍ କେହି ଏହି ଆତ୍ମାଽତିରିକ୍ତ ନୁହନ୍ତି । ଏହାକୁ ପ୍ରକୃତ ବ୍ରହ୍ମ ବୋଲି ଜ୍ଞାତ ହେବ ।

**ଠ—କାୟମନୋବାକ୍ୟ ଏକାଗ୍ର ଚିତ୍ତରେ ପ୍ରାତଃସାୟଂ ବ୍ରାହ୍ମମୁହୂର୍ତ୍ତିରେ ଶରଣଦର୍ଶନର ନିୟମ—**

* ସଂଯୋଗାଶ୍ରୟୋ ଲଘବାତ୍ ଏକା ଦିକ୍ ସିଦ୍ଧ୍ୟତି ଭାବଃ । ନନୁ ଏକୈବ ଦିଗ୍ ଯଦି, ତର୍ହି ପ୍ରାଚୀପ୍ରତୀଚ୍ୟାଦିବ୍ୟବହାରଃ କଥମୁପପଦ୍ୟତାମତ ଆହ—ଉପାଧୀତି । ଯତ୍ ପୁରୁଷସ୍ୟ ଉଦୟଗିରିସନ୍ନିହିତା ଯା ଦିକ୍ ସା ତତ୍ପୁରୁଷସ୍ୟ ପ୍ରାଚୀ, ଏବମୁଦୟଗିରିସନ୍ନିହିତା ପ୍ରତୀଚୀ, ଏବଂ ଯତ୍ ପୁରୁଷସ୍ୟ ସୁମେରୁସନ୍ନିହିତା ଯା ଦିକ୍ ସା ତସ୍ୟ ଉଦୀଚୀ; ତଦ୍ବ୍ୟବହିତାଵାଚୀ, ସର୍ବେଷାମେବ ବର୍ଣ୍ଣାଣାଂ ସୁମେରୁରୁତ୍ତରତଃ ସ୍ଥିତଃ—ଇତି ନିୟମାତ୍ ॥

ନିମ୍ନୋକ୍ତରୂପେ ଉଦୟାସ୍ତ ବ୍ରାହ୍ମମୁହୂର୍ତ୍ତି ହିଁ ବ୍ରହ୍ମ ସ୍ମରଣ ଦର୍ଶନର ପ୍ରକୃଷ୍ଟ ସମୟ ବୋଲି ନିର୍ଦ୍ଦେଶିତ ହୋଇଅଛି—

"ତସ୍ମାଦହୋରାତ୍ରସ୍ୟ ସଂଯୋଗେ ବ୍ରାହ୍ମଣଃ ସନ୍ଧ୍ୟାମୁପାସୀତ ।
ଉଦ୍ୟନ୍ତମସ୍ତଂ ଯାନ୍ତଂ ଆଦିତ୍ୟମଭି ଧ୍ୟାୟନ୍ ।।"

ଷଡ୍‌ବିଂଶବ୍ରାହ୍ମଣଃ—ପ୍ର ୪ । ଖ ୫

ଦିବା-ରାତ୍ରିର ସନ୍ଧି ସମୟରେ, ଅର୍ଥାତ୍ ସୂର୍ଯ୍ୟୋଦୟ ପୂର୍ବ ପ୍ରାତଃକାଳରେ ଓ ସୂର୍ଯ୍ୟାସ୍ତକାଳରେ ବ୍ରହ୍ମଜ୍ଞ ବ୍ୟକ୍ତିମାନେ ପରମାତ୍ମାଙ୍କ ଉପାସନା କରିବା ବିଧେୟ ।

"ଦିନାନ୍ତସନ୍ଧ୍ୟାଂ ସୂର୍ଯ୍ୟେଣ ପୂର୍ବାମୃକ୍ଷୈର୍ୟୁତାଂ ବୁଧଃ ।
ଉପତିଷ୍ଠେଦ୍ ଯଥାନ୍ୟାୟଂ ସମ୍ୟଗାଚମ୍ୟ ପାର୍ଥିବଃ ।।"

ବିଷ୍ଣୁ ପୁରାଣ—୩ । ୧୧ । ୯୭ ।

ନକ୍ଷତ୍ର ଥାଉଁ ଥାଉଁ ପ୍ରାତଃ ସନ୍ଧ୍ୟା ଓ ସୂର୍ଯ୍ୟ ଅର୍ଦ୍ଧ ଅସ୍ତମିତ ହେଲେ ସାୟଂସନ୍ଧ୍ୟା ଆରମ୍ଭ କରିବ ଏବଂ ସନ୍ଧ୍ୟୋପାସନା ସମୟରେ ଯଥାବିଧି ଆଚମନ କରିବ ।

"ଦ୍ୱୌ ଦଣ୍ଡୌ ରାତ୍ରିଶେଷସ୍ତୁ ବ୍ରାହ୍ମମୁହୂର୍ତ୍ତିକଂ ବଦୁଃ ।।"　ଦକ୍ଷଶ୍ରୁତି ।

ରାତ୍ରିର ଶେଷ ଦୁଇଦଣ୍ଡ ଥିବା ସମୟକୁ ବ୍ରାହ୍ମମୁହୂର୍ତ୍ତି ବୋଲାଯାଏ, ସେହିପରି ସୂର୍ଯ୍ୟାସ୍ତ ପୂର୍ବ ଦୁଇଦଣ୍ଡ ସମୟକୁ ମଧ୍ୟ ବ୍ରାହ୍ମମୁହୂର୍ତ୍ତି ବୋଲାଯାଏ ।

ଏହିପରି—

"ପ୍ରବିଶ୍ୟ ରଜନୀପାଦଂ ବ୍ରହ୍ମ ଧ୍ୟାନଂ ସମାଚରେତ୍ ।
ଇତି ସ୍ମୃତୌ ଯଥାବସ୍ତୁ ବିଷୟଧ୍ୟାନମବଗମ୍ୟତେ—ଇତି ।।"

ଖ ୪ ବିବରଣପ୍ରମେୟସଂଗ୍ରହ ।

ରାତ୍ରିର ପ୍ରଥମଭାଗ-ପ୍ରବେଶ ସମୟରେ ବ୍ରାହ୍ମଧ୍ୟାନ କରିବ । ଏହିପରି ସ୍ମୃତି ବାକ୍ୟରେ ଯଥାଭୂତବସ୍ତୁବିଷୟକ ଜ୍ଞାନର ମଧ୍ୟ ଧ୍ୟାନ ହୁଏ । ଏହା କେବଳ ପ୍ରତିପାଦିତ ହୋଇଅଛି ।

ଶରୀରଧାରୀ ଜୀବମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ମଧ୍ୟରେ ମସ୍ତକ ଯେପରି ଶ୍ରେଷ୍ଠ, ସେହିପରି ସମୟମଧ୍ୟରେ ବ୍ରାହ୍ମମୁହୂର୍ତ୍ତି ଶୀର୍ଷସ୍ଥାନୀୟ ବୋଲି ଅଭିହିତ । ଏହିହେତୁରୁ ବୃହଦାରଣ୍ୟକ ଶ୍ରୁତିର ଆରମ୍ଭରେ "ଉଷା ବା" (ବୃହ :—୧-୧-୧) ଅର୍ଥାତ୍ ଉଷା ବା ପ୍ରତ୍ୟୁଷ ସମୟକୁ ବ୍ରାହ୍ମମୁହୂର୍ତ୍ତି ବୋଲି କୁହାଯାଇଛି । ଏହି କାଳ ସର୍ବଜନ ଓ ସର୍ବଲୋକ-

ପ୍ରସିଦ୍ଧ, ଏହା ଶ୍ରୁତିସ୍ଥ "ବୈ" ଶବ୍ଦଦ୍ୱାରା ପ୍ରତିପାଦିତ ହୋଇଅଛି । ଅହୋରାତ୍ରର ତ୍ରିଂଶନ୍ମୁହୂର୍ତ୍ତ ମଧ୍ୟରେ ବ୍ରାହ୍ମମୁହୂର୍ତ୍ତ ଅତୀବ ପବିତ୍ର ଓ ପ୍ରଶସ୍ତ ସମୟ । *

ଏ ବିଷୟରେ ବେଦରେ ବର୍ଣ୍ଣିତ ଅଛି—

**"ପ୍ରାତର୍ଭଗଂ ପୂଷଣଂ ବ୍ରହ୍ମଣସ୍ପତିମ୍ × × × ହବାମହେ ।।"**

ଅଥର୍ବ—୩।୧୬।୧। ଓ ଯଜୁଃ—୩୪।୩୪ ଋକ୍—୭।୪୧।୧ ।।

**ଅର୍ଥ**—ପ୍ରଭାତସମୟ (ବ୍ରାହ୍ମ ମୁହୂର୍ତ୍ତ ସମୟ) ରେ ଏକମାତ୍ର ଭଜନଯୋଗ୍ୟ, ସର୍ବଲୋକପୋଷକ, ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ସ୍ୱାମୀ ପ୍ରଭୁ ପରଂବ୍ରହ୍ମ ପରମାତ୍ମାଙ୍କୁ ଆମ୍ଭେ ଉପାସନା କରୁଁ ।

**"ପ୍ରାତର୍ଜିତଂ ଭଗମୁଗ୍ରଂ ହବାମହେ ବୟଂ ପୁତ୍ରମଦିତେର୍ଯୋ ବିଧର୍ତ୍ତା ।।"**

ଅଥର୍ବ—୩।୧୬।୨। ଯଜୁଃ—୩୪।୩୫ ଋକ୍—୭।୪୧।୨।

ଅର୍ଥାତ୍ ଯେଉଁ ପରମାତ୍ମା ଅଖଣ୍ଡ ଶକ୍ତିରେ ଅଖଣ୍ଡ ବ୍ରହ୍ମାଣ୍ଡକୁ ବିବିଧପ୍ରକାରରେ ଧାରଣ କରିଅଛନ୍ତି, ସେହି ସମସ୍ତଙ୍କର ବିଜେତା ଓ ସର୍ବୋତ୍କୃଷ୍ଟ, ସମସ୍ତଙ୍କର ଭଜନଯୋଗ୍ୟ, ଐଶ୍ୱର୍ଯ୍ୟଶୀଳ, ଦୁଷ୍ଟର ଦଣ୍ଡ ବିଧାନକର୍ତ୍ତା ଏବଂ ଯେ ସୂର୍ଯ୍ୟଙ୍କୁ ସୃଷ୍ଟି କରି ପାରନ୍ତି, ସେହି ସର୍ବଶକ୍ତିମାନ୍ ପରମାତ୍ମାଙ୍କୁ ପ୍ରାତଃକାଳର (ଅର୍ଥାତ୍ ରାତ୍ରିର ଶେଷ ଯାମର) ସେହି ବ୍ରାହ୍ମମୁହୂର୍ତ୍ତରେ ଆମ୍ଭେ ଭକ୍ତି ସହିତ ଉପାସନା କରୁଅଛୁ ।

## ଠ—ଆକାଶର ଊର୍ଦ୍ଧ୍ୱଦେଶରେ ପରଂବ୍ରହ୍ମଙ୍କୁ ଲକ୍ଷ୍ୟ କରି ଶରଣଦର୍ଶନ ବିଧି—

ଶ୍ରୀମତ୍ ଗୁରୁ ମହାମହିମା ସ୍ୱାମୀଙ୍କ ଆଦେଶ ଅନୁସାରେ—ସମସ୍ତ ଦୃଶ୍ୟ ଜଗତରୁ ଅତୀତ ଅଦୃଶ୍ୟ ଆକାଶର ଊର୍ଦ୍ଧ୍ୱଦେଶ, ଯାହାକି ମହାଶୂନ୍ୟ ଓ ଚିଦାକାଶ, ସେଥିରେ ଅଲେଖପରଂବ୍ରହ୍ମଙ୍କୁ ଲକ୍ଷ୍ୟ କରି ଶରଣଦର୍ଶନ କରିବାକୁ ହେବ । ସକଳ ବେଦ ଓ ବେଦାନ୍ତଶାସ୍ତ୍ରର ପର୍ଯ୍ୟାଲୋଚନା ଦ୍ୱାରା ମଧ୍ୟ ତାହାହିଁ ପ୍ରତିପନ୍ନ ହୁଏ । ପରଂବ୍ରହ୍ମ ପରମାତ୍ମା ସର୍ବବ୍ୟାପୀ, ଅଥଚ ବିଶୁଦ୍ଧ ନିର୍ଗୁଣସ୍ୱରୂପରେ ଆକାଶଦେଶର ଊର୍ଦ୍ଧ୍ୱରେ ବିରାଜିତ । ବେଦାନ୍ତଦର୍ଶନରେ ମଧ୍ୟ ଏହା କେବଳ ଚରମ ସିଦ୍ଧାନ୍ତ ବୋଲି ଜଣାଯାଏ । ଛାନ୍ଦୋଗ୍ୟ ଶ୍ରୁତିରେ ଅଛି—

* ଯେପରି ବସନ୍ତ ଓ ବର୍ଷାଆଦି ଋତୁ ସମୟରେ ବୀଜ ଓ ବୃକ୍ଷ ଅଙ୍କୁରିତ ଓ କୁସୁମିତ ହୋଇ ଫଳଦାୟକ ହୋଇଥାଏ, ସେହିପରି ବ୍ରାହ୍ମମୁହୂର୍ତ୍ତସମୟରେ ବ୍ରହ୍ମ ଉପାସନା କରିବା ମୋକ୍ଷଦାୟକ ବୋଲି ବୁଝିବ ।

"ମନୋ ବ୍ରହ୍ମେତ୍ୟୁପାସୀତେତ୍ୟଧ୍ୟାତ୍ମମଥାଧିଦୈବତମାକାଶୋ ବ୍ରହ୍ମେତ୍ୟୁଭୟମାଦିଷ୍ଟଂ ଭବତ୍ୟଧ୍ୟାତ୍ମଂ ଚାଧିଦୈବତଂ ଚ ।" ଛା: ୩ଖ ୧୮।୧

ଅନ୍ତର୍ଲୋକମଧ୍ୟରେ ମନ ଓ ବହିର୍ଲୋକମଧ୍ୟରେ ଆକାଶ ଅତି ସୂକ୍ଷ୍ମ । ସେହି ହେତୁରୁ ଏହି ଦୁହିଁଙ୍କୁ ବ୍ରହ୍ମ ମନେକରି ଉପାସନା କରିବ । ଏହି ଦୁହିଁଙ୍କ ମଧ୍ୟରୁ ପ୍ରଥମକୁ ଅଧ୍ୟାତ୍ମ ଓ ଦ୍ୱିତୀୟକୁ ଅଧିଦୈବ କୁହାଯାଏ । ଏହିପରି ଛାନ୍ଦୋଗ୍ୟ ଶ୍ରୁତିର ସ୍ଥାନେ ସ୍ଥାନେ ବହିରାକାଶ ଓ ଅନ୍ତରାକାଶ ଏବଂ ହୃଦୟାକାଶକୁ ବ୍ରହ୍ମରୂପରେ ଉପାସନା କରିବାର ନିର୍ଦ୍ଦେଶ ଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ ଅଧ୍ୟାତ୍ମମନଃ, ହୃଦୟାକାଶ ଓ ଅଧିଦୈବ ଆକାଶକୁ ବ୍ରହ୍ମ ମନେକରି ଉପାସନା କରିବା ଅର୍ଥ—ସେହି ସେହି ସ୍ଥାନରେ କେବଳ ବ୍ରହ୍ମଙ୍କ ଅବସ୍ଥିତିକୁ ଲକ୍ଷ୍ୟ କରି ଉପାସନା କରିବା ।

"ଦ୍ୱେ ବାବ ଖଲ୍ୱେତେ ବ୍ରହ୍ମଜ୍ୟୋତଷୋ ରୂପକେ ଶାନ୍ତମେକଂ ସମୃଦ୍ଧଂ ଚୈକମଥ ଯଚ୍ଛାନ୍ତଂ ତସ୍ୟାଽଧାରଂ ଖମଥ ଯତ୍ ସମୃଦ୍ଧମିଦଂ ତସ୍ୟାନ୍ନମ୍ ।"　　　　।। ମୈତ୍ରୀ ଉ—ଅ ୪ କ ୩୬।।

ବକ୍ଷ୍ୟମାଣ ଦୁଇଟି ଚିହ୍ନଦ୍ୱାରା ବ୍ରହ୍ମଜ୍ୟୋତି ଅବଗତ ହେବାକୁ ହୁଏ—ଗୋଟିଏ ଶାନ୍ତ ଏବଂ ଅପରଟି ସମୃଦ୍ଧ । ତାହା ମଧ୍ୟରେ ଯେ ଶାନ୍ତ, ତାହାର ଆଶ୍ରୟ ଆକାଶ [ଅର୍ଥାତ୍ ଆକାଶରେ ବ୍ୟାପିକରି ଅବସ୍ଥିତ ଅଖଣ୍ଡ ପ୍ରକାଶ କେବଳ ଅଭୋକ୍ତା ପରମାତ୍ମାଙ୍କର ସ୍ୱରୂପ-ଜ୍ଞାପକ ଓ ସେ ଶାନ୍ତରୂପକ] । ଆଉ ସମୃଦ୍ଧର ଆଧାର ଅନ୍ନ [ଅନ୍ନରେ ଭୋକ୍ତୃସ୍ୱରୂପରେ ଅବସ୍ଥିତ ବ୍ରହ୍ମଜ୍ୟୋତି ସେହି ଈଶ୍ୱରତତ୍ତ୍ୱଜ୍ଞାପକ ବା ଭୋକ୍ତା ଜୀବ] ।

"ତ ଦେତ ଦୃଚ୍ଭ୍ୟୁକ୍ତମ୍ । ତଦ୍‌ବିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ । ଦିବୀବ ଚକ୍ଷୁରାତତମ୍ ।"

ମୁକ୍ତିକଉ : ୨ । ୭୨ । ସ୍କନ୍ଦୋପ : ୧୪ । ଋକ୍—୧-୨୨-୨୦ ।।

ବେଦରେ କଥିତ ହୋଇଅଛି ଯେ, ଏହି ପୂର୍ବୋକ୍ତ ବିଷ୍ଣୁଙ୍କ ପରମପଦ ✻ ଆକାଶରେ ବିସ୍ତୃତ ଚକ୍ଷୁ ତୁଲ୍ୟ ପରମାତ୍ମାଙ୍କୁ ସର୍ବଦା ପଣ୍ଡିତମାନେ ଅବଲୋକନ କରନ୍ତି ।

---

✻ "ତଦ୍‌ବିପ୍ରାସୋ ବିପନ୍ୟବୋ ଜାଗୃବାଂସଃ ସମିନ୍ଧତେ ।
ବିଷ୍ଣୋର୍ଯତ୍ ପରମଂ ପଦମିତ୍ୟେତନ୍ନିର୍ବାଣାନୁଶାସନମିତି
ବେଦାନୁଶାସନମିତି ବେଦାନୁଶାସନମିତି ଉପନିଷତ୍ ।"
ଋକ୍—୧-୨୩-୨୧ । ସ୍କନ୍ଦୋପନିଷତ୍ ୧୫ ।

"ସ ହୋବାଚ ଯଦୂର୍ଦ୍ଧ୍ୱଂ ଗାର୍ଗି ଦିବୋ ଯଦବାକ୍ ପୃଥିବ୍ୟା ଯଦନ୍ତରା ଦ୍ୟାବାପୃଥିବୀ ଇମେ ଯଦ୍‌ଭୂତଂ ଚ ଭବଚ୍ଚ ଭବିଷ୍ୟଚ୍ଚେ ତ୍ୟାଚକ୍ଷତ ଆକାଶେ ତଦୋତଞ୍ଚ ପ୍ରୋତଂ ଚେତ ॥ ବୃହଦାରଣ୍ୟକ—ଅ ୩ । ବ୍ରା: ୮ । ୪ ॥

ଯାଜ୍ଞବଲ୍‌କ୍ୟ ଗାର୍ଗୀଙ୍କର ସକଳ କଥା ଶୁଣି କହୁଅଛନ୍ତି—ଯେଉଁ ଆତ୍ମା ଦ୍ୟୁଲୋକର ଉପରିଭାଗରେ, ପୃଥିବୀର ନିମ୍ନଭାଗରେ ଏବଂ ଦ୍ୟୁଲୋକ ଓ ପୃଥିବୀର ମଧ୍ୟଭାଗରେ ଅବସ୍ଥିତ, ପଣ୍ଡିତମାନେ ଯାହାଙ୍କୁ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ—ଏପରି ତିନିକାଳର ନିର୍ଦ୍ଦେଶ କରିଛନ୍ତି, ସେହି ଆତ୍ମା ଆକାଶରେ ଓତପ୍ରୋତଭାବରେ ଜଡ଼ିତ ହୋଇ ଅବସ୍ଥିତ ଅଛନ୍ତି ।

ଏଠାରେ ଆକାଶ ବ୍ରହ୍ମଙ୍କର କେବଳ ନାମାନ୍ତର—

ଆକାଶସ୍ତଲ୍ଲିଙ୍ଗାତ୍ ।, ବ୍ର: ସୂ: ୧।୧।୨୨ ।

ଆକାଶଶବ୍ଦର ଅର୍ଥ ସାଧାରଣ ଆକାଶ ନୁହେଁ, କିନ୍ତୁ ବ୍ରହ୍ମ, "ତଲ୍ଲିଙ୍ଗାତ୍" ବ୍ରହ୍ମ ସ୍ୱୟଂ ପ୍ରକାଶିତ ହୁଅନ୍ତି ଏବଂ ଜଗତରେ ଯାବତୀୟ ବସ୍ତୁ ପ୍ରକାଶ କରନ୍ତି । ସେହି ହେତୁରୁ ତାହାଙ୍କୁ ଆକାଶ ଶବ୍ଦଦ୍ୱାରା ନିର୍ଦ୍ଦେଶ କରାଯାଇଛି । "ଖଂ ବ୍ରହ୍ମ" ଆକାଶ ବ୍ରହ୍ମ (ଛାନ୍ଦୋଗ୍ୟ ୪ । ୧୦ । ୫) । "ଆକାଶତେ ଆକାଶୟତି ଚ ଇତି ଆକାଶଃ"—ଯେ "ଆ" ଅର୍ଥାତ୍ ସମ୍ୟଗ୍‌ଭାବରେ "କାଶତେ" ପ୍ରକାଶିତ ହୁଅନ୍ତି ଅଥବା "କାଶୟତି"—ଅପରକୁ ପ୍ରକାଶିତ କରନ୍ତି, ସେହି "ଆକାଶ" । ପୁନଶ୍ଚ—

"ସର୍ବାଣି ହବା ଇମାନି ଭୂତାନି ଆକାଶାଦେବ ସମୁତ୍ପଦ୍ୟନ୍ତେ, ଆକାଶଂ ପ୍ରତ୍ୟସ୍ତଂ ଯାନ୍ତି ।" ॥ ଛାନ୍ଦୋଗ୍ୟ ॥

ଏହି "ଆକାଶ"ଠାରୁ ପୃଥିବୀ, ଜଳ, ଅଗ୍ନି, ବାୟୁ, ଆକାଶ—ଏହି ପଞ୍ଚ ମହାଭୂତ ଏବଂ ପଞ୍ଚମହାଭୂତର କାର୍ଯ୍ୟସମୂହ ଉତ୍ପନ୍ନ ହୁଅନ୍ତି ଏବଂ ସେହି ଆକାଶରେ କେବଳ ଅସ୍ତ ହୁଅନ୍ତି । ପୁନଶ୍ଚ—

ଆକାଶୋଽର୍ଥାନ୍ତରତ୍ୱାଦବ୍ୟପଦେଶାତ୍ । ବେ: ସୂ: ୧ । ୩ । ୪୧ ॥

---

ସଂସାର ବ୍ୟବହାରଶୂନ୍ୟ, ନିଷ୍କାମ ଓ ସର୍ବଦା ଜାଗରଣଶୀଳ, ଅର୍ଥାତ୍ ଅପ୍ରମିତ ବ୍ରହ୍ମଜ୍ଞଙ୍କଣେ ବିଷ୍ଣୁଙ୍କର ସେହି ପରମପଦ-ପରମାତ୍ମାଙ୍କୁ ଉପାସନା କରନ୍ତି । ଏହାହିଁ ମୋକ୍ଷ-ଜନକ ଉପଦେଶ ଓ ଏହା କେବଳ ବେଦର ଅନୁଶାସନ । ଇତି ଉପନିଷଦ୍ ॥

ଅର୍ଥାତ୍ "ଆକାଶ" ଶବ୍ଦ ବ୍ରହ୍ମଙ୍କୁ ବୁଝାଉଅଛି । କାରଣ "ଅର୍ଥାନ୍ତର" ପ୍ରଭୃତିର "ବ୍ୟପଦେଶ" ଅର୍ଥାତ୍ ଉଲ୍ଲେଖ ଅଛି । ଛାନ୍ଦୋଗ୍ୟଶ୍ରୁତି—

**"ଆକାଶୋ ହ ବୈ ନାମରୂପୟୋର୍ନିର୍ବହିତା ତେଷାଂ ଯଦନ୍ତରା ତଦ୍ବ୍ରହ୍ମ ତଦମୃତଂ ସ ଆତ୍ମା ।।"**

ଆକାଶ ନାମ ଓ ରୂପ ନିଷ୍ପାଦନ କରୁଅଛି । ଆକାଶପ୍ରଭୃତି ନାମରୂପ ଯାହାଙ୍କ ମଧ୍ୟରେ ଅବସ୍ଥିତ, ସେହି କେବଳ ବ୍ରହ୍ମ, ତାହା ହିଁ ଅମୃତ, ତାହା କେବଳ ଆତ୍ମା । ଏହା ଯାଜ୍ଞବଲ୍କ୍ୟ ଗାର୍ଗୀଙ୍କୁ ଉପଦେଶଚ୍ଛଳରେ କହିଛନ୍ତି । ଯଥା—

**"ଏତସ୍ମିନ୍ନୁ ଖଲ୍ୱକ୍ଷରେ ଗାର୍ଗ୍ୟାକାଶ ଓତଶ୍ଚ ପ୍ରୋତଶ୍ଚେତି ।"**

ବୃହଦାରଣ୍ୟକ—୩ । ୮ । ୧୧ ।

ହେ ଗାର୍ଗି ! ସେହି ଅଦୃଶ, ଅଶ୍ରୁତ, ଅମୃତ, ଅବଜ୍ଞାତ ପରମ ଅକ୍ଷର ବ୍ରହ୍ମଙ୍କଠାରେ ଆକାଶ ଓତପ୍ରୋତଭାବରେ ଜଡ଼ିତ ହୋଇ ରହିଅଛି ।

**"ଏକଧୈବାନୁଦ୍ରଷ୍ଟବ୍ୟମେତଦପ୍ରମେୟଂ ଧ୍ରୁବମ୍ । ବିରଜଃ ପରଃ ଆକାଶାଦଜ ଆତ୍ମା ମହାନ ଧ୍ରୁବଃ ।"**　　ବୃ: ୪ । ୪ । ୨୦ ।

ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଧ୍ୟାନଦ୍ୱାରା ଓ ନିଜ ଅନୁଭୂତିରେ ପ୍ରତ୍ୟକ୍ଷ ହୁଅନ୍ତି । ସେହି ପରମାତ୍ମା ଅପ୍ରମେୟ ଓ ନିଶ୍ଚଳ ଅଟନ୍ତି । ସେହି ଅଜ ଅବ୍ୟୟ ପରମାତ୍ମା ଆକାଶର ଊର୍ଦ୍ଧ୍ୱଦେଶରେ ଓ ଆକାଶଠାରୁ ଶ୍ରେଷ୍ଠ, ସୂକ୍ଷ୍ମ ଓ ସର୍ବବ୍ୟାପକଭାବରେ ତ୍ରିକାଳରେ ଏକରୂପରେ ବିରାଜମାନ ଅଛନ୍ତି । *

ଆହୁରି ମଧ୍ୟ—

**"ଋଚୋ ଅକ୍ଷରେ ପରମେ ବ୍ୟୋମନ୍,**
**ଯସ୍ମିନ୍ ଦେବା ଅଧି ବିଶ୍ୱେ ନିଷେଦୁଃ ।**

* ଏତଦ୍ ବ୍ରହ୍ମପଦଂ ଦିବ୍ୟଂ ପରମଂ ବ୍ୟୋମ୍ନି ଭାସ୍ୱରମ୍ । ବାୟୁପୁ. ୧୦୧ । ୯୧ ।
ଅର୍ଥାତ୍ ଏହି ଦିବ୍ୟ ସ୍ୱପ୍ରକାଶ ପରଂବ୍ରହ୍ମପଦ ବ୍ୟୋମମଣ୍ଡଳରେ ବିରାଜମାନ ।

"ଯସ୍ତନ୍ନ ବେଦ କମୃଚା କରିଷ୍ୟତି,
ଯ ଇତ୍ତଦ୍ୱିଦୁସ୍ତ ଇମେ ସମାସତେ ॥"
ଋକ୍‌ସଂ—୧-୧୬୪ । ୩୯ "ଶ୍ୱେତାଶ୍ୱ—୪ । ୮ ।"

ଆକାଶଠାରୁ ଶ୍ରେଷ୍ଠ ସର୍ବବ୍ୟାପୀ ବେଦଶୟପ୍ରତିପାଦ୍ୟ ପରଂବ୍ରହ୍ମଙ୍କୁ ଆଶ୍ରୟ କରି ଦେବଗଣ ସ୍ୱ ସ୍ୱ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ଯେଉଁ ବ୍ୟକ୍ତି ସେହି ପରମାତ୍ମାଙ୍କୁ ନ ଜାଣେ, ସେ ଋକ, ଅର୍ଥାତ୍ ବୈଦିକ ମନ୍ତ୍ରଦ୍ୱାରା କ'ଣ କରିବ ? ବ୍ରହ୍ମଜ୍ଞାନର ଅଧିକାରୀ ବ୍ୟକ୍ତିପକ୍ଷରେ ମନ୍ତ୍ର ତନ୍ତ୍ର କିଛି କାର୍ଯ୍ୟକାରୀ ହୁଏ ନାହିଁ; ଆଉ ଯେଉଁମାନେ ସେହି ପରମାତ୍ମାଙ୍କୁ ଜାଣିପାରନ୍ତି, ସେହିମାନେ ହିଁ କୃତକାର୍ଯ୍ୟ ହୋଇ ଆତ୍ମସ୍ୱରୂପରେ ଅବସ୍ଥିତ ରହନ୍ତି ।

ଚିତ୍—ପରଂବ୍ରହ୍ମ ପରମାତ୍ମା ଚିଦାକାଶ ଓ ଭୂତାକାଶରୁ ଅତୀତ ହେଲେ ମଧ୍ୟ ଚିଦାକାଶସ୍ୱରୂପରେ ଅବସ୍ଥିତ—

"ଅସ୍ତ୍ୟନସ୍ତମିତୋ ଭାସ୍ୱାନଜୋ ଦେବୋ ନିରାମୟଃ ।
ସର୍ବଦା ସର୍ବକୃତ୍ ସର୍ବଃ ପରମାତ୍ମେତ୍ୟୁଦାହୃତଃ ॥
ଯତୋ ବାଚୋ ନିବର୍ତ୍ତନ୍ତେ ଯୋ ମୁକ୍ତୈରବଗମ୍ୟତେ ।
ଯସ୍ୟ ଚାତ୍ମାଦିକାଃ ସଂଜ୍ଞାଃ କଳ୍ପିତା ନ ସ୍ୱଭାବତଃ ॥
ଚିତ୍ତାକାଶଂ ଚିଦାକାଶମାକାଶଂ ଚ ତୃତୀୟକମ୍ ।
ଦ୍ୱାଭ୍ୟାଂ ଶୂନ୍ୟତରଂ ବିଦ୍ଧି ଚିଦାକାଶଂ ମହାମୁନେ ॥
ଦେଶାଦ୍ଦେଶାନ୍ତରପ୍ରାପ୍ତୌ ସଂବିଦୋ ମଧ୍ୟମେବ ଯତ୍ ।
ନିମେଷେଣ ଚିଦାକାଶଂ ତଦ୍‌ବିଦ୍ଧି ମୁନିପୁଂଗବ ॥
ମହୋପନିଷଦ୍—୪ । ୫୬ । ୫୯ ।

**ଅର୍ଥ**—ଯାହାଙ୍କର ଅସ୍ତ ହୁଏ ନାହିଁ ଏବଂ ଯେ ତେଜଃସ୍ୱରୂପ, ଜନ୍ମରହିତ ନିର୍ଦ୍ଦୋଷ ଦେବ ସେହି ବ୍ରହ୍ମ ଅଟନ୍ତି । ସେ ସର୍ବଦା ସମସ୍ତ ସୃଷ୍ଟି କରନ୍ତି ଓ ସର୍ବସ୍ୱରୂପରେ ପ୍ରକାଶିତ ହୁଅନ୍ତି । ସେହି କେବଳ ପରମାତ୍ମା ବୋଲି କୀର୍ତ୍ତିତ ହୁଅନ୍ତି । ବାକ୍ୟ ଯାହାଙ୍କୁ ନ ପାଇ ଫେରି ଆସେ ଓ ଯାହା ମୁକ୍ତମାନଙ୍କର ପ୍ରାପ୍ୟ; ଯାହାଙ୍କର ଆତ୍ମା ଆଦି-ସଂଜ୍ଞା କଳ୍ପିତ ସ୍ୱାଭାବିକ ନୁହେଁ । ହେ ମହାମୁନେ ! ଚିତ୍ତାକାଶ, ଚିଦାକାଶ ଏବଂ ତୃତୀୟ ଭୂତାକାଶ ମଧ୍ୟରୁ ଚିଦାକାଶ ଅନ୍ୟ ଦୁଇ ଆକାଶଠାରୁ ଶୂନ୍ୟତରେ, ଅର୍ଥାତ୍ ଚିଦାକାଶରେ ଅପର ଦୁଇଟି ଆକାଶ ଅନ୍ତର୍ଭୁକ୍ତ । ହେ ମୁନିଶ୍ରେଷ୍ଠ ! ନିମେଷମଧ୍ୟରେ ଏକ ଦେଶରୁ ଦେଶାନ୍ତର ଯେ ପ୍ରାପ୍ତ ହୁଏ ଓ ସ୍ୱପ୍ରକାଶ ଜ୍ଞାନର ଯେ ମଧ୍ୟାବସ୍ଥା, ତାହାକୁ ଚିଦାକାଶ କୁହାଯାଏ ।

ଯୋଗବାଶିଷ୍ଠରେ ମଧ୍ୟ ବିଶ୍ୱବ୍ରହ୍ମାଣ୍ଡର ବର୍ଣ୍ଣନା ଏହିପରି ଉଲ୍ଲିଖିତ—

"ପ୍ରକୃତଂ ଶୃଣୁ ହେ ରାମ ! ତଦ୍ ବ୍ରହ୍ମାଣ୍ଡକବାଟକମ୍ ।
ଯତ୍ ପ୍ରମାଣଂ ତତୋ ବାରି ବାହ୍ୟେ ଦଶଗୁଣଂ ସ୍ଥିତମ୍ ॥
ତଦ୍ ବ୍ରହ୍ମାଣ୍ଡକବାଟନ୍ତୁ ତୃଣଂ ତୃଣମଣିର୍ଯଥା ।
ଧତ୍ତେ ବାରି ସ୍ୱଭାବେନ ନତ୍ୟଂ କଳ୍ପକରତ୍ନବତ୍ ॥
ସର୍ବେଷାମେବ ଭାବାନାଂ ସ୍ଥିତଃ କଳ୍ପକରତ୍ନବତ୍ ।
ସର୍ବଦା ପାର୍ଥିବୋ ଭାଗସ୍ତେନାତ୍ରୈତେ ପତନ୍ତ୍ୟଳମ୍ ॥
ଜଳାଦ୍ଦଶଗୁଣଂ ବାହ୍ୟେ ସ୍ଥିତଂ ତେଜୋ ନିରନ୍ଧନମ୍ ।
ଆକାଶବଶଦଂ ଶାନ୍ତସ୍ତବ୍ ଧଜ୍ୱାଲୋଦରୋପମମ୍ ॥
ତସ୍ମାଦ୍ଦଶଗୁଣେ ବାହ୍ୟେ ସଂସ୍ଥିତୋ ବାୟୁରାୟୁତଃ ।
ବାୟୋର୍ଦଶଗୁଣଂ ବାହ୍ୟେ ବ୍ୟୋମ ତଷ୍ଟତ ନିର୍ମଳମ୍ ॥
ତତଃ ପରତରଂ ଶାନ୍ତଂ ବ୍ରହ୍ମାକାଶମନନ୍ତକମ୍ ।
ନ ପ୍ରକାଶଂ ନ ଚ ତମୋ ମହାଶବ୍ଦ ଘନମବ୍ୟୟମ୍ ॥
ଅନାଦମଧ୍ୟପର୍ଯ୍ୟନ୍ତେ ତସ୍ମିନ୍ ବ୍ରହ୍ମମହାମ୍ବରେ ।
ମହାଚନ୍ମାତ୍ମି ସର୍ବାତ୍ମନ୍ୟୟୋନିର୍ବାଣରୂପିଣି ॥
ବ୍ରହ୍ମାଣ୍ଡାନାଂ ତାଦୃଶାନାଂ ଦୂରେ ଦୂରେ ପୁନଃ ପୁନଃ ।
ମିଥୋ ଲକ୍ଷାଣି ଲକ୍ଷାଣି କଚନ୍ତ୍ୟପରମନ୍ତ ଚ ॥
ନ କଣ୍ଠିତ୍ କଚୟନ୍ତ୍ୟନ୍ୟେ ସମେ କଚନରୂପିଣି ।
ତାଦୃଙ୍ମୟଂ ତଥାରୂପଂ ତଦାତ୍ମନ୍ୟେବ ସଂସ୍ଥିତମ୍ ॥"

ଯୋଗବାଶିଷ୍ଠ: ନିର୍ବାଣ ପ୍ର: ଉତ୍ତରାର୍ଦ୍ଧ—ସଂ ୧୨୮ । ୭-୧୫ ।

ହେ ରାମ ! ବର୍ତ୍ତମାନ ପ୍ରକୃତ କଥା ଶୁଣନ୍ତୁ । ପୂର୍ବେ ଏହି ବିଶ୍ୱବ୍ରହ୍ମାଣ୍ଡ ଦୁଇଟି କବାଟରୂପରେ ଯାହା ନିର୍ଣ୍ଣୀତ ହୋଇଛି, ତାହାର ବାହ୍ୟ ଦେଶରେ ଦଶଗୁଣ ଜଳାବରଣ ଅଛି । ନିଜ ଶକ୍ତିଦ୍ୱାରା ଯେପରି ତୃଣମଣି (?) ତୃଣ ଧାରଣ କରିଥାଏ, ଅଥବା ଯେପରି କଳ୍ପ-ବୃକ୍ଷ ଭକ୍ତ ପ୍ରାର୍ଥିତ ରତ୍ନ ଧାରଣ କରେ, ସେପରି ନିଜର ଆକର୍ଷଣୀଶକ୍ତିବଳରେ ଉକ୍ତ ବ୍ରହ୍ମାଣ୍ଡକପାଟ ଜଳରାଶି ଧାରଣ କରିଥାଏ । ଜଳର ନୈସର୍ଗିକ ଆକର୍ଷଣୀଶକ୍ତି ନ ଥିଲେ ମଧ୍ୟ ନିଜେ ପାର୍ଥିବ ପଦାର୍ଥ ହେବା ହେତୁରୁ ମେଘରୁ ଜଳ ଓ କରକା ଆଦି ସମୁଦ୍ରଜଳରେ ପଡ଼େ । ବ୍ରହ୍ମାଣ୍ଡର ଆବରଣ ଜଳରାଶିର ବହିର୍ଦେଶରେ ମଧ୍ୟ ସେହି ପରିମାଣ ଇନ୍ଧନହୀନ

ତେଜୋରାଶି ବିଦ୍ୟମାନ । ତେଜୋରାଶିର ବହିର୍ଭାଗରେ ବିସ୍ତୀର୍ଣ୍ଣ ବାୟୁରାଶି ମଧ୍ୟ ଅବସ୍ଥିତ ଅଛି । ଉକ୍ତ ବାୟୁର ବହିର୍ଭାଗରେ ଦଶଗୁଣ ନିର୍ମଳ ଆକାଶ ବିଦ୍ୟମାନ । ତାହା ଉପରେ ଶାନ୍ତସ୍ୱରୂପ ବ୍ରହ୍ମାକାଶ ବିଦ୍ୟମାନ । ଏହି ଅନନ୍ତ ବ୍ରହ୍ମାକାଶରେ ପ୍ରକାଶ ମଧ୍ୟ ନାହିଁ, ସେଠାରେ ଅନ୍ଧକାର ମଧ୍ୟ ନାହିଁ, ଏହା ମହାଚିଦ୍‌ଘନ ଅବ୍ୟକ୍ତ ପଦାର୍ଥ * । ଏହା ମଧ୍ୟରେ ପୂର୍ବକଥିତ ବ୍ରହ୍ମାଣ୍ଡର ଦୂରରେ ଲକ୍ଷ ଲକ୍ଷ ବ୍ରହ୍ମାଣ୍ଡର ବାରମ୍ବାର ଆବିର୍ଭାବ ଓ ତିରୋଭାବ ହେଉଅଛି । ଏହି ପରମ ଅବ୍ୟକ୍ତ ଚିଦାକାଶର ଆଦି, ମଧ୍ୟ ଓ ଅନ୍ତ ମଧ୍ୟ ନାହିଁ । ଏହା ସର୍ବାତ୍ମସ୍ୱରୂପ, ନୈର୍ଗୁଣ୍ୟସତ୍ତ୍ୱଶ ଶୁଦ୍ଧବିଜ୍ଞାନ ଓ ନିର୍ବାଣ ଓ ମହାଚିଦାଖ୍ୟ । ବ୍ରାହ୍ମମହାକାଶ ପ୍ରକୃତରେ ବିକାରହୀନ, ଏହାଙ୍କଦ୍ୱାରା କୌଣସି ବିକାରବସ୍ତୁ ଜାତ ହୁଏ ନାହିଁ; କିନ୍ତୁ ତାହାଙ୍କ ଆଶ୍ରିତ ଚୈତନ୍ୟ କେବଳ ଅବିଦ୍ୟାକଳ୍ପିତ ଜଗଦ୍‌ରୂପରେ କଳ୍ପିତ ହୁଏ । †

"କ୍ଷଣାତ୍ ଯୋଜନଲକ୍ଷାନ୍ତଂ ପ୍ରାପ୍ତେ ଦେଶାନ୍ତରେ ଚିତ୍ତଃ ।
ଚେତନେ ଯସ୍ୟ ଯଦ୍‌ରୂପଂ ମାର୍ଗମଧ୍ୟେ ନିରଞ୍ଜନମ୍ ॥
ଅସ୍ପନ୍ଦବାତସଦୃଶଂ ଖକୋଶାଦ୍‌ଭିସନ୍ନିଭମ୍ ।
ଅଚେତ୍ୟଂ ଶାନ୍ତମୁଦିତଂ ଲତାବିକସନୋପମମ୍ ॥
ସର୍ବସ୍ୟ ଜନ୍ତୁଜାତସ୍ୟ ତତ୍‌ସ୍ୱଭାବଂ ବିବୁଦ୍ଧିଧୀଃ ।
ସର୍ଗୋପଲମ୍ଭୋ ଲଗତ ତଦ୍‌ବସ୍ତୁସ୍ୟ ବିବେକିନଃ ॥"

ଯୋଗବାଶିଷ୍ଠ-ନି: ଭ: ସ: ୩୯-୧୨-୧୪ ।

---

* ଭକ୍ତ ଭୀମଭୋଇ ମଧ୍ୟ ଲେଖିଛନ୍ତି —
"ଅଭୟପୁର ମଣ୍ଡଳ ନାହିଁ ଅନ୍ଧାର ଉଜ୍ଜ୍ୱଳ । ଅଜପା ଅଲେଖ ବ୍ରହ୍ମ ନାହିଁ ତାଙ୍କ ସ୍ଥିତି ଠୂଳ ।" ଭୀମଭୋଇ ଭଜନମାଳା ।

† ଏତଦ୍‌ପର ଆକାଶମଣ୍ଡଳର ଊର୍ଦ୍ଧ୍ୱରେ ଚିନ୍ମୟପରଂବ୍ରହ୍ମଙ୍କ ପ୍ରକାଶ ବିଷୟ ଦତ୍ତାତ୍ରେୟ ମଧ୍ୟ କହିଅଛନ୍ତି —

"ଚିନ୍ମୟଂ ବ୍ୟାପିତଂ ସର୍ବମାକାଶଂ ଜଗଦୀଶ୍ୱରମ୍ ।
ସଂସ୍ଥିତଂ ସର୍ବଭୂତାନାଂ ଜୀବନ୍ମୁକ୍ତଃ ସ ଉଚ୍ୟତେ ॥
ଊର୍ଦ୍ଧ୍ୱଂଧ୍ୟାନେନ ପଶ୍ୟନ୍ତି ବିଜ୍ଞାନଂ ମନ ଉଚ୍ୟତେ ।
ଶୂନ୍ୟଂ ଲୟଂ ଚ ବିଲୟଂ ଜୀବନ୍ମୁକ୍ତଃ ସ ଉଚ୍ୟତେ ॥"

ଜୀବନ୍ମୁକ୍ତ ଗୀତା—୧୦ ଓ ୧୪ ।

ଅର୍ଥାତ୍ — ଯେଉଁ ଚିନ୍ମୟ ପରଂବ୍ରହ୍ମ ସମସ୍ତ ଆକାଶରେ ପରିବ୍ୟାପ୍ତ ହୋଇ ଅଛନ୍ତି, ତାହାଙ୍କୁ ଯେଉଁମାନେ ଜୀବସମୁଦାୟର ଆତ୍ମା ବୋଲି ଜାଣିପାରନ୍ତି, ସେମାନେ

ବିଜ୍ଞବ୍ୟକ୍ତିମାନେ ଜ୍ଞାନଚକ୍ଷୁ—ଚକ୍ଷୁ ସାହାଯ୍ୟରେ ଅଳ୍ପକାଳ ମଧ୍ୟରେ ଲକ୍ଷଯୋଜନ ଦୂରତାବିଶିଷ୍ଟ ପଥରେ ଯେ ବ୍ରହ୍ମାଣ୍ଡବ୍ୟାପୀ ବ୍ରହ୍ମନିରଞ୍ଜନ ଚୈତନ୍ୟଙ୍କର ସୁବିମଳ ଚିନ୍ମୟସ୍ୱରୂପ ପ୍ରକାଶ ପାଏ, ଯାହାଙ୍କ ଆକାର ନିସ୍ପନ୍ଦପବନସଦୃଶ ଏବଂ ଯାହା ଅନନ୍ତ ଆକାଶ କୋଶ ତୁଲ୍ୟ ବୁଦ୍ଧିର ଅଗମ୍ୟ, ଶାନ୍ତ, ପ୍ରକାଶମୟ ଓ ସର୍ବଜନପ୍ରାର୍ଥିତ, ସେହି କେବଳ ସଦ୍‌ବ୍ରହ୍ମର ସ୍ୱଭାବ ବୋଲି ସ୍ଥିର ହୋଇଅଛି । ଯାହାର ଚିତ୍ତ ବ୍ରହ୍ମନିଷ୍ଠ ହୋଇଥାଏ, ସେପରି ବିବେକୀ ବ୍ୟକ୍ତି-ମାନଙ୍କର ଜଗତ୍ ଭ୍ରମଚ୍ୟୁତ ହୋଇ ନିଃଶେଷ ହୋଇଯାଏ ।

"ପୁରୁଷ ଏବେଦଂ ସର୍ବଂ ଯଦ୍‌ଭୂତଂ ଯଚ୍ଚଭବ୍ୟମ୍ ।
ପାଦୋଽସ୍ୟ ସର୍ବଭୂତାନି ତ୍ରିପାଦସ୍ୟାମୃତଂଦିବି ॥"

ସାମବେଦ: ସଂ: ପୂର୍ବାର୍ଚ୍ଚିକ, ୬ । ୧୩ । ୫ ॥ ଋକ୍ ସଂ: ୧୦ । ୧୯ । ୨ ।
ଓ ଯଜୁଃ—୩୧ । ୨ । ୪ ।

---

ଜୀବନ୍ମୁକ୍ତ ପୁରୁଷ ବୋଲି ଅଭିହିତ ହୁଅନ୍ତି । ଯେଉଁ ଧ୍ୟାନଦ୍ୱାରା ଊର୍ଦ୍ଧ୍ୱଦୃଷ୍ଟି ହୁଏ, ସେହି ସାଧକର ମନକୁ ବିଜ୍ଞାନ ବୋଲିଯାଏ । ଯାହାର ମନ ଶୂନ୍ୟସ୍ୱରୂପ ହୋଇ ଲୟପ୍ରାପ୍ତ ହୁଏ, ସେହି ସାଧକ କେବଳ ଜୀବନ୍ମୁକ୍ତ ବୋଲି କଥିତ ହୁଏ । ଏ ବିଷୟରେ ଶିବ କହୁଅଛନ୍ତି—"ଆକାଶେ ଦୃଷ୍ଟି ମାସ୍ଥାୟ ମନ ଊର୍ଦ୍ଧ୍ୱଂ ତୁ କାରୟେତ୍ । ଊର୍ଦ୍ଧ୍ୱ ଲକ୍ଷ୍ୟା ଭବେଦେଷ ପରମେଶସ୍ୟ ଚୈକତା । × × × ।" ଚଲନ୍ତ୍ୱାଗ୍ରତ୍‌ସ୍ୱପ୍ନସୁପ୍ତେଷୁ ଭୋଜନେଷୁ ଚ ସର୍ବଦା । ସର୍ବାବସ୍ଥାସୁ ଦେବେଶି ! ଚିତ୍ତଂ ଶୂନ୍ୟେ ନିୟୋଜୟେତ୍ ॥ ଶୂନ୍ୟାନ୍ତି—ସଚ୍ଚିଦାନନ୍ଦଂ ନିଃଶବ୍ଦବ୍ରହ୍ମଶବ୍ଦିତଂ । ସ ଶବ୍ଦ ଜ୍ଞେୟ ଆକାଶ ଇତଭେଦଦ୍ୱୟସ୍ଥିତଃ ॥" ପ୍ରାଣତୋଷିଣୀ ଲକ୍ଷ୍ୟଯୋଗ ॥ ଅର୍ଥାତ୍ ମନକୁ ଊର୍ଦ୍ଧ୍ୱଗତ କରି ଆକାଶରେ ଦୃଷ୍ଟି ସ୍ଥାପନ କଲେ, ତାହାକୁ ଊର୍ଦ୍ଧ୍ୱଲକ୍ଷ୍ୟ କୁହାଯାଏ । ଏହି ଲକ୍ଷ୍ୟଦ୍ୱାରା ପରମାତ୍ମାଙ୍କ ସହିତ ଜୀବର ଏକତାଲାଭ ହୁଏ । ହେ ଦେବେଶି ! ଗମନ, ଜାଗ୍ରତ, ସୁଷୁପ୍ତି ଓ ଭୋଜନ-ପ୍ରଭୃତି ସମୟରେ ସର୍ବଦା ଓ ସର୍ବ ଅବସ୍ଥାରେ ଚିତ୍ତକୁ ଶୂନ୍ୟରେ ନିୟୋଜିତ କରିବ । ଶୂନ୍ୟ କେବଳ ଶୂନ୍ୟ ନୁହେଁ, ସେ ସଚ୍ଚିଦାନନ୍ଦମୟ ନିଃଶବ୍ଦ ବ୍ରହ୍ମ, ସେହି ନିଃଶବ୍ଦବ୍ରହ୍ମରୁ ଶବ୍ଦାଦି କ୍ଷରିତ ହୁଏ । ସେହି ଶବ୍ଦକୁ ଆକାଶ ବୋଲି ଜାଣ । ଏହି ଶବ୍ଦ ଓ ନିଃଶବ୍ଦର ଭେଦଦ୍ୱୟ ଅବଗତ ହୁଅ । ତା'ପରେ—"ଅତ ଊର୍ଦ୍ଧ୍ୱଂ ଦିବ୍ୟରୂପଂ ସହସ୍ରାରଂ ସରୋରୁହମ୍, ବ୍ରହ୍ମାଣ୍ଡାଖ୍ୟସ୍ୟ ଦେହସ୍ୟ ବାହ୍ୟେ ତିଷ୍ଠତି ମୁକ୍ତିଦମ୍ ॥" ଶିବସଂହିତା ୫—୧୯୮ ॥ "ତମାବେଶ୍ୟ ମହତ୍ ଶୂନ୍ୟଂ ଚିନ୍ତୟେଦବିରୋଧତଃ । ଆଦ୍ୟନ୍ତମଧ୍ୟଶୂନ୍ୟଂ ତତ୍ କୋଟିସୂର୍ଯ୍ୟସମପ୍ରଭମ୍ । କୋଟିଚନ୍ଦ୍ର ପ୍ରତୀକାଶମଭ୍ୟସ୍ୟ ମୋକ୍ଷମାପ୍ନୁୟାତ୍ ॥ ତତ୍ରୈବ—୫ । ୨୦୮—୨୦୯ ॥

ଯେଉଁ ଜଗତ୍ ଏଥିପୂର୍ବେ ଉତ୍ପନ୍ନ ହୋଇଥିଲା, ଯାହା ହେଉଅଛି ବା ଯାହା ଭବିଷ୍ୟତ୍‌ରେ ହେବ, ସେହି ସମୁଦାୟ ଜଗତ୍‌ରେ ସେହି ପୁରୁଷ ବିଦ୍ୟମାନ । ସମସ୍ତ ଉତ୍ପନ୍ନ ଜଗତ୍ ଓ ସକଳ ପ୍ରାଣୀ ସେହି ପୁରୁଷଙ୍କର ଏକଚରଣ । ତାହାଙ୍କର ଅନ୍ୟ ତିନିଚରଣ ନିଜ ଜ୍ୟୋତିସ୍ୱରୂପରେ ବିନାଶରହିତ ଓ ଅମୃତରୂପରେ ଅବସ୍ଥିତ ।

"ତ୍ରିପାଦୂର୍ଦ୍ଧ୍ୱ ଉଦୈତ୍ ପୁରୁଷଃ ପାଦୋଽସ୍ୟେହାଭବତ୍ ପୁନଃ ।
ତତୋ ବିଶ୍ୱଂ ବ୍ୟକ୍ରାମତ୍ ସାଶନାନଶନେ ଅଭି ।" ଯଜୁଃ-୩୧ । ୪ ॥

ପରମାତ୍ମା କାର୍ଯ୍ୟଜଗତ୍‌ରୁ ପୃଥକ୍ ହୋଇ ସର୍ବ ଊର୍ଦ୍ଧ୍ୱରେ ଶୁଦ୍ଧ, ବୁଦ୍ଧ ଓ ମୁକ୍ତରୂପରେ ତିନି ଅଂଶରେ ପ୍ରକାଶିତ ହୋଇ ଅଛନ୍ତି । ତାହାଙ୍କ ଏକ ଅଂଶରେ ସାମର୍ଥ୍ୟଦ୍ୱାରା ସେ ସକଳ ଜଗତ୍‌କୁ ବାରମ୍ବାର ରଚନା କରନ୍ତି ଏବଂ ଜଡ଼ ଓ ଚେତନ ଜଗତରେ ବ୍ୟାପକ-ଭାବରେ ଅବସ୍ଥାନ କରୁଅଛନ୍ତି । ମହିମାସ୍ୱାମୀଙ୍କ ଆଦେଶ ଅନୁସାରେ ଅଲେଖଦରଂବ୍ରହ୍ମ

ଅଙ୍କା ପଦ୍ମର ଊର୍ଦ୍ଧ୍ୱ ଦେଶରେ ମନୋରମ ସହସ୍ରଦଳ ପଦ୍ମ ଅଛି । ଏହା ବ୍ରହ୍ମାଣ୍ଡାଖ୍ୟ ଦେହର ବହିର୍ଦେଶରେ ବିଦ୍ୟମାନ ଓ ତାହା ମୁକ୍ତିଦାତା । ସେଥିରେ ମନୋନିବେଶପୂର୍ବକ ମହାଶୂନ୍ୟ ଚିନ୍ତା କରିବ । ସେହି ଶୂନ୍ୟ ଅନାଦି, ଅନନ୍ତ ଓ ମଧ୍ୟରହିତ; ତାହା କୋଟିସୂର୍ଯ୍ୟସମ ଦୀପ୍ତିମାନ୍ ଏବଂ କୋଟିଚନ୍ଦ୍ରପରି ପ୍ରସନ୍ନ; ଏହାକୁ ଧ୍ୟାନ କରିବା ଅଭ୍ୟାସ କଲେ ଜୀବ ମୋକ୍ଷଲାଭ କରେ ।

"କ୍ଷଣାର୍ଦ୍ଧଂ ନିଶ୍ଚଳଂ ତତ୍ର ମନୋ ଯସ୍ୟ ଭବେଦ୍ଧ୍ରୁବମ୍, ସ ଏବ ଯୋଗୀ ସଦ୍‌ଭକ୍ତଃ ସର୍ବଲୋକେଷୁ ପୂଜିତଃ ॥ ତସ୍ୟ କଲ୍ମଷସଂଘାତ ସ୍ତତ୍‌କ୍ଷଣାଦେବ ନଶ୍ୟତି । ଯଂ ଦୃଷ୍ଟ୍ୱା ନ ପ୍ରବର୍ତ୍ତନ୍ତେ ମୃତ୍ୟୁସଂସାରବର୍ତ୍ମନି ॥ ଅଭ୍ୟସେତ୍ତଂ ପ୍ରଯତ୍ନେନ ସ୍ୱାଧିଷ୍ଠାନେନ ବର୍ତ୍ମନା । ଏତଦ୍ ଧ୍ୟାନସ୍ୟ ମାହାତ୍ମ୍ୟଂ ମୟା ବକ୍ତୁଂ ନ ଶକ୍ୟତେ ॥ ଯଃ ସାଧୟତି ଜାନାତି ସୋଽସ୍ମାକମପି ସମ୍ମତଃ ॥" ଶିବସଂହିତା — ୫ । ୨୧୧—୨୧୪ ॥

ଯେ ଶୂନ୍ୟ ଧ୍ୟାନରେ ଅର୍ଦ୍ଧକ୍ଷଣ ମଧ୍ୟ ମନକୁ ସ୍ଥିର ରଖିବାକୁ ସମର୍ଥ ହୁଅନ୍ତି ତାହାଙ୍କୁ ପ୍ରକୃତ ଯୋଗୀ ଓ ପ୍ରକୃତ ଭକ୍ତ ବୋଲଯାଏ । ସେ ସର୍ବଲୋକରେ ପୂଜିତ ଓ ତାଙ୍କର ସକଳ ପାପରାଶି ବିନଷ୍ଟ ହୋଇଥାଏ । ଯାହାଙ୍କୁ ଅବଲମ୍ବନ କଲେ ମୃତ୍ୟୁ ରୂପକ ସଂସାରମାର୍ଗରେ ବିଚରଣ କରିବାକୁ ହୁଏ ନାହିଁ, ଯତ୍ନ-ସହକାରେ ସ୍ୱାଧିଷ୍ଠାନପଥରେ ତାହା ଶିକ୍ଷା କରିବା ସର୍ବଥା କର୍ତ୍ତବ୍ୟ । ହେ ପାର୍ବତି ! ଏହି ଶୂନ୍ୟ ଧ୍ୟାନର ମାହାତ୍ମ୍ୟ ସମ୍ୟକ୍ ବର୍ଣ୍ଣନା କରିବା ଆମ୍ଭର ଶକ୍ତିର ବହିର୍ଭୂତ । ଯେଉଁ ବ୍ୟକ୍ତି ଏହାର ସାଧନ କରନ୍ତି, ସେହି କେବଳ ଏହାର ମାହାତ୍ମ୍ୟ ବିଦିତ ହୋଇ ପାରନ୍ତି ।

ଅଶେଷବ୍ରହ୍ମାଣ୍ଡର ଊର୍ଦ୍ଧ୍ୱମହାଶୂନ୍ୟରେ ଅବସ୍ଥିତ; ତାହାଙ୍କ ମହିମାରେ ସମସ୍ତ ଜଗତ୍ ପ୍ରକାଶିତ । ସେହି ଏକ ପରଂବ୍ରହ୍ମଙ୍କୁ ଊର୍ଦ୍ଧ୍ୱଲକ୍ଷ୍ୟରେ ଦୃଷ୍ଟି ସ୍ଥିରକରି ଶରଣଦର୍ଶନ କରିବ । ଊର୍ଦ୍ଧ୍ୱମଣ୍ଡଳର ମହାଶୂନ୍ୟରେ ପରଂବ୍ରହ୍ମଙ୍କ ଅବସ୍ଥାନ ବିଷୟ ଉପର୍ଯ୍ୟୁକ୍ତ ବେଦ ଓ ବେଦାନ୍ତାଦିର ତାତ୍ପର୍ଯ୍ୟ ଗୁରୁମହିମାସ୍ୱାମୀଙ୍କ ଆଜ୍ଞାସହିତ ଅନୁଭୂତ କରିଗଲେ ।

## ଠ—ସର୍ବ ଜଗତର ଏକମାତ୍ର ମୂଳ ପରଂବ୍ରହ୍ମ ଊର୍ଦ୍ଧ୍ୱଦେଶରେ ଅବସ୍ଥିତ ।

ପୁନଶ୍ଚ ଶ୍ରୁତି ସମସ୍ତ ଜଗତ୍‌କୁ ଅନିତ୍ୟବୃକ୍ଷରୂପରେ ବର୍ଣ୍ଣନା କରିଅଛି ଏବଂ ଏହାର ମୂଳକାରଣ ପରଂବ୍ରହ୍ମଙ୍କୁ ଊର୍ଦ୍ଧ୍ୱଦେଶରେ ଅବସ୍ଥିତ ବୋଲି ଉଲ୍ଲେଖ କରି ସେହି ମୂଳସ୍ୱରୂପ ପରଂବ୍ରହ୍ମଙ୍କଠାରେ ଶରଣାପନ୍ନ ହେଲେ ଜୀବ ଜନ୍ମମୃତ୍ୟୁ-ପ୍ରବାହରୁ ନିଷ୍କୃତି ଲାଭ କରେ— ଏହି ବିଷୟର ବିବୃତି କରିଅଛି । ଏ ବିଷୟ ଉପନିଷଦ୍ ଓ ଗୀତା ଏକତାନରେ ଗାନ କରିଛନ୍ତି—

"ଊର୍ଦ୍ଧ୍ୱମୂଳୋଽବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନଃ ।
ତଦେବ ଶୁକ୍ରଂ ତଦ୍‌ବ୍ରହ୍ମ ତଦେବାମୃତମୁଚ୍ୟତେ ॥
ତସ୍ମିନ୍ ଲୋକାଃ ଶ୍ରିତାଃ ସର୍ବେ ତଦୁ ନାତ୍ୟେତି କଶ୍ଚନ ॥"

ଏତଦ୍‌ବୈତତ୍ ॥ କଠୋପନିଷଦ୍ ୨ । ୩-୧ ॥

ଏହି ସଂସାରରୂପୀ ବୃକ୍ଷର ମୂଳ ଊର୍ଦ୍ଧ୍ୱକୁ ଓ ଶାଖାଗୁଡ଼ିକ ତଳକୁ ରହିଅଛି ଓ ସେହି ସନାତନ ଅଶ୍ୱତ୍ଥବୃକ୍ଷ ଅନନ୍ତସମୟରୁ ବିଦ୍ୟମାନ ଅଛି; ଅର୍ଥାତ୍ ବିଷ୍ଣୁଙ୍କର ପରମପଦବ୍ରହ୍ମ କେବଳ ଏହି ବୃକ୍ଷର ମୂଳ । ଏହି ସଂସାର—ପ୍ରତିକ୍ଷଣ ଜନ୍ମ, ମୃତ୍ୟୁ, ଜରା-ଶୋକାଦି ଅନର୍ଥ-ଅନ୍ୟଥା ଭାବରେ ପରିଣତ ହେଉଅଛି । କଦଳୀସ୍ତମ୍ଭ ଯେପରି ଅସାରପଦାର୍ଥ, ଏହି ସଂସାର ବୃକ୍ଷ ମଧ୍ୟ ସେହିପରି ଅସାର । ଏହି ସଂସାର-ବୃକ୍ଷକୁ ଲକ୍ଷ୍ୟ କରି ଅନେକ ପାଷଣ୍ଡମତବାଦୀ ବହୁ କଳ୍ପନାଜଳ୍ପନା କରିଅଛନ୍ତି; କିନ୍ତୁ ଯେଉଁମାନେ ତତ୍ତ୍ୱଜିଜ୍ଞାସୁ, ସେମାନେ ପ୍ରକୃତରେ ଏହାର ତତ୍ତ୍ୱ ନିର୍ଦ୍ଧାରଣ କରିବାକୁ ସମର୍ଥ । ପରଂବ୍ରହ୍ମ କେବଳ ଏହି ବୃକ୍ଷର ମୂଳ —ଏହା ବେଦାନ୍ତ ବାକ୍ୟଦ୍ୱାରା ନିର୍ଦ୍ଧାରିତ ହୋଇଅଛି । ଅବିଦ୍ୟାଜନିତ କାମନା ଓ କର୍ମାଦି ଏହି ବୃକ୍ଷର ବୀଜ ଏବଂ ଜ୍ଞାନ ଓ କ୍ରିୟାଶକ୍ତ୍ୟାତ୍ମକ ହିରଣ୍ୟଗର୍ଭ କେବଳ ଏହାର ପ୍ରଥମ ଅଙ୍କୁର । ସମସ୍ତ ପ୍ରାଣୀ ଏହାର ସ୍କନ୍ଧ; ଏହି ବୃକ୍ଷ ସର୍ବଦା ତୃଷ୍ଣାରୂପ ଜଳାଶୟଦ୍ୱାରା ସିଞ୍ଚିତ ହେଉଅଛି । ଜ୍ଞାନେନ୍ଦ୍ରିୟ ବିଷୟ ଶବ୍ଦାଦି ଏହାର ପ୍ରବାଳ, ଶ୍ରୁତି—ସ୍ମୃତି ଆଦି ଶାସ୍ତ୍ରୋପଦେଶ ଏହାର ପତ୍ର ଏବଂ ଯଜ୍ଞ, ଦାନ, ତପସ୍ୟାପ୍ରଭୃତି ବିବିଧ କ୍ରିୟା ଏହାର ପୁଷ୍ପ; ପ୍ରାଣୀମାନଙ୍କ ସୁଖଦୁଃଖାଦି ବେଦନା ବା ଅନୁଭବ ଅନେକ ପ୍ରକାର ରସ । ଏହି ବୃକ୍ଷର ମୂଳଦେଶ ଫଳ-ତୃଷ୍ଣା-ରୂପ ଜଳସେଚଦ୍ୱାରା ସୁଦୃଢ଼ ହେଉଅଛି । ସତ୍ୟପ୍ରଭୃତି ସପ୍ତଲୋକରେ ବ୍ରହ୍ମାଦିରୂପ ପକ୍ଷୀଗଣ ଏହି ବୃକ୍ଷରେ

ମାଡ଼ ନିର୍ମାଣ କରି ବାସ କରିଅଛନ୍ତି । ପ୍ରାଣୀମାନଙ୍କର ସୁଖ-ଦୁଃଖଜନିତ ହର୍ଷଶୋକାଦିରୁ ଉତ୍ପନ୍ନ ନୃତ୍ୟ, ଗୀତ, ବାଦ୍ୟ ଏବଂ ହାହାକାରାଦି ବିବିଧ ଶବ୍ଦଦ୍ୱାରା ଏହି ସଂସାରବୃକ୍ଷ ସର୍ବଦା ପରିବ୍ୟାପ୍ତ; ବେଦାନ୍ତଶାସ୍ତ୍ରବିହିତ ଆତ୍ମାଙ୍କର ଶରଣଦର୍ଶନଜାତ ଅସଙ୍ଗତାରୂପ ଶସ୍ତ୍ର କେବଳ ଏହାକୁ ଉଚ୍ଛେଦ କରିବାକୁ ସମର୍ଥ । ଏହି ସଂସାରବୃକ୍ଷ କାମ୍ୟକର୍ମରୂପକ ବାୟୁଦ୍ୱାରା ସର୍ବଦା ଅଶ୍ୱତ୍ଥ-ବୃକ୍ଷତୁଲ୍ୟ ବିଚଳନଶୀଳ । ସ୍ୱର୍ଗ, ନରକ, ତିର୍ଯ୍ୟକ୍, ପ୍ରେତଆଦି ଏହାର ଶାଖା । ଏହି ବୃକ୍ଷ ଅନାଦିକାଳରୁ ପ୍ରବୃତ୍ତ ହୋଇ ଆସୁଅଛି । ଯେଉଁ ପଦାର୍ଥ ଏହି ସଂସାର ବୃକ୍ଷର ମୂଳସ୍ୱରୂପ, ସେହି କେବଳ ଶୁଦ୍ଧବ୍ରହ୍ମ ବୋଲି ଜାଣିବ । ଏହି ବ୍ରହ୍ମ ବ୍ୟାପକ ଓ ଅବିନାଶୀ ସ୍ୱଭାବ । ଏହି ବ୍ରହ୍ମଙ୍କୁ ଅବଲମ୍ବନ କରି ଇତ୍ୟାଦି ନିଖିଳ ଲୋକ ବର୍ତ୍ତମାନ; ଏହାଙ୍କୁ କେହି ଅତିକ୍ରମ କରି ପାରନ୍ତି ନାହିଁ । ହେ ନଚିକେତା ! ଏହାଙ୍କୁ ପରଂବ୍ରହ୍ମ ବୋଲି ଅବଧାରଣ କର ।

ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହି ଅଛନ୍ତି—ଏହି ସଂସାର ରୂପ ଅଶ୍ୱତ୍ଥ ବୃକ୍ଷର ମୂଳ ରୂପ ପରଂବ୍ରହ୍ମ ଅନୁସନ୍ଧାନ କରି ତାହାଙ୍କଠାରେ ଶରଣ ପଶ—

"ଊର୍ଦ୍ଧ୍ୱମୂଳମଧଃଶାଖମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍ ।
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ ॥
ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟ ଶାଖା ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ ।
ଅଧଶ୍ଚ ମୂଳାନ୍ୟନୁସନ୍ତତାନି କର୍ମାନୁବନ୍ଧୀନି ମନୁଷ୍ୟଲୋକେ ॥
ନ ରୂପମସ୍ୟେହ ତଥୋପଲଭ୍ୟତେ ନାନ୍ତୋ ନଚାଦିର୍ନଚ ସଂପ୍ରତିଷ୍ଠା ।
ଅଶ୍ୱତ୍ଥମେନଂ ସୁବିରୂଢ଼ମୂଳମସଙ୍ଗଶସ୍ତ୍ରେଣ ଦୃଢେନ ଛିତ୍ତ୍ୱା ॥
ତତଃ ପଦଂ ତତ୍ ପରିମାର୍ଗିତବ୍ୟଂ ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ ।
ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ ॥"
ଗୀତା—୧୫ । ୧ । ୪ ॥

ଏହି ସଂସାର ରୂପକ ବୃକ୍ଷର ମୂଳ ଊର୍ଦ୍ଧ୍ୱଦେଶରେ ଓ ଶାଖା ଅଧୋଦେଶରେ ବିଦ୍ୟମାନ; ବେଦସବୁ ତାହାର ପତ୍ରସ୍ୱରୂପ । ଏହା ଚିରସ୍ଥାୟୀ ଓ (ପ୍ରବାହ ରୂପରେ) ଅବ୍ୟୟ ବୋଲି ଶାସ୍ତ୍ରରେ ଉକ୍ତ ଅଛି । ଯେଉଁ ବ୍ୟକ୍ତି ଏହାଙ୍କୁ ଜାଣନ୍ତି ସେ ବେଦବିତ୍ । ଏହି ସଂସାର-ବୃକ୍ଷ ସତ୍ତ୍ୱାଦିଗୁଣମାନଙ୍କଦ୍ୱାରା ବର୍ଦ୍ଧିତ ଏବଂ ଶବ୍ଦାଦି ବିଷୟରୂପପଲ୍ଲବଯୁକ୍ତ ହୋଇ ଅଧଃ ଓ ଊର୍ଦ୍ଧ୍ୱଭାଗରେ ବିସ୍ତୃତ ହୋଇଅଛି । ମର୍ତ୍ତ୍ୟଲୋକରେ କର୍ମପ୍ରବର୍ତ୍ତନକାରୀ ବାସନା ସବୁ ଏହାର ଚେରରୂପରେ ଅଧଃ ଓ ଊର୍ଦ୍ଧ୍ୱଭାଗରେ ବିସ୍ତୃତ ହୋଇଅଛି । ଏହି ଜଗତର ପ୍ରାଣୀମାନଙ୍କୁ ସେହି ସଂସାରବୃକ୍ଷର ସେ ପ୍ରକାର ରୂପ ଏବଂ ଆଦି, ଅନ୍ତ, ସ୍ଥିତି ଆଦି ଜଣା ଯାଏ ନାହିଁ ।

ଏହି ଦୃଢ଼ ମୂଳ ଅଶ୍ୱତ୍ଥବୃକ୍ଷକୁ ଅସଙ୍ଗ (ଅନାସକ୍ତି) ରୂପ ଶସ୍ତ୍ରଦ୍ୱାରା ଛେଦନ କରି (ଅର୍ଥାତ୍ ତତ୍ତ୍ୱଜ୍ଞାନ ବିଷୟରେ ସତ୍ଶୀଳ ହୋଇ ମୂଳବସ୍ତୁକୁ ପ୍ରତ୍ୟକ୍ଷ କରି) ପରେ ଯାହାଙ୍କଠାରୁ ଏହି ସନାତନ ସଂସାର ବିସ୍ତୃତ ହୋଇଅଛି ତାହାଙ୍କଠାରେ (ମୁଁ) ଶରଣ ପଶୁଅଛି—ଏହିପରି କହି ଏକାନ୍ତ ଭକ୍ତି ସହ ସେହି ବ୍ରହ୍ମପଦକୁ ଅନ୍ୱେଷଣ କରିବ । ଯାହା ପ୍ରାପ୍ତ ହେଲେ ପୁନର୍ବାର ସଂସାରକୁ ଫେରି ଆସିବାକୁ ହୁଏ ନାହିଁ ।

ପରଂବ୍ରହ୍ମ ସକଳଜୀବମାନଙ୍କର ମୂଳକାରଣ ବୋଲି ଯୋଗବାଶିଷ୍ଠରେ ମଧ୍ୟ ବର୍ଣ୍ଣିତ ହୋଇଛି ।

"ତେଷାଂ ମୂଳଂ ବୃହତ୍ସ୍ତମ୍ଭଂ ମନୋବ୍ୟାପ୍ତଜଗତ୍ତ୍ରୟମ୍ ।
ପଞ୍ଚସ୍ରୋତଃ ଶିରଃକୃଷ୍ଟ ମୁକ୍ତାନନ୍ତରସଦ୍ରବମ୍ ॥
ତସ୍ୟ ମୂଳଂ ବିଦୁର୍ଜୀବଂ ଚେତେତ୍ୟୋନ୍ମୁଖଚିଦାତ୍ମକମ୍ ।
ଚେତ୍ୟସ୍ୟ ଚେତନଂ ମୂଳଂ ସର୍ବମୂଳୈକକାରଣମ୍ ॥
ଚିତେସ୍ତୁ ବ୍ରହ୍ମମୂଳଂ ଯତ୍ ତସ୍ୟ ମୂଳଂ ନ ବିଦ୍ୟତେ ।
ଅମାଖ୍ୟତ୍ୱାଦନନ୍ତତ୍ୱାଚ୍ଛୁଦ୍ଧତ୍ୱାତ୍ ସତ୍ୟରୂପିଣଃ ॥"

ଯୋଗବା. ନି: ଉ: ୨ । ୨୩-୨୫ ।

ଏହି ସମସ୍ତ ଜ୍ଞାନେନ୍ଦ୍ରିୟନାମକ ମୂଳର ମଧ୍ୟ ମୂଳ ଅଛି; ସେହି ମୂଳ ତ୍ରୈଲୋକ୍ୟବ୍ୟାପୀ ମନ । ଏହା ବିପୁଳ ସ୍ତମ୍ଭାକାରରେ ଅବସ୍ଥିତ । ଏହି ମୂଳ ଜ୍ଞାନେନ୍ଦ୍ରିୟ ପଞ୍ଚକରୂପ ଶିର ସହାୟତାରେ ରୂପାଦିଅନନ୍ତରସ ଆକର୍ଷଣ କରି ଭୋଗ କରେ ଏବଂ ପୁନରପି ତାହା ତ୍ୟାଗ କରେ । ଏହି କଥିତ ମନୋମୂଳର ମଧ୍ୟ ମୂଳ ଅଛି, ଯାହାର ନାମ ଜୀବ । ବିଷୟାସକ୍ତ ଚିଦାତ୍ମାଙ୍କୁ ସେହି ଜୀବନାମରେ କଥିତ । ଯେତେ ପ୍ରକାର ମୂଳ ଦେଖାଯାଏ, ସେ ସବୁର ଏକମାତ୍ର କାରଣ ସେହି ଚେତନ । ତାହା ନିଖିଳ ତତ୍ତ୍ୱର ନିଦାନ । ପୂର୍ବବର୍ଣ୍ଣିତ ଚେତ୍ୟୋନ୍ମୁଖୀ ଚିତ୍ ମଧ୍ୟ ନିର୍ମୂଳ ନୁହେଁ; ତାହାର ମଧ୍ୟ ମୂଳ ଅଛି । ସେହି ମୂଳ ପରାତ୍ପର ପରଂବ୍ରହ୍ମ; କିନ୍ତୁ ବ୍ରହ୍ମଙ୍କର କୌଣସି ମୂଳ ନାହିଁ; ସେ ସମ୍ପୂର୍ଣ୍ଣ ନିର୍ମୂଳ । ସେ ଆଦିଅନ୍ତହୀନ, ତାହାଙ୍କର ନାମ ନାହିଁ । ସେ ବିଶୁଦ୍ଧ ସତ୍ୟସ୍ୱରୂପ । [ ସେହି ପରଂବ୍ରହ୍ମହିଁ ଏକମାତ୍ର ସର୍ବାଶ୍ରୟ ଅଟନ୍ତି । ]

ଶ୍ରୀମତ୍ ପ୍ରବୁଦ୍ଧ ଗୁରୁମହିମାସ୍ୱାମୀ ଯେଉଁ ପ୍ରକାରେ ଏକ ଅଲେଖ ପରଂବ୍ରହ୍ମ ପଦରେ ପ୍ରାତଃ ଓ ସାୟଂକାଳରେ (ବ୍ରାହ୍ମ ମୂହୂର୍ତ୍ତ ସମୟରେ) ଶରଣ ହେବାର ବିଧାନ କରିଛନ୍ତି, ତାହା ସକଳ ଶ୍ରୁତି ସ୍ମୃତି ଆଦି ଶାସ୍ତ୍ରମାନଙ୍କରେ ଅନୁମୋଦିତ ହୋଇଅଛି ।

ଠ—ନିଶ୍ଚଳାସନରେ ସ୍ମରଣ ଚିନ୍ତନ—

ପୂର୍ବୋଲ୍ଲିଖିତ ବ୍ରହ୍ମଜ୍ଞାନ ଶରଣଦର୍ଶନ ଭକ୍ତିଯୋଗସହ ସଂଯତଭାବରେ ସୁଖାସନରେ ଉପବିଷ୍ଟ ହୋଇ ଶ୍ୱାସପ୍ରଶ୍ୱାସ ଅନୁକ୍ରମରେ ଏକାଗ୍ରମନା ହୋଇ ଯେଉଁ ସତ୍ତ୍ୱରେ ପ୍ରାଣ ସ୍ପନ୍ଦିତ ହୁଏ, ଅଜପା ଭଜନସୂତ୍ରରେ ସେହି ସତ୍ତ୍ୱରୂପକ ଆତ୍ମଚୈତନ୍ୟରୂପରେ ଅଲେଖମହାପ୍ରଭୁ ପରଂବ୍ରହ୍ମଙ୍କୁ ସ୍ମରଣ କରିବାଦ୍ୱାରା ଚିତ୍ତ ସୁଦୃଢ଼ ହୋଇ ରହେ । ଏ ବିଷୟରେ ଉପନିଷଦର ପ୍ରମାଣ ଏହିପରି ଦେଖାଯାଏ—

"ଆକ୍ଷିପ୍ତୋ ଭୁଜଦଣ୍ଡେନ ଯଥୋଚ୍ଚଳତି କନ୍ଦୁକଃ ।
ପ୍ରାଣାପାନସମାକ୍ଷିପ୍ତସ୍ତଥା ଜୀବୋ ନ ବିଶ୍ରମେତ୍ ।।
ଅପାନଃ କର୍ଷତି ପ୍ରାଣଂ ପ୍ରାଣୋଽପାନଂ ଚ କର୍ଷତି ।
ହକାରେଣ ବହିର୍ଯାତି ସକାରେଣ ବିଶେତ୍ ପୁନଃ ।।
ହଂସହଂସେତ୍ୟମୁଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ।
ତଦ୍ ବିଦ୍ୱାନକ୍ଷରଂ ନିତ୍ୟଂ ଯୋ ଜାନାତି ସ ଯୋଗବିତ୍ ।।"

ଯୋଗଶିଖୋପନି :—୧ । ୫୨—୫୪ ।।

ଅର୍ଥାତ୍—ହସ୍ତଦ୍ୱାରା ପେଣ୍ଡୁକୁ ତାଡ଼ନ କଲେ, ଯେପରି ତାହା ଊର୍ଦ୍ଧ୍ୱକୁ ଉତ୍ଥିତ ହୁଏ, ଭୂମିରେ ପତିତ ହୋଇ ପୁଣି ତାହା ଊର୍ଦ୍ଧ୍ୱକୁ ଉଠେ—କିନ୍ତୁ କ୍ଷଣ ସେହିପରି ପେଣ୍ଡୁର ଉତ୍ଥାନ ପତନ ହୁଏ, ଜୀବ-ଚୈତନ୍ୟ ମଧ୍ୟ ସେହିପରି ପ୍ରାଣ ଓ ଅପାନକର୍ତ୍ତୃକ ତାଡିତ ହେବାଦ୍ୱାରା ବିଶ୍ରାମ କରିପାରେ ନାହିଁ (ଅର୍ଥାତ୍ ସର୍ବଦା ଊର୍ଦ୍ଧ୍ୱ ଓ ଅଧୋଦେଶରେ ଗମନାଗମନ କରେ) । ଅପାନ ପ୍ରାଣକୁ ଆକର୍ଷଣ କରେ, ପ୍ରାଣ ମଧ୍ୟ ଅପାନକୁ ଆକର୍ଷଣ କରେ । ପ୍ରାଣବାୟୁ 'ହଁ' ବର୍ଣ୍ଣ ଉଚ୍ଚାରିତ ହେଲା ଭଳି ବହିର୍ଗତ ହୁଏ ଏବଂ 'ସ' ଧ୍ୱନି ଭଳି ଭିତରେ ପ୍ରବେଶ କରେ । ତଦ୍ଦ୍ୱାରା 'ହଂସ' 'ହଂସ' ଏହି ମନ୍ତ୍ର ଉତ୍ପନ୍ନ ହୁଏ । ଏହା ଜୀବ ସର୍ବଦା ଜପ କରେ । ଏହା ଜାଣି ଯେ ନିତ୍ୟ ଅକ୍ଷର-ପରମାତ୍ମାଙ୍କୁ ଅବଗତ ହୁଏ, ସେହି କେବଳ ପ୍ରକୃତ ଯୋଗବିତ୍ ।

ପୁନଶ୍ଚ—

"ବାମ ଦକ୍ଷିଣମାର୍ଗାଭ୍ୟାଂ ଚଞ୍ଚଳତ୍ୱାନ୍ନଦୃଶ୍ୟତେ ।
ରଜ୍ଜୁବଦ୍ଧୋ ଯଥା ଶ୍ୟେନୋ ଗତୋଽପ୍ୟାକୃଷ୍ୟତେ ପୁନଃ ।।
ଗୁଣବଦ୍ଧସ୍ତଥା ଜୀବଃ ପ୍ରାଣାପାନେନ କର୍ଷତି ।।"

ଯୋଗଚୂଡ଼ାମଣି ଉ: ୨୮-୨୯ ।।

ଜୀବ ପ୍ରାଣ ଓ ଅପାନର ବଶବର୍ତ୍ତୀ ହୋଇ ଇଡ଼ା ଓ ପିଙ୍ଗଳାଦ୍ୱାରା ପ୍ରତ୍ୟହ ଊର୍ଦ୍ଧ୍ୱ ଓ ଅଧୋଦେଶକୁ ଧାବିତ ହେଉଅଛି; କିନ୍ତୁ ନିତାନ୍ତ ଚଞ୍ଚଳ ହେବାରୁ ଦୃଷ୍ଟିଗୋଚର ହୋଇ ପାରୁନାହିଁ । ଯେପରି ରଜ୍ଜୁବଦ୍ଧ ଶ୍ୟେନପକ୍ଷୀ ଉଡ୍ଡୀୟମାନ ହୋଇ ମଧ୍ୟ ପୁନର୍ବାର ରଜ୍ଜୁଦ୍ୱାରା ଆକୃଷ୍ଟ ହୁଏ, ସେହିପରି ସତ୍ତ୍ୱାଦିଗୁଣସୂତ୍ରଦ୍ୱାରା ବଦ୍ଧ ଜୀବ ପ୍ରାଣ ଓ ଅପାନଦ୍ୱାରା ଆକୃଷ୍ଟ ହୁଏ ।

"ହକାରେଣ ବହିର୍ଯାତି ସକାରେଣ ବିଶେତ୍ ପୁନଃ ।
ହଂସ-ହଂସେତ୍ୟମୁଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ॥
ଷଟ୍‌ଶତାନି ଦିବାରାତ୍ରୌ ସହସ୍ରାଣ୍ୟେକବିଂଶତିଃ ।
ଏତତ୍ ସଂଖ୍ୟାନ୍ୱିତଂ ମନ୍ତ୍ରଂ ଜୀବୋ ଜପତି ସର୍ବଦା ॥
ଅଜପା ନାମ ଗାୟତ୍ରୀ ଯୋଗିନାଂ ମୋକ୍ଷଦା ସଦା ।
ଅସ୍ୟାଃ ସଂକଳ୍ପମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥
ଅନୟା ସଦୃଶୀ ବିଦ୍ୟା ଅନୟା ସଦୃଶୋ ଜପଃ ।
ଅନୟା ସଦୃଶଂ ଜ୍ଞାନଂ ନ ଭୂତଂ ନ ଭବିଷ୍ୟତି ॥"

ଯୋଗଚୂଡ଼ାମଣି ଉ: ୩୨-୩୫ ॥

ଧ୍ୟାନବିନ୍ଦୁ ୬୧ । ୬୪, ଗୋରକ୍ଷସଂହିତା ୧ । ୩୭—୩୮ ।

ଅର୍ଥାତ୍ ପ୍ରାଣ ହକାର ଉଚ୍ଚାରଣ କରି କରି ବହିର୍ଗତ ହୁଏ ଏବଂ ସକାର ଉଚ୍ଚାରଣ କରି କରି ପୁନର୍ବାର ଅଭ୍ୟନ୍ତରରେ ପ୍ରବେଶ କରେ । ଜୀବ ଏହି ରୂପରେ ସର୍ବଦା ହଂସ ହଂସ (ସୋଽହଂ, ସୋଽହଂ) ଜପ କରେ । ଏହିପରି ଜୀବ ପ୍ରତ୍ୟହ ଦିବାରାତ୍ରି "ହଂସ" ମନ୍ତ୍ରକୁ ଏକୋଇଶ ହଜାର ଛ-ଶହବାର ଜପ କରୁଥାଏ । ଅର୍ଥାତ୍ ଏହି ସଂଖ୍ୟାର ଶ୍ୱାସପ୍ରଶ୍ୱାସ ସହିତ ମନ୍ତ୍ରାର୍ଥଭାବନା କରୁଥାଏ । ଏହି ମନ୍ତ୍ରର ନାମ ଅଜପା ଗାୟତ୍ରୀ । ଏହା ଯୋଗୀମାନଙ୍କର ମୁକ୍ତିଦାତା । ଏହି ଅଜପା ଗାୟତ୍ରୀର ଚିନ୍ତାଫଳରେ ଯୋଗୀ ସର୍ବପାପବିନିର୍ମୁକ୍ତ ହୁଏ । ଏହା ସମାନ ବିଦ୍ୟା, ଜପ ବା ଜ୍ଞାନ ଭୂତଭବିଷ୍ୟତରେ ଦେଖାଯିବ ନାହିଁ ।

ଏହି ପ୍ରାଣବାୟୁ ଉପାସ୍ୟ ନୁହେଁ; କିନ୍ତୁ ଏହି ପ୍ରାଣର ଯେ ଅଧିଷ୍ଠାତା, ସେହି କେବଳ ଉପାସ୍ୟ—

"ଷଟ୍‌ଶତାନ୍ୟଧିକାନ୍ୟତ୍ର ସହସ୍ରାଣ୍ୟେକବିଂଶତିଃ ।
ଅହୋରାତ୍ରବହିଃ ଶ୍ୱାସୈର୍ବାୟୁମଣ୍ଡଳଘାତତଃ ॥"

ବରାହୋପନିଷତ୍ ୫-୩ ॥

ବାୟୁମଣ୍ଡଳରେ ଆଘାତ ହେଲେ ଶ୍ୱାସସମୂହ ପ୍ରବାହିତ ହୁଏ; ଦିବାରାତ୍ର ସେହି ଶ୍ୱାସପ୍ରଶ୍ୱାସର ସଂଖ୍ୟା ଏକବିଂଶ ହଜାର ଛ-ଶତ ହୁଏ ।

"ତ୍ରିଂଶତ୍ ପର୍ବାଙ୍ଗୁଳପ୍ରାଣୋ ଯତ୍ର ପ୍ରାଣଃ ପ୍ରତିଷ୍ଠିତଃ ।
ଏଷ ପ୍ରାଣ ଇତି ଖ୍ୟାତୋ ବାହ୍ୟପ୍ରାଣଃ ସ ଗୋଚରଃ ॥"

ଅମୃତନାଦୋପନିଷତ୍—ସ: ଖ: ୩୨ ॥

ଅଙ୍ଗୁଳିର ତ୍ରିଂଶତ୍ ପର୍ବ ପରିମିତ ଯେଉଁ ପ୍ରାଣବାୟୁ ସର୍ବଦା ବହମାନ ହେଉଅଛି, ସେହି ପ୍ରାଣବାୟୁ ଯାହାଙ୍କୁ ଆଶ୍ରୟ କରିଅଛି, ସେହି ପ୍ରସିଦ୍ଧ ପ୍ରାଣ ନାମରେ ଖ୍ୟାତ ଅର୍ଥାତ୍ ପରମାତ୍ମାରୂପରେ ଉପାସ୍ୟ । ଅନ୍ୟ ପ୍ରାଣ ବାହ୍ୟ ଓ ଦୃଶ୍ୟ; ଏହା ଉପାସ୍ୟ ନୁହେଁ । ଆହୁରି ମଧ୍ୟ କଠ-ଉପନିଷଦରେ ଏ ବିଷୟ ଅସନ୍ଦିଗ୍ଧଭାବରେ ବର୍ଣ୍ଣିତ ହୋଇଅଛି—

"ଊର୍ଦ୍ଧ୍ୱଂ ପ୍ରାଣମୁନ୍ନୟତ୍ୟପାନଂ ପ୍ରତ୍ୟଗସ୍ୟତି ।
ମଧ୍ୟେ ବାମନମାସୀନଂ ବିଶ୍ୱେ ଦେବା ଉପାସତେ ॥
ଅସ୍ୟ ବିସ୍ରଂସମାନସ୍ୟ ଶରୀରସ୍ଥସ୍ୟ ଦେହିନଃ ।
ଦେହାଦ୍ୱିମୁଚ୍ୟମାନସ୍ୟ କିମତ୍ର ପରିଶିଷ୍ୟତେ ॥ ଏତଦ୍‌ବୈତତ୍ ॥
ନ ପ୍ରାଣେନ ନାପାନେନ ମର୍ତ୍ତ୍ୟୋ ଜୀବତି କଶ୍ଚନ ।
ଇତରେଣ ତୁ ଜୀବନ୍ତି ଯସ୍ମିନ୍ନେତାବୁପାଶ୍ରିତୌ ॥"

କଠ ଉ: ବ: ୨ । ୩-୫ ॥

ଯେଉଁ ଆତ୍ମା ପ୍ରାଣବାୟୁକୁ ଊର୍ଦ୍ଧ୍ୱଗାମୀ କରନ୍ତି; ଏବଂ ଅପାନ ବାୟୁକୁ ଅଧୋଗାମୀ କରନ୍ତି, ସେହି ହୃଦୟାସୀନ ଆତ୍ମାଙ୍କୁ ଉପାସନା କରିବ । ଦେବଗଣ, ଅର୍ଥାତ୍ ଚକ୍ଷୁରାଦି ଏବଂ ପ୍ରାଣଗଣ—ସମସ୍ତେ ରୂପାଦିପରି ଜ୍ଞାନରୂପ ଉପହାର ଗ୍ରହଣ କରି ରାଜା ତୁଲ୍ୟ ଏହି ଆତ୍ମାଙ୍କୁ ଉପାସନା କରନ୍ତି । ପୁରର ସ୍ୱାମୀ ପୁରରୁ ଗମନ କଲେ ଯେପରି ପୁରସ୍ଥ ସକଳ ବସ୍ତୁ ଧ୍ୱସ୍ତବିଧ୍ୱସ୍ତ ହୋଇଯାଏ, ସେପରି ଦେହରୂପ ପୁରରେ ବାସ କରୁଥିବା ଆତ୍ମା ଏହି ଦେହ-ପୁର ତ୍ୟାଗ କଲେ ପ୍ରାଣାଦି ପ୍ରପଞ୍ଚ କିଛି ରହେ ନାହିଁ । ସମସ୍ତ ହତବଳ ହୋଇ ନଷ୍ଟ ହୋଇଯାଏ । ଏହି ଆତ୍ମାଙ୍କୁ ପ୍ରକୃତ ବ୍ରହ୍ମ ବୋଲି ଜାଣିବ । କୌଣସି ମନୁଷ୍ୟ କେବଳ ପ୍ରାଣ ଅପାନାଦି ବାୟୁ ଓ ଚକ୍ଷୁରାଦି ଇନ୍ଦ୍ରିୟଦ୍ୱାରା ଜୀବିତ ରହି ପାରେ ନାହିଁ । କାରଣ, ପ୍ରାଣ ଓ ଇନ୍ଦ୍ରିୟାଦି ସକଳ ସଂହତ ପଦାର୍ଥ । ଅର୍ଥାତ୍—ଉତ୍ପନ୍ନ ବସ୍ତୁ । ସୁତରାଂ ଏମାନେ ସମସ୍ତେ ପରାର୍ଥ, ଅର୍ଥାତ୍ ପରର ପ୍ରୟୋଜନ ସାଧନହିଁ ଏମାନଙ୍କ ଉଦ୍ଦେଶ୍ୟ । ଅତଏବ ଯାହାଙ୍କଦ୍ୱାରା ଏମାନେ ସଂହତ, ତାଙ୍କର ପ୍ରେରଣା ବିନା ଜୀବନଧାରଣ ସମ୍ଭବ ନୁହେଁ । ଯେପରି ମନୁଷ୍ୟର

ପ୍ରୟୋଜନୀୟ ଗୃହାଦି ପ୍ରସନ୍ନ ବିନା ବିନଷ୍ଟ ହୋଇଯାଏ, ସେହିପରି ପ୍ରାଣାଦି ଓ ଇନ୍ଦ୍ରିୟାଦି ମଧ୍ୟ କୌଣସି ଅସଂହତ ପଦାର୍ଥର ଅବଲମ୍ବନ ବିନା ନିଜେ ତିଷ୍ଠି ପାରନ୍ତି ନାହିଁ । ଅତଏବ, ପ୍ରାଣାଦି ସଂହତ ସକଳ ବସ୍ତୁଠାରୁ ବିଲକ୍ଷଣ ଆତ୍ମାକୁ ଆଶ୍ରୟ କରି ତଦ୍ଦ୍ୱାରା ନିଜେ ସଂଜୀବିତ ରହନ୍ତି ।

ଉକ୍ତ ଶ୍ରୁତିରୁ ସ୍ପଷ୍ଟ ପ୍ରତିପନ୍ନ ହେଲା ଯେ, ପ୍ରାଣବାୟୁ କଦାଚ ଉପାସ୍ୟ ନୁହେଁ, ପ୍ରାଣେଶ୍ୱର ପରଂବ୍ରହ୍ମ ହିଁ ଏକମାତ୍ର ଉପାସ୍ୟ । ସେହି ପରଂବ୍ରହ୍ମଙ୍କଠାରେ ମନ ଓ ପ୍ରାଣ ସହ ଆତ୍ମା କାୟମନୋବାକ୍ୟରେ ସତତ ଶରଣପ୍ରାପ୍ତ ହେଲେ ମାୟା—ଅବିଦ୍ୟା ବନ୍ଧନରୁ ମୁକ୍ତ ହୁଏ; କିନ୍ତୁ ଏହିପରି ଭାବାନୁଗତ ନ ହୋଇ ଯେଉଁ ଲୋକ କେବଳ ପ୍ରାଣବାୟୁକୁ ମୋକ୍ଷ ନିମନ୍ତେ ଲକ୍ଷ୍ୟ ରଖି ଅଜପା ଭଜନରେ ରତ ହୁଏ, ତାହାର କଦାପି ଅଜ୍ଞାନାଧ୍ୟାରୋପ ନିବୃତ୍ତି ହୁଏ ନାହିଁ ।

**ଠ—ଅନାହତ ଶବ୍ଦବ୍ରହ୍ମ ପରେ ପରଂବ୍ରହ୍ମଙ୍କୁ ସ୍ମରଣ ଭଜନ କର ।**

ଏହିପରି ଅନାହତ ନାଦକୁ ଅନାଦିବ୍ରହ୍ମରେ ବିଲୟ କରିବା ମଧ୍ୟ ସମୁଚିତ ।

**ଅନ୍ୟଥା ପରେ ଶବ୍ଦବାଦିନଃ ।**

**ଶ୍ରବଣାଙ୍ଗୁଷ୍ଠଯୋଗେନାନ୍ତର୍ହୃଦୟାକାଶଶବ୍ଦମାକର୍ଣ୍ଣୟନ୍ତି ସପ୍ତ-ବିଧେୟଂ ତସ୍ୟୋପମା । ଯଥା ନଦ୍ୟଃ କିଙ୍କିଣୀ କାଂସ୍ୟଚକ୍ରକଭେକବିଃ-କୃନ୍ତିକା ବୃଷ୍ଟିର୍ନିବାତେ ବଦତୀତି ତଂ ପୃଥଗ୍ ଲକ୍ଷଣମତୀତ୍ୟ ପରେଽଶବ୍ଦେଽ ବ୍ୟକ୍ତେ ବ୍ରହ୍ମଣ୍ୟସ୍ତଂ ଗତାଃ ତତ୍ର ତେଽପୃଥଗ୍ଧର୍ମିଣୋଽପୃଥଗ୍ବିବେକ୍ୟା ଯଥା ସମ୍ପନ୍ନା ମଧୁତ୍ୱଂ ନାନାରସା ଇତ୍ୟେବଂ ହ୍ୟାହ ॥"**

ମୈତ୍ର୍ୟୁପନିଷଦ୍ । ଖ ୬ । ୨୨ ଶ, ଘ ॥

ପ୍ରକାରାନ୍ତରେ କଥିତ ହେଉଅଛି, ଅନ୍ୟ ଶବ୍ଦବ୍ରହ୍ମବାଦୀଗଣ ଅଙ୍ଗୁଷ୍ଠଦ୍ୱାରା କର୍ଣ୍ଣ-ଦ୍ୱୟକୁ ଆଚ୍ଛାଦିତ କରି ହୃଦୟ-ମଧ୍ୟସ୍ଥିତ ଅବକାଶରେ ଉତ୍ପନ୍ନ ଶବ୍ଦ ଶ୍ରବଣ କରନ୍ତି । ଅର୍ଥାତ୍ ସେମାନେ ସେହି ଶବ୍ଦକୁ ହିଁ ଶବ୍ଦବ୍ରହ୍ମ ବୋଲି ମନେ କରନ୍ତି । ପରେ ଯେଉଁ ସାତପ୍ରକାର ଉପମାର କଥା କୁହାଯାଇଛି, ଏହା ସେହି ଶବ୍ଦବ୍ରହ୍ମର ଉପମା । ନଦୀର ଶବ୍ଦ, ଘଣ୍ଟା ବା କାଂସ୍ୟ-ପାତ୍ରତାଡ଼ନ ଜନ୍ୟଶବ୍ଦ, ରଥଚକ୍ର ବା ଭେକରବ, ଗୁହା ବା କୂପରୁ ଆଗତ ପ୍ରତିଧ୍ୱନି—ଆଦି ସବୁ ମଧ୍ୟ ପୂର୍ବୋକ୍ତ ଶବ୍ଦ । ଅର୍ଥାତ୍ ବ୍ରହ୍ମବାଦୀମାନେ ଏହି ସକଳ ଶବ୍ଦ ପରି ହୃଦୟାକାଶରେ ମଧ୍ୟ ଶବ୍ଦକୁ ହିଁ ଶବ୍ଦବ୍ରହ୍ମ କହନ୍ତି । ଏହିପରି ବ୍ରହ୍ମବାଦୀମାନେ ହୃଦୟମଧ୍ୟରେ ଶ୍ରୂୟମାଣ ଶବ୍ଦବ୍ରହ୍ମଙ୍କୁ ଅତିକ୍ରମ କରି ଶବ୍ଦ ଓ ବାକ୍ୟର ଅଗୋଚର ପରଂବ୍ରହ୍ମଙ୍କଠାରେ ବିଲୀନ ହୁଅନ୍ତି । ଯେପରି ନାନା ଫୁଲର ରସ ମଧୁରୂପରେ ପରିଣତ ହେଲେ ସେହି ବିବିଧ

ପୁଷ୍ପରସର ପାର୍ଥକ୍ୟ ଅନୁଭୂତ ହୁଏ ନାହିଁ, ସେହିପରି ବ୍ରହ୍ମବାଦୀମାନେ ପରଂବ୍ରହ୍ମରେ ବିଲୀନ ହୋଇ ଏକମାତ୍ର ବ୍ରହ୍ମସ୍ୱରୂପ ପ୍ରାପ୍ତହୁଅନ୍ତି ବୋଲି ସେମାନଙ୍କର ପାର୍ଥକ୍ୟ ଅନୁଭବ କରାଯାଏ ନାହିଁ । ଅର୍ଥାତ୍ ବ୍ରହ୍ମତ୍ତ୍ୱପ୍ରାପ୍ତିର ପୂର୍ବେ ସେମାନଙ୍କର ଯେପରି ଭେଦ ଅନୁଭୂତ ହୁଏ, ସେହି ଭେଦ ବ୍ରହ୍ମପ୍ରାପ୍ତି ପରେ ଆଉ ଅନୁଭୂତ ହୋଇ ପାରେ ନାହିଁ ।.*

"ଶବ୍ଦାକ୍ଷରଂ ପରଂବ୍ରହ୍ମ ତସ୍ମିନ୍ କ୍ଷୀଣେ ଯଦକ୍ଷରମ୍ ।
ତଦ୍ ବିଦ୍ୱାନକ୍ଷରଂ ଧ୍ୟାୟେଦ୍ ଯଦିଚ୍ଛେଚ୍ଛାନ୍ତିମାତ୍ମନଃ ॥"

ଅମୃତବିନ୍ଦୁ ଉ: ୧୬ ॥

ବିଦ୍ୱାନ୍ ବ୍ୟକ୍ତି ଯଦି ନିଜର ମୁକ୍ତି କାମନା କରେ, ତେବେ ଓଁ କାରରୂପୀ ଶବ୍ଦ-ଅକ୍ଷରବ୍ରହ୍ମ କ୍ଷୀଣ ହେଲେ ଯେଉଁ ଅବିନାଶୀସ୍ୱରୂପ ଅବିନାଶୀ ପରଂବ୍ରହ୍ମ ପରମାତ୍ମା ବିଦ୍ୟମାନ ଅଛନ୍ତି, ସେହି ପରଂବ୍ରହ୍ମଙ୍କୁ କେବଳ ଚିନ୍ତା କରିବ ।

"ଦ୍ୱେ ବ୍ରହ୍ମଣୀ ବେଦିତବ୍ୟେ ଶବ୍ଦବ୍ରହ୍ମ ପରଂ ଚ ଯତ୍ ।
ଶବ୍ଦବ୍ରହ୍ମଣି ନିଷ୍ଣାତଃ ପରଂବ୍ରହ୍ମାଧିଗଚ୍ଛତି ॥"

ମୈତ୍ରୀ ଉ: ଖ ୬ । ୨୨ ଅମୃତବିନ୍ଦୁ ୧୭ ॥

ଶବ୍ଦବ୍ରହ୍ମ ଓ ପରଂବ୍ରହ୍ମଭେଦରେ ବ୍ରହ୍ମ ଦୁଇପ୍ରକାର ଅବଗତ ହୁଅନ୍ତି । ଯେଉଁ ବ୍ୟକ୍ତି ସମ୍ୟକ୍‌ରୂପରେ ଶବ୍ଦବ୍ରହ୍ମ ବିଷୟ ଅବଗତ ହୋଇ ତଦ୍‌ଭିନ୍ନ ପରଂବ୍ରହ୍ମଙ୍କଠାରେ ଶରଣାପନ୍ନ ହୁଏ, ସେ ବ୍ରହ୍ମତ୍ତ୍ୱ ପ୍ରାପ୍ତ ହୁଏ ।

---

* ଅନାହତ ଧ୍ୱନି ଯୋଗ ସମାଧି ବିଷୟରେ ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା ଶିଶୁବେଦରେ କେତେକ ତଥ୍ୟ ଉଲ୍ଲେଖ ରହିଅଛି । ତନ୍ମଧ୍ୟରୁ ଦୁଇ ଗୁରି ପଦ ଏଠାରେ ଉଲ୍ଲେଖ ଯୋଗ୍ୟ –

"ସୁଜନ ଜନ ଜାଣଇଂ ଶିଶୁବେଦବାଣୀଂ ।
ଦୁଇ କର୍ଣ୍ଣେ ତୁଳା ଦେଇ ବୁଝ ପରମାଣିଂ ॥
ଗ୍ରନ୍ଥ ପ୍ରହରେ ଥାଉଂ ଉଠିଣ ବସିବ ।
କର୍ଣ୍ଣର ମୂଳକୁ ସେ ତ ଲକ୍ଷ୍ୟେ କରିବ ॥
ଯେଉଁ ଧ୍ୱନି ଆକାଶର ମଧ୍ୟରେ ପୂରେଇଂ ।
ସେ ଶ୍ରୀ ଅନ୍ତର୍ଯ୍ୟାମୀ ନିରାକାର ସ୍ୱାମୀ ॥"

[ନାଥଧର୍ମ ଓ ଦର୍ଶନ ପୃ: ୭୩]

"ଅଥାନ୍ୟତ୍ରାପ୍ୟୁକ୍ତଂ ଯଃ ଶବ୍ଦସ୍ତଦୋମିତ୍ୟେତଦକ୍ଷରଂ ଯଦସ୍ୟାଗ୍ରଂ ତଚ୍ଛାନ୍ତମଶବ୍ଦମଭୟମଶୋକମାନନ୍ଦଂ ତୃପ୍ତଂ ସ୍ଥିରମଚଳମମୃତମଚ୍ୟୁତଂ ଧ୍ରୁବଂ ବିଷ୍ଣୁସଂଜ୍ଞିତଂ ସର୍ବାପରତ୍ୱାୟ ତଦେତା ଉପାସୀତେତ୍ୟେବଂ ହ୍ୟାହ ।"

ମୈତ୍ରୀ ଉ: ୬ । ୨୩ ଖ ॥

ଅନ୍ୟତ୍ର ମଧ୍ୟ ଉକ୍ତ ହୋଇଅଛି—"ଓଁ" ଏହି ଅକ୍ଷର ହିଁ ଶବ୍ଦାଖ୍ୟ ବ୍ରହ୍ମ । ଏହି ପ୍ରଣବସଂଜ୍ଞକ ଅକ୍ଷରର ଯେ ନାଦାବସାନ ସ୍ଥାନ, ଅର୍ଥାତ୍ ପ୍ରଣବ ଊର୍ଦ୍ଧ୍ୱରେ ଅବସ୍ଥିତ ଯେଉଁ ଅନାଦିବ୍ରହ୍ମ ତାହା କେବଳ ବିଶେଷ ରହିତ ଅଶବ୍ଦସଂଜ୍ଞକ ପରଂବ୍ରହ୍ମ । ଏହି ପରଂବ୍ରହ୍ମ ଭୀତିଶୂନ୍ୟ; ଶୋକହୀନ, ଆନନ୍ଦସ୍ୱରୂପ, ନିତ୍ୟ, ସନ୍ତୁଷ୍ଟ, ସ୍ଥିର, ଦୃଢ଼, ମରଣ ଓ ଭ୍ରଂଶଶୂନ୍ୟ, ଶାଶ୍ୱତ ଓ ବିଷ୍ଣୁସଂଜ୍ଞକ, ଅର୍ଥାତ୍ ବିଷ୍ଣୁଙ୍କର ପରମ ପଦସ୍ୱରୂପ । ଅତଏବ ମୋକ୍ଷପ୍ରାପ୍ତି ନିମନ୍ତେ ଏହି ପରଂବ୍ରହ୍ମଙ୍କର ଉପାସନା କର । ଶ୍ରୁତିରେ ଏହି କଥା ବାରମ୍ବାର ଉଦ୍‌ଘୋଷିତ ହୋଇଅଛି ।

ଆହୁରି ମଧ୍ୟ—

× × × × ×

"ନିଃଶବ୍ଦଃ ଶୂନ୍ୟଭୂତସ୍ତୁ ମୂର୍ଦ୍ଧ୍ନି ସ୍ଥାନେ ତତୋଽଭ୍ୟସେତ୍ ॥"

ମୈତ୍ରୀ ଉ: ୬ । ୨୩ ॥

ଯେ ଅଶବ୍ଦସଂଜ୍ଞକ ପରଂବ୍ରହ୍ମ ଏବଂ ଯେ ଶୂନ୍ୟଭୂତ, ଅର୍ଥାତ୍ ଆକାର ରହିତ ବୋଲି ବିଶେଷଶୂନ୍ୟ, ଏହିପରି ଆତ୍ମସ୍ୱରୂପ ପରଂବ୍ରହ୍ମଙ୍କୁ ସର୍ବୋତ୍କୃଷ୍ଟ ହୃଦୟସ୍ଥାନରେ ଧ୍ୟାନ କରିବ ।

ଆହୁରି ମଧ୍ୟ—

× × × × ×

"ଅନାହତସ୍ୟ ଶବ୍ଦସ୍ୟ ତସ୍ୟ ଶବ୍ଦସ୍ୟ ଯୋ ଧ୍ୱନିଃ ।
ଧ୍ୱନେରନ୍ତର୍ଗତଂ ଜ୍ୟୋତର୍ଜ୍ୟୋତରନ୍ତର୍ଗତଂ ମନଃ ॥"

---

ଏତତ୍ ପରେ—

"ନିଶବଦ ସ୍ନେ ସେ ମନର ଚକ୍ଷୁଟି ।
ଶୁଣିମାକୁ ମନ ଯାଇଂଛି ।
ଶ୍ରୁତିର ମଧ୍ୟେ ଚୈତନ୍ୟରୂପେକ ହୋଇଂ ।
ବ୍ରହ୍ମଧ୍ୱନି ହେତୁ କଳା ଘେନି ରହିଲେ ।
ସ୍ନେହାକୁ ଅଲେଖ-ଜୀବ ସମାଧି ବୋଲି ।"

[ତତ୍ରୈବ ପୃ: ୬୮]

ଯନ୍ମନସ୍ତ୍ରିଜଗତ୍‌ସୃଷ୍ଟିସ୍ଥିତବ୍ୟସନକର୍ମକୃତ୍ ।
ତନ୍ମନୋ ବିଲୟଂ ଯାତ ଯଦ୍ ବିଷ୍ଣୋଃ ପରମଂ ପଦମ୍ ॥''
ମଣ୍ଡଳ ବ୍ରାହ୍ମଣୋପନିଷତ୍ । ୫ । ୨୦ ॥

ଅନାହତନାମକ ହୃଦୟସ୍ଥିତ ଦ୍ୱାଦଶଦଳକମଳରୁ ଉତ୍ଥିତ ଶବ୍ଦର ଧ୍ୱନି ଏବଂ ଧ୍ୱନି ଅନ୍ତର୍ଗତ ପ୍ରତ୍ୟଗ୍ ଜ୍ୟୋତି ଏବଂ ଜ୍ୟୋତିବିକଳ୍ପିତ ସୃଷ୍ଟିସ୍ଥିତି-ଲୟର କର୍ତ୍ତା ମନ ଯହିଁରେ ବିଲୟ ପ୍ରାପ୍ତ ହୁଏ, ସେହି ଲୟର ଅଧିକରଣ ବିଷ୍ଣୁଙ୍କ ପରମପଦ ପରମାତ୍ମାସ୍ୱରୂପ ପରଂବ୍ରହ୍ମଙ୍କଠାରେ ମନ ଲୟ କରିବେ ।

ତା'ପରେ—

''ଇନ୍ଦ୍ରିୟାଣାଂ ମନୋ ନାଥୋ ମନୋନାଥସ୍ତୁ ମାରୁତଃ ।
ମାରୁତସ୍ୟ ଲୟୋ ନାଥସ୍ତଂ ନାଥଂ ଲୟମାଶ୍ରୟଃ ॥
ନିଶ୍ଚେଷ୍ଟୋ ନିର୍ବିକାରଶ୍ଚ ଲୟୋ ଜୀବତି ଯୋଗିନାମ୍ ॥
ଉଚ୍ଛିନ୍ନ ସର୍ବ ସଂକଳ୍ପୋ ନିଃଶେଷାଶେଷଚେଷ୍ଟିତଃ ।
ସ୍ୱାବଗମ୍ୟୋ ଲୟଃ କୋଽପି ମନସାଂ ବାଗ୍‌ଗୋଚରଃ ॥''
॥ ବିନ୍ଦୂପନିଷତ୍ ୬ । ୮୦-୮୬ ॥

ମନ ଇନ୍ଦ୍ରିୟମାନଙ୍କ ପ୍ରଭୁ, ମନର ନାଥ ବାୟୁ, ବାୟୁର ନାଥ ଲୟସ୍ୱରୂପ ଆତ୍ମା ସେହି ବାୟୁର ପ୍ରଭୁ ଲୟସ୍ୱରୂପ ଆତ୍ମାଙ୍କୁ ଅବଲମ୍ବନ କର । ଯେଉଁଠାରେ ସମସ୍ତ ସଂକଳ୍ପ ଉଚ୍ଛେଦ ପ୍ରାପ୍ତ ହୋଇଅଛି ଓ ଯାବତୀୟ ଚେଷ୍ଟା ସମାପ୍ତ, ସେପରି ଅପୂର୍ବ ଲୟ କେବଳ ନିଜର ଅନୁଭବ ବିଷୟ; ଏହା ମନ ଓ ବାକ୍ୟର ଅବିଷୟ ।

୦—ସେହି ଅବାଙ୍ମନସଗୋଚର ସତ୍ୟସ୍ୱରୂପ ପରମାତ୍ମା ପ୍ରାଣର ପ୍ରାଣ, ମନର ମନ ଓ ଆତ୍ମାର ଆତ୍ମାରୂପରେ ଅବସ୍ଥିତ ଓ ବିଶୁଦ୍ଧ ସତ୍ୟ ମହିମା ସ୍ୱରୂପରେ ନିତ୍ୟ ପ୍ରତିଷ୍ଠିତ । ଯଥା—

''କେନେଷିତଂ ପତତି ପ୍ରେଷିତଂ ମନଃ କେନ ପ୍ରାଣଃ ପ୍ରଥମଃ ପ୍ରୈତି ଯୁକ୍ତଃ ।
କେନେଷିତାଂ ବାଚମିମାଂ ବଦନ୍ତି ଚକ୍ଷୁଃ ଶ୍ରୋତ୍ରଂ କଉ ଦେବୋ ଯୁନକ୍ତି ।

"ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନୋ ଯଦ୍ ବାଚୋହ ବାଚଂ ସ ଉ ପ୍ରାଣସ୍ୟ ପ୍ରାଣଃ ଚକ୍ଷୁଷଶ୍ଚକ୍ଷୁରତିମୁଚ୍ୟ ଧୀରାଃ ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି ।"

॥ ତଲବକାର ଉ : କେନ ଉ : ୧-୨ ॥

କେଉଁ କର୍ତ୍ତାଙ୍କର ଇଚ୍ଛାରେ ମନ ନିଯୁକ୍ତ ହୋଇ ନିଜ ବିଷୟ ପ୍ରତି ଗତି କରେ ବା ଚିନ୍ତା କରେ ? କେଉଁ କର୍ତ୍ତାଙ୍କ ଆଜ୍ଞା ଅନୁସାରେ ସକଳ ଇନ୍ଦ୍ରିୟର ପ୍ରଧାନ ପ୍ରାଣବାୟୁ ଆପଣା ବ୍ୟାପାରରେ ପ୍ରବୃତ୍ତ ହୁଏ ? କାହାଦ୍ୱାରା ବା ପ୍ରେରିତ ହୋଇ ଶବ୍ଦ ଓ ବାକ୍ୟ ନିଃସୃତ ହୁଏ ? କେଉଁ ପ୍ରାପ୍ତିମାନ୍ କର୍ତ୍ତା ଚକ୍ଷୁ ଓ କର୍ଣ୍ଣକୁ ସେମାନଙ୍କ ବିଷୟରେ ନିଯୋଜିତ କରନ୍ତି ? ଭୂମିର ଏହି ସବୁ ପ୍ରଶ୍ନର ଉତ୍ତର ଏହିପରି ଯେ, ସେହି ବ୍ରହ୍ମ କେବଳ ଶ୍ରୋତ୍ରର ଶ୍ରୋତ୍ର, ଅନ୍ତଃକରଣର ଅନ୍ତଃକରଣ, ବାକ୍ୟର ବାକ୍ୟ, ପ୍ରାଣର ପ୍ରାଣ ଓ ଚକ୍ଷୁର ଚକ୍ଷୁ; ଅର୍ଥାତ୍ ଯାହାଙ୍କ ଅଧିଷ୍ଠାନହେତୁରୁ ଏହି ସକଳ ଇନ୍ଦ୍ରିୟ ନିଜ ନିଜ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି, ତାହାଙ୍କୁ ହିଁ ବ୍ରହ୍ମ ବୋଲି ବୁଝିବାକୁ ହେବ । ଏହି ହେତୁରୁ ଶ୍ରୋତ୍ରାଦିର ସ୍ୱତନ୍ତ୍ର ଜ୍ଞାନ ଅସମ୍ଭବ । ଏହି ରୂପରେ ଶ୍ରୋତ୍ରାଦିର ଆତ୍ମତ୍ୱ ବା ଚୈତନ୍ୟ ଥିବା ଅସ୍ୱୀକାର କରି ଜ୍ଞାନୀ ମୃତ୍ୟୁ ପରେ ଏହି ସଂସାରରୁ ମୁକ୍ତ ହୁଏ ।

"ପ୍ରାଣସ୍ୟ ପ୍ରାଣମୁତ ଚକ୍ଷୁଷଶ୍ଚକ୍ଷୁରୁତ ଶ୍ରୋତ୍ରସ୍ୟ ଶ୍ରୋତ୍ରମନ୍ନସ୍ୟାନ୍ନଂ ମନସୋ ଯେ ମନୋ ବିଦୁଃ । ତେ ନିଚିକ୍ୟୁର୍ବ୍ରହ୍ମ ପୁରାଣମଗ୍ର୍ୟଂ ମନସୈବାପ୍ତବ୍ୟମ୍ ।"

॥ ବୃହଦାରଣ୍ୟକ-୪ । ୪ । ୧୮ ॥ ଯଜୁଃ-୧୪-୭-୨-୨୧ ॥

ଯେଉଁମାନେ ତାହାଙ୍କୁ ପ୍ରାଣର ପ୍ରାଣ, ଚକ୍ଷୁର ଚକ୍ଷୁ, ଶ୍ରୋତ୍ରର ଶ୍ରୋତ୍ର, ଅନ୍ନର ଅନ୍ନ ଓ ମନର ମନ ବୋଲି ଜାଣନ୍ତି ବା ସେହି ଭାବରେ ଉପାସନା କରନ୍ତି, ସେହିମାନେ ସେହି ପୁରାତନ ସର୍ବଶ୍ରେଷ୍ଠ ବ୍ରହ୍ମଙ୍କୁ ନିଶ୍ଚୟ ଜାଣନ୍ତି, ଅର୍ଥାତ୍ ଲାଭ କରନ୍ତି । ପରମାର୍ଥଜ୍ଞାନଦ୍ୱାରା ଯେଉଁ ମନର କଳୁଷ ଦୂରୀଭୂତ ହୁଏ, କେବଳ ସେହି ସଂସ୍କାରିତ ମନଦ୍ୱାରା ଓ ଗୁରୁଙ୍କ ଉପଦେଶ ଅନୁସାରେ ସେ ଗ୍ରାହ୍ୟ ହୁଅନ୍ତି ।

**୦—ପରଂବ୍ରହ୍ମ କେବଳ ଆତ୍ମାର ଆତ୍ମାସ୍ୱରୂପରେ ପରମପିତା ଓ ଅମୃତମୟ ମଧୁ ସ୍ୱରୂପରେ ବିରାଜିତ ।**

"ତ୍ୱଂ ହି ନଃ ପିତା ବସୋ ତ୍ୱଂ ମାତା ଶତକ୍ରତୋ ବଭୂବିଥ ।
ଅଧାତେ ସୁମ୍ନମୀମହେ ॥"  ॥ ଋକ୍ ସ-୮ । ୯୮ । ୧୧ ॥

ହେ ସମସ୍ତଙ୍କ ଆଶ୍ରୟସ୍ଥଳ, ତୁମେ ଅଗଣିତ ଶୁଭକାର୍ଯ୍ୟର ସମ୍ପାଦକ ଓ ତୁମେ ପରମାତ୍ମା; ତୁମେ କେବଳ ସମସ୍ତଙ୍କର ପିତା ଓ ମାତା; ଅତଏବ ଆପଣଙ୍କୁ ଏହି ରୂପରେ ଉତ୍ତମରୂପେ ମନନ କରୁଁ ।

**"ବ୍ରହ୍ମମେତୁ ମାମ୍ । ମଧୁମେତୁ ମାମ୍ । ବ୍ରହ୍ମମେବ ମଧମେତୁ ମାମ୍ । ଯାସ୍ତେ ସୋମ ପ୍ରଜାବତ୍ସୋଭି ସୋ ଅହମ୍ । ଦୁଃସ୍ୱପ୍ନହନ୍ ଦୁ ରୁଷ୍ହ । ଯାସ୍ତେ ସୋମ ପ୍ରାଣାନ୍ତ୍ସ୍ତାନ୍ ଜୁହୋମି ।।"** ।। ନାରାୟଣ ଉପ: ଅ: ୩୮ । ୧ ।।

ଅର୍ଥାତ୍—ବ୍ରହ୍ମ ବା ପରମତତ୍ତ୍ୱ ମୋତେ ପ୍ରାପ୍ତ ହୁଅନ୍ତୁ, ପରମାନନ୍ଦ-ମାଧୁର୍ଯ୍ୟଯୁକ୍ତ ବସ୍ତୁ ମତେ ପ୍ରାପ୍ତ ହେଉ, ମଧୁର (ଅମୃତ) ବ୍ରହ୍ମ ମତେ ପ୍ରାପ୍ତ ହେଉନ୍ତୁ; ହେ ବ୍ରହ୍ମବିଦ୍ୟା ସହିତ ପରମାତ୍ମନ୍ ! ଯେଉଁ ଦେବ ମନୁଷ୍ୟ ଆଦି ସକଳ ଆପଣଙ୍କର ପ୍ରଜା, ଆପଣଙ୍କ କୃପାରୁ ମୁଁ ମଧ୍ୟ ସେମାନଙ୍କ ମଧ୍ୟରେ ଗଣ୍ୟ ହୋଇ ଆପଣଙ୍କ କରୁଣାର ପାତ୍ର ହେବି । ହେ ସଂସାର-ଦୁଃସ୍ୱପ୍ନନାଶକ ପରମାତ୍ମନ୍ ! ଆପଣ ମୋର ଦୁଃସହ ସଂସାରର ବିନାଶ ସାଧନ କରନ୍ତୁ । ହେ ପରମାତ୍ମନ୍ ! ମୋର ଯେଉଁ ସକଳ ପ୍ରାଣବୃତ୍ତି, ସେ ସମସ୍ତ ଆପଣଙ୍କଠାରେ ସମର୍ପଣ କଲି । ମୋର ମନ, ବାକ୍ ପ୍ରଭୃତି ଇନ୍ଦ୍ରିୟ ସକଳ ଆପଣଙ୍କଦ୍ୱାରା ନିର୍ମିତ ଓ ସେ ସମସ୍ତ ଆପଣଙ୍କଠାରେ କେବଳ ସ୍ଥାପନ କଲି । ମୋର ଇନ୍ଦ୍ରିୟସମୂହ ଯେପରି ବିଷୟ ପ୍ରତି ଧାବିତ ନ ହୋଇ ଆପଣଙ୍କଠାରେ ଏକାଗ୍ର ହେବ-ତାହାହିଁ କେବଳ ମୋର ପ୍ରାର୍ଥନା ।

**"ଆପ୍ୟାୟନ୍ତୁ ମମାଙ୍ଗାନି ବାକ୍ପ୍ରାଣଶ୍ଚକ୍ଷୁଃ ଶ୍ରୋତ୍ରମଥ ବଳମିନ୍ଦ୍ରିୟାଣି ଚ । ସର୍ବାଣି ସର୍ବଂ ବ୍ରହ୍ମୋପନିଷଦଂ ମାହଂ ବ୍ରହ୍ମ ନିରାକୁର୍ଯ୍ୟାଂ ମା ମା ବ୍ରହ୍ମ ନିରାକରୋଦନିରାକରଣମସ୍ତ୍ୱନିରାକରଣଂ ମେଽସ୍ତୁ । ତଦାତ୍ମନି ନିରତେ ଯ ଉପନିଷତ୍ସୁ ଧର୍ମାସ୍ତେ ମୟି ସନ୍ତୁ ତେ ମୟି ସନ୍ତୁ ।।"**

।। ଛାନ୍ଦୋଗ୍ୟ ଉ: ।।

ଅର୍ଥାତ୍ ମୋହର ଅଙ୍ଗସମୂହ ବ୍ରହ୍ମଙ୍କ ଆଶ୍ରୟରେ ତୃପ୍ତି ଲାଭ କରନ୍ତୁ ଓ ମୋର ବାକ୍, ପ୍ରାଣ, ଚକ୍ଷୁ, ଶ୍ରୋତ୍ର ବଳ ଓ ଇନ୍ଦ୍ରିୟସମୂହ ପରିତୃପ୍ତ ହୁଅନ୍ତୁ । ଉପନିଷଦ୍ ପ୍ରତିପାଦ୍ୟ ବ୍ରହ୍ମ ମୋ ନିକଟରେ ପ୍ରକାଶିତ ହୁଅନ୍ତୁ । ମୁଁ ଯେପରି ବ୍ରହ୍ମଙ୍କୁ ନିରାକରଣ ନ କରେ, ଅର୍ଥାତ୍ କୌଣସି ସମୟରେ ମଧ୍ୟ ମୁଁ ଯେପରି ବ୍ରହ୍ମଙ୍କୁ ବିସ୍ମରଣ ନ କରେ, ବ୍ରହ୍ମ ଯେପରି ମତେ ତ୍ୟାଗ ନ କରନ୍ତି; ବ୍ରହ୍ମଙ୍କର ପ୍ରତ୍ୟାଖ୍ୟାନ ନ ହେଉ ବା ମୁଁ ବ୍ରହ୍ମଙ୍କୁ ପ୍ରତ୍ୟାଖ୍ୟାନ ନ କରେ, ତାହାଙ୍କଠାରେ ମୋର ଓ ମୋଠାରେ ତାହାଙ୍କର ସର୍ବଦା ଅବିଚ୍ଛେଦ୍ୟ ସମ୍ବନ୍ଧ ବିଦ୍ୟମାନ ରହୁ । ପୁନଶ୍ଚ ଆତ୍ମଜ୍ଞାନସମ୍ବନ୍ଧୀ ଉପନିଷଦ୍-କଥିତ ସକଳଧର୍ମ ମୋଠାରେ ପ୍ରକାଶିତ ହେଉ ।

"× × × × ×

**ଅସତୋ ମା ସଦ୍‌ଗମୟ, ତମସୋ ମା ଜ୍ୟୋତିର୍ଗମୟ,**
**ମୃତ୍ୟୋ ର୍ମାଽମୃତଂ ଗମୟ** × × × ।।" ।। ବୃହଦାରଣ୍ୟକ— ୧।୩।୨୮ ।।

"ହେ ପ୍ରଭୋ ପରମାତ୍ମନ୍ ! ଆମ୍ଭଙ୍କୁ ଅସତ୍‌କର୍ମ-ଜ୍ଞାନରୁ ପ୍ରକୃତ ଜ୍ଞାନ ଭକ୍ତିମାର୍ଗକୁ ନେଇ ଆତ୍ମଭାବ ପ୍ରଦାନ କର । ହେ ପରମାତ୍ମନ୍ ! ଆମ୍ଭଙ୍କୁ ଅଜ୍ଞାନ-ଅନ୍ଧକାରରୁ ଆପଣଙ୍କ ପରଂଜ୍ୟୋତି ସ୍ୱରୂପକୁ ନେଇ ଯାଅ, ହେ ପରମାତ୍ମନ୍ ! ଆମ୍ଭଙ୍କୁ ମୃତ୍ୟୁକବଳରୁ ଉଦ୍ଧାର କରି ଆପଣଙ୍କ ଅମୃତମୟ କୋଳକୁ ନେଇ ଯାଅ ।"

ଏହିପରି ପ୍ରଭୁ ପରମାତ୍ମାଙ୍କୁ ସକଳ ବାହ୍ୟ ଓ ଆଭ୍ୟନ୍ତର ସଦାଚରଣ ସହ ସମ୍ବନ୍ଧ ସ୍ଥାପନ କରି ସ୍ୱୟଂ ଅନୁଭବ କରିବାକୁ ହେବ ଯେ "ମୋର ସକଳ ବ୍ୟବହାର-ବୃତ୍ତି ସେହି ଜ୍ଞାନର ଆଦେଶରେ କେବଳ ହେଉଅଛି ଓ ଅନ୍ତର୍ବୃତ୍ତି ମଧ୍ୟ ସେହି ଜ୍ଞାନାନୁସାରେ ହେଉଅଛି ; ଏହିପରି ସତ୍ୟ ପ୍ରତିଷ୍ଠା ମନରେ ହେବାଦ୍ୱାରା ମୁଁ ସେହି ଜ୍ଞାନ ଅବଲମ୍ବନ କରିଅଛି—ଏ କଥା ବୁଝାଯିବ ।" ସତ୍ୟର ଅର୍ଥ—ଏକ ଅଦ୍ୱିତୀୟ ନିତ୍ୟ ଅପ୍ରିଭିର ଶାଶ୍ୱତ ଭିତ୍ତି—ଏହିପରି ସୁଦୃଢ଼ ଆଶ୍ରୟଯୁକ୍ତ ଭାବନା ଜାତ ହେବ । ସତ୍ୟ କହିବା ଅର୍ଥ ଏହି ଯେ, କୌଣସି ସତ୍ତାର ଅବିଚଳିତ ଭାବ ବା ତତ୍‌ସମ୍ପୃକ୍ତ "ସର୍ବଭାବର ଅନନ୍ତକ୍ଷମ୍ୟ ଆଶ୍ରୟବଦ୍‌ଭାବ"—ଏହା କେବଳ ସତ୍ୟ ଶବ୍ଦର ମର୍ମ ବା ତାତ୍ପର୍ଯ୍ୟ । ଏହି ହେତୁରୁ କୌଣସି ଅନିତ୍ୟ ବସ୍ତୁକୁ ଲକ୍ଷ୍ୟ ନ ରଖି ଯଦି ନିର୍ବିଶେଷଭାବରେ କେବଳ "ସତ୍ୟସ୍ୱରୂପ ଅଲେଖବ୍ରହ୍ମ"ଙ୍କୁ ଭାବ ଭାବ ମନରେ ଧାରଣ କରାଯାଏ ତାହାହେଲେ ନିର୍ବିଶେଷ ସତ୍ତା—ନିର୍ବିଶେଷ ଆଶ୍ରୟବୋଧ-ରୂପ ଏକପ୍ରକାର ଜ୍ଞାନବୃତ୍ତି ଅନ୍ତରରେ ପ୍ରକାଶ ପାଏ । ସେହି ବୋଧକୁ ଆଶ୍ରୟବୋଧ କୁହାଯାଏ । ପ୍ରଭୁ ପରମାତ୍ମା ସମସ୍ତ ଜଗତକାର୍ଯ୍ୟର ଏହିପରି ଏକମାତ୍ର ମୂଳସତ୍ତା; ସେ ମୂଳ ଆଶ୍ରୟ, ଅତଏବ ସତ୍ୟଶବ୍ଦଦ୍ୱାରା ସେହି କେବଳ ଅଭିହିତ ହୁଅନ୍ତି । ହେ ପ୍ରଭୋ ! ତୁମ୍ଭେ ସତ୍ୟ, ସତ୍ୟର ସତ୍ୟ ଓ ନିତ୍ୟସତ୍ୟ ତୁମ୍ଭେ ଅନୁପମ, ଅର୍ଥାତ୍ ତୁମ୍ଭେ କିମାକାର ଓ କି ରୂପ ତାହା ଜଣା ନାହିଁ । କେବଳ ତୁମ୍ଭେ ଏହି ଅଳ୍ପଜ୍ଞ ଜୀବର ଆଶ୍ରୟ—ସତ୍ୟସ୍ୱରୂପ । ତୁମ୍ଭେ ସର୍ବବ୍ୟାପୀ ଓ ଜୀବମାତ୍ରର ଜନ୍ମ, ସ୍ଥିତି ଓ ଲୟର କାରଣ । ଏହି ଜୀବ ତୁମ୍ଭ ମହିମାରୁ ଜନ୍ମଲାଭ କରିଛି ଇତ୍ୟାଦି । ଏହିପରି ସତ୍ୟସ୍ୱରୂପ ପରମାତ୍ମାଙ୍କ ସତ୍ୟତ୍ୱର ଉଦ୍‌ବୋଧ କରାଯାଏ । ସେହି କେବଳ ଏହି ବିଶ୍ୱର ସତ୍ୟ ଆତ୍ମା, ଅତଏବ ସେ ଆମ୍ଭମାନଙ୍କର ମୂଳସତ୍ତା—ଏହିପରି ଦୃଢ଼ଭାବନାଦ୍ୱାରା ତାହାଙ୍କଠାରେ ସତ୍ୟ ସମ୍ବନ୍ଧ-ସ୍ଥାପନ କରାଯାଏ ।

**"ଇଦମ୍ଭୁ ସତ୍ୟଂ ସର୍ବେଷାଂ ଭୂତାନାଂ ମଧ୍ୟସ୍ୟ ସତ୍ୟସ୍ୟ ସର୍ବାଣି**
**ଭୂତାନି ମଧୁ ଯଶ୍ଚାୟମସ୍ମିନ ସତ୍ୟେ ତେଜୋମୟୋଽମୃତମୟଃ**

ପୁରୁଷୋ ଯଶ୍ଚାୟମଧ୍ୟାତ୍ମଂ ସାତ୍ୟସ୍ତେଜୋମୟୋଽମୃତମୟଃ
ପୁରୁଷୋଽୟମେବ ସ ଯୋଽୟମାତ୍ମେଦମମୃତମିଦଂ ବ୍ରହ୍ମେଦଂ ସର୍ବମ୍ ।।"

ବୃହ: ୨ । ୫ । ୧୨ ।।

ଏହି ସତ୍ୟସ୍ୱରୂପ ପରମାତ୍ମା ସମୁଦାୟ ପ୍ରାଣୀଜଗତର ମଧୁସ୍ୱରୂପ । ସମସ୍ତ ପ୍ରାଣୀ ମଧ୍ୟ ଏହି ସତ୍ୟ ନିକଟରେ ମଧୁରୂପରେ ପ୍ରକାଶିତ । ଯେ ଅମୃତମୟ ଜ୍ୟୋତିର୍ମୟ ପୁରୁଷ ସତ୍ୟରେ ବିଦ୍ୟମାନ ଏବଂ ଯେ ବିଶୁଦ୍ଧ ଚୈତନ୍ୟ, ସେହି ଜ୍ୟୋତିର ଜ୍ୟୋତିର୍ମୟ ସତ୍ୟସ୍ୱରୂପ ପରମେଶ କେବଳ ପରମାତ୍ମା । ସେହି କେବଳ ଅମୃତ ଓ ବ୍ରହ୍ମ ।

"ତଦସ୍ୟ ପ୍ରିୟମଭି ପାଥୋ ଅଶ୍ୟାଂ
ନରୋଯତ୍ର ଦେବୟବୋ ମଦନ୍ତି ।
ଉରୁକ୍ରମସ୍ୟ ସହି ବନ୍ଧୁରିଥା
ବିଷ୍ଣୋଃପଦେ ପରମେ ମଧ୍ୟ ଉତ୍ସଃ ।।" ଋକ୍—୧-୧୫୪ ୫ ।।

ଯେ ଭକ୍ତ ଲୋକ ଅଧିକାର କରି ରହିଅଛନ୍ତି, ସେହି ଦେଦୀପ୍ୟମାନ ସର୍ବବ୍ୟାପୀ ପରଂବ୍ରହ୍ମ-ପରମାତ୍ମାଙ୍କୁ ଲାଭ କରିବାକୁ ଅଭିଳାଷ କରି ଆମ୍ଭଙ୍କ ଲୋକମାନେ ଯେଉଁଠାରେ ତୃପ୍ତି ଲାଭ କରନ୍ତି, ତାହାଙ୍କର ସେହି ପ୍ରିୟ ବ୍ରହ୍ମଲୋକ ସର୍ବତ୍ର ପରିବ୍ୟାପ୍ତ ହେଉ; ଏହା ତାହାଙ୍କର ପରମପଦ, ଯେଉଁଠାରେ ମଧୁର ଉତ୍ସ ବିଦ୍ୟମାନ । ସେ ସମସ୍ତଙ୍କର ହିତକାରୀ ବନ୍ଧୁ ।

"ସ ନୋ ବନ୍ଧୁର୍ଜନିତା ସ ବିଧାତା
ଧାମାନି ବେଦ ଭୁବନାନି ବିଶ୍ୱା ।
ଯତ୍ର ଦେବା ଅମୃତମାନଶାନା-
ସ୍ତୃତୀୟେ ଧାମନ୍ନଧ୍ୟୈରୟନ୍ତ ।।" ଯଜୁ—୩୨ । ୧୦ ।।

ବ୍ରହ୍ମବିଦ୍‌ମାନେ ଯେଉଁ ତୃତୀୟ ଧାମରେ * ମୋକ୍ଷ-ସୁଖଲାଭ କରି ନିଜ ଇଚ୍ଛାରେ ବିଚରଣ କରନ୍ତି, ସେହି ପ୍ରଭୁ ଆମ୍ଭମାନଙ୍କର ବନ୍ଧୁ ଓ ଜନକ । ସେ ସମସ୍ତ ଧାରଣ କରିଅଛନ୍ତି ଏବଂ ସକଳ ପ୍ରାଣୀବର୍ଗର ଜନ୍ମ, ନାମ ଓ ସ୍ଥାନ ତାହାଙ୍କର ଅବଗତ ।

* ତୃତୀୟଧାମ, ଅର୍ଥାତ୍ ଐହିକ ପୃଥିବୀମଣ୍ଡଳରେ ଯେଉଁ ସୁଖଦୁଃଖ ମିଶ୍ରିତ ଭୋଗସ୍ଥାନ, ତାହା ପ୍ରଥମ ଧାମ । ପାରତ୍ରିକ ସ୍ୱର୍ଗଭୋଗାଦି—ପ୍ରାକୃତିକ ସୁଖମିଶ୍ରିତ ଯେଉଁ ଭୋଗସ୍ଥାନ,

"ଯତ୍ରା ସୁପର୍ଣ୍ଣା ଅମୃତସ୍ୟ ଭାଗ ମନିମେଷଂ ବିଦଥାଭିସ୍ୱରନ୍ତି ।
ଇନୋ ବିଶ୍ୱସ୍ୟ ଭୁବନସ୍ୟ ଗୋପାଃ ସମାଧୀରଃ ପାକମତ୍ରାବିବେଶ ॥"

ଋକ୍‌ସଂ—୧-୧୬୪-୨୧ ॥

ଆବରଣ ଅପସାରିତ ହେଲେ ଯାହାଙ୍କଠାରେ ଚକ୍ଷୁରାଦି ଇନ୍ଦ୍ରିୟଗଣ ସ୍ୱ ସ୍ୱ ଭୋଗର ବିଷୟ ଲାଭ କରିବା ନିମନ୍ତେ ଜ୍ଞାନଯୋଗର ଆଶ୍ରୟ ନିଅନ୍ତି, ସେହି ସକଳ ବିଶ୍ୱର ସ୍ୱାମୀ ନିତ୍ୟ ଅବିନାଶୀ ପରଂବ୍ରହ୍ମ ପରମାତ୍ମା ଆମ୍ଭର ନିର୍ମଳ ହୃଦୟରେ ପ୍ରବିଷ୍ଟ ହୋଇଅଛନ୍ତି ।

"ସବା ଅୟମାତ୍ମା ସର୍ବେଷାଂ ଭୂତାନାମଧିପତିଃ ସର୍ବେଷାଂ ଭୂତାନାଂ ରାଜା ତଦ୍ ଯଥା ରଥନାଭୌ ଚ ରଥନେମୌ ଚାରାଃ ସର୍ବେ ସମର୍ପିତା ଏବମେବାସ୍ମିନ୍ନାତ୍ମନି ସର୍ବାଣି ଭୂତାନି ସର୍ବେ ଦେବାଃ ସର୍ବେ ଲୋକାଃ ସର୍ବେ ପ୍ରାଣାଃ ସର୍ବ ଏତ ଆତ୍ମନଃ ସମର୍ପିତାଃ ॥

ବୃହଦାରଣ୍ୟକ—୨ । ୫ । ୧୫ ॥

ସେହି ପରମାତ୍ମା ସମସ୍ତଙ୍କ ଅଧିପତି ଓ ସମସ୍ତଙ୍କର ରାଜା; ଯେପରି ରଥ-ଚକ୍ରର ନାଭିଦେଶରେ ଓ ନେମିଦେଶରେ ସକଳ ଅର ସଂଯୁକ୍ତ ଥାଏ, ସେହିପରି ଏହି ପରମାତ୍ମାଙ୍କ ମଧ୍ୟରେ ସକଳ ଭୂତ, ସକଳ ଦେବତା, ସମୁଦାୟ ଲୋକ ଓ ସମସ୍ତ ପ୍ରାଣୀ ସମର୍ପିତ ହୋଇ ରହିଅଛନ୍ତି ।

"ସ ନୋ ବନ୍ଧୁର୍ଜନିତା ସ ବିଧାତା ଧାମାନି ବେଦ ଭୁବନାନି ବିଶ୍ୱା ।
ଯତ୍ର ଦେବା ଅମୃତ ମାନଶାନାସ୍ତୃତୀୟେ ଧାମାନ୍ୟଭ୍ୟୈରୟନ୍ତ ।
ପରିଦ୍ୟାବାପୃଥିବୀ ଯନ୍ତି ସଦ୍ୟଃ ପରିଲୋକାନ୍ ପରିଦିଶଃ ପରିସୁବଃ ।
ଋତସ୍ୟ ତନ୍ତୁଂ ବିତତଂ ବିଚୃତ୍ୟ ତଦପଶ୍ୟତ୍‌ଭଦଭବତ୍ ପ୍ରଜାସୁ ॥"

ନାରାୟଣ ଉ: ୧ । ୧୭-୧୮ ॥

ସେହି ପରମାତ୍ମା ଆମ୍ଭମାନଙ୍କର ହିତକାରୀ ବନ୍ଧୁ, ସେ ଜଗତର ସ୍ରଷ୍ଟା; ଏହି ହେତୁରୁ ସେ ଆମ୍ଭମାନଙ୍କର ପରମ ପିତାମାତା ଅଟନ୍ତି । ସେ ନିଖିଳ ଜଗତ୍ ଓ ଦେବଗଣଙ୍କର ଯୋଗ୍ୟସ୍ଥାନସମୂହକୁ ଜାଣନ୍ତି ଅର୍ଥାତ୍ ଯେଉଁଠାରେ ଇନ୍ଦ୍ରାଦି ଦେବଗଣ ଅମୃତପାନ କରି ନିଜ

ତାହା ଦ୍ୱିତୀୟ ଧାମ; କିନ୍ତୁ ପରମାତ୍ମା ଉକ୍ତ ସୁଖଦୁଃଖରୁ ଅତୀତ 'ନିତ୍ୟ ପରମାନନ୍ଦସ୍ୱରୂପ ତୃତୀୟ ଧାମ ଅଟନ୍ତି ।

ନିଜ ସ୍ଥାନ ଅଧିକାର କରନ୍ତି ଏବଂ ପରମେଶ୍ୱର ସେ ସକଳ ବିଷୟ ଜାଣି ଦ୍ୟୁଲୋକ, ଭୂଲୋକ, ଅନ୍ତରିକ୍ଷ ଓ ପ୍ରାଚ୍ୟାଦି ଦିଗମାନଙ୍କରେ ପରିବ୍ୟାପ୍ତ ହୋଇ ଅବସ୍ଥାନ କରନ୍ତି । ଯେ ସତ୍ୟସ୍ୱରୂପ ପରମାତ୍ମାଙ୍କର ସର୍ବଦା ଅବିଚ୍ଛିନ୍ନଭାବ ଜାଣିପାରି ଏବଂ ଗୁରୁପଦେଶ ଓ ବେଦାନ୍ତବାକ୍ୟରୁ ନିଶ୍ଚିତଭାବରେ ବ୍ରହ୍ମଙ୍କ ଦର୍ଶନ ଲାଭ କରିଅଛନ୍ତି, ସେ ବ୍ରହ୍ମସ୍ୱରୂପ ଲାଭ କରନ୍ତି ।

ଉପର୍ଯ୍ୟୁକ୍ତ ବେଦ ଓ ଉପନିଷଦ୍ ବର୍ଣ୍ଣନାସମୂହରୁ ବୁଝାଗଲା ଯେ, ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା ସମସ୍ତ ଜ୍ଞାନର ଏକମାତ୍ର ଚରମସିଦ୍ଧାନ୍ତ । ଅତଏବ ସେହି ସର୍ବାଧିପତି, ସର୍ବଶାସକ, ସର୍ବନିୟନ୍ତା ପ୍ରଭୁ ପରଂବ୍ରହ୍ମ ପରମାତ୍ମା କେବଳ ସକଳ ଜୀବାତ୍ମାର ପରମପିତା-ମାତା, ପରମପ୍ରିୟ ଓ ପରମ ଅମୃତସ୍ୱରୂପ ଉପାସ୍ୟ ଅଟନ୍ତି । ଏହି ହେତୁରୁ ପ୍ରବୁଦ୍ଧ ଗୁରୁ ମହିମାସ୍ୱାମୀଙ୍କ ଆଦେଶମତେ ଯତ୍ନପୂର୍ବକ ପ୍ରତ୍ତନିତ୍ୟ ଏକ ଅଲେଖ ପରଂବ୍ରହ୍ମ ପରମାତ୍ମାଙ୍କୁ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗରେ ନିଃଶରଣଦ୍ୱାରା ଶରଣଦର୍ଶନ କରିବା ମୁମୁକ୍ଷୁମାନଙ୍କର କର୍ତ୍ତବ୍ୟ । ଏହାହିଁ ପ୍ରକୃତ ଓ ପରମ ଉତ୍କୃଷ୍ଟ ପନ୍ଥା ।

**୦—ବ୍ରହ୍ମଙ୍କୁ କେବଳ ପ୍ରିୟ ଓ ଆନନ୍ଦସ୍ୱରୂପରେ ନିତ୍ୟ ଉପାସନା କରିବ ।**

ବ୍ରହ୍ମ କେବଳ ଏକମାତ୍ର ପ୍ରିୟ ଓ ଆନନ୍ଦସ୍ୱରୂପ ଅଟନ୍ତି, ତଦ୍‌ଭିନ୍ନ ଅନ୍ୟ ସକଳ ଭୌତିକ ପଦାର୍ଥକୁ ଯେଉଁ ବ୍ୟକ୍ତି ପ୍ରିୟ ମନେ କରିବ, ତାହାର ପ୍ରିୟ ଓ ଆନନ୍ଦ ସବୁ ନଷ୍ଟ ହୁଏ ଏବଂ ତଜ୍ଜନିତ ଶୋକ-ସନ୍ତାପରୁ କେବେ ହେଲେ ସେ ନିଷ୍କୃତି ପାଇପାରେ ନାହିଁ ।

ଏହି ସମ୍ବନ୍ଧରେ ଯାଜ୍ଞବଲ୍କ୍ୟ କହି ଅଛନ୍ତି—

**"ତଦେତତ୍ ପ୍ରେୟଃ ପୁତ୍ରାତ୍ ପ୍ରେୟୋ ବିତ୍ତାତ୍ ପ୍ରେୟୋଽନ୍ୟସ୍ମାତ୍ ସର୍ବସ୍ମାଦନ୍ତରତରଂ ଯଦୟମାତ୍ମା ।**

**ସ ଯୋଽନ୍ୟମାତ୍ମନଃ ପ୍ରିୟଂ ବ୍ରୁବାଣଂ ବ୍ରୂୟାତ୍ ପ୍ରିୟଂରୋତ୍ସ୍ୟତୀତୀଶ୍ୱରୋ ହ ତଥୈବ ସ୍ୟାଦାତ୍ମାନମେବ ପ୍ରିୟମୁପାସୀତ ସ ଯ ଆତ୍ମାନମେବ ପ୍ରିୟମୁପାସ୍ତେ ନ ହାସ୍ୟ ପ୍ରିୟଂ ପ୍ରମାୟୁକଂ ଭବତି ॥"**

ବୃହଦାରଣ୍ୟକ—୧ । ୪ । ୮ ॥

ଯେଉଁ ହେତୁରୁ ସକଳ ବସ୍ତୁକୁ ଅନାଦର କରି ମୁମୁକ୍ଷୁ ଜୀବ କେବଳ ଆତ୍ମତତ୍ତ୍ୱର ଜ୍ଞାନ ସକାଶେ ଅଗ୍ରସର ହେବ, ସେ ସମ୍ବନ୍ଧରେ କହୁଅଛନ୍ତି—ଏହି ଆତ୍ମତତ୍ତ୍ୱବିଷୟ ବା ପରମାତ୍ମା ପୁତ୍ର ବିତ୍ତ ଆଦି ସକଳ ଜାଗତିକ ବସ୍ତୁମାନଙ୍କ ଅପେକ୍ଷା ଅଧିକ ପ୍ରିୟତର ।

ପ୍ରାଣାଦିଠାରୁ ମଧ୍ୟ ଏହା ଅନ୍ତରରେ । ଅତଏବ ଏହା ଅତି ପ୍ରିୟବସ୍ତୁ । ଯେଉଁ ଆତ୍ମପ୍ରିୟବାଗ୍ମି ପୁତ୍ର ବିତ୍ତାଦି ପ୍ରିୟବସ୍ତୁକୁ କହିବେ ଯେ, "ତୁମ୍ଭର ପ୍ରିୟ ପଦାର୍ଥ ସକଳ ନଷ୍ଟ ହେବ" ତାହା ହେଲେ ତଦ୍ୱାରା ପୁତ୍ରଧନାଦିର ଧ୍ୱଂସଶୀଳତା ହେତୁରୁ ସକଳ ସାଂସାରିକ ପଦାର୍ଥ ମଧ୍ୟ ଧ୍ୱସ୍ତ ହେବ; କିନ୍ତୁ ଆତ୍ମା ସାଂସାରିକ ବସ୍ତୁ ନୁହେଁ, ଅତଏବ ଆତ୍ମାର ଧ୍ୱଂସ ଅସମ୍ଭବ; ଏହି ସବୁ କାରଣରୁ ସକଳ ବସ୍ତୁଠାରୁ ପ୍ରିୟ ବୋଲି ଆତ୍ମାଙ୍କୁ ଉପାସନା କରିବା କର୍ତ୍ତବ୍ୟ । ବିଶେଷରେ; ଯେଉଁ ବ୍ୟକ୍ତି ପରମାତ୍ମାଙ୍କୁ ପ୍ରିୟ ବୋଲି ତାଙ୍କର ଉପାସନା କରେ, ତାହାର ପ୍ରିୟ ଆତ୍ମା କଦାପି ଧ୍ୱଂସ ହୋଇ ନ ପାରେ । ଅତଏବ—

"ଆତ୍ମାନଂ ଏବ ପ୍ରିୟଂ ଉପାସୀତ ।"

ଅର୍ଥାତ୍ ମୁମୁକ୍ଷୁ ବ୍ୟକ୍ତି ପରମାତ୍ମାଙ୍କୁ ବହୁ ପ୍ରୀତିପୂର୍ବକ ଉପାସନା କରିବା କର୍ତ୍ତବ୍ୟ ଏହା ପରେ ଶ୍ରୁତି କହେ—

×　×　×　×　×

"ଯଦ୍ ବୈ ତତ୍ ସୁକୃତମ୍ । ରସୋ ବୈ ସଃ । ରସଂ ହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି । କୋ ହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ । ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍ । ଏଷ ହ୍ୟେବାନନ୍ଦୟତି ।"

ଯଦା ହ୍ୟେବୈଷ ଏତସ୍ମିନ୍ନଦୃଶ୍ୟେଽନାତ୍ମ୍ୟେଽନିରୁକ୍ତେଽନିଲୟନେଽଭୟଂ ପ୍ରତିଷ୍ଠାଂ ବିନ୍ଦତେ । ଅଥ ସୋଽଭୟଂ ଗତୋ ଭବତି । ଯଦା ହ୍ୟେବୈଷ ଏତସ୍ମିନ୍ନୁଦରମନ୍ତରଂ କୁରୁତେ । ଅଥ ତସ୍ୟ ଭୟଂ ଭବତି । ତତ୍ତ୍ୱେବ ଭୟଂ ବିଦୁଷୋଽମନ୍ୱାନସ୍ୟ ॥"

ତୈତ୍ତିରୀୟ ଉପ: ଅ ୨ । ୭୧ ॥

ପ୍ରସିଦ୍ଧ ଜଗତ୍କାରଣ ବ୍ରହ୍ମ ସ୍ୱୟଂ କର୍ତ୍ତା; କାରଣ, ସେ ରସସ୍ୱରୂପ; ଅର୍ଥାତ୍ ତୃପ୍ତିକର ଆନନ୍ଦସ୍ୱରୂପ । ଜୀବ ଏହି ରସ (ଆନନ୍ଦ) ଲାଭ କରି ସୁଖୀ ହୋଇଥାଏ । ହୃଦୟାକାଶରେ ନିହିତ ଏହି ଆତ୍ମା ଯଦି ଆନନ୍ଦରୂପୀ ନ ହୁଅନ୍ତେ, ତାହା ହେଲେ ମନୁଷ୍ୟର ପ୍ରାଣ ବା ଅପାନ କ୍ରିୟା ନିମନ୍ତେ ଚେଷ୍ଟା ହୋଇ ପାରନ୍ତା ନାହିଁ । ଅତଏବ, ଏହି ପରମାତ୍ମା କେବଳ ଜନସମୂହକୁ ଆନନ୍ଦଦାନ କରିବା ସମ୍ଭବ ।

ଦର୍ଶନର ଅବିଷୟ, ଅଶରୀର ଅନିରୁକ୍ତ (ଅନିର୍ବଚନୀୟ) ଏବଂ ଅନିଳୟନ ବା ଅନାଧାର ଏହି ବ୍ରହ୍ମଙ୍କଠାରେ ଜୀବ ନିର୍ଭୟରେ ସ୍ଥିତିଲାଭ କରେ । ଅର୍ଥାତ୍ ବ୍ରହ୍ମଭାବରେ ଜୀବ ଅବସ୍ଥିତି କରେ; ସେତେବେଳେ ସେ ନିର୍ଭୟତ୍ୱ ପ୍ରାପ୍ତ ହୁଏ; କିନ୍ତୁ ଯେତେବେଳେ

ଉକ୍ତ ପ୍ରକାର ବ୍ରହ୍ମଙ୍କଠାରେ ଜୀବ ସ୍ୱଳ୍ପମାତ୍ର ଭେଦ ଦର୍ଶନ କରେ, ସେତେବେଳେ ତା'ର ଭୟ ଜାତ ହୁଏ । ଅର୍ଥାତ୍ ଆତ୍ମଭେଦଦର୍ଶୀ ବିଦ୍ୱାନ୍ ନିକଟରେ ସେହି ଅଭୟ ବ୍ରହ୍ମ ହିଁ ଭୟଙ୍କର ହୋଇ ଥାଆନ୍ତି ।

ମନୁଷ୍ୟ ସୁଖାନ୍ୱେଷୀ—

"ଆନନ୍ଦେନ ଖଲ୍ୱ ଜାତାନି ଜୀବନ୍ତି ।"

ଯେଉଁଠାରେ ଆନନ୍ଦର ରସ, ସେହିଠାରେ ମନୁଷ୍ୟର ପ୍ରେମ । ଉପନିଷଦ୍‌ରେ ଅଛି—ଅନ୍ୟ ବସ୍ତୁରେ ବା ବ୍ୟକ୍ତିଠାରେ ଆମ୍ଭମାନଙ୍କର ଯେଉଁ ଆନନ୍ଦ ଜାତ ହୁଏ ତାହାର କାରଣ ଏହି—ଆନନ୍ଦସ୍ୱରୂପୀ ବ୍ରହ୍ମ ସେଠାରେ ପ୍ରଚ୍ଛନ୍ନଭାବରେ ରହି ଅଛନ୍ତି । ଅତଏବ ବ୍ରହ୍ମ ଭିନ୍ନ ଅନ୍ୟ କୌଣସି ପ୍ରେମାସ୍ପଦ କେହି ନାହିଁ । ଅତଏବ ଉପନିଷଦ୍‌ରେ ବ୍ରହ୍ମଙ୍କର ନାମ ଭୂମାନନ୍ଦ ବୋଲି ବର୍ଣ୍ଣିତ ହୋଇଅଛି । ସେହି ଆନନ୍ଦ ବଚନାତୀତ, ମନରୁ ଅତୀତ ଓ ଅଭୟପ୍ରଦ । ଯଥା—

"ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।
ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କୁତଶ୍ଚନେତି ॥"

ତୈତ୍ତିରୀୟ ୨ । ୯ । ୧ ।

ଅର୍ଥାତ୍—ବାକ୍ୟ ଓ ମନ ଯାହାଙ୍କର ସ୍ୱରୂପ ପ୍ରକାଶ କରିବାକୁ ବା ଧାରଣା ନିମନ୍ତେ ଅସମର୍ଥ ହୋଇ ନିବୃତ୍ତ ହୁଏ, ସେହି ବ୍ରହ୍ମସ୍ୱରୂପୀ ଆନନ୍ଦବିତ୍ ପୁରୁଷ କୌଣସିଠାରୁ ଭୀତ ହୁଏ ନାହିଁ; ଅର୍ଥାତ୍ ତାହାଙ୍କର ଜନ୍ମ ମୃତ୍ୟୁ ଭୟ ରହେ ନାହିଁ । ଜୀବ ଯେଉଁ ଅବସ୍ଥାରେ ଅନ୍ୟ କିଛି ଦର୍ଶନ, ଶ୍ରବଣ ବା ବୋଧ କରେ, ତଜ୍ଜନ୍ୟ ତା'ର ସେହି ସୁଖ କ୍ଷୁଦ୍ର, ଅର୍ଥାତ୍ ନଶ୍ୱର ଓ ଅଳ୍ପ, ତାହା ମୁଖ୍ୟ ଆନନ୍ଦ ନୁହେଁ; କିନ୍ତୁ ବ୍ରହ୍ମାନନ୍ଦ ଏହାର ସମ୍ପୂର୍ଣ୍ଣ ବିପରୀତ; ସୁତରାଂ ଏହା ପରମ ଆନନ୍ଦମୟ । କଳ୍ପନାମୟୀ ଅବିଦ୍ୟାଜନିତ ବିଷୟେନ୍ଦ୍ରିୟ-ସମ୍ପର୍କ କାଳର ଯେଉଁ ଆନନ୍ଦ ଅନୁଭୂତ ହୁଏ, ତାହା ସେହି ବ୍ରହ୍ମାନନ୍ଦର ଅଂଶମାତ୍ର; ଅତଏବ ବ୍ରହ୍ମାନନ୍ଦ ସକଳ ଆନନ୍ଦର ଉପଜୀବ୍ୟ ।

ଏ ବିଷୟରେ ବୃହଦାରଣ୍ୟକ ଶ୍ରୁତିରେ କଥିତ ଅଛି—

"ସଲିଳ ଏକୋ ଦ୍ରଷ୍ଟାଽଦ୍ୱୈତୋ ଭବତ୍ୟେଷ ବ୍ରହ୍ମଲୋକଃ ସମ୍ରାଡ଼ିତ ହୈନମନୁଶଶାସ ଯାଜ୍ଞବଲ୍କ୍ୟ ଏଷାସ୍ୟ ପରମା ଗତିରେଷାସ୍ୟ

ପରମା ସମ୍ପଦେଷୋଽସ୍ୟ ପରମୋ ଲୋକ ଏଷୋଽସ୍ୟ ପରମ ଆନନ୍ଦ
ଏତସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି ।।"

ବୃ: ୪ । ୩ । ୩୨ ।

ମହର୍ଷି ଯାଜ୍ଞବଲ୍କ୍ୟ ରାଜର୍ଷି ଜନକଙ୍କୁ ଏହିପରି ଉପଦେଶ ଦେଲେ—ହେ ରାଜନ୍ ! ସଲିଳ ପରି ସ୍ୱଚ୍ଛ ସେହି ଏକ ଅଦ୍ୱିତୀୟ ସର୍ବଦର୍ଶୀ ପରମେଶ୍ୱର କେବଳ ବ୍ରହ୍ମଲୋକ ସେହି କେବଳ ପରମଗତି, ଜୀବର ସେହି ପରମ ସମ୍ପଦ, ପରମଲୋକ ଓ ପରମଆନନ୍ଦ । ଏହି ଆନନ୍ଦସ୍ୱରୂପୀ ପରମାତ୍ମାଙ୍କର କଣାମାତ୍ର ଆନନ୍ଦ ସମୁଦାୟ ଜୀବ-ଜଗତ ଉପଭୋଗ କରୁଛନ୍ତି । ଏ ବିଷୟରେ ଶଙ୍କରାଚାର୍ଯ୍ୟଙ୍କ ମତ—

"ଅଖଣ୍ଡାମେବୈତାଂ ଘଟିତ-ପରମାନନ୍ଦଲହରୀଂ
ପରିଧ୍ୱସ୍ତଦ୍ୱୈତପ୍ରମିତମମଳାଂ ବୃତ୍ତିମନିଶମ୍ ।
ଅମୁଞ୍ଚାନଃ ସ୍ୱାତ୍ମନ୍ୟନୁପମସୁଖେ ବ୍ରହ୍ମଣି ପରେ
ରମସ୍ୱ ପ୍ରାରବ୍ଧଂ କ୍ଷପୟ ସୁଖବୃତ୍ତ୍ୟା ତ୍ୱମନୟା ।।"

ସର୍ବବେଦାନ୍ତ ସି: ସା: ୭୯୨ ।।

ଏହି ଅଖଣ୍ଡ ପରମାନନ୍ଦତରଙ୍ଗଯୁକ୍ତ, ଦ୍ୱୈତଜ୍ଞାନଶୂନ୍ୟ, ନିର୍ମଳ ଚିତ୍ତବୃତ୍ତିକୁ ତ୍ୟାଗ ନ କରି ତୁମ୍ଭେ ଆତ୍ମା ସହିତ ଅଭିନ୍ନ ପରଂବ୍ରହ୍ମଙ୍କଠାରେ ସତତ ରତ ହୁଅ, ଏହି ସୁଖକାରକ ଚିତ୍ତବୃତ୍ତିଦ୍ୱାରା ପ୍ରାରବ୍ଧ ନାଶ କର ।

"ବ୍ରହ୍ମାନନ୍ଦରସାସ୍ୱାଦତତ୍ପରେଣୈବ ଚେତସା ।
ସମାଧିନିଷ୍ଠିତୋ ଭୂତ୍ୱା ତିଷ୍ଠ ବିଦ୍ୱନ୍ ସଦା ମୁନେ ।।"

ସ: ସି: ସା: ୭୯୩ ।।

ହେ ବ୍ରହ୍ମବିତ୍ ମୁନି; ସର୍ବଦା ସମାଧିନିଷ୍ଠ ହୋଇ ବ୍ରହ୍ମାନନ୍ଦରସାସ୍ୱାଦନରେ ତତ୍ପର ହୁଅ । ପଞ୍ଚଦଶୀକାର ବିଦ୍ୟାରଣ୍ୟ ମୁନି ମଧ୍ୟ ଏ ବିଷୟରେ କହିଛନ୍ତି—

"ମିଥ୍ୟାଭିଯୋଗଦୋଷସ୍ୟ ପ୍ରାୟଶ୍ଚିତ୍ତତ୍ୱସିଦ୍ଧୟେ ।
କ୍ଷମାପୟନ୍ତିବାତ୍ମାନଂ ସାକ୍ଷିଣଂ ଶରଣଂ ଗତଃ ।।
ଆବୃତ୍ତପାପନୁତ୍ୟର୍ଥଂ ସ୍ନାନାଦ୍ୟାବର୍ତ୍ତିତେ ଯଥା ।
ଆବର୍ତ୍ତୟନ୍ନିବ ଧ୍ୟାନଂ ସଦା ସାକ୍ଷିପରାୟଣଃ ।।"

ପଞ୍ଚଦଶୀ ୭ । ୨୩୫ । ୨୩୬ ।।

"ଯୌବରାଜ୍ୟେ ସ୍ଥିତୋ ରାଜପୁତ୍ରଃ ସାମ୍ରାଜ୍ୟବାଞ୍ଛୟା ।
ରାଜାନୁକାରୀ ଭବତ ତଥା ସାକ୍ଷ୍ୟନୁକାର୍ଯ୍ୟୟମ୍ ॥
ଯୋ ବ୍ରହ୍ମ ବେଦ ବ୍ରହ୍ମୈବ ଭବତେ୍ୟଷ ଇତ ଶ୍ରୁତଃ ।
ଶ୍ରୁତ୍ୱା ତଦେକଚତ୍ତଃ ସନ୍ ବ୍ରହ୍ମ ବେତ୍ତି ନ ଚେତରତ୍ ॥"

ପଞ୍ଚଦଶୀ--୭ । ୨୩୯ । ୨୪୦ ॥

ଯେପରି ମିଥ୍ୟାପବାଦରୂପକ ଦୋଷର ଶାନ୍ତିନମନ୍ତେ ଅପବାଦକର୍ତ୍ତା କ୍ଷମା ପ୍ରାର୍ଥନା କରେ, ସେହିପରି ମିଥ୍ୟାଭ୍ରମାତ୍ମକ ସାଂସାରିତ୍ୱରୂପକ ଆରୋପିତ ଅପବାଦର ଶାନ୍ତିନମନ୍ତେ ଜୀବ ସାକ୍ଷୀ ଚୈତନ୍ୟଙ୍କର ଶରଣାପନ୍ନ ହୁଏ ।

ଯେପରି ବହୁବାର କରିଥିବା ପାପର ନାଶ ନମନ୍ତେ ଲୋକ ବାରମ୍ବାର ସ୍ନାନାଦ ପ୍ରାୟଶ୍ଚିତ୍ତ ଅନୁଷ୍ଠାନ କରେ, ସେହିପରି ଆରୋପିତ ଦୋଷର ଶାନ୍ତିନମନ୍ତେ ଜୀବ ସର୍ବଦା ସାକ୍ଷୀ ଚୈତନ୍ୟ ଧ୍ୟାନବିଷୟରେ ତତ୍ପର ହୁଏ ।

ଯେପରି ରାଜାଙ୍କ ସହକାରୀଭାବରେ ନଯୁକ୍ତ ରାଜପୁତ୍ର ସାମ୍ରାଜ୍ୟରେ ଅଭିଷିକ୍ତ ହେବା ବାସନାରେ ରାଜାଙ୍କ ଅନୁଗାମୀ, ଅର୍ଥାତ୍ ପ୍ରଜାରଞ୍ଜନ ଆଦ ବ୍ୟାପାରରେ ତତ୍ପର ହୁଏ, ସେହିପରି ଜୀବ ସକଳ ନୟମିତ କାର୍ଯ୍ୟରେ ନଯୁକ୍ତ ହୋଇ ମଧ୍ୟ ପୂର୍ଣ୍ଣାନନ୍ଦ ଉପଭୋଗ ବାସନାରେ ସାକ୍ଷୀସ୍ୱରୂପ ପରଂବ୍ରହ୍ମ ଚୈତନ୍ୟଙ୍କ ଉପାସନା ବିଷୟରେ ତାହାଙ୍କୁ ଅନୁସରଣ କରେ ।

ଯେଉଁ ବ୍ୟକ୍ତି ବ୍ରହ୍ମଙ୍କୁ ଜାଣେ ସେ ସ୍ୱୟଂ ବ୍ରହ୍ମୈକତ୍ୱ ଲାଭ କରେ—ଏହି ଶ୍ରୁତିବାକ୍ୟ ଅନୁଧ୍ୟାନ କରି ତଦେକାଗ୍ର ହୋଇ କେବଳ ପରଂବ୍ରହ୍ମଙ୍କୁ ଜାଣିବାକୁ ଇଚ୍ଛା କରିବ, ଇତର ବିଷୟ ପରିତ୍ୟାଗ କରିବ ।

ଏ ବିଷୟରେ ଆଚାର୍ଯ୍ୟ ଶଙ୍କର ଉଦ୍‌ବୋଧ ଦେଇଛନ୍ତି—

"ଏକାନ୍ତେ ସୁଖମାସ୍ୟତାଂ" ପରତରେ ଚେତଃ ସମାଧୀୟତାଂ ।
ପୂର୍ଣ୍ଣାତ୍ମା ସୁସମୀକ୍ଷ୍ୟତାଂ ଜଗଦଦଂ ତଦ୍‌ବ୍ୟାପିତଂ ଦୃଶ୍ୟତାମ୍ ॥
ପ୍ରାକ୍‌କର୍ମ ପ୍ରବିଲୋପ୍ୟତାଂ ଚତବଲାନ୍ନାପ୍ୟୁତ୍ତରେ ଶ୍ଳିଷ୍ୟତାଂ ।
ପ୍ରାରବ୍ଧସ୍ତ୍ୱିହ ଭୁଜ୍ୟତାମଥ ପରଂବ୍ରହ୍ମାତ୍ମନା ସ୍ଥୀୟତାମ୍ ॥"

ସାଧନପଞ୍ଚକ । ୫ ।

ଏକାନ୍ତସ୍ଥାନରେ ଆନନ୍ଦପୂର୍ବକ ଅବସ୍ଥାନ କରି ପରଂବ୍ରହ୍ମଙ୍କଠାରେ ଚିତ୍ତ ଅର୍ପଣ କର । ପୂର୍ଣ୍ଣ ଆତ୍ମାଙ୍କୁ ଦର୍ଶନ କରିବାସକାଶେ ଯତ୍ନବାନ୍ ହୁଅ, ସେହି କେବଳ ଏହି ଜଗତରେ ସର୍ବତ୍ର ପରିବ୍ୟାପ୍ତ—ଏପରି ଅନ୍ତଃଚକ୍ଷୁରେ ଦର୍ଶନ କର; ପୂର୍ବକୃତ ଦୁଷ୍କର୍ମର ବିଲୟ ସାଧନ କର, ଭବିଷ୍ୟତରେ ଯେପରି କର୍ମରେ ଲିପ୍ତ ନ ହେବ, ଜ୍ଞାନବଳରେ ସେଥିପାଇଁ ପ୍ରୟାସ କର, ପ୍ରାରବ୍ଧକର୍ମର ଫଳଭୋଗ କର ଏବଂ ପରଂବ୍ରହ୍ମରୂପରେ ଅବସ୍ଥିତ ହୁଅ ।

## —ଆତ୍ମଶରଣାପନ୍ନ ମୁମୁକ୍ଷୁର ପୂର୍ଣ୍ଣତ୍ୱ—

ଏକ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମଙ୍କଠାରେ ଯେପରି ବ୍ରହ୍ମଜ୍ଞାନଭକ୍ତିଯୁକ୍ତ ହୋଇ ଶରଣ, ସ୍ମରଣ, ଦର୍ଶନ ଓ ଭଜନ ଐକାନ୍ତିକ ଚିତ୍ତରେ ପ୍ରତିଦିନ ଅଭ୍ୟାସ କରିବାକୁ ହୁଏ ଓ ସେହି ପରଂବ୍ରହ୍ମ ଯେପରି ନିତ୍ୟ ମଧୁମୟ ଅମୃତସ୍ୱରୂପ ଏବଂ ଆତ୍ମାର ଏକମାତ୍ର ପ୍ରିୟତମରୂପ-ପିତାମାତା ବନ୍ଧୁଙ୍କ ସମ୍ବନ୍ଧରେ ଅଭେଦଭାବରେ ନିତ୍ୟ ପ୍ରତିଷ୍ଠିତ, ସେହି କଥା ଉପର୍ଯ୍ୟୁକ୍ତ ପ୍ରମାଣଭୂତ ଶ୍ରୁତିବାକ୍ୟଦ୍ୱାରା ପ୍ରତିପାଦିତ ହେଲା । ମୁମୁକ୍ଷୁ ମାନବ ସେହି ଏକମାତ୍ର ଅବାଙ୍ମନସଗୋଚର ଏକ ଅଲେଖ ପରଂବ୍ରହ୍ମଙ୍କୁ ସର୍ବତୋଭାବରେ ଓ ସର୍ବାତ୍ମରୂପରେ ପୂର୍ଣ୍ଣ ଆସ୍ତିକ ବୁଦ୍ଧିରେ ମନନ କରିବା ସର୍ବଦା ବିଧେୟ । ଉକ୍ତ ଭାବନାରେ ଯେପରି କୌଣସି କୁଚିନ୍ତା ହୃଦୟରେ ପ୍ରବେଶ ନ କରେ, ସେଥିନିମନ୍ତେ ଗୁରୁଙ୍କ ଉପଦେଶ ଓ ବେଦାନ୍ତ ବାକ୍ୟରେ ଆସ୍ଥା ସ୍ଥାପନ କରି ପରଂବ୍ରହ୍ମ ପରମାତ୍ମାଙ୍କର ସଚ୍ଚିତ୍ ସ୍ୱରୂପ ପ୍ରତି ଆକୃଷ୍ଟ ହୋଇ ଯେପରି ବିନ୍ଦୁମାତ୍ର ସଂଶୟ, ଅବହେଳା, ଉପେକ୍ଷା ଓ ବିନ୍ଦୁମାତ୍ର ପ୍ରାଣଶୂନ୍ୟତା ନ ରହେ । ପ୍ରଦୋଷକାଳ ଓ ପ୍ରତ୍ୟୁଷବ୍ରାହ୍ମମୁହୂର୍ତ୍ତରେ ବ୍ରହ୍ମ-ଶରଣ-ଦର୍ଶନବିଷୟରେ ଆଜୀବନ ଯେପରି ବିସ୍ମରଣ ନ ହୁଏ, ସେଥିପ୍ରତି ସର୍ବଦା ଜାଗ୍ରତ ରହିବ । ସେହି ସତ୍ୟସ୍ୱରୂପ ମହିମାମୟ ପ୍ରଭୁ ସର୍ବଦା ହୃଦୟରେ ବିରାଜିତ ଅଛନ୍ତି; ସେ ସର୍ବତ୍ର ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷଭାବରେ, ସର୍ବସ୍ୱରୂପରେ, ନିର୍ଲିପ୍ତଭାବରେ ବିଦ୍ୟମାନ; ଏହିପରି ଅନ୍ତଃକରଣରେ ଭାବ—"ହେ ପ୍ରଭୋ ! ଆମ୍ଭ ସମସ୍ତଙ୍କର ଅସ୍ତିତ୍ୱର ଭିତ୍ତି ଆପଣଙ୍କର ମହିମା ଓ ସେହି ମହିମାରେ ଏହି ବିଶ୍ୱର ଉତ୍ପତ୍ତି, ସ୍ଥିତି ଓ ଲୟ ହେଉଅଛି, ଆପଣ ବୋଧରୂପୀ—ମହାମହିମାନ୍ୱିତ; ଏହି ଆତ୍ମା ଆପଣଙ୍କର ସେହି ଅସୀମ ମହିମାର୍ଣ୍ଣବରେ ପ୍ଲାବିତ ହେଉ, ଐକାନ୍ତିକପୂର୍ଣ୍ଣଭକ୍ତି ଆପଣଙ୍କର ପୂର୍ଣ୍ଣାନନ୍ଦରୂପୀ ଅଭୟପାଦରେ ସୁଦୃଢ଼ ହେଉ—ଏହି ଆତ୍ମା ତୁମ୍ଭର ଅଭୟପାଦରେ ଅନାବୃତ ହୋଇ ରହୁ" ଏହିପରି ବିଶୁଦ୍ଧ ଅଦ୍ୱିତୀୟ ଭକ୍ତିଭାବନାଦ୍ୱାରା ପ୍ରଭୁଙ୍କ ଅଭୟପଦ-ଶରଣାଳୟରେ ଅଖଣ୍ଡିତଭାବେ ଏକୀଭୂତ ହେବାର ନାମ ପୂର୍ଣ୍ଣ ବିଶୁଦ୍ଧାତ୍ମଜ୍ଞାନଭକ୍ତିଯୋଗ ।

ସେହି ମହିମାମୟ ସତ୍ୟଜ୍ଞାନାନନ୍ତ ଆନନ୍ଦସ୍ୱରୂପୀ ପରଂବ୍ରହ୍ମ-ପରମାତ୍ମାଙ୍କଠାରେ ସତ୍ୟପୂର୍ଣ୍ଣ ଆସ୍ତିକ୍ୟବୋଧରେ ଶରଣ ଭଜନ ଦର୍ଶନ ଯେଉଁ ପରିମାଣରେ ଘନୀଭୂତ ହୁଏ,

ଯେଉଁ ପରିମାଣରେ ଉତ୍ତରୋତ୍ତର ଆଶ୍ରୟ-ଆଶ୍ରିତବୋଧଜନ୍ୟ ଆତ୍ମୀୟବୋଧ ଓ ପୂର୍ଣ୍ଣ ଆତ୍ମବୋଧ ଜାଗରିତ ହୁଏ । ଏହି ରୂପରେ ଭକ୍ତି ପୂର୍ବରୁ ବର୍ଣ୍ଣିତ ହୋଇ ଆସୁଅଛି । ସତ୍ୟରେ ସୁପ୍ରତିଷ୍ଠିତ ଭକ୍ତି ଓ କର୍ମ ଅନୁସାରେ ନିମ୍ନଲିଖିତ ତିନିପ୍ରକାର ଭକ୍ତି ଉଦିତ ହୁଏ—ପ୍ରଥମ—ବିଶେଷ-ଭାବରେ ପୂର୍ଣ୍ଣ ସତ୍ୟବୋଧରେ ସେହି ପରଂବ୍ରହ୍ମ ପରମାତ୍ମାଙ୍କଠାରେ ପିଣ୍ଡପ୍ରାଣାଦି ଆତ୍ମାକୁ ନିବେଦନ କରି ଶରଣପ୍ରାପ୍ତି ଘନୀଭୂତ ହେଲେ ଆଶ୍ରୟ-ଆଶ୍ରିତବୋଧ ପ୍ରକାଶିତ ହୁଏ—ଏହା ମୃଦୁ ଶରଣନାମରେ ଅଭିହିତ । ଦ୍ୱିତୀୟ—ପୂର୍ବୋକ୍ତ ଶରଣପ୍ରାପ୍ତି ଅଧିକ ଘନୀଭୂତ ହେଲେ ଆତ୍ମୀୟବୋଧଦ୍ୱାରା ପ୍ରାଣ ତାହାଙ୍କ ସଚ୍ଚିତ୍‌ସ୍ୱରୂପକୁ ଆଲିଙ୍ଗନ କରି ଆନନ୍ଦାନୁଭବ କରେ—ଏହା ମଧ୍ୟମ ଶରଣତ୍ୱ ଏବଂ ତୃତୀୟ—ଚରମ ଘନୀଭୂତ ହେଲେ ପୂର୍ଣ୍ଣ ସତ୍ୟ-ଐକାତ୍ମ୍ୟ-ବୋଧ ଉଦିତ ହୁଏ, ଯେତେବେଳେ ସେ, ମୁଁ, ମୋର—ଇତ୍ୟାଦି ଅବିଦ୍ୟାଜନିତ ଆପେକ୍ଷିକ ଭେଦର ବିଲୋପ ଘଟେ । ଏହା ପରମାତ୍ମାଙ୍କଠାରେ ଶରଣପୂର୍ଣ୍ଣତା ହେତୁରୁ ଅନ୍ତିମାଶ୍ର ଶରଣଭକ୍ତିର ଲକ୍ଷଣ * । ଏହିପରି ଭକ୍ତ ଆଶ୍ରୟ-ଆଶ୍ରିତବୋଧରେ ସତ୍ୟନିଷ୍ଠ ହୋଇ ସେହି ଏକ ଅଦ୍ୱିତୀୟ ପରମାତ୍ମାଙ୍କୁ ମନେ କରେ ଯେ, କେବଳ ସେହି ସତ୍ୟ ପରମପଦ ଏହି ଜୀବନର ଆଶ୍ରୟ, ସତ୍ୟ-ରୂପରେ ମୁଁ ସର୍ବତୋଭାବରେ ସେହି ପ୍ରଭୁଙ୍କ ତେଜରେ ରହିଅଛି, ତାହାଙ୍କଦ୍ୱାରା ଚାଳିତ ହେଉଅଛି । ତାହାଙ୍କ କର୍ତ୍ତୃତ୍ୱରେ ନିଖିଳବ୍ରହ୍ମାଣ୍ଡ ସୃଷ୍ଟ ହୋଇ ତାହାଙ୍କ ଅନୁଶାସନରେ ନିୟମିତ ହେଉଅଛି । ତଦ୍‌ଭିନ୍ନ ଅନ୍ୟ କେହି କର୍ତ୍ତା ନାହିଁ । ଏହି ପ୍ରକାର ଭାବସମୂହ ବ୍ୟାବହାରିକ ଅଧିକାରରେ ଆସେ । ଏହିପ୍ରକାର ଜ୍ଞାନର ଅଧୀନ ହୋଇ ଜୀବନର ଗତି ନିୟନ୍ତ୍ରିତ ହୋଇ ରହେ; ଅଥବା ସେହି ବିଷୟରେ ସର୍ବଦା ଚେଷ୍ଟା କରିବାକୁ ହୁଏ । ଜୀବନପନ୍ଥାର ପ୍ରତ୍ୟେକ କେନ୍ଦ୍ରସ୍ଥାନରେ ସେହି ପ୍ରଭୁଙ୍କୁ ଅନୁଭବ କରି ପ୍ରତ୍ୟେକ କାର୍ଯ୍ୟରେ କର୍ତ୍ତାସ୍ୱରୂପ ବରଣ କରେ ଏବଂ ପ୍ରତ୍ୟେକ କ୍ଳାନ୍ତ ଜୀବନରେ ସେହି ପ୍ରଭୁଙ୍କ ଅଭୟ ଶ୍ରୀଚରଣରେ ଶିରକୁ ନତ କରି ଶରଣାପନ୍ନ ହେବାଦ୍ୱାରା ଶାନ୍ତିତତ୍ତ୍ୱ ଲାଭ କରେ । କେବଳ ବାହ୍ୟ ଆଚରଣ ନୁହେଁ, ପ୍ରତିମୁହୂର୍ତ୍ତର ସତ୍ୟବୋଧଦ୍ୱାରା ତାହାର ଜୀବନ ଏହି ପ୍ରକାର ଆଶ୍ରୟରେ ପରଂବ୍ରହ୍ମାଶ୍ରିତ ହୋଇ ରହେ ଓ ସେ ନିଜ ଆତ୍ମାକୁ ପୂର୍ଣ୍ଣ ସତ୍ୟବୋଧଦ୍ୱାରା ସତ୍ୟ ବୋଲି ଅନୁଭବ କରେ ।

ଏହି ହେତୁରୁ ଶ୍ରୁତିବାକ୍ୟ ସେହି ଭକ୍ତ ସମ୍ବନ୍ଧରେ ସସ୍ନେହ ଓ ପ୍ରେମାମୃତ ଅମରବାଣୀ ପ୍ରକାଶ କରିଛି—

"ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ ।।"

ଅର୍ଥାତ୍ ହେ ବିଶ୍ୱବାସୀ ! ଅମୃତର ପୁତ୍ରଗଣ, ତୁମ୍ଭେମାନେ ଅବହିତ ଚିତ୍ତରେ ଶ୍ରବଣ କର । ଯଦି ଜ୍ଞାନାମୃତ ପାନରେ ଅମର ହେବାକୁ ଇଚ୍ଛା କର, ତେବେ ଜ୍ଞାନମୟ ସର୍ବଗୁଣାଧାର

* ଏହିପରି ପରମାତ୍ମାଙ୍କଠାରେ ଶରଣାପନ୍ନ ଭକ୍ତ-ଭାବନାଦ୍ୱାରା ପରଲୋକପ୍ରାପ୍ତି ଓ ମୁକ୍ତ ସ୍ୱଦେହରେ ଅନୁଭବ କରିପାରେ । ପ୍ରଥମସ୍ତର । ଅର୍ଥାତ୍ ଆସ୍ତିକ୍ୟବୋଧରେ ବିଶିଷ୍ଟଭାବରେ ପ୍ରାଣରେ ସତ୍ୟ

ସର୍ବଶକ୍ତିମାନ୍ ମହାମହିମାନ୍ୱିତ ସର୍ବବ୍ୟାପୀ ଅଖଣ୍ଡ ଚିନ୍ମୟ ପରଂବ୍ରହ୍ମଙ୍କ ସତ୍ତାରେ ନିରନ୍ତର ନିମଗ୍ନ ହୁଅ । ବ୍ରହ୍ମାନନ୍ଦରସ ପାନକରି ପୂର୍ଣ୍ଣ ଅମରତ୍ୱ ଲାଭକର । ଏହିପରି ପୂର୍ଣ୍ଣତ୍ୱପ୍ରାପ୍ତି ବିଷୟରେ ଶ୍ରୁତିବାକ୍ୟ ଘୋଷଣା କରେ—

"ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥"

ବୃହଦ୍ ଆ : ୫ । ବ୍ରା ୧ ॥

ପୂର୍ଣ୍ଣମଦଃ —ଯେ ପୂର୍ଣ୍ଣ, କୌଣସି ପ୍ରକାରେ ପୂର୍ଣ୍ଣରୁ ବ୍ୟାବୃତ୍ତ ନୁହନ୍ତି, ଅର୍ଥାତ୍ ସର୍ବବ୍ୟାପୀ । ପୂରଣାର୍ଥକ ପୃଧାତୁରୁ କର୍ତ୍ତା-ଅର୍ଥରେ 'କ୍ତ' ପ୍ରତ୍ୟୟଦ୍ୱାରା ପୂର୍ଣ୍ଣଶବ୍ଦ ନିଷ୍ପନ୍ନ, ଅତଏବ—ଯେ ସର୍ବପରିପୂରକରୂପଅର୍ଥ ସଙ୍ଗତ । 'ଅଦଃ' ଶବ୍ଦ ପରୋକ୍ଷାର୍ଥବାଚକ (ଯାହା ଇନ୍ଦ୍ରିୟର ବିଷୟ ନୁହେଁ) ସର୍ବନାମ, ଅର୍ଥାତ୍ ସେହି କେବଳ ଏହି ଅବାଚଙ୍ମନସଗୋଚର ପରମବ୍ରହ୍ମ, ଯେ ପୂର୍ଣ୍ଣ ଏବଂ ଆକାଶ ପରି ସର୍ବବ୍ୟାପୀ, ନିରନ୍ତର ଓ ଉପାଧିବର୍ଜିତ । ସେହି କେବଳ ବ୍ୟବହାର-ଦଶାରେ ନାମ ଓ ରୂପ ଆକାରରେ ଅବସ୍ଥିତ ଥିଲେ; ସେହି କେବଳ 'ଇଦଂ'—ଶବ୍ଦବାଚ୍ୟ ସୋପାଧିକ, ତଥାପି ପୂର୍ଣ୍ଣ, ଅର୍ଥାତ୍ ସେ ସ୍ୱାଭାବିକ ପରମାତ୍ମରୂପରେ ବ୍ୟାପକ, କିନ୍ତୁ ଉପାଧିପରିଚ୍ଛିନ୍ନ କାର୍ଯ୍ୟାକାରରେ ନୁହନ୍ତି । ସେହି ଏହି ବିଶେଷ-ଅବସ୍ଥାପନ୍ନ କାର୍ଯ୍ୟାତ୍ମକ ବ୍ରହ୍ମ (ସଗୁଣ) କାରଣରୂପୀ ପୂର୍ଣ୍ଣବ୍ରହ୍ମରୁ ଉଦ୍ରିକ୍ତ, ଅର୍ଥାତ୍ ଉଦ୍‌ଗତ ହୁଅନ୍ତି । ଯଦ୍ୟପି ସେ କାର୍ଯ୍ୟାବସ୍ଥାରେ ଉଦ୍‌ଗତ, ତଥାପି ଯାହା ସ୍ୱୀୟ ପୂର୍ବତନସ୍ୱରୂପ ପରିପୂର୍ଣ୍ଣ ପରମାତ୍ମଭାବ,

ଜାଗ୍ରତ ହେଲେ, ସାଲୋକ୍ୟ-ମୁକ୍ତିର ତୁଳ୍ୟ ଭାବ ପ୍ରାଣରେ ଆଧିପତ୍ୟ ବିସ୍ତାର କରେ । ଯେପରି କି ତାହାଙ୍କ ସଙ୍ଗରେ ଏକଲୋକ, ଏକକ୍ଷେତ୍ରରେ ଅବସ୍ଥାନ କରିଅଛୁ—ଏହିପରି ବହୁକଥା ଅନୁଭବ କରେ । ଭକ୍ତି ପ୍ରତିଷ୍ଠାର ଦ୍ୱିତୀୟସ୍ତରର, ଅର୍ଥାତ୍ ଆଶ୍ରୟ-ଆଶ୍ରିତବୋଧରେ ସତ୍ୟନିଷ୍ଠ ହେଲେ ସାମୀପ୍ୟ ମୁକ୍ତିର ଭାବ ଜାଗ୍ରତ ହୁଏ । ଯେପରିକି ତାହାଙ୍କ ସମୀପରେ ରହିଅଛୁ, ତାହାଙ୍କ ପଛେ ପଛେ ଫେରୁଅଛୁ—ଏହି ଭାବ ମନରେ ଆସେ । ତୃତୀୟ ସ୍ତରରେ, ଅର୍ଥାତ୍ ସତ୍ୟ ଭକ୍ତି ପ୍ରତିଷ୍ଠା ବିଶେଷଭାବରେ ଘନୀଭୂତ ହେଲେ ଯେତେବେଳେ ଆତ୍ମୀୟଭାବ ଉଦିତ ହୁଏ, ସେତେବେଳେ ଅତିସାମୀପ୍ୟ ଲାଭରେ ପୂର୍ଣ୍ଣ ସମ୍ବନ୍ଧ ହେତୁରୁ ନିଜର କିଛୁ ଅଭିମାନ ରହେ ନାହିଁ । ଆତ୍ମାର ସମ୍ପୂର୍ଣ୍ଣ ନିବେଦନରେ ଆତ୍ମତନ୍ମୟତା ଲାଭ ହୁଏ । ତଦ୍ଧର୍ମ ତଦାକାର ଚେତନା ଗ୍ରହଣ କରେ । ଏହା ସାରୂପ୍ୟମୁକ୍ତି । ତା ସହିତ ସାଯୁଜ୍ୟମୁକ୍ତି ମଧ୍ୟ ଲାଭ ହୁଏ । ସେ ସମୟରେ ସେହି ସାରୂପ୍ୟ ଅବସ୍ଥାନ ସମ୍ପୂର୍ଣ୍ଣ ହୋଇ ସେହି ଅଦ୍ୱିତୀୟ ପରମାତ୍ମାଙ୍କଠାରେ ସମାଧିସ୍ଥ ହୋଇ ନିଜର ଆତ୍ମଚେତନାର ବିଲୟ ସାଧିତ ହୁଏ—ଏହାର ନାମ ସ୍ୱଦେହ ମୁକ୍ତି । ଏହି ବିଲୟ ଅବସ୍ଥା ପରେ ବିଦେହ ବା କୈବଲ୍ୟ ମୁକ୍ତି ଲାଭ ହୁଏ ।

ତାହା ତ୍ୟାଗ କରନ୍ତୁ ନାହିଁ । ବିଦ୍ୟାବଳରେ ଏହି କାର୍ଯ୍ୟାତ୍ମକ ପୂର୍ଣ୍ଣବ୍ରହ୍ମଙ୍କର ସ୍ୱାଭାବିକ ପୂର୍ଣ୍ଣତ୍ୱ ଗ୍ରହଣ କରି, ଅର୍ଥାତ୍ ଆନନ୍ଦରସମୟତ୍ୱରୂପ ଆତ୍ମାର ସ୍ୱରୂପ ଗ୍ରହଣ କରି ଏବଂ ଅବିଦ୍ୟାକୃତ ଭୂତ ଓ ଇନ୍ଦ୍ରିୟୋପାଧି ସମ୍ପର୍କ ଅଧୀନ ଚିଦାଭାସସ୍ୱରୂପତା ଦୂରକରି କେବଳ ପୂର୍ଣ୍ଣ ହିଁ, ଅର୍ଥାତ୍ ଅନ୍ତର-ବାହ୍ୟଶୂନ୍ୟ ଏକମାତ୍ର ପ୍ରଜ୍ଞାନ ଘନ ବିଶୁଦ୍ଧବ୍ରହ୍ମ କେବଳ ଅବଶିଷ୍ଟ ଥାଆନ୍ତି, ଏହା କେବଳ ଶ୍ରୁତିର ତାତ୍ପର୍ଯ୍ୟ ।

ଶରଣାପନ୍ନ ଭକ୍ତହୃଦୟରେ ଉପର୍ଯ୍ୟୁକ୍ତଭାବରେ ପ୍ରଭୁଙ୍କ ପୂର୍ଣ୍ଣତ୍ୱ ପ୍ରକାଶ ପାଇଲେ ସେ ବିଶୁଦ୍ଧ ଅଦ୍ୱୈତଭାବରେ ସେହି ପୂର୍ଣ୍ଣ ପରଂବ୍ରହ୍ମଙ୍କୁ ନିମ୍ନଲିଖିତଭାବରେ ପ୍ରଣାମ କରି ତାହାଙ୍କର ଶରଣାପନ୍ନ ହୋଇ ନିଶ୍ଚିନ୍ତ ରହେ ।

"ସର୍ବଭୂତାନ୍ତରସ୍ଥାୟ ନିତ୍ୟମୁକ୍ତଚିଦାତ୍ମନେ ।
ପ୍ରତ୍ୟକ୍ ଚୈତନ୍ୟରୂପାୟ ମହ୍ୟମେବ ନମୋନମଃ ।।
ତ୍ୱଂ ବାହମସ୍ମି ଭଗବୋ ଦେବତେଽହଂ ବୈ ତ୍ୱମସି ।
ତୁଭ୍ୟଂ ମହ୍ୟମନନ୍ତାୟ ମହ୍ୟଂ ତୁଭ୍ୟଂ ଚିଦାତ୍ମନେ ।।
ନମୋ ମହ୍ୟଂ ପରେଶାୟ ନମସ୍ତୁଭ୍ୟଂ ଶିବାୟ ଚ ।
କିଂ କରୋମି କ୍ୱ ଗଚ୍ଛାମି କିଂ ଗୃହ୍ଣାମି ତ୍ୟଜାମି କିମ୍ ।।
ଯନ୍ମୟା ପୂରିତଂ ବିଶ୍ୱଂ ମହାକଲ୍ପାମ୍ବୁ ନା ଯଥା ।
ଅନ୍ତଃସଙ୍ଗ ବହିଃ ସଙ୍ଗମାତ୍ମସଙ୍ଗଞ୍ଚ ଯସ୍ତ୍ୟଜେତ୍ ।
ସର୍ବସଙ୍ଗନିବୃତ୍ତାତ୍ମା ସମାମେତ ନ ସଂଶୟଃ ।।"

ବରାହୋପନିଷତ୍ ଉ : ୨ । ୩୩ । ୩୭ ।।

ଏହି ଆତ୍ମା ସକଳ ପ୍ରାଣୀମାନଙ୍କ ମଧ୍ୟରେ ଅବସ୍ଥିତ, ନିତ୍ୟ, ମୁକ୍ତ, ଜ୍ଞାନସ୍ୱରୂପୀ, ପ୍ରତ୍ୟଗାତ୍ମା ଓ ସେହି ଆତ୍ମାର ଉଦ୍ଦେଶ୍ୟରେ ନମସ୍କାର କରୁଅଛି । ହେ ଭଗବନ୍ ! ହେ ଦେବ ! ଆପଣ ମୋର ଆତ୍ମାସ୍ୱରୂପ ଏବଂ ଏହି ଆତ୍ମା ତୁମ୍ଭସ୍ୱରୂପ; ଆପଣ ଅନନ୍ତ, ତୁମ୍ଭର ଓ ମୋହର ଏପରି ଭେଦଶୂନ୍ୟ; ତୁମ୍ଭେ ଓ ଏହି ଆତ୍ମା ଚିଦାତ୍ମସ୍ୱରୂପ, ସେହି ଚିଦାତ୍ମସ୍ୱରୂପଙ୍କୁ ନମସ୍କାର କରୁଅଛି । ପରମାତ୍ମା ପରମେଶ୍ୱରଙ୍କଠାରୁ ଏହି ଆତ୍ମା ଅଭିନ୍ନ, ଅତଏବ ସେହି ଅଭିନ୍ନ ଆତ୍ମାଙ୍କୁ ନମସ୍କାର । ସେହି ମଙ୍ଗଳମୟ ପରମାତ୍ମାଙ୍କ ଉଦ୍ଦେଶ୍ୟରେ ନମସ୍କାର । ମୁଁ ବା କ'ଣ କରିବି, କେଉଁ ବସ୍ତୁକୁ ଗ୍ରହଣ ଓ କାହାକୁ ତ୍ୟାଗ କରିବି; କାରଣ ବ୍ରହ୍ମବ୍ୟତୀତ ଦ୍ୱିତୀୟ କୌଣସି ବସ୍ତୁ ନାହିଁ । ଅତଏବ ତବ-ମମ-ଭେଦ ମଧ୍ୟ କିଛି ନାହିଁ । ଏକ ଅଦ୍ୱିତୀୟ ବ୍ରହ୍ମଙ୍କୁ ନମସ୍କାର କରିବା ବିଶୁଦ୍ଧ ଅଦ୍ୱୈତଭାବର ନମସ୍କାର ଅଟେ । ଯେଉଁ ହେତୁରୁ ଆମ୍ଭେ ପରଂବ୍ରହ୍ମ ସକଳ

ବିଶ୍ୱ—ମହାପ୍ରଳୟ ଜଳଦ୍ୱାରା ପୂର୍ଣ୍ଣ ହୋଇ ରହିଅଛୁ, ଆମ୍ଭର ଗମନାଦିର ସମ୍ଭାବନା ନାହିଁ । ଯେ ଅନ୍ତଃସ୍ଥିତ ସୁଖାଦି ଓ ବହିଃସ୍ଥିତ ଦେହ ଏବଂ ଇନ୍ଦ୍ରିୟପ୍ରଭୃତି ଆତ୍ମୀୟ ସ୍ୱଜନଙ୍କ ସଙ୍ଗ ପରିତ୍ୟାଗ କରନ୍ତି, ସେ ସମସ୍ତସଙ୍ଗରହିତ ହୋଇ ଆମ୍ଭଙ୍କୁ (ପରଂବ୍ରହ୍ମଙ୍କୁ) ପ୍ରାପ୍ତ ହୁଅନ୍ତି— ଏ ବିଷୟରେ କୌଣସି ସଂଶୟ ନାହିଁ ।

ଗୌଡ଼ପାଦ ଆଚାର୍ଯ୍ୟ ମଧ୍ୟ ଏହି ବର୍ଣ୍ଣିତ ନମସ୍କାର ବିଷୟରେ ବ୍ୟାଖ୍ୟା କରିଛନ୍ତି—

"ଦୁର୍ଦ୍ଦର୍ଶମତିଗମ୍ଭୀରମଜଂ ସାମ୍ୟଂ ବିଶାରଦମ୍ ।
ବୁଦ୍ଧ୍ୱା ପଦମନାନାତ୍ୱଂ ନମସ୍କୁର୍ମୋ ଯଥାବଳମ୍ ॥"

ମାଣ୍ଡୂକ୍ୟ ଉ: ଗୌଡ଼ପାଦ କାରିକା ୧୦୦ ॥

ପରମାର୍ଥତତ୍ତ୍ୱ ଦୁର୍ଦ୍ଦର୍ଶ, ଅସ୍ତିନାସ୍ତି ଆଦି ଭାବଚତୁଷ୍ଟୟବର୍ଜିତ, ଅତି ଦୁର୍ବିଜ୍ଞେୟ, ଅତିଗମ୍ଭୀର, ଅର୍ଥାତ୍ ମହାସମୁଦ୍ର ତୁଲ୍ୟ ଗମ୍ଭୀର ଓ ଅକୃତଜ୍ଞମାନଙ୍କର ଦୁଷ୍ପ୍ରବେଶ୍ୟ; ତାହା ଅଜ, ସମ, ବିଶୁଦ୍ଧ, ଅଦ୍ୱୈତ ଓ ନାନାତ୍ୱ ବିହୀନ—ଏହା ଭାବି ତାହାକୁ ନମସ୍କାର କରୁଅଛୁ । ଯୋଗବାଶିଷ୍ଠରେ ମଧ୍ୟ ଅଛି—

"ପ୍ରତ୍ୟକ୍ ଚେତନରୂପାୟ ସ୍ୱରୂପାୟ ନମୋଽସ୍ତୁତେ ।
ଚିତୟେ ଚେତ୍ୟମୁକ୍ତାୟ ଯୁକ୍ତ୍ୟା ଯୁକ୍ତାୟ ଯୋଗ୍ୟୟା ॥
ସର୍ବାବଭାସଦୀପାୟ ମହ୍ୟମେବ ନମୋଽସ୍ତୁତେ ।
ଚେତ୍ୟନର୍ମ୍ମୁକ୍ତଚିଦ୍ରୂପଂ ବିଷ୍ଣୁର୍ ବିଶ୍ୱାବପୂରକମ୍ ॥"

ଯୋଗବା: ଉପ: ସା: ୨୭ । ୨୩। ୨୪ ॥

ହେ ପ୍ରତ୍ୟଗାତ୍ମନ୍ ! ଚେତନରୂପିନ୍ ! ହେ ଚିତ୍, ଆପଣଙ୍କୁ ନମସ୍କାର । ସମସ୍ତ ବସ୍ତୁର ପ୍ରକାଶକ ଚେତ୍ୟବିମୁକ୍ତ ଚିତ୍ସ୍ୱରୂପ ଆପଣଙ୍କୁ ନମସ୍କାର । ଆପଣ କେବଳ ଏହି ଆତ୍ମା, ଅତଏବ ଏହି ଆତ୍ମାକୁ ମଧ୍ୟ ନମସ୍କାର । ଏହି ଆତ୍ମା ମଧ୍ୟ ଅଚେତ୍ୟ, ସତ୍, ଚିନ୍ମାତ୍ର, ମହତ୍, ଆକାଶପରି ଅନନ୍ତ, ଅଣୁଠାରୁ ମଧ୍ୟ ସୂକ୍ଷ୍ମ ।

"ଯତ୍ ସର୍ବଂ ଖଳ୍ୱିଦଂ ବ୍ରହ୍ମ ତଜ୍ଜଲାନିତ ଚ ସ୍ଫୁଟମ୍ ।
ଶ୍ରୁତ୍ୱା ହ୍ୟ ବୀର୍ଯ୍ୟତେ ସାମ୍ନି ତସ୍ମୈ ବ୍ରହ୍ମାତ୍ମନେ ନମଃ ॥"

ଯୋଗବା: ନି: ୨୧୭ । ୨୫ ॥

ଯାହାଙ୍କୁ ଛାନ୍ଦୋଗ୍ୟ ଉପନିଷଦରେ "ସର୍ବଂ ଖଳ୍ୱିଦଂ ବ୍ରହ୍ମ ତଜ୍ଜଲାନିତି ଶାନ୍ତ ଉପାସୀତ"—ଏହି ବାକ୍ୟଦ୍ୱାରା ଅଧିକାରୀ ମୁକ୍ତାତ୍ମା ସାଧୁମାନେ ହସ୍ତାଗତ ଅପରୋକ୍ଷପଦାର୍ଥ ସ୍ୱରୂପରେ ନିର୍ଦ୍ଦେଶ କରିଅଛନ୍ତି, ସେହି ସଚ୍ଚିଦାନନ୍ଦୈକରସ ପରଂବ୍ରହ୍ମଙ୍କୁ ପ୍ରଣାମ କରୁଅଛୁ । ଏ ସମ୍ବନ୍ଧରେ ବେଦାନ୍ତୀ ଆଚାର୍ଯ୍ୟ ପ୍ରକାଶାନନ୍ଦଙ୍କ ବଚନ ଏହିପରି—

"ଯସ୍ୟ ମେ ଜଗତାଂ କର୍ତ୍ତୁଃ କାର୍ଯ୍ୟେରପହୃତାତ୍ମନଃ ।
ଆବିର୍ଭୂତ ପରାନନ୍ଦ ଆତ୍ମା ପ୍ରାପ୍ତଃ ଶ୍ରୁତେର୍ବଳାତ୍ ॥
ପରାମୃଷ୍ଟୋଽସି ଲବ୍‌ଧୋଽସି ପ୍ରୋଷିତୋଽସି ଚିରଂ ମୟା ।
ଇଦାନୀଂ ତ୍ୱାମହଂ ପ୍ରାପ୍ତୋ ନ ତ୍ୟଜାମି କଦାଚନ ॥
ତ୍ୱାଂ ବିନା ନାଃସ୍ୱରୂପୋଽହଂ ମାଂ ବିନା ତ୍ୱଂ କଥଂ ସ୍ଥିତଃ ।
ଦିଷ୍ଟ୍ୟେଦାନୀଂ ମୟା ଲବ୍‌ଧୋ ଯୋଽସି ସୋଽସି ନମୋଽସ୍ତୁତେ ॥
ଦେହାଭିମାନନିଗଡ଼ୈର୍ବଦ୍ଧୋଽବୋଧାଖ୍ୟତସ୍କରୈଃ ।
ଚିରଂ ତେ ଦର୍ଶନାଦେବ ବିଚ୍ଛିନ୍ନଂ ବନ୍ଧନଂ କ୍ଷଣାତ୍ ॥"

ବେଦାନ୍ତସିଦ୍ଧାନ୍ତମୁକ୍ତାବଳୀ ୫୦ । ୫୩ ॥

ପ୍ରଥମେ ସାଂସାରିକ କାର୍ଯ୍ୟରେ ମୋ ଚିତ୍ତ ଆକୃଷ୍ଟ ହୋଇ ରହିଥିଲା, ପରନ୍ତୁ ବର୍ତ୍ତମାନ ଶ୍ରୁତିବଚନ ଅନୁସାରେ ମୋତେ ପରମାନନ୍ଦସ୍ୱରୂପ ଆତ୍ମା ପ୍ରାପ୍ତ ହୋଇଅଛୁ । ହେ ପ୍ରଭୋ ! ବର୍ତ୍ତମାନ ଆପଣ ଉତ୍ତମପ୍ରକାରେ ମୋର ଜ୍ଞାତ ହୋଇଅଛ ଓ ମୋତେ ପ୍ରାପ୍ତ ହୋଇଅଛ । ବହୁକାଳ ମୁଁ ଆପଣଙ୍କୁ ଭୁଲିଯାଇଥିଲି; କିନ୍ତୁ ବର୍ତ୍ତମାନ ଆପଣ ମୋତେ ପ୍ରାପ୍ତ ହୋଇଛନ୍ତି; ମୁଁ ଆପଣଙ୍କୁ କଦାପି ଛାଡ଼ିବି ନାହିଁ । ମୁଁ ଆପଣଙ୍କ ବିନା ନଗଣ୍ୟ ପଦାର୍ଥ, ଅତଏବ ମୋ ବିନା ଆପଣ କେଉଁଠି ରହିପାରନ୍ତି । ମୋର ଉତ୍ତମ ସୌଭାଗ୍ୟରୁ ଆଜି ଆପଣଙ୍କୁ ପାଇଅଛୁ । ଆପଣ ଯେ ହୁଅନ୍ତୁ, ଆପଣଙ୍କୁ ମୋର ଶତନମସ୍କାର । ଅଜ୍ଞାନରୂପିଣୀ ତାକମା ଦେହାଭିମାନରୂପ ଶୃଙ୍ଖଳାରେ ମତେ ବହୁଦିନ ବାନ୍ଧି ରଖିଥିଲା, ପରନ୍ତୁ ଆଜି ଆପଣଙ୍କ ଦର୍ଶନ ମାତ୍ରକେ ମୋର ଏହି ବନ୍ଧନ କ୍ଷଣମାତ୍ରେ ଛିନ୍ନ ହୋଇଗଲା ।

ଏପର୍ଯ୍ୟନ୍ତ ଯେଉଁ ବିଶୁଦ୍ଧ ଆତ୍ମଜ୍ଞାନ ଯୋଗର ବିବରଣ କରାଗଲା, ତାହା ହୃଦୟରୁ ହିଁତ ଅନୁମୋଦନ କରି ସେଥିରେ ପୁନଃପୁନଃଭାବରେ ନିମଗ୍ନ ହେଲେ ପ୍ରକୃତରେ ଜ୍ଞାନଭକ୍ତି ଯୋଗର ଅଧିକାରୀ ହେବ । ଏଠାରେ ଜ୍ଞାନଶବ୍ଦଦ୍ୱାରା ଆତ୍ମତତ୍ତ୍ୱଜ୍ଞାନ ବୁଝିବାକୁ ହେବ, ଆଧୁନିକ ତୁଚ୍ଛ ଜଡ଼ବିଜ୍ଞାନ ଏଠାର ବିଷୟ ନୁହେଁ । ଆଧୁନିକ ଜଡ଼ବିଜ୍ଞାନ ବିଷୟକ ଜ୍ଞାନ ସଂସାରର ମୁକ୍ତି ବିଷୟରେ ନିଷ୍ଫଳ, କେବଳ ଅହଂକାର—

ବୃଥାଭିମାନର ଜନକ । ଯେଉଁ ଜ୍ଞାନଦ୍ୱାରା ପରମାତ୍ମାଙ୍କର ପ୍ରଭୁଭାବ ଓ ଅମୃତ ଏବଂ ମଧୁମୟ ଅଦ୍ଭୁତ ମହିମା ଉପଲବ୍‌ଧି ହୁଏ, ସେହି ଜ୍ଞାନ ଏହି ଜଡ଼ ଓ ସାଂସାରିକ ଜ୍ଞାନ ନୁହେଁ; ତାହା ତତ୍ତ୍ୱଜ୍ଞାନ—ଜୀବ ଓ ବ୍ରହ୍ମଙ୍କର ଅଭେଦ ସମ୍ବନ୍ଧ ଜ୍ଞାନ । ଏହି ଜ୍ଞାନର ଉଚ୍ଚ ସୀମାରେ ଉପନୀତ ହେବା ନିମନ୍ତେ କେତେକ ସୋପାନ ଅତିକ୍ରମ କରିବାକୁ ହୁଏ । ଜ୍ଞାନମାର୍ଗର ପ୍ରଥମ ସୋପାନ—ଅନନ୍ତ ଅବ୍ୟୟ ଓ ଅକ୍ଷୟ ପରଂବ୍ରହ୍ମ ସତ୍ତାର ଅନୁଭବ । ସେହି ସତ୍ତା ଜଗତର ସର୍ବତ୍ର ଅନୁସ୍ୟୂତ ହୋଇ ରହିଅଛି; ଯେଉଁ ମହିମାରେ ସୃଷ୍ଟିର ବିକାଶ, ବିବର୍ତ୍ତି ଓ ବିରାମ, ସେ ଅଜ୍ଞେୟ, ଅମେୟ, ଅଚିନ୍ତ୍ୟ, ଅଲେଖ, ଏକ ଓ ଅଦ୍ୱିତୀୟ—ସେହି ବ୍ରହ୍ମସତ୍ତାର ଅନୁଭବ । ସେହି ବ୍ରହ୍ମ ପଦାର୍ଥ କେବଳ ସତ୍ । ଅନ୍ୟ ସକଳ ବସ୍ତୁ ଅସତ୍, ମାୟିକ, ଭଙ୍ଗୁର, ଓ ନଶ୍ୱର, ଅଜ୍ଞ ଦୃଷ୍ଟିରେ ବହୁ ଓ ବହୁ ରୂପରେ ଗ୍ରହଣୀୟ; କିନ୍ତୁ ଜ୍ଞାନୀ-ଦୃଷ୍ଟିରେ ତାହା ଏକ, ଅଦ୍ୱୈତ ମହିମାରେ ପ୍ରକାଶିତ । ସକଳ ପଦାର୍ଥରେ ଅଦ୍ୱିତୀୟ ବ୍ରହ୍ମସତ୍ତା କେବଳ ବିଦ୍ୟମାନ, ଅତଏବ ଏହି ସକଳ ବସ୍ତୁର ସମତାବୋଧ ଜ୍ଞାନମାର୍ଗର ଦ୍ୱିତୀୟ ସୋପାନ ।

"ନିର୍ଦ୍ଦୋଷଂ ହି ସମଂ ବ୍ରହ୍ମ ।"

ସୀକାଲ୍ପିକା ସମତା କେବଳ ବ୍ରହ୍ମଙ୍କର ଲକ୍ଷଣ । ଏହି ସମତାଜ୍ଞାନ ହେତୁରୁ ଜୀବାତ୍ମା ଓ ପରମାତ୍ମାଙ୍କର ଏକତ୍ୱ ଅନୁଭୂତ ହୁଏ । ପଞ୍ଚକୋଶର ଆବରଣରେ ଆବୃତ ଜୀବାତ୍ମା ସର୍ବବିଧ ଉପାଧିବିମୁକ୍ତ ପରମାତ୍ମାଠାରୁ ଅଭିନ୍ନ—ଏହା ଉପର୍ଯ୍ୟୁକ୍ତ ବିବରଣରୁ ଜ୍ଞାତ ହୁଏ । ଏହା କେବଳ ତତ୍ତ୍ୱଜ୍ଞାନ । ଏହି ଜ୍ଞାନଦ୍ୱାରା ପରଂବ୍ରହ୍ମ ପରମାତ୍ମାଙ୍କର ଈଶଭାବ ସମ୍ୟକ୍ ଉପଲବ୍‌ଧ ହୁଏ । ଏହି ଜ୍ଞାନର ଫଳ ତୈତ୍ତିରୀୟ ଉପନିଷଦ୍‌ରେ ଏହିପରି ବର୍ଣ୍ଣିତ ହୋଇଅଛି—

"ଆପ୍ନୋତି ସ୍ୱାରାଜ୍ୟମ୍ । ଆପ୍ନୋତି ମନସସ୍ପତିମ୍ । ବାକ୍‌ପତିଶ୍ଚକ୍ଷୁଷ୍ପତିଃ । ଶ୍ରୋତ୍ରପତିର୍ବିଜ୍ଞାନପତିଃ ।"　　ଇତ୍ୟାଦି ।

ଅର୍ଥାତ୍ ଜୀବନ୍ମୁକ୍ତ ପୁରୁଷର ସମ୍ବିତ୍ ବିଶ୍ୱମୟ ପ୍ରସାରିତ ହେବାଦ୍ୱାରା ସେ ସ୍ୱାରାଜ୍ୟ (ବ୍ରହ୍ମଭାବ) ପ୍ରାପ୍ତ ହୁଅନ୍ତି ଏବଂ ମନ ଉପରେ ପ୍ରଭୁତ୍ୱ ଲାଭ କରନ୍ତି । ଏହିପରି ବିଜ୍ଞାନଫଳରେ ସେ ବାକ୍‌ପତି (ସମସ୍ତ ବାଗିନ୍ଦ୍ରିୟର ଅଧିପତି), ଚକ୍ଷୁର ପତି (ସକଳ ଭୂତମାନଙ୍କର ଚକ୍ଷୁ ତାହାଙ୍କର ଚକ୍ଷୁ, ଅର୍ଥାତ୍ ସମସ୍ତ ଚକ୍ଷୁର ସେ ଅଧିପତି), ଶ୍ରବଣେନ୍ଦ୍ରିୟର ସେ ଅଧିପତି ଏବଂ ସମସ୍ତ ବୁଦ୍ଧି ବିଜ୍ଞାନର ମଧ୍ୟ ସେ ପତି । ଏହା କେବଳ ଜ୍ଞାନଯୋଗର ସ୍ୱାରାଜ୍ୟସିଦ୍ଧି ।

## ଠ—ଏକ ଅଦ୍ୱିତୀୟ ପ୍ରଭୁ ପରମାତ୍ମା ପରଂବ୍ରହ୍ମ କେବଳ ଭଜନୀୟ—

ଏହି ବିଶୁଦ୍ଧ ଆତ୍ମଜ୍ଞାନ ଭକ୍ତିଯୋଗ ଉପଯୁକ୍ତ ତତ୍ତ୍ୱଜ୍ଞାନ-ସାପେକ୍ଷ ହେଲେ ମଧ୍ୟ ଜ୍ଞାନସିଦ୍ଧିର ଐଶ୍ୱର୍ଯ୍ୟପ୍ରାପ୍ତି ନିମନ୍ତେ କାମନାଶୂନ୍ୟ ହୋଇ କେବଳ ପୂର୍ବକଥିତ ଭକ୍ତିନିଷ୍ଠାରେ ସତତ ନିମଗ୍ନ ରହି 'ମୁଁ ପ୍ରଭୁ ପରମାତ୍ମାଙ୍କର ଓ ପ୍ରଭୁ ପରମାତ୍ମା ମୋର'—ଏହି ଐକାନ୍ତିକ ସମ୍ବନ୍ଧରେ ସୁଦୃଢ଼ ରହିବା ଏହି ବ୍ରହ୍ମ ଭକ୍ତିମାର୍ଗର ମୁଖ୍ୟ ଉଦ୍ଦେଶ୍ୟ ।

ଭକ୍ତିବିହୀନ ଜ୍ଞାନ ବା ଜ୍ଞାନବିହୀନା ଭକ୍ତି ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦର ଅନୁକୂଳ ନୁହେଁ । ବିଶୁଦ୍ଧାତ୍ମଜ୍ଞାନ-ମିଶ୍ରିତ ପରଂବ୍ରହ୍ମଭକ୍ତିଯୋଗ କେବଳ ଏହି ମତର ମୁଖ୍ୟ ଅନୁକୂଳ ପନ୍ଥା ଅଟେ । କେତେକ ବିଭିନ୍ନବାଦୀଙ୍କ ମତରେ ନିର୍ଗୁଣ ବ୍ରହ୍ମ କେବଳ ଜ୍ଞାନର ଗୋଚର, ସଗୁଣ ବ୍ରହ୍ମ ଈଶ୍ୱରଭକ୍ତିର ଆରାଧ୍ୟ ଅଟନ୍ତି । ଏପରି ଦ୍ୱୈଧୀ ପ୍ରଥାରେ ପରମାତ୍ମାଙ୍କୁ ଦ୍ୱିବିଧ ଆକାରରେ କଳ୍ପନା କରିବା ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ସମୀଚୀନ ମନେ କରେ ନାହିଁ । କାରଣ—

"ଏକମେବାଦ୍ୱିତୀୟଂ" "ପ୍ରଜ୍ଞାନମାନନ୍ଦାମୃତଂ ବ୍ରହ୍ମ", "ଭୂମାନନ୍ଦଂ",

ପ୍ରଭୃତି ଶ୍ରୁତି ବାକ୍ୟ ସେହି ଏକ ପରଂବ୍ରହ୍ମ ପରମାତ୍ମା ପରମେଶ ପରମବ୍ରହ୍ମଙ୍କୁ ଅଦ୍ୱିତୀୟ ଏକ ରସଆନନ୍ଦସ୍ୱରୂପରେ ବର୍ଣ୍ଣନା କରିଅଛି । ଏପରି ଶ୍ରୁତି ଓ ଯୁକ୍ତିରୂପକ ପ୍ରମାଣ ଥିବା ସ୍ଥଳେ ଏକ ବ୍ରହ୍ମଙ୍କର ଜ୍ଞାନଲାଭ କରି "ଦ୍ୱିତୀୟ"କୁ ଭକ୍ତି କରିବା ନିରାଧାର ବା ନିରାଶାର ବ୍ୟାପାର । ଏହା ଭ୍ରମବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅତଏବ ଏପରି ଦ୍ୱୈଧଭାବ ପରିହାର କରି ଏକ ମହାମହିମାନ୍ୱିତ ପ୍ରଭୁ ପରଂବ୍ରହ୍ମଙ୍କୁ ହିଁ କେବଳ ମଧୁମୟ, ଅମୃତ, ଚିଦ୍‌ଘନ ଓ ଆନନ୍ଦସ୍ୱରୂପରେ ଜ୍ଞାତ ହୋଇ ବିଶୁଦ୍ଧାତ୍ମଜ୍ଞାନଭକ୍ତିଯୋଗରେ ଶରଣ ଦର୍ଶନ କରି ଆତ୍ମନିବେଦନ କରିବା ଏହି ବାଦର ମୁଖ୍ୟ ଅଭିପ୍ରେତ ବିଷୟ ।

ଅତଏବ ସେହି ଏକ ନିର୍ଗୁଣ ପରଂବ୍ରହ୍ମ ଅଦୃଶ୍ୟ, ଅଗମ୍ୟ, ଅଚିନ୍ତ୍ୟ, ଅବାଚ୍ୟ, ଅଲେଖ୍ୟ, ଅନିର୍ଦ୍ଦେଶ୍ୟ ଓ ଅବିଶେଷ୍ୟ, ଅଥଚ ସେ ନିତ୍ୟ ମଧୁମୟ, ଅମୃତମୟ, ପ୍ରେମମୟ ଓ ସଚ୍ଚିଦାନନ୍ଦସ୍ୱରୂପରେ ସ୍ୱମହିମାରେ ବିରାଜିତ ଅଛନ୍ତି । ଏହି ଏକ ଓ ଅଦ୍ୱିତୀୟର ଭକ୍ତିକୁ ବିଶୁଦ୍ଧାଭକ୍ତି କୁହାଯାଏ । ବିନା ଭକ୍ତିରେ ଜ୍ଞାନର ସ୍ଥିତି ବା ମୁକ୍ତି ହୋଇ ପାରେ ନାହିଁ ଏବଂ ଜ୍ଞାନ ବ୍ୟତୀତ ଭକ୍ତିର ଉତ୍କର୍ଷ ସାଧିତ ହୁଏ ନାହିଁ । ଅତଏବ ଜ୍ଞାନମହିମାରେ ଯେ ସମ୍ପୂର୍ଣ୍ଣ, ତାହାଙ୍କଠାରେ ଅନନ୍ୟଚିତ୍ତ ହୋଇ ବିଶୁଦ୍ଧ ଭକ୍ତି ଅର୍ପଣ କରିପାରିଲେ ତାହାଙ୍କୁ ଜ୍ଞାତ ହେବା ପ୍ରୟାସ ଆଉ ରହେ ନାହିଁ । *

---

* "ଉଲ୍‌କାହସ୍ତୋ ଯଥା କଶ୍ଚିଦ୍ଦ୍ରବ୍ୟମାଲୋକ୍ୟ ତାଂ ତ୍ୟଜେତ୍ ।
ଜ୍ଞାନେନ ଜ୍ଞେୟମାଲୋକ୍ୟ ଜ୍ଞାନଂ ପଶ୍ଚାତ୍ ପରିତ୍ୟଜେତ୍ ॥"

ଏ ବିଷୟରେ ଗୀତାରେ ଅଛି—

**"ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।**
**ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତମ୍ ॥"**

ଗୀତା—୮ । ୨୨ ।

ହେ ପାର୍ଥ ! ଯାହାଙ୍କଠାରେ ସକଳ ପ୍ରାଣୀ ଅବସ୍ଥିତ ଏବଂ ଯେ ଏହି ନିଖିଳ ବିଶ୍ୱରେ ବ୍ୟାପିକରି ରହିଛନ୍ତି, ସେହି ଶ୍ରେଷ୍ଠ ପୁରୁଷ ପରମାତ୍ମା କେବଳ ଐକାନ୍ତିକୀ ଭକ୍ତିଦ୍ୱାରା ପ୍ରାପ୍ୟ ଅଟନ୍ତି । ବିଶୁଦ୍ଧ ଜ୍ଞାନ-ଭକ୍ତିଦ୍ୱାରା ପରାତ୍ପର ପରମାତ୍ମାଙ୍କଠାରେ ଶରଣାଗତ ହୋଇ ସେହି ଅଭୟ ଶ୍ରୀଚରଣତଳେ ଅବଲୁଣ୍ଠିତ ହୋଇ ତାଙ୍କ ନାମ ସ୍ମରଣ ଭଜନ କଲେ ହୃଦୟରେ ତତ୍ପ୍ରତି ଭକ୍ତିଭାବ ସୁଦୃଢ଼ରୂପରେ ଜାଗ୍ରତ ରହେ । ବ୍ୟାକରଣ ନିୟମ ଅନୁସାରେ ଭକ୍ତିର ପ୍ରକୃତାର୍ଥ— ଭଜଧାତୁରୁ ଭାବରେ କ୍ତି ପ୍ରତ୍ୟୟ ହୋଇ ଭକ୍ତିଶବ୍ଦ ନିଷ୍ପନ୍ନ । ଅର୍ଥାତ୍ ଏକ ଅଦ୍ୱିତୀୟ ପ୍ରଭୁ ପରମାତ୍ମାଙ୍କଠାରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିବା ନାମ ଭକ୍ତି । ଏହି ଭକ୍ତିସମ୍ବନ୍ଧରେ ଶାଣ୍ଡିଲ୍ୟାଦି ଋଷିମାନଙ୍କ ଅଭିମତ—

**"ଭଜ୍ୟତେ ଇତି ଭକ୍ତିଃ ।"**

ଅର୍ଥାତ୍ ଯାହାଦ୍ୱାରା ଭଜନରୂପକ୍ରିୟା ସମ୍ପାଦିତ ହୁଏ ସେହି ଭକ୍ତି । ଏହି ବିଶୁଦ୍ଧା-ଭକ୍ତି ଭଜନ ସମ୍ବନ୍ଧରେ ଭକ୍ତିସୂତ୍ର ଏହିପରି ବର୍ଣ୍ଣନା କରେ—

**"ଭଜନୀୟେନାଦ୍ୱିତୀୟମିଦଂ କୃତ୍ସ୍ନସ୍ୟ ତତ୍ସ୍ୱରୂପତ୍ୱାତ୍ ॥"**

ଶାଣ୍ଡିଲ୍ୟସୂତ୍ର—ଭକ୍ତିମୀମାଂସାଦର୍ଶନ ଅ: ୩ । ଆହ୍ନିକ—୧ ସୂ: ୮୫ ।

ପରଂବ୍ରହ୍ମ ପରମାତ୍ମା କେବଳ ଅଦ୍ୱିତୀୟ ଭଜନୀୟ । ତାହାଙ୍କୁ ଜାଣି ପାରିଲେ ସକଳ ବସ୍ତୁ ପରିଜ୍ଞାତ ହୁଏ । ଏହି ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ତାହାଙ୍କର ସ୍ୱରୂପ ହୋଇଥିବାରୁ ତାହାଙ୍କର ଅବିଦିତ କିଛି ରହେ ନାହିଁ । ଶାସ୍ତ୍ରରେ ପ୍ରତିପାଦିତ ହୋଇଅଛି ଯେ, ଜ୍ଞାନଦ୍ୱାରା

---

ଉତ୍ତର ଗୀତା । ଅର୍ଥାତ୍ ଯେପରି ନିଆଁ ଜଳା ହାତରେ ଧରି ଅନ୍ଧକାରରେ ଥିବା କୌଣସି ଦ୍ରବ୍ୟ ଅନୁସନ୍ଧାନ କଲାପରେ ସେହି ଉଲ୍କା ପରିତ୍ୟାଗ କରାଯାଏ; ସେହିପରି ଜ୍ଞାନଦ୍ୱାରା ଜ୍ଞେୟବସ୍ତୁ ଅବଗତ ହେଲାପରେ, ପଛେ ଜ୍ଞାନ ମଧ୍ୟ ପରିତ୍ୟକ୍ତ ହୁଏ । ଉପର୍ଯ୍ୟୁକ୍ତ ଶ୍ରୁତିରେ ଯେଉଁ ଜ୍ଞାନର ପରିତ୍ୟାଗ ବିଷୟ ବର୍ଣ୍ଣିତ ହେଲା, ତାହା ଉଲ୍ଲିଖିତ ଭକ୍ତିମିଶ୍ରିତ ବିଶୁଦ୍ଧ ଜ୍ଞାନ ସାଧନ ନୁହେଁ, ତାହା କେବଳ ଶାବ୍ଦିକ ଜ୍ଞାନ ବୁଝିବାକୁ ହେବ ।

ଜ୍ଞେୟ ପଦାର୍ଥ ଅନୁମିତ ହୁଏ । ଅତଏବ ବିଶୁଦ୍ଧ ଜ୍ଞାନ ବ୍ୟତିରେକେ କୌଣସି ବିଷୟ ଜ୍ଞେୟ ହୋଇ ପାରେ ନାହିଁ । ସେହି ଜ୍ଞାନ ସତ୍ତ୍ୱପଦାର୍ଥ, କୌଣସି ଜାତି ନୁହେଁ । କାରଣ, ଜାତ୍ୟାଦି-ପଦାର୍ଥର ସତ୍ତ୍ୱା ନ ଥାଏ । ଜାତିର ସତ୍ତ୍ୱା ସ୍ୱୀକାର କଲ୍ପନାର ଗୌରବ ହୁଏ । ଅତଏବ ଜ୍ଞାନକୁ ଅନ୍ୟ କୌଣସି ପଦାର୍ଥ ବୋଲି ସ୍ୱୀକାର କରି ଯାଏ ନାହିଁ । ପରନ୍ତୁ ସେହି ଜ୍ଞାନ କେବଳ ପରଂବ୍ରହ୍ମ, ଏହି ପରଂବ୍ରହ୍ମଙ୍କଠାରେ ସକଳ ଅନୁଗତ । ଯେଉଁ ସବୁ ଦୃଶ୍ୟବସ୍ତୁ ଦୃଷ୍ଟିଗୋଚର ହୁଏ, ସେଥିରେ ତାହାଙ୍କର ଭେଦ ନାହିଁ, ଅର୍ଥାତ୍ ସକଳ ପଦାର୍ଥରେ ସେ ପରିବ୍ୟାପ୍ତ; କିନ୍ତୁ ସେ କୌଣସିପ୍ରକାର ଦୃଶ୍ୟ ପଦାର୍ଥ ନୁହନ୍ତି । ତାହାଙ୍କଠାରେ କୌଣସି ରୂପ ଗୁଣ ଆରୋପିତ ହୁଏ ନାହିଁ । ଗୁଣଦ୍ୱାରା ତାହାଙ୍କର ନିର୍ଣ୍ଣୟ କରିବା ଅସାଧ୍ୟ, କାରଣ ସେ ଅନନ୍ତ ଗୁଣର ଆଧାର ଏବଂ ସେଥିରେ ଯେଉଁ ଜ୍ଞାତୃତ୍ୱାଦି କଳ୍ପନା ତାହା ଉପାଧିକୃତ । ଅତଏବ ଉପାଧି ପରିହାର କରି ନିତ୍ୟ ନିର୍ଗୁଣ ନିରୁପାଧିକ ସଚ୍ଚିତ୍ ସ୍ୱରୂପରେ ତାହାଙ୍କୁ ଭଜନ କର । ଏ ବିଷୟ ଶ୍ରୀ ରାମଚନ୍ଦ୍ର ନିଜ ଭକ୍ତ ହନୁମାନଙ୍କୁ ଉପଦେଶ ଦେଇ ଅଛନ୍ତି—

"ଅଶବ୍ଦମସ୍ପର୍ଶମରୂପମବ୍ୟୟଂ ତଥାଽରସଂନିତ୍ୟମଗନ୍ଧବଚ୍ଚ ଯତ୍ ।
ଅନାମଗୋତ୍ରଂ ମମରୂପମୀଦୃଶଂ ଭଜସ୍ୱ ନିତ୍ୟଂ ପବନାତ୍ମଜାର୍ତ୍ତିହମ୍ ॥
ଦୃଶିସ୍ୱରୂପଂ ଗଗନୋପମଂ ପରଂ ସକୃଦ୍ ବିଭାତଂ ତ୍ୱଜମେକମକ୍ଷରମ୍ ।
ଅଲେପକଂ ସର୍ବଗତଂ ଯଦଦ୍ୱୟଂ ତଦେବ ଚାହଂ ସକଳଂ ବିମୁକ୍ତମ୍ ॥
ଦୃଶିସ୍ତୁ ଶୁଦ୍ଧୋଽହମବିକ୍ରିୟାତ୍ମକୋ ନ ମେଽସ୍ତି କଶ୍ଚିଦ୍ ବିଷୟଃ ସ୍ୱଭାବତଃ ।
ପୁରସ୍ତିରଶ୍ଚୋର୍ଦ୍ଧ୍ୱମଧଶ୍ଚ ସର୍ବତଃ ସୁପୂର୍ଣ୍ଣଭୂମାହମିତୀହ ଭାବୟ ॥
ଅଜୋଽମରଶ୍ଚୈବ ତଥା ଜରୋଽମୃତଃ ସ୍ୱୟଂପ୍ରଭଃ ସର୍ବଗତୋଽହମବ୍ୟୟଃ ।
ନ କାରଣଂ କାର୍ଯ୍ୟମତୀତ୍ୟ ନିର୍ମଳଃ ସଦୈବ ତୃପ୍ତୋଽହମିତୀହ ଭାବୟ ॥"

ମୁକ୍ତିକୋପନିଷତ୍—ଅ ୨ । ୭୦—୭୩ ॥

ହେ ପବନତନୟ ! ଆତ୍ମାର ସଚ୍ଚିଦାନନ୍ଦସ୍ୱରୂପ ଶବ୍ଦବାଚ୍ୟ ନୁହେଁ, ତ୍ୱଗିନ୍ଦ୍ରିୟାଦିର ଗ୍ରାହ୍ୟ ନୁହେଁ; ଏହା ରୂପଶୂନ୍ୟ, ଅବିନାଶୀ, ସ୍ୱାଦରହିତ, ନିତ୍ୟ ଓ ଗନ୍ଧହୀନ; ଏହାର କୌଣସି ନାମ ଗୋତ୍ର ନାହିଁ, ଏହା ସର୍ବାର୍ତ୍ତିହର । ତୁମ୍ଭେ ପ୍ରତିଦିନ ଏହି ସ୍ୱରୂପକୁ ଭଜନ କର । ଆତ୍ମାର ଏହି ରୂପ ସର୍ବଦ୍ରଷ୍ଟା, ଆକାଶ ତୁଲ୍ୟ ସର୍ବଗତ, ଶ୍ରେଷ୍ଠ, ସର୍ବଦା ପ୍ରକାଶବାନ, ଜନ୍ମ-ମୃତ୍ୟୁରହିତ ଏବଂ ଅଦ୍ୱିତୀୟ । ଆତ୍ମାର ଏହି ସତ୍ ସ୍ୱରୂପ ନିର୍ଲିପ୍ତ,

ସର୍ବବ୍ୟାପୀ, ଅଦ୍ୱୟ, ସର୍ବସ୍ୱରୂପ ଏବଂ ସର୍ବଦା ବିମୁକ୍ତସ୍ୱଭାବ । ଆମ୍ଭେ ଦୃଶିସ୍ୱରୂପ, ଶୁଦ୍ଧ, ବିକାରରହିତ; ଆମ୍ଭର ସ୍ୱାଭାବିକ କୌଣସି ବିଷୟ ନାହିଁ । ଆମ୍ଭେ ଅଗ୍ର, ପଶ୍ଚାତ୍, ଊର୍ଦ୍ଧ୍ୱ ଓ ଅଧଃ ସର୍ବତ୍ର ପରିପୂର୍ଣ୍ଣ, ଆମ୍ଭେ ସର୍ବବ୍ୟାପକ ବସ୍ତୁ—ଏହି ପ୍ରକାରେ ଆତ୍ମାଙ୍କୁ ଭାବନା କର । ଆମ୍ଭେ ଜନ୍ମ, ମୃତ୍ୟୁ ଓ ଜରାରହିତ, ଅମୃତସ୍ୱରୂପ, ସ୍ୱୟଂଜ୍ୟୋତି, ସର୍ବଗତ ଓ ଅବ୍ୟୟସ୍ୱରୂପ । ଆମ୍ଭର କାରଣ ନାହିଁ, କାର୍ଯ୍ୟ ମଧ୍ୟ ନାହିଁ; ଆମ୍ଭେ ଅତି ନିର୍ମଳସ୍ୱଭାବ, ସର୍ବଦା ପରିତୃପ୍ତ—ଏପରି ଆତ୍ମାଙ୍କୁ ଭାବନା କର ।

"ଜୀବନ୍ମୁକ୍ତପଦଂ ତ୍ୟକ୍ତ୍ୱା ସ୍ୱଦେହେ କାଳସାତ୍କୃତେ ।
ବିଶତ୍ୟଦେହମୁକ୍ତତ୍ୱଂ ପବନୋଽସ୍ପନ୍ଦତାମିବ ॥"

ମୁକ୍ତିକ ଉ: ୭୫ ॥

ଅନନ୍ତର ସ୍ୱଦେହ ବିନଷ୍ଟ ହେଲେ ଜୀବନ୍ମୁକ୍ତପଦ ପରିତ୍ୟାଗ କରି ବିଦେହ—ମୁକ୍ତିଭାଗୀ ହେବ ।

ଏହିପରି ଭଜନ ବିଷୟରେ ଋଭୁ ନିଦାଘଙ୍କୁ ଉପଦେଶ ଦେଇଛନ୍ତି :—

"ଆତ୍ମାବଲୋକନାର୍ଥଂ ତୁ ତସ୍ମାତ୍ ସର୍ବଂ ପରିତ୍ୟଜେତ୍ ।
ସର୍ବଂ ସନ୍ତ୍ୟଜ୍ୟ ଦୂରେଣ ଯଚ୍ଛିଷ୍ଟଂ ତନ୍ମୟୋଭବ ॥
ସର୍ବଂ କିଞ୍ଚିଦିଦଂ ଦୃଶ୍ୟଂ ଦୃଶ୍ୟତେ ଯଜ୍ଜଗଦ୍‌ଗତମ୍ ।
ଚନ୍ନିଷ୍ପନ୍ଦାଂଶମାତ୍ରଂ ତନ୍ନାନ୍ୟତ୍ କିଞ୍ଚନ ଶାଶ୍ୱତମ୍ ॥"

ଅନ୍ନପୂର୍ଣ୍ଣା ଉ: ୧ । ୪୬ । ୪୭ ॥

ଆତ୍ମ-ସାକ୍ଷାତ୍କାରସକାଶେ ସକଳ ବିଷୟ, ଅର୍ଥାତ୍ ବ୍ରହ୍ମଭିନ୍ନ ନିଖିଳ ପ୍ରପଞ୍ଚ ପରିତ୍ୟାଗ କରିବ । ସକଳ ବସ୍ତୁ ଦୂରକରି ଏକମାତ୍ର ବ୍ରହ୍ମଙ୍କଠାରେ ତନ୍ମୟତା, ଅର୍ଥାତ୍ ଐକାନ୍ତିକ ସ୍ମରଣ-ଭଜନଦ୍ୱାରା ତଦ୍‌ସ୍ୱରୂପତା ଅବଲମ୍ବନ କରିବ । ଜାଗତିକ ସକଳ ଦୃଶ୍ୟ ପଦାର୍ଥ ସେହି ଚୈତନ୍ୟଙ୍କର ପରିସ୍ପନ୍ଦ, ଅର୍ଥାତ୍ ବିବର୍ତ୍ତମାତ୍ର; ପରମାତ୍ମାଙ୍କ ଭିନ୍ନ ଅନ୍ୟ ସବୁ ଅନିତ୍ୟ । ଅନ୍ୟଠାରେ କୁହାଯାଇଛି—

"ଦ୍ରଷ୍ଟୃଦର୍ଶନଦୃଶ୍ୟାନି ତ୍ୟକ୍ତ୍ୱା ବାସନୟା ସହ ।
ଦର୍ଶନପ୍ରଥମାଭାସମାତ୍ମାନଂ କେବଳଂ ଭଜ ॥"

ବରାହ ଉ: ୪ । ୨୦ ॥

ବାସନା ସହିତ ଦ୍ରଷ୍ଟା, ଦର୍ଶନ ଓ ଦୃଶ୍ୟକୁ ପରିତ୍ୟାଗ କରି କେବଳ ପ୍ରକାଶ-ସ୍ୱରୂପ ପରମାତ୍ମାଙ୍କର ଭଜନ କର ।

"ସଦ୍‌ବ୍ରହ୍ମଣି ସ୍ଥିରେ ସ୍ଥାରେ ପୂର୍ଣ୍ଣେ ବିଷୟବର୍ଜିତେ ।
ଆଚାର୍ଯ୍ୟଶାସ୍ତ୍ରମାର୍ଗେଣ ପ୍ରବିଶ୍ୟାଶୁ ସ୍ଥିରୋ ଭବ ॥"

ବରାହ ଉ: ୪ । ୩୧ ॥

ଆଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ଓ ଶାସ୍ତ୍ରନୟମ ମାନ ସେହି ସ୍ଥିର, ବିସ୍ତୃତ, ପରିପୂର୍ଣ୍ଣସ୍ୱଭାବ, ବିଷୟରହିତ (ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ—ଏହି ପଞ୍ଚବିଷୟ ବିହୀନ) ସତ୍‌ସ୍ୱରୂପ ପରଂବ୍ରହ୍ମସ୍ୱରୂପ ଅନ୍ତରରେ ଧାରଣ କରି ଶୀଘ୍ର ସ୍ଥିରତା ଅବଲମ୍ବନ କର । ତଲବକାର ଶ୍ରୁତିରେ ମଧ୍ୟ ଉଲ୍ଲେଖ ଅଛି—

"ଅଥାଧ୍ୟାତ୍ମମ୍ । ଯଦେତଦ୍ ଗଚ୍ଛତୀବ ଚ ମନୋଽନେନ ଚୈତଦୁପ-ସ୍ମରତ୍ୟଭୀକ୍ଷଣଂ ସଂକଳ୍ପଃ । ତଦ୍ଧ ତଦ୍‌ବନଂ ନାମ ତଦ୍‌ବନମିତ୍ୟୁପାସିତବ୍ୟମ୍ ସ ଯ ଏତଦେବଂ ବେଦାଭିହୈନଂ ସର୍ବାଣି ଭୂତାନି ସଂବାଞ୍ଛନ୍ତି ॥"

ତଲବକାର ଉ: ୨୨ କେନ ଉ: ୪ । ୫ । ୬ ॥

ବର୍ତ୍ତମାନ ବ୍ରହ୍ମଙ୍କ ବିଷୟରେ ଅଧ୍ୟାତ୍ମ ( ଆତ୍ମତତ୍ତ୍ୱବିଷୟକ ) ଉପଦେଶ ଦିଆ-ଯାଉଅଛି । ସାଧକମାନେ ମନଦ୍ୱାରା ବା ମାନସିକ ବ୍ୟାପାରଦ୍ୱାରା ବ୍ରହ୍ମସାକ୍ଷାତ୍‌କାର କରନ୍ତି, ତତ୍କ୍ଷଣରେ ମନର ସେପରି ସାମର୍ଥ୍ୟ ନ ଥିଲେ ମଧ୍ୟ ତଦ୍ଦ୍ୱାରା କେବଳ ବ୍ରହ୍ମଙ୍କୁ ବାରମ୍ବାର ସ୍ମରଣ କରି ଶରଣ-ଦର୍ଶନ କରନ୍ତି; ଅତଏବ ମାନସିକ ଚିନ୍ତାଦ୍ୱାରା କେବଳ ବ୍ରହ୍ମସାକ୍ଷାତ୍‌କାର ସମ୍ଭବ । ଏହା ବ୍ରହ୍ମଙ୍କ ବିଷୟରେ ଅଧ୍ୟାତ୍ମ ଉପଦେଶ ।

ନିରୁପାଧି ବ୍ରହ୍ମଙ୍କର କୌଣସି ସାଦୃଶ୍ୟ ନାହିଁ ଏବଂ ମନ ମଧ୍ୟ ତାହାଙ୍କୁ ପ୍ରାପ୍ତ ହୋଇ ପାରେ ନାହିଁ । ସେହି ବ୍ରହ୍ମ କେବଳ ସମସ୍ତଙ୍କର ଭଜନୀୟ ହେବାରୁ ସେ ସର୍ବଭଜନୀୟ ବୋଲି ଖ୍ୟାତ । ଏହି ପ୍ରକାରରେ ବ୍ରହ୍ମଙ୍କୁ ସ୍ମରଣ ଭଜନ ସହ ଉପାସନା କରିବା କର୍ତ୍ତବ୍ୟ । ଯେଉଁ ବ୍ୟକ୍ତି ଏହିପ୍ରକାରେ ବ୍ରହ୍ମଙ୍କ ଉପାସନା କରନ୍ତି, ସେହି ଉପାସକଙ୍କ ନିକଟରେ ସକଳପ୍ରାଣୀ ନିଜ ଅଭୀଷ୍ଟ ବିଷୟରେ ପ୍ରାର୍ଥନା କରନ୍ତି ।

ଭଗବାନ୍ ଶ୍ରୀକୃଷ୍ଣ ଏହିପରି ଭଜନକାରୀ ଭକ୍ତଙ୍କୁ ଚାରିପ୍ରକାରେ ନିର୍ଣ୍ଣୟ କରି ସେଥିମଧ୍ୟରୁ ଜ୍ଞାନଭକ୍ତଙ୍କୁ ଅଧିକ ଶ୍ରେୟସ୍କର ବୋଲି ବର୍ଣ୍ଣନା କରିଛନ୍ତି—

"ଚତୁର୍ବିଧା ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜୁନ
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ ॥

ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତେ ।
ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ ॥"

ଗୀତା—୭ । ୧୬ । ୧୭ ॥

ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଅଛନ୍ତି—ହେ ଅର୍ଜୁନ ! ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଏବଂ ଜ୍ଞାନୀ—ଏପରି ଆମ୍ଭର ଚାରିପ୍ରକାର ଭକ୍ତ ଅଛନ୍ତି । କିନ୍ତୁ ଏମାନଙ୍କ ମଧ୍ୟରେ ଜ୍ଞାନୀ ସର୍ବଶ୍ରେଷ୍ଠ ଭକ୍ତ । କାରଣ, ସେ ପରମାତ୍ମାଙ୍କଠାରେ ଏକାନ୍ତ ଭକ୍ତିଯୁକ୍ତ; ସେ ଏକାଗ୍ରଚିତ୍ତରେ ଅଦ୍ୱିତୀୟ ପରମାତ୍ମାଙ୍କୁ ନିଜର ପରମଗତି ବୋଲି ଜାଣି ତାହାଙ୍କୁ ଆଶ୍ରୟ କରିଥାଏ । ଏହି ହେତୁରୁ ଏପରି ଜ୍ଞାନଭକ୍ତିଯୁକ୍ତ ଭକ୍ତ ଆମ୍ଭର ଅତ୍ୟନ୍ତ ପ୍ରିୟ ଏବଂ ଆମ୍ଭେ ମଧ୍ୟ ତାହାର ଅତ୍ୟନ୍ତ ପ୍ରିୟ ଅଟୁଁ ।

ଠ—ଭକ୍ତିର ଲକ୍ଷଣ ।

"ଆତ୍ମରତ୍ୟବିରୋଧେନେତି ଶାଣ୍ଡିଲ୍ୟଃ ।
ନାରଦସ୍ତୁ ତଦର୍ପିତାଖିଳାଚାରତା ତଦ୍‌ବିସ୍ମରଣେ ପରମବ୍ୟାକୁଳତେତି ॥"

ନାରଦଭକ୍ତି ସୂତ୍ର—୧୮ । ୧୯ ॥

ଶାଣ୍ଡିଲ୍ୟ ଋଷିଙ୍କ ମତରେ ଆତ୍ମରତିର ଅବିରୋଧୀ ଅନୁରକ୍ତିକୁ ଭକ୍ତି କୁହାଯାଏ । କିନ୍ତୁ ନାରଦଙ୍କ ମତରେ ଭକ୍ତି କିଛି ଭିନ୍ନପ୍ରକାର—ସ୍ୱକୃତ ସକଳକର୍ମ ପ୍ରଭୁ ପରମାତ୍ମାଙ୍କ-ଠାରେ ସମର୍ପଣ କରିବା ଏବଂ ତାହା ବିସ୍ମୃତ ହେଲେ ନିଜର ଏକାନ୍ତ ବ୍ୟାକୁଳତା ପ୍ରକାଶ କରିବାର ନାମ ଭକ୍ତି । ପୁନଶ୍ଚ ଏହି ଭକ୍ତି ବିଷୟରେ ନାରଦଙ୍କ ଅପର ଉକ୍ତି—

"ତସ୍ୟାଃ ସାଧନାନି ଗାୟନ୍ତ୍ୟାଚାର୍ଯ୍ୟାଃ ।
ତତ୍ତୁ ବିଷୟତ୍ୟାଗାତ୍ ସଙ୍ଗତ୍ୟାଗାଚ୍ଚ ॥
ଅବ୍ୟାବୃତ ଭଜନାତ୍ ।
ଲୋକେଽପି ଭଗବଦ୍‌ଗୁଣକୀର୍ତ୍ତନାତ୍ ॥"

ନାରଦଭକ୍ତି ସୂତ୍ର—୩୪—୩୭ ॥

ଆଚାର୍ଯ୍ୟମାନେ ଭକ୍ତିର ସାଧନ ବିଷୟରେ ଏହିପରି ବ୍ୟାଖ୍ୟା କରିଛନ୍ତି—ଏହି ଭକ୍ତିର ସାଧନ ବିଷୟତ୍ୟାଗ ଓ ସଙ୍ଗତ୍ୟାଗଦ୍ୱାରା ସାଧିତ ହୁଏ । ସର୍ବଦା ପ୍ରଭୁଙ୍କ ନାମ ସ୍ମରଣ ଓ ଭଜନ ଭକ୍ତିସାଧନର ଅନୁକୂଳ । ଲୋକମାନଙ୍କ ନିକଟରେ ପ୍ରଭୁଙ୍କ ନାମ, ଗୁଣ ଓ କଥା ଶ୍ରବଣ କରାଇବା ତଥା କୀର୍ତ୍ତନ କରିବା ମଧ୍ୟ ଭକ୍ତିସହାୟକ ହୁଏ । ମହର୍ଷି ଶାଣ୍ଡିଲ୍ୟ ମଧ୍ୟ କହିଛନ୍ତି—

"ତତ୍ ପରଶୁଦ୍ଧିଶ୍ଚ ଗମ୍ୟା ଲୋକବଲ୍ଲିଙ୍ଗେଭ୍ୟଃ" ।। ୪୩ ।।

ଏହାର, ଅର୍ଥାତ୍ ଭକ୍ତିର ପରଶୁଦ୍ଧି ଲୌକିକ ପ୍ରେମ ଭଳି ଚିହ୍ନଦ୍ୱାରା ବିଦିତ ହେବାକୁ ହୁଏ ।

"ସମ୍ମାନବହୁମାନପ୍ରୀତିବିରହେତରବିଚିକିତ୍ସାମହିମଖ୍ୟାତିତଦର୍ଥ-ପ୍ରାଣସ୍ଥାପନତଦୀୟତାସର୍ବତଦ୍‌ଭାବାପ୍ରାତିକୂଲ୍ୟାଦୀନି ଚ ସ୍ମରଣେଭ୍ୟୋ ବାହୁଲ୍ୟାତ୍ ।। ଭକ୍ତିମୀମାଂସା ସୂ° ୪୪ ।।

କେବଳ ଲୌକିକ ଚିହ୍ନଦ୍ୱାରା ଭକ୍ତିର ଅନୁମାନ କରାଯାଏ ନାହିଁ । ଏ ବିଷୟରେ ମହର୍ଷିମାନଙ୍କ ଶ୍ରୁତିବଚନ ମଧ୍ୟ ସମ୍ପୂର୍ଣ୍ଣରୂପରେ ଭକ୍ତିର ଲକ୍ଷଣ ବୋଲି ଧରାଯାଏ । ସମ୍ମାନ, ବହୁମାନ, ପ୍ରୀତି, ବିରହ, ମହିମାଖ୍ୟାତି, ଇତରବିଚିକିତ୍ସା, ତଦର୍ଥପ୍ରାଣଦାନ, ତଦୀୟଭାବ, ସର୍ବମୟତାଜ୍ଞାନ, ଅପ୍ରାତିକୂଲ୍ୟ ଆଦି ଏହି ସମସ୍ତ ମଧ୍ୟ ଭକ୍ତିର ଚିହ୍ନ । ଅର୍ଥାତ୍ ଭକ୍ତ ପରଂବ୍ରହ୍ମଙ୍କ ପ୍ରତି ପ୍ରତିନିତ୍ୟ ବ୍ରାହ୍ମମୂହୂର୍ତ୍ତରେ ବିଶୁଦ୍ଧ ଭକ୍ତି-ପ୍ରେମସହକାରେ ଶରଣଦର୍ଶନ କରିବ । କଦାପି ତାହା ଲଙ୍ଘନ କରିବ ନାହିଁ, ଏହାର ନାମ ସମ୍ମାନ । ଏହାଦ୍ୱାରା ପ୍ରଭୁଙ୍କ ପ୍ରତି ଭକ୍ତର ଅନୁରାଗ ଜଣାଯାଏ । ସର୍ବଦା ସେହି ପ୍ରଭୁଙ୍କ ନାମ ସ୍ମରଣ ଚିନ୍ତନ କରି ଶରଣଦର୍ଶନ ସମୟରେ ପୂର୍ବକଥିତମତେ ହସ୍ତ-ଛନ୍ଦ-ବନ୍ଧ ନିୟମରେ ଶରଣାପନ୍ନ ହେବାର ନାମ ବହୁମାନ । ଏହାଦ୍ୱାରା ଅନୁରାଗର ବିଶିଷ୍ଟତା ପ୍ରକାଶ ପାଏ । ଜଗତର ସମସ୍ତ ବସ୍ତୁ ଓ ଆତ୍ମୀୟଜନଙ୍କ ଅପେକ୍ଷା ପ୍ରଭୁ ପରମାତ୍ମାଙ୍କୁ ପୂର୍ବକଥିତମତେ ଅତ୍ୟନ୍ତ ପ୍ରିୟ ଭାବନାଦ୍ୱାରା ଭକ୍ତି କରାଯାଏ । "ହେ ପ୍ରଭୋ ! ପରମାତ୍ମନ୍ ! ତୁମ୍ଭେ ସର୍ବପ୍ରାଣୀର ଅନ୍ତରାତ୍ମା, ଅତଏବ ଆପଣ ମୋର ପ୍ରୀତି ଜାଣୁଅଛନ୍ତି ।" କୌଣସି ଆକସ୍ମିକ କାରଣରୁ ପ୍ରୀତିଭଙ୍ଗର ଦୋଷାନୁଭବ କରି ଅନ୍ତରରେ ସନ୍ତପ୍ତ ହୋଇ ପ୍ରଭୁଙ୍କଠାରେ ଏହିପରି ଯେଉଁ ପ୍ରାର୍ଥନା କରାଯାଏ, ତାହାର ନାମ ବିରହ । ଏହି ବିରହଦ୍ୱାରା କେବଳ ଗୋପୀମାନେ ଶ୍ରୀକୃଷ୍ଣଙ୍କ ବିଚ୍ଛେଦରେ ସନ୍ତପ୍ତ ହେଉଥିଲେ । ଏକ ପ୍ରଭୁ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ ଦେବତାଶ୍ରୟକୁ ଭକ୍ତିର ବିଘ୍ନ ବା ବ୍ୟାଘାତକ ବୋଲି ମନେ କରିବା, ଯାହାଦ୍ୱାରା କ ପ୍ରଭୁଙ୍କଠାରେ ଐକାନ୍ତିକ ଭକ୍ତି ଥିବାର ଅନୁମିତ ହୁଏ—ଏହାକୁ ଇତରବିଚିକିତ୍ସା କୁହାଯାଏ । ଅର୍ଥାତ୍ ଆଗ୍ରହ ସହିତ ଅନ୍ୟର ଅନପେକ୍ଷା । ସର୍ବଦା ସେହି ଏକ ପ୍ରଭୁଙ୍କର ମହିମା ବର୍ଣ୍ଣନ କରି ଭକ୍ତି କରିବା ଓ ତାଙ୍କର ମାହାତ୍ମ୍ୟ ସର୍ବଦା ସକଳ ସ୍ଥାନରେ ବ୍ୟାଖ୍ୟା କରି ଅନ୍ୟ କାହାର ମାହାତ୍ମ୍ୟ ସେହିପରି ମୁଖରେ ପ୍ରକାଶ ନ କରିବାର ନାମ ମହିମାଖ୍ୟାତି । ଏହିପରି ପ୍ରଭୁଙ୍କ ସେବକ ସାଧୁଭକ୍ତମାନଙ୍କୁ ଭୟ, ଭକ୍ତି ଓ ଶ୍ରଦ୍ଧାଦ୍ୱାରା ଆହ୍ୱାନ କରି ସେମାନଙ୍କର ଗୁଣ ଓ କର୍ମରେ ରତ ହେବା ହେଉଛି ତଦଙ୍ଗୀଭୂତମାହାତ୍ମ୍ୟଖ୍ୟାତି ଭକ୍ତିର ଚିହ୍ନ । "ହେ ପ୍ରଭୋ ପରମାତ୍ମନ୍ ! ମୁଁ ଆଜୀବନ ଦେହ ଓ ପ୍ରାଣକୁ ତୁମ୍ଭର ଅଭୟ ପଦାମ୍ବୁଜରେ

ଅର୍ପଣ କରି ଭକ୍ତି କରି ରହିବି”—ଏହିପରି ଭାବାନୁପ୍ରାଣିତ ହୋଇ ଦୃଢ଼ ଭକ୍ତିରେ ପ୍ରଭୁଙ୍କଠାରେ ନିରନ୍ତର ପ୍ରାର୍ଥନା କରେ—“ହେ ପ୍ରଭୋ ! ଏହି ଧରାଧାମରେ ଥିବା ପର୍ଯ୍ୟନ୍ତ ଭୃତ୍ୟର ଆଜ୍ଞାବହ ହୋଇ ଆପଣଙ୍କ ପବିତ୍ର ନାମ ସ୍ମରଣ ଭଜନ କରୁଥିବି ।” ଏହାର ନାମ ତଦର୍ଥପ୍ରାଣସ୍ଥାପନ-ଭକ୍ତି । ଏହିପରି ପର୍ବ ମହର୍ଷିମାନେ ତାଙ୍କ ନିମନ୍ତେ ପ୍ରାଣଧାରଣ କରି ନମସ୍କାର କରୁଥିଲେ । ତନ୍ମୟତାଭାବ ଅର୍ଥାତ୍ ତନ୍ମୟସ୍ୱରୂପତା ମଧ୍ୟ ଭକ୍ତିର ପ୍ରଧାନ ଚିହ୍ନ । ସେହି ପ୍ରଭୁ ପରଂବ୍ରହ୍ମଙ୍କ ଶରଣରେ ଏପରି ଐକାନ୍ତିକ ଭାବ ଉଦ୍ଭବ ହେବ, ଯଦ୍ଦ୍ୱାରା ସ୍ୱ-ଅଭିମାନରୂପକ ଅହଂକାର ବିଲୁପ୍ତ ହୋଇ ନିଜକୁ ଭୁଲିଯିବ ଏବଂ ଆତ୍ମା, ରାଜ୍ୟ, ଧନ, କଳତ୍ର ଓ ଗୃହ ଆଦି ସମସ୍ତ ପ୍ରଭୁ ପରମାତ୍ମାଙ୍କର ବୋଲି ଜ୍ଞାନ କରିବ । ଏହାଦ୍ୱାରା ତନ୍ମୟତା ବୁଦ୍ଧିରୂପକ ଭକ୍ତିର ଚିହ୍ନ ପ୍ରମାଣିତ ହୁଏ । ସକଳ ଭୂତମାନଙ୍କରେ ଆତ୍ମଭାବ ମଧ୍ୟ ଭକ୍ତି ପ୍ରକାଶ କରେ । ସେହି ପ୍ରଭୁପରମାତ୍ମା ପ୍ରାଣୀମାନଙ୍କର ପ୍ରାଣସ୍ୱରୂପ ଓ ସମସ୍ତଙ୍କର ଅନ୍ତରରେ ଅନ୍ତର୍ଯ୍ୟାମୀ ହୋଇ ସର୍ବଦା ନିର୍ଲିପ୍ତଭାବରେ ସ୍ୱମହିମାରେ ପ୍ରକାଶିତ ହୁଅନ୍ତି । ଏହିପରି ତାହାଙ୍କଠାରେ ଅଚଳା ଭକ୍ତି ସ୍ଥାପନ କରି ସକଳପ୍ରାଣୀଙ୍କ ସହିତ ମୈତ୍ରୀ ସ୍ଥାପନ କରିବାର ନାମ ସର୍ବତଦ୍‌ଭାବଜ୍ଞାନପ୍ରକାଶିକା ଭକ୍ତି । ପରମାତ୍ମାଙ୍କଠାରେ ଅପ୍ରତିକୂଳତାବୁଦ୍ଧି ମଧ୍ୟ ଭକ୍ତିର ଚିହ୍ନ ।ପ୍ରଭୁଙ୍କ ସ୍ମରଣ, ଭଜନ ପ୍ରଭୃତି କାର୍ଯ୍ୟରେ ପ୍ରଭୁ-ସେବକ ସାଧୁମାନଙ୍କ ସେବା-ଶୁଶ୍ରୂଷାରେ ଓ ପ୍ରଭୁଙ୍କ ନାମ ପ୍ରଚାର-ରୂପକ କାର୍ଯ୍ୟରେ ସକଳ ଅର୍ଥ ବ୍ୟୟ କରି ନିଜ ଜୀବନ ଶେଷ କଲେ ମଧ୍ୟ ସେଥିରେ ପ୍ରତିକୂଳଚିନ୍ତା ନ କରିବାର ନାମ ଅପ୍ରାତିକୂଲ୍ୟା ଭକ୍ତି । ପୂର୍ବକାଳରେ ଅନେକ ସାଧୁଭକ୍ତ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଅପ୍ରାତିକୂଲ୍ୟା-ବୁଦ୍ଧି ସ୍ଥାପନ କରି ନିଜ ଜୀବନ ବିସର୍ଜନ କରିଥିବାର ପ୍ରମାଣ ମଧ୍ୟ ମହାଭାରତ ଆଦି ଶାସ୍ତ୍ରମାନଙ୍କରେ ଉଲ୍ଲିଖିତ ଅଛି । ସମସ୍ତ ବିଷୟ-ସଂଗ୍ରାମ ଅତିକ୍ରମ କରି ଏକ ଅଦ୍ୱିତୀୟ ପରମାତ୍ମାଙ୍କଠାରେ ତନ୍ମୟତାରୂପ ଅନନ୍ତ ପ୍ରେମ ଯାହାର ହୃଦୟରେ ଉଦ୍ଦୀପିତ ହୁଏ, ସେହି ଭକ୍ତ ଅନ୍ୟାନ୍ୟ ଆସକ୍ତିକୁ ହୃଦୟରେ ସ୍ଥାନ ଦିଏ ନାହିଁ । ପରମଭକ୍ତି ଲାଭ ନିମନ୍ତେ ଏହି ପ୍ରକାର ସର୍ବଦା ଜାଗରୂକ ହେବା ମୁମୁକ୍ଷୁମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଏହିପରି ପରଂବ୍ରହ୍ମଙ୍କ ଭକ୍ତିର ଉଚ୍ଚତମ ଶିଖରରେ ଆରୂଢ଼ ହେଲେ ବିଶୁଦ୍ଧାଦ୍ୱୈତ ଭାବର ପୂର୍ଣ୍ଣତାଲାଭ ହୁଏ ଏବଂ ସେହି ସମୟରେ ଅନ୍ୟ ପ୍ରକାର କଥନ ଓ ଶ୍ରବଣାଦି ତ୍ୟାଗ କରି କେବଳ ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମାଙ୍କ ସ୍ମରଣ-ଭଜନରେ ଦୃଢ଼ ହୋଇ ଏକୀଭୂତ ହୁଏ ।

ଗୀତାରେ ମଧ୍ୟ ପ୍ରିୟଭକ୍ତର ଲକ୍ଷଣ ବିଷୟରେ ବର୍ଣ୍ଣନା ଦେଖାଯାଏ—

**“ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରୀ କରୁଣ ଏବ ଚ ।**
**ନିର୍ମମୋ ନିରହଂକାରଃ ସମଦୁଃଖସୁଖଃ କ୍ଷମୀ ॥**
**ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ନିଶ୍ଚୟଃ ।**
**ମୟ୍ୟର୍ପିତମନୋବୁଦ୍ଧିର୍ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ ॥”**

“ଗୀତା—୧୨-୧୩।୧୪”

ପରମାତ୍ମ-ଭକ୍ତିପରାୟଣ ବ୍ୟକ୍ତି ପ୍ରାଣୀମାନଙ୍କ ପ୍ରତି ଦ୍ୱେଷଶୂନ୍ୟ ଓ ସୁହୃତ୍, କୃପାଳୁ, ମମତାବର୍ଜ୍ଜିତ, ଅହଂକାରଶୂନ୍ୟ, ସୁଖ ଓ ଦୁଃଖରେ ସମଜ୍ଞାନୀ, କ୍ଷମାଶୀଳ, ସର୍ବଦା ସନ୍ତୁଷ୍ଟ, ସଂଯତଚିତ୍ତ, ଯୋଗୀ, ଦୃଢ଼ନିଷ୍ଠସ୍ୱଭାବରେ ଭକ୍ତ ଆତ୍ମଠାରେ (ପରମାତ୍ମାଙ୍କଠାରେ) ଯେ ମନ ଓ ବୁଦ୍ଧି ସମର୍ପଣ କରିଅଛନ୍ତି, ସେହି କେବଳ ଆତ୍ମର ପ୍ରିୟ । ପ୍ରକୃତରେ ଯେଉଁ ବ୍ୟକ୍ତିର ପରଂବ୍ରହ୍ମଙ୍କଠାରେ ନିଷ୍ଠାଯୁକ୍ତ ଭକ୍ତି; ତାଙ୍କ ସହିତ ଯେଉଁ ଲୋକ ବ୍ରହ୍ମଙ୍କ ବିଷୟରେ ନିତ୍ୟ ଆଲୋଚନାରତ, ତାହାଙ୍କୁ ସେହି ବ୍ୟକ୍ତି ପରମବନ୍ଧୁଭାବରେ ଆହ୍ୱାନ କରେ । କିନ୍ତୁ ଯେଉଁମାନେ ବ୍ରହ୍ମ ଭିନ୍ନ ଅନ୍ୟ ବିଷୟରେ ସର୍ବଦା ବାଚାଳ, ସେହି ଲୋକ ଉକ୍ତ ବ୍ରହ୍ମବାଦୀର ଶତ୍ରୁରୂପରେ ବିବେଚିତ । ଯେ ମୁମୁକ୍ଷୁ ସର୍ବଦା ଜ୍ଞାନ କରେ ଯେ ଏହି ଶରୀରଧାରଣ କେବଳ ପ୍ରଭୁ ପରମାତ୍ମାଙ୍କର ଉପାସନା ନିମନ୍ତେ କରାଯାଇଛି । ସେହି ବ୍ରହ୍ମଙ୍କ ଶରଣଭଜନ ବ୍ୟତୀତ ଏକ ମୂହୂର୍ତ୍ତ ମଧ୍ୟ ଜୀବନଧାରଣ କରିବା ଅସମ୍ଭବ । କେବଳ ପ୍ରଭୁ ପରଂବ୍ରହ୍ମଙ୍କ ଶରଣଭଜନକୁ ଜୀବନର ପରମ ସୁଖ ବୋଧକରେ । ସେହି ସୁଖରୁ କେବେହେଲେ କ୍ଷଣମାତ୍ର ବିମୁଖ ହୁଏ ନାହିଁ । ପୂର୍ବୋକ୍ତ

"ତଦର୍ଥପ୍ରାଣସ୍ଥାପନତଦୀୟତା"

ବାକ୍ୟର ତାତ୍ପର୍ଯ୍ୟ ବୁଦ୍ଧି ସର୍ବଦା ଅବିଚଳିତଭାବରେ ସେହି ପରଂବ୍ରହ୍ମଙ୍କଠାରେ ଶରଣ-ତତ୍ପର ହୋଇ ତାହାଙ୍କଠାରେ ନିମଗ୍ନ ହୋଇ ରହେ ।

ଉପର୍ଯ୍ୟୁକ୍ତ ଭକ୍ତିଲକ୍ଷଣଯୁକ୍ତ ହୋଇ ମନଃବାକ୍‌କାୟଦ୍ୱାରା ପରମାତ୍ମାଙ୍କଠାରେ ଆତ୍ମୋତ୍ସର୍ଗ କରିବା ନାମ ଐକାନ୍ତିକୀ ଭକ୍ତି ।

ଏହି ଐକାନ୍ତିକୀ ଭକ୍ତିସମ୍ବନ୍ଧରେ ନାରଦ କହିଅଛନ୍ତି—

"ଭକ୍ତା ଏକାନ୍ତିନୋ ମୁଖ୍ୟାଃ ॥ କଣ୍ଠାବରୋଧରୋମାଞ୍ଚାଶ୍ରୁଭିଃ ପରସ୍ପରଂ ଲପମାନାଃ ପାବୟନ୍ତି କୁଳାନି ପୃଥିବୀଞ୍ଚ ॥"

ନାରଦ ଭକ୍ତିସୂତ୍ର—୬୭ । ୬୮ ॥

ଐକାନ୍ତିକ ଭକ୍ତ ସମସ୍ତଙ୍କ ଅପେକ୍ଷା ଶ୍ରେଷ୍ଠ । ଭକ୍ତମାନେ କଣ୍ଠରୋଧ, ରୋମାଞ୍ଚ, ଓ ଅଶ୍ରୁଯୁକ୍ତ ନୟନରେ ଭକ୍ତିତନ୍ମୟ ହୋଇ ପରସ୍ପର ସମ୍ଭାଷଣ କରି ନିଜ କୁଳ ଓ ଏହି ପୃଥିବୀକୁ ପବିତ୍ର କରନ୍ତି ।

ଭାଗବତରେ ମଧ୍ୟ ଏହି ପ୍ରେମଭକ୍ତି ବିଷୟରେ ବର୍ଣ୍ଣନା ଦେଖାଯାଏ—

"ଏବଂବ୍ରତଃ ସ୍ୱପ୍ରିୟନାମକୀର୍ତ୍ତ୍ୟା ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ ।
ହସତ୍ୟଥୋ ରୋଦିତି ରୌତି ଗାୟତ୍ୟୁନ୍ମାଦବନ୍ନୃତ୍ୟତି ଲୋକବାହ୍ୟଃ ।।"

ଭାଗବତ—୧୧ । ୨ । ୪୦ ।।

ଏହିପରି ସାଧକ ଇଷ୍ଟ ପ୍ରଭୁଙ୍କ ନାମ ଗାୟନ ଓ କୀର୍ତ୍ତନରେ ପ୍ରେମଲାଭ କରି ବିଗଳିତ ହୃଦୟରେ ଉଚ୍ଚୈଃ ସ୍ୱରରେ ହାସ୍ୟ କରନ୍ତି ଓ କ୍ରନ୍ଦନ ମଧ୍ୟ କରି ଅନୁକ୍ଷଣ ତାହାଙ୍କୁ ଡାକନ୍ତି; ପୁନଃ ପୁନଃ ତାହାଙ୍କର ନାମ ଗାୟନ କରନ୍ତି; ଅବଶେଷରେ ଅଲୌକିକଭାବାବିଷ୍ଟ ହୋଇ ଉନ୍ମତ୍ତ ପରି ନୃତ୍ୟ ମଧ୍ୟ କରନ୍ତି ।

"ପରସ୍ପରାନୁକଥନଂ ପାବନଂ ଭଗବଦ୍ୟଶଃ ।
ମିଥୋ ରତିର୍ମିଥସ୍ତୁଷ୍ଟିର୍ନିବୃତ୍ତିର୍ମିଥ ଆତ୍ମନଃ ।।"

ଭାଗବତ—୧୧ । ୩ । ୩୦ ।।

ପରମେଶ୍ୱରଙ୍କର ପବିତ୍ର ଯଶକଥା ପରସ୍ପର ନିକଟରେ କହିବାଦ୍ୱାରା ପରସ୍ପର ସହିତ ମିଳନରେ ଆତ୍ମାର ଅନୁରାଗ, ସନ୍ତୋଷ ଓ ଶାନ୍ତି ହେବ ।

"କ୍ୱଚିଦ୍ରୁଦନ୍ତ୍ୟଚ୍ୟୁତଚିନ୍ତୟା କ୍ୱଚିଦ୍ଧସନ୍ତି ନନ୍ଦନ୍ତି ବଦନ୍ତ୍ୟଲୌକିକାଃ ।
ନୃତ୍ୟନ୍ତି ଗାୟନ୍ତ୍ୟନୁଶୀଳୟନ୍ତ୍ୟଜଂ ଭବନ୍ତି ତୂଷ୍ଣୀଂ ପରମେତ୍ୟ ନିର୍ବୃତାଃ ।।"

ଭାଗ—୧୧ । ୩ । ୩୨ ।।

ଭକ୍ତମାନେ ସେହି ଅବିନାଶୀ ପରମାତ୍ମାଙ୍କର ଚିନ୍ତନରେ କେତେବେଳେ ରୋଦନ ଓ କେତେବେଳେ ହାସ୍ୟରତପର ହୁଅନ୍ତି; କେତେବେଳେ ବା ଆନନ୍ଦିତ ହୋଇ ଅଲୌକିକ କଥା ପ୍ରଳାପ କରନ୍ତି; କେତେବେଳେ ପରମାତ୍ମାଙ୍କ ସହିତ ତନ୍ମୟ ହୋଇ ନୃତ୍ୟ ଓ ଲୀଳାନୁଶୀଳନ କରନ୍ତି, କେତେବେଳେ ଅବା ତାହାଙ୍କୁ ହୃଦୟଭିତରେ ଲାଭ କରି ଆନନ୍ଦ-ହେତୁରୁ ତୂଷ୍ଣୀଭାବ ଅବଲମ୍ବନ କରନ୍ତି ।

"କଥଂ ବିନା ରୋମହର୍ଷଂ ଦ୍ରବତା ଚେତସା ବିନା ।
ବିନାନନ୍ଦାଶ୍ରୁକଳୟା ଶୁଧ୍ୟେଦ୍ ଭକ୍ତ୍ୟା ବିନାଶୟଃ ।।"

ଭାଗ—୧୧ । ୧୪ । ୨୩ ।।

ଭକ୍ତି ବିନା ଶରୀର ରୋମାଞ୍ଚିତ ହୁଏ ନାହିଁ ; ଚିତ୍ତ ଆର୍ଦ୍ର ହୁଏ ନାହିଁ ; ଆନନ୍ଦାଶ୍ରୁ ନିପତିତ ହୁଏ ନାହିଁ ଓ ମନ ଶୁଦ୍ଧ ହୁଏ ନାହିଁ ।

## ଠ—ଜ୍ଞାନଭକ୍ତିର ପ୍ରାଧାନ୍ୟ ଓ ସେହି ପ୍ରସାଦରୁ ଅଭୟମୁକ୍ତି ।

ଏହି ବିଶୁଦ୍ଧାମୂଜ୍ଞାନଭକ୍ତିଯୋଗ ସର୍ବାପେକ୍ଷା ଶ୍ରେଷ୍ଠ । ତତ୍ତ୍ୱପରିପୂର୍ଣ ଜୀବର ସହଜରେ ପରମ ମୁକ୍ତିପଦ ଲାଭ ହୁଏ । ଏହାହିଁ ମୁକ୍ତିମାର୍ଗର ପ୍ରଧାନ ପନ୍ଥା । ବିଶୁଦ୍ଧଚେତା ଜ୍ଞାନୀମାନେ ଏ ବିଷୟ ପ୍ରତ୍ୟକ୍ଷ ଅନୁଭବ କରି ସ୍ଥିର କରି ଅଛନ୍ତି—

"ସାତୁ କର୍ମଜ୍ଞାନଯୋଗେଭ୍ୟୋଽପ୍ୟଧିକତରା । ଫଳସ୍ୱରୂପତ୍ୱାତ୍ । × × × ତସ୍ୟ ଜ୍ଞାନମେବ ସାଧନମିତ୍ୟେକେ । ଅନ୍ୟୋନ୍ୟାଶ୍ରୟତ୍ୱ-ମିତ୍ୟନ୍ୟେ । ସ୍ୱୟଂଫଳରୂପତା ଇତ ବ୍ରହ୍ମକୁମାରାଃ ॥"

ନାରଦ-ଭକ୍ତିସୂତ୍ର—୨୫ । ୩୦ ॥

ଏହି ଭକ୍ତି କର୍ମ, ଜ୍ଞାନ ଓ ଯୋଗଠାରୁ ଶ୍ରେଷ୍ଠ । କାରଣ ଏହା ଫଳସ୍ୱରୂପ । କାହା ମତରେ ଜ୍ଞାନ କେବଳ ଭକ୍ତିର ସାଧକ, ଅନ୍ୟ କାହାର ମତରେ ଭକ୍ତି ଓ ଜ୍ଞାନ ପରସ୍ପର ଆଶ୍ରୟ କରିଥାନ୍ତି । ସନତ୍କୁମାରାଦି ମୁନି ଓ ନାରଦଙ୍କ ମତରେ ଭକ୍ତି ସ୍ୱୟଂ ଫଳସ୍ୱରୂପ ।

ଏ ବିଷୟରେ ଶାଣ୍ଡିଲ୍ୟ କହିଛନ୍ତି—

"ତଦେବ କର୍ମିଜ୍ଞାନିଯୋଗିଭ୍ୟ ଆଧିକ୍ୟଶବ୍ଦାତ୍ ।
ପ୍ରଶ୍ନନିରୂପଣାଭ୍ୟାମାଧିକ୍ୟସିଦ୍ଧେଃ ॥

ଭକ୍ତିମୀମାଂସାଦର୍ଶନ—୨୨ । ୨୩ ॥

କର୍ମ, ଜ୍ଞାନ ଓ ଯୋଗ ଅପେକ୍ଷା ପ୍ରଭୁଙ୍କ ନାମଭଜନ କେବଳ ଶ୍ରେୟସ୍କର, ଏବଂ ସେହି ଭକ୍ତି ହିଁ ପ୍ରଧାନ । ପ୍ରଶ୍ନାର୍ଥନିରୂପଣଦ୍ୱାରା ମଧ୍ୟ ଭକ୍ତିର ପ୍ରାଧାନ୍ୟ ଜଣାଯାଏ । ମହାମୁନି ନାରଦ ଦୃଢ଼ତା ସହିତ ଭକ୍ତିର ପ୍ରାଧାନ୍ୟ ବ୍ୟାଖ୍ୟା କରି ଉପସଂହାର କରିଛନ୍ତି—

"ତ୍ରିସତ୍ୟସ୍ୟ ଭକ୍ତିରେବ ଗରୀୟସୀ ଭକ୍ତିରେବ ଗରୀୟସୀ ॥"

ନାରଦ ଭକ୍ତିସୂତ୍ର—୮୧ ॥

ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନରେ ସତତ ସତ୍ୟସ୍ୱରୂପ ବିଦ୍ୟମାନ ପ୍ରଭୁ ପରଂବ୍ରହ୍ମଙ୍କ ପ୍ରତି ଭକ୍ତି ହେଉଛି ସବୁଠାରୁ ଶ୍ରେଷ୍ଠ, ସବୁଠାରୁ ଶ୍ରେଷ୍ଠ । *

---

* "ଏତଦ୍ଧାଲମ୍ବନଂ ଶ୍ରେଷ୍ଠମେତଦାଲମ୍ବନଂ ପରମ୍, ଏତଦାଲମ୍ବନଂ ଜ୍ଞାତ୍ୱା ବ୍ରହ୍ମଲୋକେ ମହୀୟତେ ।"
"କଠ—୧ । ୨ । ୧୭ ।"

"ବ୍ରହ୍ମକାଣ୍ଡଂ ତୁ ଭକ୍ତୌ ତସ୍ୟାନୁଜ୍ଞାନାୟ ସାମାନ୍ୟାତ୍ ॥
"ଭକ୍ତିମୀମାଂସାଦର୍ଶନ"—୨୬ ।

ପୂର୍ବ ସୂତ୍ରରେ ଭକ୍ତିର ପ୍ରାଧାନ୍ୟ ପ୍ରମାଣିତ ହୋଇଅଛି । ବର୍ତ୍ତମାନ ଏହି ଆଶଙ୍କା ହୋଇପାରେ ଯେ, ଯଦି ଭକ୍ତି କେବଳ ପ୍ରଧାନ, ତେବେ ଜ୍ଞାନର ପ୍ରାଧାନ୍ୟ କିପରି ହେବ; ଲୋକପ୍ରସିଦ୍ଧ ଜ୍ଞାନକାଣ୍ଡ ବା ଉତ୍ତରକାଣ୍ଡର ଅସ୍ତିତ୍ୱ ତ ବିଲୁପ୍ତ ହେବ; କିନ୍ତୁ ତାହା ପ୍ରକୃତରେ ନୁହେଁ । ବ୍ରହ୍ମକାଣ୍ଡ ଭକ୍ତିନିମନ୍ତେ କେବଳ ଶ୍ରୁତ, ଜ୍ଞାନ ନିମନ୍ତେ ନୁହେଁ । ଉକ୍ତ ଦୁଇ କାଣ୍ଡ ନିଜ ସାମର୍ଥ୍ୟରୁ ଅଜ୍ଞାତାର୍ଥ ଜ୍ଞାପନ କରେ । କାରଣ, ଭକ୍ତିନିମନ୍ତେ କେବଳ ବ୍ରହ୍ମକାଣ୍ଡ ନିର୍ଦ୍ଦିଷ୍ଟ । ଏହିପରି ମୀମାଂସାଗ୍ରନ୍ଥରେ ଭକ୍ତିର ଉତ୍କର୍ଷ ପ୍ରତିପାଦିତ ହୋଇଛି । ଉପନିଷଦ୍‌ରେ ମଧ୍ୟ ଉକ୍ତ ଅଛି—

"ଭକ୍ତ୍ୟା ବିନା ବ୍ରହ୍ମଜ୍ଞାନଂ କଦାପି ନ ଜାୟତେ ।
ତସ୍ମାତ୍ ତ୍ୱମପି ସର୍ବୋପାୟାନ୍ ପରିତ୍ୟଜ୍ୟଭକ୍ତିମାଶ୍ରୟ ।
ଭକ୍ତିନିଷ୍ଠୋ ଭବ । ଭକ୍ତିନିଷ୍ଠୋ ଭବ । ଭକ୍ତ୍ୟା ସର୍ବସିଦ୍ଧୟଃ
ସିଧ୍ୟନ୍ତି । ଭକ୍ତ୍ୟାଽସାଧ୍ୟଂ ନ କିଞ୍ଚିଦସ୍ତି ॥"
"ତ୍ରିପାଦବିଭୂତି ମହାନାରାୟଣ ଉ: ଅ ୮—" ।

ଅର୍ଥାତ୍ ଭକ୍ତି ବିନା ବ୍ରହ୍ମଜ୍ଞାନ କଦାପି ହୁଏ ନାହିଁ । ଅତଏବ ତୁମ୍ଭେ ସକଳ ଉପାୟ ପରିତ୍ୟାଗ କରି ଏକମାତ୍ର ଭକ୍ତିର ଆଶ୍ରୟ ନିଅ । ଭକ୍ତିରେ ନିଷ୍ଠା ବା ତତ୍ପରତା ଲାଭ କର, ଭକ୍ତିତତ୍ପର ହୁଅ । ଏକମାତ୍ର ଭକ୍ତିରୁ ସକଳ ପ୍ରକାର ସିଦ୍ଧିଲାଭ ହୁଏ । ଭକ୍ତିର ଅସାଧ୍ୟ କିଛି ନାହିଁ ।

"ଭକ୍ତିଗମ୍ୟଂ ପରଂ ତତ୍ତ୍ୱମନ୍ତର୍ଲୀନେନ ଚେତସା ।
ଭାବନାମାତ୍ରମେବାତ୍ର କାରଣଂ ପଦ୍ମସମ୍ଭବ ॥"
ଯୋଗଶିଖୋପନିଷଦ୍ ୩ । ୨୩

ହେ ପଦ୍ମସମ୍ଭବ ! ଅନ୍ତର୍ଲୀନ ମନଦ୍ୱାରା ଏବଂ ଐକାନ୍ତିକ ଭକ୍ତିଯୋଗରେ ପରମ ତତ୍ତ୍ୱ ଜଣାଯାଏ । ଏ ବିଷୟରେ ଭାବନା ଓ ଭକ୍ତି ଏକମାତ୍ର କାରଣ ।

ବେଦବିତ୍ ଶ୍ୱେତାଶ୍ୱତର ମୁନି ଏ ବିଷୟରେ କହିଛନ୍ତି—

"ଭାବଗ୍ରାହ୍ୟମନୀଡ଼ାଖ୍ୟଂ ଭାବାଭାବକରଂ ଶିବମ୍ ।
କଳାସର୍ଗକରଂ ଦେବଂ ଯେ ବିଦୁସ୍ତେ ଜହୁସ୍ତନୁମ୍ ॥"

"ଶ୍ୱେତାଶ୍ୱ—୫—୧୪" ।

ପ୍ରଭୁ ପରମାତ୍ମା ଭାବଗ୍ରାହ୍ୟ; ଅର୍ଥାତ୍ ଯାହାର ଅନ୍ତଃକରଣରେ ପରମାତ୍ମାଙ୍କ ପ୍ରତି ବିଶୁଦ୍ଧ ଭକ୍ତି ଅଛି, ସେହି କେବଳ ତାହାଙ୍କୁ ପାଏ । ସେ ଶରୀର ବିହୀନ, ଭାବ ଓ ଅଭାବର କାରଣ, ବିଶୁଦ୍ଧ, ଅର୍ଥାତ୍ ଅବିଦ୍ୟା ଓ ମାୟାରହିତ ଏବଂ ସେ ପ୍ରାଣୀମାନଙ୍କର ସୃଷ୍ଟିକର୍ତ୍ତା । ଯେଉଁମାନେ ଏହିରୂପରେ ପ୍ରଭୁ ପରମାତ୍ମାଙ୍କୁ ଜାଣିପାରନ୍ତି, ସେହିମାନେ କେବଳ ଏହି ଭୌତିକ ଦେହ ପରିତ୍ୟାଗ କରି ଅଲୌକିକ ଅକ୍ଷୟଧାମ ପ୍ରାପ୍ତ ହୁଅନ୍ତି ।

"ଏକୋ ବଶୀ ନିଷ୍କ୍ରିୟାଣାଂ ବହୂନା-ମେକଂ ବୀଜଂ ବହୁଧା ଯଃ କରୋତି ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରାସ୍ତେଷାଂ ସୁଖଂ ଶାଶ୍ୱତଂ ନେତରେଷାମ୍ ।
ନିତ୍ୟୋ ନିତ୍ୟାନାଂ ଚେତନଶ୍ଚେତନାନାମେକୋବହୂନାଂ ଯୋ
ବିଦଧାତି କାମାନ୍ ।
"ତତ୍କାରଣଂ ସାଂଖ୍ୟଯୋଗାଧିଗମ୍ୟ ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାଶୈଃ ॥"

"ଶ୍ୱେତାଶ୍ୱ—୬ । ୧୨ । ୧୩" ।

ଏକମାତ୍ର ପ୍ରଭୁ ପରମାତ୍ମା ସ୍ୱାଧୀନ । ଜୀବ ସ୍ୱତନ୍ତ୍ର ହୋଇ କୌଣସି କାର୍ଯ୍ୟ କରି ପାରେ ନାହିଁ । ସେ 'ମୁଁ କର୍ତ୍ତା' 'ମୁଁ ଭୋକ୍ତା', 'ମୁଁ ସୁଖୀ', 'ମୁଁ ଦୁଃଖୀ', 'ମୁଁ ସ୍ଥୂଳ', 'ମୁଁ କୃଶ'—ଇତ୍ୟାଦିରୂପେ ନିଜ ଶରୀରକୁ ଜ୍ଞାନ କରେ । ଏପରି ସକଳ ଜୀବର ମଧ୍ୟ କାରଣ ପରମେଶ୍ୱର । ସେ ସ୍ୱୟଂହିମାରେ ସକଳ କାର୍ଯ୍ୟ କରାଉ ଅଛନ୍ତି, ସେହି ପ୍ରଭୁ ପରମାତ୍ମାଙ୍କୁ ଯେଉଁମାନେ ଭକ୍ତି ଓ ଧ୍ୟାନ ବା ଯୋଗବଳରେ ଦର୍ଶନ କରିପାରନ୍ତି, ସେହି ଜ୍ଞାନୀମାନେ କେବଳ ନିତ୍ୟ ସୁଖଲାଭ କରନ୍ତି; ଅନ୍ୟ ଭାଗ୍ୟରେ ସେପରି ସୁଖଭୋଗ ଘଟେ ନାହିଁ । ଜଗତରେ ସକଳ ନିତ୍ୟ ପଦାର୍ଥମଧ୍ୟରେ ସେହି ପରମାତ୍ମା କେବଳ ପ୍ରଧାନ ନିତ୍ୟ ପଦାର୍ଥ । ସକଳ ଚେତନଶାଳୀମାନଙ୍କର ସେହି କେବଳ ଚୈତନ୍ୟଦାତା; ସେ ପ୍ରାଣୀମାନଙ୍କର ଭୋଗ୍ୟବସ୍ତୁ ବିଧାନ କରନ୍ତି । ମାନବ ସେହି ପ୍ରସିଦ୍ଧ, ଜଗତର କାରଣ, ପ୍ରଭୁ ପରମାତ୍ମାଙ୍କୁ ତତ୍ତ୍ୱଜ୍ଞାନ ଓ ଧ୍ୟାନବଳରେ ଜାଣି ଭଜନ କରିବାଦ୍ୱାରା ସକଳ ମାୟାପାଶରୁ ବିମୁକ୍ତ ହୁଅନ୍ତି ।

"କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ କ୍ଷରାତ୍ମାନାବୀଶତେ ଦେବ ଏକଃ ।
ତସ୍ୟାଭିଧ୍ୟାନାଦ୍ ଯୋଜନାତ୍ ତତ୍ତ୍ୱଭାବାଦ୍ ଭୂୟଶ୍ଚାନ୍ତେ ବିଶ୍ୱମାୟାନିବୃତ୍ତିଃ ॥"

**ଜ୍ଞାତ୍ୱା ଦେବଂ ସର୍ବପାଶାପହାନିଃ କ୍ଷୀଣୈଃ କ୍ଲେଶୈର୍ଜନ୍ମମୃତ୍ୟୁପ୍ରହାଣିଃ ।**
**ତସ୍ୟାଭିଧ୍ୟାନାତ୍ତୃତୀୟଂ ଦେହଭେଦେ ବିଶ୍ୱୈଶ୍ୱର୍ଯ୍ୟଂ କେବଳ ଆପ୍ତକାମଃ ॥**

"ଶ୍ୱେତାଶ୍ୱ—୧ । ୧୦—୧୧" ନାରଦ ପରିବ୍ରାଜକ ଉ: ୯ । ୯—୧୦ ।

ଏହି ସମସ୍ତ ଜଗତ ବିନଶ୍ୱର । ସେହି ଚିଦାନନ୍ଦମୟ ଅଦ୍ୱିତୀୟ ପରମାତ୍ମା ପରମେଶ୍ୱର କେବଳ ସମସ୍ତଙ୍କର ପ୍ରଭୁ, **ଅର୍ଥାତ୍** ସର୍ବପ୍ରଧାନ । ସେହି କେବଳ ପ୍ରାଣୀମାନଙ୍କର ଅଜ୍ଞାନ ହରଣ କରନ୍ତି । ସେହି ଅଦ୍ୱିତୀୟ ପରମ ପୁରୁଷ ପରମାତ୍ମାଙ୍କ ଆଶ୍ରୟରେ କେବଳ ଜୀବ ଭୋଗ୍ୟବସ୍ତୁ ଭୋଗ କରୁଥାଏ । ସେହି ପରମାତ୍ମା ମହାପ୍ରଭୁଙ୍କ ନାମ ସ୍ମରଣ, ଭଜନ, କୀର୍ତ୍ତନ, ପରମାତ୍ମାଙ୍କଠାରେ ବିଶ୍ୱର ସଂଯୋଗ ସମ୍ପାଦନ ଓ ସର୍ବଦା "ମୁଁ କେବଳ ସେହି ପରଂବ୍ରହ୍ମଙ୍କ ଅଂଶ"—ଏହିପରି ତତ୍ତ୍ୱ ନିର୍ଣ୍ଣୟଦ୍ୱାରା ମନୁଷ୍ୟ ବିଶ୍ୱ ସଂସାର-ମାୟାରୁ ନିବୃତ୍ତ ହୋଇ ମୁକ୍ତି-ପଦର ଅଧିକାରୀ ହୁଅନ୍ତି । ପ୍ରଭୁ ପରମାତ୍ମାଙ୍କ ସ୍ମରଣ, ଭଜନ, ଧ୍ୟାନ ଓ ଉପାସନାର ମାହାତ୍ମ୍ୟ ଅତି ଆଶ୍ଚର୍ଯ୍ୟକର । ତାହାଙ୍କର କିଛି ଅଂଶମାତ୍ର ଜ୍ଞାତ ହେଲେ ସଂସାରର ପୁତ୍ରକଳତ୍ର ଆଦି ସାଂସାରିକ ମାୟାସ୍ୱରୂପ ଅଜ୍ଞାନ-ପାଶ ଛିନ୍ନ ହୁଏ । ଯେଉଁମାନେ ସେହି ପ୍ରଭୁ ପରମାତ୍ମାପରମ-ପୁରୁଷ ପରମାତ୍ମାଙ୍କୁ ଯଥାର୍ଥରୂପେ ଜ୍ଞାତ ହୁଅନ୍ତି, ସେମାନଙ୍କର ଅଜ୍ଞାନଜନିତ କ୍ଲେଶ କ୍ଷୟ ହୁଏ ଏବଂ ଜନ୍ମ, ଜରା, ମୃତ୍ୟୁ ପ୍ରଭୃତି ଭବଯନ୍ତ୍ରଣା କଦାପି ଅନୁଭୂତ ହୁଏ ନାହିଁ । ବ୍ରହ୍ମ ସ୍ମରଣ, ଚିନ୍ତନର ଫଳ ଏହିପ୍ରକାର—ପ୍ରଭୁ ପରମାତ୍ମାଙ୍କୁ ଏକନିଷ୍ଠାରେ ସ୍ମରଣ ଭଜନ କଲେ ଐଶ୍ୱର୍ଯ୍ୟ-ଭୋଗର ବିରତିହେତୁରୁ ପ୍ରାଣୀମାନେ ମୃତ୍ୟୁପରେ ପୂର୍ଣ୍ଣାନନ୍ଦ ପରଂବ୍ରହ୍ମଙ୍କଠାରେ ଅନୁପମ ଆନନ୍ଦ ଅନୁଭବ କରନ୍ତି । ସେହି ସୁଖର କଦାପି ହାନି ହୁଏ ନାହିଁ ।

**"ଯସ୍ମାତ୍‌ପରଂ ନାପରମସ୍ତି କିଞ୍ଚିଦ୍ ଯସ୍ମାନ୍ନାଣୀୟୋ ନ ଜ୍ୟାୟୋଽସ୍ତି କଶ୍ଚିତ୍ ।**
**ବୃକ୍ଷ ଇବ ସ୍ତବ୍‌ଧୋ ଦିବି ତିଷ୍ଠତ୍ୟେକସ୍ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବମ୍ ॥**
**ତତୋ ଯଦୁତ୍ତରତରଂ ତଦରୂପମନାମୟମ୍ ।**
**ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତ୍ୟଥେତରେ ଦୁଃଖମେବାପି ଯନ୍ତି ॥"**

'ଶ୍ୱେତାଶ୍ୱଉ:—୩ । ୯—୧୦ ।

ଯେଉଁ ହେତୁରୁ ସେହି ପରମ ପ୍ରଭୁ ପରମାତ୍ମାଙ୍କ ବ୍ୟତୀତ ନିତ୍ୟପୁରୁଷ ଅନ୍ୟ କେହି ନାହିଁ; ଅତଏବ ସେହି ନିତ୍ୟ ପଦାର୍ଥ କେବଳ ଜଗତରେ ଅତି ସୂକ୍ଷ୍ମ ଓ ସର୍ବପ୍ରଧାନ ଏବଂ ବୃକ୍ଷ ତୁଲ୍ୟ ନିଶ୍ଚଳଭାବରେ ସ୍ୱପ୍ରକାଶ-ମହିମାରେ ସର୍ବତ୍ର ବ୍ୟାପ୍ତ ହୋଇ ରହିଅଛନ୍ତି—ସେ ପୂର୍ଣ୍ଣ ଓ ଅଦ୍ୱିତୀୟ; ନିଖିଳ ଜଗତର କୌଣସି ସ୍ଥାନରେ ମଧ୍ୟ ତାହାଙ୍କର ଅଭାବ ନାହିଁ । ସର୍ବତ୍ର

ସେ ପୂର୍ଣ୍ଣରୂପରେ ଅବସ୍ଥାନ କରିଅଛନ୍ତି । ଅତଏବ ତାହାଙ୍କୁ ଜାଣି ଭଜି ପାରିଲେ ସକଳପଦାର୍ଥ ପରିଜ୍ଞାତ ହୁଏ । ଯେଉଁମାନେ କାର୍ଯ୍ୟର କାରଣସ୍ୱରୂପ ସେହି ପୂର୍ଣ୍ଣବ୍ରହ୍ମଙ୍କୁ ଜାଣିପାରନ୍ତି, ସେମାନେ ପରମପଦ ଲାଭ କରି ଅମୃତତ୍ତ୍ୱ ପ୍ରାପ୍ତ ହୁଅନ୍ତି । ଆଉ ଯେଉଁମାନେ ସେହି ପରମାତ୍ମାଙ୍କୁ ଯଥାର୍ଥରୂପରେ ପରିଜ୍ଞାତ ହୋଇ ପାରନ୍ତି ନାହିଁ, ସେମାନେ ସାଂସାରିକ ମାୟା-ପାଶରେ ବଦ୍ଧ ହୋଇ ରହନ୍ତି । ସେହି ବ୍ରହ୍ମ କେବଳ ଏହି ଜଗତର ଆଦି କାରଣ; କିନ୍ତୁ ସେ ନିଜେ କାର୍ଯ୍ୟ-କାରଣବିହୀନ, ତାହାଙ୍କର ରୂପ ନାହିଁ ଏବଂ ସେ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ, ଏହି ତାପତ୍ରୟବିହୀନ; ଏହିପରିଭାବରେ ଯେଉଁମାନେ ତାହାଙ୍କୁ ଜାଣିପାରନ୍ତି; ସେମାନେ କେବଳ ଅମର ହୋଇ ଚିରକାଳ ପୂର୍ଣ୍ଣାନନ୍ଦ ଭୋଗ କରନ୍ତି; କିନ୍ତୁ ଯେଉଁମାନେ ସେହି ବ୍ରହ୍ମଙ୍କୁ ଜାଣିବା ବା ଭଜନ କରିବା ବିଷୟରେ ଅସମର୍ଥ, ସେମାନେ ଅନନ୍ତକାଳପର୍ଯ୍ୟନ୍ତ ଅସୀମ ଦୁଃଖ ଭୋଗ କରନ୍ତି ।

ପୁଣି କୁହାଯାଇଛି—

"ଅଶରୀରଂ ଶରୀରେଷୁ ଅନବସ୍ଥେଷ୍ୱବସ୍ଥିତମ୍ ।
ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି ॥
ସର୍ବସ୍ୟ ଧାତାରମଚିନ୍ତ୍ୟଶକ୍ତିଂ ସର୍ବାଗମାନ୍ତାର୍ଥବିଶେଷ୍ୟବେଦ୍ୟମ୍ ।
ପରାତ୍ ପରଂ ପରମଂ ବେଦିତବ୍ୟଂ ସର୍ବାବସାନେ ସକୃଦ୍ ବେଦିତବ୍ୟମ୍ ॥"

'ନାରଦପରିବ୍ରାଜକୋପନିଷଦ୍—୯ । ୧୫ । ୧୬ ।'

ଯେଉଁ ପରମାତ୍ମା ବିନାଶଶୀଳ ଶରୀରରେ ଅବସ୍ଥିତ, ଅଥଚ ସ୍ୱୟଂ ଶରୀରବିହୀନ, ମହାନ୍ ଓ ବ୍ୟାପକ—ଏହିରୂପରେ ଯେ ପରମାତ୍ମାଙ୍କ ସ୍ୱରୂପ ଉପଲବ୍ଧି କରିପାରନ୍ତି; ସେହି ବ୍ୟକ୍ତି କେବେହେଲେ ଅବିଦ୍ୟାଜନିତ ଶୋକ ଅନୁଭବ କରନ୍ତି ନାହିଁ । ଯେ ସମଗ୍ର କର୍ମଫଳର ବିଧାନକର୍ତ୍ତା, ଅପରିମିତ ମହିମାହେତୁରୁ ଯାହାଙ୍କର ଶକ୍ତି ଚିନ୍ତା-ରାଜ୍ୟରୁ ବହିର୍ଭୂତ, ଯେ ସକଳ ଶାସ୍ତ୍ରର ଚରମ ବେଦ୍ୟ, ଅର୍ଥାତ୍ ସକଳ ଶାସ୍ତ୍ର ଯାହାଙ୍କ ଲକ୍ଷ୍ୟରେ କେବଳ ପ୍ରବର୍ତ୍ତିତ, ସେହି ପରାତ୍ପର ପ୍ରଭୁ ପରମେଶ୍ୱର ଏକମାତ୍ର ଜ୍ଞାତବ୍ୟ । କାରଣ, ସକଳ ପଦାର୍ଥ ବିଲୟପ୍ରାପ୍ତ ହେଲେ ମଧ୍ୟ ସେହି ଏକମାତ୍ର ବ୍ରହ୍ମ ଅବଶିଷ୍ଟ ରହନ୍ତି । ଅତଏବ ସେହି ଏକ କେବଳ ଜ୍ଞାତବ୍ୟ ବିଷୟ । ଏ ବିଷୟରେ ଶ୍ରୁତି ପ୍ରମାଣ ଏହିପରି—

"ଯସ୍ମିନ୍ ଦ୍ୟୌଃ ପୃଥିବୀ ଚାନ୍ତରୀକ୍ଷମୋତଂ ମନଃ ସହ ପ୍ରାଣୈଶ୍ଚ ସର୍ବୈଃ ।
ତମେବୈକଂ ଜାନଥ ଆତ୍ମାନମନ୍ୟା ବାଚୋ ବିମୁଞ୍ଚଥ ଅମୃତସ୍ୟୈଷ ସେତୁଃ ॥"

ମୁଣ୍ଡକଉ :—୨ । ୨ । ୫ ॥

ସେହି ପରଂବ୍ରହ୍ମ ଦୁର୍ଲକ୍ଷ୍ୟ । ଅତଏବ ଏହାର ବିଂଶ୍ଳେଷଣସକାଶେ ପୁନର୍ବାର କହୁଅଛନ୍ତି—ହେ ଶିଷ୍ୟଗଣ ! ଯାହାଠାରେ ସ୍ୱର୍ଗ, ପୃଥିବୀ, ଅନ୍ତରୀକ୍ଷ ସକଳଇନ୍ଦ୍ରିୟ ଓ ପ୍ରାଣ ସହିତ ମନ ଅବସ୍ଥିତ ଅଛନ୍ତି, ସେହି କେବଳ ଆତ୍ମା ବୋଲି ଜାଣ । ଏହାଙ୍କୁ କେବଳ ଭଜନ ସ୍ମରଣ କର ଓ ଅନ୍ୟ ସବୁ ବାକ୍ୟ ପରିତ୍ୟାଗ କର । ଏହି ବ୍ରହ୍ମଜ୍ଞାନ ଭକ୍ତି ଓ ମୁକ୍ତିର ସେତୁସ୍ୱରୂପ, ଅର୍ଥାତ୍ ସଂସାରସାଗର ତରିବା ସକାଶେ ଏହା ଏକମାତ୍ର ସେତୁ ।

ଉପର୍ଯ୍ୟୁକ୍ତ ଉପନିଷଦ୍ ବାକ୍ୟରୁ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗର ସିଦ୍ଧାନ୍ତ ଓ ତା ସହିତ ତତ୍‌ମାହାତ୍ମ୍ୟ ଅମୃତମୟ ମୁକ୍ତପଦ ପ୍ରାପ୍ତ ହେବାର ବିବରଣ ସମ୍ୟକ୍ ପ୍ରଦର୍ଶିତ ହେଲା । ଜୀବର ମଧ୍ୟ ସେହି କେବଳ ସ୍ୱାଭାବିକ ଆକାଙ୍‌କ୍ଷା, ଅମୃତର ପୁତ୍ର ଅମୃତତ୍ୱ ନିମନ୍ତେ ସର୍ବଦା ପିପାସାଯୁକ୍ତ । ଋଗ୍‌ବେଦରେ ମାନବକୁ "ଅମୃତର ପୁତ୍ର" କୁହାଯାଇଛି—

"ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ ॥"

ଜଗତର ପ୍ରତ୍ୟେକ ନରନାରୀ ସେହି ଜ୍ୟୋତିର୍ମୟ, ଅମୃତମୟ ଓ ମହିମାମୟ ପରମାତ୍ମାଙ୍କର ସନ୍ତାନ । ଅତଏବ ମର୍ତ୍ତ୍ୟରେ ମନୁଷ୍ୟ ହେଲେ ମଧ୍ୟ ବିବେକୀ ବ୍ୟକ୍ତିର ପ୍ରାଣରେ ସର୍ବଦା ଅମୃତତ୍ୱ-ପ୍ରାପ୍ତି ନିମନ୍ତେ ତୃଷା ଜାତ ହେଉଥାଏ । ଯେଉଁହେତୁରୁ ସମସ୍ତେ ଅମୃତର ପୁତ୍ର, ଅତଏବ "ଅମୃତତ୍ୱ" ବିବେକୀ ହୃଦୟର ନିତ୍ୟ ଆକାଙ୍‌କ୍ଷାର ବସ୍ତୁ । ଯେପରି ଚାତକପକ୍ଷୀ ଆକାଶନିଃସୃତ ଜଳଭିନ୍ନ ଅନ୍ୟବାରିରେ ତୃପ୍ତି ଲାଭ କରେ ନାହିଁ, ସେହିପରି ଜୀବ ଅମୃତତ୍ୱଭିନ୍ନ ଅନ୍ୟ କୌଣସିଥିରେ ପରମ ଶାନ୍ତିଲାଭ କରି ପାରେ ନାହିଁ । ଅତଏବ ସେ ଚିରଦିନ ପ୍ରାର୍ଥନା କରେ—

"ମୃତ୍ୟୋର୍ମା ଅମୃତଂ ଗମୟ ॥"

ମୈତ୍ରେୟୀ କହିଅଛନ୍ତି—

"× × ଯେନାହଂ ନାମୃତାସ୍ୟାଂ କିମହଂ ତେନ କୁର୍ଯ୍ୟାମ୍ × ×" ॥

ବୃହଦାରଣ୍ୟକ—୪ । ୫ । ୪ ॥

ଅର୍ଥାତ୍—ଯହିଁରେ ମୋର ଅମୃତତ୍ୱର ଆଶା ନାହିଁ, ତାହାଦ୍ୱାରା ବା ମୁଁ କ'ଣ କରିବି । ମାନବର ଏହି ଅତୃପ୍ତ ଆକାଙ୍‌କ୍ଷାବାରଣର ଏକମାତ୍ର ଉପାୟ—ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗ ।

ପରଂବ୍ରହ୍ମ ପରିଜ୍ଞାନଦ୍ୱାରା ପରମପୁରୁଷାର୍ଥ ସିଦ୍ଧ ହୁଏ, ଅତଏବ ବହୁ ପ୍ରଯତ୍ନପୂର୍ବକ ସେହି ପରମପୁରୁଷ ପରମାତ୍ମାଙ୍କୁ ସର୍ବଦା ନିଜ ଆତ୍ମା ବା ହୃଦୟରେ ଧ୍ୟାନ କରିବ ।

ଜଗତ୍ପିତା ଜଗଦୀଶ୍ୱରଙ୍କ ବ୍ୟତୀତ ଏହି ସଂସାରରେ ଆଉ କିଛି ଜାଣିବା ପ୍ରୟୋଜନ ନାହିଁ । କେବଳ ଏକ ଓ ଅଦ୍ୱିତୀୟ ପରମାତ୍ମା ଏହି ଜଗତରେ ଆରାଧ୍ୟ । ତାହାଙ୍କର ଆରାଧନାଦ୍ୱାରା କେବଳ ଜନ୍ମ ସଫଳ ହୁଏ । ଯେଉଁମାନେ ସେହି ବ୍ରହ୍ମାଣ୍ଡର ଅଧୀଶ୍ୱର ପ୍ରଭୁ ପରମାତ୍ମାଙ୍କୁ ଶରଣ, ଦର୍ଶନ, ଚନ୍ତନ ଓ ଭଜନ କରନ୍ତି, ସେମାନେ କେବଳ ପରମ ଶାନ୍ତି ଲଭ କରନ୍ତି; ତଦ୍‌ଭିନ୍ନ ଅନ୍ୟ କୌଣସି ପ୍ରକାରରେ ଶାନ୍ତିଲଭ ଅସମ୍ଭବ । ମହର୍ଷି ଶାଣ୍ଡିଲ୍ୟ ଭକ୍ତି-ରସର ବର୍ଣ୍ଣନା ସଙ୍ଗେ ସଙ୍ଗେ ଏହା ମଧ୍ୟ କହିଛନ୍ତି—

"ତତ୍‌ସଂସ୍ଥସ୍ୟାମୃତତ୍ୱୋପଦେଶାତ୍ ॥" ଭକ୍ତିମୀମାଂସା-ଦର୍ଶନ ୩ ॥

ଅର୍ଥାତ୍ ଯେଉଁମାନେ ବ୍ରହ୍ମସଂସ୍ଥ, ସେମାନେ କେବଳ ଅମୃତପଦ ପ୍ରାପ୍ତ ହୁଅନ୍ତି । ଛାନ୍ଦୋଗ୍ୟ ଶ୍ରୁତିରେ ଅଛି—

"× × ବ୍ରହ୍ମସଂସ୍ଥୋଽମୃତତ୍ୱମେତୀତ ॥" ଛା—୨ । ୨୩ । ୧ ॥

ଅର୍ଥାତ୍ ବ୍ରହ୍ମନିଷ୍ଠ ବ୍ୟକ୍ତି କେବଳ ମୁକ୍ତିଭାଗୀ ହୁଏ । ଏହି ହେତୁରୁ ଭକ୍ତି କେବଳ ମୁକ୍ତିଲଭର ଉପାୟ ।

ପୁନଶ୍ଚ କୁହାଯାଇଛି—

"ଜ୍ଞାନମିତ ଚେନ୍ନ ଦ୍ୱିଷତୋଽପି ଜ୍ଞାନସ୍ୟ ତଦସଂସ୍ଥିତେଃ ॥"

ଶାଣ୍ଡିଲ୍ୟ ସୂତ୍ର ୪ ॥

ପୂର୍ବସୂତ୍ରରେ କୁହାଯାଇଛି କି ବ୍ରହ୍ମସଂସ୍ଥ ବ୍ୟକ୍ତି ମୁକ୍ତିଲଭ କରେ । ତେବେ ଏଠାରେ ବ୍ରହ୍ମସଂସ୍ଥ ଶବ୍ଦର ଅର୍ଥ ବ୍ରହ୍ମଜ୍ଞାନ ବା ବ୍ରହ୍ମଭକ୍ତି । ଏହି ପ୍ରଶ୍ନର ଉତ୍ତର ଏହିପରି— ଜଗତରେ ବ୍ରହ୍ମଜ୍ଞାନୀ ଅପେକ୍ଷା ବ୍ରହ୍ମଭକ୍ତର ମୁକ୍ତି ହୁଏ—ଏପରି କହିବା ଅଧିକ ନ୍ୟାଯ୍ୟ । କାରଣ, ବ୍ରହ୍ମଜ୍ଞାନୀର ମୁକ୍ତିଲଭ କହିଲେ ବ୍ରହ୍ମଦ୍ୱେଷୀର ମଧ୍ୟ ବ୍ରହ୍ମଜ୍ଞାନ ଥିବା ହେତୁରୁ ସେଠାରେ ମଧ୍ୟ ମୁକ୍ତିର ସମ୍ଭାବନା ହୋଇପାରେ; କିନ୍ତୁ ବ୍ରହ୍ମଦ୍ୱେଷୀର ବ୍ରହ୍ମଭକ୍ତି ନ ଥିବାରୁ ତାଠାରେ ମୁକ୍ତିର ସମ୍ଭାବନା ଅସମ୍ଭବ । ଏପରି ଅର୍ଥ ବ୍ରହ୍ମସଂସ୍ଥ ଶବ୍ଦରୁ ଜଣାଯାଏ । ଲୌକିକ ବ୍ୟବହାରରେ ମଧ୍ୟ ରାଜାଙ୍କପ୍ରତି ଅନୁରକ୍ତ ଅମାତ୍ୟପ୍ରଭୃତିଙ୍କୁ ରାଜସଂସ୍ଥ କୁହାଯାଏ । ଯେଉଁମାନେ ରାଜାର ଦ୍ରୋହପକ୍ଷୀ, ସେମାନଙ୍କୁ ରାଜସଂସ୍ଥ କୁହାଯାଏ ନାହିଁ । ବେଦ ଓ ବେଦାନ୍ତରେ ମଧ୍ୟ ସେହି ବ୍ୟବହାର କେବଳ କରିବା ବିଧେୟ । ଅତଏବ ଯେଉଁମାନେ ବ୍ରହ୍ମଭକ୍ତ ସେହିମାନଙ୍କୁ କେବଳ ବ୍ରହ୍ମସଂସ୍ଥ କୁହାଯାଏ । କେବଳ ଶବ୍ଦତଃ ଯେଉଁମାନେ ବ୍ରହ୍ମଜ୍ଞାନୀ (କାର୍ଯ୍ୟତଃ ବା ଭକ୍ତିଦ୍ୱାରା ନୁହେଁ), ସେମାନେ ପ୍ରକୃତ ବ୍ରହ୍ମସଂସ୍ଥ ନୁହନ୍ତି । ଏ ବିଷୟରେ ଶ୍ୱେତାଶ୍ୱତର ମୁନି କହିଅଛନ୍ତି—

"× × ଯେ ପୂର୍ବଂ ଦେବା ଋଷୟଶ୍ଚ ତଦ୍‌ବିଦୁସ୍ତେ ତନ୍ମୟା ଅମୃତା ବୈ ବଭୂବୁଃ ॥" ଶ୍ୱେତାଶ୍ୱତର ଉ: ୫ । ୬ ॥

ପୂର୍ବକାଳରେ ରୁଦ୍ର ଆଦି ଦେବତାମାନେ ଓ ବାମଦେବ ଆଦି ଋଷିଗଣ ସେହି ବ୍ରହ୍ମଙ୍କୁ ଜ୍ଞାତ ହୋଇଥିଲେ । ସେମାନେ ତନ୍ମୟ (ବ୍ରହ୍ମଭକ୍ତିପରିପୂର୍ଣ ବା ବ୍ରହ୍ମମୟ) ହୋଇ ଅମୃତତ୍ତ୍ୱଲାଭ କରିଥିଲେ ।

ପୁଣି ଯାଜ୍ଞବଲ୍‌କ୍ୟ ମହର୍ଷି କହିଛନ୍ତି—

"× × ତମେବ ମନ୍ୟ ଆତ୍ମାନଂ ବିଦ୍ୱାନ୍ ବ୍ରହ୍ମାମୃତୋଽମୃତମ୍ ॥" ବୃ: ୪ । ୪ । ୧୭ ॥

ସେହି ଅମୃତସ୍ୱରୂପ ପରଂବ୍ରହ୍ମଙ୍କୁ ଜ୍ଞାତ ହୋଇ ଆତ୍ମସ୍ୱରୂପରେ ଅବଧାରଣ କଲେ ନିଜେ ଅମୃତ ହୋଇପାରିବ । ଆଚାର୍ଯ୍ୟ ବାଦରାୟଣ ମଧ୍ୟ ଏ ବିଷୟରେ କହିଛନ୍ତି—

"ତନ୍ନିଷ୍ଠସ୍ୟ ମୋକ୍ଷୋପଦେଶାତ୍ ॥" ବେ: ସୂ: ୧ । ୧ । ୭ ॥

ଯେ ତନ୍ନିଷ୍ଠ ହୁଅନ୍ତି, ଅର୍ଥାତ୍ ସେହି ଜଗତର ଆଦି କାରଣ ପରମାତ୍ମାଙ୍କୁ ନିଜର ଆତ୍ମା ବୋଲି ନିଷ୍ଠାସହି ଉପାସନା କରନ୍ତି, ତାହାଙ୍କର ମୋକ୍ଷ ସମ୍ଭବ—ଉପନିଷଦ୍‌ରେ ଏହି ଉପଦେଶ ଦିଆଯାଇଛି ।

ଏ ସମ୍ବନ୍ଧରେ ଶଙ୍କରାଚାର୍ଯ୍ୟ କହିଛନ୍ତି—

"ବ୍ରହ୍ମସଂସ୍ଥ ଇତ ହି ବ୍ରହ୍ମଣି ପରିସମାପ୍ତିରନନ୍ୟବ୍ୟାପାରତାରୂପଂ ତନ୍ନିଷ୍ଠତ୍ୱମଭିଧୀୟତେ ॥" ବେ: ସୂ: ୩ । ୪ । ୨୦—ଶାଙ୍କରଭାଷ୍ୟ ॥

ବ୍ରହ୍ମସଂସ୍ଥ ଶବ୍ଦର ମୁଖ୍ୟାର୍ଥ—ବ୍ରହ୍ମଙ୍କଠାରେ ସକଳ ବ୍ୟାପାରର ପରିସମାପ୍ତି । ଅନନ୍ୟବ୍ୟାପାର ବା ଅନନ୍ୟଚିତ୍ତ ହୋଇ ବ୍ରହ୍ମଚିନ୍ତନରେ ତତ୍ପର ହେବାର ନାମ ତନ୍ନିଷ୍ଠ ଅର୍ଥାତ୍ ବ୍ରହ୍ମନିଷ୍ଠ ବୁଝାଯାଏ * । ଏ ବିଷୟରେ ଗୀତା କହେ—

"ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି ।
ସ୍ଥିତ୍ୱାସ୍ୟାମନ୍ତକାଲେଽପି ବ୍ରହ୍ମନିର୍ବାଣମୃଚ୍ଛତି ॥" ଗୀତା—୨ । ୭୨ ॥

* "ସୁଖଦୁଃଖେଚ୍ଛାଲାଭାଦିତ୍ୟକ୍ତେ କାଲେ ପ୍ରତୀକ୍ଷମାଣେ କ୍ଷଣାର୍ଦ୍ଧମପି ବ୍ୟର୍ଥଂ ନ ନେୟମ୍"— ନାରଦଭକ୍ତି-ସୂତ୍ର ୭୭ ।

ସୁଖ ଓ ଦୁଃଖ, ଇଚ୍ଛା ଓ ଲାଭ-ଆଦି ରହିତ କାଳର ପ୍ରତୀକ୍ଷା କରିବା ନିମନ୍ତେ କ୍ଷଣାର୍ଦ୍ଧ

ହେ ପାର୍ଥ ! ଉପର୍ଯ୍ୟୁକ୍ତ ଅବସ୍ଥାକୁ ବ୍ରହ୍ମସଂସ୍ଥ ବୋଲାଯାଏ । ଏହାକୁ ଲାଭକରି ମନୁଷ୍ୟ ଆଉ ସାଂସାରିକ ମୋହରେ ପଡ଼େ ନାହିଁ । ଏହିପରି ବ୍ରହ୍ମନିଷ୍ଠା-ଅଭ୍ୟାସରେ ଜୀବନର-ଶେଷାବସ୍ଥାରେ ମନୁଷ୍ୟର ଆତ୍ମା ପରମବ୍ରହ୍ମରେ ଲୀନ ହୁଏ, ଅର୍ଥାତ୍ ଅମୃତତ୍ତ୍ୱ ପ୍ରାପ୍ତ ହୁଏ ।

ପୁନଶ୍ଚ ଗୀତାରେ ଉକ୍ତ ହୋଇଛି—

"ଅଭ୍ୟାସଯୋଗଯୁକ୍ତେନ ଚେତସା ନାନ୍ୟଗାମିନା ।
ପରମଂ ପୁରୁଷଂ ଦିବ୍ୟଂ ଯାତି ପାର୍ଥାନୁଚିନ୍ତୟନ୍ ॥" ଗୀତା ୮ । ୮ ।

ହେ ପାର୍ଥ ! ଅଭ୍ୟାସରୂପକ ଯୋଗଯୁକ୍ତ ହୋଇ ଅବିଚଳିତ ଚିତ୍ତରେ ଦିବ୍ୟ ଜ୍ୟୋତିର୍ମୟ ପରମପୁରୁଷଙ୍କୁ ସ୍ମରଣ କରି ଜୀବ ତାହାଙ୍କୁ ପ୍ରାପ୍ତ ହୁଏ ।

"ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ ।
ସ ଗୁଣାନ୍ ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ॥"
ଗୀତା—୧୪ । ୨୬ ।

ଯେଉଁ ଲୋକ ଆମ୍ଭଙ୍କୁ (ଅବ୍ୟକ୍ତ ପରମାତ୍ମାଙ୍କୁ) ଏକାନ୍ତ ଭକ୍ତିଯୋଗଦ୍ୱାରା ସେବା ଓ ଆରାଧନା କରନ୍ତି, ସେ ଏହି ସମସ୍ତଗୁଣ ବିଶେଷରୂପରେ ଅତିକ୍ରମ କରି ପରଂବ୍ରହ୍ମ ପଦଲାଭ ନିମନ୍ତେ ଯୋଗ୍ୟ ହୁଅନ୍ତି ।

ପୁଣି ଉପନିଷଦ୍ ଶ୍ରୁତି—

"ନାୟମାତ୍ମା ପ୍ରବଚନେନ ଲଭ୍ୟୋ
ନ ମେଧୟା ନ ବହୁନା ଶ୍ରୁତେନ ।
ଯମେବୈଷ ବୃଣୁତେ ତେନ ଲଭ୍ୟ—
ସ୍ତସ୍ୟୈଷ ଆତ୍ମା ବୃଣୁତେ ତନୂଂ ସ୍ୱାମ୍ ॥"

କଠଉ: ୧ । ୨ । ୨୩ ।

---

ମଧ୍ୟ ବ୍ୟର୍ଥଭାବରେ ଅତିବାହିତ କରିବା ଉଚିତ ନୁହେଁ ଅର୍ଥାତ୍ ପରଂବ୍ରହ୍ମଙ୍କ ଉପାସନା କୌଣସି କାଳରେ ମଧ୍ୟ ପରିତ୍ୟାଗ କରିବା ଉଚିତ ନୁହେଁ । କାରଣ, ଏହା ଜୀବନର ନିତ୍ୟକର୍ମ । ଏହା ଆତ୍ମାର ଏକମାତ୍ର ସେବନୀୟ ଓ ଶାନ୍ତିପ୍ରଦ । ବାସନା କ୍ଷୟ ହେଲେ ବା କର୍ତ୍ତବ୍ୟ କର୍ମ ଶେଷ ହେଲେ ମଧ୍ୟ ଆତ୍ମନିଷ୍ଠ ଶରଣ ଦର୍ଶନ ବ୍ୟତୀତ ନିତ୍ୟ ଶାନ୍ତି ଲାଭର ଅନ୍ୟ ଉପାୟ ନାହିଁ । ଅତଏବ କଦାପି ଶରଣ ଦର୍ଶନରେ ଅବହେଳା କରିବ ନାହିଁ । ]

ଏହି ପରଂବ୍ରହ୍ମ ପରମାତ୍ମା ବହୁ ଉତ୍ତମ ବଚନଦ୍ୱାରା ବା ବେଦାଧ୍ୟୟନଦ୍ୱାରା ଲଭ୍ୟ ହୋଇ ପାରନ୍ତି ନାହିଁ; ମେଧା ବା ବହୁ ଶ୍ରବଣଦ୍ୱାରା ଏହି ପରମାତ୍ମାଙ୍କୁ ଲାଭ କରାଯାଇ ପାରେ ନାହିଁ । ଯେ ସାଧକ ଭକ୍ତିଦ୍ୱାରା ପ୍ରାର୍ଥନା କରେ, ସେହି କେବଳ ତାହାଙ୍କୁ ଲାଭ କରେ । ପରମାତ୍ମା ଏପରି ସାଧକଜନକଙ୍କଠାରେ ଆତ୍ମସ୍ୱରୂପ ପ୍ରକାଶ କରନ୍ତି ।

"ଅଶବ୍ଦମସ୍ପର୍ଶମରୂପମବ୍ୟୟଂ
ତଥାଽରସଂ ନିତ୍ୟମଗନ୍ଧବଚ୍ଚ ଯତ୍ ।
ଅନାଦ୍ୟନନ୍ତଂ ମହତଃ ପରଂ ଧ୍ରୁବଂ
ନିଚାଯ୍ୟ ତଂ ମୃତ୍ୟୁମୁଖାତ୍ ପ୍ରମୁଚ୍ୟତେ ।।"

କଠ—୧ । ୩ ୧୫ ।

ଏହି ପରମାତ୍ମା ଶବ୍ଦ, ସ୍ପର୍ଶ, ରସ ବା ଗନ୍ଧ ମଧ୍ୟ ନୁହନ୍ତି । ଯେଉଁସବୁ ବସ୍ତୁ ଶବ୍ଦାଦିବିଶିଷ୍ଟ, ତାହା କ୍ଷୟ ପ୍ରାପ୍ତ ହୁଏ । ପରମାତ୍ମା ଶବ୍ଦାଦିମାନ୍ ନୁହନ୍ତି, ଅତଏବ ତାହାଙ୍କର କ୍ଷୟ ହୁଏ ନାହିଁ । ଅତଏବ ସେ ନିତ୍ୟପଦାର୍ଥ ଏବଂ ଅନାଦି ଓ ଅନନ୍ତ; ସେ ବୁଦ୍ଧିର ଅଗତ ; ଯେଉଁ ମୋକ୍ଷାଭିଳାଷୀ ବ୍ୟକ୍ତି ଏହିପରି ପରମାତ୍ମାଙ୍କୁ ଅବଗତ ହୋଇ ଭକ୍ତି କରନ୍ତି, ସେ ମୃତ୍ୟୁମୁଖରୁ ମୁକ୍ତ ହୁଅନ୍ତି । ତାଙ୍କର ଅବିଦ୍ୟାଜନିତ କାମନା ଓ କର୍ମାଦି କିଛି ରହେ ନାହିଁ ।

"ତତଃ ପରଂ ବ୍ରହ୍ମ ପରଂ ବୃହନ୍ତଂ
ଯଥା ନିକାୟଂ ସର୍ବଭୂତେଷୁ ଗୂଢ଼ମ୍ ।
ବିଶ୍ୱସ୍ୟୈକଂ ପରିବେଷ୍ଟିତାରଂ
ଈଶଂ ତଂ ଜ୍ଞାତ୍ୱାଽମୃତା ଭବନ୍ତି ।।।"

ଶ୍ୱେତାଶ୍ୱ—୩ । ୭ ।।

ବ୍ରହ୍ମଙ୍କଠାରେ ଆତ୍ମସଂଯୋଗ କରି ସେହି ପରାତ୍ପର ପରଂବ୍ରହ୍ମଙ୍କୁ ଜାଣି ପାରିଲେ ପ୍ରାଣୀବର୍ଗ ମୁକ୍ତ ହୋଇପାରନ୍ତି । ସେହି ଅଦ୍ୱିତୀୟ ଜଗତ୍ପାତା ଜଗଦୀଶ୍ୱର ପରମାତ୍ମା ସର୍ବପ୍ରଧାନ । ସେ ସକଳ ଭୂତମାନଙ୍କରେ ଗୂଢ଼ଭାବରେ ଅବସ୍ଥାନ କରିଅଛନ୍ତି । ତାହାଙ୍କ ଶରୀରର ଇୟତ୍ତା ନାହିଁ, ଅର୍ଥାତ୍ ସେ ସଚ୍ଚିତ୍ସ୍ୱରୂପ । ସେ ଏକମାତ୍ର ନିଖିଳ ଜଗତ୍ ପରିବେଷ୍ଟନ କରି ରହିଅଛନ୍ତି । ସେହି ଅଦ୍ୱିତୀୟ ଅଖିଳ ଭୁବନକର୍ତ୍ତା ପରଂବ୍ରହ୍ମଙ୍କୁ ଜାଣିପାରିଲେ ପ୍ରାଣୀବର୍ଗ ଅମୃତତ୍ୱ ଲାଭ କରିପାରନ୍ତି । ଏ ବିଷୟରେ ଶଙ୍କରାଚାର୍ଯ୍ୟଙ୍କ

ସିଦ୍ଧାନ୍ତ—

"ଯସ୍ୟ ପ୍ରସାଦେନ ବିମୁକ୍ତସଙ୍ଗାଃ
ଶୁକାଦୟଃ ସଂସୃତିବନ୍ଧମୁକ୍ତାଃ ।
ତସ୍ୟ ପ୍ରସାଦୋ ବହୁଜନ୍ମଲଭ୍ୟୋ
ଭକ୍ତ୍ୟୈକଗମ୍ୟୋ ଭବମୁକ୍ତିହେତୁଃ ॥"

ସ: ସି: ସା: ୨୮୨ ॥

ଯେଉଁ ପରାତ୍ପର ମଙ୍ଗଳମୟ ପରମାତ୍ମାଙ୍କ ଅନୁଗ୍ରହରୁ ଶୁକପ୍ରଭୃତି ମୁନିଗଣ ସଙ୍ଗ ତ୍ୟାଗ କରି ସଂସାରବନ୍ଧନରୁ ମୁକ୍ତ ହୋଇଅଛନ୍ତି, ତାହାଙ୍କର ଅନୁଗ୍ରହ ବହୁ ଜନ୍ମରେ ପ୍ରାପ୍ତ ହେବାକୁ ହୁଏ । ତାହା ଏକମାତ୍ର ଭକ୍ତିଦ୍ୱାରା ଲଭ୍ୟ ଏବଂ ସଂସାର-ମୁକ୍ତିର କାରଣ ।

ପୁଣି କୁହାଯାଇଛି—

"ସର୍ବୋପାଧିବିନିର୍ମୁକ୍ତଂ ସଚ୍ଚିଦାନନ୍ଦମଦ୍ୱୟମ୍ ।
ଭାବୟାତ୍ମାନମାତ୍ମସ୍ଥଂ ନ ଭୂୟଃ କଳ୍ପସେଽଧ୍ୱନେ ॥"

ବିବେକଚୂଡ଼ାମଣି—୪୧୪ ॥

ଯେ ସର୍ବପ୍ରକାର ଉପାଧିରହିତ, ସଚ୍ଚିଦାନନ୍ଦମୟ ଓ ଅଦ୍ୱୟ, ସେହି ପରମାତ୍ମାଙ୍କୁ ତୁମ୍ଭେ ସ୍ୱ-ଆତ୍ମାରେ ଅଧିଷ୍ଠିତ ବୋଲି ଭାବନା କର । ତାହାହେଲେ ତୁମ୍ଭଙ୍କୁ ପୁନର୍ବାର ସଂସାରପଥରେ ପଥିକ ହେବାକୁ ହେବ ନାହିଁ । ଉଲ୍ଲିଖିତ ଶ୍ରୁତିଯୁକ୍ତି ସମୂହରୁ ସ୍ପଷ୍ଟ ଉପଲବ୍ଧି ହୁଏ ଯେ, ଜୀବ ଏକ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମ ପରମାତ୍ମାଙ୍କ ଅଭୟପଦରେ କାୟ-ମନୋବାକ୍ୟରେ ଶରଣାପନ୍ନ ହେବା ବ୍ୟତୀତ ବେଦାଧ୍ୟୟନ, ବୈଦିକକର୍ମ ବା ଓଁକାରାଦି ମନ୍ତ୍ରଜପପ୍ରଭୃତି କୌଣସି ଉପାୟଦ୍ୱାରା ଅମୃତତ୍ତ୍ୱ ଲାଭ କରି ପାରେ ନାହିଁ । ଅତଏବ ମୋକ୍ଷାଭିଳାଷୀଗଣ ବିଶୁଦ୍ଧାତ୍ମଜ୍ଞାନଭକ୍ତି-ଯୋଗସାଧନାବଳରେ ମହାମହିମାମୟ ଏକ ଅଦ୍ୱିତୀୟ ପ୍ରଭୁ ପରମାତ୍ମାଙ୍କଠାରେ ଶରଣାଗତ ହେବା ଏକାନ୍ତ କର୍ତ୍ତବ୍ୟ । ଏହାହିଁ ବିଶୁଦ୍ଧାଦ୍ୱୈତ—ବ୍ରହ୍ମବାଦର ମୁଖ୍ୟ ଉଦ୍ଦେଶ୍ୟ ।

## ଠ—ଆତ୍ମଜ୍ଞାନ ଓ ଭକ୍ତିବିହୀନ ଅଜ୍ଞଲୋକର ଗତି—

ପୂର୍ବୋକ୍ତ ପ୍ରକାରେ ଆତ୍ମଜ୍ଞାନ ଓ ଭକ୍ତିବିହୀନ ବ୍ୟକ୍ତିର ଇହ ଓ ପରତ୍ର ଜୀବନରେ ଶାଶ୍ୱତଶାନ୍ତି-ସୁଖ ସମ୍ଭାବିତ ହୋଇ ପାରେ ନାହିଁ । ଲୋକଲୋକାନ୍ତରରେ ତାହାର ଅସୀମ ଦୁଃଖଭୋଗ ଓ ଜନ୍ମମୃତ୍ୟୁ-ଆବର୍ତ୍ତରେ ଉତ୍ଥାନ ପତନ ହେଉଥାଏ । ଏ ବିଷୟରେ ଉପନିଷଦ୍

ବଚନ—

"ଇହୈବ ସନ୍ତୋଽଥ ବିଦ୍ମସ୍ତଦ୍‌ବୟଂ ନ ଚେଦବେଦୀର୍ମହତୀ ବିନଷ୍ଟିଃ * ।
ଯ ଏତଦ୍ ବିଦୁରମୃତାସ୍ତେ ଭବନ୍ତ୍ୟଥେତରେ ଦୁଃଖମେବାପି ଯନ୍ତି ॥"
"ବୃ : ଆ : ୪ । ୪ । ୧୪"

ଇହଲୋକରେ ମାନବଶରୀର ଧାରଣ କରି କେବଳ ପରମାତ୍ମାଙ୍କୁ ଭଜନ କରିବା ଶ୍ରେୟସ୍କର । ଯେଉଁମାନେ ସେହି ପରମାତ୍ମାଙ୍କୁ ଜାଣି ଭଜନ କରନ୍ତି, ସେମାନେ ଅମୃତ ହୁଅନ୍ତି କିନ୍ତୁ ଯେଉଁମାନେ ସେ ବିଷୟରେ ଅଜ୍ଞ, ସେମାନଙ୍କର ମହତୀ ବିନଷ୍ଟି । ଅର୍ଥାତ୍ ମୃତ୍ୟୁ ଓ ପୁନଃ ପୁନଃ ମୃତ୍ୟୁ ଏବଂ ଜନ୍ମେ ଜନ୍ମେ ଦୁଃଖଭୋଗ ହେଉଥାଏ ।

"ଇହ ଚେଦବେଦୀଦଥ ସତ୍ୟମସ୍ତି ନ ଚେଦିହାବେଦୀନ୍ମହତୀ ବିନଷ୍ଟିଃ × × × ॥"　　"ତଲବକାର ୨ । ୫ ।"

ମନୁଷ୍ୟ ଯଦି ଇହଲୋକରେ ବ୍ରହ୍ମଙ୍କୁ ଜାଣିପାରେ, ତାହାହେଲେ ତାହାର ସତ୍ୟ ଲାଭ ହେବା ନିଶ୍ଚିତ; କିନ୍ତୁ ଯଦି ବ୍ରହ୍ମଙ୍କୁ ଜାଣି ନ ପାରେ, ତେବେ ତାହାର ମହତି ଅନିଷ୍ଟ ଘଟେ । ଅର୍ଥାତ୍ ତାହାକୁ ବାରମ୍ବାର ଜନ୍ମ ଓ ମୃତ୍ୟୁ-ଦୁଃଖ ଭୋଗିବାକୁ ପଡ଼େ ।

"ଯଦା ଚର୍ମବଦାକାଶଂ ବେଷ୍ଟୟିଷ୍ୟନ୍ତି ମାନବାଃ ।
ତଦା ଦେବମବିଜ୍ଞାୟ ଦୁଃଖସ୍ୟାନ୍ତୋ ଭବିଷ୍ୟତି ॥"
ଶ୍ୱେତାଶ୍ୱ—୬ । ୨୦ ।

ପରମାତ୍ମତତ୍ତ୍ୱ ପରିଜ୍ଞାନଦ୍ୱାରା, ଅର୍ଥାତ୍ ସ୍ୱାତ୍ମ-ସ୍ୱରୂପରେ ପରମାତ୍ମାଙ୍କୁ ଅବଗତ ହୋଇ ତାଙ୍କଠାରେ ଆତ୍ମା ସମର୍ପଣ କଲେ ଜୀବର ମୁକ୍ତି ହୁଏ । ଏତଦ୍‌ଭିନ୍ନ ମୋକ୍ଷପ୍ରାପ୍ତିର ଅନ୍ୟ ଉପାୟ ନାହିଁ । ଯେପରି ଚର୍ମ ସକଳଶରୀରବ୍ୟାପୀ ଓ ଆକାଶ ଜଗଦ୍‌ବ୍ୟାପୀ, ସେହିପରି ସର୍ବବ୍ୟାପୀ ଜ୍ୟୋତିର୍ମୟ ପରମାତ୍ମାଙ୍କୁ ନ ଜାଣିଲେ ମାନବର ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ—ଏହି ତାପତ୍ରୟର ବିନାଶ ହୁଏ ନାହିଁ । ଯେ ପର୍ଯ୍ୟନ୍ତ ନିଜ ଆତ୍ମାରେ ପରମାତ୍ମଜ୍ଞାନର ଉଦୟ ନ ହୁଏ, ସେ ପର୍ଯ୍ୟନ୍ତ ମନୁଷ୍ୟ ପୂର୍ବୋକ୍ତ ତାପତ୍ରୟଦ୍ୱାରା ଅଭିଭୂତ ହୋଇ ପ୍ରେତଯୋନି ବା ପଶୁ ଓ ମନୁଷ୍ୟଯୋନିରେ ବାରମ୍ବାର ଭ୍ରମଣ କରେ । ଯେତେବେଳେ

* ମହତୀ ବିନଷ୍ଟିଃ—"ବିଦ୍ୟାକର୍ମ ବିହୀନୋ ଯ ସ୍ତୃତୀୟ ସ୍ଥାନମେତି ସଃ ।
ଭୁକ୍ତ୍ୱାଽପି ନରକାନ୍ ଘୋରାନ୍ ମହାରୌରବରୌରବାନ୍ ॥" ଶିବ ଗୀତା—୧୧ । ୨୯ ॥

ନିଜ ଆତ୍ମାରେ ସେହି ପୂର୍ଣ୍ଣାନନ୍ଦ ପରଂବ୍ରହ୍ମଙ୍କର ଅଭେଦଜ୍ଞାନ ଜାତ ହୁଏ, ସେତେବେଳେ ତାହାର ଦୁଃଖର ଅବସାନ ଘଟେ ।

ପୁଣି କଠଶ୍ରୁତି ଓ ବୃହଦାରଣ୍ୟକ ଉପନିଷଦ୍ ପରମାତ୍ମଜ୍ଞାନ ଓ ଭକ୍ତିବିହୀନ ବ୍ୟକ୍ତିର ଜୀବନ ନିଷ୍ଫଳ—ଏ ବିଷୟରେ ନିର୍ଦ୍ଦେଶ କରିଛନ୍ତି—

**"ପରାଚଃ କାମାନନୁଯନ୍ତି ବାଲାସ୍ତେ ମୃତ୍ୟୋର୍ୟନ୍ତି**
**ବିତତସ୍ୟ ପାଶମ୍ × × × ॥"**

କଠ—୨ । ୧ । ୨ ।

ଯେଉଁମାନେ ପରମାତ୍ମାଙ୍କ ଦର୍ଶନବିଷୟରେ ପରାଙ୍ମୁଖ, ସେ ସକଳ ଅଜ୍ଞ ବ୍ୟକ୍ତି କେବଳ ବାହ୍ୟ ବିଷୟର ଅନୁଗମନ କରୁଥାନ୍ତି ଏବଂ ସେହି କାରଣରୁ ସେମାନେ ସର୍ବଦା ମୃତ୍ୟୁଦଣ୍ଡରେ ଦଣ୍ଡିତ ବା ମୃତ୍ୟୁର ଅଧୀନ ହୁଅନ୍ତି । ଅର୍ଥାତ୍ ଜନ୍ମ, ମୃତ୍ୟୁ, ଜରା, ରୋଗାଦି ଅନେକ ଅନର୍ଥସଙ୍କୁଳ ଦେହ ଇନ୍ଦ୍ରିୟାଦିର ସଂଯୋଗ ଓ ବିଯୋଗସ୍ୱରୂପ ଅବସ୍ଥା ପ୍ରାପ୍ତ ହୋଇଥାନ୍ତି ।

**"ଅନନ୍ଦା ନାମ ତେ ଲୋକା ଅନ୍ଧେନ ତମସା ବୃତାଃ ।**
**ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଅବିଦ୍ୱାଂସୋଽବୁଧା ଜନାଃ ॥"**

"ବୃହ : ୪ । ୪ । ୧୧ ।"

ଯେଉଁମାନେ ପରମାତ୍ମଜ୍ଞାନଶୂନ୍ୟ ଏବଂ ସାଧାରଣ ଜ୍ଞାନର ଅଭାବ ହେତୁରୁ ଅଜ୍ଞ ବୋଲି ପରିଚିତ, ସେମାନେ ମୃତ୍ୟୁ ପରେ ଏହିପରି ଦର୍ଶନାଯୋଗ୍ୟ ଗାଢ଼ ଅନ୍ଧକାରବୃତ ଓ ଅନନ୍ଦ ବା ଦୁଃଖଦାୟକ ସ୍ଥାନକୁ ଗମନ କରନ୍ତି । *

---

*—ଏ ବିଷୟରେ ଯୋଗେଶ୍ୱର ଭଗବାନ୍ ଶିବଙ୍କ ଉକ୍ତି—

"ଚତୁରଶୀତିଲକ୍ଷେଷୁ ଶରୀରେଷୁ ଶରୀରିଣାମ୍ । ନ ମାନୁଷ୍ୟଂ ବିନାଽନ୍ୟତ୍ର ତତ୍ତ୍ୱଜ୍ଞାନଂ ପ୍ରଜାୟତେ ॥
ଅତ୍ର ଜନ୍ମସହସ୍ରେଷୁ ସହସ୍ରୈରପି ପାର୍ବତି ! କଦାଚିଲ୍ଲଭତେ ଜନ୍ତୁର୍ମାନୁଷ୍ୟଂ ପୁଣ୍ୟସଞ୍ଚୟାତ୍ ॥
ସୋପାନଭୂତମାନୁଷ୍ୟଂ ମୋକ୍ଷସ୍ୟ ପ୍ରାପ୍ୟ ଦୁର୍ଲଭମ୍ । ଯସ୍ତାରୟତି ନାତ୍ମାନଂ ତସ୍ମାତ୍ ପାପତରୋଽତ୍ର କଃ ॥
ତତସ୍ତ୍ୱାପ୍ୟୁତ୍ତମଂ ଜନ୍ମ ଲବ୍ଧ୍ୱା ଚେନ୍ଦ୍ରିୟସୌଷ୍ଠବମ୍ । ନ ବେତ୍ତ୍ୟାତ୍ମହିତଂ ଯସ୍ତୁ ସଭବେଦାତ୍ମଘାତକଃ ॥"

କୁଳାର୍ଣ୍ଣବତନ୍ତ୍ର—ଖ ୫ । ୧ ଉଲ୍ଲାସ—୧ । ୪ ॥

ଚୌରାଶି ଲକ୍ଷ ଶରୀରଧାରୀଙ୍କ ମଧ୍ୟରେ ମନୁଷ୍ୟ ଦେହ ଭିନ୍ନ ଅନ୍ୟ ଦେହରେ ତତ୍ତ୍ୱଜ୍ଞାନ ଜାତ ହୁଏ ନାହିଁ । ହେ ପାର୍ବତି ! ଏଠାରେ ସହସ୍ର ସହସ୍ର ଜନ୍ମମଧ୍ୟରେ ପୁଣ୍ୟବଶତଃ କଦାଚ-

୦—ପରଂବ୍ରହ୍ମଙ୍କଠାରେ ଭକ୍ତି କରିବା ନିମନ୍ତେ ମାତୃଗର୍ଭସ୍ଥ ଜୀବର ପ୍ରତିଜ୍ଞା ।

ଉପର୍ଯ୍ୟୁକ୍ତ ଆତ୍ମଜ୍ଞାନଭକ୍ତିବିହୀନ ବ୍ୟକ୍ତିର ଇହ ଓ ପରିଜ ଜୀବନ ଦୁଃଖସଂକୁଳ, ଏହା ବିବେଚନା କରି ଶୀଘ୍ର ବ୍ରହ୍ମଭକ୍ତିପରାୟଣ ହେବାରେ ସଯତ୍ନ ହୁଅ । ଜୀବ ମାତୃଗର୍ଭରେ ଥିବା ସମୟରେ ପୂର୍ବୋକ୍ତ ଦୁଃଖବିଷୟ ଅନୁଭବ କରି ବ୍ରହ୍ମଭକ୍ତିପରାୟଣ ହେବା ନିମନ୍ତେ କିପରି ଚିନ୍ତା କରି ଆସିଛି—

"ଅଥ ମାତ୍ରାଽଶିତପୀତନାଡ଼ୀସୂତ୍ରଗତେନ ପ୍ରାଣ ଆପ୍ୟାୟତେ ।
ଅଥ ନବମେ ମାସି ସର୍ବଲକ୍ଷଣସଂପନ୍ନୋ ଭବତି ।
ପୂର୍ବଜାତୀଃ ସ୍ମରତି, କୃତାକୃତଂ ଚ କର୍ମ ଭବତି, ଶୁଭାଶୁଭଂ ଚ କର୍ମ ବିନ୍ଦତି ।।

ପୂର୍ବଯୋନିସହସ୍ରାଣି ଦୃଷ୍ଟ୍ୱା ଚୈବ ତତୋ ମୟା ।
ଆହାରାଃ ବିବିଧା ଭୁକ୍ତାଃ ପୀତାଶ୍ଚ ନାନାବିଧାଃ ସ୍ତନାଃ ।।
ଜାତସ୍ୟୈବ ମୃତସ୍ୟୈବ ଜନ୍ମ ଚୈବ ପୁନଃ ପୁନଃ ।
ଅହୋ ଦୁଃଖୋଦଧୌ ମଗ୍ନୋ ନ ପଶ୍ୟାମି ପ୍ରତିକ୍ରିୟାମ୍ ।।
ଯନ୍ମୟା ପରିଜନସ୍ୟାର୍ଥେ କୃତଂ କର୍ମ ଶୁଭାଶୁଭମ୍ ।
ଏକାକୀ ତେନ ଦହ୍ୟାମି ଗତାସ୍ତେ ଫଳଭୋଗିନଃ ।।
ଯଦି ଯୋନ୍ୟାଂ ପ୍ରମୁଞ୍ଚାମି ସାଂଖ୍ୟଯୋଗଂ ସମଭ୍ୟସେତ୍ ।
ଅଶୁଭକ୍ଷୟକର୍ତାରଂ ଫଳମୁକ୍ତି-ପ୍ରଦାୟିନମ୍ ।।
ଯଦି ଯୋନ୍ୟାଂ ପ୍ରମୁଞ୍ଚାମି ଧ୍ୟାୟେଦ୍ ବ୍ରହ୍ମ ସନାତନମ୍ ।
ଅଥ ଯୋନିଦ୍ୱାରଂ ସଂପ୍ରାପ୍ତୋ ଯନ୍ତ୍ରଣା ପୀଡ଼୍ୟମାନୋ ମହତା ଦୁଃଖେନ
ଜାତମାତ୍ରସ୍ତୁ ବୈଷ୍ଣବେନ ବାୟୁନା ସଂସ୍ପୃଶ୍ୟ ତଦା ନ ସ୍ମରତି
ଜନ୍ମମରଣାନି ନ ଚ କର୍ମ ଶୁଭାଶୁଭଂ ବିନ୍ଦତି ।।"

"ଗର୍ଭୋପନିଷଦ୍ ୪—୭" ।

---

ମନୁଷ୍ୟ ଜନ୍ମ ଲାଭ ହୁଏ । ଯେଉଁ ବ୍ୟକ୍ତି ମୋକ୍ଷଲାଭର ସୋପାନସ୍ୱରୂପ ଦୁର୍ଲଭ ମନୁଷ୍ୟ ଜନ୍ମ ପାଇ ଆତ୍ମାକୁ ପରିତ୍ରାଣ କରେ ନାହିଁ, ତାହା ଅପେକ୍ଷା ଅଧିକ ପାପୀ ଅନ୍ୟ କିଏ ହୋଇପାରେ ? ଶ୍ରେଷ୍ଠ ଇନ୍ଦ୍ରିୟସୌଷ୍ଠବ ସଂପନ୍ନ ନରଜନ୍ମ ଲାଭ କରି ଯେଉଁ ବ୍ୟକ୍ତି ଆତ୍ମାର ହିତ ବା ସନ୍ମାର୍ଗ ନ ଜାଣେ, ସେ ଆତ୍ମଘାତୀ ବୋଲି କଥିତ ହୁଏ ।

ଯେଉଁ ନାଡ଼ିସୂତ୍ର ବା ନାଡ଼ି ଗର୍ଭସ୍ଥ ଶିଶୁର ନାଭିଠାରୁ ମାତାର ହୃଦୟ ପର୍ଯ୍ୟନ୍ତ ସମ୍ବନ୍ଧ ଥାଏ, ତଦ୍ଦ୍ୱାରା ମାତାର ଭୁକ୍ତ ଓ ପୀତ ଦ୍ରବ୍ୟର ରସ ଗ୍ରହଣ କରି ଗର୍ଭସ୍ଥ ସନ୍ତାନର ପ୍ରାଣ ଆପ୍ୟାୟିତ ହୁଏ । ନବମ ମାସରେ ଗର୍ଭସ୍ଥ ସନ୍ତାନ ସର୍ବଲକ୍ଷଣ ଓ ସର୍ବଜ୍ଞାନସମ୍ପନ୍ନ ହୋଇ ନିଜର ସକଳ ପୂର୍ବ ଜନ୍ମ ସ୍ମରଣ କରେ । ପୂର୍ବଜନ୍ମର ସୁକୃତ ଓ ଦୁଷ୍କୃତ ସ୍ମରଣ କରେ ଏବଂ ଶୁଭ ଓ ଅଶୁଭ କର୍ମ ଜାଣିପାରେ । ନବ ମାସରେ ଶିଶୁ ଗର୍ଭରେ ଚିନ୍ତା କରେ—ମୁଁ ତୃଣଠାରୁ ହିରଣ୍ୟଗର୍ଭ ପର୍ଯ୍ୟନ୍ତ ସହସ୍ର ଯୋନି ପ୍ରାପ୍ତ ହୋଇ ତୃଣ, ପୟଃ, ମାଂସ ପ୍ରଭୃତି ବିବିଧ ଆହାର୍ଯ୍ୟ ବସ୍ତୁ ଭୋଜନ କରିଅଛି ଏବଂ ନାନାବିଧ ସ୍ତନ୍ୟପାନ ମଧ୍ୟ କରିଅଛି । ଜାତ ହେଲେ ପୁନଃ ପୁନଃ ମରଣ ଓ ମରଣ ପରେ ବାରମ୍ବାର ଜନ୍ମ ଅବଶ୍ୟମ୍ଭାବୀ । ହାୟ ! ମୁଁ ଏହି ଦୁଃଖ-ସମୁଦ୍ରରେ ନିମଗ୍ନ ରହି ଏହାର କୌଣସି ପ୍ରତିକାର ଦେଖିପାରୁ ନାହିଁ । ମୁଁ ପରିବାର ବର୍ଗର ଭରଣପୋଷଣ ନିମନ୍ତେ ବହୁ ଶୁଭ ଓ ଅଶୁଭ କର୍ମ କରିଥିଲି; ସେଥିନିମନ୍ତେ ମୁଁ ଏକାକୀ ଦଗ୍ଧ ହେଉଅଛି । ସେହି ସୁଖଭୋଗୀ ପରିବାରବର୍ଗ କେଉଁଆଡ଼େ ଚାଲିଗଲେଣି । ଯଦି ଏହି ଥରକ ଯୋନିଦ୍ୱାରରୁ ନିଷ୍କ୍ରାନ୍ତିଲାଭ କରିପାରେ, ତେବେ ଅଶୁଭବିନାଶକ ଓ ମୁକ୍ତିଫଳଦାୟକ ସାଂଖ୍ୟଯୋଗ (ସମ୍ୟକ୍ ଆତ୍ମଜ୍ଞାନ) ଅଭ୍ୟାସ କରିବି । ଏଥର ଯୋନିଦ୍ୱାରରୁ ଯଦି ମୁକ୍ତ ହୋଇପାରେ, ତାହାହେଲେ ସନାତନ ବ୍ରହ୍ମପଦାର୍ଥ ଧ୍ୟାନ କରିବି । ଏହିପ୍ରକାର ଚିନ୍ତାକରି ଗର୍ଭସ୍ଥ ଶିଶୁ ଯୋନିଦ୍ୱାରେ ଆସି ସମାଗତ ହୁଏ । ସେ ସମୟରେ ଜରାୟୁର ପୀଡ଼ନରେ ଅତିଶୟ ଦୁଃଖିତ ହୋଇ ଜନ୍ମଲାଭ କରେ; କିନ୍ତୁ ଜାତ ହେବା ପରେ ବୈଷ୍ଣବୀ-ମାୟା-ସ୍ପୃଷ୍ଟ ହୋଇ ମୋହପ୍ରାପ୍ତ ହୁଏ ଓ ଗର୍ଭରେ ଯାହା ସବୁ ଚିନ୍ତା କରିଥିଲା, ସେ ସବୁ ବିସ୍ମୃତ ହୁଏ । ଜନ୍ମ, ମରଣ ବା ଶୁଭାଶୁଭ କର୍ମ କିଛି ହେଲେ ସ୍ମରଣ କରିପାରେ ନାହିଁ । ସେ ବିଷୟ ମଧ୍ୟ ଜାଣିପାରେ ନାହିଁ ।

**ଠ—ନିତ୍ୟଶାନ୍ତ ବ୍ରହ୍ମପଦପ୍ରାପ୍ତି ନିମନ୍ତେ ଶୀଘ୍ର ଯତ୍ନ କର ।**

**"ମା କୁରୁ ଧନଜନଯୌବନଗର୍ବଂ, ହରତି ନିମେଷାତ୍ କାଳଃ ସର୍ବମ୍ ।**
**ମାୟାମୟମିଦମଖିଳଂ ହିତ୍ୱା, ବ୍ରହ୍ମପଦଂ ପ୍ରବିଶାଶୁ ବିଦିତ୍ୱା ॥"**

"ମୋହମୁଦ୍‌ଗର ୩ ।"

ହେ ମାନବ ! ଧନ, ଜନ ଓ ଯୌବନଜନ୍ୟ ଗର୍ବ କର ନାହିଁ, କାଳ ବା ଯମ ନିମେଷ ମଧ୍ୟରେ ସେ ସମସ୍ତ ହରଣ କରିନିଏ । ଅତଏବ ଏହି ନିଖିଳ ବ୍ରହ୍ମାଣ୍ଡକୁ ମାୟାମୟ ଜାଣି ଶୀଘ୍ର ବ୍ରହ୍ମ ପଦରେ ପ୍ରବେଶ କର (ଅର୍ଥାତ୍ ଯହିଁରେ ବ୍ରହ୍ମପଦଲାଭ ହେବ, ସେ ବିଷୟରେ

ସମୃଦ୍ଧବାନ୍ ହୁଅ ) ।　　ଏ ବିଷୟରେ ଯମ ମଧ୍ୟ କହିଛନ୍ତି—

"ଇହଚେଦଶକଦ୍‌ବୋଦ୍ଧୁଂ ପ୍ରାକ୍ ଶରୀରସ୍ୟ ବିସ୍ରସଃ ।
ତତଃ ସର୍ଗେଷୁ ଲୋକେଷୁ ଶରୀରତ୍ୱାୟ କଳ୍ପତେ ॥"
"କଠ—୨ । ୩ । ୪ ।"

ଯଦି କେହି ନିଜର ଦେହତ୍ୟାଗ ପୂର୍ବରୁ ବ୍ରହ୍ମଙ୍କୁ ଜାଣି ତାହାଙ୍କଠାରେ ଶରଣାପନ୍ନ ହୁଅନ୍ତି, ତାହାହେଲେ ତାଙ୍କର ସଂସାର ବନ୍ଧନ ଛିନ୍ନ ହୋଇଯାଏ । ଯେଉଁ ଲୋକ ତାହାଙ୍କୁ ଜାଣିପାରେ ନାହିଁ, ତାହାକୁ ଦେହଧାରଣ କରି ପୁନଶ୍ଚ ସଂସାରକୁ ଆସିବାକୁ ହୁଏ । ସୁତରାଂ ଦେହପାତ ପୂର୍ବରୁ ଆତ୍ମଜ୍ଞାନଭକ୍ତିସାଧନରେ ବ୍ରତୀ ହେବା ଆବଶ୍ୟକ ।

"ଏକୋ ବଶୀ ସର୍ବଭୂତାନ୍ତରାତ୍ମା ଏକଂ ରୂପଂ ବହୁଧା ଯଃ କରୋତି ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରାସ୍ତେଷାଂ ସୁଖଂ ଶାଶ୍ୱତଂ ନେତରେଷାମ୍ ॥"
କଠ—୨।୨।୧୨ ॥

ଯେଉଁ ପରଂବ୍ରହ୍ମ ଏକ ସର୍ବନିୟନ୍ତା ଏବଂ ସର୍ବଭୂତର ଅନ୍ତରାତ୍ମା ହୋଇ ମଧ୍ୟ ସ୍ୱୀୟ ଅଦ୍ୱିତୀୟ ସତ୍ତାକୁ ମନୁଷ୍ୟାଦି ଭେଦରେ ବହୁରୂପ କରିଛନ୍ତି, ଯେଉଁ ଜ୍ଞାନୀବ୍ୟକ୍ତି ସେହି ପରମାତ୍ମାଙ୍କୁ ଜ୍ଞାନ-ଭକ୍ତି-ଯୋଗଦ୍ୱାରା ନିଜ ହୃଦୟରେ ସାକ୍ଷାତ୍ ଅନୁଭବ କରନ୍ତି, ସେହିମାନେ କେବଳ ନିତ୍ୟ ସୁଖଲାଭ କରନ୍ତି; ଅନ୍ୟବ୍ୟକ୍ତିଙ୍କ ପକ୍ଷରେ ତାହା ଅସମ୍ଭବ ।

ପୁଣି—

"ନିତ୍ୟୋଽନିତ୍ୟାନାଂ ଚେତନଶ୍ଚେତନାନା
ମେକୋ ବହୂନାଂ ଯୋ ବିଦଧାତି କାମାନ୍ ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରା
ସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥"　　କଠ ୨-୨।୧୩ ॥

ସମସ୍ତ ଅନିତ୍ୟବସ୍ତୁ ମଧ୍ୟରେ ଯେ ଏକମାତ୍ର ନିତ୍ୟ, ଯେ ବ୍ରହ୍ମାଦି ପ୍ରାଣୀମାନଙ୍କର ଏକମାତ୍ର ଚୈତନ୍ୟର ହେତୁ, ଯେ ଏକ ହୋଇ ମଧ୍ୟ ସମସ୍ତଙ୍କର କାମନା ପୂର୍ଣ୍ଣ କରନ୍ତି, ସେହି ପରମାତ୍ମାଙ୍କୁ ଜ୍ଞାନୀବ୍ୟକ୍ତିମାନେ ନିଜ ଆତ୍ମାରେ ସ୍ଥିତ ବୋଲି ଜାଣି ଜ୍ଞାନ ଓ ଭକ୍ତି ଯୋଗବଳରେ ଦର୍ଶନ କରନ୍ତି । ସେମାନଙ୍କର ନିତ୍ୟଶାନ୍ତି କୈବଲ୍ୟମୁକ୍ତି ପ୍ରାପ୍ତ ହୁଏ; ଅନ୍ୟମାନେ ତାହା ପ୍ରାପ୍ତ ହୋଇ ପାରନ୍ତି ନାହିଁ ।

ଆହୁରି ମଧ୍ୟ ପୁରାଣରେ ଏହିପରି ବର୍ଣ୍ଣିତ ହୋଇଅଛି—

"ତସ୍ମିନ୍ ପ୍ରସନ୍ନେ କମିହାସ୍ତ୍ୟଲଭ୍ୟଂ
ଧର୍ମାର୍ଥକାମୈରଳମଲ୍ପମାସ୍ତେ ।

ସମାଶ୍ରିତାନ୍ ବ୍ରହ୍ମତରୋରନନ୍ତା
ନିଃସଂଶୟଂ ପ୍ରାପ୍ସ୍ୟଥ ବୈ ମହତ୍ ଫଳମ୍ ॥"

ବିଷ୍ଣୁପୁରାଣ—୧।୧୭।୯୧ ॥

ସେହି ପରାତ୍ପର ପରମାତ୍ମା ପ୍ରସନ୍ନ ହେବାମାତ୍ରେ ମନୁଷ୍ୟର ଆଉ କୌଣସି ପଦାର୍ଥ ଅଲଭ୍ୟ ରହେ ନାହିଁ । ପରମାତ୍ମାଙ୍କର ପ୍ରସନ୍ନତା ତୁଳନାରେ ଧର୍ମାର୍ଥ-କାମ-ଆଦି ଆକାଙ୍କ୍ଷଣୀୟ ବସ୍ତୁ ଅକିଞ୍ଚିତ୍କର । ସେହି ଅନନ୍ତବ୍ରହ୍ମତରୁର ଆଶ୍ରୟଲାଭ କରିବାଦ୍ୱାରା ନିଶ୍ଚୟ ମହତ୍ଫଳ ଲବ୍ଧ ହୁଏ ।

"ଧର୍ମାର୍ଥକାମୈଃ କିଂ ତସ୍ୟ ମୁକ୍ତିସ୍ତସ୍ୟ କରେ ସ୍ଥିତା ।
ସମସ୍ତଜଗତାଂ ମୂଳେ ଯସ୍ୟ ଭକ୍ତିଃ ସ୍ଥିରା ତ୍ୱୟି ॥"

ବିଷ୍ଣୁପୁରାଣ—୧।୨୦।୨୭ ॥

ସମୁଦାୟ ଜଗତର ମୂଳକାରଣ ସେହି ପରମାତ୍ମାଙ୍କ ପ୍ରତି ଯାହାର ଅଚଳା ଭକ୍ତି ବିଦ୍ୟମାନ, ତାହାର ଧର୍ମାର୍ଥକାମ ନେଇ କି ପ୍ରୟୋଜନ ? କାରଣ, ମୁକ୍ତି ତାହାର କରସ୍ଥ । ଏ ସମ୍ବନ୍ଧରେ ଭକ୍ତ ପ୍ରହ୍ଲାଦଙ୍କ ଉକ୍ତି—

"ଧର୍ମାର୍ଥ କାମ ଇତ ଯୋଽଭିହିତସ୍ତ୍ରିବର୍ଗ
ଈକ୍ଷାତ୍ରୟୀ ନୟଦମୌ ବିବିଧା ଚ ବାର୍ତ୍ତା ।
ମନ୍ୟେ ତଦେତଦଖିଳଂ ନିଗମସ୍ୟ ସତ୍ୟଂ,
ସ୍ୱାତ୍ମାର୍ପଣଂ ସ୍ୱସୁହୃଦଃ ପରମସ୍ୟ ପୁଂସଃ ॥"

ଭା: ୭।୬।୨୬ ॥

ପ୍ରହ୍ଲାଦ କହୁଅଛନ୍ତି—ଧର୍ମ, ଅର୍ଥ ଓ କାମରୂପକ ତ୍ରିବର୍ଗ, ଆତ୍ମବିଦ୍ୟା, କର୍ମବିଦ୍ୟା (ବ୍ୟାପାରଜନ୍ୟ ଜୀବିକା) ବେଦତ୍ରୟୀ, ତର୍କଶାସ୍ତ୍ର, ଦଣ୍ଡନୀତି ବା ଜୀବିକାତତ୍ତ୍ୱ—ଏହି ସମୁଦାୟର ସତ୍ୟତା ମୋ ମତରେ ଆତ୍ମାର ସୁହୃତ୍ ପରମାତ୍ମାଙ୍କଠାରେ ଆତ୍ମାର ସମର୍ପଣଦ୍ୱାରା କେବଳ ଉପଲବ୍ଧ ହୋଇପାରେ । *

* ଅନ୍ୟ ଧର୍ମଶାସ୍ତ୍ରମାନଙ୍କରେ ମଧ୍ୟ ଏହିପରି ଉକ୍ତ ଅଛି—

Therefore be ye constant at prayer ; and give alms, and adhere firmly unto God ; He is your master ; and he is the best master, and the best protector. (Chap. XXII Al koran)

୦—"ଦର୍ଶନ"ର ତାତ୍ପର୍ଯ୍ୟ ।

ପୂର୍ବଲିଖିତ ନିୟମ ଅନୁସାରେ ଏକ ଅଦ୍ୱିତୀୟ ସଚ୍ଚିନ୍ମୟ ଅଲେଖ ପରଂବ୍ରହ୍ମ-ପଦରେ ବିଶୁଦ୍ଧାତ୍ମଜ୍ଞାନ-ଭକ୍ତିଯୋଗେ କାୟମନୋବାକ୍ୟ ସହ ସର୍ବତୋଭାବରେ ଯେଉଁ ଶରଣାପନ୍ନ ହେବାକୁ ହୁଏ, ତାହାର ନାମ ବ୍ରହ୍ମଜ୍ଞାନଭକ୍ତିଯୋଗ, ତାହା ହିଁ ମହିମା ଧର୍ମର "ଦର୍ଶନ" । ପ୍ରକୃତପକ୍ଷେ ଦୃଶ୍‌ଧାତୁରୁ ଦର୍ଶନଶବ୍ଦ ନିଷ୍ପନ୍ନ, ଅତଏବ ଦର୍ଶନଶବ୍ଦଦ୍ୱାରା ସେହି ଏକ ଅଦ୍ୱିତୀୟ ଅବାଙ୍‌ମନସଗୋଚର ପ୍ରଭୁ ପରଂବ୍ରହ୍ମ ପରମାତ୍ମା କେବଳ ଦର୍ଶନଯୋଗ୍ୟ—ଏହି ଅର୍ଥ ପ୍ରତିପନ୍ନ ହୁଏ ।

"ଆତ୍ମା ବା ଅରେ ଦ୍ରଷ୍ଟବ୍ୟଃ, ଆତ୍ମନୋ ବା ଅରେ ଦର୍ଶନେନ"—

ଇତ୍ୟାଦି ଶ୍ରୁତିବାକ୍ୟରୁ ମଧ୍ୟ ପ୍ରତିପନ୍ନ ହୁଏ ଯେ, ସେହି ଏକ ଅଦ୍ୱିତୀୟ ପରମାତ୍ମାଙ୍କ-ଠାରେ ଦେହ, ଅନ୍ତଃକରଣ ଓ ପ୍ରାଣ ଅର୍ପଣ କରି ନିଜ ଆତ୍ମାରେ ତାଙ୍କୁ ସମ୍ୟକ୍‌ରୂପରେ ଉପଲବ୍‌ଧି କରିବାର ନାମ ଦର୍ଶନ । ଆଚାର୍ଯ୍ୟ ଶଙ୍କର ମଧ୍ୟ ଏହି ଦର୍ଶନନିଷ୍ଠା ବିଷୟରେ ଉଲ୍ଲେଖ କରିଛନ୍ତି—

ଉଦ୍ଧରେଦାତ୍ମନାତ୍ମାନଂ ମଗ୍ନଂ ସଂସାରବାରିଧୌ ।
ଯୋଗାରୂଢ଼ତ୍ୱମାସାଦ୍ୟ ସମ୍ୟଗ୍‌ ଦର୍ଶନନିଷ୍ଠୟା ॥
ସଂନ୍ୟସ୍ୟ ସର୍ବକର୍ମାଣି ଭବବନ୍ଧବିମୁକ୍ତୟେ ।
ଯତ୍ୟତାଂ ପଣ୍ଡିତୈର୍ଧୀରୈରାତ୍ମାଭ୍ୟାସ-ଉପସ୍ଥିତୈଃ ॥

ବିବେକଚୂଡ଼ାମଣି ୯।୧୦ ॥

---

ଅର୍ଥ—ଅତଏବ ପ୍ରତିନିତ୍ୟ ଉପାସନା କର ଏବଂ ଦାନ କର ଓ ଈଶ୍ୱରନିଷ୍ଠ ହୁଅ । ସେ ତୁମ୍ଭମାନଙ୍କର ପ୍ରଭୁ, ସେ ତୁମ୍ଭମାନଙ୍କର ସର୍ବୋତ୍କୃଷ୍ଟ ପ୍ରଭୁ ଏବଂ ସର୍ବୋତ୍କୃଷ୍ଟ ରକ୍ଷକ ।

Be constant at prayer; for prayer preserveth a man from filthy crimes, and that which is blameable, and the remembering of God is surely a most important duty.

(chap. *XXIX* Alkoran)

ନିତ୍ୟ ଉପାସନା କର, କାରଣ ଉପାସନା ମନୁଷ୍ୟକୁ ଜଘନ୍ୟ ଅପରାଧ ଏବଂ ଯାହାକି ଦୂଷଣୀୟ, ତହିଁରୁ ରକ୍ଷାକରେ, ଏବଂ ପରମେଶ୍ୱରଙ୍କୁ ସ୍ମରଣ କରିବା ନିଶ୍ଚୟ ମନୁଷ୍ୟର ଗୋଟିଏ ଅତି ଗୁରୁତର କର୍ତ୍ତବ୍ୟ ।

ଶାସ୍ତ୍ରୋକ୍ତ ଦର୍ଶନନିଷ୍ଠାରୂପକ ଆତ୍ମତତ୍ତ୍ୱାନୁଷ୍ଠାନ ପ୍ରଭାବରେ ଜ୍ଞାନଭକ୍ତି ଯୋଗମାର୍ଗ ଅବଲମ୍ବନ କରି ସଂସାର-ସମୁଦ୍ରନିମଗ୍ନ ଆତ୍ମାକୁ ଆତ୍ମାଦ୍ୱାରା ଉଦ୍ଧାର କରିବ, ଅର୍ଥାତ୍ ବ୍ରହ୍ମପରମାତ୍ମାଙ୍କ ଉପାସନାଦ୍ୱାରା ଜୀବକୁ ପରିତ୍ରାଣ କରିବାକୁ ଯତ୍ନବାନ୍ ହେବ। ଆତ୍ମତତ୍ତ୍ୱଜ୍ଞାନ-ଶିକ୍ଷା ବିଷୟରେ ଉଦ୍‌ଯୋଗୀ ଧୀରମନ୍ତ ପଣ୍ଡିତ ସକଳ କାମ୍ୟକର୍ମ ତ୍ୟାଗ କରି ଭବବନ୍ଧନ ବିମୁକ୍ତିପାଇଁ ପରମାତ୍ମତତ୍ତ୍ୱ ଅଭ୍ୟାସରେ ଯତ୍ନ କରିବେ। ଏହିପରି ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୁକ୍ତ ଶରଣ ଭଜନ ପ୍ରକୃତ ପରଂବ୍ରହ୍ମ-ଦର୍ଶନନାମରେ ଅଭିହିତ। ଦର୍ଶନଶବ୍ଦର ପ୍ରକୃତ ଅର୍ଥ ଏହିପରି—

"ଦର୍ଶନାୟ ଚକ୍ଷୁଃ।" ଛାନ୍ଦୋଗ୍ୟ ୮।୧୨ ॥

"ଦର୍ଶନାଗ୍ନି ରୂପାଣାଂ ଦର୍ଶନଂ କରୋତ।" ଗର୍ଭୋପନିଷଦ୍—୫ ॥

ଦୃଶ୍ୟତେ ଅନେନ ଇତି ଦର୍ଶନମ୍—ଏହି ବ୍ୟୁତ୍ପତ୍ତି ଅନୁସାରେ ଯାହାଦ୍ୱାରା ଦେଖାଯାଏ ସେହି ଚକ୍ଷୁର ନାମ ଦର୍ଶନ—ଏପରି କହିବା ସ୍ୱାଭାବିକ। ଅର୍ଥାତ୍ ଯେପରି ଏହି ଜାଗତିକ ସକଳ ବିଷୟର ଜ୍ଞାନ ଚକ୍ଷୁର ଦର୍ଶନଦ୍ୱାରା ଉପଲବ୍‌ଧ ହୁଏ, ସେପରି ବିବେକ ଓ ଜ୍ଞାନଭକ୍ତି-ଯୁକ୍ତ ମନଦ୍ୱାରା ପରମାତ୍ମାଦର୍ଶନ ଉପଲବ୍‌ଧ ହୁଏ। ଏହି ହେତୁରୁ କୁହାଯାଇଅଛି—

"× × × ମନୋଽସ୍ୟ ଦୈବଂ ଚକ୍ଷୁଃ × × ×," ଛା. ୮।୧୨।୫ ॥

ଅର୍ଥାତ୍ ମନ ମାନବମାନଙ୍କର ଦୈବ—ଚକ୍ଷୁ। ଏହି ଦୈବଚକ୍ଷୁଦ୍ୱାରା ଯେଉଁ ଦର୍ଶନ ଜ୍ଞାନ ହୁଏ, ତାହାକୁ ମଧ୍ୟ ଦର୍ଶନ ବୋଲଯାଏ। ଚର୍ମଚକ୍ଷୁଦ୍ୱାରା ଯେପରି ଭ୍ରମ ଓ ପ୍ରମାତ୍ମକ ଦର୍ଶନ ହୁଏ, ଦୈବଚକ୍ଷୁ-ମନଦ୍ୱାରା ମଧ୍ୟ ସେପରି ମିଥ୍ୟାଦୃଷ୍ଟି ଓ ସମ୍ୟକ୍ ଦର୍ଶନ ଉଭୟ ଉତ୍ପନ୍ନ ହୁଏ। ପୂର୍ବୋକ୍ତ ଆଧ୍ୟାତ୍ମିକ ଜ୍ଞାନଭକ୍ତିଯୁକ୍ତ ମନଦ୍ୱାରା ପରମାତ୍ମାଙ୍କର ସମ୍ୟକ୍ ଦର୍ଶନଲାଭ ହୁଏ; କିନ୍ତୁ ଜ୍ଞାନଭକ୍ତିବିହୀନ ମନଦ୍ୱାରା କଦାପି ପରମାତ୍ମଦର୍ଶନଲାଭ ହୋଇ ପାରେ ନାହିଁ। ଏହି ସମ୍ବନ୍ଧରେ ଯାଜ୍ଞବଲ୍‌କ୍ୟ ନିର୍ଦ୍ଦେଶ କରିଅଛନ୍ତି—

"ଅୟଂ ତୁ ପରମୋ ଧର୍ମୋ ଯଦ୍ ଯୋଗେନାତ୍ମଦର୍ଶନମ୍"

ଅର୍ଥାତ୍ ମୁମୁକ୍ଷୁବ୍ୟକ୍ତିର ନିଜ ଆତ୍ମାରେ ପରମାତ୍ମାଙ୍କର ସାକ୍ଷାତ୍କାରରୂପକ ଆତ୍ମଦର୍ଶନ କେବଳ ମୁକ୍ତିର ସାକ୍ଷାତ୍ ଉପାୟ; ଏହା କେବଳ ସାରଭୂତ ପରମଧର୍ମ। ଏହିପରି ଆତ୍ମଜ୍ଞାନଭକ୍ତିଯୋଗସମ୍ପନ୍ନ ହେଲେ ମାନବ ପରମପୁରୁଷାର୍ଥ ଲାଭ କରିପାରେ। କେବଳ ନାନାବିଧ ଦାର୍ଶନିକ ମତବାଦ ଆଲୋଚନା କରି ପାଣ୍ଡିତ୍ୟଲାଭ କଲେ ପ୍ରକୃତ ଆତ୍ମତତ୍ତ୍ୱଲାଭ ହୋଇ ନ ପାରେ; ସେଥିନିମନ୍ତେ ପ୍ରକୃତ ଦର୍ଶନ ଆବଶ୍ୟକ।

"ଦର୍ଶନଂ ଦର୍ଶନଂ ପ୍ରୋକ୍ତମ୍"—

ଦର୍ଶନଶାସ୍ତ୍ର ଅଧ୍ୟୟନଦ୍ୱାରା ପଦାର୍ଥର ସ୍ୱରୂପଜ୍ଞାନ ଅବଶ୍ୟ ହୋଇପାରେ ; କିନ୍ତୁ ତଦ୍ଦ୍ୱାରା ପରମପୁରୁଷାର୍ଥ ସିଦ୍ଧ ହୋଇ ପାରେ ନାହିଁ । ଆତ୍ମନିଷ୍ଠ ହୋଇ ଗୁରୁଙ୍କ ଉପଦେଶ ଅନୁସାରେ କାୟମନୋବାକ୍ୟ ସହିତ ସମ୍ୟଗ୍ ଜ୍ଞାନଭକ୍ତିଯୋଗର ସମାବେଶରେ ପ୍ରକୃତ ଦର୍ଶନୀୟ ଆତ୍ମତତ୍ତ୍ୱବିଚାର ସଫଳ ହୁଏ । ଉପର୍ଯ୍ୟୁକ୍ତ ଆତ୍ମତତ୍ତ୍ୱ-ଜ୍ଞାନଲାଭର ହେତୁସ୍ୱରୂପ ସଶ୍ରଦ୍ଧତା, ଏକାଗ୍ରତା ଓ ଐକାନ୍ତିକୀ ଭକ୍ତି-ଯୋଗନିଷ୍ଠତା ଲାଭ ନ କରି କେବଳ ତାତ୍ତ୍ୱିକ ଯୁକ୍ତିରେ କାଳକ୍ଷେପଣ କଲେ ଭସ୍ମରେ ଘୃତାହୁତି ପରି ସକଳ ଆତ୍ମଜ୍ଞାନ-ଲାଭଚେଷ୍ଟା ପଣ୍ଡ ହୁଏ । ଅତଏବ ଆତ୍ମସଂଯମପୂର୍ବକ ବିଶୁଦ୍ଧାତ୍ମଜ୍ଞାନଭକ୍ତିଯୋଗରେ ପରମାତ୍ମା-ଦର୍ଶନଲାଭ ନିମନ୍ତେ ପ୍ରୟାସୀ ହେବା ଆବଶ୍ୟକ ।

ଶ୍ରୁତିରେ ମଧ୍ୟ ଏପରି ନିର୍ଦ୍ଦେଶ ଅଛି—

"ନ ଚକ୍ଷୁଷା ଗୃହ୍ୟତେ ନାପି ବାଚା
　　ନାନ୍ୟୈର୍ଦେବୈସ୍ତପସା କର୍ମଣା ବା ।
ଜ୍ଞାନପ୍ରସାଦେନ ବିଶୁଦ୍ଧସତ୍ତ୍ୱ-
　　ସ୍ତତସ୍ତୁ ତଂ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ ॥"
　　　　ମୁଣ୍ଡକ—୩ । ୧ । ୮ ॥

ବ୍ରହ୍ମ ରୂପବିହୀନ, ଅତଏବ ସେ ଚକ୍ଷୁଦ୍ୱାରା ଦର୍ଶନୀୟ ନୁହନ୍ତି । ସେ ଅନଭିଧେୟ, ଅତଏବ ବଚନରେ ଅପ୍ରକାଶ୍ୟ । ଇନ୍ଦ୍ରିୟର ଅବିଷୟ; ତପସ୍ୟା ବା ଅଗ୍ନିହୋତ୍ର ଆଦି ବୈଦିକ କର୍ମଦ୍ୱାରା ମଧ୍ୟ ବ୍ରହ୍ମପଦାର୍ଥ ଲାଭ କରାଯାଇ ପାରେ ନାହିଁ; କିନ୍ତୁ ଜ୍ଞାନଲାଭଦ୍ୱାରା ଯେଉଁମାନଙ୍କର ମନ ଓ ଅନ୍ତଃକରଣ ପ୍ରସନ୍ନ ଓ ବିଶୁଦ୍ଧ, ଅର୍ଥାତ୍ ଇନ୍ଦ୍ରିୟ ଓ ତଦ୍‌ବିଷୟ ସଂସର୍ଗଜନିତ ରାଗାଦିମଳ ଯେଉଁମାନଙ୍କର ଅପସୃତ ହୋଇଅଛି, ସେହି ଶୁଦ୍ଧଚେତାମାନେ ତାହାଙ୍କୁ ନିରବୟବସ୍ୱରୂପରେ ଭକ୍ତି ଓ ଆରାଧନାଦ୍ୱାରା ଦର୍ଶନ କରନ୍ତି ।

ମହାଭାରତରେ ମଧ୍ୟ ଉକ୍ତ ଅଛି—

ନ ହ୍ୟୟଂ ଚକ୍ଷୁଷା ଦୃଶ୍ୟୋ ନ ଚ ସର୍ବୈରପୀନ୍ଦ୍ରିୟୈଃ
ମନସା ତୁ ପ୍ରଦୀପେନ ମହାନାତ୍ମା ପ୍ରକାଶତେ ॥
　　　　ମହାଭା: ଶାନ୍ତିପର୍ବ—୨୩୯ । ୧୨ ॥

ଚକ୍ଷୁ ବା ଅନ୍ୟାନ୍ୟ ଇନ୍ଦ୍ରିୟଦ୍ୱାରା ସେହି ପରମାତ୍ମାଙ୍କୁ ଦର୍ଶନ ବା ଜ୍ଞାନ କରାଯାଏ ନାହିଁ । କେବଳ ବିଶୁଦ୍ଧାତ୍ମଜ୍ଞାନଭକ୍ତିଯୋଗରେ ସଂସ୍କାରିତ ମନରୂପ ପ୍ରଦୀପଦ୍ୱାରା ସେହି ମହାନ୍ ଆତ୍ମା ପ୍ରକାଶିତ ହୁଅନ୍ତି ।

"ସର୍ବଗଂ ସଚ୍ଚିଦାନନ୍ଦଂ ଜ୍ଞାନଚକ୍ଷୁର୍ନିରୀକ୍ଷତେ ।
ଅଜ୍ଞାନଚକ୍ଷୁର୍ନେକ୍ଷେତ ଭାସ୍ୱନ୍ତଂ ଭାନୁମନ୍ଧବତ୍ ॥"

ମହୋପନିଷତ୍ । ୪ । ୮୦ ।

ଜ୍ଞାନୀ ଜ୍ଞାନନେତ୍ରଦ୍ୱାରା ସର୍ବଗତ ସଚ୍ଚିଦାନନ୍ଦସ୍ୱରୂପୀ ପରମାତ୍ମାଙ୍କୁ ଦର୍ଶନ କରେ । ଅନ୍ଧବ୍ୟକ୍ତି ସୂର୍ଯ୍ୟଙ୍କୁ ନ ଦେଖି ପାରିଲା ଭଳି ଅଜ୍ଞାନାନ୍ଧବ୍ୟକ୍ତି ସର୍ବପ୍ରକାଶକ ସେହି ସଚ୍ଚିଦାନନ୍ଦମୟବ୍ରହ୍ମଙ୍କୁ ଦର୍ଶନ କରିପାରେ ନାହିଁ ।

ଏ ବିଷୟରେ ମନୁ ମଧ୍ୟ କହିଛନ୍ତି—

ସମ୍ୟଗ୍ ଦର୍ଶନସମ୍ପନ୍ନଃ କର୍ମଭିର୍ନ ନିବଧ୍ୟତେ ।
ଦର୍ଶନେନ ବିହୀନସ୍ତୁ ସଂସାରଂ ପ୍ରତିପଦ୍ୟତେ ।" ମନୁ—୬ । ୭୪ ।

ଜ୍ଞାନ-ଭକ୍ତିଯୋଗ-ସାଧନଦ୍ୱାରା ସମ୍ୟଗ୍‌ଦର୍ଶନସମ୍ପନ୍ନ (ବ୍ରହ୍ମନିଷ୍ଠ) ବ୍ୟକ୍ତି ପାପ ଓ ପୁଣ୍ୟ କର୍ମଦ୍ୱାରା ଆବଦ୍ଧ ହୁଏ ନାହିଁ (ଅର୍ଥାତ୍ ମୋକ୍ଷଲାଭ କରେ ) । ଯେ ଆତ୍ମଦର୍ଶନବିହୀନ, ସେ ସଂସାରୀ ହୋଇ ରହେ ବା ଜନ୍ମଜନ୍ମାନ୍ତର ଲାଭ କରେ ।

ସର୍ବଶକ୍ତିରନନ୍ତାତ୍ମା ସର୍ବଭାବାନ୍ତରସ୍ଥିତଃ ।
ଅଦ୍ୱିତୀୟଶ୍ଚିଦିତ୍ୟନ୍ତର୍ଯଃ ପଶ୍ୟତି ସ ପଶ୍ୟତି ॥

ଯୋଗ ବା: ୧୩ । ୧୧ ।

ଯେଉଁ ବ୍ୟକ୍ତି ପରମାତ୍ମାଙ୍କୁ ସର୍ବଶକ୍ତିମାନ୍ ଅନନ୍ତସ୍ୱରୂପ ଓ ସର୍ବାନ୍ତର୍ଗତ ଅଦ୍ୱିତୀୟ ଚିତ୍‌ସ୍ୱରୂପରେ ଜ୍ଞାତ ହୋଇ ଓ ସ୍ୱୀୟ ଅନ୍ତରରେ ଦର୍ଶନ ଲାଭ କରି ଆତ୍ମଜ୍ଞାନ-ଭକ୍ତିଯୋଗରେ ନିମଗ୍ନ ରହନ୍ତି, ସେହି ବ୍ୟକ୍ତି କେବଳ ତାହାଙ୍କର ଦର୍ଶନ ଲାଭ କରନ୍ତି ଏବଂ ଜନ୍ମ-ମରଣରୁ ନିଷ୍କୃତି ଲାଭ କରନ୍ତି ।

ଏଥିରୁ ବୁଝାଗଲା ଯେ, ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗଦ୍ୱାରା ସେହି ଏକ ଅଦ୍ୱିତୀୟ ଅଲେଖପରଂବ୍ରହ୍ମଙ୍କଠାରେ ଯେ ଆଜୀବନ ଅବିଚଳିତଭାବରେ ଶରଣାପନ୍ନ ହୁଏ, ତା'ର ସେହି ଶରଣାପନ୍ନତା ହିଁ ପ୍ରକୃତ ଦର୍ଶନନାମରେ ଅଭିହିତ ।

୦—ପ୍ରଭୁ ପରଂବ୍ରହ୍ମ କେବଳ ସଂସାର-ସାଗରର ସେତୁ ଓ ନୌକାସ୍ୱରୂପ ।

ଏହି ଭୟାବହ ମାୟାମୟ ଭବାର୍ଣ୍ଣବରୁ ଉତ୍ତୀର୍ଣ୍ଣ ହେବାର ଏକମାତ୍ର ଉପାୟ ସେହି ପ୍ରଭୁ ପରମାତ୍ମା । ସେହି କାରଣରୁ ଶ୍ରୁତିରେ ସେ ସେତୁ ଓ ନୌକାସ୍ୱରୂପ ବର୍ଣ୍ଣିତ ହୋଇଅଛନ୍ତି ।

"× × ଏଷ ସର୍ବେଶ୍ୱର ଏଷ ଭୂତାଧିପତିରେଷ ଭୂତପାଳ ଏଷ ସେତୁର୍ବିଧରଣ ଏଷାଂ ଲୋକାନାମସମ୍ଭେଦାୟ × × ।।"

ବୃହଦାରଣ୍ୟକ—୪ । ୪ । ୨୨ ।।

ଏହି ପରଂବ୍ରହ୍ମ ପରମାତ୍ମା ସର୍ବେଶ୍ୱର, ଭୂତମାନଙ୍କର ଅଧିପତି ଓ ପାଳକ, ଲୋକସମୂହର ବିଭାଜକ, ଧାରକ ଓ ସଂସାର-ସାଗରରୁ ତାରଣନିମନ୍ତେ ସେତୁସ୍ୱରୂପ ।

"ଅଥ ଯ ଆତ୍ମା ସ ସେତୁର୍ବିଧୃତିରେଷାଂ ଲୋକାନାମସଂଭେଦାୟ ନୈତଂ ସେତୁମହୋରାତ୍ରେ ତରତୋ ନ ଜରା ନ ମୃତ୍ୟୁର୍ନ ଶୋକୋ ନ ସୁକୃତଂ ନ ଦୁଷ୍କୃତଂ ସର୍ବେ ପାପ୍ମାନୋଽତୋ ନିବର୍ତ୍ତନ୍ତେଽପହତପାପ୍ମା ହ୍ୟେଷ ବ୍ରହ୍ମଲୋକଃ ।।

ଛାନ୍ଦୋଗ୍ୟ ୮ । ୪ । ୧ ।।

ସେହି ଏକ ଅଦ୍ୱିତୀୟ ପରମାତ୍ମା ସର୍ବଜଗତର ସେତୁସ୍ୱରୂପ ଏବଂ ବିପୁଳ ବିଶ୍ୱର ବିଚିତ୍ରତା ରକ୍ଷା କରି ଆସୁଅଛନ୍ତି । ଦିବସ ଓ ରାତ୍ରି ଆତ୍ମାର ଇତ୍ୟବସ୍ଥା ନିଷ୍ଟ୍ୟ କରିପାରେ ନାହିଁ । ଜରା, ମୃତ୍ୟୁ, ଶୋକ ଏବଂ ସୁକୃତ ଓ ଦୁଷ୍କୃତ ତାହାଙ୍କୁ ସ୍ପର୍ଶ କରିପାରେ ନାହିଁ । ସକଳ ପାପ ତାଙ୍କ ନିକଟରୁ ଦୂରକୁ ଚାଲିଯାଏ; ଅତଏବ ବ୍ରହ୍ମ ନିଷ୍ପାପ ବୋଲି କୁହାଯାନ୍ତି ।

"× × ତମେବୈକଂ ଜାନଥ ଆତ୍ମାନମନ୍ୟା ବାଚୋ ବିମୁଞ୍ଚଥ ଅମୃତସ୍ୟୈଷ ସେତୁଃ ।"

ମୁଣ୍ଡକ—୨ । ୨ । ୫ ।।

ସେହି ଅଦ୍ୱିତୀୟ ପରମାତ୍ମାଙ୍କୁ ଜାଣିବା ନିମନ୍ତେ ଚେଷ୍ଟା କର । ସେହି କେବଳ ଅମୃତର, ଅର୍ଥାତ୍ ମୁକ୍ତି-ସେତୁ ଏବଂ ସଂସାର-ସାଗରତାରଣର ହେତୁ—ଏହା ଜାଣି ଅନ୍ୟାନ୍ୟ ତୁଚ୍ଛ ଅବିଦ୍ୟାବିଷୟକ ଆଲୋଚନା ତ୍ୟାଗ କର । ଶ୍ରୁତି କହେ—

"× × ବ୍ରହ୍ମୋଡ଼ୁପେନ ପ୍ରତରେତ ବିଦ୍ୱାନ୍ ।
ସ୍ରୋତାଂସି ସର୍ବାଣି ଭୟାବହାନି ।"

ଶ୍ୱେତାଶ୍ୱତର-୨ । ୮ ।।

ଜ୍ଞାନୀବ୍ୟକ୍ତି ବ୍ରହ୍ମରୂପ ଭେଳାଦ୍ୱାରା ଭବସାଗରର ଭୟାବହ ସ୍ରୋତରୁ ଉତ୍ତୀର୍ଣ୍ଣ ହୁଅନ୍ତି । ଏ ବିଷୟରେ ସନତସୁଜାତ ଋଷିଙ୍କ ଉକ୍ତି—

ଏକମେବାଦ୍ୱିତୀୟଂ ଯତ୍ତଦ୍ରାଜନ୍ ! ନାବବୁଧ୍ୟସେ ।
ସତ୍ୟଂ ସ୍ୱର୍ଗସ୍ୟ ସୋପାନଂ ପାରାବାରସ୍ୟ ନୌରିବ ।।

ମହା : ଉ: ୩୩ । ୫୩ ।।

ହେ ରାଜନ୍ ! ସେହି ଏକମାତ୍ର ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମା, ଯାହାଙ୍କୁ ତୁମ୍ଭେ ଜାଣିପାରୁନାହିଁ; ପ୍ରକୃତରେ ସେହି କେବଳ ସ୍ୱର୍ଗର ସୋପାନ ଏବଂ ପାରାବାର ବା ଭବସାଗରରୁ ପାର ହେବାର ଏକମାତ୍ର ନୌକାସ୍ୱରୂପ ।

ଶଙ୍କରାଚାର୍ଯ୍ୟ ମଧ୍ୟ ଘୋଷସ୍ୱରରେ ଉପଦେଶ ଦେଇଅଛନ୍ତି—

**ଅପାର-ସଂସାର-ସମୁଦ୍ରମଧ୍ୟେ ସମ୍ମଜ୍ଜତୋ ମେ ଶରଣଂ କମସ୍ତି ।**
**ଗୁରୋ କୃପାଳୋ କୃପୟା ବଦୈତଦ୍ ବିଶ୍ୱେଶପାଦାମ୍ବୁଜଦୀର୍ଘନୌକା ।।**

ମଣିରତ୍ନମାଳା—୧ ।।

ଶିଷ୍ୟ ଜିଜ୍ଞାସା କଲେ—ହେ କୃପାମୟ ଗୁରୋ ! ମୁଁ ଦୁସ୍ତାର ଭବସାଗର ଗର୍ଭରେ ନିପତିତ ହୋଇଅଛି, ମୋର ଆଶ୍ରୟ କ'ଣ ? ଦୟାପରବଶ ହୋଇ କହନ୍ତୁ । ଗୁରୁଦେବ କହିଲେ—ବିଶ୍ୱପତି ପରମାତ୍ମାଙ୍କର ଅଭୟ ଚରଣକମଳ କେବଳ ତୁମ୍ଭର ଆଶ୍ରୟ । ବେଦରେ ମଧ୍ୟ ଉକ୍ତ ଅଛି—

**ସୁତ୍ରାମାଣଂ ପୃଥିବୀଂ ଦ୍ୟାମନେହସଂ ସୁଶର୍ମାଣମଦିତିଂ ସୁପ୍ରଣୀତିମ୍ ।**
**ଦୈବୀଂ ନାବଂ ସ୍ୱରିତ୍ରାମନାଗସମସ୍ରବନ୍ତୀମାରୁହେମା ସ୍ୱସ୍ତୟେ ।।"**

ଋକ୍—୧୦ । ୬୩ । ୧୦ ।।

ଆମ୍ଭେମାନେ ଜୀବନ ସମୁଦ୍ରରେ ସୁରକ୍ଷିତ; (ଏହି ସମୁଦ୍ରତରଣ ସକାଶେ) ଆମ୍ଭେ ପ୍ରଶସ୍ତ, ଉଜ୍ଜ୍ୱଳ, ହିଂସାରହିତ ନୌକା ପରମଶାନ୍ତିନିମନ୍ତେ ଆରୋହଣ କରୁଅଛୁଁ; ଏହି ନୌକା ପ୍ରକୃଷ୍ଟ ଆଶ୍ରୟ, ଦୃଢ଼, ଉତ୍ତମଗତିଶୀଳ, ଉତ୍ତମ ଆହ୍ଲାଦଯୁକ୍ତ, ଦୋଷରହିତ, ଛିଦ୍ରଶୂନ୍ୟ ଓ ଦିବ୍ୟଗୁଣଯୁକ୍ତ ।

**୦—ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗ କେବଳ ପରମପନ୍ଥା ।**

ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ସର୍ବାଶ୍ରୟ, ମଧୁମୟ, ଅମୃତସ୍ୱରୂପ, ସକଳ ଲୋକମାନଙ୍କର ଉଦ୍ଧାରଣର ସେତୁ ଓ ଭବସାଗରର ନୌକାସ୍ୱରୂପ । ସେହି ପରମାତ୍ମାଙ୍କୁ ଜ୍ଞାନଭକ୍ତି-ଯୋଗ ଅନୁସାରେ ଆଶ୍ରୟ କରିବା ମନୁଷ୍ୟର ପରମପନ୍ଥା । ଉପନିଷଦ୍‌ରେ ମଧ୍ୟ ଉକ୍ତ ଅଛି—

**"ବେଦାହମେତଂ ପୁରୁଷଂ ମହାନ୍ତଂ ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।**
**ତମେବ ବିଦିତ୍ୱାତିମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।।"**

ଶ୍ୱେତାଶ୍ୱତ:-୩ । ୮ ଶୁକ୍ଲଯଜୁଃ—୧୩ । ୧୮ ।।

ଅର୍ଥାତ୍ ଆମ୍ଭେ ପରମପୁରୁଷ ପୂର୍ଣ୍ଣ ପରମାତ୍ମାଙ୍କୁ ଜାଣୁଁ । ସେ ସର୍ବପ୍ରାଣୀଗତ, ସର୍ବସାକ୍ଷୀସ୍ୱରୂପ ଓ ସ୍ୱୟଂ ପ୍ରକାଶିତ ଅଛନ୍ତି । ଏହିପରି ତାହାଙ୍କୁ ଜାଣିପାରିଲେ ଅଜ୍ଞାନ ନଷ୍ଟ ହୁଏ ଏବଂ ଅଜ୍ଞାନଜନିତ ଅସାର ସଂସାରମାୟା ପରିତ୍ୟକ୍ତ ହେଲେ ଜୀବ ମୃତ୍ୟୁକୁ ଅତିକ୍ରମ କରି ପରମପଦଲାଭ କରିପାରେ । ତଦ୍‌ଭିନ୍ନ ଜୀବର ପରମପଦପ୍ରାପ୍ତି ନିମନ୍ତେ ଅନ୍ୟ କୌଣସି ଉପାୟ ବା ପନ୍ଥା ନାହିଁ । ପୁନଶ୍ଚ—

"ଜ୍ଞାତ୍ୱା ତଂ ମୃତ୍ୟୁମତ୍ୟେତି ନାନ୍ୟଃ ପନ୍ଥା ବିମୁକ୍ତୟେ ॥"

ସେହି ପରମାତ୍ମାଙ୍କୁ ଜାଣିପାରିଲେ ମନୁଷ୍ୟ ମୃତ୍ୟୁକୁ ଅତିକ୍ରମ କରିପାରେ, ଏତଦ୍‌ଭିନ୍ନ ମୁକ୍ତିର ଅନ୍ୟ କୌଣସି ପନ୍ଥା ନାହିଁ । ଅର୍ଥାତ୍ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗ ଭିନ୍ନ ମୁକ୍ତିର ଅନ୍ୟ କୌଣସି ପନ୍ଥା ନାହିଁ ।

ଏକୋ ହଂସୋ ଭୁବନସ୍ୟାସ୍ୟ ମଧ୍ୟେ
ସ ଏବାଗ୍ନିଃ ସଲିଳେ ସନ୍ନିବିଷ୍ଟଃ ।
ତମେବ ବିଦିତ୍ୱାତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।　　　　ଶ୍ୱେତାଶ୍ୱ—୬ । ୧୫ ।

ଏହି ଭୁବନମଧ୍ୟରେ ଭବ-ବନ୍ଧନର କାରଣ ଅବିଦ୍ୟାକୁ ପରମାତ୍ମାହିଁ ବିନଷ୍ଟ କରନ୍ତି । ସେହି କେବଳ ଅବିଦ୍ୟାର ଦାହକ ଅଗ୍ନିସ୍ୱରୂପ । ସେ ସଲିଳ ସଦୃଶ ନିର୍ମଳାନ୍ତଃକରଣରେ ନିବିଷ୍ଟ ଅଛନ୍ତି । ତାହାଙ୍କୁ ଜ୍ଞାନ-ଭକ୍ତି-ଯୋଗବଳରେ ଜାଣି ପାରିଲେ ଜୀବ ମୃତ୍ୟୁକୁ ଅତିକ୍ରମ କରିପାରେ । ତଦ୍‌ଭିନ୍ନ ପରମପଦପ୍ରାପ୍ତିର ଅନ୍ୟ ଉପାୟ ବା ପନ୍ଥା ନାହିଁ ।

ଏହି ପନ୍ଥା ଅବଲମ୍ବନ ବିଷୟରେ ମହର୍ଷି ଅଥର୍ବା ଶାଣ୍ଡିଲ୍ୟ ମହର୍ଷିଙ୍କୁ ତତ୍ତ୍ୱଜ୍ଞାନପୂର୍ଣ୍ଣ ଉପଦେଶ ଦେଇଅଛନ୍ତି —

ଖମଧ୍ୟେ କୁରୁ ଚାତ୍ମାନମାତ୍ମମଧ୍ୟେ ଚ ଖଂ କୁରୁ ।
ସର୍ବଂ ଚ ଖମୟଂ କୃତ୍ୱା ନ କିଞ୍ଚିଦପି ଚିନ୍ତୟ ॥
ବାହ୍ୟଚିନ୍ତା ନ କର୍ତ୍ତବ୍ୟା ତଥୈବାନ୍ତରଚିନ୍ତିକା ।
ସର୍ବଚିନ୍ତାଂ ପରିତ୍ୟଜ୍ୟ ଚିନ୍ମାତ୍ରପରମୋ ଭବ ॥
କର୍ପୂରମନଲେ ଯଦ୍‌ବତ୍ ସୈନ୍ଧବଂ ସଲିଳେ ଯଥା ।
ତଥା ଚ ଲୀୟମାନଂ ସ ମନସ୍ତତ୍ତ୍ୱେ ବିଲୀୟତେ ॥

ଜ୍ଞେୟଂ ସର୍ବପ୍ରତୀତଂ ଚ ତଦ୍‌ଜ୍ଞାନଂ ମନ ଉଚ୍ୟତେ ।
ଜ୍ଞାନଂ ଜ୍ଞେୟଂ ସମଂ ନଷ୍ଟଂ ନାନ୍ୟଃ ପନ୍ଥା ଦ୍ୱିତୀୟକଃ ॥

ଶାଣ୍ଡିଲ୍ୟ ଉ : —୧ । ୧୯-୨୨ ।

ହେ ଶାଣ୍ଡିଲ୍ୟ; ପରମ ଆକାଶ ମଧ୍ୟରେ ଜୀବାତ୍ମାଙ୍କୁ ଏବଂ ଜୀବାତ୍ମା ମଧ୍ୟରେ ଥିବା ପରମାକାଶରୂପୀ ପରମାତ୍ମାଙ୍କୁ ଭାବନା କର । ତା' ପରେ ସମସ୍ତ ବାହ୍ୟ ବସ୍ତୁ ବ୍ରହ୍ମଙ୍କ ମହିମାରେ ପ୍ରକାଶିତ ବୋଲି ଅବଧାରଣା କର । ପରମାତ୍ମାଙ୍କ ବ୍ୟତୀତ ଅପର କାହାକୁ ଚିନ୍ତା କର ନାହିଁ । ହେ ଶାଣ୍ଡିଲ୍ୟ, ବାହ୍ୟ ବା ଅନ୍ତର୍ ଚିନ୍ତା କରିବା ତୁମ ପକ୍ଷରେ ଉଚିତ ନୁହେଁ । ତୁମ୍ଭେ ସମସ୍ତ ଚିନ୍ତା ପରିତ୍ୟାଗ କରି ପରମ ଚିନ୍ମାତ୍ରସ୍ୱରୂପ ଲାଭ କର । ଯେପରି ଜଳରେ ସୈନ୍ଧବ ଲୁଣ ପଡ଼ିଲେ ସେଥିରେ ଲୀନ ହୋଇଯାଏ ଏବଂ ଅଗ୍ନିରେ କର୍ପୂର ମଧ୍ୟ ଲୟପ୍ରାପ୍ତ ହୁଏ, ସେହିପରି ଜୀବାତ୍ମା ଓ ମନ ଉଭୟ ପରମାତ୍ମତତ୍ତ୍ୱରେ ବିଲୟପ୍ରାପ୍ତ ହୁଅନ୍ତି । ଯେଉଁ ସମୟରେ ଜ୍ଞେୟ ବସ୍ତୁ ଏବଂ ତଦ୍‌ବିଷୟକ ଜ୍ଞାନ, ଉଭୟ ବିଜ୍ଞାନରେ ବିଲୀନ ହୋଇ କେବଳ ଜ୍ଞାନର ସ୍ୱରୂପ ଭାସମାନ ହୁଏ, ସେତେବେଳେ ଜ୍ଞାନ ଓ ଜ୍ଞେୟ—ଉଭୟ ନଷ୍ଟ ହୋଇଯାଏ । ଏହା କେବଳ ମୁକ୍ତିଲାଭର ପନ୍ଥା । ଏତଦ୍‌ଭିନ୍ନ ଅନ୍ୟ କୌଣସି ଦ୍ୱିତୀୟ ପନ୍ଥା ନାହିଁ । ଆଚାର୍ଯ୍ୟ ଶଙ୍କରଙ୍କର ଏ ବିଷୟରେ ଉକ୍ତି—

"ବିଶୋକ ଆନନ୍ଦଘନୋ ବିପଶ୍ଚିତ୍ ସ୍ୱୟଂ କୁତଶ୍ଚିନ୍ନ ବିଭେତ କଶ୍ଚିତ୍ ।
ନାନ୍ୟୋଽସ୍ତି ପନ୍ଥା ଭବବନ୍ଧମୁକ୍ତେର୍ବିନା ସ୍ୱତତ୍ତ୍ୱାବଗମଂ ମୁମୁକ୍ଷୋଃ ॥"

ବିବେକଚୂଡ଼ାମଣି-୨୨୪ । କେବଳ—୧-"

ପରମାତ୍ମା ସର୍ବଜ୍ଞ, ଆନନ୍ଦଘନ ଓ ଶୋକଶୂନ୍ୟ, ସେ କୁତ୍ରାପି କୌଣସିଠାରୁ ଭୀତ ହୁଅନ୍ତି ନାହିଁ । ସେହି ପରମାତ୍ମରୂପ ଆତ୍ମତତ୍ତ୍ୱଜ୍ଞାନ ବ୍ୟତିରେକେ ମୋକ୍ଷକାମୀ ପକ୍ଷରେ ଭବପାଶ ବିମୋଚନର ଅନ୍ୟ ଉପାୟ ବା ପନ୍ଥା ନାହିଁ ।

ଏ ସମ୍ବନ୍ଧରେ ସନତ୍ସୁଜାତ ଋଷିଙ୍କ ଉପଦେଶ ଏହିପରି—

"ଅନ୍ତବତଃ କ୍ଷତ୍ରିୟ ! ତେ ଜୟନ୍ତି
ଲୋକାନ୍ ଜନାଃ କର୍ମଣା ନିର୍ମଲେନ ।
ବ୍ରହ୍ମୈବ ବିଦ୍ୱାଂସ୍ତେନ ଅଭ୍ୟେତି ସର୍ବଂ
ନାନ୍ୟଃ ପନ୍ଥା ଅୟନାୟ ବିଦ୍ୟତେ ॥"

ମହାଭାରତ-ଉଦ୍‌ଯୋଗପର୍ବ— ୪୪ । ୨୪ ।

ହେ ରାଜନ୍ ! ପ୍ରବୃତ୍ତିମାର୍ଗାଶ୍ରୟୀ ଲୋକମାନେ ନିର୍ଦ୍ଦୋଷ ଯାଗାଦି କର୍ମଦ୍ୱାରା ବିନଶ୍ୱର ସ୍ୱର୍ଗଭୋଗ ଲାଭ କରନ୍ତି; କିନ୍ତୁ ନିବୃତ୍ତିମାର୍ଗାବଲମ୍ବୀ ଲୋକେ ଏହି ବ୍ରହ୍ମଚର୍ଯ୍ୟଗୁଣରେ

ଜ୍ଞାନ ଓ ଭକ୍ତିଯୁକ୍ତ ହୋଇ ବ୍ରହ୍ମଙ୍କୁ ଲଭ କରନ୍ତି । ଅତଏବ ମୁକ୍ତିଲାଭପାଇଁ ଜ୍ଞାନଭକ୍ତିଭିନ୍ନ ଅନ୍ୟ ପଥ ନାହିଁ ।

ଏହି ବିଷୟରେ ସଞ୍ଜୟଙ୍କ ଉକ୍ତି—

**ଏଷ ଏକାୟନଃ ପନ୍ଥା ଯେ ନ ଯାନ୍ତି ମନୀଷିଣଃ ।**
**ତଂ ଦୃଷ୍ଟ୍ୱା ମୃତ୍ୟୁମତ୍ୟେତ ମହାଂସ୍ତତ୍ର ନ ସଜ୍ଜତ ॥**

ମହାଭାରତ—ଉ: ୬୨ । ୪୦ ।

ଏକ ଅଦ୍ୱିତୀୟ ପରଂବ୍ରହ୍ମତତ୍ତ୍ୱଜ୍ଞମାନେ ଯେଉଁ ପଥରେ ଗମନ କରନ୍ତି, ତାହା ହିଁ ବ୍ରହ୍ମପ୍ରାପ୍ତିର ପନ୍ଥା । ମନୁଷ୍ୟ ସେହି ପରମାତ୍ମାଙ୍କୁ ଜାଣିଲେ ମୃତ୍ୟୁକୁ ଅତିକ୍ରମ କରିପାରେ । ମହାପୁରୁଷମାନେ କାମ୍ୟକର୍ମରେ ଆସକ୍ତ ହୁଅନ୍ତି ନାହିଁ ।

ଉପର୍ଯ୍ୟୁକ୍ତ ମୁକ୍ତିପନ୍ଥା ସମ୍ବନ୍ଧରେ ଯେଉଁ ସକଳ ବେଦବେଦାନ୍ତାଦି ସିଦ୍ଧାନ୍ତ ପ୍ରତିପାଦିତ ହେଲା, ସେ ସକଳ ମହିମାଧର୍ମସମାଜର ପ୍ରକୃତପନ୍ଥାରୂପରେ ଗ୍ରହଣୀୟ ।

ଏହା ହିଁ—

**"ଧର୍ମସ୍ୟତତ୍ତ୍ୱଂ ନିହିତଂ ଗୁହାୟାଂ ମହାଜନୋ ଯେନ ଗତଃସପନ୍ଥାଃ ॥"**

ଏହି ଅନୁପାଦରେ, ଯେଉଁ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗ ବର୍ଣ୍ଣିତ ହେଲା, ଯେହି ଜ୍ଞାନ-ଭକ୍ତିଯୋଗରେ ସର୍ବଦା ଅନୁରକ୍ତ ରହି ମହିମାଧର୍ମୀଙ୍କର ନିତ୍ୟର ଆଚରଣୀୟ ପଥରେ ପୂର୍ଣ୍ଣ ପଥିକ ହୋଇ ପାରିଲେ ପ୍ରକୃତ ପରଂବ୍ରହ୍ମାନୁରକ୍ତ ସାଧୁଭକ୍ତରୂପରେ ମହିମାଧର୍ମ ସମାଜରେ ଗଣ୍ୟ ହେବ ଓ ଅନ୍ତିମାବସ୍ଥାରେ ସେହି ମହାମହିମାର୍ଣ୍ଣବ ଅଭୟପରମଧାମକୁ ପ୍ରାପ୍ତ ହେବ ।

ଦ୍ୱିତୀୟପାଦସ୍ୟ ଦ୍ୱିତୀୟାନୁପାଦଃ ସମାପ୍ତଃ ।



### ସର୍ବବେଦବେଦାନ୍ତସାରତତ୍ତ୍ୱଶିରୋମଣି

# ଅଲେଖ ପରଂବ୍ରହ୍ମ-ଦର୍ଶନ

## ( ମହିମାଧର୍ମ-ଦର୍ଶନ )

### ଦ୍ୱିତୀୟ ପାଦସ୍ୟ ତୃତୀୟାନୁପାଦଃ

## ବିଶୁଦ୍ଧାଦ୍ୱୈତବ୍ରହ୍ମବାଦ

### ସପ୍ତମାନୁପାଦଃ

### ୦—ମହିମାଧର୍ମାଶ୍ରିତ ବଶିଷ୍ଠାଶ୍ରମର ନୀତିଯୋଗ ।

ମହିମାଧର୍ମର ଉଦ୍ଦେଶ୍ୟ—

ମହିମାଧର୍ମ—ଏହା ସର୍ବଧର୍ମାନ୍ତର୍ଗତ ସଗୁଣଶାଖାଯୁକ୍ତ ଧର୍ମ ନୁହେଁ; କାମ୍ୟ ବା ବାଧନିଷେଧଯୁକ୍ତଧର୍ମ ନୁହେଁ; ଇନ୍ଦ୍ରିୟାଦିର ବିଷୟଯୁକ୍ତ ଧର୍ମର ଅଙ୍ଗ ନୁହେଁ; କିମ୍ବା ଲୌକିକ କଳ୍ପନା ଜଳ୍ପନା, ପୌରାଣିକ ବା ତନ୍ତ୍ରଶାସ୍ତ୍ରର କାମ୍ୟକଳ୍ପନାଦିଧର୍ମ ନୁହେଁ; ଅଥବା ଦ୍ରବ୍ୟଗୁଣ-କ୍ରିୟାକର୍ମ ଅନୁସାରେ ସାଧର୍ମ୍ୟବୈଧର୍ମ୍ୟ କଳ୍ପିତଧର୍ମ ମଧ୍ୟ ନୁହେଁ । ମହିମାଧର୍ମ କେବଳ ଜଗତର ଆଦିକାରଣ, ବିଶୁଦ୍ଧପରଂବ୍ରହ୍ମ ପରମାତ୍ମାଙ୍କର ଅଭିବ୍ୟଞ୍ଜକମାତ୍ର ।

ସତ୍ୟ, ମହିମା ଓ ଧର୍ମ—ଏହି ଶବ୍ଦତ୍ରିତୟମଧ୍ୟରୁ ପ୍ରଥମ ସତ୍ୟଶବ୍ଦଦ୍ୱାରା ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ସୂଚିତ ହୁଅନ୍ତି ।

"ସତ୍ୟମଦ୍ୱୈତମ୍ ।"

ଅର୍ଥାତ୍ ସେ ଶାଶ୍ୱତ ଓ ଅଖଣ୍ଡ; କୌଣସି କାଳ ଓ ଦେଶରେ, କୌଣସି ହେତୁରୁ ତାହାର ରୂପାନ୍ତର ବା ଭେଦସୃଷ୍ଟି ହୁଏ ନାହିଁ ।

"ସତ୍ୟରୂପଂ ପରଂବ୍ରହ୍ମ", "ସତ୍ୟଂ ବ୍ରହ୍ମ ସନାତନମ୍"

ଇତ୍ୟାଦି ବାକ୍ୟରେ ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମପରମାତ୍ମା ସତ୍ ଶବ୍ଦଦ୍ୱାରା ପ୍ରତିପାଦିତ ହୁଅନ୍ତି ।

"× × ସନ୍ମୂଳ ମନ୍ୱିଚ୍ଛ, ସନ୍ମୂଳାଃ ସୋମ୍ୟେମାଃ ସର୍ବାଃ ପ୍ରଜାଃ ସଦାୟତନାଃ ସତ୍ପ୍ରତିଷ୍ଠାଃ ।"　　ଛାନ୍ଦୋଗ୍ୟ—୬।୮।୪

ହେ ବତ୍ସ ଶ୍ୱେତକେତୁ ! ଏହି ଜାଗତିକ ସକଳ ବସ୍ତୁର ସତ୍ୟହିଁ ମୂଳ, ସତ୍ୟ ଆଶ୍ରୟ ଓ ସତ୍ୟହିଁ ପ୍ରତିଷ୍ଠା ।

"× × ଏଷ ଆତ୍ମେତି ହୋବାଚୈ ତଦମୃତ ମଭୟମେତଦ୍ ବ୍ରହ୍ମେତି ତସ୍ୟ ହ ବା ଏତସ୍ୟ ବ୍ରହ୍ମଣୋ ନାମ ସତ୍ୟମିତି ।।"　　ଛା: ୮।୩।୪

ସେହି କେବଳ ଆତ୍ମା, ସର୍ବଭୟନିବାରକ ମରଣାତୀତ ବ୍ରହ୍ମ । ତାହାଙ୍କର ଅପର ନାମ ସତ୍ୟ ।

ପୁନଶ୍ଚ—

"ତତ୍କଥମିତି । ଏକମେବାଦ୍ୱିତୀୟଂ ବ୍ରହ୍ମ । ନେହ ନାନାସ୍ତି-କିଞ୍ଚନ ତସ୍ମାଦ୍ ବ୍ରହ୍ମବ୍ୟତିରକ୍ତଂ ସର୍ବଂ ବାଧିତମେବ । ସତ୍ୟମେବ ପରଂବ୍ରହ୍ମ ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ ।"

ତ୍ରିପାଦ ବିଭୂତି ମହାନାରାୟଣୋପନିଷଦ୍ "୩।୩"

ତାହାଙ୍କର ସ୍ୱରୂପ କ'ଣ ? ବ୍ରହ୍ମ ଏକମାତ୍ର ବସ୍ତୁ, ତାହାଙ୍କଠାରେ ଦ୍ୱିତୀୟ କୌଣସି ପ୍ରକାର ବସ୍ତୁ ନାହିଁ । ଅର୍ଥାତ୍ ବ୍ରହ୍ମଙ୍କଠାରେ ଏହି ଦ୍ୱୈତପ୍ରପଞ୍ଚ ପ୍ରତୀୟମାନ ହେଲେ ମଧ୍ୟ ତାହା ଯଥାର୍ଥ ନୁହେଁ । ଏତଏବ ବ୍ରହ୍ମ ସ୍ୱଜାତୀୟ ବିଜାତୀୟ ବା ସ୍ୱଗତଭେଦଶୂନ୍ୟ । ଏହି ବ୍ରହ୍ମଙ୍କଠାରେ ବିଶ୍ୱ ବା ନାନାଭେଦରେ ପ୍ରତୀୟମାନ କୌଣସି ବସ୍ତୁର ସତ୍ତା ନାହିଁ । ଅତଏବ ବ୍ରହ୍ମବ୍ୟତିରିକ୍ତ ସକଳବସ୍ତୁ ବାଧାଯୁକ୍ତ । ବ୍ରହ୍ମ କେବଳ ସତ୍ୟ; ସେହି କେବଳ ସତ୍ୟ, ଜ୍ଞାନ ଓ ଅନନ୍ତସ୍ୱରୂପ ।

"ବିରୋଧୋ ନ ବିଦ୍ୟତେ ବ୍ରହ୍ମାଦ୍ୱିତୀୟମେବ ସତ୍ୟମ୍" ।

"ତ୍ରି ମହା: ଉ: ୪।୪"

ଅଦ୍ୱିତୀୟ ବ୍ରହ୍ମ କେବଳ ସତ୍ୟ, ଏ ବିଷୟରେ କୌଣସି ବିରୋଧ ନାହିଁ । ମହାଭାରତର

ଶାସ୍ତ୍ରସବରେ ଉକ୍ତ ହୋଇଅଛି—

"ସତ୍ୟନାମାବ୍ୟୟଂ ନତ୍ୟମବକାରୀ ତଥୈବ ଚ ।" ୧୩୨ । ୧୦

ଯେ ଅବ୍ୟୟ, ଅବକାଶ ଓ ନିତ୍ୟବସ୍ତୁ, ସେହି କେବଳ ସତ୍ୟ-ନାମରେ ଅଭିହିତ । ଏହି ସତ୍‌ଶବ୍ଦର ଅର୍ଥ ଆଚାର୍ଯ୍ୟ ଶଙ୍କର ପ୍ରତିପାଦନ କରିଅଛନ୍ତି—

ଯଦସ୍ତ୍ୟାଦୌ ଯଦସ୍ତ୍ୟନ୍ତେ ଯନ୍ମଧ୍ୟେ ଭାତ ତତ୍ ସ୍ୱୟମ୍ ।
ବ୍ରହ୍ମୈବେଦମିଦଂ ସତ୍ୟମିତି ବେଦାନ୍ତଡିଣ୍ଡିମଃ ॥ ୩୮ ।

ଯେ ଆଦ୍ୟ, ଅନ୍ତ ଓ ମଧ୍ୟରେ ସ୍ୱୟଂ ପ୍ରକାଶିତ, ସେହି ଏକ ବ୍ରହ୍ମ ସତ୍ୟସ୍ୱରୂପ, ଏହା ବେଦାନ୍ତରେ ଡିଣ୍ଡିମସ୍ୱରୂପ ଉଦ୍‌ଘୋଷିତ ।

"ପ୍ରତୀୟତେ ଯଦସ୍ତୀତି ତତ୍ ସତ୍ୟଂ ପରିଚକ୍ଷ୍ୟତେ"—

ଯାହା ତ୍ରିକାଳରେ ବିଦ୍ୟମାନ ; ସେହି ଜ୍ଞାନକୁ ସତ୍ୟ କୁହାଯାଏ । ଆହୁରି ମଧ୍ୟ, ପୁରାଣ-ମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭାଗବତରେ କୁହାଯାଇଛି—

"ସତ୍ୟଂ ପରଂ ଧୀମହି"—

ଅର୍ଥାତ୍ ସତ୍ୟସ୍ୱରୂପୀ ସେହି ପରଂବ୍ରହ୍ମଙ୍କୁ ଧ୍ୟାନ କରୁଛୁଁ । ଏହିପରି ସକଳ ବେଦବେଦାନ୍ତାଦି ଶାସ୍ତ୍ର "ସତ୍" ଶବ୍ଦଦ୍ୱାରା ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମାଙ୍କୁ କେବଳ ପ୍ରତିପାଦନ କରେ । ଅଥର୍ବବେଦୀୟ ମୁଣ୍ଡକଶ୍ରୁତି ମଧ୍ୟ କହେ—

ସତ୍ୟମେବ ଜୟତେ ନାନୃତଂ ସତ୍ୟେନ ପନ୍ଥା ବିତତୋ ଦେବଯାନଃ ।
ଯେନାକ୍ରମନ୍ତ୍ୟୃଷୟୋ ହ୍ୟାପ୍ତକାମା ଯତ୍ର ତତ୍ ସତ୍ୟସ୍ୟ ପରଂନିଧାନମ୍ ॥
ମୁଣ୍ଡ—୩।୧।୬ ॥

ସତ୍ୟର କେବଳ ଜୟ ଓ ଅସତ୍ୟର ଜୟ କଦାପି ସମ୍ଭବ ନୁହେଁ । ଦେବଯାନନାମକ ବିସ୍ତୃତ ପଥ ଏକମାତ୍ର ସତ୍ୟଦ୍ୱାରହିଁ ପ୍ରାପ୍ତ ହୁଏ । ଯେଉଁଠାରେ ସତ୍ୟର ପରମ ପୁରୁଷାର୍ଥ ବିଦ୍ୟମାନ ଅଛି; ବିଷୟ-ତୃଷ୍ଣାବିହୀନ ଋଷିମାନେ ସେହିଠାକୁ ଦେବଯାନଦ୍ୱାରା ଗମନ କରନ୍ତି । ସତ୍‌ଶବ୍ଦର ବ୍ୟାଖ୍ୟା ପରେ ବର୍ତ୍ତମାନ ମହିମା-ଶବ୍ଦର ବ୍ୟାଖ୍ୟା କରାଯାଉଛି । ମହିମା ଶବ୍ଦ ପରଂବ୍ରହ୍ମ ପରମାତ୍ମାଙ୍କର ଉଭୟବିଧ ଲକ୍ଷଣ ପ୍ରକାଶ କରେ, ଅର୍ଥାତ୍ ପରଂବ୍ରହ୍ମଙ୍କର ଯେଉଁ ତଟସ୍ଥ ଲକ୍ଷଣ—ସର୍ବକର୍ମା, ସର୍ବକାମ, ସର୍ବଗନ୍ଧ, ସର୍ବରସ, ସର୍ବାଧ୍ୟକ୍ଷ ସର୍ବଗୁଣାଧାରସ୍ୱରୂପ ଲକ୍ଷଣର ଆରମ୍ଭ ଓ ସମାପ୍ତି ସ୍ଥାନ, ସଦସତ୍‌ରୁ ଅତୀତ, ଦ୍ୱୈତାଦ୍ୱୈତ ବିବର୍ଜିତ, ଗୁଣାତୀତ ଓ

ନିର୍ଗୁଣ, ନିଷ୍କ୍ରିୟ, ନିର୍ଲେପ, ଶାନ୍ତ ଓ ସଚ୍ଚିଦାନନ୍ଦ—ଇତ୍ୟାଦି ଉଭୟବିଧ ଲକ୍ଷଣ ମହିମା ଶବ୍ଦଦ୍ୱାରା ପ୍ରତିପନ୍ନ ହୁଏ । ଯଥା—

"ଯଃ ପ୍ରାଣତୋ ନିମିଷତୋ ମହିତ୍ୱୈକ ଇଦ୍ରାଜା ଜଗତୋ ବଭୂବ ।
ଯ ଈଶେ ଅସ୍ୟ ଦ୍ୱିପଦଶ୍ଚତୁଷ୍ପଦଃ କସ୍ମୈ ଦେବାୟ ହବିଷା ବିଧେମ ।"

"ଯଜୁଃସଂ : ୨୩ । ୩ ।"

ନିଜର ମହିମାବଳରେ ଯେ ଚେତନ ଓ ଜଡ଼ ଜଗତର ରାଜା, ଯେ ଦ୍ୱିପଦ ଓ ଚତୁଷ୍ପଦ ପ୍ରାଣୀମାନଙ୍କୁ ଶାସନ କରୁଅଛନ୍ତି, ସେହି ମହିମାମୟ ଆନନ୍ଦସ୍ୱରୂପୀ ପରମାତ୍ମାଙ୍କୁ ଆମ୍ଭେମାନେ ମନରେ ଉପାସନା କରୁଅଛୁଁ ।

ପୁନଶ୍ଚ—

ଅଣୋରଣୀୟାନ୍ ମହତୋ ମହୀୟାନାତ୍ମାସ୍ୟ ଜନ୍ତୋର୍ନିହିତୋ ଗୁହାୟାମ୍ ।
ତମକ୍ରତୁଃ ପଶ୍ୟତି ବୀତଶୋକୋ ଧାତୁଃ ପ୍ରସାଦାନ୍ମହିମାନ ମାତ୍ମନଃ ।

କଠ-୧ । ୨ । ୨୦ ।

ପରମାତ୍ମା ସୂକ୍ଷ୍ମଠାରୁ ମଧ୍ୟ ସୂକ୍ଷ୍ମତମ ଏବଂ ଆକାଶାଦି ମହାନ୍ ପଦାର୍ଥଠାରୁ ମଧ୍ୟ ମହତ୍ତମ । ଏହି ପରମାତ୍ମା ସକଳ ପ୍ରାଣୀମାନଙ୍କର ହୃଦୟରୂପ ଗୁହାରେ ନିହିତ ଅଛନ୍ତି, ବୀତଶୋକ ଓ ନିଷ୍କାମ ବ୍ୟକ୍ତିମାନେ ସଂଯମଜନ୍ୟ ପ୍ରସନ୍ନତା ହେତୁରୁ କ୍ଷୟବୃଦ୍ଧିରହିତ ଯଥାର୍ଥ-ସ୍ୱରୂପ ପରମାତ୍ମାଙ୍କ ମହିମାକୁ ଉପଲବ୍‌ଧି କରି ଶୋକହୀନ ହୁଅନ୍ତି ।

ଉପର୍ଯ୍ୟୁକ୍ତ ଶ୍ରୁତିରୁ ପ୍ରତିପନ୍ନ ହୁଏ ଯେ, ପରଂବ୍ରହ୍ମ ପରମାତ୍ମା ସ୍ୱୟଂସିଦ୍ଧମହିମାଦ୍ୱାରା ବ୍ୟକ୍ତାବ୍ୟକ୍ତରୂପରେ ନିଖିଳ ଜଗତରେ ଅଭିବ୍ୟକ୍ତ ହୋଇ ଅଛନ୍ତି ।

"ସ୍ୱେ ମହିମ୍ନି ପ୍ରତିଷ୍ଠିତଃ, ଯଦି ବା ନ ମହିମ୍ନୀତି ॥"　　"ଛାନ୍ଦୋଗ୍ୟ"

ସେହି ଯେ ଭୂମା ପରମାତ୍ମା ସେ ନିଜମହିମାରେହିଁ ପ୍ରତିଷ୍ଠିତ, ସୁତରାଂ ଏହା ସ୍ୱରୂପଲକ୍ଷଣାକ୍ରାନ୍ତ ମହିମା, ସେ ଏହି ମହିମାଦ୍ୱାରହିଁ କେବଳ ଲକ୍ଷିତ ।

"ଯଦି ବା ନ ମହିମ୍ନି ଇତି"

ସୁତରାଂ ଏହା ତଟସ୍ଥ ଲକ୍ଷଣାକ୍ରାନ୍ତ ମହିମା; ଏହା ପରମାତ୍ମାଙ୍କର ସ୍ଥୂଳଜ୍ଞାପକମାତ୍ର, ଏତଦ୍ଦ୍ୱାରା ସେ ଲକ୍ଷିତ ନୁହଁନ୍ତି, ଏକମାତ୍ର ସତ୍ସ୍ୱରୂପ ମହିମାରେ ବ୍ରହ୍ମ ଲକ୍ଷିତ ହୁଅନ୍ତି ।

ଦକ୍ଷ୍ୟ ଓ ମହିମା ବେଦସୂତ୍ର ବ୍ୟାଖ୍ୟାପରେ ବର୍ତ୍ତମାନ ଧର୍ମ ଶବ୍ଦର ବ୍ୟାଖ୍ୟା କରାଯାଉଅଛି । ଧାରଣାର୍ଥକ ଧୃଧାତୁରୁ 'ଧର୍ମ'ଶବ୍ଦ ନିଷ୍ପନ୍ନ; ଅର୍ଥାତ୍ ଯେ ଜଗତ୍ ଓ ପ୍ରାଣୀମାନଙ୍କୁ ଧାରଣ ଓ ପୋଷଣ କରନ୍ତି, ତାହାର ନାମ ଧର୍ମ ।

**ଧାରଣାଦ୍ଧର୍ମ ମିତ୍ୟାହୁର୍ଧର୍ମ୍ମୋ ଧାରୟତେ ପ୍ରଜାଃ ।**
**ଯତ୍ ସ୍ୟାଦ୍ଧାରଣସଂଯୁକ୍ତଃ ସ ଧର୍ମ୍ମ ଇତ ନିଶ୍ଚୟଃ ॥**

''ମହାଭା:ଶା: ୧୦୬ । ୧୪'' କର୍ଣ୍ଣ:ପ: ୫୧ । ୫୬ ।

ଯେ ଧାରଣ କରେ ସେ ଧର୍ମ; ଧର୍ମକେବଳ ସକଳ ଲୋକ ଓ ସମୁଦାୟ ଜଗତ୍‌କୁ ଧାରଣ କରିଅଛି । ଅତଏବ ଧର୍ମଶବ୍ଦର ଧାରଣକର୍ତ୍ତୃତ୍ୱ ଅର୍ଥ ନିଶ୍ଚିତଭାବରେ ଜଣାଯାଏ । ଆହୁରି ମଧ୍ୟ—

**''ଧୃତେଶ୍ଚ ମହିମ୍ନୋଽସ୍ୟାସ୍ମିନ୍ନୁପଲବ୍ଧେଃ ।''** ''ବେ:ସୂ: ୧ । ୩ । ୧୬ ।''

ଧୃତ ବା ଧାରଣରୂପକ ମହିମାର ଉଲ୍ଲେଖ ମିଳେ । ପରମାତ୍ମାଙ୍କ ସମ୍ବନ୍ଧରେ ଏହି ଧାରଣ-ମହିମା ସର୍ବତ୍ର ଉପଲବ୍ଧ ହୁଏ । ଶ୍ରୁତିରେ ମଧ୍ୟ କୁହାଯାଇଛି—

**''ଅଥ ଯ ଆତ୍ମା ସ ସେତୁର୍ବିଧୃତଃ ଏଷାଂ ଲୋକାନାମସମ୍ଭେଦାୟ''**

(ଏହି ଆତ୍ମା ସମସ୍ତ ଲୋକର ପାର୍ଥକ୍ୟ-ନିର୍ଦ୍ଦେଶକ ଓ ବିଧାରକ—ସେତୁସ୍ୱରୂପ) । ପରମାତ୍ମା ଜଗତର ବିଧାରକ, ଏକଥା ଶ୍ରୁତିର ବହୁ ସ୍ଥାନରେ ଦେଖାଯାଏ—

**''ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ସୂର୍ଯ୍ୟାଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ''॥**

(ବୃହଦାରଣ୍ୟକ)—

ଅର୍ଥାତ୍, ହେ ଗାର୍ଗି ! ଏହି ଅକ୍ଷରବ୍ରହ୍ମଙ୍କ ଆଦେଶରେ ସୂର୍ଯ୍ୟ ଓ ଚନ୍ଦ୍ର ବିଧୃତ ହୋଇ ଅବସ୍ଥାନ କରିଛନ୍ତି । ଆହୁରି ମଧ୍ୟ ବୃହଦାରଣ୍ୟକରେ କୁହାଯାଇଛି—

**''ଏଷ ସର୍ବେଶ୍ୱର 'ଏଷ ଭୂତାଧିପତିରେଷ ଭୂତପାଳ ଏଷ ସେତୁର୍ବିଧରଣ ଏଷାଂ ଲୋକାନାମସମ୍ଭେଦାୟ ।''**

ଏହି ପରମାତ୍ମା ସକଳପ୍ରାଣୀଙ୍କର ଈଶ୍ୱର, ରକ୍ଷକ ଓ ପାଳକ । ପରମାତ୍ମା ସମସ୍ତଙ୍କର ସେତୁ-ସ୍ୱରୂପୀ ବିଧାରକ ମଧ୍ୟ । ଅଥର୍ବବେଦରେ କୁହାଯାଇଛି—

**ଯତ୍ର ଲୋକାଂଶ୍ଚ କୋଶାଂଶ୍ଚ ଆପୋବ୍ରହ୍ମ ଜନା ବିଦୁଃ ।**
**ଅସଚ୍ଚ ଯତ୍ର ସଚ୍ଚାନ୍ତଃ ସ୍କମ୍ଭଂ ତଂ ବ୍ରୂହି କତମଃ ସ୍ୱିଦେବ ସଃ ॥**

ଯଦ୍ଵ ତପଃ ପରାକ୍ରମ୍ୟ ବ୍ରତଂ ଧାରୟତ୍ୟୁତ୍ତରମ୍ ।
ଋତଞ୍ଚ ଯତ୍ର ଶ୍ରଦ୍ଧାଚ ଆପୋ ବ୍ରହ୍ମ ସମାହିତାଃ ॥
ସ୍କମ୍ଭଂ ତଂ ବ୍ରୂହି କତମଃ ସ୍ୱିଦେବ ସଃ ।
ଯସ୍ମିନ୍ ଭୂମିରନ୍ତରୀକ୍ଷଂ ଦ୍ୟୌର୍ଯସ୍ମିନ୍ନଧ୍ୟାହିତା ॥
ଯତ୍ରାଗ୍ନିଶ୍ଚନ୍ଦ୍ରମାଃ ସୂର୍ଯ୍ୟୋ ବାତାସ୍ତିଷ୍ଠନ୍ତ୍ୟର୍ପିତାଃ ।
ସ୍କମ୍ଭଂ ତଂ ବ୍ରୂହି କତମଃ ସ୍ୱିଦେବ ସଃ ॥

ଅଥର୍ବବେଦ ସଂ—୧୦ । ୭ । ୧୦-୧୨ ।

ଅର୍ଥ—ସେହି ଜଗତର ସ୍ତମ୍ଭସ୍ୱରୂପ, ଯାହାଙ୍କଠାରେ ସମୁଦାୟ ଲୋକ ବା ସମୁଦାୟ ବ୍ରହ୍ମାଣ୍ଡ, ସଲିଳ ଓ ବେଦ, ସତ୍ ଓ ଅସତ୍, ତପସ୍ୟାନନ୍ତର ବ୍ରତ, ବ୍ରତାନନ୍ତର ଅନୁଷ୍ଠାନ, ଶ୍ରଦ୍ଧା, ଭୂମି, ଅନ୍ତରୀକ୍ଷ, ସ୍ୱର୍ଗ, ଆକାଶ, ଅଗ୍ନି, ଇନ୍ଦ୍ର, ସୂର୍ଯ୍ୟ ଓ ବାୟୁ ଅବସ୍ଥିତ କରିଛନ୍ତି ।

ସ ପ୍ରାଚୀନାନ୍ ପର୍ବତାଁ ଦୃଂହ ଦୋଜସା ଧରାଚୀନମକୃଣୋ ଦପାମପଃ ।
ଅଧାରୟତ୍ ପୃଥିବୀଂ ବିଶ୍ୱଧାୟ ସମାସ୍ତଭନ୍ମାୟୟା ଦ୍ୟାମବସ୍ରସଃ ॥

ଋକ୍ ସଂ—୨·୧୭-୫ ।

ସେ ସକଳ ପର୍ବତ ନିଜ ବଳରେ ସ୍ଥାପନ କରିଅଛନ୍ତି ଓ ଜଳରାଶିକୁ ନିମ୍ନଗାମୀ କରିଅଛନ୍ତି । ସେହି କେବଳ ବିଶ୍ୱଧାରୀ ପୃଥିବୀକୁ ଧାରଣ କରି ରହିଅଛନ୍ତି; ସେ ସ୍ୱୀୟ କୌଶଳରେ ସୌର ଜଗତକୁ ପତନରୁ ରକ୍ଷା କରୁଅଛନ୍ତି ।

"ସ ବା ଅୟମାତ୍ମା ସର୍ବସ୍ୟ ବଶୀ ସର୍ବସ୍ୟେଶାନଃ ସର୍ବସ୍ୟାଧିପତିଃ ।
ସର୍ବମିଦଂ ପ୍ରଶାସ୍ତି ଯଦିଦଂ କିଞ୍ଚ, ସ ନ ସାଧୁନା କର୍ମଣା ଭୂୟାନ୍ନୋ
ଏବା ସାଧୁନା କନୀୟାନେଷ ଭୂତାଧିପତିରେଷ ଲୋକେଶ୍ୱର ଏଷ
ଲୋକପାଲଃ ସ ସେତୁର୍ବିଧରଣ ଏଷାଂ ଲୋକାନାମସଂଭେଦାୟ ॥

ଯଜୁ ସଂ—ବ୍ରପା-୧୪, ଅଧ୍ୟାୟ ୭, ବ୍ରା:-୨, ଯ-୨୪ ।

ସେହି ପରମାତ୍ମା ସମସ୍ତଙ୍କଠାରୁ ସ୍ୱତନ୍ତ୍ର । ସମସ୍ତଙ୍କର ନିୟନ୍ତା ଓ ଅଧିପତି, ଏହି ସମୁଦାୟ ବିଶ୍ୱ ସେ ଶାସନ କରୁଅଛନ୍ତି । ସେ ସାଧୁ ଓ ଅସାଧୁ କାର୍ଯ୍ୟଦ୍ୱାରା ଉନ୍ନତ ବା ଅବନତ ହୁଅନ୍ତି ନାହିଁ । ସେ ନିତ୍ୟ ଓ ଅବିକାଶ । ସେ ପ୍ରାଣୀମାନଙ୍କର ଅଧିପତି ଓ ସମୁଦାୟ ଲୋକର ଅଧୀଶ୍ୱର ଏବଂ ପ୍ରତିପାଳକ । ସେ ଲୋକଭଙ୍ଗ ନିବାରଣ ନିମନ୍ତେ ସେତୁସ୍ୱରୂପ ହୋଇ ଏହି ସମୁଦାୟ ବିଶ୍ୱ ଧାରଣ କରି ରହିଅଛନ୍ତି ।

"ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେପଦମ୍ ।
ସ ମୂଢ଼ମସ୍ୟ ପାଂସୁରେ ॥ ଋକ୍‌ ୧ । ୨୨ । ୧୭ ॥

ସର୍ବବ୍ୟାପକ ପରମାତ୍ମା ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ସକଳ ଜଗତକୁ ବିଶେଷକ୍ରମପୂର୍ବକ ରଚନା କରିଅଛନ୍ତି । ସ୍ଥୂଳ, ସୂକ୍ଷ୍ମ ଓ କାରଣସ୍ୱରୂପୀ ଓ ସୂକ୍ଷ୍ମରେଣୁପୂର୍ଣ୍ଣ ଆକାଶରେ ସୁବ୍ୟବସ୍ଥିତ ଜଗତକୁ ସେ ଧାରଣ କରିଅଛନ୍ତି ।

ଉପର୍ଯ୍ୟୁକ୍ତ ବେଦ ଓ ଉପନିଷଦ୍ ଆଦି ପ୍ରମାଣଦ୍ୱାରା ମହିମାଧର୍ମର ସ୍ୱରୂପ ନିରୂପିତ ହେଲା । ସୁତରାଂ ସର୍ବାଶ୍ରୟ ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମାଙ୍କୁ ଉପଲବ୍‌ଧି କରିବା ହିଁ ମହିମା-ଧର୍ମର ଏକମାତ୍ର ଉଦ୍ଦେଶ୍ୟ ।

ଆଉ ମଧ୍ୟ ଷଡ଼୍‌ବିଧ ପ୍ରମାଣ ✻ ଅନୁସାରେ ସେହି ଏକ ଉଦ୍ଦେଶ୍ୟ ହିଁ ସିଦ୍ଧ ହୁଏ । ଅତଏବ ମହିମା-ଧର୍ମାଚରଣ ବିବେକୀ ମୁମୁକ୍ଷୁ ବ୍ୟକ୍ତିଙ୍କର ଅବଶ୍ୟ କର୍ତ୍ତବ୍ୟ ।

---

✻ ଷଡ଼୍‌ ବିଧ ପ୍ରମାଣଂ—"ତତ୍ର ପ୍ରମାକରଣଂ ପ୍ରମାଣମ୍ ।" ବେ: ପରିଭାଷା—ପ୍ର ୧ । "ତାନି ଚ ପ୍ରମାଣାନି ଷଟ୍, ପ୍ରତ୍ୟକ୍ଷାନୁମାନୋପମାନାଗମାର୍ଥାପତ୍ତ୍ୟନୁପଲବ୍‌ଧିଭେଦାତ୍ ।" ତତ୍ର ପ୍ରତ୍ୟକ୍ଷପ୍ରମାୟାଃ କରଣଂ ପ୍ରତ୍ୟକ୍ଷପ୍ରମାଣମ୍ । ପ୍ରତ୍ୟକ୍ଷପ୍ରମାଚାତ୍ର ଚୈତନ୍ୟମେବ; "ଯତ୍ ସାକ୍ଷାଦପରୋକ୍ଷାଦ୍ ବ୍ରହ୍ମ" ଇତି ଶ୍ରୁତେଃ । ଅପରୋକ୍ଷାଦିତ୍ୟସ୍ୟାପରୋକ୍ଷମିତ୍ୟର୍ଥଃ । ପ୍ର ୧ ।

ଅନୁମିତିକରଣମନୁମାନମ୍ । ଅନୁମିତିଶ୍ଚ ବ୍ୟାପ୍ତିଜ୍ଞାନତ୍ୱେନ ବ୍ୟାପ୍ତିଜ୍ଞାନଜନ୍ୟା—୨ ତଥାହି—ବ୍ରହ୍ମଭିନ୍ନଂ ସର୍ବଂ ମିଥ୍ୟା, ବ୍ରହ୍ମଭିନ୍ନତ୍ୱାତ୍; ଯଦେବଂ ତଦେବଂ, ଯଥା ଶୁକ୍ତୌ ରୂପ୍ୟମ୍ । ନ ଚ ଦୃଷ୍ଟାନ୍ତାସିଦ୍ଧିଃ, ତସ୍ୟସାଧିତତ୍ୱାତ୍ । ୨ ।
ତତ୍ର ସାଦୃଶ୍ୟପ୍ରମାକରଣମୁପମାନମ୍ । ୩ ।

ତଥା ଆଗମଃ—ଯସ୍ୟ ବାକ୍ୟସ୍ୟ ତାତ୍ପର୍ଯ୍ୟବିଷୟୀଭୂତସଂସର୍ଗୋ ମାନାନ୍ତରେଣ ନ ବାଧ୍ୟତେ ତଦ୍‌ବାକ୍ୟଂ ପ୍ରମାଣମ୍ । ବାକ୍ୟଜନ୍ୟଜ୍ଞାନେଚ ଆକାଙ୍‌କ୍ଷା ଯୋଗ୍ୟତାଽଽସତ୍ତୟସ୍ତାତ୍ପର୍ଯ୍ୟଜ୍ଞାନଂ ଚେତି ଚତ୍ୱାରି କାରଣାନି । ପ୍ର. ୪ ।
ଅଥାପତ୍ତିଃ—ତତ୍ରୋପପାଦ୍ୟଜ୍ଞାନେନୋପପାଦକକଳ୍ପନମର୍ଥାପତ୍ତିଃ ।
ତତ୍ରୋପପାଦ୍ୟଜ୍ଞାନଂ କରଣଂ ଉପପାଦକଜ୍ଞାନଂ ଫଳମ୍ ॥ ପ୍ର. ୫ ॥
ଜ୍ଞାନକରଣାଜନ୍ୟାଭାବାନୁଭବାସାଧାରଣକାରଣମନୁପଲବ୍‌ଧିରୂପଂ ପ୍ରମାଣମ୍ ॥ ପ୍ର: ୬ । ୨ ॥
"ଏବଂ ନିରୂପିତାନାଂ ପ୍ରମାଣାନାଂ ପ୍ରାମାଣ୍ୟଂ ଦ୍ୱିବିଧମ—ବ୍ୟାବହାରିକତ୍ୱାବେଦକତ୍ୱଂ ପରମାର୍ଥିକତତ୍ତ୍ୱାବେଦକତ୍ୱମ୍ ଚେତି ।" ॥ ପ୍ର. ୭ । ୧ ॥
ତଦୁକ୍ତଂ—"ଆନନ୍ଦୋ ବିଷୟାନୁଭବୋ ନିତ୍ୟତ୍ୱଂ ଚେତି ସନ୍ତି ଧର୍ମାଃ ।
ଅପୃଥକ୍‌ତ୍ୱେଽପି ଚୈତନ୍ୟାତ୍ ପୃଥଗିବାବଭାସନ୍ତେ ଇତି ।" ବେ: ପ: ପ୍ର: ୭-୨ ॥

ପୁନଶ୍ଚ—ଧର୍ମର ଲକ୍ଷଣ ସମ୍ବନ୍ଧରେ ଦର୍ଶନାଦି ଶାସ୍ତ୍ରର ଯୁକ୍ତିସମୂହ—ଧର୍ମଗ୍ରନ୍ଥ ସମ୍ବନ୍ଧରେ ଜୈମିନିଦର୍ଶନୋକ୍ତ ପ୍ରଥମ ସୂତ୍ର—

**ଅଥାତୋ ଧର୍ମ ଜିଜ୍ଞାସା ।**　　॥ ମୀମାଂସା ଦ: ସୂ ୧ ॥

ଆର୍ଯ୍ୟଙ୍କଦ୍ୱାରା ଯେଉଁ ବୈଦିକ ଯାଗାଦି କରାଯାଏ, ଜୈମିନିଦର୍ଶନରେ ତାହାର ନାମ ଧର୍ମ, ଅର୍ଥାତ୍ ଆର୍ଯ୍ୟଙ୍କର ଉପଦେଶ ଅନୁସାରେ ଅନୁଷ୍ଠିତ ଯଜ୍ଞର ନାମ କେବଳ ଧର୍ମ ।

**"ଯଏବ ଶ୍ରେୟସ୍କରଃ ସ ଏବ ଧର୍ମ ଶବ୍ଦେନ ଉଚ୍ୟତେ ।"**

ମୀମାଂସା ଦ: ୧-୨ ସୂତ୍ରର ଭାଷ୍ୟ ।

ଯାହା ଅନୁଷ୍ଠାନ କଲେ ମଙ୍ଗଳ ହୁଏ, ତାହା କେବଳ ଧର୍ମ । ଧର୍ମ ଶବ୍ଦର ଏହିପରି ସଂକ୍ଷିପ୍ତ ଓ ସର୍ବବ୍ୟାପକ ଅର୍ଥନିର୍ଣ୍ଣୟ କ୍ୱଚିତ୍ ଦେଖାଯାଏ । ଉଲ୍ଲିଖିତ ଧର୍ମତତ୍ତ୍ୱ ଯେପରି ମୁଖ୍ୟଭାବେ ବର୍ଣ୍ଣିତ, ମହର୍ଷି ଜୈମିନି ସେପରି ବର୍ଣ୍ଣନା କରିନାହାନ୍ତି । ଏହିହେତୁରୁ ଆର୍ଯ୍ୟଭି-ମତକୁ ଲକ୍ଷ୍ୟ କରି ମହର୍ଷି କଣାଦ ଲେଖିଅଛନ୍ତି—

**ଅଥାତୋ ଧର୍ମ ବ୍ୟାଖ୍ୟାସ୍ୟାମଃ । ଯତୋଽଭ୍ୟୁଦୟନିଃଶ୍ରେୟସ—ସିଦ୍ଧିଃ ସ ଧର୍ମ । ତଦ୍‌ବଚନାଦାମ୍ନାୟସ୍ୟ ପ୍ରାମାଣ୍ୟମ୍ । ଧର୍ମବିଶେଷ ପ୍ରସୂତାଦ୍ ଦ୍ରବ୍ୟଗୁଣକର୍ମସାମାନ୍ୟବିଶେଷସମବାୟାନାଂ ପଦାର୍ଥାନାଂ ସାଧର୍ମ୍ୟବୈଧର୍ମ୍ୟାଭ୍ୟାଂ ତତ୍ତ୍ୱଜ୍ଞାନାତ୍ ନିଃଶ୍ରେୟସମ୍ ।**

॥ ବୈଶେଷିକ ଦର୍ଶନ— ୧-୧-୪ ॥

**ଅର୍ଥ**—ସମବେତ ଶିଷ୍ୟମାନଙ୍କର ମଙ୍ଗଳବିଧାନସକାଶେ ଗୁରୁ କଣାଦ ମୁନି କହୁଅଛନ୍ତି— ଆମ୍ଭେ ଧର୍ମ (ଜ୍ଞାନ ଓ କର୍ମ) ବ୍ୟାଖ୍ୟା କରିବୁ (ତୁମ୍ଭେମାନେ ମନୋଯୋଗପୂର୍ବକ ଶ୍ରବଣ କର) । ଯହିଁରେ ଅଭ୍ୟୁଦୟ, ଅର୍ଥାତ୍ ଇହ ଓ ପରତ୍ର ସୁଖଲାଭ ହୁଏ ଏବଂ ଯହିଁରେ ନିଃଶ୍ରେୟସ, ଅର୍ଥାତ୍ ଦୁଃଖର ଏକାନ୍ତ ନିବୃତ୍ତିହେତୁରୁ ମୋକ୍ଷପ୍ରାପ୍ତ ହୁଏ, ତାହା କେବଳ ଧର୍ମ । * ଧର୍ମର ଉକ୍ତ ଉଭୟବିଧରୂପ ଜ୍ଞାନ ଓ କର୍ମ ବେଦୋକ୍ତ ଈଶ୍ୱରବାକ୍ୟ, ଅତଏବ

* ଧର୍ମାଧର୍ମାବିହ ପ୍ରୋକ୍ତୌ ଶବ୍ଦାବେତୌ କ୍ରିୟାତ୍ମକୌ । କୁଶଳାକୁଶଳଂ କର୍ମ ଧର୍ମାଧର୍ମାବିତି ସ୍ମୃତୌ ॥ ଧାରଣାର୍ଥେ ଧରଗିତ୍ୟତୋ ଧର୍ମଃ ପ୍ରକୀର୍ତ୍ତିତଃ । ଅଧାରଣେହ ମହତ୍ତ୍ୱେଚ ଅଧର୍ମ ଇତି ଚୋଚ୍ୟତେ" ॥ ବାୟୁପୁରାଣ ୫୯।୨୭-୨୮ । ଧର୍ମ ଓ ଅଧର୍ମ ଏହି ଶବ୍ଦଦ୍ୱୟ କ୍ରିୟାତ୍ମକ । କୁଶଳ ଓ ଅକୁଶଳ କର୍ମହିଁ ଧର୍ମାଧର୍ମପଦବାଚ୍ୟ । ଧାରଣାର୍ଥକ ଧୃଧାତୁରୁ ଧର୍ମ ଶବ୍ଦ ନିଷ୍ପନ୍ନ । ଅଧାରଣ ଓ ଅମହତ୍ତ୍ୱ ଅର୍ଥରେ ଅଧର୍ମ ଶବ୍ଦ ପ୍ରଚଳିତ ।

ସେହି କେବଳ ପ୍ରମାଣ । ବେଦୋକ୍ତ ଧର୍ମବିଶେଷର ଅନୁଷ୍ଠାନରୁ ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ ବିଶେଷ ଓ ସମବାୟ—ଏହି ଷଡ଼୍‌ବିଧ ଭାବପଦାର୍ଥର ସାଧର୍ମ୍ୟ ଓ ବୈଧର୍ମ୍ୟ-ଜ୍ଞାନଜନିତ ତତ୍ତ୍ୱଜ୍ଞାନ ଉଦିତ ହେଲେ ଏବଂ ତାହାର ବିକାଶରେ ନିଃଶ୍ରେୟସ ବା ଦୁଃଖର ଏକାନ୍ତ ନିବୃତ୍ତି-ହେତୁରୁ ଜୀବ ମୁକ୍ତିଲାଭ କରିପାରେ । ଜୀବର ଆତ୍ମପରିଚୟ ହୁଏ ଏବଂ ଜୀବଗତ କାରଣ ପରମାତ୍ମାଙ୍କୁ ଅବଗତ ହୋଇ ତାଙ୍କର ଦର୍ଶନଲାଭ କରେ ଓ ବ୍ରହ୍ମଜ୍ଞାନର ଅଧିକାରୀ ହୁଏ ।

ପୁନଶ୍ଚ—

**ଚୋଦନାଲକ୍ଷଣାର୍ଥଧର୍ମଃ ।** ॥ ମୀମାଂସା ଦ: ସୂ ୧-୧-୧ ॥

**ଚୋଦନେତି କ୍ରିୟାୟାଂ ପ୍ରବର୍ତ୍ତକଂ ବଚନଂ ତସ୍ୟ ଜ୍ଞାନ-ମୁପଦେଶଃ ॥** ଶାଙ୍କରଭାଷ୍ୟ (ବେ: ଅ ୧ । ସୂ ୪)

କ୍ରିୟାପ୍ରବର୍ତ୍ତକ ବାକ୍ୟ, ଅର୍ଥାତ୍ କ୍ରିୟା ବା ଧର୍ମରେ ଜ୍ଞାନ ଜନ୍ମାଇବା ଉପଦେଶର ନାମ ଚୋଦନ । ଅର୍ଥାତ୍ ଧର୍ମଜ୍ଞାପକ ବିଧିବାକ୍ୟରୂପକ ଅପୌରୁଷେୟ ଉପଦେଶ ; ଅନ୍ୟ ସକଳ ବାକ୍ୟ କେବଳ ଅନୁବାଦ । ଏ ସମ୍ବନ୍ଧରେ ବ୍ରହ୍ମାଙ୍କ ଉକ୍ତି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—

**ଶ୍ରଦ୍ଧାଲକ୍ଷଣମିତ୍ୟେବଂ ଧର୍ମଂ ଧୀରାଃ ପ୍ରଚକ୍ଷତେ ।**
**ଇତ୍ୟେବଂ ଦେବଯବା ବଃ ପନ୍ଥାନଃ ପରିକୀର୍ତ୍ତିତାଃ ॥**
**ସଦ୍‌ଭିରଧ୍ୟାସିତା ଧୀରୈଃ କର୍ମଭିର୍ଧର୍ମସେତବଃ ॥**
**ଏତେଷାଂ ପୃଥଗଧ୍ୟାସ୍ତେ ଯୋ ଧର୍ମଂ ଶଂସିତବ୍ରତଃ ।**
**କାଳାତ୍ ପଶ୍ୟତି ଭୂତାନାଂ ସଦୈବ ପ୍ରଭବାପ୍ୟୟୌ ॥**

ମହାଅଶ୍ୱମେଧିକ ପର୍ବ—ଅନୁଗୀତା—୩୬ । ୪୪-୪୬ ।

ପଣ୍ଡିତ ଲୋକମାନେ ଶ୍ରଦ୍ଧା ବା ଆସ୍ତିକ୍ୟ ବୁଦ୍ଧିକୁ କେବଳ ଧର୍ମର ମୁଖ୍ୟ ଲକ୍ଷଣ ବୋଲି କହିଅଛନ୍ତି ଓ ଏହା ତୁମ୍ଭମାନଙ୍କ ନିମନ୍ତେ ଦେବଯାନ ମାର୍ଗ ପ୍ରାପ୍ତିର ପଥରୂପେ ବର୍ଣ୍ଣିତ ହୋଇଅଛି । ସାଧୁ ଲୋକମାନେ ନିଜର ସଦାଚାରକର୍ମଦ୍ୱାରା ଧର୍ମର ସେତୁସ୍ୱରୂପ ଏହି ପଥରେ ଗମନ କରନ୍ତି । ଶଂସିତବ୍ରତ ମନୁଷ୍ୟ ଏହି ସକଳ ମଧ୍ୟରୁ କେବଳ ଏକମାତ୍ର ଧର୍ମକୁ ପୃଥକ୍‌ରୂପେ ଅବଲମ୍ବନ କରନ୍ତି ଏବଂ କାଳକ୍ରମେ ପ୍ରାଣୀମାନଙ୍କର ଉତ୍ପତ୍ତି ଓ ବିନାଶ ଦର୍ଶନ କରନ୍ତି । ପୁଣି—

**ତାଦୃଶୋଽୟମନୁପ୍ରଶ୍ନୋ ଯତ୍ର ଧର୍ମଃ ସୁଦୁର୍ଲଭଃ ।**
**ଦୁଷ୍କରଃ ପ୍ରତିସଂଖ୍ୟାତୁଂ ତତ୍ କେନାତ୍ର ବ୍ୟବସ୍ୟତି ॥**

ପ୍ରଭବାର୍ଥାୟ ଭୂତାନାଂ ଧର୍ମପ୍ରବଚନଂ କୃତମ୍ ।
ଯଃ ସ୍ୟାତ୍ ପ୍ରଭବସଂଯୁକ୍ତଃ ସ ଧର୍ମ ଇତ ନିଶ୍ଚୟଃ" ॥

ମହା: ଶା: ୧୦୬।୧।୧୦

ଖ୍ରିଷ୍ଟ କହୁଅଛନ୍ତି—ହେ ଯୁଧିଷ୍ଠିର ! ତୁମ୍ଭର ପ୍ରଶ୍ନର ସମାଧାନ ଅତି ଦୁରୂହ । କାରଣ, ଧର୍ମର ତାତ୍ପର୍ଯ୍ୟ ଦୁର୍ଜ୍ଞେୟ ଓ ତାହା କହିବା ମଧ୍ୟ ଦୁଷ୍କର । ଅତଏବ ଏ ବିଷୟରେ ସାଧାରଣ ଲୋକ କିପରି ନିଶ୍ଚୟ କରି କହିପାରିବେ ? ଋଷିମାନେ ମନୁଷ୍ୟସମାଜର ଉନ୍ନତି-ବିଧାନସକାଶେ ଧର୍ମଶାସ୍ତ୍ର ପ୍ରଣୟନ କରିଅଛନ୍ତି । ଅତଏବ ଯାହା ମନୁଷ୍ୟମାନଙ୍କର ଅଭ୍ୟୁଦୟର ପନ୍ଥା, ସେହି କେବଳ ଧର୍ମ । ଏହିପରି ଧର୍ମର ଲକ୍ଷଣ ଋଷିମାନେ ନିରୂପଣ କରିଅଛନ୍ତି ।

୦ ୦—ମହିମାଧର୍ମର ଆଶ୍ରୟନିମନ୍ତେ ଶୀଘ୍ର ତତ୍ପର ହୁଅ ।

ସେହି ଏକ ସତ୍ୟସ୍ୱରୂପ ମହିମା ସକଳ ଜଗତକୁ ଧାରଣ କରିଅଛନ୍ତି । ସେହି ମହିମାଧର୍ମ ଅବଲମ୍ବନଦ୍ୱାରା ପରମାତ୍ମାଙ୍କ ସତ୍ତା ସ୍ୱହୃଦୟରେ ଅବଲୋକନ କରି ପୂର୍ଣ୍ଣ ସତ୍ୟ-ବୋଧନିମନ୍ତେ ପ୍ରବୃତ୍ତ ହୁଅ । ଆତ୍ମପ୍ରତ୍ୟୟସାର ସଂସ୍ଥାନରେ ସେହି ପରମାତ୍ମା ଅରୂପ ଅନିର୍ଦ୍ଦେଶ୍ୟ ଓ ନିଷ୍କ୍ରିୟ ହେଲେ ମଧ୍ୟ ସେ ସକଳ ନାମରୂପର ନିୟନ୍ତା; ସେ ଅପ୍ରାଣ ହେଲେ ମଧ୍ୟ ସକଳ ପ୍ରାଣର ପ୍ରାଣସ୍ୱରୂପ ଓ ସ୍ୱୟଂପ୍ରକାଶଦ୍ୱାରା ସର୍ବପ୍ରକାଶକ ; ସେ ନିଜର ନିର୍ଲିପ୍ତଭାବ ଓ ସ୍ୱସଂବେଦ୍ୟ ସ୍ୱମହିମାଦ୍ୱାରା ସର୍ବପ୍ରକାଶକ ହୋଇ ସର୍ବଜ୍ଞ ଓ ସ୍ୱୟଂବୋଧ-ସ୍ୱରୂପରେ ନିତ୍ୟ ପରଂଧାମରେ ବିଦ୍ୟମାନ ଅଛନ୍ତି । ଏହିହେତୁରୁ ସେ ସତ୍ୟର ସତ୍ୟ ଓ ଚରମ ସତ୍ୟ । ସେହି ପରମ ସତ୍ୟପଦର ଲାଭ ନିମନ୍ତେ ଉଦ୍‌ବୁଦ୍ଧ ହୁଅ ।

ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।
କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା
ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ॥     କଠଉ :୧ । ୩ । ୧୪ ॥

ଜୀବଗଣ ! ମିଥ୍ୟା ବିଷୟ-ଚିନ୍ତା ତ୍ୟାଗ କରି ଆତ୍ମତତ୍ତ୍ୱ ଲାଭନିମନ୍ତେ ପ୍ରସ୍ତୁତ ହୁଅ; ଅଜ୍ଞାନ-ରୂପ ମୋହ-ନିଦ୍ରାରେ ନିଦ୍ରିତ ନ ହୋଇ ଜାଗ୍ରତ ହୁଅ; ଶ୍ରେଷ୍ଠ ଆତ୍ମତତ୍ତ୍ୱଜ୍ଞ ଆଚାର୍ଯ୍ୟଙ୍କ ଉପଦେଶ ଅନୁସାରେ ପରମାତ୍ମାଙ୍କୁ ଲାଭ କରିବାନିମନ୍ତେ ଉପାୟ ଚିନ୍ତା କର । ପଣ୍ଡିତମାନେ କହିଅଛନ୍ତି—ସେହି ଆତ୍ମଜ୍ଞାନରୂପକ ପଥ ତୀକ୍ଷ୍ଣ କ୍ଷୁରଧାରା ତୁଲ୍ୟ ଦୁର୍ଗମ ଓ ଦୁରତିକ୍ରମଣୀୟ । ସେହି ଦୁର୍ଗମ ପଥରେ ପଥିକହେବା ନିମନ୍ତେ ମହିମାଧର୍ମାଶ୍ରିତ ବିଶିଷ୍ଟାଚାର ଧର୍ମଯୋଗ ଉଦ୍ଦିଷ୍ଟ ହୋଇଅଛି । ଯେପରି ଆକାଶରେ ପକ୍ଷୀ ଗୋଟିଏ ପକ୍ଷରେ

ଉଡ଼ିବା ଅସମ୍ଭବ; କିନ୍ତୁ ଦୁଇ ପକ୍ଷରେ ସହଜରେ ଉଡ଼ିପାରେ, ସେହିପରି ମୁମୁକ୍ଷୁ ବ୍ୟକ୍ତି କେବଳ ଜ୍ଞାନ-ଭକ୍ତିଯୋଗ ଆଶ୍ରୟରେ ପରମଗତି ପ୍ରାପ୍ତ ହୋଇ ପାରେ ନାହିଁ ; କିନ୍ତୁ ଜ୍ଞାନ ଯୋଗର ସାଧାରଣ ସାହାଯ୍ୟନେଇ ଉଭୟପକ୍ଷ ସ୍ୱରୂପ ଭକ୍ତିଯୋଗ ଓ ସତ୍ୟ-ଧର୍ମାଶ୍ରିତ-ଶାନ୍ତିଯୋଗ ଅନୁସରଣ କରି ସାଧକ ବ୍ରହ୍ମନିଷ୍ଠ ହେଲେ ପରମଆନନ୍ଦ ଭୋଗ କରିପାରେ ।

ଆହୁରି ମଧ୍ୟ—ଯେପରି ଭୂମିରେ ବୀଜରୋପଣ କରି ଜଳସେଚନ କଲେ ସେହି ବୀଜରୁ ବୃକ୍ଷ ଏବଂ ବୃକ୍ଷରୁ ମଧ୍ୟ ପୁଷ୍ପ ଫଳ ଉତ୍ପନ୍ନ ହୁଏ; କିନ୍ତୁ ଭୂମିରେ ଜଳସେଚନ ବିନା ବୃକ୍ଷ ଓ ଫଳୋତ୍ପାଦନ ଦୃଷ୍ଟ ହେଲେ ବୃକ୍ଷର ନିମ୍ନଦେଶରେ ଜଳସଂସର୍ଗ ଅନୁମିତ ହୁଏ । ଜଳ-ସମ୍ବନ୍ଧଶୂନ୍ୟ ହେଲେ ବୀଜରୁ ପ୍ରଥମେ ଅଙ୍କୁରୋଦ୍‌ଗମ ଅସମ୍ଭବ । ଫଳ ବା ପୁଷ୍ପ ହେବାର ତ ଦୂରର କଥା; ସେହିପରି ସତ୍ୟଧର୍ମାଶ୍ରିତ-ଶାନ୍ତିଯୋଗ ଓ ଜ୍ଞାନଭକ୍ତିର ଅଭାବରେ ପୂର୍ଣ୍ଣ ସତ୍ୟ ପରମପଦଲାଭ ହୋଇପାରେନାହିଁ । ଏହିହେତୁରୁ ସତ୍ୟଧର୍ମ-ବିଶିଷ୍ଟାଶ୍ରିତଶାନ୍ତି-ଯୋଗ ଜ୍ଞାନଭକ୍ତିଯୋଗସାଧନର ପ୍ରଧାନ ଅଙ୍ଗ ଅଟେ ଏବଂ ଜ୍ଞାନଭକ୍ତିଯୋଗ ମଧ୍ୟ ମୋକ୍ଷର କାରଣ ବୋଲି ବୁଝିବାକୁ ହେବ । ଜୀବର ଚିରବାଞ୍ଛିତ ମୁକ୍ତିରୂପ ଅଭୟ ପରମାନନ୍ଦଧାମ-ପ୍ରାପ୍ତି କେବଳ ମହିମାଧର୍ମାଶ୍ରିତ ବିଶିଷ୍ଟାଶ୍ରିତ ଶାନ୍ତିଯୋଗ ଅବଲମ୍ବନରେ ହେବା ସୁନିଶ୍ଚିତ । ସୁତରାଂ ବିବେକୀ ମାନବ ଏହି କାରଣ ପୂର୍ଣ୍ଣମାତ୍ରାରେ ଜାଣି କଥିତ ଶାନ୍ତିଯୋଗ ନିୟମପୂର୍ବକ ଆଚରଣ କରି ବ୍ରହ୍ମଜ୍ଞାନ ଭକ୍ତିଯୋଗକୁ ସର୍ବଦା ଦୃଢ଼ବିଶ୍ୱାସସହକାରେ ସାଧନ କରିବ ।

## ୦—ପରମଗୁରୁ ।

ମହିମାଧର୍ମର ପ୍ରବର୍ତ୍ତକ ଗୁରୁ ମହିମାସ୍ୱାମୀଙ୍କର ଆଦେଶ ଏହି କି—ଏହି ମହିମାଧର୍ମ-ସମାଜର ପ୍ରକୃତ ଗୁରୁ ସେହି ଏକ ଅଦ୍ୱିତୀୟ ପ୍ରଭୁ ପରମାତ୍ମା ; କିନ୍ତୁ ଉପଦେଶ ଦେବାନିମନ୍ତେ ସନ୍ନ୍ୟାସୀ ସିଦ୍ଧ ସାଧୁମାନେ ଗୁରୁରୂପରେ କଳ୍ପିତ, ଏହି ସାଧୁମାନେ ଦୃଢ଼ବୈରାଗ୍ୟସମ୍ପନ୍ନ ଓ ବ୍ରହ୍ମନିଷ୍ଠ ହେବା ଆବଶ୍ୟକ । ସେହି ସନ୍ନ୍ୟାସୀମାନଙ୍କଠାରୁ ମହିମା ଧର୍ମର ଦୀକ୍ଷାନୁଷ୍ଠାନ ଗ୍ରହଣ କରାଯାଏ । ଏହି ସିଦ୍ଧ ସାଧୁମାନେ କେବଳ ଧର୍ମୋପଦେଷ୍ଟା-ରୂପରେ ଗୁରୁଭାବରେ ମାନନୀୟ ଅଟନ୍ତି । ବିଷୟୀ ଗୃହସ୍ଥ ସ୍ୱଧର୍ମନିଷ୍ଠାଚ୍ୟୁତ କପଟାଶ୍ରିତ ସନ୍ନ୍ୟାସୀମାନଙ୍କୁ ଗୁରୁ ବା ଉପଦେଶକରୂପରେ ଗ୍ରହଣ କରିବା ବା ସମ୍ମାନ କରିବା ନିଷେଧ ଅଟେ । ପ୍ରକୃତ ଗୁରୁଙ୍କ ଧର୍ମ ସମ୍ବନ୍ଧରେ ଯୋଗୀରାଜ ମହର୍ଷି ପତଞ୍ଜଳି ଈଶ୍ୱରଭକ୍ତି ଓ ସମାଧିସିଦ୍ଧି ଉଦ୍ଦେଶ୍ୟରେ ଉପଦେଶ ଦେଇଅଛନ୍ତି—

"ସ ଏଷ ପୂର୍ବେଷାମପି ଗୁରୁଃ କାଳେନାନବଚ୍ଛେଦାତ୍ ।"

ପାତଞ୍ଜଳଯୋଗ ଦ: ପା: ୧-ସୂ ୭ ॥

ସେହି ପରମାତ୍ମା କେବଳ ଅଖଣ୍ଡକାଳରୁ ବ୍ରହ୍ମା ମନୁ ଆଦି ପୂର୍ବ ଆଚାର୍ଯ୍ୟମାନଙ୍କର ମଧ୍ୟ ଗୁରୁରୂପରେ ଗୃହୀତ ହୋଇଅଛନ୍ତି । ଏହାର ତାତ୍ପର୍ଯ୍ୟ ଏହି ଯେ, ପରମପଦ ସେହି ପରମାତ୍ମାଙ୍କୁ କେବଳ ପରମଗୁରୁରୂପରେ ମାନ୍ୟତା ଓ ଆରାଧନା କରି ଏବଂ ସେହି ପରମ ଗୁରୁଙ୍କ କୃପା ଅନୁସରଣ କରି ସତ୍‌କର୍ମ ଅନୁଷ୍ଠାନ କରିବା ବିଧେୟ । ଏହି ଗୁରୁଙ୍କ ବିଷୟରେ ବ୍ରହ୍ମା ନାରାୟଣଙ୍କୁ ପ୍ରଶ୍ନ କରିଥିଲେ—

"ଗୁରୁଃ କ ଇତି । ଗୁରୁଃ ସାକ୍ଷାତ୍ ଆଦିନାରାୟଣଃ ପୁରୁଷଃ ।।"

ତ୍ରିପାଦମହାନାରାୟଣ ଉ: ଅ ୮ ।।

ଅର୍ଥାତ୍ ଶିଷ୍ୟ ପ୍ରଶ୍ନ କରନ୍ତି—"ଗୁରୁ କିଏ ? ସାକ୍ଷାତ୍ ଆଦିନାରାୟଣ ପୁରୁଷ କେବଳ ଗୁରୁ । * ଏ ସମ୍ବନ୍ଧରେ ଶିବ ଶୁକଦେବଙ୍କୁ ଧ୍ୟାନଯୋଗ ଉପଦେଶ ସମ୍ବନ୍ଧରେ ଏକ ପ୍ରଭୁ ପରଂବ୍ରହ୍ମଙ୍କୁ ସଦ୍‌ଗୁରୁରୂପରେ ସ୍ମରଣ କରି ନମସ୍କାର କରିବା ନିମନ୍ତେ ଉପଦେଶ ଦେଇଅଛନ୍ତି—

ନିତ୍ୟାନନ୍ଦଂ ପରମସୁଖଦଂ କେବଳଂ ଜ୍ଞାନମୂର୍ତ୍ତିଂ
ବିଶ୍ୱାତୀତଂ ଗଗନ ସଦୃଶଂ ତତ୍ତ୍ୱମସ୍ୟାଦିଲକ୍ଷ୍ୟମ୍ ।
ଏକଂ ନିତ୍ୟଂ ବିମଳମଚଳଂ ସର୍ବଧୀ-ସାକ୍ଷୀଭୂତଂ
ଭାବାତୀତଂ ତ୍ରିଗୁଣରହିତଂ ସଦ୍‌ଗୁରୁଂ ତଂ ନମାମି ।

।। ଶୁକରହସ୍ୟ ଉ: କ ୧୮ ।।

ଅର୍ଥାତ୍ ଜଗତର କାରଣସ୍ୱରୂପ ସେହି ସଦ୍‌ଗୁରୁଙ୍କୁ ନମସ୍କାର କରୁଅଛି, ସେହି ସଦ୍‌ଗୁରୁ ସର୍ବଦା ଆନନ୍ଦସ୍ୱରୂପ ଚିରସ୍ଥାୟୀ ଓ ସେ ଭକ୍ତକୁ ନିର୍ବିଷୟ ସୁଖ ପ୍ରଦାନ କରନ୍ତି । ସେ ସର୍ବଦା ଏକଭାବାପନ୍ନ, ଜ୍ଞାନସ୍ୱରୂପୀ, ସକଳଦୃଶ୍ୟ ପଦାର୍ଥରୁ ଅତୀତ, ଆକାଶତୁଲ୍ୟ ନିର୍ଲିପ୍ତ ଓ ସର୍ବବ୍ୟାପୀ, ତତ୍ତ୍ୱମସି-ଆଦି ବାକ୍ୟ ଯାହାଙ୍କୁ ଲକ୍ଷ୍ୟ କରେ ସେ

* ନିତ୍ୟ ପରମ ଗୁରୁଙ୍କ ସମ୍ବନ୍ଧରେ ଗୁରୁଗୀତାରେ ମଧ୍ୟ ଉକ୍ତ ଅଛି—
ନିତ୍ୟଂ ଶୁଦ୍ଧଂ ନିରାଭାସଂ ନିରାକାରଂ ନିରଞ୍ଜନମ୍ ।
ନିତ୍ୟବୋଧଂ ଚିଦାନନ୍ଦଂ ଗୁରୁବ୍ରହ୍ମ ନମାମ୍ୟହମ୍ ।। ୪୮ ।।
ଶ୍ରୀମତ୍ ପରଂ ବ୍ରହ୍ମଗୁରୁଂ ବଦାମି, ଶ୍ରୀମତ୍ ପରଂବ୍ରହ୍ମଗୁରୁଂ ଭଜାମି ।
ଶ୍ରୀମତ୍ ପରଂବ୍ରହ୍ମଗୁରୁଂ ସ୍ମରାମି ।।
ଶ୍ରୀମତ୍ ପରଂବ୍ରହ୍ମଗୁରୁଂ ନମାମି ।। ୫୦ ।।
ଚୈତନ୍ୟଂ ଶାଶ୍ୱତଂ ଶାନ୍ତଂ ବ୍ୟୋମାତୀତଂ ନିରଞ୍ଜନମ୍ ।
ବିନ୍ଦୁନାଦକଳାତୀତଂ ତସ୍ମୈ ଶ୍ରୀ ଗୁରୁବେ ନମଃ ।। ୩ ।।

ଏକ ଓ ଅଦ୍ୱିତୀୟ, ସର୍ବଦା ବିଦ୍ୟମାନ; ଯାହାଙ୍କର କାମନା ଆଦି କିଛି ନାହିଁ ଓ ଯେ ସର୍ବଦା ସ୍ଥିତିଶୀଳ, ସମସ୍ତଙ୍କର ବୁଦ୍ଧି ବୃତ୍ତିର ସାକ୍ଷୀସ୍ୱରୂପ, ଅଶନ ଆଦି ଷଡ୍ଭାବବର୍ଜିତ; ସେହି ପରମାତ୍ମା ସତ୍ତ୍ୱାଦିଗୁଣରହିତ (ଏଠାରେ ସଦ୍‌ଗୁରୁଙ୍କ ଅର୍ଥ କେବଳ ପରଂବ୍ରହ୍ମ । କାରଣ, ସେହି ପରଂବ୍ରହ୍ମଙ୍କୁ କେବଳ ଲାଭ କଲେ ସକଳ ଅଜ୍ଞାନ ଓ ଦୁଃଖ ଦୂର ହୁଏ ଏବଂ ସେ କେବଳ ସତ୍, ଅର୍ଥାତ୍ ସର୍ବୋତ୍କୃଷ୍ଟ ଓ ସର୍ବଦା ବିଦ୍ୟମାନ । ସୁତରାଂ ସେହି କେବଳ ସଦ୍‌ଗୁରୁ ) ।

ମହିମାଧର୍ମ ଦର୍ଶନ ଅନୁସାରେ ଉପଦିଷ୍ଟ ସଦ୍‌ଜ୍ଞାନଭକ୍ତି କେବଳ ଗୁରୁରୂପରେ ପୂଜନୀୟ । ଅତଏବ ଜ୍ଞାନସ୍ୱରୂପ ବା ଜ୍ଞାନମୟ ପରମାତ୍ମା କେବଳ ଏକମାତ୍ର ଗୁରୁ । ମାନବ କଦାପି ଗୁରୁପଦବାଚ୍ୟ ନୁହେଁ । ଅବଶ୍ୟ ସେହି ଅଦ୍ୱିତୀୟ ଗୁରୁ କେବଳ ଦୟାପରବଶ ହୋଇ ଉପଦେଶକ-ମାନବ ହୃଦୟରେ ବିରାଜମାନ ହୋଇ ଧର୍ମୋପଦେଶ ଦିଅନ୍ତି । ଏହିହେତୁରୁ ଧର୍ମସ୍ୱରୂପୀ ପ୍ରଭୁ ପରଂବ୍ରହ୍ମ ପରମାତ୍ମା ଅନାଦିସିଦ୍ଧ ଗୁରୁରୂପରେ ମହିମାଧର୍ମସମାଜର ମାନନୀୟ ଓ ଉପାସ୍ୟ ଅଟନ୍ତି । ଅତଏବ ସେହି ପରଂବ୍ରହ୍ମଗୁରୁଙ୍କୁ ନିତ୍ୟ ଗୁରୁରୂପରେ ଉପାସନା କରିବା ମୁମୁକ୍ଷୁ ବ୍ୟକ୍ତିର କର୍ତ୍ତବ୍ୟ ।

## ଠ—ଦୀକ୍ଷାଗୁରୁ ଓ ଦୀକ୍ଷାନୁଷ୍ଠାନ ବିଷୟରେ ଗୁରୁ-ଶିଷ୍ୟ ପ୍ରସଙ୍ଗ—

ଏହି ମହିମାଧର୍ମର ଶିକ୍ଷା-ଦୀକ୍ଷା ଗ୍ରହଣନିମନ୍ତେ ଦୀକ୍ଷାଗୁରୁରୂପରେ କେବଳ ବ୍ରହ୍ମନିଷ୍ଠ ଅବଧୂତପରମସନ୍ନ୍ୟାସୀ ସିଦ୍ଧ ସାଧୁମାନଙ୍କୁ ଯଥାନିୟମରେ ସେବା ଓ ସମ୍ମାନ କରି ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗର ଉପଦେଶ ତାହାଙ୍କଠାରୁ ପ୍ରାପ୍ତ ହୋଇ ଦୀକ୍ଷା ଗ୍ରହଣ କରିବା ବିଧେୟ । ଦୀକ୍ଷା ଗ୍ରହଣର ପ୍ରଶସ୍ତ କାଳ—ବ୍ରାହ୍ମ ମୁହୂର୍ତ୍ତ; ତା’ ଛଡ଼ା ଅନ୍ୟ କୌଣସି ଦେଶ କାଳ ବ୍ୟବସ୍ଥା ମହିମାଧର୍ମରେ ଗ୍ରାହ୍ୟ ନୁହେଁ । ଏକଥା ତଳେ ବିବୃତ ହେଉଅଛି—

ଧର୍ମୋପଦେଷ୍ଟାର ସ୍ୱରୂପ—

ଆଚାର୍ଯ୍ୟୋବେଦସମ୍ପନ୍ନୋ ବିଷ୍ଣୁଭକ୍ତୋ ବିମତ୍ସରଃ ।
ଯୋଗଜ୍ଞୋ ଯୋଗନିଷ୍ଠଶ୍ଚ ସଦା ଯୋଗାତ୍ମକଃ ଶୁଚିଃ ॥
ଗୁରୁଭକ୍ତିସମାଯୁକ୍ତଃ ପୁରୁଷଜ୍ଞୋ ବିଶେଷତଃ ।
ଏବଂ ଲକ୍ଷଣସମ୍ପନ୍ନୋ ଗୁରୁରିତ୍ୟଭିଧୀୟତେ ॥
ଗୁ-ଶବ୍ଦସ୍ତ୍ୱନ୍ଧକାରଃ ସ୍ୟାଦ୍ରୁଶବ୍ଦସ୍ତନ୍ନିରୋଧକଃ ।
ଅନ୍ଧକାରନିରୋଧିତ୍ୱାଦ୍ ଗୁରୁରିତ୍ୟଭିଧୀୟତେ ॥

ଗୁରୁରେବ ପରଂବ୍ରହ୍ମ, ଗୁରୁରେବ ପରା ଗତିଃ ।
ଗୁରୁରେବ ପରା ବିଦ୍ୟା ଗୁରୁରେବ ପରାୟଣମ୍ ॥
ଗୁରୁରେବ ପରାକାଷ୍ଠା ଗୁରୁରେବ ପରଂ ଧନମ୍ ।
ଯସ୍ମାତ୍ତଦୁପଦେଷ୍ଟାସୌ ତସ୍ମାଦ୍ ଗୁରୁତରୋ ଗୁରୁରିତି ॥
ଯଃ ସକୃଦୁଚ୍ଚାରୟତି ତସ୍ୟ ସଂସାରମୋଚନଂ ଭବତି ।
ସର୍ବଜନ୍ମକୃତଂ ପାପଂ ତତ୍କ୍ଷଣାଦେବ ନଶ୍ୟତି ॥
ସର୍ବାନ୍ କାମାନବାପ୍ନୋତି ସର୍ବପୁରୁଷାର୍ଥସିଦ୍ଧିର୍ଭବତି ।
ଯଏବଂ ବେଦ ଇତ୍ୟୁପନିଷଦ୍ ॥　　　ଅଦ୍ୱୟତାରକୋପନିଷତ୍ । ୭ ।

ଆଚାର୍ଯ୍ୟ * ବେଦୋକ୍ତ ଜ୍ଞାନସମ୍ପନ୍ନ, ସର୍ବବ୍ୟାପୀ ପରମାତ୍ମାଙ୍କ ଭକ୍ତ, ମାତ୍ସର୍ଯ୍ୟାଦି ଦୋଷହୀନ, ଯୋଗଜ୍ଞ, ଯୋଗନିଷ୍ଠ, ସର୍ବଦା ଯୁକ୍ତରୂପରେ ବା ଶୁଦ୍ଧରୂପରେ ଅବସ୍ଥିତ, ଶୁଚି, ଗୁରୁଭକ୍ତିପରାୟଣ ଓ ବିଶେଷରୂପରେ ଆତ୍ମଜ୍ଞାନସମ୍ପନ୍ନ । ଏହିପରି ଧର୍ମର ଉପଦେଷ୍ଟା ବ୍ୟକ୍ତିଙ୍କୁ କେବଳ ଗୁରୁ କୁହାଯାଏ ।

---

* ଅନେଷ୍ଟପ୍ରାପକୋ ଧର୍ମ ଆଚାର୍ଯ୍ୟୈରୁପଦିଶ୍ୟତେ ।
ବୃଦ୍ଧାହ୍ୟଲୋଲୁପାଶ୍ଚୈବ ଆତ୍ମବନ୍ତୋ ହ୍ୟଦମ୍ଭକାଃ ।
ସମ୍ୟଗ୍ ବିନୀତା ଋଜବସ୍ତୋ ଯେ ଆଚାର୍ଯ୍ୟାନ୍ ପ୍ରଚକ୍ଷତେ ॥
ସ୍ୱୟମାଚରତେ ଯସ୍ମାଦାଚାରଂ ସ୍ଥାପୟତ୍ୟପି ।
ଆଚିନୋତି ଚ ଶାସ୍ତ୍ରାର୍ଥାନ୍ ଯମୈଃ ସନିୟମୈର୍ଯୁତଃ ॥ ବାୟୁ ପୁରାଣ—୫୯।୨୯।୩୦ ॥

ଅର୍ଥାତ୍ ଯାହା ଇଷ୍ଟ ପ୍ରାପକ, ତାହାହିଁ ଧର୍ମ ବୋଲି କଥିତ । ଯେଉଁମାନେ ବୃଦ୍ଧ (ଜ୍ଞାନଭକ୍ତିଯୋଗରେ ପରିପକ୍ୱତା ଲାଭ କରିଥାନ୍ତି), ଅଲୋଲୁପ, ଜିତେନ୍ଦ୍ରିୟ, ଦମ୍ଭହୀନ, ସୁଶିକ୍ଷିତ ଓ ସରଳଚେତା, ସେହିମାନେ ଆଚାର୍ଯ୍ୟପଦବାଚ୍ୟ । ଯେଉଁ ଆଚାର୍ଯ୍ୟ ସେହି ଆଚାର ପାଳନ କରନ୍ତି ଓ ଅନ୍ୟକୁ ଆଚାରରେ ପ୍ରବର୍ତ୍ତିତ କରାନ୍ତି ଏବଂ ଯମ ନିୟମ ସହିତ ଶାସ୍ତ୍ର ଅନୁଶୀଳନ କରନ୍ତି, ସେହିଁ କେବଳ ଆଚାର୍ଯ୍ୟ ।

ଆଚାରଂ ଗ୍ରାହୟତି ଆଚିନୋତି ଅର୍ଥାନ୍
ଆଚିନୋତି ବୁଦ୍ଧିମିତି ବା— ନିରୁକ୍ତ ୧-୨-୨ ।

ଆଚାର୍ଯ୍ୟର ଅର୍ଥ—ଯେ ଆଚାର ଶିଖାନ୍ତି । ଯେ ଶାସ୍ତ୍ରାର୍ଥକୁ ଅନୁଶୀଳନ କରନ୍ତି ଓ ଯେ ବୁଦ୍ଧିକୁ ସଂଗ୍ରହ, ଅର୍ଥାତ୍ ପରମାତ୍ମାଙ୍କଠାରେ ସଂଯୁକ୍ତ କରନ୍ତି ।

ଗୁ-ଶବ୍ଦର ଅର୍ଥ ଅନ୍ଧାର, ରୁ-ଶବ୍ଦର ଅର୍ଥ ଅନ୍ଧକାର ବା ଅଜ୍ଞାନର ବିନାଶକ । ସେହି ଅଜ୍ଞାନର ବିନାଶକ ହେବା ହେତୁରୁ ଆଚାର୍ଯ୍ୟ ଗୁରୁଶବ୍ଦଦ୍ୱାରା ଅଭିହିତ ହୁଅନ୍ତି । ଗୁରୁହିଁ ପରଂବ୍ରହ୍ମ ଓ ଗୁରୁ କେବଳ ପରମଗତି । ଗୁରୁ କେବଳ ପରମବିଦ୍ୟା, ପରମ ଆଶ୍ରୟ, ପରମସୀମା ଓ ପରମଧନ । ଗୁରୁ ପରମପଦ ବା ପରଂବ୍ରହ୍ମ ବିଷୟରେ କେବଳ ସର୍ବଦା ଉପଦେଶ ଦିଅନ୍ତି, ସେହି ହେତୁରୁ ଗୁରୁ ପୃଥିବୀରେ ଶ୍ରେଷ୍ଠ ବ୍ୟକ୍ତି । ଗୁରୁଶବ୍ଦ ଥରେମାତ୍ର ଉଚ୍ଚାରଣ କରିବାଦ୍ୱାରା ସଂସାରରୁ ମୁକ୍ତି ମିଳେ । ଉଚ୍ଚାରଣ ସଙ୍ଗେ ସଙ୍ଗେ ସକଳ ଜନ୍ମକୃତ ପାପରାଶି ବିନଷ୍ଟ ହୁଏ । ଗୁରୁଶବ୍ଦ ଉଚ୍ଚାରଣଦ୍ୱାରା ସକଳ କାମ୍ୟଫଳ ପ୍ରାପ୍ତ ହୁଏ ଓ ତଜ୍ଜନିତ ସକଳ ପୁରୁଷାର୍ଥ ସିଦ୍ଧ ହୁଏ । ଏହିକଥା ଉପନିଷଦ୍‌ରେ ଉପପାଦିତ ହୋଇଅଛି ।

ପୁନଶ୍ଚ—

× × × ତଦ୍‌ବିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍ ସମିତ୍‌ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠମ୍ । ମୁଣ୍ଡକ ଉଃ ୧ । ୨ । ୧୨ ।

ବୈରାଗ୍ୟବାନ୍ ପୁରୁଷ ସମିଧହସ୍ତରେ ସମ୍ୟଗ୍‌ଜ୍ଞାନ ଲାଭ ନିମନ୍ତେ ବେଦଜ୍ଞ ଓ ବ୍ରହ୍ମନିଷ୍ଠ ଗୁରୁଙ୍କ ନିକଟ ଗମନ କରି ତାହାଙ୍କ ଶରଣାଗତ ହେବ ।

"× × × ଇହ ଆଚାର୍ଯ୍ୟବାନ୍ ପୁରୁଷୋ ବେଦ ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷେଽଥ ସମ୍ପତ୍ସ୍ୟ ଇତି ।" "ଛାନ୍ଦୋଗ୍ୟ—୬।୧୪।୨ ।"

ଯେଉଁବ୍ୟକ୍ତି କୌଣସି କରୁଣହୃଦୟ ଆତ୍ମତତ୍ତ୍ୱଜ୍ଞ ମହାପୁରୁଷଙ୍କୁ ଗୁରୁରୂପରେ ଲାଭ କରିଅଛନ୍ତି, ସେହି କେବଳ ସେହି ପରମପଦାର୍ଥ ପରମାତ୍ମାଙ୍କୁ ଜାଣିପାରନ୍ତି । ଯେତେଦିନ ପର୍ଯ୍ୟନ୍ତ ପ୍ରାରବ୍ଧ କର୍ମସମୂହ ଭୋଗଦ୍ୱାରା ନିଃଶେଷରେ କ୍ଷୟପ୍ରାପ୍ତ ହୋଇ ନଥାଏ, ସେ ପର୍ଯ୍ୟନ୍ତ ସେହି ବ୍ରହ୍ମଜ୍ଞ ବ୍ୟକ୍ତିଙ୍କର ଅପେକ୍ଷା ରହେ; କିନ୍ତୁ ସେହି କର୍ମସମୂହର କ୍ଷୟ ସଙ୍ଗେ ସଙ୍ଗେ ମୁକ୍ତିଲାଭ ସୁଗମ ହୋଇଯାଏ । ମହାତ୍ମା ଶଙ୍କରାଚାର୍ଯ୍ୟ ସେହି ବ୍ରହ୍ମବିତ୍ ଗୁରୁଙ୍କ ଲକ୍ଷଣ ନିର୍ଦ୍ଦେଶ କରି ସେହି ଗୁରୁଙ୍କୁ ଆଶ୍ରୟ କରିବା ନିମନ୍ତେ ଉପଦେଶ ଦେଇଛନ୍ତି—

ଶ୍ରୋତ୍ରିୟୋ ବ୍ରହ୍ମନିଷ୍ଠୋ ଯଃ ପ୍ରଶାନ୍ତଃ ସମଦର୍ଶନଃ ।
ନିର୍ମମୋ ନିରହଙ୍କାରଃ ନିର୍ଦ୍ୱନ୍ଦ୍ୱଃ ନିଷ୍ପରିଗ୍ରହଃ ॥
ଅନପେକ୍ଷଃ ଶୁଚିର୍ଦକ୍ଷଃ କରୁଣାମୃତସାଗରଃ ।

ଏବଂ—

ଏବଂଲକ୍ଷଣସମ୍ପନ୍ନଃ ସ ଗୁରୁର୍ବ୍ରହ୍ମବତ୍ତମଃ ।
ଉପାସାଦ୍ୟଃ ପ୍ରଯତ୍ନେନ ଜିଜ୍ଞାସୋଃ ସାଧ୍ୟସିଦ୍ଧୟେ ॥

ସର୍ବବେ : ସା : ସ : ୨୫୪ । ୨୫୫ ॥

ଯେ ବେଦଜ୍ଞ ଓ ସର୍ବଦା ବ୍ରହ୍ମଚିନ୍ତାରେ ରତ, ପ୍ରଶାନ୍ତଚେତା, ସର୍ବଭୂତରେ ସମଦୃଷ୍ଟିସମ୍ପନ୍ନ, ମମତାହୀନ ଓ ଅଭିମାନଶୂନ୍ୟ, ଶୀତାତପପ୍ରଭୃତି ଦ୍ୱନ୍ଦ୍ୱ ସହିଷ୍ଣୁ ଏବଂ ସଂସାର ପ୍ରତି ଅନାସକ୍ତ, ସେହି କେବଳ ପ୍ରକୃତ ଗୁରୁ । ସେପରି ଗୁରୁ କାହାକୁ ଅପେକ୍ଷା କରନ୍ତି ନାହିଁ, ବାହ୍ୟ ଓ ଆଭ୍ୟନ୍ତର-ଦ୍ୱିବିଧ ଶୌଚସମ୍ପନ୍ନ । ସେ ଉପଦେଶଦାନ ବିଷୟରେ କୁଶଳ, ସାତିଶୟ ଦୟାଳୁ ଏବଂ ବ୍ରହ୍ମବିତ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତତ୍ତ୍ୱଜ୍ଞାନାର୍ଥୀ ନିଜର ଅଭୀଷ୍ଟ ସିଦ୍ଧିନିମନ୍ତେ ସେହି ସକଳ ଲକ୍ଷଣସମ୍ପନ୍ନ ଗୁରୁଙ୍କୁ ପ୍ରଯତ୍ନ ସହିତ ଆଶ୍ରୟ କରିବେ ।

ଶଙ୍କରାଚାର୍ଯ୍ୟ ମଧ୍ୟ କହିଛନ୍ତି—

ଆଚାର୍ଯ୍ୟବାନ୍ ପୁରୁଷୋ ହି ବେଦେତ୍ୟେବଂ ଶ୍ରୁତର୍କ୍ଷଗୋ ।
ଅନାଦାବିହ ସଂସାରେ ବୋଧକୋ ଗୁରୁରେବ ହି ॥

ତତ୍ତ୍ୱୋପଦେଶ—୪୭ ॥

ଅର୍ଥାତ୍ ବେଦୋକ୍ତନିୟମ ଅନୁସାରେ ଏକମାତ୍ର ଗୁରୁଦେବ କେବଳ ଏହି ଅସାର ସଂସାରରେ ଜ୍ଞାନଦାତା; ତାଙ୍କ ଭିନ୍ନ ଅନ୍ୟ କେହି ଜ୍ଞାନଦାନ ବିଷୟରେ ସମର୍ଥ ନୁହନ୍ତି । ଆଚାର୍ଯ୍ୟବାନ୍ ପୁରୁଷଙ୍କୁ କେବଳ ବେଦ କୁହାଯାଏ, ଅର୍ଥାତ୍ ବ୍ରହ୍ମବିଜ୍ଞାନ ସମ୍ବନ୍ଧରେ ଯେ ସଦୁପଦେଶ ଦେଇପାରନ୍ତି, ତାହାଙ୍କୁ କେବଳ ବ୍ରହ୍ମବିଜ୍ଞାନପ୍ରାପ୍ତିର ହେତୁ ବୋଲି ଜାଣିପାରିବ । କାରଣ, ଗୁରୁଦେବ କେବଳ ବେଦବାକ୍ୟର ଅର୍ଥ ବୋଧଗମ୍ୟ କରିପାରନ୍ତି । ବେଦବାକ୍ୟର ଅର୍ଥଜ୍ଞାନ ନ ହେଲେ କୌଣସିରୂପ ସୁଫଳର ଆଶା ନାହିଁ; ଗୁରୁଙ୍କ ବିନା ପ୍ରକୃତ ମର୍ମବୋଧ ହେବା ଅସମ୍ଭବ । ସେଥିନିମନ୍ତେ କୁହାଯାଉଛି ଯେ, ଏକମାତ୍ର ଗୁରୁଦେବ କେବଳ ଅନନ୍ତ ସଂସାରରେ ବ୍ରହ୍ମଜ୍ଞାନ ପ୍ରାପ୍ତିର ହେତୁ ।

ଜନ୍ମାନେକଶତୈଃ ସଦାଦରଯୁଜା ଭକ୍ତ୍ୟା ସମାରାଧିତୋ
ଭକ୍ତୈର୍ବୈଦିକଲକ୍ଷଣେନ ବିଧିନା ସନ୍ତୁଷ୍ଟ ଈଶଃ ସ୍ୱୟମ୍ ।
ସାକ୍ଷାତ୍ ଶ୍ରୀଗୁରୁରୂପମେତ୍ୟ କୃପୟା ଦୃଗ୍‌ଗୋଚରଃ ସନ୍ ପ୍ରଭୁଃ
ତତ୍ତ୍ୱଂ ସାଧୁ ବିବୋଧ୍ୟ ତାରୟତି ତାନ୍ ସଂସାରଦୁଃଖାର୍ଣ୍ଣବାତ୍ ।

ସ : ବେ : ସି : ସାର ୨୫୭ ॥

ଭକ୍ତମାନେ ବହୁଶତ-ଜନ୍ମବ୍ୟାପୀ ସମାଦରଯୁକ୍ତ ଭକ୍ତି ଏବଂ ଶାସ୍ତ୍ରବିହିତ କର୍ମାନୁଷ୍ଠାନଦ୍ୱାରା ପରମାତ୍ମାଙ୍କୁ ଆରାଧନା କରିଥାନ୍ତି । ଈଶ୍ୱର-ପୁରୁଷ ଭକ୍ତମାନଙ୍କର ସେହି ଆରାଧନାଦ୍ୱାରା ସନ୍ତୁଷ୍ଟ ହୋଇ ସାକ୍ଷାତ୍ ଶ୍ରୀଗୁରୁମୂର୍ତ୍ତି ଧାରଣ କରନ୍ତି । ଭକ୍ତମାନଙ୍କର ସମ୍ମୁଖରେ ଉପସ୍ଥିତ ହୋଇ ଦେଖାଦିଅନ୍ତି । ସେହି ଗୁରୁରୂପଧାରୀ ପରମେଶ୍ୱର କେବଳ କୃପାପୂର୍ବକ ତତ୍ତ୍ୱବସ୍ତୁ-ଉପଦେଶ ସମ୍ୟକ୍‌ଭାବରେ ପ୍ରଦାନ କରି ଭକ୍ତମାନଙ୍କୁ ସଂସାରରୂପୀ ଦୁଃଖମୟ ସାଗରରୁ ଉଦ୍ଧାର କରନ୍ତି ।

ଶବ୍ଦାର୍ଥଜ୍ଞଃ ସ୍ୱାତ୍ମତତ୍ତ୍ୱାନୁଭବୀ ଚ ଗୁରୁର୍ଦ୍ୱିଧା ।
ଆଦ୍ୟେ। ନରୋ ନ ତୁ ବ୍ରହ୍ମ ନରତ୍ୱଭ୍ରାନ୍ତ୍ୟନାଶନାତ୍ ॥
ତେନୋକ୍ତେ ସଂଶୟ୍ୟା ଏବ ସୂର୍ବାର୍ଥ ବହୁଯୋଜନାତ୍ ।
ବ୍ରହ୍ମୈବାନୁଭବୀ ତେନ ବ୍ରହ୍ମ ପ୍ରୋକ୍ତଂ ବଧୂୟ୍ୟତେତ ॥

ଅନୁଭୂତି ପ୍ରକାଶ—୧୧ । ୧୩ । ୧୪ ॥

ଗୁରୁ ଦୁଇପ୍ରକାର ଦେଖାଯାନ୍ତି; ଏକପ୍ରକାର ଗୁରୁ ଆତ୍ମତତ୍ତ୍ୱପ୍ରତିପାଦକ ଶାସ୍ତ୍ରର ଶବ୍ଦାର୍ଥ ମାତ୍ର ଅବଗତ ଥାଆନ୍ତି । ଅନ୍ୟପ୍ରକାର ଗୁରୁ ସ୍ୱାତ୍ମତତ୍ତ୍ୱ ଅନୁଭବ କରିଥାନ୍ତି । ପ୍ରଥମ ପ୍ରକାର ଗୁରୁ ମନୁଷ୍ୟ କେବଳ, ବ୍ରହ୍ମପଦବାଚ୍ୟ ନୁହଁନ୍ତି । କାରଣ, ତାଙ୍କର ସାଧାରଣ ମନୁଷ୍ୟ ତୁଲ୍ୟ କାମିନୀକାଞ୍ଚନାଦି ବିଷୟବାସନାଭ୍ରାନ୍ତି ନଷ୍ଟ ହୋଇ ନ ଥାଏ । ଏପରି ବ୍ୟକ୍ତି ଗୁରୁରୂପରେ ଯଦି ଆତ୍ମତତ୍ତ୍ୱ ବ୍ୟାଖ୍ୟା କରନ୍ତି, ତେବେ ସାଧାରଣ ଶ୍ରୋତାର ବ୍ରହ୍ମଜ୍ଞାନବିଷୟରେ ସନ୍ଦେହ ଦୂରହେବା ଅସମ୍ଭବ, ଅର୍ଥାତ୍ ତଦ୍ଦ୍ୱାରା ନଷ୍ଟସ୍ମୃତି ଜାତ ହୋଇପାରେ ନାହିଁ । ଅନୁଭବ ବୁଦ୍ଧିର ଅଭାବରୁ ସେପରି ପୂର୍ବୋକ୍ତ ଗୁରୁ କେବଳ ବାକ୍ୟଦ୍ୱାରା ଶାସ୍ତ୍ରର ବିବିଧପ୍ରକାର ଅନ୍ୱୟ କରନ୍ତି; କିନ୍ତୁ ଆତ୍ମତତ୍ତ୍ୱାନୁଭବୀ ଗୁରୁ ସ୍ୱୟଂ ବ୍ରହ୍ମସ୍ୱରୂପ, ସେହି କେବଳ ବ୍ରହ୍ମଜ୍ଞାନର ବ୍ୟାଖ୍ୟା କରିପାରନ୍ତି ଓ ଭକ୍ତ ତାହାଙ୍କଠାରୁ ବ୍ରହ୍ମଜ୍ଞାନ ଅବବୋଧ କରିପାରେ ।

ଅବିଦ୍ୟାହୃଦୟଗ୍ରନ୍ଥିବନ୍ଧମୋକ୍ଷୋ ଭବେଦ୍ ଯତଃ ।
ତମେବ ଗୁରୁରିତ୍ୟାହୁଃ ଗୁରୁଶବ୍ଦାର୍ଥବେଦନଃ ॥

ସ : ସି : ସା : ୨୫୭ ॥

ଗୁରୁଶବ୍ଦର ଅର୍ଥ ଜାଣିଥିବା ଆଚାର୍ଯ୍ୟମାନେ କହିଛନ୍ତି ଯେ, ଯାହାଙ୍କ ସାହାଯ୍ୟରେ ହୃଦୟର ଅବିଦ୍ୟାରୂପ ଗ୍ରନ୍ଥିଦ୍ୱାରା ବିରଚିତ ଏହି ସଂସାରବନ୍ଧନରୁ ମୁକ୍ତିଲାଭ କରାଯାଇପାରେ, ସେହି କେବଳ ଗୁରୁ ।

ଦତ୍ତାତ୍ରେୟ ଏ ବିଷୟରେ କହିଛନ୍ତି—

**ମନୋ ବଚୋ ଯତ୍ର ନ ଶକ୍ତମୀରିତୁଂ ନୂନଂ କଥଂ ତତ୍ର ଗୁରୂପଦେଶତା ।**
**ଇମାଂ କଥାମୁକ୍ତବତୋ ଗୁରୋସ୍ତୁ ତଦ୍ ଯୁକ୍ତସ୍ୟ ତତ୍ତ୍ୱଂ ହି ସମଂ ପ୍ରକାଶତେ ॥**

ଅବଧୂତଗୀତା ୨।୪୦ ॥

ଉକ୍ତ ଚେତନବ୍ରହ୍ମ ମନର ଅଚିନ୍ତ୍ୟମୀୟ ଓ ବଚନଦ୍ୱାରା କଥନଯୋଗ୍ୟ ନୁହେଁ । ଅତଏବ ଏହା ମନ ଓ ବଚନର ବିଷୟ ନୁହେଁ । କିନ୍ତୁ ଏ ବିଷୟରେ ପ୍ରଶ୍ନ ହୁଏ ଯେ, ଲୌକିକ ଗୁରୁ ଓ ତାଙ୍କର ଉପଦେଶ—ଏସବୁ କିପରି ସଙ୍ଗତ ହେବ ? କାରଣ ପ୍ରକୃତ ଗୁରୁ ଅଚିନ୍ତ୍ୟମୀୟ ପରଂବ୍ରହ୍ମ କେବଳ ବୋଲି ପୂର୍ବରେ କୁହାଯାଇଛି । ଏହାର ସମାଧାନ ଏହିପରି— ଯେଉଁ ଲୌକିକ ଗୁରୁ ସେହି ଚୈତନ୍ୟ ଆତ୍ମାସହିତ ଯୁକ୍ତ, ଅର୍ଥାତ୍ ମିଶ୍ରିତ, ସେହି କେବଳ ବ୍ରହ୍ମବିଷୟ ନିରୂପଣ କରିପାରନ୍ତି ଏବଂ ଆତ୍ମତତ୍ତ୍ୱ ସେହି ଗୁରୁଙ୍କଠାରେ ସର୍ବଦା ସମଭାବରେ ପ୍ରକାଶିତ ହୋଇଥାଏ । ଅତଏବ ଏପରି ଅଲୌକିକ ଗୁରୁଙ୍କଦ୍ୱାରା ବା ତାଙ୍କ ଉପଦେଶରୁ ସେହି ଅଲୌକିକ ଓ ଅଚିନ୍ତ୍ୟମୀୟ ଗୁରୁଙ୍କୁ ଅନୁଶୀଳନ କରାଯାଇପାରେ ।

**ଶାନ୍ତଂ ପ୍ରାଜ୍ଞଂ ତଥା ମୁକ୍ତଂ ନିଷ୍କ୍ରିୟଂ ବ୍ରହ୍ମଣି ସ୍ଥିତମ୍ ।**
**ଶ୍ରୁତେରର୍ଥ୍ୟବାନ୍ ବେଦ ତଦ୍‌ବଦ୍ଧୀତ ସ୍ମୃତେସ୍ତଥା ॥**

ଉପଦେଶସାହସ୍ରୀ—୧୭-୫୨ ।

କେଉଁ ଗୁରୁଙ୍କ ଆଶ୍ରୟ ବିଧେୟ, ସେ ବିଷୟରେ ବର୍ଣ୍ଣନା କରାଯାଉଛି—ମୁମୁକ୍ଷୁ ବ୍ୟକ୍ତି ଅକ୍ଷୁବ୍ଧଚିତ୍ତ, ମେଧାବୀ, ମୁକ୍ତ ଓ ବ୍ରହ୍ମନିଷ୍ଠ ଗୁରୁଙ୍କର ଆଶ୍ରୟ ନେବ । ଶ୍ରୁତି ଓ ସ୍ମୃତିପ୍ରମାଣରୁ ଜଣାଯାଏ ଯେ, ଭକ୍ତି ଓ ପ୍ରଣିପାତଦ୍ୱାରା ଗୁରୁଙ୍କ ଅନୁସରଣ କରିବା ବିଧେୟ । ତା'ପରେ କୁହାଯାଇଛି—

**ବନ୍ଧମୁକ୍ତଂ ବ୍ରହ୍ମନିଷ୍ଠଂ କୃତକୃତ୍ୟଂ ଭଜେଦ୍ ଗୁରୁମ୍ ।**
**ଯସ୍ୟ ପ୍ରସାଦାତ୍ ସଂସାରସାଗରେ ଗୋଷ୍ପଦାୟତେ ॥**
**ଶୁଶ୍ରୂଷୟା ସଦା ଭକ୍ତ୍ୟା ପ୍ରଣାମୈର୍ବିନୟୋକ୍ତିଭିଃ ।**
**ପ୍ରସନ୍ନଂ ଗୁରୁମାସାଦ୍ୟ ପ୍ରଷ୍ଟବ୍ୟଂ ଜ୍ଞେୟମାତ୍ମନଃ ॥**
**ଭଗବନ୍ କରୁଣାସିନ୍ଧୋ ଭବସିନ୍ଧୋର୍ଭବାଂସ୍ତରିଃ ।**
**ଯମାଶ୍ରିତ୍ୟାଶ୍ରମେଣୈବ ପରଂ ପାରଂ ଗତା ବୁଧାଃ ॥**

ଜନ୍ମାନ୍ତର-କୃତାନନ୍ତପୁଣ୍ୟକର୍ମ-ଫଲୋଦୟଃ ।
ଅଦ୍ୟ ସନ୍ନିହିତୋ ଯସ୍ମାତ୍ ତ୍ୱତ୍କୃପାପାତ୍ରମସ୍ମ୍ୟହମ୍ ॥

ସ: ସି: ସା:—୨୫୯-୨୭୨ ।

ଯାହାଙ୍କ ଅନୁଗ୍ରହରୁ ଏହି ସଂସାରରୂପ ସମୁଦ୍ର ଗୋଷ୍ପଦସଦୃଶ ହୋଇଯାଏ, ସେହି ସଂସାର ବନ୍ଧନରୁ ମୁକ୍ତ, ବ୍ରହ୍ମନିଷ୍ଠ ଏବଂ ତତ୍ତ୍ୱଜ୍ଞାନଲାଭ କରିଥିବାରୁ ଯାହାଙ୍କର ଜୀବନ ଚରିତାର୍ଥ, ସେପରି ଗୁରୁଙ୍କୁ ଭଜନା କରିବ । ପରିଚର୍ଯ୍ୟା, ସର୍ବଦା ଭକ୍ତି, ପ୍ରଣାମ ଓ ବିନୟପୂର୍ଣ୍ଣ ବଚନଦ୍ୱାରା ଗୁରୁଙ୍କୁ ପ୍ରସନ୍ନ କରାଇ ନିଜର ଜ୍ଞାତବ୍ୟ ବିଷୟରେ ପ୍ରଶ୍ନ କରିବ । ହେ ଭଗବନ୍ ! ହେ କୃପାସିନ୍ଧୋ ! ଏହି ସଂସାର-ରୂପ ସମୁଦ୍ରରୁ ତରିବା ସକାଶେ ଆପଣ କେବଳ ମୋ ପକ୍ଷରେ ନୌକାସ୍ୱରୂପ ପ୍ରଧାନ ଅବଲମ୍ବନ । ଆପଣଙ୍କୁ ଅବଲମ୍ବନ କରି ବହୁ ମୁମୁକ୍ଷୁ ଏହି ସଂସାର-ସାଗର ପାରି ହୋଇ ଅଛନ୍ତି । ଜନ୍ମାନ୍ତରରେ ମୁଁ ଯେଉଁ ଅନନ୍ତ ପୁଣ୍ୟ କର୍ମ ଅନୁଷ୍ଠାନ କରିଅଛି, ଆଜି ଆପଣଙ୍କୁ ଲାଭକରି ସେହି ସକଳ ପୁଣ୍ୟ କର୍ମର ଫଳୋଦୟ ହୋଇଅଛି । ମୁଁ ଆପଣଙ୍କ ଅନୁଗ୍ରହର ପାତ୍ର ହୋଇଅଛି ।

ସଂପ୍ରୀତମକ୍ଷ୍ଣୋର୍ବଦନପ୍ରସାଦ-ମାନନ୍ଦମନ୍ତଃକରଣସ୍ୟ ସଦ୍ୟଃ ।
ବିଲୋକନଂ ବ୍ରହ୍ମବିଦସ୍ତନୋତି, ଛିନତ୍ତି ମୋହଂ ସୁଗତିଂ ବ୍ୟନକ୍ତି ॥
ହୁତାଶନାନାଂ ଶଶିନାମିନାନା ମପ୍ୟଙ୍କୁରଂ ବାପି ନ ଯନ୍ନିହନ୍ତୁମ୍ ।
ଶକ୍ନୋତି ତଦ୍‌ଧ୍ୱାନ୍ତମନନ୍ତମାନ୍ତରଂ ହନ୍ତ୍ୟାତ୍ମବେତ୍ତା ସକୃଦୀକ୍ଷଣେନ ॥

ସ: ସି: ସା: ୨୭୩।୨୭୪ ॥

ଆପଣଙ୍କ ପରି ବ୍ରହ୍ମବିତ୍ ପୁରୁଷଙ୍କ ଦର୍ଶନରେ ନୟନଦ୍ୱୟ ଆନନ୍ଦିତ, ମୁଖମଣ୍ଡଳରେ ପ୍ରସନ୍ନତା ଓ ହୃଦୟରେ ଆନନ୍ଦ ବିସ୍ତୃତ ହୁଏ; ଆପଣଙ୍କ ଦର୍ଶନ ଅଜ୍ଞାନକୁ ଧ୍ୱଂସ କରେ ଓ ଭବିଷ୍ୟତ୍ ଉତ୍କୃଷ୍ଟ ଗତିର ସୂଚନା ଦିଏ । ଶତକୋଟିସଂଖ୍ୟକ ଅଗ୍ନି, ଚନ୍ଦ୍ର ଓ ସୂର୍ଯ୍ୟ ମିଳିତ ହୋଇ ମଧ୍ୟ ଯାହାକୁ ଦୂର କରିବାକୁ ସମର୍ଥ ନୁହଁନ୍ତି, ସେହି ହୃଦୟସ୍ଥିତ ଅନନ୍ତମୋହ-ରୂପ ଅନ୍ଧକାରକୁ ବ୍ରହ୍ମତତ୍ତ୍ୱବିଦ୍ ଗୁରୁ ଏକବାର ଦର୍ଶନ ଦେଇ ନଷ୍ଟ କରିଥାନ୍ତି ।

ଦୁଷ୍ପାରେ ଭବସାଗରେ ଜନି-ମୃତି-ବ୍ୟାଧ୍ୟାଦି-ଦୁଃଖୋତ୍କଟେ ।
ଘୋରେ ପୁତ୍ର-କଳତ୍ର-ମିତ୍ର-ବହୁଳ-ଗ୍ରାହାକରେ ଭୀକରେ ॥
କର୍ମୋତ୍ତୁଙ୍ଗ-ତରଙ୍ଗ-ଭଙ୍ଗନିକରୈରାକୃଷ୍ୟମାଣୋ ମୁହୁଃ ।
ଯାତାୟାତଗତିଭ୍ରମେଣ ଶରଣଂ କଞ୍ଚିନ୍ନ ପଶ୍ୟାମ୍ୟହମ୍ ॥

ସ: ସି: ସା: ୨୭୫ ॥

ଏହି ସଂସାର-ସମୁଦ୍ରସ୍ୱରୂପ ଓ ଜନ୍ମ-ମୃତ୍ୟୁ-ବ୍ୟାଧିପ୍ରଭୃତିରୂପକ ଦୁଃଖରାଶିଦ୍ୱାରା ଏହା ଅତି ବିଷମ; ପୁତ୍ର, ପତ୍ନୀ ଓ ମିତ୍ରପ୍ରଭୃତି-ହିଂସ୍ର ଜଳଜନ୍ତୁମାନେ ଏହି ସମୁଦ୍ରରେ ବିହ୍ୱଳଭାବରେ ବିଚରଣ କରୁଛନ୍ତି; ଅନାଦିକାଳରୁ ସଞ୍ଚିତ ଶୁଭ ଓ ଅଶୁଭ କର୍ମ ସବୁ ଉତ୍ତାଳ ତରଙ୍ଗଭଙ୍ଗସଦୃଶ ହୋଇଥିବାରୁ ଏହା ଅତି ଖିନ୍ନପ୍ରଦ ଓ ମୋତେ ଇତସ୍ତତଃ ଆକର୍ଷଣ କରୁଅଛି । ଇହଲୋକ ଓ ପରଲୋକ ଯାତାୟାତନବନ୍ଧନ ମୁଁ ସର୍ବଦା ଭ୍ରାନ୍ତ ହୋଇ ପଡ଼ୁଅଛି; ଏହି ଅତି ଭୟାବହ ସଂସାରରୁ ପାରହେବାନିମନ୍ତେ ମୁଁ କୌଣସି ଉପାୟ ଦେଖି ପାରୁ ନାହିଁ ।

କେନ ବା ପୁଣ୍ୟଶେଷେଣ ତବ ପାଦାମ୍ବୁଜଦ୍ୱୟମ୍ ।
ଦୃଷ୍ଟବାନସ୍ମି ମାମାର୍ତ୍ତଂ ମୃତ୍ୟୋସ୍ତ୍ରାହି ଦୟାଦୃଶା ॥
ବଦନ୍ତମେବଂ ତଂ ଶିଷ୍ୟଂ ଦୃଷ୍ଟ୍ୱୈବ ଦୟୟା ଗୁରୁଃ ।
ଦଦ୍ୟାଦଭୟମେତସ୍ମୈ ମା ଭୈଷ୍ଟେତି ମୁହୁର୍ମୁହୁଃ ॥

ସ: ସି: ସା: ୨୭୫।୨୭୭ ॥

ହେ ଗୁରୁଦେବ ! କୌଣସି ଅସାଧାରଣ ପୁଣ୍ୟାବଶେଷରୁ ମୁଁ ଆପଣଙ୍କର ଚରଣପଙ୍କଜଦ୍ୱୟର ଦର୍ଶନଲାଭ କରିଅଛି । ହେ ଦେବ ! ମୁଁ ନିତାନ୍ତ ପୀଡ଼ିତ, ମୋତେ ଦୟାପୂର୍ଣ୍ଣଦୃଷ୍ଟିରେ ମରଣରୁ ରକ୍ଷା କରନ୍ତୁ, ଅର୍ଥାତ୍ ଭବଭୟ-କାରାଗାରରୁ ତ୍ରାହି କରନ୍ତୁ ।

ଶିଷ୍ୟଙ୍କଠାରୁ ଏପରି ବାକ୍ୟ ଶୁଣି ଗୁରୁ ଦୟାପରବଶ ହୋଇ "ହେ ବତ୍ସ ! ଭୟ କର ନାହିଁ" ଏପରି ବାକ୍ୟଦ୍ୱାରା ଅଭୟ ପ୍ରଦାନ କରିବେ । ଏହିପରି ନିୟମରେ ଗୁରୁ ଶିଷ୍ୟଙ୍କୁ ପରୀକ୍ଷା କରି ଉପଦେଶ ପ୍ରଦାନ କରିବେ । କାରଣ,

ନ ମଳିନଚେତସ୍ୟୁପଦେଶବୀଜପ୍ରରୋହୋଽଙ୍କୁରବତ୍ ॥
ନାଭାସମାତ୍ରମପି ମଳିନଦର୍ପଣବତ୍ ॥
ନ ତଜ୍ଜସ୍ୟାପି ତଦ୍ରୂପତା ପଙ୍କଜବତ୍ ॥

ସାଂଖ୍ୟପ୍ରବଚନ ସୂତ୍ର—୪।୨୮।୩୦ ॥

ଯେପରି ଊଷରକ୍ଷେତ୍ରରେ ଅଙ୍କୁରୋଦ୍‌ଗମ ହୁଏ ନାହିଁ, ସେହିପରି ମଳିନ ଚିତ୍ତରେ ଉପଦେଶରୂପକ ବୀଜର ଅଙ୍କୁର ଜାତ ହୁଏ ନାହିଁ, ଅର୍ଥାତ୍ ଉପଦେଶ ଫଳପ୍ରଦ ହୁଏ ନାହିଁ । ଯେପରି ମଳିନ ଦର୍ପଣରେ ବସ୍ତୁର ପ୍ରତିବିମ୍ବ ପଡ଼େ ନାହିଁ, ସେହିପରି ମଳିନ ଚିତ୍ତରେ ଆଭାସ ବା ଆପାତଜ୍ଞାନ ମଧ୍ୟ ହୁଏ ନାହିଁ । ପ୍ରକୃତରେ ଗୁରୁଙ୍କ ଉପଦେଶଦ୍ୱାରା ଶିଷ୍ୟର ଜ୍ଞାନ ହେବା

ବାଧେଯ୍; କିନ୍ତୁ ଶିଷ୍ୟର ମଳିନ ଚିତ୍ତରେ ଉପଦେଶ ଅନୁରୂପ ଜ୍ଞାନ ଜାତ ହୁଏ ନାହିଁ, କମଳବୀଜ ଉତ୍ତମ ହେଲେ ମଧ୍ୟ ପଙ୍କଦୋଷରୁ ପଙ୍କଜର ଉତ୍ତମତା ନଷ୍ଟ ହୁଏ । ସେହିହେତୁରୁ—

ପ୍ରଶାନ୍ତଚିତ୍ତାୟ ଜିତେନ୍ଦ୍ରିୟାୟ ଚ ପ୍ରକ୍ଷୀଣଦୋଷାୟ ଯଥୋକ୍ତକାରିଣେ ॥
ଗୁଣାନ୍ୱିତାୟାନୁଗତାୟ ସର୍ବଦା ପ୍ରଦେୟମେତତ୍ ସତତଂ ମୁମୁକ୍ଷବେ ॥
ପରସ୍ୟ ଦେହେ ନ ଯଥାଭିମାନିତା ପରସ୍ୟ ତଦ୍ୱତ୍ ପରମାର୍ଥମୀକ୍ଷ୍ୟ ଚ ।
ଇଦଂ ହି ବିଜ୍ଞାନମତୀବନିର୍ମଳଂ ସଂପ୍ରାପ୍ୟ ମୁକ୍ତୋଽଥ ଭବେଚ୍ଚ ସର୍ବତଃ ॥
ନହୀହ ଲଭ୍ୟୋଽଭ୍ୟଧିକୋଽସ୍ତି କଶ୍ଚନ ସ୍ୱରୂପଲାଭାତ୍ ସ ଇତୋହି ନାନ୍ୟତଃ ॥
ନ ଦେୟମୈନ୍ଦ୍ରାଦପି ରାଜ୍ୟତୋଽଧିକଂ ସ୍ୱରୂପଲାଭଂ ତୁ ପରୀକ୍ଷ୍ୟ ଯତ୍ନତଃ ॥

ଉପଦେଶସାହସ୍ରୀ—ପାର୍ଥିବ-୧୭୨:୭୪ ॥

ପ୍ରଶାନ୍ତଚିତ୍ତ, ଜିତେନ୍ଦ୍ରିୟ, ପାପାଦି ଦୋଷ ରହିତ, ଶାସ୍ତ୍ରୋକ୍ତ କର୍ମାନୁଷ୍ଠାୟୀ, ବିନୟ ଓ ସରଳତାଦି ଗୁଣଯୁକ୍ତ ଏବଂ ବିଦ୍ୱଜ୍ଜନଙ୍କର ନିରନ୍ତର ଅନୁଗତ ଓ ମୁକ୍ତିକାମୀ ଶିଷ୍ୟଙ୍କୁ ଗୁରୁଦେବ ଆତ୍ମଜ୍ଞାନ ପ୍ରଦାନ କରିବେ । ମୁମୁକ୍ଷୁ ଶିଷ୍ୟ ପର ଦେହର ସୌନ୍ଦର୍ଯ୍ୟ ଆଦି ବିଷୟ ଦେଖି ତା'ପ୍ରତି ଆକୃଷ୍ଟ ହେବ ନାହିଁ, ଅଥଚ ନିଜର ଦେହାତିରିକ୍ତ ଆତ୍ମତତ୍ତ୍ୱ ବିଷୟ କେବଳ ଆଲୋଚନା କରିବ; ସେହି ଆଲୋଚନାଲବ୍ଧ ନିର୍ମଳ ଜ୍ଞାନକୁ ପ୍ରାପ୍ତ ହୋଇ ସର୍ବଦା ମୁକ୍ତିପ୍ରତି ଧାବମାନ ହେବ । ଏହି ସଂସାରରେ ଆତ୍ମଜ୍ଞାନ ଭିନ୍ନ ଅନ୍ୟ କୌଣସି ଆକାଙ୍‌କ୍ଷଣୀୟ ପଦାର୍ଥ ନାହିଁ; ଅତଏବ ବେଦାନ୍ତଶାସ୍ତ୍ର-ଅନୁଶୀଳନଦ୍ୱାରା ସେହି ଆତ୍ମତତ୍ତ୍ୱଲାଭ ନିମନ୍ତେ ଚେଷ୍ଟା କରୁଥିବା ଶିଷ୍ୟଙ୍କୁ ଗୁରୁ ଯତ୍ନପୂର୍ବକ ପରୀକ୍ଷା କରି ସ୍ୱର୍ଗ-ସୁଖ ଅପେକ୍ଷା ଅଧିକ ଆନନ୍ଦଦାୟୀ ଆତ୍ମଜ୍ଞାନତତ୍ତ୍ୱ ପ୍ରଦାନ କରିବେ ।

ସଗୁରୁସ୍ତାରୟେଦ୍ ଯୁକ୍ତଂ ଶିଷ୍ୟଂ ଶିଷ୍ୟଗୁଣାନ୍ୱିତମ୍ ।
ବ୍ରହ୍ମବିଦ୍ୟାପ୍ଳବେନାଶୁ ସ୍ୱାନ୍ତଧ୍ୱାନ୍ତ ମହୋଦଧିମ୍ ॥

ଉପଦେଶ ସାହସ୍ରୀ—୧୭।୫୩ ॥

ସେହି ଗୁରୁ ସମାହିତ ଓ ପ୍ରକୃତ ଶିଷ୍ୟସମ୍ବନ୍ଧୀ ସକଳ-ଗୁଣଯୁକ୍ତ ଶିଷ୍ୟଙ୍କୁ ବ୍ରହ୍ମଜ୍ଞାନରୂପ ( ଅର୍ଥାତ୍ ବିଶୁଦ୍ଧାତ୍ମ-ଜ୍ଞାନଭକ୍ତିଯୋଗ-ରୂପ ) ଭେଳାଦ୍ୱାରା ଶୀଘ୍ର ହୃଦୟସ୍ଥିତ ଅଜ୍ଞାନ ରୂପ ପାରାବାରର ଅପର ପାଖକୁ ନେଇଯାନ୍ତି ।

## ଠ—ଅନୁପଯୁକ୍ତ ଭାବରେ ଗୁରୁଶିଷ୍ୟ-ସମ୍ପାଦନ ଅଧମତାର ଚିହ୍ନ ।

ଉପର୍ଯ୍ୟୁକ୍ତ ବିଧାନ ଅନୁସାରେ ଦୀକ୍ଷା-ଅନୁଷ୍ଠାନ ସମ୍ପାଦନ କରି ଗୁରୁଶିଷ୍ୟ-ଭାବ ବିଧାନଦ୍ୱାରା ଗୁରୁଙ୍କ ଆଜ୍ଞା ଅନୁସାରେ ଶିଷ୍ୟ ଉପଦିଷ୍ଟ ହେବେ ଏବଂ ସେହି ନିୟମ ଅନୁସାରେ ଗୁରୁ ମଧ୍ୟ ଉପଦେଷ୍ଟା ହେବା ବିଧେୟ । ଏତଦ୍ଭିନ୍ନ ଆତ୍ମତତ୍ତ୍ୱ ନ ଜାଣିଥିବା ବ୍ୟକ୍ତିଙ୍କୁ ବ୍ରହ୍ମ-ଜ୍ଞାନ ବିଷୟରେ ପ୍ରଶ୍ନ କରିବା, ଅଥବା ଅନୁପଯୁକ୍ତ ବ୍ୟକ୍ତିଙ୍କୁ ଉପଦେଶଦେବା କାର୍ଯ୍ୟ ଊଷର ଭୂମିରେ ବୀଜବପନପରି ନିଷ୍ପ୍ରୟୋଜନ ଓ ସେପରି କାର୍ଯ୍ୟ ଅଜ୍ଞତାର ପରିଚାୟକ । ଅତଏବ ଶାସ୍ତ୍ର କହେ—

ଅତତ୍ତ୍ୱଜ୍ଞମନାଦେୟବଚନଂ ବାଗ୍‌ବିଦାଂ ବର ।
ଯଃ ପୃଚ୍ଛତି ନରଂ ତସ୍ମାନ୍ନାସ୍ତି ମୂଢ଼ତରୋ ପରଃ ॥
ପ୍ରାମାଣିକସ୍ୟ ତଜ୍ଜ୍ଞସ୍ୟ ବକ୍ତୁଃ ପୃଷ୍ଟସ୍ୟ ଯତ୍ନତଃ ।
ନାନୁତିଷ୍ଠତି ଯୋ ବାକ୍ୟଂ ନାନ୍ୟସ୍ତସ୍ମାନ୍ନରାଧମଃ ॥
ଅଜ୍ଞତାତଜ୍ଜ୍ଞତେ ପୂର୍ବଂ ବକ୍ତୁର୍ନିର୍ଣ୍ଣୀୟ କାର୍ଯ୍ୟତଃ
ଯଃ କରୋତି ନରଃ ପ୍ରଶ୍ନଂ ପ୍ରଚ୍ଛକଃ ସ ମହାମତଃ ॥
ଅନିର୍ଣ୍ଣୀୟ ପ୍ରବକ୍ତାରଂ ବାଳଃ ପ୍ରଶ୍ନଂ କରୋତି ଯଃ ।
ଅଧମଃ ପ୍ରଚ୍ଛକଃ ସସ୍ୟାନ୍ନ ମହାର୍ଥସ୍ୟ ଭାଜନମ୍ ॥
ପୂର୍ବାପରସମାଧାନକ୍ଷମବୁଦ୍ଧାବନିନ୍ଦିତେ ।
ପୃଷ୍ଟଂ ପ୍ରାଜ୍ଞେନ ବକ୍ତବ୍ୟଂ ନାଧମେ ପଶୁଧର୍ମିଣି ॥
ପ୍ରାମାଣିକାର୍ଥଯୋଗ୍ୟତ୍ୱଂ ପ୍ରଚ୍ଛକସ୍ୟାବିଚାର୍ଯ୍ୟ ଚ ।
ଯୋ ବକ୍ତି ତମିହ ପ୍ରାଜ୍ଞାଃ ପ୍ରାହୁର୍ମୂଢ଼ତରଂ ନରମ୍ ॥

ଯୋଗବାଶିଷ୍ଟ—ମୁମୁକ୍ଷୁ ପ୍ର-୧୧ । ୪୫ । ୫୦ ।

ହେ ବାଗ୍ମିଶ୍ରେଷ୍ଠ ରାମ ! ଯେଉଁ ନର ଅତତ୍ତ୍ୱଜ୍ଞ ଓ ବିରୁଦ୍ଧଭାଷୀ ପୁରୁଷଙ୍କୁ ପ୍ରଶ୍ନ କରେ ବା କୌଣସି ବିଷୟରେ କିଛି ଜିଜ୍ଞାସା କରେ, ସେହି ପୁରୁଷ ନିତାନ୍ତ ନିକୃଷ୍ଟ ଓ ମୂଢ଼ତମ । ପ୍ରମାଣବିତ୍ ଓ ତତ୍ତ୍ୱଜ୍ଞାନୀ ଗୁରୁ ଜିଜ୍ଞାସିତ ହୋଇ ଯତ୍ନପୂର୍ବକ ଯାହା କହନ୍ତି ବା ଯେଉଁ ସାରଗର୍ଭ ଉପଦେଶ ଦିଅନ୍ତି, ତାହା ଯେଉଁ ବ୍ୟକ୍ତି ଶୁଣେ ନାହିଁ; ସେପରି ଲୋକ ମଧ୍ୟ ନିତାନ୍ତ ଅଧମ । ଯେଉଁ ଲୋକ ପ୍ରଥମେ ଗୁରୁଙ୍କ ଅଜ୍ଞତା ଓ ତଜ୍ଜ୍ଞତା ପରୀକ୍ଷା କରି ପରେ ପ୍ରଶ୍ନ କରେ, ସେହି ନର ବୁଦ୍ଧିମାନ୍ ଓ ଉତ୍ତମ ପୁରୁଷ । ଆହୁରି ମଧ୍ୟ—ଯେଉଁ ମୂର୍ଖ ଲୋକ ବକ୍ତାର

ବ ଆଦ ନ ଜାଣି ତାଙ୍କୁ ତତ୍ତ୍ୱ-ଜିଜ୍ଞାସା କରିବାରେ ପ୍ରବୃତ୍ତ ହୁଏ, ଅର୍ଥାତ୍ ତାଙ୍କଠାରୁ ଉପଦେଶ ଗ୍ରହଣ କରିବାକୁ ଇଚ୍ଛା କରେ, ସେପରି ମୂର୍ଖଲୋକ ସମସ୍ତଙ୍କ ଅପେକ୍ଷା ଅଧମତମ ଓ ସେ କୌଣସିକାଳରେ ପରମାର୍ଥଭାଜନ ହୋଇପାରେ ନାହିଁ । ଯେଉଁ ଶିଷ୍ୟ ଗୁରୁଙ୍କ ଉପଦେଶର ତାତ୍ପର୍ଯ୍ୟ ବୁଝିବାନିମନ୍ତେ ସମର୍ଥ ଏବଂ ଗୁରୁଙ୍କର ଉକ୍ତ, ଅନୁକ୍ତ ଓ ଅନ୍ତର୍ଭୁକ୍ତ ତତ୍ତ୍ୱ ବିସ୍ତାରପୂର୍ବକ ଗ୍ରହଣ ଓ ଧାରଣ କରିବାରେ ପଟୁ, ଗୁରୁ ସେପରି ଶିଷ୍ୟଙ୍କ ପ୍ରଶ୍ନର ଉତ୍ତର ଦେବାନିମନ୍ତେ ଆଗ୍ରହୀ; କିନ୍ତୁ ପଶୁଭଳି ଅଜ୍ଞ ଓ ଅଧମ ଶିଷ୍ୟର ପ୍ରଶ୍ନବିଷୟରେ ପ୍ରତ୍ୟୁତ୍ତର ପ୍ରଦାନ କରନ୍ତି ନାହିଁ । ଆହୁରି ମଧ୍ୟ—ଯେଉଁ ଗୁରୁ ପ୍ରଶ୍ନକର୍ତ୍ତାର ବୁଝିବାଶକ୍ତି ଅଛି କି ନାହିଁ, ଏକଥା ନ ବୁଝି ଯଦି ସହସା ଅପାତ୍ରରେ ଉପଦେଶ ଦେବାନିମନ୍ତେ ଆକୃଷ୍ଟ ହୁଅନ୍ତି, ସେପରି ଗୁରୁ ମଧ୍ୟ ବିଜ୍ଞସମାଜରେ ମୂର୍ଖବୋଲି ପରିଗଣିତ ହୁଅନ୍ତି । ଏହିପରି ଗୁରୁ ଓ ଶିଷ୍ୟ ଉଭୟଙ୍କର ଲକ୍ଷଣ ଶାସ୍ତ୍ରରେ ପ୍ରତିପାଦିତ ହୋଇଅଛି ।

୦— ପୁନଶ୍ଚ ଗୁରୁଙ୍କ ସେବା ଓ ମାନ୍ୟତା ବିଷୟରେ ବିବରଣ—

ଦିବ୍ୟଜ୍ଞାନୋପଦେଷ୍ଟାରଂ ଦେଶିକଂ ପରମେଶ୍ୱରମ୍ ।
ପୂଜୟେତ୍ ପରୟା ଭକ୍ତ୍ୟା ତସ୍ୟ ଜ୍ଞାନଫଳଂ ଭବେତ୍ ॥
ଯଥା ଗୁରୁସ୍ତଥୈବେଶୋ ଯଥୈବେଶସ୍ତଥା ଗୁରୁଃ ।
ପୂଜନୀୟୋ ମହାଭକ୍ତ୍ୟା ନ ଭେଦୋ ବିଦ୍ୟତେଽନୟୋଃ ॥
ନାଦ୍ୱୈତବାଦଂ କୁର୍ବୀତ ଗୁରୁଣା ସହ କୁତ୍ରଚିତ୍ ।
ଅଦ୍ୱୈତଂ ଭାବୟେଦ୍ ଭକ୍ତ୍ୟା ଗୁରୋର୍ଦେବସ୍ୟ ଚାତ୍ମନଃ ॥

ଯୋଗଶିଖୋପନିଷତ୍ । ୬ । ୫୭-୫୯ ॥

ଅତଏବ ଦିବ୍ୟଜ୍ଞାନର ଉପଦେଶକ, ପରମେଶ୍ୱରସ୍ୱରୂପୀ ଗୁରୁଙ୍କୁ ଯେ ପରମଭକ୍ତି-ସହକାରେ ବିନୟ-ଶୁଶ୍ରୂଷାଦି ଦ୍ୱାରା ପୂଜା କରେ, ସେପରି ଶିଷ୍ୟର ଜ୍ଞାନଫଳ ଅର୍ଥାତ୍ ମୋକ୍ଷଲାଭ ନିଶ୍ଚିତଭାବେ ହୁଏ ।

ଯେ ଗୁରୁ ସେହି ଈଶ୍ୱର ଏବଂ ଯେ ଈଶ୍ୱର ସେହି କେବଳ ଗୁରୁ—ଅତଏବ ଉଭୟେ ଭକ୍ତିସହକାରେ ପୂଜନୀୟ । ଉଭୟଙ୍କ ମଧ୍ୟରେ କୌଣସି ଭେଦ ନାହିଁ । କୌଣସିସମୟରେ ଗୁରୁଙ୍କ ସହ ଅଦ୍ୱୈତବାଦ କରିବ ନାହିଁ (ଅର୍ଥାତ୍, ଗୁରୁ ମୋଠାରୁ ଶ୍ରେଷ୍ଠ—ସର୍ବଦା ଏହି ଭାବନା କରିବ; କିନ୍ତୁ ଗୁରୁ ଓ ନିଜର କୌଣସି ଭେଦ ନାହିଁ, ସମସ୍ତେ ଏକପ୍ରକାର—ଏପରି ବାଦାନୁବାଦ କରିବ ନାହିଁ) । ଅବଶ୍ୟ ହୃଦୟ ଭିତରେ ଗୁରୁଙ୍କ ସହ ନିଜର ଅଭେଦକଳ୍ପନା କରି ତାଙ୍କ ଉପଦେଶ କାର୍ଯ୍ୟରେ ପରିଣତ କରିବ (ବାକ୍ୟରେ ତାହା

ପ୍ରକାଶ କରିବ ନାହିଁ) । * ପିତାମାତା ପ୍ରିୟ ବନ୍ଧୁଜନ ଅପେକ୍ଷା ଉପଦେଷ୍ଟା ଗୁରୁଙ୍କୁ ସର୍ବଶ୍ରେଷ୍ଠଭାବେ ମାନ୍ୟ କରିବ ଏବଂ ତାଙ୍କ ଆଦେଶ ପାଳନ କରିବ ।

"ଗୁରୁର୍ଗରୀୟାନ୍ ପିତୃତୋ ମାତୃତଶ୍ଚେତ ମେ ମତଃ ।"

ମହାଭା : ଶାନ୍ତିପ : ୧୦୫ । ୧୮ ॥

ପିତାମାତାଙ୍କ ଅପେକ୍ଷା ମଧ୍ୟ ଗୁରୁ ଶ୍ରେଷ୍ଠ ।

ମାତୃତଃ ପିତୃତଶ୍ଚୈବ ତସ୍ମାତ୍ ପୂଜ୍ୟତମୋ ଗୁରୁଃ ।
ଋଷୟଶ୍ଚ ହି ଦେବାଶ୍ଚ ପ୍ରୀୟନ୍ତେ ପିତୃଭିଃ ସହ ॥
ପୂଜ୍ୟମାନେଷୁ ଗୁରୁଷୁ ଚ ତସ୍ମାତ୍ ପୂଜ୍ୟତମୋ ଗୁରୁଃ ।
କେନଚନ୍ନ ଚ ବୃତ୍ତେନ ହ୍ୟବଜ୍ଞେୟୋ ଗୁରୁର୍ଭବେତ୍ ।
ନ ଚ ମାତା ନ ଚ ପିତା ମନ୍ୟତେ ଯାଦୃଶୋ ଗୁରୁଃ ॥

ମହାଭା : ଶାନ୍ତିପ : ୧୦୫ । ୨୭ । ୨୮ ॥

---

* ଆହୁରି ମଧ୍ୟ ଆଗମ ଆଦି ଗ୍ରନ୍ଥମାନଙ୍କରେ ଗୁରୁ-ଶିଷ୍ୟ ବିବରଣ ଓ ଗୁରୁସେବା-ମାନ୍ୟତା ଆଦି ବିଷୟରେ ଉକ୍ତ ଅଛି—

ଜାତିବିଦ୍ୟାଦିଗର୍ବସ୍ୟ ତ୍ୟାଗଃ ଶ୍ରୀଗୁରୁସନ୍ନିଧୌ ।
ଶରୀରମର୍ଥଂ ପ୍ରାଣାଂଶ୍ଚ ସଦ୍‌ଗୁରୁଭ୍ୟୋ ନିବେଦ୍ୟ ଚଃ ।
ଗୁରୁଭ୍ୟଃ ଶିଷ୍ୟତେ ଯୋଗଂ ଶିଷ୍ୟ ଇତ୍ୟଭିଧୀୟତେ ॥　　କୁଳାର୍ଣ୍ଣବତନ୍ତ୍ର—୫ାଉ୧୭ ।

ଗୁରୂପଦେଶମାର୍ଗେ ଚ ସତ୍ୟବୁଦ୍ଧିରୁଦାରଧୀଃ ।
ଏବଂ ଲକ୍ଷଣସଂଯୁକ୍ତଃ ଶିଷ୍ୟଶ୍ଚାପି ପରୀକ୍ଷିତଃ ॥　　ସମୟାଗୃତନ୍ତ୍ର—ପ୍ର-୨ ॥

ଗୁରୁଙ୍କ ଆଜ୍ଞା ପାଳନ କରିବା ବିଧେୟ । ନଚେତ୍ତ ଲଙ୍ଘନରେ ମହାଦୋଷ—

ନ ଲଂଘୟେଦ୍‌ଗୁରୋରାଜ୍ଞାମୁତ୍ତରଂ ନ ବଦେତ୍ତଥା ।
ଦିବାରାତ୍ରୌ ଗୁରୋରାଜ୍ଞଂ ଦାସ୍ୟବତ୍ତ୍ର ପ୍ରତିପାଲୟେତ୍ତ୍ର ॥
ନ ଶୃଣୁୟାଦ୍ ଗୁରୋର୍ବାକ୍ୟଂ ଶୃଣୁୟାଦ୍ ବା ପରାଙ୍ମୁଖଃ ।
ଅହିତଂ ବା ହିତଂ ବାପି ରୌରବଂ ନରକଂ ବ୍ରଜେତ୍ତ୍ର ॥

ରୁଦ୍ରଯାମଳ ଉତ୍ତରଖଣ୍ଡେ—ପ ୧ ।

ଆଜ୍ଞାଭଙ୍ଗଂ ଗୁରୋର୍ଦେବି ଯଃ କରୋତି ସ ମୂଢ଼ଧୀଃ ।
ପ୍ରୟାତି ନରକଂ ଘୋରଂ ଶୂକରତ୍ୱମବାପ୍ନୁୟାତ୍ତ୍ର　　—ରୁଦ୍ରଯାମଳ ॥

ଅତଏବ ଗୁରୁ ପିତାମାତାଙ୍କଠାରୁ ଅଧିକ ପୂଜନୀୟ । ମନୁଷ୍ୟ ଗୁରୁଜନଙ୍କର ସମ୍ମାନ କଲେ ପିତୃ ଓ ଦେବତାମାନେ ଏବଂ ଋଷିମାନେ ମଧ୍ୟ ସନ୍ତୁଷ୍ଟ ହୁଅନ୍ତି । ସୁତରାଂ ଗୁରୁଜନ ସର୍ବାଦୌ ପୂଜନୀୟ । ମନୁଷ୍ୟ ଯେ-କୌଣସି ବ୍ୟବହାରଦ୍ୱାରା ଗୁରୁଙ୍କ ପ୍ରତି କଦାଚ ଅବଜ୍ଞା କରିବ ନାହିଁ; କାରଣ, ପିତାମାତା ଓ ଗୁରୁଜନଙ୍କ ଅପେକ୍ଷା ଜ୍ଞାନଦାତା ଗୁରୁ ଅଧିକ ପୂଜ୍ୟ ଅଟନ୍ତି ।

## ୦—ଦୀକ୍ଷା ପ୍ରମାଣ

ଆଦିମକାଳରୁ ବୈଦିକଶାସ୍ତ୍ର ଅନୁସାରେ ଦୀକ୍ଷାନୁଷ୍ଠାନର ପ୍ରୟୋଜନୀୟତା ରହିଅଛି ।

---

୦—ଗୁରୁଙ୍କ ପାଦରେଣୁ ଓ ଗୁରୁପ୍ରସାଦର ମାହାତ୍ମ୍ୟ ।

ଆଶିଷା ପାଦରଜସା ଚୋଚ୍ଛିଷ୍ଟାଲିଙ୍ଗନେନ ଚ ।
ମୁଚ୍ୟତେ ସର୍ବପାପେଭ୍ୟୋ ଜୀବନ୍ମୁକ୍ତୋ ଭବେନ୍ନରଃ ॥ ନାରଦପଞ୍ଚରାତ୍ର ୧।୭।୭୧ ॥

ଗୁରୁଙ୍କ ପାଦରଜ, ଆଶୀର୍ବାଦ ଓ ଉଚ୍ଛିଷ୍ଟ ସ୍ପର୍ଶରେ ମନୁଷ୍ୟ ସକଳ ପାପରୁ ମୁକ୍ତ ହୋଇ ଜୀବନ୍ମୁକ୍ତ ହୁଏ ।

୦—ଗୁରୁଙ୍କ ପାଦୋଦକ ଓ ରେଣୁପାନ କରିବା ଫଳ ।

ଗୁରୋଃ ପାଦରଜୋ ଯସ୍ତୁ ସ୍ୱମୂର୍ଦ୍ଧ୍ନି ଧାରୟେତ୍ତ୍ ।
ସ ତୀର୍ଥକୋଟିଜଫଳାତ୍ତ୍ ଫଳଂ ଦଶଗୁଣଂ ଲଭେତ୍ତ୍ ॥
ଗୁରୋଃ ପାଦୋଦକଂ ଯସ୍ତୁ ନିତ୍ୟଂ ପିବତି ଭକ୍ତିତଃ ।
ସାର୍ଦ୍ଧକୋଟିତୀର୍ଥାନାଂ ଫଳଂ ସ ଲଭତେ ଧ୍ରୁବମ୍ ॥
ଗୁପ୍ତ ସାଧନତନ୍ତ୍ର । ପ୍ରାଣତୋଷଣୀ ଚ ॥

ଗୁରୋରୁଚ୍ଛିଷ୍ଟକଂ ଦେବ ଭୁକ୍ତ୍ୱା ମୁକ୍ତିଫଳଂ ଲଭେତ୍ତ୍ ।
ଅବଶ୍ୟଂ ବୈଷ୍ଣବୈଃ ଶିଷ୍ୟୈର୍ଭୋକ୍ତବ୍ୟଂ ତଦ୍ଦିନେ ଦିନେ ॥
ଅଭିମାନୋ ନ କର୍ତ୍ତବ୍ୟୋ ଜାତିବିଦ୍ୟାଧନାଦିଭିଃ ।
ସର୍ବଦା ସେବୟେନ୍ନିତ୍ୟଂ ଶିଷ୍ୟଃ ଶ୍ରୀଗୁରୁସନ୍ନିଧୌ ॥ ରୁଦ୍ର ଯାମଳ ॥

ଗୁରୁଙ୍କ ସହ ଏକତ୍ର ଶୟନ ଓ ଭୋଜନ ନିଷିଦ୍ଧ ।

ଏକତ୍ର ଗୁରୁଣା ସାର୍ଦ୍ଧଂ ସ୍ୱପିତ୍ୟୁପବିଶେଦ୍ ଯଃ
ସ ଯାତି ନରକଂ ଘୋରଂ ଯାବଦିନ୍ଦ୍ରାଶ୍ଚତୁର୍ଦ୍ଦଶଃ ॥
ଗୁରୁଂ ବାକ୍ୟଂ ହତଂ କୃତ୍ୱା ଆତ୍ମବାକ୍ୟଂ ତୁ ସ୍ଥାପୟେତ୍ତ୍ ।
ଗୁରୁଂ ଜେତୁଂ ମନୋ ଯସ୍ୟ ସ ପତେନ୍ନରକାର୍ଣ୍ଣବେ ॥

ପ୍ରାଣତୋଷିଣୀ—୪ ପରିଚ୍ଛେଦ ॥

**ଭଦ୍ରମିଚ୍ଛନ୍ତ ଋଷୟଃ ସ୍ୱର୍ବିଦସ୍ତପୋ ଦୀକ୍ଷାମୁପନିଷେଦୁରଗ୍ରେ ।**
**ତତୋ ରାଷ୍ଟ୍ରଂ ବଲମୋଜଶ୍ଚ ଜାତଂ ତଦସ୍ମୈ ଦେବା ଉପସଂନମନ୍ତୁ ।**
ଅଥର୍ବଂସ— ୧୯।୪୧।୧ ॥

ମୁକ୍ତିକାମୀ ଋଷିମାନେ ଦେଶର କଲ୍ୟାଣକାମନା କରି ପ୍ରଥମେ **ତପ ଓ** ଦୀକ୍ଷାକୁ * ଧାରଣ କଲେ ପରେ ରାଷ୍ଟ୍ର, ବଳ ଓଜଃ ସୃଷ୍ଟ ହୁଏ । ସେଥିନିମନ୍ତେ ଏହି ଦୀକ୍ଷା-ଅବଲମ୍ବନ-ପନ୍ଥାକୁ ବିଦ୍ୱାନ୍‌ମାନେ ଆଦର ସହିତ ଅବଲମ୍ବନ କରିଛନ୍ତି ।

**୦—ବିଷୟୀ ଓ ଧର୍ମଚ୍ୟୁତ ସନ୍ନ୍ୟାସୀଙ୍କୁ ଗୁରୁ କରିବା ନିଷେଧ ।**

ଅନ୍ୟାନ୍ୟ ଧର୍ମପନ୍ଥାରେ ଯେପରି ବ୍ୟକ୍ତିଗତ ଗୁରୁଶିଷ୍ୟଭାବ ଦର୍ଶାଇ ଅଭିମାନୀ ହୁଅନ୍ତି, ସେପରି ଗୁରୁ ମହିମାସ୍ୱାମୀଙ୍କ ଆଦେଶ ଅନୁସାରେ ଏହି ମହିମା-ଧର୍ମସମାଜରେ ବ୍ୟକ୍ତିଗତ ଗୁରୁଶିଷ୍ୟଭାବ ନାହିଁ । କେବଳ ସେହି ଏକ ଓ ଅଦ୍ୱିତୀୟ ପରଂବ୍ରହ୍ମଙ୍କୁ ଉପଦେଷ୍ଟା ଓ ଉପଦିଷ୍ଟ, ସନ୍ନ୍ୟାସୀ ଓ ଗୃହସ୍ଥନିର୍ବିଶେଷରେ ସମସ୍ତେ ଗୁରୁରୂପରେ ଶରଣାପନ୍ନ ହେବାର ମୁଖ୍ୟ ନିୟମ ରହିଅଛି । ଯଦି କେହି ଉପଦେଷ୍ଟା ସନ୍ନ୍ୟାସୀ ସତ୍ୟଧର୍ମର ଉପଦେଶମାନ ଲଙ୍ଘନ କରି

* ଦୀକ୍ଷାଶବ୍ଦର ଅର୍ଥ—

ଦୀୟତେ ପରମଂ ଜ୍ଞାନଂ କ୍ଷୀୟତେ ପାପପଙ୍କିଃ ।
ତେନ ଦୀକ୍ଷୋଚ୍ୟତେ ମନ୍ତ୍ରେଷ୍ୱାଗମାର୍ଥବିଲାବିଲାତ୍ ॥
ପ୍ରାଣତୋଷିଣୀ—ଲଘୁକଳ୍ପ—ଯୁକ୍ତେ ॥

ଦୀୟତେ ଜ୍ଞାନମତ୍ୟର୍ଥଂ କ୍ଷୀୟତେ ପାପବନ୍ଧନମ୍ ।
ଅତୋ ଦୀକ୍ଷେତି ଦେବେଶି ! କଥିତା ତତ୍ତ୍ୱଚିନ୍ତକୈଃ ॥　　ଯୋଗିନୀତନ୍ତ୍ର ॥
ଦିବ୍ୟଜ୍ଞାନଂ ଯତୋ ଦଦ୍ୟାତ୍ କୁର୍ଯ୍ୟାତ୍ ପାପକ୍ଷୟଂ ତତଃ ।
ତସ୍ମାଦ୍ଦୀକ୍ଷେତି ସା ପ୍ରୋକ୍ତା ସର୍ବତନ୍ତ୍ରସ୍ୟ ସମ୍ମତା ॥　　ବିଶ୍ୱସାରତନ୍ତ୍ର ॥

ଦୀକ୍ଷା ପ୍ରଶଂସା—

ନ ଚ ଦୀକ୍ଷା ପରଂ ଜ୍ଞାନଂ ନ ଚ ଦୀକ୍ଷା ପରଂ ତପଃ ।
ନ ଚ ଦୀକ୍ଷା ପରଂକାଳଂ ତସ୍ମାଦ୍ଦୀକ୍ଷା ଗରୀୟସୀ ॥　　ପ୍ରାଣତୋଷଣୀ ୧ ପଟଳ ॥
ଦୀକ୍ଷାୟାଂ ଚଞ୍ଚଳାପାଙ୍ଗି ! ନ କାଲନିୟମଃ କ୍ୱଚିତ୍ ।
ସଦ୍‌ଗୁରୋର୍ଦ୍ଦର୍ଶନାଦେବ ସୂର୍ଯ୍ୟପୂର୍ବଂଚ ସର୍ବଦା ॥
ଶିଷ୍ୟମାହୂୟ ଗୁରୁଣା କୃପୟା ଯଦି ଦୀୟତେ ।
ତତ୍ର ଲଗ୍ନାଦିକଂ କିଞ୍ଚିନ୍ନ ବିଗୃହ୍ୟ କଦାଚନ ॥　　ପ୍ରାଃ ବିଶ୍ୱସାରତନ୍ତ୍ର ॥

ଏ ବିଷୟରେ ଭକ୍ତ ଭୀମଭୋଇଙ୍କ ଉକ୍ତି—

"ଏ କଳିଯୁଗରେ ଏକା, ଉଦୟେ ମହିମାଦୀକ୍ଷା । ପ୍ରଭୁ ଭଜନ ଏକ ହୁଅ, ମହିମା ଧର୍ମ ଦୀକ୍ଷା ନିଅ । ଇତ୍ୟାଦି

ଭୂସମ୍ପତ୍ତି, ଗୋ, ପଶୁପ୍ରଭୃତି ଅର୍ଥ ସଂଗ୍ରହ କରି ବିଷୟୀ ହୁଏ, ଅଥବା ଧର୍ମମାର୍ଗର ବିରୁଦ୍ଧାଚରଣ କରେ, ତେବେ ତାହାକୁ ଉପଦିଷ୍ଟ ବ୍ୟକ୍ତି ବା ଶିଷ୍ୟ ଗୁରୁ ମହାତ୍ମାସ୍ୱାମୀଙ୍କ ଆଦେଶମତେ କୌଣସିପ୍ରକାରେ ଦୀକ୍ଷା-ଗୁରୁରୂପେ ସମ୍ମାନ କରିବେ ନାହିଁ । କେବଳ ପୂର୍ବକଥନ ଅନୁସାରେ ଏକ ପରଂବ୍ରହ୍ମଙ୍କୁ ଗୁରୁରୂପେ ଆରାଧନା କରି ଧର୍ମନିଷ୍ଠ ସିଦ୍ଧସାଧୁଙ୍କୁ ଗୁରୁଜନଭାବେ ମାନ୍ୟକରି ସେବା ଭକ୍ତି କରିବେ ।

## ୦—ବିଷୟୀଜନ କଦାପି ଗୁରୁ ନୁହେଁ ।

**ରଜସ୍ତମୋଭ୍ୟାଂ ବିଦ୍ଧସ୍ୟ ସୁସମିଦ୍ଧସ୍ୟ ଦେହିନଃ ।**

**ପୁତ୍ରଦାରକୁଟୁମ୍ବେଷୁ ସକ୍ତସ୍ୟ ନ କଦାଚନ ।** ମୈତ୍ରୀ ଉ: ଅ: ୬ ୨୮ ॥

ଯେଉଁ ଦେହୀ ବା ବ୍ୟକ୍ତି ବିଦ୍ୟା, ବିନୟ ଓ ଆଡ଼ମ୍ବରଦ୍ୱାରା ସୁଦୀପ୍ତ ହୋଇଥିଲେ ମଧ୍ୟ ରଜୋଗୁଣ ଓ ତମୋଗୁଣର ଅଧୀନତା ହେତୁରୁ ସ୍ତ୍ରୀ, ପୁତ୍ର ଓ କୁଟୁମ୍ବ ପ୍ରତି ସଦା ଆସକ୍ତ, ତାହାର ସମ୍ୟଗ୍‌ଯୋଗ କେବେହେଲେ ସିଦ୍ଧ ହୁଏ ନାହିଁ ।

ଏହି ହେତୁରୁ ଋଷିମାନଙ୍କ ସମ୍ମୁଖରେ ନାରଦ "କମଳପୁଷ୍ପଚୋରି" ବିଷୟରେ ଶପଥ କରି କହିଅଛନ୍ତି—

**ଗୃହଜ୍ଞାନୀ ବହୁଃ ଶାସ୍ତ୍ରଂ ପଠତାଂ ବିସ୍ୱରଂ ପଦମ୍ ।**
**ଗରୀୟସୋଽବଜାନାତୁ ଯସ୍ତେ ହରତି ପୁଷ୍କରମ୍ ॥**

ମହାଭା: ଅନୁଶା:—୯୪।୩୦ ॥

ନାରଦ କହିଲେ—ଯେଉଁଲୋକ ଆପଣମାନଙ୍କର ପୁଷ୍କର ନେଇଅଛି, ସେ ଗୃହରେ ଜ୍ଞାନୀ ହୋଇ ବାହାରେ ବିରୁଦ୍ଧସ୍ୱର ପଦଯୁକ୍ତ ଶାସ୍ତ୍ର ପଢ଼ୁ ଏବଂ ଗୁରୁଜନଙ୍କୁ ଅବଜ୍ଞା କରୁ, ଅର୍ଥାତ୍ ସ୍ୱୟଂ ଗୁରୁପଣିଆ ପ୍ରକାଶ କରୁ ।

ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ଜଗତରେ ଗୁରୁପଣିଆ ପ୍ରକାଶ କରିବାନିମନ୍ତେ ଅନେକ ବିଷୟାସକ୍ତ, ଅଜ୍ଞ ଓ ଅହଙ୍କାରୀ ବ୍ୟକ୍ତି ନିଜକୁ ଧର୍ମଜ୍ଞ ମନେକରି ଅନ୍ୟମାନଙ୍କୁ ତାରିବା ନିମନ୍ତେ ଚତୁର୍ଦ୍ଦିଗ ଭ୍ରମଣ କରନ୍ତି । ଏପରି ଅଜ୍ଞବ୍ୟକ୍ତିମାନଙ୍କ ଛଳନାରେ ପଡ଼ିଲେ ଲୋକ ଅନ୍ଧକର୍ତ୍ତୃକ ଚାଳିତ ଅନ୍ଧପରି ଦୁର୍ଗତି କେବଳ ଲାଭ କରିବ—

**ଅବିଦ୍ୟାୟାମନ୍ତରେ ବର୍ତ୍ତମାନାଃ ସ୍ୱୟଂ ଧୀରାଃ ପଣ୍ଡିତଂ ମନ୍ୟମାନାଃ ।**
**ଜଂଘନ୍ୟମାନାଃ ପରିଯନ୍ତି ମୂଢ଼ା ଅନ୍ଧେନୈବ ନୀୟମାନା ଯଥାନ୍ଧାଃ ॥**

ମୁଣ୍ଡକ ଉପନିଷଦ୍—୧।୨।୮ ॥

ଯେଉଁମାନେ ଅବିଦ୍ୟାଗ୍ରସ୍ତ ଓ ଅବିବେକୀ, ସେମାନେ ନିଜେ ସକଳ ବିଷୟ ଜାଣନ୍ତି ବୋଲି ଅଭିମାନ କରନ୍ତି ଏବଂ ଜରା ଓ ରୋଗ ଆଦି ଅନର୍ଥସମୂହଦ୍ୱାରା ଆବୃତ ଥିଲେ ମଧ୍ୟ ବିଭ୍ରାନ୍ତଭାବରେ ଗର୍ବ ପ୍ରକାଶ କରନ୍ତି । ଯେପରି ଚକ୍ଷୁହୀନ ବ୍ୟକ୍ତିଦ୍ୱାରା ପରିଚାଳିତ ଅନ୍ୟ ଅନ୍ଧ ବ୍ୟକ୍ତି ଗର୍ତ୍ତରେ ପଡ଼ି ବିପନ୍ନ ହୁଏ, ସେପରି ଅଜ୍ଞାନୀ ବ୍ୟକ୍ତିମାନଙ୍କର ଗୁରୁଶିଷ୍ୟଭାବ କେବଳ ବିପଦର କାରଣ ହୋଇଥାଏ । ଏ ସମ୍ବନ୍ଧରେ ବଶିଷ୍ଠଙ୍କ ବଚନ—

ନିର୍ବାଣଂ ବର୍ଣ୍ଣୟନ୍ନଜ୍ଞସ୍ତାପ୍ୟତେଽନ୍ତର୍ନ ଶାମ୍ୟତି ।
କଳ୍ପନାଂଶୋପଦେଶେନ ଲୋକୋଽବିଦ୍ୟାମୟାତ୍ମନା ॥
ଯେନ କେନଚିଦଙ୍ଗତ୍ୱାତ୍ କୃତାର୍ଥୋଽସ୍ମୀତିମନ୍ୟତେ ।
ଅକୃତାର୍ଥଃ କୃତାର୍ଥତ୍ୱଂ ଜାନନ୍ ମୌର୍ଖ୍ୟବିମୋହିତଃ ॥
ବିଜ୍ଞାସ୍ୟତ୍ୟକୃତାର୍ଥତ୍ୱଂ କ୍ଷଣାନ୍ତରକଦର୍ଥନୈଃ ।
ଉପାୟଂ କଳ୍ପନାତ୍ମାନମନୁପାୟଂ ବିଦୁର୍ବୁଧାଃ ॥
ଦୁଃଖଦତ୍ୱାନ୍ନିମେଷେଣ ଭାବାଭାବୈଷଣଭ୍ରମୈଃ ।
ଜଗଦ୍ଭ୍ରମଂ ପରିଜ୍ଞାୟ ଯଦବାସନମାସିତମ୍ ।
ବିରସାଶେଷବିଷୟଂ ତଦ୍ଧି ନିର୍ବାଣମୁଚ୍ୟତେ ॥

ଯୋଗବାଶିଷ୍ଠ-ନିର୍ବାଣ ପ୍ର: ଉତ୍ତରାର୍ଦ୍ଧ ୪୨।୪୮—୫୧ ।

ମୂଢ଼ଲୋକ ମୋକ୍ଷ ସମ୍ବନ୍ଧରେ କେତେକ କଥା ଶୁଣି ମୂର୍ଖମାନଙ୍କ ନିକଟରେ ନିଜେ ତତ୍ତ୍ୱଜ୍ଞ ବୋଲି ନିଜର ବଡ଼ିମା ପ୍ରକାଶ କରେ ଓ ମୋକ୍ଷବିଷୟରେ ବହୁ କୀର୍ତ୍ତନ କରେ । ତାହାର ଏହି ମୋକ୍ଷବିଷୟକ ତଥା ଅନ୍ଧକୃତ ରୂପ ବର୍ଣ୍ଣନା ସହିତ ସମାନ । ପ୍ରକୃତରେ ସେ ମାନ ଅପମାନ ସହନ କରି ମଧ୍ୟ ପ୍ରକୃତ ତତ୍ତ୍ୱଜ୍ଞାନୀଙ୍କ ପରି ଶାନ୍ତି-ସୁଖଲାଭ କଦାପି କରି ପାରେ ନାହିଁ । ସମାଜରେ ବହୁ ମୂଢ଼ଲୋକ ମଧ୍ୟ ଦେଖାଯାନ୍ତି; ଯେଉଁମାନେ ସେପରି ଅଜ୍ଞ ଉପଦେଶକଙ୍କର କଥାକୁ ଜ୍ଞାନଗର୍ଭ ମନେକରି ପ୍ରଥମେ ନିଜକୁ କୃତାର୍ଥ ମନେକରନ୍ତି । କିନ୍ତୁ ପ୍ରକୃତରେ ସେମାନେ କୃତାର୍ଥ ହୁଅନ୍ତି ନାହିଁ, ମୂର୍ଖତାହେତୁରୁ କେବଳ ନିଜକୁ କୃତକୃତ୍ୟ ବୋଲି ଭାବନ୍ତି; କିନ୍ତୁ କିଛିଦିନ ପରେ ସେହି ଅଜ୍ଞ ଉପଦେଶକର ଉପଦେଶ ଅନୁଯାୟୀ ଫଳ ନ ପାଇ ନିଜର ଭ୍ରାନ୍ତଧାରଣା ବୁଝିପାରନ୍ତି ଓ ପଶ୍ଚାତ୍ତାପ କରନ୍ତି । ଅତଏବ ଅଜ୍ଞ ଉପଦେଶକଙ୍କ ବଚନ ନିଷ୍ଫଳ । ସେମାନଙ୍କ ଉପଦେଶ କଳ୍ପନା ମାତ୍ର, କଳ୍ପିତ କଥା ମୁକ୍ତିର ଉପାୟ ହୋଇ ନ ପାରେ । କାରଣ କଳ୍ପିତ କଥା ଶୁଣି ଲୋକର ଭ୍ରମ ଜାତ ହୁଏ ଓ ଭ୍ରାନ୍ତ ଜ୍ଞାନ ସକଳ ଦୁଃଖର କାରଣ । କିନ୍ତୁ ଜଗତକୁ ଭ୍ରାନ୍ତ ଜ୍ଞାନ ବୋଲି ଭାବି ଅଭ୍ରାନ୍ତ ଚିତ୍ତରେ ସେହି ପରଂବ୍ରହ୍ମଙ୍କୁ ଧ୍ୟାନ କରିବାଦ୍ୱାରା ନିର୍ବାଣପ୍ରାପ୍ତ ହୁଏ ବୋଲି ପଣ୍ଡିତମାନଙ୍କର ମତ ।

ଏ ବିଷୟରେ ପୁନଶ୍ଚ ଶାସ୍ତ୍ରବାକ୍ୟ—

**ସାଂସାରିକକ୍ରିୟାସକ୍ତଂ ବ୍ରହ୍ମଜ୍ଞୋଽସ୍ମୀତିବାଦିନମ୍ ।**
**କର୍ମବ୍ରହ୍ମୋଭୟଭ୍ରଷ୍ଟଂ ତଂ ତ୍ୟଜେଦନ୍ତ୍ୟଜଂ ଯଥା ॥**

ଅମନସ୍କବିବରଣ ୬ । ୭୯ ॥

ଯେଉଁ ବ୍ୟକ୍ତି ସାଂସାରିକ କ୍ରିୟାକଳାପରେ ନିମଗ୍ନ ରହି ନିଜେ ବ୍ରହ୍ମଜ୍ଞାନୀ ବୋଲି ଅଭିମାନ କରନ୍ତି, ସେପରି ଲୋକଙ୍କର କର୍ମ ଓ ବ୍ରହ୍ମଜ୍ଞାନ ଅନ୍ତ୍ୟଜବ୍ୟକ୍ତି ତୁଲ୍ୟ ଭ୍ରଷ୍ଟ ବୋଲି ଧରାଯାଇଥାଏ ।

ଏ ବିଷୟରେ ଦାର୍ଶନିକ ପ୍ରମାଣ—

**"ଜୀବନ୍ମୁକ୍ତଶ୍ଚ" ଉପଦେଶ୍ୟୋପଦେଷ୍ଟୃତ୍ୱାତ୍ତତ୍ସିଦ୍ଧିଃ ।**
**ଇତରଥାଽନ୍ଧପରଂପରା ॥**

ସାଂଖ୍ୟପ୍ରବଚନସୂତ୍ର—୩ । ୭୭-୭୯ ॥

ମଧ୍ୟବିବେକାବସ୍ଥା ବା ସମାଧିଅବସ୍ଥାରେ ଥିବା ପୁରୁଷ ଜୀବନ୍ମୁକ୍ତ ନାମରେ ପ୍ରସିଦ୍ଧ । ଶାସ୍ତ୍ରରେ ଯେଉଁ ଗୁରୁଶିଷ୍ୟସମ୍ବାଦ ଶୁଣାଯାଏ, ତାହା ଜୀବନ୍ମୁକ୍ତ ଅବସ୍ଥାର ସୂଚକ । ପ୍ରକୃତରେ ଜୀବନ୍ମୁକ୍ତ ପୁରୁଷମାନେ କେବଳ ଗୁରୁ ଓ ଉପଦେଷ୍ଟା । ଜୀବନ୍ମୁକ୍ତ ପୁରୁଷ ନ ଥିଲେ ଉପଦେଶର ପ୍ରବାହ ବିଚ୍ଛିନ୍ନ ହୋଇଯାଏ । ଅବିବେକୀ, ଅଳ୍ପବିବେକୀ ଓ ବିଷୟାସକ୍ତ ବ୍ୟକ୍ତି ଉପଦେଷ୍ଟା ହେଲେ ସେହି ଅନ୍ଧପରମ୍ପରାନ୍ୟାୟରେ ଉପଦିଷ୍ଟ ଲୋକ ବହୁ ଦୁଃଖ ଭୋଗ କରେ । ଆତ୍ମତତ୍ତ୍ୱବିଷୟ ଭଲଭାବରେ ନ ଜାଣି ଓ ବିବେକ-ବୈରାଗ୍ୟସମ୍ପନ୍ନ ନ ହୋଇ ଯଦି ଉପଦେଶକ ହୁଅନ୍ତି; ତେବେ ଉପଦିଷ୍ଟବ୍ୟକ୍ତିର ଭ୍ରାନ୍ତ ଧାରଣା କଦାପି ଦୂର ହୁଏ ନାହିଁ । ଗୁରୁଙ୍କର ଯଦି ବ୍ରହ୍ମତତ୍ତ୍ୱବିଷୟରେ ଭ୍ରାନ୍ତ ଧାରଣା ଥାଏ, ତେବେ ଶିଷ୍ୟ ତଦ୍ୱାରା ଉଦ୍‌ବୁଦ୍ଧ ହୋଇ ପାରିବେ ନାହିଁ । ଅତଏବ ଶିଷ୍ୟାନୁଶିଷ୍ୟପରମ୍ପରା ଅନ୍ଧ ଅନ୍ୟ ଅନ୍ଧକୁ ପଥ ଦେଖାଇଲା ଭଳି ବିପନ୍ନ ହୁଅନ୍ତି । ଭାଗବତରେ ମଧ୍ୟ ଉକ୍ତ ଅଛି—

**ନ ତେ ବିଦୁଃ ସ୍ୱାର୍ଥଗତିଂ ହି ବିଷ୍ଣୁଂ ଦୁରାଶୟା ଯେ ବହିରର୍ଥମାନିନଃ ।**
**ଅନ୍ଧା ଯଥାନ୍ଧୈରୁପନୀୟମାନାସ୍ତେଽପୀଶତନ୍ତ୍ର୍ୟା ମୁରୁଦାମ୍ନି ବଦ୍ଧାଃ ॥**

ଭା: ୭ । ୫ । ୩୧ ।

ବିଷୟାସକ୍ତ ବ୍ୟକ୍ତିମାନଙ୍କୁ ଗୁରୁପରି ଜ୍ଞାନ କଲେ ଲୋକ ଅନ୍ଧଚାଳିତ ଅନ୍ଧପରି ବିପନ୍ନ ହୁଏ । ବିଷୟୀ ଲୋକମାନେ ପ୍ରକୃତ ଗୁରୁଙ୍କୁ ଉପଦେଶକରୂପେ ଜାଣି ପାରନ୍ତି ନାହିଁ ।

ଜାତ୍ୟନ୍ଧ ଇବଜାତ୍ୟନ୍ଧୈ ର୍ନନ୍ତ୍ ଯନ୍‌ଦ୍ରଷ୍ୟସେ ନୁ କମ୍ ।

ବାଲ୍ମୀକି ରାମାୟଣ-କିଷ୍କିନ୍ଧ୍ୟା—୧୮ । ୧୬ ।

ଯେଉଁ ମନୁଷ୍ୟ ଜନ୍ମାନ୍ଧ, ସେ ଯଦି ଅନ୍ୟ କୌଣସି ଜନ୍ମାନ୍ଧ ସହିତ ପରାମର୍ଶ କରି ପଥ ଜାଣିବାକୁ ଚାହିଁବ, ପ୍ରକୃତରେ କ'ଣ ସେ ପଥ ଦେଖିପାରିବ ? ସୁତରାଂ ବିଷୟୀ ଗୃହସ୍ଥଙ୍କୁ ଗୁରୁ ଓ ଉପଦେଶକରୂପେ ବରଣ କଲେ ମନୁଷ୍ୟ ଜନ୍ମ-ମୃତ୍ୟୁବନ୍ଧନ ଦଶାରୁ ମୁକ୍ତ ହୋଇ ପାରିବ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ହୁଏ ଯେ, ମହାପଣ୍ଡିତ ଶୁକଦେବ ରାଜର୍ଷି ଜନକଙ୍କୁ କପରି ଗୁରୁ-ରୂପେ ବରଣ କରିଥିଲେ ? ଜନକ ପ୍ରକୃତରେ ଗୃହସ୍ଥ । ଏ ପ୍ରଶ୍ନର ସମାଧାନ ଏହି ଯେ ଶୁକଦେବ ଜନକଙ୍କୁ ଦୀକ୍ଷାଗୁରୁ କରି ନାହାନ୍ତି । ରାଜର୍ଷି ଜନକ ପ୍ରକୃତରେ ଶୁକଦେବଙ୍କ ନୈଷ୍ଠିକ ବ୍ରହ୍ମଚର୍ଯ୍ୟ ପରୀକ୍ଷା କରିଥିଲେ ଓ ପରେ ଭକ୍ତିସହକାରେ ତାଙ୍କୁ ଗୁରୁ ବୋଲି ପ୍ରଣାମ କରିଅଛନ୍ତି—

ସଂସାରାଡ଼ମ୍ବରମିଦଂ କଥମଭ୍ୟୁତ୍ଥିତଂ ମୁନେ ।
କଥଂ ଚ ପ୍ରଶମଂ ଯାତି କଂ ଯତ୍ କସ୍ୟ କଦା ବଦ ।।
ଏବଂ ପୃଷ୍ଟେନ ମୁନିନା ବ୍ୟାସେନାଖିଲମାତ୍ମଜେ ।
ଯଥାବଦଖିଲଂ ପ୍ରୋକ୍ତଂ ବକ୍ତବ୍ୟଂ ବିଦତାତ୍ମନା ।।
ଅଜ୍ଞାସିଷଂ ପୂର୍ବମେବମହମିତ୍ୟର୍ଥଂ ତତ୍ପିତୁଃ ।
ସ ଶୁକଃ ସ୍ୱକୟା ବୁଦ୍ଧ୍ୟା ନ ବାକ୍ୟଂ ବହୁ ମନ୍ୟତେ ।
ବ୍ୟାସୋଽପି ଭଗବାନ୍ ବୁଦ୍ଧ୍ୱା ପୁତ୍ରାଭିପ୍ରାୟମୀଦୃଶମ୍ ।
ପ୍ରତ୍ୟୁବାଚ ପୁନଃ ପୁତ୍ରଂ ନାହଂ ଜାନାମି ତତ୍ତ୍ୱତଃ ।।

ମହୋପନିଷତ୍ ୧ । ୧୫-୧୮ ।।

ଶୁକ ପ୍ରଶ୍ନ କଲେ—ହେ ମୁନେ ! ଏହି ଆଡ଼ମ୍ବରପୂର୍ଣ୍ଣ ସଂସାର କପରି ଆବିର୍ଭୂତ ହେଲା ? କେଉଁ ସମୟରେ ଓ କାହା ସାହାଯ୍ୟରେ ଏହାର ନିବୃତ୍ତି ବା କପରି ହେବ ? ଶୁକଦେବଙ୍କ ଏପରି ଜିଜ୍ଞାସା ଶୁଣି ବିଜ୍ଞ ବ୍ୟାସମୁନି ପୁତ୍ରକୁ ଯଥାଯଥଭାବରେ ଏହାର ଉତ୍ତମରୂପେ ଉପଦେଶ ଦେଲେ; କିନ୍ତୁ ଶୁକଦେବ ପୂର୍ବରୁ ଏହି ଉତ୍ତର ଜାଣିଥିଲେ । ଅତଏବ ପିତାଙ୍କ ବାକ୍ୟ ଶ୍ରଦ୍ଧା ସହିତ ଶ୍ରବଣ କଲେ ନାହିଁ । ଭଗବାନ୍ ବ୍ୟାସ ମଧ୍ୟ ପୁତ୍ରର ଏହିପ୍ରକାର ଅଭିପ୍ରାୟ ଜାଣିପାରି କହିଲେ—ପ୍ରକୃତରେ ମୁଁ ଏହି ପ୍ରଶ୍ନର ଉତ୍ତର ଯଥାର୍ଥଭାବେ ଜାଣି ନାହିଁ ।

ଜନକୋ ନାମ ଭୂପାଲୋ ବର୍ତ୍ତତେ ମିଥିଳାପୁରେ ।
ଯଥାବଦ୍ ବେତ୍ତ୍ୟସୌ ବେଦ୍ୟଂ ତସ୍ମାତ୍ ସର୍ବମବାପ୍ସ୍ୟସି ।୮।
ପିତ୍ରେତ୍ୟୁକ୍ତଃ ଶୁକଃ ପ୍ରାୟାତ୍ ସୁମେରୋର୍ବସୁଧାତଳମ୍ ।
ବିଦେହନଗରୀଂ ପ୍ରାପ ଜନକେନାଭିପାଳିତାମ୍ ॥୧୦॥
ଆବେଦିତୋଽସୌ ଯାଷ୍ଟିକୈର୍ଜନକାୟ ମହାତ୍ମନେ ।
ଦ୍ୱାରି ବ୍ୟାସସୁତୋ ରାଜନ୍ ଶୁକୋଽଏ ସ୍ଥିତବାନିତି ।୧୧॥
ଜିଜ୍ଞାସାର୍ଥଂ ଶୁକସ୍ୟାସାବାସ୍ତାମେବେତ୍ୟବଜ୍ଞୟା ।
ଉକ୍ତ୍ୱା ବଭୂବ ଜନକସ୍ତୂଷ୍ଣୀଂ ସପ୍ତଦିନାନ୍ୟଥ ।୧୨॥
ତତଃ ପ୍ରବେଶୟାମାସ ଜନକଃ ଶୁକମଙ୍ଗନେ ।
ତତ୍ରାହାନି ସ ସପ୍ତୈବ ତଥୈବାବସଦୁନ୍ମନାଃ ॥୧୩॥
ତତଃ ପ୍ରବେଶୟାମାସ ଜନକୋଽନ୍ତଃପୁରାଜିରେ ।
ରାଜା ନ ଦୃଶ୍ୟତେ ତାବଦିତ ସପ୍ତ ଦିନାନି ତମ୍ ।୧୪।

ଜନକନାମକ ରାଜା ମିଥିଳାପୁରରେ ବାସ କରନ୍ତି । ତାଙ୍କଠାରୁ ତୁମର ସକଳ ଜ୍ଞାତବ୍ୟ ଜାଣିପାରିବ···ବ୍ୟାସଙ୍କଦ୍ୱାରା ଶୁକଦେବ ଏହିପରି ଅଭିହିତ ହୋଇ ସୁମେରୁଗିରିରୁ ପୃଥିବୀକୁ ଆସି ଜନକରକ୍ଷିତ ବିଦେହନଗରୀରେ ପହଞ୍ଚିଲେ । ଯଷ୍ଟିଧାରୀ ଦ୍ୱାରପାଳମାନେ ମହାତ୍ମା ଜନକଙ୍କୁ ନିବେଦନ କଲେ—ବ୍ୟାସପୁତ୍ର ଶୁକ ଦ୍ୱାରଦେଶରେ ଅବସ୍ଥାନ କରିଛନ୍ତି । କିନ୍ତୁ ଦ୍ୱାରପାଳମାନଙ୍କଠାରୁ ଶୁଣି ଶୁକଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଅବଜ୍ଞାସହକାରେ ଜନକ କହିଲେ ଯେ, ଶୁକ ସେଠାରେ କେବଳ ଥାଆନ୍ତୁ । ଏହିପରି ରାଜା ଜନକ କହି ସାତଦିନ ପର୍ଯ୍ୟନ୍ତ ନୀରବରେ ରହିଲେ; କିନ୍ତୁ ସାତଦିନ ପରେ ରାଜା ଜନକ ଶୁକଦେବଙ୍କୁ ନିଜ ଅଙ୍ଗନରେ ପ୍ରବେଶ କରିବାନିମନ୍ତେ ଅନୁମତି ଦେଲେ । ଶୁକ କିନ୍ତୁ ଦ୍ୱାରଦେଶରେ ଥିବା ସମୟରେ ବିନ୍ଦୁ ଉନ୍ମନା ହୋଇଥିଲେ । ପରେ ଜନକଙ୍କର ଅଙ୍ଗନରେ ପ୍ରବେଶ କରିବା ପରେ ମଧ୍ୟ ଶୁକ ସାତଦିନ ପର୍ଯ୍ୟନ୍ତ ରାଜା ଜନକଙ୍କୁ ଦେଖିବାକୁ ପାଇଲେ ନାହିଁ ।

ତତୋଽନ୍ତଃପୁରଦ୍ୱାରସ୍ଥାଭିଃ କାନ୍ତାଭିଃ ଭୋଜନୈର୍ଭୋଗସଞ୍ଚୟୈଃ ।
ଜନକୋ ଲାଳୟାମାସ ଶୁକଂ ଶଶିନିଭାନନମ୍ ।୧୫।
ତେ ଭୋଗାସ୍ତାନି ଭୋଜ୍ୟାନି ବ୍ୟାସପୁତ୍ରସ୍ୟ ତନ୍ମନଃ ।
ନାଜହ୍ରୁର୍ମନ୍ଦପବନୋ ବଦ୍ଧପୀଠମିବାଚଳମ୍ ।୧୬।

କେବଲଂ ସୁସମଃ ସ୍ୱଚ୍ଛୋ ମୌନୀ ମୁଦିତମାନସଃ ।
ସମ୍ପୂର୍ଣ୍ଣ ଇବ ଶୀତାଂଶୁରତିଷ୍ଠଦମଳଃ ଶୁକଃ ॥ ୨୭ ॥
ପରିଜ୍ଞାତସ୍ୱଭାବଂ ତଂ ଶୁକଂ ସ ଜନକୋ ନୃପଃ ।
ଆନୀୟ ମୁଦିତାତ୍ମାନମବଲୋକ୍ୟ ନନାମ ହ ॥ ୨୮ ॥

ମହୋପନିଷତ୍ ॥

ସେହି ଅଙ୍ଗନରେ ଥିବା ସମୟରେ ଶୁକଙ୍କ ଉଦ୍ଦେଶ୍ୟରେ ରାଜା ଜନକ କାମୋନ୍ମତ୍ତ ସ୍ତ୍ରୀ, ସୁବର୍ଣ୍ଣାଦିପାତ୍ର ଓ ନାନାବିଧ ଭୋଜ୍ୟବସ୍ତୁ ପଠାଇଲେ । କିନ୍ତୁ ସେସବୁ ଭୋଗବିଳାସସାମଗ୍ରୀ ମନ୍ଦବାୟୁ ସୁଦୃଢ଼ ପର୍ବତତୁଲ୍ୟ ଶୁକଙ୍କ ସାଧୁମନକୁ ଚଞ୍ଚଳ କରିପାରିଲା ନାହିଁ । ସେତେବେଳେ ଶୁକଦେବ ସମଦର୍ଶୀ, ସ୍ୱଚ୍ଛ, ମୌନୀ ଓ ହୃଷ୍ଟଚିତ୍ତ ହୋଇ ନିର୍ମଳ ପୂର୍ଣ୍ଣଚନ୍ଦ୍ର ପରି ସେଠାରେ ଅବସ୍ଥାନ କରିଥିଲେ । ରାଜା ଜନକ ତାହାଙ୍କର ସ୍ୱଭାବ ଜାଣିପାରି ହୃଷ୍ଟଚିତ୍ତ ଶୁକଙ୍କୁ ନିଜ ନିକଟକୁ ଡାକି ତାହାଙ୍କୁ ପ୍ରଣାମ କଲେ, ତା'ପରେ ଶୁକଦେବଙ୍କର ପ୍ରଶ୍ନର ଉତ୍ତର ଦେଲେ—

ଭବତାପ୍ୟେଷ ଏବାର୍ଥଃ କଥିତୋ ବାଗ୍‌ବିଦାଂ ବର ।
ଏଷ ଏବ ହି ବାକ୍ୟାର୍ଥଃ ଶାସ୍ତ୍ରେଷୁ ପରିଦୃଶ୍ୟତେ ॥ ୩୩ ॥
ମନୋବିକଳ୍ପସଞ୍ଜାତଂ ତଦ୍‌ବିକଳ୍ପପରିକ୍ଷୟାତ୍ ।
କ୍ଷୀୟତେ ଦଗ୍‌ଧସଂସାରୋ ନିଃସାର ଇତି ନିଶ୍ଚିତଃ ॥ ୩୨ ॥

ମହୋପନିଷତ୍ ॥

ହେ ବାଗ୍ମିବର ! ଆପଣ ମଧ୍ୟ ସେହି କଥା କହୁଅଛନ୍ତି ଏବଂ ଶାସ୍ତ୍ରରେ ମଧ୍ୟ ଏହିପରି ବାକ୍ୟାର୍ଥ ଦୃଷ୍ଟ ହୁଏ । ଏହି ସଂସାର ମନର ବିକଳ୍ପ ବା କଳ୍ପନାରୁ ଉତ୍ପନ୍ନ; ସେହି ମନର ବିକଳ୍ପ କ୍ଷୟ ହେଲେ । ଏହି ଅସାର ସଂସାର ମଧ୍ୟ କ୍ଷୟପ୍ରାପ୍ତ ହୁଏ—ଏହା ଧ୍ରୁବସତ୍ୟ ଇତ୍ୟାଦି ।

୦—ତ୍ୟାଜ୍ୟ ଗୁରୁ ଲକ୍ଷଣ ।

ପୂର୍ବକାଳରେ ମରୁତ୍ତରାଜା ଏ ବିଷୟରେ କହିଅଛନ୍ତି—

ଗୁରୋରପ୍ୟବଲିପ୍ତସ୍ୟ କାର୍ଯ୍ୟାକାର୍ଯ୍ୟ ମଜାନତଃ ।
ଉତ୍‌ପଥ ପ୍ରତିପନ୍ନସ୍ୟ ପରିତ୍ୟାଗୋ ବିଧୀୟତେ ॥   ଦଣ୍ଡୋଭବତି ଶାଶ୍ୱତଃ

ମହାଭାଃ ଆଦ୍ୟପଃ ୧୪୨।୫୨।୩୭। ଶାନ୍ତିପଃ ୫୭।୭ ॥ ରାମାୟଣ ୨।୨୧।୧୩

ଅର୍ଥାତ୍, ଗୁରୁ ଯଦି ଗର୍ବୀତ ହୋଇ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ନ ବୁଝନ୍ତି, କିମ୍ବା ଉତ୍ପଥଗାମୀ ଓ କୁମାର୍ଗୀ, ଧର୍ମଚ୍ୟୁତ ହୁଅନ୍ତି, ସଂସାରମାର୍ଗରେ ଅଧିକ ଆସକ୍ତ ହୁଅନ୍ତି, ତାହାହେଲେ ଉକ୍ତ ଗୁରୁଙ୍କୁ ଦଣ୍ଡଯୋଗ୍ୟ ମନେକରି ପରିତ୍ୟାଗ କରିବ, * ଏହିପରି ମହାଭାରତର ଗୁରୁସ୍ଥାନରେ ଉକ୍ତ ହୋଇଅଛି । ଶାନ୍ତିପର୍ବରେ ମଧ୍ୟ ଭୀଷ୍ମ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ କହିଅଛନ୍ତି—ଗୁରୁ ଲୋକପୂଜ୍ୟ ସତ; କିନ୍ତୁ ସେମାନେ ମଧ୍ୟ ମାତ୍ରମର୍ଯ୍ୟାଦା ପାଳନ କରିବା ବିଧେୟ ।

କୋଟେଚ୍—

ସମୟତ୍ୟାଗିନୋ ଲୁବ୍ଧାନ ଗୁରୁନପି ଚ କେଶବ !
ନିହନ୍ତି ସମରେ ପାପାନ୍ କ୍ଷତ୍ରିୟୋ ଯଃ ସ ଧର୍ମବିତ୍ ।

ମହାଭା: ଶା: ୫୬।୧୬ ॥

ହେ କେଶବ ! ମର୍ଯ୍ୟାଦା, ମାତ୍ର ଓ ସଦାଚାରର ଯେଉଁମାନେ ପାଳନ କରନ୍ତି ନାହିଁ, ସେହି ଲୋଭୀ ଓ ପାପୀ ଲୋକମାନେ ଗୁରୁ ହେଲେ ମଧ୍ୟ ତାହାଙ୍କୁ ବଧ କରିଥିବା କ୍ଷତ୍ରିୟଙ୍କୁ ପ୍ରକୃତରେ ଧର୍ମଜ୍ଞ କୁହାଯାଏ । ଏ ବିଷୟରେ ଶିବଙ୍କ ଉକ୍ତି ଏହିପରି—

ସର୍ବେଷାଂ ଭୁବନେ ସତ୍ୟଂ ଜ୍ଞାନାୟ ଗୁରୁରେବ ହି ।
ଜ୍ଞାନାନ୍ମୋକ୍ଷମବାପ୍ନୋତି ତସ୍ମାତ୍ ଜ୍ଞାନଂ ପରାତ୍ପରମ୍ ॥
ଅତୋ ଯୋ ଜ୍ଞାନଦାନେ ହି ନ କ୍ଷମସ୍ତଂ ତ୍ୟଜେଦ୍ ଗୁରୁମ୍ ।
ଅନ୍ନାକାଙ୍କ୍ଷୀ ନିରନ୍ନଂ ହି ଯଥା ସଂତ୍ୟଜତି ପ୍ରିୟେ ॥
ଜ୍ଞାନଂ ତତ୍ର ସମାପ୍ନୋତି ସ ଗୁରୁଃ ଶିବ ଏବ ହି ।
ଅଜ୍ଞାନିନଂ ବର୍ଜୟିତ୍ୱା ଶରଣଂ ଜ୍ଞାନିନାଂ ବ୍ରଜେତ୍ ॥

ପ୍ରାଣତୋଷିଣୀ ତନ୍ତ୍ର ॥

---

* ଏହିପରି ଧର୍ମାଗ୍ରର ମାତ୍ର ଲଙ୍ଘନ ବିଷୟରେ ଗୁରୁ ମହିମାସ୍ୱାମୀ ଭକ୍ତମାନଙ୍କୁ ଆଦେଶ ଦେଇଅଛନ୍ତି ଯେ, ଯଦି କେହି ଧର୍ମ-ପ୍ରଚାରକ ସାଧୁ ସନ୍ନ୍ୟାସୀ ଧର୍ମାଗ୍ରର ଲଙ୍ଘନ କରି ସୁଖ-ଇଚ୍ଛାନିମନ୍ତେ ଏକତ୍ର ରହିବାକୁ ଇଚ୍ଛା କରେ ବା ସନ୍ନ୍ୟାସ-ବୃତ୍ତି ତ୍ୟାଗ କରେ, ତାହାହେଲେ ତାହାଙ୍କୁ ସେ ସ୍ଥାନରୁ ଗୁରୁଙ୍କ ଆଜ୍ଞା ଅନୁସାରେ ଅବଜ୍ଞା ସହିତ ବିତାଡ଼ିତ କରିବ ଏବଂ ଗୁରୁଙ୍କ ଆଜ୍ଞା ଭଙ୍ଗକାରୀଙ୍କୁ ହିଁ ସାଧୁ-ସନ୍ନ୍ୟାସୀରୂପେ ଗ୍ରହଣ କରିବ ନାହିଁ ।

ସର୍ବଭୁବନରେ ସତ୍ୟ ବ୍ରହ୍ମଜ୍ଞାନ କେବଳ ଗୁରୁ ବୋଲି ନିର୍ଣ୍ଣିତ ହୋଇଅଛି ; ଉକ୍ତ ବ୍ରହ୍ମଜ୍ଞାନଲାଭଦ୍ୱାରା ମୋକ୍ଷପ୍ରାପ୍ତି ହୁଏ ; ଏହି ଜ୍ଞାନ କେବଳ ସର୍ବଶ୍ରେଷ୍ଠ । ଏହି ବ୍ରହ୍ମଜ୍ଞାନ ଦାନ ବିଷୟରେ ଯେ ଅକ୍ଷମ, ସେପରି ଗୁରୁଙ୍କୁ ତ୍ୟାଗ କରିବା ଉଚିତ । ହେ ପ୍ରିୟେ ! ଯେପରି ଅନ୍ନାକାଙ୍‌କ୍ଷୀ ଅନ୍ନବିହୀନ ବ୍ୟକ୍ତିକୁ ତ୍ୟାଗ କରେ, ସେପରି ଜ୍ଞାନଦାନ ବିଷୟରେ ଯେ ଅସମର୍ଥ, ସେପରି ଗୁରୁଙ୍କୁ ତ୍ୟାଗ କରିବା ଉଚିତ । ଯେଉଁଠାରେ ବ୍ରହ୍ମଜ୍ଞାନ ଉତ୍ତମଭାବରେ ପ୍ରକାଶିତ ଥାଏ, ସେ ଶିବସଦୃଶ । ଏହିହେତୁରୁ ଅଜ୍ଞାନୀ ଗୁରୁଙ୍କୁ ବର୍ଜନ କରି ବ୍ରହ୍ମଜ୍ଞାନୀ ଗୁରୁଙ୍କର ଶରଣନେବା ବିହିତ ଅଟେ ।

ଆହୁରି ମଧ୍ୟ—

ମଧୁଲୁବ୍‌ଧୋ ଯଥା ଭୃଙ୍ଗଃ ପୁଷ୍ପାତ୍ ପୁଷ୍ପାନ୍ତରଂ ବ୍ରଜେତ ।
ଜ୍ଞାନଲୁବ୍‌ଧସ୍ତଥା ଶିଷ୍ୟୋ ଗୁରୋର୍ଗୁର୍ବନ୍ତରଂ ବ୍ରଜେତ୍ ।।
ଅତଏବ ମହେଶାନ ! ଲକ୍ଷମେକଂ ଗୁରୁଂ ତ୍ୟଜେତ୍ ।। ତନ୍ତ୍ରସାର ।।

ମଧୁଲୁବ୍‌ଧ ଭୃଙ୍ଗ ଯେପରି ଏକ ପୁଷ୍ପରୁ ମଧୁପାନ କରି ମଧୁଶେଷ ହେଲେ ଅଧିକ ମଧୁପାନ ଆଶାରେ ଅନ୍ୟ ପୁଷ୍ପକୁ ଗମନ କରେ, ଜ୍ଞାନଲୁବ୍‌ଧ ଶିଷ୍ୟ ମଧ୍ୟ ସେହିପରି ଜ୍ଞାନପିପାସୁ ହୋଇ ଏକ ଗୁରୁଙ୍କଠାରୁ ଆକାଙ୍‌କ୍ଷିତ ଜ୍ଞାନ ନ ପାଇଲେ ଅନ୍ୟ ବ୍ରହ୍ମବିତ୍ ଗୁରୁଙ୍କ ଶରଣାପନ୍ନ ହେବ । ହେ ମହେଶ୍ୱର ! ଏପରି ଅବସ୍ଥାରେ ଏକଲକ୍ଷ ଗୁରୁଙ୍କୁ ମଧ୍ୟ ପରିତ୍ୟାଗ କରାଯାଇ ପାରେ । ତଦ୍ଦ୍ୱାରା ଗୁରୁତ୍ୟାଗଜନ୍ୟ କୌଣସି ଦୋଷ ହୁଏ ନାହିଁ ।

୦—କୃତପାପରୁ ନିଷ୍କୃତି ଓ ପାପାଗ୍ରହ ତ୍ୟାଗ—

ହୃଦୟଂ ପାପକର୍ତ୍ତାନାଂ ପାପମାଖ୍ୟାତ ବୈ କୃତମ୍ ।
ଜ୍ଞାନପୂର୍ବଂ ବିନଶ୍ୟନ୍ତି ଗୂହମାନା ମହାଜନେ ।।
ଜ୍ଞାନପୂର୍ବକୃତଂ ପାପଂ ଛାଦୟତ୍ୟବହୁଶ୍ରୁତଃ ।
ନୈନଂ ମନୁଷ୍ୟାଃ ପଶ୍ୟନ୍ତି ପଶ୍ୟନ୍ତ୍ୟେବ ଦିବୌକସଃ ।।
ପାପେନାପିହିତଂ ପାପଂ ପାପମେବାନୁବର୍ତ୍ତତେ ।
ଧର୍ମେଣାପିହିତୋ ଧର୍ମୋ ଧର୍ମମେବାନୁବର୍ତ୍ତତେ ।।
ଧାର୍ମିକେଣ କୃତୋ ଧର୍ମୋ ଧର୍ମମେବାନୁବର୍ତ୍ତତେ ।
ପାପକୃତଂ ନ ସ୍ମରତୀହ ମୂଢ଼ୋ ବିବର୍ତ୍ତମାନସ୍ୟ ତଦେବ କର୍ତ୍ତୁଃ ।
ରାହୁର୍ଯଥା ଚନ୍ଦ୍ରମୁପୈତି ଚୈପିତଥାଽବୁଧଂ ପାପମୁପୈତି କର୍ମ ।।
ମହାଭା: ଶା: ୧୯୩।୨୭।୨୯ ।।

ପାପୀମାନଙ୍କର ଅନ୍ତଃକରଣ କେବଳ ସେମାନଙ୍କର କୃତ ପାପକର୍ମକୁ ପ୍ରକାଶ କରିଦିଏ, ଅର୍ଥାତ୍ ତାହାର ମୁଖ ଓ ନେତ୍ରବିକାରାଦିଦ୍ୱାରା ମନର ଭାବ ପ୍ରକାଶିତହୋଇଯାଏ । ଯେଉଁଲୋକ ସାଧୁ ମହାଜନଙ୍କ ସମୀପକୁ ଯାଇ ନିଜ ପାପକର୍ମକୁ ଗୋପନ କରି ରଖେ, ସେ ଅବଶ୍ୟ ନାଶପ୍ରାପ୍ତ ହୁଏ । ମୂର୍ଖଲୋକ କୃତ ପାପକୁ ଜାଣିକରି ଗୋପନ କରେ । ମନୁଷ୍ୟକୁ ଏହା ନ ଜଣାଗଲେ ମଧ୍ୟ ଦେବତାମାନେ ତାହା ଦେଖୁଥାନ୍ତି । ପାପଦ୍ୱାରା ଗୋପନ କରାଯାଇଥିବା ପାପକର୍ମ ପାପରହିଁ ଅନୁଗମନ କରେ ; କିନ୍ତୁ ଧର୍ମକାର୍ଯ୍ୟଦ୍ୱାରା ଗୋପନ କରାଯାଇଥିବା ଧର୍ମକାର୍ଯ୍ୟ ଧର୍ମରହିଁ ଅନୁସରଣ କରିଥାଏ । ଧର୍ମାତ୍ମାମାନଙ୍କର ଆଚରିତ ଧର୍ମକାର୍ଯ୍ୟ ଧର୍ମର ହିଁ ଅନୁସରଣ କରିଥାଏ । ଇହ ଲୋକରେ ମୂଢ଼ପୁରୁଷ ଆପଣାକୃତ ପାପକୁ ସ୍ମରଣ କରେ ନାହିଁ; ପରନ୍ତୁ ଶାସ୍ତ୍ରୀୟ ଇତିକର୍ତ୍ତବ୍ୟତା-ବିମୂଢ଼ ପୁରୁଷ ନିକଟ ସେହି ପାପ ଉପସ୍ଥିତ ହୁଏ । ଯେପରି ରାହୁ ଚନ୍ଦ୍ରମା ନିକଟକୁ ଯାଇ ତାକୁ ଗ୍ରାସ କରେ, ସେପରି ପାପକର୍ମ ମୂଢ଼ମନୁଷ୍ୟକୁ ଗ୍ରାସ କରେ ।

ଏହିହେତୁରୁ ମହିମାଧର୍ମର ଦୀକ୍ଷାନୁଷ୍ଠାନବିଧି ଏହି ଯେ, ଯେଉଁମାନେ ନିଷ୍ପାପ, ସେହିମାନେ କେବଳ ମହିମାଧର୍ମର ଉପଦେଶ ଶ୍ରବଣନିମନ୍ତେ ସୁଯୋଗ୍ୟ; କିନ୍ତୁ ଯେଉଁମାନେ ଜ୍ଞାତ ବା ଅଜ୍ଞାତସାରରେ ପାପାଚରଣ କରିଥାନ୍ତି, ସେମାନେ ପ୍ରଥମେ ସିଦ୍ଧସାଧୁ ଓ ଗୁରୁଜନଙ୍କ ସମୀପରେ ଦଣ୍ଡାୟମାନ ହୋଇ ସଙ୍କୋଚହୀନଭାବରେ ସ୍ୱକୃତ ଗୁପ୍ତପାପ ପ୍ରକାଶ କରିବେ ଏବଂ ସେଥିରୁ ନିଷ୍କୃତିଲାଭନିମନ୍ତେ ଯଥାବିଧାନ ଶପଥ ଗ୍ରହଣ କରିବେ; ଏହାଦ୍ୱାରା କେବଳ ବିଶୁଦ୍ଧାତ୍ମଜ୍ଞାନ-ଭକ୍ତିଯୋଗ ଅନୁସାରେ ପାପର ପ୍ରାୟଶ୍ଚିତ୍ତ ହୋଇ ସେହି ଲୋକ ମୁକ୍ତିପଥର ଅଧିକାରୀ ହୋଇଥାନ୍ତି ।

ଏହି ସମ୍ବନ୍ଧରେ ଶାସ୍ତ୍ରୋପଦେଶ ଏହିପରି—

**ଯଥା ଲବଣମମ୍ଭୋଭିରାପ୍ଲୁତଂ ପ୍ରବିଲୀୟତେ ।**
**ପ୍ରାୟଶ୍ଚିତ୍ତହତଂ ପାପଂ ତଥା ସଦ୍ୟଃ ପ୍ରଣଶ୍ୟତି ।।**
**ତସ୍ମାତ୍ ପାପଂ ନ ଗୂହେତ ଗୂହମାନଂ ବିବର୍ଦ୍ଧୟେତ୍ ।**
**କୃତ୍ୱା ତତ୍ ସାଧୁଷ୍ୱାଖ୍ୟେୟଂ ତତ୍ ତତ୍ ପ୍ରଶମୟନ୍ତ୍ୟୁତ ।।**

ମହାଭାଃ ଅନୁଃ ୧୬୨।୫୮।୫୯ ।।

ଜଳରେ ପ୍ଲାବିତ ଲବଣ ଯେପରି ଲୀନ ହୋଇଯାଏ, ସେହିପରି ପ୍ରାୟଶ୍ଚିତ୍ତଦ୍ୱାରା ପାପ ମଧ୍ୟ ଶୀଘ୍ର ବିନଷ୍ଟ ହୁଏ । ଅତଏବ ପାପକର୍ମ କରି ତାହା ଗୋପନ କରିବ ନାହିଁ, ଗୋପନ କଲେ ତାହା ଅଧିକ ବଢ଼େ । ପାପ କରି ମଧ୍ୟ ସାଧୁମାନଙ୍କୁ ଜ୍ଞାପନ କଲେ ସେମାନେ ତାହାର ନିରସନ ଉପାୟ ଜଣାନ୍ତି । ଏ ବିଷୟରେ ବୃହସ୍ପତି କହିଅଛନ୍ତି—

କୃତ୍ୱା ପାପାନି କର୍ମାଣି ଅଧର୍ମବଶମାଗତଃ ।
ମନସା ବିପରୀତେନ ନିରୟଂ ପ୍ରତିପଦ୍ୟତେ ॥
ମୋହାଦଧର୍ମଂ ଯଃ କୃତ୍ୱା ପୁନଃ ସମନୁତପ୍ୟତେ ।
ମନଃସମାଧିସଂଯୁକ୍ତୋ ନ ସ ସେବେତ ଦୁଷ୍କୃତମ୍ ॥
ଯଥା ଯଥା ମନସ୍ତସ୍ୟ ଦୁଷ୍କୃତଂ କର୍ମ ଗର୍ହିତେ ।
ତଥା ତଥା ଶରୀରଂ ତୁ ତେନାଧର୍ମେଣ ମୁଚ୍ୟତେ ॥

ମହାଭା: ଅନୁ: ୧୧୨।୩—୫ ।

ପୁରୁଷ ଅଧର୍ମର ବଶ ହୋଇ ପାପ କର୍ମ କରେ ଓ ଏପରି ବିପରୀତ ଜ୍ଞାନରୁ ନରକ ପ୍ରାପ୍ତ ହୁଏ । ଯେଉଁ ପୁରୁଷ ମୋହ ବା ଅଜ୍ଞାନବଶତଃ ଅଧର୍ମ କାର୍ଯ୍ୟ କରି ସେଥିନିମନ୍ତେ ଶୋକ ବା ପରିତାପ କରେ ଓ ମନକୁ ସଂଯତ ରଖିପାରେ, ସେ ପାପଫଳ ଭୋଗ କରେ ନାହିଁ । ପାପକାରୀର ମନ ଯେଉଁଭାବରେ ଦୁଷ୍କୃତ କର୍ମକୁ ନିନ୍ଦା କରେ, ସେହିଭାବରେ ସେହି ଅଧର୍ମରୁ ନିଷ୍କୃତିଲାଭ କରେ । ଏ ସମ୍ବନ୍ଧରେ ମନୁ କହି ଅଛନ୍ତି—

କୃତ୍ୱା ପାପଂ ହି ସନ୍ତପ୍ୟ ତସ୍ମାତ୍ ପାପାତ୍ ପ୍ରମୁଚ୍ୟତେ ।
ନୈବଂ କୁର୍ଯ୍ୟାଂ ପୁନରିତି ନିବୃତ୍ତ୍ୟା ପୂୟତେ ତୁ ସଃ ॥
ଅଜ୍ଞାନାତ୍ ଯଦି ବା ଜ୍ଞାନାତ୍ କୃତ୍ୱା କର୍ମ ବିଗର୍ହିତମ୍ ।
ତସ୍ମାଦ୍ ବିମୁକ୍ତିମନ୍ୱିଚ୍ଛନ୍ ଦ୍ୱିତୀୟଂ ନ ସମାଚରେତ୍ ॥

ମନୁ—୧୧।୨୩୧।୨୩୩ ।

ପାପ କରି ମଧ୍ୟ ସେଥିନିମନ୍ତେ ସନ୍ତାପ କଲେ ସେହି ପାପରୁ ମନୁଷ୍ୟ ମୁକ୍ତ ହୁଏ । ପୁଣି କଦାପି ଏପରି କର୍ମ କରିବି ନାହିଁ—ଏହିପରି ପ୍ରତିଜ୍ଞା କରି ସେଥିରୁ ନିବୃତ୍ତ ହେଲେ ସେ ପବିତ୍ର ହୁଏ । କୌଣସି ବ୍ୟକ୍ତି ଜ୍ଞାନ ବା ଅଜ୍ଞାନପୂର୍ବକ ପାପାଚରଣ କରି ସେଥିରୁ ମୁକ୍ତିଲାଭ କରିବାକୁ ଇଚ୍ଛା କଲେ ସେ ପୁନର୍ବାର ତାହା ନ କରିବାକୁ ପ୍ରତିଜ୍ଞା କରିବେ ।

ପାପଂ ଚ ପୁରୁଷଃ କୃତ୍ୱା କଲ୍ୟାଣମଭିପଦ୍ୟତେ ।
ମୁଚ୍ୟତେ ସର୍ବପାପେଭ୍ୟୋ ମହାଭ୍ରେଣେବ ଚନ୍ଦ୍ରମାଃ ॥
ଯଥାଦିତ୍ୟଃ ସମୁଦ୍ୟନ୍ ବୈ ତମଃ ପୂର୍ବଂ ବ୍ୟପୋହତି ।
ଏବଂ କଲ୍ୟାଣମାତିଷ୍ଠନ୍ ସର୍ବପାପୈଃ ପ୍ରମୁଚ୍ୟତେ ॥

ମହାଭା: ବନ: ୧୭୫।୫୫—୫୬ ।

ଯଦ୍ଦି କୌଣସି ବ୍ୟକ୍ତି ଆଗ ପାପ କରି ପଛେ ମଙ୍ଗଳ କାର୍ଯ୍ୟ ଅନୁସରଣ କରେ, ତେବେ ମହା-ମେଘକର୍ତ୍ତୃକ ବିମୁକ୍ତ ଚନ୍ଦ୍ରଙ୍କ ପରି ସେ ସମୁଦାୟ ପାପରୁ ବିମୁକ୍ତ ହୁଏ । ସୂର୍ଯ୍ୟୋଦୟ ସମୟରେ ଯେପରି ଅନ୍ଧକାର ତିରୋହିତ ହୁଏ, ସେହିପରି ପାପକାର୍ଯ୍ୟ ପରେ କଲ୍ୟାଣକର ଶୁଭ କର୍ମ ଆଚରଣ କଲେ ସକଳ ପାପରୁ ମୁକ୍ତିଲାଭ କରେ ।

୦—କାୟ ମନୋବାକ୍ୟରେ ପାପାଚାର ବର୍ଜନ—

ଯୁଧିଷ୍ଠିର କହିଲେ—

କିଂ କର୍ତ୍ତବ୍ୟଂ ମନୁଷ୍ୟେଣ ଲୋକଯାତ୍ରା ହିତାର୍ଥିନା ।
କଥଂ ବୈ ଲୋକଯାତ୍ରାଂ ତୁ କିଂଶୀଲଶ୍ଚ ସମାଚରେତ୍ ॥

ଭୀଷ୍ମ କହିଲେ—

କାୟେନ ତ୍ରିବିଧଂ କର୍ମ ବାଚା ଚାପି ଚତୁର୍ବିଧମ୍ ।
ମନସା ତ୍ରିବିଧଂ ଚୈବ ଦଶ କର୍ମପଥାଂସ୍ତ୍ୟଜେତ୍ ॥
ପ୍ରାଣାତିପାତଃ ସ୍ତୈନ୍ୟଂ ଚ ପରଦାରାନଥାପି ଚ ।
ତ୍ରୀଣି ପାପାନି କାୟେନ ସର୍ବତଃ ପରିବର୍ଜୟେତ୍ ॥
ଅସତ୍ପ୍ରଳାପଂ ପାରୁଷ୍ୟଂ ପୈଶୁନ୍ୟମନୃତଂ ତଥା ।
ଚତ୍ୱାରି ବାଚା ରାଜେନ୍ଦ୍ର ନ ଜଳ୍ପେନ୍ନାନୁଚିନ୍ତୟେତ୍ ॥
ଅନଭିଧ୍ୟା ପରସ୍ୱେଷୁ ସର୍ବସତ୍ତ୍ୱେଷୁ ସୌହୃଦମ୍ ।
କର୍ମଣାଂ ଫଳମସ୍ତୀତି ତ୍ରିବିଧଂ ମନସା ଚରେତ୍ ॥
ତସ୍ମାଦ୍ ବାକ୍କାୟମନସା ନାଚରେଦଶୁଭଂ ନରଃ ।
ଶୁଭାଶୁଭାନ୍ୟାଚରନ୍ ହି ତସ୍ୟ ତସ୍ୟାଶ୍ନୁତେ ଫଳମ୍ ॥

ମହାଭା: ଅନୁ: ୧୩।୧୬ ।

ମହାରାଜା ଯୁଧିଷ୍ଠିର ପଚାରିଲେ—ଲୋକଯାତ୍ରାହିତାର୍ଥୀ, ଅର୍ଥାତ୍ ଐହିକ ଶିଷ୍ଟ ବ୍ୟବହାର ଓ ପାରତ୍ରିକ କଲ୍ୟାଣ-ଇଚ୍ଛୁକ ହିତୈଷୀ ମନୁଷ୍ୟର ଏ ବିଷୟରେ କ'ଣ କରିବା ଓ କିପରି ସ୍ୱଭାବଯୁକ୍ତ ହୋଇ ଲୋକଯାତ୍ରା ନିର୍ବାହ କରିବା ଉଚିତ ? ଭୀଷ୍ମ କହୁଛନ୍ତି—ତ୍ରିବିଧ ଶାରୀରିକ କର୍ମ, ଚତୁର୍ବିଧ ବାଚନିକ ଓ ତ୍ରିବିଧ ମାନସିକ—ଏପରି ଦଶପ୍ରକାର କର୍ମ ପରିତ୍ୟାଗ କରିବାକୁ ହେବ । ପ୍ରାଣିହିଂସା, ଚୌର୍ଯ୍ୟ ଓ ପରସ୍ତ୍ରୀ-ହରଣ—ଏହି ତ୍ରିବିଧ ଶାରୀରିକ ପାପକର୍ମ ପରିତ୍ୟାଗ

କରିବା ନିତାନ୍ତ ଆବଶ୍ୟକ । ହେ ସୁରେନ୍ଦ୍ର ! ଗ୍ରାମ୍ୟ ସୁଖବାର୍ତ୍ତା, ନିଷ୍ଠୁର ବଚନ, ସୁଜଦ୍ୱାରରେ ପରର ଦୋଷ ପ୍ରକଟ କରିବା ଓ ଅସତ୍‌ପ୍ରଳାପ ବା ମିଥ୍ୟା, ଅର୍ଥାତ୍ ଅନ୍ୟକୁ ପୀଡ଼ା ଦେବା ଉଦ୍ଦେଶ୍ୟରେ ମିଥ୍ୟାବଚନ—ଏହି ଷ୍ଟର ପ୍ରକାର ପାପକୁ କଳ୍ପନା ଓ ଚିନ୍ତା ମଧ୍ୟ କରିବ ନାହିଁ । ପର ଧନର ଚିନ୍ତା ଓ ଅନ୍ୟର ଅନିଷ୍ଟ ଚିନ୍ତା କରିବା ଓ ଶାସ୍ତ୍ରାଳାପ ବିଷୟରେ ନାସ୍ତିକତା—ଏହି ତ୍ରିବିଧ ପାପକର୍ମକୁ ମନରୁ ପରିତ୍ୟାଗ କରିବା ବିଧେୟ । ପରସ୍ୱ ବିଷୟରେ ଚିନ୍ତା ନ କରିବା, ସର୍ବଜୀବରେ ସଦ୍ଭାବ ଓ କର୍ମଫଳ ବିଷୟରେ ବିଶ୍ୱାସ—ଏହି ତିନିପ୍ରକାର ବିଷୟ ଆଚରଣ କରିବ । ଏହିପରି ମନୁଷ୍ୟ ଶରୀର, ବଚନ ଓ ମନଦ୍ୱାରା ମଧ୍ୟ ଅଶୁଭ ଆଚରଣ କରିବ ନାହିଁ ; ଶୁଭ ବା ଅଶୁଭ କର୍ମ କଲେ ତାହାର ଫଳ ଭୋଗ କରିବାକୁ ହୁଏ ।

## ୦—ପାପାଚାରୀ ନରକଗାମୀ ଅଳ୍ପାୟୁ ହୋଇ ଜନ୍ମଗ୍ରହଣ କରେ—

ଶିବ କହିଲେ—

ପାପେନ କର୍ମଣା ଦେବ ! ବଧ୍ୟୋ ହିଂସାରତିର୍ନରଃ ।
ଅପ୍ରିୟଃ ସର୍ବଭୂତାନାଂ ହୀନାୟୁରୁପଜାୟତେ ॥
ନରକଂ ଯାତି ହିଂସାତ୍ମା ଯାତି ସ୍ୱର୍ଗମହିଂସକଃ ।
ଯାତନାଂ ନରକେ ରୌଦ୍ରାଂ ସକୃଚ୍ଛ୍ରାଂ ଲଭତେ ନରଃ ॥
ଯଃ କଶ୍ଚିନ୍ନିରୟାତ୍ତସ୍ମାତ୍‌ସମୁତ୍ତରତି କର୍ହିଚିତ୍ ।
ମାନୁଷ୍ୟଂ ଲଭତେ ଚାପି ହୀନାୟୁସ୍ତତ୍ର ଜାୟତେ ॥

ମହାଭା: ଅନୁ: ୧୪୪।୫୧—୫୪ ।

ଈଶ୍ୱର କହୁଅଛନ୍ତି—ହେ ଦେବି ! ମନୁଷ୍ୟ ପାପକର୍ମଦ୍ୱାରା ହିଂସାରେ ଆସକ୍ତ ହେଲେ ସ୍ୱୟଂ ବଧ୍ୟ ହୁଏ ଓ ପ୍ରାଣୀମାନଙ୍କର ଅପ୍ରିୟ ହୋଇ ଅଳ୍ପାୟୁ ହୁଏ । ହିଂସକ ମନୁଷ୍ୟ ନରକ ଗମନ କରେ ଏବଂ ଅହିଂସକ ପୁରୁଷ ସ୍ୱର୍ଗକୁ ଗମନ କରେ । ନରକରେ ପଡ଼ି ମନୁଷ୍ୟ ଘୋର କଷ୍ଟଯୁକ୍ତ ଯାତନା ଭୋଗ କରେ । ଯଦିବା କେହି କଦାଚିତ୍ ସେହି ନରକରୁ ନିସ୍ତାର ଲାଭ କରେ, ତଥାପି ଜନ୍ମଲାଭ କଲା ପରେ ମଧ୍ୟ ହୀନାୟୁ ହୁଏ ।

ଅଷ୍ଟାବକ୍ର କହିଛନ୍ତି—

ପରଦାରାନହଂ ଭଦ୍ରେ ନ ଗଚ୍ଛେୟଂ କଥଂ ଚନ ।
ଦୂଷିତଂ ଧର୍ମଶାସ୍ତ୍ରଜ୍ଞୈଃ ପରଦାରାଭିମର୍ଶନମ୍ ॥

ମହାଭା: ଅନୁ: ୧୯—୮୮ ।

ଅଷ୍ଟାବକ୍ର କହିଲେ—ହେ ଭଦ୍ରେ ! ମୁଁ କଦାପି ପରସ୍ତ୍ରୀ ଗମନ କରିନାହିଁ । ଧର୍ମଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କଦ୍ୱାରା ପରଦାରାଭିଗମନ ଘୋର ପାପ ବୋଲି ବର୍ଣ୍ଣିତ ହୋଇଅଛି ।

ପରଦାରା ନ ଗନ୍ତବ୍ୟାଃ ସର୍ବବର୍ଣ୍ଣେଷୁ କର୍ହିଚିତ୍ ।
ନହୀଦୃଶମନାୟୁଷ୍ୟଂ ଲୋକେ କିଞ୍ଚନ ବିଦ୍ୟତେ ॥
ଯାଦୃଶଂ ପୁରୁଷସ୍ୟେହ ପରଦାରୋପସେବନମ୍ ।
ଯାବନ୍ତୋ ରୋମକୂପାଃ ସ୍ୟୁଃ ସ୍ତ୍ରୀଣାଂ ଗାତ୍ରେଷୁ ନିର୍ମିତାଃ ॥
ତାବଦ୍ୱର୍ଷସହସ୍ରାଣି ନରକଂ ପର୍ଯ୍ୟୁପାସତେ ॥

ମହାଭା: ଅ: ୧୦୪।୨୦—୨୨ ।

ଯେ କୌଣସି ବର୍ଣ୍ଣର ସ୍ତ୍ରୀ ହେଲେ ମଧ୍ୟ ପରଦାର-ଗମନ ସର୍ବଥା ଅନୁଚିତ । ପର-ସ୍ତ୍ରୀ ଗମନ ମନୁଷ୍ୟର ଯେପରି ଆୟୁଷନାଶକ, ସେପରି ଅନ୍ୟ କୌଣସି ପାପ ନାହିଁ । ସ୍ତ୍ରୀ-ଶରୀରରେ ଯେତେ ଲୋମ ଥାଏ, ପର-ସ୍ତ୍ରୀଗାମୀ ପୁରୁଷ ସେତେ ସହସ୍ର ବର୍ଷ ପର୍ଯ୍ୟନ୍ତ ନରକରେ ବାସ କରେ । *

ଗୁର୍ବର୍ଥମଭୟାର୍ଥଂ ବା ବର୍ଜୟିତ୍ୱା ଯୁଧିଷ୍ଠିର ।
ଯେଽନୃତଂ କଥୟନ୍ତ୍ୟସ୍ମ ତେ ବୈ ନିରୟଗାମିନଃ ॥
ପରଦାରାଭିହର୍ତ୍ତାରଃ ପରଦାରାଭିମର୍ଷିଣଃ ।
ପରଦାରପ୍ରୟୋକ୍ତାରସ୍ତେ ବୈ ନିରୟଗାମିନଃ ॥
ଯେ ପରସ୍ୱାପହର୍ତ୍ତାରଃ ପରସ୍ୱାନାଂ ଚ ନାଶକାଃ ।
ସୂଚକାଶ୍ଚ ପରେଷାଂ ଯେ ତେ ବୈ ନିରୟଗାମିନଃ ॥

ମହାଭା: ଅନୁ: ୨୩।୬୦—୬୨ ।

ହେ ଯୁଧିଷ୍ଠିର ! ଗୁରୁଙ୍କ ବିଷୟ ବା ଅଭୟଦାନ—ଏହି ଦୁଇପ୍ରକାର ପ୍ରୟୋଜନ ଛଡ଼ା ଅନ୍ୟ ବିଷୟରେ ଯଦି ଲୋକ ମିଥ୍ୟା କହେ, ତେବେ ସେ ନରକଗାମୀ ହୁଏ । ଯେ ପର-ସ୍ତ୍ରୀ ହରଣ

* ଏହି ସମ୍ବନ୍ଧରେ ବୁଦ୍ଧଦେବଙ୍କ ଉକ୍ତି—

ଚତ୍ତାରି ଠାନାନି ନରୋ ପମତ୍ତୋ ଆପଜ୍ଜତି ପରଦାରୂପସେବୀ ।
ଅପୁଞ୍ଞଲାଭଂ ନନିକାମସେୟ୍ୟଂ ନିନ୍ଦଂ ତତୀୟଂ ନିରୟଂ ଚତୁତ୍ଥଂ ॥

ନିରୟବଗ୍ଗୋ—ଧମ୍ମପଦ ।

କରେ ବା ପର-ସ୍ତ୍ରୀ ଗମନ କରେ, ଅଥବା ପର-ସ୍ତ୍ରୀ ହରଣ କାର୍ଯ୍ୟରେ ସାହାଯ୍ୟ କରେ, ସେ ଅବଶ୍ୟ ନରକଗାମୀ ହୁଏ । ଯେ ପରସ୍ୱାପହାରୀ ବା ପରଧନ ନାଶ କରେ ଏବଂ ଯେଉଁ ଲୋକ ପରର ଦୋଷ ଦର୍ଶାଇବା ବିଷୟରେ ଅଗ୍ରଣୀ, ସେ ସମସ୍ତ ଲୋକ ନରକଗାମୀ ହୁଅନ୍ତି ।

୦—ପାପ କର୍ମର ସାକ୍ଷୀ ।

କୁର୍ବାଣଂ ହି ନରଂ କର୍ମ ପାପଂ ରହସି ସର୍ବଦା ।
ପଶ୍ୟନ୍ତି ଋତବଶ୍ଚାପି ତଥା ଦିନନିଶେସ୍ୟୁତ । ମହା: ଅନୁ: ୪୩—୭ ।

ପାପୀ ମନୁଷ୍ୟ ସର୍ବଦା ନିର୍ଜନ ସ୍ଥାନରେ ପାପାଚରଣ କରେ ; ମନୁଷ୍ୟ ସଦା ନିର୍ଜନ ସ୍ଥାନରେ ପାପ ଆଚରଣ କଲେ ସୁଦ୍ଧା ଋତୁ ଓ ଦିବସ-ରାତ୍ରି ଏହାର ସାକ୍ଷୀସ୍ୱରୂପ ସକଳ କର୍ମ ଦେଖୁଥାନ୍ତି ।

ପାପଂ କୁର୍ବନ୍ ପାପକୀର୍ତ୍ତିଃ ପାପମେବାଶ୍ନୁତେ ଫଳମ୍ ।
ପୁଣ୍ୟଂ କୁର୍ବନ୍ ପୁଣ୍ୟକୀର୍ତ୍ତିଃ ପୁଣ୍ୟମତ୍ୟନ୍ତମଶ୍ନୁତେ ॥
ତସ୍ମାତ୍ ପାପଂ ନ କୁର୍ବୀତ ପୁରୁଷଃ ସଂଶିତବ୍ରତଃ ।
ପାପଂ ପ୍ରଜ୍ଞାଂ ନାଶୟତି କ୍ରିୟମାଣଂ ପୁନଃ ପୁନଃ ॥
ନଷ୍ଟପ୍ରଜ୍ଞଃ ପାପମେବ ନିତ୍ୟମାରଭତେ ନରଃ ।
ପୁଣ୍ୟଂ ପ୍ରଜ୍ଞାଂ ବର୍ଦ୍ଧୟତି କ୍ରିୟମାଣଂ ପୁନଃ ପୁନଃ ।
ବୃଦ୍ଧପ୍ରଜ୍ଞଃ ପୁଣ୍ୟମେବ ନିତ୍ୟମାରଭତେ ନରଃ ॥
ପୁଣ୍ୟଂ କୁର୍ବନ୍ ପୁଣ୍ୟକୀର୍ତ୍ତିଃ ପୁଣ୍ୟଂ ସ୍ଥାନଂ ସ ଗଚ୍ଛତି ।
ତସ୍ମାତ୍ ପୁଣ୍ୟଂ ନିଷେବେତ ପୁରୁଷଃ ସୁସମାହିତଃ ॥

ମହାଭା: ଉ: ୩୫।୬୩।୬୬ ॥

ପାପାତ୍ମାର ବ୍ୟକ୍ତି ପାପାଚରଣ କରି ତା'ର ଫଳ ଭୋଗ କରେ ଓ ପୁଣ୍ୟବାନ୍ ବ୍ୟକ୍ତି ପବିତ୍ର କର୍ମ କରି ପୁଣ୍ୟର ଫଳ ଭୋଗ କରେ । ଅତଏବ ମନୁଷ୍ୟ ପୁଣ୍ୟକର୍ମରେ ଦୃଢ଼ ରହି ପାପାଚରଣ କରିବେ ନାହିଁ । କାରଣ, ବାରମ୍ବାର ପାପାନୁଷ୍ଠାନଦ୍ୱାରା ଧର୍ମବୁଦ୍ଧି ବିନଷ୍ଟ ହୁଏ ଓ ତଦ୍ଦ୍ୱାରା ମନୁଷ୍ୟର ପାପାଚରଣନିମନ୍ତେ ସର୍ବଦା ପ୍ରବୃତ୍ତି ହୁଏ । ବାରମ୍ବାର ପୁଣ୍ୟା-

ଅର୍ଥାତ୍ ପରଦାରସେବୀ ପ୍ରମତ୍ତ ନର ଅପୁଣ୍ୟ, ଅଶାନ୍ତି, ନିନ୍ଦା ଓ ନରକ—ଏହି ଚତୁର୍ବିଧ ଦଶା ପ୍ରାପ୍ତ ହୁଏ । ଅତଏବ "ଉତ୍ସାନ୍ନରେ ପରଦାରେ ନ ସେବେ" । ପ୍ରବୁଦ୍ଧ ଗୁରୁ ମହିମାସ୍ୱାମୀଙ୍କ ବଚନ ଅନୁସାରେ ପରଦାରଗମନ ମହାଘୋରକାନ୍ତ ପାପ ଅଟେ ।

ଚରଣଦ୍ୱାରା ମନୁଷ୍ୟର ଧର୍ମ ପରିବର୍ଦ୍ଧିତ ହୁଏ; ଧର୍ମବୁଦ୍ଧି ବୃଦ୍ଧି ହେଲେ ମନୁଷ୍ୟ ପ୍ରତିଦିନ ପୁଣ୍ୟାନୁଷ୍ଠାନରେ ପ୍ରବୃତ୍ତ ହୁଏ । ପୁଣ୍ୟକୀର୍ତ୍ତି ବ୍ୟକ୍ତି ପବିତ୍ର କାର୍ଯ୍ୟ କରି ପୁଣ୍ୟସ୍ଥାନକୁ ଗମନ କରନ୍ତି । ଅତଏବ ମନୁଷ୍ୟ ଏକାଗ୍ରଚିତ୍ତ ହୋଇ ପୁଣ୍ୟକର୍ମାନୁଷ୍ଠାନ କରିବେ ।

## ୦—ପାପବିମୋଚନନିମନ୍ତେ ପ୍ରଭୁଙ୍କଠାରେ ପ୍ରାର୍ଥନା ॥ *

ଗୁରୁ ମହିମାସ୍ୱାମୀଙ୍କ ଆଦେଶ ଏହି ଯେ, ଯଦି କୌଣସି ବ୍ୟକ୍ତି କୌଣସିପ୍ରକାର ପାପାଚରଣ କରିଥାନ୍ତି, ତେବେ ସେ ମହିମାଧର୍ମର ଉପଦେଶ ଗ୍ରହଣ ସମୟରେ ସେହି ପାପକାର୍ଯ୍ୟ ସିଦ୍ଧ ସାଧୁଙ୍କ ସମ୍ମୁଖରେ ପ୍ରକାଶ କରି ଉପଦେଶ ଗ୍ରହଣ କରିବେ ଏବଂ କୃତପାପର

---

* ଅନ୍ୟ ଧର୍ମର ଶାସ୍ତ୍ରରେ ମଧ୍ୟ ଏହିପରି ଦେଖାଯାଏ—

When you have faults, do not fear to abandon them.
( Chinese Scripture—VII-4 )

ଅର୍ଥାତ୍—ତୁମର ଯେଉଁ ସକଳ ଦୋଷ ଅଛି, ତାହା ପରିହାର କରିବାକୁ ଭୀତ ହୁଅ ନାହିଁ ।

All that I ought to have thought and have not thought and have not spoken, all that I ought to have done and have not done, pardon. I repent with patience. All that I ought not to have thought and yet have thought, all that I ought not have spoken and yet have spoken, all that I ought not to have done and yet have done, Parden, I repent with patent. All and every kind of sin which men have committed because of me, or which 1 have committed because of men, Parden, I regret with patent. (Khorda—X VI—24-26-Advesta).

ଯେଉଁ ବିଷୟରେ ମୋର ଚିନ୍ତା କରିବା ଉଚିତ ଥିଲା, ଅଥଚ ମୁଁ କରିନାହିଁ, ଯାହା ମୋର କହିବା ଉଚିତ ଥିଲା, ଅଥଚ ମୁଁ କହିନାହିଁ, ଯାହା ମୋର କରିବା ଉଚିତ ଥିଲା ଅଥଚ ମୁଁ କରିନାହିଁ—ସେ ସମସ୍ତ କ୍ଷମା କର, ମୁଁ ଭୂମିଷ୍ଠ ପ୍ରଣାମସହକାରେ ଅନୁତାପ କରୁଅଛି । ଯାହା ମୋର ଚିନ୍ତା କରିବା ଅନୁଚିତ ଥିଲା, ଅଥଚ ମୁଁ କରିଅଛି, ଯାହା ମୋର କହିବା ଅନୁଚିତ ଥିଲା ଅଥଚ କହିଅଛି, ଯାହା ମୋର କରିବା ଅନୁଚିତ ଥିଲା, ଅଥଚ ମୁଁ କରିଅଛି, ସେ ସମସ୍ତ କ୍ଷମା କର, ମୁଁ ଭୂମିଷ୍ଠ ହୋଇ ଅନୁତାପ କରୁଅଛି । ଯେତେ ପ୍ରକାର ପାପ ଲୋକମାନେ ମୋ ନିମନ୍ତେ କରିଅଛନ୍ତି, ଅଥବା ମୁଁ ଲୋକମାନଙ୍କ ନିମନ୍ତେ କରିଅଛି, ସେ ସମସ୍ତ କ୍ଷମା କର, ମୁଁ ଭୂମିଷ୍ଠସହକାରେ ଅନୁତାପ କରୁଅଛି ।

କ୍ଷମା ନିମନ୍ତେ ଶରଣଦର୍ଶନ ସମୟରେ ସତତ ପ୍ରଭୁଙ୍କଠାରେ ଏହିପରି ପ୍ରାର୍ଥନା କରିବେ— "ହେ ପ୍ରଭୁ ମହିମାମୟ ଅଲେଖବ୍ରହ୍ମ ! ଆପଣ ବିଶ୍ୱବିଧାୟକ, ସର୍ବାଶ୍ରୟ, ସର୍ବାନ୍ତର୍ଯାମୀ ଓ ସର୍ବଶକ୍ତିମାନ୍; ଆପଣଙ୍କୁ ମୁଁ ନ ଜାଣିପାରି କାୟମନୋବାକ୍ୟରେ ଯେଉଁ ସକଳ ପାପକର୍ମ କରିଅଛି, ସେଥିନିମନ୍ତେ ଅନୁତାପ କରି ମୁଁ ଆପଣଙ୍କ ଅଭୟପଦରେ କାୟବାକ୍ୟମନ ସହିତ ଶରଣାପନ୍ନ ହେଉଅଛି । ପ୍ରଭୋ, ମୋର ଅଜ୍ଞାନକୃତ ସକଳ ପାପ କ୍ଷମା କରି ମୋତେ ପବିତ୍ର କରନ୍ତୁ, ମୁଁ ଯେପରି ପୁନର୍ବାର କୌଣସି ପାପାଚରଣରେ ପ୍ରବୃତ୍ତ ନ ହୁଏ, ସେଥିନିମନ୍ତେ ଆପଣଙ୍କଠାରେ ଦୃଢ଼ପ୍ରତିଜ୍ଞ ହୋଇ, ବାରମ୍ବାର ପ୍ରାର୍ଥନା କରୁଅଛି । ହେ ସର୍ବଦ୍ରଷ୍ଟା, ସର୍ବସାକ୍ଷୀପରମାତ୍ମନ୍ ! ଆପଣଙ୍କଠାରେ ମୋର ପ୍ରତିଜ୍ଞା ଦୃଢ଼ ହୋଇ ରହୁ; ମୁଁ ଯେପରି ଆଜୀବନ କଲ୍ୟାଣପଥରେ ଗମନ କରିପାରିବି, ସେଥିନିମନ୍ତେ ଆପଣ ମୋତେ ବିଶୁଦ୍ଧାତ୍ମ-ଜ୍ଞାନଭକ୍ତି ପ୍ରାପ୍ତ କରାନ୍ତୁ ।"

ବେଦରେ ମଧ୍ୟ ଏହିପରି ଉକ୍ତ ଅଛି—

ଯଦ୍‌ଗ୍ରାମେ ଯଦରଣ୍ୟେ ଯତ୍‌ସଭାୟାଂ ଯଦିନ୍ଦ୍ରିୟେ ॥
ଯଚ୍ଛୂଦ୍ରେ ଯଦାର୍ଯ୍ୟେ
ଯଦେନଶ୍ଚକୃମା ବୟଂ ଯଦେକସ୍ୟାଧି ଧର୍ମଣି ତସ୍ୟାଭୟଜନମସି ॥

ଯଜୁଃ ସଂ—୨୦।୧୭ ।

ହେ ପରମାତ୍ମନ୍ ! ଆମ୍ଭେମାନେ ଯେଉଁ ପାପ ଗ୍ରାମରେ ଅର୍ଥାତ୍ ସଙ୍ଗଦୋଷରୁ, ଯେଉଁ ପାପ ଅରଣ୍ୟରେ, ଅର୍ଥାତ୍ ଏକାନ୍ତରେ, ଯେଉଁ ପାପ ସଭାରେ ଓ ଯେଉଁ ଅପରାଧ—(ପରସ୍ତ୍ରୀ ଦର୍ଶନାଦି) ଚିତ୍ତରେ ଓ ଚକ୍ଷୁଆଦି ଇନ୍ଦ୍ରିୟରେ ଅଥବା ଯେଉଁ ପାପ ଶୂଦ୍ର ଓ ଆର୍ଯ୍ୟପ୍ରତି କରିଅଛୁଁ ଓ ଯେଉଁ ଅପରାଧ ଆମ୍ଭେ କୌଣସି ପୁରୁଷର ଅନୁଷ୍ଠିତ ଧର୍ମର ଭଙ୍ଗ ଓ ସ୍ୱକର୍ତ୍ତବ୍ୟ ପାଳନର ଭଙ୍ଗଦ୍ୱାରା କରିଅଛୁ, ସେହି ଅପରାଧସମୂହ ଆପଣ କେବଳ ବିନଷ୍ଟ କରିବାକୁ ସମର୍ଥ ଅଟନ୍ତି ।

**ତ୍ୱଂ ହି ବିଶ୍ୱତୋମୁଖ ବିଶ୍ୱତଃ ପରିଭୂରସି ।**
**ଅପନଃ ଶୋଶୁଚଦଘମ୍ ॥** ଋକ୍ ସଂ—୧।୯୭।୬ ।

ଅଥର୍ବ: ୪ ସୂ: ୩୩ ମ: ୬ ।

ହେ ସର୍ବବ୍ୟାପକ ପରମାତ୍ମନ୍ ! ଆପଣ ସବୁପ୍ରକାରେ ସର୍ବବ୍ୟାପକ ଓ ସମସ୍ତଙ୍କ ଅପେକ୍ଷା ପରମ ଶକ୍ତିଶାଳୀ ଅଟନ୍ତି; ଏହିହେତୁରୁ ଆପଣ ଆମ୍ଭମାନଙ୍କର ପାପ ଦୂର କରନ୍ତୁ ।

ଦ୍ୱିଷୋ ନୋ ବିଶ୍ୱତୋ ମୁଖ ନାବେବ ପାରୟ ।
ଅପନଃ ଶୋଶୁଚଦଘମ୍ ।। ଋକ୍ ସଂ—୧।୯୭।୭ ॥
ଅଥର୍ବ—୪। ୩୩ । ୭ ॥

ହେ ସର୍ବବ୍ୟାପକ ସର୍ବୋପଦେଷ୍ଟା ପରମାତ୍ମନ୍ ! ଯେପରି ନୌକାଦ୍ୱାରା ସମୁଦ୍ର ପାର ହେବାକୁ ହୁଏ, ସେହିପରି ଆମ୍ଭମାନଙ୍କୁ କାମ କ୍ରୋଧ ଆଦି ଅନ୍ତଃଶତ୍ରୁମାନଙ୍କଠାରୁ ରକ୍ଷା କରନ୍ତୁ ଓ ଆମ୍ଭର ପାପ ଦୂର କରନ୍ତୁ ।

ସନଃ ସିନ୍ଧୁମିବ ନାବାତ ବର୍ଷା ସ୍ୱସ୍ତୟେ ।
ଅପନଃ ଶୋଶୁଚଦଘମ୍ ॥ ଋକ୍ ସଂ—୧।୯୭।୮ ॥ ଅଥର୍ବ—୪।୩୩।୮ ॥

ସେହି (ପରମାତ୍ମା) ନାବସ୍ୱରୂପ ହୋଇ ଏହି ଭବସାଗରରୁ ପାର କରି ଆମ୍ଭମାନଙ୍କୁ ସୁଖସମୃଦ୍ଧି ଦାନ କରନ୍ତୁ ଓ ଆମ୍ଭମାନଙ୍କର ପାପ ଦୂର କରନ୍ତୁ ।

ଯତ୍କଲ୍ୟାଣମଭିଧ୍ୟାୟେତ୍ ତତ୍ରାତ୍ମାନଂ ନିୟୋଜୟେତ୍ ।
ନ ପାପେ ପ୍ରତିପାପଃ ସ୍ୟାତ୍ ସାଧୁରେବ ସଦା ଭବେତ୍ ।।
ମହାଭା: ବନ—୧୭୫।୪୩।୪୪ ॥

ସଂସାରରେ ଯାହା କଲ୍ୟାଣକାରକ, ସେଥିରେ ନିଜକୁ ନିୟୋଜିତ କରିବ । ପାପାତ୍ମର ବ୍ୟକ୍ତିପ୍ରତି ପାପାଚରଣ କରିବ ନାହିଁ ଓ ସର୍ବଦା ସାଧୁଭାବରେ ଜୀବନଯାପନ କରିବ ।

ଯଦା ନ କୁରୁତେ ଭାବଂ ସର୍ବଭୂତେଷୁ ପାପକମ୍ ।
କର୍ମଣା ମନସା ବାଚା ବ୍ରହ୍ମ ସଂପଦ୍ୟତେ ତଦା ॥
ମହାଭା: ଶାନ୍ତି: ୧୭୪।୫୭ ॥

ଯେଉଁ ଅବସ୍ଥାରେ ମନୁଷ୍ୟ ଆଉ କାୟମନୋବାକ୍ୟରେ ଅନ୍ୟ କାହାରିପ୍ରତି ପାପାଚରଣ କରେ ନାହିଁ, ସେତେବେଳେ ସେ ବ୍ରହ୍ମସମ୍ପନ୍ନ ହୁଏ ।

## ୦—ଯମ ଓ ନିୟମ ।

ବର୍ତ୍ତମାନ କଲ୍ୟାଣଜନକ ମହିମାଧର୍ମର ଯେଉଁ ସମସ୍ତ ଅହିଂସା, ଯମ ଓ ନିୟମ ଆଦି ବିଶୁଦ୍ଧ ବିଶିଷ୍ଟାଚାର ମାନ୍ତ ଶ୍ରୀମଦ୍‌ଗୁରୁ ମହିମାସ୍ୱାମୀ ଉପଦେଶ ଦେଇଅଛନ୍ତି, ତାହା ସବୁ କ୍ରମଶଃ ଶାସ୍ତ୍ରଯୁକ୍ତି-ନିର୍ଦ୍ଦେଶପୂର୍ବକ ଏଠାରେ ପ୍ରଦର୍ଶିତ ହେଉଅଛି—

ପାପପ୍ରବୃତ୍ତି-ମାନବ ଜୀବନରେ ଯେଉଁ ଭୀଷଣ ପରିଣାମ ଭୋଗ କରେ, ତାହାସବୁ ଏଥିପୂର୍ବେ ପ୍ରଦର୍ଶିତ ହୋଇଅଛି । ସେହି ଉଚ୍ଛୃଙ୍ଖଳ ଦୁର୍ଦମପ୍ରବୃତ୍ତିକୁ ଦମନ କରିବା ସହଜ ନୁହେଁ । କେବଳ ଗୁରୁଙ୍କ ଉପଦେଶ ଓ ଶାସ୍ତ୍ରବାକ୍ୟସିଦ୍ଧ ନିୟମରେ ଦୃଢ଼ ରହି ଅହିଂସା, ଯମ, ନିୟମ ଆଦି ନିତ୍ୟାଚାର ପାଳନରେ ଦୃଢ଼ ହେଲେ କାମକ୍ରୋଧାଦି ରିପୁଗଣ ଦମିତ ହେବେ ଓ ପାପପ୍ରବୃତ୍ତି ମଧ୍ୟ ନିବୃତ୍ତ ହେବ ଏବଂ ତା'ପରେ ଜ୍ଞାନଭକ୍ତି-ଯୋଗସାଧନ ବିଷୟରେ ମଧ୍ୟ କୌଣସିପ୍ରକାର ପ୍ରତିବନ୍ଧକ ରହିବ ନାହିଁ ।

**ତଦର୍ଥଂ ଯମନିୟମାଭ୍ୟାମାତ୍ମସଂସ୍କାରୋ ଯୋଗାଚାଧ୍ୟାତ୍ମବିଧ୍ୟୁ-ପାୟୈଃ ।।**　　(ନ୍ୟାୟଦର୍ଶନ—ଅଃ ୪ ଆ: ୨ ସୂ: ୪୬)

ଅର୍ଥାତ୍ ସଂସାର ବନ୍ଧନରୁ ମୁକ୍ତି ପାଇବାନିମନ୍ତେ ଯମ ଓ ନିୟମଦ୍ୱାରା ଆତ୍ମାର ସଂସ୍କାର କରିବା ବିଧେୟ । ତଦ୍ୱାରା ପୂର୍ବ ସଞ୍ଚିତ ପାପ ବିନଷ୍ଟ ହୋଇ ପୁଣ୍ୟବୃଦ୍ଧି ହେବାଦ୍ୱାରା ଜ୍ଞାନ ଭକ୍ତି ସଞ୍ଚୟ ସୁଦୃଢ଼ ହେବ । ଯୋଗଶାସ୍ତ୍ରରେ ଆଧ୍ୟାତ୍ମିକବିଧିର ଉପାୟ ବର୍ଣ୍ଣନାବସରରେ ଏହା ହିଁ ଲିଖିତ ହୋଇଅଛି ।

ଏହି ଯମନିୟମର ବିବରଣ ମହର୍ଷି ପତଞ୍ଜଳି ବ୍ୟାଖ୍ୟା କରିଅଛନ୍ତି—

**ଅହିଂସା-ସତ୍ୟାସ୍ତେୟ-ବ୍ରହ୍ମଚର୍ଯ୍ୟାପରିଗ୍ରହା ଯମାଃ ।।**

ପାତଞ୍ଜଳଦ: ପ: ୨।୩୦ ।।

ଅର୍ଥାତ୍ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ—ଏହି ପଞ୍ଚସାଧନର ନାମ ଯମ ।

**ଶୌଚସନ୍ତୋଷତପଃ ସ୍ୱାଧ୍ୟାୟ-ଈଶ୍ୱରପ୍ରଣିଧାନାନି ନିୟମାଃ ।।**

ପା: ଦ: ୨।୩୨ ।।

ଅର୍ଥାତ୍ ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱରପ୍ରଣିଧାନ—ଏହି ପଞ୍ଚସାଧନର ନାମ ନିୟମ । ଏହି ଧର୍ମଆଚରଣ, ଅର୍ଥାତ୍ ନିୟମର ଅଭ୍ୟାସଦ୍ୱାରା ଆତ୍ମବିକାଶିତ ହୋଇ ଧର୍ମଲାଭ ହୁଏ । ଏ ବିଷୟରେ ଉପନିଷଦ୍ କହେ—

**ଅହିଂସାସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟଂ ଦୟାର୍ଜବମ୍ ।**
**କ୍ଷମାଧୃତର୍ମିତାହାରଃ ଶୌଚଂ ଚୈବ ଯମା ଦଶ ।।**

ଜାବାଲଦର୍ଶନୋପନି: ଖ: ୧।୬ ।।

ଅହିଂସା, ସତ୍ୟ, ଅସ୍ତେୟ ବା ଅଚୌର୍ଯ୍ୟ, ବ୍ରହ୍ମଚର୍ଯ୍ୟ, ଦୟା, ସରଳତା, କ୍ଷମା, ଧୈର୍ଯ୍ୟ, ମିତାହାର ଓ ଶୌଚ—ଏହି ଦଶର ନାମ ଯମ ।

ତପଃସନ୍ତୋଷମାସ୍ତିକ୍ୟଂ ଦାନମୀଶ୍ୱରପୂଜନମ୍ ।
ସିଦ୍ଧାନ୍ତଶ୍ରବଣଂ ଚୈବ ହ୍ରୀମତିଶ୍ଚ ଜପୋବ୍ରତମ୍ ॥
ଏତେ ଚ ନିୟମାଃ ପ୍ରୋକ୍ତାସ୍ତାନ୍ ବକ୍ଷ୍ୟାମି କ୍ରମାଚ୍ଛୃଣୁ ॥

ଜାବାଲଦ: ଉ: ୨।୧।୨ ।

ତପସ୍ୟା, ସନ୍ତୋଷ, ଆସ୍ତିକ୍ୟ, ଦାନ, ଈଶ୍ୱରଉପାସନା, ବେଦବ୍ୟାଖ୍ୟାଶ୍ରବଣ, ଲଜ୍ଜା, ମତି, ଜପ ଓ ବ୍ରତ—ଏହି ସକଳ ନିୟମ । ଏହାର ବିବରଣ କ୍ରମଶଃ କରାଯାଉଛି, ଶୁଣ ।

## ୦—ଅହିଂସା ଓ ଅହିଂସା-ମାହାତ୍ମ୍ୟ

କାୟମନୋବାକ୍ୟରେ ହିଂସା ପରିତ୍ୟାଗ କରିବାର ନାମ ଅହିଂସା । ନିଜ ଶରୀରର ଅଙ୍ଗପ୍ରତ୍ୟଙ୍ଗଦ୍ୱାରା ଅନ୍ୟ ଜୀବର ହିଂସା ବା ଉତ୍ପୀଡ଼ନ କରିବାର ନାମ କାୟିକ ହିଂସା । ବହୁ ସମୟରେ ଏହି କାୟିକ ହିଂସା ହାସ୍ୟୋନ୍ମାଦ କରିବାନିମନ୍ତେ ମଧ୍ୟ କରାଯାଇଥିବା ଦେଖାଯାଏ ଓ ତଦ୍ଦ୍ୱାରା ଅନ୍ୟାନ୍ୟ ମନୁଷ୍ୟ, କୀଟ, ପତଙ୍ଗଆଦିର ଭୀଷଣ କ୍ଲେଶ ଉତ୍ପାଦନ କରାଯାଏ । କିନ୍ତୁ ପ୍ରକୃତରେ ଜିହ୍ୱାଲାଳସାର ତୃପ୍ତି ବିଧାନ ସକାଶେ ବା ମାଂସଭକ୍ଷଣ କରିବାସକାଶେ ହିଂସା କରାଯାଏ; ଅଥବା ଲୋଭ ବା କ୍ରୋଧ ହେତୁରୁ କାୟିକ ହିଂସା ବହୁଳଭାବରେ କରାଯାଉଥିବା ଦେଖାଯାଏ । ଏପରି ହିଂସା ସର୍ବଥା ବର୍ଜନୀୟ । ବର୍ତ୍ତମାନ ବାଚିକ ହିଂସା ବିଷୟରେ କୁହାଯାଉଛି—

କର୍କଶବାକ୍ୟଦ୍ୱାରା ଅପରର କ୍ଲେଶ ଉତ୍ପାଦନ କରିବାର ନାମ ବାଚିକ ହିଂସା । ମନୁଷ୍ୟ ନିଜ କ୍ଷମତାର ଅପବ୍ୟବହାର କରି ଆଶ୍ରିତଜନ ଉପରେ ଅଯଥା କର୍କଶବାକ୍ୟ ପ୍ରୟୋଗ କରେ । କପଟାଗ୍ରହୀ ଲୋକ ମଧ୍ୟ ମଧୁରବାକ୍ୟ ପ୍ରୟୋଗ କରି ପରର ଅନିଷ୍ଟ ସାଧନ କରେ । ଏହା ସବୁ କେବଳ ବାଚିକ ହେଲେ ମଧ୍ୟ କାୟିକ ହିଂସାଠାରୁ ଅଧିକ କ୍ଲେଶଦାୟକ । ଅତଏବ ମନୁଷ୍ୟ ବଚନରେ ଅମାୟିକ ଅମିୟଭାବ ପ୍ରକାଶ କରି ପ୍ରାଣୀମାନଙ୍କୁ ସୁପଥରେ ଚାଳିତ କରିବା ସର୍ବଥା ବିଧେୟ ।

ତୃତୀୟ ମାନସିକ ହିଂସା—ବାହାରେ ହିଂସାକାର୍ଯ୍ୟ ବା ହିଂସାସମ୍ବନ୍ଧୀବାକ୍ୟ ପ୍ରୟୋଗ ନ କରି ମନଭିତରେ ଯଦି ଅପରର ହିଂସାଭାବ କଳ୍ପନା କରାଯାଏ, ତେବେ ତାକୁ ମାନସିକ ହିଂସା କୁହାଯାଏ । ଏପରି ମାନସିକ ହିଂସା ମଧ୍ୟ ସର୍ବଥା ପରିତ୍ୟାଜ୍ୟ । ମନମଧ୍ୟରେ ସେପରି ହିଂସାବିଷୟ ଯେପରି ନ ଆସେ, ସେଥିନିମନ୍ତେ ସାବଧାନ ରହିବ । କାରଣ, ମନଭିତରେ ପରର ଅନିଷ୍ଟ କଳ୍ପନା ଜାତହେଲେ ପରେ ବଚନରେ ଓ କର୍ମରେ ସେହିଭାବ ରୂପାୟିତ ହୁଏ । ଅତଏବ ମନରେ ମଧ୍ୟ କାହାପ୍ରତି ହିଂସାଭାବ ବା ଘୃଣା ଧାରଣ କରିବା

ଅନୁଚିତ । ଏହିପରି ମନକୁ ହିଂସାରୂପକ କଳ୍ପନାରୁ ନିବର୍ତ୍ତିତ କରି ନିଜେ ବଶୀଭୂତ କଲେ ମାନସିକ ଅହିଂସା ସାଧିତ ହୁଏ । ଏହି ତ୍ରିବିଧ ହିଂସା-ତ୍ୟାଗକୁ ଅହିଂସା କୁହାଯାଏ ।

ବେଦୋକ୍ତେନ ପ୍ରକାରେଣ ବିନା ସତ୍ୟଂ ତପୋଧନ !
କାୟେନ ମନସା ବାଚା ହିଂସାଽହିଂସା ନ ଚାନ୍ୟଥା ॥
ଆତ୍ମା ସର୍ବଗତୋଽଚ୍ଛେଦ୍ୟୋ ନ ଗ୍ରାହ୍ୟ ଇତି ମେ ମତିଃ ।
ସା ଚାହିଂସା ବରା ପ୍ରୋକ୍ତା ମୁନେ ବେଦାନ୍ତବେଦିଭିଃ ॥

ଜାବାଳଦ : ଉ: ୧।୭।୮ ॥

ହେ ମୁନେ ! ସତ୍ୟ କାରଣ ବିନା ବେଦୋକ୍ତପ୍ରକାରରେ ଶରୀର, ବଚନ ଓ ମନଦ୍ୱାରା ଯେଉଁ ହିଂସାର ଅଭାବ, ତାହା ବାସ୍ତବିକ ଅହିଂସା । କିନ୍ତୁ କେବଳ ବାକ୍ୟ, ଶରୀର କିମ୍ବା ମନଦ୍ୱାରା ଯେଉଁ ହିଂସା କରାଯାଏ, ତାହା ଅହିଂସା ନୁହେଁ । ଆତ୍ମା ସର୍ବବ୍ୟାପକ ଅଚ୍ଛେଦ୍ୟ ଓ ଅଗ୍ରାହ୍ୟ—ଏପରି ଭାବିବାକୁ ବେଦାନ୍ତୀମାନେ ଶ୍ରେଷ୍ଠ ଅହିଂସା ବୋଲି କହିଥାନ୍ତି । ଅହିଂସା ବିଷୟରେ ଆଚାର୍ଯ୍ୟଶଙ୍କରଙ୍କ ମତ—

ଅହିଂସା ବାଙ୍ମନଃକାୟୈଃ ପ୍ରାଣିମାତ୍ରାପ୍ରପୀଡ଼ନମ୍ ।
ସ୍ୱାତ୍ମବତ୍ ସର୍ବଭୂତେଷୁ କାୟେନ ମନସା ଗିରା ॥

ସ: ବେ: ସା: ସଂ: ୧୧୬ ॥

ବାକ୍ୟ, ମନ ଓ କାୟଦ୍ୱାରା କୌଣସି ପ୍ରାଣୀକୁ କ୍ଲେଶପ୍ରଦାନ ନ କରିବା ଏବଂ ଶରୀର, ମନ ଓ ବାକ୍ୟଦ୍ୱାରା ସମସ୍ତଜୀବ ପ୍ରତି ନିଜତୁଲ୍ୟ ବ୍ୟବହାର କରିବାର ନାମହିଁ ଅହିଂସା । ଯଜ୍ଞାଦିରେ ମଧ୍ୟ ଯେଉଁ ପଶୁ ହିଂସାକାର୍ଯ୍ୟ ହୁଏ, ତାହା ସର୍ବଥା ବର୍ଜନୀୟ—

ଇଜ୍ୟା ଯଜ୍ଞଶ୍ରୁତିକୃତୈର୍ଯୋ ମାର୍ଗୈରବୁଧୋଽଧମଃ ।
ହନ୍ୟାଜ୍ଜନ୍ତୂନ୍ ମାଂସଗୃଧ୍ନୁଃ ସ ବୈ ନରକଭାଙ୍ ନରଃ ॥
ଭକ୍ଷୟିତ୍ୱାଽପି ଯୋ ମାଂସଂ ପଶ୍ଚାଦପି ନିବର୍ତ୍ତତେ ।
ତସ୍ୟାପି ସୁମହାନ୍ ଧର୍ମୋ ଯଃ ପାପାଦ୍ ବିନିବର୍ତ୍ତତେ ॥
ଆହର୍ତ୍ତା ଚାନୁମନ୍ତା ଚ ବିଶସ୍ତା କ୍ରୟବିକ୍ରୟୀ ।
ସଂସ୍କର୍ତ୍ତା ଚୋପଭୋକ୍ତା ଚ ଖାଦକାଃ ସର୍ବ ଏବ ତେ ॥

ମହା: ଅନୁ: ୧୧୫।୪୭।୪୯ ॥

ଯେଉଁ ଯଜ୍ଞ ଉପନିଷତ୍ସମ୍ବନ୍ଧୀ ଆଧ୍ୟାତ୍ମିକ ଜ୍ଞାନରୁ ରହିତ, ସେପରି ଅଶ୍ୱମେଧ ଆଦି ଯଜ୍ଞସମ୍ପାଦନ [illegible] କରି ମଧ୍ୟ ମନୁଷ୍ୟ ମାଂସ ଭକ୍ଷଣ ନିମନ୍ତେ ଜୀବହିଂସା କେବଳ କରେ ଏବଂ ସେପରି ଜୀବହିଂସା-ଯଜ୍ଞ କରିବାଦ୍ୱାରା ସେ ନରକଗାମୀ ହୁଏ । କିନ୍ତୁ ଯେଉଁ ଲୋକ ମାଂସ ଭୋଜନ କରି ମଧ୍ୟ ପରେ ମାଂସଭକ୍ଷଣର କୁଫଳ ଅବଗତ ହୋଇ ସେଥିରୁ ନିବୃତ୍ତ ହୁଏ, ସେଥିରେ ମଧ୍ୟ ତାହାର ବହୁ ଧର୍ମ ଜାତ ହୁଏ । କାରଣ, ସେପରି ନିବୃତ୍ତ ହେବାଦ୍ୱାରା ସେ ପାପରହିତ ହୁଏ । ହିଂସା ଉଦ୍ଦେଶ୍ୟରେ ଜୀବର ଆହର୍ତ୍ତା ଓ ଅନୁମନ୍ତା ଏବଂ ସ୍ୱୟଂ ଘାତକ ଓ ମାଂସ କ୍ରୟବିକ୍ରୟକାରୀ ବ୍ୟକ୍ତି, ସଂସ୍କାରକାରକ ଓ ଉପଭୋକ୍ତା— ଏ ସମସ୍ତେ ଖାଦକ, ଅର୍ଥାତ୍ ଜୀବହିଂସାଦୋଷରେ ଦୋଷୀ ।

ଜୀବହିଂସାକାରୀର ପରିଣାମ—

ଅନିଷ୍ଟଂ ସର୍ବଭୂତାନାଂ ମରଣଂ ନାମ ଭାରତ !
ମୃତ୍ୟୁକାଳେ ହି ଭୂତାନାଂ ସଦ୍ୟୋ ଭବତି ବେପଥୁଃ ।
ଜାତଜନ୍ମଜରାଦୁଃଖୈର୍ନିତ୍ୟଂ ସଂସାରସାଗରେ ।
ଜନ୍ତବଃ ପରିବର୍ତ୍ତନ୍ତେ ମରଣାଦୁଦ୍ୱିଜନ୍ତି ଚ ॥
ଗର୍ଭବାସେଷୁ ପଚ୍ୟନ୍ତେ କ୍ଷାରାମ୍ଳକଟୁକୈଃ ରସୈଃ ।
ମୂତ୍ର-ସ୍ୱେଦ-ପୁରୀଷାଣାଂ ପରୁଷୈର୍ଭୃଶଦାରୁଣୈଃ ॥
ଜାତାଶ୍ଚାପ୍ୟବଶାସ୍ତତ୍ର ଛିଦ୍ୟମାନାଃ ପୁନଃ ପୁନଃ ।
ପାଚ୍ୟମାନାଶ୍ଚ ଦୃଶ୍ୟନ୍ତେ ବିବଶା ମାଂସଗୃଦ୍ଧିନଃ (?) ॥
କୁମ୍ଭୀପାକେ ଚ ପଚ୍ୟନ୍ତେ ତାଂ ତାଂ ଯୋନିମୁପାଗତାଃ ।
ଆକ୍ରମ୍ୟ ମାର୍ଯ୍ୟମାଣାଶ୍ଚ ଭ୍ରାମ୍ୟନ୍ତେ ବୈ ପୁନଃ ପୁନଃ ॥

ମହାଭାରତ ଅନୁ: ୧୧୬।୨୭—୩୧ ।

ହେ ଭାରତ ! ମରଣ ଜୀବମାନଙ୍କର ଅନଭିଳଷିତ ବସ୍ତୁ, ମୃତ୍ୟୁ ସମୟରେ ଜୀବର ସର୍ବଦା ଦୁଃଖ ଜାତ ହୁଏ । ସକଳ ଜୀବ ଗର୍ଭବାସ, ଜନ୍ମ, ଜରାରୂପକ ଦୁଃଖ ଭୋଗ କରି ସର୍ବଦା ସଂସାର-ସାଗରରେ ପରିଭ୍ରମଣ କରନ୍ତି ଓ ମରଣକୁ ସମସ୍ତେ ଭୟ କରନ୍ତି । ସକଳ ପ୍ରାଣୀ ଗର୍ଭବାସ ସମୟରେ ମୂତ୍ର, ଶ୍ଲେଷ୍ମ ଓ ପୁରୀଷ ଆଦିର ଉତ୍କଟ କ୍ଷାର, ଅମ୍ଳ ଓ କଟୁରସଦ୍ୱାରା ପଚ୍ୟମାନ ହୁଅନ୍ତି; ମାଂସଲୋଭୀ ପୁରୁଷ ମଧ୍ୟ ଜନ୍ମଗ୍ରହଣ କରି ସେଥିରେ ଅବଶ ବା ବିବଶ ହୋଇ ବାରମ୍ବାର ଛିଦ୍ୟମାନ ଓ ପଚ୍ୟମାନ ହେବା ଦେଖାଯାଏ । ସେହି ଲୋକ ଯେଉଁ ଯେଉଁ ଜୀବକୁ ହିଂସା କରିଥାଏ, ସେହି ସେହି ଜୀବର ଯୋନିରେ ଜନ୍ମଲାଭ କରି ପରେ

କୁମ୍ଭୀପାକ ନରକରେ ପଚ୍ୟମାନ ହୁଏ । ଏହାପରି ସେଥିରେ ଆକ୍ରାନ୍ତ ଓ ମ୍ରିୟମାଣ ହୋଇ ବାରମ୍ବାର ଯୋନି ଭ୍ରମଣ କରୁଥାଏ ।

ନାତ୍ମନୋଽସ୍ତି ପ୍ରିୟତରଃ ପୃଥିବୀମନୁସୃତ୍ୟ ହି ।
ତସ୍ମାତ୍ ପ୍ରାଣିଷୁ ସର୍ବେଷୁ ଦୟାବାନାତ୍ମବାନ୍ ଭବେତ୍ ॥

ମହାଭା: ଅନୁ: ୧୧୬।୩୨ ॥

ଏହି ପୃଥିବୀରେ ସକଳ ପଦାର୍ଥ ଅନୁସନ୍ଧାନ କରି ଦେଖିଲେ ଆତ୍ମାଠାରୁ ଅଧିକ ପ୍ରିୟ ପଦାର୍ଥ ଆଉ କିଛି ନାହିଁ । ଏହିହେତୁରୁ ଆତ୍ମବାନ୍ ପୁରୁଷ ପ୍ରାଣୀମାନଙ୍କଠାରେ କୌଣସି ପ୍ରକାର ହିଂସାଚରଣ ନ କରି ନିଜ ଆତ୍ମାପରି ସମସ୍ତ ଜୀବଙ୍କୁ ଦେଖିବେ ।

ଅହିଂସା ପରମୋ ଧର୍ମସ୍ତଥାଽହିଂସା ପରୋ ଦମଃ ।
ଅହିଂସା ପରମଂ ଦାନମହିଂସା ପରମଂ ତପଃ ॥
ଅହିଂସା ପରମୋ ଯଜ୍ଞସ୍ତଥାଽହିଂସା ପରଂ ଫଳମ୍ ।
ଅହିଂସା ପରମଂ ମିତ୍ରମହିଂସା ପରମଂ ସୁଖମ୍ ॥
ସର୍ବଯଜ୍ଞେଷୁ ବା ଦାନଂ ସର୍ବତୀର୍ଥେଷୁ ବାଽଽପ୍ଲୁତମ୍ ।
ସର୍ବଦାନଫଳଂ ବାଽପି ନୈତତ୍ତୁଲ୍ୟମହିଂସୟା ॥
ଅହିଂସସ୍ୟ ତପୋଽକ୍ଷୟ୍ୟମହିଂସ୍ରୋ ଯଜତେ ସଦା ।
ଅହିଂସ୍ରଃ ସର୍ବଭୂତାନାଂ ଯଥା ମାତା ଯଥା ପିତା ॥
ଏତତ୍ଫଳମହିଂସାୟା ଭୂୟଶ୍ଚ କୁରୁପୁଙ୍ଗବ !
ନ ହି ଶକ୍ୟା ଗୁଣା ବକ୍ତୁମପି ବର୍ଷଶତୈରପି ॥

ମହା: ଅ: ୧୧୬।୩୮-୪୨ ॥

ଅହିଂସା ପରମ ଧର୍ମ, ଅହିଂସା ହିଁ ପରମ ଦମ, ପରମ ଦାନ ଓ ପରମ ତପସ୍ୟା ଅଟେ । ଅହିଂସା ପରମ ଯଜ୍ଞ, ପରମ ତପ, ପରମ ବଳ, ପରମ ମିତ୍ର ଓ ପରମ ସୁଖ; ଅହିଂସା ପରମ ସତ୍ୟ ଓ ପରମ ଶ୍ରୁତ ଅଟେ । ସକଳ ଯଜ୍ଞର ଦାନ, ସକଳତୀର୍ଥରେ ସ୍ନାନ ତଥା ସକଳ ଦାନର ଫଳ ଅହିଂସା ସଦୃଶ ହୋଇ ପାରେ ନାହିଁ । ଅହିଂସା ମନୁଷ୍ୟର ତପସ୍ୟା, କ୍ଷୟରହିତ; ଅହିଂସର ଅହିଂସାହିଁ ଯଜ୍ଞ ଓ ହିଂସାରହିତ ମନୁଷ୍ୟ ସକଳଜୀବର ପିତାମାତା ସଦୃଶ । ହେ କୁରୁଶ୍ରେଷ୍ଠ ! ଏହି ଅହିଂସାର ଯେଉଁ ଫଳ କଥିତ ହେଲା, ତା' ଅପେକ୍ଷା ଯେଉଁ ଅଧିକ ଫଳ ଅଛି, ତାହା ସବୁ କହିଲେ ଶତହେବର୍ଷରେ ମଧ୍ୟ ଶେଷ ହେବ ନାହିଁ ।

## —ସତ୍ୟ ଓ ସତ୍ୟର ମାହାତ୍ମ୍ୟ

ପ୍ରଭୁ ପରମାତ୍ମା କେବଳ ସତ୍ୟସ୍ୱରୂପ—ଏକଥା ପୂର୍ବରୁ ବର୍ଣ୍ଣିତ ହୋଇ ଆସୁଅଛି । ଅଧୁନା ଆଗ୍ରହ ଓ ନୀତି ଅନୁସାରେ ସତ୍ୟର ଆଶ୍ରୟ ଓ ସତ୍ୟପାଳନ ବିଷୟ ବର୍ଣ୍ଣିତ ହେଉଅଛି—

ସତ୍ୟାଗ୍ରହ ନୀତି ଯେତେଦୂର ଦୃଢ଼ଭାବରେ ପାଳନ କରିବେ, ସେତିକି ସତ୍ୟସ୍ୱରୂପ ପରମାତ୍ମାଙ୍କର ସମୀପକୁ ଅଗ୍ରସର ହେବେ । ପରମାତ୍ମା ସତ୍ୟସ୍ୱରୂପ ଓ ଅଗ୍ନିର ଦାହିକାଶକ୍ତି ପରି ସତ୍ୟ ପରମାତ୍ମାଙ୍କଠାରେ ଅଭିନ୍ନ ହୋଇ ରହିଥାଏ । ଅତଏବ ସତ୍ୟହିଁ ପରମାତ୍ମାଙ୍କର ସ୍ୱରୂପ । ସୃଷ୍ଟି ଆଦ୍ୟରେ ସେହି ସତ୍ୟସ୍ୱରୂପୀ ପରମାତ୍ମା କେବଳ ବିଦ୍ୟମାନ ଥିଲେ, ବର୍ତ୍ତମାନ ସେ ଅଛନ୍ତି ଓ ଭବିଷ୍ୟତରେ, ଅର୍ଥାତ୍ ପ୍ରଳୟାନ୍ତେ ମଧ୍ୟ ସତ୍ୟସ୍ୱରୂପରେ ହିଁ ବିଦ୍ୟମାନ ଥିବେ । ସେହି ସତ୍ୟରେ ପ୍ରତିଷ୍ଠିତ ହେବା ନିମନ୍ତେ ସର୍ବତୋଭାବରେ, ଅର୍ଥାତ୍ କାୟମନୋବାକ୍ୟରେ ସତ୍ୟାନୁଶୀଳନ କରିବା ମାନବର ପରମ ଧର୍ମ ।

ସର୍ବଦା ସତ୍ୟର ଆଶ୍ରୟ ନେଲେ ମନୁଷ୍ୟର ହୃଦୟରେ ସାତ୍ତ୍ୱିକଭାବ ଜାତ ହୁଏ ଏବଂ ମନରେ ସର୍ବଦା ସତ୍ୟର ଆଲୋଚନ କଲେ ମାୟାଜନିତ ଅଜ୍ଞାନ-ଅନ୍ଧକାର ବିଦୂରିତ ହୁଏ । ସରଳତା, ଉଦାରତା, ଧୈର୍ଯ୍ୟ ଓ ମହାନୁଭବତା ଆଦି ସଦ୍‌ଗୁଣରାଶି ବିକଶିତ ହୋଇ ମାନବ ହୃଦୟକୁ ମଧୁମୟ କରିଦିଏ । ଏହି ସତ୍ୟାଗ୍ରହର ମହିମା ଶାସ୍ତ୍ର ଓ ପୁରାଣମାନଙ୍କରେ ନାନାପ୍ରକାରେ ଘୋଷିତ ହୋଇଅଛି ।

"ସତ୍ୟମେବ ଜୟତେ ।"

ଅର୍ଥାତ୍ ଏକମାତ୍ର ସତ୍ୟଦ୍ୱାରା ମନୁଷ୍ୟ ମୃତ୍ୟୁମୁଖରୁ ଜୟଲାଭ କରେ । ସତ୍ୟାଗ୍ରହର ଅପର ପ୍ରୟୋଜନ ଏହି ଯେ, ମନୁଷ୍ୟ ତଦ୍ୱାରା ବାକ୍‌ଚପଳତା ତ୍ୟାଗ କରି ବାକ୍‌ସଂଯମ ଅବଲମ୍ବନ କରିବ; କାରଣ ଯେଉଁମାନେ ବହ୍ୱାଳାପୀ, ସେମାନେ ସତ୍ୟର ଅପଳାପ କରିବାକୁ ବାଧ୍ୟ ହୁଅନ୍ତି । ଏହାର ଅର୍ଥ କେବଳ ସର୍ବଦା ମୌନ ଅବଲମ୍ବନ କରିବା ନୁହେଁ; କିନ୍ତୁ ଅପ୍ରୟୋଜନୀୟ ଓ ଅହିତକାରୀ ବଚନ ତ୍ୟାଗ କରି ପରର ହିତାର୍ଥକ ବାକ୍ୟ ବ୍ୟବହାର କରିବ ଓ ସର୍ବଦା ମିତଭାଷୀ ହେବ । ଏପରି ବଚନ ବ୍ୟବହାର ଓ ସର୍ବଦା ସଂଯମ ଅଭ୍ୟାସ କଲେ ବାଗିନ୍ଦ୍ରିୟ ସତ୍ୟ ଉପରେ ପ୍ରତିଷ୍ଠିତ ହୋଇ ସର୍ବଦା ସତ୍ୟ ପ୍ରତି ଅଗ୍ରସର ହେବ ଏବଂ ତଦ୍ୱାରା ମନୁଷ୍ୟ ମୁଖରୁ ସର୍ବଦା ପରହିତକର ବଚନ କେବଳ ଉଚ୍ଚାରିତ ହୋଇ ତାହାର ହୃଦୟ ସତ୍ୟରୂପୀ ପରମାତ୍ମାଙ୍କ ପ୍ରତି ଆକୃଷ୍ଟ ହେବ । ଏହିପରି ସାଧୁ ମହାତ୍ମାମାନେ ସତ୍ୟାଗ୍ରହ ନିୟମରେ ରହି ସତ୍ୟର ମାହାତ୍ମ୍ୟ ଗାୟନ କରି ଅଛନ୍ତି ।

ଆନୃଶଂସ୍ୟଂ ପରୋଧର୍ମଃ କ୍ଷମା ଚ ପରମଂ ବଳମ୍ ।
ଆତ୍ମଜ୍ଞାନଂ ପରଂ ଜ୍ଞାନଂ ସତ୍ୟବ୍ରତଂ ପରଂ ବ୍ରତମ୍ ॥
ସତ୍ୟସ୍ୟ ବଚନଂ ଶ୍ରେୟଃ ସତ୍ୟଜ୍ଞାନଂ ହିତଂ ଭବେତ୍ ।
ଯଦ୍ଭୂତହିତମତ୍ୟନ୍ତଂ ତଦ୍ବୈ ସତ୍ୟଂ ପରଂ ମତମ୍ ॥

ମହାଭା: ବନ: ୨୧୨।୩୦-୩୧ ॥

ଅନୃଶଂସତା ପରମ ଧର୍ମ, କ୍ଷମା ପରମ ବଳ, ଆତ୍ମଜ୍ଞାନ ପରମଜ୍ଞାନ, ସତ୍ୟବ୍ରତ ପରମବ୍ରତ, ସତ୍ୟବାକ୍ୟ କେବଳ ଶ୍ରେୟ ଓ ସତ୍ୟଜ୍ଞାନହିଁ ହିତକର । ଯାହା ପ୍ରାଣୀମାନଙ୍କର ଅତ୍ୟନ୍ତ ହିତସାଧକ, ସେହି ସମୁଦାୟକୁ ପରମସତ୍ୟ ବୋଲି ଜାଣିବ ।

ସତ୍ୟଂ ଚ ସମତା ଚୈବ ଦମଶ୍ଚୈବ ନ ସଂଶୟଃ ।
ଅମାତ୍ସର୍ଯ୍ୟଂ କ୍ଷମାଚୈବ ହ୍ରୀସ୍ତିତିକ୍ଷାଽନସୂୟତା ॥
ତ୍ୟାଗୋ ଧ୍ୟାନମଥାର୍ଯ୍ୟତ୍ୱଂ ଧୃତିଶ୍ଚ ସତତଂ ଦୟା ।
ଅହିଂସା ଚୈବ ରାଜେନ୍ଦ୍ର ! ସତ୍ୟାକାରାସ୍ତ୍ରୟୋଦଶ ॥

ମହାଭା: ଶାନ୍ତି: ୧୬୨।୮।୯ ॥

ହେ ରାଜେନ୍ଦ୍ର ! ସତ୍ୟକଥନ, ସମତା, ଇନ୍ଦ୍ରିୟସଂଯମ, ଅମାତ୍ସର୍ଯ୍ୟ, କ୍ଷମା, ଲଜ୍ଜା, ତିତିକ୍ଷା, ଅନସୂୟତା, ତ୍ୟାଗ, ଧ୍ୟାନ, ଆର୍ଯ୍ୟତ୍ୱ, ଧୈର୍ଯ୍ୟ, ସତତ ଦୟା ଓ ଅହିଂସା—ଏହି ତ୍ରୟୋଦଶ ଗୁଣ ହିଁ ଦୃଷ୍ଟିଗୋଚର ସତ୍ୟାକାରର ବାହ୍ୟପ୍ରକାଶ ।

ସତ୍ୟର ଉତ୍କର୍ଷ ବିଷୟରେ ବେଦାନ୍ତଦର୍ଶନରେ ମଧ୍ୟ କୁହାଯାଇଛି—

ଚକ୍ଷୁରାଦୀନ୍ଦ୍ରିୟୈର୍ଦୃଷ୍ଟଂ ଶ୍ରୁତଂ ଘ୍ରାତଂ ମୁନୀଶ୍ୱର ।
ତସ୍ୟୈବୋକ୍ତିର୍ଭବେତ୍ ସତ୍ୟଂ ବିପ୍ର ତନ୍ନାନ୍ୟଥା ଭବେତ୍ ॥
ସର୍ବଂ ସତ୍ୟଂ ପରଂବ୍ରହ୍ମ ନ ଚାନ୍ୟଦିତି ଯା ମତିଃ ।
ତଚ୍ଚ ସତ୍ୟଂ ବରଂ ପ୍ରୋକ୍ତଂ ବେଦାନ୍ତଜ୍ଞାନପାରଗୈଃ ॥

ଜାବାଳଦର୍ଶନୋପନିଷତ୍—୧।୯।୧୦ ॥

ଚକ୍ଷୁରାଦି ଇନ୍ଦ୍ରିୟଦ୍ୱାରା ଯେଉଁ ବସ୍ତୁ ଦୃଷ୍ଟ, ଶ୍ରୁତ ବାତ ହୁଏ, ତାହା ପ୍ରକୃତ ସତ୍ୟବଚନରେ ଉଲ୍ଲିଖିତ ହୁଏ । ତଦ୍ଭିନ୍ନ ଅନ୍ୟସବୁକୁ ସତ୍ୟବୋଲି କୁହାଯାଇ ନ ପାରେ ।

ପ୍ରଭୃ ପରଂବ୍ରହ୍ମ କେବଳ ପରମସତ୍ୟ—ଏହା ବେଦାନ୍ତୀମାନଙ୍କ ମତରେ ଶ୍ରେଷ୍ଠସତ୍ୟ ବୋଲି ପ୍ରତିପାଦିତ ହୋଇଅଛି । ଏହାର ସମନ୍ୱିତ ବଚନ ଆଗ୍ରମ୍ଣଶଙ୍କରଙ୍କ ମତରେ ଏହିପରି—

ଯତ୍ ସ୍ୱେନ ଦୃଷ୍ଟଂ ସମ୍ୟକ୍ ଚ ଶ୍ରୁତଂ ତଦୈବ ଭାଷଣମ୍ ।
ସତ୍ୟମିତ୍ୟୁଚ୍ୟତେ ବ୍ରହ୍ମ ସତ୍ୟମିତ୍ୟଭିଭାଷଣମ୍ ॥

ସ: ବେ: ସା: ସଂ: ୧୧୮ ॥

ଅର୍ଥାତ୍ ଯାହା ଦୁଇ ଆଖିରେ ଦେଖାଯାଇଛି ବା ବିଶ୍ୱସ୍ତ ବ୍ୟକ୍ତିଙ୍କଠାରୁ ଯାହା ଶୁଣାଯାଇଛି, ସେପରି ଘଟଣା ସତ୍ୟ ବୋଲି ଲୋକରେ ଧରାଯାଏ; କିନ୍ତୁ ପ୍ରକୃତରେ "ବ୍ରହ୍ମକେବଳ ସତ୍ୟ" ଏହି ବଚନ ଶ୍ରେଷ୍ଠ ସତ୍ୟଭାବରେ ଗୃହୀତ ।

ସତ୍ୟମେବ ଜୟତେ ନାନୃତଂ
ସତ୍ୟେନ ପନ୍ଥା ବିତତୋ ଦେବଯାନଃ ।
ଯେନାକ୍ରମନ୍ତ୍ୟୃଷୟୋ ହ୍ୟାପ୍ତକାମା
ଯତ୍ର ତତ୍ ସତ୍ୟସ୍ୟ ପରମଂ ନିଧାନମ୍ ॥ ମୁଣ୍ଡକ—୩।୬ ॥

ସର୍ବଦା ସତ୍ୟର କେବଳ ଜୟ ହୁଏ ଓ ଅସତ୍ୟର ବିଜୟ କଦାପି ସମ୍ଭବ ନୁହେଁ । ଦେବଯାନ-ନାମକ ବିସ୍ତୃତପଥ କେବଳ ସତ୍ୟଦ୍ୱାରା ପ୍ରାପ୍ତ ହୁଏ । ଯେଉଁଠାରେ ସତ୍ୟର ପରମପୁରୁଷାର୍ଥ ବିଦ୍ୟମାନ, ସେହି ଦେବଯାନ ପଥଦ୍ୱାରା ବିଷୟ-ତୃଷ୍ଣାବିହୀନ ଋଷିମାନେ ଗମନ କରନ୍ତି ।

ତସ୍ମାତ୍ ସତ୍ୟବ୍ରତାଚରଃ ସତ୍ୟଯୋଗପରାୟଣଃ ।
ସତ୍ୟକାମଃ ସମୋଦାନ୍ତଃ ସତ୍ୟେନୈବାନ୍ତକଂ ଜୟେତ୍ ॥
ଅମୃତଂ ଚୈବ ମୃତ୍ୟୁଶ୍ଚ ଦ୍ୱୟଂ ଦେହେ ପ୍ରତିଷ୍ଠିତମ୍ ।
ମୃତ୍ୟୁରୁପଦ୍ୟତେ ମୋହାତ୍ ସତ୍ୟେନାପଦ୍ୟତେଽମୃତମ୍ ॥

ମହାଭା: ଶା: ୧୭୫।୨୯-୩୦ ॥

ଅତଏବ ସତ୍ୟବ୍ରତ ଆଚରଣ କରିବ ଓ ସତ୍ୟଯୋଗପରାୟଣ ହେବ । ସତ୍ୟକାମ, ସମଦର୍ଶୀ ଓ ଜିତେନ୍ଦ୍ରିୟ ହୋଇ ଏକ ସତ୍ୟଦ୍ୱାରା କେବଳ ମୃତ୍ୟୁକୁ ଜୟ କରିବ । ମୃତ୍ୟୁ ଓ ଅମୃତତ୍ତ୍ୱ ଉଭୟ ମନୁଷ୍ୟଠାରେ ବିଦ୍ୟମାନ । ମୋହଗ୍ରସ୍ତ ହୋଇ ମୃତ୍ୟୁଗ୍ରାସରେ ମାନବ ପଡ଼େ ଏବଂ ସତ୍ୟଦ୍ୱାରା ଅମୃତତ୍ତ୍ୱ ଲାଭ କରେ ।

**ଯସ୍ୟ ବାଙ୍ମନସୀ ସ୍ୟାତାଂ ସମ୍ୟକ୍ ପ୍ରଣିହିତେ ସଦା ।**
**ତପସ୍ତ୍ୟାଗଶ୍ଚ ସତ୍ୟଂ ଚ ସର୍ବେ ପରମବାପ୍ନୁୟାତ୍ ॥**
**ନାସ୍ତି ବିଦ୍ୟାସମଂ ଚକ୍ଷୁର୍ନାସ୍ତି ସତ୍ୟସମଂ ତପଃ ।**
**ନାସ୍ତି ରାଗସମଂ ଦୁଃଖଂ ନାସ୍ତି ତ୍ୟାଗସମଂ ସୁଖମ୍ ॥**

ମହାଭା: ଶାନ୍ତି: ୧୭୫।୩୪-୩୫ ॥

ଯାହାଙ୍କର ବଚନ ଓ ମନ ସର୍ବଦା ସମ୍ୟକ୍‌ପ୍ରକାରେ ସଂଯତ ଥାଏ, ସେହି କେବଳ ତପସ୍ୟା, ତ୍ୟାଗ ଓ ପରମ ସତ୍ୟ ଲାଭକରନ୍ତି । ମନୁଷ୍ୟ ପକ୍ଷରେ ବିଦ୍ୟାତୁଲ୍ୟ ଉତ୍କୃଷ୍ଟ ଚକ୍ଷୁ ଅନ୍ୟ କିଛି ନାହିଁ ; ସତ୍ୟପରି ଅନ୍ୟ କିଛି ତପସ୍ୟା ମଧ୍ୟ ନାହିଁ ; ଆସକ୍ତି ତୁଲ୍ୟ ଦୁଃଖ ଏବଂ ତ୍ୟାଗ ତୁଲ୍ୟ ସୁଖ ଆଉ କିଛି ନାହିଁ ।

**ସତ୍ୟଂ ବ୍ରହ୍ମ ତପଃ ସତ୍ୟଂ ସତ୍ୟଂ ବିସୃଜତେ ପ୍ରଜାଃ ।**
**ସତ୍ୟେନ ଧାର୍ଯ୍ୟତେ ଲୋକଃ ସ୍ୱର୍ଗଂ ସତ୍ୟେନ ଗଚ୍ଛତି ॥**

ମହାଭା: ଶା: ୧୯୦।୧ ॥

ସତ୍ୟ କେବଳ ବ୍ରହ୍ମ, ସତ୍ୟ ହିଁ ତପସ୍ୟା ; ସତ୍ୟ ପ୍ରାଣୀମାନଙ୍କୁ ସୃଜନ କରେ, ସତ୍ୟଦ୍ୱାରା ସକଳ ଲୋକ ଧୃତ ହୋଇଅଛନ୍ତି ଏବଂ ସତ୍ୟଦ୍ୱାରା ମନୁଷ୍ୟ ସ୍ୱର୍ଗଲାଭ କରେ । ଅତଏବ ମୋକ୍ଷାଭିଳାଷୀ ମାନବ ସର୍ବଦା ସତ୍ୟସ୍ୱରୂପୀ ପରମାତ୍ମାଙ୍କଠାରେ ଆତ୍ମା ସମର୍ପଣ କରି ସତ୍ୟ ଆଚରଣ ମଧ୍ୟରେ ନିଯୁକ୍ତ ରହିବ ।

**ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ନ ବ୍ରୂୟାତ୍ ସତ୍ୟମପ୍ରିୟମ୍**
**ପ୍ରିୟଞ୍ଚ ନାନୃତଂ ବ୍ରୂୟାଦେଷ ଧର୍ମଃ ସନାତନଃ ॥** ମନୁ—୪।୧୩୮ ॥

ସତ୍ୟକଥା କହିବ, ଅଥଚ ସତ୍ୟକଥା ପ୍ରିୟ ହେବା ଆବଶ୍ୟକ । ସତ୍ୟକଥା ଯଦି ଅପ୍ରିୟ ହୁଏ, ତେବେ ସେପରି କଥା କହିବା ଅବାଞ୍ଛନୀୟ ; ପ୍ରିୟକଥା ହେଲେ ମଧ୍ୟ ମିଥ୍ୟା କହିବ ନାହିଁ—ଏହା ହେଉଛି ସନାତନ ଧର୍ମ ।

## ୦—ଅସ୍ତେୟର ଅର୍ଥ—

ପରଦ୍ରବ୍ୟ ଗ୍ରହଣ ଅନିଚ୍ଛାର ନାମ ଅସ୍ତେୟ, ଅର୍ଥାତ୍ ପରର କୌଣସି ପଦାର୍ଥ ଦେଖିଲେ ଯେଉଁ ଲାଳସା ଜାତ ହୁଏ, ତାକୁ ତ୍ୟାଗ କରିବା ନାମ ଅସ୍ତେୟ । ଅଥବା ପରପଦାର୍ଥ ବିଷୟରେ ସମ୍ପୂର୍ଣ୍ଣ ଲୋଭଶୂନ୍ୟ ହେବାକୁ ଅସ୍ତେୟ କୁହାଯାଏ । ଏପରି ଲୋକ ଅଛନ୍ତି, ଯେଉଁମାନେ କି ପରର କୌଣସି ଲୋଭନୀୟ ଦ୍ରବ୍ୟ ଦେଖି ତାକୁ ନ ପାଇବା ପର୍ଯ୍ୟନ୍ତ ମନରେ

ଶାନ୍ତ ପୋଷଣ କରି ପାରନ୍ତି ନାହିଁ । ଏପରି ଲୋକ ପ୍ରତ୍ୟକ୍ଷଭାବରେ ତାହା ଗ୍ରହଣ ନ କଲେ ମଧ୍ୟ ପରୋକ୍ଷଭାବରେ ତାହାର ଲାଳସା ଯେ ବଳବତୀ ହୋଇଥାଏ, ଏହା ସ୍ପଷ୍ଟ । ଅତଏବ ସେପରି ଲାଳସା-ପୋଷଣ ସେହି ଲୋକର ଅସ୍ତେୟସାଧନାରେ ବ୍ୟାଘାତ ଜନ୍ମାଏ । ଅତଏବ ମାନସିକ ଲାଳସା ବା ପରଦ୍ରବ୍ୟ ଗ୍ରହଣେଚ୍ଛା ସର୍ବଥା ବର୍ଜନୀୟ । ଆହୁରି ମଧ୍ୟ ଅନଧିକାର ଚର୍ଚ୍ଚା-ପରି-ତ୍ୟାଗର ନାମ ଅସ୍ତେୟ । ଅନଧିକାରର ପରିଚର୍ଚ୍ଚା କରି ଆତ୍ମୋନ୍ନତି ଲାଭର ସମ୍ଭାବନା କମ୍ ଥାଏ ; ବରଂ ବୁଦ୍ଧି ବୃତ୍ତିର ଅପବ୍ୟୟହେତୁରୁ ଖଳ କପଟତା ଜାତ ହୁଏ ଏବଂ ପରେ ପତନର ସମ୍ଭାବନା ଅନିବାର୍ଯ୍ୟ ହୋଇପଡ଼େ; ଆହୁରି ମଧ୍ୟ ନିଜ ସୀମାବର୍ଜିତ କର୍ମ କରିବାଦ୍ୱାରା ଫଳ ମଧ୍ୟ ବିପରୀତ ହୁଏ । ଅତଏବ ଗୃହୀ ଗୃହସ୍ଥଧର୍ମ ଆଚରଣ କରିବ ଏବଂ ସନ୍ନ୍ୟାସୀ ନିଜର ସନ୍ନ୍ୟାସ ଧର୍ମମାତ୍ର ଆଚରଣ କରିବା ଶ୍ରେୟସ୍କର । କିନ୍ତୁ ସନ୍ନ୍ୟାସୀ ବିଷୟପ୍ରତି ଆସକ୍ତ ହୋଇ ସମ୍ପତ୍ତିଶାଳୀ ହେବାଦ୍ୱାରା ସନ୍ନ୍ୟାସଧର୍ମରୁ ବଞ୍ଚିତ ହୁଏ ଏବଂ ଗୃହୀ ସନ୍ନ୍ୟାସବେଶରେ ଜୀବିକା-ନିର୍ବାହ କରିବା ମଧ୍ୟ ଚୌର୍ଯ୍ୟବୃତ୍ତି ଭିନ୍ନ ଅନ୍ୟ କିଛି ନୁହେଁ, ଏହା ସର୍ବଥା ବର୍ଜନୀୟ ।

ଅନ୍ୟଦୀୟେ ତୃଣେ ରତ୍ନେ କାଞ୍ଚନେ ମୌକ୍ତିକେଽପି ଚ ।
ମନସା ବିନିବୃତ୍ତିର୍ଯା ତଦସ୍ତେୟଂ ବିଦୁର୍ବୁଧାଃ ॥
ଆତ୍ମନ୍ୟନାତ୍ମଭାବେନ ବ୍ୟବହାରବିବର୍ଜିତମ୍ ।
ଯତ୍ତଦସ୍ତେୟମିତ୍ୟୁକ୍ତମାତ୍ମବିଦ୍‌ଭିର୍ମହାମତେ ॥

ଜାବାଳ ଦର୍ଶନୋପନିଷତ୍ ୧।୧୧।୧୨ ॥

ଅନ୍ୟର ତୃଣ ବା ରତ୍ନ ହେଉ, ସୁବର୍ଣ୍ଣ ବା ମୁକ୍ତା ଭଳି ମହାର୍ଘ ଦ୍ରବ୍ୟ ହେଉ, ତାହା ଗ୍ରହଣ କରିବାରୂପକ ଆକର୍ଷଣରୁ ମନକୁ ନିବର୍ତ୍ତାଇବା ଧର୍ମକୁ ପ୍ରକୃତରେ ଅସ୍ତେୟ କୁହାଯାଏ । ପରଦ୍ରବ୍ୟକୁ କୃତ୍ରିମ ଉପାୟରେ ନିଜର କରି ନିଜେ ବ୍ୟବହାର କରିବାର ଯେଉଁ ଇଚ୍ଛା, ତାହାର ତ୍ୟାଗକୁ ମଧ୍ୟ ଅସ୍ତେୟ ବା ଅଚୌର୍ଯ୍ୟ ବୋଲି ଆତ୍ମଜ୍ଞମାନେ କହିଅଛନ୍ତି ।

ଠ—ବ୍ରହ୍ମଚର୍ଯ୍ୟ ।

"ବୀର୍ଯ୍ୟଧାରଣଂ ବ୍ରହ୍ମଚର୍ଯ୍ୟମ୍" ॥ ପାତଞ୍ଜଳଦର୍ଶନ

ଅର୍ଥାତ୍ ଶରୀରସ୍ଥ ଚରମ ଧାତୁ ବୀର୍ଯ୍ୟ ବା ଶୁକ୍ରକୁ ଅବିଚଳିତ ଓ ଅବିକୃତ ଅବସ୍ଥାରେ ରକ୍ଷା କରିବା ନାମ ବ୍ରହ୍ମଚର୍ଯ୍ୟ । ମନୁଷ୍ୟ ଯାହା ଆହାର କରେ, ତାହା ପରିପକ୍ୱ ହୋଇ ସ୍ଥୂଳାଂଶ ମଳମୂତ୍ରରୂପରେ ବିନିର୍ଗତ ହେବାପରେ ସୂକ୍ଷ୍ମାଂଶ ରସରୂପରେ ପରିଣତ ହୁଏ । ରସରୁ ରକ୍ତ, ରକ୍ତରୁ ମାଂସ, ମାଂସରୁ ମେଦ, ମେଦରୁ ଅସ୍ଥି, ଅସ୍ଥିରୁ ମଜ୍ଜା ଓ ମଜ୍ଜାରୁ

ଶୁକ୍ର ଉତ୍ପନ୍ନ ହୁଏ । ଦେହସ୍ଥିତ ସପ୍ତଧାତୁର ଚରମ ପରିଣତି ହିଁ ଶୁକ୍ର * । ସେହିହେତୁରୁ ଶୁକ୍ରକୁ ଚରମଧାତୁ ବୋଲି କୁହାଯାଏ । ଏହି ଶୁକ୍ର କେବଳ ମାନବର ବଳବୀର୍ଯ୍ୟ ଓ ଜୀବନୀଶକ୍ତି । ରସାଦି ସପ୍ତଧାତୁର ତେଜକୁ ଓଜଃ ବୋଲାଯାଏ, ସାରଭୂତରସର ସ୍ଥୂଳଭାଗ ଶୁକ୍ର ଏବଂ ସ୍ନେହମୟ ସୂକ୍ଷ୍ମଭାଗ ହିଁ ଓଜଃ; ଏହାକୁ ଦେହରେ ବ୍ରହ୍ମତେଜ ବୋଲି ମଧ୍ୟ କହନ୍ତି । ଏହି ତେଜରୂପୀ ଓଜଃପଦାର୍ଥ ସମଗ୍ର ଶରୀରରେ ବ୍ୟାପ୍ତ ଥିଲେ ମଧ୍ୟ ଏହାର ପ୍ରଧାନ ଆଶ୍ରୟସ୍ଥାନ ଶୁକ୍ର । ସୁତରାଂ ଶୁକ୍ର ନଷ୍ଟ ହେଲେ ତଦାଶ୍ରିତ ବ୍ରହ୍ମତେଜ ମଧ୍ୟ ନଷ୍ଟ ହୋଇଯାଏ ।

ଆର୍ଷଶାସ୍ତ୍ର ମତରେ ସ୍ନିଗ୍ଧ ଓ ବିଶୁଦ୍ଧ ଶୁକ୍ର ଜୀବ ଦେହର ସର୍ବଶ୍ରେଷ୍ଠ ଆଲମ୍ବନ । ଏହା ଧୃତି, ସ୍ମୃତି, ମେଧା, ବୁଦ୍ଧି, କାନ୍ତି, ବଳ ଓ ଆୟୁବୃଦ୍ଧି ବିଷୟରେ ଏକମାତ୍ର କାରଣ । ଏହି ସମସ୍ତ କାରଣରୁ ଶୁକ୍ରର ଅପର ନାମ ବୀର୍ଯ୍ୟ, ବିନ୍ଦୁ, ତେଜ ଓ ବଳ ମଧ୍ୟ । ଏହି ବୀର୍ଯ୍ୟଧାରଣର ଅଭାବ ହେଲେ ମନୁଷ୍ୟର ଦୈହିକବଳ, ବୀର୍ଯ୍ୟ, ସ୍ମୃତିଶକ୍ତି, ମେଧା, ଉତ୍ସାହ, ଧୈର୍ଯ୍ୟ, ସୌନ୍ଦର୍ଯ୍ୟ, ଲାବଣ୍ୟ ଓ ଇନ୍ଦ୍ରିୟାଦିର ସ୍ଫୂର୍ତ୍ତି ଆଦି ଶକ୍ତି ସକଳ ବିଲୁପ୍ତ ହୁଏ । ସେସମୟରେ ନିଜର ଦେହ ମଧ୍ୟ ଭାର ଭଳି ଦୁର୍ବଳ ବୋଧହୁଏ; ଋଷିର ଆକାର ମରୁଭୂମିରେ ପରିଣତ ହୁଏ । ଅତଏବ ଶରୀରରକ୍ଷା ନିମନ୍ତେ ବ୍ରହ୍ମଚର୍ଯ୍ୟପାଳନ ନିତାନ୍ତ ଆବଶ୍ୟକ । କାରଣ—

**"ମରଣଂ ବିନ୍ଦୁପାତେନ ଜୀବନଂ ବିନ୍ଦୁଧାରଣାତ୍" ।**

**"ବ୍ରହ୍ମଚର୍ଯ୍ୟପ୍ରତିଷ୍ଠାୟାଂ ବୀର୍ଯ୍ୟଲାଭଃ" ।**

ପରମଯୋଗୀ ମହର୍ଷି ପତଞ୍ଜଳି ମଧ୍ୟ କହିଅଛନ୍ତି—

ଅର୍ଥାତ୍ ବ୍ରହ୍ମଚର୍ଯ୍ୟରେ ପ୍ରତିଷ୍ଠିତ ହେଲେ ବୀର୍ଯ୍ୟ ବା ମହାଶକ୍ତିଲାଭ ହୋଇଥାଏ । ମସ୍ତିଷ୍କରେ ଏହି ବ୍ରହ୍ମତେଜ ଯେତିକି ସଞ୍ଚିତ ହୁଏ, ସେହି ପରିମାଣରେ ଚିତ୍ତର ଏକାଗ୍ରତା

---

* "ସପ୍ତଧାତୁକମିଦଂ କସ୍ମାତ୍ ଶୁକ୍ଲୋ ରକ୍ତଃ କୃଷ୍ଣୋଧୂମ୍ରଃ ପୀତଃ କପିଳଃ ପାଣ୍ଡୁର ଇତି । ଯଥା ଦେବଦତ୍ତସ୍ୟ ଦ୍ରବ୍ୟାଣି ବିଷୟା ଜାୟନ୍ତେ । ପରସ୍ପରଂ ସୌମ୍ୟଗୁଣତ୍ୱାତ୍ । ଷଡ଼ବିଧୋ ରସଃ ରସାଚ୍ଛୋଣିତଂ, ଶୋଣିତାନ୍ମାଂସଂ, ମାଂସାନ୍ମେଦୋ, ମେଦସଃ ସ୍ନାୟବଃ, ସ୍ନାୟୁଭ୍ୟୋ ଅସ୍ଥୀନି, ଅସ୍ଥିଭ୍ୟୋ ମଜ୍ଜା, ମଜ୍ଜାତଃ ଶୁକ୍ରମ୍" — ଗର୍ଭୋପନିଷତ୍—୩ । ପୁରୁଷ ଶୁକ୍ଳ, କୃଷ୍ଣ, ଧୂମ୍ର, ପୀତ କପିଳ ଓ ପାଣ୍ଡୁର ବର୍ଣ୍ଣ—ଏହି ସପ୍ତ ପ୍ରକାର ବର୍ଣ୍ଣବିଶିଷ୍ଟ ବସ୍ତୁ ଆହାର କରେ । ଏ ସମସ୍ତ ପରସ୍ପର ଅନୁକୂଳ ଗୁଣସମ୍ପନ୍ନ ବୋଲି ରସାଦି ଷଡ଼୍‌ବିଧରୂପରେ ପରିଣତ ହୁଏ । ରସ ସପ୍ତଧାତୁର ମୂଳ; କିନ୍ତୁ ଧାତୁ ନୁହେଁ । ଏହି ରସରୁ ରକ୍ତ, ରକ୍ତରୁ ମାଂସ, ମାଂସରୁ ମେଦ, ମେଦରୁ ସ୍ନାୟୁ, ସ୍ନାୟୁରୁ ଅସ୍ଥି, ଅସ୍ଥିରୁ ମଜ୍ଜା ଓ ମଜ୍ଜାରୁ ଶୁକ୍ର ଉତ୍ପନ୍ନ ହୁଏ ।

ଓ ଚିତ୍ତଶୁଦ୍ଧି ମଧ୍ୟ ସହଜସାଧ୍ୟ ହୁଏ । ମନୁଷ୍ୟଜୀବନ ମଧ୍ୟରେ ଆଧ୍ୟାତ୍ମିକ ଶକ୍ତିର ଉନ୍ନତି ସାଧନ କରିବାକୁ ହେଲେ ବ୍ରହ୍ମତେଜରୂପୀ ଶୁକ୍ର, ପ୍ରାଣ ଓ ଓଜଶକ୍ତିକୁ ସଂରକ୍ଷିତ କରିବାକୁ ହେବ । ସକଳ ସାଧନର ଏକମାତ୍ର ମୂଳକାରଣ ବ୍ରହ୍ମଚର୍ଯ୍ୟ । ଅତଏବ ବ୍ରହ୍ମଚର୍ଯ୍ୟ ପାଳନକୁ ଉତ୍ତମ ତପସ୍ୟା ବୋଲି ବର୍ଣ୍ଣନା କରାଯାଇଛି—

"ନ ତପସ୍ତପ ଇତ୍ୟାହୁର୍ବ୍ରହ୍ମଚର୍ଯ୍ୟଂ ତପଉତ୍ତମମ୍" ।

ଅର୍ଥାତ୍ ବ୍ରହ୍ମଚର୍ଯ୍ୟ ହିଁ ସର୍ବୋତ୍ତମ ତପସ୍ୟା; ଏହାତୁଲ୍ୟ ଅନ୍ୟ କୌଣସି ତପସ୍ୟା ସମାନ ହୋଇ ନ ପାରେ । ଗୃହସ୍ଥାଶ୍ରମୀ ପକ୍ଷରେ ବ୍ରହ୍ମଚର୍ଯ୍ୟ ପାଳନକୁ ନିମ୍ନୋକ୍ତ ଶ୍ରୁତିବାକ୍ୟ ଏପରି ବର୍ଣ୍ଣନ କରିଛି—

କାୟେନ ବାଚା ମନସା ସ୍ତ୍ରୀଣାଂ ତୁ ପରିବର୍ଜନମ୍ ।
ଋତୌ ଭାର୍ଯ୍ୟାଂ ତଦା ସ୍ୱସ୍ୟ ବ୍ରହ୍ମଚର୍ଯ୍ୟଂ ତଦୁଚ୍ୟତେ ॥

ଜାବାଲ ଦ:ଉ: ୧।୧୩ ॥

ଶରୀର, ବାକ୍ୟ ଓ ମନଦ୍ୱାରା ମଧ୍ୟ ସ୍ତ୍ରୀସଙ୍ଗ ପରିତ୍ୟାଗ କରିବା ବାଞ୍ଛନୀୟ; ଋତୁକାଳରେ ମଧ୍ୟ ନିଜ ସ୍ତ୍ରୀ ସହିତ ସଙ୍ଗମ ବିଷୟରେ ଅନାସକ୍ତିକୁ ପ୍ରକୃତ ବ୍ରହ୍ମଚର୍ଯ୍ୟ କୁହାଯାଏ ।

ଉପର୍ଯ୍ୟୁକ୍ତ ବ୍ରହ୍ମଚର୍ଯ୍ୟ ପାଳନ ବିଷୟରେ ଯେଉଁ ଉଲ୍ଲେଖ କରାଗଲା, ସେଥିରୁ କେବଳ ବିନ୍ଦୁଧାରଣ କଲେ ଯେ ବ୍ରହ୍ମଚର୍ଯ୍ୟ ପାଳନ ହେବ, ତାହା ନୁହେଁ । ପରଂବ୍ରହ୍ମ ପଦରେ ମତି ଓ ଭକ୍ତି ରଖି ବିନ୍ଦୁଧାରଣପୂର୍ବକ ବ୍ରହ୍ମର୍ଯ୍ୟ ପାଳନ କଲେ ପ୍ରକୃତ ବ୍ରହ୍ମଚର୍ଯ୍ୟ ବୋଲି କୁହାଯିବ—ଏହା ହିଁ ମହିମାଧର୍ମର ଉପାସକମାନଙ୍କ ପକ୍ଷରେ କର୍ତ୍ତବ୍ୟ ।

ଶ୍ରୁତିରେ ମଧ୍ୟ ବର୍ଣ୍ଣିତ ଅଛି—

ବ୍ରହ୍ମଭାବେ ମନଶ୍ଚାରଂ ବ୍ରହ୍ମଚର୍ଯ୍ୟଂ ପରନ୍ତପ ॥

ଜାବାଲ ଦ: ଉ: ୧।୧୪ ॥

ହେ ପରନ୍ତପ ! ବ୍ରହ୍ମଙ୍କଠାରେ ମନର ଯେ ଏକାନ୍ତ ବିଚରଣ, ଅର୍ଥାତ୍ ବିଶୁଦ୍ଧାତ୍ମଜ୍ଞାନ-ଭକ୍ତିଯୋଗଦ୍ୱାରା ବ୍ରହ୍ମଙ୍କଠାରେ ଯେଉଁ ଚିତ୍ତର ଐକାନ୍ତିକ ନିବେଶ, ତାହାକୁ ପ୍ରକୃତ ବ୍ରହ୍ମଚର୍ଯ୍ୟ କୁହାଯାଏ ।

ଯଦଦଂ ବ୍ରହ୍ମଣୋରୂପଂ ବ୍ରହ୍ମଚର୍ଯ୍ୟମିତ ସ୍ମୃତମ୍ ।
ପରଂ ତତ୍ ସର୍ବଧର୍ମେଭ୍ୟସ୍ତେନ ଯାନ୍ତି ପରାଂ ଗତମ୍ ॥

ମହାଭା: ଶାନ୍ତି: ୨୧୪।୭ ॥

ବ୍ରହ୍ମଚର୍ଯ୍ୟ ବ୍ରହ୍ମଙ୍କ ବିଷୟରେ କଥିତ ଓ ସକଳପ୍ରକାର କର୍ମ ମଧ୍ୟରେ ଶ୍ରେଷ୍ଠ ଅଟେ । କାରଣ ମନୁଷ୍ୟ ସେହି ବ୍ରହ୍ମଙ୍କ ଆଶ୍ରୟରେ କେବଳ ପରମଗତି ପ୍ରାପ୍ତ ହୁଏ ।

ଲିଙ୍ଗସଂଯୋଗହୀନଂ ଯଚ୍ଛବ୍ଦସ୍ପର୍ଶବିବର୍ଜିତମ୍ ।
ଶ୍ରୋତ୍ରେଣ ଶ୍ରବଣଂ ଚୈବ ଚକ୍ଷୁଷା ଚୈବ ଦର୍ଶନମ୍ ।
ବାକ୍‌ସଂଭାଷା ପ୍ରବୃତ୍ତଂ ଯତ୍ତନ୍ମନଃ ପରିବର୍ଜିତମ୍ ।
ବୁଦ୍ଧ୍ୟା ବ୍ୟବସୀୟେତ ବ୍ରହ୍ମଚର୍ଯ୍ୟମକଲ୍ମଷମ୍ ॥

ମହାଭା: ଶାନ୍ତି: ୨୧୪।୮।୯ ॥

ଯେଉଁ ବ୍ରହ୍ମ ପଞ୍ଚପ୍ରାଣ, ମନ, ବୁଦ୍ଧି ଓ ଦଶ ଇନ୍ଦ୍ରିୟ—ଏପରି ସପ୍ତଦଶ ଅବୟବାତ୍ମକ ଲିଙ୍ଗଶରୀରର ସଂଯୋଗରୁ ରହିତ, ସେ ଶବ୍ଦ ଓ ସ୍ପର୍ଶହୀନ । ତାହାଙ୍କୁ କର୍ଣ୍ଣଦ୍ୱାରା ଶୁଣାଯାଇପାରେ ନାହିଁ ଓ ସେ ମନ୍ତ୍ର ଚକ୍ଷୁର ଦୃଶ୍ୟ ନୁହନ୍ତି । ବାକ୍‌ଶକ୍ତି ତାହାଙ୍କୁ ବର୍ଣ୍ଣନା କରିବାକୁ ଅସମର୍ଥ । ସେ ବିଷୟେନ୍ଦ୍ରିୟ ରହିତ ଓ ମନରହିତ; ଅର୍ଥାତ୍ ମନଦ୍ୱାରା ଯାହାଙ୍କର ଭାବନା କରଯାଇପାରେ ନାହିଁ; ସେ ପାପସ୍ପର୍ଶରହିତ ଓ ବିଶୁଦ୍ଧ ନିର୍ଗୁଣ ବ୍ରହ୍ମ ବୋଲି ଯୋଗୀଙ୍କ ଗମ୍ୟ । ତାହାଙ୍କୁ ଲାଭକରିବା ନିମନ୍ତେ ବିଶୁଦ୍ଧ ଆତ୍ମଜ୍ଞାନ ଭକ୍ତିଯୁକ୍ତ ବୁଦ୍ଧି ଓ ଅଧ୍ୟବସାୟ (ଅବିଶ୍ରାନ୍ତ ଉଦ୍ୟୋଗ) ନିତାନ୍ତ ଆବଶ୍ୟକ ଓ ଏହି କେବଳ ପ୍ରକୃତ ବ୍ରହ୍ମଚର୍ଯ୍ୟ ।

ତା'ପରେ—

କାମଚାରୀ ତୁ କାମେନ ଯ ଇନ୍ଦ୍ରିୟସୁଖେ ରତଃ ।
ବ୍ରହ୍ମଚାରୀ ସଦୈବୈଷ ଯ ଇନ୍ଦ୍ରିୟଜୟେ ରତଃ ॥
ଅପେତବ୍ରତକର୍ମା ତୁ କେବଳଂ ବ୍ରହ୍ମଣି ସ୍ଥିତଃ ।
ବ୍ରହ୍ମଭୂତଶ୍ଚରଁଲ୍ଲୋକେ ବ୍ରହ୍ମଚାରୀ ଭବତ୍ୟୟମ୍ ॥

ମହା ଭା: ଅଶ୍ୱମେଧ ୨୬।୧୫-୧୬ ॥

ଇନ୍ଦ୍ରିୟସୁଖରେ ରତ ହୋଇ କାମପଥରେ ବିଚରଣ କଲେ କାମଚାରୀ କୁହାଯାଏ ଓ ଇନ୍ଦ୍ରିୟମାନଙ୍କୁ ଜୟକରି ବ୍ରହ୍ମପଥରେ ବିଚରଣ କଲେ ବ୍ରହ୍ମଚାରୀ ବୋଲାଯାଏ ।

ଯେଉଁ ବ୍ୟକ୍ତି ଇହଲୋକରେ ବ୍ରତାଦିକର୍ମ ତ୍ୟାଗକରି ମଧ୍ୟ କେବଳ ବ୍ରହ୍ମମାର୍ଗରେ ଗମନ କରେ, ସେ ବ୍ରହ୍ମସ୍ୱରୂପ ଓ ବ୍ରହ୍ମଭୂତ ହୋଇ ଜଗତରେ ବିଚରଣ କରି ବ୍ରହ୍ମଙ୍କଠାରେ ସମାହିତ ହୋଇଯାଏ ।

**ସ୍ମରଣଂ ଦର୍ଶନଂ ସ୍ତ୍ରୀଣାଂ ଗୁଣକର୍ମାନୁକୀର୍ତ୍ତିନମ୍ ।**
**ସମୀଚୀନତ୍ୱଧୀସ୍ତାସୁ ପ୍ରୀତଃ ସମ୍ଭାଷଣଂ ମିଥଃ ।।**
**ସହବାସଶ୍ଚ ସଂସର୍ଗଃ ଅଷ୍ଟଧା ମୈଥୁନଂ ବିଦୁଃ ।**
**ଏତଦ୍‌ବିଲକ୍ଷଣଂ ବ୍ରହ୍ମଚର୍ଯ୍ୟଂ ଚିତ୍ତପ୍ରସାଦକମ୍ ।।**

ସର୍ବ ବେ: ସା: ସ: ୧୧୦-୧୧୧ ।।

ରମଣୀମାନଙ୍କ ବିଷୟରେ ଚିନ୍ତା, ଅବଲୋକନ ଏବଂ ଗୁଣ ଓ କର୍ମର ପ୍ରଶଂସା, ସେମାନଙ୍କୁ ରମଣୀୟ ବୋଲି ବୋଧ କରିବା, ସେମାନଙ୍କ ସହିତ ପ୍ରେମ ଓ ଅନୁରାଗପୂର୍ବକ ସମ୍ଭାଷଣ; ସେମାନଙ୍କ ସହିତ ଏକତ୍ର ଅବସ୍ଥାନ ଓ ସଙ୍ଗମ, ଏହି ଅଷ୍ଟବିଧ ବ୍ୟବହାରକୁ ପଣ୍ଡିତମାନେ ମୈଥୁନ ବୋଲି ବିବେଚନା କରିଅଛନ୍ତି । ଏହି ଅଷ୍ଟବିଧ ମୈଥୁନ ପରିବର୍ଜନ କରି ଅସଲ ବ୍ରହ୍ମଚର୍ଯ୍ୟ ପାଳନ କରାଯାଏ । ଏହି ବ୍ରହ୍ମଚର୍ଯ୍ୟ ହିଁ ଚିତ୍ତର ପ୍ରସନ୍ନତାର ହେତୁ ।

ଅତଏବ ଚକ୍ଷୁକର୍ଣ୍ଣ ଆଦି ଇନ୍ଦ୍ରିୟଗଣଙ୍କୁ କୁ-ବିଷୟରୁ ସର୍ବତୋଭାବେ ପ୍ରତ୍ୟାହୃତ କରି ରଖିବା ନାମ ବ୍ରହ୍ମଚର୍ଯ୍ୟସାଧନ । ଅତଏବ ଚକ୍ଷୁକୁ କୁ-ବିଷୟ ଦର୍ଶନରୁ, କର୍ଣ୍ଣକୁ କୁ-କଥା ଶ୍ରବଣରୁ ଓ ରସନାକୁ ପ୍ରକାଶ୍ୟ ବା ଗୋପନୀୟ-ସକଳ କଦାଳାପରୁ ବିରତ କରିବା ବାଞ୍ଛନୀୟ । ହସ୍ତାଦିକୁ କୁସ୍ପର୍ଶରୁ ସଂଯତ ରଖିବ । ସର୍ବୋପରି ଅନ୍ତରିନ୍ଦ୍ରିୟ ବା ମନକୁ ବିଶେଷ ଭାବରେ ସଂଯତ କରିବା ଆବଶ୍ୟକ । କାରଣ ମନରେ କୁଭାବନା ଆସିଲେ କୁକାର୍ଯ୍ୟ ନିମନ୍ତେ ପ୍ରବୃତ୍ତି ହୁଏ; ସୁତରାଂ ସିଦ୍ଧ ସାଧୁମାନଙ୍କ ସହିତ ସତ୍ ଆଲୋଚନା, ପରଂବ୍ରହ୍ମ ପରମାତ୍ମାଙ୍କ ନାମ ସ୍ମରଣ, ଭଜନ ଓ ଚିନ୍ତନଦ୍ୱାରା ମନକୁ ଏକାଗ୍ର ରଖିଲେ ଅନ୍ୟ କୌଣସି ପ୍ରକାର କୁ-ଭାବ ମନରେ ସ୍ଥାନ ପାଇବ ନାହିଁ । ଏହିପରି କାୟମନୋବାକ୍ୟରେ ପବିତ୍ରତା ରକ୍ଷାକରି ପାରିଲେ ବ୍ରହ୍ମଚର୍ଯ୍ୟ ସୁପ୍ରତିଷ୍ଠିତ ହୋଇ ସାଧକକୁ ପରମାନନ୍ଦ ପ୍ରଦାନକରେ ।

ଏକମାତ୍ର କାମେନ୍ଦ୍ରିୟ ନିଗ୍ରହଦ୍ୱାରା ବ୍ରହ୍ମଚର୍ଯ୍ୟପାଳନ ସମ୍ପୂର୍ଣ୍ଣ ହୁଏ ନାହିଁ । କାମ ବା କାମନାର ଅପୂରନ୍ତ ତରଙ୍ଗ ଏବଂ ଉଦ୍ଦାମ ଲାଳସାକୁ ମଧ୍ୟ ନିରୋଧକରି ପରଂବ୍ରହ୍ମ ପରମାତ୍ମା ଭାବନାରେ ସୁପ୍ରତିଷ୍ଠିତ ହେବାକୁ ହେବ । ଏହାର ନାମ ପ୍ରକୃତ ବ୍ରହ୍ମଚର୍ଯ୍ୟସାଧନ । ଯଦି ଜନ୍ମଲାଭର ସାର୍ଥକତା ପ୍ରତିପାଦନ ନିମନ୍ତେ ଇଚ୍ଛା ଥାଏ, ଜୀବନସଂଗ୍ରାମରେ ଜୟୀ ହୋଇ ଏହି ଜଗତରେ ଅମରତ୍ୱ ଲାଭ କରିବା ବାସନା ଥାଏ, ତେବେ କି ବାଳକ, କି ଯୁବକ

ନ ଗୃହସ୍ଥ * ସମସ୍ତଙ୍କର ବ୍ରହ୍ମଚର୍ଯ୍ୟପାଳନରେ ଯତ୍ନ ନେବା ସର୍ବତୋଭାବେ କର୍ତ୍ତବ୍ୟ । କାରଣ ଏହା ସକଳ ସାଧନାର ମୂଳାଧାର । ଆଦିଯୁଗରୁ ମାନବ ବ୍ରହ୍ମଚର୍ଯ୍ୟପାଳନପ୍ରଥା ସ୍ୱୀକାର କରି ଆସିଛି ଏବଂ ସେଥିନିମନ୍ତେ ବାଲ୍ୟକାଳରୁ ଶିକ୍ଷାଦୀକ୍ଷା ଲାଭକରି ପୂର୍ବୋକ୍ତ ଯଥାଶାସ୍ତ୍ର-ନିୟମରେ ସେହି ବ୍ରହ୍ମଚର୍ଯ୍ୟ ପାଳନ ମଧ୍ୟ କରି ଆସିଛି । ବର୍ତ୍ତମାନ ସେହିପରି ସତ୍ୟଧର୍ମାଶ୍ରିତ-ମାନଙ୍କରେ ବ୍ରହ୍ମଚର୍ଯ୍ୟ ପାଳନ ସର୍ବସାଧନବଶିଷ୍ଟାଙ୍ଗର ରୂପରେ ପାଳନ କରିବା ମୁଖ୍ୟ ନିୟମ ଅଟେ ।

**ସତ୍ୟେନ ଲଭ୍ୟସ୍ତପସା ହ୍ୟେଷ ଆତ୍ମା**
**ସମ୍ୟଗ୍ ଜ୍ଞାନେନ ବ୍ରହ୍ମଚର୍ଯ୍ୟେଣ ନିତ୍ୟମ୍ ।**
**ଅନ୍ତଃଶରୀରେ ଜ୍ୟୋତର୍ମୟୋ ହି ଶୁଭ୍ରୋ**
**ଯଂ ପଶ୍ୟନ୍ତି ଯତୟଃ କ୍ଷୀଣଦୋଷାଃ ।।**

ମୁଣ୍ଡକ— ୨-୩-୫ ।।

ଯେଉଁ ପରମାତ୍ମା ଶରୀରମଧ୍ୟରେ, ଅର୍ଥାତ୍ ହୃଦୟ-ଆକାଶରେ ଜ୍ୟୋତର୍ମୟ ଏବଂ ନିର୍ମଳରୂପରେ ଅବସ୍ଥିତ ଅଛନ୍ତି ଏବଂ ଯାହାଙ୍କୁ କାମକ୍ରୋଧାଦିରହିତ ଯତିମାନେ ଦର୍ଶନ କରନ୍ତି, ସେହି ଶୁଦ୍ଧ ଓ ସ୍ୱପ୍ରକାଶଶୀଳ ପରଂବ୍ରହ୍ମଙ୍କୁ ସର୍ବଦା ସତ୍ୟକଥନ, ଇନ୍ଦ୍ରିୟମାନଙ୍କର ଦମନ, ଚିତ୍ତର ଏକାଗ୍ରତା, ସମ୍ୟଗ୍‌ଜ୍ଞାନ ଓ ବ୍ରହ୍ମଚର୍ଯ୍ୟ ଧାରଣଦ୍ୱାରା ଲାଭ କରାଯାଏ ।

## ୦—ଅପରିଗ୍ରହ

କେବଳ ଦେହରକ୍ଷା ନିମନ୍ତେ ଯେଉଁ ପରିମାଣରେ ଭୋଗ୍ୟବସ୍ତୁ ଆବଶ୍ୟକ, ସେଥିରୁ ଅତିରିକ୍ତ ପଦାର୍ଥ ଗ୍ରହଣ ନ କରିବାର ନାମ ଅପରିଗ୍ରହ । ଫଳତଃ, ଭୋଗାସକ୍ତ ନ ହୋଇ, ଇନ୍ଦ୍ରିୟଚରିତାର୍ଥତାର ନିମନ୍ତେ ଅଧିକ ପଦାର୍ଥ ଗ୍ରହଣ ନ କରି ଲୋଭକୁ ଦମନ କରିବାର ନାମ ଅପରିଗ୍ରହ ସାଧନ ।

**ବିଷୟାଣାମର୍ଜ୍ଜନରକ୍ଷଣକ୍ଷୟସଙ୍ଗହିଂସା-**
**ଦୋଷଦର୍ଶନାଦସ୍ୱୀକରଣମପରିଗ୍ରହଃ ।**

ପାତଞ୍ଜଳଯୋଗ-ଭାଷ୍ୟ—୨ ୩୦ ।।

---

* ଗୃହସ୍ଥମାନେ ଋତୁକାଳ ବ୍ୟତୀତ ଅନ୍ୟ ସମୟରେ ସଂଯମୀ ହୋଇ ବ୍ରହ୍ମଚର୍ଯ୍ୟ ପାଳନ କଲେ ବ୍ରହ୍ମଚାରୀ ବୋଲି ଗଣ୍ୟ ହୋଇପାରିବେ ।

"ଭାର୍ଯ୍ୟାଂ ଗଚ୍ଛନ୍ ବ୍ରହ୍ମଚାରୀ ଋତୌ ଭବତି ବୈ ଦ୍ୱିଜଃ ।" ମହାଭା: ଶାନ୍ତିପର୍ବ ।

ବିଷୟ ବା ଉପଭୋଗ୍ୟ ବସ୍ତୁର ଉପାର୍ଜନ, ରକ୍ଷା, କ୍ଷୟ, ସଙ୍ଗ ଓ ହିଂସାଦୋଷ ଅନୁଭବ କରି ସେଥିରୁ ବିରତ ହେବାର ନାମ ଅପରିଗ୍ରହ । "

୦—ଦୟା

ସ୍ୱାତ୍ମବତ୍ ସର୍ବଭୂତେଷୁ କାୟେନ ମନସା ଗିରା ।
ଅନୁଜ୍ଞା ଯା ଦୟା ସୈବ ପ୍ରୋକ୍ତା ବେଦାନ୍ତବେଦିଭିଃ ॥

[ଜାବାଳଦ: ଉ:—୧-୧୫ ॥]

ଯେପରି ନିଜଠାରେ, ସେପରି ସକଳପ୍ରାଣୀଙ୍କ ପ୍ରତି କାୟମନୋବାକ୍ୟରେ ଯେଉଁ ସଦ୍ଭାବ ବା ପ୍ରସନ୍ନତା, ତାହାକୁ ବେଦାନ୍ତୀ ଦୟା ବୋଲି କହେ ।

ଅନୁକମ୍ପା ଦୟା ସୈବ ପ୍ରୋକ୍ତା ବେଦାନ୍ତବାଦିଭିଃ ।
କରଣ-ବିତୟେଷ୍ୱେକରୂପତାଽବକ୍ରତା ମତା ॥

ସର୍ବବେଦାନ୍ତ ସି: ସା: ସଂ—୧୧୩ ॥

ଲୋକବ୍ୟବହାରରେ ଯାହାର ନାମ ଅନୁକମ୍ପା, ତାହାକୁ ହିଁ ବେଦାନ୍ତୀ ଦୟା କହେ । କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ ଓ ଅନ୍ତରିନ୍ଦ୍ରିୟମାନଙ୍କଦ୍ୱାରା ଏକପ୍ରକାର ବ୍ୟବହାର ( ଅର୍ଥାତ୍ ମନରେ ଏକପ୍ରକାର, କିନ୍ତୁ ଚକ୍ଷୁପ୍ରଭୃତିଦ୍ୱାରା ଅନ୍ୟପ୍ରକାର ଏବଂ ବାକ୍ୟରେ ମଧ୍ୟ ଅନ୍ୟପ୍ରକାର ଯାହା ଖଳ ଓ କୁଟିଳ ବ୍ୟକ୍ତିର ଅଭ୍ୟସ୍ତ ବିଷୟ—ତାହାର ଧର୍ମମୂର୍ତ୍ତି ବର୍ଜନ ) ଅବକ୍ରତା ବୋଲି ବିବେଚିତ ହୁଏ ।

୦—ଦୟାର ମାହାତ୍ମ୍ୟ—

ଯତ୍ ସର୍ବେଷ୍ୱିହ ଭୂତେଷୁ ଦୟା କୌରବନନ୍ଦନ !
ନଭୟଂ ବିଦ୍ୟତେ ଜାତୁ ନରସ୍ୟେହ ଦୟାବତଃ ॥
ଦୟାବତାମିମେ ଲୋକାଃ ପରେ ଚାପି ତପସ୍ୱିନାମ୍ ॥

ମହାଭା: ଅନୁଶା—୧୧୬।୨୦-୨୧ ॥

ହେ କୌରବନନ୍ଦନ ! ସକଳ ଜୀବମାନଙ୍କ ବିଷୟରେ ଦୟା ସଦୃଶ ଧର୍ମ ଇହ-ଲୋକ ଓ ପରଲୋକରେ ଦ୍ୱିତୀୟ କିଛି ନାହିଁ । ଦୟାବାନ୍ ମନୁଷ୍ୟର କଦାପି ଭୟ ରହେ ନାହିଁ; ଦୟାବାନ୍ ତପସ୍ୱୀ ଇହ ଓ ପରତ୍ର ବିଜୟୀ ହୁଏ ।

୦—ଆର୍ଜବ, କ୍ଷମା, ଶାନ୍ତି ଓ ଧୃତ ।

ପୁତ୍ରେ ମିତ୍ରେ କଳତ୍ରେ ଚ ରିପୌ ସ୍ୱାତ୍ମନି ସନ୍ତତମ୍ ।
ଏକରୂପଂ ମୁନେ ଯତ୍ତଦାର୍ଜବଂ ପ୍ରୋଚ୍ୟତେ ମୟା ।।
କାୟେନ ମନସା ବାଚା ଶତ୍ରୁଭିଃ ପରିପୀଡ଼ିତେ ।
ବୁଦ୍ଧିକ୍ଷୋଭନିବୃତ୍ତିର୍ଯା କ୍ଷମା ସା ମୁନିପୁଙ୍ଗବ ।।

ଜାବାଲ: ଉ:—୧।୧୬।୧୭ ।।

ପୁତ୍ର, ମିତ୍ର, କଳତ୍ର, ଶତ୍ରୁ ଏବଂ ନିଜଠାରେ ନିରନ୍ତର ଏକରୂପତା ଅନୁଭବ କରିବାକୁ ଆମେ ଆର୍ଜବ କହୁଁ । ହେ ମୁନିଶ୍ରେଷ୍ଠ ! ଶତ୍ରୁକର୍ତ୍ତୃକ ପ୍ରପୀଡ଼ିତ ହୋଇ ମଧ୍ୟ ଯେଉଁ ନରର ଯଦି କାୟମନୋବାକ୍ୟରେ ବୁଦ୍ଧିକ୍ଷୋଭ ବା ଘୃଣାଲିଷ୍ଟ ଜାତ ହୁଏ ନାହିଁ, ତାହାକୁ କ୍ଷମା କୁହାଯାଏ ।

କ୍ଷମାବତାମେବ ହି ଯୋଗସିଦ୍ଧିଃ ସ୍ୱାରାଜ୍ୟଲକ୍ଷ୍ମୀ-ସୁଖଭୋଗସିଦ୍ଧିଃ ।
କ୍ଷମାବିହୀନା ନିପତନ୍ତି ବିଘ୍ନୈର୍ବାତେରିତାଃ ପର୍ଣ୍ଣଚୟା ଇବ ଦ୍ରୁମାତ୍ ।।

ସ: ବେ: ସି: ସା—୧୪୦ ।।

ଯେଉଁମାନେ କ୍ଷମାଶୀଳ, ସେହିମାନେ କେବଳ ଯୋଗସିଦ୍ଧି ଲାଭ କରନ୍ତି ଏବଂ ସେହିମାନେ ସ୍ୱର୍ଗସାମ୍ରାଜ୍ୟ-ଲକ୍ଷ୍ମୀର ଲାଭଜନିତ ସକଳପ୍ରକାର ସୁଖଭୋଗ କରିବାକୁ ସମର୍ଥ ହୁଅନ୍ତି । ଯେଉଁମାନେ କ୍ଷମାଶୀଳ ନୁହନ୍ତି, ସେମାନେ ବାୟୁଦ୍ୱାରା ଆହତ ପତ୍ର ବୃକ୍ଷରୁ ପଡ଼ିଲାପରି ଯୋଗମାର୍ଗରୁ ଭ୍ରଷ୍ଟ ହୁଅନ୍ତି ।

ଆହୁରି ମଧ୍ୟ—

କ୍ଷମା ଧର୍ମଃ କ୍ଷମା ଯଜ୍ଞଃ କ୍ଷମା ବେଦାଃ କ୍ଷମା ଶ୍ରୁତମ୍ ।
ଯସ୍ତାମେବ ବିଜାନୀତେ ସ ସର୍ବଂ କ୍ଷନ୍ତୁମର୍ହତି ।।

ମହାଭା: ବନପ:—୨୯।୩୭ ।।

ଯେଉଁମାନେ କ୍ଷମାକୁ କେବଳ ଧର୍ମ, ଯଜ୍ଞ, ବେଦ ଓ ସକଳ ଶାସ୍ତ୍ରୋପଦେଶର ସାର ବୋଲି ବୁଝନ୍ତି, ସେହିମାନେ ପ୍ରକୃତରେ କ୍ଷମା କରିବାନିମନ୍ତେ ସମର୍ଥ ।

କ୍ଷନ୍ତବ୍ୟମେବ ସତତଂ ପୁରୁଷେଣ ବିଜାନତା ।
ଯଦା ହି କ୍ଷମତେ ସର୍ବଂ ବ୍ରହ୍ମ ସମ୍ପଦ୍ୟତେ ତଦା ॥
କ୍ଷମାବତାମୟଂ ଲୋକଃ ପରଶ୍ଚୈବ କ୍ଷମାବତାମ୍ ।
ଇହ ସମ୍ମାନମୃଚ୍ଛନ୍ତି ପରତ୍ର ଚ ଶୁଭାଂ ଗତିମ୍ ॥
ଯେଷାଂ ମନ୍ୟୁର୍ମନୁଷ୍ୟାଣାଂ କ୍ଷମୟାଭିହତଃ ସଦା ।
ତେଷାଂ ପରତରେ ଲୋକାସ୍ତସ୍ମାତ୍ କ୍ଷାନ୍ତିଃ ପରା ମତା ॥

ମହାଭା, ବନପ — ୨୯।୪୩-୪୫ ॥

ପ୍ରକୃତରେ ଜ୍ଞାନୀ ବ୍ୟକ୍ତି ସର୍ବଦା କ୍ଷମା କରିବା ନିତାନ୍ତ ଆବଶ୍ୟକ । ମନୁଷ୍ୟ ସମସ୍ତଙ୍କୁ କ୍ଷମା କରିବାଦ୍ୱାରା ବ୍ରହ୍ମଙ୍କୁ ପ୍ରାପ୍ତ ହୁଏ । ଅତଏବ କ୍ଷମାଶୀଳ ବ୍ୟକ୍ତିମାନଙ୍କର ଇହ ଓ ପରଲୋକ ଅନୁକୂଳ ରହେ । ସେମାନେ ଇହକାଳରେ ସମ୍ମାନ ଓ ପରଲୋକରେ ସଦ୍‌ଗତି ଲାଭ କରନ୍ତି । ଯେଉଁ ଲୋକ କ୍ଷମାଗୁଣରେ କ୍ରୋଧକୁ ଶାନ୍ତ କରେ, ସେ ମୃତ୍ୟୁ ପରେ ଶ୍ରେଷ୍ଠତର ଲୋକ ଲାଭ କରେ । ଅତଏବ ଏହି କ୍ଷମାଗୁଣ କେବଳ ଶ୍ରେଷ୍ଠ ବୋଲି ଜାଣିବ । *

କ୍ଷମା ବଶୀକୃତିର୍ଲୋକେ କ୍ଷମୟା କିଂ ନ ସାଧ୍ୟତେ ।
ଶାନ୍ତିଖଡ୍‌ଗଃ କରେ ଯସ୍ୟ କିଂ କରିଷ୍ୟତି ଦୁର୍ଜନଃ ॥

ମହାଭା: ଉଦ୍‌ଯୋଗ ପ.— ୩୩।୫୬ ॥

କ୍ଷମାଦ୍ୱାରା ଲୋକେ ବଶ ହୁଅନ୍ତି ଓ କ୍ଷମାଦ୍ୱାରା କ'ଣ ବା ସାଧିତ ହୋଇ ନ ପାରେ ? ଯାହାର ହସ୍ତରେ ଶାନ୍ତିରୂପକ ଖଡ୍‌ଗ ଥାଏ, ଦୁର୍ଜନ ଲୋକ ତାହାର କ'ଣ କରି ପାରିବ ?

ଏକୋ ଧର୍ମଃ ପରଂ ଶ୍ରେୟଃ କ୍ଷମୈକା ଶାନ୍ତିରୁତ୍ତମା ।
ବିଦ୍ୟୈକା ପରମା ତୃପ୍ତିରହିଂସୈକା ସୁଖାବହା ॥

ମହାଭା. ଉଦ୍‌ଯୋଗ ପ:— ୩୩।୪୮ ॥

---

* ଏକଃ କ୍ଷମାବତାଂ ଦୋଷୋ ଦ୍ୱିତୀୟୋ ନୋପପଦ୍ୟତେ ।
ଯଦେନଂ କ୍ଷମୟା ଯୁକ୍ତମଶକ୍ତଂ ମନ୍ୟତେ ଜନଃ ॥
ସୋଽସ୍ୟ ଦୋଷୋ ନ ମନ୍ତବ୍ୟଃ କ୍ଷମା ହି ପରମଂ ବଳମ୍ ।
କ୍ଷମାଗୁଣୋ ହ୍ୟଶକ୍ତାନାଂ ଶକ୍ତାନାଂ ଭୂଷଣଂ କ୍ଷମା ॥ ମହାଭା: ଉଦ୍— ୩୩।୪୪।୪୫ ॥

କ୍ଷମାଶୀଳ ଲୋକମାନଙ୍କର ଗୋଟିଏ କେବଳ ଦୋଷ ହୋଇପାରେ, ଦ୍ୱିତୀୟ ଦୋଷ ସମ୍ଭବ ନୁହେଁ । ସେହି ଦୋଷ ଏହି ଯେ, କ୍ଷମାଶୀଳ ଲୋକଙ୍କୁ ଅନ୍ୟମାନେ ଅସମର୍ଥ ମନେ କରନ୍ତି । ପ୍ରକୃତରେ ଲୋକଙ୍କୁ ଅସମର୍ଥ କହି କ୍ଷମାଗୁଣକୁ ଦୋଷ ବୋଲି କହିବା ଅନୁଚିତ । କାରଣ କ୍ଷମା ସମସ୍ତଙ୍କର ପରମ ବଳ, ଅତଏବ ପରମ ଗୁଣ ଓ ଉତ୍କୃଷ୍ଟ ଅଳଙ୍କାର ଅଟେ ।

ଧର୍ମ କେବଳ ସକଳ ମଙ୍ଗଳ ସାଧନ କରିପାରେ; କ୍ଷମା କେବଳ ଉତ୍କୃଷ୍ଟ ଶାନ୍ତିପ୍ରଦ, ବ୍ରହ୍ମବିଦ୍ୟା ସର୍ବୋଚ୍ଚ ତୃପ୍ତି ସାଧକ ଓ ଅହିଂସା କେବଳ ଏକମାତ୍ର ସୁଖର ଆକର ।

ଯତ୍ କିଞ୍ଚିଦ୍‌ବସ୍ତୁ ସଂପ୍ରାପ୍ୟ ସ୍ୱଳ୍ପଂ ବା ଯଦି ବା ବହୁ ।
ଯା ତୁଷ୍ଟିର୍ଜାୟତେ ଚିତ୍ତେ ଶାନ୍ତିଃ ସା ଗଦ୍ୟତେ ବୁଧୈଃ ॥

ପଦ୍ମପୁ: କ୍ରିୟାଯୋଗ-୧୬।୪୮ ॥

ଅଳ୍ପଦ୍ରବ୍ୟ ପ୍ରାପ୍ତ ହେଲେ ମଧ୍ୟ ହୃଦୟରେ ଯେଉଁ ତୁଷ୍ଟି ଜାତ ହୁଏ, ତାକୁ ହିଁ ବୁଧଗଣ ଶାନ୍ତି ବୋଲି ଅଭିହିତ କରିଛନ୍ତି । ଏହି ଶାନ୍ତି ଓ ସନ୍ତୋଷ ସମ୍ବନ୍ଧରେ ମହାତ୍ମା ଋଭୁ ନିଦାଘଙ୍କୁ ଧର୍ମୋପଦେଶ ଅବସରରେ ବୁଝାଇଅଛନ୍ତି—

ନ ଧନାନ୍ୟୁପକୁର୍ବନ୍ତି ନ ମିତ୍ରାଣି ନ ବାନ୍ଧବାଃ ।
ନ କାୟକ୍ଲେଶବୈଧୁର୍ଯ୍ୟଂ ନ ତୀର୍ଥାୟତନାଶ୍ରୟଃ ॥
କେବଳଂ ତନ୍ମନୋମାତ୍ରମୟେନାସାଦ୍ୟତେ ପଦମ୍ ॥
ଯାନି ଦୁଃଖାନି ଯା ତୃଷ୍ଣା ଦୁଃସହା ଯେ ଦୁରାଧୟଃ ।
ଶାନ୍ତଚେତଃସୁ ତତ୍ ସର୍ବଂ ତମୋଽର୍କେଷ୍ୱିବ ନଶ୍ୟତି ॥
ମାତରୀବ ପରଂ ଯାନ୍ତି ବିଷମାଣି ମୃଦୂନି ଚ ।
ବିଶ୍ୱାସମିହ ଭୂତାନି ସର୍ବାଣି ଶମଶାଳିନି ॥
ନ ରସାୟନପାନେନ ନ ଲକ୍ଷ୍ମ୍ୟାଲିଙ୍ଗିତେନ ଚ ।
ନ ତଥା ସୁଖମାପ୍ନୋତି ଶମେନାନ୍ତର୍ଯଥା ଜନଃ ॥

ମହୋପନି: ୪।୨୮-୩୧ ॥

ଲୋକର ବିପୁଳ ଧନସମ୍ପତ୍ତି, ମିତ୍ର ଓ ବାନ୍ଧବ, କ୍ଲେଶରହିତ ଶରୀର ଓ ତୀର୍ଥଗମନ ମଧ୍ୟ ପ୍ରକୃତ ଉପକାର କରେ ନାହିଁ ; କିନ୍ତୁ କେବଳ ଏକମାତ୍ର ବିଶୁଦ୍ଧ ଓ ଶାନ୍ତ ମନ ଅବ୍ୟୟ ପରମପଦ ପ୍ରାପ୍ତ କରାଇପାରେ । ଲୋକର ଯେଉଁ ସବୁ ତୃଷ୍ଣାଜନ୍ୟ ଦୁଃଖ ବା ଦୁଃସହ ଓ ଦୁଷ୍ଟ ମନୋବ୍ୟଥା ଅଛି, ସୂର୍ଯ୍ୟକିରଣ ଅନ୍ଧକାରରାଶିକୁ ନଷ୍ଟ କଲାଭଳି ଶାନ୍ତଚିତ୍ତ କେବଳ ସେସବୁକୁ ନଷ୍ଟ କରିଦିଏ । ଜଗତରେ ଦୁଷ୍ଟ ହେଉ ବା ମୃଦୁସ୍ୱଭାବର ଲୋକ ହେଉ, ଶାନ୍ତ ଗୁଣବିଶିଷ୍ଟ ଲୋକକୁ ନିଜ ମାତାଙ୍କଭଳି ବିଶ୍ୱାସ କରେ । କେବଳ ଏକ ଶାନ୍ତଗୁଣଦ୍ୱାରା ମନୁଷ୍ୟ ନିଜ ଅନ୍ତଃକରଣରେ ଯେଉଁ ସୁଖ ଉପଭୋଗ କରେ, ତାହା ମିଷ୍ଟ ରସାୟନପାନ ବା ସ୍ତ୍ରୀ-ସଙ୍ଗଲାଭଦ୍ୱାରା ମଧ୍ୟ ସମ୍ଭବ ହୋଇ ନ ପାରେ ।

ଶ୍ରୁତ୍ୱା ସ୍ପୃଷ୍ଟ୍ୱା ଚ ଭୁକ୍ତ୍ୱା ଚ ଦୃଷ୍ଟ୍ୱା ଜ୍ଞାତ୍ୱା ଶୁଭାଶୁଭମ୍ ।
ନ ହୃଷ୍ୟତି ଗ୍ଲାୟତି ଯଃ ସ ଶାନ୍ତ ଇତି କଥ୍ୟତେ ॥
ତୁଷାରକରବିମ୍ବାଚ୍ଛଂ ମନୋ ଯସ୍ୟ ନିରାକୁଳମ୍ ।
ମରଣୋତ୍ସବଯୁଦ୍ଧେଷୁ ସ ଶାନ୍ତ ଇତି କଥ୍ୟତେ ॥

ମହୋପନି: ୪।୩୨-୩୩ ॥

ଯେଉଁ ଲୋକ ଶୁଭ ଓ ଅଶୁଭ ପଦାର୍ଥ ସ୍ପର୍ଶ କରି ବା ଭୋଜନ, ଦର୍ଶନ ବା ଜ୍ଞାନ କରି ଆନନ୍ଦିତ ବା ଦୁଃଖିତ ହୁଅନ୍ତି ନାହିଁ, ସେହି କେବଳ ଶାନ୍ତ ବୋଲି କଥିତ ହୁଅନ୍ତି । ଯାହାଙ୍କର ମନ ମରଣ, ଉତ୍ସବ ବା ଯୁଦ୍ଧ ଅବସ୍ଥାରେ ମଧ୍ୟ ଅବିକୃତ ଓ ଚନ୍ଦ୍ରକିରଣ ପରି ସ୍ୱଚ୍ଛ ରହେ, ସେହି କେବଳ ଶାନ୍ତ ବୋଲି ଜାଣିବ ।

ତପସ୍ୱିଷୁ ବହୁଜ୍ଞେଷୁ ଯାଜକେଷୁ ନୃପେଷୁ ଚ ।
ବଳବତ୍ସୁ ଗୁଣାଢ଼୍ୟେଷୁ ଶମବାନେବ ରାଜତେ ॥
ସନ୍ତୋଷାମୃତପାନେନ ଯେ ଶାନ୍ତାସ୍ତୃପ୍ତିମାଗତାଃ ।
ଆତ୍ମାରାମା ମହାତ୍ମାନସ୍ତେ ମହାପଦମାଗତାଃ ॥
ଅପ୍ରାପ୍ତଂ ହି ପରିତ୍ୟଜ୍ୟ ସଂପ୍ରାପ୍ତୌ ସମତାଂ ଗତଃ ।
ଅଦୃଷ୍ଟଖେଦାଖେଦୋ ଯଃ ସନ୍ତୁଷ୍ଟ ଇତି କଥ୍ୟତେ ॥
ନାଭିନନ୍ଦତ୍ୟସଂପ୍ରାପ୍ତଂ ପ୍ରାପ୍ତଂ ଭୁଂକ୍ତେ ଯଥେପ୍ସିତମ୍ ।
ଯଃ ସ ସୌମ୍ୟସମାଚାରଃ ସନ୍ତୁଷ୍ଟ ଇତି କଥ୍ୟତେ ॥
ରମତେ ଧୀର୍ଯଥା ପ୍ରାପ୍ତେ ସାଧ୍ୱୀବାନ୍ତଃପୁରାଜିରେ ।
ସା ଜୀବନ୍ମୁକ୍ତତୋଦେତି ସ୍ୱରୂପାନନ୍ଦଦାୟିନୀ ॥

ମହୋପନିଷତ୍ — ୪।୩୪-୩୮ ॥

ତପସ୍ୱୀ, ବହୁଜ୍ଞ, ଯାଜକ, ରାଜା ଓ ଗୁଣୀଲୋକଙ୍କ ମଧ୍ୟରୁ ଶମବାନ ଲୋକ ଅଧିକ ଶୋଭାପାଏ । ଯେଉଁ ଶାନ୍ତଲୋକମାନେ ସନ୍ତୋଷରୂପକ ଅମୃତ ପାନ କରି ତୃପ୍ତିଲାଭ କରିଅଛନ୍ତି, ସେହି ଆତ୍ମରତିସମ୍ପନ୍ନ ମହାତ୍ମାମାନେ ମହତ୍ପଦଲାଭ କରିଅଛନ୍ତି । ଯେଉଁମାନେ ଅପ୍ରାପ୍ତ ବସ୍ତୁ ପ୍ରତି ଲାଳାୟିତ ନ ହୋଇ ପ୍ରାପ୍ତ ବସ୍ତୁରେ କେବଳ ତୃପ୍ତିଲାଭ କରନ୍ତି ଏବଂ ଯେଉଁମାନେ ସୁଖ-ଦୁଃଖଶୂନ୍ୟ, ସେହିମାନେ କେବଳ ସନ୍ତୁଷ୍ଟ ବୋଲି କଥିତ । ଯେଉଁମାନେ ଅପ୍ରାପ୍ତ ବସ୍ତୁର ପ୍ରାପ୍ତି ନ ହେଲେ ମନରେ ଦୁଃଖିତ ହୁଅନ୍ତି ନାହିଁ, ନ୍ୟାୟତଃ ପ୍ରାପ୍ତବସ୍ତୁ ନେଇ ପ୍ରୀତିଲାଭ କରନ୍ତି

ଏବଂ ଯାହାଙ୍କର ଆଗ୍ରହ ସର୍ବଜନପ୍ରୀତିବିଧାୟକ, ସେହିମାନେ କେବଳ ସନ୍ତୁଷ୍ଟ ବୋଲି ବୁଝିବ । ସାଧ୍ୱୀରମଣୀ ଯେପରି ନିଜ ଗୃହ ମଧ୍ୟରେ ରହି ପରମପ୍ରୀତି ଲାଭକରେ, ସେହିପରି ଯାହାଙ୍କର ବୁଦ୍ଧି ଯଥାପ୍ରାପ୍ତ ବସ୍ତୁଦ୍ୱାରା ପରମପ୍ରୀତି ଉପଭୋଗ କରେ ଓ ଅପ୍ରାପ୍ତ ବସ୍ତୁପ୍ରତି ଆସକ୍ତ ହୁଏ ନାହିଁ, ସେପରି ବ୍ୟକ୍ତିର କେବଳ ସ୍ୱରୂପାନନ୍ଦଦାୟିନୀ ଜୀବନ୍ମୁକ୍ତତା ଉଦିତ ହୁଏ ।

ଧନକାନ୍ତା-ଜ୍ୱରାଦୀନାଂ ପ୍ରାପ୍ତିକାଳେ ସୁଖାଦଭିଃ ।
ବିକାରହୀନତୈବ ସ୍ୟାତ୍ ସୁଖଦୁଃଖସମାନତା ॥

ସ: ସି: ସା: ୧୨୫ ॥

ଧନ ଓ କାନ୍ତା, ଅଥବା ଦୁଃଖଦାୟକ ଜ୍ୱରପ୍ରଭୃତି ପ୍ରାପ୍ତ ହେବା ସମୟରେ ଯାହାର ଅନ୍ତଃକରଣରେ କୌଣସି ବିକାର ଜାତ ହୁଏ ନାହିଁ, ତାହାକୁ ସୁଖ-ଦୁଃଖସମାନତା ବୋଲିଯାଏ ।

But the fruit of the spirit is love, joy, peace, long suffering, gentleness, goodness, faith, meekness & temperance—Christian Scripture gnl V, 22, 23,

ଅର୍ଥାତ୍ ପ୍ରେମ, ଆନନ୍ଦ, ଶାନ୍ତି, ସହିଷ୍ଣୁତା, ସୁକୋମଳ ବ୍ୟବହାର, କଲ୍ୟାଣଶୀଳତା, ବିଶ୍ୱାସ, ନମ୍ରତା, ମିତାଗ୍ରହ—ଏହି ସକଳଗୁଣ ପବିତ୍ର ଆତ୍ମାର ଫଳ ।

ଧୃତି—

ଜିହ୍ୱୋପସ୍ଥବଦ୍ଧୋ ଧୃତଃ ॥　　　ଭା: ୧୧।୦୯-୩ ॥

ଅର୍ଥାତ୍ ଜିହ୍ୱା ଓ ଉପସ୍ଥକୁ ନିୟମପୂର୍ବକ ସଂଯତ କରି ରଖିବାର ନାମ ଧୃତି ।

ଆହୁରି ମଧ୍ୟ—

ଧୃତ୍ୟା ଯୟା ଧାରୟତେ ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।
ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ॥

ଗୀତା- ୧୮।୩୩ ॥

ହେ ପାର୍ଥ ! ଯେଉଁ ଧୃତି ଯୋଗବଳରେ ଏକାଗ୍ର ହୋଇ ବା ଅନ୍ୟ ବିଷୟ ଧାରଣ ନ କରି ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ ନିୟମିତ କରେ, ସେହି ଧୃତି ସାତ୍ତ୍ୱିକୀ ଅଟେ ।

## ୦—ରାତ୍ରି ଭୋଜନ ନିଷିଦ୍ଧ ଓ ପରିମିତ ବିଶୁଦ୍ଧାହାର ଗ୍ରହଣ କରିବା କର୍ତ୍ତବ୍ୟ—

ରାତ୍ରିଭୋଜନ ନିଷେଧର କାରଣ—ରାତ୍ରିଭୋଜନଦ୍ୱାରା ଅତ୍ୟଧିକ ନିଦ୍ରା ହେବ ଓ ନାନା ଦୁଃସ୍ୱପ୍ନ ମଧ୍ୟ ସମ୍ଭବ । ଦ୍ୱିତୀୟତଃ ବ୍ରାହ୍ମମୁହୂର୍ତ୍ତ ସମୟରେ ଜାଗରିତ ହୋଇ ପାରିବ ନାହିଁ ଓ ତଦ୍ୱାରା ବ୍ରହ୍ମୋପାସନାରେ ବାଧା ଉପୁଜିବ । ତୃତୀୟରେ ରାତ୍ରିଭୋଜନଦ୍ୱାରା ରୋଗର ଅଧିକ ସମ୍ଭାବନା ଥାଏ । ଚତୁର୍ଥରେ ଶରୀରର ପୁଷ୍ଟିସାଧନବିଷୟରେ କୌଣସି ବ୍ୟାଘାତ ନ ଥିଲେ ମଧ୍ୟ ରାଜସ ଓ ତାମସ କାର୍ଯ୍ୟ ସକାଶେ ମନ ଅଧିକ ଆକୃଷ୍ଟ ହେବ ଏବଂ ସାତ୍ତ୍ୱିକ ବା ଧାର୍ମିକ କାର୍ଯ୍ୟକରଣରେ ମନ ଆଗ୍ରହୀ ହେବ ନାହିଁ । ପଞ୍ଚମରେ ବ୍ରାହ୍ମମୁହୂର୍ତ୍ତ ପୂର୍ବରୁ ସ୍ନାନ ଶୌଚାଦି କାର୍ଯ୍ୟସକାଶେ ଆଳସ୍ୟ ତ୍ୟାଗ କରି ପାରିବ ନାହିଁ । ଏହି ସବୁ କାରଣରୁ ଗୁରୁ ମହିମାସ୍ୱାମୀଙ୍କ ଆଦେଶମତେ ମହିମାଧର୍ମସମାଜରେ ରାତ୍ରିଭୋଜନକୁ ତାମସ ଆହାରରୂପରେ ସ୍ଥିର କରାଯାଇ ସାୟଂକାଳର ବ୍ରାହ୍ମମୁହୂର୍ତ୍ତଠାରୁ ପ୍ରାତଃକାଳୀନ ବ୍ରାହ୍ମମୁହୂର୍ତ୍ତ ପର୍ଯ୍ୟନ୍ତ ରାତ୍ରିମଧ୍ୟରେ ଚତୁର୍ବିଧ ଆହାର ନିଷିଦ୍ଧ କରାଯାଇଅଛି । ପ୍ରକୃତପକ୍ଷରେ ରାତ୍ରି ତାମସ କାଳ-ମଧ୍ୟରେ ଗଣିତ । ତମସ୍‌ଶବ୍ଦରୁ ସମ୍ବନ୍ଧ ଅର୍ଥରେ ତାମସ ଶବ୍ଦ ନିଷ୍ପନ୍ନ । ଅତଏବ ରାତ୍ରି ସମୟରେ ଚତୁର୍ବିଧ ଆହାର ମଧ୍ୟରୁ ଯେ କୌଣସି ଆହାର କଲେ ମଧ୍ୟ ତାହା ତାମସ ଆହାରରେ ପରିଣତ ହୋଇ କେବଳ ରାଜସ ଓ ତାମସଗୁଣର ବୃଦ୍ଧି କରିବ । ଅତଏବ ମହିମାଧର୍ମାବଲମ୍ବୀ ଓ ବିବେକୀ ବ୍ୟକ୍ତି ଉପର୍ଯ୍ୟୁକ୍ତ ଦୋଷ ଲକ୍ଷ୍ୟ କରି ରାତ୍ରିକାଳରେ ଜଳସୁଦ୍ଧା ପାନ କରିବେ ନାହିଁ । ରାତ୍ରିଭୋଜନଦ୍ୱାରା ରଜସ୍ ଓ ତମୋଗୁଣର ଅଭିବୃଦ୍ଧି ହୋଇ ଧର୍ମସାଧନର ପ୍ରତିକୂଳଭାବ ଜାତ ହେବ ଓ ରାତ୍ରିଭୋଜନର ନିବାରଣଦ୍ୱାରା ସାତ୍ତ୍ୱିକଗୁଣ ଉତ୍ପନ୍ନ ହୋଇ ଧର୍ମସାଧନର ଅନୁକୂଳଭାବ ଜାତ ହେବ ।

ରାତ୍ରି ତାମସକାଳ—ଏ ବିଷୟରେ ଯାସ୍କମୁନି କହିଛନ୍ତି—

**"ଅତରାତ୍ "କୃଷ୍ଣ" ସଦନାନି ଅସ୍ୟାଃ । କୃଷ୍ଣବର୍ଣ୍ଣା ରାତ୍ରିଃ 'କୃଷ୍ଣ' କୃଷ୍ୟତେଃ ନିକୃଷ୍ଟୋ ବର୍ଣ୍ଣଃ" ।** ନିରୁକ୍ତ ୨ । ୬ । ୩ ।।

ଅର୍ଥାତ୍ ରାତ୍ରି କୃଷ୍ଣ ବା କଳାବର୍ଣ୍ଣଯୁକ୍ତ ଅଟେ । କୃଷ୍ଣଶବ୍ଦ କୃଷ୍‌ଧାତୁରୁ ଉତ୍ପନ୍ନ ଓ ଏହା ଅଧମବର୍ଣ୍ଣର ନାମ ଅଟେ ।

ପୁନଶ୍ଚ—

**ଆରାତ୍ରି ! ପାର୍ଥିବଂ ରଜଃ ପିତୁରପ୍ରାୟି ଧାମଭିଃ ।**
**ଦିବଃ ସଦାଂସି ବୃହତୀ ବିତଷ୍ଠସେ ଆତ୍ୱେଷଂ ବର୍ତ୍ତତେ ତମଃ ।।**

ଅଥର୍ବ ସଂ-୧୯-୬-୪୭ ନିରୁକ୍ତ-୯-୩-୮ ।।

ହେ ରାତ୍ରି ! ତୁ ପୃଥିବୀଲୋକକୁ ଅନ୍ଧକାରରେ ପୂର୍ଣ୍ଣ କରିଅଛୁ ଓ ସେଥିରେ ପୂର୍ଣ୍ଣଭାବରେ ବ୍ୟାପ୍ତ ହୋଇଅଛୁ । କେବଳ ଏତିକି ନୁହେଁ—ଅନ୍ତରୀକ୍ଷଲୋକକୁ ମଧ୍ୟ ଅନ୍ଧକାର-ପୂର୍ଣ୍ଣ କରିଅଛୁ । ଦ୍ୟୁଲୋକବାସୀ ଲୋକମାନଙ୍କ ନିବାସ ପର୍ଯ୍ୟନ୍ତ ଅନ୍ଧକାର ବ୍ୟାପ୍ତ କରିଅଛୁ । ତୁ ବୃହତୀ ବା ଅତି ମହତୀ, ଯମଲୋକ ପର୍ଯ୍ୟନ୍ତ ମଧ୍ୟ ତୁ ପରିବ୍ୟାପ୍ତ; ଏହିପରି ତୋହର ଅପାର ଅନ୍ଧକାର ସର୍ବତ୍ର ପରିବ୍ୟାପ୍ତ ।

**ତମୋମାତ୍ରାତ୍ମିକା ରାତ୍ରିଃ ସା ବୈ ତସ୍ମାତ୍ତ୍ରିଯାମିକା ॥**

ବାୟୁ ପୁ: ୯ । ୬୨ ॥

ରାତ୍ରି ତମୋଗୁଣବହୁଳ ଓ ତ୍ରିଯାମସମନ୍ୱିତ ।

ଆହୁରି ମଧ୍ୟ—ରାତ୍ରିକାଳ, କାଳ ବା ଯମଙ୍କ ପ୍ରଭାବପୂର୍ଣ୍ଣ ଓ ରାତ୍ରି ପ୍ରଳୟକାଳ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ହୋଇଛି ।

**ଗୃହୀତ୍ୱା କୃପଣଃ କୃଷ୍ଣାଂ ରଜନୀଂ ଜୀର୍ଣ୍ଣମାର୍ଜନୀମ୍ ।**
**ଆଲୋକଜନକକ୍ଷୋଦାନାହରତ୍ୟଭିତୋ ଗିରମ୍ ॥**

ଯୋଗବାଶିଷ୍ଠ-ବୈରାଗ୍ୟ-ସ-୨୩।୩୫ ॥

ଯେପରି କୃପଣ ବା ଲୋଭୀ ବ୍ୟକ୍ତି ମାର୍ଜନୀଦ୍ୱାରା କନକାଚଳର ଚତୁର୍ଦ୍ଦିଗରୁ ସୁବର୍ଣ୍ଣ ସଂଗ୍ରହ କରିବା ବାଞ୍ଛା ପୋଷଣ କରିଥାଏ, ସେହିପରି କାଳ ମଧ୍ୟ ରଜନୀରୂପ ସମ୍ମାର୍ଜନୀଦ୍ୱାରା ଜଗତର ପ୍ରାଣୀବର୍ଗଙ୍କୁ ଅଜସ୍ର ସଂଗ୍ରହ କରୁଅଛି ।

**ଚଣ୍ଡୀ ଚତୁର ସଞ୍ଚାରା ସର୍ବମାତୃଗଣାନ୍ୱିତା ।**
**ସଂସାର-ବନବନ୍ୟସ୍ତା ବ୍ୟାଘ୍ରୀ ଭୂତୌଘ ଘାତନୀ ॥**

ଯୋଗବା: ବୈରାଗ୍ୟ ୨୪-୫ ॥

କାଳର ପ୍ରଣୟିନୀ ଚଣ୍ଡୀ, ଅର୍ଥାତ୍ ପ୍ରଳୟରାତ୍ରି ସର୍ବଭୂତବିନାଶିନୀ କାଳପ୍ରିୟା ମାତୃଗଣପରିବୃତା (ଜରା ଓ ମୃତ୍ୟୁ ପ୍ରଭୃତି ଦ୍ୱାରା ପରିବେଷ୍ଟିତା) ହୋଇ ନିରନ୍ତର ଏହି ସଂସାରରୂପକ ଅରଣ୍ୟରେ ଭ୍ରମଣ କରୁଅଛି । ଏହିହେତୁରୁ ରାତ୍ରିକାଳରେ ଭୋଜନ ଓ ବିଚରଣଆଦି କାର୍ଯ୍ୟ କେବଳ ଅସୁରମାନଙ୍କର ପ୍ରୀତିପ୍ରଦ କାର୍ଯ୍ୟ ।

**ତସ୍ମାଦହସ୍ତୁ ଦେବାନାଂ ରାତ୍ରିର୍ଯା ସାସୁରୀ ସ୍ମୃତା ।**
**ତୟୋର୍ମଧ୍ୟେ ତୁ ବୈ ପୈତ୍ରୀ ଯା ତନୁଃ ସା ଗରୀୟସୀ ॥**

ବାୟୁପୁ:-୯ । ୧୫ । ୮ ॥

ସେହିହେତୁରୁ ସ୍ମୃତମୂନ କହିଅଛନ୍ତି—ଦେବତାମାନଙ୍କର ଦିବସ ଓ ରାତ୍ରି ଅସୁରମାନଙ୍କର । ଏହି ଉଭୟର ମଧ୍ୟବର୍ତ୍ତୀ ଗଣ୍ଡସୂସୀ ସନ୍ଧ୍ୟା ପିତୃମାନଙ୍କର ପ୍ରୀତିସାଧିକା ଅଟେ । ଏ ସମ୍ବନ୍ଧରେ ମନୁ ମଧ୍ୟ କହିଛନ୍ତି—

ନ ଭୁଞ୍ଜୀତୋଦ୍ଧୃତସ୍ନେହଂ ନାତ ସୌହିତ୍ୟମାଚରେତ୍ ।
ନାତପ୍ରାଗେ ନାତସାୟଂ ନ ସାୟଂ ପ୍ରାତରାଶିତଃ ।

ମନୁ-୪ । ୬୨ ॥ ବିଷ୍ଣୁ ସଂହିତା ୬୮ । ୪୮ ॥

ଅର୍ଥାତ୍ ଯେଉଁ ପଦାର୍ଥମାନଙ୍କରୁ ସାରଭାଗ ବାହାର କରାଯାଇଅଛି, ତାହା ଭୋଜନ କରିବ ନାହିଁ । ଅତି ପ୍ରଭାତରେ ବା ଅତି ସାୟଂକାଳରେ ଏବଂ ରାତ୍ରିକାଳରେ ମଧ୍ୟ ଭୋଜନ କରିବ ନାହିଁ । ପୁନଶ୍ଚ—

ନ ପାଣୌ ଲବଣଂ ବିଦ୍ୱାନ୍ ପ୍ରାଶ୍ନୀୟାନ୍ନ ଚ ରାତ୍ରିଷୁ ।
ଦଧିସକ୍ତୂନ୍ନ ଭୁଞ୍ଜୀତ ବୃଥା ମାଂସଂ ଚ ବର୍ଜୟେତ୍ ॥
ସାୟଂ ପ୍ରାତଶ୍ଚ ଭୁଞ୍ଜୀତ ନାନ୍ତରାଳେ ସମାହିତଃ ॥

ମହାଭା: ଅନୁ: ୧୦୪ । ୯୫ ॥

ବିଦ୍ୱାନ୍ ପୁରୁଷ ହାତରେ ଲବଣ ଧରି ଭୋଜନ କରିବେ ନାହିଁ ଓ ରାତ୍ରରେ କୌଣସି ପ୍ରକାର ଅନ୍ନ ଭୋଜନ କରିବେ ନାହିଁ । ଦହି ଓ ଛତୁ ଏବଂ ବୃଥା ମାଂସଭୋଜନ ମଧ୍ୟ ରାତ୍ରିରେ କରିବା ନିଷିଦ୍ଧ । ସମାହିତ ପୁରୁଷ ସନ୍ଧ୍ୟା, ପ୍ରାତଃକାଳ ଓ ସୂର୍ଯ୍ୟାସ୍ତ ପରେ ଭୋଜନ କରିବେ ନାହିଁ ।

ଆଦିତ୍ୟୋଽସ୍ତମିତୋ ଯାତ ଅଶନଂ ନୈବମାଚରେତ୍ ।
ରାତ୍ରୌ ଚ ମୈଥୁନଂ ବିଦ୍ଧି ନିଶାୟାଂ ନ ଚ ଭୋଜନମ୍ ॥

ଅଚଳବୋଧାମୃତ ॥

ଆଦିତ୍ୟ ଅସ୍ତ ହେବା ପରେ ଭୋଜନ କରିବ ନାହିଁ । ରାତ୍ରିକାଳରେ ମୈଥୁନ କରିବା ବିଧି ଅଟେ; କିନ୍ତୁ ଭୋଜନ କରିବା ଅବିଧି ଅଟେ ।

ଦିବସେ ମୈଥୁନଂ କୃତ୍ୱା ନକ୍ତଂ ଭୋଜନମାଚରେତ୍ ।
ବ୍ରତଂ ନିଷ୍ଫଳମେବାହ ପ୍ରାୟଶ୍ଚିତ୍ତଂ ବିନିର୍ଦ୍ଦିଶେତ୍ ॥

ପ୍ରାୟଶ୍ଚିତ୍ତମନୋହର ॥

ଦିବସରେ ମୈଥୁନ ଓ ରାତ୍ରରେ ଭୋଜନ କଲେ ମନୁଷ୍ୟର ବ୍ରତ ନିଷ୍ଫଳ ହୁଏ । ଅତଏବ ସେଥିନିମନ୍ତେ ପ୍ରାୟଶ୍ଚିତ ଆବଶ୍ୟକ, କାରଣ ପ୍ରାୟଶ୍ଚିତ୍ତଦ୍ୱାରା କେବଳ ଏବିଷୟରେ ଶୁଦ୍ଧିଲାଭ କରିପାରେ ।

**ଶ୍ରୁତ-ସ୍ମୃତବିରୋଧଶ୍ଚ ଭୁକ୍ତ୍ୱା ରାତ୍ରୌ ବିବର୍ଜୟେତ୍ ॥**

ଜପଗାୟତ୍ରୀ ॥

ରାତ୍ରରେ ଭୋଜନ କରିବା ଶ୍ରୁତି ଓ ସ୍ମୃତିଶାସ୍ତ୍ର ବିରୋଧ । ଅତଏବ ତାହା ସର୍ବଥା ବର୍ଜନ କରିବା ବିଧେୟ ।

## ଠ—ନିଷିଦ୍ଧ ଆହାର

ନିଷିଦ୍ଧ ଆହାର ସମ୍ବନ୍ଧରେ ଗୁ ରୁ ମହିମାସ୍ୱାମୀଙ୍କ ଆଦେଶ ଏହିପରି—ରାଜସିକ ଓ ତାମସିକ ଆହାର, ଛାଗଦୁଗ୍ଧ ଓ ଛାଗକୁକ୍କୁଟାଦି ମାଂସ, ମଦ୍ୟ ବା ମାଦକଦ୍ରବ୍ୟ, କେଶଯୁକ୍ତ ଅନ୍ନ ଓ ଶ୍ରାଦ୍ଧସଂକଳ୍ପାଦି ଉଦ୍ଦେଶ୍ୟରେ କୃତଅନ୍ନ, ସୂତିକାଦି ଅଶୌଚାନ୍ନ; ଯାଜକ ବ୍ରାହ୍ମଣଙ୍କଠାରୁ ଅନ୍ନ ଏବଂ ଗୋମାଂସସେବୀ ଅନ୍ତ୍ୟଜମାନଙ୍କର ଅନ୍ନ—ଏହା ସବୁ ପରିତ୍ୟାଗ କରି ଯଦୃଚ୍ଛା ପ୍ରାପ୍ତ ସାତ୍ତ୍ୱିକ ଆହାର ଯୋଗ୍ୟ ପଦାର୍ଥକୁ ସୂର୍ଯ୍ୟନାଡ଼ୀରେ ବାୟୁ ପ୍ରବାହିତ ହେବା ସମୟରେ ପ୍ରଭୁଙ୍କୁ ସ୍ମରଣ କରି ପ୍ରସନ୍ନ ଚିତ୍ତରେ ଗ୍ରହଣ କରିବେ ।

ଶାସ୍ତ୍ରୋକ୍ତ ପ୍ରମାଣ—

**କଟ୍ୱମ୍ଳ-ଲବଣାତ୍ୟୁଷ୍ଣତୀକ୍ଷ୍ଣରୁକ୍ଷବିଦାହିନଃ ।**
**ଆହାରା ରାଜସସ୍ୟେଷ୍ଟାଃ ଦୁଃଖଶୋକାମୟପ୍ରଦାଃ ॥** ଗୀତା—୧୭।୯ ॥

ଅତି କଟୁ, ଅତିଶୟ ଅମ୍ଳ ବା ଅତିଲବଣଯୁକ୍ତ, ଅତିଉଷ୍ଣ ଅତିତୀକ୍ଷ୍ଣ ବା ଅତିରୁକ୍ଷ ଓ ଅତିଦାହକର ଆହାର ରଜୋଗୁଣୀ ବ୍ୟକ୍ତିମାନଙ୍କର ପ୍ରିୟ ଅଟେ ଏବଂ ସେପରି ଆହାର ଦୁଃଖ, ଶୋକ ଓ ରୋଗଜନକ ଅଟେ ।

**ଯାତଯାମଂ ଗତରସଂ ପୂତିପର୍ଯ୍ୟୁଷିତଞ୍ଚ ଯତ୍ ।**
**ଉଚ୍ଛିଷ୍ଟମପି ଚାମେଧ୍ୟଂ ଭୋଜନଂ ତାମସପ୍ରିୟମ୍ ॥**

ଗୀତା—୧୭ । ୧୦ ॥

ଯେଉଁ ଆହାର ଏକ ଯାମପୂର୍ବରୁ ପ୍ରସ୍ତୁତ ଏବଂ ଯାହା ନୀରସ, ଦୁର୍ଗନ୍ଧ, ବାସି, ଉଚ୍ଛିଷ୍ଟ ଏବଂ ଅପବିତ୍ର—ତାହା ସବୁ ତମୋଗୁଣୀ ଲୋକଙ୍କର ପ୍ରିୟ ଅଟେ ।

ପୁନଶ୍ଚ—

ପିପ୍‌ପଳଂ ଚ ବଟଂ ଚୈବ ଶଣଶାକଂ ତଥୈବ ଚ ।
ଉଦୁମ୍ବରଂ ନ ଖାଦେଚ୍ଚ ଭବାର୍ଥୀ ପୁରୁଷୋତ୍ତମ ॥
ଅଜଂ ଗବ୍ୟଂ ତଥା ମାଂସଂ ମାୟୂରଂ ଚୈବ ବର୍ଜୟେତ୍ ।
ବର୍ଜୟେତ୍ ଶୁଷ୍କମାଂସଂ ଚ ତଥା ପର୍ଯ୍ୟୁଷିତଂ ଚ ଯତ୍ ॥

ମହାଭା: ଅନୁ: ୧୦୪ । ୯୨-୯୩ ॥

କଲ୍ୟାଣେଚ୍ଛୁ ଶ୍ରେଷ୍ଠ ପୁରୁଷ ପିପ୍‌ପଳ, ବଟ ଓ ଛଣିଶାକ ଖାଇବେ ନାହିଁ, ଡ଼ିମ୍ବିରିଫଳ ମଧ୍ୟ ଅଭକ୍ଷ୍ୟ । ଛାଗଦୁଗ୍ଧ ଓ ମାଂସ ଏବଂ ମୟୂରମାଂସ ତ୍ୟାଗ କରିବେ । ଶୁଷ୍କମାଂସ ଓ ବାସିଅନ୍ନ ତ୍ୟାଗ କରିବା ସର୍ବଥା ବିଧେୟ ।

ତଥା ବର୍ଜ୍ୟୌ ଗ୍ରାମ୍ୟଶୂକରକୁକ୍କୁଟୌ । ବ୍ରହ୍ମପୁରାଣ-୨୨୧ । ୧୧୧ ॥

ଗ୍ରାମ୍ୟଶୂକର ବା ଘୁଷୁରି ଓ କୁକ୍‌କୁଟମାଂସ ମଧ୍ୟ ଅଭକ୍ଷ୍ୟ ଅଟେ ।

ସ୍ୱମାଂସଂ ପରମାଂସେନ ଯୋ ବର୍ଦ୍ଧୟିତୁମିଚ୍ଛତି ।
ନାରଦଃ ପ୍ରାହ ଧର୍ମାତ୍ମା ନିୟତଂ ସୋଽବସୀଦତି ॥
ଦଦାତି ଯଜତେ ଚାପି ତପସ୍ୱୀ ଚ ଭବତ୍ୟପି ।
ମଧୁମାଂସନିବୃତ୍ତ୍ୟେତି ପ୍ରାହ ଚୈବଂ ବୃହସ୍ପତିଃ ॥

ମହାଭା: ଅନୁ: ୧୧୫ । ୧୪-୧୫ ॥

ଧର୍ମାତ୍ମା ନାରଦମୁନି କହିଅଛନ୍ତି—ଯେଉଁ ପୁରୁଷ ଅପରର ମାଂସରେ ନିଜମାଂସକୁ ବୃଦ୍ଧି କରିବାକୁ ଇଚ୍ଛା କରେ, ସେ ସଦା ଅବସନ୍ନ ହୁଏ । ବୃହସ୍ପତି ମଧ୍ୟ କହିଛନ୍ତି—ମଦ୍ୟପାନ ଓ ମାଂସଭକ୍ଷଣରୁ ନିବୃତ୍ତ ହେଲେ ଦାନ, ଯଜ୍ଞ ଓ ତପସ୍ୟାର ଫଳ ମିଳେ ।

ପୁନଶ୍ଚ—

ମଧୁମାଂସଂ ଚ ଯେ ନିତ୍ୟଂ ବର୍ଜୟନ୍ତୀହ ଧାର୍ମିକାଃ ।
ଜନ୍ମପ୍ରଭୃତି ମଦ୍ୟଂ ଚ ସର୍ବେ ତେ ମୁନୟଃ ସ୍ମୃତାଃ ॥

ମହାଭା: ଅନୁ-୧୧୫ । ୭୯ ॥

ଏହି ଲୋକମଧ୍ୟରେ ଯେଉଁ ଲୋକ ଆଜନ୍ମ ମଦ୍ୟମାଂସ ପରିତ୍ୟାଗ କରନ୍ତି ସେ ମୁନିରୂପରେ ସ୍ମୃତ ଅଟେ । ପୁନଶ୍ଚ ଅନ୍ୟଧର୍ମରେ ମଦ୍ୟମାଂସ ତ୍ୟାଗ କରିବା ଶ୍ରେୟସ୍କର ଭାବରେ ଗୃହୀତ ହୋଇଅଛି—

It is good neither to eat flesh, not to drink wine, nor anything whereby the brother stambleth, or is affended, or is made weak—Rom XIV – 21.

ଅର୍ଥାତ୍ ମାଂସ ଆହାର, ମଦ୍ୟପାନ ଅଥବା ଅନ୍ୟ କୌଣସି କାର୍ଯ୍ୟ ଯଦ୍ଦ୍ବାରେ କି ତୁମ୍ଭର ଭ୍ରାତାଙ୍କର ପଦସ୍ଖଳନ ହୁଏ ବା ହୃଦୟରେ ଆଘାତ ଲାଗେ, ଅଥବା ଦୌର୍ବଲ୍ୟ ବୃଦ୍ଧି ପାଏ—ସେସବୁ କିଛୁ ନ କରିବା ଶ୍ରେୟସ୍କର ।

**କାଳେନ ତୁ ନ ଭୁଞ୍ଜୀତ ପରଶ୍ରାଦ୍ଧଂ ତଥୈବଚ ॥**

ମହାଭା: ଅନୁ: ୧୦୪ । ୯୫ ॥

କେଶଯୁକ୍ତ ଅନ୍ନଆଦ ଖାଇବା ଉଚିତ ନୁହେଁ; ଶ୍ରାଦ୍ଧନିମନ୍ତ୍ରଣରେ ମଧ୍ୟ ଭୋଜନ କରିବା ଅନୁଚିତ ।

ଆଦଷ୍ଟିନୋ ଯେ ରାଜେନ୍ଦ୍ର ବ୍ରହ୍ମାଣା ବେଦପାରଗାଃ ।
ଭୁଞ୍ଜତେ ବ୍ରହ୍ମକାମାଯ୍ୟ ବ୍ରତଲୁପ୍ତା ଭବନ୍ତି ତେ ॥

ମହାଭା: ଅନୁ: ୨୨ । ୧୭ ॥

ଭୀଷ୍ମ କହୁଅଛନ୍ତି—ହେ ରାଜେନ୍ଦ୍ର ! ବାରବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟବ୍ରତ-ପାଳନକାରୀ ବେଦପାରଗ ବିପ୍ର ଯଦି କାମନାବଶତଃ ଶ୍ରାଦ୍ଧାନ୍ନ ଭୋଜନ କରେ, ତେବେ ତା'ର ବ୍ରତ ନଷ୍ଟ ହୁଏ ।

ଲଙ୍ଘିତଂ ଚ୍ଚବଲୀଢ଼ଂ ଚ କାଳେ ପୂର୍ବଂ ଚ ଯତ୍କୃତମ୍ ।
ରଜସ୍ୱଲାଭିର୍ଦୃଷ୍ଟଂ ଚ ତଂ ଭାଗଂ ରକ୍ଷସାଂ ବିଦୁଃ ॥
ଅବଘୁଷ୍ଟଂ ଚ ଯଦ୍ ଭୁକ୍ତମବ୍ରତେନ ଚ ଭାରତ ।
ପରାମୃଷ୍ଟଂ ଶୁନା ଚୈବ ତଂ ଭାଗଂ ରକ୍ଷସାଂ ବିଦୁଃ ॥
କେଶକୀଟାବପତିତଂ କ୍ଷୁତଂ ଶ୍ୱଭିରବେକ୍ଷିତମ୍ ।
ରୁଦିତଂ ଚ୍ଚବଧୂତଂ ଚ ତଂ ଭାଗଂ ରକ୍ଷସାଂ ବିଦୁଃ ॥
ନିରଙ୍କାୟା ଚ ଯଦ୍ ଭୁକ୍ତଂ ସଶସ୍ତ୍ରେଣ ଚ ଭାରତ ।
ଦୁରାତ୍ମନା ଚ ଯଦ୍ ଭୁକ୍ତଂ ତଂ ଭାଗଂ ରକ୍ଷସାଂ ବିଦୁଃ ॥
ପରୋଚ୍ଛିଷ୍ଟଂ ଚ ଯଦ୍ ଭୁକ୍ତଂ ପରଭୁକ୍ତଂ ଚ ଯଦ୍ ଭବେତ୍ ।
ଦେବପିତ୍ର୍ୟେ ଚ ସତତଂ ତଂ ଭାଗଂ ରକ୍ଷସାଂ ବିଦୁଃ ॥

ମହାଭା: ଅନୁ: ୨୩।୪।୮ ॥

ଋଷି କହୁଅଛନ୍ତି—ଯେଉଁ ଖାଦ୍ୟ ପାଦଦ୍ୱାରା ସ୍ପୃଷ୍ଟ ବା ଜିହ୍ୱାସଂସ୍ପୃଷ୍ଟ ଏବଂ ଯେଉଁ ଖାଦ୍ୟ ପର୍ଯ୍ୟୁଷିତ ବା ବାସୀ, ଯହିଁରେ ରଜସ୍ୱଳା ସ୍ତ୍ରୀ ଦୃଷ୍ଟିପାତ କରିଥାଏ, ଧୀର ଲୋକମାନେ ସେ ସକଳ ଖାଦ୍ୟକୁ ରାକ୍ଷସର ଭାଗ ବୋଲି ଜାଣନ୍ତି । ହେ ଭାରତ ! ଘୋଷଣା କରି ଯେଉଁ ଅନ୍ନ ଦାନ ( ଉର୍ଦ୍ଧ ଭଳ ) କରାଯାଏ, ଯାହା ସତ୍ୟବ୍ରତହୀନ ପୁରୁଷ ଭୋଜନ କରିଥାଏ ଓ ଯେଉଁ ଅନ୍ନକୁ କୁକୁର ସ୍ପର୍ଶ କରିଥାଏ, ପଣ୍ଡିତମାନେ ସେହି ଅନ୍ନକୁ ରାକ୍ଷସର ଭାଗ ବୋଲି ଜାଣନ୍ତି । ଯେଉଁ ଅନ୍ନ କେଶ ବା କୀଟଯୁକ୍ତ ଜଳରେ ଦୂଷିତ, ଅଥବା ଅବଜ୍ଞାପୂର୍ବକ ପକ୍ୱ ହୋଇଥାଏ ; ଧୀରପୁରୁଷମାନେ ତାହା ସବୁ ରାକ୍ଷସର ଭାଗ ବୋଲି ମନେକରନ୍ତି । ହେ ଭାରତ ! ଅନୁଜ୍ଞା-ରହିତଭାବରେ ବା ଶୂଦ୍ର, ଶସ୍ତ୍ରଜୀବୀ ଓ ଦୁଷ୍ଟାତ୍ମା ମନୁଷ୍ୟଙ୍କଦ୍ୱାରା ଉପଭୁକ୍ତ ହୋଇଥିବା ଅନ୍ନକୁ ଧୀରପୁରୁଷମାନେ ରାକ୍ଷସର ଭାଗ ବୋଲି କହିଅଛନ୍ତି । ଯାହା ଅନ୍ୟର ଉଚ୍ଛିଷ୍ଟ ହୋଇଥାଏ ବା ଯାହା ସାଧୁ ଓ ଅତିଥିଙ୍କୁ ନ ଦେଇ ଭୋଜନ କରାଯାଇଥାଏ, ଯାହା ଇଷ୍ଟଦେବ ଓ ପିତୃସେବାର ଅଯୋଗ୍ୟ, ତାହା ରାକ୍ଷସର ଭାଗ ଅଟେ ।

ଆହୁରି ମଧ୍ୟ—

ନାଲୀଢ଼ୟା ପରକୃତଂ ଭକ୍ଷୟୀତ କଦାଚନ ।
ତଥା ନୋଦ୍ଧୃତସାରାଣି ପ୍ରେକ୍ଷତେ ନାପ୍ରଦାୟ ଚ ॥

ମହାଭା: ଅନୁ: ୧୦୪ । ୯୦ ॥

ରଜସ୍ୱଳା ସ୍ତ୍ରୀ ହସ୍ତରେ ପରିପକ୍ୱ ପଦାର୍ଥ ଭୋଜନ କରିବା ଅନୁଚିତ । ଯହିଁରୁ ସାର ପଦାର୍ଥ ବାହାର କରାଯାଇଥାଏ, ସେପରି ଖାଦ୍ୟପଦାର୍ଥ ଭୋଜନ କରିବ ନାହିଁ । ଭୋଜନ କରୁଥିବା ସ୍ଥାନରେ ଉପସ୍ଥିତ ବ୍ୟକ୍ତିକୁ ଖାଦ୍ୟ ନ ଦେଇ ଭୋଜନ କରିବା ଉଚିତ ନୁହେଁ ।

ଆହୁରି ମଧ୍ୟ—

କୀଟକେଶାବପନ୍ନଞ୍ଚ ତଥା ଶ୍ୱଭିରବେକ୍ଷିତମ୍ ।
ଅବଲୀଢ଼ଂ ଶୁନା ଚୈବ ସାରୋଦ୍ଧରଣଦୂଷିତମ୍ ॥
ପୃଷ୍ଠମାଂସଂ ବୃଥାମାଂସଂ ବର୍ଜ୍ୟମାସଂ ଚ ବର୍ଜୟେତ୍ ।
ପ୍ରତ୍ୟକ୍ଷଲବଣଂ ବର୍ଜ୍ୟ ମନ୍ନମୁଚ୍ଛିଷ୍ଟମେବ ଚ ॥

ବ୍ରହ୍ମପୁରାଣ—୨୨୧ ୫୪-୫୫ ॥

କୀଟକେଶାଦିଯୁକ୍ତ ଶ୍ୱାନଭକ୍ଷିତ ଓ ଯେଉଁଥିରୁ ସାର ବାହାର କରାଯାଇଛି, ଏପରି ଖାଦ୍ୟ; ପୃଷ୍ଟ ବା କଙ୍କାସିତ ମାଂସ (?), ବୃଥା ମାଂସ ବା ନଷିଦ୍ଧ ମାଂସ ( ଛାଗଳ, ମେଷ କୁକ୍କୁଟାଦି ମାଂସ) ବର୍ଜନୀୟ ଅଟେ ଏବଂ ପ୍ରତ୍ୟକ୍ଷଲବଣ (୧) ଓ ଉଚ୍ଛିଷ୍ଟାନ୍ନ ବର୍ଜନ କରିବ ।

**ମତ୍ତକ୍ରୁଦ୍ଧାତୁରାଣାଞ୍ଚ ନ ଭୁଞ୍ଜୀତ କଦାଚନ ।**
**କେଶକୀଟାବପନ୍ନଞ୍ଚ ପାଦସ୍ପୃଷ୍ଟଞ୍ଚ କାମତଃ ॥**
**ଭ୍ରୂଣଘ୍ନାବେକ୍ଷିତଞ୍ଚୈବ ସଂସ୍ପୃଷ୍ଟଞ୍ଚାପ୍ୟୁଦକ୍ୟୟା ।**
**ପତତ୍ରିଣାବଲୀଢ଼ଞ୍ଚ ଶୁନସଂସ୍ପୃଷ୍ଟମେବ ଚ ॥**
**ଗବାଚାନ୍ନମୁପଘ୍ରାତଂ ଘୁଷ୍ଟାନ୍ନଞ୍ଚ ବିଶେଷତଃ ।**
**ଗଣାନ୍ନଂ ଗଣିକାନ୍ନଞ୍ଚ ବିଦୁଷାଂଚ ଜୁଗୁପ୍ସିତମ୍ ॥**

ମନୁ—୪।୨୦୭-୨୦୯ ॥

ଉନ୍ମତ୍ତ, କ୍ରୁଦ୍ଧ ଓ ବ୍ୟାଧିଗ୍ରସ୍ତ ବ୍ୟକ୍ତିମାନଙ୍କର ଅନ୍ନ, ସେହିପରି କେଶ ଓ କୀଟଯୁକ୍ତ ଅନ୍ନ ଓ ଇଚ୍ଛାପୂର୍ବକ ପାଦସ୍ପୃଷ୍ଟ ଅନ୍ନ କଦାପି ଭୋଜନ କରିବ ନାହିଁ । ଭ୍ରୂଣଘ୍ନ ଲୋକଦ୍ୱାରା ଦୃଷ୍ଟ ଓ ରଜସ୍ୱଳା ନାରୀ-ସ୍ପୃଷ୍ଟ ଅନ୍ନ ଚଢ଼େଇ ଓ କୁକୁର ସ୍ପୃଷ୍ଟ ଅନ୍ନ ମଧ୍ୟ ଖାଇବ ନାହିଁ । ଗାଈ ଶୁଙ୍ଘିଥିବା ଓ ଖୋଲାରାସ୍ତାରେ ଘୋଷଣା କରି ଦିଆଯାଉଥିବା (ଅର୍ଥାତ୍ ଦୁର୍ଭିକ୍ଷ ସମୟରେ ରନ୍ଧା ଭାତ) ଖାଦ୍ୟ ଓ ବହୁଲୋକ ମିଳିତ ହୋଇ ଏକତ୍ର ଖାଉଥିବା ଅନ୍ନ, ବେଶ୍ୟା ଅନ୍ନ ଓ ବିଦ୍ୱାନ୍‌ପକ୍ଷେ ନିନ୍ଦିତ ଅନ୍ନ ଖାଇବ ନାହିଁ ।

**ଅନିର୍ଦ୍ଦଶାୟା ଗୋଃ କ୍ଷୀରମୌଷ୍ଟ୍ରମୈକଶଫଂ ପୟଃ ।**
**ଆବିକଂ ସନ୍ଧିନୀକ୍ଷୀରଂ ବିବତ୍ସାୟାଶ୍ଚ ଗୋଃ ପୟଃ ॥**
**ଆରଣ୍ୟାନାଂ ଚ ସର୍ବେଷାଂ ମୃଗାଣାଂ ମାହିଷୀଂ ବିନା ।**
**ସ୍ତ୍ରୀକ୍ଷୀରଂ ଚୈବ ବର୍ଜ୍ୟାଣି ସର୍ବଶୁକ୍ତାନି ବର୍ଜୟେତ୍ ॥**
**ମାହିଷଂ ଗବ୍ୟମାଦ୍ୟଂଚ ପେୟଂ କ୍ଷୀରେଷୁ ନିର୍ଦ୍ଦିଶେତ୍ ।**

ପଣ୍ଡିତସର୍ବସ୍ୱ—ପୃ: ୪୪ ॥

ଅନିର୍ଦ୍ଦଶା, (ଅର୍ଥାତ୍ ଜନ୍ମକଲଦିନଠାରୁ ଦଶ ଦିନ ନ ଯାଉଁ) ଗୋଦୁଗ୍ଧ, ଓଟ, ଗୋଟାଖୁରା ଜନ୍ତୁ (ଅଶ୍ୱ ପ୍ରଭୃତି), ଆବିକ (ଛେଳି ମେଣ୍ଢା ପ୍ରଭୃତି), ସନ୍ଧିନୀ (ଗର୍ଭବତୀ ଧେନୁ), ବାଛୁରି ନ ଥିବା ଧେନୁ, ମଇଁଷୀକୁ ଛାଡ଼ି ସକଳପ୍ରକାର ବଣ୍ୟଜନ୍ତୁ, ମନୁଷ୍ୟ-ସ୍ତ୍ରୀ—ଏମାନଙ୍କର ଦୁଗ୍ଧ ବର୍ଜନ କରିବ । ଅର୍ଥାତ୍ ପାନ କରିବ ନାହିଁ । ଆହୁରି ମଧ୍ୟ ଶୁକ୍ତ (ସଢ଼ା) ପଦାର୍ଥ

ସବୁ ତ୍ୟାଗ କରିବ। ବୃକ୍ଷତରେ ମଇଁଷୀ ଓ ଗାଈମାନଙ୍କର ଦୁଗ୍ଧ କେବଳ ପେୟ ଓ ସେମାନଙ୍କ ଘୃତ ମଧ୍ୟ ଦ୍ରବ୍ୟତ ଖାଦ୍ୟ।

ଉଷ୍ଟ୍ରୀକ୍ଷୀରମବୀକ୍ଷୀରଂ ଯଚ୍ଚାନ୍ନଂ ମୃତକସୂତକମ୍ ।
ପାଚକାନ୍ନଂ ନବଶ୍ରାଦ୍ଧଂ ଭୁକ୍ତ୍ୱା ଚାନ୍ଦ୍ରାୟଣଂ ଚରେତ୍ ॥

ଅତ୍ରି ସଂହିତା—୯୨ ।

ଉଷ୍ଟ୍ରୀ ଓ ମେଷ-ଦୁଗ୍ଧ, ମୃତାହ ଓ ସୂତକାହ ଅଶୌଚାନ୍ନ, ସୂପକାର ବା ରନ୍ଧୁଣୀର ଅନ୍ନ ଓ ଶ୍ରାଦ୍ଧାନ୍ନ ଭୋଜନ କଲେ ଚାନ୍ଦ୍ରାୟଣ ବ୍ରତ କରିବାକୁ ହୁଏ ।

ଶୂଦ୍ରକର୍ମ ତୁ ଯଃ କୁର୍ଯ୍ୟାଦବହାୟ ସ୍ୱକର୍ମ ଚ ।
ସ ବିଜ୍ଞେୟୋ ଯଥା ଶୂଦ୍ରୋ ନ ଚ ଭୋଜ୍ୟଃ କଦାଚନ ॥
ଚିକିତ୍ସକଃ କାଣ୍ଡପୃଷ୍ଠଃ ପୁରାଧ୍ୟକ୍ଷଃ ପୁରୋହିତଃ ।
ସାଂବତ୍ସରୋ ବୃଥାଧ୍ୟାୟୀ ସର୍ବେ ତେ ଶୂଦ୍ରସମ୍ମିତାଃ ॥
ଶୂଦ୍ରକର୍ମସ୍ୱଥୈତେଷୁ ଯୋ ଭୁଂକ୍ତେ ନିରପତ୍ରପଃ ।
ଅଭୋଜ୍ୟଭୋଜନଂ ଭୁକ୍ତ୍ୱା ଭୟଂ ପ୍ରାପ୍ନୋତି ଦାରୁଣମ୍ ॥
କୁଳଂ ବୀର୍ଯ୍ୟଂ ଚ ତେଜଶ୍ଚ ତିର୍ଯ୍ୟଗ୍ୟୋନିତ୍ୱମେବ ଚ ।
ସ ପ୍ରୟାତି ଯଥା ଶ୍ୱା ବୈ ନିଷ୍କ୍ରିୟୋ ଧର୍ମବର୍ଜିତଃ ॥

ମହାଭା. ଅନୁ. ୧୩୫।୧୦—୧୩ ।

ଯେଉଁ ପୁରୁଷ ଆପଣା କାର୍ଯ୍ୟ ଛାଡ଼ି ଶୂଦ୍ରକର୍ମ କରେ, ତାହାକୁ ଶୂଦ୍ର ବୋଲି ଜାଣ । ତାହାର ଅନ୍ନ କୌଣସି ପ୍ରକାର ଭୋଜନଯୋଗ୍ୟ ନୁହେଁ । ବୈଦ୍ୟ, ଶସ୍ତ୍ରଜୀବୀ, ପୁରାଧ୍ୟକ୍ଷ, ପୁରୋହିତ ଓ ସମ୍ବତ୍ସର ପର୍ଯ୍ୟନ୍ତ ବୃଥା ଅଧ୍ୟାୟୀ—ଏ ସମସ୍ତେ ଶୂଦ୍ର ସମାନ । ଏମାନଙ୍କଠାରୁ ଯେଉଁ ପୁରୁଷ ନିର୍ଲଜଭାବରେ ସନ୍ତୋଷପୂର୍ବକ ଭୋଜନ କରେ, ସେହି ଅଭୋଜ୍ୟ ଭୋଜନ କରିବାଦ୍ୱାରା ଦାରୁଣ ଭୟ ପ୍ରାପ୍ତ ହୁଏ, ତାହାର କୁଳ, ବୀର୍ଯ୍ୟ ଓ ତେଜ ନଷ୍ଟ ହୋଇଯାଏ ଓ ସେ ଧର୍ମରହିତ ହୋଇ, ଶ୍ୱାନତୁଲ୍ୟ କ୍ରିୟାହୀନ ହୋଇ ମୃତ୍ୟୁ ପରେ ତିର୍ଯ୍ୟକ୍ ଯୋନିରେ ଜନ୍ମଲାଭ କରେ ।

ପୁନଶ୍ଚ—

ଇଦଂ ଚୈବାପରଂ ଦେବି ବ୍ରହ୍ମଣା ସମୁଦାହୃତମ୍ ।
ଅଧ୍ୟାତ୍ମଂ ନୈଷ୍ଠିକଂ ସଦ୍ଭିର୍ଧର୍ମକାମୈର୍ନିଷେବ୍ୟତେ ॥

ଉଗ୍ରାନ୍ନଂ ଗର୍ହିତଂ ଦେବ ଗଣାନ୍ନଂ ଶ୍ରାଦ୍ଧସୂତକମ୍ ।
ଦୁଷ୍ଟାନ୍ନଂ ନୈବ ଭୋକ୍ତବ୍ୟଂ ଶୂଦ୍ରାନ୍ନଂ ନୈବ କର୍ହିଚତ୍ ॥
ଶୂଦ୍ରାନ୍ନଂ ଗର୍ହିତଂ ଦେବ ସଦା ଦେବୈର୍ମହାତ୍ମଭିଃ ।
ପିତାମହମୁଖୋତ୍ସୃଷ୍ଟଂ ପ୍ରମାଣମିତ ମେ ମତଃ ॥

ମହାଭା: ଅନୁ: ୧୪୩।୧୬-୧୮ ॥

ଈଶ୍ୱର କହୁଅଛନ୍ତି—ହେ ଦେବ ! ମୁଁ ଯାହା କହିଲି, ତାହା ବ୍ରହ୍ମା ସ୍ୱୟଂ ବର୍ଣ୍ଣନ କରିଅଛନ୍ତି । ଧର୍ମକାଂକ୍ଷୀମାନଙ୍କ ସାଧୁପୁରୁଷ ନୈଷ୍ଠିକଭାବରେ ଅଧ୍ୟାତ୍ମ ବିଷୟର ଅନୁଷ୍ଠାନ କରନ୍ତି । ହେ ଦେବ, ଉଗ୍ରଜାତିର ଅନ୍ନ ଅତ୍ୟନ୍ତ ନିନ୍ଦନୀୟ ଅଟେ । ଗଣାନ୍ନ, ଶ୍ରାଦ୍ଧାନ୍ନ, ସୂତକାନ୍ନ ତଥା ଦୁଷ୍ଟଲୋକର ଅନ୍ନ ଭୋଜନ କରିବା ଉଚିତ ନୁହେଁ ଓ ଶୂଦ୍ରର * ଅନ୍ନ କଦାଚ ଭୋଜନ କରିବେ ନାହିଁ । ହେ ଦେବ, ମହାନୁଭବ ଦେବତାମାନେ ଶୂଦ୍ର ଅନ୍ନକୁ ସଦା ନିନ୍ଦିତ ବୋଲି ଜାଣନ୍ତି—ଏ ବିଷୟ ପିତାମହଙ୍କ ମୁଖରୁ ପ୍ରମାଣିତ ହୋଇଅଛି ।

ପୁନଶ୍ଚ—

ରାଜାନ୍ନଂ ତେଜ ଆଦତ୍ତେ ଶୂଦ୍ରାନ୍ନଂ ବ୍ରହ୍ମବର୍ଚସମ୍ ।　　ମନୁ ୪।୨୧୮ ॥

ରାଜାଙ୍କ ଅନ୍ନ ଭୋଜନ କଲେ ତେଜ ନଷ୍ଟ ହୁଏ ଏବଂ ଶୂଦ୍ରର ଅନ୍ନ ଗ୍ରହଣ କଲେ ବ୍ରହ୍ମତେଜ ରହେ ନାହିଁ ।

ଗଣାନ୍ନଭୋଜନଂ ଚୈବ ଗଣିକାନ୍ନନିଷେବଣମ୍ ।
ପତିତାନ୍ନାଶନଞ୍ଚୈବ ସୁରାପାନସମଂ ସ୍ମୃତମ୍ ॥

ବୃହନ୍ନାରଦୀୟ ପୁ: ୧୪।୩୬ ॥

ଗଣାନ୍ନ, ଅର୍ଥାତ୍ ଗଣକ ବା ଜ୍ୟୋତିଷୀର ଅନ୍ନ, ବେଶ୍ୟା ଓ ପତିତ ବ୍ୟକ୍ତିର ଅନ୍ନ ଭୋଜନ କଲେ ମଦ୍ୟପାନ ସମାନ ଧରାଯାଏ ।

---

* ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରସ୍ୟାପି ସ୍ୱଭାବଜମ୍ —ଗୀତା । ଅର୍ଥାତ୍ ବ୍ରାହ୍ମଣାଦି ବର୍ଣ୍ଣତ୍ରୟର ସେବାରୂପ କର୍ମ, ଅର୍ଥାତ୍ ନାପିତ, ରଜକପ୍ରଭୃତି ଶୂଦ୍ରର ମଧ୍ୟ ସ୍ୱାଭାବିକ କର୍ମ ଅଟେ ।

ପୁନଶ୍ଚ —ସର୍ବଭକ୍ଷ୍ୟଂ ରତିର୍ନିତ୍ୟଂ ସର୍ବକର୍ମକରୋ ଶୁଚିଃ ।
ତ୍ୟକ୍ତବେଦସ୍ତ୍ୱନାଚାରଃ ସ ବୈ ଶୂଦ୍ର ଇତି ସ୍ମୃତଃ ॥

ରଜକଃ ଶୈଳୂଷଶ୍ଚୈବ ବେଣୁକର୍ମୋପଜୀବିନଃ ।
ଏତେଷାଂ ଯସ୍ତୁ ଭୁଙ୍‍କ୍ତେ ବୈ ଦ୍ୱିଜଶ୍ଚାନ୍ଦ୍ରାୟଣଂ ଚରେତ୍ ॥
ଅତ୍ରିସଂହିତା—୧୬୮ ॥

ରଜକ ଓ ଶୈଳୁଷ (ନୃତ୍ୟ କରି ଯେ ଜୀବିକା ନିର୍ବାହ କରେ); ତଥା ବଂଶୀବାଦନ-ଦ୍ୱାରା ଜୀବିକାକାରୀ ବ୍ରାହ୍ମଣ ଚାନ୍ଦ୍ରାୟଣ ବ୍ରତ କଲେ ସେହି ପାପରୁ ମୁକ୍ତ ହୁଅନ୍ତି ।

ଗୋଘ୍ନେ ଚ ବ୍ରାହ୍ମଣଘ୍ନେ ଚ ସୁରାପେ ଗୁରୁତଳ୍ପଗେ ।
ଭୁକ୍ତ୍ୱାନ୍ନଂ ଜାୟତେ ବିପ୍ରୋ ରକ୍ଷସାଂ କୁଳବର୍ଦ୍ଧନଃ ॥
ମହାଭା: ଅନୁ: ୧୩୫।୧୯ ॥

ଗୋଘାତକ, * ବ୍ରହ୍ମଘାତୀ, ସୁରାପାନକାରୀ ଓ ବିମାତୃଗାମୀର ଅନ୍ନଭୋଜନ କଲେ ବ୍ରାହ୍ମଣ ରାକ୍ଷସକୁଳ ବର୍ଦ୍ଧନ କରେ । ସତ୍ୟଧର୍ମାଗ୍ରହୀ ବ୍ୟକ୍ତିଙ୍କ ପକ୍ଷରେ ଭୋଜନର ଯେଉଁ ନିଷିଦ୍ଧ କାଳ, ନିଷିଦ୍ଧ ଦ୍ରବ୍ୟ ଓ ନିଷିଦ୍ଧ ଜାତିର ଗୃହାନ୍ନପ୍ରଭୃତି ଗ୍ରହଣବିଷୟରେ ନିର୍ଦ୍ଦେଶ ରହିଅଛି, ତାହାର ଯୁକ୍ତିଯୁକ୍ତ ପ୍ରମାଣ ଉପର୍ଯ୍ୟୁକ୍ତ ବାକ୍ୟମାନଙ୍କରେ ଉଲ୍ଲେଖ କରାଗଲା ।

---

* ଗୋବଧକାରୀ ଓ ଗୋମାଂସାହାରୀର ଫଳ—

ଇନ୍ଦ୍ର ଉବାଚ— ଜାନନ୍ ଯୋ ଗାମପହରେଦ୍ ବିକ୍ରୀୟାଚ୍ଚାର୍ଥକାରଣାତ୍ ।
ଏତଦ୍ ବିଜ୍ଞାତୁମିଚ୍ଛାମି କା ନୁ ତସ୍ୟ ଗତିର୍ଭବେତ୍ ॥

ପିତାମହ ଉବାଚ— ଭକ୍ଷ୍ୟାର୍ଥଂ ହି ଯୋ ହିଂସ୍ୟାତ୍ ଭକ୍ଷୟେଦ୍ ବା ନିରଂକୁଶଃ ।
ଘାତୟାନଂ ହି ପୁରୁଷଂ ଯେଽନୁମନ୍ୟେୟୁରର୍ଥିନଃ ॥
ଘାତକଃ ଖାଦକୋ ବାପି ତଥାଃ ଯଶ୍ଚାନୁମନ୍ୟତେ ।
ଯାବନ୍ତି ତସ୍ୟା ରୋମାଣି ତାବଦ୍ ବର୍ଷାଣି ମଜ୍ଜତି ॥
ମହାଭା: ଅନୁ: ୭୪।୧।୩-୪ ॥

ଇନ୍ଦ୍ର କହିଲେ—ଯେଉଁ ପୁରୁଷ ଜାଣିଶୁଣି ଗୋହରଣ କରେ, ଅଥବା ଧନ ପ୍ରାପ୍ତି ନିମନ୍ତେ ବିକ୍ରୟ କରେ, ତାହାର ଗତି କିପରି ?—ଏହାର ଉତ୍ତର ମୁଁ ଜାଣିବାକୁ ଇଚ୍ଛା କରେ ।

ବ୍ରହ୍ମା କହିଲେ—ଯେଉଁ ନିଷ୍ଠୁର ପୁରୁଷ ବିକ୍ରୟ ଅର୍ଥରେ ଗୋବଧ କରେ, ଅଥବା ନିଜେ ଭକ୍ଷଣ କରେ ଏବଂ ଯେଉଁ ଧନାର୍ଥୀ ଘାତକ ପୁରୁଷକୁ ଅନୁମତି ଦିଏ, ଗୋ-ଶରୀରରେ ଯେତେ ରୋମ, ସେତେ ବର୍ଷ ପର୍ଯ୍ୟନ୍ତ ସେପରି ମାରିବା ଓ ଖାଇବା ଲୋକ ଏବଂ ଅନୁମତି ଦେବା ଲୋକ ନରକରେ ନିମଜ୍ଜିତ ରହନ୍ତି ।

## ଠ—ଦିବସରେ ପରିମିତ ଓ ବିଶୁଦ୍ଧଆହାର ବିଧେୟ ଓ ରାତ୍ରିଭୋଜନ ନିଷିଦ୍ଧ ।

ଦିବସରେ ନିୟମିତ ଓ ପରିମିତ ବିଶୁଦ୍ଧାହାର କଲେ ପରମାତ୍ମାଙ୍କର ସ୍ମରଣ, ଭଜନ, ଦର୍ଶନ ଭକ୍ତିଯୋଗରେ କୌଣସି ପ୍ରତିବନ୍ଧକ ହୁଏ ନାହିଁ । ସୁତରାଂ ଜ୍ଞାନଭକ୍ତି-ସାଧକ ଦିବାଭାଗର ସୂର୍ଯ୍ୟନାଡ଼ୀରେ ବାୟୁ ପ୍ରବାହିତ ହେବା ସମୟରେ ସାତ୍ତ୍ୱିକ ଆହାର-ଯୋଗ୍ୟ ପଦାର୍ଥ ପ୍ରଭୁ ପରମାତ୍ମାଙ୍କୁ ଅର୍ପଣ କରି ଗ୍ରହଣ କରିବା ବିଧେୟ ।

ଅନଲେଽର୍କପ୍ରବିଷ୍ଟେ ଚ ଭୋକ୍ତବ୍ୟଂ ଯୋଗିଭିଃ ସଦା ।
ବାୟୌ ପ୍ରବିଷ୍ଟେ ଶଶିନି ଶୀୟେତ ସାଧକୋତ୍ତମୈଃ ॥

ଶିବସଂହିତା—୩।୪୩ ।

ଯେଉଁ ସମୟରେ ବାୟୁ ସୂର୍ଯ୍ୟରେ ପ୍ରବେଶ କରିବ, ଅର୍ଥାତ୍ ଯେଉଁ ସମୟରେ ପିଙ୍ଗଳା ନାଡ଼ୀରେ ବା ଦକ୍ଷିଣ ନାସିକାରେ ବାୟୁ ପ୍ରବାହିତ ହେବ, ସେହି ସମୟରେ ଭୋଜନପାନ କରିବା ଯୋଗୀର କର୍ତ୍ତବ୍ୟ । ଯେଉଁ ସମୟରେ ବାୟୁ ଚନ୍ଦ୍ରନାଡ଼ୀରେ ପ୍ରବେଶ କରିବ, ଅର୍ଥାତ୍ ଯେତେବେଳେ ଇଡ଼ାନାଡ଼ୀରେ ବା ବାମନାସିକାରେ ବାୟୁ ପ୍ରବାହିତ ହେବ, ଯୋଗୀମାନେ ସେହି ସମୟରେ ଶୟନ କରିବେ ।

ଏହି ହେତୁରୁ—

ଶଶାଙ୍କଂ ବାରୟେଦ୍ରାତ୍ରୌ ଦିବା ବାର୍ଯ୍ୟୋ ଦିବାକରଃ ।
ଇତ୍ୟଭ୍ୟାସେ ରତୋ ଯୋଗୀ ସ ଯୋଗୀ ନାତ୍ର ସଂଶୟଃ ॥
ସୂର୍ଯ୍ୟେଣ ବଧ୍ୟତେ ଚନ୍ଦ୍ରଃ ସୂର୍ଯ୍ୟଶ୍ଚନ୍ଦ୍ରେଣ ବଧ୍ୟତେ ।
ଯୋ ଜାନାତି କ୍ରିୟାମେତାଂ ତ୍ରୈଲୋକ୍ୟଂ ଜୟତେ କ୍ଷଣାତ୍ ॥

ପବନବିଜୟସ୍ୱରୋଦୟ—୪।୨୪-୨୫ ॥

ଦିବାଭାଗରେ ପିଙ୍ଗଳାରେ ଏବଂ ରାତ୍ରିକାଳରେ ଇଡ଼ାନାଡ଼ୀରେ ସ୍ୱରଚାଳନ କରିବା ବିଧେୟ । ଏହିପରି ସ୍ୱରଚାଳନରେ ସମର୍ଥ ହେଲେ ମୁମୁକ୍ଷୁ ପ୍ରକୃତ ଯୋଗୀ ବୋଲି ପରିଗଣିତ ହେବ । ସୂର୍ଯ୍ୟଦ୍ୱାରା ଚନ୍ଦ୍ର ଓ ଚନ୍ଦ୍ରଦ୍ୱାରା ସୂର୍ଯ୍ୟଙ୍କୁ ବନ୍ଧ କରିପାରିବ । ଅର୍ଥାତ୍ ଦିବାଭାଗରେ ଇଡ଼ାରେ ସ୍ୱରଚାଳନ ବନ୍ଧ ରଖିବ ଏବଂ ରାତ୍ରିକାଳରେ ପିଙ୍ଗଳାରେ ସ୍ୱରଚାଳନ ବନ୍ଧ ରଖିବାକୁ ହେବ । ଏହିପରି ସ୍ୱରଚାଳନରେ ପାରଦର୍ଶୀ ହେଲେ ମୁହୂର୍ତ୍ତକ ମଧ୍ୟରେ

ତ୍ରିଭୁବନବିଜୟୀ ହୋଇ ପାରେ । ଉପର୍ଯ୍ୟୁକ୍ତ ଯୋଗଶାସ୍ତ୍ରଉକ୍ତିରୁ ଅନୁମିତ ହୁଏ ଯେ, କେବଳ ଦିବାଭାଗରେ ସୂର୍ଯ୍ୟନାଡ଼ୀରେ ବାୟୁ ପ୍ରବାହିତ ହେବା ସମୟରେ ଅନ୍ନଜଳ ଆଦି ଗ୍ରହଣ କରିବା ଯୋଗୀମାନଙ୍କର କର୍ତ୍ତବ୍ୟ । ଉପନିଷଦ୍‌ରେ କୁହାଯାଇଛି ଯେ, ସୂର୍ଯ୍ୟକିରଣ ମାନବ ଶରୀରରେ ପ୍ରବେଶ କରି ଶାରୀରିକ ତେଜ-କାର୍ଯ୍ୟ ସମ୍ପାଦନ କରେ—

**ତଦ୍ ଯଥା ମହାପଥ ଆତତ ଉଭୌ ଗ୍ରାମୌ ଗଚ୍ଛତୀମଂ ଚାମୁଂ ଚୈବମେବୈତା ଆଦିତ୍ୟସ୍ୟ ରଶ୍ମୟ ଉଭୌ ଲୋକୌ ଗଚ୍ଛନ୍ତୀମଂ ଚାମୁଂ ଚାମୁଷ୍ମାଦାଦିତ୍ୟାତ୍ ପ୍ରତାୟନ୍ତେ ତା ଆସୁ ନାଡ଼ୀଷୁ ସୃପ୍ତା ଆଭ୍ୟୋ ନାଡ଼ୀଭ୍ୟଃ ପ୍ରତାୟନ୍ତେ ତେଽମୁଷ୍ମିନ୍ନାଦିତ୍ୟେ ସୃପ୍ତାଃ ॥**

ଛାନ୍ଦୋଗ୍ୟ—୮।୬।୨ ॥

ଯେପରି ବିସ୍ତୀର୍ଣ୍ଣ ରାଜପଥ ନିକଟବର୍ତ୍ତୀ ଓ ଦୂରବର୍ତ୍ତୀ ଉଭୟ ଗ୍ରାମରେ ପ୍ରବେଶ କରୁଛି, ସେପରି ସୂର୍ଯ୍ୟଙ୍କର ବିବିଧ ବର୍ଣ୍ଣମୟ କିରଣସମୂହ ଏହି ପୃଥିବୀର ପ୍ରାଣୀସମୂହ ଓ ଅନ୍ୟ ଲୋକ ବା ସୂର୍ଯ୍ୟଙ୍କଠାରେ ମଧ୍ୟ ପ୍ରବେଶ କରନ୍ତି । ପ୍ରଥମେ ସେହି ରଶ୍ମି ସମୂହ ସୂର୍ଯ୍ୟଙ୍କଠାରୁ ବାହାରି ମନୁଷ୍ୟଦେହର ନାଡ଼ୀଭିତରେ ପ୍ରବେଶ କରେ ଓ ସେଥିରୁ ବାହାରି ପୁନର୍ବାର ସେହି ସୂର୍ଯ୍ୟମଣ୍ଡଳରେ ପ୍ରବେଶ କରେ ।

ତା'ପରେ—

**ଅହୋରାତ୍ରୋ ବୈ ପ୍ରଜାପତିସ୍ତସ୍ୟାହରେବ ପ୍ରାଣୋ ରାତ୍ରିରେବ ରୟିଃ ॥**

ପ୍ରଶ୍ନୋପନିଷଦ୍—୧।୧୩ ॥

ସେହି ଚନ୍ଦ୍ର, ସୂର୍ଯ୍ୟାତ୍ମକ ପ୍ରଜାପତି ହିଁ ଦିବସ ଓ ରାତ୍ରି ସ୍ୱରୂପ । ଦିନ ତାହାର ପ୍ରାଣ ବା ସୂର୍ଯ୍ୟ ଏବଂ ରାତ୍ରି ତାହାର ଅନ୍ନ ବା ଚନ୍ଦ୍ର ସ୍ୱରୂପ । ଏହି ଭାବକୁ ଲକ୍ଷ୍ୟ କରି ଗୀତାରେ ଭଗବାନ୍ କହିଅଛନ୍ତି—

**ଅହଂ ବୈଶ୍ୱାନରୋ ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ ।**
**ପ୍ରାଣାପାନସମାଯୁକ୍ତଃ ପଚାମ୍ୟନ୍ନଂ ଚତୁର୍ବିଧମ୍ ॥**

ଗୀତା—୧୫।୧୪ ॥

ମୁଁ ବୈଶ୍ୱାନର ବା ଜଠରାଗ୍ନି ହୋଇ ପ୍ରାଣୀମାନଙ୍କ ଦେହରେ ପ୍ରବେଶପୂର୍ବକ ପ୍ରାଣ ଓ ଅପାନ-ସଂଯୁକ୍ତ ହୋଇ ପ୍ରାଣୀମାନଙ୍କ ଭୁକ୍ତ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ—ଏହି ଚତୁର୍ବିଧ ଅନ୍ନ ପରିପାକ କରେଁ ।

ଏଥିରୁ ଏହା ପ୍ରତିପନ୍ନ ହୁଏ ଯେ ଦିବସରେ ସୂର୍ଯ୍ୟଙ୍କର ତେଜ ଓ ପ୍ରାଣର ତେଜ ମଧ୍ୟ ସମ୍ପୂର୍ଣ୍ଣ ପ୍ରକାଶିତ ରହିଥାଏ । ସେହି ଦିବସରେ କେବଳ ଭୁକ୍ତ ଦ୍ରବ୍ୟର ସାରାଂଶ ଦୈବୀ ପ୍ରକୃତିସଂଯୁକ୍ତ ହୋଇ ସାତ୍ତ୍ୱିକ ଗୁଣ ପ୍ରକାଶ କରେ; କିନ୍ତୁ ରାତ୍ରିକାଳରେ ଭୋଜ୍ୟ ଦ୍ରବ୍ୟର ସାରାଂଶ ତାହାର ବିପରୀତ, ଅର୍ଥାତ୍ ରଜସ୍ ଓ ତମୋଗୁଣ ବୃଦ୍ଧି କରେ । ଏହିହେତୁରୁ ରାତ୍ରିକାଳରେ କୌଣସି ପ୍ରକାର ଆହାର ନ କରି କେବଳ ଦିବସରେ ପ୍ରଭୁ ପରଂବ୍ରହ୍ମଙ୍କୁ ସ୍ମରଣ ଅର୍ପଣ ପୂର୍ବକ ସାତ୍ତ୍ୱିକଭାବେ ଚତୁର୍ବିଧ ଆହାର ଗ୍ରହଣ କରିବ ।

ଚତୁର୍ବିଧ ଆହାର, ଯଥା—

"ଚତୁର୍ବିଧାହାରମୟଂ ଲେହ୍ୟପେୟଚର୍ବ୍ୟଚୋଷ୍ୟଂ
ଚତୁର୍ବିଧାହାର ଇତ୍ୟର୍ଥଃ ।।"

ଅର୍ଥାତ୍ କୋଷ୍ଠାଗ୍ନି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟରୂପକ ଚତୁର୍ବିଧ ଭୁକ୍ତ ଓ ପୀତ ଦ୍ରବ୍ୟର ପରିପାକ କରେ ।

୦—ସଂକଳ୍ପ ଆଦିବିହୀନ ସାତ୍ତ୍ୱିକ ଆହାର—

ଆୟୁଃ-ସତ୍ତ୍ୱ-ବଳାରୋଗ୍ୟ-ସୁଖପ୍ରୀତି-ବିବର୍ଦ୍ଧନାଃ ।
ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ ।।
ଗୀତା—୧୭-୮ ।।

ଆୟୁଷ, ଉତ୍ସାହ, ସାମର୍ଥ୍ୟ, ସ୍ୱାସ୍ଥ୍ୟ, ଚିତ୍ତର ପ୍ରସନ୍ନତା ଓ ରୁଚି—ଏଗୁଡ଼ିକର ବର୍ଦ୍ଧନକାରୀ ଏବଂ ସ୍ୱାଦୁ, ଚିକ୍କଣ ଓ ସ୍ଥିରଗୁଣସମ୍ପନ୍ନ ମନୋହର ଆହାର ସତ୍ତ୍ୱଗୁଣୀ ବ୍ୟକ୍ତିମାନଙ୍କର ପ୍ରିୟ ଅଟେ ।

ଶ୍ରଦ୍ଧାପୂତାନି ଭୁଞ୍ଜୀତ ନିମିତ୍ତାନି ଚ ବର୍ଜୟେତ୍ ।
ସୁଧାବୃତ୍ତିରସକ୍ତଶ୍ଚ ସର୍ବଭୂତୈରସଂବଦମ୍ ।।
ମହାଭା: ଆଶ୍ୱ: ଅନୁଗୀତା-୪୬।୩୮ ।।

ଅଯାଚକବୃତ୍ତି ଅବଲମ୍ବନପୂର୍ବକ ସମସ୍ତ ବିଷୟରେ ଅନାସକ୍ତ ହୋଇ ଶ୍ରଦ୍ଧା-ପୂତଭାବରେ ଭୋଜନ କରିବ । ସମସ୍ତ ନିମିତ୍ତ ବା ପୂର୍ବରୁ ସଙ୍କଳ୍ପିତ ଭୋଗ୍ୟ ପଦାର୍ଥ ବର୍ଜନ କରିବ ଓ ପବିତ୍ର ଆଚାର ଅବଲମ୍ବନପୂର୍ବକ ଅଧିକ ଅନାସକ୍ତ ହୋଇ ଅନ୍ୟ ପ୍ରାଣୀମାନଙ୍କ ଅଜ୍ଞାତସାରରେ ନିଜ ଖାଦ୍ୟପଦାର୍ଥ ଗ୍ରହଣ କରିବ ।

ଠ—ପ୍ରଭୁ ପରମାତ୍ମାଙ୍କୁ ସ୍ମରଣ କରି ଭୋଜନପାନ ବିଧେୟ—

ଏହିପରି ପୂର୍ବରୁ ଅସଂକଳ୍ପିତ ଦ୍ରବ୍ୟ ପ୍ରଭୁ ପରମାତ୍ମାଙ୍କୁ ଅର୍ପଣ କରି ପାନ ଭୋଜନ କରିବା ବିଧେୟ ! ପ୍ରଭୁ ପରଂବ୍ରହ୍ମଙ୍କ ପଦରେ ସମର୍ପଣ ନ କରି ପାନ ଭୋଜନ ଦୋଷାବହ କାର୍ଯ୍ୟ । * ସୁତରାଂ ପ୍ରଭୁଙ୍କୁ ଅର୍ପଣ ନ କରି କୌଣସି କ୍ରିୟାରେ ପ୍ରବର୍ତ୍ତିତ ହେବା ଭକ୍ତର କର୍ତ୍ତବ୍ୟ ନୁହେଁ ।

ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ତପସ୍ୟସି କୌନ୍ତେୟ ତତ୍ କୁରୁଷ୍ୱ ମଦର୍ପଣମ୍ ।

ଗୀତା—୯ । ୨୭ ॥

ହେ କୌନ୍ତେୟ ! ଯାହା କିଛି ତୁମେ କାର୍ଯ୍ୟ କର, ଯାହା ଭୋଜନ କର ବା ଯାହା କିଛି ହବନ ଓ ତପସ୍ୟା କର, ସେ ସମସ୍ତ ମୋଠାରେ ଅର୍ଥାତ୍ ଅବ୍ୟକ୍ତ ପରମାତ୍ମାଙ୍କଠାରେ ଅର୍ପଣ କରିବ ।

ଏହିପରି—

ଅନେନ ବ୍ରହ୍ମମନ୍ତ୍ରେଣ ଭକ୍ଷ୍ୟପେୟାଦିକଂ ଚ ଯତ୍ ।
ଦୀୟତେ ପରମେଶାୟ ତଦେବ ପାବନଂ ମହତ୍ ॥

ମହାନିର୍ବାଣତନ୍ତ୍ର—୩।୭୯ ॥

ବ୍ରହ୍ମଙ୍କୁ ସ୍ମରଣ କରି ଯେଉଁ ଭକ୍ଷ୍ୟ ବା ପେୟ ବସ୍ତୁ ପରଂବ୍ରହ୍ମଙ୍କୁ ସମର୍ପଣ କରାଯାଏ, ତାହା ମହାପବିତ୍ରଭାବେ ଗୃହୀତ ।

ଅଲ୍ପମୃଷ୍ଟାଶନାଭ୍ୟାଂ ଚ ଚତୁର୍ଥାଂଶାବଶେଷକମ୍ ।
ତସ୍ମାଦ୍ ଯୋଗାନୁଗୁଣ୍ୟେନ ଭୋଜନଂ ମିତଭୋଜନମ୍ ।

ଜାବାଲଦ: ଉ: ୧।୧୯ ॥

---

* ପ୍ରଭୁଙ୍କୁ ଅନିବେଦିତ ଭୋଜନର ପ୍ରାୟଶ୍ଚିତ୍ତ—

ପତ୍ରଂ ପୁଷ୍ପଂ ଫଳଂ ମୂଳମନ୍ନପାନାଦ୍ୟଚୌଷଧମ୍ ।
ଅନିବେଦ୍ୟ ନ ଭୁଞ୍ଜୀତ ଯଦାହାରାୟ କଳ୍ପତେ ॥
ଅନିବେଦ୍ୟ ତୁ ଭୁଞ୍ଜାନଃ ପ୍ରାୟଶ୍ଚିତ୍ତୀ ଭବେନ୍ନରଃ ।

ପ୍ରାଣତୋଷିଣୀତନ୍ତ୍ର—୨ୟ ପରିଚ୍ଛେଦ ॥

ଅଲ୍ପ ମର୍ଦ୍ଦିତ ଭୋଜନର ଚତୁର୍ଥାଂଶ ଅବଶିଷ୍ଟ ରଖି ଯୋଗାନୁକୂଳ, ଅର୍ଥାତ୍ ଅଲ୍ପାଧିକ ଭାବଶୂନ୍ୟ ଭୋଜନକୁ ମିତ ଭୋଜନ କହନ୍ତି ।

**ସୁସ୍ନିଗ୍ଧମଧୁରାହାର ଶ୍ଚତୁର୍ଥାଂଶବିବର୍ଜିତଃ ।**
**ଭୁଜ୍ୟତେ ଶିବସଂପ୍ରୀତୌ ମିତାହାରଃ ସ ଉଚ୍ୟତେ ॥**

ହଠଯୋଗ ପ୍ରଦୀପିକା ॥

ସ୍ନିଗ୍ଧ ମଧୁର ପଦାର୍ଥ ଆହାର କରିବା ବିଧେୟ; କିନ୍ତୁ ଉଦରକୁ ସମ୍ପୂର୍ଣ୍ଣ କରି ଆହାର କରିବା ନିଷିଦ୍ଧ । ଉଦରର ଚତୁର୍ଥାଂଶ ଶୂନ୍ୟ ରଖିବା ଉଚିତ । ଏହି ନିୟମ ଅନୁସାରେ ପ୍ରତ୍ୟହ ଭୋଜନ କରିବାର ନାମ ମିତାହାର ।

ଉପର୍ଯ୍ୟୁକ୍ତ ନିୟମ ଅନୁସାରେ ରାତ୍ରି ଭୋଜନ ନିଷେଧପୂର୍ବକ ଦିବସରେ ମିତାହାର କଲେ ଆହାର ଶୁଦ୍ଧ ହୁଏ ଏବଂ ଶୁଦ୍ଧାହାର ଗ୍ରହଣଦ୍ୱାରା ଚିତ୍ତ ଶୁଦ୍ଧି ହୁଏ, ଚିତ୍ତଶୁଦ୍ଧିଦ୍ୱାରା ଭକ୍ତ ମହାମହିମାମୟ ପରମାତ୍ମାଙ୍କୁ ଦର୍ଶନ କରିବାକୁ ସମର୍ଥ ହୁଏ ।

**ଆହାରଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ ସତ୍ତ୍ୱଶୁଦ୍ଧୌ ଧ୍ରୁବା**
**ସ୍ମୃତିଃ ସ୍ମୃତିଲମ୍ଭେ ସର୍ବଗ୍ରନ୍ଥୀନାଂ ବିପ୍ରମୋକ୍ଷଃ ॥**

ଛାନ୍ଦୋଗ୍ୟ—୭।୨୬।୨ ॥

ଆହାର-ଶୁଦ୍ଧିଦ୍ୱାରା ଚିତ୍ତ ଶୁଦ୍ଧି ହୁଏ, ଚିତ୍ତଶୁଦ୍ଧିରେ ଧ୍ରୁବା ସ୍ମୃତି, ଅର୍ଥାତ୍ ପରମାତ୍ମାଙ୍କଠାରେ ଅବିଚ୍ଛିନ୍ନ ସ୍ମରଣଭାବ ସୃଷ୍ଟି ଜାଗି ଉଠେ ଏବଂ ସେହି ସମୟରେ ଜୀବର ଜନ୍ମଜନ୍ମାନ୍ତରର ସଞ୍ଚିତ ବାସନାବଶତଃ କଠିନୀକୃତ ମାୟାର ମୋହ-ଜାଲରୁ ଚିରଦିନ ସକାଶେ ମୁକ୍ତିଲାଭ ହୁଏ ।

## ଠ—ପ୍ରାତଃସ୍ନାନାଦି ଶୌଚ ବିବରଣ ଓ ପାବିତ୍ର୍ୟବିଧାନ—

ମହିମା ଧର୍ମାବଲମ୍ବୀମାନଙ୍କର କର୍ତ୍ତବ୍ୟ ଏହି ଯେ, ରାତ୍ରିର ଶେଷ ଯାମରେ ଉଠି ପ୍ରଭୁଙ୍କୁ ସ୍ମରଣ କରିବେ ଓ ସ୍ନାନ ଶୌଚାଦି ଶେଷ କରିବେ; ଅର୍ଥାତ୍ ବସ୍ତ୍ରଚିରାର (ବାଳୁଙ୍ଗା) ଗୋମୟ ଅଙ୍ଗରେ ମାର୍ଜନ କରି ମୃତ୍ତିକାଦ୍ୱାରା ଦନ୍ତଧାବନ କରି ସ୍ନାନ କରିବେ । ତା'ପରେ ବସ୍ତ୍ରଚିରା ଗୋମୟ ଓ ମୂତ୍ର ଏବଂ ଶୁଦ୍ଧଜଳ ଏକ ଧୌତ, ନୂତନ ମୃତ୍ତିକା ପାତ୍ର ବା ପତ୍ରର ଚଉପଦୀରେ ଏକତ୍ର କରି ବାଭିମୁଖରେ ପ୍ରଭୁଙ୍କୁ ସ୍ମରଣପୂର୍ବକ ଭୂମିଷ୍ଠ ଶରଣ ହୋଇ

ପ୍ରଭୁପଦରେଣୁ ଜଳପାତ୍ରରେ ସପ୍ତବାର ପ୍ରକ୍ଷେପ କରି ତାହା ପାନ ଓ ଅଙ୍ଗରେ ଲେପନ କଲେ ସ୍ଥୂଳଶରୀର ଶୌଚସମ୍ପନ୍ନ ହୁଏ । ଏହାକୁ ଅତି ପବିତ୍ର କୁହାଯାଏ । ଏହି ପବିତ୍ରୀକରଣ-ବିଧାନ ମନ୍ତ୍ରମାଧର୍ମ ସମାଜରେ ଗୁରୁ ମନ୍ତ୍ରମାସ୍ୱାମୀଙ୍କ ଆଦେଶରେ ଉପଦିଷ୍ଟ ହୋଇଅଛି । ଏହି **ପବିତ୍ରୀ**କରଣ ସମ୍ବନ୍ଧରେ ବେଦଉକ୍ତି ମଧ୍ୟ ଅଛି ।

**ଚିତ୍‌ପତିର୍ମା ପୁନାତୁ ବାକ୍‌ପତିର୍ମା ପୁନାତୁ ଦେବୋମା ।**
**ସବିତା ପୁନା ତ୍ୱଚ୍ଛିଦ୍ରେଣ ପବିତ୍ରେଣ ସୂର୍ଯ୍ୟସ୍ୟ ରଶ୍ମିଭିଃ ॥**
**ତସ୍ୟ ତେ ପବିତ୍ରପତେ ପବିତ୍ରପୂତସ୍ୟ**
**ଯତ୍‌କାମଃ ପୁନେ ତଚ୍ଛକେୟମ୍‌ ।**

ଯଜୁଃ ସଂ—୪ । ୪"

ହେ ସର୍ବଜଗତର କାରଣ, ସର୍ବଚେତନାଧିପତି ପରମାତ୍ମନ୍ ! ଆପଣ ମୋତେ ପବିତ୍ର କରନ୍ତୁ । ହେ ପରମପାବନ ପରମାତ୍ମନ୍, ସୂର୍ଯ୍ୟକିରଣରେ ଯେପରି ଆର୍ଦ୍ର ପଦାର୍ଥ ଶୁଷ୍କ ହୋଇ-ଯାଏ ସେହିପରି ଆପଣଙ୍କର ପବିତ୍ର ସ୍ୱରୂପରେ ମୋର ଅନ୍ତଃକରଣ ଓ ଦେହ ପବିତ୍ର ହୋଇ ସକଳ ଦୁଷ୍କୃତ ଶୁଷ୍କ ବା ନଷ୍ଟ ହେଉ । ହେ ଶୁଦ୍ଧାତ୍ମାମାନଙ୍କର ରକ୍ଷକ, ପବିତ୍ର ଗୁଣପୂର୍ଣ୍ଣ ପରମାତ୍ମନ୍ ! ଆପଣ ମୋତେ କୃପା କରନ୍ତୁ; ମୁଁ ଯେପରି ପବିତ୍ର ଜୀବନଲାଭ କରି ଆପଣଙ୍କ ପବିତ୍ର ସ୍ୱରୂପଲାଭ ନିମନ୍ତେ ଆଜୀବନ ଯତ୍ନଶୀଳ ହୋଇ ରହିବି । ଏହିପରି ଅନ୍ତରରୁ କାମ୍ୟକର୍ମାଦି ଭାବନା ତ୍ୟାଗ କରି ନିଷ୍କାମଭାବେ ପ୍ରଭୁ ପରଂବ୍ରହ୍ମଙ୍କ ଶରଣାପନ୍ନ ହେଲେ ବାହ୍ୟ ଓ ଆଭ୍ୟନ୍ତର ଶୌଚସମ୍ପନ୍ନ ହୁଏ ।

**ଉଷୋନାମାନ ଉତ୍ତରାଣି ଷୋଡ଼ଶ । ଉଷାଃ କସ୍ମାତ୍ । ଉଚ୍ଛତୀତି ସତ୍ୟାଃ । ରାତ୍ରେରପରଃ କାଳଃ । ତସ୍ୟା ଏଷା ଭବତି ॥**

ନିରୁକ୍ତ—୨ । ୭ । ୧ ॥

ରାତ୍ରିର ଷୋଡ଼ଶଭାଗର ଶେଷଭାଗର ନାମ ଉଷା । ଉଷା ଶବ୍ଦର ଅର୍ଥ—ଯହିଁରେ କି ରାତ୍ରିର ଅନ୍ଧକାର ନିବୃତ୍ତ ହୋଇ ଆସେ । ବେଦମନ୍ତ୍ରରେ ମଧ୍ୟ ରାତ୍ରିର ଶେଷ ସମୟକୁ ଉଷା ବୋଲାଯାଏ ।

**ଉଷାକାଳେ ତୁ ସଂପ୍ରାପ୍ତେ ଶୌଚଂ କୃତ୍ୱା ଯଥାର୍ଥବତ୍ ।**
**ତତଃ ସ୍ନାନଂ ପ୍ରକୁର୍ବୀତ ଦନ୍ତଧାପନପୂର୍ବକମ୍ ॥**

ଅତ୍ୟନ୍ତ ମଳିନକାୟୋ ନବଚ୍ଛିଦ୍ରସମନ୍ୱିତଃ ।
ସ୍ରବତ୍ୟେଷ ଦବାରାତ୍ରୌ ପ୍ରାତଃସ୍ନାନଂ ବଶୋଧନମ୍ ॥
ଦକ୍ଷସଂହିତା ୨ । ୭ । ୭ ।

ପ୍ରତ୍ୟୁଷକାଳ ଉପସ୍ଥିତ ହେଲେ ଶୌଚକାର୍ଯ୍ୟ (ମଳମୂତ୍ର ତ୍ୟାଗ) କରିବ, ଅନନ୍ତର ଦନ୍ତଧାପନ * ସମାପନ କରି ପ୍ରାତଃସ୍ନାନ କରିବ । ମାନବଦେହ ଅତ୍ୟନ୍ତ ମଳିନ ବା ମଳଯୁକ୍ତ ଓ ନବଛିଦ୍ରଯୁକ୍ତ; ଅର୍ଥାତ୍ ଚକ୍ଷୁ, କର୍ଣ୍ଣ, ନାସିକା, ମୁଖ, ପାୟୁ ଓ ଉପସ୍ଥ ଏହା ମାନବଦେହରେ ୯ ଗୋଟି ମଳ-ନିର୍ଗମନଦ୍ୱାର, ଏହି ନବଦ୍ୱାରଦେଇ ଦିବାରାତ୍ର ମଳ ନିଃସୃତ ହୁଏ । ସୁତରାଂ ପ୍ରାତଃସ୍ନାନଦ୍ୱାରା ତାହା ଶୋଧିତ ହୁଏ । ଅତଏବ ନିତ୍ୟ ପ୍ରାତଃସ୍ନାନ କରିବ ।

ପୁନଶ୍ଚ—

ପ୍ରାତଃସ୍ନାନାଦ୍ ଯତଃ ଶୁଦ୍ଧ୍ୟେତ୍ କାୟୋଽୟଂ ମଳିନଃ ସଦା ।
ଛିଦ୍ରିତୋ ନବଭି ଶ୍ଛିଦ୍ରୈଃ ସ୍ରବତ୍ୟେବ ଦିବାନିଶମ୍ ॥
ଉତ୍ସାହ-ମେଧା-ସୌଭାଗ୍ୟ-ରୂପସମ୍ପତ୍ପ୍ରବର୍ତ୍ତିକମ୍ ।
ମନଃପ୍ରସନ୍ନତାହେତୁ ପ୍ରାତଃସ୍ନାନଂ ପ୍ରଶସ୍ୟତେ ॥
ପ୍ରସ୍ୱେଦଲାଳାଦ୍ୟାକ୍ଲିନ୍ନୋ ନିଦ୍ରାଧୀନୋ ଯତୋ ନରଃ ।
ପ୍ରାତଃସ୍ନାନାତ୍ତତୋଽର୍ହଃ ସ୍ୟାନ୍ମନ୍ତ୍ରସ୍ତୋତ୍ରଜପାଦିଷୁ ॥
ପ୍ରାତଃ ପ୍ରାତସ୍ତୁ ଯତ୍ ସ୍ନାନଂ ସଂଜାତେ ଚାରୁଣୋଦୟେ ।
ପ୍ରାଜାପତ୍ୟସମଂ ପ୍ରାହୁଃ ତନ୍ମହାଘବଘାତକୃତ୍ ।
ପ୍ରାତଃସ୍ନାନଂ ହରେତ୍ ପାପମଲକ୍ଷ୍ମୀଂ ଗ୍ଲାନିମେବଚ ।
ଅଶୁଚିତ୍ୱଞ୍ଚ ଦୁଃସ୍ୱପ୍ନଂ ତୁଷ୍ଟିଂ ପୁଷ୍ଟିଂ ପ୍ରଯଚ୍ଛତି ॥
ନୋପସର୍ପନ୍ତି ବୈ ଦୁଷ୍ଟାଃପ୍ରାତଃସ୍ନାୟିଜନଂ କ୍ୱଚିତ୍ ।
ଦୃଷ୍ଟାଦୃଷ୍ଟଫଳଂ ଯସ୍ମାତ୍ ପ୍ରାତଃସ୍ନାନଂ ସମାଚରେତ୍ ॥

ସ୍କନ୍ଦ ପୁ: ସୃଷ୍ଟି ଖ: ପୁ: ୩୫।୮୯।୯୪; ଗରୁଡ଼ ପୁ: ପୂର୍ବଖଣ୍ଡ ୫୦ । ୩ । ୭ ପଦ୍ମ ପୁ: ସ୍ତ ୧୫ ।

* ଖାଦିରେଣ ରସେନାଥ ମୃତ୍ତିକୟା ବିଶୁଦ୍ଧୟା ।
ମାର୍ଜୟେଦ୍ଦନ୍ତମୂଳଞ୍ଚ ଯାବତ୍ତୁ କଲ୍ମଷମାହରେତ୍—ଘେରଣ୍ଡ ସଂହିତା ।
ଖାଦିରରସ (ଖଇର) ଓ ବିଶୁଦ୍ଧ ମୃତ୍ତିକାଦ୍ୱାରା ଯେ ପର୍ଯ୍ୟନ୍ତ ସମସ୍ତମଳ ନିର୍ଗତ ନ ହୋଇଛି ସେ ପର୍ଯ୍ୟନ୍ତ ଦନ୍ତମୂଳ ମାର୍ଜନ କରିବ ।

ଅହୋରାତ୍ର ନବଚ୍ଛିଦ୍ରଦ୍ୱାର ମଳସ୍ରାବୀ ଓ ମଳସମ୍ପନ୍ନ ଶରୀର ପ୍ରାତଃସ୍ନାନରେ ଶୁଦ୍ଧ ହୁଏ । * ପ୍ରାତଃସ୍ନାନ ମାନବମାନଙ୍କର ଉତ୍ସାହ, ମେଧା, ସୌଭାଗ୍ୟ, ରୂପ, ସମ୍ପଦ ଏବଂ ମନର ପ୍ରସନ୍ନତାର ହେତୁ । ଏଥିନିମନ୍ତେ ମହାତ୍ମାମାନେ ପ୍ରାତଃସ୍ନାନର ପ୍ରଶଂସା କରିଅଛନ୍ତି । ମାନବ ନିଦ୍ରାବଶ ହୋଇ ସ୍ୱେଦ, ଲାଳପ୍ରଭୃତି କ୍ଲେଦଦ୍ୱାରା ପୂର୍ଣ୍ଣ ହୋଇଥାଏ । ପ୍ରାତସ୍ନାନ କଲେ ମନ୍ତ୍ର, ସ୍ତୋତ୍ର ଓ ଜପାଦି ବିଷୟରେ ସେ ଅଧିକାରୀ ହୁଏ । ଅରୁଣୋଦୟ ସମୟରେ ସ୍ନାନକାର୍ଯ୍ୟ ପ୍ରାଜାପତ୍ୟବ୍ରତ ସହିତ ସମାନ ଏବଂ ଏହି ସ୍ନାନଦ୍ୱାରା ତାହାର ମହାପାପ ନଷ୍ଟ ହୁଏ । ପ୍ରାତଃସ୍ନାନ ମାନବର ପାପ, ଅଲକ୍ଷ୍ମୀ ଗ୍ଲାନି, ଅପବିତ୍ରତା ଏବଂ ଦୁଃସ୍ୱପ୍ନଦୋଷ ବିନଷ୍ଟ କରେ । ପ୍ରାତଃସ୍ନାନ ତୁଷ୍ଟି ଓ ପୁଷ୍ଟି ପ୍ରଦ । ପ୍ରାତଃସ୍ନାୟୀ ବ୍ୟକ୍ତିକୁ କୌଣସି ସମୟରେ ଦୋଷସମୂହ ଆକ୍ରମଣ କରି ପାରନ୍ତି ନାହିଁ । ପ୍ରାତଃସ୍ନାନଦ୍ୱାରା ଦୃଷ୍ଟ ଓ ଅଦୃଷ୍ଟ ଉଭୟଫଳ ପ୍ରାପ୍ତ ହୁଏ । ଅତଏବ ମନୁଷ୍ୟ ଅବଶ୍ୟ ପ୍ରାତଃସ୍ନାନ କରିବେ । ଏହିପରି ପ୍ରାତଃସ୍ନାନର ବିଧି ଓ ମାହାତ୍ମ୍ୟ ପୁରାଣ ଓ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି । ରୋଗୀ ଓ ଅସୁସ୍ଥ ବ୍ୟକ୍ତିଙ୍କ ପକ୍ଷରେ ସ୍ନାନବିଧାନ ଏହିପରି ।

**ଅଶକ୍ତାବଶିରସ୍କନ୍ତୁ ସ୍ନାନମସ୍ୟ ବିଧୀୟତେ ।**
**ଆର୍ଦ୍ରେଣ ବାସସା ବାପି ମାର୍ଜ୍ଜନଂ କାୟିକଂ ସ୍ମୃତମ୍ ॥** ଗରୁଡ଼ ପୁ: ପୂ: ୫୦ । ୮

ଯେଉଁମାନେ ରୋଗାଦି କାରଣରୁ ସ୍ନାନ କରିବା ନିମନ୍ତେ ଅସମର୍ଥ, ସେମାନଙ୍କ ପକ୍ଷରେ ଅଶିରସ୍କ ସ୍ନାନ ବିଧେୟ । ଆର୍ଦ୍ରବସ୍ତ୍ରଦ୍ୱାରା ଶରୀରମାର୍ଜନ କଲେ ମଧ୍ୟ ସେମାନଙ୍କର ସ୍ନାନକାର୍ଯ୍ୟ ସମ୍ପନ୍ନ ହୁଏ । ଏହାର ନାମ କାୟିକସ୍ନାନ ।

## ୦—ଗୋମୟ ପବିତ୍ରର ମାହାତ୍ମ୍ୟ ।

ଗୋମୟ ମାର୍ଜନ କରି ସ୍ନାନକରିବା ଓ ବସ୍ତ୍ରଚଗରୀର ପଞ୍ଚ ମୂତ୍ରପାନ * କରିବାଦ୍ୱାରା ସ୍ଥୂଳଶରୀରର ବାହ୍ୟ ଓ ଆଭ୍ୟନ୍ତର ଶୁଦ୍ଧ ହୁଏ । ତଦ୍ଦ୍ୱାରା ଶରୀରର କେତେ ପ୍ରକାର କୀଟାଣୁ ନଷ୍ଟ

---

* ସ୍ଥାନାଦ୍ ବୀଜାଦୁପଷ୍ଟମ୍ଭାନ୍ନିଃସ୍ୟନ୍ଦାନ ଧନାଦପି ।
କାୟମାଧେୟ ଶୌଚତ୍ୱାତ୍ ପଣ୍ଡିତା ହ୍ୟଶୁଚିଂ ବିଦୁଃ ॥ ବୃହଦାରଣ୍ୟକ ଉ:—

ଅର୍ଥାତ୍ ପଣ୍ଡିତମାନେ ବକ୍ଷ୍ୟମାଣ କାରଣରୁ ଅଶୁଚି କରନ୍ତି ଶରୀରର ଉତ୍ପତ୍ତିସ୍ଥାନ ଜନନୀ ଅତି କଦର୍ଯ୍ୟ, ତା'ପରେ ବୀଜ ବା ଶୁକ୍ର ଓ ଶୋଣିତ, ଉପଷ୍ଟମ୍ଭ ବା ଧାରକ ପଦାର୍ଥ, ଅସ୍ଥି ପ୍ରଭୃତି ମଧ୍ୟ ଅପବିତ୍ର; ଶରୀରର ନିଃସ୍ୟନ୍ଦ ବା ମଳମୂତ୍ର ଅତି ଅପବିତ୍ର ଓ ଶେଷରେ ନିଧନ ବା ମୃତ୍ୟୁର କାରଣ ଏହି ଦେହ ।

* ଶରୀର ପବିତ୍ର କରିବାସକାଶେ ଗୋମୟ ଓ ଗୋମୂତ୍ର ଗ୍ରହଣ—ବସ୍ତ୍ରଚରୀ ବା ମାଈ ବାଛୁରୀର ଗୋମୟ ଶୁଦ୍ଧ ସ୍ଥାନରୁ ବା ଭୂମିରେ ପତିତ ହେବା ପୂର୍ବରୁ ଗ୍ରହଣ କରିବ ଓ ମୂତ୍ରର ମଧ୍ୟ ଆଦ୍ୟ ଓ

ହୁଅନ୍ତି । ଆହୁରି ମଧ୍ୟ କୌଣସି ଚର୍ମରୋଗ ଆକ୍ରମଣ କରିପାରେ ନାହିଁ । * ତଦ୍ଦ୍ୱାରା ଶରୀରର ସକଳ ଦୋଷ ମଧ୍ୟ ନଷ୍ଟ ହୁଏ । ଏହିହେତୁରୁ ଗୋମୟ ଓ ଗୋମୂତ୍ରଗ୍ରହଣ ମହିମା-ଧର୍ମସମାଜରେ ଶୌଚକାର୍ଯ୍ୟରେ ପ୍ରଧାନ ଉପାଦାନରୂପରେ ଗୃହୀତ ହୋଇଅଛି । ଏବିଷୟରେ ବଶିଷ୍ଠ ସୌଦାସ ନୃପଙ୍କୁ ଯାହା ବୁଝାଇଥିଲେ, ସେ କଥା ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଅଛନ୍ତି ।

**ଗବାଂ ମୂତ୍ରପୁରୀଷସ୍ୟ ନୋଦ୍ୱିଜେତ କଥଂଚନ ।**
**ନ ଚୈଷାଂ ମାଂସମଶ୍ନୀୟାତ୍ ଗବାଂ ପୁଷ୍ଟିଂ ତଥାପ୍ନୁୟାତ୍ ॥**

ମହା: ଶା: ଅନୁ: ୭୮।୧୭ ।

ଗୋମୂତ୍ର ଓ ଗୋମୟ ବିଷୟରେ କୌଣସି ପ୍ରକାର ସନ୍ଦେହ ନାହିଁ, କଦାପି ଗୋମାଂସ ଭକ୍ଷଣ କରିବାକୁ ଆଶା କରିବ ନାହିଁ; କେବଳ ଗୋମୂତ୍ରପାନଦ୍ୱାରା ଶରୀର ପୁଷ୍ଟି-ପ୍ରାପ୍ତ ହେବ ।

**"ଗୋମୟେନ ସଦା ସ୍ନାୟାତ୍"**—ମହା: ଶା: ୩୮ ।

ସଦା ଗୋମୟ ମିଶ୍ରିତ ଜଳରେ ସ୍ନାନ କରିବ । ମହାଭାରତରେ ଏପରି ବର୍ଣ୍ଣନା ଅଛି ଯେ, ଗୋମାତାମାନେ ତପସ୍ୟାଦ୍ୱାରା ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି କହିଥିଲେ—

**ଅସ୍ମତ୍ ପୁରୀଷସ୍ନାନେନ ଜନଃ ପୂୟେତ ସର୍ବଦା ।**
**ଶକୃତା ଚ ପବିତ୍ରାର୍ଥଂ କୁର୍ବୀରନ୍ ଦେବମାନୁଷାଃ ॥**

ମହା: ଅନୁ: ୭୯।୩ ।

ଗାଈମାନେ ବ୍ରହ୍ମାଙ୍କୁ କହିଲେ ଲୋକମାନେ ଆମ୍ଭର ଗୋମୟଦ୍ୱାରା ସ୍ନାନ କଲେ ସଦା ପବିତ୍ର ହେବେ । ଦେବତା ଓ ମନୁଷ୍ୟମାନେ ଆମ୍ଭର ଗୋମୟଦ୍ୱାରା ସକଳପଦାର୍ଥ ପବିତ୍ର କରି ପାରିବେ ।

---

ପ୍ରାନ୍ତଧାର ତ୍ୟାଗ କରି ମଧ୍ୟଧାର ବିଶୁଦ୍ଧ ପାତ୍ରରେ ଗ୍ରହଣ କରି ପବିତ୍ର ସ୍ଥାନରେ ପୂର୍ବୋକ୍ତ ନିୟମାନୁସାରେ ପ୍ରଭୁଙ୍କ ନାମ ସ୍ମରଣ କରି ପବିତ୍ର ହୃଦୟରେ ପାନ କରିବ । ଏହା ଗୃହସ୍ଥ-ପକ୍ଷରେ ପ୍ରତିଦିନ କର୍ତ୍ତବ୍ୟ । ଉକ୍ତ ବିଧିଭିନ୍ନ ବ୍ୟତୀତ ଅନ୍ୟ କୌଣସି ଗାଈଠାରୁ ମଳମୂତ୍ର ଗ୍ରହଣ କରିବା ନିଷିଦ୍ଧ । କାରଣ ତାହା ପବିତ୍ର କରିବା ଉପଯୋଗୀ ନୁହେଁ ।

* ଗୋମୟ ଓ ଗୋମୂତ୍ରର ବିଶେଷ ଗୁଣ କଥନ—

ସର୍ବେଷ୍ୱପିଚ ମୂତ୍ରେଷୁ ଗୋମୂତ୍ରଂ ଗୁଣତୋଽଧିକମ୍ ।
ଅତୋଽବିଶେଷାତ୍ କଥନେ ମୂତ୍ରଂ ଗୋମୂତ୍ରମୁଚ୍ୟତେ ॥
ଲଘ୍ୱାଗ୍ନି ଦୀପନଂ ମେଧ୍ୟଂ ପିତ୍ତକୃତ୍ କଫବାତହୃତ୍ ।
ଶୂଳଗୁଳ୍ମୋଦରାନାହକଣ୍ଡ୍ୱକ୍ଷି-ମୁଖରୋଗଜିତ୍
କିଲାମଗଦବାତାମବାସ୍ତିରୁକ୍ କୁଷ୍ଠନାଶନମ୍
କାସଶ୍ୱାସାପହଂ ଶୋଥ-କମଲାପାଣ୍ଡୁରୋଗହୃତ୍ ॥ ଆୟୁର୍ବେଦସଂଗ୍ରହେ

ତାଭ୍ୟୋ ବରଂ ଦଦୌ ବ୍ରହ୍ମା ତପସୋଽନ୍ତେ ସ୍ୱୟଂ ପ୍ରଭୁଃ ।
ଏବଂ ଭବତ୍ୱିତି ପ୍ରଭୁର୍ଲୋକାଂସ୍ତାରୟତେତି ଚ ।।

ମହାଭା: ଅନୁ: ୭୯ । ୫ ।

ଗୋଟଣ ଏପରି କାମନା-ତପସ୍ୟା ପୂର୍ଣ୍ଣ କରିବାପରେ ସର୍ବଶକ୍ତିମାନ୍ ବ୍ରହ୍ମା ସ୍ୱୟଂ ଉଭା ହୋଇ କହିଲେ ଯେ, ତାହାହିଁ ହେବ ଓ ଗୋଗଣ ଲୋକ ସମସ୍ତଙ୍କୁ ଉଦ୍ଧାର କରିବେ । ଏହିହେତୁରୁ ବ୍ୟାସ ମଧ୍ୟ କହିଛନ୍ତି—

ଗାବଃ ପ୍ରତିଷ୍ଠା ଭୂତାନାଂ ତଥା ଗାବଃ ପରାୟଣମ୍ ।
ଗାବଃ ପୁଣ୍ୟାଃ ପବିତ୍ରାଶ୍ଚ ଗୋଧନଂ ପାବନଂ ତଥା ॥

ମହାଭା: ଅନୁ: ୮୧ । ୧୨ ।

ବ୍ୟାସ କହିଲେ, ଗୋ-ପଦାର୍ଥ ପ୍ରାଣୀମାନଙ୍କର ପ୍ରଧାନ ଅବଲମ୍ବନ, ପୁଣ୍ୟ, ପବିତ୍ର ଓ ପରମପାବନ ଅଟେ ।

ଏ ସମ୍ବନ୍ଧରେ ଯୁଧିଷ୍ଠିର ଭୀଷ୍ମଙ୍କୁ ପ୍ରଶ୍ନ କଲେ—ମୁଁ ଶୁଣିପାରୁଛି, ଗୋମୟ ଓ ଗୋମୂତ୍ର ଶ୍ରୀଯୁକ୍ତ ଅଟେ, ଏହାର କାରଣ କ'ଣ ? ଭୀଷ୍ମ କହିଲେ—ମୁଁ ଏହାର ପୁରାତନ ଇତିହାସ କହୁଅଛି ଶୁଣ—ପୁରାକାଳରେ ଲକ୍ଷ୍ମୀଦେବୀ ମନୋହର ବେଶ ଧାରଣ କରି ଗୋଗୋଷ୍ଠରେ ପ୍ରବେଶ କଲେ । ଗୋବୃନ୍ଦ ଲକ୍ଷ୍ମୀଙ୍କର ମନୋହର ରୂପରେ ବିସ୍ମିତ ହୋଇ ପଚାରିଲେ—ଆପଣ କିଏ ? କାହିଁକି ବା ଏଠାକୁ ଆସିଅଛନ୍ତି ? ଲକ୍ଷ୍ମୀଦେବୀ କହିଲେ—ମୁଁ ତୁମ୍ଭର ଶରୀରର କୌଣସି ସ୍ଥାନରେ ରହିବାନିମନ୍ତେ ଆସିଅଛି । କିନ୍ତୁ ଗାଈମାନେ ସେକଥା ଶୁଣି ଲକ୍ଷ୍ମୀଙ୍କୁ ନିଜ ଶରୀରରେ ରହିବାକୁ ଅନୁମତି ନ ଦେଇ ସେଠାରୁ ଚାଲି ଯିବାକୁ କହିଲେ । ଲକ୍ଷ୍ମୀଦେବୀ ନିରସ୍ତା ହୋଇ ଗୋବୃନ୍ଦଙ୍କଠାରେ ଶରଣାପନ୍ନ ହେଲେ ଓ ନିଜକୁ ପରିତ୍ୟାଗ ନ କରିବାପାଇଁ ବିନତି କଲେ—ତ୍ରିଭୁବନରେ ଆପଣଙ୍କ ଭିନ୍ନ ମୋର ଆଉ ଉପଯୁକ୍ତ ସ୍ଥାନ ନାହିଁ, ଅତଏବ ମତେ ତ୍ୟାଗ କରନ୍ତୁ ନାହିଁ । ଏପରି ବହୁ ଅନୁନୟ କରି କହିଲେ—

ମାନନାମହମିଚ୍ଛାମି ଭବତ୍ୟଃ ସତତଂ ଶିବାଃ ।
ଅପ୍ୟେକାଙ୍ଗେଽପ୍ୟଧୋ ବସ୍ତୁମିଚ୍ଛାମି ଚ ସୁକୁତ୍ସିତେ ।।
ନ ବୋଽସ୍ତି କୁତ୍ସିତଂ କିଞ୍ଚିଦଙ୍ଗେଷ୍ୱାଲକ୍ଷ୍ୟତେଽନଘାଃ ।
ପୁଣ୍ୟାଃ ପବିତ୍ରାଃ ସୁଭଗା ମମାଦେଶଂ ପ୍ରଯଚ୍ଛତ ।।
ବସେୟଂ ଯତ୍ର ବୋ ଦେହେ ତନ୍ମେ ବ୍ୟାଖ୍ୟାତୁମର୍ହଥ ।
ଏବମୁକ୍ତାସ୍ତତୋ ଗାବଃ ଶୁଭାଃ କରୁଣବତ୍ସଲାଃ ।।

ସଂମନ୍ତ୍ର୍ୟ ସହିତାଃ ସର୍ବାଃ ଶ୍ରିୟମୂଚୁର୍ନରାଧିପ !
ଅବଶ୍ୟଂ ମାନନା କାର୍ଯ୍ୟା ତବାସ୍ମାଭିର୍ଯଶସ୍ୱିନି !
ଶକୃନ୍ମୂତ୍ରେ ନିବସ ତ୍ୱଂ ପୁଣ୍ୟମେତଦ୍ଧି ନଃ ଶୁଭେ ।।

ଶ୍ରୀରୁବାଚ—

ଦିଷ୍ଟ୍ୟା ପ୍ରସାଦୋ ଯୁଷ୍ମାଭିଃ କୃତୋ ମେଽନୁଗ୍ରହାତ୍ମକଃ ।
ଏବଂ ଭବତୁ ଭଦ୍ରଂ ବଃ ପୂଜିତାଽସ୍ମି ସୁଖପ୍ରଦାଃ ।।
ଏବଂ କୃତ୍ୱା ତୁ ସମୟଂ ଶ୍ରୀର୍ଗୋଭିଃ ସହ ଭାରତ !
ପଶ୍ୟନ୍ତୀନାଂ ତତସ୍ତାସାଂ ତତ୍ରୈବାନ୍ତରଧୀୟତ ।।

ମହାଭା: ଅନୁ: ୮୨ । ୨୧-୨୬ ।।

ଲକ୍ଷ୍ମୀ କହୁଅଛନ୍ତି—ହେ କଲ୍ୟାଣୀଗଣ । ମୁଁ ଆପଣମାନଙ୍କ ନିକଟରେ ସମ୍ମାନ ସହିତ ରହିବାକୁ ଇଚ୍ଛା କରୁଛି । ତୁମ୍ଭର ଅଧୋଦେଶର ଅତ୍ୟନ୍ତ ନିକୃଷ୍ଟ ଏକ ଅଙ୍ଗରେ ବାସ କରିବାକୁ ଇଚ୍ଛା କରୁଅଛି । ହେ ନିଷ୍ପାପ ଗୋବୃନ୍ଦ ! ତୁମ୍ଭମାନଙ୍କ ଶରୀରର କୌଣସି ସ୍ଥାନ କୁତ୍ସିତ ନୁହେଁ; ତୁମ୍ଭେମାନେ ପବିତ୍ର ଓ ସୁଭଗା ଅଟ, ଅତଏବ ଆଜ୍ଞା ହେଉ ତୁମ୍ଭର କେଉଁ ଅଙ୍ଗରେ ବାସ କରିବି । ହେ ରାଜନ୍ ! କଲ୍ୟାଣଦାୟୀ ଗୋବୃନ୍ଦ ଲକ୍ଷ୍ମୀଙ୍କର ଏହି ବଚନ ଶୁଣି ଏକତ୍ର ହୋଇ କହିଲେ—ହେ କଲ୍ୟାଣଦାୟିନି, ଯଶସ୍ୱିନି ! ଆପଣ ଆମ୍ଭମାନଙ୍କୁ ସମ୍ମାନିତ କରିଅଛନ୍ତି । ଆପଣ ଆମ୍ଭମାନଙ୍କର ଗୋମୟ ଓ ମୂତ୍ରରେ ନିବାସ କରନ୍ତୁ, ଆମ୍ଭମାନଙ୍କର ଏହା ପବିତ୍ର ଅଟେ । ଲକ୍ଷ୍ମୀ କହିଲେ—ସୌଭାଗ୍ୟହେତୁରୁ ମୋ ପ୍ରତି ଆପଣମାନେ ପ୍ରସନ୍ନ ହୋଇ ଦୟା କରିଅଛନ୍ତି । ଆପଣମାନଙ୍କର ଆଦେଶ ନିଶ୍ଚୟ ପାଳିତ ହେବ । ହେ ସୁଖପ୍ରଦ ଗୋବୃନ୍ଦ । ଆପଣମାନଙ୍କର ମଙ୍ଗଳ ହେଉ, ମୁଁ ପୂଜିତା ହେଲି । ହେ ଭାରତ ! ଶ୍ରୀ ଦେବୀ ଏହିପରି ଗୋବୃନ୍ଦଙ୍କ ସମୀପରେ ପ୍ରତିଜ୍ଞାବଦ୍ଧା ହୋଇ ସେମାନଙ୍କ ସମ୍ମୁଖରୁ ଅନ୍ତର୍ହିତା ହୋଇଗଲେ ।

ଗୋମୟର ପାବିତ୍ର୍ୟ ବିଷୟରେ ଉପନିଷଦ୍ ଉକ୍ତି ମଧ୍ୟ ବିରଳ ନୁହେଁ—

ଗୁଣତ୍ରୟମିଦଂ ଧେନୁର୍ବିଦ୍ୟାଽଭୂଦ୍ ଗୋମୟଂ ଶୁଭମ୍ ।
ମୂତ୍ରଂ ଚୋପନିଷତ୍ ପ୍ରୋକ୍ତଂ କୁର୍ଯ୍ୟାଦ୍ ଭସ୍ମ ତତଃ ପରମ୍ ।।

ବୃହଜ୍ଜାବାଲୋପନିଷଦ ୩।୨ ।।

କାଳାଗ୍ନି ରୁଦ୍ରଦେବ ଭୁସଣ୍ଡିଙ୍କୁ କହୁଅଛନ୍ତି—ଏହି ଗୁଣତ୍ରୟ ହିଁ ଧେନୁ ଏବଂ ଶୁଭ୍ର ଗୋମୟ କେବଳ ବିଦ୍ୟା । ଗୋମୂତ୍ର ଉପନିଷଦ୍ ନାମରେ ଉକ୍ତ । ଏହା ଅବଗତ ହୋଇ ଗୋମୟକୁ ଭସ୍ମ କରିବ ।

ଗୋମୂତ୍ରଗୋମୟାହାରଣୋ ନିତ୍ୟଂ × × × ।
ଯୋଗମାର୍ଗେ ମୋକ୍ଷମେବ ପ୍ରାର୍ଥୟନ୍ତେ ।

ଭିକ୍ଷୁକୋପନିଷତ୍ ।।

ସନ୍ତମାନେ ଗୋମୂତ୍ର ଓ ଗୋମୟ ଆହାର କରନ୍ତି ଏବଂ ଯୋଗମାର୍ଗରେ ଅବସ୍ଥାନ କରି କୈବଲ୍ୟ ପ୍ରାର୍ଥନା କରନ୍ତି । ଏତତ୍ପର ଶୌଚନିୟମ ବିଷୟରେ ବ୍ୟାସଦେବ ପାତଞ୍ଜଳ ଦର୍ଶନରେ ଲେଖିଅଛନ୍ତି—

ତତ୍ର ଶୌଚଂ ମୃଜ୍ଜଲାଦିଜନିତଂ ମେଧ୍ୟାଭ୍ୟବହରଣାଦି ଚ ବାହ୍ୟମ୍ । ପା: ଦ: ୩୨ ସୂତ୍ର ।

ମୃତ୍ତିକା ଓ ଜଳାଦିଦ୍ୱାରା ମାର୍ଜ୍ଜନା ମେଧ୍ୟ ବା ପବିତ୍ର ବସ୍ତୁ (ଗୋମୟ ଓ ଗୋମୂତ୍ର) ଆହାର କଲେ ବାହ୍ୟ ଶୌଚ ହୁଏ । ଏ ବିଷୟରେ ଉପନିଷଦ୍ ବାକ୍ୟ—

ସ୍ୱଦେହମଳନିର୍ମୋକ୍ଷୋ ମୃଜ୍ଜଲାଭ୍ୟାଂ ମହାମୁନେ ।
ଯତ୍ତଚ୍ଛୌଚଂ ଭବେଦ୍ ବାହ୍ୟଂ ମାନସଂ ମନନଂ ବିଦୁଃ ।।

ଜାବାଲ: ଉ: ୧।୬୦ ।

ହେ ମୁନିବର ! ମୃତ୍ତିକା ଓ ଜଳଦ୍ୱାରା ନିଜ ଦେହରୁ ମଳ ଦୂର କରିବାର ନାମ ବାହ୍ୟ ଶୌଚ ଏବଂ ମନ କେବଳ ମାନସ ଶୌଚ ବୋଲି କଥିତ ହୁଏ ।

ମନୋହି ଦ୍ୱିବିଧଂ ପ୍ରୋକ୍ତଂ ଶୁଦ୍ଧଞ୍ଚାଶୁଦ୍ଧମେବ ଚ ।
ଅଶୁଦ୍ଧଂ କାମସଂକୁଳଂ ଶୁଦ୍ଧଂ କାମବିବର୍ଜିତମ୍ ।। ବ୍ରହ୍ମବିନ୍ଦୁ ଉ: ୧ ।

ମନ ଦୁଇଭାଗରେ ବିଭକ୍ତ—ଶୁଦ୍ଧ ଓ ଅଶୁଦ୍ଧ । ଯେଉଁମନ କାମନାସଙ୍କୁଳ, ତାହା ଅଶୁଦ୍ଧ ଏବଂ କାମନାବର୍ଜିତ ମନ ଶୁଦ୍ଧ ଅଟେ ।

ଶୌଚଂ ତୁ ଦ୍ୱିବିଧଂ ଦେବି ବାହ୍ୟାଭ୍ୟନ୍ତରଭେଦତଃ ।
ବ୍ରହ୍ମଣ୍ୟାତ୍ମାର୍ପଣଂ ଯତ୍ତତ୍ ଶୌଚମାନ୍ତରକଂ ସ୍ମୃତମ୍ ।।

ମହାନି: ୮।୬୦ ।

ଦେବି ! ବାହ୍ୟ ଓ ଆଭ୍ୟନ୍ତର ଭେଦରେ ଶୌଚ ଦୁଇପ୍ରକାର—ବ୍ରହ୍ମଙ୍କଠାରେ ଆତ୍ମସମର୍ପଣ କଲେ ଆନ୍ତରିକଶୌଚ କୁହାଯାଏ ।

ଉପର୍ଯ୍ୟୁକ୍ତ ବାହ୍ୟ ଓ ଆଭ୍ୟନ୍ତରରୂପକ ଯେଉଁ ଶୌଚବିଧାନ କଥିତ ହେଲା, ତଦ୍ଦ୍ୱାରା ଶରୀର ଓ ମନର ମାଳିନ୍ୟ ଦୂର ହୋଇ ଶୁଦ୍ଧାବସ୍ଥା ଆସେ । ପବିତ୍ରତା କେବଳ ଏହି ଶୌଚ ନାମରେ ଅଭିହିତ । ଆତ୍ମଜ୍ଞାମାନେ ସର୍ବଦା ଉପର୍ଯ୍ୟୁକ୍ତ ନିୟମରେ ଶରୀର ନିର୍ମଳ ରଖି ଜ୍ଞାନଭକ୍ତିଯୋଗବିଷୟରେ ତତ୍ପର ହେବେ ।

"ଦେହୋ ଦେବାଳୟଃ ପ୍ରୋକ୍ତୋ ଜୀବୋ ଦେବଃ ସଦାଶିବଃ" ।
ଆତ୍ମାପୂଜା ୮-St

ଅର୍ଥାତ୍ ଏହି ଦେହ କେବଳ ଜୀବରୂପ ଆତ୍ମାର ମନ୍ଦିର ଓ ସେହି ମନ୍ଦିରରେ ମଙ୍ଗଳମୟ ପରମେଶ୍ୱର କେବଳ ଦେବତା । ସେହିହେତୁରୁ ଶରୀରରୂପୀ ମନ୍ଦିରକୁ ପ୍ରତିଦିନ ବ୍ରାହ୍ମମୁହୂର୍ତ୍ତ ପୂର୍ବରୁ ଉପର୍ଯ୍ୟୁକ୍ତ ବିଧାନ ଅନୁସାରେ ଧୌତ ଓ ମାର୍ଜିତ କରିବା ନିତାନ୍ତ ଆବଶ୍ୟକ । ସର୍ବଦା ପ୍ରଭୁଙ୍କ ନାମ ଭଜନ, ସ୍ମରଣ ଓ ସତ୍‌ଚିନ୍ତନଦ୍ୱାରା ଶରୀରର ଅଭ୍ୟନ୍ତର ଶୁଭ ବାସନାରେ ସୁବାସିତ ରହେ । ତଦ୍ଦ୍ୱାରା କେବଳ ଆତ୍ମାର ପୂଜା ପୂର୍ଣ୍ଣଭାବରେ ସମ୍ପନ୍ନ ହୁଏ । ଏହିପରି ବାହ୍ୟାଭ୍ୟନ୍ତର ଶୌଚ ପାଳନ କଲେ ସହଜରେ ଚିତ୍ତଶୁଦ୍ଧି ସମ୍ପନ୍ନ ହୁଏ, ତଦ୍ଦ୍ୱାରା କାମକ୍ରୋଧାଦି ଷଡ଼୍‌ରିପୁ ବର୍ଜିତ ହୁଅନ୍ତି । ଏହା କେବଳ ଗୁରୁଙ୍କ ଉପଦେଶ ଓ ଶ୍ରୁତିସ୍ମୃତିସମ୍ମତ ଏକମାତ୍ର ଉପାୟ । ଏ ବିଷୟରେ ଅନ୍ୟ ଧର୍ମଶାସ୍ତ୍ର ମଧ୍ୟ କହେ—

For, as many as are led by the Spirit of God, they are the sons of God (Rm. VIII. 14—Christian scripture)

କାରଣ, ଯେତେଲୋକ ପବିତ୍ରତାଦ୍ୱାରା ପରିଚାଳିତ ହୁଅନ୍ତି, ସେହିମାନେ ଈଶ୍ୱରଙ୍କ ସନ୍ତାନ । ପୁନରପି—

Learn purity ! Be worthy of good praise ! May the mind think of good thoughts, the words speak good, the words do good ! May all wicked thoughts hasten away, all wicked words be dismissed, all wicked words be burnt up—(Khorda XLIX5—Avesta)

ଅର୍ଥାତ୍ ପବିତ୍ରତା ଶିକ୍ଷାକର, ସତ୍‌ପ୍ରଶଂସାର ଯୋଗ୍ୟପାତ୍ର ହୁଅ, ମନ ଉତ୍ତମ ଚିନ୍ତା କରୁ, ବଚନ ମଙ୍ଗଳକାରୀ ହେଉ, ସକଳ ଦୁଷ୍ଟଚିନ୍ତା ଦୂରକୁ ଚାଲିଯାଉ, ଯାବତ ଦୁଷ୍ଟ ବଚନ ଅନ୍ତର୍ହିତ ହେଉ ଏବଂ ସକଳ ଦୁଷ୍ଟ ଶବ୍ଦ ଦଗ୍ଧ ହୋଇଯାଉ ।

୦—ସନ୍ତୋଷ ।

ଯେ କୌଣସି ଅବସ୍ଥାରେ ଅସୁଖୀ ନ ହେବା ବା ଅଶାନ୍ତ ଭୋଗ ନ କରିବାର ନାମ ସନ୍ତୋଷ । ମନୁଷ୍ୟ ପୂର୍ବାର୍ଜିତ କର୍ମଫଳ ଅନୁସାରେ ସୁଖ ବା ଦୁଃଖ ଭୋଗକରେ । ଏହାକୁ ଅତିକ୍ରମ କରିବା କାହାର ସାଧ୍ୟ ନାହିଁ । ଆପଣା ଅବସ୍ଥାରେ ସନ୍ତୁଷ୍ଟ ନ ରହିଲେ ଅସନ୍ତୋଷରୂପୀ ହୁତାଶନଦ୍ୱାରା ଦଗ୍ଧ ହେବା ସ୍ୱାଭାବିକ । ଏହିହେତୁରୁ ସ୍ୱୀୟ ବିଦ୍ଧିରେ ସନ୍ତୋଷ ଲାଭକରିବା ସତତ କର୍ତ୍ତବ୍ୟ । ମାୟାମୋହରେ ଜଡ଼ିତ ହୋଇ ମନୁଷ୍ୟ ସର୍ବଦା ଦୁଃଖର ସମ୍ମୁଖୀନ ହୁଏ । ଅତଏବ ମନୁଷ୍ୟ ସର୍ବଦା ସନ୍ତୁଷ୍ଟ ରହିଲେ ମୋହ ଆପେ ଆପେ ତିରୋହିତ ହୋଇଯାଏ ।

ଇହ ଜଗତରେ ରାଜାଠାରୁ ଭିକାରି ପର୍ଯ୍ୟନ୍ତ ସମସ୍ତ ଲୋକ ଆଶା-ପାଶରେ ଆବଦ୍ଧ । କେବଳ ସନ୍ତୁଷ୍ଟ ସାଧୁମହାତ୍ମାମାନେ ଆଶାକୁ ଜୟକରି ବିମୁକ୍ତ ଅବସ୍ଥାରେ ଶାନ୍ତି ଓ ସନ୍ତୋଷର ଜୀବନ୍ତ ପ୍ରତିମୂର୍ତ୍ତିସ୍ୱରୂପରେ ବିଦ୍ୟମାନ; କିନ୍ତୁ ମନୁଷ୍ୟ ବିପୁଳ ଭୋଗବିଳାସରେ ନିମଜ୍ଜିତ ରହି ମନରେ ଶାନ୍ତିର ମାତ୍ରାସୁଦ୍ଧା ଲାଭ କରି ପାରେ ନାହିଁ । କେବଳ କୌପୀନଧାରୀ ସାଧୁ ମହାତ୍ମାମାନେ ପ୍ରକୃତରେ ମହାରାଜପଦବାଚ୍ୟ । ବିଶେଷତଃ ସେମାନେ ମନ ଓ ଇନ୍ଦ୍ରିୟମାନଙ୍କର ରାଜା ଅର୍ଥାତ୍ ମନ ଓ ଇନ୍ଦ୍ରିୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରି ସାଧୁ ଓ ମହାରାଜ ବୋଲି ସମ୍ବୋଧିତ ହୁଅନ୍ତି ।

ଏହିହେତୁରୁ ସୁଖ ଓ ଦୁଃଖରେ ସମଜ୍ଞାନୀ ହୋଇ ସର୍ବଦା ସନ୍ତୁଷ୍ଟ ରହିବା ସତ୍ୟପରାୟଣ ବ୍ୟକ୍ତିର କର୍ତ୍ତବ୍ୟ ।

୦—ସୁଖ ଦୁଃଖରେ ସମଜ୍ଞାନୀ ହୋଇ ରହିବା—

ଶରୀରମେବାୟତନଂ ସୁଖସ୍ୟ ଦୁଃଖସ୍ୟ ଚାପ୍ୟାୟତନଂ ଶରୀରମ୍ ।
ଯଦ୍ୟଚ୍ଛରୀରେଣ କରୋତି କର୍ମ ତେନୈବ ଦେହୀ ସମୁପାଶ୍ନୁତେ ତତ୍ ॥

ମହା ଭା: ଶାନ୍ତି: ୧୭୪।୨୧

ସ୍ଥୂଳ ଓ ସୂକ୍ଷ୍ମଭେଦରେ ଦୁଇ ପ୍ରକାର ଶରୀର ସୁଖ ଓ ଦୁଃଖର ଆଶ୍ରୟ ହୁଏ; ଜୀବ ଶରୀରରେ ରହି ଯେପରି କର୍ମ କରିଥାଏ, ସେହି ଶରୀରଦ୍ୱାରା ସେହି ପ୍ରକାର ଫଳ ଭୋଗ କରେ ।

ସୁଖସ୍ୟାନନ୍ତରଂ ଦୁଃଖଂ ଦୁଃଖସ୍ୟାନନ୍ତରଂ ସୁଖମ୍ ।
ସୁଖଦୁଃଖେ ମନୁଷ୍ୟାଣାଂ ଚକ୍ରବତ୍ ପରିବର୍ତ୍ତତଃ ॥

ମହା ଭା: ଶାନ୍ତି: ୧୭୪।୧୯ ।

ସୁଖ ପରେ ଦୁଃଖ ଓ ଦୁଃଖ ପରେ ସୁଖ ଲାଗି ରହିଥାଏ; ମନୁଷ୍ୟ ସୁଖ ଓ ଦୁଃଖ-ରୂପ ଚକ୍ରରେ ସର୍ବଦା ଭ୍ରମୁଥାଏ ।

ସୁଖଂ ବା ଯଦି ବା ଦୁଃଖଂ ପ୍ରିୟଂ ବା ଯଦି ବାଽପ୍ରିୟମ୍ ।
ପ୍ରାପ୍ତଂ ପ୍ରାପ୍ତମୁପାସୀତ ହୃଦୟେନାପରାଜିତଃ ॥
ମହା ଭା: ଶାନ୍ତି ୨୫ । ୨୬ ।

ସୁଖ ହେଉ ବା ଦୁଃଖ ହେଉ, ପ୍ରିୟ ବା ଅପ୍ରିୟ ହେଉ, ଯାହା ଯେତେବେଳେ ଘଟିବ, ମନୁଷ୍ୟ ହୃଦୟରେ ସେସବୁ ସହ୍ୟ କରି ତାହାର ସେବା କରିବ ।

ସୁଖଞ୍ଚ ଦୁଃଖଞ୍ଚ ଭବାଭବୌ ଚ ଲାଭାଲାଭୌ ମରଣଂ ଜୀବିତଂ ଚ ।
ପର୍ଯ୍ୟାୟତଃ ସର୍ବମବାପ୍ନୁବନ୍ତି ତସ୍ମାଦ୍ଧୀରୋ ନୈବ ହୃଷ୍ୟେନ୍ନ-
ଶୋଚେତ୍ ॥ ମହା ଭା: ଶାନ୍ତି ୨୫।୩୧ ।

ମନୁଷ୍ୟ ସୁଖଦୁଃଖ, ଲାଭାଲାଭ, ମଙ୍ଗଳ ଓ ଅମଙ୍ଗଳ ଏବଂ ଜୀବନ ମରଣ ମଧ୍ୟ ପର୍ଯ୍ୟାୟକ୍ରମରେ ପ୍ରାପ୍ତ ହୁଏ; କିନ୍ତୁ ଧୀର ବ୍ୟକ୍ତି ଏ ବିଷୟରେ ହୃଷ୍ଟ ହୁଅନ୍ତି ନାହିଁ ଏବଂ ଶୋକ ମଧ୍ୟ କରନ୍ତି ନାହିଁ । ଏ ବିଷୟରେ ଭଗବାନଙ୍କ ଉପଦେଶ—

ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ ।
ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ ॥
ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ ।
ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ ॥ ଗୀତା ୨।୧୪-୧୫ ।

ହେ କୁନ୍ତୀନନ୍ଦନ ! ଶବ୍ଦସ୍ପର୍ଶ-ଆଦି ବିଷୟ ସହିତ ଇନ୍ଦ୍ରିୟମାନଙ୍କର ସମ୍ବନ୍ଧ ହେଲେ ଶୀତ, ଉଷ୍ଣ ଓ ସୁଖ-ଦୁଃଖାଦି ଜାତ ହୁଏ; କିନ୍ତୁ ହେ ଭାରତ ! ସେହି ସମ୍ବନ୍ଧର ସମୟ ଅନୁସାରେ ଉତ୍ପତ୍ତି ଓ ବିନାଶ ହୁଏ । ତେଣୁ ସେ ସମସ୍ତ ଅନିତ୍ୟ, ସେମାନଙ୍କୁ ସହ୍ୟ କର । ହେ ପୁରୁଷଶ୍ରେଷ୍ଠ ! ଏହି ଇନ୍ଦ୍ରିୟ ଓ ବିଷୟର ସମ୍ପର୍କ ଯାହାଙ୍କୁ ବ୍ୟଥିତ କରି ପାରେ ନାହିଁ ଏବଂ ସୁଖଦୁଃଖରେ ଯେଉଁମାନଙ୍କର ସମାନଭାବ, ସେହି ଧୀରପୁରୁଷ ମୋକ୍ଷ-ଲାଭର ଯୋଗ୍ୟ ।

ଯଦୃଚ୍ଛାଲାଭତୋ ନିତ୍ୟଂ ପ୍ରୀତିର୍ଯା ଜାୟତେ ନୃଣାମ୍ ।
ତତ୍ ସନ୍ତୋଷଂ ବିଦୁଃ ପ୍ରାଜ୍ଞାଃ ପରିଜ୍ଞାନୈକତତ୍ପରାଃ ॥
ବ୍ରହ୍ମାଦିଲୋକପର୍ଯ୍ୟନ୍ତାଦ୍ ବିରକ୍ତ୍ୟା ଯଲ୍ଲଭେତ୍ ପ୍ରିୟମ୍ ।
ସର୍ବତ୍ର ବିଗତସ୍ନେହଃ ସନ୍ତୋଷଂ ପରମଂ ବିଦୁଃ ।

× × × ॥ ଜାବାଳ ଦ: ଉ: ୨।୫।୭ ।

ଦୈବାତ୍ ଯତ୍ନ ନ କରି କୌଣସି ପଦାର୍ଥ ପାଇ ସେଥିରେ ମାନବର ଯେଉଁ ପ୍ରୀତି ଜାତ ହୁଏ, ଜ୍ଞାନାଭ୍ୟାସଶୀଳ ପଣ୍ଡିତମାନେ ତାହାକୁ ସନ୍ତୋଷ ବୋଲି କହନ୍ତି । ସକଳ ବିଷୟରେ ନିଷ୍ପୃହ ବ୍ୟକ୍ତି ବ୍ରହ୍ମାଦିଲୋକ ପ୍ରାପ୍ତ ହୋଇ ମଧ୍ୟ ସେଥିପ୍ରତି ବିରକ୍ତ ହୋଇ ସାଧାରଣ ବସ୍ତୁରେ ଯେଉଁ ପ୍ରୀତି ଅନୁଭବ କରନ୍ତି, ସେପରି ବ୍ୟକ୍ତିଙ୍କୁ ପରମ ସନ୍ତୁଷ୍ଟ ବୋଲି ପଣ୍ଡିତମାନେ କହନ୍ତି ।

**ସନ୍ତୋଷୋ ବୈ ସ୍ୱର୍ଗତମଃ ସନ୍ତୋଷଃ ପରମଂ ସୁଖମ୍ ।**
**ତୁଷ୍ଟେର୍ନ କିଞ୍ଚିତ୍ ପରତଃ ସା ସମ୍ୟକ୍ ପ୍ରତିତିଷ୍ଠତି ।**

ମହା ଭା: ଶାନ୍ତି: ୨୧।୨ ।

ସନ୍ତୋଷ କେବଳ ଉତ୍କୃଷ୍ଟ ସ୍ୱର୍ଗ ଓ ପରମସୁଖ; ସନ୍ତୋଷ ଅପେକ୍ଷା ଶ୍ରେଷ୍ଠ ପଦାର୍ଥ ଆଉ କିଛି ନାହିଁ, ଯେହି ସନ୍ତୋଷହିଁ ଚିର ପ୍ରତିଷ୍ଠିତ ରହେ ।

୦—ତପଃ ।

ବୈଦିକ ବିଧାନ ଅନୁସାରେ କୃଚ୍ଛ୍ର ଚାନ୍ଦ୍ରାୟଣ ଆଦି କର୍ମଦ୍ୱାରା ଦେହକୁ ଶୁଷ୍କ କରିବାର ନାମ ତପସ୍ୟା; କିନ୍ତୁ ସତ୍ୟାଶ୍ରୁତିଧର୍ମମତ ଅନୁସାରେ ଚିତ୍ତର ଏକାଗ୍ରତା ଓ ଇନ୍ଦ୍ରିୟସଂଯମଦ୍ୱାରା କାୟମନୋବାକ୍ୟରେ ପାପବର୍ଜନ ଏବଂ ଐଶ୍ୱର୍ଯ୍ୟାଦି ସଂକଳ୍ପ ତ୍ୟାଗ କରି ଏକ ପ୍ରଭୁ ପରଂବ୍ରହ୍ମଙ୍କୁ ସତ୍ୟସ୍ୱରୂପରେ ସତତ ଆଶ୍ରୟ କରିବାର ନାମ ତପସ୍ୟା ।

**କୋ ବା ମୋକ୍ଷଃ କଥଂ ତେନ ସଂସାରଂ ପ୍ରତିପନ୍ନବାନ୍ ।**
**ଇତ୍ୟାଲୋକନମର୍ଥଜ୍ଞାସ୍ତପଃ ଶଂସନ୍ତି ପଣ୍ଡିତାଃ ।।** ଜାବାଲ ଦ: ଉ: ୨।୪୮ ।

ମୋକ୍ଷ କ'ଣ ଏବଂ ମୋକ୍ଷବିଷୟକ ଚିନ୍ତାଦ୍ୱାରା ସାଂସାରିକ ଜ୍ଞାନନିବୃତ୍ତି କିପରି ହୁଏ, ଏହି ସବୁ ଆଲୋଚନାକୁ ବିଜ୍ଞ ପଣ୍ଡିତମାନେ ତପସ୍ୟା କହିଥାନ୍ତି ।

**ତପ ଇତି ଚ ? ବ୍ରହ୍ମ ସତ୍ୟଂ ଜଗନ୍ମିଥ୍ୟେତ୍ୟପରୋକ୍ଷଜ୍ଞାନାଗ୍ନିନା ବ୍ରହ୍ମାଦ୍ୟୈଶ୍ୱର୍ଯ୍ୟାଶାସିଦ୍ଧସଂକଳ୍ପବୀଜସନ୍ତାପଂ ତପଃ ।।**

ନିରାଲମ୍ବୋପନିଷତ୍—୨୫ ।

ତପସ୍ୟାର ସ୍ୱରୂପ କ'ଣ ? ବ୍ରହ୍ମ ସତ୍ୟ ଓ ଜଗତ୍ ମିଥ୍ୟା—ଏହିପରି ସ୍ୱାନୁଭବପ୍ରସୂତ ବ୍ରହ୍ମାଦିଙ୍କ ଅଣିମାଦି ଐଶ୍ୱର୍ଯ୍ୟଲାଭ ଆଶା ସିଦ୍ଧି କରିବି—ଏହିପରି ସଂକଳ୍ପରୂପ ବୀଜରୁ ଜ୍ଞାନରୂପୀ ଅଗ୍ନିଦ୍ୱାରା ଜାତ ଯେଉଁ କର୍ମ, ତାହା ସମ୍ପୂର୍ଣ୍ଣରୂପେ ଦଗ୍ଧ କରିବାର ନାମ ତପଃ ।

ଆହୁରି ମଧ୍ୟ—

**ଯେ ପାପାନି ନ କୁର୍ବନ୍ତି ମନୋବାକ୍‌କର୍ମବୁଦ୍ଧିଭିଃ ।**
**ତେ ତପନ୍ତି ମହାତ୍ମାନୋ ନ ଶରୀରସ୍ୟ ଶୋଷଣମ୍ ॥**

ମହା ଭା: ବନ: ୧୯୯।୪୮ ।

ଯେଉଁମାନେ ମନ, ବାକ୍, କର୍ମ ଓ ବୁଦ୍ଧିଦ୍ୱାରା ପାପାଚରଣ କରନ୍ତି ନାହିଁ, ସେହି ମହାତ୍ମାମାନେ କେବଳ ତପସ୍ୟା କରନ୍ତି; କିନ୍ତୁ ଯେଉଁମାନେ ଶରୀର ଶୋଷଣ କରନ୍ତି ସେମାନେ ପ୍ରକୃତରେ ତପସ୍ୟା କରନ୍ତି ନାହିଁ ।

## ୦—ସ୍ୱାଧ୍ୟାୟ ବା ସିଦ୍ଧାନ୍ତବାକ୍ୟ ଶ୍ରବଣ ।

ଏକ ଓ ଅଦ୍ୱିତୀୟ ପ୍ରଭୁ ପରଂବ୍ରହ୍ମଙ୍କର ନାମ ସ୍ମରଣ-ଚିନ୍ତନ ଆଦିର ନାମ ସ୍ୱାଧ୍ୟାୟ । ଶାସ୍ତ୍ରାଧ୍ୟୟନ, ସଦାଲୋଚନା, ସଦାଚାର, ସତ୍ସଙ୍ଗ ଇତ୍ୟାଦି ମଧ୍ୟ ସ୍ୱାଧ୍ୟାୟ ଅନ୍ତର୍ଗତ । ଫଳତଃ, ଯେଉଁ ଶାସ୍ତ୍ର ଅଧ୍ୟୟନ କଲେ ବା ଆଲୋଚନା ଓ ଚିନ୍ତା କଲେ ପରମାତ୍ମଜ୍ଞାନ ସମ୍ୟକ୍ ଉଦ୍ଦୀପିତ ହୁଏ, ସେପରି ସାଧନାର ନାମ ସ୍ୱାଧ୍ୟାୟ ବା ସିଦ୍ଧାନ୍ତଶ୍ରବଣ ବୋଲି ବୁଝିବାକୁ ହେବ । ଏପରି ସ୍ୱାଧ୍ୟାୟ ଏବଂ ସିଦ୍ଧାନ୍ତ ବାକ୍ୟ ଶ୍ରବଣ ମୋକ୍ଷାଭିଳାଷୀ ବ୍ୟକ୍ତି ପକ୍ଷରେ ସର୍ବଦା କର୍ତ୍ତବ୍ୟ—

**ସତ୍ୟଂ ଜ୍ଞାନମନନ୍ତଂ ଚ ପରାନନ୍ଦଂ ପରଂ ଧ୍ରୁବମ୍ ।**
**ପ୍ରତ୍ୟଗିତ୍ୟବଗନ୍ତବ୍ୟଂ ବେଦାନ୍ତଶ୍ରବଣଂ ବୁଧାଃ ॥**

ଜାବାଲ ଦ: ଉ: ୨।୯ ।

ପରଂବ୍ରହ୍ମ ସତ୍ୟ, ଜ୍ଞାନସ୍ୱରୂପ, ଅନନ୍ତ, କେବଳାନନ୍ଦସ୍ୱରୂପ, ପ୍ରଧାନ ଓ କୂଟସ୍ଥ—ଏହି ଜ୍ଞାତବ୍ୟ ବିଷୟକୁ ପଣ୍ଡିତମାନେ ବେଦାନ୍ତଶ୍ରବଣ କହନ୍ତି ।

**ଭକ୍ତିଶାସ୍ତ୍ରାଣି ମନନୀୟାନି ତଦ୍‌ବର୍ଦ୍ଧକକର୍ମାଣ୍ୟପି କରଣୀୟାନି ।**

ନାରଦ ଭକ୍ତିସୂତ୍ର—୭୬ ॥

ଭକ୍ତିଶାସ୍ତ୍ର ମନନ କରିବ ଓ ଭକ୍ତିବୃଦ୍ଧି ଉପଯୋଗୀ କର୍ମ କରିବ; ଅର୍ଥାତ୍ ବିବଦମାନ ବିଷୟ ଛାଡ଼ି କେବଳ ଶାସ୍ତ୍ରର ସିଦ୍ଧାନ୍ତସ୍ୱରୂପ ଜ୍ଞାନ ଭକ୍ତିଯୋଗର ଯାହା ତାତ୍ପର୍ଯ୍ୟ, ତାହା ଚିନ୍ତା କରିବ । ଆଚାର୍ଯ୍ୟଙ୍କ ଉପଦେଶାନୁସାରେ ସିଦ୍ଧାନ୍ତ ବାକ୍ୟର ନିଗୂଢ଼ ରହସ୍ୟ ଅବଗତ ହୋଇ ଭକ୍ତିବୃଦ୍ଧି ନିମନ୍ତେ ସତ୍ସଙ୍ଗ ଓ ସଦାଚାର ମାତ୍ର ଆଚରଣ କରିବ ।

୦—ଆସ୍ତିକ୍ୟଜ୍ଞାନ ଓ ଈଶ୍ୱରପ୍ରଣିଧାନ ।

ପରମାତ୍ମା ପରମେଶ୍ୱରଙ୍କଠାରେ ସମ୍ପୂର୍ଣ୍ଣଭାବରେ ଆତ୍ମସମର୍ପଣ କରି ଭକ୍ତି ଓ ଶ୍ରଦ୍ଧା ସହ ତାଙ୍କର ସ୍ମରଣ, ଚିନ୍ତନ, ଧ୍ୟାନ ଓ ଉପାସନା କରିବାର ନାମ ଈଶ୍ୱରପ୍ରଣିଧାନ । ବସ୍ତୁତଃ ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ନିୟନ୍ତା ପ୍ରଭୁ ପରମେଶ୍ୱର ନିତ୍ୟ ବିଦ୍ୟମାନ—ଏପରି ଏକାନ୍ତ ବିଶ୍ୱାସ ଆସ୍ତିକତାର ମୂଳଭିତ୍ତି । ପୁଷ୍ପଫଳ-ଶୋଭିତ ଉଦ୍ୟାନ ଦେଖିଲେ ମନେହୁଏ ଯେ, ତାହାର କେହି ଜଣେ ଅବଶ୍ୟ ରକ୍ଷକ ଅଛି; ସେହିପରି ଏହି ବିଶ୍ୱବ୍ରହ୍ମାଣ୍ଡ ମଧ୍ୟ ଗୋଟିଏ ବିରାଟ ଉଦ୍ୟାନ; ସେଥିରେ ଅନେକ ବିଚିତ୍ର ବୈଷମ୍ୟର ସମାବେଶ ହୋଇଅଛି । ରୂପ, ରସ ଗନ୍ଧ, ସ୍ପର୍ଶ ଓ ଶବ୍ଦ ଆଦି ଅନେକ ବିକାର ଏଥିରେ ପରିଦୃଷ୍ଟ; ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର-ଆଦି ଜ୍ୟୋତିଷ୍କମଣ୍ଡଳ ନାନାପ୍ରକାରେ ଏହି ବିଶ୍ୱ-ଉଦ୍ୟାନରେ ଶୋଭାବର୍ଦ୍ଧକ ଭାବରେ ବିଦ୍ୟମାନ । ଅନନ୍ତ ମହିମାମାଧୁର୍ଯ୍ୟରେ ଏହି ଉଦ୍ୟାନ ପୂର୍ଣ୍ଣ । ଅତଏବ ଏହି ଅପୂର୍ବ ବିଶ୍ୱୋଦ୍ୟାନର ମଧ୍ୟ କେହି ଜଣେ କର୍ତ୍ତା ଅଛି । କାରଣ, କର୍ତ୍ତା ନ ଥିଲେ କାର୍ଯ୍ୟ ଅସମ୍ଭବ । କାର୍ଯ୍ୟାତ୍ମକ ଏହି ବିଶ୍ୱୋଦ୍ୟାନର କାରଣ ସର୍ବଶକ୍ତିମାନ୍ ପ୍ରଭୁ ପରଂବ୍ରହ୍ମ ପରମାତ୍ମା । ତାଙ୍କ ବ୍ୟତୀତ ସମ୍ଭବକୁ ଅସମ୍ଭବ ଓ ଅସମ୍ଭବକୁ ସମ୍ଭବ କରିବା ଶକ୍ତି କାହାର ଅଛି ? ପାଶ୍ଚାତ୍ୟ ପଣ୍ଡିତମାନେ ମଧ୍ୟ ଏହି ବିଶ୍ୱୋଦ୍ୟାନର ଅନ୍ତରାଳରେ ଅବସ୍ଥିତ ମହାଶକ୍ତିମୟ ପରମପୁରୁଷଙ୍କର ଅସ୍ତିତ୍ୱ ଅସ୍ୱୀକାର କରି ପାରୁ ନାହାନ୍ତି । ଅତଏବ ବିଶ୍ୱନିୟନ୍ତା ପରମାତ୍ମା ପରମେଶ୍ୱରଙ୍କୁ ବିଶ୍ୱାସ ସହିତ ଶ୍ରବଣ ମନନ-ଆଦି କରିବା ମାନବର ପ୍ରଧାନ କର୍ତ୍ତବ୍ୟ । ପ୍ରଭୁ ପରମାତ୍ମା ନିଶ୍ଚୟ ଅଛନ୍ତି; ସେ ନ୍ୟାୟାଧୀଶ, ଦୟାମୟ, ମଙ୍ଗଳମୟ, ସର୍ବନିୟନ୍ତା ଓ ସଚ୍ଚିଦାନନ୍ଦସ୍ୱରୂପ; ତାହାଙ୍କୁ ଏହି ରୂପରେ ଜାଣି ତାଙ୍କଠାରେ ଆତ୍ମସମର୍ପଣ କରିବା ନାମ ଈଶ୍ୱରପ୍ରଣିଧାନ ବା ଈଶ୍ୱର-ଉପାସନା । ଅବଶ୍ୟ ପ୍ରଭୁ ପରମାତ୍ମାଙ୍କଠାରେ ଆତ୍ମସମର୍ପଣ କରିବା କଠିନ ହେଲେ ମଧ୍ୟ ତାହାହିଁ ଏକମାତ୍ର ନିରାପଦ ସାଧନା ଏବଂ ଜୀବର ଚିରବାଞ୍ଛିତ ମୁକ୍ତିଲାଭର ଉପାୟ । ଆତ୍ମସମର୍ପଣ ବ୍ୟତୀତ ଜୀବର ମୁକ୍ତି ଆଶା ସୁଦୂରପରାହତ । ଅତଏବ ସମ୍ପୂର୍ଣ୍ଣଭାବରେ ପ୍ରଭୁ ପରମାତ୍ମାଙ୍କଠାରେ ଆତ୍ମସମର୍ପଣ ନ କଲେ ତନ୍ମୟ ହେବା ଅସମ୍ଭବ । ପରଂବ୍ରହ୍ମଙ୍କଠାରେ ପୂର୍ଣ୍ଣ ଆତ୍ମସମର୍ପଣ କରାଯାଇଛି କି ନାହିଁ ଏହାର ପ୍ରମାପକ ଦୁଃଖଭୋଗ; ଅର୍ଥାତ୍ ଦୁଃଖ କେବଳ ଜୀବନର ପରୀକ୍ଷକ । ମନୁଷ୍ୟ ସକଳଚିନ୍ତା ପ୍ରଭୁଙ୍କଠାରେ ନିହିତ କରି ଆପଣାକୁ ତାହାଙ୍କର ସମ୍ପୂର୍ଣ୍ଣ ଅଧୀନ କରି ଓ ତଦ୍‌ଗତପ୍ରାଣରେ ଚିତ୍ତ ସମାହିତ କରି ଶାନ୍ତି ଓ ସନ୍ତୁଷ୍ଟି ଅବଲମ୍ବନ କରିବାର ନାମ ଆନନ୍ଦ । କେବଳ ଏତିକି ନୁହେଁ—ସକଳ କର୍ମଫଳ ପରମାତ୍ମାଙ୍କଠାରେ ଅର୍ପଣ କରି କର୍ତ୍ତବ୍ୟବୋଧରେ ନିଷ୍କାମ ଓ ଅନାସକ୍ତଭାବରେ କର୍ମାନୁଷ୍ଠାନ କରି ସତତ ପ୍ରଭୁଙ୍କଠାରେ ଶରଣାପନ୍ନ ହେଲେ ମୋକ୍ଷଲାଭ ସୁନିଶ୍ଚିତ; ଏହି ଶରଣପ୍ରାପ୍ତି ବିଷୟ ପୂର୍ବାନୁପାଦରେ ବର୍ଣ୍ଣିତ ହୋଇଛି ।

× × × × ×

"ଶ୍ରୌତେ ସ୍ମାର୍ତ୍ତେ ଚ ବିଶ୍ୱାସୋ ଯତ୍ତଦାସ୍ତିକ୍ୟ ମୁଚ୍ୟତେ ।
ଜାବାଲ ଦ: ଉ: ୨୭

ବେଦ ଓ ଶ୍ରୁତିଗ୍ରନ୍ଥୋକ୍ତ ପରମାତ୍ମଜ୍ଞାନଲାଭବିଷୟରେ ଯେଉଁ ବିଶ୍ୱାସ, ତାହାକୁ ଆସ୍ତିକ୍ୟବୁଦ୍ଧି କୁହାଯାଏ ।

ରାଗାଦ୍ୟପେତଂ ହୃଦୟଂ ବାଗଦୁଷ୍ଟାନୃତାଦିନା ।
ହିଂସାଦିରହିତଂ କର୍ମ ଯତ୍ତଦୀଶ୍ୱରପୂଜନମ୍ ॥     ଜାବାଲ—୨।୮

ବଚନର ଅଦୁଷ୍ଟତା ଏବଂ ସତ୍ୟତାଦ୍ୱାରା ରାଗାଦିଶୂନ୍ୟ ହୃଦୟ ଏବଂ ହିଂସାଦିରହିତ କର୍ମକୁ ଈଶ୍ୱରପୂଜନ କୁହାଯାଏ ।

୦—ସତ୍‌ପାତ୍ରେ ଦାନ

ଦାନ ଯେପରି ନାନାପ୍ରକାର, ତା'ର ଗ୍ରହୀତା ମଧ୍ୟ ବିଭିନ୍ନ ପ୍ରକାର । ଏଣୁହେତୁରୁ ଯେଉଁ ସତ୍‌ପାତ୍ରଙ୍କୁ ଦାନ ଦେଲେ ନିଜର ଇଷ୍ଟଦେବ ପରମାତ୍ମା ପରଂବ୍ରହ୍ମଙ୍କ ଲକ୍ଷ୍ୟର ଉପଯୋଗୀ ହୁଏ, ସେହିପରି ଉପଯୁକ୍ତ ଦେଶକାଳ ବିବେକ ଅନୁସାରେ ନ୍ୟାୟୋପାର୍ଜିତ ଦ୍ରବ୍ୟ ପ୍ରଦାନ କଲେ ତାହାକୁ ପ୍ରକୃତ ଦାନ କୁହାଯାଏ ।

ଦାତବ୍ୟମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।
ଦେଶେ କାଲେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତମ୍ ॥
ଗୀତା-୧୭।୨୦

ଦାନ କରିବା ସମୁଚିତ, କିନ୍ତୁ ଦେଶ, କାଳ ଓ ପାତ୍ର ବିବେଚନା କରି ପ୍ରତ୍ୟୁପକାର ଆଶା ତ୍ୟାଗପୂର୍ବକ ଯେଉଁ ଦାନ କରାଯାଏ ତାହା ସାତ୍ତ୍ୱିକ ଦାନ ।

କେ ହେତବୋ ବ୍ରହ୍ମଗତେସ୍ତୁ ସନ୍ତି
ସତ୍‌ସଙ୍ଗତିର୍ଦ୍ଦାନବିଚାରତୋଷାଃ । × × × । ମଣିରତ୍ନମାଳା

ବ୍ରହ୍ମଲାଭର ଉପାୟ ସାଧୁ ସଙ୍ଗ, ଉପଯୁକ୍ତ ପାତ୍ରରେ ଦାନ, ବ୍ରହ୍ମବିଚାର ଓ ସନ୍ତୋଷ ।

ପାତ୍ରସ୍ୟ ହି ବିଶେଷେଣ ଶ୍ରଦ୍ଦଧାନତୟୈ ବ ଚ ।
ଅଲ୍ପଂ ବା ବହୁ ବା ପ୍ରେତ୍ୟ ଦାନସ୍ୟାବାପ୍ୟତେ ଫଳମ୍ । ମନୁ-୭।୮୬

ଦାତା ନିଜର ଶ୍ରଦ୍ଧା ଓ ପାତ୍ରର ଯୋଗ୍ୟତା ଅନୁସାରେ ଯେଉଁ ବସ୍ତୁ ପ୍ରଦାନ କରିଥାଏ, ଅଳ୍ପ ବା ଅଧିକ ହେଉ, ସେହି ଦାନର ଅନୁପାତରେ ପରଲୋକରେ ଫଳ ମିଳେ ।

୦—ହ୍ରୀ ଓ ମତ ।

ସର୍ବଦା ଗୁରୁଙ୍କ ଉପଦେଶ ଓ ଶାସ୍ତ୍ରବଚନ ଅନୁସାରେ କୁତ୍ସିତ କର୍ମ ପ୍ରତି ଭୟ ବା ଘୃଣାର ନାମ ହ୍ରୀ ବା ଲଜ୍ଜା ଏବଂ ସତ୍କର୍ମ ପ୍ରତି ଶ୍ରଦ୍ଧାକୁ ମତ କୁହାଯାଏ ।

ହ୍ରୀମାନ୍ ହି ପାପଂ ପ୍ରଦ୍ୱେଷ୍ଟି ତସ୍ୟ ଶ୍ରୀରଭିବର୍ଦ୍ଧତେ ।
ହ୍ରୀର୍ହତା ବାଧତେ ଧର୍ମଂ ଧର୍ମୋ ହନ୍ତି ହତଃ ଶ୍ରିୟମ୍ ॥

ମହାଭାରତ ଉଦ୍‌ଯୋଗ ୭୧।୩୭

ଲଜ୍ଜାବିଶିଷ୍ଟ ବ୍ୟକ୍ତି ପାପ ପ୍ରତି ଦ୍ୱେଷ କରନ୍ତି ଏବଂ ତାଙ୍କର ଶ୍ରୀବୃଦ୍ଧି ହୁଏ । ହ୍ରୀ ନଷ୍ଟ ହେଲେ ଧର୍ମକାର୍ଯ୍ୟରେ ବାଧା ଜନ୍ମେ ଓ ଧର୍ମହାନି ହେଲେ ଶ୍ରୀ ଭ୍ରଷ୍ଟ ହୁଏ ।

ବେଦଲୌକିକମାର୍ଗେଷୁ କୁତ୍ସିତଂ କର୍ମ ଯଦ୍‌ଭବେତ୍ ।
ତସ୍ମିନ୍ ଭବତି ଯା ଲଜ୍ଜା ହ୍ରୀଃ ସୈବେତି ପ୍ରକୀର୍ତ୍ତିତା ॥
ବୈଦିକେଷୁ ଚ ସର୍ବେଷୁ ଶ୍ରଦ୍ଧା ଯା ସା ମତର୍ଭବେତ୍ ॥

ଜାବାଲଦ: ଉ: ୨।୧୨

ବୈଦିକ ମାର୍ଗ ଓ ଲୋକ ବ୍ୟବହାର ଅନୁସାରେ ଯାହା କୁତ୍ସିତ ଓ ତତ୍‌ପ୍ରତି ଯେଉଁ ଲଜ୍ଜା ମନରେ ଆସେ ତାହାକୁ ହ୍ରୀ (ଲଜ୍ଜା) କୁହାଯାଏ । ସକଳ ବୈଦିକ କର୍ମ ପ୍ରତି ଯେଉଁ ଶ୍ରଦ୍ଧା ତାହାକୁ ମତ କୁହାଯାଏ ଏବଂ ଗୁରୁ ଓ ଶାସ୍ତ୍ରବଚନ ପ୍ରତି ବିଶ୍ୱାସ ଓ ଶ୍ରଦ୍ଧାର ନାମ ମତ ବୋଲି ପ୍ରତିପାଦିତ ହୋଇଅଛି ।

୦—ଜପ ।

କଳ୍ପସୂତ୍ରେ ତଥା ବେଦେ ଧର୍ମଶାସ୍ତ୍ରେ ପୁରାଣକେ ।
ଇତିହାସେ ଚ ବୃତ୍ତିର୍ଯା ସ ଜପଃ ପ୍ରୋଚ୍ୟତେ ମୟା ॥
ଜପସ୍ତୁ ଦ୍ୱିବିଧଃ ପ୍ରୋକ୍ତୋ ବାଚିକୋ ମାନସସ୍ତଥା ।
ବାଚିକୋଽପାଂଶୁରୁଚ୍ଚୈଶ୍ଚ ଦ୍ୱିବିଧଃ ପରିକୀର୍ତ୍ତିତଃ ।
ମାନସୋ ମନନଧ୍ୟାନ ଭେଦାତ୍ ଦ୍ୱୈବିଧ୍ୟମାଶ୍ରିତଃ ॥

ଜାବାଲ ଦ: ଉ: ୨।୧୨।୧୪

କଳ୍ପସୂତ୍ର, ବେଦ, ଧର୍ମଶାସ୍ତ୍ର, ପୁରାଣ ଓ ଇତିହାସର ଆଲୋଚନାକୁ ଜପ କୁହାଯାଏ । ପୁଣି ଜପ ଦୁଇପ୍ରକାର—ବାଚକ ଓ ମାନସିକ । ବାଚକ ମଧ୍ୟ ଦୁଇ ପ୍ରକାର—ଉଚ୍ଚସ୍ୱର ଓ ନମ୍ର ସ୍ୱରରେ ଉଚ୍ଚାରିତ । ମାନସ ଜପ ମନନ ଓ ଧ୍ୟାନଭେଦରେ ଦୁଇ ପ୍ରକାର ।

**ଉଚ୍ଚୈର୍ଜପାଦୁପାଂଶୁଶ୍ଚ ସହସ୍ରଗୁଣମୁଚ୍ୟତେ ।**
**ମାନସଶ୍ଚ ତଥୋପାଂଶୋଃ ସହସ୍ରଗୁଣମୁଚ୍ୟତେ ॥**

ଜାବାଳଦ ଉ: ୨୧୫ ॥

**ଉଚ୍ଚୈଃସ୍ୱର ଜପଠାରୁ ନମ୍ରସ୍ୱର ଜପ ସହସ୍ରଗୁଣ ଅଧିକ ଫଳପ୍ରଦ । ମାନସ ଜପ ଏହାଠାରୁ ମଧ୍ୟ ସହସ୍ରଗୁଣ ଅଧିକ ଫଳପ୍ରଦ ।**

## ଠ—ସନାତନ ଧର୍ମ ଓ ସାମାଜିକ ଧର୍ମ ।

ଏ ପର୍ଯ୍ୟନ୍ତ ଯମ, ନିୟମ ଅହିଂସାଦି ଲକ୍ଷଣ ଶ୍ରୁତି ବଚନ ଓ ଯୁକ୍ତି ଅନୁସାରେ ବର୍ଣ୍ଣନ କରାଗଲା, ତାହାହିଁ ସତ୍ୟ ଧର୍ମାଚରଣର ବିଶିଷ୍ଟ ମାର୍ଗ । ଏହା କେବଳ ସନାତନ ଓ ସାମାଜିକ ଧର୍ମ ନାମରେ ଅଭିହିତ ।

**ଅହିଂସା ସତ୍ୟମକ୍ରୋଧସ୍ତପୋଦାନଂ ଦମୋ ମତଃ ।**
**ଅନସୂୟାପ୍ୟସାମର୍ଥ୍ୟମନୀର୍ଷା ଶୀଳମେବ ଚ ॥**
**ଏଷ ଧର୍ମଃ କୁରୁଶ୍ରେଷ୍ଠ କଥିତଃ ପରମେଷ୍ଠିନା ।**
**ବ୍ରହ୍ମଣା ଦେବ-ଦେବେନ ଅୟଂ ଚୈବ ସନାତନଃ ॥**

ମହାଭାରତ ଶା: ୧୦୬।୧୧-୧୨ ।

ଅହିଂସା, ସତ୍ୟ, ଅକ୍ରୋଧ, ତପସ୍ୟା, ଦାନ, ଇନ୍ଦ୍ରିୟଦମନ, ବେଦାର୍ଥ ପର୍ଯ୍ୟାଲୋଚନା, ପରର ଦୋଷ ଗ୍ରହଣ ନ କରିବା, ପରର ଅନିଷ୍ଟ ସାଧନରେ ଅସମର୍ଥତା, ଈର୍ଷା ନ କରିବା ଓ ସଚ୍ଚରିତ୍ର—ଏହି ସକଳଗୁଣ ପରମେଷ୍ଠୀ ବ୍ରହ୍ମାଙ୍କଦ୍ୱାରା ଧର୍ମ ବୋଲି କୁହାଯାଇଛି । ହେ କୌରବଶ୍ରେଷ୍ଠ ! ଏହା କେବଳ ସନାତନ ଧର୍ମ ।

**ଅହିଂସା ସତ୍ୟମକ୍ରୋଧୋ ଦାନମେତଚ୍ଚତୁଷ୍ଟୟମ୍ ।**
**ଅଜାତଶତ୍ରୋ ସେବସ୍ୱ ଧର୍ମ ଏଷ ସନାତନଃ ॥**

ମହାଭାରତ ଅନୁ: ୧୬୨।୨୩

ହେ ଅଜାତଶତ୍ରୁ! ଅହିଂସା, ସତ୍ୟ, କ୍ରୋଧହୀନତା ଓ ଦାନ—ଏହି ଚାରିପ୍ରକାର କେବଳ ସନାତନ ଧର୍ମ ଅଟେ ।

**ଅଦ୍ରୋହଃ ସର୍ବଭୂତେଷୁ କର୍ମଣା ମନସା ଗିରା ।**
**ଅନୁଗ୍ରହଶ୍ଚ ଦାନଞ୍ଚ ସତାଂ ଧର୍ମଃ ସନାତନଃ ॥**

ମହାଭାରତ ବନ: ୨୯୭।୩୫ ।

କାର୍ଯ୍ୟ, ମନ ଓ ବାକ୍ୟଦ୍ୱାରା ପ୍ରାଣୀମାନଙ୍କ ପ୍ରତି ଅନିଷ୍ଟ ନ କରିବା, ପ୍ରତ୍ୟୁତଃ ଅନୁଗ୍ରହ ଓ ଦୟା କରିବା—ଏହା ସାଧୁମାନଙ୍କ ମତରେ ସନାତନ ଧର୍ମ ।

ଏ ବିଷୟରେ ମନୁଙ୍କ ବଚନ—

**ଧୃତିଃ କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ ।**
**ଧୀର୍ବିଦ୍ୟା ସତ୍ୟମକ୍ରୋଧୋ ଦଶକଂ ଧର୍ମ ଲକ୍ଷଣମ୍ ।** ମନୁ ୬।୯୨
**ଅହିଂସା ସତ୍ୟମସ୍ତେୟଂ ଶୌଚମିନ୍ଦ୍ରିୟନିଗ୍ରହଃ ।**
**ଏତଂ ସାମାଜିକଂ ଧର୍ମଂ ଚାତୁର୍ବର୍ଣ୍ୟେଽବ୍ରବୀନ୍ମନୁଃ ।** ମନୁ ୧୦।୬୩

ଧୈର୍ଯ୍ୟ, କ୍ଷମା, ମନର ସଂଯମ, ଅଚୌର୍ଯ୍ୟ, ଦେହ ଓ ଆଭ୍ୟନ୍ତର ଶୁଚି, ଇନ୍ଦ୍ରିୟନିଗ୍ରହ, ଜ୍ଞାନ, ବ୍ରହ୍ମବିଦ୍ୟା, ସତ୍ୟକଥନ ଓ ଅକ୍ରୋଧ—ଏହା ଧର୍ମର ଦଶ ପ୍ରକାର ଲକ୍ଷଣ । ମନୁଙ୍କ କଥନ ଅନୁସାରେ ଅହିଂସା, ସତ୍ୟବାକ୍ୟ, ଅଚୌର୍ଯ୍ୟ, ଦେହ ଓ ଚିତ୍ତର ଶୁଦ୍ଧି ଏବଂ ଇନ୍ଦ୍ରିୟସଂଯମ—ସଂକ୍ଷେପରେ ଏହାସବୁ ସକଳ ଜାତିର ସାମାଜିକ ଧର୍ମ ଅଟେ ।

ଏହିପରି ଧର୍ମନୀତି ବିଷୟରେ ଛାନ୍ଦୋଗ୍ୟ ଶ୍ରୁତି ମଧ୍ୟ କହେ—

**ଅଥ ଯତ୍ତପୋ ଦାନମାର୍ଜବମହିଂସା ସତ୍ୟବଚନମିତି**
**ତା ଅସ୍ୟ ଦକ୍ଷିଣା ।**

ଛାନ୍ଦୋଗ୍ୟ ଉ: ୩।୧୭।୪ ।

ମନୁଷ୍ୟର ସତ୍ୟକଥନ, ତପସ୍ୟା, ଦାନ, ଅହିଂସା ଓ ସରଳତା ଗୁଣସମୂହ ଜୀବନଯଜ୍ଞର ଦକ୍ଷିଣାସ୍ୱରୂପ; କାରଣ, ଏହା ସବୁ ଯଜ୍ଞର ଦକ୍ଷିଣା ପରି ଧର୍ମର ପୁଷ୍ଟି ସାଧନ କରେ ।

**"ତେଷାମେବୈଷ ବ୍ରହ୍ମଲୋକୋ ଯେଷାଂ ତପୋ ବ୍ରହ୍ମଚର୍ଯ୍ୟ ଯେଷୁ ସତ୍ୟଂ ପ୍ରତିଷ୍ଠିତମ୍ ॥** ପ୍ରଶ୍ନ ଉପ: ୧।୧୫ ।

ଅର୍ଥାତ୍ ଯେଉଁମାନେ ତପଶ୍ଚର୍ଯ୍ୟା, ବ୍ରହ୍ମଚର୍ଯ୍ୟପାଳନ ଓ ସତ୍ୟରକ୍ଷା କରନ୍ତି, ସେହିମାନେ ହିଁ ବ୍ରହ୍ମଲୋକ ଲଭ କରନ୍ତି ।

ଆର୍ଜବେ ତୁ ରତୋ ନିତ୍ୟଂ ବସତ୍ୟମରସନ୍ନିଧୌ ।
ତସ୍ମାଦାର୍ଜବଯୁକ୍ତଃ ସ୍ୟାଦ୍ ଯ ଇଚ୍ଛେଦ୍ଧର୍ମମାତ୍ମନଃ ॥
କ୍ଷାନ୍ତୋ ଦାନ୍ତୋ ଜିତକ୍ରୋଧୋ ଧର୍ମଭୂତୋଽବିହିଂସକଃ ।
ଧର୍ମେ ରତମନା ନିତ୍ୟଂ ନରୋ ଧର୍ମେଣ ଯୁଜ୍ୟତେ ॥
ବ୍ୟପେତତନ୍ଦ୍ରିର୍ଧର୍ମାତ୍ମା ଶକ୍ତ୍ୟା ସତ୍ପଥମାଶ୍ରିତଃ ।
ଚାରିତ୍ରପରମୋ ବୁଦ୍ଧୋ ବ୍ରହ୍ମଭୂୟାୟ କଳ୍ପତେ ॥

ମହା । ଶା: ଅନୁ:—୧୪୨।୩୧—୩୩ ।

ଯେଉଁ ଲୋକ ସରଳତାରେ ରତ ଥାଏ, ସେ ଦେବତାମାନଙ୍କ ସହ ବାସ କରେ; ଏହି ହେତୁରୁ ଯେଉଁ ଲୋକ ଧାର୍ମିକ ହେବାକୁ ଇଚ୍ଛା କରେ, ସେ ସରଳତା ଧର୍ମ ଆଶ୍ରୟ କରିବା ଆବଶ୍ୟକ । ଯେଉଁ ଲୋକ କ୍ଷାନ୍ତ, ଦାନ୍ତ, କ୍ରୋଧକୁ ଜିଣିଛି ଓ ଧର୍ମମୟ, ଅହିଂସକ ଏବଂ ନିତ୍ୟ ନିତ୍ୟ ଧର୍ମରେ ଚିତ୍ତନିବେଶ କରିଥାଏ, ସେହି କେବଳ ଧର୍ମାତ୍ମା ବୋଲି କଥିତ । ଯେଉଁ ଧର୍ମାତ୍ମା ମନୁଷ୍ୟ ନିରଳସଭାବରେ ଓ ନିଜ ଶକ୍ତି ଅନୁସାରେ ସତ୍ପଥ ଅବଲମ୍ବନ କରେ ଓ ନିଜ ଚରିତ୍ରକୁ ଉତ୍ତମ ରୀତିରେ ରକ୍ଷା କରେ, ସେହି ବୁଦ୍ଧିମାନ ମନୁଷ୍ୟ ବ୍ରହ୍ମସ୍ୱରୂପ ଲଭ କରିବାକୁ ସମର୍ଥ ହୁଏ ।

**୦—ସତ୍ୟ ଧର୍ମ ଗ୍ରହଣ ବିଷୟରେ ଜାତିଭେଦ ଓ ବାଲ୍ୟାଦି ଅବସ୍ଥା ଭେଦ ଧରାଯାଏ ନାହିଁ ।**

ଯତ୍ୟ ଧର୍ମାସ୍ତ୍ରର ମତ ପାଳନ କରି ସତ୍ୟଧର୍ମ ଗ୍ରହଣ କରିବା ନିମନ୍ତେ କୌଣସି-ପ୍ରକାର ଜାତିଭେଦ ବା କୌଣସି ପ୍ରକାର ଅବସ୍ଥାଭେଦ ଧରାଯାଏ ନାହିଁ । କେବଳ ଯାହାଙ୍କ ହୃଦୟରେ ଜ୍ଞାନପିପାସା ଉଦ୍ଭବ ହୁଏ, ସେହି ବ୍ୟକ୍ତି ଜ୍ଞାନ-ଭକ୍ତି-ଯୋଗର ଉପଦେଶ ଗ୍ରହଣ କରିବାକୁ ଯୋଗ୍ୟ ।

ଜାତିର ଅର୍ଥ—

"ଜାତିରିତି ଚ । ନ ଚର୍ମଣୋ ନ ରକ୍ତସ୍ୟ ନ ମାଂସସ୍ୟ ନ ଚ ଅସ୍ଥିନଃ
ନ ଜାତିଃ, ଆତ୍ମନୋ ଜାତିବ୍ୟବହାରଃ ପ୍ରକଳ୍ପିତଃ ॥"

ନିରାଲମ୍ବ: ଉ:—୧୦ ॥

ବର୍ତ୍ତମାନ ଜାତି କ'ଣ—ଏହି ପ୍ରଶ୍ନର ଉତ୍ତର ଦିଆ ଯାଉଅଛି—ଚର୍ମଦ୍ୱାରା ଜାତି ନିରୂପିତ ହୁଏ ନାହିଁ (ଅର୍ଥାତ୍ କୃଷ୍ଣବର୍ଣ୍ଣ ଚର୍ମବିଶିଷ୍ଟ ବ୍ୟକ୍ତି ଶୂଦ୍ର—ଏପରି ଜାତି ନିର୍ଣ୍ଣୀତ ହୁଏ ନାହିଁ) । ରକ୍ତ ଅନୁସାରେ ମଧ୍ୟ ଜାତି ନିର୍ଣ୍ଣୀତ ହୁଏ ନାହିଁ (ଯାହାର ଦେହରେ ବ୍ରାହ୍ମଣ ରକ୍ତ ପ୍ରବାହିତ ସେ ବ୍ରାହ୍ମଣ—ଏପରି ଜାତି କଳ୍ପନା ଅସମ୍ଭବ); ମାଂସ ଭକ୍ଷଣ ଅନୁସାରେ ମଧ୍ୟ ଜାତିର କଳ୍ପନା ହୁଏନାହିଁ (ଅର୍ଥାତ୍ ମାଂସାଶୀ ସ୍ଥୂଳକାୟ ଲୋକ ରାକ୍ଷସପରି ନୁହେଁ) । ଅସ୍ଥିଦ୍ୱାରା ବା ଅମୁକ ଲୋକର ଅସ୍ଥି ଦୃଢ଼ ଓ ସେ ଶୂର ଓ କ୍ଷତ୍ରିୟ—ଏପରି ମଧ୍ୟ ଜାତି ସ୍ଥିର କରାଯାଏ ନାହିଁ । ଜୀବର ସ୍ୱଭାବଦ୍ୱାରା ମଧ୍ୟ ଜାତି ନିର୍ଣ୍ଣୀତ ହୁଏନାହିଁ, ଅର୍ଥାତ୍ ପଶୁଯୋନିରେ ଜନ୍ମ ଲାଭ ହେତୁରୁ ସେ ପଶୁସ୍ୱଭାବର ଲୋକ—ଏପରି ଜାତି ନିର୍ଣ୍ଣୟ କରିବା ମଧ୍ୟ ଅସମ୍ଭବ । କେବଳ ବ୍ୟବହାରଦ୍ୱାରା ପ୍ରକୃଷ୍ଟ ରୂପରେ ଜାତି ନିର୍ଣ୍ଣୀତ ହୁଏ । ଅର୍ଥାତ୍ ବ୍ରହ୍ମନିଷ୍ଠା, ସତ୍ୟ, ଅଲୋଭ ଓ ଅକ୍ରୋଧ ପ୍ରଭୃତି ଗୁଣ ଓ ଶୌର୍ଯ୍ୟ ଏବଂ ଉତ୍ତମ ଆଚରଣଯୁକ୍ତ ଥିଲେ ବ୍ରାହ୍ମଣ ବୋଲି ଜଣାଯିବ; କିନ୍ତୁ ଜିହ୍ୱା ଓ ଉପସ୍ଥର ତୃପ୍ତି ସାଧନରେ ନିମଗ୍ନ ଥିବା ବ୍ରାହ୍ମଣ ମଧ୍ୟ ପଶୁଜାତି ବୋଲି ଧରାଯିବ ।

ଏ ବିଷୟରେ ମହାଭାରତ ବର୍ଣ୍ଣନା—

**ଏଭିସ୍ତୁ କର୍ମଭିର୍ଦେବି ଶୁଭୈରାଚରିତୈସ୍ତଥା ।**
**ଶୂଦ୍ରୋ ବ୍ରାହ୍ମଣତାଂ ଯାତି ବୈଶ୍ୟଃ କ୍ଷତ୍ରିୟତାଂ ବ୍ରଜେତ୍ ॥**

ମହା ଭା: ଅନୁ: ୧୪୩।୨୬ ॥

ହେ ଦେବି ! ଏହି ପବିତ୍ର କାର୍ଯ୍ୟ ଓ ପବିତ୍ର ଆଚରଣଦ୍ୱାରା ଶୂଦ୍ର ମଧ୍ୟ ବ୍ରାହ୍ମଣ ହୋଇପାରେ ଓ ବୈଶ୍ୟ ମଧ୍ୟ କ୍ଷତ୍ରିୟତ୍ୱ ପ୍ରାପ୍ତ ହୁଏ ।

**ଅସିତଂ ସିତକର୍ମାଣଂ ତଥା ଦାନ୍ତଂ ତପସ୍ୱିନମ୍ ।**
**ବୃତ୍ତସ୍ଥମପି ଚଣ୍ଡାଳଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ॥**

ମହା ଭା: ଶାନ୍ତି: ୧୧୫ । ୧୧ ॥

ଚଣ୍ଡାଳ ଜାତିର ଲୋକ କୃଷ୍ଣବର୍ଣ୍ଣ ହୋଇ ମଧ୍ୟ ଯଦି ସର୍ବଦା ଶୁଭ କର୍ମରେ ରତ ହୁଏ, ଜିତେନ୍ଦ୍ରିୟ ଓ ତପସ୍ୱୀ ହୋଇ ସଦାଚାରରତ ହୁଏ, ତେବେ ଦେବତାମାନେ ତାହାକୁ ବ୍ରାହ୍ମଣ ବୋଲି ମନେ କରନ୍ତି ।

**ବ୍ରାହ୍ମଣଃ ପାପକର୍ମା ଚ ମ୍ଲେଚ୍ଛୋ ବା ଧାର୍ମିକଃ ଶୁଚିଃ ।**
**ଶ୍ରେୟାଂସ୍ତତ୍ର ଭବେନ୍ମ୍ଲେଚ୍ଛୋ ବ୍ରାହ୍ମଣଃ ପାପକୃତ୍ତମଃ ॥**

ମ: ଭା: ଶା: ୧୧୫ । ୧୫ ॥

ଯେଉଁ ବ୍ରାହ୍ମଣ ସର୍ବଦା ପାପାଗ୍ରସ୍ତ; ମ୍ଳେଚ୍ଛ ଧାର୍ମିକ ଏବଂ ପବିତ୍ର—ସେ କ୍ଷେତ୍ରରେ ମ୍ଳେଚ୍ଛହିଁ ଶ୍ରେଷ୍ଠ ଓ ବ୍ରାହ୍ମଣ ନିକୃଷ୍ଟ ।

ଜ୍ଞାନବିଜ୍ଞାନସଂପନ୍ନଃ ସଂସ୍କୃତୋ ବେଦପାରଗଃ ।
ବିପ୍ରୋ ଭବତି ଧର୍ମାତ୍ମା କ୍ଷତ୍ରିୟଃ ସ୍ୱେନ କର୍ମଣା ॥
ଏତୈଃ କର୍ମଫଳୈର୍ଦେବି ନ୍ୟୂନଜାତିକୁଳୋଦ୍ଭବଃ ।
ଶୂଦ୍ରୋପ୍ୟାଗମସମ୍ପନ୍ନୋ ଦ୍ୱିଜୋ ଭବତି ସଂସ୍କୃତଃ ॥
ବ୍ରାହ୍ମଣୋ ବାପ୍ୟସଦ୍‌ବୃତ୍ତଃ ସର୍ବସଙ୍କରଭୋଜନଃ ।
ବ୍ରାହ୍ମଣ୍ୟଂ ସ ସମୁତ୍‌ସୃଜ୍ୟ ଶୂଦ୍ରୋ ଭବତି ତାଦୃଶଃ ॥
କର୍ମଭିଃ ଶୁଚିଭିର୍ଦେବି ଶୁଦ୍ଧାତ୍ମା ବିଜିତେନ୍ଦ୍ରିୟଃ ।
ଶୂଦ୍ରୋଽପି ଦ୍ୱିଜବତ୍‌ସେବ୍ୟ ଇତି ବ୍ରହ୍ମାଽବ୍ରବୀତ୍ ସ୍ୱୟମ୍ ॥
ସ୍ୱଭାବଃ କର୍ମ ଚ ଶୁଭଂ ଯତ୍ର ଶୂଦ୍ରେଽପି ତିଷ୍ଠତି ।
ବିଶିଷ୍ଟଃ ସ ଦ୍ୱିଜାତେର୍ବୈ ବିଜ୍ଞେୟ ଇତି ମେ ମତଃ ॥

ମହା ଭା: ଅନୁ: ୧୪୩ । ୪୬-୪୯ ।

ଜ୍ଞାନ ଓ ସଂସ୍କାରଯୁକ୍ତ, ବେଦପାରଗ, ଧର୍ମାତ୍ମା କ୍ଷତ୍ରିୟ ନିଜ କର୍ମବଳରେ ବ୍ରାହ୍ମଣ ହୁଏ । ହେ ଦେବି ! ଏହି କର୍ମଫଳଦ୍ୱାରା ନିମ୍ନ ଜାତିରେ ଜନ୍ମ ଲାଭ କରିଥିବା ଶାସ୍ତ୍ରଜ୍ଞାନସମ୍ପନ୍ନ ଶୂଦ୍ର ମଧ୍ୟ ସଂସ୍କାରଯୁକ୍ତ ଦ୍ୱିଜ ହୋଇପାରେ । ବ୍ରାହ୍ମଣ ମଧ୍ୟ ଅସଦ୍‌ବୃତ୍ତ ଓ ସକଳ ସଂକର ଜାତିଠାରୁ ଅନ୍ନ ଭୋଜନ କଲେ ବ୍ରାହ୍ମଣତ୍ୱ ତ୍ୟାଗ କରି ଶୂଦ୍ରତ୍ୱ ପ୍ରାପ୍ତ ହୁଏ । ହେ ଦେବି ! ଶୁଦ୍ଧ ଚିତ୍ତ ଓ ଜିତେନ୍ଦ୍ରିୟ ଶୂଦ୍ର ମଧ୍ୟ ପବିତ୍ର କର୍ମବଳରେ ବ୍ରାହ୍ମଣତ୍ୱ ପ୍ରାପ୍ତ ହୋଇ ସମ୍ମାନିତ ହୁଏ । ବ୍ରହ୍ମାଙ୍କ ଆଜ୍ଞା ଅନୁସାରେ ଓ ମୋ ମତରେ ମଧ୍ୟ ପବିତ୍ର ସ୍ୱଭାବ ଓ ପବିତ୍ର କର୍ମକାରୀ ଶୂଦ୍ରକୁ ଦ୍ୱିଜାତିଠାରୁ ଶ୍ରେଷ୍ଠ ବୋଲି ଜାଣିବ ।

ନ ଯୋନିର୍ନାପି ସଂସ୍କାରୋ ନ ଶ୍ରୁତଂ ନ ଚ ସନ୍ତତିଃ ।
କାରଣାନି ଦ୍ୱିଜତ୍ୱସ୍ୟ ବୃତ୍ତମେବ ତୁ କାରଣମ୍ ॥
ସର୍ବୋଽୟଂ ବ୍ରାହ୍ମଣୋ ଲୋକେ ବୃତ୍ତେନ ତୁ ବିଧୀୟତେ ।
ବୃତ୍ତେ ସ୍ଥିତସ୍ତୁ ଶୂଦ୍ରୋଽପି ବ୍ରାହ୍ମଣତ୍ୱଂ ନିୟଚ୍ଛତି ॥
ବ୍ରାହ୍ମସ୍ୱଭାବଃ ସୁଶ୍ରୋଣି ସମଃ ସର୍ବତ୍ର ମେ ମତଃ ।
ନିର୍ଗୁଣଂ ନିଷ୍କଳଂ ବ୍ରହ୍ମ ଯତ୍ର ତିଷ୍ଠତି ସ ଦ୍ୱିଜଃ ॥

ମହା ଭା: ଅନୁ: ୧୪୩।୫୦-୫୨ ॥

ବ୍ରାହ୍ମଣତ୍ୱ ବିଷୟରେ ଯୋନି କାରଣ ନୁହେଁ; ସଂସ୍କାର, ଶାସ୍ତ୍ରଜ୍ଞାନ ଓ ସନ୍ତତି ମଧ୍ୟ କାରଣ ନୁହେଁ, କେବଳ ଉତ୍ତମ ଚରିତହିଁ ବ୍ରାହ୍ମଣତ୍ୱର ପରିଚାୟକ । ଜଗତରେ କେବଳ ଚରିତଦ୍ୱାରା ବ୍ରାହ୍ମଣ ପରିଚିତ ହୁଏ । ଉତ୍ତମ ଚରିତଯୁକ୍ତ ଶୂଦ୍ର ମଧ୍ୟ ବ୍ରାହ୍ମଣତ୍ୱ ପଦ ପ୍ରାପ୍ତ ହୋଇପାରେ । ହେ କଲ୍ୟାଣି ! ବ୍ରାହ୍ମଣର ସ୍ୱଭାବ ସର୍ବତ୍ର ସମାନ, ଏହା ଆମ୍ଭେ ଜାଣିଅଛୁଁ । ନିର୍ଗୁଣ ଓ ନିର୍ମଳ ବ୍ରହ୍ମ ଯାହାଙ୍କ ହୃଦୟରେ ପ୍ରକାଶିତ, ସେହି ବ୍ରହ୍ମସ୍ୱରୂପ ବ୍ରାହ୍ମଣ ଅଟନ୍ତି ।

ଉପନିଷଦରେ ମଧ୍ୟ ଉକ୍ତ ଅଛି—

"ବ୍ରହ୍ମବିତ୍ ସ ଏବ ବ୍ରାହ୍ମଣଃ ॥"

ନିରାଲମ୍ବୋପନିଷତ୍ ॥

ପ୍ରକୃତରେ ଯେ ବ୍ରହ୍ମବିତ୍, ଅର୍ଥାତ୍ ବ୍ରହ୍ମଙ୍କଠାରେ ଐକାନ୍ତିକ ଭାବରେ ନିମଗ୍ନ, ସେହି କେବଳ ବ୍ରାହ୍ମଣ ଅଟେ । ସାରକଥା ଏହି ଯେ, ବ୍ରହ୍ମଉପାସକ କେବଳ ବ୍ରାହ୍ମଣ ପଦବାଚ୍ୟ । ଏହି କାରଣରୁ ମହର୍ଷି ନାରଦ ଭକ୍ତିମୀମାଂସା ଗ୍ରନ୍ଥରେ ଜାତି ଓ ବିଦ୍ୟା ଅଭିମାନ ପ୍ରତ୍ୟାଖ୍ୟାନ କରିଅଛନ୍ତି—

ନାସ୍ତି ତେଷୁ ଜାତିବିଦ୍ୟା ରୂପକୁଳଧନକ୍ରିୟାଦିଭେଦଃ—॥ ୭୬ ॥

ଭକ୍ତମାନଙ୍କ ବିଷୟରେ ଜାତି, ବିଦ୍ୟା, ରୂପ, କୁଳ, ଧନ ଏବଂ କ୍ରିୟା ଆଦି ଭେଦର ବିଚାର ନାହିଁ * । ସେମାନଙ୍କ ମଧ୍ୟରେ ବ୍ରାହ୍ମଣ, ଶୂଦ୍ର, ଚଣ୍ଡାଳ ବା ମ୍ଳେଚ୍ଛ ଭେଦ ଅବା କିଅଣ ରହିପାରେ ? ଭକ୍ତଙ୍କ ବିଷୟରେ ସୁରୂପ, କୁରୂପ, ପଣ୍ଡିତ, ମୂର୍ଖ, ଧନୀ ଓ ଦରିଦ୍ର ବିଚାର ରହିଲେ ପୃଥିବୀରେ ଆଉ ଶାନ୍ତିର ସ୍ଥାନ ରହି ପାରିବ ନାହିଁ ।

ଯେ କୌଣସି ବ୍ୟକ୍ତି ବ୍ରହ୍ମ-ଭକ୍ତିପରାୟଣ ହେଲେ ପରମଗତି ପ୍ରାପ୍ତ ହୋଇପାରନ୍ତି— ଏ ବିଷୟରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଅଛନ୍ତି—

---

* ପ୍ରଭୁ ପରଂବ୍ରହ୍ମଙ୍କ ସ୍ମରଣ ଭଜନରେ ଜାତି-କୁଳାଦି ଅଭିମାନ ଅଷ୍ଟପାଶ ମଧ୍ୟ ଛିନ୍ନ ହୋଇଯାଏ ।

ଅଷ୍ଟପାଶ, ଯଥା :—ଘୃଣା ଶଙ୍କା ଭୟଂ ଲଜ୍ଜା ଜୁଗୁପ୍ସା ଚେତି ପଞ୍ଚମୀ । କୁଳଂ ଶୀଳଞ୍ଚ ମାନଞ୍ଚ ଅଷ୍ଟପାଶାଃ ପ୍ରକୀର୍ତ୍ତିତାଃ ॥ (ଆଗମୋକ୍ତ)

ଇମଂ ଧର୍ମଂ ସମାସ୍ଥାୟ ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋ ବୈଶ୍ୟାଃ ତଥା ଶୂଦ୍ରାସ୍ତେଽପି ଯାନ୍ତି ପରାଂ ଗତମ୍ ॥
କିଂ ପୁନର୍ବ୍ରାହ୍ମଣାଃ ପାର୍ଥ କ୍ଷତ୍ରିୟା ବା ବହୁଶ୍ରୁତାଃ ।
ସ୍ୱଧର୍ମରତୟୋ ନିତ୍ୟଂ ବ୍ରହ୍ମଲୋକପରାୟଣାଃ ॥

ମହାଭାରତ ଆଶ୍ୱ:—ଅନୁଗୀତା—୧୯।୬୧-୬୨ ।

ହେ ପାର୍ଥ ! ସ୍ୱଧର୍ମରେ ରତ, ବ୍ରହ୍ମଲୋକପରାୟଣ ବ୍ରାହ୍ମଣ ଓ ବହୁଶ୍ରୁତ କ୍ଷତ୍ରିୟର କଥା ବା କ'ଣ କହିବ, ପାପଯୋନିରେ ଉତ୍ପନ୍ନ ହୋଇଥିବା ପୁରୁଷ, ସ୍ତ୍ରୀ, ବୈଶ୍ୟ ଓ ଶୂଦ୍ର ଲୋକ ମଧ୍ୟ ଏହି ମୋକ୍ଷ ଧର୍ମ ଅବଲମ୍ବନ କଲେ ପରମଗତି ପ୍ରାପ୍ତ ହୁଅନ୍ତି ।

ଏହି ମହିମା ଧର୍ମ ଉପଦେଶ ଗ୍ରହଣ କରିବା ନିମନ୍ତେ ଯେପରି କୌଣସି ପ୍ରକାର ଜାତିଭେଦର କଳ୍ପନା ନାହିଁ, ସେହିପରି ବାଲ୍ୟ ଯୌବନାଦି କୌଣସି ଅବସ୍ଥାଭେଦ ମଧ୍ୟ ନାହିଁ । ଯେ କୌଣସି ଅବସ୍ଥାରେ ଆତ୍ମଜ୍ଞାନ ଜାତ ହେଲେ, ସଦାଗୁରୁ ଧର୍ମମାର୍ଗରେ ରତ ହୋଇ ସତ୍ୟଧର୍ମ-ଉପଦେଶ ଗ୍ରହଣ କରି ଐକାନ୍ତିକ ନିଷ୍ଠା ସହି ପରମମୁକ୍ତି ପ୍ରାପ୍ତ ହେବେ ।

୦—ସତ୍ୟଧର୍ମପରାୟଣ ହେବା ନିମନ୍ତେ ଆୟୁଷକୁ ଅପେକ୍ଷା କରିବା ବିବେକୀ ବ୍ୟକ୍ତିର କର୍ତ୍ତବ୍ୟ ନୁହେଁ—

ଆୟୁଃ ପଲ୍ଲବକୋଣାଗ୍ରଲମ୍ବାମ୍ବୁକଣଭଙ୍ଗୁରମ୍ ।
ଉନ୍ମତ୍ତ ଇବ ସନ୍ତ୍ୟଜ୍ୟ ଯାମ୍ୟକାଣ୍ଡେ ଶରୀରକମ୍ ॥
ବିଷୟାଶୀବିଷାସଙ୍ଗପରିଜର୍ଜରଚେତସାମ୍ ।
ଅପ୍ରୌଢ଼ାତ୍ମବିବେକାନାମାୟୁରାୟାସକାରଣମ୍ ॥
ଯୁଜ୍ୟତେ ବେଷ୍ଟନଂ ବାୟୋରାକାଶସ୍ୟ ଚ ଖଣ୍ଡନମ୍ ।
ଗ୍ରଥନଂ ଚ ତରଙ୍ଗାଣାମାସ୍ଥା ନାୟୁଷି ଯୁଜ୍ୟତେ ॥
ପ୍ରାପ୍ୟଂ ସଂପ୍ରାପ୍ୟତେ ଯେନ ଭୂୟୋ ଯେନ ନ ଶୋଚ୍ୟତେ ।
ପରାୟା ନିର୍ବୃତେଃ ସ୍ଥାନଂ ଯତ୍ତଜ୍ଜୀବିତମୁଚ୍ୟତେ ॥

ମହୋପ ନି: ୩।୪—୧୨

ଜୀବର ଆୟୁଷ ବୃକ୍ଷାଗ୍ରସ୍ଥିତ ପଲ୍ଲବାଗ୍ରରେ ଥିବା ଜଳକଣା ତୁଲ୍ୟ କ୍ଷଣସ୍ଥାୟୀ; ଜୀବ ଉନ୍ମତ୍ତ ଭଳି ସେହି ଆୟୁଷକୁ ତ୍ୟାଗ କରି ଅକସ୍ମାତ୍ କୁତ୍ସିତ ଶରୀରରେ ପ୍ରବେଶ କରେ ।

ବିଷସ୍ୱରୂପ ସର୍ପର ସଙ୍ଗବଶତଃ ଯେଉଁମାନଙ୍କର ଚିତ୍ତ ଜର୍ଜର ହୋଇଅଛି ଏବଂ ଯେଉଁମାନଙ୍କର ବିବେକ ଜ୍ଞାନ ଉଦିତ ହୋଇନାହିଁ, ସେମାନଙ୍କ ପକ୍ଷରେ ଆୟୁଷ ଆୟାସ ହୋଇପାରେ । ବାୟୁକୁ ବେଷ୍ଟନ, ଆକାଶର ଛେଦନ ଏବଂ ତରଙ୍ଗସମୂହର ଗ୍ରନ୍ଥନ ମଧ୍ୟ ସମ୍ଭବ ହୋଇପାରେ; କିନ୍ତୁ ଆୟୁଷରେ ଆସ୍ଥା ସମ୍ଭବପର ନୁହେ । ଯାହାଦ୍ୱାରା ପ୍ରାପ୍ୟବସ୍ତୁ ମିଳେ, ଅଥବା ଲୋକ ଶୋକଗ୍ରସ୍ତ ହୁଏ ନାହିଁ; ସେହି ଜୀବନ ପରମଶାନ୍ତିର ନିକେତନ ।

**ତରବୋଽପି ହି ଜୀବନ୍ତି ଜୀବନ୍ତି ମୃଗପକ୍ଷିଣଃ ।**
**ସଜୀବତି ମନୋ ଯସ୍ୟ ମନନେନୋପଜୀବତି ॥**
**ଜାତାସ୍ତଏବ ଜଗତି ଜନ୍ତବଃ ସାଧୁଜୀବିତାଃ ।**
**ଯେ ପୁନର୍ନେହ ଜାୟନ୍ତେ ଶେଷାଃ ଜରଠଗର୍ଦ୍ଦଭାଃ ॥**

ମହୋପନିଷତ୍—୩।୧୩—୧୪

ବୃକ୍ଷ ଓ ପଶୁପକ୍ଷୀଗଣ ଅବଶ୍ୟ ଜୀବନଧାରଣ କରନ୍ତି; କିନ୍ତୁ ସେପରି ଜୀବନର ଫଳ କଅଣ ? ଯାହାର ମନ ମନନଦ୍ୱାରା ବା ଶାନ୍ତିରେ ଅବସ୍ଥାନ କରେ; ସେହି ବ୍ୟକ୍ତି କେବଳ ଜୀବନଧାରଣ କରିଅଛି ବୋଲି ଗଣାଯାଏ । ଏହି ଜଗତରେ ଯେଉଁମାନେ ପୁନର୍ବାର ଜନ୍ମଗ୍ରହଣ କରନ୍ତି ନାହିଁ; ସେହିମାନେ କେବଳ ସାଧୁ, ସେହିମାନେ କେବଳ ଯଥାର୍ଥରେ ଜନ୍ମଗ୍ରହଣ କରିଛନ୍ତି ବୋଲି ଧରାଯିବ । ତଦ୍‌ଭିନ୍ନ ଅନ୍ୟ ସମସ୍ତେ ବୃଦ୍ଧ ଗର୍ଦ୍ଦଭ ତୁଲ୍ୟ । ଅର୍ଥାତ୍ ଗର୍ଦ୍ଦଭ ବୃଦ୍ଧ ହେଲେ ମଧ୍ୟ ଯେପରି ତାହାର ଭାର ବହନର ନିବୃତ୍ତି ନାହିଁ, ସେହିପରି ଅଜ୍ଞମାନଙ୍କର ଜନ୍ମର ମଧ୍ୟ ନିବୃତ୍ତି ନାହିଁ ।

ଏ ବିଷୟରେ ମନୁଙ୍କ ବଚନ—

**ନ ତେନ ବୃଦ୍ଧୋ ଭବତି ଯେନାସ୍ୟ ପଳିତଂ ଶିରଃ ।**
**ଯେ ବୈ ଯୁବାପ୍ୟଧୀୟାନସ୍ତଂ ଦେବାଃ ସ୍ଥବିରଂ ବିଦୁଃ ॥**

ମନୁ: ୨।୧୫୬ । ମହାଭାରତ ବନ:—୧୩୩।୧୧

କେବଳ ବାଳ ପାଚିବାଦ୍ୱାରା ମନୁଷ୍ୟ ବୃଦ୍ଧ ହୁଏ ନାହିଁ । ଯୁବକ ହୋଇ ମଧ୍ୟ ଯେ ସର୍ବଦା ଅଧ୍ୟୟନଶୀଳ ଓ ଶ୍ରବଣ ମନନ ଆଦିରେ ନିଯୁକ୍ତ, ଦେବତାମାନେ ତାକୁ ମଧ୍ୟ ବୃଦ୍ଧ ବୋଲି ଜାଣନ୍ତି ।

ଗୌତମ ବୁଦ୍ଧ ମଧ୍ୟ ଏପରି କହିଅଛନ୍ତି—

**ନ ତେନ ଥେରୋ ହୋତି ଯେନ ସ୍ସ ପଳିତଂ ଶିରୋ ।**
**ପରିପକ୍କୋ ବୟୋ ତସ୍ସ ମୋଘ ଜିଣ୍ଣୋତି ବୁଚ୍ଚତି ॥** ଧର୍ମ୍ମପଦ ।

ଯାହାର ଧର୍ମାଚରଣ ବିନା ସମଗ୍ର କେଶ ପରିପକ୍ୱ, ତାହାର ଜୀବନ ବ୍ୟର୍ଥ । ପ୍ରକୃତ ଧାର୍ମିକ ଓ ବୃଦ୍ଧ ହେବାକୁ ହେଲେ ଅହିଂସା ଇତ୍ୟାଦି ସଦ୍‌ଗୁଣଭୂଷିତ ହେବା ନିତାନ୍ତ ଆବଶ୍ୟକ ।

ଏ ବିଷୟରେ ବ୍ୟାସଦେବ ମଧ୍ୟ ଲେଖିଅଛନ୍ତି—

**ନ ଧର୍ମ କାଲଃ ପୁରୁଷ ସ୍ତ୍ର ନିଶ୍ଚିତୋ**
**ନ ଚାପି ମୃତ୍ୟୁଃ ପୁରୁଷଂ ପ୍ରତୀକ୍ଷତେ ।**
**ସଦା ହି ଧର୍ମସ୍ୟ କ୍ରିୟୈବ ଶୋଭନା**
**ଯଦା ନରୋ ମୃତ୍ୟୁମୁଖେଽଭିବର୍ତ୍ତତେ ॥**

ମହାଭାରତ ଶାଃ ୨୯୮।୧୮

ମୃତ୍ୟୁ ମନୁଷ୍ୟକୁ ପ୍ରତୀକ୍ଷା କରେ ନାହିଁ, ସୁତରାଂ ତାହାର ଧର୍ମ ସାଧନ ବିଷୟରେ କୌଣସି ନିର୍ଦ୍ଦିଷ୍ଟ କାଳ ନାହିଁ । ମନୁଷ୍ୟ ନିଶ୍ଚୟ ମୃତ୍ୟୁ ମୁଖରେ ପଡ଼ିବ, ଅତଏବ ସମୟାସମୟ ନ ବିଚାରି ସର୍ବଦା ଧର୍ମାନୁଷ୍ଠାନ କରିବ ।

ଏ ବିଷୟରେ ପ୍ରହ୍ଲାଦଙ୍କର ସଦୁକ୍ତି ଏହିପରି—

**କୌମାର ଆଚରେତ୍ ପ୍ରାଜ୍ଞୋ ଧର୍ମାନ୍ ଭାଗବତାନିହ ।**
**ଦୁର୍ଲଭଂ ମାନୁଷଂ ଜନ୍ମ ତଦପ୍ୟଧ୍ରୁବମର୍ଥଦମ୍ ॥**     ଭାଃ ୭।୬।୧ ।

ମାନବଜନ୍ମ ବହୁ ମୂଲ୍ୟବାନ୍, ଅତଏବ କୌମାର ସମୟରୁ ପ୍ରାଜ୍ଞଲୋକ ଭାଗବତ ସାରଭୂତ ସତ୍ୟଧର୍ମ ଅନୁଷ୍ଠାନ କରିବ; କାରଣ, ମନୁଷ୍ୟଜନ୍ମ ଅତି ଦୁର୍ଲଭ ଓ ଏହା ଅନିତ୍ୟ । ଅତଃ ଯଥାଶୀଘ୍ର ଧର୍ମାଚରଣ କରିବା ବିଧେୟ ।

**ଶ୍ୱଃ କାର୍ଯ୍ୟମଦ୍ୟ କୁର୍ବୀତ ପୂର୍ବାହ୍ଣେ ଚାପରାହ୍ଣିକମ୍ ।**
**ନ ହି ପ୍ରତୀକ୍ଷତେ ମୃତ୍ୟୁଃ କୃତମସ୍ୟ ନବା କୃତମ୍ ॥**
**କୋହି ଜାନାତି କସ୍ୟାଦ୍ୟ ମୃତ୍ୟୁକାଲୋ ଭବିଷ୍ୟତି ।**
**ଯୁବୈବ ଧର୍ମଶୀଳଃ ସ୍ୟାଦନିତ୍ୟଂ ଖଲୁ ଜୀବିତମ୍ ॥**
**କୃତେ ଧର୍ମେ ଭବେତ୍ କୀର୍ତ୍ତିରିହପ୍ରେତ୍ୟ ଚ ବୈ ସୁଖମ୍ ।**

ମହାଭାରତ ଶାଃ ୧୭୫ । ୧୫-୧୬ ।

କାଲର କାର୍ଯ୍ୟ ଆଜ କରିବ ଓ ଅପରାହ୍ଣର କାର୍ଯ୍ୟ ପୂର୍ବାହ୍ଣରେ କରିବ, କେଉଁ ସମୟରେ କେଉଁ କାର୍ଯ୍ୟ କରାଗଲା ବା କରାଗଲା ନାହିଁ, ମୃତ୍ୟୁ ତାହାର ଅପେକ୍ଷା କରେ ନାହିଁ । ମୃତ୍ୟୁ କେବେ ଉପସ୍ଥିତ ହେବ ସେ କଥା କିଏ ଜାଣେ ? ଅତଏବ ଯୌବନ କାଳରେ ଧର୍ମଶୀଳ ହେବ । ଜୀବନ ଅନିତ୍ୟ; ଧର୍ମାନୁଷ୍ଠାନରେ ଇହ ଓ ପରତ୍ର କୀର୍ତ୍ତି ଓ ସୁଖଲାଭ ହୁଏ ।

ଏ ବିଷୟରେ ଆଚାର୍ଯ୍ୟ ଶଙ୍କର କହନ୍ତି—

**ଯାବନ୍ନାଶ୍ରୟତେ ରୋଗୋ ଯାବନ୍ନାଶ୍ରୟତେ ଜରା ।**
**ଯାବନ୍ନଧୀର୍ବିପର୍ଯେତ ଯାବନ୍ମୃତ୍ୟୁଂ ନ ପଶ୍ୟତ ॥**
**ତାବଦେବ ନରଃ ସ୍ୱସ୍ଥଃ ସାରଗ୍ରହଣତତ୍ପରଃ ।**
**ବିବେକୀ ପ୍ରଯତେତାଶୁ ଭବବନ୍ଧବିମୁକ୍ତୟେ ॥**

ସର୍ବବେଦାନ୍ତସାର ସଂ—୨୪୪-୨୪୫ ।

ଯେଉଁ ପର୍ଯ୍ୟନ୍ତ ବ୍ୟାଧି ଶରୀରକୁ ଆଶ୍ରୟ ନ କରିଛି, ଯେ ପର୍ଯ୍ୟନ୍ତ ବାର୍ଦ୍ଧକ୍ୟ ଶରୀରକୁ ଗ୍ରାସ ନ କରିଅଛି ବା ବୁଦ୍ଧିର ବିପର୍ଯ୍ୟୟ ଘଟିନାହିଁ, ମୃତ୍ୟୁ ସମ୍ମୁଖରେ ଉପସ୍ଥିତ ହୋଇନାହିଁ, ତତ୍ପୂର୍ବରୁ ସାରଗ୍ରାହୀ ସୁସ୍ଥ ମାନବ ବିବେକସମ୍ପନ୍ନ ହୋଇ ସଂସାର-ବନ୍ଧନରୁ ମୁକ୍ତି ପାଇବା ସକାଶେ ପ୍ରଯତ୍ନ କରିବ ।

**୦—ଇହ ଓ ପରକାଳକୁ ଧର୍ମ କାର୍ଯ୍ୟ ଭିନ୍ନ ଅନ୍ୟ କେହି ସହାୟକ ନୁହେଁ ।**

**ଏକ ଏବ ସୁହୃଦ୍ଧର୍ମୋ ନିଧନେଽପ୍ୟନୁଯାତି ଯଃ ।**
**ଶରୀରେଣ ସମଂ ନାଶଂ ସର୍ବମନ୍ୟଦ୍ଧି ଗଚ୍ଛତି ॥**

ମନୁ—୮।୧୭ ॥

ଧର୍ମ କେବଳ ଏକମାତ୍ର ମିତ୍ର, ଯେ କି ମୃତ୍ୟୁ ସମୟରେ ମଧ୍ୟ ଅନୁଗାମୀ ହୁଏ । ମନୁଷ୍ୟର ଅନ୍ୟ ସକଳ ବିଷୟ ଶରୀର ସହିତ ବିନାଶପ୍ରାପ୍ତ ହୁଏ ।

**ଏକଃ ପ୍ରସୂତେ ଯୋ ବିପ୍ରାଃ ଏକ ଏବ ହି ନଶ୍ୟତି ।**
**ଏକସ୍ତରତି ଦୁର୍ଗାଣି ଗଚ୍ଛତ୍ୟେକସ୍ତୁ ଦୁର୍ଗତିମ୍ ॥**
**ଅସହାୟଃ ପିତା ମାତା ତଥା ଭ୍ରାତା ସୁତୋ ଗୁରୁଃ ।**
**ଜ୍ଞାତିସମ୍ବନ୍ଧିବର୍ଗଶ୍ଚ ମିତ୍ରବର୍ଗସ୍ତଥୈବ ଚ ॥**

ମୃତଂ ଶରୀରମୁତ୍ସୃଜ୍ୟ କାଷ୍ଠଲୋଷ୍ଟ୍ରସମଂ ଜନାଃ ।
ମୁହୂର୍ତ୍ତମପି ରୋଦତ୍ୱା ତତୋ ଯାନ୍ତି ପରାଙ୍ମୁଖାଃ ॥
ତୈସ୍ତଚ୍ଛରୀରମୁତ୍ସୃଷ୍ଟଂ ଧର୍ମୋ ଏକୋଽନୁଗଚ୍ଛତ ।
ତସ୍ମାଦ୍ଧର୍ମସହାୟଶ୍ଚ ସେବତବ୍ୟଃ ସଦା ନୃଭିଃ ॥
ପ୍ରାଣୀ ଧର୍ମ ସମାଯୁକ୍ତୋ ଗଚ୍ଛେତ୍ ସ୍ୱର୍ଗଗତଂ ପରମ୍ ।
ତଥୈବାଧର୍ମସଂଯୁକ୍ତୋ ନରକତ୍ୱଂ ଚୋପପଦ୍ୟତେ ॥
ତସ୍ମାତ୍ ପାପାଗତୈରର୍ଥୈର୍ନାନୁରଜ୍ୟେତ ପଣ୍ଡିତଃ ।
ଧର୍ମ ଏକୋ ମନୁଷ୍ୟାଣାଂ ସହାୟଃ ପରକୀର୍ତ୍ତିତଃ ॥

ବ୍ରହ୍ମପୁରାଣ ୨୧୭।୪-୯ ।

ବ୍ୟାସ କହି ଅଛନ୍ତି—ହେ ଋଷିଗଣ ! ଜୀବ ଏକାକୀ ପ୍ରସୂତ ହୁଏ ଓ ଏକାକୀ ମୃତ୍ୟୁ ଲାଭ କରେ; ଏକାକୀ ଦୁର୍ଗ ସକଳ ଅତିକ୍ରମ କରେ ଏବଂ ଏକାକୀ ନରକକୁ ମଧ୍ୟ ଯାଏ । ପିତା, ମାତା, ଭ୍ରାତା, ଗୁରୁ, ପୁତ୍ର, ଜ୍ଞାତି, ସମ୍ବନ୍ଧୀ ବା ବନ୍ଧୁବର୍ଗ କେହି ତାହାର ସାଙ୍ଗରେ ଯାଆନ୍ତି ନାହିଁ । ମନୁଷ୍ୟମାନେ ମୃତ ଶରୀରକୁ କାଷ୍ଠ ବା ଲୋଷ୍ଟ୍ର ଭଳି ତ୍ୟାଗ କରି କିଛିସମୟ ରୋଦନ କରନ୍ତି ଓ ତା'ପରେ ପରାଙ୍ମୁଖ ହୋଇ ଚାଲିଯାଆନ୍ତି । ମୃତ ଲୋକର ଅନୁଗମନ କରେ କେବଳ ଧର୍ମ । ଅତଏବ ମନୁଷ୍ୟର ପ୍ରକୃତ ସହାୟ ଧର୍ମ କେବଳ ସତତ କରଣୀୟ । ପ୍ରାଣୀ ଧର୍ମଯୁକ୍ତ ହୋଇ ପରମ ସ୍ୱର୍ଗକୁ ଗତି କରେ; କିନ୍ତୁ ଅଧର୍ମ କରିଥିଲେ ନରକଗାମୀ ହୁଏ । ଅତଏବ ପଣ୍ଡିତ ବ୍ୟକ୍ତି ପାପକାର୍ଯ୍ୟରେ ଲିପ୍ତ ହେବେ ନାହିଁ । ମନୁଷ୍ୟମାନଙ୍କର ଏକମାତ୍ର ଧର୍ମହିଁ ସହାୟକ ବୋଲି ଶାସ୍ତ୍ରରେ କୀର୍ତ୍ତିତ ହୋଇଛି ।

**୦—ବଶିଷ୍ଠାଚାରର ମାହାତ୍ମ୍ୟ ।**

ଏବମାଚରତୋ ଦୃଷ୍ଟ୍ୱା ଧର୍ମସ୍ୟ ମୁନୟୋ ଗତମ୍ ।
ସର୍ବସ୍ୟ ତପସୋ ମୂଳମାଚାରଂ ଜଗୃହୁଃ ପରମ୍ ॥

ମନୁ—୧।୧୧୦ ।

ମୁନିମାନେ ସକଳ ଧର୍ମର ମୂଳକାରଣ ସଦାଚାର ହେତୁରୁ ଆଚାରକୁ ପରମଭାବରେ ଗ୍ରହଣ କରିଅଛନ୍ତି ।

**ଅପାପବାଦୀ ଭବତ ଯଥା ଭବତ ଧର୍ମ କୃତ୍ ।**
**ଧର୍ମସ୍ୟ ନିଷ୍ଠା ତ୍ୱାଚାରସ୍ତମେବାଶ୍ରିତ୍ୟ ଭେତ୍ସ୍ୟସେ ॥**

ମହାଭାରତ ଶାଃ ୨୫୯-୭ ।

ଧର୍ମଜ୍ଞାତା ପୁରୁଷ ଅପାପବାଦୀ ହେବା ସମୁଚିତ । ଆଚାର କେବଳ ଧର୍ମନିଷ୍ଠା ଅଟେ । ଏହି ହେତୁରୁ ତୁମ୍ଭେ ଏହି ଆଚାର ଅବଲମ୍ବନ କଲେ ଧର୍ମଜ୍ଞାନ ସକାଶେ ସମର୍ଥ ହେବ ।

**ଅଶକ୍ନୁବନ୍ତଶ୍ଚରତୁଂ କଞ୍ଚିଦ୍ଧର୍ମେଷୁ ସୂଚିତମ୍ ।**
**ନିରାପଦ୍ଧର୍ମ ଆଚାରୋ ହ୍ୟପ୍ରମାଦୋଽପରାଭବଃ ॥**

ମହାଭାରତ ଶା: ୨୬୯।୩୬

ସଦାଚାର କେବଳ ଆପଦ ରହିତ ଧର୍ମ ଅଟେ, ସେଥିରେ କୌଣସି ପ୍ରମାଦ ନାହିଁ । ସେପରି ଧାର୍ମିକ ଲୋକଙ୍କୁ କାମ କ୍ରୋଧ ଆଦି ଆକ୍ରମଣ କରିପାରନ୍ତି ନାହିଁ ।

**ଆଚାରମେବ ମନ୍ୟନ୍ତେ ଗରୀୟୋ ଧର୍ମଲକ୍ଷଣମ୍ ।**

ମହାଭାରତ ଶାନ୍ତି : ୧୨୮।୧୫

ଧର୍ମଜ୍ଞ ବ୍ୟକ୍ତିମାନେ ସଦାଚାରକୁ କେବଳ ଧର୍ମର ପ୍ରଧାନ ଲକ୍ଷଣ ବୋଲି ମନେ କରନ୍ତି ।

ଅଧ୍ୟାତ୍ମ ଶାସ୍ତ୍ରର ଅପରୋକ୍ଷ ଅନୁଭବ ବଶୀଭୂତ୍ଭଙ୍ଗ ଏହି ଜଗତରେ ମୂଳଭୂତ ଅମୃତ ତତ୍ତ୍ୱ ପରଂବ୍ରହ୍ମ ପରମାତ୍ମା, ତାହାଙ୍କୁ ଉଲ୍ଲିଖିତ ବିଶିଷ୍ଟାଚାର ମିଶ୍ରଯୋଗ ଅବଲମ୍ବନପୂର୍ବକ ଉପାସନା କରି ଯେପରି ମାନବ ପୂର୍ଣ୍ଣ ଶାନ୍ତିପଦ ଲାଭ କରିବାକୁ କ୍ଷମ ହୁଏ; ତାହା ଏହି ଅନୁପାଦରେ ସମ୍ୟକ୍ ବର୍ଣ୍ଣିତ ହେଲା ।

**ଇତ ଦ୍ୱିତୀୟପାଦସ୍ୟ ତୃତୀୟାନୁପାଦଃ ସମ୍ପୂର୍ଣ୍ଣଃ**

———

## ସର୍ବବେଦବେଦାନ୍ତସାରତତ୍ତ୍ୱ ଶିରୋମଣି

# ଅଲେଖ ପରଂବ୍ରହ୍ମ-ଦର୍ଶନ

### ଦ୍ୱିତୀୟପାଦସ୍ୟ ଚତୁର୍ଥାନୁପାଦଃ

## ବିଶୁଦ୍ଧାଦ୍ୱୈତବ୍ରହ୍ମବାଦଃ

### ଚିତ୍ତସଂଯମଯୋଗଃ

ବିଶୁଦ୍ଧାତ୍ମଜ୍ଞାନଭକ୍ତିଯୋଗସାଧନ ନିମନ୍ତେ ଯେପରି ବିଶିଷ୍ଟାଶ୍ରୟର ନୀତିର ଆବଶ୍ୟକତା ଥାଏ; ସେପରି ଚିତ୍ତସଂଯମ ମଧ୍ୟ ଅତ୍ୟନ୍ତ ଅପେକ୍ଷିତ । ବିଶିଷ୍ଟାଶ୍ରୟନୀତିଯୋଗ ବିଷୟ ପୂର୍ବେ ତୃତୀୟ ଅନୁପାଦରେ ବର୍ଣ୍ଣିତ ହୋଇଛି । ବର୍ତ୍ତମାନ ଏହି ଚତୁର୍ଥ ଅନୁପାଦରେ ଚିତ୍ତସଂଯମଯୋଗ ବିଷୟର ବ୍ୟାଖ୍ୟା କରାଯାଉଛି—

ଚିତ୍ତସଂଯମସାଧନ ସକଳ ସାଧନର ମୂଳଭିତ୍ତି ଏବଂ ତାହା ଅତି ଦୁଃସାଧ୍ୟ । ଏହି ହେତୁରୁ ଚିତ୍ତସଂଯମ ସାଧନ ସର୍ବାଦୌ କର୍ତ୍ତବ୍ୟ । ପ୍ରଥମତଃ ଆଚାର ନୀତିରେ ନିପୁଣ ନ ହେଲେ ଚିତ୍ତସଂଯମ ଅସମ୍ଭବ । ସୁତରାଂ, ନୈତିକ ଜୀବନଯାପନଦ୍ୱାରା କେବଳ ଚିତ୍ତର ସଂଯମ ସମ୍ଭବ ହୋଇପାରେ । ପ୍ରଥମେ ସଦାଚାର ନୀତି ଅବଲମ୍ବନ କରି ସତ୍ସଙ୍ଗ ଓ ଶାସ୍ତ୍ରାଧ୍ୟୟନଦ୍ୱାରା କାମକ୍ରୋଧାଦି ରିପୁମାନଙ୍କୁ ବିବେକ-ପ୍ରେରଣାରେ ସଂଯତ କରି କୁବାସନାସମୂହର ବିସର୍ଜନ ପୂର୍ବକ ଶୁଭବାସନାରେ ରତ ହେଲେ ଚିତ୍ତର ସ୍ଥିରତା ଲାଭ ହୁଏ ଏବଂ ଚିତ୍ତର ସ୍ଥିରତା ଆସିଲେ ମୁମୁକ୍ଷୁ ବିଶୁଦ୍ଧାତ୍ମଜ୍ଞାନ ଭକ୍ତିଯୋଗ ବିଷୟରେ ଅଧିକାରୀ ହୁଏ ।

ଠ—ଅସଂଯତ ଚିତ୍ତର ପରିଣାମ ।

ରତଂ ଗତଂ ନିତ୍ୟମସତ୍ ପ୍ରଦେଶେ ଶରୀରମାଂସଗ୍ରସନେନ ପୁଷ୍ଟମ୍ ।
ଦୁଷ୍ଟକ୍ରିୟା କର୍କଶ ଚଞ୍ଚୁଦଣ୍ଡମେକେକ୍ଷଣଂ ପୁଷ୍ଟତମୋଂଶୁକୃଷ୍ଣମ୍ ॥
ଦୂତେ ସମୁତ୍ସାରୟ ଶରଭୂତଂ ଦୁଶ୍ଚେଷ୍ଟିତଂ କର୍କଶମାରଟନ୍ତମ୍ ।
ଗନ୍ଧୋଦ୍‌ଗତଂ କାୟକୁଳାୟକୋଶାତ୍ ଦୋଷୋପଶାନ୍ତ୍ୟୈ ନିଜ
ଚିତ୍ତକାକମ୍ ॥

ଯୋଗବାଶିଷ୍ଠ—ଉପ: ୫୦।୬୮-୭୯ ।

ଚିତ୍ତ କାକ୍‌ସ୍ୱରୂପ ବର୍ଣ୍ଣିତ; ଏହାର ସାଦୃଶ୍ୟ ବିଷୟ କିପରି ତାହା ଶୁଣନ୍ତୁ । କାକ କୁତ୍ସିତ ପ୍ରଦେଶରେ ରହିବାକୁ ଚାହେଁ ଓ ତା'ର ଚିତ୍ତ ମଧ୍ୟ ସ୍ତ୍ରୀ ଚିହ୍ନ ପ୍ରତି ସର୍ବଦା ଆସକ୍ତ (?) କାକ ସର୍ବଦା ମାଂସ ଭକ୍ଷଣ ପ୍ରତି ଆସକ୍ତ ଓ ତଦ୍‌ଦ୍ୱାରା ତା'ର ଶରୀର ପୁଷ୍ଟ ହୁଏ, ଚିତ୍ତ ମଧ୍ୟ ଶରୀରରୂପୀ ମାଂସଖଣ୍ଡକୁ ନିଜର ଗର୍ଭୀକୃତ କରି ପରିପୁଷ୍ଟ ଓ ସେଥିରେ ଚିତ୍ତ ସର୍ବଦା ତୁଷ୍ଟ । କାକ ନିଜର ଚଞ୍ଚୁଦ୍ୱାରା ଅତି କର୍କଶ କାର୍ଯ୍ୟ କରେ; ଚିତ୍ତ ମଧ୍ୟ କୁବୃତ୍ତିଦ୍ୱାରା ପରର ମର୍ମଚ୍ଛେଦନରୂପ ଦୁଷ୍କର୍ମ କରେ । କାକର ଦୃଷ୍ଟି ନିଜ ସ୍ୱାର୍ଥ ଦିଗରେ ସର୍ବଦା ଥାଏ; ଚିତ୍ତର ମଧ୍ୟ ଦୃଷ୍ଟି ସ୍ୱାର୍ଥ, ଅର୍ଥାତ୍ ଲୋଭମୟ ପଦାର୍ଥ ପ୍ରତି ସର୍ବଦା ରହେ । କାକ ମଳିନ, ଚିତ୍ତ ମଧ୍ୟ ତାମସ ବୃତ୍ତିରୂପକ ମଳରେ ଆଚ୍ଛନ୍ନ ଥାଏ । କାକ ବୃକ୍ଷଦ୍ୱାରା ସର୍ବଦା ବଦ୍ଧମୟ । ଚିତ୍ତ ମଧ୍ୟ ଆତ୍ମାର ବୃଥା ବଦ୍ଧମୟ । କାକ କର୍କଶ ଶବ୍ଦ କରେ; ଚିତ୍ତ ମଧ୍ୟ ଜିହ୍ୱାଦ୍ୱାର କଠୋର ଶବ୍ଦଦ୍ୱାରା ବାହ୍ୟ ପ୍ରକଟିତ ହୁଏ । କାକ ଭକ୍ଷ୍ୟ ଦ୍ରବ୍ୟର ଗନ୍ଧ ପାଇବା ମାତ୍ରେ ତତ୍ପ୍ରତି ଉଦ୍ୟତ ଓ ଉତ୍ଥିତ ହୁଏ; ଚିତ୍ତ ମଧ୍ୟ ଦୁର୍ବାସନା ରୂପ ଗନ୍ଧରେ ଉଦ୍ୟତ ଓ ଉତ୍ଥିତ ହୁଏ । କାକ କୁଳାୟ ବା ବସା ଭିତରେ ରହେ, ଚିତ୍ତ ମଧ୍ୟ ଦେହରୂପକ ବିବରରେ ବାସ କରେ । ଏହି ଚିତ୍ତରୂପକ କାକ ଯେପରି ତୁମ୍ଭର ଦେହମଧ୍ୟରୁ ଉତ୍ସାରିତ ହେବ, ସେପରି ଅଚିରାତ୍ ଯତ୍ନ କର । ଯାହା କାକରୂପକରେ ବର୍ଣ୍ଣନା କରାଗଲା; ତାହା ପିଶାଚରୂପକରେ ମଧ୍ୟ ବର୍ଣ୍ଣନା କରାଯାଇ ପାରେ ।

ବିବେକବୈରାଗ୍ୟଗୁରୁପ୍ରଯତ୍ନମନ୍ତ୍ରୈଃ ସ୍ୱତନ୍ତ୍ରୈଃ ସ୍ୱଚିଦାତ୍ମଗେହାତ୍ ।
ନୋତ୍ସାଦୟେଚ୍ଚିତ୍ତ ପିଶାଚମେନଂ ଯାବତ୍ କୁତସ୍ତାବଦିହାତ୍ମ ସିଦ୍ଧିଃ ॥

ଯୋଗବାଶିଷ୍ଠ—ଉପ: ୫୦ । ୭୧ ॥

ଯେଉଁ ପର୍ଯ୍ୟନ୍ତ ତୁମେ ବିବେକ, ବୈରାଗ୍ୟ, ସାଧୁସଙ୍ଗ ଓ ପ୍ରଯତ୍ନ ରୂପ—ମନ୍ତ୍ରଦ୍ୱାରା ସେହି ଚିତ୍ତ-ପିଶାଚକୁ ଉତ୍ସାରିତ କରି ନ ପାରିଛ, ସେ ପର୍ଯ୍ୟନ୍ତ ତୁମ୍ଭର ଆତ୍ମସିଦ୍ଧିର ସମ୍ଭାବନା କମ୍ ।

ଏ ବିଷୟରେ ଗୀତାରେ ଏହିପରି ଉପଦେଶ ଦିଆଯାଇଛି—

**ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା ।**
**ନ ଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ ।।**
**ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁବିଧୀୟତେ ।**
**ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି ।।**

ଗୀତା—୨।୬୬।୬୭

ଅଜିତେନ୍ଦ୍ରିୟ ବ୍ୟକ୍ତିର ଆତ୍ମବିଷୟକ ବୁଦ୍ଧି ନାହିଁ । ଅତଏବ ସେ ଆତ୍ମବିଷୟକ ଚିନ୍ତା କରି ପାରେ ନାହିଁ । ଆତ୍ମଚିନ୍ତା ନ କରିବା ବ୍ୟକ୍ତିର ଶାନ୍ତି ଆସି ପାରେ ନାହିଁ; ଶାନ୍ତି ନ ଥିବା ବ୍ୟକ୍ତିର ସୁଖ ବା ମୋକ୍ଷଜନିତ ଆନନ୍ଦ କେଉଁଠାରୁ ହେବ ? ଯେଉଁ ଚିତ୍ତ ସ୍ୱେଚ୍ଛାଚାରୀ ଓ ଇନ୍ଦ୍ରିୟମାନଙ୍କ ଅଧୀନ, ସେହି ଚିତ୍ତ ବାୟୁକର୍ତ୍ତୃକ ସମୁଦ୍ରରେ ଇତସ୍ତତଃ ବିଘୂର୍ଣ୍ଣିତ ନୌକାପରି ଜୀବାତ୍ମାର ବୁଦ୍ଧିକୁ ବିଷୟଜ ଜ୍ଞାନରେ ବିକ୍ଷିପ୍ତ କରେ ।

ଏ ବିଷୟରେ ଶ୍ରୁତି ପ୍ରମାଣ—

**ନାବିରତୋ ଦୁଶ୍ଚରିତାନ୍ନାଶାନ୍ତୋ ନାସମାହିତଃ ।**
**ନାଶାନ୍ତମାନସୋ ବାପି ପ୍ରଜ୍ଞାନେନୈନମାପ୍ନୁୟାତ୍ ।।**

କଠ: ୧ । ୨ । ୨୪ ।।

ଯେଉଁ ବ୍ୟକ୍ତି ଦୁଷ୍କର୍ମରୁ ବିରତ ନୁହେଁ, ଅଥବା ଇନ୍ଦ୍ରିୟାସକ୍ତିରୁ ମୁକ୍ତ ହୋଇନାହିଁ, ଏବଂ ଯାହାର ଚିତ୍ତ ସମାହିତ ବା ପରମାତ୍ମାଙ୍କ ଚିନ୍ତାରେ ନିଯୁକ୍ତ ହୋଇ ନାହିଁ ଅଥବା କର୍ମଫଳ କାମନାସକ୍ତ ହେତୁରୁ ଯାହାର ମନ ଶାନ୍ତ ନୁହେଁ, ସେପରି ବ୍ୟକ୍ତି କେବଳ ଜ୍ଞାନଲାଭଦ୍ୱାରା ପରମାତ୍ମାଙ୍କୁ ପ୍ରାପ୍ତ ହୁଏ ନାହିଁ ।

**ଠ—କାମାଦିଷଡ୍‌ରିପୁର ବିବରଣ ଓ ତତ୍ତ୍ୱଜ୍ଞାନଦ୍ୱାରା କେବଳ ସେମାନଙ୍କୁ ସଂଯତ କରାଯାଏ ।**

କାମାଦିଷଡ଼ରିପୁ ଦମନ

**କାମଂ କ୍ରୋଧଂ ମଦଂ ମୋହଂ ମାତ୍ସର୍ଯ୍ୟଂ ଲୋଭମେବଚ ।**
**ଅମୂନ୍ ଷଡ୍‌ବୈରିଣୋ ଜିତ୍ୱା ସର୍ବତ୍ର ବିଜୟୀ ଭବେତ୍ ।।**

କାଶୀ ଖଣ୍ଡ—୩.୫ । ୩୪

କାମ, କ୍ରୋଧ, ମଦ, ମୋହ, ମାତ୍ସର୍ଯ୍ୟ ଓ ଲୋଭ—ଏହି ଷଡ଼୍‌ରିପୁଙ୍କୁ ଜୟ କଲେ ସର୍ବତ୍ର ବିଜୟୀ ହେବ ।

ଯୋଽଭିଳାଷଃ ପରସ୍ତ୍ରୀଷୁ ବିଭବୋପାର୍ଜ୍ଜନାଦଷୁ ।
ବର୍ତ୍ତିତେ ବ୍ରାହ୍ମଣଶ୍ରେଷ୍ଠସକାମ ଇତି କଥ୍ୟତେ ॥
ସମାକର୍ଣ୍ଣ୍ୟାତ୍ମନୋ ନିନ୍ଦାଂ ଯସ୍ତାପୋ ହୃଦି ଜାୟତେ ।
ସ କ୍ରୋଧ ଇତି ବିଜ୍ଞେୟଃ ସର୍ବଧର୍ମ୍ମାଭିଘାତକଃ ॥
ପରବିତ୍ତାଦିକଂ ଦୃଷ୍ଟ୍ୱା ନେତୁଂ ଯୋ ହୃଦି ଜାୟତେ ॥
ଅଭିଳାଷୋ ଦ୍ୱିଜଶ୍ରେଷ୍ଠ ସ ଲୋଭ ଇତି କୀର୍ତ୍ତିତଃ ॥
ମମ ମାତା ମମ ପିତା ମମେୟଂ ଗୃହିଣୀ ଗୃହମ୍ ।
ଏବ ବିଧଂ ମମତ୍ୱଂ ଯତ୍ ସ ମୋହ ଇତି କୀର୍ତ୍ତିତଃ ॥
ଅହଂ ମହାତ୍ମା ଧନବାନ୍ ମତ୍ତୁଲ୍ୟଃ କୋଽସ୍ତି ଭୂତଳେ ।
ଇତି ଯଜ୍ଜାୟତେ ଚିତ୍ତେ ମଦଃ ପ୍ରୋକ୍ତଃ ସ କୋବିଦୈଃ ॥
ନିନ୍ଦନ୍ତୁ ମାଂ ସଦା ଲୋକା ଧିଗସ୍ତୁ ମମଜୀବନମ୍ ।
ଇତ୍ୟାତ୍ମନି ଭବେଦ୍ ଯସ୍ତୁ ଧିକ୍‌କାରଃ ସ ଚ ମତ୍ସରଃ ॥
ଅହଂ ସମସ୍ତଲୋକାନାଂ ଶ୍ରେଷ୍ଠୋଽସ୍ମି ଧନବାନ୍ ଯତଃ ।
ଇତି ଯଜ୍ଜାୟତେ ଚିତ୍ତେ ମତ୍ସରଃ ପରିକୀର୍ତ୍ତିତଃ ॥

ପଦ୍ମ: ପୁ: କ୍ରି ଯୋ—୧୨।୮୭।୯୩

ହେ ଦ୍ୱିଜବର ! କାମିନୀକାଞ୍ଚନବିଷୟକ ଅଭିଳାଷର ନାମ କାମ । ଆତ୍ମନିନ୍ଦା ଶ୍ରବଣ କରି ହୃଦୟରେ ଯେଉଁ ତାପ ଜାତ ହୁଏ, ତାହାର ନାମ କ୍ରୋଧ ଓ ଏହା ସର୍ବ ଧର୍ମବିଘାତକ ବୋଲି ଜାଣିବ । ହେ ଦ୍ୱିଜଶ୍ରେଷ୍ଠ ! ପରବିତ୍ତ ଦେଖି ତାହାର ଗ୍ରହଣ ନିମନ୍ତେ ଅଭିଳାଷର ନାମ ଲୋଭ । ମୋହର ପିତା, ମାତା, ଗୃହିଣୀ ବା ଗୃହ—ଏପରି ମମତା ଜ୍ଞାନକୁ ମୋହ କୁହାଯାଏ । ମୁଁ କେବଳ ମହାତ୍ମା ଓ ଧନବାନ୍ ଏବଂ ମୋ ତୁଲ୍ୟ ଭୂତଳରେ ଆଉ କେହି ନାହିଁ—ଏପରି ହୃଦୟଜାତ ଭାବର ନାମ ମଦ । ମତେ ସମସ୍ତେ ନିନ୍ଦା କରନ୍ତୁ, ଅତଏବ ମୋ ଜୀବନକୁ ଧିକ୍ ଏପରି ଭାବର ନାମ ମତ୍ସର, ଅଥବା ମୁଁ ସକଳ ଲୋକମଧ୍ୟରେ ଶ୍ରେଷ୍ଠ, ମୁଁ କେବଳ ଧନବାନ୍—ଏପରି ଅହଂଭାବର ନାମ ମଧ୍ୟ ମତ୍ସର । ଏହା ଷଡ଼୍‌ରିପୁଙ୍କଦ୍ୱାରା ଚିତ୍ତ ସର୍ବଦା ଦୂଷିତ ହେଲେ ଆତ୍ମଜ୍ଞାନ ନଷ୍ଟ ହୁଏ ଏବଂ ଜୀବ ମୃତ୍ୟୁମୁଖରେ ପଡ଼େ ।

ଏ ବିଷୟରେ ଭଗବାନ୍ ଗୀତାରେ କହିଛନ୍ତି—

**ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।**
**ସଙ୍ଗାତ୍ ସଂଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ ।।**
**କ୍ରୋଧାଦ୍ ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ ।**
**ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ।।**

ଗୀତା—୨ । ୬୨-୬୩ ।।

ପୁରୁଷ ସର୍ବଦା ବିଷୟମାନଙ୍କୁ ଧ୍ୟାନ କରିବାଦ୍ୱାରା ସେଥିରେ ତାହାର ଆସକ୍ତି ଜାତ ହୁଏ । ଆସକ୍ତିରୁ କାମନା ଓ କାମନାରୁ କ୍ରୋଧ ଜାତ ହୁଏ । କ୍ରୋଧରୁ ମୋହ, ମୋହରୁ ସ୍ମୃତିଶକ୍ତି ବିନାଶ ଓ ସ୍ମୃତିଶକ୍ତିନାଶରୁ ବୁଦ୍ଧି ନାଶ ଜାତ ହୁଏ । ବୁଦ୍ଧି ବିନଷ୍ଟ ହେଲେ ପ୍ରାଣୀ ମୃତ ପ୍ରାୟ ହୁଏ ।

ଏ ବିଷୟରେ ନାରଦ କହିଛନ୍ତି—

**କାମକ୍ରୋଧ ମୋହ ସ୍ମୃତି ଭ୍ରଂଶ, ବୁଦ୍ଧିନାଶ ସର୍ବନାଶ କାରଣତ୍ୱାତ୍ ।**

ନାରଦ ଭକ୍ତିସୂତ୍ର—୪୪ ।।

କାମ, କ୍ରୋଧ, ମୋହ, ସ୍ମୃତିଭ୍ରଂଶ, ବୁଦ୍ଧି ନାଶ ସର୍ବନାଶର କାରଣ ହୁଏ ।

ବୁଦ୍ଧଦେବ ମଧ୍ୟ କହିଛନ୍ତି—

**କାମଧରଣୀପାଳ ସେବମାନା ପରମନୁ ନ ବିଦ୍ୟାତେ କୋଟି ସଂସ୍କୃତସ୍ୟ ।**
**ଲବଣଜଳ ଯଥା ହି ନରପୀତ୍ୱା ଭୂୟତୃଷ୍ଣା ବର୍ଦ୍ଧିତ କାମ ସେବମାନେ ।।**

ଲଳିତବିସ୍ତର—୧୬।୧।୨୫ ।।

ଅର୍ଥାତ୍, ହେ ଧରଣୀପାଳ । ସେବ୍ୟମାନ କାମନାର ସକଳ ବିଷୟ ବିଦ୍ୟାଲିଭ-ଦ୍ୱାରା ସଂସ୍କାରିତ ବୁଦ୍ଧି—ଏପରି ବ୍ୟକ୍ତିର ମଧ୍ୟ ମନର ସନ୍ତୋଷପ୍ରଦ ହୁଏନାହିଁ; ଅର୍ଥାତ୍ ବିଷୟ-ସେବାଦ୍ୱାରା ବିରତିଭାବ କଦାପି ହୁଏନାହିଁ । ମନୁଷ୍ୟ ଲବଣାକ୍ତ ଜଳପାନ କଲେ, ତାହାର ତୃଷ୍ଣା ବର୍ଦ୍ଧିତ ହୁଏ ସିନା, ତୃଷ୍ଣାଶାନ୍ତ କଦାପି ସମ୍ଭବ ହୁଏ ନାହିଁ । କାମ୍ୟ ବିଷୟ ସେବାଦ୍ୱାରା କାମନା ମଧ୍ୟ ବର୍ଦ୍ଧିତ ହୁଏ ।

ଏହି କାମାଦି ଦୋଷ ନିବାରଣ ନିମନ୍ତେ ଗୌତମ ମହର୍ଷିଙ୍କ ଉକ୍ତି—

ତଥା ଦୋଷାଃ ॥ ନ୍ୟାୟସୂତ୍ର ୪।୧।୨ ॥

ପ୍ରବର୍ତ୍ତନାଲକ୍ଷଣା ଦୋଷା ଇତ୍ୟୁକ୍ତମ୍ । ତଥା ଚେମେ ମାନେର୍ଷ୍ୟା-ସୂୟାବିଚିକିତ୍ସାମତ୍ସରାଦୟଃ, ତେ କସ୍ମାନ୍ନୋପସଂଖ୍ୟାୟନ୍ତ ଇତ୍ୟତ ଆହ ॥

॥ ବୃତ୍ତି ॥

ପ୍ରାଦୁର୍ଭାବ, ନିରୋଧ, ଧର୍ମିକ ଦୋଷ ପ୍ରବର୍ତ୍ତନା ଲକ୍ଷଣ ଦୋଷ ଏହା ସବୁ ପୂର୍ବେ କୁହାଯାଇଅଛି । ମାନ, ଈର୍ଷା, ଅସୂୟା, ସନ୍ଦେହ, ମତ୍ସର ଆଦି ମଧ୍ୟ ଦୋଷରୂପରେ ଖ୍ୟାତ । ଏମାନଙ୍କୁ ପୂର୍ବେ ଦୋଷମଧ୍ୟରେ କାହିଁକି ଗଣନା କରାଗଲା ନାହିଁ—ସେ ବିଷୟ ବର୍ତ୍ତମାନ କୁହାଯାଉଅଛି ।

ତ୍ରୈରାଶ୍ୟଂ ରାଗଦ୍ୱେଷମୋହାର୍ଥାନ୍ତରଭାବାତ୍ ॥ ନ୍ୟାୟସୂତ୍ର । ୩ ।

ତେଷାଂ ଦୋଷାଣାଂ ତ୍ରୟୋରାଶୟସ୍ତ୍ରୟଃ ପକ୍ଷାଃ । ରାଗପକ୍ଷଃ କାମୋ ମତ୍ସରଃ ସ୍ପୃହା ତୃଷ୍ଣା ଲୋଭ ଇତି । ଦ୍ୱେଷପକ୍ଷଃ କ୍ରୋଧ ଈର୍ଷାସୂୟା-ଦ୍ରୋହୋଽମର୍ଷ ଇତି । ମୋହପକ୍ଷୋ ମିଥ୍ୟାଜ୍ଞାନଂ ବିଚିକିତ୍ସାମାନଃ ପ୍ରମାଦ ଇତି । ତ୍ରୈରାଶ୍ୟାନ୍ନୋପସଂଖ୍ୟାୟନ୍ତ ଇତି । ଲକ୍ଷଣସ୍ୟ ତର୍ହ୍ୟଭେଦାତ୍ତ୍ରିତ୍ୱ-ମନୁପପନ୍ନଂ ରାଗଦ୍ୱେଷମୋହାର୍ଥାନ୍ତରଭାବାତ୍ । ଆସକ୍ତିଲକ୍ଷଣୋ ରାଗଃ । ଅମର୍ଷଲକ୍ଷଣୋ ଦ୍ୱେଷଃ । ମିଥ୍ୟାପ୍ରତିପତ୍ତିଲକ୍ଷଣୋ ମୋହ ଇତି । ଏତତ୍ ପ୍ରତ୍ୟାତ୍ମବେଦନୀୟଂ ସର୍ବଶରୀରିଣାଂ ବିଜାନାତ୍ୟୟଂ ଶରୀରୀ ରାଗମୁତ୍ପନ୍ନ-ମସ୍ତି ମେଽଧ୍ୟାତ୍ମଂ ରାଗଧର୍ମ ଇତି ବିରାଗଂ ଚ ବିଜାନାତି ନାସ୍ତି ମେ ଅଧ୍ୟାତ୍ମଂ ରାଗଧର୍ମ ଇତି । ଏବମିତରୟୋରପୀତି । ମାନେର୍ଷ୍ୟାସୂୟା ପ୍ରଭୃତୟସ୍ତୁ ତ୍ରୈରାଶ୍ୟମନୁପତିତା ଇତି ନୋପସଂଖ୍ୟାୟନ୍ତେ । ୩ ।

ଅର୍ଥାତ୍ ଏହି ଦୋଷରାଶି ତିନୋଟିରେ ବିଭକ୍ତ, ଏକ ଏକ ମଧ୍ୟରେ ଅନେକ ଦୋଷ ଅଛି—ତିନିଟି ଏହିପରି—୧ ରାଗ, ୨ ଦ୍ୱେଷ, ୩ ମୋହ । ଉକ୍ତ ରାଗ ମଧ୍ୟରେ କାମ, ମତ୍ସର, ସ୍ପୃହା, ତୃଷ୍ଣା, ଲୋଭ, ମାୟା ଓ ଦମ୍ଭ ଆଦି । ଦ୍ୱେଷ ମଧ୍ୟରେ କ୍ରୋଧ, ଈର୍ଷା, ଅସୂୟା, ଦ୍ରୋହ, ଅମର୍ଷ ଓ ଅଭିମାନ ଆଦି ଧରାଯାଏ । ମୋହ ମଧ୍ୟରେ ମିଥ୍ୟାଜ୍ଞାନ; ସଂଶୟ, ତର୍କ ମାନ, ପ୍ରମାଦ, ଭୟ, ଶୋକ ଥାଏ । ଆହୁରି ମଧ୍ୟ ପ୍ରତ୍ୟେକର ଭିନ୍ନ ଭିନ୍ନ ଲକ୍ଷଣ କୁହାଯାଉ-ଅଛି—"ରାଗ"—କୌଣସି ପଦାର୍ଥରେ ଆସକ୍ତିର ନାମ । ଅମର୍ଷ—ଇଚ୍ଛାବିରୁଦ୍ଧ ହେଲେ

କ୍ରୋଧ ଜାତ ହେବା, ଏହା ଦ୍ୱେଷର ଲକ୍ଷଣ ଅଟେ ଓ ମିଥ୍ୟାବୁଦ୍ଧିର ସିଦ୍ଧିବାଞ୍ଛା ହେଲେ ମୋହ ଜାତ ହୁଏ ।

ନୈକପ୍ରତ୍ୟନୀକଭାବାତ୍ ॥ ନ୍ୟାୟଦର୍ଶନ—୪ ॥

**ଅର୍ଥାନ୍ତରଂ ରାଗାଦୟଃ କସ୍ମାଦେକପ୍ରତ୍ୟନୀକଭାବାତ୍ । ତତ୍ତ୍ୱଜ୍ଞାନଂ ସମ୍ୟଙ୍ମତିରାର୍ଯ୍ୟପ୍ରଜ୍ଞା ସଂବୋଧ ଇତ୍ୟେକମିଦଂ ପ୍ରତ୍ୟନୀକଂ ତ୍ରୟାଣାମିତ ।୪।**

ପରସ୍ପର ବିରୋଧୀ ହେଲେ ମଧ୍ୟ ରାଗାଦି ଭିନ୍ନ ନୁହନ୍ତି । ତତ୍ତ୍ୱଜ୍ଞାନ, ସମ୍ୟକ୍‌ମତି; ଆର୍ଯ୍ୟ ପ୍ରଜ୍ଞା । ସମ୍ବୋଧ ଯାହାକୁ କହନ୍ତି, ସେହି ଏକ କେବଳ ତିନିର ବିରୋଧୀ ଅଟେ । ତତ୍ତ୍ୱଜ୍ଞାନ ହେଲା ପରେ ରାଗାଦି ନଷ୍ଟ ହୋଇଯାନ୍ତି, ଅତଏବ ଏକ ତତ୍ତ୍ୱଜ୍ଞାନ କେବଳ ସମସ୍ତଙ୍କର ବିରୋଧୀ ଅଟେ ।

**ତେଷାଂ ମୋହଃ ପାପୀୟାନ୍ ଆମୂଢ଼ସ୍ୟ ଇତରୋତ୍ପତ୍ତେଃ ।** ନ୍ୟା: ସୂ: ୬ ।

**ମୋହଃ ପାପଃ ପାପତରୋ ବା ଦ୍ୱାବଭିପ୍ରେତ୍ୟୋକ୍ତଂ କସ୍ମାତ୍ ବା ମୂଢ଼ସ୍ୟ ଇତରୋତ୍ପତ୍ତେଃ ଅମୂଢ଼ସ୍ୟ ରାଗଦ୍ୱେଷୌ ନୋତ୍ପଦ୍ୟେତେ, ମୂଢ଼ସ୍ୟ ତୁ ଯଥାସଂକଳ୍ପଂ ଉତ୍ପତ୍ତିଃ ବିଷୟେଷୁ, ରଞ୍ଜନୀୟାଃ ସଂକଳ୍ପାଃ ରାଗହେତବଃ କୋପନୀୟାଃ ସଂକଳ୍ପା ଦ୍ୱେଷହେତବଃ ଉଭୟେ ଚ ସଂକଳ୍ପାଃ ନ ମିଥ୍ୟା ପ୍ରତିପତ୍ତି ଲକ୍ଷଣତ୍ୱାନ୍ମୋହାଦନ୍ୟେ ତାବମୌ ମୋହ-ଯୋନୀ ରାଗଦ୍ୱେଷାବିତି । ତତ୍ତ୍ୱଜ୍ଞାନାଚ୍ଚ ମୋହନିବୃତ୍ତୌ ରାଗଦ୍ୱେଷା-ନୁତ୍ପତ୍ତିରିତ୍ୟେକପ୍ରତ୍ୟନୀକଭାବୋପପତ୍ତିଃ ।୬।**

ରାଗାଦି ମଧ୍ୟରେ ମୋହ ସବୁ ଅନର୍ଥକାରୀ ଅଟେ । କାରଣ, ଯାହାଙ୍କଠାରେ ମୋହ ନଥାଏ, ସେଠାରେ ରାଗ, ଦ୍ୱେଷ ମଧ୍ୟ ନ ଥାଏ । ବିଷୟରେ ରଞ୍ଜନୀୟ ସଂକଳ୍ପ ରାଗର କାରଣ, କୋପନୀୟ ସଂକଳ୍ପ ଦ୍ୱେଷର ହେତୁ ଅଟେ । ଏହି ଦୁଇପ୍ରକାର ସଂକଳ୍ପ ମିଥ୍ୟା ପ୍ରତିପତ୍ତିରୂପ ହେବାଦ୍ୱାରା ମୋହରୁ ତାହା ଭିନ୍ନ ନୁହେଁ । ରାଗ ଓ ଦ୍ୱେଷର ମୋହ କାରଣ । ତତ୍ତ୍ୱଜ୍ଞାନଦ୍ୱାରା ମୋହ ନିବୃତ୍ତ ହେଲେ ରାଗ ଓ ଦ୍ୱେଷ ଉତ୍ପନ୍ନ ହୁଅନ୍ତି ନାହିଁ । ଏଥିରୁ ଏହା ପ୍ରତିପନ୍ନ ହୁଏ ଯେ, ମୋହରୁ କେବଳ ରାଗାଦି ଉତ୍ପନ୍ନ ହୁଅନ୍ତି ଏବଂ ମୋହନାଶକ କେବଳ ତତ୍ତ୍ୱଜ୍ଞାନ ହୋଇପାରେ ।

ଆହୁରି ମଧ୍ୟ—

**ଦୋଷନମିତ୍ତାନାଂ ତତ୍ତ୍ୱଜ୍ଞାନାଦହଂକାରନିବୃତ୍ତିଃ ।** ନ୍ୟା: ଦ: ୪।୨।୧ ॥

ଦୋଷନିମିତ୍ତର ତତ୍ତ୍ୱଜ୍ଞାନଦ୍ୱାରା ଅହଙ୍କାରର ନିବୃତ୍ତି ହୁଏ ।

**ଦୋଷନିମିତ୍ତଂ ରୂପାଦୟୋ ବିଷୟାଃ ସଂକଳ୍ପକୃତାଃ ।।** ନ୍ୟା: ଦ: ୪।୨।୨ ।

**କାମବିଷୟାଃ ଇନ୍ଦ୍ରିୟାର୍ଥା ଇତି ରୂପାଦୟ ଉଚ୍ୟନ୍ତେ, ତେ ମିଥ୍ୟା-ସଂକଳ୍ପ୍ୟମାନା ରାଗଦ୍ୱେଷମୋହାନ୍ ପ୍ରବର୍ତ୍ତୟନ୍ତି ତାନ୍ ପୂର୍ବଂ ପ୍ରସଂଚକ୍ଷୀତ । ତାଂଶ୍ଚ ପ୍ରସଂଚକ୍ଷାଣସ୍ୟ ରୂପାଦିବିଷୟୋ ମିଥ୍ୟାସଂକଳ୍ପୋ ନିବର୍ତ୍ତତେ । ତନ୍ନିବୃତ୍ତାବଧ୍ୟାତ୍ମଂ ଶରୀରାଦି ପ୍ରସଂଚକ୍ଷୀତ । ତତ୍ପ୍ରସଂଖ୍ୟାନାଦଧ୍ୟାତ୍ମ-ବିଷୟୋ ଅହଂକାରୋ ନିବର୍ତ୍ତତେ । ସୋଽୟମଧ୍ୟାତ୍ମଂ ବହିଶ୍ଚ ବିରକ୍ତଚିତ୍ତୋ ବିହରନ୍ ମୁକ୍ତ ଇତ୍ୟୁଚ୍ୟତେ । ଅତଃ ପରଂ କାଚିତ୍ ସଂଜ୍ଞା ହେୟା କାଚିଦ୍ ଭାବୟିତବ୍ୟେତ୍ୟୁପଦିଶ୍ୟତେ । ନାର୍ଥନିରାକରଣମର୍ଥୋପାଦାନଂ ବା କଥମିତି । ୨ ।**

କାମର ବିଷୟ ଇନ୍ଦ୍ରିୟର ଅର୍ଥରୂପାଦି କୁହାଯାଏ । ସେମାନେ ମିଥ୍ୟା ସଂକଳ୍ପରୁ ରାଗ, ଦ୍ୱେଷ ଓ ମୋହକୁ ଉତ୍ପାଦନ କରନ୍ତି । ପ୍ରଥମେ ସେମାନଙ୍କୁ ତ୍ୟାଗ କରିବ; ସେମାନଙ୍କୁ ତ୍ୟାଗ କରିଥିବା ବ୍ୟକ୍ତିର ରୂପଆଦି ବିଷୟରେ ମିଥ୍ୟା ସଂକଳ୍ପ ଦୂର ହୁଏ । ତାହା ନିବୃତ୍ତ ହେବା ପରେ ଅଧ୍ୟାତ୍ମ ଶରୀରକୁ ପ୍ରତ୍ୟାଖ୍ୟାନ କରିବ; ତାହା ପ୍ରତ୍ୟାଖ୍ୟାତ ହେଲେ ଅଧ୍ୟାତ୍ମବିଷୟକ ଅହଙ୍କାର ନିବୃତ୍ତ ହୁଏ । ପୁନଶ୍ଚ ଏହାପରି ଭିତରେ ଓ ବାହାରେ ବିରକ୍ତ ହୋଇ ବିଚରଣ କଲେ ମୁକ୍ତ ବୋଲି କଥିତ ହୁଏ । ଏହାପରେ କେଉଁ ସଂଜ୍ଞା ତ୍ୟାଗ କରିବା ଉଚିତ ଓ କେଉଁ କଥା ବିଚାରଯୋଗ୍ୟ ଏହାର ଉପଦେଶ କଥିତ ହେଉଅଛି—

**ତନ୍ନିମିତ୍ତଂ ତ୍ୱବୟବ୍ୟଭିମାନଃ ।** ନ୍ୟା: ଦ: ୪।୨।୩ ॥

**ତେଷାଂ ଦୋଷାଣାଂ ନିମିତ୍ତଂ ତ୍ୱବୟବ୍ୟଭିମାନଃ । ସା ଚ ଖଳୁ ସ୍ତ୍ରୀ-ସଂଜ୍ଞା (ସପରିଷ୍କାରା ପୁରୁଷସ୍ୟ ପୁରୁଷସଂଜ୍ଞା ଚ ସ୍ତ୍ରିୟାଃ ପରିଷ୍କାରଶ୍ଚ ନିମିତ୍ତ ସଂଜ୍ଞା ଅନୁବ୍ୟଞ୍ଜନସଂଜ୍ଞା ଚ) ନିମିତ୍ତସଂଜ୍ଞା ଦନ୍ତୋଷ୍ଠଂ ଚକ୍ଷୁର୍ନାସିକମ୍ ଅନୁ-ବ୍ୟଞ୍ଜନସଂଜ୍ଞା ଇତ୍ଥଂ ଦନ୍ତୌ ଇତ୍ଥମୋଷ୍ଠାବିତି ସେୟଂ ସଂଜ୍ଞା କାମଂ ବର୍ଦ୍ଧୟତି ତଦନୁଷକ୍ତାଂଶ୍ଚ ଦୋଷାନ୍ ବିବର୍ଜନୀୟାନ୍ ବର୍ଜନଂ ତ୍ୱସ୍ୟାଃ**

**ଭେଦେନାବୟବସଂଜ୍ଞା　କେଶଲୋମମାଂସଶୋଣିତାସ୍ଥିସ୍ନାୟୁଶିରାକଫ-ପିତ୍ତୋଚାରାଦ ସଂଜ୍ଞ ତାମଶୁଭସଂଜ୍ଞେତ୍ୟାଚକ୍ଷତେ । ତାମସ୍ୟଂ ଭାବୟତଃ କାମରାଗଃ ପ୍ରହୀୟତେ ସତ୍ୟେବ ଚ ଦ୍ୱିବଧେ ବଷୟେ କାଚଃ୍ସଂଜ୍ଞା ଭାବନୀୟା କାଶତ୍ ପରବର୍ଜନୀୟେତ୍ୟୁପଦଶ୍ୟତେ, ଯଥା ବଷସଂପୃକ୍ତେ ଅନ୍ତସଂଜ୍ଞୋପାଦାନାୟ ବଷସଂଜ୍ଞା ପ୍ରହାଣାୟେତ । ଅଥେଦାନୀମର୍ଥଂ ନରାକରଷ୍ୟ ତାବୟବ୍ୟୁପପାଦ୍ୟତେ ॥ ୩ ॥**

ସେହି ଦୋଷର କାରଣ ଅବୟବୀର ଅଭିମାନ ଅଟେ । ତାହା **ପରିଷ୍କାର ସହିତ** "ସ୍ତ୍ରୀ" ସଂଜ୍ଞା ପୁରୁଷକୁ ଓ ପୁରୁଷ ସଂଜ୍ଞା ସ୍ତ୍ରୀକୁ । **ନିମିତ୍ତସଂଜ୍ଞା ଓ ଅନୁବ୍ୟଞ୍ଜନସଂଜ୍ଞାକୁ** ପରିଷ୍କାର କୁହାଯାଏ । ଦନ୍ତ, ଓଷ୍ଠ, ଚକ୍ଷୁ ଓ ନାସିକା—ଏହା ନିମିତ୍ତସଂଜ୍ଞକ । ଏହିପରି ଓଷ୍ଠ ବା ଦନ୍ତ ସୁନ୍ଦର, ନାସିକା ସୂଚଳ—ଏହାସବୁ ଅନୁବ୍ୟଞ୍ଜନ ସଂଜ୍ଞାରୂପରେ କଥିତ । ଯାହାକୁ ଭାବନା କରିବାଦ୍ୱାରା କାମ ଓ ରାଗ ଉତ୍ପନ୍ନ ହୁଏ, ତାହା ତ୍ୟାଗ କରିବାର ରୀତି ଏହିପରି—ସ୍ତ୍ରୀବିଷୟକ ବସ୍ତୁର ତ୍ୟାଗ କରିବା ରୀତି ହେଉଅଛି—ସ୍ତ୍ରୀର ଶରୀରକୁ ବସ୍ତୁର କରିବା ସମୟରେ ଯଦି ତାହାର ରୁଧିର, ମାଂସ, ଅସ୍ଥି ଓ କଫ ଇତ୍ୟାଦି ଘୃଣିତ ପଦାର୍ଥ ବ୍ୟତିରିକ୍ତ ଅନ୍ୟ କିଛି ନାହିଁ ବୋଲି ଭାବନା କରିବ, ତେବେ ସ୍ତ୍ରୀହେତୁକ କାମ-ରାଗ ଦୂର ହେବ; ପୁନର୍ବାର ସେହି ଦୋଷ ଉତ୍ପନ୍ନ ହେବ ନାହିଁ । ଅତଏବ ଉକ୍ତ ସ୍ତ୍ରୀବିଷୟକ ଦ୍ୱିବିଧ ଭାବନାରୁ କେଉଁ ସଂଜ୍ଞା ବସ୍ତୁରଯୋଗ୍ୟ ଓ କେଉଁ ସଂଜ୍ଞା ତ୍ୟାଜ୍ୟ ଅଟେ—ଏ କଥା ଉପଦିଷ୍ଟ ହୋଇଅଛି । ଏ ବିଷୟରେ ଶ୍ରୀକୃଷ୍ଣ ଅର୍ଜୁନକୁ କହିଛନ୍ତି ।

**କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ**
**ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍ ।**
**ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଳେନ ଚ**
**ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦମାବୃତମ୍ ॥**
**ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା ।**
**କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଳେନ ଚ ॥**
**ଇନ୍ଦ୍ରିୟାଣି ମନୋବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ ।**
**ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟ ଦେହିନମ୍ ॥**
**ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ ।**
**ପାପ୍ମାନଂ ପ୍ରଜହି ହ୍ୟେନଂ ଜ୍ଞାନବିଜ୍ଞାନନାଶନମ୍ ॥** ଗୀତା ୩।୩୭—୪୧

ଶ୍ରୀ ଭଗବାନ କହୁଛନ୍ତି—

ଏହି ରଜୋଗୁଣଜାତ ଦୁଷ୍ପୂରଣୀୟ ଓ ଅତ୍ୟୁଗ୍ର କାମ ଏବଂ କାମରୁ ଉତ୍ପନ୍ନ କ୍ରୋଧ ମୋକ୍ଷ ମାର୍ଗର ବୈରୀ ବୋଲି ଜାଣିବ । ଯେପରି ଅଗ୍ନି ଧୂମ ଦ୍ୱାରା, ଦର୍ପଣ ମଳ ଓ ଗର୍ଭ ଜରାୟୁଦ୍ୱାରା ଆବୃତ ଥାଏ, ସେହିପରି ଆତ୍ମଜ୍ଞାନ କାମ ଦ୍ୱାରା ଆଚ୍ଛନ୍ନ ଥାଏ । ହେ କୌନ୍ତେୟ ! ଜ୍ଞାନୀର ଚିର ଶତ୍ରୁ ଏହି କାମରୂପ ଅପୂରଣୀୟ ଅଗ୍ନି ଦ୍ୱାରା ତାହାର ଜ୍ଞାନ ସର୍ବଦା ଆଚ୍ଛନ୍ନ ରହିଥାଏ । ସକଳ ଇନ୍ଦ୍ରିୟ, ମନ ଓ ବୁଦ୍ଧି ଏହି କାମର ଅଧିଷ୍ଠାନ ବୋଲି କଥିତ । ଏହି କାମ ଏମାନଙ୍କଦ୍ୱାରା (ଇନ୍ଦ୍ରିୟାଦିଦ୍ୱାରା) ଜ୍ଞାନକୁ ଆବୃତ କରି ଦେହୀକୁ (ଜୀବକୁ) ବିମୋହିତ କରେ । ଅତଏବ ହେ ଭରତର୍ଷଭ ! ତୁମ୍ଭେ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ସଂଯତ କରି ଜ୍ଞାନ ଏବଂ ବିଜ୍ଞାନ—ଏହି ଉଭୟର ବିନାଶକ ଓ ପାପରୂପକ ଏହି କାମକୁ ଜୟ କର ।

ଆହୁରି ମଧ୍ୟ—

ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ ।
କାମଃ କ୍ରୋଧସ୍ତଥା ଲୋଭସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ ।
ଏତୈର୍ବିମୁକ୍ତଃ କୌନ୍ତେୟ ତମୋଦ୍ୱାରୈସ୍ତ୍ରିଭିର୍ନରଃ ॥
ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିମ୍ ॥

ଗୀତା—୧୬ । ୨୧-୨୨ ।

କାମ, କ୍ରୋଧ ଓ ଲୋଭ—ଏହି ତିନି ଆତ୍ମାର ବିନାଶର କାରଣ ଓ ନରକର ଦ୍ୱାର-ସ୍ୱରୂପ । ଅତଏବ (ମୁମୁକ୍ଷୁ ବ୍ୟକ୍ତି) ଏହି ତିନି ଦୋଷକୁ ତ୍ୟାଗ କରିବେ । ହେ କୌନ୍ତେୟ ! ନରକର ଦ୍ୱାରସ୍ୱରୂପ (କାମ, କ୍ରୋଧ ଓ ଲୋଭ) ଏହି ତିନିରୁ ମୁକ୍ତ ହୋଇ ପାରିଲେ ମନୁଷ୍ୟ ଆପଣାର ଶ୍ରେୟଃ ସାଧନ କରିପାରେ ଏବଂ ମୋକ୍ଷଲାଭ କରେ ।

ତେଜସ୍ୱୀତି ଯମାହୁର୍ବୈ ପଣ୍ଡିତା ଦୀର୍ଘଦର୍ଶିନଃ ।
ନ କ୍ରୋଧୋଽଭ୍ୟନ୍ତରସ୍ତସ୍ୟ ଭବତୀତି ବିନିଶ୍ଚିତମ୍ ॥
ଯସ୍ତୁ କ୍ରୋଧଂ ସମୁତ୍ପନ୍ନଂ ପ୍ରଜ୍ଞୟା ପ୍ରତିବାଧତେ ।
ତେଜସ୍ୱିନଂ ତଂ ବିଦ୍ୱାଂସୋ ମନ୍ୟନ୍ତେ ତତ୍ତ୍ୱଦର୍ଶିନଃ ॥
କ୍ରୁଦ୍ଧୋ ହି କାର୍ଯ୍ୟଂ ସୁଶ୍ରୋଣି ! ନ ଯଥାବତ୍ ପ୍ରପଶ୍ୟତି ।
ନାକାର୍ଯ୍ୟଂ ନଚ ମର୍ଯ୍ୟାଦାଂ ନରଃ କ୍ରୁଦ୍ଧୋଽନୁପଶ୍ୟତି ॥
ହନ୍ତ୍ୟବଧ୍ୟାନପି କ୍ରୁଦ୍ଧୋ ଗୁରୂନ୍ କ୍ରୁଦ୍ଧସ୍ତୁଦତ୍ୟପି ।
ତସ୍ମାତ୍ତେଜସ୍ୱିଭିର୍ନିତ୍ୟଂ କ୍ରୋଧୋ ଦୂରତ୍ ବିବର୍ଜିତଃ ॥

ମହା: ଖ: ବନ: ୨୯।୧୭-୨୦ ॥

ଦୂରଦର୍ଶୀ ପଣ୍ଡିତମାନେ ଯାହାଙ୍କୁ ତେଜସ୍ୱୀ କହନ୍ତି, ସେମାନଙ୍କ ଭିତରେ କ୍ରୋଧ ନଥାଏ—ଏକଥା ନିଶ୍ଚିତ । ଯେଉଁ ବ୍ୟକ୍ତି ନିଜ ବୁଦ୍ଧିର ପ୍ରଭାବରେ କ୍ରୋଧକୁ ରୁଦ୍ଧ କରିପାରେ, ତାହାଙ୍କୁ ତତ୍ତ୍ୱଦର୍ଶୀ ପଣ୍ଡିତମାନେ ତେଜସ୍ୱୀ ବୋଲି ମନେ କରନ୍ତି । କ୍ରୋଧୀ ଲୋକ କର୍ତ୍ତବ୍ୟା-କର୍ତ୍ତବ୍ୟ ଜ୍ଞାନଶୂନ୍ୟ ହୁଏ ଏବଂ ନିଜ ବା ପରର ମର୍ଯ୍ୟାଦା ମଧ୍ୟ ଦେଖିପାରେ ନାହିଁ । କ୍ରୋଧୀ ଅବଧ୍ୟକୁ ମଧ୍ୟ ବଧ କରେ ଓ ଗୁରୁଜନମାନଙ୍କୁ ବ୍ୟଥିତ କରେ । ଅତଏବ ତେଜସ୍ୱୀ ଲୋକ ସର୍ବଦା କ୍ରୋଧକୁ ଦୂରୀଭୂତ କରେ ।

**ଦେହସ୍ୟ ପଞ୍ଚ ଦୋଷା ଭବନ୍ତି କାମକ୍ରୋଧନିଶ୍ୱାସଭୟନିଦ୍ରାଃ ।**
**ତନ୍ନିରାସସ୍ତୁ ନିଃସଂକଲ୍ପକ୍ଷମାଲଘ୍ୱାହାରପ୍ରମାଦତାତତ୍ତ୍ୱସେବନମ୍ ॥**

ମଣ୍ଡଳ ବ୍ରାହ୍ମଣ ଉ: ୪ ॥

ଦେହରେ ପାଞ୍ଚଟି ଦୋଷ ନିତ୍ୟ ବିଦ୍ୟମାନ—କାମ, କ୍ରୋଧ, ନିଃଶ୍ୱାସ, ଭୟ ଓ ନିଦ୍ରା । ଏମାନଙ୍କର ନିବାରଣ ଉପାୟ ଏହିପରି—ସଂକଳ୍ପ ପରିତ୍ୟାଗ କରିପାରିଲେ କାମର ନିବୃତ୍ତି ହୁଏ । କ୍ଷମା ଅଭ୍ୟାସ କରିବାଦ୍ୱାରା କ୍ରୋଧର ନିବୃତ୍ତି ହୁଏ । ବାୟୁ ଗ୍ରହଣ ଅନାୟାସ-ଲବ୍ଧ ହେଲେ, ଅର୍ଥାତ୍ ପ୍ରାଣାୟାମ ଅଭ୍ୟାସ କରିବାଦ୍ୱାରା ଶ୍ୱାସ ବାୟୁର ସ୍ଥିରତା ଆସେ । ସର୍ବଦା ସାବଧାନ ହେଲେ, ଅର୍ଥାତ୍ ଦ୍ୱୈତ ବୁଦ୍ଧି ପରିତ୍ୟାଗ କରି ପାରିଲେ ଭୟର ନିବୃତ୍ତି ହୁଏ । ପରମାର୍ଥ ତତ୍ତ୍ୱ ସେବା କରିବାଦ୍ୱାରା ନିଜର ଅଜ୍ଞାନ-ନିଦ୍ରାର ନିବୃତ୍ତି ହୁଏ ।

**କାମକ୍ରୋଧୌ ବଶେ କୃତ୍ୱା ଦମ୍ଭଂ ଲୋଭମନାର୍ଜ୍ଜବମ୍ ।**
**ଧର୍ମମିତ୍ୟେବ ସଂତୁଷ୍ଟାସ୍ତେ ଶିଷ୍ଟାଃ ଶିଷ୍ଟସମ୍ମତାଃ ॥**
**ବେଦସ୍ୟୋପନିଷତ୍ସତ୍ୟଂ ସତ୍ୟସ୍ୟୋପନିଷଦ୍ଦମଃ ।**
**ଦମସ୍ୟୋପନିଷତ୍ତ୍ୟାଗଃ ଶିଷ୍ଟାଚାରେଷୁ ନିତ୍ୟଦା ॥**

ମହା ଭା: ବନ: ୧୭୫।୬୨-୬୬ ॥

ଯେଉଁମାନେ କାମ, କ୍ରୋଧ, କପଟତା, ଲୋଭ ଓ କୁଟିଳତା ପରିତ୍ୟାଗ କରି କେବଳ ଧର୍ମରେ ସନ୍ତୁଷ୍ଟ ରହନ୍ତି, ସେହିମାନେ କେବଳ ଶିଷ୍ଟସମ୍ମତ ଶିଷ୍ଟ । ବେଦର ସାର ସତ୍ୟ; ସତ୍ୟର ସାର ଇନ୍ଦ୍ରିୟ ଦମନ ଏବଂ ଇନ୍ଦ୍ରିୟ ଦମନର ସାର ତ୍ୟାଗ; ଏହି ତିନି ଗୋଟି ସର୍ବଦା ଶିଷ୍ଟାଚାରରେ ପ୍ରତିଷ୍ଠିତ ।*

* "ଷଡ୍ରିପୂଣାଂ—କାମ-କ୍ରୋଧ-ଲୋଭ-ମୋହ-ମଦ-ମାତ୍ସର୍ଯ୍ୟାଣାମ୍" । ଇତି ।

ଷଣ୍ଣାମାତ୍ମନି ନିତ୍ୟାନାମୈଶ୍ୱର୍ଯ୍ୟଂ ଯୋଽଧିଗଚ୍ଛତି ।
ନସ ପାପୈଃ କୁତୋଽନର୍ଥୈର୍ଯୁଜ୍ୟତେ ବିଜିତେ ବିଜିତେନ୍ଦ୍ରିୟଃ ॥

ମହା ଭା: ଉଦ୍ୟୋଗ: ୩୩|୮୯ ॥

କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ—ଏହି ଛ ଦୋଷ ସର୍ବଦା ପ୍ରାଣୀର ମନରେ ବିଦ୍ୟମାନ ଥାଏ । ଯେଉଁ ଲୋକ ଏହି ଛ ଦୋଷକୁ ଜୟ କରିପାରେ ସେ ପାପରେ ଲିପ୍ତ ହୁଏ ନାହିଁ । ଅତଏବ ସେପରି ଲୋକ ବିପନ୍ନ କାହିଁକି ହେବ ? ଏହି କାମ କ୍ରୋଧାଦି ଷଡ଼୍‌ରିପୁକୁ ଜୟ କରିବା ନିମନ୍ତେ ଗୌତମ ବୁଦ୍ଧ ମଧ୍ୟ ଉପଦେଶ ଦେଇ ଅଛନ୍ତି—

ରତିୟା ଯାୟତି ସୋକୋ ରତିୟା ଯାୟତି ଭୟଂ ।
ରତିୟା ବିପ୍ପମୁତ୍ତସ୍ସ ନତ୍ଥି ସୋକୋ କୁତୋ ଭୟଂ ॥
କାମତୋ ଜାୟତି ସୋକୋ କାମତୋ ଜାୟତି ଭୟଂ ।
କାମତୋ ବିପ୍ପମୁତ୍ତସ୍ସ ନତ୍ଥି ସୋକୋ କୁତୋ ଭୟଂ ॥
ତହ୍ନାୟ ଜାୟତି ସୋକୋ ତହ୍ନାୟ ଜାୟତି ଭୟଂ ।
ତହ୍ନାୟ ବିପ୍ପମୁତ୍ତସ୍ସ ନତ୍ଥି ସୋକୋ କୁତୋ ଭୟଂ ॥
ସୀଲଦସ୍ସନସମ୍ପନ୍ନଂ ଧମ୍ମଟ୍ଠଂ ସଚ୍ଚବାଦନଂ ।
ଅତ୍ତନୋ କମ୍ମକୁବ୍ବାନଂ ତଂ ଜନୋ କୁରୁତେ ପ୍ରିୟଂ ॥

ଧର୍ମପଦ—ପ୍ରିୟବଗ୍ଗ ୧୬|୬|୯ ॥

ଅର୍ଥାତ୍ ଆସକ୍ତିରୁ ଭୟ ଓ ଶୋକ ଉତ୍ପନ୍ନ ହୁଏ, କିନ୍ତୁ ଯେଉଁ ବ୍ୟକ୍ତି ଆସକ୍ତିରୁ ମୁକ୍ତ, ସେପରି ଲୋକର ଶୋକ ବା ଭୟ ରହେ ନାହିଁ । କାମରୁ ଭୟ ଓ ଶୋକର ଉତ୍ପତ୍ତି ହୁଏ, ଯେଉଁ ବ୍ୟକ୍ତି କାମରୁ ମୁକ୍ତ, ତାହାର ଭୟ ଓ ଶୋକ ରହିବା ଅସମ୍ଭବ । ସେହିପରି ତୃଷ୍ଣାରୁ ଭୟ ଓ ଶୋକ ଉତ୍ପନ୍ନ ହୁଏ, କିନ୍ତୁ ଯେ ତୃଷ୍ଣାବିମୁକ୍ତ ତାହାର ଶୋକ ବା ଭୟ ରହେ ନାହିଁ । ଶୀଳ ଓ ଦର୍ଶନସମ୍ପନ୍ନ, ଧାର୍ମିକ, ସତ୍ୟବାଦୀ, ଓ କର୍ତ୍ତବ୍ୟପରାୟଣ ବ୍ୟକ୍ତି ମନୁଷ୍ୟ ମାତ୍ରର ପ୍ରିୟ ହୁଏ ।

କୋଧଂ ଜହେ ବିପ୍ପ ଜହେୟ୍ୟମାନଂ
ସଂଯୋଜନଂ ସବ୍ବଂ ଅତିକ୍କମେୟ୍ୟ ।

ତଂ ନାମରୂପସ୍ମିଂ ଅସଜ୍ଜମାନଂ
ଅକିଂଚନଂ ନାନୁପତନ୍ତି ଦୁକ୍ ଖା ।

ଯୋବେ ଉପ୍ପତିତଂ କୋଧଂ ରଥଂ ଭନ୍ତଂ ବଧାରୟେ ।
ତମହଂ ସାରଥିଂ ବ୍ରୂମି ରସ୍ମିଗ୍ଗା ହୋ ଇତରୋ ଜନୋ ॥
ଅକ୍କୋଧେନ ଜିନେ କୋଧଂ ଅସାଧୁଂ ସାଧୁନା ଜିନେ ।
ଜିନେ କଦରୟଂ ଦାନେନ ସଚ୍ଚେନ ଅଲିକବାଦିନଂ ॥
ସଚ୍ଚଂ ଭଣେନ କୁ ଜ୍ଝେୟ ଦଜ୍ଜାପ୍ ପସ୍ମିପି ଯାଚତୋ ।
ଏତେ ହିତ ହିଠାନେ ହି ଗଚ୍ଛେ ଦେବାନସନ୍ତିକେ ॥
ଅହିଂସକା ଯେ ମୁନୟୋ ନିଚ୍ଚଂ କାୟେନ ସଂବୁତା ।
ତେ ଯନ୍ତି ଅଚ୍ୟୁତଂ ଠାନଂ ଯତ୍ଥ ଗନ୍ତ୍ୱା ନ ସୋଚରେ ॥

ଧମ୍ମପଦ—କୋଧବଗ୍ଗ ୧୭ । ୧-୫ ।

କ୍ରୋଧ ଓ ମାନ ପରିତ୍ୟାଗ କରିବ । ସର୍ବସଂଯୋଜନ ଅତିକ୍ରମ କରିବ । ଯେଉଁ ଲୋକ ନାମ ରୂପରେ ଅଲଗ୍ନ ଓ ଅକିଞ୍ଚନ, ତାହାକୁ ଦୁଃଖ ସ୍ପର୍ଶ କରିପାରେ ନାହିଁ । ଉତ୍ପନ୍ନ କ୍ରୋଧ ଉତ୍ପଥଗ୍ରଥ ପରି ଏବଂ ସେହି ଉତ୍ପଥରଥ ତୁଲ୍ୟ କ୍ରୋଧକୁ ଯେ ସଂଯତ କରେ; ସେହି କେବଳ ପ୍ରକୃତ ସାରଥି । ଅନ୍ୟମାନେ କେବଳ ରଶ୍ମି ଗ୍ରାହକ, ପ୍ରକୃତରେ ସାରଥି-ପଦବାଚ୍ୟ ନୁହନ୍ତି । ନିଜେ କ୍ରୋଧୀ ନ ହୋଇ କ୍ରୋଧକୁ ଜୟ କରିବ । ମଙ୍ଗଳଦ୍ୱାରା ଅମଙ୍ଗଳକୁ ଜୟ କରିବ । କୃପଣକୁ ଦାନଦ୍ୱାରା ଜୟ କରିବ । ମିଥ୍ୟାବାଦୀକୁ ସତ୍ୟଦ୍ୱାରା ଜୟ କରିବ । ସତ୍ୟ କହିବ, କଦାପି କ୍ରୋଧୀ ହେବ ନାହିଁ । ଅଳ୍ପ ହେଲେ ମଧ୍ୟ ପ୍ରାର୍ଥୀକୁ ଦାନ କରିବ । ଏହି ତ୍ରିବିଧ ସତ୍‌କର୍ମଦ୍ୱାରା ମନୁଷ୍ୟ ଦେବଲୋକ ଗମନ କରିପାରେ । ଅହିଂସା ଓ ସଂଯମରତ ଜ୍ଞାନୀମାନେ ଯେଉଁଠିକୁ ଗମନ କଲେ ମଧ୍ୟ ସେମାନଙ୍କର କୌଣସି ଦୁଃଖ ହୁଏ ନାହିଁ । ସେମାନେ ଅଚ୍ୟୁତ ସ୍ଥାନକୁ ଗମନ କରନ୍ତି ।

ମହିମା ଧର୍ମପ୍ରବର୍ତ୍ତକ ପ୍ରବୃଦ୍ଧଗୁରୁ ମହିମାସ୍ୱାମୀ ଚିତ୍ତ ସଂଯମ ନିମନ୍ତେ କାମ-କ୍ରୋଧାଦି ରିପୁମାନଙ୍କୁ ସଂଯତ କରିବା ନିମନ୍ତେ ଯାହା ସବୁ ଉପଦେଶ ଦେଇଛନ୍ତି, ବିଶିଷ୍ଟ ଧର୍ମ ଗ୍ରନ୍ଥମାନଙ୍କରେ ସେ ସବୁ ପ୍ରମାଣିତ ହୋଇଛି ।

## ଠ—ଅଭକ୍ତ ଓ ଅସତ୍‌ଲୋକର ସଙ୍ଗ ସର୍ବଥା ବର୍ଜନୀୟ—

ଅସତ୍‌ସଙ୍ଗ ଓ ଅସତ୍ ଶାସ୍ତ୍ରାଦି ଅଧ୍ୟୟନ ଏବଂ ନୃତ୍ୟ ବାଦ୍ୟ ଗାନ ପ୍ରଭୃତି ସହ-ଯୋଗଦ୍ୱାରା ମନୁଷ୍ୟର କାମ ରାଗ-ଦୋଷ ପରିବର୍ଦ୍ଧିତ ହୁଏ; କିନ୍ତୁ ସାଧୁ ସଙ୍ଗ, ସୁଶାସ୍ତ୍ର

ଅଧିପୂନ ସତ୍ବତ ଶୁଭ ବାସନାରେ ରତ ହେଲେ କାମ ରାଗ ଦୋଷ ନଷ୍ଟ ହୋଇ ଚିତ୍ତ ସଂଯତ ହୁଏ ଓ ତଦ୍ଦ୍ୱାରା ଏକାଗ୍ରତା ଜନ୍ମେ ।

"ଦୁଃସଙ୍ଗଃ ସର୍ବଥୈବ ତ୍ୟାଜ୍ୟଃ" ନାରଦଭକ୍ତିସୂତ୍ର । ୨ । ୪୩ ॥

ଦୁଷ୍ଟଜନଙ୍କ ସହବାସରେ ପ୍ରକୃତ ଦୂଷିତ ହୁଏ । ଅତଏବ ଭକ୍ତମାନେ ଏହି କୁସଙ୍ଗ ପରିହାର କରିବେ ।

ତରଙ୍ଗାୟିତା ଅପି ମେ ସଙ୍ଗାତ୍ ସମୁଦ୍ରାୟନ୍ତେ"

ନା: ଭକ୍ତିସୂତ୍ର ଅ ୨ । ୪୫ ॥

ଯେଉଁ ଲୋକ କୁସଙ୍ଗର କୁହୁକଜାଲରେ ପତିତ ହୁଏ, ତାହାର ସାଧୁତାର ଭାବସମୂହ ଧୀରେ ଧୀରେ ଲୁପ୍ତ ହୁଏ, କୁବୃତ୍ତିସମୂହ ତରଙ୍ଗ ପରେ ତରଙ୍ଗ ଭଳି ବାରମ୍ବାର ଆସନ୍ତି ଓ ପରିଶେଷରେ ବିଶାଳ ସମୁଦ୍ର ଆକାର ଧାରଣ କରି ତାହାଙ୍କୁ ଦୁଃଖମୟ ଗଭୀର ଗର୍ଭରେ ନିମଜ୍ଜିତ କରନ୍ତି ।

ସଙ୍ଗୀ ହି ବାଧ୍ୟତେ ଲୋକୈର୍ନିଃସଙ୍ଗଃ ସୁଖମଶ୍ନୁତେ ।
ତେନ ସଙ୍ଗଃ ପରିତ୍ୟାଜ୍ୟଃ ସର୍ବଦା ସୁଖମିଚ୍ଛତା ॥

ପଞ୍ଚଦଶୀ—ପ ୬ । ଚିତ୍ରଦୀପ ୨୭୪ ॥

କୁସଙ୍ଗକାରୀ ବ୍ୟକ୍ତି ସର୍ବଦା ପାପକର୍ମରେ ଲିପ୍ତ ରହେ; ସଙ୍ଗରହିତ ହେଲେ ସୁଖୀ ହୁଏ । ଅତଏବ ଶୁଭାକାଙ୍କ୍ଷୀ ବ୍ୟକ୍ତିମାନଙ୍କର ସର୍ବଦା କୁ-ସଂସର୍ଗଦୋଷ ପରିତ୍ୟାଗ କରିବା ସର୍ବତୋଭାବେ କର୍ତ୍ତବ୍ୟ ।

ଅସତ୍‌ସଙ୍ଗ ନରକର ମଧ୍ୟ କାରଣ—

"କୋ ନରକଃ ଅସତ୍‌ସଂସାରବିଷୟୀ ଜନ ସଂସର୍ଗ ଏବ ନରକଃ ।"

ନରକ କ'ଣ ? ଅତ୍ୟନ୍ତ ସଂସାରାସକ୍ତ ବ୍ୟକ୍ତି ସହିତ ସଂସର୍ଗର ନାମ ନରକ ।

ନା କର୍ମସୁ ନିଯୋକ୍ତବ୍ୟଂ ନାନାର୍ଯ୍ୟେଣ ସହାବସେତ୍ ।
ଦ୍ରଷ୍ଟବ୍ୟଃ ସର୍ବସଂହର୍ତ୍ତା ନ ମୃତ୍ୟୁରବହେଳୟା ॥

ମହୋପନିଷଦ: ୪ । ୨୨ ॥

ଗର୍ହିତ କାର୍ଯ୍ୟରେ ମନକୁ ନିୟୋଜିତ କରିବ ନାହିଁ । କୁକର୍ମକାରୀ ଅନାର୍ଯ୍ୟ ସହିତ ବାସ କରିବ ନାହିଁ । ଅବହେଳା ନ କରି ସର୍ବସଂହାରକ ମୃତ୍ୟୁକୁ ଆଲିଙ୍ଗନ କରିବ ନାହିଁ । *

ଏ ସମ୍ବନ୍ଧରେ ଭଗବାନ୍ କପିଳ ତାଙ୍କ ମାତାଙ୍କୁ ଉପଦେଶ ଦେଇଅଛନ୍ତି—

ଯଦ୍ୟସଦ୍ଭିଃ ପଥି ପୁନଃ ଶିଶ୍ନୋଦରକୃତୋଦ୍ୟମୈଃ ।
ଆସ୍ଥିତୋ ରମତେ ଜନ୍ତୁସ୍ତମୋ ବିଶତି ପୂର୍ବବତ୍ ॥
ସତ୍ୟଂ ଶୌଚଂ ଦୟା ମୌନଂ ବୁଦ୍ଧିଃ ଶ୍ରୀର୍ହ୍ରୀର୍ଯଶଃ କ୍ଷମା ।
ଶମୋଦମୋ ଭଗଶ୍ଚେତି ଯତ୍ ସଙ୍ଗାତ୍ ଯାତି ସଂକ୍ଷୟମ୍ ॥
ତେଷ୍ୱଶାନ୍ତେଷୁ ମୂଢ଼େଷୁ ଖଣ୍ଡିତାତ୍ମସ୍ୱସାଧୁଷୁ ।
ସଙ୍ଗଂ ନ କୁର୍ଯ୍ୟାଚ୍ଛୋଚ୍ୟେଷୁ ଯୋଷିତ୍ କ୍ରୀଡ଼ାମୃଗେଷୁ ଚ ॥
ନ ତଥାସ୍ୟଭବେନ୍ମୋହୋ ବନ୍ଧଶ୍ଚାନ୍ୟପ୍ରସଙ୍ଗତଃ ।
ଯୋଷିତ୍ ସଙ୍ଗାଦ୍ ଯଥା ପୁଂସୋ ଯଥା ତତ୍ ସଙ୍ଗିସଙ୍ଗତଃ ॥

ଭାଗବତ-୩ । ୩୧-୩୫ ॥

ଆଉ ମଧ୍ୟ ଦେଖନ୍ତୁ, ଏହି ଜୀବ ସନ୍ମାର୍ଗରେ ରହି ମଧ୍ୟ ଯଦି ଶିଶ୍ନୋଦରପରାୟଣ (ଇନ୍ଦ୍ରିୟ ତୃପ୍ତି ସାଧକ) ଓ ଅସତ୍ ପୁରୁଷ ସହ ସଂସର୍ଗୀ ହୁଏ, ତେବେ ତାହାକୁ ପୂର୍ବୋକ୍ତ ରୂପରେ ନରକକୁ ଯିବାକୁ ହୁଏ ! ଅସତ୍‌ସଙ୍ଗ ହେତୁରୁ ସତ୍ୟ, ଶୌଚ, ଦୟା, ମୌନ, ବୁଦ୍ଧି, ଗୁଣ, ଲଜ୍ଜା, ଯଶ, କ୍ଷମା, ଶମ, ଦମ ଓ ଐଶ୍ୱର୍ଯ୍ୟପ୍ରଭୃତି ସକଳ ଗୁଣ ନଷ୍ଟ ହୋଇଯାଏ । ଏହି ସକଳ କୁସଙ୍ଗୀ ଅଶାନ୍ତ ଦେହରେ ଆତ୍ମା ବୁଦ୍ଧି କରି ମୃଗକ୍ରୀଡ଼ା ସଦୃଶ ରମଣୀମାନଙ୍କ ଅଧୀନ ହୁଅନ୍ତି । ଅସତ୍‌ସଙ୍ଗ ସର୍ବଦା ପରିତ୍ୟାଜ୍ୟ । ହେ ଜନନି ! ସ୍ତ୍ରୀ-ସଙ୍ଗୀ ପୁରୁଷର ଯେପରି ମୋହ ହୁଏ, ସେପରି ଅସାଧୁସଙ୍ଗକାରୀର ମଧ୍ୟ ଅଜ୍ଞାନ ଜାତ ହୁଏ ।

ପୁନଶ୍ଚ—

ସଙ୍ଗଂ ନ କୁର୍ଯ୍ୟାଦସତାଂ ଶିଶ୍ନୋଦରତୃପାଂ କ୍ୱଚିତ୍ ।
ତସ୍ୟାନୁଗସ୍ତମସ୍ୟନ୍ଧେ ପତତ୍ୟନ୍ଧାନୁଗୋଽନ୍ଧବତ୍ ॥

ଭାଗ: ୧୧ । ୨୬ । ୩ ॥

---

* ସଙ୍ଗଃ ସର୍ବାତ୍ମନା ହେୟଃ ସ ଚେତ୍ତ୍ୟକ୍ତୁଂ ନ ଶକ୍ୟତେ ।
ସ ସଦ୍ଭିଃ ସହ କର୍ତ୍ତବ୍ୟଃ ସତାଂ ସଙ୍ଗୋହି ଭେଷଜମ୍ ॥　କୁଳାର୍ଣ୍ଣବ—ଉ: ୧ ॥

ମୁମୁକ୍ଷୁ ବ୍ୟକ୍ତି କାହାରି ସଙ୍ଗ କରିବେ ନାହିଁ । ଯଦି ସଙ୍ଗ ତ୍ୟାଗ କରିବା ନିମନ୍ତେ [illegible] ଙ୍ଗ କରିବା ବିଧେୟ । କାରଣ, ସତ୍‌ସଙ୍ଗ ଭବରୋଗର ମହୌଷଧି ।

ଶିଶ୍ନ ଓ ଉଦରତୃପ୍ତି ପ୍ରଦ ସକଳ ଅସତ୍ ପଦାର୍ଥର କେବେ ହେଲେ ସାହଚର୍ଯ୍ୟ କରିବ ନାହିଁ । ଯେଉଁ ବ୍ୟକ୍ତି ସେଥିରୁ ଗୋଟିକର ମଧ୍ୟ ଅନୁଗମନ କରେ; ସେ ଅନ୍ଧର ଅନୁଗାମୀ ଅନ୍ଧ ପରି ଘୋର ଅନ୍ଧକାରରେ ପତିତ ହୁଏ ।

## ୦—କୁସଙ୍ଗଦ୍ୱାରା ପାପ ସଂକ୍ରମିତ ହୁଏ ।

**ଆସାନାଚ୍ଛୟନାଦ୍ ଯାନାତ୍ ସମ୍ଭାଷାତ୍ ସହ ଭୋଜନାତ୍ ।**
**ସଂକ୍ରାମନ୍ତୀହ ପାପାନି ତୈଳବନ୍ଦୁରିବାମ୍ଭସି ॥**

ପରାଶରସ୍ମୃତି-୧୨ । ୭୮ ॥

ଯେପରି ଜଳ ଉପରେ ତୈଳବିନ୍ଦୁ ନିକ୍ଷେପ କଲେ ତାହା ସମୁଦାୟ ଜଳର ଉପରି ଭାଗରେ ବିସ୍ତାରିତ ହୋଇଯାଏ, ସେହିପରି ଏକତ୍ରବାସ, ଶୟନ, ଗମନ ଓ ଏକତ୍ର ଆଳାପ ଏବଂ ଏକତ୍ର ଭୋଜନ କଲେ ଜଣକର ପାପ ଅପର ଶରୀରରେ ସଂକ୍ରମିତ ହୁଏ ।

ଆଳାପାଦ୍ ଗାତ୍ରସଂସର୍ଗାନ୍ନିଃଶ୍ୱାସାତ୍ ସହ ଭୋଜନାତ୍ ।
ଆସନାତ୍ ଶୟନାଦ୍ ଯାନାତ୍ ପାପଂ ସଂକ୍ରମତେ ନୃଣାମ୍ ॥
ଆସନାଦେକଶଯ୍ୟାୟାଂ ଭୋଜନାତ୍ ପଂକ୍ତିସଂକରାତ୍ ।
ତତଃ ସଂକ୍ରମତେ ପାପଂ ଘଟାଦ୍‌ଘଟମିବୋଦକମ୍ ॥

ଗରୁଡ଼ ପୁ: ୧୧୫ । ୬-୭ ॥

ସର୍ବଦା ଆଳାପ, ଗାତ୍ର ସଂସର୍ଗ, ଏକତ୍ର ଭୋଜନ, ଏକ ଆସନରେ ସ୍ଥିତି, ଏକ ଶଯ୍ୟାରେ ଶୟନ ଏବଂ ଏକଯାନରେ ଗମନ କଲେ ମନୁଷ୍ୟମାନଙ୍କର ପାପ ସଂକ୍ରମିତ ହୁଏ । ଯାହା ସହିତ ଆଳାପାଦି କରାଯାଏ, ତାହାର ପାପ ନିଜେ ଭୋଗିବାକୁ ହୁଏ । ପାପୀ ସହିତ ଏକ ଆସନରେ ଉପବେଶନ, ଏକତ୍ର ଶୟନ ଓ ଏକ ପଂକ୍ତିରେ ଭୋଜନ କଲେ ପାପ ସଂକ୍ରମିତ ହୁଏ । ଯେପରି ଗୋଟିଏ ଘଟରୁ ଅନ୍ୟ ଘଟକୁ ଜଳ ଯାଏ ସେହିପରି ଏକ ବ୍ୟକ୍ତିଠାରୁ ଅନ୍ୟ ବ୍ୟକ୍ତି ନିକଟକୁ ପାପ ସଞ୍ଚରିତ ହୁଏ ।

## ୦—ମଦ୍ୟପାନ, ଦ୍ୟୂତ ଓ ଶକଟାଦି କ୍ରୀଡ଼ା, ନଟନାଟ୍ୟ ଓ ବାଦବିବାଦ ପ୍ରଭୃତ ଉପର୍ଯ୍ୟୁକ୍ତ ଭାବରେ ବର୍ଜନୀୟ—

**ହୃତ୍ସୁ ପୀତାସୋ ଯୁଧ୍ୟନ୍ତେ ଦୁର୍ମଦାସୋ ନ ସୁରାୟାମ୍**
**ଉଧର୍ନ ନଗ୍ନା ଜରନ୍ତେ ॥** ଋକ୍ ସ—୮ । ୨ । ୧୨ ॥

ଅର୍ଥାତ୍ ମଦ୍ୟପାୟୀ ହୃଦୟ ଖୋଲି ମଦ୍ୟପାନ କରି ପରସ୍ପର କଳହ ବିବାଦ କରେ ଏବଂ ନଗ୍ନାବସ୍ଥାରେ ସାରା ରାତି ବୃଥା ପ୍ରଳାପ କରୁଥାଏ । ଏମାନେ ନଷ୍ଟସ୍ୱ ଦୁଷ୍ଟବୁଦ୍ଧି ।

**ଜାୟା ତପ୍ୟତେ କିତବସ୍ୟ ହୀନା ମାତା ପୁତ୍ରସ୍ୟ ଚରତଃ କ୍ୱସ୍ୱିତ୍ ।**
**ଋଣାବା ବିଭ୍ୟଦ୍ଧନମିଚ୍ଛମାନୋଽନ୍ୟେଷାମସ୍ତମୁପ ନକ୍ତମେତି ॥**

ଋକ୍—୧୦ । ୩୪ । ୧୦ ॥

ଦ୍ୟୂତାସକ୍ତ ପୁରୁଷର ସ୍ତ୍ରୀ ହୀନାବସ୍ଥାରେ ପଡ଼ି କଷ୍ଟ ଭୋଗ କରେ । ଇତସ୍ତତଃ ଭ୍ରମଣଶୀଳ ଜୁଆଖେଳାଳିର ମାତା ମଧ୍ୟ ଦୁଃଖ ପାଏ । ସେ ସର୍ବଦା ଋଣଗ୍ରସ୍ତ ହୋଇ ଭୟରେ କାଳ କଟାଏ । ଧନ ଆଶାରେ ସେ ରାତିରେ ଅନ୍ୟ ଗୃହରେ ଉପସ୍ଥିତ ହୁଏ । ଅତଏବ ଋଗ୍‌ବେଦ ମନ୍ତ୍ର—

—"ଅକ୍ଷୈର୍ମାଦୀବ୍ୟଃ + + କିତବ"—

ଋକ୍ ସଂ—୧୦ । ୩୪ । ୧୩ ॥

ହେ ଜୁଆଖେଳାଳି; ଜୁଆ ଖେଳ ନାହିଁ । ବୃଦ୍ଧ ମନୁ ମଧ୍ୟ କହିଅଛନ୍ତି—

**ଦ୍ୟୂତମେତତ୍ ପୁରା କଳ୍ପେ ଦୃଷ୍ଟଂ ବୈରକରଂ ମହତ୍ ।**
**ତସ୍ମାଦ୍‌ଦ୍ୟୂତଂ ନ ସେବେତ ହାସ୍ୟାର୍ଥମପି ବୁଦ୍ଧିମାନ୍ ॥**

ମନୁ—୯ । ୨୨୭ । ମହା: ଉଦ୍: ୩୭ । ୧୯ ॥

ପ୍ରାଚୀନ କାଳରେ ଅନେକ ସ୍ଥଳରେ ଦେଖା ଯାଇଅଛି ଯେ, ଦ୍ୟୂତକ୍ରୀଡ଼ାଦ୍ୱାରା ନାନାପ୍ରକାର ଶତ୍ରୁତା ଜାତ ହୁଏ; ଏହି ହେତୁରୁ ବୁଦ୍ଧିମାନ ଲୋକ ହାସ୍ୟାର୍ଥ ବା ଆମୋଦ ପ୍ରମୋଦ ଛଳରେ ମଧ୍ୟ ଦ୍ୟୂତକ୍ରୀଡ଼ା କରିବ ନାହିଁ ।

**ଅକ୍ଷେଷୁ ମୃଗୟାୟାଂ ଚ ପାନେ ସ୍ତ୍ରୀଷୁ ଚ ବୀର୍ଯ୍ୟବାନ୍ ।**
**ଏତୈର୍ଦୋଷୈର୍ନରା ରାଜନ୍ କ୍ଷୟଂ ଯାନ୍ତି ନ ସଂଶୟଃ ॥**
**ତସ୍ମାଦେତାନ୍ନରୋ ନିତ୍ୟଂ ଦୂରତଃ ପରିବର୍ଜୟେତ୍ ॥**

ମହା ଶା: ଅନୁ: ୧୫୭ । ୩୩ । ୩୪ ॥

ମୁନିଶ୍ରେଷ୍ଠ ବୀର୍ଯ୍ୟବାନ୍ ଚ୍ୟବନ ଜୁଆ, ମୃଗୟା, ମଦ୍ୟପାନ ତଥା ସ୍ତ୍ରୀରୂପକ ଦୋଷ ବିଷୟରେ କହିଛନ୍ତି ଯେ, ମନୁଷ୍ୟ ନିଃସନ୍ଦେହ ଏହି ଦୋଷରେ ବିନାଶ ପ୍ରାପ୍ତ ହୁଅନ୍ତି, ଅତଏବ ମନୁଷ୍ୟ ଏହି ଦୋଷକୁ ସର୍ବଥା ତ୍ୟାଗ କରିବ ।

ଜ୍ଞାନବାନ୍ ହୃଦ୍ୟଶବ୍ଦେଷୁ ବୀଣାବଂଶରବାଦଷୁ ।
କାମିନ୍ୟାଃ କାନ୍ତଗୀତେଷୁ ସମ୍ଭୋଗମଳନେଷୁ ଚ ॥
ବସନ୍ତମଦମତ୍ତାନାଂ ଷଟ୍‌ପଦାନାଂ ସ୍ୱନେଷୁ ଚ ।
ପ୍ରାବୃଟ୍‌ପ୍ରସରପୁଷ୍ପେଷୁ ଜଳଦସ୍ତନତେଷୁ ଚ ॥
ଉତ୍ତାଣ୍ଡବଶିଖଣ୍ଡେଷୁ କେକାକଳରବେଷୁ ଚ ।
ରଣିତାମ୍ଭୋଦଖଣ୍ଡେଷୁ ସାରସକ୍ୱଣିତେଷୁ ଚ ॥
କର୍ତ୍ତର୍ଯ୍ୟାଦକସଂକ୍ରାନ୍ତେଷୁ ଗମ୍ଭୀରମୁରଜେଷୁ ଚ ।
କେଷୁଚିତ୍ ନ ନବଧ୍ମାତ ରୁକ୍ଷେଷୁ ମଧୁରେଷୁ ଚ ।
ରଣିତେଷୁ ରତିଂ ଯାମ ପଦ୍ମେଷ୍ୱିବ ନିଶାକରଃ ॥

ଯୋଗବାଶିଷ୍ଠ ଉପଶମ—ପ୍ର ୯୩ । ୬୫ । ୬୯ ॥

ଜ୍ଞାନବାନ୍ ବ୍ୟକ୍ତି ବୀଣାବାଦ୍ୟ, ବଂଶୀସ୍ୱନ, କାମିନୀର କାନ୍ତଗୀତ, ଭ୍ରମରର ଗୁଞ୍ଜୁ ଗୁଞ୍ଜୁ ଧ୍ୱନି, ବର୍ଷାକାଳର ମେଘଗର୍ଜନ, ମୟୂର-ନୃତ୍ୟ, ସରୋବରରେ ସାରସରବ, ଝାଞ୍ଜ କରତାଳ ଓ ମୃଦଙ୍ଗ ବାଦ୍ୟ, ନଟନାଟ୍ୟପ୍ରଭୃତି—ଏହି ସକଳ ବିଷୟରେ କୌଣସିପ୍ରକାରେ ରତ ହେବ ନାହିଁ ।

ସ୍ତ୍ରୀଧନ ନାସ୍ତିକ ବୈର ଚରିତ୍ରଂ ନ ଶ୍ରବଣୀୟମ୍ ।
ଅଭିମାନଂ ଦମ୍ଭାଦିକଂ ତ୍ୟାଜ୍ୟମ୍ ।

ନାରଦ ଭକ୍ତିସୂତ୍ର—୬୩ । ୬୪ ॥

ସ୍ତ୍ରୀମାନଙ୍କର ରୂପ, ଯୌବନ, ଭାବାଳାପ, କ୍ରିୟା, ଚେଷ୍ଟା ଓ ଚରିତ୍ର ଆଦି ବର୍ଣ୍ଣନା ବିଷୟ ପାଠ ବା ଶ୍ରବଣ କରିବା ଉଚିତ ନୁହେଁ; କାରଣ ସେଥିରେ ବିଳାସ ବାସନା ଜାଗ୍ରତ ହେବା ସମ୍ଭାବନା ଥାଏ । ଧନ ବା ବିଷୟ-ବିଭବର କଥା ଶ୍ରବଣ କରି ନାହିଁ, କାରଣ ତଦ୍ୱାରା ଲୋଭ-ପ୍ରବୃତ୍ତି ବୃଦ୍ଧିପ୍ରାପ୍ତ ହୁଏ । ନାସ୍ତିକମାନଙ୍କର ଚରିତ୍ର ବା ସେମାନଙ୍କର କୁଟିଳ ତର୍କଜାଲ ପାଠ ବା ଶ୍ରବଣ କରି ନାହିଁ, କାରଣ ତଦ୍ୱାରା ଆସ୍ତିକ୍ୟ ବିଶ୍ୱାସ ବିଚଳିତ ହେବ । ଯେଉଁ ଲୋକ ତୁମ୍ଭର ବିପକ୍ଷ, ତାଙ୍କ କଥା କେହି କହିଲେ, ସେଥିରେ କର୍ଣ୍ଣପାତ କରି ନାହିଁ, କାରଣ ସେମାନଙ୍କର ଦୁର୍ବ୍ୟବହାର କଥା ଶୁଣିଲେ ତୁମ୍ଭର ଚିତ୍ତ କ୍ଷୁବ୍ଧ ଓ ଅପ୍ରସନ୍ନ ହେବ ଓ କ୍ରୋଧାଦି-ଭାବ ଉତ୍ପନ୍ନ ହେବ ଓ ତପଃଶକ୍ତି ବିଚଳିତ ହେବାର ସମ୍ଭାବନା ଥାଏ । ଏହିପରି ଅଭିମାନ ଓ ଦମ୍ଭାଦିଭାବ ପରିତ୍ୟାଗ କରିବ ।

ବାଦୋ ନାବଲମ୍ବ୍ୟଃ ।　　ନାରଦଭକ୍ତିସୂତ୍ର । ୭୪ ।

ତର୍କ ବିତର୍କ ବା ବାଦବିବାଦ କଲେ ମନରେ ଜିଗୀଷା-ପ୍ରବୃତ୍ତିରୂପକ ଦୁରାଗ୍ରହ ଜାଗ୍ରତ ହୁଏ ଏବଂ ସଙ୍ଗେ ସଙ୍ଗେ ତମୋଗୁଣର ମଧ୍ୟ ଉଦୟ ହୁଏ । ତମୋଗୁଣ ଭକ୍ତି ସାଧନର ବାଧକ, ଅର୍ଥାତ୍ ବିଘ୍ନକାରକ ଅଟେ । ଏଥି ନିମନ୍ତେ ବାଦବିବାଦ ପରିତ୍ୟାଗ କରିବ ।

୦—ଏହିପରି ବୃଥାଳାପ ଓ ବୃଥା ଶାସ୍ତ୍ର ଅଧ୍ୟୟନ ମଧ୍ୟ ପରିତ୍ୟାଜ୍ୟ ।

ଲୋକାନୁବର୍ତ୍ତନଂ ତ୍ୟକ୍ତ୍ୱା ତ୍ୟକ୍ତ୍ୱା ଦେହାନୁବର୍ତ୍ତନମ୍ ।
ଶାସ୍ତ୍ରାନୁବର୍ତ୍ତନଂ ତ୍ୟକ୍ତ୍ୱା ସ୍ୱାଧ୍ୟାସାପନୟଂ କୁରୁ ॥
ଅଧ୍ୟାତ୍ମୋପନିଷଦ୍ । ୩ । ବିବେକଚୂଡ଼ାମଣି । ୨୭୨ ।

ପୁତ୍ର ଓ ପଶୁ ପ୍ରଭୃତିରେ ଆତ୍ମବୁଦ୍ଧି ରୂପକ ଲୌକିକ ବ୍ୟବହାରର ଅନୁବର୍ତ୍ତନ, ଦେହାଦିରେ ଆତ୍ମବୁଦ୍ଧି ପୂର୍ବକ ବ୍ୟବହାରର ଅନୁସରଣ ଓ ଶ୍ରୁତିପ୍ରଭୃତି ଶାସ୍ତ୍ରର ବିରୋଧୀ ତର୍କଶାସ୍ତ୍ରାଦିର ଅନୁବର୍ତ୍ତନ ପରିତ୍ୟାଗ କରି ସ୍ୱୀୟ ଅଧ୍ୟାସରୂପ ମିଥ୍ୟାଜ୍ଞାନର ଅପନୋଦନ କର ।

ନିଦ୍ରାୟାଃ ଲୋକବାର୍ତ୍ତାୟାଃ ଶବ୍ଦାଦେରାତ୍ମବିସ୍ମୃତେଃ ।
କ୍ୱଚିନ୍ନାବସରଂ ଦତ୍ତ୍ୱା ଚିନ୍ତୟାତ୍ମାନମାତ୍ମନି ॥
ଅଧ୍ୟାତ୍ମୋପନିଷଦ୍ ॥ ୫ ॥

ନିଦ୍ରା, ଲୌକିକ ବୃଥାଳାପ ଆଦି ବ୍ୟବହାର; ବାହ୍ୟ ଶବ୍ଦସ୍ପର୍ଶାଦିର ବିଷୟାନୁଭବ ଓ ଆତ୍ମବିସ୍ମରଣର ଅବକାଶ କଦାପି ପ୍ରଦାନ ନ କରି ସର୍ବଦା ଆତ୍ମାରେ ଅବସ୍ଥାନପୂର୍ବକ ପରମାତ୍ମାଙ୍କୁ ଚିନ୍ତା କରିବ ।

୦—ଚିତ୍ତସମାଧାନର ଉପାୟ ।

ଚିତ୍ତୋପଶମ ନିମନ୍ତେ ସକଳ ବିରୋଧକଳ୍ପ-ଅଶୁଭବାସନା ପୂର୍ବେ ଯଥାଯଥଭାବରେ ବର୍ଣ୍ଣିତ ହୋଇଅଛି । ଏ ସମସ୍ତ ପରିତ୍ୟାଗ କରି ପୌରୁଷକାରଦ୍ୱାରା ଚିତ୍ତକୁ ଶୁଭବାସନା, ସାଧୁସଙ୍ଗ ଓ ସତ୍‌ଶାସ୍ତ୍ରରେ ନିଯୋଜିତ କଲେ ଚିତ୍ତର ଏକାଗ୍ରତା ସାଧିତ ହୁଏ ।

ଯଥା—

ଚିତ୍ତମେବ ହି ସଂସାରଂ ତତ୍ ପ୍ରଯତ୍ନେନ ଶୋଧୟେତ୍ ।
ଯଚ୍ଚିତ୍ତସ୍ତନ୍ମୟୋ ଭବତି ଗୁହ୍ୟମେତତ୍ ସନାତନମ୍ ॥

ମୈତ୍ରୀ ଉପ ।୬।୩୪ କ ।
ଶାଠ୍ୟାୟନି ଉ: ୩ ।

ଅନ୍ତଃକରଣ ବା ମନ କେବଳ ସଂସାରାଗମନର ପ୍ରଧାନ କାରଣ, ଯାହାର ଚିତ୍ତରେ ବାସନା ନ ଥାଏ, ତାହାକୁ ସଂସାରକୁ ଆଗମନ କରିବାକୁ ହୁଏ ନାହିଁ । ଯତ୍ନପୂର୍ବକ ଏହି ଚିତ୍ତକୁ ଶୋଧନ କରିବ; ଅର୍ଥାତ୍ ଚିତ୍ତରୁ ସକଳ ଅଶୁଭବାସନା ଦୂର କରିବ । ପୁରୁଷ ଯେଉଁ ବିଷୟରେ ଚିତ୍ତ ନିବେଶ କରେ, ସେ ସେହି ସ୍ୱରୂପ ପ୍ରାପ୍ତ ହୁଏ । ଏହା ସାଧାରଣ-ବୁଦ୍ଧିର ଅଗୋଚର ଏବଂ କୌଣସି କାଳରେ ଅନ୍ୟଥା ହୁଏ ନାହିଁ ।

ଅପ୍ୟବ୍ଧିପାନାନ୍ ମହତଃ ସୁମେରୂନ୍ମୂଳନାଦପି ।
ଅପି ବହ୍ନ୍ୟଶନାଦ୍ ବ୍ରହ୍ମନ୍ ବିଷମଶ୍ଚିତ୍ତନିଗ୍ରହଃ ॥
ଚିତ୍ତଂ କାରଣମର୍ଥାନାଂ ତସ୍ମିନ୍ ସତି ଜଗତ୍ତ୍ରୟମ୍ ।
ତସ୍ମିନ୍ କ୍ଷୀଣେ ଜଗତ୍ କ୍ଷୀଣଂ ତଚ୍ଚିକିତ୍ସ୍ୟଂ ପ୍ରଯତ୍ନତଃ ॥

ମହୋପନିଷତ୍—୩।୨୦-୨୧ ।

ହେ ବ୍ରହ୍ମନ୍ ! ମହାସମୁଦ୍ରପାନ, ସୁମେରୁପର୍ବତର ଉତ୍ପାଟନ ଏବଂ ଅଗ୍ନିଭକ୍ଷଣ ଅପେକ୍ଷା ମଧ୍ୟ ଚିତ୍ତନିଗ୍ରହ ବିଷମବ୍ୟାପାର ଅଟେ । ଚିତ୍ତ କେବଳ ବିଷୟସମୂହର ଉତ୍ପତ୍ତିର ହେତୁ, ଚିତ୍ତ ଥିଲେ ତ୍ରିଭୁବନସତ୍ତ୍ୱ ଅନୁଭୂତ ହୁଏ; କିନ୍ତୁ ଚିତ୍ତ କ୍ଷୟପ୍ରାପ୍ତ ହେଲେ ଜଗତ୍ କ୍ଷୀଣ ହୁଏ ; ଅତଏବ ଯତ୍ନପୂର୍ବକ ଚିତ୍ତର ଚିକିତ୍ସା କରିବା ଉଚିତ ।

ଚିତ୍ତର ଚିକିତ୍ସା ଉପାୟ—

ଅଙ୍କୁଶେନ ବିନା ମତ୍ତୋ ଯଥା ଦୁଷ୍ଟମତଙ୍ଗଜଃ ।
ଅଧ୍ୟାତ୍ମବିଦ୍ୟାଧିଗମଃ ସାଧୁସଙ୍ଗତିରେବ ଚ ॥
ବାସନାସଂପରିତ୍ୟାଗଃ ପ୍ରାଣସ୍ପନ୍ଦନିରୋଧନମ୍ ।
ଏତାସ୍ତାଃ ଯୁକ୍ତୟଃ ପୁଷ୍ଟାଃ ସନ୍ତି ଚିତ୍ତଜୟେ କିଲ ॥

ଯୋଗବାଶିଷ୍ଠ ଉ: ପ୍ର: ୯୨ । ୩୫ । ୩୬—ମୁକ୍ତିକୋପନି: ୨।୪୨-୪୩ ।

ଯେପରି ଦୁଷ୍ଟହସ୍ତୀ ଅଙ୍କୁଶ ବିନା ବଶ ହୋଇ ପାରେ ନାହିଁ, ସେହିପରି ଅଧ୍ୟାତ୍ମ ବିଦ୍ୟାଲାଭ, ସାଧୁସଙ୍ଗ, ବାସନାତ୍ୟାଗପ୍ରଭୃତି ଉପାୟ ବ୍ୟତୀତ ଉଦ୍ଦାମଚିତ୍ତ ବଶୀଭୂତ ହୁଏ ନାହିଁ । ଅତଏବ ଚିତ୍ତଜୟର ପ୍ରଧାନ ସାଧନ—ଆଧ୍ୟାତ୍ମବିଦ୍ୟାଲାଭ, ସାଧୁସଙ୍ଗ, ବାସନାତ୍ୟାଗ ଓ ପ୍ରାଣସ୍ପନ୍ଦ ନିରୋଧ ।

ଏହି ଚିତ୍ତସଂଯମ ବିଷୟରେ ଗୌତମବୁଦ୍ଧଙ୍କ ଉକ୍ତି—

**ଦୁନ୍ନିଗ୍ଗହସ୍ସ ଲହୁନୋ ଯତ୍ଥ କାମନିପାତନୋ ।**
**ଚିତ୍ତସ୍ସ ଦମଥୋ ସାଧୁଚିତ୍ତଂ ଦନ୍ତଂ ସୁଖାବହମ୍ ॥**

ଧମ୍ମପଦ—ଚିତ୍ତବଗ୍ଗ ୩୫ । ୩ ।

ଦୁର୍ନିଗ୍ରହ, ହାଲୁକାଭାବ, ଯେଉଁଠାକୁ ଇଚ୍ଛା ସେଠାକୁ ଦଉଡ଼ୁଥିବା ଚିତ୍ତର ସଂଯମ ଉତ୍ତମ । ସଂଯତ ଚିତ୍ତ ସୁଖପ୍ରଦ ।

**ସୁଦୁଦ୍ଦସଂ ସୁନିପୁଣଂ ଯତ୍ଥ କାମ ନିପାତନମ୍ ।**
**ଚିତ୍ତଂ ରକ୍ଖେଯ୍ୟ ମେଧାବୀ ଚିତ୍ତଂ ଗୁତ୍ତଂ ସୁଖାବହଂ ॥**

ଧମ୍ମପଦ ୩୬ । ୪ ।

ଦୁର୍ବୋଧ, ସୁଚତୁର, ଯେଉଁଠାକୁ ଇଚ୍ଛା ସେଠାକୁ ଯିବା—ଚିତ୍ତକୁ ବୁଦ୍ଧିମାନ୍ ବ୍ୟକ୍ତି ରକ୍ଷା କରିବା ଉଚିତ । ସୁରକ୍ଷିତ ଚିତ୍ତ ସୁଖପ୍ରଦ ।

**ଦିସୋ ଦିସଂ ଯଂ ତଂ କୟିରା, ବେରୀ ବାପନ ବେରିନଂ ।**
**ମିଚ୍ଛାପଣିହିତଂ ଚିତ୍ତଂ ପାପିୟୋ ନଂ ତତୋ କରେ ॥**

ଧମ୍ମପଦ ୪୨ । ୧୦ ।

ଦ୍ୱେଷକାରୀ ଅନ୍ୟଦ୍ୱେଷକାରୀ ପ୍ରତି, କିମ୍ବା ଶତ୍ରୁ ପୁଣି ଶତ୍ରୁପ୍ରତି ଯେତିକି କ୍ଷତି କରିପାରେ, ଉନ୍ମାର୍ଗଗାମୀ ଚିତ୍ତ ମନୁଷ୍ୟକୁ ତାହା ଅପେକ୍ଷା ଅଧିକ ପାପଯୁକ୍ତ ଓ କ୍ଷତିଗ୍ରସ୍ତ କରିପାରେ ।

**ନତଂ ମାତା ପିତା କୟିରା ଅଞ୍ଞେ ବା ପିଚ ଞାତକା ।**
**ସମ୍ମାପଣି ହିତଂ ଚିତ୍ତଂ ସେୟ୍ୟସୋ ନଂ ତତୋ କରେ ॥**

ଧମ୍ମପଦ ୪୩ । ୧୧ ।

ସତ୍ପଥରେ ଗୃହଚରଣ ମନୁଷ୍ୟଙ୍କୁ ଯେପରି ଅଧିକ ମଙ୍ଗଳଯୁକ୍ତ କରେ, ମାତା ପିତା କିମ୍ବା ଅନ୍ୟ ଶ୍ରେଷ୍ଠମାନେ ସେପରି କରିପାରନ୍ତି ନାହିଁ ।

୦—ସତ୍‌ଶାସ୍ତ୍ର-ଅଧ୍ୟାତ୍ମବିଦ୍ୟା ।

ଆପ୍ତପୁରୁଷ, ସିଦ୍ଧସାଧୁ ଓ ଋଷିମୁନିମାନଙ୍କଦ୍ୱାରା ଅଦ୍ୱିତୀୟ ବ୍ରହ୍ମବସ୍ତୁ—ଅବଧାରଣ ନିମନ୍ତେ ଯେଉଁ ସକଳ ଶାସ୍ତ୍ର ପ୍ରଣୀତ ହୋଇଅଛି, ତାହାହିଁ ସତ୍ ଶାସ୍ତ୍ର ବା ଅଧ୍ୟାତ୍ମବିଦ୍ୟା ।

**କ୍ରିୟୟା ସ୍ପନ୍ଦଧର୍ମିଣ୍ୟା ସ୍ୱାର୍ଥସାଧକତା ସ୍ୱୟମ୍ ।**
**ସାଧୁସଙ୍ଗମସଚ୍ଛାସ୍ତ୍ରତୀକ୍ଷ୍ଣୟୋନ୍ନୀୟତେ ଧିୟା ॥**
**ଅନନ୍ତସମତାନନ୍ଦଂ ପରମାର୍ଥଂ ସ୍ୱକଂ ବିଦୁଃ ।**
**ସ ଯେଭ୍ୟଃ ପ୍ରାପ୍ୟତେ ଯତ୍ନାତ୍ ସେବ୍ୟାସ୍ତେ ଶାସ୍ତ୍ରସାଧବଃ ॥**

ଯୋଗବାଶିଷ୍ଠ: ମୁମୁକ୍ଷୁ-ପ୍ର-୭ । ୨୭-୨୮ ।

ସ୍ପନ୍ଦନ ବା ପରିଚାଳନଘଟିତ ଶାରୀରିକ ଓ ମାନସିକ କ୍ରିୟା ଯେ ନିଜେ ସ୍ୱାର୍ଥସାଧନ କରେ, ଅର୍ଥାତ୍ ବିଶିଷ୍ଟ ଫଳ ଉତ୍ପାଦନ କରେ, ତାହା ତାହାର ସ୍ୱଭାବ; କିନ୍ତୁ ବୁଦ୍ଧିମାନ୍ ଲୋକ ସାଧୁସଙ୍ଗ ଓ ସତ୍-ଶାସ୍ତ୍ରଆଲୋଚନାଦ୍ୱାରା ନିଜ ବୁଦ୍ଧି ପରିମାର୍ଜିତ କରି କ୍ରିୟା ଓ କ୍ରିୟାଫଳ ଉନ୍ନତ କରନ୍ତି । ଯାହାର ଆଲୋଚନାଦ୍ୱାରା ଅଜ୍ଞାନଜନ୍ୟ ବୈଷମ୍ୟ ନିବୃତ୍ତ ହୋଇ ଅନନ୍ତ ସୁଖ ଲାଭ ହୁଏ, ପଣ୍ଡିତମାନେ ତାହାକୁ ହିଁ ସତ୍‌ଶାସ୍ତ୍ର କହନ୍ତି ଏବଂ ସାଧୁମାନେ ଯତ୍ନପୂର୍ବକ ତାହାର ସେବା କରନ୍ତି ।

**ଅନ୍ୟବିଦ୍ୟାପରିଜ୍ଞାନମବଶ୍ୟଂ ନଶ୍ୱରଂ ଭବେତ୍ ।**
**ବ୍ରହ୍ମବିଦ୍ୟାପରିଜ୍ଞାନଂ ବ୍ରହ୍ମପ୍ରାପ୍ତିକରଂ ସ୍ଥିତମ୍ ॥**

ଶୁକରହସ୍ୟ ଉ: ୧୪ ଘ ।

ଅନ୍ୟ ବିଦ୍ୟାବିଷୟକ ଜ୍ଞାନ ଅବଶ୍ୟ ନଶ୍ୱର; କିନ୍ତୁ ବ୍ରହ୍ମବିଦ୍ୟାର ସମ୍ୟକ୍ ଜ୍ଞାନ ବ୍ରହ୍ମପ୍ରାପ୍ତି ନିମିତ୍ତ ଚିରସ୍ଥାୟୀ । (ବ୍ରହ୍ମ ନିତ୍ୟ ଓ କାର୍ଯ୍ୟତଃ ସେହି ବ୍ରହ୍ମଙ୍କୁ ପ୍ରତିପାଦନ କରୁଥିବା ବେଦବିଷୟକ ଜ୍ଞାନ ନିଶ୍ଚୟ ଚିରସ୍ଥାୟୀ । ଆଜି ହେଉ ବା କାଲି ହେଉ, ସେହି ବେଦବିଦ୍ୟାରୁ ବ୍ରହ୍ମପ୍ରାପ୍ତିରୂପକ ଅବିନଶ୍ୱର ଫଳ ନିଶ୍ଚୟ ପ୍ରାପ୍ତ ହେବ; କିନ୍ତୁ ଲୌକିକ ବା ଇନ୍ଦ୍ରଜାଲାଦି ବିଦ୍ୟା ଦେହ ସଙ୍ଗେ ବିଲୟ ପ୍ରାପ୍ତ ହେବ ଏବଂ ପରିମାଣରେ ମହାଦୁଃଖ ଆନୟନ କରିବ—ଏହାହିଁ ତାତ୍ପର୍ଯ୍ୟ ।)

ଆଚାର୍ଯ୍ୟ ଶଙ୍କର ମଧ୍ୟ ଏ ବିଷୟରେ କହିଛନ୍ତି—

ଅପି ନନ୍ଦୋପପତ୍ତେଶ୍ଚ ଯାନ୍ୟତୋଽନ୍ୟାନି ଚେତ୍ୟତଃ ।
ତ୍ୟକ୍ତ୍ୱାତୋ ହ୍ୟନ୍ୟଶାସ୍ତ୍ରୋକ୍ତୀର୍ମତିଂ କୁର୍ଯ୍ୟାଦ୍ଦୃଢ଼ାଂ ବୁଧଃ ॥
ଶ୍ରଦ୍ଧାଭକ୍ତୀ ପୁରସ୍କୃତ୍ୟ ହିତ୍ୱା ସର୍ବମନାର୍ଜ୍ଜବମ୍ ।
ବେଦାନ୍ତସ୍ୟୈବ ତତ୍ତ୍ୱାର୍ଥେ ବ୍ୟାସସ୍ୟାଭିମତୌ ତଥା ॥

ଉପଦେଶସାହସ୍ରୀ ପାର୍ଥିବ ପ୍ର-୭୬-୭୭ ।

ଦ୍ୱୈତର ନିନ୍ଦାବାଦହେତୁରୁ ବେଦାନ୍ତଭିନ୍ନ ସକଳ ଶାସ୍ତ୍ର ମୁମୁକ୍ଷୁଗଣଙ୍କର ଆଦରଣୀୟ ନୁହେଁ ; ଅତଏବ ପଣ୍ଡିତମାନେ ଅନ୍ୟଶାସ୍ତ୍ରର ଉକ୍ତିସମୂହ ବର୍ଜ୍ଜନ କରି ବେଦାନ୍ତରେ ଦୃଢ଼ ମତ ସ୍ଥାପନ କରିବେ । ପଣ୍ଡିତ ଲୋକ ଶ୍ରଦ୍ଧା ଓ ଭକ୍ତିସହକାରେ ସକଳ କପଟ-ବ୍ୟବହାର ପରିତ୍ୟାଗ କରି ବ୍ୟାସଙ୍କ ଅଭିମତ ବେଦାନ୍ତପ୍ରତିପାଦ୍ୟ ତତ୍ତ୍ୱରେ ଦୃଢ଼ମତି ସ୍ଥାପନ କରିବେ ।

ଇତ ପ୍ରଶୁନ୍ନା ଦ୍ୱୟବାଦ କଲ୍ପନା
ନିରାତ୍ମବାଦଶ୍ଚ ତଥାହି ଯୁକ୍ତିତଃ ।
ବ୍ୟପେତ ଶଙ୍କାଃ ପରବାଦତଃ ସ୍ଥିରା
ମୁମୁକ୍ଷବୋ ଜ୍ଞାନପଥେ ସ୍ୟୁରତ୍ୟୁତ ॥

ଉପଦେଶସାହସ୍ରୀ, ପାର୍ଥିବ ପ୍ର—୭୮ ।

ଏହିପରି ଦ୍ୱୈତବାଦ ଓ ଅନାତ୍ମବାଦପ୍ରଭୃତି ବେଦାନ୍ତଶାସ୍ତ୍ରର ଯୁକ୍ତିଦ୍ୱାରା ନିରାକୃତ ହୋଇଅଛି । ଅତଏବ ମୁମୁକ୍ଷୁମାନେ ପରଶାସ୍ତ୍ରସମୂହରେ ପ୍ରାମାଣ୍ୟଶଙ୍କା-ରହିତ ହୋଇ ବେଦାନ୍ତ ଉକ୍ତ ଜ୍ଞାନମାର୍ଗରେ ନିଶ୍ଚଳ ହୋଇ ରହିବେ ।

## ୦—ସୁସାଧୁସଙ୍ଗ ଓ ସୁଶାସ୍ତ୍ର ଅଧ୍ୟୟନରେ ଚିତ୍ତ ବିନୋଦନ କର ।

ସୁସାଧୁସଙ୍ଗ, ଅର୍ଥାତ୍ ସିଦ୍ଧ ସାଧୁସଙ୍ଗଦ୍ୱାରା ସମସ୍ତ ଦୁରିତ ବିନାଶ ଓ ଆତ୍ମଜ୍ଞାନ ଭକ୍ତିର ସଞ୍ଚାର ହୁଏ ଏବଂ ମନର ମାଳିନ୍ୟ ମଧ୍ୟ ଦୂର ହୋଇ ଶୁଦ୍ଧ ସାତ୍ତ୍ୱିକଭାବରେ ମନ ନିଶ୍ଚଳ ରହେ । କୌଣସି କୁସଙ୍ଗ ବା ଅସତ୍‌କାର୍ଯ୍ୟ ପ୍ରତି ଚିତ୍ତ ପ୍ରଧାବିତ ହୁଏ ନାହିଁ । ଏହିପରି ସଙ୍ଗ ହିଁ ପ୍ରକୃତରେ ଆତ୍ମାର ସଙ୍ଗ; ଏତଦ୍‌ବ୍ୟତୀତ ଅନ୍ୟ ସଙ୍ଗ ବୃଥା କ୍ଷଣିକମାତ୍ର; ପରିଣାମରେ ଅସୀମ ଦୁଃଖପ୍ରଦ ମଧ୍ୟ । ସୁତରାଂ ମାନବଜୀବନରେ ସର୍ବଦା ସୁସାଧୁସଙ୍ଗହିଁ କାମ୍ୟ ।

ଦ୍ୱୈଷୈର୍ଜର୍ଜରତାଂ ଯାତ ସତ୍କାର୍ଯ୍ୟାକାର୍ଯ୍ୟସେବନାତ୍ ।
ବାତାନ୍ତଂ ପିଚ୍ଛିଲବଚ୍ଚେତଃ ଚଳତ ଚଞ୍ଚଳମ୍ ।।

ଯୋଗ: ବୈ: ୧୬।୧।

ସାଧୁସଙ୍ଗ ଓ ସତ୍‌କାର୍ଯ୍ୟ ଏ ଦୁଇ ବିଷୟରେ ନିବିଷ୍ଟ ନ ହେଲେ ଚିତ୍ତ କାମାଦିଦୋଷରେ ଜର୍ଜରିତ ହୁଏ ଓ ବାୟୁପ୍ରବାହ ସ୍ଖଳିତ ମୟୂରପୁଚ୍ଛର ଅଗ୍ରଭାଗ ପରି ଚଞ୍ଚଳ ହୋଇଥାଏ ।

ଜ୍ଞାନଗ୍ରହଣାଭ୍ୟାସସ୍ତଦ୍‌ବିଦ୍ୟୈଶ୍ଚ ସହ ସମ୍ବାଦଃ ।।

ନ୍ୟାୟସୂତ୍ର—୪।୨।୪୭ ।।

ମୋକ୍ଷପ୍ରାପ୍ତି ନିମନ୍ତେ ଆତ୍ମବିଦ୍ୟା ଅଭ୍ୟାସ କରି ପଠନ, ଶ୍ରବଣ ଓ ବିଚାର କରିବ । ସେହିପରି ଅଧ୍ୟାତ୍ମଶାସ୍ତ୍ରଜ୍ଞ ବ୍ୟକ୍ତିଙ୍କ ସଙ୍ଗରେ ବୁଦ୍ଧିର ପରିପକ୍ୱତା ନିମନ୍ତେ ସଦା ବାର୍ତ୍ତାଳାପ କରିବା ଉଚିତ । ଏହାଦ୍ୱାରା ସନ୍ଦେହ ନିବୃତ୍ତି, ଅଜ୍ଞାନ ବିଷୟରେ ବୋଧ ଓ ନିଶ୍ଚିତ ଅଭ୍ୟନୁଜ୍ଞାତ ହୁଏ ।

ଏ ବିଷୟରେ ମହାତ୍ମାଋଭୁ ଉପନିଷଦ୍‌ରେ ଉପଦେଶ ଦେଇଛନ୍ତି—

ନିଦାଘ ଶୃଣୁ ସତ୍ତ୍ୱାସ୍ଥା ଜାତା ଭୁବି ମହାଗୁଣାଃ
ତେ ନିତ୍ୟମେବାଭ୍ୟୁଦିତା ମୁଦିତାଃ ଖ ଇବେନ୍ଦବଃ ।।
ନାପଦି ଗ୍ଲାନିମାୟାନ୍ତି ନିଶି ହେମାମ୍ବୁଜଂ ଯଥା ।
ନେହନ୍ତେ ପ୍ରକୃତାଦନ୍ୟଦ୍‌ରମନ୍ତେ ଶିଷ୍ଟବର୍ତ୍ମନି ।।
ଆକୃତୈ୍ୟବ ବିରାଜନ୍ତେ ମୈତ୍ର୍ୟାଦିଗୁଣବୃତ୍ତିଭିଃ ।
ସମାଃ ସମରସାଃ ସୌମ୍ୟ ସତତଂ ସାଧୁବୃତ୍ତୟଃ ।।
ଅବ୍ଧିବଦ୍ଧୃତମର୍ଯ୍ୟାଦା ଭବନ୍ତି ବିଶଦାଶୟାଃ ।।
ନିୟତଂ ନ ବିମୁଞ୍ଚନ୍ତି ମହାନ୍ତୋ ଭାସ୍କରାଇବ ।
କୋଽହଂ କଥମିଦଂ ଚେତି ସଂସାରମଲମାତତମ୍ ।।
ପ୍ରବିଚାର୍ଯ୍ୟଂ ପ୍ରଯତ୍ନେନ ପ୍ରାଜ୍ଞେନ ସହ ସାଧୁନା ।।

ମହୋପନିଷଦ୍ ୪।୧୭—୨୧ ।।

ହେ ନିଦାଘ ! ଶ୍ରବଣ କର; ପ୍ରାଣୀମାନଙ୍କଠାରେ ଅସଂଖ୍ୟ ମହାଗୁଣ ବିଦ୍ୟମାନ; ସେ ସବୁ ନିତ୍ୟ ଉଦିତ ହୋଇ ଆକାଶସ୍ଥ ଶତ ଶତ ପୂର୍ଣ୍ଣଚନ୍ଦ୍ର ପରି ପ୍ରକାଶିତ ହୁଅନ୍ତି ।

ସ୍ଥିତିରେ ମଧ୍ୟ ଯେପରି ସୁବର୍ଣ୍ଣପଦ୍ମ ମ୍ଳାନ ହୁଏ ନାହିଁ, ସେହିପରି ଏହି ଗୁଣରାଶି କଦାପି ମଳିନ ହୁଏ ନାହିଁ । ଏହି ଗୁଣରାଶିଯୁକ୍ତ ପ୍ରାଣୀ ସଂସାରଯାତ୍ରା ନିର୍ବାହ ବ୍ୟତୀତ ଅନ୍ୟ କିଛି ପ୍ରାର୍ଥନା କରେ ନାହିଁ ଏବଂ ଶିଷ୍ଟଗଣଙ୍କ ଅନୁଷ୍ଠିତ ମାର୍ଗରେ ସର୍ବଦା ନିରତ ଥାଏ । ହେ ପ୍ରିୟଦର୍ଶନ ! ସେହି ସକଳ ମହାଗୁଣ ସ୍ୱଭାବତଃ ମୈତ୍ରୀ, କରୁଣା, ଆନନ୍ଦ ଓ ଉପେକ୍ଷାରୂପକ ଗୁଣ ସହିତ ସର୍ବଦା ବିରାଜମାନ ଥାଏ, କାରଣ ସାଧୁଚରିତ୍ର ସର୍ବଦା ସମାନଭାବରେ ଅବସ୍ଥାନ କରେ । ସେହି ଗୁଣରାଶି ସମୁଦ୍ର ପରି ଅସୀମ ଓ ନିର୍ମଳ; ଶ୍ରେଷ୍ଠ ଧୀରଙ୍କ ଭଳି ନିୟତିକୁ ପରିତ୍ୟାଗ କରନ୍ତି ନାହିଁ, ଅର୍ଥାତ୍ ଗୁଣରାଶି ମଧ୍ୟ ନିୟତିର ଅଧୀନ । ଆମ୍ଭେ କିଏ ଓ ଦୃଶ୍ୟମାନ ବସ୍ତୁ ସବୁ କ'ଣ ? ଏପରି ସଂଶୟ ମଳିନତା ସର୍ବଦା ବିଦ୍ୟମାନ; କିନ୍ତୁ ସେମାନଙ୍କର ବିନାଶ ନିମନ୍ତେ ଯତ୍ନପୂର୍ବକ ସାଧୁମାନଙ୍କ ସହିତ ଶାସ୍ତ୍ରବିଚାର କର୍ତ୍ତବ୍ୟ । ଏ ବିଷୟରେ ଶଙ୍କର କହିଅଛନ୍ତି—

ଛାୟେବ ସର୍ବଦା ବାସୋ ବ୍ରହ୍ମବିଦ୍‌ଭିଃ ସହ ସ୍ଥିତଃ ॥

ସର୍ବଦର୍ଶନସାରସଂଗ୍ରହ ୧୨୩ ।

ବ୍ରହ୍ମଜ୍ଞ ପୁରୁଷମାନଙ୍କ ସହିତ ସର୍ବଦା ଛାୟା ପରି ଅବସ୍ଥାନ କରିବାକୁ ବ୍ରହ୍ମବିଦ୍ ସାଧୁସହବାସ କୁହାଯାଏ ।

ଏ ବିଷୟରେ ମହର୍ଷି ବଶିଷ୍ଠଙ୍କ ଭାଷଣ ଏହିପରି—

ସାଧୁସଙ୍ଗମସଚ୍ଛାସ୍ତ୍ରପରତୈବାତ୍ର କାରଣମ୍ ।
ସାଧନଂ ବାଧନଂ ମୋହଜାଲସ୍ୟ ଯଦକୃତ୍ରିମମ୍ ॥

ଯୋଗବାଶିଷ୍ଠ ଉ: ୬।୫ ।

ସତ୍‌ସଙ୍ଗ ଓ ସଦ୍ ଶାସ୍ତ୍ର ଆଲୋଚନା ଏବଂ ଯେଉଁ ଉପାୟରୁ ମୋହଜାଲ ଛିନ୍ନ ହୁଏ, ସେପରି ଉପାୟ ମଧ୍ୟ ତତ୍ତ୍ୱପ୍ରାପ୍ତିର ଉପାୟ ।

ତସ୍ମାତ୍ ପୁରୁଷୋ ଯତ୍ନେନ ମୁଖ୍ୟମୌଷଧମାହରେତ୍ ।
ସଚ୍ଛାସ୍ତ୍ରସଜ୍ଜନାସଙ୍ଗୌ ସଂସୃତବ୍ୟାଧିନାଶିନୌ ॥
ଅନେକଂ ପୌରୁଷଂ ଯତ୍ନଂ ବର୍ଜୟିତ୍ୱେତର ଗତଃ ।
ସର୍ବଦୁଃଖକ୍ଷୟପ୍ରାପ୍ତୌ ନ କାଚଦୁପପଦ୍ୟତେ ॥

ଯୋଗବାଶିଷ୍ଠ ୬ । ୧୩—୧୪ ।

ଅତଏବ ପୁରୁଷ ପ୍ରଯତ୍ନସହକାରେ ସତ୍‌ଶାସ୍ତ୍ରାନୁଶୀଳନ ଓ ସତ୍‌ସଙ୍ଗ—ସଂସାର-ବ୍ୟାଧିର ଏହି ଦୁଇଗୋଟି ମହୌଷଧ ଆହରଣ କରିବା ଅତ୍ୟନ୍ତ କର୍ତ୍ତବ୍ୟ । ଶାସ୍ତ୍ରରେ ଉଲ୍ଲେଖ ଅଛି ଯେ, ପୌରୁଷ ଓ ପ୍ରଯତ୍ନ ବ୍ୟତୀତ ଆତ୍ୟନ୍ତିକ ଦୁଃଖନିବୃତ୍ତିର ଅନ୍ୟ ଉପାୟ ନାହିଁ ।

ଶାସ୍ତ୍ରସଜ୍ଜନସଂସର୍ଗୈଃ ପ୍ରଜ୍ଞାଂ ପୂର୍ବଂ ବିବର୍ଦ୍ଧୟେତ୍ ।
ସେକସଂରକ୍ଷଣାରମ୍ଭୈଃ ଫଳପ୍ରାପ୍ତୌ ଲତାମିବ ॥

ଯୋଗବାଶିଷ୍ଠ ଉ: ୧୨।୨୪ ।

ଯେପରି ବୃକ୍ଷ-ଲତାଦିରେ ଜଳସେଚନ କଲେ ତାହା ବୃଦ୍ଧିପ୍ରାପ୍ତ ହୁଏ, ସେହିପରି ସତ୍‌ଶାସ୍ତ୍ର ଆଲୋଚନା ଓ ସାଧୁସଙ୍ଗଦ୍ୱାରା ପ୍ରଜ୍ଞା ପରିବର୍ଦ୍ଧିତ ହୁଏ ଏବଂ ତାହା ଅନାମୟ ପଦପ୍ରାପ୍ତିର କାରଣ ହୁଏ ।

ଶାସ୍ତ୍ରସଜ୍ଜନସମ୍ପର୍କ ସନ୍ତତାଭ୍ୟାସଯୋଗତଃ ।
ଜଗତାମବସ୍ତୁତ୍ୱଂ ଭବନାମବଗମ୍ୟତେ ॥
ଅବିବେକାଦୁପାହୃତ୍ୟ ଚେତଃ ସୋଽଦ୍ୟମନଶ୍ଚୟୈଃ ।
ବଳାତ୍‌କାରେଣ ସଂଯୋଜ୍ୟଂ ଶାସ୍ତ୍ରସତ୍‌ପୁରୁଷକ୍ରମୈଃ ॥

ଯୋଗବା: ଉପ ୫୦ । ୨୫—୨୭ ॥

ହେ ରଘୁପତେ ! ଶାସ୍ତ୍ରାଧ୍ୟୟନ, ସାଧୁସଙ୍ଗ ଓ ଅଭ୍ୟାସଦ୍ୱାରା ଜଗତ୍‌ଭବର ଅବସ୍ତୁତା ବୋଧଗମ୍ୟ କରାଯାଏ । ଅତଏବ ଶାସ୍ତ୍ର-ସାଧୁସଙ୍ଗ ପ୍ରଭୃତି ଅବଲମ୍ବନ କରି ଦୃଢ଼ ଉଦ୍ୟମସହକାରେ ଚିତ୍ତକୁ ବଳପୂର୍ବକ ଶାସ୍ତ୍ରରେ ସାଧୁସଙ୍ଗ ସହିତ ନିୟୋଜିତ କରିବ । *

ପୁନଶ୍ଚ—

ମୋକ୍ଷଦ୍ୱାରେ ଦ୍ୱାରପାଳାଶ୍ଚତ୍ୱାରଃ ପରିକୀର୍ତ୍ତିତାଃ ।
ଶମୋ ବିଚାରଃ ସନ୍ତୋଷଶ୍ଚତୁର୍ଥଃ ସାଧୁସଂଗମଃ ॥

ମହୋପନିଷତ୍ ୪।୨ ଯୋଗ: ମୁ: ୧୧।୫୯ ॥

---

* ବୌଦ୍ଧଧର୍ମ ଗ୍ରନ୍ଥରେ ମଧ୍ୟ ଏହି ସାଧୁସଙ୍ଗ ସମ୍ବନ୍ଧରେ ବିଚାରପୂର୍ବକ ପ୍ରମାଣ କରାଯାଇଅଛି—
ନିଧୀନଂ ନ ପବତ୍ତାରଂ ଯଂ ପସ୍‌ସେ ବଜ୍ଜଦସ୍‌ସିନଂ ।
ନିଗ୍‌ଗହ୍ୟବାଦଂ ମେଧାବିଂ ତାଦିସଂ ପଣ୍ଡିତଂ ଭଜେ ।
ତାଦିସଂ ଭଜମାନସ୍‌ସ ସେ ଯ୍ୟୋ ହୋତି ନ ପାପିୟ୍ୟୋ ॥
ପଣ୍ଡିତବ ଗ୍‌ଗୋ— । ଧର୍ମପଦ । ୭୬।୧
ଓବଦେୟ୍ୟାନୁସାସେୟ୍ୟ ଅସବ୍ଭା ଚ ନିବାରୟେ ।

ବେଦାନ୍ତଦର୍ଶନର ଅଭିଜ୍ଞ ପଣ୍ଡିତମାନେ କହିଅଛନ୍ତି—ମୋକ୍ଷନାମକ ପୁରର ଦ୍ୱାରଦେଶରେ ଶମ (ଚିତ୍ତେନ୍ଦ୍ରିୟଜୟ), ବିଚାର (ନିତ୍ୟାନିତ୍ୟବସ୍ତୁ ବିବେକ), ସନ୍ତୋଷ ଓ ସାଧୁସଙ୍ଗ—ଏହି ଚାରିଗୋଟି ଦ୍ୱାରପାଳ ବିଦ୍ୟମାନ ଅଛନ୍ତି ।

**"ଏତେ ସେବ୍ୟାଃ ପ୍ରଯତ୍ନେନ"**

ଯତ୍ନସହକାରେ ଏହି ଚାରି ଦ୍ୱାରପାଳମାନଙ୍କର ସେବା କରିବା ଅବଶ୍ୟ କର୍ତ୍ତବ୍ୟ ।

**ଠ—ଅଶୁଭବାସନା ତ୍ୟାଗ କର ଶୁଭବାସନା ଗ୍ରହଣ କର ।**

ବାସନାପ୍ରସଙ୍ଗ—ଉପର୍ଯ୍ୟୁକ୍ତ ଯେଉଁ ସକଳ ସାଧୁସଙ୍ଗ ଓ ସତ୍‌ଶାସ୍ତ୍ର ଅଧ୍ୟୟନ ବିଷୟ ବର୍ଣ୍ଣିତ ହେଲା; ସେ ସକଳ ଚିତ୍ତ-ହୃଦୟର ଶୁଭବାସନା, ସେଥିରୁ ବିପରୀତ ବିଷୟ ଅଶୁଭ ବାସନା ବୋଲି ଅଭିହିତ । ଅଶୁଭବାସନାର ବଶବର୍ତ୍ତୀ ହେଲେ ଜୀବର ଅଧଃପତନ ଘଟେ । ଅତଏବ ଏହି ଅଶୁଭବାସନା ପରିତ୍ୟାଗ କରି ଶୁଭବାସନାରେ ସର୍ବଦା ନିଯୁକ୍ତ ରହିବ ।

---

ସଚ୍ଚଂ ହି ସୋ ପିୟୋ ହୋତି ଅସଚ୍ଚଂ ହୋତି ଅପ୍‌ପିୟୋ ॥ ୭୭-୨ ॥
ନ ଭଜେ ପାପକେ ମିତ୍ତେ ନ ଭଜେ ପୁରିସାଧମେ ।
ଭଜେଥ ମିତ୍ତେ କଲ୍ୟାଣେ ଭଜେଥ ପୁରିସୁତ୍ତମେ ॥ ୭୮-୩ ॥
ଧମ୍ମପୀତି ସୁଖଂ ସେତି ବିପ୍‌ପସନ୍ନେନ ଚେତସା ।
ଅରିୟପ୍ପବେଦିତେ ଧମ୍ମେ ସଦା ରମତି ପଣ୍ଡିତୋ ॥ ୭୯-୪ ॥

ଗୁପ୍ତନିଧିର ପ୍ରଦର୍ଶକ ପରି ଯେଉଁ ପଣ୍ଡିତଜନ ଭ୍ରମର ତ୍ରୁଟି ପ୍ରଦର୍ଶନ କରନ୍ତି, ଭର୍ତ୍ସନାକାରୀ ହେଲେ ମଧ୍ୟ ସେପରି ମେଧାବୀ ପଣ୍ଡିତଙ୍କର ଭଜନା କରିବ । ସେପରି ପଣ୍ଡିତଙ୍କୁ ଭଜନା କଲେ ମଙ୍ଗଳ ହୁଏ, ଅମଙ୍ଗଳର କଦାପି ସମ୍ଭାବନା ନାହିଁ । ଦୋଷପ୍ରଦର୍ଶକ ବ୍ୟକ୍ତି ତିରସ୍କାର କରିବା ଉଚିତ, ଉପଦେଶ ପ୍ରଦାନ କରି ମନ୍ଦକାର୍ଯ୍ୟରୁ ନିବାରଣ କରିବା ମଧ୍ୟ ଉଚିତ । ଏହିପରି କରିବାଦ୍ୱାରା ସେ ଅସାଧୁମାନଙ୍କର ଅପ୍ରିୟ ଓ ସାଧୁଲୋକମାନଙ୍କର ପ୍ରିୟ ହୁଅନ୍ତି । ମିତ୍ର ହେଲେ ମଧ୍ୟ ପାପୀର ସଂସର୍ଗ କରି ନାହିଁ । ପୁରୁଷାଧମର ସଂସର୍ଗ ମଧ୍ୟ କର ନାହିଁ । ଧର୍ମପରାୟଣ ମିତ୍ରର କେବଳ ସଂସର୍ଗ କରିବ, ପୁରୁଷୋତ୍ତମ ସାଧୁର ସଂସର୍ଗ କର୍ତ୍ତବ୍ୟ । ଧର୍ମଲାଭ କରିଥିବା ବ୍ୟକ୍ତି ବିପ୍ରସନ୍ନଚିତ୍ତ ହେଲେ ମଧ୍ୟ ସୁଖରେ ବାସ କରେ । ପଣ୍ଡିତମାନେ ସର୍ବଦା ଆର୍ଯ୍ୟପ୍ରବୃତ୍ତିତ ଧର୍ମରେ ଆନନ୍ଦଲାଭ କରନ୍ତି । ପୁନଶ୍ଚ—

ସାଧୁଦସ୍‌ସନ ମରିୟାନଂ ସନ୍ନିବାସୋ ସଦା ସୁଖୋ ।
ଅଦସ୍‌ସନେନ ବାଲାନାଂ ନିଚ୍ଚମେବ ସୁଖୀସିୟା ॥
ବାଲସଂଗତ ଚାରିହି ଦୀର୍ଘ ମଦ୍ଧାନଂ ସୋଚତି ।
ଦୁକ୍‌ଖୋ ବାଲେ ହି ସଂବାସୋ ଅମିତ୍ତେନେବ ସବ୍ବଦା ॥

ଏ ସମ୍ବନ୍ଧରେ ଶ୍ରୀ ରାମଚନ୍ଦ୍ର ଭକ୍ତ ହନୁମାନଙ୍କୁ ସମ୍ୟକ୍ ଉପଦେଶ ଦେଇ ଅଛନ୍ତି—

ଲୋକବାସନୟା ଜନ୍ତୋଃ ଶାସ୍ତ୍ରବାସନୟାପି ଚ ।
ଦେହବାସନୟା ଜ୍ଞାନଂ ଯଥାବନ୍ନୈବ ଜାୟତେ ॥
ଦ୍ୱିବିଧୋ ବାସନାବ୍ୟୂହଃ ଶୁଭଶ୍ଚୈବାଶୁଭଶ୍ଚ ତୌ ।
ବାସନୌଘେନ ଶୁଦ୍ଧେନ ତତ୍ର ଚେଦନୁନୀୟସେ ॥
ତତ୍କ୍ରମେଣାଶୁ ତେନୈବ ମାମକଂ ପଦମାପ୍ନୁହି ।
ଅଥ ଚେଦଶୁଭେ ଭାବସ୍ତ୍ୱାଂ ଯୋଜୟତି ସଙ୍କଟେ ॥
ପ୍ରାକ୍ତନସ୍ତଦସୌ ଯତ୍ନାଜ୍ଜେତବ୍ୟୋ ଭବତା କପେ !
ଶୁଭାଶୁଭାଭ୍ୟାଂ ମାର୍ଗାଭ୍ୟାଂ ବହନ୍ତୀ ବାସନାସରିତ୍ ॥
ପୌରୁଷେଣ ପ୍ରଯତ୍ନେନ ଯୋଜନୀୟା ଶୁଭେ ପଥି ।
ଅଶୁଭେଷୁ ସମାବିଷ୍ଟଂ ଶୁଭେଷ୍ୱେବାବତାରୟେତ୍ ॥
ଅଶୁଭାଚ୍ଚାଳିତଂ ଯାତି ଶୁଭଂ ତସ୍ମାଦପୀତରତ୍ ।
ପୌରୁଷେଣ ପ୍ରଯତ୍ନେନ ଲାଳୟେଚ୍ଚିତ୍ତବାଳକମ୍ ॥

ମୁକ୍ତିକୋପନି : ୨।୪-୮ ।

ଲୋକବାସନା, ଶାସ୍ତ୍ରବାସନା ଏବଂ ଦେହବାସନା—ଏହି ବାସନାତ୍ରୟ ମଧ୍ୟରେ କାହାରିଦ୍ୱାରା ଯଥୋପଯୁକ୍ତ ଜ୍ଞାନର ବିକାଶ ହୁଏ ନାହିଁ । ବାସନାଗୁଡ଼ିକ ଦ୍ୱିବିଧ—ଶୁଭ ଓ ଅଶୁଭ । ତନ୍ମଧ୍ୟରୁ ଶୁଭବାସନାଦ୍ୱାରା ପରମାତ୍ମାଙ୍କୁ ଜାଣିପାରିଲେ ଆଶୁ ନିତ୍ୟଧାମ ଲାଭ ହୋଇପାରିବ । ଯଦି ଅଶୁଭବାସନାର ଆଶ୍ରୟ ଗ୍ରହଣ କର, ତେବେ ଏହା ତୁମ୍ଭଙ୍କୁ ସଂସାର-ସଂକଟରେ ନିୟୋଜିତ କରିବ । ଅତଏବ ହେ କପିବର ! ପୂର୍ବଜନ୍ମାର୍ଜିତ ସେହି ଅଶୁଭ-ବାସନା ଯତ୍ନପୂର୍ବକ ପରିତ୍ୟାଗ କରିବ । ଏହି ବାସନାନାମ୍ନୀ ନଦୀ ଶୁଭ ଓ ଅଶୁଭ ପଥରେ ପ୍ରବାହିତ ହେଉଅଛି । ଅତଏବ ପୁରୁଷକାରଦ୍ୱାରା ଏହାକୁ ଶୁଭପଥରେ ନିୟୋଜିତ କରିବାକୁ ହେବ । ଅଶୁଭମାର୍ଗରେ ସମାବିଷ୍ଟ ଚିତ୍ତକୁ ଶୁଭ ବାସନାରେ ( ମୁକ୍ତି ବାସନାରେ )

---

ଧୀରୋ ଚ ସୁଖସଂବାସୋ ଞାତୀନଂ ବ ସମାଗମୋ ॥

ଧମ୍ମପଦଂ—ସୁଖବଗ୍‌ଗୋ—୧୫ । ୧୦-୧୧

ଆର୍ଯ୍ୟସାଧୁମାନଙ୍କର ଦର୍ଶନ ଶୁଭ, ସର୍ବଦା ସେମାନଙ୍କ ସହବାସ ମଧ୍ୟ ଶୁଭ । ଅଜ୍ଞ ଓ ମୂର୍ଖର ଦର୍ଶନ ପରିହାର କଲେ ସୁଖଲାଭ ହେବ । ଅଜ୍ଞ ମୂର୍ଖର ସଂସର୍ଗକାରୀ ଦୀର୍ଘକାଳ ଅନୁତପ୍ତ ହୁଏ । ଅମିତ୍ରର ସଂସର୍ଗ ଯେପରି ସର୍ବଦା ଅଶୁଭଜନକ । ସେପରି ଅଜ୍ଞାନ ସହିତ ସଂସର୍ଗ ମଧ୍ୟ ଦୁଃଖପ୍ରଦ ହୁଏ । ଜ୍ଞାତି ସମାଗମପରି ଧୀର ଜ୍ଞାନୀମାନଙ୍କ ସହବାସ ସୁଖଜନକ ।

ନିଯୁକ୍ତ କରିବ । ଅଶୁଭଭାବରେ ଗୃଳିତ ଚିତ୍ତ ଶୁଭଭାବକୁ ପ୍ରାପ୍ତ ହୁଏ ଏବଂ ଶୁଭଭାବରେ ଗୃଳିତ ଚିତ୍ତ ଅଶୁଭଭାବ ପ୍ରାପ୍ତ ହୁଏ : ଅତଏବ ପୁରୁଷକାରରୂପକ ପ୍ରଯତ୍ନଦ୍ୱାରା ସର୍ବଦା ଚିତ୍ତବାଳକକୁ ପାଳନ କରିବ ।

ଜନ୍ମାନ୍ତରଶତାଭ୍ୟସ୍ତା ମିଥ୍ୟା ସଂସାରବାସନା ।
ସା ଚିରାଭ୍ୟାସଯୋଗେନ ବିନା ନ କ୍ଷୀୟତେ କ୍ୱଚିତ୍ ॥
ତସ୍ମାତ୍ ସୌମ୍ୟ ପ୍ରଯତ୍ନେନ ପୌରୁଷେଣ ବିବେକିନା ।
ଭୋଗେଚ୍ଛାଂ ଦୂରତଃ ତ୍ୟକ୍ତ୍ୱା ତ୍ରୟମେବ ସମାଶ୍ରୟ ॥
ତସ୍ମାଦ୍ ବାସନୟା ଯୁକ୍ତଂ ମନୋ ବଦ୍ଧଂ ବିଦୁର୍ବୁଧାଃ ।
ସମ୍ୟଗ୍‌ବାସନୟା ତ୍ୟକ୍ତଂ ମୁକ୍ତମିତ୍ୟଭିଧୀୟତେ ॥

ମୁକ୍ତିକଉପ: ୧୬-୧୭ ॥

ସଂସାର-ବାସନା ମିଥ୍ୟା ହେଲେ ମଧ୍ୟ ଯେହେତୁରୁ ଏହା ଶତ ଶତ ଜନ୍ମରୁ ଅଭ୍ୟସ୍ତ ହୋଇ ଆସିଅଛି, ସେହି ହେତୁରୁ ବହୁକାଳ ପର୍ଯ୍ୟନ୍ତ ଅଭ୍ୟାସ ନ କଲେ ଏହା କଦାପି କ୍ଷୀଣ ହୋଇ ପାରେ ନାହିଁ । ଅତଏବ ହେ ପ୍ରିୟଦର୍ଶନ ! ତୁମ୍ଭେ ବିବେକପୂର୍ବକ ପୌରୁଷକାର-ରୂପକ ପ୍ରଯତ୍ନଦ୍ୱାରା ଭୋଗବାସନା ଦୂରରେ ପରିତ୍ୟାଗ କରି ପୂର୍ବୋକ୍ତ ବାସନାକ୍ଷୟକାରୀ ତିନୋଟି ଉପାୟ ଅବଲମ୍ବନ କର । ଜ୍ଞାନୀମାନେ କହି ଅଛନ୍ତି—ବାସନାଯୁକ୍ତ ମନ ବଦ୍ଧ ଓ ବାସନାରହିତ ମନ ମୁକ୍ତ ।

ମନୋନିର୍ବାସନୀଭାବମାଚରାଶୁ ମହାକପେ !
ସମ୍ୟଗାଲୋଚନାତ୍ ସତ୍ୟାତ୍ ବାସନା ପ୍ରବିଲୀୟତେ ॥
ବାସନାବିଲୟେ ଚେତଃ ଶମମାୟାତି ଦୀପବତ୍ ।
ବାସନାଂ ସଂପରିତ୍ୟଜ୍ୟ ମୟି ଚିନ୍ମାତ୍ରବିଗ୍ରହେ ।
ଯସ୍ତିଷ୍ଠତି ଗତବ୍ୟଗ୍ରଃ ସୋଽହଂ ସଚ୍ଚିତ୍‌ସୁଖାତ୍ମକଃ । ମୁ: ଉ: ୧୮।୧୯ ॥

ହେ କପିବର : ତୁମ୍ଭେ ସତ୍ୱର ମନକୁ ନିର୍ବାସନାଭାବରେ ଆନୟନ କର । ସତ୍ୟ ବସ୍ତୁର ସମ୍ୟଗ୍ ଆଲୋଚନା କଲେ ବାସନା ବିଲୟ ପ୍ରାପ୍ତ ହେବ । ବାତ୍ୟାରହିତ ସ୍ଥାନରେ ଯେପରି ପ୍ରଦୀପ ନିଶ୍ଚଳଭାବ ପ୍ରାପ୍ତ ହୁଏ; ସେହିପରି ବାସନାରହିତ ଚିତ୍ତ ଶାନ୍ତିଲାଭ କରେ । ବାସନା ପରିତ୍ୟାଗପୂର୍ବକ ଯେଉଁ ବ୍ୟକ୍ତି ଆମ୍ଭର ଚିନ୍ମାତ୍ରସ୍ୱରୂପରେ ଚିତ୍ତ ସମାଧାନ କରିପାରେ, ତାହାର ସଂସାର ପ୍ରତି ବ୍ୟଗ୍ରତା ରହେ ନାହିଁ । ସେହି ପୁରୁଷ ହିଁ ମତ୍‌ସ୍ୱରୂପ ଓ ସଚ୍ଚିତ୍ ସୁଖର ଅଧିକାରୀ ।

ପୁନଶ୍ଚ ଏହି ବାସନାକୁ ଶୁଭ ଅଶୁଭ-ଦ୍ୱିବିଧାକାରରେ ବୁଝାଇ ଶୁଭବାସନା ଗ୍ରହଣ ନିମନ୍ତେ ଉପଦେଶ ଦେଇ ଅଛନ୍ତି—

ଦୃଢ଼ଭାବନୟା ତ୍ୟକ୍ତପୂର୍ବାପରବିଚାରଣମ୍ ।
ଯଦାଦାନଂ ପଦାର୍ଥସ୍ୟ ବାସନା ସା ପ୍ରକୀର୍ତ୍ତିତା ॥
ଭାବିତଂ ତୀବ୍ରସଂବେଗାଦାତ୍ମନା ଯତ୍ତଦେବ ସଃ ।
ଭବତ୍ୟାଶୁ କପିଶ୍ରେଷ୍ଠ ବିଗତେତରବାସନଃ ॥
ତାଦୃଗ୍‌ରୂପୋ ହି ପୁରୁଷୋ ବାସନାବିବଶୀକୃତଃ ।
ସଂପଶ୍ୟତି ଯଦୈବୈତତ୍ ସଦ୍‌ବସ୍ତ୍ୱିତି ବିମୁହ୍ୟତି ॥
ବାସନାବେଗବୈଚିତ୍ର୍ୟାତ୍ ସ୍ୱରୂପଂ ନ ଜହାତି ତତ୍ ।
ଭ୍ରାନ୍ତଂ ପଶ୍ୟତି ଦୁର୍ଦୃଷ୍ଟିଃ ସର୍ବଂ ମଦବଶାଦିବ ॥ ମୁ: ଉ:-୫୫-୫୮ ।

ବିଷୟର ଦୃଢ଼ଭାବନାଦ୍ୱାରା ଯେଉଁ ସମୟରେ ପୂର୍ବାପର ବିଚାର ତିରୋହିତ ହୁଏ ଏବଂ ବିଷୟ ଗ୍ରହଣ ନିମନ୍ତେ କେବଳ ଇଚ୍ଛା ହେଉଥାଏ, ସେହି ଇଚ୍ଛାବିଶେଷର ନାମ ବାସନା । ହେ କପିଶ୍ରେଷ୍ଠ ! ତୀବ୍ରସଂବେଗରେ ଯାହା ଚିନ୍ତିତ ହୁଏ, ତାହା ଅନ୍ୟବାସନାକୁ ଅପସାରିତ କରି ପୁନଶ୍ଚ ଆବିର୍ଭୂତ ହୁଏ । ବାସନାର ମାହାତ୍ମ୍ୟ ଅତିବିଚିତ୍ର, ସେହି ହେତୁରୁ ସେ କେବେହେଲେ ନିଜର ସ୍ୱରୂପ ତ୍ୟାଗ କରେ ନାହିଁ । ଯେଉଁ ପୁରୁଷ ବାସନାର ବଶ ହୋଇ ସଦ୍‌ବସ୍ତୁର ଉପଲବ୍‌ଧି କରି ମଧ୍ୟ ବିମୁଗ୍‌ଧ ହୁଏ, ସେହି ବ୍ୟକ୍ତି ମତ୍ତତାବଶରୁ ଦୁ-ଦୃଷ୍ଟିସମ୍ପନ୍ନ ପୁରୁଷ ସମସ୍ତଙ୍କୁ ଭ୍ରାନ୍ତ ବୋଲି ମନେ କଲାଭଳି ସକଳଲୋକଙ୍କୁ ବ୍ୟବହାର କରେ ।

ବାସନା ଦ୍ୱିବିଧା ପ୍ରୋକ୍ତା ଶୁଦ୍ଧା ଚ ମଳିନା ତଥା ।
ମଳିନା ଜନ୍ମହେତୁଃ ସ୍ୟାତ୍ ଶୁଦ୍ଧା ଜନ୍ମବିନାଶିନୀ ।
ଅଜ୍ଞାନ ସୁଘନାକାର ଘନାହଂକାରଶାଳିନୀ ।
ପୁନର୍ଜନ୍ମକରୀ ପ୍ରୋକ୍ତା ମଳିନା ବାସନା ବୁଧୈଃ ॥
ପୁନର୍ଜନ୍ମାଙ୍କୁରଂ ତ୍ୟକ୍ତ୍ୱା ସ୍ଥିତଃ ସଂଭୃଷ୍ଟବୀଜବତ୍ ।
ବହୁଶାସ୍ତ୍ରକଥା-କନ୍ଥାରୋମନ୍ଥେନ ବୃଥୈବ କିମ୍ ॥

ମୁକ୍ତିକୋପନି: ୨।୫୯-୬୧ ।

ବାସନା ଦୁଇପ୍ରକାର—ଶୁଦ୍ଧା ଓ ମଳିନା । ତନ୍ମଧ୍ୟରୁ ମଳିନା ବାସନା ଜନ୍ମର କାରଣ ଏବଂ ଶୁଦ୍ଧା ବାସନା ଜନ୍ମର କ୍ଷୟକାରିଣୀ ହୁଏ । ଯେଉଁ ବାସନା ଅଜ୍ଞାନର କାରଣ,

ଅହଂକାରର ମୂଳସ୍ୱରୂପ ଏବଂ ଜନ୍ମର ନିଦାନ, ପଣ୍ଡିତମାନେ ସେହି ବାସନାକୁ ପୁନର୍ଜନ୍ମକାରୀ ବୋଲି କହିଥାନ୍ତି । ଯେପରି ଭୃଷ୍ଟବୀଜରୁ ଅଙ୍କୁର ଉତ୍ପତ୍ତି ହୁଏ ନାହିଁ, ସେପରି ମଳିନବାସନା-ଦ୍ୱାରା ପାରମାର୍ଥିକ ସୁଖ ସମ୍ଭାବନା ହୁଏନାହିଁ । ଅତଏବ ପୁନର୍ଜନ୍ମର କାରଣସ୍ୱରୂପ ମଳିନା ବାସନା ପରିତ୍ୟାଗ କରି କେବଳ ତତ୍ତ୍ୱବିଷୟ ଅନୁଶୀଳନରେ ତତ୍ପର ହେବ । କେବଳ ବହୁ ଶାସ୍ତ୍ରଚର୍ଚ୍ଚାର ଚର୍ବିତଚର୍ବଣରେ କୌଣସି ଫଳ ନାହିଁ । *

ଏହିପରି ରାମଚନ୍ଦ୍ରଙ୍କୁ ବଶିଷ୍ଠ ଉପଦେଶ ଦେଇଅଛନ୍ତି—

**ଶୁଭାଶୁଭାଭ୍ୟାଂ ମାର୍ଗାଭ୍ୟାଂ ବହନ୍ତୀ ବାସନା-ସରିତ୍ ।**
**ପୌରୁଷେଣ ପ୍ରଯତ୍ନେନ ଯୋଜନୀୟା ଶୁଭେ ପଥି ॥**
**ଅଶୁଭେଷୁ ସମାବିଷ୍ଟଂ ଶୁଭେଷ୍ୱେବାବତାରୟ ।**
**ସ୍ୱଂ ମନଃ ପୁରୁଷାର୍ଥେନ ବଲେନ ବଲିନାମ୍ବର ॥**
**ଅଶୁଭାଚାଳିତଂ ଯାତି ଶୁଭଂ ତସ୍ମାଦପୀତରତ୍ ।**
**ଜନ୍ତୋର୍ଶ୍ଚିତ୍ତନ୍ତୁ ଶିଶୁବତ୍ ତସ୍ମାତ୍ ତଚ୍ଚାଳୟେଦ୍ ବଲାତ୍ ॥**
**ସମତା ସାନ୍ତ୍ୱନେନାଶୁ ନ ଦ୍ରାଗିତି ଶନୈଃ ଶନୈଃ ।**
**ପୌରୁଷେଣୈବ ଯତ୍ନେନ ପାଳୟେତ୍ ଚିତ୍ତବାଳକମ୍ ॥**
**ବାସନୌଘସ୍ତ୍ୱୟା ପୂର୍ବମଭ୍ୟାସେନ ଘନୀକୃତଃ ।**
**ଶୁଭେ ବାଽପ୍ୟଶୁଭେ ବାପି ଶୁଭମଦ୍ୟ ଘନୀକୁରୁ ॥**
**ପ୍ରାଗଭ୍ୟାସବଶାଦ୍ ଯାତା ଯଦା ତେ ବାସନୋଦୟମ୍ ।**
**ତଦାଭ୍ୟାସସ୍ୟ ସାଫଲ୍ୟଂ ବିଦ୍ଧି ତ୍ୱମରିମର୍ଦ୍ଦନ ! ॥**

ଯୋଗବାଶିଷ୍ଠ—ମୁମୁକ୍ଷୁ ୯।୩୦-୩୫ ॥

---

* ଅଧୀତ୍ୟ ଚତୁରୋ ବେଦାନ୍ ସର୍ବଶାସ୍ତ୍ରାଣ୍ୟନେକଶଃ ।
ବ୍ରହ୍ମତତ୍ତ୍ୱଂ ନ ଜାନାତି ଦର୍ବୀ ପାକରସଂ ଯଥା—ମୁକ୍ତିକୋ: ୬୩

ହେ କପିଶ୍ରେଷ୍ଠ ! ଯେଉଁ ବ୍ୟକ୍ତି କେବଳ ବ୍ରହ୍ମବିଚାରତତ୍ପର, କିନ୍ତୁ ନିଜେ ବ୍ରହ୍ମସ୍ୱରୂପ ଉପଲବ୍ଧି କରିବାକୁ ଅକ୍ଷମ ଏବଂ ଯେ ଚାରିବେଦ ଓ ବହୁଶାସ୍ତ୍ର ଅଧ୍ୟୟନ କରି ମଧ୍ୟ ବ୍ରହ୍ମତତ୍ତ୍ୱ ଅଭିଜ୍ଞ ନୁହେଁ, ସେହି ବ୍ୟକ୍ତିର ପରିଶ୍ରମ ଦର୍ବୀର ପାକପରିଶ୍ରମ ତୁଲ୍ୟ ବୃଥା ବୋଲି ଜାଣିବ । ଦର୍ବୀ ଯେପରି ବହୁ ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରେ, ଅଥଚ ତାହାର ଆସ୍ୱାଦନ ଜାଣେ ନାହିଁ, ସେହିପରି ବହୁଶାସ୍ତ୍ର ଅଧ୍ୟୟନ କରି ମଧ୍ୟ, ଯେଉଁ ବ୍ୟକ୍ତି ବ୍ରହ୍ମତତ୍ତ୍ୱ ବୁଝିପାରେ ନାହିଁ, ତାହାର ପରିଶ୍ରମ ନିଷ୍ଫଳ ଜାଣିବ ।

ହେ ରାଘବ ! ଜୀବର ବାସନା ଏକପ୍ରକାର ସ୍ରୋତସ୍ୱିନୀ ଅନୁରୂପ । ତାହା ସତ୍ ଓ ଅସତ୍ ଉଭୟ ପଥରେ ପ୍ରବାହିତ ହେଉଅଛି; ପରନ୍ତୁ ତୁମ୍ଭେ ତାହାକୁ ପୁରୁଷକାରଦ୍ୱାରା ସତ୍‌ପଥରେ ପ୍ରବାହିତ କରାଅ । ହେ ରଘୁବୀର ! ଯେଉଁ ସମୟରେ ଦେଖିବେ, ବାସନାନଦୀ ଅଶୁଭ ପଥରେ ଯିବାର ଉପକ୍ରମ କରୁଛି, ସେହି ସମୟରେ ତାହାକୁ ପୁରୁଷକାରଦ୍ୱାରା ବଳପୂର୍ବକ ଶୁଭପଥରେ ଫେରାଇ ଆଣିବେ । ଅଶୁଭପଥରୁ ଫେରାଇ ପାରିଲେ ସେ ଆପେ ଆପେ ଶୁଭପଥରେ ପ୍ରବାହିତ ହେବ । ପ୍ରତ୍ୟେକ ପୁରୁଷର ଚିତ୍ତ ଶିଶୁସମାନ । ଯେଉଁ ଦିଗରେ ଚଳାଇବ, ସେହି ଦିଗରେ ଚାଲିବ । ସହଜରେ ନ ଫେରିଲେ ବଳପୂର୍ବକ ଫେରାଇବାକୁ ହେବ । ଯେପରି ବାଳକକୁ ହଠାତ୍ ଅବରୁଦ୍ଧ କରିବା ସଙ୍ଗତ ନୁହେଁ, ସେପରି ଚିତ୍ତବାଳକକୁ ମଧ୍ୟ ସହସା ରୁଦ୍ଧ କରିବା ନ୍ୟାଯ୍ୟ ନୁହେଁ । ତାହାକୁ କ୍ରମଶଃ ଅଳ୍ପ ଅଳ୍ପ ସାନ୍ତ୍ୱବାଦ ଓ ପୁରୁଷକାର ପ୍ରୟୋଗରେ ସତ୍‌ପଥଗାମୀ କରାଇବ । ଯଦିଚ ତୁମେ ପୂର୍ବଜନ୍ମରେ ଶୁଭ ଓ ଅଶୁଭବାସନା ଅଧିକ ସଂଚୟ କରିଥାଅ; ତଥାପି ତାହା ଲକ୍ଷ୍ୟ କରିବ ନାହିଁ । ବର୍ତ୍ତମାନ ଯହିଁରେ ଶୁଭବାସନା ନିବିଡ଼ ଓ ପ୍ରବଳ ହେବ, ତାହାର ଚେଷ୍ଟା କରିବ । ହେ ଶତ୍ରୁନାଶନ ରାମ ! ବାସନା ଅଭ୍ୟାସ ବିଫଳ ହେବାର ନୁହେଁ । ମନେକର, ପୂର୍ବେ ଯେଉଁ ବାସନା ଉତ୍ପାଦନ କରିଥିଲ, ବର୍ତ୍ତମାନ ତାହା ପ୍ରବଳଭାବରେ ଦେଖା ଦେଉଅଛି, ସେହିପରି ଶୁଭବାସନାବିଷୟକ ଐହିକ ଅଭ୍ୟାସର ଫଳ ମଧ୍ୟ ଅବିଳମ୍ବେ ଦେଖି ପାରିବ । *

ବେଦରେ ମଧ୍ୟ ଏହିପରି ଶୁଭପଥରେ ମନକୁ ସଂଚାଳିତ କରିବା ନିମନ୍ତେ ପ୍ରଭୁଙ୍କଠାରେ ପ୍ରାର୍ଥନା ଉଲ୍ଲିଖିତ ହୋଇଅଛି—

* ବୁଦ୍ଧଦେବ ମଧ୍ୟ ଏସମ୍ବନ୍ଧରେ ଉପଦେଶ ଦେଇଅଛନ୍ତି—

ନ ପୁପ୍ଫଂ ଗନ୍ଧୋ ପଟିବାତମେତି ନ ଚନ୍ଦନଂ ତଗରମଲ୍ଲିକା ବା ।
ସତଞ୍ଚ ଗନ୍ଧୋ ପଟିବାତମେତି ସବ୍ବା ଦିସା ସପ୍ପୁରିସୋ ପବାତି ॥

ଚନ୍ଦନଂ ତଗରଂବାଽପି ଉପ୍ପଲଂ ଅଥ ବସ୍ସିକୀ ।
ଏତେସଂ ଗନ୍ଧଜାତାନଂ ସୀଲଗନ୍ଧୋ ଅନୁତ୍ତରୋ ॥
ଅପ୍ପମତ୍ତୋ ଅୟଂ ଗନ୍ଧୋ ଯାୟଂ ତଗରଚନ୍ଦନୀ ।
ଯୋଚ ସୀଲବତଂ ଗନ୍ଧୋ ବାତି ଦେବେସୁ ଉତ୍ତମୋ ॥

୧୧—୧୩ ॥ ଧମ୍ମପଦ-ପୁପ୍ଫବଗ୍‌ଗୋ ୫୫-୫୬ ।

ଚନ୍ଦନର ସୌରଭ, କମ୍ପା ତଗର ମଲ୍ଲିକା ବା ଅନ୍ୟ କୌଣସି ଫୁଲର ସୁଗନ୍ଧ ପବନର ବିପରୀତ ଦିଗରେ ଯାଇପାରେ ନାହିଁ, କିନ୍ତୁ ସାଧୁଲୋକମାନଙ୍କ ଯଶଃ ସୌରଭ ପବନର ବିପରୀତ ଦିଗରେ ମଧ୍ୟ ଗତିକରେ । ସାଧୁଲୋକମାନଙ୍କ ଖ୍ୟାତି ସମସ୍ତ ଦିଗକୁ ପ୍ରବାହିତ ହୁଏ । ଚନ୍ଦନ ବା ତଗର, ଯୂଇ ବା କେତକୀ—ଏମାନଙ୍କ ସୁଗନ୍ଧ ଅପେକ୍ଷା ଶୀଳ, ଅର୍ଥାତ୍ ସଦାଚାରର ସୁଗନ୍ଧ ଶ୍ରେଷ୍ଠ । ଚନ୍ଦନ ଓ ତଗରପ୍ରଭୃତି ପୁଷ୍ପର ଯେଉଁ ସୌରଭ, ତାହା ଅଳ୍ପ; କିନ୍ତୁ ଚରିତ୍ରଶାଳୀ ଲୋକମାନଙ୍କର ଯେଉଁ ଉତ୍କୃଷ୍ଟ ସୁଗନ୍ଧ, ତାହା ଦେବତାମାନଙ୍କ ମଧ୍ୟରେ ପ୍ରବାହିତ ହୁଏ ।

ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁସୁପ୍ତସ୍ୟ ତଥୈବୈତି ।
ଦୂରଙ୍ଗମଂ ଜ୍ୟୋତଷାଂ ଜ୍ୟୋତରେକଂ
ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥
ଯଜୁଃ—୩୪ । ୧ ।

ଯେଉଁ ଦିବ୍ୟଶକ୍ତିସମ୍ପନ୍ନ ମନ ଜାଗ୍ରତ ଓ ନିଦ୍ରା ଅବସ୍ଥାରେ ଦୂର ଦୂର ଦେଶକୁ ପ୍ରଧାବିତ ହୁଏ ଏବଂ ଯାହା ଇନ୍ଦ୍ରିୟରୂପୀ ଜ୍ୟୋତିସମୂହ ମଧ୍ୟରେ ଅନ୍ୟତମ ଜ୍ୟୋତି, ମୋହର ସେହି ମନ ଶୁଭସଂକଳ୍ପଯୁକ୍ତ ହେଉ ।

୦୦୦—ଚିତ୍ତଭୂମି ।

ଉପର୍ଯ୍ୟୁକ୍ତ ଶୁଭସଙ୍କଳ୍ପଦ୍ୱାରା ଚିତ୍ତର ଏକାଗ୍ରତା ସାଧନ ନିମନ୍ତେ ପ୍ରଥମେ ଚିତ୍ତର ଅବସ୍ଥାବିଶେଷର ଭାବ ବୁଝିବା ଏକାନ୍ତ ପ୍ରୟୋଜନ ।

ଅବସ୍ଥା ଯଥା—

 କ୍ଷିପ୍ରଂ ମୂଢ଼ଂ ବିକ୍ଷିପ୍ତଂ ଏକାଗ୍ରଂ ନିରୁଦ୍ଧମିତ ଚିତ୍ତଭୂମୟଃ ।
॥ ପାତଞ୍ଜଳଭାଷ୍ୟ ॥

କ୍ଷିପ୍ର, ମୂଢ଼, ବିକ୍ଷିପ୍ତ, ଏକାଗ୍ର ଓ ନିରୁଦ୍ଧ—ଏହି ପାଞ୍ଚଟି ଚିତ୍ତର ଭୂମି, ଅର୍ଥାତ୍ ଅବସ୍ଥା । ଚିତ୍ତରେ ରଜୋଗୁଣର ସମ୍ପୂର୍ଣ୍ଣ ଆବିର୍ଭାବ ହେଲେ କ୍ଷିପ୍ରଅବସ୍ଥା ଆସିଯାଏ । ଏହି ଅବସ୍ଥାରେ । ଚିତ୍ତ ଜାଗତିକ ବିଷୟବ୍ୟାପାରରେ ସର୍ବଦା ବ୍ୟାପୃତ ରହେ; ଏକକ୍ଷଣ ସୁଦ୍ଧା ସତ୍ୟ ବା ପରମାର୍ଥ ପଥରେ ସ୍ଥିରରୂପରେ ଅବସ୍ଥାନ କରେ ନାହିଁ । ମୂଢ଼ ଅବସ୍ଥା ଏହା ଅପେକ୍ଷା ଅଧିକ ନିକୃଷ୍ଟ ଓ ଭୟଙ୍କର । ସେହି ଅବସ୍ଥାରେ ତମୋଗୁଣର ସମ୍ପୂର୍ଣ୍ଣ ଆବିର୍ଭାବହେତୁରୁ ଚିତ୍ତ ସମ୍ପୂର୍ଣ୍ଣ ମୋହଜାଲରେ ଆଛନ୍ନ ରହେ ଓ ସଦସଦ୍ ବିଚାରଶୂନ୍ୟ ହୁଏ । ସେ ସମୟରେ ମନୁଷ୍ୟ ଓ ପଶୁର ଭେଦ ଲୋକ ବୁଝି ପାରେ ନାହିଁ । ବିକ୍ଷିପ୍ତ ଅବସ୍ଥା କ୍ଷିପ୍ର-ଅବସ୍ଥାଠାରୁ କିଛି ଉତ୍କୃଷ୍ଟ । ଏହି ଅବସ୍ଥାରେ ସଂସାର-ସମୁଦ୍ରସଂଶ୍ଳିଷ୍ଟ ମନରୂପକମତ୍ସ୍ୟ କ୍ଷଣକାଳନିମନ୍ତେ ତତ୍ତ୍ୱସମାଧି ଜାଲରେ ଆବଦ୍ଧ ହୁଏ ସତ; କିନ୍ତୁ ପରକ୍ଷଣରେ ଲମ୍ଫପ୍ରଦାନ-ପୂର୍ବକ ନିଜର ବିହାରଦେଶ-ବିଷୟଜଳାଶୟରେ ପ୍ରବେଶ କରି ସ୍ୱଚ୍ଛନ୍ଦ ବିହାର କରେ । ଚିତ୍ତକୁ ଜୟ କରିବାକୁ ହେଲେ ପ୍ରଥମେ ତାହାକୁ କାମାଦିଶତ୍ରୁମାନଙ୍କଠାରୁ ସଂଯତ କରି ତତ୍ତ୍ୱସମାଧି ଅବଲମ୍ବନରେ ସ୍ଥିର କରିବା କର୍ତ୍ତବ୍ୟ । ତା'ପରେ ଚିତ୍ତ ବିଷୟ ପରିତ୍ୟାଗ କରି ଏକାଗ୍ରତା ଲାଭ କରେ । ଏହି ଏକାଗ୍ରତା ଘନୀଭୂତ ହୋଇ ବହୁକାଳ ପର୍ଯ୍ୟନ୍ତ ସେହି ଅଦ୍ୱିତୀୟ ପରମତତ୍ତ୍ୱ ଚିନ୍ତାରେ ଦୃଢ଼ ରହିଲେ ତାହାର ନାମ ନିରୁଦ୍ଧ ଅବସ୍ଥା ।

୦୦୦—ଆସନ ପ୍ରାଣାୟାମାଦି ଯୋଗସାଧନର ସଂକ୍ଷିପ୍ତ ବିବରଣ—

ପ୍ରାଣବୃତ୍ତି ନିରୋଧ—ଏହା ଆସନ ପ୍ରାଣାୟାମାଦିଦ୍ୱାରା ସୁସାଧିତ ହୁଏ । ଯୋଗସୂତ୍ରରେ ଉଲ୍ଲେଖ ଅଛି—

"ସ୍ଥିରସୁଖମାସନମ୍" ।

ପାତଞ୍ଜଳ—ସା ୨-୪୬ ॥

ସ୍ଥିରଭାବରେ ଅଧିକକାଳ ରହିଲେ ଯହିଁରେ କଷ୍ଟବୋଧ ହୁଏ ନାହିଁ, ତାହାକୁ ଆସନ * ବୋଲାଯାଏ, ସେପରି ଆସନହିଁ ଯୋଗର ଅଙ୍ଗ ।

* ଶୟନ କରି ରହିଲେ ନିଦ୍ରା ଆସେ । ଅନ୍ୟଭାବରେ ରହିଲେ ଶରୀରର ଧାରଣାରେ ବ୍ୟସ୍ତ ରହିବାକୁ ହୁଏ ଏବଂ ଅଧିକ କାଳ ରହିହୁଏ ନାହିଁ ; ଏହି କାରଣରୁ ଅଧିକ ସମୟ ଏକପ୍ରକାର ଶରୀରାବସ୍ଥା ଧାରଣ କରିବା ନିମନ୍ତେ ବିଭିନ୍ନ ଆସନର ଉପଦେଶ ବିହିତ ହୋଇଅଛି । ଯେଉଁ ଭାବରେ ଅଧିକକାଳ ରହିଲେ ମଧ୍ୟ କୌଣସି ପ୍ରକାର କଷ୍ଟବୋଧ ହୁଏନାହିଁ, ସେହି କେବଳ ସ୍ଥିର ଆସନ ବିଧାନ ସକାଶେ ସେପରି କିଛି ଦୃଢ଼ବଦ୍ଧ ନିୟମ ନାହିଁ; ଆସନ କେତେ ପ୍ରକାର ହୋଇ ପାରେ, ତାହାର ନିର୍ଦ୍ଦିଷ୍ଟ ସଂଖ୍ୟା ମଧ୍ୟ ନାହିଁ । ଜଗତରେ ଗୋଟିଏ କ୍ରିୟା ପ୍ରତ୍ୟକ୍ଷ କରି ଏକ ଏକ ଆସନର ସୃଷ୍ଟି ହୋଇଅଛି । ଗୁରୁପଦେଶ ବ୍ୟତିରେକେ ନିଜେ ନିଜେ ଆସନଶିକ୍ଷା କରାଯାଇପାରେ ନାହିଁ । ତଦ୍ଦ୍ୱାରା ବିପରୀତ ଫଳର ଆଶଙ୍କା ମଧ୍ୟ ଥାଏ । ନିର୍ଦ୍ଦିଷ୍ଟ ଆସନ ଛଡ଼ା ଅନ୍ୟପ୍ରକାର ଆସନ ଶିକ୍ଷା କରିବାଦ୍ୱାରା ଲୋକ ଉତ୍କଟବ୍ୟାଧିଗ୍ରସ୍ତ ହେବାର ଆଶଙ୍କା ଥାଏ । ପ୍ରଥମେ ଆସନ ଶିକ୍ଷା କରିବା ସମୟରେ ଲୋକ ବହୁକଷ୍ଟ ଅନୁଭବ କରେ; କେବଳ ସମ୍ପୂର୍ଣ୍ଣଭାବେ ବିନାକଷ୍ଟରେ ଆସନରେ ଉପବିଷ୍ଟ ହୋଇ ପାରିବ, ସେପର୍ଯ୍ୟନ୍ତ ଅଭ୍ୟାସ ଚାଲୁକରିବାକୁ ହେବ । ଏହାହିଁ ଯୋଗର ପ୍ରଥମ ଅଙ୍ଗ । ଏହି ଯୋଗାସନମାନଙ୍କ ମଧ୍ୟରୁ ଦୁଇ ଏକ ଆସନର ବିଷୟ ଏଠାରେ ଉଲ୍ଲେଖ କରିଗଲି—

ଯୋନିସ୍ଥାନକମଂଘ୍ରି ମୂଳଘଟିତଂ କୃତ୍ୱା ଦୃଢ଼ଂ ବିନ୍ୟସେ—
ନ୍ମେଢ୍ରେ ପାଦମଥୈକମେବ ହୃଦୟେ କୃତ୍ୱା ହନୁଂ ସୁସ୍ଥିରମ୍ ।
ସ୍ଥାଣୁଃ ସଂଯମିତେନ୍ଦ୍ରିୟୋଽଚଳଦୃଶା ପଶ୍ୟେଦ୍ ଭ୍ରୁବୋରନ୍ତରଂ
ହ୍ୟେତନ୍ମୋକ୍ଷ-କପାଟଭେଦଜନକଂ ସିଦ୍ଧାସନଂ ପ୍ରୋଚ୍ୟତେ ॥

ହଠଯୋଗ-ପ୍ରଦୀପିକା । ୧ । ୩୭ ॥

ସିଦ୍ଧାସନ—ଗୁହ୍ୟଦ୍ୱାର ଓ ଉପସ୍ଥ—ଏହି ଦୁଇସ୍ଥାନର ମଧ୍ୟଭାଗର ନାମ ଯୋନିଦେଶ । ଏହି ଯୋନିସ୍ଥାନରେ ବାମପାଦ ସଲଗ୍ନକରି ମେଢ୍ରଦେଶର ଉପରିଭାଗରେ ଅନ୍ୟପାଦ ଦୃଢ଼ରୂପରେ ସଂଯୁକ୍ତ କରିବ । ତା'ପରେ ଚିବୁକ ହୃଦୟ ଉପରେ ସ୍ଥିର କରି ରଖିବ; କିନ୍ତୁ ଚିବୁକ ଓ ହୃଦୟ ମଧ୍ୟରେ ଚାରିଆଙ୍ଗୁଳି ବ୍ୟବଧାନ ରହିଥିବ । ତା'ପରେ ଇନ୍ଦ୍ରିୟସକଳକୁ ନିଜ ନିଜ ବିଷୟରୁ ଆହୃତ

ତତୋ ଦ୍ୱନ୍ଦ୍ୱାଭିଘାତଃ ॥ ୨ । ୪୮ ॥

ଆସନ ସିଦ୍ଧ ହେଲେ ଶୀତ-ଉଷ୍ଣପ୍ରଭୃତି ବିରୋଧୀଧର୍ମରୂପକ ଦ୍ୱନ୍ଦ୍ୱଦ୍ୱାରା ଯୋଗୀ ଅଭିଭୂତ ହୁଏ ନାହିଁ ।

ତସ୍ମିନ୍ ସତି ଶ୍ୱାସପ୍ରଶ୍ୱାସୟୋର୍ଗତିବିଚ୍ଛେଦଃ ପ୍ରାଣାୟାମଃ ॥ ୨ । ୪୯ ॥

ପୂର୍ବୋକ୍ତ ଆସନ ସିଦ୍ଧ ହେଲେ ଶ୍ୱାସପ୍ରଶ୍ୱାସ ଆୟତ୍ତ ହୁଏ । ଏତଦ୍ୱାରା ରେଚକ ପୂରକ ଓ କୁମ୍ଭକନାମକ ତିନପ୍ରକାର ପ୍ରାଣାୟାମ ଅନୁଷ୍ଠିତ ହୁଏ ।

---

କରି ରଖିବ ଓ ନିଶ୍ଚଳ ନୟନରେ ଭ୍ରୂଦ୍ୱୟର ମଧ୍ୟଭାଗ ଅବଲୋକନ କରିବ । ଏହି ପ୍ରକାର ଉପବେଶନ କରିବାକୁ ଯୋଗୀମାନେ ସିଦ୍ଧାସନ କହିଛନ୍ତି । ଅଭ୍ୟସ୍ତ ହେଲେ ମୋକ୍ଷର କୌଣସି ପ୍ରକାର ପ୍ରତିବନ୍ଧକ ରହେ ନାହିଁ ।

ବାମୋରୂପରି ଦକ୍ଷିଣଞ୍ଚ ଚରଣଂ ସଂସ୍ଥାପ୍ୟ ବାମଂ ତଥା
ଦକ୍ଷୋରୂପରି ପଶ୍ଚ ମେନ ବିଧିନା ଧୃତ୍ୱା କରାଭ୍ୟାଂ ଦୃଢ଼ମ୍
ଅଙ୍ଗୁଷ୍ଠୌ ହୃଦୟେ ନିଧାୟ ଚିବୁକଂ ନାସାଗ୍ରମାଲୋକୟେ—
ଦେତଦ୍ ବ୍ୟାଧିବିନାଶକାରି ଯମିନାଂ ପଦ୍ମାସନଂ ପ୍ରୋଚ୍ୟତେ ॥ ୧ । ୪୭ ।

ପଦ୍ମାସନ—ବାମ ଉରୁ ଉପରେ ଦକ୍ଷିଣପାଦ ଉତ୍ତାନଭାବରେ ସଂସ୍ଥାପନପୂର୍ବକ ଦକ୍ଷିଣ ଉରୁର ଉପରେ ବାମଚରଣ ସଂସ୍ଥାପନ କରିବ । ତା'ପରେ ଦକ୍ଷିଣହସ୍ତ ଦକ୍ଷିଣଭାଗ-ପୃଷ୍ଠ ଉପରେ ପରିବର୍ତ୍ତିତ କରି ବାମ ଉରୁର ଉପରସ୍ଥ ଦକ୍ଷିଣ ପାଦର ଅଙ୍ଗୁଷ୍ଠର ଅଗ୍ରଭାଗ ଗ୍ରହଣ କରିବ । ଏହି ପ୍ରକାର ବାମହସ୍ତ ବାମଭାଗର ପୃଷ୍ଠଉପରେ ପରିବର୍ତ୍ତିତ କରି ବାମପାଦର ଅଙ୍ଗୁଷ୍ଠର ଅଗ୍ରଭାଗ ଧାରଣ କରିବ । ପରେ ବକ୍ଷସ୍ଥଳରେ ଚିବୁକ ସ୍ଥାପନ କରି ନିଶ୍ଚଳନୟନରେ ନାସିକା—ଅଗ୍ରଭାଗରେ ଦୃଷ୍ଟି ସ୍ଥିର ରଖିବ । ବକ୍ଷ ଦେଶରେ ଚିବୁକ ସ୍ଥାପନ ଅର୍ଥରେ ବକ୍ଷଦେଶରୁ ଚାରିଅଙ୍ଗୁଳି ଅନ୍ତରରେ ରଖିବାକୁ ହେବ । ଏହାକୁ ସଂଯମୀ ଯତିମାନେ ପଦ୍ମାସନ କହନ୍ତି । ଏହି ଆସନ ସାଧନ କଲେ ସକଳ ରୋଗ ନିବାରିତ ହୁଏ । ସାଂଖ୍ୟଦର୍ଶନର ଆଚାର୍ଯ୍ୟମାନେ କହନ୍ତି—

ସ୍ଥିରସୁଖମାସନମିତି ନ ନିୟମଃ ॥ ସାଂଖ୍ୟ ପ୍ର: ୬ । ୨୪ ।

ସ୍ୱସ୍ତିକ ଆଦି ଆସନ ଅଭ୍ୟାସ କରିବାକୁ ହେବ—ଏପରି କୌଣସି ନିୟମ ନାହିଁ । ଯହିଁରେ ଶରୀର ଓ ମନ ବିଚଳିତ ନ ହୁଏ, ବା ଯାହା ସୁଖକର ହୁଏ, ସେପରି ଉପବେଶନ ଆସନନାମରେ ପରିଗଣିତ ହୁଏ ।

ବାହ୍ୟାଭ୍ୟନ୍ତର ସ୍ତମ୍ଭବୃତ୍ତିର୍ଦେଶକାଳସଂଖ୍ୟାଭିଃ ପରିଦୃଷ୍ଟୋ ଦୀର୍ଘସୂକ୍ଷ୍ମଂ ।
୨ । ୫୦ ।

ବାହ୍ୟ, ଆଭ୍ୟନ୍ତର ଓ ସ୍ତମ୍ଭବୃତ୍ତିବିଶେଷରେ, ଅର୍ଥାତ୍ ରେଚକ, ପୂରକ ଓ କୁମ୍ଭକରୂପରେ ତ୍ରିବିଧ ପ୍ରାଣାୟାମ, ଦେଶ, କାଳ ଓ ସଂଖ୍ୟାଭେଦରେ ଦୀର୍ଘସୂକ୍ଷ୍ମରୂପରେ ଅଭ୍ୟସ୍ତ ହୋଇଥାଏ । *

* ଶ୍ୱାସ ପ୍ରଶ୍ୱାସ କ୍ରିୟାରେ ପ୍ରାଣବାୟୁର ଗତାଗତରୂପକ ଏକ ପ୍ରବାହ ଅଛି । ସଚରାଚର ସୁସ୍ଥ ଶରୀରରେ ସ୍ୱଭାବତଃ ବହିଃପ୍ରଦେଶରେ ବିତସ୍ତି (ବାରଆଙ୍ଗୁଳ) ପରିମାଣ ପ୍ରାଣବାୟୁର ସଂଚରଣ ହୁଏ । ଅର୍ଥାତ୍ ବାରଆଙ୍ଗୁଳ ପର୍ଯ୍ୟନ୍ତ ବହିର୍ଦେଶରେ ଗମନ କରି ପୁନଶ୍ଚ ପ୍ରତ୍ୟାବୃତ୍ତ ହୋଇ ଶରୀରାଭ୍ୟନ୍ତର କୋଷ୍ଠପ୍ରଭୃତି ସ୍ଥାନରେ ଗମନ କରେ । ସେଠାରୁ ପୁନର୍ବାର ବହିର୍ଦେଶକୁ ଆସେ । ଏହି ଭାବରେ ସର୍ବଦା ଏକ ବାୟୁର ପ୍ରବାହ ଚାଲେ । ଏ ମଧ୍ୟରେ ଶରୀରର ଦୂଷିତଭାଗ ପରିତ୍ୟାଗ କରି ପରିଶୁଦ୍ଧବାୟୁ ଅନ୍ତରରେ ପ୍ରବିଷ୍ଟ ହୁଏ । ଆଧାତ୍ମିକ ବାୟୁର ଦୂଷିତଭାଗ ବିଗମ ଓ ପରିଶୁଦ୍ଧ ଭାଗର ଆଗମହେତୁ ଏହି ପ୍ରାଣବାୟୁର ବିନାଶ ହୁଏ ନାହିଁ ।

ଏହି ପ୍ରାଣବାୟୁ ଲିଙ୍ଗ ଶରୀରର ଘଟକ । ଯେତେଦିନ ପର୍ଯ୍ୟନ୍ତ ସ୍ଥୂଳ ଶରୀରରେ ପ୍ରାଣବାୟୁର କ୍ରିୟା ଥାଏ, ସେତେଦିନ ଜୀବ ଜୀବିତ ବୋଲି ଧରାଯାଏ । ମନ ଇଚ୍ଛାଶକ୍ତିବିଶିଷ୍ଟ । ପ୍ରାଣାଦିବାୟୁ କ୍ରିୟାଶକ୍ତିବିଶିଷ୍ଟ । ଏହି ଉଭୟର ଏପରି ସମ୍ବନ୍ଧ ଯେ, ଗୋଟିଏ ନିରୁଦ୍ଧ ହେଲେ ଅପରଟି ସ୍ୱତଃ ନିରୁଦ୍ଧ ହୋଇଯାଏ । ଏହି କାରଣରୁ କେବଳ ପ୍ରାଣାୟାମକୁ ଯୋଗର ପ୍ରଧାନ ଅଙ୍ଗ ବୋଲି ନିର୍ଦ୍ଦେଶ କରାଯାଇଛି । ପ୍ରାଣାୟାମ ଶିକ୍ଷା କରିବା କଠିନ ବ୍ୟାପାର । ଗୁରୂପଦେଶ ବ୍ୟତିରେକେ ନିଜ ଇଚ୍ଛା ଅନୁସାରେ ଏହି କାର୍ଯ୍ୟ କଲେ ଶ୍ଳେଷ୍ମାଦି ନାନାବିଧ ରୋଗ ଜନ୍ମିପାରେ । ଏହା ଯଥୋକ୍ତ ଗୁରୁ-ଉପଦେଶ ଓ ଶାସ୍ତ୍ରୋକ୍ତ ନିୟମ ଅନୁସାରେ ଅବଲମ୍ବନ କରିବା ବିଧେୟ ।

ବଦ୍ଧପଦ୍ମାସନୋ ଯୋଗୀ ପ୍ରାଣଂ ଚନ୍ଦ୍ରେଣ ପୂରୟେତ୍ ।
ଧାରୟିତ୍ୱା ଯଥାଶକ୍ତି ଭୂୟଃ ସୂର୍ଯ୍ୟେଣ ରେଚୟେତ୍ ॥
ପ୍ରାଣଂ ସୂର୍ଯ୍ୟେଣ ଚାକୃଷ୍ୟ ପୂରୟେଦୁଦରଂ ଶନୈଃ ।
ବିଧିବତ୍ କୁମ୍ଭକଂ କୃତ୍ୱା ପୁନଶ୍ଚନ୍ଦ୍ରେଣ ରେଚୟେତ୍ ॥

ହ୦ : ୨ । । ୭-୮ ।

ସାଧକ ପଦ୍ମାସନରେ ଉପବିଷ୍ଟ ହୋଇ ବାମ ନାସିକାଦ୍ୱାରା ବାୟୁ ପୂରଣ କରିବେ । ତା'ପରେ ଯଥାଶକ୍ତି ସେହି ପ୍ରାଣବାୟୁଧାରଣସ୍ୱରୂପ କୁମ୍ଭକ କରି ଦକ୍ଷିଣ ନାସିକାରେ ସେହି ବାୟୁ ରେଚକ କରିବେ । ପୂର୍ବୋକ୍ତ ପ୍ରକାରରେ କାର୍ଯ୍ୟ କରି ତା'ପରେ ସୂର୍ଯ୍ୟନାଡ଼ୀ ବା ନାସିକାଦ୍ୱାରା ପିଙ୍ଗଳାରେ ପ୍ରାଣ, ଅର୍ଥାତ୍ ବାୟୁ ଆକର୍ଷଣ କରି କ୍ରମଶଃ ଉଦର ପୂରଣ କରିବେ । ତା'ପରେ ଯଥାଶକ୍ତି କୁମ୍ଭକ କରି ଚନ୍ଦ୍ରନାଡ଼ୀ ଇଡ଼ାରେ, ଅର୍ଥାତ୍ ବାମ ନାସିକାରେ ରେଚନ କରିବେ ।

ଏହି ପ୍ରାଣାୟାମ ଦୁଇ ପ୍ରକାର—ସଗର୍ଭ ଓ ନିଗର୍ଭ । ମନ୍ତ୍ରଦ୍ୱାରା ପ୍ରାଣାୟାମ କରିବାକୁ ସଗର୍ଭ କୁହାଯାଏ । ଯେଉଁଠାରେ ମାତ୍ରାଦ୍ୱାରା ହୁଏ, ତାହାକୁ ନିଗର୍ଭ କହନ୍ତି । ମୂଳମନ୍ତ୍ର ଓ ବୀଜ,

## ଧାରଣାସୁ ଚ ଯୋଗ୍ୟତା ମନସଃ ୨।୫୩ ॥

ପୂର୍ବୋକ୍ତ ପ୍ରାଣାୟାମ ଅଭ୍ୟାସ କଲେ ଏକାଗ୍ରତାରୂପକ ଧାରଣାଦି ବିଷୟରେ ଚିତ୍ତର ଶକ୍ତି ବଢ଼େ ।

---

ଅର୍ଥାତ୍ ଇଷ୍ଟଦେବତାଙ୍କ ଉଦ୍ଦେଶ୍ୟରେ ପ୍ରାଣାୟାମ କରିବାକୁ ହୁଏ । ପ୍ରଥମେ ବାମ ନାସାପୁଟରେ ଅନାମିକା ଓ କନିଷ୍ଠ, ଅଥବା ଦକ୍ଷିଣ ନାସାପୁଟ ଅଙ୍ଗୁଷ୍ଠ ଅଙ୍ଗୁଳିଦ୍ୱାରା ଧାରଣ କରି ପ୍ରଥମେ ଇଷ୍ଟଦେବତାଙ୍କ ମୂଳମନ୍ତ୍ର ବା ପ୍ରଣବ ୧୬ ଥର ଜପ କରିବାରେ ଯେତେ ସମୟ ଲାଗିବ, ସେହି ପରିମିତ କାଳରେ ବାମନାସା ବା ଦକ୍ଷିଣ ନାସା (ଯାହା ଖୋଲାଥିବ) ଦ୍ୱାରା ବାୟୁପୂରଣ କରିବାକୁ ହେବ । ତା'ପରେ ବାମ ଓ ଦକ୍ଷିଣ ଉଭୟ ନାସାପୁଟ ରୁଦ୍ଧ କରି ୬୪ ବାର ମନ୍ତ୍ର ମନରେ ଜପ କରିବା ପର୍ଯ୍ୟନ୍ତ ବାୟୁକୁ ରୁଦ୍ଧ ବା କୁମ୍ଭକ କରି, ସେହି ବାୟୁକୁ ସମସ୍ତ ଶରୀରମଧ୍ୟରେ ନେବାକୁ ହେବ । ତା'ପରେ ୩୨ ଥର ଜପ କରିବାକୁ ଯେତେ ସମୟ ଲାଗିବ, ସେହି ପରିମିତ ସମୟ ମଧ୍ୟରେ ସେହି ବାୟୁକୁ କ୍ରମଶଃ ରେଚକ ବା ତ୍ୟାଗ କରିବାକୁ ହେବ । ପ୍ରଥମ ଅବସ୍ଥାରେ ଯଦି ୧୬, ୬୪ ଓ ୩୨ ଥର ଏହିପରି ପ୍ରାଣାୟାମ କରିବାକୁ କେହି ଅସମର୍ଥ ହୁଅନ୍ତି, ତେବେ ପ୍ରଥମରେ ୪, ୧୬ ଓ ୮ ବାର ଜପ ଓ ତତ୍ପରିମିତ କାଳମଧ୍ୟରେ ବାୟୁ ଆକର୍ଷଣ, ଧାରଣ ଓ ରେଚନାଦି କରିବାକୁ ହୁଏ—୪, ୧୬ ଓ ୮—ଏଥିରୁ କମ୍ ଆଉ ପ୍ରାଣାୟାମ ହୁଏ ନାହିଁ । ପ୍ରଥମେ ଯେଉଁମାନେ ପ୍ରାଣାୟାମ କରନ୍ତି, ସେମାନେ ଏହି ନିୟମ ଅନୁସରଣ କରିଥାନ୍ତି । ଏହା ଉତ୍ତମରୂପେ ଅଭ୍ୟସ୍ତ ହେଲେ ତା'ପରେ କେବଳ ୧୬, ୬୪ ଓ ୩୨ ବାର କରାଯାଇପାରେ । ପ୍ରାଣାୟାମର ଏହା ସାଧାରଣ ନିୟମ ଯେ, ଯେଉଁ ପରିମିତ ସମୟରେ ବାୟୁପୂରଣ କରାଯାଏ, ତାହାର ୪ ଗୁଣ ସମୟରେ କୁମ୍ଭକ ଏବଂ ପୂରକର ୨ଗୁଣ ସମୟରେ ରେଚକ କରିବାକୁ ହୁଏ । ପ୍ରାଣାୟାମ ଅବଶ୍ୟ କର୍ତ୍ତବ୍ୟ । ପ୍ରାଣାୟାମ କରିବା ପୂର୍ବରୁ ପ୍ରାଣବାୟୁର ବହିର୍ଗମନର ସ୍ୱାଭାବିକ ପରିଣାମ ବୁଝିବା ଆବଶ୍ୟକ । ପ୍ରାଣବାୟୁର ଗତି ଏହି ପ୍ରକାର—

ଦେହାଦ୍ ବିନର୍ଗତୋ ବାୟୁଃ ସ୍ୱଭାବାଦ୍ ଦ୍ୱାଦଶାଙ୍ଗୁଳିଃ ।
ଗାୟନେ ଷୋଡ଼ଶାଙ୍ଗୁଳିଃ ଭୋଜନେ ବିଂଶତିସ୍ତଥା ॥
ଚତୁର୍ବିଂଶାଙ୍ଗୁଳିଃ ପାନ୍ଥେ ନିଦ୍ରାୟାଂ ତ୍ରିଂଶାଙ୍ଗୁଳିଃ ।
ମୈଥୁନେ ଷଟ୍‌ତ୍ରିଂଶଦୁକ୍ତଂ ବ୍ୟାୟାମେ ଚ ତତୋଽଧିକମ୍ ॥
ସ୍ୱଭାବେଽସ୍ୟ ଗତେ ମୂଳେ ପରମାୟୁଃ ପ୍ରବର୍ଦ୍ଧତେ ।
ଆୟୁଃ କ୍ଷୟୋଽଧିକେ ପ୍ରୋକ୍ତଃ ମାରୁତେ ଚାନ୍ତରାଦ୍ ଗତେ ॥

। ପବନବିଜୟ ସ୍ୱରୋଦୟ ।

ପ୍ରାଣବାୟୁ ଦେହରୁ ବହିର୍ଗତ ହୋଇ ୧୨ ଆଙ୍ଗୁଳ ପର୍ଯ୍ୟନ୍ତ ବାହାରକୁ ଯିବା ସ୍ୱାଭାବିକ । ଗାଇବାସମୟରେ ୧୬ ଆଙ୍ଗୁଳ, ଭୋଜନସମୟରେ ୨୦, ଦୌଡ଼ିବାସମୟରେ ୨୪, ନିଦ୍ରାସମୟରେ ୩୦, ସ୍ତ୍ରୀସଂସର୍ଗକାଳରେ ୩୬, ବ୍ୟାୟାମ କାଳରେ ତା' ଅପେକ୍ଷା ଅଧିକ ବହିର୍ଗତ ହୋଇଥାଏ । ଯେଉଁ ଯୋଗୀ ପ୍ରାଣାୟାମ-ସାଧନାଦ୍ୱାରା ପ୍ରାଣବାୟୁର ବହିର୍ଗମନକୁ

**ସ୍ୱବିଷୟାସମ୍ପ୍ରୟୋଗେ ଚିତ୍ତସ୍ୟ ସ୍ୱରୂପାନୁକାର ଇବେନ୍ଦ୍ରିୟାଣାଂ ପ୍ରତ୍ୟାହାରଃ ॥ ୨ । ୫୪ ॥**

**ଚିତ୍ତ ଶବ୍ଦାଦି ବିଷୟରୁ ପ୍ରତିନିବୃତ୍ତ ହେଲେ ଇନ୍ଦ୍ରିୟମାନେ ମଧ୍ୟ ନିବୃତ୍ତ ହୋଇ ଚିତ୍ତର ଅନୁକରଣ କରନ୍ତି; ଏହାକୁ ପ୍ରତ୍ୟାହାର କୁହାଯାଏ । ଇନ୍ଦ୍ରିୟମାନେ ଏକଚିତ୍ତ ପରି ଗୋଟିଏ ତତ୍ତ୍ୱରେ ଅଭିନିବିଷ୍ଟ ହୋଇ ପାରନ୍ତି ନାହିଁ । ଇବ ଶବ୍ଦଦ୍ୱାରା ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କଥଞ୍ଚିତ୍ ଭେଦ ମଧ୍ୟ ପ୍ରଦର୍ଶିତ ହୋଇଅଛି ।**

---

ସ୍ୱଭାବସ୍ଥ ରଖିପାରନ୍ତି, ସେହି ଯୋଗୀମାନଙ୍କର ପରମାୟୁ ବୃଦ୍ଧି ହୁଏ । ପ୍ରାଣବାୟୁର ବହିର୍ଗତି ଯଦି ଅସ୍ୱାଭାବିକ ହୁଏ, ଅର୍ଥାତ୍ ସ୍ୱାଭାବିକ ପରିମାଣରୁ ଅଧିକ ପରିମାଣ ବହିର୍ଗତ ହୁଏ, ତାହାହେଲେ ନିଶ୍ଚୟ ମନୁଷ୍ୟର ଆୟୁଃ କ୍ଷୟ ହୁଏ । ଏହା ଯୋଗଶାସ୍ତ୍ରର ନିୟମ । ଏଥିନିମନ୍ତେ ପ୍ରାଣାୟାମ-ସିଦ୍ଧି-ଇଚ୍ଛୁ ଯୋଗୀ ପ୍ରଥମେ ପ୍ରାଣର ଏହିପରି ବହିର୍ଗତି ପ୍ରତି ଲକ୍ଷ୍ୟ ରଖି ପ୍ରାଣାୟାମ ସାଧନ କରିବେ । ପ୍ରାଣାୟାମ ଶିକ୍ଷା କରିବାନିମନ୍ତେ ଦେଶକାଳପ୍ରଭୃତି ନିୟମ ଯୋଗଶାସ୍ତ୍ରରେ ବର୍ଣ୍ଣିତ ହୋଇଅଛି । ଏହି ଯୋଗସାଧନାରେ ମୁଦ୍ରାକୁମ୍ଭକାଦି ବିଶେଷଭାବରେ ଆଚରଣୀୟ । ତହିଁରୁ କିଛି ଏଠାରେ କୁହାଯାଉଛି—

ପାଦମୂଲେନ ବାମେନ ଯୋନିଂ ସଂପୀଡ୍ୟ ଦକ୍ଷିଣମ୍ ।
ପ୍ରସାରିତଂ ପଦଂ କୃତ୍ୱା କରାଭ୍ୟାଂ ଧାରୟେଦ୍ଦୃଢ଼ମ୍ ॥
କଣ୍ଠେ ବନ୍ଧଂ ସମାରୋପ୍ୟ ଧାରୟେଦ୍ ବାୟୁମୂର୍ଦ୍ଧ୍ୱତଃ ।
ଯଥା ଦଣ୍ଡାହତଃ ସର୍ପୋ ଦଣ୍ଡାକାରଃ ପ୍ରଜାୟତେ ॥
ରଜ୍ଜୁଭୂତା ତଥା ଶକ୍ତିଃ କୁଣ୍ଡଲୀ ସହସା ଭବେତ୍ ।
ତଦା ସା ମରଣାବସ୍ଥା ଜାୟତେ ଦ୍ୱିପୁଟାଶ୍ରୟା ॥
ତତଃ ଶନୈଃ ଶନୈରେବ ରେଚୟେନ୍ନୈବ ବେଗତଃ ।
ମହାମୁଦ୍ରାଂ ଚ ତେନୈବ ବଦନ୍ତି ବିବୁଧୋତ୍ତମାଃ ॥

ହଠ—୩ । ୧୦-୧୩ ।

ବାମ ପାଦର ଗୁଲ୍ଫଦ୍ୱାରା ଯୋନିଦେଶ ଦୃଢ଼ଭାବରେ ଚାପି ଦକ୍ଷିଣ ଚରଣ ଠିକ୍ ସରଳଭାବରେ ଭୂମି ଉପରେ ଲଗାଇ ରଖିବ ଏବଂ ଯହିଁରେ ଦକ୍ଷିଣ ପାଦର ଅଙ୍ଗୁଳିସମୂହ ଊର୍ଦ୍ଧ୍ୱମୁଖରେ ରହିବ, ସେପରି କରିବ । ତା'ପରେ ତର୍ଜ୍ଜନୀ ଭିନ୍ନ ଉଭୟ ହସ୍ତର ଅଙ୍ଗୁଳିଦ୍ୱାରା ପ୍ରସାରିତ ଦକ୍ଷିଣ ପାଦର ଅଙ୍ଗୁଷ୍ଠ ଦୃଢ଼ଭାବରେ ଗ୍ରହଣ କରି ଉପବିଷ୍ଟ ହେବ । କଣ୍ଠଦେଶରେ ସମ୍ୟଗ୍‌ଭାବରେ "ଜାଳନ୍ଧରବନ୍ଧ" କରି ସୁଷୁମ୍ନା ନାଡ଼ୀରେ ବାୟୁ ଧାରଣ କରିବ । ଏହାଦ୍ୱାରା ମୂଳବନ୍ଧ ହୁଏ ଏବଂ ଯୋନିସଂପୀଡ଼ନ ଓ ଜିହ୍ୱା ବନ୍ଧନଦ୍ୱାରା ତାହା ଚରିତାର୍ଥ ହୋଇଥାଏ । ପରେ ସାଧକ ଦଣ୍ଡାହତ ସର୍ପ ତୁଲ୍ୟ ସରଳଭାବ ଧାରଣ କରିବ । ମହାମୁଦ୍ରା ଅଭ୍ୟାସ କଲେ କୁଣ୍ଡଳିନୀଶକ୍ତି ସହସା ସରଳ ହୁଏ । କୁଣ୍ଡଳିନୀ ସରଳ ହେଲେ ପ୍ରାଣବାୟୁ ସୁଷୁମ୍ନା ନାଡ଼ୀରେ ପ୍ରବେଶ କରେ ଏବଂ ତଦ୍ଦ୍ୱାରା ଇଡ଼ା ଓ ପିଙ୍ଗଳା ନାଡ଼ୀଦ୍ୱୟର ମରଣ ହୁଏ ଅର୍ଥାତ୍ ଏହି ଉଭୟ

**ତତଃ ପରମାବଶ୍ୟତେନ୍ଦ୍ରିୟାଣାମ୍ ॥ ୨ । ୫୫ ॥**

ପୂର୍ବୋକ୍ତ ପ୍ରତ୍ୟାହାର ସିଦ୍ଧ ହେଲେ ଇନ୍ଦ୍ରିୟମାନେ ସର୍ବତୋଭାବେ ବଶୀଭୂତ ହୁଅନ୍ତି ।

---

ନାଡ଼ୀ ଅକର୍ମଣ୍ୟ ହୋଇ ପଡ଼େ । ତା'ପରେ କ୍ରମଶଃ ବାୟୁ ରେଚନ କରିବେ; କିନ୍ତୁ ବେଗରେ କଦାଚ ବାୟୁରେଚନ କରିବେ ନାହିଁ, ବେଗ ହେଲେ ସାଧକର ବଳହାନି ହୁଏ । ଏହାକୁ ଆଦିନାଥ ପ୍ରଭୃତି ପରମଯୋଗୀମାନେ ମହାମୁଦ୍ରା ବୋଲି କହିଅଛନ୍ତି ।

ପାର୍ଷ୍ଣିଂ ବାମସ୍ୟ ପାଦସ୍ୟ ଯୋନିସ୍ଥାନେ ନିଯୋଜୟେତ୍ ।
ବାମୋରୁପରି ସଂସ୍ଥାପ୍ୟ ଦକ୍ଷିଣଂ ଚରଣଂ ତଥା ॥
ପୂରୟିତ୍ୱା ତତୋ ବାୟୁଂ ହୃଦୟେ ଚବୁକଂ ଦୃଢ଼ମ୍ ।
ନିଷ୍ପୀଡ୍ୟ ବାୟୁମାକୁଞ୍ଚ୍ୟ ମନୋମଧ୍ୟେ ନିଯୋଜୟେତ୍ ॥
ଧାରୟିତ୍ୱା ଯଥାଶକ୍ତି ରେଚୟେଦନିଳଂ ଶନୈଃ ।
ସବ୍ୟାଙ୍ଗେ ତୁ ସମଭ୍ୟସେତ୍ ଦକ୍ଷାଙ୍ଗେ ପୁନରଭ୍ୟସେତ୍ ।

ହ୍ୱ୦—୩ । ୧୯-୨୧ ।

ବାମ ପାଦର ଗୁଲ୍‌ଫ ଯୋନିସ୍ଥାନରେ, ଅର୍ଥାତ୍ ଗୁହ୍ୟଦ୍ୱାର ଓ ମେଢ୍ରର ମଧ୍ୟଭାଗରେ ସ୍ଥାପନ କରି ବାମ ଉରୁର ଉପରେ ଦକ୍ଷିଣପାଦ ସ୍ଥାପନ କରିବ । ତଦନନ୍ତର ବାୟୁପୂରଣ କରି ହୃଦୟରେ ଚବୁକ ସ୍ଥାପନ କରିବ । ତତ୍ପରେ ଯୋନିପ୍ରଦେଶ ଆକୁଞ୍ଚନପୂର୍ବକ ମନକୁ ମଧ୍ୟ ନାଡ଼ୀରେ ନିଯୋଜିତ କରିବ । ଏହିପରି ଯଥାଶକ୍ତି ବାୟୁ ଧାରଣପୂର୍ବକ କୁମ୍ଭକ କରିବ । ପ୍ରଥମେ ବାମାଙ୍ଗରେ ଓ ତତ୍ପରେ ଦକ୍ଷିଣାଙ୍ଗରେ ଉକ୍ତ ମହାବନ୍ଧ କରିବ । ବାମାଙ୍ଗରେ ଯେତେବାର ଦକ୍ଷିଣାଙ୍ଗରେ ମଧ୍ୟ ସେତେବାର ମହାବନ୍ଧ କରିବ । ଏହିପରି ପ୍ରାଣାୟାମ ସିଦ୍ଧିନିମନ୍ତେ କୁମ୍ଭକର ନାନା ଭେଦ ରହିଅଛି ।

ପ୍ରାଣରୋଧମଥେଦାନୀଂ ପ୍ରବକ୍ଷ୍ୟାମି ସମାସତଃ ।
ପ୍ରାଣଶ୍ଚ ଦେହଗୋ ବାୟୁରାୟାମଃ କୁମ୍ଭକଃ ସ୍ମୃତଃ ॥
ସ ଏବ ଦ୍ୱିବିଧଃ ପ୍ରୋକ୍ତଃ ସହିତଃ କେବଳସ୍ତଥା ।
ଯାବତ୍ କେବଳ ସିଦ୍ଧିଃ ସ୍ୟାତ୍ ତାବତ୍ ସହିତମଭ୍ୟସେତ୍ ॥
ସୂର୍ଯ୍ୟୋଜ୍ଜାୟୀ ଶୀତଲୀ ଚ ଭସ୍ତ୍ରୀଚୈବ ଚତୁର୍ଥିକା ।
ଭେଦୈରେବ ସମଂ କୁମ୍ଭୋ ଯଃ ସ୍ୟାତ୍ ସହିତକୁମ୍ଭକଃ ॥

ଯୋଗକୁଣ୍ଡଲ୍ୟୁପନିଷତ୍ ୧ । ୧୯-୨୧ ।

ଏହାପରେ ସଂକ୍ଷେପରେ ପ୍ରାଣାୟାମ ବିଷୟ କୁହାଯାଉଛି । ପ୍ରାଣ ଶବ୍ଦର ଅର୍ଥ— ଦେହାଭ୍ୟନ୍ତରଗାମୀ ବାୟୁ, ଆୟାମ ଶବ୍ଦର ଅର୍ଥ କୁମ୍ଭକ । ସେହି କୁମ୍ଭକ ପୁଣି ଦୁଇ ପ୍ରକାର— ସହିତ କୁମ୍ଭକ ଓ କେବଳୀ କୁମ୍ଭକ । କେବଳୀ କୁମ୍ଭକର ସବିଶେଷ ଅଭ୍ୟାସ କଲେ ସହିତ କୁମ୍ଭକର ଅଭ୍ୟାସ କରାଯିବ । ସୂର୍ଯ୍ୟ, ଉଜ୍ଜାୟୀ, ଶୀତଳୀ ଓ ଚତୁର୍ଥ ଭସ୍ତ୍ରୀ—ଏହି ଚତୁର୍ବିଧ ଭେଦଯୁକ୍ତ କୁମ୍ଭକକୁ

## ଦେଶବନ୍ଧଃ ଚିତ୍ତସ୍ୟ ଧାରଣା ॥ ପାଃ ପାଃ ୩—୧ ॥

ପରୁପର ବିଷୟରୁ ପ୍ରତ୍ୟାବୃତ୍ତ ହୋଇ ଜନପୂର୍ଣ୍ଣ ଚତୁର୍ଦ୍ଦଶ ଭୁବନାଶ୍ରିତ ପିଣ୍ଡ-ବ୍ରହ୍ମାଣ୍ଡର ଉର୍ଦ୍ଧ୍ୱ ଚିଦାକାଶଦେଶରେ ସମ୍ବନ୍ଧ ସ୍ଥାପନପୂର୍ବକ * ଅଭ୍ୟନ୍ତର ଚିତ୍ତକୁ ସ୍ଥିର କରିବା ନାମ ଧାରଣା ।

## ତତ୍ର ପ୍ରତ୍ୟୟୈକତାନତା ଧ୍ୟାନମ୍ ॥ ୩ । ୨

ବିଷୟାନ୍ତରରୁ ପ୍ରତ୍ୟାବୃତ୍ତ କରି ପୂର୍ବୋକ୍ତ ଚିଦାତ୍ମବିଷୟରେ ଚିତ୍ତ ସ୍ଥିର କରାଯାଏ, ସେହି ବିଷୟାକାରରେ ବାରମ୍ବାର ଚିତ୍ତବୃତ୍ତି ରଖିବାକୁ ଧ୍ୟାନ ବୋଲାଯାଏ ।

## ତଦେବାର୍ଥ ମାତ୍ରନିର୍ଭାସଂ ସ୍ୱରୂପଶୂନ୍ୟମିବ ସମାଧିଃ ୩ । ୩

ଧ୍ୟାନର ପରିଣାମ ସମାଧି, "ମୁଁ ପ୍ରଭୁ ପରମାତ୍ମାଙ୍କୁ ଚିନ୍ତା କରୁଅଛି" ଏହି ଭାବ ଧ୍ୟାନ ଅବସ୍ଥାରେ ଥାଏ; କିନ୍ତୁ ସମାଧି ଅବସ୍ଥାରେ ତାହା ରହେ ନାହିଁ । ସେତେବେଳେ ଜ୍ଞାନ କେବଳ ଧ୍ୟେୟ ଆକାରରେ ଭାସମାନ ହୁଏ, ସୁତରାଂ ସେତେବେଳେ ବୋଧହୁଏ, ଯେପରିକି ଚିତ୍ତବୃତ୍ତି ନାହିଁ । ଚିତ୍ତବୃତ୍ତି ଥିଲେ ମଧ୍ୟ ତାହା ନ ଥିଲା ପରି ବୋଧହୁଏ, ଇବ-ଶବ୍ଦଦ୍ୱାରା ତାହା କେବଳ କଥିତ ।

---

ସହିତ କୁମ୍ଭକ କୁହାଯାଏ । ବନ୍ଧ, ଭେଦମୁଦ୍ରା, କୁମ୍ଭକ, ପ୍ରାଣାୟାମପ୍ରଭୃତିର ବିଶେଷ ବିବରଣ ଯୋଗଶାସ୍ତ୍ରରେ ଉଲ୍ଲେଖ କରାଯାଇଛି ଓ ସାଧକ ଅଧ୍ୟବସାୟଦ୍ୱାରା ତାହା ବୋଧ କରିବେ । ପୁନଶ୍ଚ—ହଠ ଶବ୍ଦର ଆକ୍ଷରିକାର୍ଥ—

"ହକାରଃ କୀର୍ତ୍ତିତଃ ସୂର୍ଯ୍ୟଷ୍ଠକାରଶ୍ଚନ୍ଦ୍ର ଉଚ୍ୟତେ ।
ସୂର୍ଯ୍ୟଚନ୍ଦ୍ରସଂଯୋଗାତ୍ ହଠଯୋଗୋ ନିଗଦ୍ୟତେ ॥" ଯୋଗତତ୍ତ୍ୱବାରିଧି ॥

ଅର୍ଥାତ୍ ହ ଶବ୍ଦଦ୍ୱାରା ସୂର୍ଯ୍ୟ ଓ ଠ ଶବ୍ଦଦ୍ୱାରା ଚନ୍ଦ୍ର ବୁଝାଯାଏ, ଅତଏବ ହଠ ଶବ୍ଦଦ୍ୱାରା ସୂର୍ଯ୍ୟ-ଚନ୍ଦ୍ରର ଏକତ୍ର ସଂଯୋଗ । ଅପାନବାୟୁର ନାମ ଚନ୍ଦ୍ର ଏବଂ ପ୍ରାଣବାୟୁର ନାମ ସୂର୍ଯ୍ୟ । ଅତଏବ ପ୍ରାଣ ଓ ଅପାନବାୟୁର ଏକତ୍ର ସଂଯୋଗର ନାମ ହଠଯୋଗ ।

* ଆଦାବନ୍ତେ ଚ ମଧ୍ୟେ ଚ ଜନୋ ଯସ୍ମିନ୍ନ ବିଦ୍ୟତେ ।
ଯେନେଦଂ ସତତଂ ବ୍ୟାପ୍ତଂ ସ ଦେଶୋ ବିଜନଃ ସ୍ମୃତଃ ॥
ଅପରୋକ୍ଷାନୁଭୂତି । ୧୧୦ ।

ଯହିଁରେ ଆଦି ଅନ୍ତ ମଧ୍ୟ କେହି ବିଦ୍ୟମାନ ନ ଥାନ୍ତି, କେବଳ ସତ୍ତ୍ୱଦ୍ୱାରା ବ୍ୟାପ୍ତ, ତାହା ହିଁ ବିଜନ ଦେଶ ବୋଲି କଥିତ ।

୦—ସମାଧିଦ୍ୱି-ବିଧିଃ—

ସମାଧିଂ ସର୍ବଦାକୁର୍ଯ୍ୟାଦ୍ ହୃଦୟେ ବାଥବା ବହିଃ ।
ସବିକଲ୍ପୋ ନିର୍ବିକଲ୍ପଃ ସମାଧିର୍ଦ୍ୱିବିଧୋ ହୃଦ ॥
ଦୃଶ୍ୟଶବ୍ଦାନୁଭେଦେନ ସବିକଲ୍ପଂ ପୁନର୍ଦ୍ୱିଧା ।
କାମାଦ୍ୟାଶ୍ଚିତ୍ତଗା ଦୃଶ୍ୟାସ୍ତତ୍ସାକ୍ଷିତ୍ୱେନ ଚେତନମ୍ ॥
ଧ୍ୟାୟେଦ୍ ଦୃଶ୍ୟାନୁବିଦ୍ଧୋଽୟଂ ସମାଧିଃ ସବିକଲ୍ପକଃ ।
ଅସଙ୍ଗସଚ୍ଚିଦାନନ୍ଦଃ ସ୍ୱପ୍ରଭୋ ଦ୍ୱୈତବର୍ଜିତଃ ॥
ଅସ୍ମୀତି ଶବ୍ଦବିଦ୍ଧୋଽୟଂ ସମାଧିଃ ସବିକଲ୍ପକଃ ।
ସ୍ୱାନୁଭୂତିରସାବେଶାଦ୍ ଦୃଶ୍ୟଶବ୍ଦାଦ୍ୟପେକ୍ଷିତୁଃ ॥
ନିର୍ବିକଲ୍ପଃ ସମାଧିଃ ସ୍ୟାତ୍ ନିବାତସ୍ଥିତଦୀପବତ୍ ॥

ସରସ୍ୱତୀରହସ୍ୟୋପନିଷତ୍—୨୫-୨୯ ।

ଅନ୍ତର ଓ ବାହାରର ଅବଚ୍ଛିନ୍ନ ଚୈତନ୍ୟସତ୍ତାକୁ ଧାରଣ କରି ସର୍ବଦା ସମାହିତ ହୋଇ ଅବସ୍ଥାନ କରିବ । ସବିକଳ୍ପ ଓ ନିର୍ବିକଳ୍ପଭେଦରେ ସମାଧି ଦୁଇପ୍ରକାର । ସେହି ସବିକଳ୍ପ ପୁନର୍ବାର ଦୃଶ୍ୟ ଓ ଶବ୍ଦଭେଦରେ ଦୁଇପ୍ରକାର । କାମନା, ସଂସ୍କାରପ୍ରଭୃତି ମନର ବୃତ୍ତିସମୂହ ଦୃଶ୍ୟ; ସେମାନଙ୍କର ଦ୍ରଷ୍ଟାରୂପରେ ଚୈତନ୍ୟସ୍ୱରୂପୀ ଆତ୍ମା ନିତ୍ୟ ବିଦ୍ୟମାନ । ଏହି ସକଳ ଦୃଶ୍ୟ ଯଦି ଧ୍ୟାନର ବିଷୟ ହୁଏ, ତେବେ ସେହି ସମାଧିକୁ ଦୃଶ୍ୟ-ସବିକଳ୍ପ ସମାଧି କୁହାଯାଏ । ଅନ୍ତର ଓ ବାହାରର ଜଡ଼ବସ୍ତୁ ସହିତ ଯାହାଙ୍କର କୌଣସି ପ୍ରକାର ସମ୍ପର୍କ ନାହିଁ, ସେହି ସ୍ୱୟଂ ସଚ୍ଚିଦାନନ୍ଦରୂପୀ ଅଦ୍ୱିତୀୟ ଆତ୍ମାର "ଅହମ୍" ଶବ୍ଦାତ୍ମକ ନାମଟି ଯେତେବେଳେ ଧ୍ୟାନବିଷୟ ହୁଏ, ସେତେବେଳେ ସେହି ସମାଧିକୁ ଶବ୍ଦସବିକଳ୍ପ ସମାଧି କୁହାଯାଏ । ଏହି ଦୁଇ ବ୍ୟତୀତ ଅନ୍ତର୍ବିଷୟକୁ ନେଇ ଅନ୍ୟପ୍ରକାର ତୃତୀୟ ସମାଧି ଅଛି, ତାହାର ନାମ ନିର୍ବିକଳ୍ପ-ସମାଧି । ଯେତେବେଳେ ଚିତ୍ତ ଆତ୍ମାନୁଭବଜନିତ ଆନନ୍ଦର ଆବେଶରେ ତନ୍ମୟ ହୋଇ ନିର୍ବାତ ପ୍ରଦେଶରେ ନିଷ୍ପନ୍ଦଘୃତଶିଖାତୁଲ୍ୟ ଏକତାନ ହୋଇ ଉଠେ, ସେତେବେଳେ ସେହି ଅବସ୍ଥାକୁ ନିର୍ବିକଳ୍ପ ସମାଧି କୁହାଯାଏ ।

ତ୍ରୟମେକତ୍ର ସଂଯମଃ ॥ ୩।୪ ।

ଭାଷ୍ୟ—ତଦେତତ୍ ଧାରଣାଧ୍ୟାନସମାଧିତ୍ରୟମେକତ୍ର ସଂଯମଃ ।

ଏକ ତତ୍ତ୍ୱ ବିଷୟରେ ଧାରଣା, ଧ୍ୟାନ ଓ ସମାଧିକୁ ସଂଯମ କୁହାଯାଏ ।

ତଜ୍ଜୟାତ୍ ପ୍ରଜ୍ଞାଲୋକଃ ॥ ୩।୫ ।

ଅଭ୍ୟାସପୂର୍ବକ ସଂଯମର ଜୟ, ଅର୍ଥାତ୍ ଶ୍ୱାସପ୍ରଶ୍ୱାସ ତୁଲ୍ୟ ସଂଯମକୁ ସ୍ୱାଧୀନ କରିପାରିଲେ ଜ୍ଞାନଶକ୍ତିର ପୂର୍ଣ୍ଣବିକାଶ ହୁଏ । ଏହିପରି ଧ୍ୟାନ-ଧାରଣାଦିଦ୍ୱାରା ଚିତ୍ତସଂଯମ ସାଧିତ ହୁଏ ବୋଲି କପିଳଙ୍କର ମଧ୍ୟ ଅଭିମତ ।

**ଧ୍ୟାନଧାରଣାଭ୍ୟାସବୈରାଗ୍ୟାଦିଭିସ୍ତନ୍ନିରୋଧଃ ॥**
**ଲୟବିକ୍ଷେପୟୋର୍ବ୍ୟାବୃତ୍ତ୍ୟେତ୍ୟାଚାର୍ଯ୍ୟାଃ ॥**
**ନ ସ୍ଥାନନିୟମଃ ଚିତ୍ତପ୍ରସାଦାତ୍ ॥**

ସାଂଖ୍ୟପ୍ରବଚନ ୬।୨୯-୩୧ ॥

ଯୋଗର କାରଣ ଧ୍ୟାନ, ଧ୍ୟାନର କାରଣ ଧାରଣା ଓ ଧାରଣାର କାରଣ ଅଭ୍ୟାସ ବା ଚିତ୍ତସ୍ଥୈର୍ଯ୍ୟସାଧନ । ଆହୁରି ମଧ୍ୟ ଅଭ୍ୟାସ ସ୍ଥାୟୀ ହେବାର କାରଣ ବିଷୟ ବୈରାଗ୍ୟ । ବୈରାଗ୍ୟର କାରଣ ବିଷୟର ଦୋଷ ଅନୁସନ୍ଧାନ । ଏହି ସୂତ୍ରରେ ଉକ୍ତ ଉପାୟର ନିରୋଧ ବା ଅବସାନ ହୋଇଥାଏ । ସାଂଖ୍ୟଦାର୍ଶନିକମାନେ କହିଅଛନ୍ତି—ଧ୍ୟାନାଦିଦ୍ୱାରା ଲୟବୃତ୍ତି ଓ ବିକ୍ଷେପବୃତ୍ତିର ନିରୋଧ (ଅନୁତ୍‌ଥାନ) ହୁଏ ଓ ପୁରୁଷର ବୃତ୍ତ୍ୟପରାଗର ଶାନ୍ତିଲାଭ ହୁଏ । ଧ୍ୟାନାଦି ନିମନ୍ତେ ସ୍ଥାନର ନିୟମ ନାହିଁ । ଯେଉଁ ସ୍ଥାନରେ ଚିତ୍ତର ପ୍ରସନ୍ନତା ଲାଭ ହୁଏ, ସେହି ସ୍ଥାନହିଁ ଧ୍ୟାନ ନିମନ୍ତେ ପ୍ରଶସ୍ତ ।

ଯୋଗ ସମ୍ବନ୍ଧରେ ଉପନିଷଦ୍‌ର ସଂକ୍ଷିପ୍ତ ସୂଚନା ଏଠାରେ ପ୍ରଦର୍ଶିତ ହେଉଅଛି—

**ଯୋଗୋ ହି ବହୁଧା ବ୍ରହ୍ମନ୍ ଭିଦ୍ୟତେ ବ୍ୟବହାରତଃ ।**
**ମନ୍ତ୍ରଯୋଗୋ ଲୟଶ୍ଚୈବ ହଠୋଽସୌ ରାଜଯୋଗକଃ ॥**
**ଆରମ୍ଭଶ୍ଚ ଘଟଶ୍ଚୈବ ତଥା ପରିଚୟଃ ସ୍ମୃତଃ ।**
**ନିଷ୍ପତ୍ତିଶ୍ଚେତ୍ୟବସ୍ଥା ଚ ସର୍ବତ୍ର ପରିକୀର୍ତ୍ତିତଃ ॥**

ଯୋଗତତ୍ତ୍ୱୋପନିଷଦ୍ । ୧୯-୨୦ ।

ହେ ବ୍ରହ୍ମନ୍ ! ସାଧନ-ବୈଚିତ୍ର୍ୟନିବନ୍ଧନ ଯୋଗ ବହୁପ୍ରକାରରେ ବିଭକ୍ତ । ଯଥା—ମନ୍ତ୍ରଯୋଗ, ଲୟଯୋଗ, ହଠଯୋଗ ଓ ରାଜଯୋଗ । ପ୍ରଧାନତଃ ଯୋଗର ଏହି ଚାରିଗୋଟି ପ୍ରକାର, ଅର୍ଥାତ୍ ଭେଦ; ତଦ୍‌ଭିନ୍ନ ଆରମ୍ଭାବସ୍ଥା, ଘଟାବସ୍ଥା, ପରିଚୟାବସ୍ଥା ଓ ନିଷ୍ପତ୍ତିଅବସ୍ଥା—ଏପରି ଅବସ୍ଥାଚତୁଷ୍ଟୟ ମଧ୍ୟ କୀର୍ତ୍ତିତ ହୋଇଅଛି ।

ଏତେଷାଂ ଲକ୍ଷଣଂ ବ୍ରହ୍ମନ୍ ବକ୍ଷ୍ୟେ ଶୃଣୁ ସମାସତଃ ।
ମାତୃକାଦ୍ୟୁତଃ ମନ୍ତ୍ରଂ ଦ୍ୱାଦଶାବ୍ଦଂ ତୁ ଯୋ ଜପେତ୍ ।
କ୍ରମେଣ ଲଭତେ ଜ୍ଞାନମଣିମାଦଗୁଣାନ୍ୱିତମ୍ ।
ଅଳ୍ପବୁଦ୍ଧିରିମଂ ଯୋଗଂ ସେବତେ ସାଧକାଧମଃ ।

ତତ୍ରୈବ-୨୧-୨୨ ।

ଏହି ଚତୁର୍ବିଧ ଯୋଗର ଲକ୍ଷଣ ସଂକ୍ଷେପରେ କହୁଅଛୁଁ, ଶ୍ରବଣ କର । ଯେ ଅକାରାଦିମାତୃକା-ବର୍ଣ୍ଣସଂଯୁକ୍ତ ମନ୍ତ୍ର ଦ୍ୱାଦଶବର୍ଷ ପର୍ଯ୍ୟନ୍ତ ଜପ କରେ, ସେ ଅଣିମାଦି ଐଶ୍ୱର୍ଯ୍ୟ-ସମନ୍ୱିତ ଜ୍ଞାନ ଲାଭ କରେ । ଅଳ୍ପବୁଦ୍ଧିସାଧକ ଏହି ଯୋଗର ସେବା କରେ ।

ଲୟଯୋଗଶ୍ଚିତ୍ତଲୟଃ କୋଟିଶଃ ପରିକୀର୍ତ୍ତିତଃ ।
ଗଚ୍ଛଂସ୍ତିଷ୍ଠନ୍ ସ୍ୱପନ୍ଭୁଞ୍ଜନ୍ ଧ୍ୟାୟେନ୍ନିଷ୍କଳମୀଶ୍ୱରମ୍ ॥
ସ ଏବ ଲୟଯୋଗଃ ସ୍ୟାଦ୍ଧଠଯୋଗମତଃ ଶୃଣୁ ।
ଯମଶ୍ଚ ନିୟମଶ୍ଚୈବ ଆସନଂ ପ୍ରାଣସଂଯମଃ ॥
ପ୍ରତ୍ୟାହାରୋ ଧାରଣା ଚ ଧ୍ୟାନଂ ଭ୍ରୂମଧ୍ୟମେ ହରମ୍ ।
ସମାଧିଃ ସମତାବସ୍ଥା ସାଷ୍ଟାଙ୍ଗୋ ଯୋଗ ଉଚ୍ୟତେ ॥

ତତ୍ରୈବ-୨୩-୨୫ ।

ଚିତ୍ତଲୟର ନାମ ଲୟଯୋଗ, ଏହାର ଭେଦ କୋଟି କୋଟି ବା ଏହା ଅସଂଖ୍ୟ । ଗମନ, ଶୟନ ବା ଭୋଜନାଦି ସକଳ ଅବସ୍ଥାରେ ନିଷ୍କଳଈଶ୍ୱରଙ୍କୁ ଧ୍ୟାନ କରିବ—ଏହାହିଁ ଲୟଯୋଗ । ଏହାପରେ ହଠଯୋଗ କହୁଅଛୁଁ, ଶ୍ରବଣ କର—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ବା ସମତାବସ୍ଥା—ଏହା ଅଷ୍ଟାଙ୍ଗଯୋଗ ।

ମହାମୁଦ୍ରା ମହାବନ୍ଧୋ ମହାବେଧଶ୍ଚ ଖେଚରୀ ।
ଜାଳନ୍ଧରୋଡ୍ଡିୟାଣଶ୍ଚ ମୂଳବନ୍ଧସ୍ତଥୈବଚ ॥
ଦୀର୍ଘପ୍ରଣବସନ୍ଧାନଂ ସିଦ୍ଧାନ୍ତଶ୍ରବଣଂ ପରମ୍ ।
ବଜ୍ରୋଲୀ ଚାମରୋଲୀ ଚ ସହଜୋଲୀ ତ୍ରିଧା ମତା ॥

ତତ୍ରୈବ-୨୬-୨୭ ॥

ମହାମୁଦ୍ରା, ମହାବନ୍ଧ, ମହାବେଧ, ଖେଚରୀ, ଜାଳନ୍ଧର, ଉଡ୍ଡିୟାଣ, ମୂଳବନ୍ଧ, ଦୀର୍ଘପ୍ରଣବର ଅନୁସନ୍ଧାନ, ସିଦ୍ଧାନ୍ତଶ୍ରବଣ ଏବଂ ବଜ୍ରୋଳୀ, ଚାମରୋଳୀ ଓ ସହଜୋଳୀ—

ଏହି ଛଅପ୍ରକାର—ଏପରି ଦ୍ୱାଦଶପ୍ରକାର ଅଙ୍ଗଯୋଗ । ଏହାର ବିଶେଷବିବରଣ ଯୋଗ-ଶାସ୍ତ୍ରାଦିରେ ଦ୍ରଷ୍ଟବ୍ୟ । ଏହି ଯୋଗାଦି ସଗୁଣସାଧନଦ୍ୱାରା କେବଳ ଅଣିମାଦି ଐଶ୍ୱର୍ଯ୍ୟ ଲାଭ ହୁଏ ଏବଂ ନିର୍ଗୁଣ ସାଧନଦ୍ୱାରା ସମାଧି ଲାଭ ହୁଏ ।

ସଗୁଣଂ ଧ୍ୟାନମେତତ୍ ସ୍ୟାଦଣିମାଦିଗୁଣପ୍ରଦମ୍ ।
ନିର୍ଗୁଣଧ୍ୟାନଯୁକ୍ତସ୍ୟ ସମାଧିଶ୍ଚ ତତୋ ଭବେତ୍ ॥

ଛନ୍ଦୈକ-୧୦୫ ।

ଏହି ସଗୁଣ ଉପାସନା ଅଣିମାଦି ଐଶ୍ୱର୍ଯ୍ୟ ପ୍ରଦାନ କରେ । ଯେଉଁ ଯୋଗୀ ନିର୍ଗୁଣ ବ୍ରହ୍ମଚିନ୍ତାପରାୟଣ, ତାହାଙ୍କର ସେହି ଚିନ୍ତାଫଳରେ ଅସମ୍ପ୍ରଜ୍ଞାତ ସମାଧି ଲାଭ ହୁଏ । *

ତତୋ ଭବେଦ୍ରାଜଯୋଗୋ ନାନ୍ତରା ଭବତି ଧ୍ରୁବମ୍ ।
ଯଦା ତୁ ରାଜଯୋଗେନ ନିଷ୍ପନ୍ନା ଯୋଗିଭିଃ କ୍ରିୟା ॥
ତଦା ବିବେକ-ବୈରାଗ୍ୟଂ ଜାୟତେ ଯୋଗିନୋ ଧ୍ରୁବମ୍ ।

ଛନ୍ଦୈକ-୧୨୯-୧୩୦ ।

ହଠଯୋଗ ଅଭ୍ୟାସ କରିବା ପରେ ରାଜଯୋଗ ଅଭ୍ୟାସ କରାଯାଏ;

ତଦ୍‌ଭିନ୍ନ ଅନ୍ୟ ପ୍ରକାରରେ ଯୋଗାଭ୍ୟାସ ହୁଏ ନାହିଁ । ଯେତେବେଳେ ରାଜଯୋଗ-ଦ୍ୱାରା ଯୋଗୀର ସମସ୍ତ କ୍ରିୟା ନିଷ୍ପନ୍ନ ହୁଏ, ଅର୍ଥାତ୍ ରାଜଯୋଗର ଅଭ୍ୟାସ ଦୃଢ଼ ହୁଏ, ସେତେ-ବେଳେ ଯୋଗୀର ନିଶ୍ଚୟ ହିଁ ବିବେକ ଓ ବୈରାଗ୍ୟ ଉପସ୍ଥିତ ହୁଏ ।

**ଠ—ଏକପ୍ରଭୁ ପରଂବ୍ରହ୍ମଙ୍କ ସ୍ମରଣ-ଚିନ୍ତନରେ ଚିତ୍ତରେ ଏକାଗ୍ରତା ସାଧନ—**

ପୂର୍ବରେ ବର୍ଣ୍ଣିତ ସକଳ ପ୍ରାଣାୟାମପ୍ରଭୃତି ଯୋଗସାଧନ ବିଷୟ ଓ ପ୍ରଣାଳୀ କେବଳ ଅପରପତ ଚିତ୍ତ ପକ୍ଷରେ ସହାୟକ ବୋଲି ବୁଝିବାକୁ ହେବ । ପରନ୍ତୁ ଯେଉଁମାନଙ୍କର

---

* ଅଥ ଧ୍ୟାନମ୍ । ତଦ୍‌ଦ୍ୱିବିଧଂ ସଗୁଣଂ ନିର୍ଗୁଣଞ୍ଚେତି ।
ସଗୁଣଂ ମୂର୍ତ୍ତିଧ୍ୟାନମ୍ , ନିର୍ଗୁଣମାତ୍ମଯାଥାତ୍ମ୍ୟମ୍ ॥
ଶାଣ୍ଡିଲ୍ୟୋପନିଷତ୍—୧।୧୦ ।

ଧ୍ୟାନ ଦ୍ୱିବିଧ—ସଗୁଣ ଓ ନିର୍ଗୁଣ । ମୂର୍ତ୍ତିଚିନ୍ତନ ସଗୁଣଧ୍ୟାନ ଏବଂ ପରମାତ୍ମାଙ୍କ ପ୍ରକୃତ ସ୍ୱତତ୍ତ୍ୱସ୍ୱରୂପଚିନ୍ତନର ନାମ ନିର୍ଗୁଣ ଧ୍ୟାନ ॥

ମୈତ୍ରୀ ଆଦି ଶୁଭବାସନାସମ୍ପନ୍ନ ଓ ସର୍ବଦା ଜ୍ଞାନ-ଭକ୍ତି-ସଦାଚାର-ଅନୁରକ୍ତିଜନିତ ପୂର୍ଣ୍ଣ ଆସ୍ତିକତା ବୋଧରେ ସତ୍ୟ-ଜ୍ଞାନ ପ୍ରତିଷ୍ଠା ସମ୍ଭୂତ ହୋଇ ଏକ ନିର୍ଗୁଣ ପରଂବ୍ରହ୍ମଙ୍କୁ କେବଳ ଚିତ୍ତ ଆତ୍ମଭାବରେ ସ୍ମରଣ-ଚିନ୍ତନ-ଭଜନରୂପ ବିଶୁଦ୍ଧାତ୍ମଜ୍ଞାନ-ଭକ୍ତିଯୋଗରେ ସୁଦୃଢ଼ତା ଜନ୍ମିଅଛି, ସେମାନଙ୍କର ଚିତ୍ତବୃତ୍ତିର ପ୍ରବାହ ଯେଉଁ ପରମାତ୍ମାଙ୍କ ଆଡ଼ରେ ପ୍ରଧାବିତ ହେବା ସ୍ୱାଭାବିକ ହୋଇଯାଏ । ଯେମାନେ ସେହି ନିର୍ଗୁଣ ପରଂବ୍ରହ୍ମଙ୍କ ସ୍ମରଣ-ଭଜନରେ ତନ୍ମୟ ହୋଇ ଚିତ୍ତ-ସଂଯମ ଲାଭ କରିବା ସଙ୍ଗେ ସଙ୍ଗେ ତତ୍ପରାୟଣ ଓ ତନ୍ନିଷ୍ଠ ହୋଇ ତତ୍ପଦ ପ୍ରାପ୍ତ ହୁଅନ୍ତି ।

**ଇନ୍ଦ୍ରିୟେଷୁ ନିରୁଦ୍ଧେଷୁ ତ୍ୟକ୍ତ୍ୱା ବେଗଂ ମନଃ ସ୍ୱୟମ୍ ।**
**ସତ୍ୟଭାବମୁପାଦତ୍ତେ ପ୍ରସାଦସ୍ତେନ ଜାୟତେ ॥**
**ପ୍ରସନ୍ନେ ସତି ଚିତ୍ତେଽସ୍ୟ ମୁକ୍ତିଃ ସିଦ୍ଧ୍ୟତି ନାନ୍ୟଥା ॥**

ସ: ସି: ସା: ୧୩୬ ।

ଇନ୍ଦ୍ରିୟଗଣ ନିରୁଦ୍ଧ ହେଲେ ଅନ୍ତଃକରଣ ( ବାହ୍ୟ ବିଷୟରେ ପ୍ରବୃତ୍ତ ହେବାର ) ବେଗକୁ ନିଜେ ନିଜେ ପରିତ୍ୟାଗ କରି ସତ୍ୟସ୍ୱରୂପ ଆତ୍ମାରେ ଅବସ୍ଥାନ ପ୍ରାପ୍ତ ହୋଇ ରହେ ଓ ତଦ୍ୱାରା କେବଳ ଚିତ୍ତର ପ୍ରସନ୍ନତା ଜାତ ହୁଏ, ଏହିପରି ଭାବରେ ଚିତ୍ତ ଯଦି ପ୍ରସନ୍ନ ହୁଏ, ତେବେ ମୁକ୍ତି ମଧ୍ୟ ସିଦ୍ଧ ହୁଏ, ଅନ୍ୟଥା ମୋକ୍ଷସିଦ୍ଧି ସମ୍ଭବ ନୁହେଁ ।

ଏ ବିଷୟରେ ଉପନିଷଦ୍‌ର ଦୃଢ଼ ବଚନ—

**ଏକଂ ବ୍ରହ୍ମ ଚିଦାକାଶଂ ସର୍ବାତ୍ମକମଖଣ୍ଡିତମ୍ ।**
**ଇତି ଭାବୟ ଯତ୍ନେନ ଚେତଶ୍ଚାଞ୍ଚଲ୍ୟଶାନ୍ତୟେ ॥**
**ରେଖୋପରେଖାବଳିତା ଯଥୈକା ପୀବରୀ ଶିଳା ।**
**ତଥା ତ୍ରୈଲୋକ୍ୟବଳିତଂ ବ୍ରହ୍ମୈକମିହ ଦୃଶ୍ୟତାମ୍ ॥**

ମହୋପନିଷତ୍ — ୫ । ୫୬—୫୭ ।

ଚିତ୍ତର ଚଞ୍ଚଳତା ଦୂର କରିବାନିମନ୍ତେ ଏକ ସର୍ବାତ୍ମକସ୍ୱରୂପ ଓ ଅଖଣ୍ଡ-ଚିଦାକାଶରୂପ ପରଂବ୍ରହ୍ମଙ୍କୁ ଯତ୍ନସହକାରେ ଚିନ୍ତା କର । ଯେପରି ବୃହତ୍ ଶିଳାରେ ନାନାପ୍ରକାର ରେଖା ଦୃଷ୍ଟ ହୁଏ, ସେହିପରି ଏକମାତ୍ର ବ୍ରହ୍ମଙ୍କଠାରେ ତ୍ରୈଲୋକ୍ୟ ଚିତ୍ରିତ ହୋଇ ରହିଅଛି । ଅର୍ଥାତ୍ ତ୍ରୈଲୋକ୍ୟର ଅଧିଷ୍ଠାନ ଏକମାତ୍ର ବ୍ରହ୍ମଙ୍କୁ ତୁମ୍ଭେ ଦର୍ଶନ କର ।

ଅନ୍ତର୍ମୁଖତୟା ସର୍ବଂ ଚିଦ୍ ବହ୍ନୌ ତ୍ରିଜଗତ୍ ତୃଣମ୍ ।
ଜୁହ୍ୱତୋନ୍ତର୍ନିବର୍ତ୍ତନ୍ତେ ମୁନେ ଚିତ୍ତାଦିବିଭ୍ରମାଃ ॥

ଅନ୍ନପୂର୍ଣ୍ଣୋପନିଷଦ୍ । ୧ । ୧୬ ।

ହେ ମୁନେ ! ବାହ୍ୟବିଷୟାକାର ବୃତ୍ତି ପରିତ୍ୟାଗ କରି ଅନ୍ତର୍ମୁଖବୃତ୍ତିଦ୍ୱାରା ଚୈତନ୍ୟାତ୍ମକ ଆତ୍ମବହ୍ନିରେ ତ୍ରିଜଗତ୍ରୂପ ତୃଣସମୂହର ଯେଉଁ ଆହୁତି ପ୍ରଦାନ କରନ୍ତି ତହିଁରେ ତାହାଙ୍କର ଚିତ୍ତବିଭ୍ରମ ନିବୃତ୍ତ ହୁଏ ।

ପ୍ରଭୁ ପରମାତ୍ମାଙ୍କଠାରେ ପ୍ରେମପୂର୍ଣ୍ଣ ପରମଭକ୍ତି ସହକାରେ ଆତ୍ମଜ୍ଞାନୀମାନେ ମନ ପ୍ରାଣ ନିବେଶ କରି ଚିତ୍ତର ଏକାଗ୍ରତା ସାଧନ କରନ୍ତି; ଯେପରି ତୈଳ ଏକପାତ୍ରରୁ ଅପର ପାତ୍ରକୁ ଯିବା ସମୟରେ ଅବିଚ୍ଛିନ୍ନ ଧାରାରେ ପତିତ ହୁଏ ।

ଚେତସୋ ବର୍ତ୍ତନଂ ଚୈବ ତୈଳଧାରସମଂ ସଦା,

ସେହିପରି ମନ ଯେତେବେଳେ ଅବିଚ୍ଛିନ୍ନଭାବରେ ପରମାତ୍ମାଙ୍କୁ ସ୍ମରଣ କରି ରହେ— ଏହିପରି ପରାଭକ୍ତିଦ୍ୱାରା ପରମାତ୍ମାଙ୍କଠାରେ ଚିତ୍ତର ସ୍ଥିରତା ମାନବହୃଦୟରେ ସର୍ବୋଚ୍ଚଭାବରେ ଜାଗରିତ ହେଲେ, ତାହାର ଚିତ୍ତ ସଂଯତ ହୋଇ ଯୋଗୀ ମୁକ୍ତିପଦର ଅଧିକାରୀ ହୁଏ । ସେ ନିଜ ମନରେ ଚିନ୍ମୟ ପରମାତ୍ମାଙ୍କ ବ୍ୟତୀତ ଅନ୍ୟ କୌଣସି ଚିନ୍ତାକୁ ହୃଦୟରେ ସ୍ଥାନ ଦିଏ ନାହିଁ; ତାହାର ଆତ୍ମା ପରମାତ୍ମାଙ୍କଠାରେ କେବଳ ସମାହିତ ହୁଏ; ସୁତରାଂ ସେ ମାନସିକ ଓ ଭୌତିକ ସର୍ବପ୍ରକାର ବନ୍ଧନ ଛିନ୍ନ କରି ଶାନ୍ତ ଓ ମୁକ୍ତଭାବ ଧାରଣ କରେ । ଏହିପରି ସଚ୍ଚିତ୍ସ୍ୱରୂପ ପରଂବ୍ରହ୍ମଙ୍କଠାରେ ଚିତ୍ତବୃତ୍ତି ନିରୋଧ କରିବା ନିମନ୍ତେ ଯେ ସର୍ବଦା ଯତ୍ନଶୀଳ; ତାହାପକ୍ଷରେ ପ୍ରାଣାୟାମାଦି ଯୋଗସାଧନ ବିଶେଷ କିଛି ଆବଶ୍ୟକ ହୁଏ ନାହିଁ । କାରଣ, ଧାରଣା, ଧ୍ୟାନ ବା ସମାଧି ଆଦିର ଏକପରମାତ୍ମତତ୍ତ୍ୱ-ଦର୍ଶନଦ୍ୱାରା କେବଳ ଲାଭ ହୁଏ ଓ ଏକ ସତ୍ୟ-ପ୍ରତିଷ୍ଠାଦ୍ୱାରା ବାହ୍ୟ ଆଭ୍ୟନ୍ତର କରଣ ଚିନ୍ମୁଖୀ ହୋଇ ରହେ ଏବଂ ବାହ୍ୟ ଓ ଆଭ୍ୟନ୍ତରରେ ଚିନ୍ମୟ ସତ୍ତ୍ୱା ବ୍ୟତୀତ ଅନ୍ୟ କିଛି ଦୃଷ୍ଟ ବା ଶ୍ରୁତ ହୁଏ ନାହିଁ । ସୁତରାଂ ସାଧକ ପ୍ରଥମରୁ ଅସତ୍ଚିନ୍ତା ଆଦି ପରିବର୍ଜନପୂର୍ବକ ଯଥାନିୟମରେ ଓ ବଶିଷ୍ଠାଗୁରୁ ମତରେ ସୁଦୃଢ଼ ରହି ଶୁଭବାସନାଦ୍ୱାରା ମୈତ୍ର୍ୟାଦିଭାବ ଅବଲମ୍ବନପୂର୍ବକ ନିର୍ଗୁଣବ୍ରହ୍ମଭକ୍ତିପରାୟଣ ହୋଇ ଚିତ୍ତସଂଯମ ଦୃଢ଼ ରଖିବେ । ଏ ବିଷୟ ଯୋଗସୂତ୍ରର ପ୍ରଥମରେ ସୂଚିତ ହୋଇଅଛି—

ମୈତ୍ରୀକରୁଣାମୁଦିତୋପେକ୍ଷାଣାଂ ସୁଖ ଦୁଃଖ ପୁଣ୍ୟାପୁଣ୍ୟବିଷୟାଣାଂ ଭାବନାତଶ୍ଚିତ୍ତ ପ୍ରସାଦନମ୍ ॥

ପାତଞ୍ଜଳ ଦର୍ଶନ—୧ । ୩୩ ।

ସୁଖୀମାନଙ୍କ ପ୍ରତି ପ୍ରେମ, ଦୁଃଖୀ ପ୍ରତି ଦୟା, ଧାର୍ମିକ ପ୍ରତି ହର୍ଷ ଓ ପାପୀ ପ୍ରତି ଔଦାସୀନ୍ୟ ପ୍ରକାଶ କଲେ ଚିତ୍ତ ପ୍ରସନ୍ନ ହୁଏ ।

ଏହି ବିଷୟରେ ଗୌତମ ବୁଦ୍ଧ ଚିତ୍ତଜୟ ଲାଭ କରିଥିଲେ ।

ଯସ୍ୟାର୍ଥାୟ ଦଶବଳା ମୈତ୍ରୀ ଭାବେନ୍ତି ସର୍ବସତ୍ତ୍ୱେଷୁ ।
ମୈତ୍ରୀବଳେନ ଜିତ୍ୱା ପୀତୋ ମେଽସ୍ମିନ୍ନମୃତମଣ୍ଡଃ ॥
ଯସ୍ୟାର୍ଥାୟ ଦଶବଳାଃ କରୁଣା ଭାବେନ୍ତି ସର୍ବସତ୍ତ୍ୱେଷୁ ।
କରୁଣାବଳେନ ଜିତ୍ୱା ପୀତୋ ମେଽସ୍ମିନ୍ନମୃତମଣ୍ଡଃ ॥
ଯସ୍ୟାର୍ଥାୟ ଦଶବଳା ମୁଦିତା ଭାବେନ୍ତି ସର୍ବସତ୍ତ୍ୱେଷୁ ।
ମୁଦିତାବଳେନ ଜିତ୍ୱା ପୀତୋ ମେଽସ୍ମିନ୍ନମୃତମଣ୍ଡଃ ॥
ଯସ୍ୟାର୍ଥାୟ ଦଶବଳା ଉପେକ୍ଷା ଭାବେନ୍ତି କଲ୍ପନୟୁତାନ ।
ତମୁପେକ୍ଷବଳୈର୍ଜିତ୍ୱା ପୀତୋ ମେଽସ୍ମିନ୍ନମୃତମଣ୍ଡଃ ॥

ଲଳିତବିସ୍ତର—୨୪।୧୬୦-୬୩ ॥

ଯେଉଁ ଅମୃତରସ ନିମନ୍ତେ ଶ୍ରଦ୍ଧା, ବୀର୍ଯ୍ୟ, ସ୍ମୃତି, ସମାଧି, ପ୍ରଜ୍ଞାପ୍ରଭୃତି ଦଶବଳ ଉପାୟସ୍ୱରୂପ ଗୃହୀତ ହୁଏ ଏବଂ ଜୀବମାନଙ୍କର ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା ପରିଚାଳିତ ହୁଏ, ମୁଁ ସେହି ଅମୃତରସ ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା ବଳରେ ଜୟ କରି ପାନ କରିଅଛି ।

ଏହି ଚିତ୍ତପ୍ରସାଦନ ନିମନ୍ତେ ଶଙ୍କରାଚାର୍ଯ୍ୟଙ୍କର ଉକ୍ତି—

ଯମେଷ ନିରତୋ ଯସ୍ତୁ ନିୟମେଷୁ ଚ ଯତ୍ନତଃ ।
ବିବେକିନସ୍ତସ୍ୟ ଚିତ୍ତଂ ପ୍ରସାଦମଧିଗଚ୍ଛତି ॥
ଆସୁରୀଂ ସମ୍ପଦଂ ତ୍ୟକ୍ତ୍ୱା ଭଜେଦ୍ ଯୋ ଦୈବସମ୍ପଦମ୍ ।
ମୋକ୍ଷୈକକାଙ୍କ୍ଷୟା ନିତ୍ୟଂ ତସ୍ୟ ଚିତ୍ତଂ ପ୍ରସୀଦତି ॥
ପରଦ୍ରବ୍ୟ-ପରଦ୍ରୋହ-ପରନିନ୍ଦା-ପରସ୍ତ୍ରିୟଃ ।
ନାଲମ୍ବତେ ମନୋ ଯସ୍ୟ ତସ୍ୟ ଚିତ୍ତଂ ପ୍ରସୀଦତି ॥
ଆତ୍ମବତ୍ ସର୍ବଭୂତେଷୁ ଯଃ ସମତ୍ୱେନ ପଶ୍ୟତି ।
ସୁଖଂ ଦୁଃଖଂ ବିବେକେନ ତସ୍ୟ ଚିତ୍ତଂ ପ୍ରସୀଦତି ॥

ଅତ୍ୟନ୍ତଂ ଶ୍ରଦ୍ଧୟା ଭକ୍ତ୍ୟା ଗୁରୁମୀଶ୍ୱରମାତ୍ମନଃ ।
ଯୋ ଭଜତ୍ୟନଶଂ କ୍ଷାନ୍ତସ୍ତସ୍ୟ ଚିତ୍ତଂ ପ୍ରସୀଦତ ॥
ସ: ସି: ସା: ୩୬୪—୩୬୮ ।

ଯେଉଁ ଲୋକ ଯତ୍ନସହକାରେ ଯମ ଓ ନିୟମରେ * ସର୍ବଦା ରତ ଥା'ନ୍ତି, ସେହି ଆତ୍ମାନାତ୍ମବିବେକୀ ପୁରୁଷର ଚିତ୍ତ ପ୍ରସନ୍ନତା ଲାଭ କରେ । ଯେ ମୋକ୍ଷ ଲାଭ ଆକାଙ୍କ୍ଷାରେ ଆସୁରୀ ସମ୍ପଦକୁ ପରିତ୍ୟାଗ କରି ସତତ ଦୈବୀ ସମ୍ପଦକୁ + ଭଜନା କରନ୍ତି, ତାହାଙ୍କର ଚିତ୍ତ ପ୍ରସନ୍ନତା ଲାଭ କରେ । ଯାହାଙ୍କର ଚିତ୍ତ ପରଦ୍ରବ୍ୟରେ, ପରଦ୍ରୋହରେ, ପର ନିନ୍ଦାରେ ଓ ପରସ୍ତ୍ରୀରେ ଆସକ୍ତ ନ ହୁଏ, ତାହାଙ୍କର ଚିତ୍ତ ପ୍ରସନ୍ନତା ଲାଭ କରେ । ଯେ ସମସ୍ତ ଜୀବରେ ନିଜ ତୁଲ୍ୟ-ଅଭେଦରେ ବିବେକ ସାହାଯ୍ୟରେ ସୁଖ ଓ ଦୁଃଖ ନିରୀକ୍ଷଣ କରନ୍ତି ନାହିଁ, ତାହାଙ୍କର ଚିତ୍ତ ପ୍ରସନ୍ନତା ଲାଭ କରେ । ଯେ କ୍ଷମାଶୀଳ ପୁରୁଷ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତିର ସହିତ ଆତ୍ମାର ଗୁରୁ ପରଂବ୍ରହ୍ମ ପରମାତ୍ମାଙ୍କୁ ସତତ ଭକ୍ତି କରନ୍ତି, ତାହାଙ୍କର ଚିତ୍ତ ପ୍ରସନ୍ନତା ଲାଭ କରେ ।

---

* ଯମ ନିୟମର ସବିସ୍ତର ବିବରଣ ସପ୍ତମ ଅନୁପାଦରେ ଦ୍ରଷ୍ଟବ୍ୟ ।

+ ଦୈବାସୁର ସମ୍ପଦ୍ ବିଭାଗ—

ଅଭୟଂ ସତ୍ତ୍ୱସଂଶୁଦ୍ଧିଃ ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ ସ୍ୱାଧ୍ୟାୟସ୍ତପ ଆର୍ଜବମ୍ ।
ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନମ୍ ।
ଦୟା ଭୂତେଷ୍ୱ ଲୋଲୁପ୍ତ୍ୱଂ ମାର୍ଦ୍ଦବଂ ହ୍ରୀରଚାପଲମ୍ ॥
ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ ॥

ଗୀତା—୧୬।୧-୩ ।

ଅସୁର ସମ୍ପଦ୍—

ଦମ୍ଭୋ ଦର୍ପୋଽଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବଚ ।
ଅଜ୍ଞାନଂ ଚାଭିଜାତସ୍ୟ ପାର୍ଥ ସମ୍ପଦମାସୁରୀମ୍ ॥
ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ଜନା ନ ବିଦୁରାସୁରାଃ ।
ନ ଶୌଚଂ ନାପିଚାଚାରୋ ନ ସତ୍ୟଂ ତେଷୁ ବିଦ୍ୟତେ ॥
ଅସତ୍ୟମପ୍ରତିଷ୍ଠଂ ତେ ଜଗଦାହୁରନୀଶ୍ୱରମ୍ ।
ଅପରସ୍ପରସମ୍ଭୂତଂ କିମନ୍ୟତ୍ କାମହୈତୁକମ୍ ॥
ଏତାଂ ଦୃଷ୍ଟିମବଷ୍ଟଭ୍ୟ ନଷ୍ଟାତ୍ମାନୋଽଲ୍ପବୁଦ୍ଧୟଃ ।
ପ୍ରଭବନ୍ତ୍ୟୁଗ୍ରକର୍ମାଣଃ କ୍ଷୟାୟ ଜଗତୋଽହିତାଃ ॥

ଗୀତା—୧୬।୪-୯ ॥

ଏ ବିଷୟରେ ଉପନିଷଦରେ ମଧ୍ୟ କୁହାଯାଇଛି—

**ପଦ୍ମାନ୍ୟ ଇବ ହେମନ୍ତେ କ୍ଷୀୟନ୍ତେ ଭୋଗବାସନାଃ ।**
**ତାବନ୍ନିଶୀବ ବେତାଲା ବଲନ୍ତି ହୃଦି ବାସନାଃ ॥**
**ଏକତତ୍ତ୍ୱଦୃଢ଼ାଭ୍ୟାସାତ୍ ଯାବନ୍ନ ବିଜିତଂ ମନଃ ।**
**ପ୍ରକ୍ଷୀଣଚିତ୍ତଦର୍ପସ୍ୟ ନିଗୃହୀତେନ୍ଦ୍ରିୟଦ୍ୱିଷଃ ॥**

ମୁକ୍ତିକୋ: ଉ: ୨।୩୮-୩୯ ମହୋପନିଷଦ୍ ୫।୭୮ ।

ଯେ ପର୍ଯ୍ୟନ୍ତ ମନ ବିଜିତ ନ ହୁଏ, ସେ ପର୍ଯ୍ୟନ୍ତ ଏକ ପରମତତ୍ତ୍ୱର ଅଭ୍ୟାସ-ଦ୍ୱାରା ଚିତ୍ତ ଓ ଅହଙ୍କାରକୁ ପ୍ରକ୍ଷୀଣକରି ଇନ୍ଦ୍ରିୟ-ଶତ୍ରୁମାନଙ୍କୁ ନିଗ୍ରହ କରିବେ । ତାହାହେଲେ ହେମନ୍ତ କାଳର ପଦ୍ମମାନ ତୁଲ୍ୟ ଭୋଗବାସନା କ୍ଷୟ ପ୍ରାପ୍ତ ହୁଏ । ଯେ ପର୍ଯ୍ୟନ୍ତ ପରମତତ୍ତ୍ୱର ଦୃଢ଼ ଅଭ୍ୟାସବଶତଃ ମନ ବିଜିତ ନ ହୁଏ, ସେ ପର୍ଯ୍ୟନ୍ତ ରାତିରେ ବେତାଳମାନଙ୍କପରି ଭୋଗବାସନା ବୃଦ୍ଧି ପ୍ରାପ୍ତ ହୁଏ ।

---

ଭଗବାନ୍ କହୁଅଛନ୍ତି—ହେ ଭାରତ ! ଭୟଶୂନ୍ୟତା, ଚିତ୍ତପ୍ରସନ୍ନତା, ଆତ୍ମଜ୍ଞାନ—ଉପାୟରେ ନିଷ୍ଠା, ସତ୍ପାତ୍ରରେ ଦାନ, ଇନ୍ଦ୍ରିୟସଂଯମ, ଯଜ୍ଞ (ପରମାତ୍ମାଙ୍କଠାରେ ଆତ୍ମସମର୍ପଣ), ଆତ୍ମଧ୍ୟାନ, ତପସ୍ୟା, ସରଳତା, ଅହିଂସା, ସତ୍ୟ, ଅକ୍ରୋଧ, ତ୍ୟାଗ, ଶାନ୍ତି, ଖଳଶୂନ୍ୟତା, ସର୍ବଭୂତମାନଙ୍କ-ଠାରେ ଦୟା, ଲୋଭଶୂନ୍ୟତା, ଅହଂକାରରହିତ୍ୟ, କୁକର୍ମ ଓ କୁବୃତ୍ତିବିଷୟରେ ଲଜ୍ଜାବୋଧ, ଚପଳଶୂନ୍ୟତା, ତେଜ, କ୍ଷମା, ଧୈର୍ଯ୍ୟ, ବାହ୍ୟ ଓ ଆଭ୍ୟନ୍ତର ଶୁଦ୍ଧି, ଅତିପୂଜ୍ୟ ବୋଲି ଅଭିମାନର ଅଭାବ—ଏହି ସକଳ ଦୈବୀସମ୍ପଦ ଲାଭ କରି ଜନ୍ମଲାଭ କରିଥିବା ଲୋକର ଗୁଣ ବୋଲି ଜାଣ ।

ହେ ପାର୍ଥ ! ଧାର୍ମିକତାପ୍ରକାଶ, କାଳ୍ପନିକ ଧର୍ମର ଆଡ଼ମ୍ବର, ଧନ ନିମନ୍ତେ ଚାତୁର ଗର୍ବାନୁଭବ, ନିଜର ଅତିପୂଜ୍ୟତ୍ୱାଭିମାନ, କ୍ରୋଧ, ନିଷ୍ଠୁରତା ଏବଂ ଅବିବେକ—ଏହାସବୁ ଆସୁରୀସମ୍ପଦ ନେଇ ଜନ୍ମଗ୍ରହଣ କରିଥିବା ଲୋକର ଗୁଣ ବା ଦୁର୍ଗୁଣ ବୋଲି ଜାଣିବ । ଆସୁର ସ୍ୱଭାବର ଲୋକମାନେ ଧର୍ମରେ ପ୍ରବୃତ୍ତି ଓ ଅଧର୍ମନିବୃତ୍ତି ବିଷୟ ଜାଣନ୍ତି ନାହିଁ । ସେଥି ନିମନ୍ତେ ସେମାନଙ୍କଠାରେ ଶୌଚ, ଆଚାର ବା ସତ୍ୟବାଦିତା ଗୁଣ ନ ଥାଏ । ସେମାନେ କହନ୍ତି—ଜଗତ୍ ଅସତ୍ୟ (ବେଦପୁରାଣାଦି ପ୍ରମାଣଶୂନ୍ୟ) ଅପ୍ରତିଷ୍ଠ (ଧର୍ମାଧର୍ମରୂପ ପ୍ରତିଷ୍ଠାହୀନ), ଈଶ୍ୱରବର୍ଜିତ (ବ୍ୟବସ୍ଥାପକଶୂନ୍ୟ) ସ୍ତ୍ରୀପୁରୁଷର ମୈଥୁନସମ୍ଭୂତ ; ଏହି ଜଗତର ଅନ୍ୟ କିଛି କାରଣ ନାହିଁ, କେବଳ ସ୍ତ୍ରୀ-ପୁରୁଷର ଧାରାବାହିକ କାମପ୍ରବୃତ୍ତିହିଁ ଏହାର ଉତ୍ପତ୍ତିର ଏକମାତ୍ର କାରଣ । ସେହି ଅଳ୍ପବୁଦ୍ଧି ଲୋକମାନେ ଏହିପରି ଜ୍ଞାନ ଆଶ୍ରୟ କରି ମଳିନଚିତ୍ତ, କ୍ରୂରକର୍ମା ଓ ଅହିତକାରୀ ହୋଇ ଜଗତର କ୍ଷୟ ନିମନ୍ତେ ଜନ୍ମଗ୍ରହଣ କରିଥାନ୍ତି ।

"ଦୈବୀସମ୍ପଦ୍ ବିମୋକ୍ଷାୟ ନିବନ୍ଧାୟାସୁରୀ ମତା ।"

ଗୀତା-୧୬।୫ ॥

ଏହି ଉଭୟ ସଂପଦର ଫଳ ବିଭାଗ କରି କହୁ ଅଛନ୍ତି—ଦୈବୀସମ୍ପଦ ମୋକ୍ଷର ହେତୁ ଓ ଆସୁରୀସଂପଦ ବନ୍ଧନର ହେତୁ ଅଟେ ।

ତଦଭ୍ୟାସେନ ବଦ୍ୟାୟାଂ ସୁସ୍ଥିତାୟାମୟଂ ପୁମାନ୍ ।
ଜୀବନ୍ନେବଂ ଭବେନ୍ମୁକ୍ତୋ ବପୁରସ୍ତୁ ଯଥା ତଥା ॥
ତଚ୍ଚିନ୍ତନଂ ତତ୍‌କଥନମନ୍ୟୋନ୍ୟଂ ତତ୍‌ପ୍ରବୋଧନମ୍ ।
ଏତଦେକପରତ୍ୱଞ୍ଚ ତଦଭ୍ୟାସଂ ବଦୁର୍ବୁଧାଃ ॥
ବାସନାନେକକାଳୀନା ଦୀର୍ଘକାଳଂ ନିରନ୍ତରମ୍ ।
ସାଦରଞ୍ଚାଭ୍ୟସ୍ୟମାନେ ସର୍ବଥୈବ ନିବର୍ତ୍ତତେ ।

ପଞ୍ଚଦଶୀ—୧୩।୮୦-୮୨ ॥

ସେହି ପରଂବ୍ରହ୍ମଜ୍ଞାନ ଦୃଢ଼ୀଭୂତ ହେଲେ ତାହାର ଅଭ୍ୟାସଦ୍ୱାରା ଆତ୍ମତତ୍ତ୍ୱବଦ୍ୟା ସୁସ୍ଥିର ହୁଏ, ସେତେବେଳେ ପୁରୁଷ ଜୀବନ୍ମୁକ୍ତ ହୁଏ; ସେହି ଅବସ୍ଥାରେ ତାହାର ଦେହର କୌଣସି ହାନି ବା ପରିବର୍ତ୍ତନ ହୁଏ ନାହିଁ । ପରଂବ୍ରହ୍ମଙ୍କ ସ୍ୱରୂପଚିନ୍ତା ଓ ସେହି ବିଷୟରେ କଥୋପକଥନ, ଅନ୍ୟମାନଙ୍କୁ ସେ ବିଷୟରେ ଉପଦେଶ ଓ ପରମାତ୍ମାଙ୍କଠାରେ ଚିତ୍ତୈକାଗ୍ରତା—ଏହି ସକଳକୁ ବ୍ରହ୍ମଜ୍ଞାନର ଅଭ୍ୟାସ ବୋଲିଯାଏ । ଦୀର୍ଘକାଳ ନିରନ୍ତର ଆଦର ସହିତ ଏହିପରି ଅଭ୍ୟାସ କଲେ ବହୁକାଳବ୍ୟାପୀ ସକଳ ବିଷୟବାସନା ମଧ୍ୟ ନିବୃତ୍ତ ହୁଏ ।

ବୀତରାଗବିଷୟଂ ବା ଚିତ୍ତମ୍ ॥ ପାତଞ୍ଜଳ : ୧ : ୧୩୭ ॥

ଯେଉଁମାନଙ୍କ ଚିତ୍ତରେ ରାଗ ନାହିଁ, ସେପରି ଜୀବନ୍ମୁକ୍ତ ପୁରୁଷର ଚିତ୍ତ ସମାଧି ଅବଲମ୍ବନ କରି ସ୍ଥିର ହୁଏ । ଏ ବିଷୟରେ ଗୌତମବୁଦ୍ଧ ମଧ୍ୟ କହିଛନ୍ତି—

ଯଥା ଅଗାରଂ ଦୁଚ୍ଛନ୍ନଂ ବୁଟ୍‌ଠୀ ସମତି ବିଜ୍‌ଝତି ।
ଏବଂ ଅଭାବିତଂ ଚିତ୍ତଂ ରାଗୋ ସମତି ବିଜ୍‌ଝତି ॥
ଯଥା ଅଗାରଂ ସୁଚ୍ଛନ୍ନଂ ବୁଟ୍‌ଠୀ ନ ସମତି ବିଜ୍‌ଝତି ।
ଏବଂ ସୁଭାବିତଂ ଚିତ୍ତଂ ରାଗୋ ନ ସମତି ବିଜ୍‌ଝତି ॥

ଧର୍ମ୍ମପଦ-ଯମକ-ବଗ୍‌ଗୋ-୧୩; ୧୪ ॥

ସମ୍ୟକ୍ ପ୍ରକାରେ ଅନାଚ୍ଛାଦିତ ଗୃହରେ ଯେପରି ବୃଷ୍ଟି ପ୍ରବେଶ କରେ, ସେହିପରି ଅଭାବିତ ଚିତ୍ତରେ ରାଗ ପ୍ରବେଶ ଲାଭ କରେ । ସମ୍ୟକ୍‌ରୂପରେ ଆଚ୍ଛାଦିତ ଗୃହରେ ଯେପରି ବୃଷ୍ଟି ପ୍ରବେଶ କରିପାରେ ନାହିଁ, ସେହିପରି ସୁଭାବିତ ଚିତ୍ତରେ ରାଗ ପ୍ରବେଶ ଲାଭ କରି ପାରେ ନାହିଁ ।

୦—ପ୍ରାଣାପାନର ନିୟନ୍ତ୍ରଣକାରୀ ପରମାତ୍ମାଙ୍କୁ ଚିନ୍ତା କର ।

ପୂର୍ବୋକ୍ତ ସକଳ ଶ୍ରୁତିବଚନ ଓ ଯୁକ୍ତିର ବିସ୍ତୃତପୂର୍ବକ ଅନୁଭବଦ୍ୱାରା ପ୍ରାଣାପାନର ନିୟନ୍ତା ଚିନ୍ମୟପରଂବ୍ରହ୍ମଙ୍କୁ ଆତ୍ମାରେ ସତତ ଚିନ୍ତା କରି ବ୍ରାହ୍ମୀ-ସ୍ଥିତି ଲାଭ କରି ମୁକ୍ତ ହୁଅ—

ସ୍ୱାତ୍ମନ୍ୟେବ ସଦା ସ୍ଥିତ୍ୟା ମନୋ ନଶ୍ୟତି ଯୋଗିନଃ ।
ଯୁକ୍ତ୍ୟା ଶ୍ରୁତ୍ୟା ସ୍ୱାନୁଭୂତ୍ୟା ଜ୍ଞାତ୍ୱା ସାର୍ବାତ୍ମ୍ୟମାତ୍ମନଃ ।

ଅଧ୍ୟାତ୍ମୋପନିଷଦ୍ ୪ ।

ଯୁକ୍ତି, ଶ୍ରୁତିବଚନ ଓ ନିଜର ଅନୁଭୂତିଦ୍ୱାରା ନିଜର ସର୍ବାତ୍ମକତ୍ୱ—ପରମାତ୍ମାଙ୍କୁ ଜାଣି ସର୍ବଦା ସ୍ୱୀୟ ଆତ୍ମାରେ ଅବସ୍ଥିତିଦ୍ୱାରା ଯୋଗୀର ମନ ନାଶପ୍ରାପ୍ତ ହୁଏ ।

ଶ୍ରୁତିରେ ଉଲ୍ଲେଖ ଅଛି—

ଦ୍ୱାବିମୌ ବାତୌ ବାତ ଆସିନ୍ଧୋରାପରାବତଃ ।
ଦକ୍ଷଂ ତେ ଅନ୍ୟ ଆବାତୁ ବ୍ୟନ୍ୟୋ ବାତୁ ଯଦ୍‌ରପଃ ॥

ଅଥର୍ବବେଦ–୪।୧୩।୧ ॥

(ଶରୀରରେ) ପ୍ରାଣବାୟୁ ଓ ଅପାନବାୟୁ ଦୁଇ ପ୍ରବାହିତ ହେଉଅଛି । ଅପାନବାୟୁ ସମୁଦ୍ର ସଦୃଶ ଗମ୍ଭୀର ଫୁସ୍‌ଫୁସ୍‌ରୁ ଆସୁଅଛି ଏବଂ ପ୍ରାଣବାୟୁ ଦୂର ବାୟୁମଣ୍ଡଳରୁ ଆସୁଅଛି । ପ୍ରାଣବାୟୁ ତୁମ୍ଭ ନିମନ୍ତେ ବଳ ସଞ୍ଚାର କରୁଅଛି ଏବଂ ଅପାନବାୟୁ ଶରୀରର ରୋଗ ପାପକୁ ଶରୀରରୁ ବାହାର କରୁଅଛି ।

ପ୍ରାଣୋଽୟମନିଶଂ ବ୍ରହ୍ମନ୍ ସ୍ପନ୍ଦଶକ୍ତିଃ ସଦାଗତିଃ ।
ସ ବାହ୍ୟାଭ୍ୟନ୍ତରେ ଦେହେ ପ୍ରାଣୋଽସାବୂର୍ଦ୍ଧ୍ୱଗଃ ସ୍ଥିତଃ ॥
ଅପାନୋଽପ୍ୟନିଶଂ ବ୍ରହ୍ମନ୍ ସ୍ପନ୍ଦଶକ୍ତିଃ ସଦାଗତିଃ ।
ସ ବାହ୍ୟାଭ୍ୟନ୍ତରେ ଦେହେ ଅପାନୋଽୟମବାକ୍ ସ୍ଥିତଃ ॥
ଜାଗ୍ରତଃ ସ୍ୱପତଶ୍ଚୈବ ପ୍ରାଣାୟାମୋଽୟମୁତ୍ତମଃ ।
ପ୍ରବର୍ତ୍ତତେ ହ୍ୟଭିଜ୍ଞସ୍ୟ ତଂ ତାବଚ୍ଛେ ଯୁସେ ଶୃଣୁ ॥
ଦ୍ୱାଦଶାଙ୍ଗୁଳପର୍ଯ୍ୟନ୍ତଂ ବାହ୍ୟମାକ୍ରମତାଂ ତତଃ ।
ପ୍ରାଣାନାମଙ୍ଗସଂସ୍ପର୍ଶୋ ଯଃ ସ ପୂରକଃ ଉଚ୍ୟତେ ॥

ଅପାନଶ୍ଚନ୍ଦ୍ରମା ଦେହମାପ୍ୟାୟୟତ ସୁବ୍ରତ !
ପ୍ରାଣଃ ସୂର୍ଯ୍ୟୋଽଗ୍ନିରଥବା ପଚତ୍ୟନ୍ତରିଦଂ ବପୁଃ ॥
ପ୍ରାଣକ୍ଷୟସମୀପସ୍ଥମପାନୋଦୟକୋଟିଗମ୍ ।
ଅପାନପ୍ରାଣୟୋରୈକ୍ୟଂ ଚିଦାତ୍ମାନଂ ସମାଶ୍ରୟ ॥

ଅନ୍ନପୂର୍ଣ୍ଣୋପନିଷଦ୍ — ୫-୨୫-୩୦ ॥

ହେ ବ୍ରହ୍ମନ୍ ! ଏହି ପ୍ରାଣ ସର୍ବଦା ସ୍ପନ୍ଦନ-ଶକ୍ତିଯୁକ୍ତ ଓ ବାୟୁରୂପ, ଦ୍ୱାଦଶ ଅଙ୍ଗୁଳି, ବହିର୍ଦେଶ ସହିତ ଦେହରେ ସର୍ବଦା ଊର୍ଦ୍ଧ୍ୱଗତ ହୋଇ ଅବସ୍ଥାନ କରୁଅଛି । ହେ ବ୍ରହ୍ମନ୍ ! ଏହି ଅଧଃକ୍ରିୟାଯୁକ୍ତ ସ୍ପନ୍ଦନଶକ୍ତିବିଶିଷ୍ଟ ବାୟୁରୂପ ଅପାନ ଦ୍ୱାଦଶାଙ୍ଗୁଳି ବାହ୍ୟଦେଶ ସହ-କୃତ ଦେହରେ ନିମ୍ନ ମୁଖ ହୋଇ ଅବସ୍ଥାନ କରୁଅଛି । ଜାଗ୍ରତ ଓ ନିଦ୍ରାବସ୍ଥାରେ ପ୍ରାଣତତ୍ତ୍ୱଜ୍ଞ ବ୍ୟକ୍ତିର ପ୍ରାଣାଦିର ବହିର୍ଗମନ ଓ ଅଭ୍ୟନ୍ତର ଗମନଦ୍ୱାରା ଅନ୍ତର ଓ ବାହ୍ୟ ରେଚକ, ପୂରକ କୁମ୍ଭକରୂପ ତ୍ରିବିଧ ଅଯତ୍ନସିଦ୍ଧ ପ୍ରାଣାୟାମ ହୋଇଥାଏ ଏବଂ ତାହାଙ୍କର ମୋକ୍ଷରୂପ ଶ୍ରେୟସ୍ ଲାଭ ନିମନ୍ତେ କହୁଅଛୁ, ଶ୍ରବଣ କର । ପ୍ରାଣବାୟୁ ବହିର୍ଦେଶରେ ଦ୍ୱାଦଶ ଅଙ୍ଗୁଳିପରିମିତ ଦେଶ ଆକ୍ରମଣ କଲେ, ତଦ୍ଦ୍ୱାରା ଯେ ପ୍ରାଣାଦିର ଅଙ୍ଗସ୍ପର୍ଶ ହୁଏ, ତାହା ବାହ୍ୟ ପୂରକରୂପ ପ୍ରାଣାୟାମ ବୋଲି ଜାଣିବ । ହେ ସୁବ୍ରତ ! ଅପାନବାୟୁ ଚନ୍ଦ୍ରସ୍ୱରୂପ; ଏହା ଦେହକୁ ଆପ୍ୟାୟିତ କରେ; ପ୍ରାଣବାୟୁ ସୂର୍ଯ୍ୟ ବା ଅଗ୍ନି ସ୍ୱରୂପରେ ଏହି ଦେହର ପରିପାକ କ୍ରିୟା ସମ୍ପାଦନ କରେ । ନାସିକାର ବହିର୍ଦେଶରେ ଦ୍ୱାଦଶ ଅଙ୍ଗୁଳିପରିମିତ ସ୍ଥାନରେ, ଯେଉଁ ସ୍ଥାନରେ ପ୍ରାଣବାୟୁର କ୍ଷୟ ଓ ଅପାନବାୟୁର ଉଦୟ ହୁଏ, ସେହିଠାରେ ଏହି ଉଭୟର ସନ୍ଧିସ୍ୱରୂପ ଯେଉଁ ଐକ୍ୟ, ତାହାକୁ ଚୈତନ୍ୟସ୍ୱରୂପୀ ପରମାତ୍ମା ଜାଣି ଉପାସନା କରିବ । *

ଅପାନୋଽସ୍ତଂଗତୋ ଯତ୍ର ପ୍ରାଣୋଽନାଭ୍ୟୁଦିତଃ କ୍ଷଣମ୍ ।
କଳାକଳଙ୍କରହିତଂ ତଚ୍ଚିତ୍ତତ୍ତ୍ୱଂ ସମାଶ୍ରୟ ॥
ନାପାନୋଽସ୍ତଂଗତୋ ଯତ୍ର ପ୍ରାଣଶ୍ଚାସ୍ତମୁପାଗତଃ ।
ନାସାଗ୍ରଗମନାବର୍ତ୍ତଂ ତଚ୍ଚିତ୍ତତ୍ତ୍ୱମୁପାଶ୍ରୟ ॥
ଆତ୍ମସମାବମେବେଦଂ ନ ସନ୍ନାସଜ୍ଜଗତ୍ତ୍ରୟମ୍ ।
ଇତ୍ୟନ୍ୟକଳନାତ୍ୟାଗଂ ସମ୍ୟଗ୍‌ଜ୍ଞାନଂ ବିଦୁର୍ବୁଧାଃ ॥

* ଏହିପରି ଅଯତ୍ନସିଦ୍ଧ ପ୍ରାଣାୟାମର ଉପଦେଶ ଯୋଗବାଶିଷ୍ଠର ନିର୍ବାଣପ୍ରକରଣରେ ଭୂଷଣ୍ଡ ଋଷି ଦେଇ ଅଛନ୍ତି ।

ଆତ୍ମସମାହକଂ ବ୍ରହ୍ମଂଶ୍ଚି ତ୍ତାଦର୍ଶକଳଙ୍କିତମ ।
ତତସ୍ତଦପି ସନ୍ତ୍ୟଜ୍ୟ ନିରାତ୍ମସୋ ଭବୋତ୍ତମ ॥
ଭୟପ୍ରଦମକଲ୍ୟାଣଂ ଧୈର୍ଯ୍ୟସର୍ବସ୍ୱହାରଣମ୍ ।
ମନଃପିଶାଚମୁତ୍ସାର୍ଯ୍ୟ ଯୋଽସି ସୋଽସି ସ୍ଥିରୋ ଭବ ॥

ଚତ୍ତୈବ—୫-୩୧-୩୫ ।

ଯେଉଁ ସ୍ଥାନରେ ଅପାନ ଅସ୍ତ ହୁଏ ଏବଂ ପ୍ରାଣ ମଧ୍ୟ କ୍ଷଣକ ନିମନ୍ତେ ଉଦୟ ପ୍ରାପ୍ତ ହୁଏ ନାହିଁ, ଉପାଧିଶୂନ୍ୟ ସେହି ତତ୍ ସ୍ୱରୂପର ଆଶ୍ରୟ କର । ଯେଉଁ ଅବସ୍ଥାରେ ଅପାନ ଅସ୍ତମିତ ହୁଏ ନାହିଁ, ପ୍ରାଣ ମଧ୍ୟ ଅସ୍ତ ହୋଇଅଛି, ବିଶୁଦ୍ଧ ପ୍ରାଣ ମଧ୍ୟ ଅପାନ-ପ୍ରବାହର ପ୍ରତିଘାତବଶତଃ ଯଦ୍ଦାରା ନାସିକାର ସମୀପବର୍ତ୍ତୀ ଦ୍ୱାଦଶାଙ୍ଗୁଳପରିମିତ ପ୍ରଦେଶରେ ଆବର୍ତ୍ତିତ ହେଉଅଛି, ସେହି ଚୈତନ୍ୟ-ତତ୍ତ୍ୱର ଆଶ୍ରୟ ଗ୍ରହଣ କର । ଚୈତନ୍ୟର ଆତ୍ମସମାହ ଏହି ଜଗତ୍ତ୍ରୟ ସତ୍ ନୁହେଁ, ଅସତ୍ ମଧ୍ୟ ନୁହେଁ—ଏହିରୂପ ଆତ୍ମଭିନ୍ନ ବସ୍ତୁର କଳ୍ପନାତ୍ୟାଗକୁ ହିଁ ଯଥାର୍ଥଜ୍ଞାନ ବୋଲି ପଣ୍ଡିତମାନେ ଜାଣନ୍ତି । ହେ ବ୍ରହ୍ମନ୍, ହେ ଉତ୍ତମ ! ଏହି ବ୍ରହ୍ମ-ପ୍ରତିବିମ୍ବଚୈତନ୍ୟ ଚିତ୍ତରୂପ ଆଦର୍ଶର ଦୋଷଦ୍ୱାରା କଳଙ୍କିତ (ଯେପରି ମଳିନ ଦର୍ପଣରେ ପ୍ରତିବିମ୍ବିତ ମୁଖ ଦର୍ପଣର ମାଳିନ୍ୟଦ୍ୱାରା ମଳିନ ପ୍ରତୀୟମାନ ହୁଏ) । ଅତଏବ ସେହି ଚିତ୍ତରୂପ ଆଦର୍ଶ ବିନାଶ କରି ବିମ୍ବରୂପରେ ଅବସ୍ଥାନ କର । ସଂସାର-ଭୟଜନକ, ଅମଙ୍ଗଳାତ୍ମକ, ଧୈର୍ଯ୍ୟରୂପକ ସର୍ବସ୍ୱନାଶକ ମନୋରୂପ ପିଶାଚକୁ ଦୂର କରି ତୁମେ ଯତ୍ ତତ୍ ସ୍ୱରୂପ ଚିନ୍ମୟ ପରମାତ୍ମ-ଜ୍ୟୋତିରେ ସୁସ୍ଥିରଭାବରେ ଅବସ୍ଥାନ କର । ଏ ସମ୍ବନ୍ଧରେ କଠଶ୍ରୁତି ମଧ୍ୟ କହେ—

ଊର୍ଦ୍ଧ୍ୱଂ ପ୍ରାଣ ମୁନ୍ନୟତ୍ୟପାନଂ ପ୍ରତ୍ୟଗସ୍ୟତ ।
ମଧ୍ୟେ ବାମନମାସୀନଂ ବିଶ୍ୱେଦେବା ଉପାସତେ ॥

କଠ—୨-୨-୫ ।

ଯେ ପ୍ରାଣବାୟୁକୁ ହୃଦୟଦେଶରୁ ଊର୍ଦ୍ଧ୍ୱଗାମୀ କରନ୍ତି ଏବଂ ଅପାନବାୟୁକୁ ଅଧୋଗାମୀ କରନ୍ତି, ସେହି ହୃଦୟାସୀନ ଆତ୍ମାର ହିଁ ପ୍ରେରଣାରେ ଦେବଗଣ, ଅର୍ଥାତ୍ ଚକ୍ଷୁରାଦି ଇନ୍ଦ୍ରିୟଗଣ ନିଜ ନିଜ କାର୍ଯ୍ୟରେ ବ୍ୟାପୃତ ହୋଇ ଅଛନ୍ତି ।

ନ ପ୍ରାଣେନ ନାପାନେନ ମର୍ତ୍ତ୍ୟୋ ଜୀବତି କଶ୍ଚନ ।
ଇତରେଣ ତୁ ଜୀବନ୍ତି ଯସ୍ମିନ୍ନେତାବୁପାଶ୍ରିତୌ ॥

କଠ—୨-୨-୫ ।

କୌଣସି ମନୁଷ୍ୟ କେବଳ ପ୍ରାଣ, ଅପାନାଦି ବାୟୁ ଓ ଚକ୍ଷୁରାଦି ଇନ୍ଦ୍ରିୟଦ୍ୱାରା ଜୀବିତ ରହିପାରେ ନାହିଁ; କାରଣ, ପ୍ରାଣାପାନାଦି ଓ ଇନ୍ଦ୍ରିୟଗଣ କେବଳ ସଂହତ ପଦାର୍ଥ, ଅର୍ଥାତ୍ ଉତ୍ପନ୍ନ ବସ୍ତୁ । ସୁତରାଂ, ଏମାନେ ପରାର୍ଥ—ପରର ପ୍ରୟୋଜନ ସାଧନ ହିଁ ଏମାନଙ୍କର ଉଦ୍ଦେଶ୍ୟ, ଅତଏବ ଯାହା ଉଦ୍ଦେଶ୍ୟରେ ଏମାନେ ସଂହତ, ତାହାର ପ୍ରେରଣା ବ୍ୟତିରେକେ ଜୀବନ ଧାରଣ କରିବାକୁ ସମର୍ଥ ନୁହଁନ୍ତି । ଯେପରି ମନୁଷ୍ୟର ଜୀବନୋପଯୋଗୀ ଗୃହ ଇତ୍ୟାଦି ତାହାର ପ୍ରଯତ୍ନ ବ୍ୟତିରେକେ ନଷ୍ଟ ହୋଇଯାଏ, ସେପରି ପ୍ରାଣାଦି ଓ ଇନ୍ଦ୍ରିୟାଦି ମଧ୍ୟ ଅସଂହତ କୌଣସି ପଦାର୍ଥର ଅବଲମ୍ବନ ବ୍ୟତିରେକେ ନିଜେ ରହିପାରିବେ ନାହିଁ । ଅତଏବ ପ୍ରାଣାଦି ନିଖିଳ ସଂହତ ବସ୍ତୁରୁ ବିଲକ୍ଷଣ ଅସଂହତ ବସ୍ତୁ ଆତ୍ମାକୁ ଆଶ୍ରୟ କରି ପ୍ରାଣାଦି ସମସ୍ତ ପଦାର୍ଥ ଜୀବିତ ରହନ୍ତି ।

**୦—ରଥୀ ସ୍ୱରୂପ ଆତ୍ମାକୁ ପରଂବ୍ରହ୍ମ ଚିନ୍ତନରେ ନିଯୁକ୍ତ ରଖି ସୁଖୀ ହୁଅ ।**

କେବଳ ଆତ୍ମଜ୍ଞାନରେ ଚିତ୍ତକୁ ନିମଜ୍ଜିତ କରି ରଖିବା ସର୍ବତୋଭାବେ ବିଧେୟ ଓ ଏହା ସଂଯମୀ ପକ୍ଷରେ ନିତ୍ୟ କର୍ତ୍ତବ୍ୟ । ଏହି ବିଷୟରେ କଠଶ୍ରୁତିରେ ବିଶଦବ୍ୟାଖ୍ୟା କରାଯାଇଛି—

ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ ।
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ ॥
ଇନ୍ଦ୍ରିୟାଣି ହୟାନାହୁର୍ବିଷୟାଂସ୍ତେଷୁ ଗୋଚରାନ୍ ।
ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ ॥
ଯସ୍ତ୍ୱବିଜ୍ଞାନବାନ୍ ଭବତ୍ୟଯୁକ୍ତେନ ମନସା ସଦା ।
ତସ୍ୟେନ୍ଦ୍ରିୟାଣ୍ୟବଶ୍ୟାନି ଦୁଷ୍ଟାଶ୍ୱା ଇବ ସାରଥେଃ ॥
ଯସ୍ତୁ ବିଜ୍ଞାନବାନ୍ ଭବତି ଯୁକ୍ତେନ ମନସା ସଦା ।
ତସ୍ୟେନ୍ଦ୍ରିୟାଣି ବଶ୍ୟାନି ସଦଶ୍ୱା ଇବ ସାରଥେଃ ॥
ଯସ୍ତ୍ୱବିଜ୍ଞାନବାନ୍ ଭବତ୍ୟମନସ୍କଃ ସଦା ଶୁଚିଃ ।
ନ ସ ତତ୍ ପଦମାପ୍ନୋତି ସଂସାରଞ୍ଚାଧିଗଚ୍ଛତି ॥
ଯସ୍ତୁ ବିଜ୍ଞାନବାନ୍ ଭବତି ସମନସ୍କଃ ସଦା ଶୁଚିଃ ।
ସ ତୁ ତତ୍ ପଦମାପ୍ନୋତି ଯସ୍ମାଦ୍ଭୂୟୋ ନ ଜାୟତେ ॥

ବିଜ୍ଞାନ-ସାରଥିର୍ଯସ୍ତୁ ମନଃ ପ୍ରଗ୍ରହବାନ୍ନରଃ ।
ସୋଽଧ୍ୱନଃ ପାରମାପ୍ନୋତି ତଦ୍‌ବିଷ୍ଣୋଃ ପରମଂ ପଦମ୍ ॥

କଠ—୧-୩-୩-୯ ॥

ଯମ କହିଲେ, ହେ ନଚିକେତଃ ! ଶରୀରକୁ ରଥ, ଆତ୍ମାକୁ ରଥୀ, ବୁଦ୍ଧିକୁ ସାରଥି ଓ ମନକୁ ଅଶ୍ୱ ବନ୍ଧନର ରଜ୍ଜୁ (ଲଗାମ) ସ୍ୱରୂପ ଜାଣିବ । କାରଣ, ରଥ ଯେପରି ଅଶ୍ୱଦ୍ୱାରା ଆକର୍ଷିତ ହୁଏ, ଏହି ଶରୀର ମଧ୍ୟ ଅଶ୍ୱସ୍ଥାନୀୟ ଇନ୍ଦ୍ରିୟମାନଙ୍କଦ୍ୱାରା ସର୍ବଦା ଆକର୍ଷିତ ହେଉଅଛି । ଅଧ୍ୟବସାୟାତ୍ମିକା ବୁଦ୍ଧିକୁ ସାରଥିସ୍ୱରୂପ ଜାଣିବ, କାରଣ ଏହି ଶରୀର ସମ୍ବନ୍ଧରେ ବୁଦ୍ଧି କେବଳ ପ୍ରଧାନ ନେତ୍ରୀ । ଅନ୍ୟ ସଂକଳ୍ପ-ବିକଳ୍ପାତ୍ମକ ମନକୁ ପ୍ରଗ୍ରହ ବା ରଜ୍ଜୁସ୍ଥାନୀୟ ଜାଣିବ । କାରଣ, ଅଶ୍ୱଗଣ ଯେପରି ରଜ୍ଜୁଦ୍ୱାରା ନିଗୃହୀତ ହୋଇ ସ୍ୱ ସ୍ୱ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି, ଶ୍ରୋତ୍ରାଦି ଇନ୍ଦ୍ରିୟଗଣ ମଧ୍ୟ ସେହିପରି ମନଦ୍ୱାରା ନିଗୃହୀତ ହୋଇ ପ୍ରବୃତ୍ତ ହୁଅନ୍ତି । ଯେଉଁମାନେ ଶରୀରକୁ ରଥ କଳ୍ପନା କରିବାକୁ ଇଚ୍ଛୁକ, ସେମାନେ ଇନ୍ଦ୍ରିୟମାନଙ୍କୁ ଅଶ୍ୱରୂପରେ କଳ୍ପନା କରନ୍ତି । କାରଣ, ଅଶ୍ୱ ଯେପରି ରଥକୁ ଆକର୍ଷଣ କରେ, ସେହିପରି ଇନ୍ଦ୍ରିୟମାନେ ମଧ୍ୟ ଶରୀରକୁ ଆକର୍ଷଣ କରନ୍ତି । ଏହି ଇନ୍ଦ୍ରିୟରୂପ ଅଶ୍ୱମାନଙ୍କର ରୂପ-ରସାଦି ବିଷୟ ପନ୍ଥାସ୍ଥାନୀୟ । ଅଶ୍ୱ ଯେପରି ପଥରେ ଗତି କରେ, ଇନ୍ଦ୍ରିୟମାନେ ବିଷୟ-ପଥରେ (ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ-ସ୍ୱରୂପ ପଞ୍ଚ ବିଷୟପଥରେ) ସେହିପରି ସର୍ବଦା ବିଚରଣ କରନ୍ତି । ଯେଉଁମାନେ ବିବେକୀ, ସେମାନେ ଶରୀର, ଇନ୍ଦ୍ରିୟ ଏବଂ ମନସଂଯୁକ୍ତ ଆତ୍ମାକୁ ଭୋକ୍ତା; ଅର୍ଥାତ୍ ସଂସାରୀ ବୋଲି କହନ୍ତି । କାରଣ, କେବଳ ପରମାତ୍ମାଙ୍କର ଭୋକ୍ତୃତ୍ୱ ନାହିଁ । ଯେଉଁ ସମୟରେ ଆତ୍ମା ବୁଦ୍ଧ୍ୟାଦି ଉପାଧିବିଶିଷ୍ଟ ହୁଏ, ସେ ସମୟରେ ଭୋକ୍ତା ବୋଲି କଥିତ ହୁଏ । ଏତଦ୍‌ବ୍ୟତୀତ ଆତ୍ମାର ଭୋକ୍ତୃତ୍ୱ ନାହିଁ । ବୁଦ୍ଧ୍ୟାଖ୍ୟ ସାରଥି ଯଦି ଅନିପୁଣ ବା ପ୍ରବୃତ୍ତି-ନିବୃତ୍ତି ବିଷୟରେ ଅବିବେକୀ ହୁଏ ଏବଂ ପ୍ରଗ୍ରହସ୍ଥାନୀୟ ମନ ଯଦି ସର୍ବଦା ଅପ୍ରଗୃହୀତ ଉଦ୍ଦେ ବା ଅସମାହିତ ହୁଏ, ତେବେ ସେହି ଅକୁଶଳ ବୁଦ୍ଧି-ସାରଥିର ଇନ୍ଦ୍ରିୟରୂପୀ ଅଶ୍ୱମାନେ ସାରଥିର ଦୁଷ୍ଟ ଅଶ୍ୱଭଳି ଅବଶ୍ୟ ହୁଅନ୍ତି; କିନ୍ତୁ ମନ ଯାହାର ପ୍ରଗୃହୀତ, ଅର୍ଥାତ୍ ସମାହିତ, ସେହି କୁଶଳବୁଦ୍ଧି-ସାରଥିର ଇନ୍ଦ୍ରିୟରୂପୀ ଅଶ୍ୱଗଣ ସାରଥିର ସାଧୁ ଅଶ୍ୱପରି ବଶୀଭୂତ ହୁଅନ୍ତି । ଯେଉଁ ଆତ୍ମରଥୀର ବୁଦ୍ଧିରୂପ ସାରଥି ଅବିବେକୀ, ମନରୂପ ପ୍ରଗ୍ରହ ଅଗୃହୀତ, ଅର୍ଥାତ୍ ଅସମାହିତ ଏବଂ ସର୍ବଦା ଅଶୁଚିଭାବ, ସେହି ରଥୀ ପୂର୍ବୋକ୍ତ ଅକ୍ଷର-ବ୍ରହ୍ମପଦ ପ୍ରାପ୍ତ ହୋଇ ପାରେ ନାହିଁ; ପରନ୍ତୁ ଜନ୍ମମୃତ୍ୟୁସଂକୁଳ ଏହି ସଂସାରରେ ସେ ପରିଭ୍ରମଣ କରୁଥାଏ । ଯେଉଁ ଆତ୍ମା-ରଥୀ ବିଜ୍ଞାନବାନ୍, ବୁଦ୍ଧିରୂପ ସାରଥିସମ୍ପନ୍ନ ଏବଂ ମନସ୍କ, ଅର୍ଥାତ୍ ପ୍ରଗୃହୀତମନ ଓ ସର୍ବଦା ଶୌଚଭାବଯୁକ୍ତ, ସେହି ରଥୀ ପୂର୍ବୋକ୍ତ ଅକ୍ଷର-ବ୍ରହ୍ମପଦ ପ୍ରାପ୍ତ ହୋଇପାରନ୍ତି । ଏହି ପଦପ୍ରାପ୍ତ ହୋଇପାରିଲେ ଆଉ ସଂସାରରେ ଜନ୍ମଗ୍ରହଣ କରିବାକୁ ହୁଏ ନାହିଁ । ଯେଉଁ ବିଦ୍ୱାନ୍ ବ୍ୟକ୍ତି ତପସ୍ୱୀ ଓ ବିବେକସମ୍ପନ୍ନ, ବୁଦ୍ଧି-ସାରଥିଯୁକ୍ତ ଏବଂ ମନ ଯାହାର ପ୍ରଗ୍ରହ-

ସ୍ଥାନୀୟ, ଅର୍ଥାତ୍ ଯେ ସମାହିତମନା, ସେହି ବ୍ୟକ୍ତି ସଂସାର ଗହ୍ୱର ପରପାରରେ ଗମନ କରିପାରନ୍ତି; ଅର୍ଥାତ୍ ସମସ୍ତ ସଂସାର-ବନ୍ଧନରୁ ବିମୁକ୍ତ ହୁଅନ୍ତି ଏବଂ ସର୍ବବ୍ୟାପକ ପରମାତ୍ମାଙ୍କର ପରମପଦ ପ୍ରାପ୍ତ ହୋଇପାରନ୍ତି ।

ଇନ୍ଦ୍ରିୟେଭ୍ୟଃ ପରା ହ୍ୟର୍ଥା ଅର୍ଥେଭ୍ୟଶ୍ଚ ପରଂ ମନଃ ।
ମନସସ୍ତୁ ପରା ବୁଦ୍ଧିର୍ବୁଦ୍ଧେରାତ୍ମା ମହାନ୍ ପରଃ ॥
ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ ପୁରୁଷଃ ପରଃ ।
ପୁରୁଷାନ୍ନପରଂ କିଞ୍ଚିତ୍ ସା କାଷ୍ଠା ସାପରା ଗତିଃ ॥
ଏଷ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନ ପ୍ରକାଶତେ ।
ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ ॥
ଯଚ୍ଛେଦ୍ ବାଙ୍ମନସୀ ପ୍ରାଜ୍ଞସ୍ତଦ୍ ଯଚ୍ଛେଦ୍ଜ୍ଞାନ ଆତ୍ମନି ।
ଜ୍ଞାନମାତ୍ମନି ମହତି ତଦ୍ୟଚ୍ଛେଚ୍ଛାନ୍ତ ଆତ୍ମନି ॥

କଠ—୧।୬୩।୧୦-୧ ।

ଇନ୍ଦ୍ରିୟମାନେ ସ୍ଥୂଳପଦାର୍ଥ; ଏହି ସ୍ଥୂଳ ଇନ୍ଦ୍ରିୟଠାରୁ ରୂପାଦିସୂକ୍ଷ୍ମ ଓ ଶ୍ରେଷ୍ଠ; ରୂପାଦିଠାରୁ ମନ ଶ୍ରେଷ୍ଠ, ମନଠାରୁ ଅଧ୍ୟବସାୟାତ୍ମିକା ବୁଦ୍ଧି ଶ୍ରେଷ୍ଠ । ବୁଦ୍ଧିଠାରୁ ଅବ୍ୟକ୍ତ, ଅବ୍ୟକ୍ତଠାରୁ ପ୍ରଥମ ଉତ୍ପନ୍ନ ହିରଣ୍ୟଗର୍ଭସମ୍ବନ୍ଧୀ ତତ୍ତ୍ୱହିଁ ଶ୍ରେଷ୍ଠ । ଏହି ମହାତତ୍ତ୍ୱଠାରୁ ଅବ୍ୟକ୍ତ—ଅର୍ଥାତ୍ ସମସ୍ତକାର୍ଯ୍ୟ-କାରଣ ଶକ୍ତିସମୂହ ରୂପ ପ୍ରଧାନ ଶ୍ରେଷ୍ଠ ଏବଂ ଅବ୍ୟକ୍ତଠାରୁ ପରମପୁରୁଷ ପରମାତ୍ମା ଶ୍ରେଷ୍ଠ । ଏହି ପରମାତ୍ମାଙ୍କଠାରୁ ଅନ୍ୟ ଶ୍ରେଷ୍ଠ ବସ୍ତୁ ଆଉ କେହି ନାହିଁ । ସେହି କେବଳ ସମସ୍ତଙ୍କର ପର୍ଯ୍ୟବସାନସ୍ୱରୂପ ଏବଂ ସମସ୍ତ ଗତିଶୀଳ ପଦାର୍ଥର ଗନ୍ତବ୍ୟସ୍ଥାନ, ଅର୍ଥାତ୍ ସୀମା; ତାହାଙ୍କର ଆଉ ଅବଧି ନାହିଁ । ସେହି ପରମାତ୍ମା ପରମପୁରୁଷ ବ୍ରହ୍ମାଦିସ୍ତମ୍ଭ ପର୍ଯ୍ୟନ୍ତ ସକଳ ଭୂତରେ ବିରାଜମାନ ରହି ମଧ୍ୟ ଅବିଦ୍ୟାଦ୍ୱାରା ସମାଚ୍ଛନ୍ନ ହେତୁରୁ ପ୍ରକାଶ ପାଆନ୍ତି ନାହିଁ; କିନ୍ତୁ ଯେଉଁମାନେ ସୂକ୍ଷ୍ମଦର୍ଶୀ ସେମାନେ ଏକାଗ୍ରତାସମ୍ପନ୍ନ ସଂସ୍କାରିତ ବୁଦ୍ଧିଦ୍ୱାରା ଆତ୍ମଦର୍ଶନ ଲାଭ କରିପାରନ୍ତି ।

ଆତ୍ମା-ପ୍ରାପ୍ତିର ଉପାୟ ଏହିପରି—ବିବେକୀ ବ୍ୟକ୍ତି ଇନ୍ଦ୍ରିୟମାନଙ୍କୁ ମନରେ, ମନକୁ ଜ୍ଞାନପଦବାଚ୍ୟ ବୁଦ୍ଧିରେ, ବୁଦ୍ଧିକୁ ଜୀବାତ୍ମାରେ ଏବଂ ଜୀବାତ୍ମାକୁ ସର୍ବାନ୍ତରରେ ବର୍ତ୍ତମାନ ସର୍ବବୁଦ୍ଧି ପ୍ରତ୍ୟୟର ସାକ୍ଷୀସ୍ୱରୂପ ନିର୍ବିକାର ପରମାତ୍ମାଙ୍କଠାରେ ବିଲୀନ କରିବେ ।

୦ — କେବଳ ଏକବ୍ରହ୍ମଙ୍କ ସ୍ମରଣ-ଭଜନ ରୂପ ବ୍ରହ୍ମନିଷ୍ଠ ଅଭ୍ୟାସଦ୍ୱାରା ସେହି ପରଂବ୍ରହ୍ମତତ୍ତ୍ୱ ସମ୍ୟକ ଅବଧାରଣ କରାଯାଏ ।

ଯଦ୍ ଯେନ କ୍ରିୟତେ କୃତ୍ୟଂ ଯେନ ଯେନ ଯଦା ଯଦା ।
ବିନାଭ୍ୟାସେନ ତନ୍ନେହ ସିଦ୍ଧିମେତି କଦାଚନ ॥
ତଚ୍ଚିନ୍ତନଂ ତତ୍‌କଥନମନ୍ୟୋନ୍ୟଂ ତତ୍‌ପ୍ରବୋଧନମ୍ ।
ଏତଦେକପରତ୍ୱଞ୍ଚ ତଦଭ୍ୟାସଂ ବିଦୁର୍ବୁଧାଃ ॥

ଯୋଗବାଶିଷ୍ଠ ଉ ୨୨।୨୩—୨୪ ।

ଯେ ଯାହାକିଛି କରେ, ତାହା ଅଭ୍ୟାସ ବ୍ୟତୀତ ସୁସମ୍ପନ୍ନ ହୁଏ ନାହିଁ । ସେଥିନିମନ୍ତେ ବୁଧଗଣ କହିଅଛନ୍ତି ଯେ, ଅନୁକ୍ଷଣ ବ୍ରହ୍ମ ଚିନ୍ତନ, ପରସ୍ପର ବ୍ରହ୍ମକଥନ, ପରସ୍ପର ବ୍ରହ୍ମତତ୍ତ୍ୱ ବୁଝାଇବା ଏବଂ ସର୍ବଦା ବ୍ରହ୍ମନିଷ୍ଠ ହୋଇ ରହିବା ନାମ ବ୍ରହ୍ମାଭ୍ୟାସ ଏବଂ ଏହିପରି ବ୍ରହ୍ମାଭ୍ୟାସ ତତ୍ତ୍ୱାବବୋଧର କାରଣ ।

ପୁନଶ୍ଚ—

ବୁଦ୍ଧିପୂର୍ବଂ ବିଗୃହ୍ୟେଦଂ ଯଥା ବସ୍ତ୍ୱବଲୋକନାତ୍ ।
ସତ୍ତାସାମାନ୍ୟବୋଧୋ ଯଃ ସଃ ମୋକ୍ଷଶ୍ଚେଦନନ୍ତକଃ ॥

ଯୋଗବାଶିଷ୍ଠ — ନି: ପୂ: ୧୦।୧୩ ।

ବାସନା ବିନାଶ ସହିତ ମନ ବିନାଶ ବ୍ୟତୀତ ମୋକ୍ଷଲାଭ ହୁଏ ନାହିଁ । ପରନ୍ତୁ ସେଥିରେ ବିହିତ ଅନୁଷ୍ଠାନ ବ୍ୟତୀତ ସୁସମ୍ପନ୍ନ ହେବାର ସମ୍ଭାବନା ନାହିଁ । ଜ୍ଞାନପୂର୍ବକ ବିଗ୍ରହଣା ପରେ ଯେ ତତ୍ତ୍ୱବୋଧ ଉଦ୍ଭବ ହୁଏ, ସେହି ତତ୍ତ୍ୱବୋଧ ସତ୍ତ୍ୱ-ସାମାନ୍ୟାବସ୍ଥାର ଅପର ନାମ ମୋକ୍ଷ—ତାହାର ସଙ୍କ୍ଷିପ୍ତ ଭେଦ । ସେହି କେବଳ ଅଭୟ, ଅକ୍ଷୟ, ଅଦ୍ୱୟ ଓ ଅବିନାଶୀ ବ୍ରହ୍ମ । ଏ ସମ୍ବନ୍ଧରେ ସକଳ ଉପନିଷଦ୍‌ବାଣୀ ମଧ୍ୟ ଏହି ପ୍ରକାର—

ଅହଂ ମମେତି ଯୋଽଭିବୋ ଦେହାକ୍ଷାଦାବନାତ୍ମନି ।
ଅଧ୍ୟାସୋଽୟଂ ନିରସ୍ତବ୍ୟୋ ବିଦୁଷା ବ୍ରହ୍ମନିଷ୍ଠୟା ॥
ଜ୍ଞାତ୍ୱା ସ୍ୱଂ ପ୍ରତ୍ୟଗାତ୍ମାନଂ ବୁଦ୍ଧିତଦ୍‌ବୃତ୍ତିସାକ୍ଷିଣମ୍ ।
ସୋଽହମିତ୍ୟେବ ତଦ୍‌ବୃତ୍ତ୍ୟା ସ୍ୱାନ୍ୟତ୍ରାତ୍ମମତିଂ ତ୍ୟଜେତ୍ ॥

ଅଧ୍ୟାତ୍ମୋପନିଷତ୍ ୧—୨ ॥

ଆତ୍ମାର ଭିନ୍ନ ଦେହ ଓ ଇନ୍ଦ୍ରିୟାଦିରେ ଯେ ଅହଂ (ମୋର ଦେହ, ମୁଁ ସୁନ୍ଦର, ମୁଁ ଅନ୍ଧ, ମୁଁ ବଧିର) ଓ ମମ (ମୋର ଶରୀର) ଇତ୍ୟାଦି ଜ୍ଞାନ, ତାହାହିଁ ଅଧ୍ୟାସ । ଏହି ଅଧ୍ୟାସକୁ ଶ୍ରବଣ-ମନନ-ଜନିତ ଆତ୍ମଜ୍ଞାନସମ୍ପନ୍ନ ବିଦ୍ୱାନ ବ୍ୟକ୍ତିଗଣ ବ୍ରହ୍ମନିଷ୍ଠା, ଅର୍ଥାତ୍ ନିଦିଧ୍ୟାସନଦ୍ୱାରା ଦୂରୀଭୂତ କରିବେ; ବୁଦ୍ଧି ଓ ବୁଦ୍ଧିବୃତ୍ତିର ସାକ୍ଷୀ ସ୍ୱୀୟ ପ୍ରତ୍ୟକ୍ ଆତ୍ମାକୁ ବ୍ରହ୍ମାକାର ବୃତ୍ତିଦ୍ୱାରା ସେହି ପରମାତ୍ମା-ସ୍ୱରୂପରେ ଏକୀଭୂତ ହୋଇ ଆତ୍ମାଭିନ୍ନ ଦେହାଦିରେ ଆତ୍ମବୁଦ୍ଧି ପରିତ୍ୟାଗ କରିବେ ।

**ଚିତ୍ତୈକାଗ୍ର୍ୟାଦ୍ ଯତୋ ଜ୍ଞାନମୁକ୍ତଂ ସମୁପଜାୟତେ ।**
**ତତ୍ ସାଧନମଥୋ ଧ୍ୟାନଂ ଯଥାବଦୁପଦିଶ୍ୟତେ ॥**
**ବିନାପ୍ୟବିକୃତଂ କୃତ୍ସ୍ନଂ ସମ୍ଭବତ୍ୟବ୍ୟୟକ୍ରମାତ୍ ।**
**ଯଶୋଽରିଷ୍ଟଂ ଚ ଚିନ୍ମାତ୍ରଂ ଚିଦାନନ୍ଦଂ ବିଚିନ୍ତୟ ॥**

ମୁଣ୍ଡକୋପନିଷତ୍ ୨।୪୭-୪୮ ।

ଅନନ୍ତର ଚିତ୍ତୈକାଗ୍ରତା ହେଲେ ତତ୍ତ୍ୱଜ୍ଞାନ ଜନ୍ମେ ଏବଂ ତତ୍ତ୍ୱଜ୍ଞାନ ହେଲେ ମୁକ୍ତି ମିଳେ । କିପରି ଚିତ୍ତର ଏକାଗ୍ରତା ଲାଭହେବ, ତାହାର ଉପାୟ ଯଥାବିଧି ଗୁରୁଙ୍କ ନିକଟରୁ ଗ୍ରହଣ କରିବେ । (ଯେ ସମସ୍ତ ଉପଦେଶବାକ୍ୟ ଏହି ଯୋଗରେ ବର୍ଣ୍ଣିତ ହୋଇଅଛି) ତାହାର ଅନୁଶୀଳନରେ ସମସ୍ତ ସଂସାର ପ୍ରତି ଅନାସକ୍ତ ହୋଇ ପୁନର୍ଜନ୍ମ ବିଷୟରେ ଅନିଚ୍ଛୁକ ହୁଅ ଓ ଯଶ ଅଭିଳାଷ ଏବଂ ଅରିଷ୍ଟକୁ ପରିତ୍ୟାଗ କରି କେବଳ ଚିଦାନନ୍ଦସ୍ୱରୂପୀ ବ୍ରହ୍ମଙ୍କୁ ଚିନ୍ତା କର । ପୁନଶ୍ଚ—

**ସ୍ୱପୌରୁଷୈକସାଧ୍ୟେନ ସ୍ୱେପ୍ସିତତ୍ୟାଗରୂପିଣା ।**
**ମନଃ ପ୍ରଶମମାତ୍ରେଣ ବିନା ନାସ୍ତି ଶୁଭଗତିଃ ॥**
**ଅସଙ୍କଳ୍ପନଶସ୍ତ୍ରେଣ ଛିନ୍ନଂ ଚିତ୍ତମିଦଂ ଯଦା ।**
**ସର୍ବଂ ସର୍ବଗତଂ ଶାନ୍ତଂ ବ୍ରହ୍ମ ସମ୍ପଦ୍ୟତେ ତଦା ॥**
**ଭବଭାବନୟା ମୁକ୍ତୋ ମୁକ୍ତଃ ପରମୟା ଧିୟା ।**
**ଧାରୟାତ୍ମାନମବ୍ୟଗ୍ରୋ ଗ୍ରସ୍ତଚିତ୍ତଂ ଚିତଃ ପଦମ୍ ॥**

ମହୋପନିଷଦ୍-୪।୯୦-୯୨ ॥

ଏକମାତ୍ର ସ୍ୱପୁରୁଷକାରସାଧ୍ୟ ସ୍ୱାଭିମତ-ତ୍ୟାଗରୂପ ମନୋଜୟ ବ୍ୟତୀତ ଅନ୍ୟ ଶୁଭଗତି ନାହିଁ । ଯେତେବେଳେ ଅସଂକଳ୍ପ-ସ୍ୱରୂପଶସ୍ତ୍ରଦ୍ୱାରା ଏହି ମନ ଛିନ୍ନ ହୁଏ; ସେତେବେଳେ ହିଁ ଲୋକ ବ୍ୟାପକ ଓ ଶାନ୍ତ ବ୍ରହ୍ମସ୍ୱରୂପ ପ୍ରାପ୍ତ ହୁଅନ୍ତି । ତୁମ୍ଭେ ଅତ୍ୟନ୍ତ

ସଂସାରଭାବନା ଓ ସଂସାରବୁଦ୍ଧିରୁ ବିମୁକ୍ତ ହୁଏ । ବିକ୍ଷେପରହିତ ହୋଇ ଚିତ୍ତସମ୍ପର୍କବିହୀନ ଚିତ୍ତ ସ୍ୱରୂପ ପରମାତ୍ମାଙ୍କୁ ହୃଦୟରେ ଧାରଣ କର ।

ଗୀତାରେ ମଧ୍ୟ ଏହି ସ୍ଥିତପ୍ରଜ୍ଞ ସମ୍ବନ୍ଧରେ କୁହାଯାଇଅଛି—

**ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ ।**
**ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ ।।**
**ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍‌ପରଃ ।**
**ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ।।**

ଗୀତା—୨।୬୦-୬୧ ।।

[ ଇନ୍ଦ୍ରିୟ ସଂଯମ ବ୍ୟତିରେକେ ସ୍ଥିତପ୍ରଜ୍ଞ ହେବା ଅସମ୍ଭବ, ଅତଏବ ସାଧକାବସ୍ଥାରେ ଏ ବିଷୟରେ ମହାନ୍ ପ୍ରଯତ୍ନ କର୍ତ୍ତବ୍ୟ; କାରଣ] ପ୍ରମାଥୀ ଇନ୍ଦ୍ରିୟମାନେ ମୋକ୍ଷ-ଯତ୍ନଶୀଳ ବିବେକୀପୁରୁଷର ମନକୁ ମଧ୍ୟ ବଳପୂର୍ବକ ହରଣ କରନ୍ତି । ଯୋଗୀ ସେହି ଇନ୍ଦ୍ରିୟମାନଙ୍କୁ ସଂଯତ କରି ପରମାତ୍ମ ପରାୟଣ ହୋଇ ଅବସ୍ଥାନ କରନ୍ତି । ଯେ ହେତୁରୁ ଇନ୍ଦ୍ରିୟଗଣ ଯାହାର ବଶୀଭୂତ, ତାହାର ପ୍ରଜ୍ଞା ପ୍ରତିଷ୍ଠିତ ହୁଏ ।

ଏହାପରେ ଚିତ୍ତସଂଯମର ଉପସଂହାରରେ କହୁଅଛନ୍ତି—

**ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି ।**
**ସ୍ଥିତ୍ୱାସ୍ୟାମନ୍ତକାଳେଽପି ବ୍ରହ୍ମନିର୍ବାଣମୃଚ୍ଛତି ।।**

ଗୀତା—୨।୭୨ ।।

ହେ ପାର୍ଥ ! ବ୍ରହ୍ମଜ୍ଞାନନିଷ୍ଠା ଏହିପ୍ରକାର, ଏହା ପ୍ରାପ୍ତ ହେଲେ ସଂସାରରେ ଆଉ ମୁଗ୍‌ଧ ହେବାକୁ ହୁଏ ନାହିଁ; ଯେ ଅନ୍ତିମ ସମୟରେ ମଧ୍ୟ ଏହିପ୍ରକାର ବ୍ରହ୍ମଜ୍ଞାନନିଷ୍ଠାରେ ଅବସ୍ଥାନ କରନ୍ତି, ସେ ମଧ୍ୟ ପରଂବ୍ରହ୍ମଙ୍କଠାରେ ଲୟପ୍ରାପ୍ତ ହୁଅନ୍ତି ।

ଏହି ଚିତ୍ତସାଧନ ବିଷୟରେ ଗୌଡ଼ପାଦ ଆଚାର୍ଯ୍ୟ ଉପଦେଶ ଦେଇଅଛନ୍ତି—

**ନିବୃତ୍ତସ୍ୟାପ୍ରବୃତ୍ତସ୍ୟାନିଶ୍ଚଳା ହି ତଦା ସ୍ଥିତିଃ ।**
**ବିଷୟଃ ସ ହି ବୁଦ୍ଧାନାଂ ତତ୍‌ସ୍ୱାମ୍ୟମଜମଦ୍ୱୟମ୍ ।।**
**ଅଜମନିଦ୍ରମସ୍ୱପ୍ନଂ ପ୍ରଭାତଂ ଭବତି ସ୍ୱୟମ୍ ।**
**ସକୃଦ୍ ବିଭାତୋ ହ୍ୟେବୈଷ ଧର୍ମୋ ଧାତୁଃ ସ୍ୱଭାବତଃ ।।**

ମାଣ୍ଡୁକ୍ୟ—ଗୌଡ଼ପାଦକାରିକା-୮୦-୮୧ ।।

ଯେଉଁମାନେ ସଂସାରଦ୍ୱୈତବୁଦ୍ଧି ନିବୃତ୍ତି କରି ବିଷୟରୁ ନିବୃତ୍ତ ହୋଇ ଅଛନ୍ତି ଏବଂ ସମସ୍ତଙ୍କୁ ଅସାର ଜାଣି ବିଷୟାନ୍ତରରେ ପ୍ରବେଶ କରନ୍ତି ନାହିଁ, ତାହାଙ୍କର ଚିତ୍ତ ନିଶ୍ଚଳଭାବରେ ଅବସ୍ଥାନ କରେ । ଏହିପରି ଚିତ୍ତର ଅବସ୍ଥାନକୁ ବ୍ରହ୍ମରୂପରେ ଅବସ୍ଥିତି କରିଯାଏ । ସେ ସମୟରେ ଚିତ୍ତରେ କେବଳ ବ୍ରହ୍ମବିଜ୍ଞାନରୂପକ ରସର ଆସ୍ୱାଦନ ହେଉଥାଏ । ତାହାର ଚିତ୍ତ କୌଣସିପ୍ରକାର ଅନ୍ୟଶ ସମାସକ୍ତ ହୁଏ ନାହିଁ । ସର୍ବପ୍ରକାର କଳ୍ପନା ମଧ୍ୟ ତିରୋହିତ ହୋଇଯାଏ । ଏକମାତ୍ର ବ୍ରହ୍ମ କେବଳ ଚିତ୍ତର ବିଷୟ ହୋଇ ରହନ୍ତି । ଏହାହିଁ ଚିତ୍ତର ସାମ୍ୟାବସ୍ଥା । ଯେ ପରମାର୍ଥଦର୍ଶୀ ମାନଙ୍କର ଚିତ୍ତର ବିଷୟ, ସେହି ପରମାତ୍ମାଙ୍କର ଜନ୍ମ ନାହିଁ, ନିଦ୍ରା ନାହିଁ ଏବଂ ସ୍ୱପ୍ନ ମଧ୍ୟ ନାହିଁ । ସେ ସ୍ୱୟଂ ଜ୍ୟୋତିସ୍ୱରୂପ । ଅତଏବ ସେ ସ୍ୱୟଂ ପ୍ରକାଶରୂପରେ ଖ୍ୟାତ । ତାହାଙ୍କର ପ୍ରକାଶ ନିମନ୍ତେ ସୂର୍ଯ୍ୟାଦି ପ୍ରକାଶର ଅପେକ୍ଷା ରହେ ନାହିଁ । ସେ ସର୍ବଦା ସ୍ୱୀୟଜ୍ୟୋତିପ୍ରଭାବରେ ପ୍ରକାଶ ପାଉଅଛନ୍ତି । ଏହିପରି ଲକ୍ଷଣାକ୍ରାନ୍ତ ଆତ୍ମା କେବଳ ତତ୍ତ୍ୱଦର୍ଶୀ ବ୍ୟକ୍ତିମାନଙ୍କର ଚିତ୍ତର ଏକମାତ୍ର ବିଷୟ ।

୦—ଏହିପରି ପରଂବ୍ରହ୍ମଙ୍କଠାରେ ଆତ୍ମସମର୍ପଣରୂପକ ଧ୍ୟାନ—ଧାରଣାଦିରେ ଅନୁପମ ସୁଖ ଲାଭହୁଏ—

ସମାଧିନିର୍ଧୌତମଳସ୍ୟ ଚେତସୋ ନିବେଶିତସ୍ୟାତ୍ମନି
ଯତ୍ ସୁଖଂ ଭବେତ୍ ।
ନ ଶକ୍ୟତେ ବର୍ଣ୍ଣୟିତୁଂ ଗିରା ତଦା ସ୍ୱୟଂ ତଦନ୍ତଃକରଣେନ ଗୃହ୍ୟତେ ॥
ମୈତ୍ରୀ ଉପ:—୬।୩୪ ॥

ଧ୍ୟାନଦ୍ୱାରା ମଳିନତା ଦୂର ହେଲେ ଚିତ୍ତକୁ ପରମାତ୍ମାଙ୍କଠାରେ ନିବେଶିତ କରି ଯେଉଁ ସୁଖଲାଭ ହୁଏ, ତାହା ବାକ୍ୟଦ୍ୱାରା ପ୍ରକାଶ କରିଯାଇ ପାରିବ ନାହିଁ । ତାହା ଆପଣା ଅନ୍ତଃକରଣଦ୍ୱାରା କେବଳ ଅନୁଭୂତ ହୁଏ, ଅର୍ଥାତ୍ ଧ୍ୟାନ କରି କେବଳ ନିଜେ ସେହି ଅନୁପମସୁଖ ଅନୁଭବ କରିପାରେ; କିନ୍ତୁ ତାହା ଅନ୍ୟକୁ କହି ପାରେ ନାହିଁ ।

ଏହି ମର୍ମରେ ଗୀତାରେ ମଧ୍ୟ ନିର୍ଦ୍ଦେଶ ଅଛି—

ସୁଖମାତ୍ୟନ୍ତିକଂ ଯତ୍ତଦ୍‌ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍ ।
ବେତ୍ତି ଯତ୍ର ନ ଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ ॥
ଗୀତା—୬।୨୧ ॥

ଯେଉଁ ଅବସ୍ଥାରେ ରହିଲେ ଯୋଗୀ ଆତ୍ମଜ୍ଞାନରୁ ବିଚଳିତ ହୁଅନ୍ତି ନାହିଁ, ଯାହା ଇନ୍ଦ୍ରିୟମାନଙ୍କର ଅଗତ ଓ କେବଳ ଅନୁଭୂତିମାତ୍ରଗ୍ରାହ୍ୟ, ତାହା କେବଳ ଅନୁପମ ସୁଖ ଅଟେ । ବଚନରେ ତାହା କହି ହୁଏ ନାହିଁ ।

ଠ—ପରଂବ୍ରହ୍ମଙ୍କ ମାହାତ୍ମ୍ୟରୁ ଚିତ୍ତ-ସଂଯମର ମାହାତ୍ମ୍ୟ ।

ଉପର୍ଯ୍ୟୁକ୍ତ ଶ୍ରୁତି, ସ୍ମୃତି, ଯୁକ୍ତି ଓ ଉପଦେଶ ଅନୁସାରେ ଚିତ୍ତକୁ ସଂଯତ କରି ସେହି ଏକ ଅଦ୍ୱିତୀୟ ପରଂବ୍ରହ୍ମ ପରମାତ୍ମାଙ୍କଠାରେ ଚିତ୍ତର ଏକାଗ୍ରତା ଲାଭ କରିପାରିଲେ ସାଂସାରିକ ସକଳ କଳ୍ପନା ସମୂଳ ଦୂରୀଭୂତ ହୋଇ ଅଭୟ ପରମପଦ ପ୍ରାପ୍ତ ହୁଏ ।

ସମାହିତାୟାଂ ସତି ଚିତ୍ତବୃତ୍ତୌ, ପରାତ୍ମନି ବ୍ରହ୍ମଣି ନିର୍ବିକଳ୍ପେ ।
ନ ଦୃଶ୍ୟତେ କଶ୍ଚିଦୟଂ ବିକଳ୍ପଃ, ପ୍ରକଳ୍ପମାତ୍ରଃ ପରିଶିଷ୍ୟତେ ତତଃ ॥
ବିବେକଚୂଡ଼ାମଣି—୪୦୦ ॥

ନିର୍ବିକଳ୍ପକ ପରମାତ୍ମସ୍ୱରୂପ ବ୍ରହ୍ମଙ୍କଠାରେ ଚିତ୍ତବୃତ୍ତି ସମାହିତ ହେଲେ ଅନ୍ୟ କୌଣସିରୂପ ବିକଳ୍ପ ପରିଲକ୍ଷିତ ହୁଏ ନାହିଁ; ସେ ସମୟରେ ସକଳ ସାଂସାରିକ ବିଷୟ କଳ୍ପନାମାତ୍ରରେ ପରିଣତ ହୁଏ । ପୁନଶ୍ଚ—

ମମାହମିତ୍ୟେତଦପୋହ୍ୟ ସର୍ବତୋ
ବିମୁକ୍ତଦେହଂ ପଦମମ୍ବରୋପମମ୍ ।
ସ ଦୃଷ୍ଟ୍ୱା ଶାସ୍ତ୍ରାନୁମିତିଭ୍ୟ ଈରିତଂ
ବିମୁଚ୍ୟତେଽସ୍ମିନ୍ ଯଦି କଶ୍ଚିତୋ ନରଃ ।
ଉପଦେଶସାହସ୍ରୀ—୧୫-୫୪ ॥

ସୁବିସ୍ତୃରିତ ଶାସ୍ତ୍ର ଏବଂ ଅନୁମାନଦ୍ୱାରା ସ୍ଥୂଳ ଓ ସୂକ୍ଷ୍ମ ଦେହଦ୍ୱୟ ସମ୍ବନ୍ଧରହିତ ଆକାଶ ତୁଲ୍ୟ ଯେଉଁ ବ୍ରହ୍ମ କଥିତ ହୋଇଅଛି, ତାହାଙ୍କଠାରେ ଯଦି ମନୁଷ୍ୟ ସର୍ବତୋ-ଭାବରେ 'ମମ' 'ଅହଂ' ଇତ୍ୟାଦି ଭାବ ପରିତ୍ୟାଗ କରି ନିଶ୍ଚିତମତି ହୁଅନ୍ତି, ତାହାହେଲେ ସେମାନେ ମୁକ୍ତ ହୁଅନ୍ତି । ଏ ବିଷୟରେ ପ୍ରାଣୀସମୂହଙ୍କୁ ଉପନିଷଦର ଉପଦେଶ—

ସମାସକ୍ତଂ ଯଥା ଚିତ୍ତଂ ଜନ୍ତୋର୍ବିଷୟଗୋଚରେ ।
ଯଦ୍ୟେବଂ ବ୍ରହ୍ମଣି ସ୍ୟାତ୍ତତ୍ କୋ ନ ମୁଚ୍ୟେତ ବନ୍ଧନାତ୍ ॥
ମୈତ୍ରୀଉପ—୬-୩୪ ଓ ॥

ପ୍ରାଣୀମାନଙ୍କର ଅନ୍ତଃକରଣ ଯେପରି ବିଷୟସମୂହରେ ସମ୍ୟକ୍ ରୂପରେ ଆସକ୍ତ ହୁଏ, ସେହିପରି ବ୍ରହ୍ମଙ୍କଠାରେ ଚିତ୍ତ ସମାସକ୍ତ ହେଲେ କେଉଁ ବ୍ୟକ୍ତି ବା ସଂସାରବନ୍ଧନରୁ ବିମୁକ୍ତ ନ ହେବ ? ଅର୍ଥାତ୍ ସମସ୍ତେ ମୁକ୍ତ ହୋଇପାରିବେ । ଆହୁରି ମଧ୍ୟ—

କୁଳଂ ପବିତ୍ରଂ ଜନନୀ କୃତାର୍ଥା ବସୁନ୍ଧରା ଭାଗ୍ୟବତୀ ଚ ତେନ ।
ଅପାର ସଂବିତ୍ ସୁଖସାଗରେଽସ୍ମିନ୍ ଲୀନଂ ପରେ ବ୍ରହ୍ମଣି
ଯସ୍ୟ ଚେତଃ ॥

ସ୍କନ୍ଦପୁରାଣ, ମହେଶ୍ୱର ଖଣ୍ଡ—୫୫-୧୪୦ ॥

ଜ୍ଞାନ ଓ ସୁଖର ଅପାର ସମୁଦ୍ର ପରଂବ୍ରହ୍ମଙ୍କଠାରେ ଯାହାର ଚିତ୍ତ ଲୀନ ହୁଏ, ଉକ୍ତ ପୁରୁଷର କୁଳ ପବିତ୍ର ହୁଏ, ତାହାର ମାତା କୃତାର୍ଥା ହୁଅନ୍ତି, ପୁନଶ୍ଚ ତାହାର ଜନ୍ମଭୂମି ମଧ୍ୟ ପୁଣ୍ୟବତୀ ହୁଏ ।

ପୁନଶ୍ଚ—

ସ୍ନାତଂ ତେନ ସମସ୍ତତୀର୍ଥସଲିଲେ ସର୍ବାଽପି ଦତ୍ତାବନୀ ।
ଯଜ୍ଞାନାଂ ଚ ସହସ୍ରମିଷ୍ଟମଖିଳା ଦେବାଶ୍ଚ ସଂପୂଜିତାଃ ॥
ସଂସାରାଶ୍ଚ ସମୁଦ୍ଧୃତାଃ ସ୍ୱପିତରସ୍ତ୍ରୈଲୋକ୍ୟପୂଜ୍ୟୋଽପ୍ୟସୌ ।
ଯସ୍ୟ ବ୍ରହ୍ମବିଚାରଣେ କ୍ଷଣମପି ସ୍ଥୈର୍ଯ୍ୟଂ ମନଃ ପ୍ରାପ୍ନୁୟାତ୍ ॥

ଜୀବନ୍ମୁକ୍ତ ବିବେକ—ଚତୁର୍ଥ ପ୍ର:—

ଯାହାଙ୍କର ମନ ବ୍ରହ୍ମ ବିଚାର କରୁ କରୁ କ୍ଷଣକାଳନିମନ୍ତେ ହେଲେ ମଧ୍ୟ ସ୍ଥିରତା ଲାଭ କରିଛି, ସେହି କେବଳ ସକଳ ପୁଣ୍ୟ-ତୀର୍ଥମାନଙ୍କରେ ସ୍ନାନ କରିଛନ୍ତି; ସେହି କେବଳ ସକଳ ଅବନୀ ଦାନ କରିଛନ୍ତି ଓ ସହସ୍ର ଯଜ୍ଞର ଅନୁଷ୍ଠାନ ସମାପ୍ତ କରିଛନ୍ତି; ସେହି କେବଳ ସକଳ ଦେବତାଙ୍କ ଅର୍ଚ୍ଚନା କରିଛନ୍ତି ଓ ନିଜ ପିତୃପୁରୁଷମାନଙ୍କୁ ସଂସାରରୁ ଉଦ୍ଧାର କରିଛନ୍ତି ଏବଂ ନିଜେ ତିନିଲୋକରେ ପୂଜ୍ୟ ହୋଇ ପାରିଛନ୍ତି ।

ଚିତ୍ତ ସଂଯମ ନିମନ୍ତେ ମହିମା-ଧର୍ମାଶ୍ରିତ ବ୍ରହ୍ମୋପାସକମାନଙ୍କ ପକ୍ଷରେ ଯେଉଁସବୁ ଦୃଢ଼ ନିୟମମାନ ରହିଅଛି, ତାହା ଯଥୋପଯୁକ୍ତଭାବରେ ଶ୍ରୁତିସ୍ମୃତିଶାସ୍ତ୍ରାନୁମୋଦିତ ବିଚାର ଅନୁସାରେ ଗୁରୁମହିମା ସ୍ୱାମୀଙ୍କ ଆଦେଶ-ଆନୁକୂଲ୍ୟରେ ସ୍ୱାନୁଭବ ସହିତ ଏହି ଅନୁପାଦରେ ବର୍ଣ୍ଣିତ ହେଲା ।

ଦ୍ୱିତୀୟପାଦସ୍ୟ ଚତୁର୍ଥାନୁପାଦଃ ସମ୍ପୂର୍ଣ୍ଣଃ ॥

ସର୍ବବେଦ-ବେଦାନ୍ତ-ସାରତତ୍ତ୍ୱଶିରୋମଣି
ଅଲେଖ ପରଂବ୍ରହ୍ମଦର୍ଶନମିତି ପୂର୍ବାର୍ଦ୍ଧମ୍ ।

ମୁଦ୍ରାକର : ଶ୍ରୀ ଜାନକୀନାଥ ହାଲଦାର, ପାୟୋନିୟର ପ୍ରେସ୍, କଟକ-୮